ଗଳ୍ପ ସମାହାର (ପ୍ରଥମ ଭାଗ)
ଚନ୍ଦ୍ରଶେଖର ରଥ

ପ୍ରକାଶକ : ସ୍ୱସ୍ତିକ, ଶୈଳଶ୍ରୀ ବିହାର, ଭୁବନେଶ୍ୱର
ବିତରକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର
ପ୍ରଚ୍ଛଦ: ଅଶୋକ ମହାନ୍ତି
ମୁଦ୍ରଣ : ତୁତୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୧୪
ମୂଲ୍ୟ : ୬୦୦.୦୦

GALPA SAMAHARA (PRATHAMA BHAGA)
by Chandrasekhar Rath
Published by **Swastik, Sailashree Vihar, BBSR**
**Marketing by : Paschima Publications, Bhubaneswar**
Price . 600.00

Email: paschima1990@yahoo.com

## ସୂଚୀପତ୍ର

# ସୂଚୀପତ୍ର

# ସମ୍ରାଟ୍

"ତୁମକୁ କିଏ ଜଣେ ଆସି ଖୋଜୁଥିଲେ ।"

"କେତେବେଳେ ?"

"ତମେ ଘରୁ ଗୋଡ କାଢି ଯାଉ ଯାଉ ସେ ଆସି ପହଞ୍ଚୁଥିଲେ ।"

"ଆଚ୍ଛା... କେମିତି ଚେହେରା ଦେଖିବାକୁ ?"

"ମୁଁ ଆଉ ସେଆଡିକି ସେତେ ନଜର କରିନାହିଁ । ...ଚା' ଆଣିଦେବି ?"

"ଆଣ ।" – ସେଇ ଆଳରେ ସ୍ତ୍ରୀ ସେଇଠୁ ଉଠିଗଲେ । ଚୌକି ଉପରେ ଆଖିବୁଜି କିଛି ସମୟ ପଡିରହିବାକୁ ତାଙ୍କର ପ୍ରବଳ ଇଚ୍ଛା ହେଉଥାଏ । ମୁହଁରେ କେମିତି ଗୋଟାଏ ବିରକ୍ତ, ବିଷଣ୍ଣ ଭାବ ।... 'ବେକୁବ୍ କାହାଁକା, ଲଢିବାବେଳେ ଏମିତି ରଥଚକ ଭୂଇଁ ଭିତରେ ପଶିଗଲେ କ'ଣଟା ଆଉ କରିହେବ! ଲକ୍ଷେ କାମ ମୁଣ୍ଡ ଉପରେ । ଜରୁରୀ ଯେ କାହିଁରେ କ'ଣ! ଅସଂଖ୍ୟ ଉଚ୍ଚ ତାଳକୁ ହୁଏତ ନଗି ଖଞ୍ଜିବାକୁ ହେବ । ଅସୁମାରି ରାଜ୍ୟ ଚିତ୍‌ମାତ୍ ହୋଇପଡିଛି । ତାକୁ ହୁଏତ ଜୟ କରିବାକୁ ହେବ । ଏତିକିବେଳେ କ'ଣନା ଭୂଇଁ ଟଳମଳ!'

କଣ୍ଟା କନିଅରପରି ଦୁଇଟି ନହକା ଟୋକା ପଶିଆସିଲେ – "ସାର୍, ଆମେ ଆସିଥିଲୁ! – କାଲିଠୁ ଦୁଇଥର ଆସି ଫେରିଲୁଣି ।" କିଛି ନକହି ସେ ସେମାନଙ୍କୁ ମୁହଁଟେକି ଚାହିଁଲେ ।

"ସାର୍, ଆପଣ ନାହିଁ କରିଦେଲେ ଆମେ ଏଇଠି ମୁଣ୍ଡ ପିଟିଦବୁ । ଆମର 'ସର୍ଗଦ୍ୱାର' ନାଟକରେ ଆପଣଙ୍କୁ ନିଶ୍ଚୟ ରାଜା ପାର୍ଟ ନେବାକୁ ହେବ । ଆଉ କେହି ନାହାନ୍ତି ତାକୁ ତୁଲେଇବାକୁ । ଆପଣ ଟିକିଏ ଝଡିଯାଇଛନ୍ତି । ହେଲେ ସାର୍, ମେକ୍‌ଅପ୍ ହୋଇଗଲେ ଏ ଚେହେରା ଆଉ କାହାର ଅଛି ? ଆପଣ ମୂଳରୁ ଷ୍ଟାର୍ ହେଇଆସିଛନ୍ତି । ଶହ ଶହ ଡ୍ରାମା କରିଆସିଛନ୍ତି । ଏଥର ଆମେ ଛାଡିବୁ ନାହିଁ । ଆମେ ଚାରିଆଡେ କାଗଜ ବାଣ୍ଟି ସାରିଲୁଣି ।"

ସେ କିଛି କହିଲେ ନାହିଁ । ସାମାନ୍ୟ ସଳଖିହୋଇ ବସିଲେ । ତାଙ୍କ ବେକ ପ୍ରୟୋଜନରୁ ଅଧିକ ବେଶି ଲମ୍ବା ଦେଖାଗଲା । ପ୍ରଶସ୍ତ କପାଳ ରେଖା ଉପରୁ ଥୋଡି ପର୍ଯ୍ୟନ୍ତ ମୁହଁଟି କେବଳ ଚିପୁଡିଲା ପରି ତଳମୁହାଁ ତ୍ରିଭୁଜଟିଏ । ଟାଣି ହୋଇ ଫଣ ଫଣ ଉଠୁରି ପଡୁଥିବା ସେ ବାଘ ପରି ମୁହଁ, ରାଉ ରାଉ ଭ୍ରୂଲତା, ସେ ଆଖି, ଖଣ୍ଡାଧାର ପରି ଠିଆ ନାକ ସବୁ କୁଆଡେ ହଜିଯାଇଛି । ଧାନଉଠା କ୍ଷେତରେ ପଙ୍କ-ପାଣି ଜକେଇଲା ପରି ମୁହଁଯାକ ଝାଳ । ଏଠିସେଠି କଳା କଳା ଜନ୍ତୁଙ୍କ ଖୋଜ–ଖାଲ ଖମା–ପୁରୁଣା ସିଆର–ଥୁଣ୍ଟା ନଡାପରି କଷ୍ଟୁଚିଆ ଗୁଡ ।

ପିଲେ ଠିଆହେଲେ । ଅନେଇଲେ । "ତାହାହେଲେ ସାର୍ କଥା ରହିଲା – ଆମେ ଆସୁଛୁ ।"

ପ୍ରେକ୍ଷାଳୟର ଠିଆଦର୍ପଣ ଉପରେ ଦିଶିଗଲେ – ନାଲିପାଟ ସୁନେଲି କମରପଟା, ଶିରସ୍ତ୍ରାଣ ଏବଂ କୁଣ୍ଡଳରେ ନବୋଦିତ ସୂର୍ଯ୍ୟ ପରି ଝଲୁଥିବା ବୀରବର କର୍ଣ୍ଣ...ହହହ ହସୁଥିବା ଦୀର୍ଘାୟତ କାର୍ତ୍ତବୀର୍ଯ୍ୟ, ବିଚିତ୍ର ଅଙ୍ଗରେଖା, ସୁନାକଣ୍ଠି, ବାଜୁବନ୍ଧ ପିନ୍ଧି ବାହୁ ଉଲୁସଉଥିବା ପ୍ରତାପରୁଦ୍ର, ମୁକୁନ୍ଦଦେବ, ଐର ଖାରବେଳମାନେ!... ଅତି ସଂଭ୍ରମରେ ଉହୁଁକି ମାଳ ସଜାଡି ଦେଉଥିବା ବାଙ୍କୁରା ବେଶକାରୀମାନେ। ରଙ୍ଗମଞ୍ଚରେ ଆଲୋକର ବର୍ଷା। ସେଇଠି ସୂର୍ଯ୍ୟୋଦୟ। ସେଇଠି ରାତ୍ରି। ସେଇଠି ସିଂହର ଗର୍ଜନ। କାଗଜର ପାହାଡ, କନାର କିଲ୍ଲାକାନ୍ଥ ସବୁ ଦୁଲୁ ଦଲୁ କମ୍ପି ଉଠିଲା। – ଗୁମ୍ଫା ମୁହଁରୁ ଚେଣିକି ସ୍ତବ୍ଧ ଚକିତ ଜନସମୁଦ୍ରଟାଏ ରାତ୍ରିର ଆକାଶ ପର୍ଯ୍ୟନ୍ତ ବିସ୍ତୃତ ହୋଇ ରହିଗଲା। ମଣିଷଟିମାନ ହଲେ ଲେଖା ନିଷ୍ପଲକ ଆଖି କେବଳ, ପ୍ରାଣଟିମାନ ହଲେ ଲେଖା କାନ! – ଓଃ, ତା'ପରେ ଅଜସ୍ର କରତାଳିର ଉତ୍ସବ! ଫେନାୟିତ ସମୁଦ୍ରର ଉଚ୍ଛ୍ୱାସ। ପ୍ରଶଂସାର ଫୁଲବର୍ଷା ଭିତରେ କେହି ଜଣେ ବିଶିଷ୍ଟ ଅତିଥି ତାଙ୍କ ବୁକୁ ଉପରେ ସ୍ୱର୍ଣ୍ଣପଦକ ଖଞ୍ଜିଦେଲାବେଳେ ତାକୁ ଗଜପତି ସମ୍ରାଟ୍ କରଯୋଡହୋଇ ନମସ୍କାର କରିପାରୁନଥା'ନ୍ତି। ତାଙ୍କ ମୁକୁଟ ଆକାଶରେ ଘଷିହେଉଥାଏ।

"ଚା' ନିଅ। କିଏ ସେମାନେ ଆସିଥିଲେ?"

"ଏଁ...ସେମାନେ? ସେମାନେ କିଏ କେଜାଣି?"

"କାହିଁକି ଆସିଥିଲେ?"

ଫୁଲତୋଡା ଉଠାଇବା ଭଙ୍ଗୀରେ ସେ ଆସ୍ତେ ଚା କପ୍‌ଟିକୁ ନୀରବରେ ତୋଳିନେଲେ। ସେ ଆଉ ଥରେ ମୁକୁଟ ପିନ୍ଧି ରାଜା ହେବେ। ଯେ ରାଜା ହୋଇଆସିଛି ସେ ରାଜା ହେବାରେ ଅସୁବିଧା କ'ଣ? ମୁକୁନ୍ଦଦେବ ନର୍ତ୍ତକୀ ହାତରୁ ସୁରାପାତ୍ର ନେଇ ସମ୍ରାଟ ଠାଣିରେ ଚା ପିଉଥା'ନ୍ତି। ନିଘୋଡ ନିଦରେ ଶୋଇଥିବା ଆଖିପତା ଟେକିଦେଲେ ନିଷ୍ପଳ ଡୋଳା ଉପରେ ପାଉଁଶିଆ ରଣ-କୁହୁଡି ପରି ଧୂଆଁଳ ସ୍ୱପ୍ନ। ସେ ଅନ୍ୟ କୌଣସି ରଙ୍ଗମଞ୍ଚକୁ ଅପସରିଯାଇଥିବା କଥା ତାଙ୍କ ସ୍ତ୍ରୀ ତାଙ୍କର ସେ ଆଖି ଯୋଡିକୁ ଦେଖି ଜାଣିଗଲେ। ପଚିଶବର୍ଷର ଅଭିଜ୍ଞତା କିଛି କମ୍ କଥା ନୁହେଁ। ସେ ଅପେକ୍ଷା କଲେ – ନୀରବରେ ଚା ପିଇ ଶୂନ୍ୟକୁ ଚାହିଁ ଅପେକ୍ଷା କଲେ।

ଏମିତି ଶହ ଶହ ରାତ୍ରି ସେ ଅପେକ୍ଷା କରିଆସିଛନ୍ତି। ଶୂନ୍‌ଶାନ୍ ଅନ୍ଧାର ଭିତରେ କୁଟାଟିଏ ପଡିଲେ କୁଲାଟିଏ ପଡିଲାପରି ଶୁଭେ। ଝର୍କା ପବନରେ ଦାଣ୍ଡ କବାଟ ଥରେ ଖୁଟ୍ କଲେ ଭୀରୁ ହୃଦୟଟିଏ ଘଡିଏ ପର୍ଯ୍ୟନ୍ତ ବୋଲ ମାନେନାହିଁ – ଧଡଧଡ ହେଉଥାଏ।... ଗଳିଆ ମୂଷାଟାକୁ ଭୁଆ ମାଡିବସେ। ଅନ୍ଧାରରେ ଯୁଦ୍ଧହୁଏ। ରକ୍ତପାତ ହୁଏ। ଆର୍ତ୍ତନାଦ କରୁଥିବା ମାଂସପିଣ୍ଡଟିଏ ଛିନ୍‌ଛତ୍ର ହୋଇଯାଏ। ସେ ମୂଷାଟିଏ ପରି କୁକୁଡିକାକୁଡିହୋଇ ଘୋଡେଇ ହୋଇପଡନ୍ତି। ଭାବନ୍ତି, ମୂଷା ଜନ୍ମ ହେଲା ତ' ଏଇଆ। ତାଙ୍କୁ କିଛି କିଛି ଡରମାଡେ, କିଛିଟା ଉଦାସ ବି ଲାଗେ। ଜଳଯନ୍ତ୍ର ଉପରେ ଅଣ୍ଡାଖୋଳ, ବଡି-ମହୁର ପରି କାନ୍ଥାର ଏବଂ ନିଷ୍ପଳହୋଇ ସେ ଅପେକ୍ଷା କରିଥା'ନ୍ତି। ଅନ୍ଧାରରେ ନୂଆ ମଶାରିର ବାସ୍ନା ଭଳି ଆଉ କେତେ କ'ଣ ତାଙ୍କୁ ବିଚଳିତ କରେ, କିଏ ଚାଲିଲା

ପରି, ଫିସ୍‌ଫିସ୍ ହସିଲାପରି, ପାଖେଇ ଆସିଲାପରି ଲାଗେ । ତାଙ୍କ ଦେହସାରା ଶୀତ କଣ୍ଟା ମାରିଯାଏ – ବହୁ ଦୂରରୁ ମଣିଷ ତୁଣ୍ଡର କଥା ଶୁଭେ । ପାଦ ଶବ୍ଦ ପାଖେଇ ଆସେ । ନାଟୁଆମାନେ ଅଭ୍ୟାସ ସାରି ଫେରନ୍ତି । ଆହୁରି ପାଖକୁ, ଦୁଆରମୁହଁକୁ ଆସି ରହିଯାନ୍ତି । ତା'ପରେ କବାଟ ଖଟ୍ ଖଟ୍ ହୁଏ । ଏଥର ଏଇଟା ପବନ ନୁହେଁ । ଦୀପ ଜଳେ । ଖୁବ୍ ନିଦରୁ ଉଠିଲାଭଳି ସେ ଟଳମଳ ପାଦ ପକେଇ ବେଲି କାଢନ୍ତି । ସ୍ୱାମୀ ପହିଜ କରନ୍ତି ରଜାପରି । ଗୁଡାଏ ପ୍ରାଞ୍ଜଳ ଶୁଦ୍ଧ ଭାଷାରେ କଥା କହନ୍ତି । ଖାଇବସନ୍ତି ଗୋଟାଏ ଠାଣିରେ – ସେତେବେଳକୁ କେତେ ରାତି ହେଇଥିବ କେଜାଣି !

ଆଖିରେ ଉଭୟଙ୍କ ପର୍ଦା ପଡିଗଲା । ରଙ୍ଗମଞ୍ଚ ଲୁଚିଗଲା କଳାପର୍ଦା ପଛଆଡେ । ଏଣିକି ସତ ମଣିଷ । ସତ ଆଲୁଅ । ବୈଠକଘରଟିରେ ଉଭୟେ ପତିପତ୍ନୀ ଚା ପିଉଥା'ନ୍ତି ।

ସେ ଛମ୍ ଛମ୍ ନୀରବତା ଭିତରେ ପୁଣି ପର୍ଦା ଉଠିବା ଉପରେ । ନୂଆ ଦୃଶ୍ୟ ପାଇଁ ସଜବାଜ ଚାଲିବ – ଇସ୍, ଏଗୁଡାକୁ ସେ ସାବାଡ୍ କରିବାକୁ ଚାହାନ୍ତି । ଏଣିକି ସେ ନାଲାଏକ୍ କଳାମନ୍ଦିରବାଲା ଆଉ ଜମା ଆସିବେ ନାହିଁ । ସେମାନଙ୍କ ସିନ୍ ସବୁ ପୁରୁଣା, ଖଣ୍ଡଚିତିରିଆ । ଫିଟେଇଦେଲେ ଫୁରୁକୁଟିଆ ଗନ୍ଧାଏ । ଜରିଜାମାଗୁଡାକ ସବୁ ଲୋଚାକୋଚା; ବାରପ୍ରକାର ଝାଳଗନ୍ଧରେ ନାକ ପାଖକୁ ନେଇହୁଏ ନାହିଁ । ଏଥର ଡ୍ରାମାରେ ଦୁଇଘଣ୍ଟା ଆଗରୁ ସେ ବେଶପୋଷାକ ପିନ୍ଧିଦେଲେ ବୋଲି ସିନା ସମ୍ଭାଳି ପଡିଗଲା, ନହେଲେ ଷ୍ଟେଜ୍ ଉପରେ ତାଙ୍କୁ ସେମିତି ପିମ୍ପୁଡି ବେଢିଯାଇଥିଲେ ଆଉ କଥା ଥିଲା ?

ତାଙ୍କ ଆଖି ତରାଟି ହୋଇଗଲା । ପତ୍ନୀ କେତେବେଳୁ ସେଇଠୁ ଉଠିଯାଇଥା'ନ୍ତି ।

ସେ ଯେଉଁ ଆରଟା – ରୟେଲ ପେଣ୍ଟରସ୍ – ସେ ବି କୋଉ ଭଲ ? ପକ୍କା ଚୋର । ତା'ର ଗେଡୁ ମେନେଜର କାନ ପର୍ଯ୍ୟନ୍ତ ପାଟି ମେଲେଇ ସବୁ କଥାରେ ହସେ । ସେମିତି ନିଃଶବ୍ଦ ହସିବାବାଲା କ୍ୱଚିତ୍ । ଖୁବ୍ ଚିକ୍‌କଣ କଥା ବି କହିପାରେ – ପଇସା ଖସାଇପାରେ ! ତା'ର ରାଜା ପୋଷାକ ଖଣ୍ଡ କିନ୍ତୁ ସତକୁସତ ରଜାଲାଖି । ବାକି ସବୁ ଠିକ୍ ! ହେଲେ ସେଥର ସେ ଯେଉଁ ପୋଚା ଅଠାରେ ଗଜପତିଆ କଟରାନିଶକୁ ଲଗେଇ ଦେଇଥିଲା, ସେ କଦାପି ଭୁଲି ପାରିବେ ନାହିଁ । ହାରାମି କା ବଚ୍ଚା... ଗୋଟାଏ ସିନ୍ ସେଥିପାଇଁ ମର୍ଡର ହୋଇଗଲା । କେହି ଧରିପାରିଲେ ନାହିଁ ସତ – ସମସ୍ତେ ଭାବିଲେ ବୀରାଧିବୀରଙ୍କର କଥାକଥାକେ ନିଶରେ ହାତ ପକେଇବା ଗୋଟାଏ ରାଜକୀୟ ଅଭ୍ୟାସ । ଏଆଡେ ତାଙ୍କର କିନ୍ତୁ ଝାଳ ଫିଟିଯାଇଥିଲା, ସର ଫାକାସିଯାଇଥିଲା । ନାକତଳୁ ସେ ପୋଚକା ମଇଲମ୍ ଯାହା ଗନ୍ଧାଉଥାଏ କହିଲେ ନ ସରେ ! ଅଃ – ଆବ୍‌ବେ, ସମ୍ରାଟର ମିଜାଜ୍ ଥିଲେ ସିନା ସମ୍ରାଟ୍ ପାର୍ଟ କରିହେବ । ସେ କ୍ରୋଧରେ ଥରିଉଠିଲେ । ସମସ୍ତଙ୍କୁ ବୋଧହୁଏ ସେ ଫାଶୀ ହୁକୁମ ଦେଇଦେବେ ।

କପ୍ ଧୋଇ ରଖିଲାବେଳେ ତାଙ୍କୁ ଲାଗିଲା ଯେ ସ୍ୱାମୀଙ୍କର ଏତେବଡ ପ୍ରତିଭା କେହି ଚିହ୍ନିଲେ ନାହିଁ । ବେଳ ଗଡିଗଲା । ମନଲାଖି କୋଠାଟିଏ କରିବାକୁ କେତେଦିନରୁ ସପ୍ନ ଦେଖି

ଦେଖି ଆଉ କେବେ ହୋଇପାରିଲା ନାହିଁ । ଭଲ ଖଣ୍ଡେ ପିନ୍ଧିବା, ମନଇଚ୍ଛା କ'ଣ ଟିକେ ଖାଇଦେବାର ସୁଯୋଗ ମିଳିଲା ନାହିଁ । ହଅଅ – ପିଲା ଦି'ଖଣ୍ଡ ତ' ଉଡୁରିଗଲେ । ମାମୁନି ଦାର୍ଜିଲିଂରେ ଥାଏ । ତା' ସ୍ୱାମୀ ବଡ ଆର୍ମି ଅଫିସର । ବାବୁନି ବମ୍ବେରେ ଆସି ରହିଲାଣି । ଏଇ ତ ସଂସାର । ଥରେ ଏ ଯେଉଁ ତୀର୍ଥଗାଡି ଯାଉଛି, ଏଥିରେ ମାସେ ବୁଲିଆସିଲେ ହୁଅନ୍ତା । ୟାଙ୍କୁ ନେଇ ଏ ଘରିକାନ୍ଥ କାଟି ଥରେ ଏ ସଂସାର ଦେଖି ଆସିବାକୁ ଭାରି ମନତାକୁଛି । କ'ଣ କରାଯାଏ ! ୟାଙ୍କ ଦେହ ତ ଦିନକୁ ଦିନ ଏମିତି ଭାଙ୍ଗିଯାଉଛି । ଚମ ଆଉ ହାତ ମଝିରୁ ନିସନ୍ଧି ପଥରଚକି ପରି ମାଂସପେଶୀ ସବୁ କେମିତି ମିଳେଇଯାଉଛି । ପାହାଡପରି ମଣିଷ ହାତ କୁବ୍ଜ ହୋଇଗଲେଣି ।

ଏଣେ ସମ୍ରାଟ୍ ତଥାପି ତା' ଉପରେ ଥା'ନ୍ତି । ସେମିତି ବେକଭାଙ୍ଗି, ଉଦ୍ଧତ ଅପରାଜିତ ଭଙ୍ଗୀରେ ଚାହିଁରହିଥା'ନ୍ତି । ବୋଧହୁଏ ମହାମହିମଙ୍କ ଆଦେଶରେ ଅନାମଧେୟ ବେଶକାରୀମାନେ ଧାଡି ଧାଡି ଶୂଳରେ ଚଢୁଥା'ନ୍ତି – କୌଣସି ଏକ ଅଦୃଶ୍ୟ ବଧଭୂମିରେ ।

ସେ ଚାହିଁଥିଲେ ନିଜପାଇଁ ଦୁଇ ଚାରି ସେଟ୍ ରାଜୁତା ପୋଷାକ କିଣି ରଖିଥା'ନ୍ତେ – ଖଣ୍ଡା, ପାଟ ପଗଡି, ଚୂଳ ମାଳ ସବୁ । ହେଲା ନାହିଁ । କଲିକତା ସବୁବେଳେ ତାଙ୍କପାଇଁ ସୁଦୂର ଏବଂ ଅପହଞ୍ଚ ରହିଗଲା । ସେ ଚାହିଁଥିଲେ ତାଙ୍କର ବିଖ୍ୟାତ ସ୍ପିଚ୍‌ଗୁଡିକ ରେକର୍ଡ କରିଦେଇଥା'ନ୍ତେ । କାର୍ତ୍ତବୀର୍ଯ୍ୟର ଟହଟହ ହସରେ ରେଡିଓମାନଙ୍କ ପଞ୍ଜରା ଝଣଝଣ ହୋଇ ଝଡିପଡିଥାନ୍ତା – ହେଲାନାହିଁ ।

କୌଣସି ନିର୍ଜନ ବିଶାଳ ପଥରଗୁମ୍ଫା ଭିତରୁ ବତାସିଆ ସ୍ୱରରେ ଶୁଭୁଥାଏ 'ହେଲାନାହିଁ', କିଛି ହେଲାନାହିଁ ! ତାଙ୍କ ମଥା ନଇଁଗଲା, ଆଖି ନରମିଗଲା । ସେ ଖୁସ୍‌ମୁସ୍ ହୋଇ ତାଙ୍କ ବୈଠକଘରଟିକୁ ପାତଳ ବେତଚୌକି ଏବଂ ସେ ପୁରୁଣା ତୁଳାଗଦିଗୁଡିକ ଗହଣକୁ ଫେରିଆସିଲେ । ଗୁମ୍ଫାର ସ୍ୱର ତାଙ୍କୁ ତଥାପି ଦବେଇଚାଲିଥାଏ ।

'ରାଧାରାଣୀ' ଅଧିକାଂଶ ନାଟକରେ ରାଣୀ ହୋଇ ବାହାରୁଥିଲା । ସେ ସତକୁ ସତ ରାଣୀ ହୋଇପାରିଥାନ୍ତା । କି ଠାଣି, କି ରୂପ ! – ପଦ୍ମାବତୀଙ୍କର ଦକ୍ଷିଣୀ ପାଟ ତାଙ୍କ ଡାହାଣ ଗୋଡର ଗୋରା ଚକଚକ ପେଣ୍ଡା ଉପରୁ ଆଡେଇ ହୋଇଯାଏ, ରାଣୀ ଚାଲିଯାନ୍ତି । ସେଇ ରାଧାରାଣୀ ସ୍ୱରରେ ଅଦ୍ଭୁତ ଗୀତ ଶୁଭେ । ତାଙ୍କର ଭାରି ଇଚ୍ଛାଥିଲା ସେ ନିଜେ ଗୀତ ଶିଖିଥା'ନ୍ତେ – ହେଲା ନାହିଁ । ଗୁରୁ କହିଲେ – ବିଳମ୍ବ ହୋଇଗଲା । ସରଗମ୍‌ର ଉଚ୍ଚ ଏରୁଣ୍ଡିବନ୍ଧ ସେ ଡେଇଁ ପାରିଲେ ନାହିଁ ।

ସେ ଚାହିଁଥିଲେ ପଥରପିଣ୍ଡରୁ ମୂର୍ତ୍ତି କାଟିବାକୁ – ହେଲା ନାହିଁ । ଚାହିଁଥିଲେ ବିରାଟ କାନ୍ଥଭଳି କାନ୍‌ଭାସ୍‌ମାନଙ୍କ ଉପରେ ରଙ୍ଗର ସ୍ୱପ୍ନ ସୃଷ୍ଟି କରିବାକୁ – ହେଲାନାହିଁ । ଡିମା ଡିମା ପଥରଯାକ କୂଅମୂଳେ ପାହାଚ ହୋଇଗଲା । କାନ୍‌ଭାସ୍ କନାଯାକ ରହି ରହି ଉଈ ଖାଇଗଲେ । ରଙ୍ଗ ନଳୀ ସବୁ ଶୁଖିଯାଇ ପଥର ହେଇଗଲା ।... ଗୁମ୍ଫା ଭିତରୁ ସ୍ୱର ଦୋହରାଇ ଚାଲିଥାଏ 'ହେଲା ନାହିଁ... ହେଲା ନାହିଁ... ହେଲା ନାହିଁ ।'

ସେ ଆସ୍ତେ ଆସ୍ତେ ନଇଁ ଗଲିଥା'ନ୍ତି । ବେକମୁଣ୍ଡା, ମେରୁଦଣ୍ଡା, ହାଡପଞ୍ଜରା, ହାତ ଗୋଡଗୁଡ଼ିକ ସବୁ ସାଙ୍କୁଡ଼ିଯାଇ ବେତଚୌକିରେ ମୋଷ୍ଟାଟିଏ ହୋଇଯାଉଥାଏ । ପୁରୁଣା ଅଖାମୁଣି ଭିତରେ ଅସଂଖ୍ୟ ସପ୍ନର ଭଙ୍ଗାଗୁଜା ଗୁଣ୍ଡୁଣ୍ଡୁଣ ରଙ୍ଗିନ୍ କାଚଗୁଡ଼ିଏ ସତେବା !

ଦାଣ୍ଡକବାଟ ଫିଟିଲା । ପତ୍ନୀ ତରବର ହୋଇ ଭିତରୁ ଆସି ବୈଠକଘରେ ପହଞ୍ଚିଲେ ।

"ହେଇ, ବୋଧହୁଏ ସେ ପୁଣିଥରେ ଆସିଲେ !"

"କିଏ ?"

"ସେଇ, ଯେ ତୁମକୁ ଖୋଜୁଥିଲେ ।"

"ଆଚ୍ଛା..." ହୁଏତ ସେ ପାଛୋଟିବାକୁ ଉଠିଥା'ନ୍ତେ ।

ହାତଗୋଡ ସଳଖି ଛଅଫୁଟ ଦୁଇଇଞ୍ଚ ଉଞ୍ଚ ମଣିଷଟି ଠିଆ ହୋଇଥା'ନ୍ତେ – ହେଲାନାହିଁ । ସେ ସେମିତି ମୋଷ୍ଟାଟିଏ ହୋଇ ବସିରହିଲେ ।

ଘରକୁ ପଶିଆସିଲେ ବେଣୀବାବୁ – ବେଣୀ ମାଧବ ସାମନ୍ତ – କାଠକଣ୍ଟ୍ରାକ୍ଟର, ଖୁବ୍ ସୌଖିନ୍ ଲୋକ ।

'ବେଣୀଟା ଏତିକି ଛୋଟଲୋକ ! ଦଶଦିନ ତଳେ ଟଙ୍କା ତିନିଶ' ହାତଉଧାରି ଦେଇଛି ବୋଲି ଆଜି ଖେପିଆସିଲା । ଶଳା, କାମ୍ପି, ଚମଚଟା, ଶୁଣ୍ଡୁ !'

"ଭାଇ, ତୋ' ଦେହ ସେମିତି କିଛି ଖରାପ ହୋଇନାହିଁ ତ ? ଓହୋ, ମୁଁ ତରବର ହୋଇ ଗଲିଆସିଛି – ଗୁଁ' ସୁଦ୍ଧା ପିଇନାହିଁ । କପେ ଚା ଦେଲେ ଭାଉଜ ! ସଞ୍ଜବେଳେ ମୁଁ ଫେରୁଛି କାମରୁ । ସେ ଯେଉଁ ଶାଳବଣିଆ ଖଣ୍ଡକ ନାହିଁ – ଅନ୍ଧାରୁଆ, ଛାପଛାପୁଆ, ସିରିସିରିଆ ଜାଗା – ଶଳା, ପିଲାଦିନୁ ମୁଁ ସେ ବାଟତକ କେବେ ବେଧଡକ ଯାଇପାରିନାହିଁ ।"

କିଛି ଭାର ଓହ୍ଲେଇଗଲା ପବନ ପିଠିରୁ । ଅଳ୍ପ ଅଳ୍ପ ବସ ।... 'ଶଳା ହଗୁରା, ଛେରକୁରା !'

"ବୁଝିଲୁ ଭାଇ,... ଶୁଣୁଛ ଭାଉଜ,... ସେଇଠି ସେ ଲୋକଟା ମୋ' ସାମ୍ନାକୁ ଆସି ଛପ୍‌କିନା ଠିଆହୋଇଗଲା ।"

"କୋଉ ଲୋକଟା ?" – ଦୁଇଟି ସ୍ୱରରେ ଯୁଗଳ ପ୍ରଶ୍ନଟିଏ ।

"ମୁଁ କ'ଣ ତାକୁ ଜାଣେ ? – କହିଲା ସେ ତୋତେ ଖୋଜୁଛି ।"

"ଆଚ୍ଛା, ଖୁରୁମୁସିଆ ହୋଇ ଛୋଟିଆ ମଣିଷଟିଏ ନା ?"

"ହାଁ ହାଁ, ତୁମେ କେମିତି ତାକୁ ଜାଣିଲ କି ଭାଉଜ ?"

"ସେ ପରା ଏଠୁ ଆସି ଫେରିଚି ! ମୁଁ ତାକୁ ଛାଆ ଛାଆ ଟିକିଏ ଅନ୍ଧାରରେ ଦେଖିଛି କେବଳ – ସେ କହିଯାଇଛି ପୁଣି ଆସିବ !"

କୁହୁଡି ଭଳି କିଛି ଧୂମିଳ ନୀରବତା ।

"ଆରେ ବେଣୀ, ଛାଡ୍ ସେ କଥା । ସେ ଯେ ଖୋଜୁଛି, ତା' ଗରଜ ପଡିଲେ ବଲେ ଆସିଯିବ । – ଆଚ୍ଛା, ତୋତେ ଶୀତ କରୁନାହିଁ ?"

"କାହିଁ, ନାହିଁ ତ ! ଏମିତି ଗୁମୁଗୁମିଆ ପାଗରେ ତୋତେ ଶୀତ ହେଉଛି ? ଖଣ୍ଡେ ଧଳାଗୁଦର ଆଣିବଟି ଭାଉଜ, ଘୋଡେଇଦେବ।"

ଦାଣ୍ଡକବାଟ କେଁ କଟ୍ କଟ୍ ହୋଇ ଫିଟିଲା । ବେଣୀ ସାମନ୍ତ ଧଡପଡ ଠିଆହୋଇପଡି ଭାଉଜଙ୍କୁ ଏତେଟାମାନ ଆଖିରେ ଚାହିଁଲେ । – "ସେଇ ବୋଧହୁଏ ଆସିଗଲା ।"

ଧପ୍ ଧପ୍ ଭାରି ମଜଭୁତ ପାହୁଣ୍ଡପକେଇ ପଲାସି ଆସିଲେ ଡାକ୍ତର ଧନୁର୍ଧର । ଧପାଲିଗଲେ ଗୋଟାଏ ଚୌକି ଉପରକୁ । ଚୌକି ମଟ୍‌ମଟ୍ ଡାକିଲା । ସେ କଟ୍‌ମଟ୍ ଅନେଇଗଲେ ସମସ୍ତଙ୍କୁ – "ଆହେଁ, ଏ ଘଟଣା କ'ଣ ? ତମେ ଭଲ ଅଛଟି ?"

ଡାକ୍ତର ତା'ର ମାସିକିଆ ଫିଜ୍ ନେବା କଥା । ନେବ ନାହିଁ କି ? କିଏ କ'ଣ ତା' ପଇସା ଖାଇଯାଉଛି ?

"ଏମିତି ଗରମ ପାଗରେ କାହିଁକି ସେଥିରୁ ଗୋଟାଏ ଘୋଡେଇହେଇ ବସିଛ ? ଦେଖି ତମ ହାତ । ଥାଉ, ନ ହେଲେ ପରେ ଦେଖିବା । ଶୁଣ ଆଗ... ସେ ଲୋକଟା ମୋତେ ଚମକେଇଦେଲା ଜାଣ ! ସେ କାହିଁକି ସେମିତି ସେ ବରକୋଳି ଗଛମୂଳେ ଚୋର ପରି ଲୁଚିଥିଲା ? ସନ୍ଧ୍ୟାବେଳେ ଗୋଟେ ଛାଇଭଳି ଆସି ମୋ' ଆଗରେ ଠିଆ ହୋଇଗଲା । ମୁଁ ତ ଭାବିଲି କଣଟାଏ ନା' କଣଟାଏ ! କିନ୍ତୁ ସରଳିଆ ଛୋଟକୋଟର ବେକୁବ୍ ମଣିଷଟାଏ – କହିଲା, ଯାଙ୍କୁ ଖୋଜୁଛି । ମୁଁ ତାକୁ କ'ଣ ଫୋ-ପା କହିଦେଇ ଭାବିଲି, ଆବ୍‌ବେ ଏମିତି କ'ଣ ଯାଙ୍କୁ ଖୋଜାଖୋଜି ପଡିଛି – ଯାଇ ନିଜେ ଦେଖିଆସିବା ଭଲ । ଦେଖି ତମ ହାତ...ଦେଖୁଛ ନା ବେଣୀବାବୁ, ହାତୀ ହାତଭଳି ଖାଲି ହାଡଟା ଉପରେ ଚମ ଘୋଡେଇ ହେଇଥିଲେ ବିଆର ଆକାର ଦେଖୁଚ ତ ! ହଇହୋ, ଏମିତି ଝାଳରେ ସରବୁଡ୍ ହୋଇ କାହିଁକି ଘୋଡେଇହୋଇଛ ? ତମକୁ କ'ଣ ଭଲ ଲାଗୁନାହିଁ ? ଆସିଲ ସେ ଖଟ ଉପରକୁ, ଟିକିଏ ଦେଖିଦେବା – ରାତି ରାତି ଉଜାଗର ରହି, ବେଟାଇମ୍ ଏଣ୍ଡୁତେଣ୍ଡୁ ଖାଇ, ଚା ଶୋଷି ଶୋଷି ତୁମର ଏ ଅବସ୍ଥା । ନହେଲେ ତମ ପାଖକୁ ରୋଗ ପଶିଥା'ନ୍ତା ? ସେହି ଡ୍ରାମା ନିଶା ତମକୁ ଖାଇଲା !" ଅଳ୍ପ ନରମ ହସ । ସମ୍ରାଟ୍‌ଙ୍କ ଆଖି ଯୋଡିକ ଖୁବ୍ କ୍ଳାନ୍ତ ।

"ଆଚ୍ଛା, ଆଣିଲ ସେ ମେଡାଲ ବୋର୍ଡ ।"

ଅଳ୍ପ ସମୟ ପରେ ପତ୍ନୀ ଲୁଗା କାନିରେ କାଠି ପୋଛି ପୋଛି ଆସି ପହଞ୍ଚିଲେ । ଭେଲ୍‌ଭେଟ୍ କନା ଉପରେ କାଚ ବନ୍ଧାହୋଇ ଧାଡି ଧାଡି ସୁନାରୂପାର ପଦକ–ସର୍ବମୋଟ ଦଶଧାଡି । ଧାଡିକେ ଦଶଟି ଲେଖାଁ ନୀଳ ଆକାଶରେ ଝିକିମିକି ଗ୍ରହ ନକ୍ଷତ୍ର । ସମସ୍ତଙ୍କ ଦୃଷ୍ଟି ବଳେ ଯାଇ ଲାଖିରହିଲା ଶେଷ ଧାଡିର, ଶେଷ ଖାଲି ଜାଗାଟି ଉପରେ । ସର୍ବମୋଟ ଅନେଶତ ମେଡାଲ, କରତାଳି ଏବଂ ଆଲୁଅର କୋଳାହଳ ଭିତରେ ତାଙ୍କ ବିଶାଳ ବୁକୁ ଉପରେ ଖଞ୍ଜା ହୋଇସାରିଛି । ଆଉ ମାତ୍ର ଗୋଟାଏ ହୋଇଥିଲେ ଶହେ ପୂରିଯାଇଥାନ୍ତା । ଆକାଶ ଭରିଯାଇଥାନ୍ତା ପୂର୍ବରୁ ପଶ୍ଚିମ ଯାଏଁ ।

"ଏଭଳି ଅସାମାନ୍ୟ ପ୍ରତିଭା ଏ ଦେଶରେ ଆଉ ନାହିଁ – ବୁଝିଲ ଡାକ୍ତର ବାବୁ !"

ଡାକ୍ତରବାବୁ ଭୃଗୁ କୁଞ୍ଚେଇ ବୁକୁର ଏପଟରୁ ସେପଟକୁ ତାଙ୍କର ଯନ୍ତ୍ରଟିକୁ ଘୁଞ୍ଚେଇବାରେ ଲାଗିଥା'ନ୍ତି । – "କେମିତି ଲାଗୁଛି ?"

ଦାଣ୍ଡ କବାଟ ଖଟ୍ ଖଟ୍ ହୋଇଉଠିଲା । ତିନିଜଣଯାକ ଚମକି ଚାହିଁଲେ ସେଇଆଡେ । ଛୋଟ ଛୋଟ ପାଦଶବ୍ଦ । ଖୁସୁରୁମୁସୁରୁ ଖାଲି ପାଦଗୁଡିଏ ।

ପରଦା ଟେକି ଛପ୍‌କିନା ପଶିଆସିଲା 'ଝାମ୍ପୁ' – ମାମୁନୀର ବଡପୁଅ । ଟିଉସନ୍‌ରୁ ଫେରିଆସିଲା ଟିକିଏ ଚଞ୍ଚଳ । ଆଈ ପଚାରିଲେ, "କିରେ, ଆଜି ସାର୍ ଆସିଲେ ନାହିଁ କି ?" ସେ ସିଧା ଅଜାର ଖଟ ପାଖକୁ ଯାଇ ତାଙ୍କ ମୁହଁକୁ ଚାହିଁଲା । ଝୋଲାରୁ ଅଙ୍କବହି କାଢି ଫଡ୍ ଫଡ୍ ପତର ଲେଉଟାଇ ଗଲା... "ଦେଖିଲ ଅଜା, ଏ ଯେଉଁ ତେର ନମ୍ବର ଅଙ୍କଟା ମୋଟେ ଛିଣ୍ଡୁ ନାହିଁ । ଆଜି ସାର୍ ବି ହାଲିଆ ହେଇଗଲେ । ମୁଁ କହିଲି, ଆମ ଅଜା ପାରିବେ । ଆମ ଅଜାଙ୍କ ଛବି ଇତିହାସ ବହିରେ ଅଛି ।"

ସମସ୍ତେ ହଠାତ୍ ଖୁବ୍ ବ୍ୟସ୍ତ ହୋଇଉଠିଲେ । ସେ ଖଟ ଉପରେ ଥାଇ କେମିତି ଗୋଟାଏ ବେଢଙ୍ଗିଆ ସ୍ୱରରେ ଆଉଡାଇଲେ – "ଫେରିଯାଅ ରାଜମାତା/ପାଣ୍ଡବଜନନୀ! ବିଲୁପ୍ତ ଅତୀତ ସାଥେ ଭୁଲିଯାଅ ମୋରେ/ ମୁହିଁ ଛାର ସୂତପୁତ୍ର/ ଅବହେଳା, ପରାଜୟ ଅପମାନ ମୃତ୍ୟୁ/ ସେଇ ମୋର ପ୍ରାପ୍ୟ/ ଫେରିଯାଅ ମାତଃ..."

ସମଗ୍ର ଜନତା ସ୍ତବ୍‌ଧ । ସମସ୍ତଙ୍କ ଆଖିରେ ଲୁହ । ଗ୍ୟାସ୍‌ଲାଇଟ୍‌ଗୁଡାକ ସାଇଁ ସାଇଁ କାନ୍ଦୁଛନ୍ତି । ପତ୍ରଟାଏ ପଡିଲେ କୁଲାଟାଏ ପଡିଲାପରି ସମସ୍ତେ ଚମକିପଡନ୍ତେ ।

ତାଙ୍କ ମୁହଁରେ ଉଦାସ ହସଟିଏ । ବଡ ବଡ ଆଖିରେ ଲୁହ ଢଳଢଳ ।

ପ୍ରସ୍ଥାନ ଦ୍ୱାର ପାଖରେ କିଏ ସେ ଠିଆ ହୋଇଛି ? ବାଙ୍ଗରା ଖୁରୁମୁସିଆ, ବୋକା ଭଳି ମଣିଷଟିଏ । ରୟେଲ୍ ପେଣ୍ଟରସ୍‌ର ମେନେଜର ଭଳି ନିଃଶବ୍ଦରେ ହସୁଛି...

"ଅଜା, ମୁଁ ଆଜି ତମକୁ ଗୋଟେ ମେଡାଲ ଦେବାକୁ ଆଣିଛି !" – ଝାମ୍ପୁ ସୈନିକ-ଦିବସର ଟିଣ ଚକ୍‌ତିଟିକୁ ତାଙ୍କ ପଞ୍ଜାବିମୁଣା ଉପରେ ପିନ୍‌ରେ ମାରିଦେଲା ।

ତାଙ୍କୁ ଶୁଭିଲା ସମୁଦ୍ର ଗର୍ଜିଲା ପରି ଗୋଟାଏ ଶବ୍ଦ । ଝମ୍‌ଝମ୍ ବଜ୍ର ବିଜୁଳି କାଟିଦେଲାପରି କୋହଲା ଅସ୍ଥିରତା । କରତାଳିରେ ବୋଧହୁଏ ଆକାଶ ଛିଡିପଡୁଛି ।

ସେ ପ୍ରେକ୍ଷାଳୟର ପରଦା ପାଖରେ ଠିଆହୋଇଛନ୍ତି । ସୂର୍ଯ୍ୟ ପରି ଝଟକୁଛନ୍ତି । ମନ୍ଦାରପାଖୁଡା ରଙ୍ଗର ପାଟପିନ୍ଧା ମହାରଥୀ କର୍ଣ୍ଣ । ତାଙ୍କ ଆଙ୍ଗୁଠିଟିକୁ ଧରି ଅତି ଆନନ୍ଦରେ ବିହ୍ୱଳ ହେଲାପରି ଠିଆହୋଇଛି ସେ ଖୁରୁମୁସିଆ ମଣିଷଟି । ଅତି ସଂଭ୍ରମରେ ସମ୍ରାଟ୍‌ଙ୍କୁ ପାଛୋଟିନେବାକୁ ସେ ନୀରବରେ ଅପେକ୍ଷା କରିଛି ।

ଜନତା ତାଙ୍କୁ ଆଉ ଦେଖିପାରୁନାହିଁ ।

ଧଳା ଚାଦରଟିକୁ ଧରି ସେମାନେ କାହିଁକି ସେଭଳି ଟଣାଓଟରା କରୁଛନ୍ତି ? ଖାଲି ପୋଷାକ ଭିତରେ କାହିଁକି ସେମିତି ଖୋଜିଲାଗିଛନ୍ତି ? କାହାକୁ ଖୋଜୁଛନ୍ତି ସେମାନେ ? ? □

# ସ୍ୱପ୍ନଭଙ୍ଗ

ସାନପୁଅର ନୂଆ ଗଜେଇଥିବା ଦାଢ଼ି ଉପରେ ଢୋ-କିନି ଗୋଟାଏ ଚପୁଡ଼ା ପକେଇଦେଇ ଗର୍ଜିଉଠିଲେ ବଳଭଦ୍ର ରାୟଗୁରୁ –

'ଗେଟ୍ ବେ ନାଲାଏକ୍ ଇଡିଅଟ୍ କାହାଁକା ! ତତେ ଅଲବତ୍ ମେଡିକେଲ୍ ନେବାକୁ ହେବ । ଡାକ୍ତର ତ ହବୁ ନାଇଁ; ଆଉ କ'ଣ ଜୁଲୋଜି ପଢ଼ି ମାଷ୍ଟ୍ର ହବୁ ? ମା...ରିବି ଚଟକଣା ଧରି ଯେ, ଦାନ୍ତ ଝାଡ଼ିଦେବି । ଯା'...ଆଜି ଦରଖାସ୍ତ ଦାଖଲ୍ କରି ଆସିବୁ ।'

ଧୋତି, ମଠାପଞ୍ଜାବି ଏବଂ ମାନ୍ଧାତା ଅମଳର କାଳିଆ ଚମଡା ପାଣ୍ଡେଇ ପିନ୍ଧି ଦୁମ୍ ଦୁମ୍ ହୋଇ ତାଙ୍କ ଶୋଇବା ବଖରାକୁ ସେ ଚାଲିଗଲେ । ବୁବୁ ଅଧିକାଂଶ ଦିନ ବାଘ ସପନ ଦେଖେ । ପଟାଳିଆ ଚଦର ଘୋଡେଇହୋଇ ସେ ବାଘ ମୁହଁ ମେଲେଇ ମାଡିଆସେ । ଦିନେ ଦିନେ ସେ ପାନ ଚୋବେଇଲା ପରି ତାକୁ ଦିଶିଯାଏ । ପାଟି ଭିତରଟା ତା'ର ଗୋଟାଏ ହିଙ୍ଗୁଳ ଗୁମ୍ଫା । ତା' ଭିତରୁ କଡକଡ ହୋଇ ବଜ୍ର ଭାଙ୍ଗିପଡୁଥାଏ । ଝାଳ-ସରସର ହୋଇ ବୁବୁ ଧାଇଁଥାଏ ଅନ୍ଧାରର ଆଢୁଆଳକୁ । ପଛରେ ଦୁମ୍‌ଦୁମ୍ ଗୋଡେଇଥାଏ ବାଘ । କେତେଥର ସେ ଦେଖିଛି ଯେ ବାଘ ପାହୁଲରେ ଏମିତି କଳା କଳା ପାଣ୍ଡେଇ !... ଏତେଦିନେ ତା' ଧାଇଁବା ରାସ୍ତାରେ ଆସିଗଲା ଜିମ୍‌ନାସିୟମ । ସେ ସେଇଠୁ ଭିଡିଆଣିଲା ଲୁହାର ଗୋଟିଏ ଶାବଳ । ଗୋଟାଏ ହୁଁକାରରେ ସେ ବୁଲିପଡି ଚାହିଁଲାବେଳକୁ ବାଘ ପେଟେଇ ଶୋଇଯାଇଛି । ତା' ଆଗଗୋଡ ଯୋଡାକ ଶରଣ ପଶିବା ଢଙ୍ଗରେ ଲମ୍ବିଯାଇଛି । ଆଖିବୁଜି କୁଁ କୁଁ କରୁଛି ପଡିଶାଘରର ଦୋ-ମିଶା କୁକୁର 'ଲିଲି' । ବୁବୁ ଶାବଳ ଅଗରେ ତାକୁ ଟେକିଦେଉଛି ! ସେ ଲେଉଟିପଡୁଛି ପ୍ଲେଟରେ ବଢ଼ାହୋଇଥିବା ଗୋଟିଏ ମାଛର ପୁଟାପରି । ଛୁରୀରେ ତା' ମୁଣ୍ଡ କାଟିଦେଇ ବୁବୁ ତାକୁ ପାଟିରେ ପୂରେଇଦଉଚି କଣ୍ଟା ସାହାଯ୍ୟରେ !

ନିଦ ଭାଙ୍ଗିଗଲା । ନିରାମିଷ ଛେପ କଳେ ଢୋକିଦେଇ ବୁବୁ ଦାନ୍ତଜାବି ବାହାରିଗଲା ଘରୁ । ମେଡିକେଲରେ ନାଁ ଲେଖେଇବାକୁ ହେବ । ହଉ ଶାଳା, ବି.ଏସ୍‌ସି. ପରେ ଡାକ୍ତର ହେବି

ତ – ହଉ, ଆଉ ପାଞ୍ଚ ବର୍ଷ । ତା'ପରେ ଖାଲି ଫୋଡିବ – କଥାକଥାକେ ଇନ୍‌ଜେକ୍‌ସନ, ଛୁରୀ– ମର୍ ଶାଲା ଆରସେନିକ୍, କେ.ସି.ଏନ୍.ଖା !

ଝରକା ପାଖରୁ ଦେଖୁଥା'ନ୍ତି ବଳଭଦ୍ର ରାୟଗୁରୁ । ଗେଟ୍ ବନ୍ଦକରି ବୁବୁ ରାସ୍ତାକୁ ବାହାରିଗଲା । ପଛରେ ହାତଛନ୍ଦି ସେ ତଳକୁ ଚାହିଁରହିଲେ କିଛି ସମୟ । ଭିଡିହୋଇ ରହିଥିବା ତାଙ୍କର ସହସ୍ରେ ନାଡି ଭିତରୁ ଗୋଟାଏ ଦୀର୍ଘଶ୍ୱାସ ଓହ୍ଲେଇଗଲା । ସେ ସେଇଭଳି ତଳକୁ ଚାହିଁ ଆସ୍ତେ ଫେରିଲେ । ଦୁଇ ଚାରି ପାହୁଣ୍ଡ ପରେ ମନକୁମନ କହିଲେ, "ଉଲ୍ଲୁ !... ଭାବିଛି ସବୁବେଳେ ଏମିତି ବାପ ବସିଥିବ... ଭାତ ଡାଲମା ସିଝେଇ ଖୁଆଉଥିବ । ବେ, ତୁ କ'ଣ ଆଉ ମଣିଷ ହବୁନି ? ଉଲ୍ଲୁ କାହାଁକା – କହିଲା କ'ଣ ନା ଡାକ୍ତର ହବନି ! – ହବନି ତ ଆଉ କ'ଣ ତୋ' ମା' ସେ ହାସ୍‌ପାତାଳ ପିଣ୍ଡାରେ ବଲ୍ ବଲ୍ ଅନେଇ ସବୁବେଳେ ମରୁଥିବ ? ତୋ' ବାପ ବୁକୁ ବାଡେଇ ସେଗୁଡାକର ପାଦ ଧରୁଥିବ । ସେଗୁଡାଙ୍କୁ ଠିକଣା ଜବାବ୍ ଦବ କିଏ ? ତାଙ୍କ ଉପରେ ହାକିମ ହୋଇ ତାଙ୍କ ପାଟିରେ ଲଗାମ ଭିଡି କିଏ ତାଙ୍କୁ ଚବୁକ୍‌ମାରି କହିବ – "ମନେପକାଅ ଶଳେ, ସେଦିନ ସେ ମାଇକିନିଆକୁ ଟିକିଏ ଦେଖିବାକୁ ତୁମର ତର ନଥିଲା ପରା – ଚା ଭୋଜି କରୁଥିଲ – ସିଗ୍ରେଟ୍ ଶୋଷି ଖେଁ ଖେଁ ହସୁଥିଲା – ଚାହିଁଦେଲନାହିଁ ଟିକିଏ ! ମାଛମଣ୍ଡି କାଢିଲା ପରି ମଶାଣିରେ ତା' ପେଟ ଉଲାରି ମୋତେ କଢାହୋଇଚି । ମୁଁ ଆସିଚି ବୁଟ୍ ମାରି ତୁମ ଦାନ୍ତ ଝାଡିବାକୁ । ତୁମ ପାପର ପ୍ରାୟଶ୍ଚିତ୍ତ କରାଇବି ମୁଁ । ମୁଁ ଡାକ୍ତର ବିବେକାନନ୍ଦ ରାୟଗୁରୁ !"

ବଳଭଦ୍ର ବାବୁ ନିଛାଟିଆ ଘରେ ଚାରିଆଡକୁ ଟିକିଏ ଚାହିଁଲେ । ଆଉ ଯୋଡାଏ ବର୍ଷ ଚାକିରି । ପୁରୁଣା ଡିହ ଉପରେ ବହୁକଷ୍ଟରେ ଏ ଘରଖଣ୍ଡ ସେ ଉଠେଇଛନ୍ତି । 'ବଗୁଲି' ଇଞ୍ଜିନିୟର ହୋଇ କିଛି ଆଉ କରିପାରିଲା ନାହିଁ । ସେ ଭାବିଥିଲେ ବଡପୁଅ ଇଞ୍ଜିନିୟର ହେଲେ କାହୁଁ କାହୁଁ ସବୁ ଟଙ୍କା ଆସିଯିବ – ଯେମିତି ଯାମିନୀବାବୁ, ରମଣୀବାବୁ, ଗାଙ୍ଗୁଲିବାବୁ, ମହାରଣାବାବୁଙ୍କର ଆସୁଚି । ସବୁଦିନପେଣାଏ ଚନ୍ଦନପୁରୀ କଦଳୀ ଜଳଖିଆ ହେବ । ସୁଜି ହାଲୁଆ, ପୁରୀ, କଚୌଡି, ଅଣ୍ଡା, ମାଂସ, କ୍ଷୀର, ଫଳ – ଘରେ ପିଲାଙ୍କୁ ପଢେଇଲାବେଳେ ତାଙ୍କ ବହିରୁ ଖାଦ୍ୟପ୍ରାଣ ପ୍ରସଙ୍ଗ ତାଙ୍କର ମୁଖସ୍ଥ ଥାଏ – ସେ ଭାବିଯାନ୍ତି ।

ଇଂଜିନିୟର ହେବା କିଛି କମ୍ କଥା ନୁହେଁ ! ଓଃ, ସେଦିନଗୁଡାକ – "ଆରେ ବଗୁଲିଆ, ଖାଇଦେଇ ଯା' ପରୀକ୍ଷା ଦବୁ ପରା ! ଓପାସରେ କାହିଁକି ଯାଉଛୁ ? ଉପରୁ ଉପରୁ ଡାଲମାଟା ନେଇଆସିଛି – ପୋଡା ଗନ୍ଧେଇବନାଇଁ !"

'ବଗୁଲି' ଶେଷରେ ଇଞ୍ଜିନିୟର ହେଲା । ହେଲେ କ'ଣ ହେଲା ? ବଳଭଦ୍ରବାବୁ ଘଣ୍ଟାକୁ ଅନେଇଦେଲେ । ଦଶଟା ବାଜିବାକୁ ଆଉ ଦଶମିନିଟ୍ – ଭାତଟା ଓହ୍ଲେଇ ରଖିଦେଲା ପରେ ସାଇକେଲମାରି ସେ ଠିକ୍ ପହଞ୍ଚିଯିବେ । ଆଜି କ'ଣ ଇଲେକ୍‌ସନ ହବ ପରା ! ଅଧେ ତ ଅଫିସ ଆସିବେ ନାଇଁ – ଏ ପୁଣି ଯେଉଁ ବିଭାଗ – ଏଠି କିଏ କାହାକୁ ପଚାରେ ?

ଅନେକ ଦିନରୁ ଅଭ୍ୟସ୍ତ ହାତଗୁଡିକ ଭୁଲ୍ କରିବାର ନୁହେଁ । ଭାତ ଗଳା ହେଲା । ଘରେ

କୋଲପ ପଡ଼ିଲା । ସାଇକେଲ୍ ଧରି ବଳଭଦ୍ରବାବୁ ରାସ୍ତାକୁ ବାହାରିଗଲେ । ମନ ଭିତରେ କିନ୍ତୁ ଗୁଡ଼ାଏ ନରମ ପାଦଶବ୍ଦ ଚାଲିଶାକି ପଚାଶ ବର୍ଷର ଧୂଳି ଉପରେ ଚଞ୍ଚଳ ହୋଇଉଠୁଥା'ନ୍ତି ।

ଛକ ପାଖରେ ସବୁଦିନ ପରି ଶ୍ରୀକାନ୍ତ ବେହେରା ଆସି ଯୋଗଦେଲେ । ବୟସ ତାଙ୍କରି ପରି । ମୁହଁ ଉପରେ ଥୋଲା ଥୋଲା ଅତୀତ । ଆଖି ଗହୀର । ହସିଦେଲେ ମାଉଁସିଆ ମୁହଁ ଓସାରିଆ ହୋଇଯାଏ । ପାଟି ଭିତରେ କାଁ-ଭାଁ କେତୋଟି ଦାନ୍ତ ପାନପିକ ବୋଳରେ କଳା ମଚମଚ ଦିଶିଯା'ନ୍ତି ।

"କଣ ବଳିଭାଇନା, ଆଜି ତ' ବଜାର ଗଲନାହିଁ ସକାଳୁ ?"

"ଏଁ...ହଁ–ଆଜି ଯାଇନାହିଁ ।"

"ଆଜି ନୂଆହୋଇ କୋବି ପଡ଼ିଥିଲା – କିଲୋ ଆଠ ଟଙ୍କା ।"

"ଶୁଣିଲ ନା ନାଇଁମ – କିଲୋ ଆଠଟଙ୍କା !"

"ଶୁଣିଲି..."

"ମୁଁ ଅନେଇଥାଏ – ଯାମିନୀବାବୁଙ୍କ ସେ ଯେଉଁ ନୌକର ଟୋକା ନୁହେଁ – ସୁଦର୍ଶନ, ତା' ଅଖାମୁଣାରେ କିଲେ ଭର୍ତ୍ତି କରିନେଲା...କିନ୍ତୁ ଏ ନୂଆ କୋବିଗୁଡ଼ାକ ଯାହା ଟିକିଏ ପାଣିଚିଆ ।"

"କାଶ୍ମୀର ସେଓ ଆସିଛି ମିଆଁ ଫଳ ଦୋକାନକୁ । ମୂଳରୁ ଶଳା ହାଙ୍କୁଚି ବାର ଟଙ୍କା । ଯାହା କହ, ସେଗୁଡ଼ାକର ବାସ୍ନାରେ ଅଧେ ପେଟ ପୂରିଯାଏ ।"

ଏମିତି ପ୍ରାୟ ବଜାରର ସମସ୍ତ ମହାର୍ଘ ବସ୍ତୁର ତାଲିକା ଶ୍ରୀକାନ୍ତ ବେହେରା ବାଢ଼ିଦେଇଗଲେ । ସବୁଗୁଡ଼ିକ ଅପହଁଚ ତାଳର ଫଳ–ସବୁ କେବଳ ଚର୍ଚ୍ଚାର ବସ୍ତୁ । ତା'ରି ଉପରେ ସମୟ ସମୟରେ ଜୋରସୋର୍ ତର୍କ ହୁଏ, ବିତଣ୍ଡା ହୁଏ । ଉଭୟ ପକ୍ଷ ସେଥିରେ ଆପ୍ୟାୟିତ ବୋଧକରନ୍ତି । ଆଜି ସେସବୁ କିଛି ନାହିଁ । ଶ୍ରୀକାନ୍ତବାବୁ କେତେବେଳକୁ ଅନୁଭବ କଲେ ଯେ ବାଲି ଉପରେ ସେ ଏକୁଟିଆ ଚାଲିଚନ୍ତି । ପାଦଶବ୍ଦ ବି ଶୁଭୁନାହିଁ ।

ସେ ସାଇକଲ୍ ପାଖେଇ ଆଣି ପଚାରିଲେ – "କଣ କିଓ – ଆଜି ଏମିତି ଗମ୍ଭୀର କାହିଁକି ?"

ବଳଭଦ୍ର ରାୟଗୁରୁ ଭୂରୁ କୁଞ୍ଚେଇ ଆଡ ହୋଇଗଲେ । ଘାଇଁ ଧଡ ଧଡ ହୋଇ ଗୋଟାଏ ଟ୍ରକ୍ ପାରି ହୋଇଗଲା । ଧୂଳିରେ ଆଖି ନାକ ରୁନ୍ଧି ହୋଇଗଲା । ଇଆଡେ ଚଢାଣି ରାସ୍ତା – ଦୁହେଁ ନୀରବରେ ନଇଁପଡି ସାଇକଲ୍ ଠେଲିଦେଲେ । ବୁଝିଗଲେ ପରସ୍ପରକୁ ।

ଅଫିସ ପାଖରେ ସାଇକଲ ରଖି ଓହ୍ଲେଇଲାବେଳକୁ ବଳଭଦ୍ରବାବୁ ଖଣ୍ଡେ ପାନ ପାଟିରେ ଦେଇ କହିଲେ – "ଆଜି ବାବୁଆ ମେଡିକେଲରେ ନାଁ ଲେଖେଇଲା ।"

"ସତେନା ?... ବାଃ, ଏଥର ଆପଣଙ୍କ ଦୁଃଖ ଗଲା । ବଡଟିକୁ ତ ଇଞ୍ଜିନିୟର୍ କରିଦେଲେ – ଏଇଟି ଡାକ୍ତର ହୋଇଯିବ...ଆପଣଙ୍କର ଆଉ ଚିନ୍ତା କ'ଣ ? ଆରେ ହଁ, ଆପଣଙ୍କ ବଡପୁଅ ପାଇଁ କ'ଣ ପାତ୍ରୀ ପ୍ରସଙ୍ଗ ସବୁ ଆସିଚି ପରା ! ମତେ କିଏ ତ କହୁଥିଲା ଚିଫ୍ ଇଞ୍ଜିନିୟର ପ୍ରଭାତରଞ୍ଜନ

ମିଶ୍ରଙ୍କର ସାନ ଝିଅଟିଏ ଅଛି – ତା' ପାଇଁ ତୁମକୁ ପଚାରିବାକୁ ।"

"ଓ...ପ୍ରଭାତରଞ୍ଜନ ! ଯେ ବ୍ରହ୍ମପୁର ମହାପାତ୍ର ଘରେ ବିଭା ହୋଇଛନ୍ତି ? ତାଙ୍କ ଶଶୁରଙ୍କ କୋଠା ଚାରିଆଡେ ଆଇଭି ଲତା ମାଡିଚାଲିଛି ? ମୁଁ ଜାଣେ ତାଙ୍କୁ । ତାଙ୍କ ସ୍ତ୍ରୀଙ୍କ ନାଁ ସୁଲୋଚନା । ଅସାମାନ୍ୟ ସୁନ୍ଦରୀ । ଗୋଲାପୀ ଶାଢୀ ଆଉ ମୁକ୍ତାମାଳ ପିନ୍ଧି ଗଜଦନ୍ତର ଗଜରା ଜୁଡା ଉପରେ ଖୋସିଦେଲେ ସେ ଅତି ଅଦ୍ଭୁତ ଦେଖାଯାଏ । ଶ୍ରୀକାନ୍ତବାବୁ ରସିକତାରେ ହୋ-ହୋ ହସିଉଠିଲେ ।"

"କ'ଣ ଭାଇନା – ଘଟଣା କ'ଣ ?"

ଏ ତ ଭାରି ପୁରୁଣା ପରିଚୟ ପରି ଜଣାଯାଉଚି ।

ବଳଭଦ୍ର ରାୟଗୁରୁ ଖୁବ୍ ଗମ୍ଭୀର ।

"ତାଙ୍କର କୋଉ ଝିଅ ପ୍ରସଙ୍ଗ ପଡିଚି ?"

ଶ୍ରୀକାନ୍ତବାବୁ ମଧ ସ୍ୱାଭାବିକ ସ୍ୱରରେ କହିଲେ, "ସବା ସାନଝିଅ ଏବେ କଲେଜରେ ବି.ଏ. ପଢୁଚି । ଦେଖିବାକୁ କୁଆଡେ ଭାରି ସୁନ୍ଦରୀ ।"

"ସେଇଠି ବିଭାଘର ହେବ ବୋଲି କହି ଦେଇପାର ।"

"କିଓ ଏମିତି କ'ଣ ହୁଏ ? ସେ ପିଲା ଟିକିଏ ଦେଖାଦେଖି କରୁ ।"

ହଠାତ୍ ଚିଡିଯାଇ ରାୟଗୁରୁ କହିଲେ – "ସେ ଆଉ କ'ଣଟାଏ ଦେଖିବ ? କହିଦିଅ, ଆମେ ରାଜି ।"

ଶ୍ରୀକାନ୍ତବାବୁ ବିସ୍ମୟରେ ଟିକିଏ ଚାହିଁ ଚାଲିଗଲେ ବାଁ'ଆଡେ ତାଙ୍କ ଅଫିସକୁ । ରାୟଗୁରୁ ଦୃଷ୍ଟିହୀନ ଆଖିରେ ଶୂନ୍ୟକୁ ଚାହିଁରହିଥା'ନ୍ତି... 'ସୁଲୋଚନାର ଝିଅକୁ ମୋ' ପୁଅ ବିଭା ହେବ ନାହିଁ ତ ଆଉ କାହାକୁ ବିଭାହେବ ? ତିରିଶ ବର୍ଷ ତଳେ ରାୟଗୁରୁ ପରିବାରରେ ଇଂଜିନିୟର ନ ଥିଲେ ବୋଲି ସିନା ଅପମାନ ସହିବାକୁ ପଡିଥିଲା – ଏବେ ସେ ମହାପାତ୍ର ବୁଢୀ ନାତୁଣୀ ବିଭାଘରକୁ ଆସିବ ନା ନାହିଁ ? ଯାହା ମୁଁ ପାରିଲି ନାହିଁ – ମୋ' ପୁଅ କ'ଣ ପାରିବ ନାହିଁ ?'

ସେଇ ମାନ୍ଧାତା ଅମଳର କଳା ପାଣ୍ଟେଇ ଆଉ ଚାଦର – ଦୁମ୍‌ଦୁମ୍ ହୋଇ ଡାହାଣଆଡେ ଚାଲିଗଲେ ।

ଅଫିସରେ କାମ ପ୍ରାୟ ନାହିଁ କହିଲେ ଚଳେ । ଦି'ଚାରିଜଣଙ୍କୁ ଛାଡି ଆଉ ସମସ୍ତେ ପ୍ରାୟ ଆସିନଥା'ନ୍ତି । ଆସିବେ ସେଇ ତିନିଟା ବେଳକୁ । ଭୋଟ ଦେବାବେଳକୁ ତାଙ୍କୁ ଅନ୍ୟମାନେ ଅଣ୍ଡେଇ ଆଣିବେ ।

ବଳଭଦ୍ରବାବୁ ଭାରି ଗମ୍ଭୀର ହୋଇ ତାଙ୍କ ଚୌକିରେ ବସିଗଲେ । ଅନ୍ୟମନସ୍କ ହୋଇ ଟେବୁଲ୍‌ରେ କାଗଜ ଖେଳାଉଥା'ନ୍ତି । ଆଖିରେ ଆଉ ଗୋଟାଏ ରାଜ୍ୟ, ଆଉ ଗୋଟାଏ ସମୟରେ ଛାଇ ପହଁରୁଥାଏ । କିଏ ଜଣେ ସେ କଡରୁ କହିଲା, "ଆପଣଙ୍କର ଚିଠି ଅଛି । ସେଇଠି ରଖି ଦେଇଛି, ଦେଖିବେ ।"

ଆଖିମଟ୍‌କା ମାରିବାରୁ ଟେବୁଲ୍ ଦିଶିଗଲା । ଅଫିସର କାନ୍ଥ, ପଙ୍ଖା, ଫାଇଲ ଚିହ୍ନା ଚିହ୍ନା ମୁହଁ କେତୋଟି ସବୁ ଦିଶିଗଲା । ବଳଭଦ୍ରବାବୁ ନିଃଶ୍ୱାସଟିଏ ମାରି ଡାକ ଘାଣ୍ଟିଲେ । ଖଣ୍ଡିଏ ଅନ୍ତର୍ଦେଶୀୟ ପତ୍ରରେ ଅପରିଚିତ ହସ୍ତାକ୍ଷରରେ ତାଙ୍କ ଠିକଣା ଲେଖାଥାଏ । ସେ ଲେଉଟେଇ ଦେଖିଲେ ରବର ଷ୍ଟାମ୍ପ ଠିକଣାଟିଏ... 'ଜେ.ଭାଦୁରୀ, କାଠ କଣ୍ଟ୍ରାକ୍ଟର...ଯଶିପୁର୍, ମୟୂରଭଞ୍ଜ ।' ଏ କିଏ ? ଯଶିପୁରରେ ତ ବଗୁଲି ଅଛି – କ'ଣ ତା' ଦେହପା' ଅସୁଖ ହେଲା କି କ'ଣ ?

ଚିଠି ଚିରିଲାବେଳକୁ ଓଲଟା ବାଗେ ଚିରିଗଲା । ଚିଠିଟି ମଝିରୁ ଦୁଅଖଣ୍ଡ ହୋଇଗଲା । କାଚ ଟେବୁଲ ଉପରେ ସେ ତାକୁ ଯୋଡି ପଢିଲେ – 'ଆପଣ ଏ ଚିଠି ପଢି ବିସ୍ମିତ ହେବେ'...ଓ...ଛାଡ ।

'ଆପଣଙ୍କ ପୁଅ ପ୍ରିୟଦର୍ଶନ ଭାରି ଚମତ୍କାର, ଅଦ୍ଭୁତ ପ୍ରତିଭାଶାଳୀ' ଓ... ବଗୁଲିକୁ ମୋ'ଠୁ ତମେ ବେଶି ଜାଣିଲ ନା କ'ଣ ?

'ତାଙ୍କର ଏଠି ଅନେକ ସୁନାମ । ସମସ୍ତେ ତାଙ୍କର ପ୍ରଶଂସା'...ଓହୋ, ତମର କ'ଣ ମତଲବ କହୁନା ! ସେ ତେଇଁ ଯାଉ ଯାଉ ହଠାତ୍ ଝୁଙ୍କିପଡିଲେ ଗୋଟାଏ ନାଁ ଉପରେ – ସିପ୍ରା ଭାଦୁରୀ...ପଛକୁ ଫେରିଲେ ।'

ଚମକିପଡିଲେ । ଆମୂଳଚୂଳ ପୁଣି ପଢିଲେ । ତାଙ୍କ ଦେହ କେବଳ ଝାଳେଇଗଲା ।

'ପ୍ରିୟଦର୍ଶନ ଆପଣଙ୍କୁ ଜଣାଇବାକୁ କହିଛନ୍ତି ଯେ ସେ ସିପ୍ରାକୁ ବିବାହ କରିବେ । କନ୍ୟାପିତା ହିସାବରେ... ତା'ପରେ କେବଳ ଧୂଆଁ ଢଳଢଳ ପାଣି । କେତବେଳେ ଶ୍ରୀକାନ୍ତବାବୁ ଆସି ପାଖରେ ଠିଆହୋଇ କ'ଣ ସବୁ କହୁଥା'ନ୍ତି; ବହୁଦୂରରୁ ତାଙ୍କୁ ଶୁଭୁଥାଏ – 'ବୁବୁଆ ଫୋନ୍ କରିଛି... ।'

ତା'ପରେ ସେ ହାଁ-କରି ଶ୍ରୀକାନ୍ତ ବେହେରା ମୁହଁକୁ ଚାହିଁରହିଲେ – 'ତମକୁ କ'ଣ ହେଇଛି ଆଜି ବଳିଭାଇନା ?'

"ବାବୁଆ ପରା ଫୋନ୍ କରିଛି ଯେ ତା'ର ମେଡିକାଲ୍ ହେଲାନାହିଁ । ଶେଷ ତାରିଖ ଚାଲିଯାଇଛି । ତମେ ଯାଇ ଟିକିଏ ନ କହିଲେ ହବନାହିଁ ।"

ଉଠିବାର କିମ୍ବା ଶୁଣିବାର କୌଣସି ଲକ୍ଷଣ ନାହିଁ । ଅନେକ ସମୟ ପରେ ମନକୁମନ ବୋଧହୁଏ କହିଲେ, 'ବାବୁଆ କାହିଁକି ମେଡିକେଲ୍‌ରେ ପଶିବ ? ମୁଁ କହୁଛି ବୋଲି ? ମୁଁ କିଏ କି ?'



# ଭୋଗଦଖଲ



ମାଲିକାନା ବଦଳ ସମୟ ସୃଷ୍ଟଏଟି ଲେଉଟିଲା ଭଳି ଗୋଟିଏ ଯୁଗାନ୍ତ କାଳ । 'ସେମାନେ ଆସିଗଲେ', 'ଆସିଗଲେ' ବୋଲି ଗୋଟାଏ ଗୁଜବ ସେ ମୁଲକଯାକ ଲହଡି ମାରିଯାଉଥାଏ । ସମସ୍ତେ ଛନ୍ ଛନ୍ ହୋଇ ଘରିଆଡକୁ ଅନେଇ ଯାଉଥା'ନ୍ତି । ନିସ୍ତବ୍ଧ ଖେଳପଡିଆ ପରି; କିନ୍ତୁ ରାଜ୍ୟସାରା ଶୂନ୍‌ଶାନ୍ । ପାଣି ଶୁଖିଆସିଥାଏ ନଈ, ନାଳ, ପୋଖରୀ, ଗଛଲଟା ଏବଂ ଆକାଶରୁ । ପାଣି ମରିଯାଇଥାଏ ମଣିଷଙ୍କ ମୁହଁରୁ । ବେଳେବେଳେ ରଙ୍ଗମାଟିଆ ଖଣ୍ଡିଆଭୂତଟାଏ ସୁଁ-ସୁଁ ମାଡିଯାଏ । ଚୈତ୍ର ଆକାଶରେ ଶୁଖିଲାପତ୍ର ବୁଣିହୋଇଯାଏ । ନହେଲେ ନିରୋଳା ରାସ୍ତା ଉପରେ ନିସ୍ପନ୍ଦ ଦିହୁଡିପରି ଦ୍ୱିପ୍ରହରଟିଏ ଏକୁଟିଆ ଠିଆହୋଇଥାଏ । ରାତିସାରା ଉଷୁମ ପବନରେ କଖାନିଦିଆ ଦରବୁଢାମାନେ ଅସଂଖ୍ୟ ଅଚିହ୍ନା ପାଦଶବ୍ଦ ଶୁଣନ୍ତି । ଘପାଘପା ଅଧା ନିଃଶ୍ୱାସ ଭିତରେ ଆସ୍ତେ ଅପେକ୍ଷା କରିଥା'ନ୍ତି – କୌଣସି ପ୍ରତିବାଦ କରୁନଥିବା ଗାଈଗୋଠପରି – ଆସୁ ଯେ ଆସିବାର । ଭାଗ୍ୟଫଳକୁ କାହାର ଆୟତ୍ତ ଅଛି ? ମୁଣ୍ଡ ନୁଆଇଁ ମାନିଯିବା କଥା, ଯେମିତି ପୁରୁଷ ପୁରୁଷ ଧରି ବାପ-ଗୋସେଇଁବାପମାନେ ମାନିଯାଇଥିଲେ ।

ପାହାଡ଼ ଚୂଳରେ ଉଆସ । ଉଆସ ଚୂଳରେ ବାନା । ପୁରୁଷ ପୁରୁଷ ଧରି ପାଖଆଖ ଅଞ୍ଚଳରୁ ଶଙ୍ଖଚିଲ ଗହଣରେ ସେ ବାନାକୁ ଲୋକେ ଦେଖିଆସିଥିଲେ । ଏବେ ସେଇଟା ଆଉ ଦିଶୁନାହିଁ । ଲଣ୍ଡା ଉଆସରୁ ମାଲିକପଣ ଓହ୍ଲେଇଯାଇଛି । ନୂଆ ବାନା ସେଇଠି ଉଡିବ ବୋଲି ଶୁଣାଶୁଣି ହେଲାଣି । କେବେ ମଣ୍ଡଣି ହେବ, କି ରଙ୍ଗ ସାଜିବ, କିଏ ସେ ଆସିବ – ଏଇ ଚିନ୍ତା ସମସ୍ତଙ୍କ ମନରେ ବୋଝେଇ ହୋଇ ରହିଛି ।

ବୁଢା ହାଇଦର ଉଆସ ଭିତରେ ସବୁଠାରୁ ପୁରୁଣା ଖାନ୍‌ସାମା । ଭାରି ଆଦବ୍‌କାଇଦାର ମଣିଷ । ଭାରି ଇଜତ୍‌ଦାର, ଇମାନ୍‌ଦାର, ନିମକସଚ୍ଚା ମଣିଷ । ପୁରୁଣା ମାଲିକ ପାଖରେ ପିଲାଦିନୁ ରହିଆସିଛି । ହରେକ୍ କିସମ୍‌ର ଖାନା ତା' ପାଖରୁ ଗୋଛା ଗୋଛା ଟୋକା ଆସି ଶିଖିଛନ୍ତି ।

ଶେଷକୁ ତାକୁ କୌଣସି କାମ ନ କରି ଉଆସରେ ସେମିତି ରହିବାକୁ ମିଳିଥିଲା । ଯେଉଁଦିନ ସାରା ସହରରେ ଗୋଳ ଉଠିଲା, ପ୍ରଚୁର ଧୂଳି ଉଠିଲା ଏବଂ ଗୁମୁରି ଗୁମୁରି ଶୁଭିଲା ଯେ ଏତେଦିନର ପୁରୁଣା ମାଲିକାନା ସରିଗଲା, ସେ ତା'ର ଛୋଟ ବାକ୍‌ସଟିକୁ ସଜିଲ କରି ଓହ୍ଲେଇଯିବାକୁ ଚାହିଁଥିଲା । ଏ ପାହାଡତଳିଆ ଉଆସରେ ସେ କାହିଁକି ଏବଂ କେମିତି ଆଉ ରହିପାରିବ ?

କିନ୍ତୁ ହାଇଦର ଚାଚାକୁ ସେଇଠି ରହିବାକୁ ହୁକୁମ୍ ହେଲା ! ନୂଆ ମାଲିକ ଆସିବାଯାଏଁ ତାକୁ ସବୁ ବୁଝେଇ ଉଆସ ସମର୍ପିଦେବାଯାଏଁ ତାକୁ ରହିବାକୁ ପଡିଲା । ସଞ୍ଜବେଳ ନିଶୂନ୍ ଉଆସରେ ଆଲୁଅ ଜାଳିଦେଇ ହାଇଦର କଣ୍ଟଥୋଲା ଧରି କାକର ମାର୍ବଲ ପିଣ୍ଡାରେ ଖାଲି ପାଦ ଘଷି ଘଷି କିଛି ସମୟ ବୁଲେ । ତାକୁ କେତେବେଳେ କ'ଣ ସବୁ ଦିଶିଯାଏ – ପ୍ରସ୍ତ ପ୍ରସ୍ତ ହୋଇ ଶହ ଶହ ବର୍ଷର ଇତିହାସ । ଉଷ୍ଣ ଉଷ୍ଣ, ଗୋରା ଗୋରା ରାଜୁତା ମଣିଷମାନେ ଦିଶିଯାଇ ଲିଭିଯାନ୍ତି । ସେ ପୁଣି ଗୋଡଘୋସାରି ଆଗେଇଯାଏ ।

ଦେଖୁ ଦେଖୁ ଗୁଜବ୍ ରଟିଗଲା ଯେ, ଉଆସରେ ଦିନବେଳଟାରେ ସୁଦ୍ଧା ଲମ୍ବା ଲମ୍ବା ଛାଇ ପହଁରି ବୁଲୁଛନ୍ତି । କେହି ଟା' ଭିତରେ ଆଉ ପଶିପାରିବେ ନାହିଁ । ଯେ ସିଂହଦ୍ୱାର ଡେଇଁ ପଶିଯିବ, ସେ ତଙ୍କଶିରା ଭାଙ୍ଗି ଲୋଟିପଡିବ; ସେଇଠି ରକ୍ତବାନ୍ତି କରି ମରିଯିବ । ହାଇଦର ବୁଢା ନିଜେ ଅଧେ ଭୂତ ହୋଇ ସାରିଲାଣି – ତେଣୁ ତାକୁ କେହି ଛୁଇଁ ପାରୁନାହାନ୍ତି । ତାକୁ ବୋଧେ ସତ୍ୟପୀର ଆଢୁଆଳ ହୋଇଯାଉଛନ୍ତି ।

ଦେଖୁ ଦେଖୁ ମାସ ବିତିଗଲା । ଗୋଟିଏ ଦୁଇଟି ଛୋଟିଆ ମଣିଷ ଆସି କଚେରି ଘରର ଛୋଟ ଛୋଟ ବଖରାମାନଙ୍କରେ ଖାତାପତ୍ର ଫିଟେଇ ବସିଲେ । ନୂଆ ଅଚିହ୍ନା ମଣିଷ । ତାଙ୍କର ବୋଲି, ବାଗ, ଚଳଣି ସବୁ ଅଲଗା । କିନ୍ତୁ ସେ ମସିଆ କୋଟଟିଆ ମଣିଷଗୁଡିକ ତ ମାଲିକ ନୁହନ୍ତି । ଏମାନେ ତ ସେ ସହସ୍ରେ ପାହାଚ ଉଷ୍ଣ ଉଆସରେ ରହିବା ଲୋକ ନୁହନ୍ତି । ଯାଙ୍କ ମାଲିକ କାହାନ୍ତି ? – ସେ କିଏ ? ଦେଖିବାକୁ କେମିତି ? – ସେ କ'ଣ ସେଇ ବନ୍ଧୁକ ଧରିଥିବା ପଞ୍ଚହତା ଗୋରାମଣିଷ – ଆଖି ନେଳି, ଦାନ୍ତ ହଳଦିଆ; ରୁମ କଇଁରା ? – ସେ ଆସିଲେ ପାରିଧିକୁ ଯିବେ ନା ନାହିଁ ? – ଘୋଡାରେ ଯିବେ ନା ଗାଡିରେ ? – ଦରବାରକୁ ଗଲେ କେଉଁ ପାଗ ଭିଡିବେ ? କେଉଁ ଖଣ୍ଡା ବାନ୍ଧିବେ ? – ଦରବାର କରିବେ ତ ? କେଜାଣି ! – ପର୍ବପର୍ବାଣି ଜାନିଯାତ୍ରା ସବୁ ରହିବ ତ' ? – କେଜାଣି ! ସବୁ ତାଙ୍କ ମରଜି ଉପର କଥା । ନୂଆ ହାକିମ, ନୂଆ ହୁକୁମ – ଦେଖାଯାଉ !

ଏଇଭଳି ସବୁଦିନ ସଞ୍ଜବେଳ ପୁଞ୍ଜି ପୁଞ୍ଜି ହୋଇ ଲୋକ କଥାହୁଅନ୍ତି । ଯେଉଁଠି ଠିଆହେଲେ ଉଆସ ଦିଶେ । ଉଆସ ଉପର ପତାକାଖୁଣ୍ଟ ଦିଶେ । ସେମାନେ ସେଇଆଡେ ଚାହିଁରହି ଆଗକାଳ କଥା, ପିଲାଦିନ କଥା ମନେପକାନ୍ତି । ଶସ୍ତାକାଳରେ କେମିତି ପଇସାରେ ଦି'ଅଡା ଚାଉଳ ମିଳୁଥିଲା; ସୁନାଭରି ପାଞ୍ଚଟଙ୍କା ଥିଲା; ଗୁଆଘିଅ ରାଶିତେଲରେ ତିଅଣ ରନ୍ଧା ହେଉଥିଲା – ଏମିତି ଗୁଡିଏ ମଧୁର କଥା ବୁଢାମାନେ ପାକୁଆ ପାଟିରେ ପାକୁଳି କରନ୍ତି । ଛୋଟପିଲାଏ ଏକା

ଲୟରେ ଶୁଣୁଥା'ନ୍ତି ।

ସେଦିନ ଉପରଓଳି ଖରାତାପ ଯାଇନଥାଏ । ସହରର ଉତ୍ତରପଟୁ ପୁଞ୍ଜାଏ ମଟରଗାଡି ଏକଧାଡିଆ ପଶିଆସିଲେ । ଧୂଳି ଉଡିଲା ଯେ କାହିଁରେ କ'ଣ । ଶବ୍ଦ ଉଠିଲା – ଗୋଳ ହେଲା – ପିଲା ବୁଢା ସମସ୍ତେ ମଝି ରାସ୍ତାଆଡେ ଧାଇଁଲେ ଦେଖିବାକୁ । ସମସ୍ତଙ୍କୁ ମଉଛବପରି ଲାଗୁଥାଏ । ଏତେ ଧୂଳି ଦେଖି ପିଲାମାନେ ଡେଇଁଲେ, କୁରୁଳିଲେ । କେହି କାହାକୁ ନକହିଲେ ସୁଦ୍ଧା ସମସ୍ତେ ଜାଣିଗଲେ ଯେ ଏଇ ନିଶ୍ଚେ ନୂଆ ମାଲିକ ବିଜେହେଲେ – ନ ହେଲେ କ'ଣ ଏକାଥରକେ ଚରିଖଣ୍ଡ ଗାଡି ଏମିତି ଆଉ କିଏ ଆଣିପାରିଥାନ୍ତା ? ଏତେ ଧୂଳି ଉଡିବାର ଭଲା ଆଉ କେବେ କିଏ ଦେଖିଛନ୍ତି ? ଏତେ ଶବ୍ଦ ଏକାଠି ଶୁଣିଛନ୍ତି ? ଏ ନିଶ୍ଚୟ ମାଲିକ ଆସିଗଲେ ।

ସତକୁସତ ଚରିଖଣ୍ଡଯାକ ଗାଡି ଆଗପଛ ହୋଇ ଧଳା ମୁରୁମ୍ ପଡିଥିବା ରାଜରାସ୍ତାରେ ଗାଉଁ ଗାଉଁ ହେଇ ଉଆସଆଡକୁ ଉଠିଲେ । ପାହାଡକୁ ଦୁଇ ପୁର ଗୁଡେଇ ହୋଇଛି ସେ ରାସ୍ତା । ଗୋଡିଆଗୋଡି ଖେଳିଲା ପରି ଚରିଖଣ୍ଡ ଗାଡି ଉଠୁଥା'ନ୍ତି । କଅଁଳା ପିଲାଙ୍କୁ ଛାଡିଦେଲେ ବାକି ସମସ୍ତେ ଓହଟି ଚାହିଁରହିଥା'ନ୍ତି, ଚତୁର୍ଦ୍ଦିଗରୁ । ମୋ' ବାବାରେ, କି ପଟୁଆର ! ଏଇ ଯେ ହେଲା ମାଲିକ ! ଅଧେ ଭେଣ୍ଡିଆ ହଜାର ପାହାଚପଟେ ଉପରକୁ ଉଠିବାକୁ ଗଲାବେଳେ ତଳୁ ପୁରୁଖା ଲୋକେ ବାରଣ କରି ରଖିନେଲେ – ଆରେ, ଆଗ ଦେଖ କିଏ ସେ ସବୁ ଆସିଛନ୍ତି – କାହିଁକି ଆସିଛନ୍ତି । ଏମିତି ହମହମ ହେଇ ପେଲି ପଶିଲେ କାଳେ ଅବାଗେ ବୁଝିଯିବେ । ମୂଳରୁ ସାପଲାଙ୍ଗୁଡରେ କାହିଁକି ହାତ ମାରିବାକୁ ଯାଉଛ ?

ଉଆସର ସିଂହଦ୍ୱାରରେ ଲୁହାଫାଟକ । ହାଇଦର ଏମାନଙ୍କୁ ତଳୁ ଉଠିଆସୁଥିବାର ଦେଖି ବୁଝିଯାଇଥିଲା । ଦୁଆରକୁ ସାହାଣମେଲା ପରି ଫିଟେଇ ଦେଲା । ତରବର ହୋଇ ତା'ର ପୁରୁଣା ଚୂଡିଦାର ଆଉ ରଙ୍ଗଛଡା ଲମ୍ବା କୋଟ୍ ପିନ୍ଧି ମୁଣ୍ଡରେ ଦୋରଙ୍ଗି ଟୋପି ଥାପିଦେଲା । ଜୋତା ନଥିବା ଖାଲି ପାଦକୁ ତା'ର ଆଉ ଖିଆଲ ରହିଲା ନାହିଁ । ସେମିତି ଧାଇଁଗଲା ଉଆସର ଗାଡି ଥାକିବା ପାହଚ ପାଖକୁ । ସେଇଠୁ ଧଳା ଭୂରୁତଳୁ ସେ ଅନେଇଥାଏ – କାନେଇଥାଏ ଉଠିଆସୁଥିବା ସେ ଶବ୍ଦକୁ ।

ସିଂହଦ୍ୱାର ପାଖରେ ପ୍ରଥମଗାଡିର ମୁହଁ ଧପ୍‌କିନା ଦିଶିଗଲା । ତା' ପଛକୁ ପଛ ଆଉ ତିନିଖଣ୍ଡ ମଧ ଉଠିଆସିଲେ । ଏଣିକି ପଶିଆସିବା କଥା । ମାଲିକର ଗାଡିଟି – ଆଉ କାହାର ତ ନୁହେଁ...! ତେବେ ସବୁଗୁଡିକ ଗାର ନଡେଇଁ ଘର୍‌ଘର୍ ହୋଇ ଠିଆହୋଇ ରହିଲେ । ଏମିତି ଇତର ଲୋକଙ୍କ ଗାଡି ସେଇଠି ରୋକିଯିବାର ହାଇଦର ଦେଖିଛି । ସେ ଆଖି ଫେରେଇନେଲା । ତା' ସରୁ ସରୁ ଧଳା ନିଶ ଆଗପାଖରୁ ଜାଣ ନଜାଣ ଟିକିଏ ଟେକି ହେଇଗଲା । ଏମିତି ବେଆଦବ୍ ହସ ହାଇଦର ମୁହଁରେ କେବେ କିଏ ଦେଖିଛି ବୋଲି କହିପାରିବ ନାହିଁ – କିନ୍ତୁ ସେ ସାମାନ୍ୟ ହସିଥିଲା ।

ଖୁବ୍ ଧୀରେ ଗାଡିଗୁଡାକ ଉଆସ ଭିତର ମୁରୁମ୍ ଉପରେ ଥଇଁଲା ଥଇଁଲା ପରି

ପଶିଆସିଲେ । ପ୍ରଥମ ଗାଡି ବୁଲିଆସି ପାହାଚ ପାଖରେ ଠିଆହେଲା । ଅନ୍ୟଗୁଡ଼ିକ ସେମିତି ଆସି ଯୋଖିହୋଇଗଲେ – ଡରକୁଳା ଗାଈଗୁଡ଼ିଏ ।

ହାଇଦର ପାହାଚରୁ ଓହ୍ଲେଇପଡି ଆଗ ଗାଡ଼ିରେ ବସିଥିବା ଏକୁଟିଆ ମଣିଷଟିକୁ କୁର୍ଣ୍ଣିସ୍ ଜଣେଇଲା । ଅନେକ ପୁରୁଣା ଅଭ୍ୟାସରେ ନିଃଶବ୍ଦରେ ଗାଡ଼ିର କବାଟ ଖୋଲିଧରିଲା । ସାମ୍ନାସାମ୍ନି ଚେହେରାକୁ ଦେଖିଦେବା ଭଳି ବେହୁଦା କାମ ହାଇଦର କରିପାରିବ ନାହିଁ – ସେ ସେମିତି ତାଲିମ ପାଇନାହିଁ । ସେ ଭୂଇଁରେ ନଜର ରଖି ଅପେକ୍ଷାକଲା ।

ସାରା ଉଆସ ସେମିତି ଅପେକ୍ଷାକଲା ।

ହାଇଦର ଚଉକର ଠିଆ ଠିଆ କାନକୁ ଖୁସ୍‌ମୁସ୍ ମୁଲାଏମ୍ ରେଶମ୍‌ର ଶବ୍ଦ ଶୁଭିଲା ନାହିଁ । ସାମାନ୍ୟ ଥୋପି ଓହଳିପଡିଥିବା ମୋଗଲାଇ ନାକପୁଡାରେ ପରିଚିତ କୌଣସି ଅତରର ବାସ୍ନା ବାଜିଲା ନାହିଁ । କୌଣସିଆଡୁ କିଛି ହେଲେ ଆବାଜ୍ ଶୁଭିଲାନାହିଁ । ଦୁଇତିନିଟା ନିଃଶ୍ୱାସ ଖୁବ୍ କଷ୍ଟରେ ପାରିହୋଇଗଲା ସେ ଶୂନ୍‌ଶାନ୍ ଭିତରେ ।

ତା'ପରେ ପାତଳ ଧୂଳି ଜମିଥିବା କଳା ବୁଟ୍‌ଟିଏ ଗାଡ଼ିରୁ ଲମ୍ବିଆସିଲା । ଛୋଟ ଛ'ନମ୍ବର କଳା ଜୋତା । ନୂଆ । ଦୋକାନର ମୂଳ ରଙ୍ଗରେ ଆଉରି ଚିକ୍‌କଣ ଆସିନାହିଁ ।

'ଏ ପିଲାଟି କିଏ ?' – ଭାବିଲା ହାଇଦର । ପଛ ସିଟ୍‌ରେ ତ ମାତ୍ର ଜଣେ ବସିଥିବାର ସେ ଗୋଟାଏ ନଜରରେ ଦେଖିସାରିଛି । ତେବେ ?...

ଆଉ ଜୋତାଟି ଆସି ଭୂଇଁ ଛୁଇଁଲା । ତା' ଉପରକୁ ପୂରା ବିଲାତି ପେଣ୍ଟ । ରଙ୍ଗ ବାଦାମି । ତା' ଉପରକୁ ସଫେଦ୍ ବୁସ୍‌ସାର୍ଟ । ଅଧା ଆସ୍ତିନ୍ ଭିତରୁ ଖୁବ୍ ରୁମ୍‌ରୁମିଆ ଦୁଇଟି ହାତ । ବାଁ' ହାତରେ ଧଳା ଷ୍ଟିଲ୍ ଚେନ୍, ଧଳା ମୋଟା ଘଣ୍ଟା ।

ସବାଶେଷକୁ ହାଇଦର ଶୁଣିଲା, ସେ କହୁଛନ୍ତି – "ତୁମେ କ'ଣ ଓ୍ୱାଚ୍‌ମେନ୍ ?" ଛ'ଫୁଟ ଉଚ୍ଚରୁ ସେ ଅନେଇଲା ସାବନା ଅଧାବୟସିଆ ସେ ମଣିଷଟିକୁ । ତା'ର କଳା ମଚ୍‌ମଚ୍ ବାଳ । ଖୁବ୍ ଚଉଡା କପାଳ । ଠିଆ ଠିଆ ଭୂରୁ । ବହଳିଆ ପଟାଳିଆ ନିଶ ।

ହାଇଦର ଉତ୍ତରକୁ ଅପେକ୍ଷା ନ କରି ସେ ଠପ୍ ଠପ୍ ପାହାଚ ଚଢ଼ିଗଲେ । ହାଇଦରକୁ ଖୁସିଲାଗିଲା । ମାଲିକ କାହାକୁ ଖାତିର୍ କରିବା କଥା ନୁହେଁ । ସେ ଛାଇ ଭଳି ଦୁଇ କଦମ୍ ପଛରେ ଉଠିଗଲା ।

ଅନ୍ୟ ତିନିଟା ଗାଡ଼ିର କବାଟ ଫିଟିଲା । ଖୁବ୍ ଆସ୍ତେ ଆସ୍ତେ ଗୁଡ଼ିଏ ମଣିଷ ଓହ୍ଲେଇଲେ । ଫିସ୍ ଫିସ୍ କଥାହେଲେ । କେମିତି ଡରିଲା ଡରିଲା ପରି ପାଦ ଥାପି ଥାପି ପାହାଚ ଉଠିଲେ । ହାଇଦର ସେମାନଙ୍କୁ ବୁଲି ଚାହିଁଲା ନାହିଁ । ମାଲିକଜଣକ ଅନ୍ୟ ସମସ୍ତଙ୍କଠାରୁ ଅଲଗା ବାରି ହୋଇଯାଉଥା'ନ୍ତି । ହାଇଦର ତାଙ୍କ ପଛେ ପଛେ ହାଜର ରହିଥାଏ ।

ସେ ଯାଇ ପ୍ରଥମ ବୈଠକଘର ମଝିରେ ଠିଆହୋଇ ଚାରିଆଡକୁ ଏବଂ ତଳକୁ ଉପରକୁ ଚାହିଁଲେ । ଟିଖ ପାହାଡ ପରି ଉଞ୍ଚା କାନ୍ଥ । ଆକାଶିଆ ଛାତ । ପେଣ୍ଟର ଦୁଇମୁଣାରେ ହାତ ଭର୍ତ୍ତିକରି

ଠିଆହୋଇ ରହିଲେ । ହାଇଦର ସେମିତି ଅପେକ୍ଷା କରିଥାଏ । ପଛକୁ ଫେରିଚାହିଁ ସେ ଡାକିଲେ – "ସିଂବାବୁ !"

ହାଇଦର ଅନେଇଲାବେଳକୁ ଚୁପ୍‌ଚାପ୍ ପ୍ରାୟ କୋଡ଼ିଏ ଲୋକ ଜାକିଜୁକି ହୋଇ ଠିଆହୋଇଛନ୍ତି – ଅନଉଛନ୍ତି – ଅନଉଛନ୍ତି କାନ୍ଥ ଏବଂ ଛାତକୁ । ଜଣେ ବୁଢ଼ାଳିଆ ବାବୁ ଆଗକୁ ଚାଲିଆସିଲେ ।

"ଏଇ ଘରେ ଅଫିସ କଲେ ଠିକ୍ ହେବ – ନା' କ'ଣ କହୁଛନ୍ତି ? – ଅନେକ ବଡ ଦେଖାଯାଉଛି – ତଥାପି ଚଳିବ !"

"ସାର୍ !"

ହାଇଦର ଭୂରୁ କୁଞ୍ଚେଇଗଲା ।

ସେ ତାକୁ ଚାହିଁ ପଚାରିଲେ, "ତୁମେ ଏ କୋଠାର ପୁରୁଣା ନୌକର ?"

"ଜୀ...ହଜୁର୍ !"

"ଆଚ୍ଛା...କ୍ୟା ନାମ୍ ହେ ତୁମାରା ?"

"ହାଇଦର !" – ନିଜ ତୁଣ୍ଡରେ ନିଜ ନାଁ ବୋଧେ ସେ କେବେ ଧରି ନଥିଲା – ତା'ର ପ୍ରୟୋଜନ ନଥିଲା ।

"ଆମକୁ ସବୁ ବୁଲାଇ ଦେଖାଅ ।"

ହାଇଦର ବାଟ କଢେଇ ନେଇଗଲା ।... ଏଇ ଛୋଟ ମଣିଷଟି ତା'ହେଲେ ଏ ଉଆସକୁ ଅଧିକାର କରିବେ ! ଏଣିକି ଏଇ ହେବେ ମାଲିକ...ଠିକ୍ ଅଛି...

ବାଁ ପାଖ କୋଠରିରେ ଜୀଅନ୍ତା ଚାଲିଆସିଲା ପରି ପାଞ୍ଚଟା ପଟାଳିଆ ମହାବଳ ବାଘ ସଜାହୋଇ ଥୁଆହୋଇଛନ୍ତି । ନଜାଣିବା ଲୋକ ପଶିଗଲେ ହାଉକିନା ହୁଳାଟାଏ ବୁକୁରୁ ଖସିଯିବ । ଚମକିଲା ପରି ଠାଣି । ଚାହିଁଲା ପରି କହରା କଟା କଟା ଆଖି ।

ତା' ପାଖ ବଖରା । ବିରାଟ ଟେବୁଲ ଉପରେ କନାଖୋଳ ଘୋଡ଼ିଆ ହୋଇଥାଏ ।

ଟେବୁଲ୍ ମଝିରେ ଉପରୁ ଓହଳିଥାଏ ଦୋଳିପରି ବିଜୁଳିବତିର ବିରାଟ ଘୋଡଣୀ । ଗୋଟାଏ ପଟେ ଉଚ୍ଚ ଉଚ୍ଚ ସୋଫା । ଆରପାଖେ ବର୍ଚ୍ଛାପରି ଅନେକ ଚିକ୍‌କଣ ବାଡ଼ି – "ବିଲିୟାର୍ଡ ଘର !" ପଛଲୋକେ ଶୁଣିଲେ ଏବଂ କୁହାକୁହି ହେଲେ, "ଏ ଗୋଟାଏ ପ୍ରକାର ଖେଳ...ଭାରି ମହର୍ଗ ଖେଳ ।" ତେଣିକି ଆଉରି ଗୋଟାଏ ବୈଠକଘର । ଖୁବ୍ ମୋଟା ଗାଲିଚ୍ଚ । ଆହୁରି ନରମ ଗଦିଦାର ସୋଫା । କାଚ ଆଲମାରିମାନଙ୍କରେ ହାତୀଦାନ୍ତର ଅସଂଖ୍ୟ କାମ ।

ଏମିତି ତଳମହଲାରେ କେଉଁଠି ତାସ ଖେଳାହୁଏ, କେଉଁଠି ନାଚ ହୁଏ, କେଉଁଠି ଗୀତ ବୋଲାହୁଏ । ସବୁଠି ସାଜ ନିଆରା, ଆସବାବ୍ ନିଆରା । ଦ୍ଧି

ସେଇଠୁ ଖାଇବାଘର ପୁଞ୍ଜାଏ । ବଡ, ତା'ଠାରୁ ବଡ, ଆହୁରି ବଡ । ସବୁ ଚକ୍‌ଚକ୍ । ଯାହାକୁ ଜାଣି ସିଏ ସୁନ୍ଦର ।

ଚାଲି ଚାଲି ଅନେକ ଥକିଯାଇଥା'ନ୍ତି ସମସ୍ତେ । ତାଜମହଲରେ ଉପରବେଳା ବୁଲିବୁଲି ଥକିଯାଇଥିବା ପଞ୍ଚାଏ ସ୍କୁଲପିଲା ପରି ସେମାନେ ଓଠ ଚାଟୁଥା'ନ୍ତି – କିନ୍ତୁ ଆଖିତରାଟି ଅନେଇଥା'ନ୍ତି ଚାରିଆଡେ । କାହାରି ତୁଣ୍ଡରୁ କଥା ବାହାରୁ ନଥାଏ । ବେଳେବେଳେ ଟିପମାରି ଖୁବ୍ ଚିକ୍କଣ ଟେବୁଲଟାକୁ, ଆଲମାରି କାଚକୁ କିମ୍ବା କାନ୍ଥରେ ଲାଗିଥିବା କୌଣସି ତୈଳଚିତ୍ରକୁ କେହି କେହି ଟିକିଏ ଛୁଇଁଦେଉଥା'ନ୍ତି ।

ନୂଆ ମାଲିକ ଶେଷ ଖାଇବାଘରେ ଗୋଟାଏ ଚୌକି ଟାଣିଆଣି ବସିଗଲେ । ବାକି ସମସ୍ତେ ତାଙ୍କ ଦେଖାଦେଖି ଖଣ୍ଡିଏ ଖଣ୍ଡିଏ ଚୌକିରେ ଧାଡିବାନ୍ଧି ବସିଗଲେ । ଟେବୁଲ ଚାରିପାଖେ ଘେରିଯାଇ କ'ଣ ଅପେକ୍ଷା କଲାପରି ବସିଗଲେ ।

ହାଇଦର ମୁଣ୍ଡ ପଛପଟ ସାମାନ୍ୟ କୁଣ୍ଡେଇ ନେଇ ମୁହଁ ଉପରକୁ ଉଚ୍ଛୁରି ଆସୁଥିବା ହସକୁ ରୋକିନେଲା । ଏମାନଙ୍କୁ ସେ କ'ଣ ଏଠି ଡିନର୍ ପରଷିବ ଖାଇବାକୁ ? ଭଲ କଥା ! ସେ ଦେଖିଲା ସମସ୍ତେ ତାକୁ ଚାହିଁଛନ୍ତି । ସନ୍ଧ୍ୟା ହୋଇଯାଇଥାଏ । ଅନ୍ଧାର ଘନେଇ ଆସୁଥାଏ । ସାରା ଉଆସରେ ଉଁ ଚୁଁ ଶବ୍ଦଟିଏ ଶୁଭୁନଥାଏ । ମଡେଇ ପଡିଲାପରି ଲାଗୁଥାଏ । ଇସ୍...ସେ କ'ଣ କରିପାରିବ ସତେ ?

ହାଇଦର ହାରିବା ଜାଣିନାହିଁ । ସେ ଯେତେହେଲେ ସେଭଳି ଖାନ୍‌ଦାନ୍‌ର ପୁରୁଣା ଖାନ୍‌ସାମା । ବିଲାତ ଦେଖିଆସିଛି ଥରେ । କାଇଦା ଜାଣେ । ଏ ଶୋଷିଲା ଲୋକଙ୍କୁ ତ ପାଣିମନ୍ଦେ ସେ ଦେଇପାରିବ – ଆଉ କିଛି ନହେଲେ ନାହିଁ । ହାଇଦର ପାଖଘରେ ପଶିଗଲା । ଢେର୍ ଦିନ ହେଲା ସେ ପଶି ନଥିଲା । ସବୁ ତା'ର ପରିଚିତ । ସେ ଗୋଟାଏ ବଡ ଟ୍ରେରେ ସବୁଠାରୁ ସୁନ୍ଦର ଲମ୍ବାଳିଆ ଗ୍ଲାସ ସଜେଇନେଲା । ମନେ ମନେ ହସୁଥାଏ । ଏଥିରେ କ'ଣ ପାଣି ପିଆଯାଏ ? କିନ୍ତୁ ଆଉ ଉପାୟ କ'ଣ ?

ସେ ଟେବୁଲ, ସେ କାଚ ଏବଂ ବତି ଟିପିଦେବାରୁ ସେ ଆଲୁଅ ଆଖି ଝଲସାଇଦେଲା । ଝଲ୍‌ମଲ୍ ପାଣି ଆଉ ପାଣିପରି ଦିଶିଲା ନାହିଁ । ସମସ୍ତଙ୍କୁ ଢେର୍ ଶୋଷ । କାଚ ଜଗ୍‌ଗୁଡାକରେ ହାଇଦର ପାଣି ଯୋଗାଇ ଚାଲିଥାଏ । ପାଣି ମୁନ୍ଦେଲେଖା ପିଇଦେଇ ସମସ୍ତେ ଗୁଞ୍ଜରିଉଠିଲେ । କାହାରି ମନ ନାହିଁ ଉଠିବାକୁ । କିନ୍ତୁ ସେ ଉଠିଲେ ।

କହିଲେ, "ତୁମେମାନେ ବସିଥାଅ । ମୁଁ ବାକିସବୁ ଟିକିଏ ଦେଖିନେଉଛି । ହାଇଦର, ତଳେ ଆଉ କ'ଣ ଅଛି ?"

"ହଜୁର, ୟା ପାଖକୁ...ବିଲ୍ଲିଘର...କୁତାଘର...ତୋତାଘର ! ତା' ପାଖକୁ କୁମ୍ଭୀର ପାଇଁ ଫୁଆରା । ତେଣିକି ହରିଣ ପାର୍କ, ଅସ୍ତାବଲ...ହାତୀଶାଳ..."

"ବାଆସ୍...ଏପାଖେ ?"

"ଏପାଖେ ସବୁ ଖେଳପଡିଆ–ଟେନିସ୍, ସ୍ନୁକର, ବ୍ୟାଡ୍‌ମିଣ୍ଟନ୍...ବେସ୍‌ବଲ୍..."

"ପଛପଟେ ?"

"ଖାସ୍ ହମାମ୍! – ନିବୁଜ୍ ପୋଖରୀ...ପହଁରିବା ପାଇଁ ସିମିଂ ଟେଙ୍କ୍!"

"ଆଚ୍ଛା, ଆଚ୍ଛା...ଚାଲ ଉପରକୁ।"

ଗାଲିଚା-ଲଗା ପାହାଚବାଟେ ସେ ଦୁହେଁ ଉଠିଲେ। ପାଦ ଶବ୍ଦଟିଏ ନାହିଁ। ନିଃଶ୍ୱାସଟିଏ ନାହିଁ। ନିକାଞ୍ଚନ ଆଲୁଅରେ ସାରା ଉଆସ ଚୁପ୍‌ଚାପ୍। ହାଇଦର ଆଲୁଅ ଟିପିଲା। କାନ୍ଥରେ ବଡ ବଡ ତୈଳଚିତ୍ର। ଉପରୁ ଓଲଟା ଛତ୍ରପରି ଓହଳିଥିବା ଝରିବତି। ତଳେ ନରମ ଗାଲିଚା। ବିସ୍ତୃତ ଲାଉଞ୍ଜରେ ଅନେକ ଗଦି। ଉପର କନା ବୋଧେ ଖୁବ୍ ଦାମୀସିଲ୍କ।

ଗୋଟାଏ ପର୍ଦ୍ଦା ଟେକି ହାଇଦର କାଚକବାଟ ଖୋଲିଦେଲା। ଖାସ୍ ଦପ୍ତର୍। ଟେବୁଲ୍ ଖୁରାରେ ହାତୀଦାନ୍ତର କାମ। ଘୂରୁଥିବା ଚୌକିରେ ନାଲି ଗଦି। କାନ୍ଥ ଆଲମାରିର ଚକଚକ କାଚ ପଛପଟେ କ'ଣ ସବୁ କାଗଜପତ୍ର। ଲାଉଞ୍ଜକୁ ଫେରିଆସି ସେ ଆଉ ଗୋଟାଏ କବାଟ ଫିଟେଇଲା। ସେଇଟା ସନ୍ତ୍ରୀଘର। ବନ୍ଧୁକ ଧରି ସେଇଠି ସେ ଦିନରାତି ପହରା ଦେଉଥିଲା। ତା' ପାଖରେ ଚାରିଟା ବିଲାତି କୁକୁର ଶୋଉଥିଲେ। ସେଠିକି ଆଉ କାହାକୁ ଯିବା ମନା।

ହାଇଦରର ପାଦ ବଳେ ଅଟକିଗଲା। ସେ ଆଗକୁ ଦିଶୁଥିବା କବାଟକୁ ଚାହିଁଥାଏ। ଫିଟେଇବାକୁ ସାହସ ନାହିଁ। ସେ କବାଟ ମଧ୍ୟ ଖୁବ୍ ନିଆରା। ଆଲୁଅ ପଡି ଝଟକୁଥାଏ।

"ଚାଲ ହାଇଦର୍! ସେ କବାଟ ଖୋଲ।"

ଚମକି ପଡିଲା ବୁଢା ଖାନସାମା। ରାଣୀ ଉଆସକୁ ସେ ପଶିବାକୁ କିଏ ? ଭିତରେ କ'ଣ ଅଛି ସେ ଜାଣିନାହିଁ। ଏଇଯାଏ କୁକୁରଙ୍କ ଖାନା ଆଣି ଦିନେ ଦିନେ ପହଞ୍ଚୁଛି। ସେ ଜବାନ୍ ଥିଲାବେଳେ କେତେକଥା ଭାବିଛି ସେ ଅନ୍ଦରମହଲ ବିଷୟରେ। କେବେହେଲେ ଯାଇପାରିନାହିଁ। ବିନା ହୁକୁମ୍‌ରେ ସେ ପଶିବାକୁ ଚାହିଁନାହିଁ।

ସେ ଡରି ଡରି ଦୁଆର ଫିଟାଇଲା। ଭିତର ଅନ୍ଧାର। ତା'ର ଆଲୁଅ ବୋତାମ ସେ ଜାଣି ନାହିଁ। ବାଟ ଜାଣି ନାହିଁ।

"ଚାଲ ହାଇଦର!"

ସେ ଅଗତ୍ୟା ଦୁଆରବନ୍ଧ ଡେଇଁ ଭିତରେ ଗୋଡ ଦେଲା। ତା' କଲିଜା ପିଟିହେଉଥାଏ ପଞ୍ଜରାରେ, ଜିଭ ଭିଡି ନେଉଥାଏ। ତା' ପାଦ ସେଇଠି ଭୂଇଁରେ ଲାଗିଗଲା। ଆଗକୁ ଅନ୍ଧାର।

"ଆଲୁଅ ଜଳାଅ...ଆଗେ ଚାଲ।"

"ହଜୁର୍...ହଜୁର୍...ଏଣିକି ମୋତେ କିଛି ମାଲୁମ୍ ନାହିଁ। ମୋତେ ମାଫ୍ କରନ୍ତୁ।"

ସେ ନିଜେ ବୁଲିପଡି କବାଟ ପାଖରେ ଥିବା ସିଚ୍ ଟିପିଦେଲେ। ଆଲୁଅ ଜଳିଉଠିଲାରୁ ହାଇଦର ଛନଛନ ହୋଇ ଅନେଇଲା। ତା'ର ଜୀବନସାରା ଯାକୁ ସପ୍ନ ଦେଖିଥିଲା କେବଳ। ଆଖିରେ ଦେଖି ବିଶ୍ୱାସ କରିପାରିଲା ନାହିଁ। ହାଁ କରି ଠିଆହୋଇଥାଏ।

କିଛି କଡା ସ୍ୱରରେ ହୁକୁମ୍ ଶୁଭିଲା, "ଆରେ, ଏମିତି କ'ଣ ବେକୁବ ଭଳି ଠିଆହେଇଛୁ ହାଇଦର ? ଜଲ୍‌ଦି ଆଗେ ଚାଲ। ମୁଁ ଆଜି ସବୁ ଦେଖିନେବାକୁ ଚାହେଁ।"

ହାଇଦର ମୁହଁ ଫେରାଇ ତଳକୁ ଅନେଇଲା । ତା' ଭୂଲତା, ଆଖିପତା, ନିଶ, ଦାଢ଼ି ସବୁ ରୂପା ପରି ଚକ୍‌ଚକ୍ କରୁଥାଏ । ବେକର ଶିର ଦିଶୁଥାଏ; ପୁରୁଣା ଜରିଲଗା ଜାମା ଲୋଗକୋଗ ମଇଳା ଦିଶୁଥାଏ । ହାଇଦର ମୁହଁ ଫେରାଇଲା । ଆସ୍ତେ ଗୋଡ ଟେକିଲା ଭିତରପାଖ ମଝି ଦରଜା ଆଡକୁ ।

"ଏଣିକି ଏସବୁ କ'ଣ ଶୋଇବା ଘର ?"

ହାଇଦର ନୀରବରେ ମୁଣ୍ଡ ହଲାଇ 'ନାହିଁ' କଲା ।

କବାଟ ଫିଟିଲା । ପୁଣି ଆଲୁଅ ଜଳିଲା । ମହମହ ବାସିଲା ଚତୁର୍ଦ୍ଦିଗ । ହାଇଦର ନିଃଶ୍ୱାସ ଭିଡିନେଲା ବୁକୁ ଭରିଗଲା ପର୍ଯ୍ୟନ୍ତ । ଖୁବ୍ ପରିଚିତ ଏଇ ବାସ୍ନା । ଗାଡିରେ ପର୍ଦାଲଗା ପଛପଟ ଗଦିରୁ, ଖାଇସାରି ଉଠିଗଲା ପରେ କୌଣସି କୌଣସି କୁର୍ସି ଉପରୁ ଏଇ ବାସ୍ନା ସେ ପାଇଛି । ସେଇଟା ପୋତି ହୋଇ ରହିଛି ତା'ର ଷାଠିଏ ବର୍ଷ ପୁରୁଣା ଯୌବନ ଭିତରେ ।

ତାକୁ ନ ପଚାରିଲେ ସୁଦ୍ଧା ସେ କହିଲା, "ଏଇଟା ରାଣୀମହଲ !"

ଛୋଟିଆ ଲାଉଞ୍ଜଟିଏ । ମାତ୍ର ଦୁଇଟି ପାଟଗଦି ଥିବା ସୋଫା । ଛୋଟିଆ ଚନ୍ଦନକାଠର ଟେବୁଲଟିଏ । କାନ୍ଥପାଖ କାଚ ଆଲମାରିରେ କିଛି ସରାବ୍ ବୋଧହୁଏ! ତଳେ ମୋଟା ନରମ ଗଦି ଭଳି ଗାଲିଚ ।

ହାଇଦର ଗୋଟିଏ ସୋଫା ଉପରେ ହାତ ମାରି ପୋଛିଦେଲା । ମୁଲାଏମ୍ ପାଟଗଦି – ଶୋଇଥିବା ମଣିଷ ଦେହ ପରି ଚିକ୍‌କଣ । ସେ ହାତ ଆସ୍ତେ ଅପସାରି ନେଲା । କେଜାଣି କାହିଁକି ସେ ସାନ ସାନ ହାତଗୋଡର ମଣିଷଟି ଲଥ୍‌କିନା ସେ ସୋଫା ଉପରେ ବସିପଡିଲେ । ହାଇଦର ପାଟି ଜାବି ତା' ଚିତ୍କାରକୁ ରୋକିନେଲା । ତା' ଆଖିଯୋଡିକ ହୁଏତ ଡବ ଡବ ହୋଇ ଖସିପଡିବେ । ସାନ ମଣିଷଟି ତାକୁ ଚାହିଁ ଦାନ୍ତ ଦେଖାଇ ହସୁଥା'ନ୍ତି ।

"ଏଇଟାରେ କ'ଣ ତୁମର ପୁରୁଣା ମାଲିକ ବସୁଥିଲେ ?" – କହି ସେ ସୋଫାର ହାତ ଉପରେ ଆସ୍ତେ ଥାପୁଡଉଥା'ନ୍ତି ।

ହାଇଦର ହାତ ଆଡେଇ ହାଁ'କରି ରହିଲା – କିଛି କହିପାରିଲା ନାହିଁ । କେତେବେଳକୁ ସେ ଆସ୍ତେ ଜିରେଇଲା ଏ ସବୁ କଥାକୁ, ସମୟକୁ । ଆସ୍ତେ ନଇଁଲା । ଖୁବ୍ ଧୀରେ ହାତ ଟେକି କୁର୍ଣ୍ଣିସ କଲା । କହିଲା, "ଜି, ହଜୁର୍ !"

ସୋଫାରୁ ସେ ଡେଇଁଲା ପରି ଉଧୁଳିପଡି, ଦିଶୁଥିବା ଅତି ବିଶାଳ ଦୁଆରକୁ ଫିଟେଇବାକୁ ଆଙ୍ଗୁଠିରେ ଠାରିଦେଲେ ।

ଏଥର ହାଇଦର କାହିଁକି କେଜାଣି ଖପର୍ ଖପର୍ ଲଇଁ ଲଇଁ ଯାଇ ହୁକୁମ ମାନି ଫିଟେଇଦେଲା ମାଲିକଙ୍କ ଖାସ୍ କାମରା । ଆଲୁଅ ଜଳିଲା । ତା' ସାଙ୍ଗରେ ଛପ୍‌କିନା ଦିଶିଗଲା ଅନେକ ମୋଲାଏମ୍ ରଙ୍ଗ । କାନ୍ଥକୁ ଲାଗି କେତେ କ'ଣ ସବୁ ଦେଖିବାକୁ ବେଳ ନାହିଁ । ଗୋଟାଏ ପଟେ ପୁଣି ସେଇଭଳି କୁନି କୁନି ଦୁଇଟି ସୋଫା । ଆଉ ଟିକିଏ ଛାଡି ଦୁଇଜଣ ଜାକିଜୁକି ବସିପାରିଲା

ଭଳି ଗୋଟିକିଆ ସୋଫାଟିଏ।... ଆଉ ପାଖକୁ ଅତି ପ୍ରଶସ୍ତ ବିଶାଳ ଫୁଟିଲା ପଦ୍ମପରି ଗୋଲ ବିଛଣା। ବ୍ୟାସ ଅନ୍ତତଃ ବାରଫୁଟ।

ସେ ଘରର ଚାରିଆଡେ ଘେରାଏ ବୁଲିଆସିଲେ। ଚଉଷଠି ପ୍ରକାରର ନଗ୍ନ ଚିତ୍ର। କେତେ ପ୍ରକାର ରଙ୍ଗର ପାନରସ, କେତେ ପ୍ରକାର ପାନୀୟ। ଚାରିଆଡେ ଗୋଟିଏ ପ୍ରକାର ଉଚ୍ଚାଟନ, ଗୋଟିଏ ନିର୍ଦ୍ଦିଷ୍ଟ ଇଙ୍ଗିତ।

ସେ ବିଛଣା ପାଖରେ ଯାଇ ଠିଆହେଲେ। ଉଭୟ କାନ୍ଥର ପାଣିପରି ପ୍ରାଞ୍ଜଳ ଦର୍ପଣରେ ପରିଷ୍କାର ଦିଶିଗଲା ପ୍ରତିବିମ୍ବ। ପେଣ୍ଟ ମୁଣାରେ ହାତ ପୂରାଇ ସେ ବିଛଣାଟିକୁ ଚାହିଁଲେ କିଛି ସମୟ ଏବଂ ତଳକୁ ମୁହଁପୋତି ଆସ୍ତେ ଆସ୍ତେ ଆସି ଗୋଟିଏ ସୋଫାରେ ବସିପଡିଲେ।

ଓଠ ଚାଟି କହିଲେ, "ହାଇଦର!"

ଚମକିପଡି ସେ ଆସି ପାଖରେ ଠିଆହେଲା – ସତୁରି ବର୍ଷର ବୁଢା ଖାନାସାମା।

"ମୋତେ ଖୁବ୍ ଶୋଷ ହାଇଦର – କିଛି ପିଇବାକୁ ଦିଅ!"

"ଜି ହୁଜୁର୍!" – କହି ସେ ବାଉଳିହୋଇ ଚାହିଁଲା ଚାରିଆଡକୁ। ଗୋଟାଏ ଦୁଇଟା ଚିତ୍ରରେ ଲାଖିଯାଉଥିବା ଆଖିକୁ ଓଟାରି ଆଣିଲା। ସେଇ ଝଲମଲ କାଚ ପଛଆଡେ ମାଲ ଥିବା କଥା ସେ ବାରିଦେଲା। ଖୋଲି ଦେଖିଲାରୁ ସତକୁ ସତ ଠିପି ଫିଟି ନ ଥିବା ଧାଡି ଧାଡି ବିଦେଶୀ ସରାବ। ସେଥିରୁ ଗୋଟାଏ ଉଠାଇ ଆଣିଲା। ଡେଙ୍ଗାଳିଆ ଗ୍ଲାସଟିଏ ମଧ୍ୟ ନେଇଆସିଲା ସେ ଭିତରୁ।

ଠିପି ଫିଟାଇବା ତା'ର ଅଭ୍ୟାସ, ତା'ର ଅନେକ ଦିନର ଯୋଗ୍ୟତା।

କିଛି ଅଜାଡି ଦେଲା ଗ୍ଲାସ୍‌ରେ। ଟଳଟଳ କଲା ସାରା ଶୋଇବାଘର। ଟାକରା ଫୁଟେଇଲା ଅନେକ ଦିନରୁ ତୃଷାର୍ତ୍ତ ଥିବା ଛାତ ଏବଂ ଚଟାଣ।

"ଆଚ୍ଛା, ହାଇଦର! ମୁଁ ତୁମକୁ ବକ୍‌ସିସ୍ ଦେବାକୁ ଚାହେଁ –" ହାତରେ ଗ୍ଲାସ – ଆଖିରେ ଚମକ – ମୁହଁରେ ହସ।

"ଜି ହୁଜୁର!"

"ସେ ଓ୍ୱାର୍ଡରୋବ୍ ଖୋଲି ସେଇ ଓହଳିଥିବା ଲମ୍ବା କୋଟ୍‌ଟାକୁ ବାହାର କରି ଆଣ।"

"ଜି...ହୁଜୁର୍!"

କୋଟ୍ ବାହାର କରି ଆଣି ହାଇଦର ତାକୁ ଟେକିଧରିଲା ଏବଂ ସେମିତି ରହିଗଲା। ତା' ଆଖିକୁ ସେ ବିଶ୍ୱାସ କରିପାରୁ ନଥାଏ। ତା' ହାତ ଥରୁଥାଏ, ଦେହ ଥରୁଥାଏ।

"ସେଇଟା ତୁମର – ତମେ ତାକୁ ବର୍ତ୍ତମାନ ପିନ୍ଧିପାର।"

ସେ ହାଉଳି ଖାଇଲା ପରି ବାଁ'ହାତର ଆସ୍ତିନ୍‌ରେ ଆଖି ଘୋଡାଇ କାନ୍ଦିପକେଇଲା – ପୁଣି ହସିପକେଇଲା। ସେ ପବନ ଶୋଷିଲା ବାରମ୍ବାର। ଆକଟା ହେଲା ପରି କଥା କହିପାରିଲା ନାହିଁ। ଓଜନ୍‌ଦାର ଚାଇନା ମଖମଲରେ ସୁନା ଜରି କାମ ହୋଇଥିବା ସେ ପୋଷାକ ତା' ଡାହାଣ ହାତକୁ ନୁଆଁଇ ଦେଉଥାଏ। ସେ ଥରି ଥରି ଟେକିରଖିଥାଏ ତାକୁ।

"ଜି ହୁଜୁର୍ – ଜି ହୁଜୁର୍...!" ସେ ଆଉ କଥା କହିପାରୁ ନ ଥାଏ।

ଦ୍ୱିତୀୟ ଥର ଗ୍ଲାସରେ ଢଳା ହେଲାବେଳେ ସରାବ୍ ମଣିଷ ହସିଲା ପରି ଶବ୍ଦ କଲା; କିମ୍ବା ମାଲିକ ବୋଧହୁଏ ସେମିତି ଖଳଖଳ ହସିଲେ – କେଜାଣି।

"ଆବ୍‌ବେ, ପହନ୍‌ଲୋ!... ତାକୁ ତୁ ଏଇଲାଗେ ପିନ୍ଧିପକା, ମୁଁ ଦେଖିବି।"

"ହୁଜୁର୍, ହୁଜୁର୍... ଏ ତ ହୁଜୁର୍‌ଙ୍କ ଖାସ୍ ପୋଷାକ। ହୁଜୁର୍ ଏଇଟା ପିନ୍ଧି ସବୁ ସାଲ ଦୁଇଥର ଦରବାରକୁ ବିଜେ ହେବାର ପୋଷାକ। ଏହା ଆମେ ପିଲାଦିନୁ ଦେଖିଆସିଛୁ। ଏଇଟା ଦରବାରୀ ଅଚକନ୍।"

"ହାଁ ହାଁ... ଦରବାରକୁ ଏଥର ତୁ ଯ୍ୟାକୁ ପିନ୍ଧି ବାହାରିବୁ।"

"ନେହିଁ ହଜୁର୍... ଆମେ ଯ୍ୟାର ଲାଏକ୍ ହୋଇ ପୈଦା ହୋଇନାହୁଁ। ଏଇଟା ହୁଜୁର୍ ପିନ୍ଧିବେ।" – ସେ ତାକୁ ଆସ୍ତେ ଅନ୍ୟ ସୋଫା ଉପରକୁ ରଖିଦେବାକୁ ଯାଉଥିଲା।

"ଆଚ୍ଛା, ଆମର ପହିଲା ବକ୍‌ସିସ୍ ତୁ ଫେରେଇଦେବାକୁ କିଏ?"

ତାକୁ ପୁଣି ଟେକି ଧରି ଠିଆହେଲା ହାଇଦର। ତା' ମୁହଁ କାନ୍ଦରେ ଲତପତ।

"ଯ୍ୟାକୁ ପିନ୍ଧି ଶୀଘ୍ର ମୋ' ସାମ୍‌ନାରେ ଆସି ଠିଆହୁଅ... ଯାଅ!"

ହାଇଦର ଚାରିଆଡକୁ ଚାହିଁଲା। ଆଡୁଆଳ ନାହିଁ। ଶେଷକୁ ବିଛଣା ପାଖରେ ଯାଇ ଠିଆହେଲା। ସେ ଚକ୍ ଚକ୍ ପୋଷାକକୁ ଆସ୍ତେ ବୁକୁ ଉପରେ ଚାପି ଧଇଲା। ଦୁଇଧାର ଲୁହ ଗଡିଆସିଲା ନିଶ୍ୱାସ ଯାଏ। ସେ ଆଖି ବୁଜି ଉପରକୁ ମୁହଁ ଟେକି ବିଡବିଡ ହେଲା – "ଯ୍ୟା ଆଲ୍ଲାହ୍"... ତ'ାପରେ ଆଣ୍ଠୁ ଉପରେ ସେଇଠି ବସିପଡି ସେ ସେଇ ପୋଷାକକୁ ଲୁହ ସରସର ମୁହଁ ଉପରେ ମାଡି ଧରିଲା। ସେ ନରମ ମଖମଲ୍‌ର ବାସ୍ନାରେ ମୁହଁ ବୁଡେଇ ଆସ୍ତେ ଚୁମାଟିଏ ମାରି ହାତ ନୁଆଁଇ ଆଣିଲା। କ'ଣ ସେ ଏ ଅଚକନ୍ ପିନ୍ଧିବ? ଦର୍ପଣରେ ଦିଶୁଥିବା ହାଇଦର ମୁଣ୍ଡ ହଲାଇ ନାହିଁକଲା। ସେ ସେମିତି ବୁକୁ ପାଖରେ ତାକୁ ଧରି ଠିଆହୋଇଥାଏ ଅନେକ ବେଳଯାଏଁ।

ତା' ପାଖରେ ହାତରେ ଗ୍ଲାସ୍‌ଟିଏ ଧରି କିଏସେ ଆସି ଠିଆହେଲା? ଓ ଏଇ ତ ମାଲିକ୍! ସେ ସନ୍ତର୍ପଣରେ ଛନ୍‌ଛନ୍ ହେଲା। ପାଟି ସାମାନ୍ୟ ଖଇଁ ମାରିଯାଉଥାଏ। ସେ କହିଲେ, "ଆଚ୍ଛା, ତୁ ଏଇଟା ଧରି ଏମିତି ଠିଆହେଇଥିବୁ? ହା, ହା, ଆଚ୍ଛା ଠିକ୍ ଅଛି...କହିଲୁ ହାଇଦର ଏ ସବୁର ମାଲିକ୍ କିଏ?"

"ଆପ୍ ଜହାଁପନା! ଆପ୍ ହୁଜୁର୍!! ଆପଣ ମାଲିକ!"

"ଆଚ୍ଛା, ଆଚ୍ଛା...ଏ ତଳ ମହଲ...ଉପର ମହଲ...ଏ ଗଦି, ଚୌକି, ସୋଫା, ଚିତ୍ର, ସାମାନପତ୍ର...ଏ ସବୁ ତା'ହେଲେ ଆମର?"

"ଜି ହୁଜୁର୍!"

"ଏଇ ଯେ ବିଛଣାରେ ଆମେ ଶୋଇବୁ...ଆଉ କେହି ଶୋଇବେ ନାହିଁ...ଏଁ?"

"ଜି ହୁଜୁର୍!... ନହିଁ ହୁଜୁର୍!... ହାଇଦର ଆଖିରେ ପଲକ ପଡୁ ନଥାଏ। ନିଶା ବୋଧେ

ଧରିନେଲା । ଟିକିଏ ବରଫ... ଟିକିଏ ଲେମ୍ବୁ... ସେ ଭାବିଗଲା ସବୁ ପ୍ରକାର ଉପଚାର କଥା ମୁହୂର୍ତ୍ତକରେ । କିନ୍ତୁ ଉପାୟ କ'ଣ ? ସେଇଠୁ ଘୁଞ୍ଚିଲେ ସିନା !"

ସେ ସେମିତି ସରାବ୍ ଗ୍ଲାସ ହାତରେ ଧରି ସେ ବିଛଣା ଉପରକୁ ଜୋତା ପିନ୍ଧି ଚଢ଼ିଗଲେ । ହାଇଦର ଜିଭ କାମୁଡିଦେଲା । ଆହୁରି ଜୋର୍‌ରେ କେବଳ ସେ ଅଚକନ୍‌ଟିକୁ ଚାପି ଧରି ଚାହିଁରହିଲା ।

ତାଙ୍କ ପାଦ ବୁଡିଯାଉଥାଏ ଫେଣ ଭିତରେ । ସେ ଟଳମଳ ଚାଲୁଥା'ନ୍ତି । ତା'ପରେ ସେ ଖପର ଖପର ଡେଇଁଲେ । ହାତ ଟେକି ଗୀତ ବୋଲିଲେ । ପାଟି କଲେ । ଗ୍ଲାସ୍‌ରୁ ସରାବ୍ ଢାଳିହୋଇଗଲା ବିଛଣାରେ ।

"ଏସବୁ ତା'ହେଲେ ମୋର ! ମୁଁ ଏ ସମସ୍ତର ମାଲିକ ! ମୁଁ ମାଲିକ ! ଆବେ ହାଇଦର, ତୁ ଆମର ଦରବାରୀ ଅଚକନ୍ କାହିଁକି ଧରିଛୁ ? ଦେ ମୋତେ – ମୁଁ ତାକୁ ପିନ୍ଧିବି । ମୁଁ ଦରଦାରକୁ ଯିବି, ତୁ ନୁହେଁ । ତୁ ଗୋଟାଏ ନୌକର । ବାକି ସମସ୍ତେ ନୌକର । ଯେତେସବୁ ମୋ' ସାଙ୍ଗରେ ବେକୁବ ଆସିଥିଲେ ସେ ସମସ୍ତେ ନୌକର ।...ହା ହା ହା...ମୁଁ ମାଲିକ୍...ହେଁ...ମୁଁ ମାଲିକ୍ । ଆଣ୍ ମୋ' ଅଚକନ୍ !"

ହାଇଦର ଝପର ଝପର ଧାଇଁଯାଇ ବଢେଇଦେଲା । ବିଛଣା ଛୁଇଁଦେବାକୁ ତା'ର ସାହସ ନାହିଁ । ସେ ଖାଲି ଅନେଇଁ ରହିଲା ।

ମଖମଲ୍ର ଓଜନିଆ ଅଚକନ୍‌କୁ ସେ ବହୁ କଷ୍ଟରେ ଧରିଲେ । ହାତରୁ ଗ୍ଲାସ୍ ନଛାଡି ତାକୁ ଫିଟେଇଲେ । ଟଳମଳ ହେଲେ । ଗୋଟାଏ ହାତ ପୂରେଇ ଆଉ ହାତ ପୂରେଇବାକୁ ପବନରେ ରାମ୍ପି ହେଲେ । ହାଇଦର ସମ୍ଭାଳି ପାରିଲା ନାହିଁ । ଲଇଁପଡି ଆଉ ହାତ ପାଖରେ ଆସ୍ତିନ ଖୋଲି ଧରିଲା ।

ଛ'ଫୁଟ ଲମ୍ବା ଅଚକନ୍ । ସାତ୍‌ଫୁଟ ଲମ୍ବା ମଣିଷ ପାଇଁ ଶହେ ବର୍ଷ ତଳେ ତିଆରି ହୋଇଥିଲା । ହାତ ବୁଡେଇ ଆସ୍ତିନ ଓହଳିଲା ଆଣ୍ଠୁତଳକୁ । ବୋତାମ ସବୁ ପାଦ ପର୍ଯ୍ୟନ୍ତ ଚିକ୍ ଚିକ୍ ହୋଇ ଦିଶିଲେ । ଅଚକନ୍ ଲୋଚକୋଚ ହୋଇ ଲାଜେଇ ପଡିରହିଲା ବିଛଣା ଉପରେ । ସେ ବୋତାମ ଲଗେଇପାରିଲେ ନାହିଁ । ହାତ ଆସ୍ତିନ ଭିତରେ ହଜିଗଲା, ଗ୍ଲାସ ବାହାର କରିପାରିଲେ ନାହିଁ । ସେ ସେଇ ଭିତରେ ବୁଡିଗଲା । ସେ ଚାଲିଲେ, ଭାରୀ ପୋଷାକ ଘୋଷାରି ହେଲା ବିଛଣା ଉପରେ ।

"ହା-ହା – ହାଇଦର, କେମିତି ମାନୁଛି ଏ ଅଚକନ୍ ! କାଲି ଦରବାର ହେବ । ଆମେ ୟାକୁ ପିନ୍ଧି ଦରବାର କରିବୁ ।"

ସେ ଦର୍ପଣକୁ ଚାହିଁ ହଠାତ୍ ଅଟକିଗଲେ । ହାତଟାଏ ଉପରକୁ ଟେକିଲେ । ଭଙ୍ଗା ହାତ ପରି ଓହଳି ରହିଲା ଅଧା ଆସ୍ତିନ୍ । ସେ କୌଣସି ପ୍ରକାରେ ହାତକୁ ଫିଟେଇବାକୁ ଛାଟିପିଟି ହେଲେ । ଗର୍ଜିଲେ । ଯେତେ ଫିଟେଇବାକୁ ଚାହିଁଲେ, ଅଚକନ୍ ତାଙ୍କୁ ସେତିକି ଘୋଡେଇ

ପକାଇଲା । ବିଛଣା ମଝିରେ ସେ କଲବଲ ହେଉଥା'ନ୍ତି । ଗାଉଁଗାଉଁ ଗର୍ଜୁଥା'ନ୍ତି ଜାଲରେ ପଡିଥିବା ଜାନୁଆରଟିଏ ପରି ।

ହାଇଦର ବିଛଣା ପାଖକୁ ଯାଇ ଫେରିଆସୁଥାଏ । ତା' ଚାରିପଟେ ବୁଲି ମଜିକୁ ଓହଟି ହେଉଥାଏ । ପହଞ୍ଚପାରୁ ନ ଥାଏ – କେମିତି ବା ସେ ବିଛଣା ଉପରକୁ ଚଢିଯାଇଥାନ୍ତା ?

ଅଚକନ୍ ତାଙ୍କୁ ମୁହଁଆଡୁ ଘୋଡେଇଦେଲା । ସେ ଗଁ ଗଁ ହୋଇ ପଡିଗଲେ । ତାଙ୍କ ଉପରେ ମଡେଇ ହୋଇଗଲା ମଖମଲର ଭାରି ଖୋଳଟି । ସେ ତା' ଭିତରେ ବସିବା, ଛାଟିପିଟି ହେବା ଉପର ହଲଚଲ୍‌ରୁ ଜଣାପଡୁଥାଏ କିଛି ସମୟ ।

ତା'ପରେ ଅଚକନ୍ ତଳେ ବୁଡିଯାଇଥିବା ଛୋଟ ମଣିଷଟି ଆଉ ହଲିଲା ନାହିଁ । ଧଳା ଧପ୍ ଧପ୍ ବିଛଣା ଉପରେ ନାଲି ଜରଜର ଭେଲ୍‌ଭେଟ୍‌ର କୁଢ ଭିତରେ ସେ ଅଛି କି ନାହିଁ ଆଉ ଜଣାଗଲା ନାହିଁ ।... ହାଇଦରର ଧଳା ଧଳା ଆଖିପତା ଓସାରିହୋଇ ରହିଗଲା । ସେ ସେମିତି ଚାହିଁରହିଲା ସେ ନିଶ୍ଚଳ ଜମାଟ ବାନ୍ଧିଥିବା ରକ୍ତର ବିରାଟ ଥୋପାଟାକୁ ।

ତା' କାନ ଭାଁ-ଭାଁ ଡାକୁଥାଏ । ଆଖିରେ ଝାପ୍‌ସା ଝାପ୍‌ସା ଦିଶୁଥାଏ । ଖୁସ୍ ଖୁସ୍ ଗୁଡିଏ ପାଦଶବ୍ଦ ପାଖେଇ ଆସିଲା । ଫିସ୍ ଫିସ୍ କଥା, ଗୁଣୁ ଗୁଣୁ ସ୍ୱର । ବିସ୍ମିତ ବିମୂଢ କୋଡିଏଟି ମଣିଷ ମେଞ୍ଚାଟିଏ ହୋଇ ପଶିଆସିଲେ ।... ଜଳଜଳ ଅନେଇଲେ ଚାରିଆଡକୁ । ପାଟି ହାଁ-କରି ଚାହିଁରହିଥା'ନ୍ତି କାନ୍ଥକୁ, ବାଡକୁ, ତଳକୁ, ଉପରକୁ । ସେମାନେ କାହାକୁ ଖୋଜୁଥା'ନ୍ତି କି ? ନାଁ ତ !!

ସେମାନେ ସମସ୍ତେ ଶୋଷିଲା ଦିଶୁଥା'ନ୍ତି । ସେମାନଙ୍କୁ ହାଇଦର କ'ଣ ଟିକିଏ ପିଇବାକୁ ଦେବ ?... ସେମାନେ ପିଇଲା ପରେ ପୁଣି ଏଇ ବିଛଣାଟାକୁ ଚକଟିବାକୁ ଚାହିଁବେ ? ସମସ୍ତେ ପୁଣି ଚାହିଁବେ ଏଇ ଅଚକନ୍ ପିନ୍ଧି ଦରବାର କରିବାକୁ ?

ଗୋଠ ଭିତରୁ ଫିଟିଆସି ଜଣେ ବୁଢାଳିଆ ମଣିଷ ଚାରିଆଡକୁ ଚାହିଁଲା । ଓଠ ଚାଟି କହିଲା – ଆଚ୍ଛା, ଏସବୁ ଯେ ଛାଡିଯାଇପାରିଲା, ସେ ତା' ସାଙ୍ଗରେ କ'ଣ ସବୁ ନେଇନଥିବ – କିଛି କଳ୍ପନା କରିପାରୁଛ ?

ସମସ୍ତଙ୍କର ଗୋଟାଏ ମିଳିତ ଦୀର୍ଘଶ୍ୱାସ ଶୁଭିଲା । ହାଇଦରର ମଞ୍ଜ ଥରିଗଲା । ତାକୁ ଶୁଭିଲା ବିରାଟ ସାପଟାଏ ପବନ ଛାଡୁଛି ସେଇ ବିଛଣା ତଳୁ !



# ବନ୍ଧୁ ମହାନ୍ତି

ଯାଜପୁରରେ ନିର୍ଜଳା କାନ୍ତାର କାଳ ପଡିଗଲା । ମହରଗରେ ଯେଉଁମାନେ ମାଗିଯାଚି ବଞ୍ଚିଯାଇଥିଲେ, କାନ୍ତାରରେ ସେମାନେ ନିପାଣିଆ ଗଛପରି ଏଠିସେଠି ଟଳିପଡିଲେ । ଚୈତ୍ରମାସବେଳକୁ ବାଘପରି ମାଡିଆସିଲା ଖରା । ପାଣି ଶୁଖି ଆସିଲା । ଦୀନବନ୍ଧୁ ମହାନ୍ତିଙ୍କ ଦମ୍ଭ ମଧ୍ୟ ଟଳିଆସିଲା । ସେ କାଳରେ କେହି ଆଉ କାହା ମୁହଁକୁ ଚାହିଁଲେ ନାହିଁ । ଅଭାବ ପଡିଗଲେ କିଏ କାହାର ? ନିଜର ପ୍ରାଣ ବଞ୍ଚେଇବା ଯେଉଁଠି କଷ୍ଟ; ସେଇଠି ଲେଖାଯୋଖା ଜ୍ଞାତି-କୁଟୁମ୍ବକୁ ପଚାରେ କିଏ ? ବନ୍ଧୁ ମହାନ୍ତିଙ୍କୁ ବା ପଚାରିବ କିଏ ? ଯାଜପୁର କ୍ଷେତ୍ର ଭିତରେ କାହା ଦ୍ୱାରେ ହାତ ପତେଇବାକୁ ଆଉ ବାକି ରହିଲାନାହିଁ । ଯେ ଥରେ ଦେଇଥିଲା, ସେ ଆଉ ମୁହଁକୁ ଚାହିଁଲାନାହିଁ – ନ ଚିହ୍ନିଲାଭଳି କରଛଡା ଦେଇ ରହିଲା । ନିଆଶ୍ରୀ ପାଞ୍ଚପ୍ରାଣୀ କୁଟୁମ୍ବ ଦିନ ପରେ ଦିନ ନିରନ୍ନ ରହି ମଉଳି ଯାଉଥା'ନ୍ତି । ଯାଉଁଳି ଡଙ୍କ ଶିରା ଉପରେ ପୁର କହରା ନୁଖୁରା ମୁଣ୍ଡଟି ଥୟ ଧରୁନଥାଏ । ଗହୀର ଆଖି ଚାରିପଟେ ଟୋପା ଟୋପା ଝାଳ । ନଅ ବର୍ଷର ବଡଝିଅ ମେଞ୍ଚାଟିଏ ହୋଇପଡିଥାଏ,ଭୋକରେ ଆଉଟ୍ଟ ପାଉଟ୍ଟ ହେଉଥାଏ ସାନଝିଅ । ଚେମେଣି ଚଟିଆ ପରି ଲାଖିରହିଥାଏ ମା' କାଖରେ । ଦିନଯାକ ବୁଲି ବୁଲି ସଞ୍ଜବେଳେ ଘରକୁ ବାହୁଡିବାକୁ ବନ୍ଧୁ ମହାନ୍ତିଙ୍କ ଗୋଡ ଚଳୁ ନଥାଏ । ଖାଲି ହାତରେ ତାଙ୍କୁ ଦୁଆରମୁହଁରେ ଠିଆହେବାର ଦେଖିଲେ ଯେଉଁ ଚାରୋଟି ଦୀର୍ଘନିଃଶ୍ୱାସ ବାହାରିଯିବ, ତାକୁ ସମ୍ଭାଳିବାପାଇଁ ତାଙ୍କ ମନରେ ବଳ ନଥାଏ ।

"ହରି ଇଚ୍ଛା" କହିପକାଇଲେ ଅଭ୍ୟାସରେ । ତା'ପରେ ଟିକିଏ ମନକୁ ମନ ଅଳ୍ପ ହସିଲେ – ଏଇ କ'ଣ ହରିଙ୍କ ଇଚ୍ଛା – ତାଙ୍କୁ ଆଶ୍ରୟ କରି ଭୋକରେ ଶୁଖି ଶୁଖି ମରିଯିବ ଗୋଟିଏ ଦରିଦ୍ର ପରିବାର, ଅଥଚ ଦୁଃଖୀ-ଜନ-ବାନ୍ଧବ ବୋଲି ତାଙ୍କ ଡେଙ୍ଗୁରା ପିଟା ଚାଲିଥିବ ! ମାରିବାକୁ ତାରିବାକୁ ଯେ ସମର୍ଥ, ସେ କ'ଣ ଏତେ ନିର୍ଦ୍ଦୟ ହେବା ବିଧି ? ଅଭିମାନରେ ତାଙ୍କ ମୁହଁ ଫଣଫଣ ହୋଇଗଲା । ସେ ତଳକୁ ମୁହଁ ପୋତି ଆସି ଦୁଆର ପାଖରେ ଠିଆହେଲେ । ସବୁ ନୀରବ,

ବୋଧହୁଏ ହାଲିଆରେ ସମସ୍ତେ ଶୋଇଗଲେ, ଅଥବା...ଭୋକ ସହି ନପାରି...ଚମକି ପଡିଲେ ବନ୍ଧୁ ମହାନ୍ତି । ଧଡପଡ ହୋଇ କବାଟ ଠେଲି ପଶିଗଲେ । କାନୁକୁ ଆଉଜି ବସିଥିଲେ ତାଙ୍କ ସ୍ତ୍ରୀ । ତାଙ୍କୁ ମଧ ବାଧିଲାଣି ଅନାହାର କଷ୍ଟ । ସେ ଆଖି ଖୋଲି ଚାହିଁଲେ । ସ୍ୱାମୀଙ୍କ ଅସହାୟ ଅବସ୍ଥା ଦେଖି ତାଙ୍କ ଆଖିକୁ ଲୁହ ଆସିଗଲା ।

"ପିଲେ ଶୋଇଯାଇଛନ୍ତି । ରାତି ତ ହେଲାଣି...ସକାଳେ କ'ଣ ହେଲେ ଦେଖିବା, ଆଉ କ'ଣ କରିବା ? – ତମେ ଗୋଡ ଧୋଇ ପକାଅ । ଆମର କ'ଣ ଆଉ କେହି ହେଲେ ସଖା ସୋଦର ନାହାଁନ୍ତି – ଯାହା ଆଶ୍ରାରେ କାଲି ଓଳିଏ ବଞ୍ଚିଯାଆନ୍ତେ ?"

ତଳକୁ ମୁହଁ ପୀତି ଚାହିଁଲେ ବନ୍ଧୁ ମହାନ୍ତି । ଆଖିରେ ବାମ୍ପ ଘୋଟେଇ ହୋଇ ଆସିଲା । ତାଙ୍କୁ ଲାଗିଲା ଯେ ସେ ଗୋଟାଏ ଶୂନ୍ୟ କୂଅ ଭିତରକୁ ଗଳିପଡୁଛନ୍ତି । ପୁରୁଣା ଅଭ୍ୟାସରେ ଟିକିଏ ହସିଦେଲେ । ତାଙ୍କ ନିଃଶ୍ୱାସରେ ଅସ୍ପଷ୍ଟ ଶବ୍ଦ ବାହାରିଗଲା – ହରି ଇଚ୍ଛା । ସ୍ତ୍ରୀ ମଧ ଶୁଣି ଶୁଣି ରହିଥା'ନ୍ତି ସବୁ କଥାରେ ସ୍ୱାମୀଙ୍କର ଏଇ ଗୋଟିଏ କଥା । କିଛି କହିଲେ ନାହିଁ ।

ବନ୍ଧୁ ମହାନ୍ତି ଅନେଇଁ ରହିଲେ କିଛି ସମୟ ଶୂନ୍ୟକୁ । ତାଙ୍କୁ ଲାଗିଲା ଗୁଡାଏ ନିର୍ଜନ ଅପନ୍ତରା ଶୁଖିଲା ନଡିଆ ତୋଟା ଉପରକୁ ଶଙ୍ଖଚିଲ ଡେଣାପରି ଖଣ୍ଡିଏ ବାନା ଉଡୁଛି । ସମୁଦ୍ର ଗର୍ଜୁଛି କାହିଁ ଦୂରରେ । ତାଙ୍କୁ ଶୁଭିଲା ସେ ଡାକୁଛି । ଏ ସବୁ ମୁହୂର୍ତ୍ତରେ ଅପସରିଗଲା । ଦିଶିଲା ଝଲମଲ ସେ ଆଖି । ଦିଶିଲା କଳାମଚମଚ ସେ ମୁହଁ । ତାଙ୍କ ଦିହ ଶୀତେଇଗଲା । ଏଇ ତ ସେଇ ବନ୍ଧୁ, ଯେ ଭିନ୍ନ ଭିନ୍ନ ରୂପରେ ତାଙ୍କୁ ଅନ୍ନ ବସ୍ତ୍ର ଯୋଗେଇ ଆସିଛି, ବିପଦବେଳେ ଆଢୁଆଳରେ ଥାଇ ରକ୍ଷାକରିଛି, ଦୂରରେ ଥାଇ ସମ୍ଭାଳି ନେଇଛି । ତା' ଦୁଆରେ ଯାଇ ଠିଆହେଲେ ସେ କ'ଣ ଆଶ୍ରା କାଢିନେବ ? ଅସରନ୍ତି ଭଣ୍ଡାର ! ଅଗଣିତ ସେବକ ! ପଥର ଉଆସ ! ଚଉବର୍ଗଦାନୀ ବୋଲି କଥା ରହିଛି । ଅନନ୍ତ କୋଟି ଜୀବଙ୍କ ପଡିଦାତା ସେ । ତାରି ପାଖକୁ ଯିବି । ଯଦି ଭୋକରେ ମାରିବାକୁ ତା'ର ଇଚ୍ଛା, ତା' ଦୁଆରେ ପଡି ପାଞ୍ଚପ୍ରାଣୀ ମରିଯିବୁ । ସେଥିରେ ତା'ର ଯାହା କୀର୍ତ୍ତି ଉଡିବ ଉଡୁ ।

ସ୍ତ୍ରୀ କହିଲେ – "କାନ୍ତାରରେ ତ ଶହ ଶହ ଲୋକ ମରୁଛନ୍ତି – ଆମେ ମଧ ସେମିତି ମରିଯିବା । ଆମେ ନିଅଶ୍ରୀ, ଆମର କେହି ନାହିଁ ।" ତାଙ୍କ ସ୍ୱର କାନ୍ଦ କାନ୍ଦ ।

– କିଏ କହିଲା ଆମର କେହି ନାହିଁ ? – ଜଣେ ଅଛି ! ତା' ପାଖରେ ପହଞ୍ଚି ପାରିଲେ ଆମର ଦୁଃଖ ଆଉ ରହନ୍ତା ନାହିଁ ।

"ସତେ ? ତେବେ ଆଜିଯାଏ କାହିଁକି ତମେ ଏଠିସେଠି ବୁଲୁଛ ? ଏମିତି ଯଦି ଜଣେ ବଡଲୋକ ଆମର ଅଛନ୍ତି ସାହାପକ୍ଷ ହେବାକୁ, ଏଠି ଏ ନିଷ୍ଠୁରଙ୍କ ପାଖରେ କାହିଁକି ହାତ ପତେଇ ଠିଆହେଇଥିବା ! ଏଇ ସକାଳ ପହରୁ ଚାଲ ତାଙ୍କରି ପାଖକୁ ଯିବା ।"

ବନ୍ଧୁ ମହାନ୍ତି କିଛି ସମୟ ଆଖି ବୁଜି ଠିଆହେଲେ । ଗୋଟାଏ କୋହ ସମ୍ଭାଳିନେଇ କହିଲେ, "ତୁ ଆଜି ମୋ' ଆଖି ଫିଟେଇଦେଲୁ । ମୁଁ ମୂଳରୁ ତା'ରି ପାଖେ ଆଶ୍ରା ନଲୋଡି ଅପରାଧ

କରିଛି; ଏଠିସେଠି ଧନ୍ଦିହୋଇଛି । ମୋ' ଆୟତ୍ତରେ ସଂସାର ସମ୍ଭାଳିବାକୁ ହୁବ କରିଛି । ଆଜି ଜାଣି ଭାଗ୍ୟ ଫିଟିଗଲା । ତୋ'ରି କଥାରେ ମନରୁ ଦ୍ୱିଧା ଚାଲିଗଲା । ଆମେ ସମସ୍ତେ ରାତି ପାହିଲେ ବାହାରିପଡିବା । ଦୂର ବାଟ । ମୁଁ ସାନପୁଅକୁ କାନ୍ଧେଇବି । ତୁ କାଖେଇବୁ ସାନଝିଅକୁ । କୁନିଆ ଟିକିଏ ବଳ ପାଇଗଲେ ଚାଲିଯାଇପାରିବ । ଯିବା ତ ! ସ୍ଥିର ହେଲା ଯିବା !! – ଓହୋ, ଆଜିଯାଏଁ ମୁଁ ଅନ୍ଧହୋଇ ବୁଲୁଥିଲି ।... ତୁ ନିଜେ ଯାଇ ଦେଖିଲେ ଜାଣିବୁ, କେତେ ବିସ୍ତାର ତା'ର ଦୟା, କେତେ ବଡପଣ, କେତେ ପ୍ରଭୁପଣ ମୋ' ବନ୍ଧୁର ।"

ବନ୍ଧୁ ମହାନ୍ତିଙ୍କ ମୁହଁଟି ଶୀର୍ଣ୍ଣ । ଥୋଡ ଉପରେ କାଳିଆ ବସରା କିଛି ଗୁଢ । ଗାଲ ଯୋଡିକ ଶୁଖିଲା ଟାକୁଆ । ହେଲେ ଆଖିରେ ଭୟ ନାହିଁ । ଚାହାଣିରେ ଅସହାୟତା ନାହିଁ । ଚିରା ଦୋସତାଟିକୁ କାନ୍ଧରୁ ଖସେଇ ଅଣ୍ଟାରେ ବାନ୍ଧିଦେଲେ । ପଞ୍ଜରା ହାଡଗୁଡିକ ଯା ଭିତରେ ଆହୁରି ପ୍ରାଞ୍ଜଳ ହୋଇ ଦିଶିଲେଣି । ହେଲେ ବୋଝଟାଏ ଓହ୍ଲେଇଯାଇଛି ! – ଓଃ, ଏତେ କାଳେ ଜଗବନ୍ଧୁ ଘରକୁ ସେ ବନ୍ଧପଣେ ଯିବେ । ପରମାଶ୍ରୟରେ ଯାଇ ଠିଆହେବେ ପିଲାକୁଟୁମ୍ବଙ୍କୁ ନେଇ । ରାତି ପାହିଲେ ଯାତ୍ରା । ସଜବାଜ ନହେଲେ ଆଉ ବେଳ କାହିଁ ? ବନ୍ଧୁ ମହାନ୍ତିଙ୍କ ମନ ଉତଲା ଧରିଛି । ସେ ଆଉ ସମ୍ଭାଳି ପାରୁନାହାନ୍ତି; ଥୟ ଧରି ପାରୁନାହାନ୍ତି ।

"ଚାଲ ଉଠ, ବନ୍ଧା-ଛନ୍ଦା କରି ପକେଇବା । ଆଉ ବେଳ ନାହିଁ ।" – ସ୍ୱାମୀଙ୍କ ଅବୁଝା କଥାରେ ସ୍ତ୍ରୀ ଟିକିଏ ହସିଲେ ।

"କ'ଣ ବନ୍ଧା-ଛନ୍ଦା ହେବ ? କ'ଣ ଅଛି ବାନ୍ଧିବାକୁ ? କାଲି ବାହାରିଲା ବେଳକୁ କନାପଟା ଦିଖଣ୍ଡ ଗୁଡେଇଦେଲେ ହେଲା । ପିଲାଙ୍କ ପେଟରେ କ'ଣ ଟିକିଏ ଦାନା ପଡିଯାନ୍ତାକି...ତେଣିକି ଆଉ ଚିନ୍ତା ନାହିଁ ।"

ସତେ ତ, ଭୋକିଲା ପିଲାଙ୍କଅକୁ ନେଇ କେମିତି ଏତେ ବାଟ ସେ ଯିବେ ? ସାତଶପଞ୍ଚାଶ କୋଶ ଭଳି କଥା । ଆହେ ହରି ! ଗୋଟିଏ ନୀରବ ଦୀର୍ଘଶ୍ୱାସ କେବଳ ଶୁଭିଲା । ବନ୍ଧୁ ମହାନ୍ତି ନିଶ୍ଚଳ ହୋଇ ମୁଣ୍ଡରେ ହାତ ଦେଇ ବସିଗଲେ । ଏତିକିବେଳେ ଦୁଆରେ ଜଣେ କିଏ କାଶିଲାପରି ଶୁଭିଲା । ଉଭୟ ଚମକିପଡିଲେ । କିଏ ଆସିଲା ଏତେ ରାତିରେ ? ଅନ୍ନ-କାଙ୍ଗାଳ କେତେ ବୁଲୁଛନ୍ତି ପ୍ରାଣବିକଳରେ । ମଣିଷକୁ ମାରି ଖାଇବା ଜିନିଷ ଛଡେଇ ନେଉଛନ୍ତି । ଆସୁ, କ'ଣ ଅଛି ଯେ ନେବ ? ନାଇଁ – ଯଦି ଖାଲି ମାରିଦେବ...ଦେଉ – ଆମେ ଆଉ କୋଉ ବଞ୍ଚୁଛୁ ଯେ ! – ଭାବିଲେ ବନ୍ଧୁ ମହାନ୍ତି । ମନରେ ଏତେ ଟିକେ ବୋଲି ଦକ ନାହିଁ ।

"କିଏ ?"

"ମୁଁ ପରିଛାଙ୍କ ଘରୁ ଆସିଛି । କବାଟ ଫିଟାଅ – ତୁମକୁ ସେଇଠି ଖୋଜା ପଡିଛି । ତୁମେ କେତେବେଳେ ପଳେଇଆସିଲଣି ।"

ଧଡପଡ ହୋଇ କବାଟ ଫିଟେଇଲେ ବନ୍ଧୁ ମହାନ୍ତି ।

– ହେଇ, ରଖ ଦି'ଅଡା ଛତୁଆ । ଛତ୍ରରୁ ତୁମପାଇଁ ମଗେଇଲାବେଳକୁ ତୁମର ଆଉ

ଦେଖାନାହିଁ । ରଖ-ରଖ-ରଖିବଟି-ମୁଁ ଯାଏ । ମୋର ତେଣେ କାମ । ସାଆନ୍ତାଣୀଙ୍କ କଟାଳ ତୁମ ଘରେ ନେଇ ଦେଇଆସିବାକୁ...ଏଥିରେ ଖଣ୍ଡେ ନବାତ ପକେଇ ଦେଇଛନ୍ତି ନିଜ ହାତରେ । ମା' ସାଆନ୍ତାଣୀ ସ୍ୱୟଂ ଅନ୍ନପୂର୍ଣ୍ଣା ପରା !

ଚିରା ଦୋସତା ପଟେଇଦେଲେ ବନ୍ଧୁ ମହାନ୍ତି । ତାଙ୍କ ପଛରେ ଛିଡା ରହିଥା'ନ୍ତି ତାଙ୍କ ସ୍ତ୍ରୀ । ତାଙ୍କ କାନି ଧରି କେତେବେଳେ ଉଠିଆସି ଠିଆହୋଇଥାଏ କୁନି । ଦି'ଅଡା ଛତୁଆ ଆଉ ଚଉଠେ ନବାତରେ କାନି ନଇଁଗଲା । ଲୁଗା ଝାଡିଦେଇ ସେ ଜଣକ ଭୁସ୍ ଭୁସ୍ ହୋଇ ଅନ୍ଧାର ଭିତରେ ପଶିଗଲା ।

ବନ୍ଧୁ ମହାନ୍ତି ସ୍ତ୍ରୀଙ୍କ ହାତକୁ ବଢେଇ ଦେଇ ସେମିତି ଦୁଆରମୁହଁରେ ଅନ୍ଧାରକୁ ଗହିଁ ଠିଆହୋଇ ରହିଥା'ନ୍ତି । କୋହରେ ନିଃଶ୍ୱାସ ରୁନ୍ଧି ହୋଇଯାଉଥାଏ । ଗୋଟାଏ ଓଳି ପରିଛାଘର ଦୁଆରେ ନିଷ୍ଫଳ ଠିଆ ହେଇ ହେଇ ସେ ପରା ଫେରିଥିଲେ ? ଏଇ ଲୋକଟା ପରା ତାଙ୍କୁ ଘଉଡିଦେଇଥିଲା ?... ତେବେ ? – ସେ ଆଉ ଭାବିପାରିଲେ ନାହିଁ । ଘର ଭିତରକୁ ପଶିଯାଇ ଦେଖିଲେ ଖଣ୍ଡିଏ ମାତ୍ର ପିତଳର ପତୁରି ଥାଳିରେ ଛତୁଆ ବତୁରେଇ ପାଣି ଢାଳୁଛନ୍ତି ସ୍ତ୍ରୀ । ପିଲାଗୁଡିକ କେତେବେଳେ ଉଠି ଘେରିବସିଛନ୍ତି ସେ ଥାଳିକୁ ।

"ଆସ, ହାତ ଧୋଇ ତୁମେ ଆଗ ଖାଇଦିଅ – ସେଇଠୁ ଆମେ ଖାଇବୁ ।"

"ନାଇଁ, ନାଇଁ, ୟେ ପରା ମହାପ୍ରସାଦ । ଚାଲ ସମସ୍ତେ ଏକାଠି ଖାଇବା ।"

ପାହାନ୍ତିଆରୁ ସମସ୍ତଙ୍କର ନିଦ ଭାଙ୍ଗିଗଲା । କେତେଦିନ ପରେ ସାନପୁଅ ପୁଣି ଗୋଟିଏ ଗୋଟିଏ ଚାଲିବାର ଦେଖି ବନ୍ଧୁ ମହାନ୍ତି ତାକୁ କୋଳ ଉପରକୁ ଗୋଟେଇନେଲେ । ଝିଅଯୋଡିକ ମଧ କେତେ ଚଞ୍ଚଳିଆ ଜଣାଯାଉଥା'ନ୍ତି । ମୁହଁଧୋଇ ପୁଣି ଗୁଳାଏ ଲେଖା ମହାପ୍ରସାଦ ଖାଇ ପାଣି ପିଇଲେ ସମସ୍ତେ । ପିଲାଙ୍କୁ ମହାପ୍ରସାଦ ବୋଲି କହିବାକୁ ସୁଖଲାଗୁଥାଏ । ସ୍ତ୍ରୀ ମଧ ତାଙ୍କ ଢଙ୍ଗରେ ଛତୁଆକୁ ମହାପ୍ରସାଦ ବୋଲି ଭାବୁଥା'ନ୍ତି ।

କାକର ସମୟ । ବନ୍ଧୁ ମହାନ୍ତି ପରିବାର ଯାଜପୁର ଛାଡି ବାହାରିଲେ । ଆଗରେ ବଡଝିଅ । ତା' ମୁଣ୍ଡରେ ଛୋଟ ଟୋକେଇଟିଏ । ସେଥିରେ ବଳକା ଚିରା ଲୁଗା ଦ'ଖଣ୍ଡ । ତା' ପଛକୁ ପିଲାଙ୍କ ମା' । ତାଙ୍କ କାଖରେ ସାନଝିଅ । ମୁଣ୍ଡରେ ଛୋଟ ଗଣ୍ଠିରା ଭିତରେ ପିତଳ ଥାଳିଟିଏ; ଏଣୁତେଣୁ ଘରର ଆଉ ଯାହା କିଛି । ସବା ପଛରେ ଦୀନବନ୍ଧୁ ମହାନ୍ତି । ଗୋଟିଏ କାନ୍ଧରେ ସାନପୁଅ – ଆର କାନ୍ଧରେ ଗାମୁଛାରେ ବନ୍ଧାହୋଇଥାଏ ଛତୁଆ 'ମହାପ୍ରସାଦ' ।

ଖରା ଆସିଲା । ଗଛ ମୂଳେ ମୂଳେ ଆଶ୍ରା ନେଉଥା'ନ୍ତି । ଚାଲୁଥା'ନ୍ତି । ସେଇ ଗଛମୂଳେ ଶୋଇଯାଉଥା'ନ୍ତି । ସମସ୍ତେ କିନ୍ତୁ ଖୁସି । ଭୋକ ଆଉ ବାଧୁନାହିଁ । ଦେହରେ ଟିକିଏ ବଳ ବଢି ଆସିଲାଣି । ଏଣେ କିନ୍ତୁ ସମ୍ବଳ ମଧ ସରିଆସିଲାଣି । ଆଉ ଦିନେ ଓଳିଏ ହୁଏତ ଚଳିଯିବ...ତେଣିକି ?

– ଆଉ କେତେ ବାଟ ତୁମ ବନ୍ଧୁଘର ମ ! ଆସି ପାଞ୍ଚଦିନ ଚାଲିଲେଣି ପରା, କେବେ

ପହଞ୍ଚିବା ?

– ହେଇ, ପାଖ ହେଇଗଲା । ଆଉ ଯୋଡାଏ ଦିନ ସରିକି ପହଞ୍ଚିଯିବା ।

ସେଦିନ ରାତିରେ ହାଉଳିଖାଇ ଉଠିବସିଲେ ସମସ୍ତେ । ଦୁମ୍ ଦୁମ୍ ହୋଇ ଦଉଡି ପଳାଇଲେ ଦୁଇଟି କଳାଛାଇ । ଭୟରେ ଚିରଚିରେଇଲେ ପିଲାଏ । ବନ୍ଧୁ ମହାନ୍ତି ଯେମିତି ଥକ୍କା ଖାଇ ବସିରହିଲେ । ଜାଣିଲେ ଯେ ଛତୁଆ ଗାମୁଛାଟିକୁ ଭିଡି ନେଇଗଲେ ଭୋକିଲା ମଣିଷମାନେ । କାନ୍ଦିପକାଇଲେ ଟାଙ୍କ ସ୍ତ୍ରୀ । କେମିତି ସେମାନେ ଆଉ ବଞ୍ଚିବେ ? ଦୁଇଦିନ ବଞ୍ଚିଥିଲେ ସିନା ଯାହା ହବାର ହେଇଥାନ୍ତା ! ବନ୍ଧୁ ମହାନ୍ତି କିଛି ନକହି ବସିଥା'ନ୍ତି । ଯେଉଁ ହାତରେ ଦେଲା, ସେଇ ହାତରେ ନେଇଗଲା – ସେଥିକୁ ତାଙ୍କର କ'ଣ କହିବାର ଅଛି ? ତାଙ୍କୁ ସ୍ଥିର ଦେଖି ସମସ୍ତଙ୍କ ଭରସା ଆସିଗଲା । କ'ଣ ହେଲେ ବ୍ୟବସ୍ଥା ହବ ବୋଲି ବିଶ୍ୱାସ ରଖି ସମସ୍ତେ ଶୋଇଗଲେ । ତାଙ୍କୁ ନିଦ ନାହିଁ । କେମିତି ଯାଇ ପହଞ୍ଚିବେ, ଏ ବୋଝ ଓହ୍ଲେଇ କରଯୋଡହୋଇ କହିବେ – 'ଏ ଭାରା ସମ୍ଭାଳିବାକୁ ମୁଁ ଅଭାଜନ ! ରଖିବୁ ଯଦି ରଖ, ନରଖିଲେ ନାଇଁ ।'

ପାହାନ୍ତିଆରୁ ଉଠି ପୁଣି ଚାଲିଲେ । ମୁହାଁଣିଆ ନଦୀ ପରି ବନ୍ଧୁ ମହାନ୍ତି ସମସ୍ତଙ୍କୁ ପଛରେ ପକେଇ ଚାଲିଯାଉଥା'ନ୍ତି । କେତେବେଳେ ପୁଣି ଗଛଛାଇରେ ତାଙ୍କୁ ଅପେକ୍ଷା କରୁଥା'ନ୍ତି । ଦି'ପହରିଆ ଭୋକ କୌଣସି ପ୍ରକାରେ ଟାଳିଦେଲେ । ସଞ୍ଜବେଳକୁ ପିଲାଏ କାନ୍ଦିଉଠିଲେ । ବନ୍ଧୁ ମହାନ୍ତି ପଥର ପରି ବସିଥା'ନ୍ତି । "ହଉ ହେଲା, ଏମିତି ଯିବାବାଟରେ ଯଦି ପଡି ମରିଯିବୁ – କ'ଣ ଆଉ ଆୟତ ଅଛି !"

ଆଉ ଦିନକର ବାଟ । ଟୋପାଏ ପାଣି ପଡିନାହିଁ କାହାରି ପେଟରେ । ଝିଅଟିର ପାଦ ଫୁଲିଗଲାଣି ଚାଲି ଚାଲି । ସ୍ତ୍ରୀଙ୍କ ପାଦ ଫୁଲିଗଲାଣି । ସେ କହିଲେ – ଆଜି ଆଉ ଯିବାନାହିଁ । ଏଇଠି ଏଇ ଦିନକ ରହି କ'ଣ ଗଣ୍ଡେ ଖାଇଲେ, କାଲିକି ବଳ ଆସିବ – ଚାଲିଯିବା ।

ବନ୍ଧୁ ମହାନ୍ତିଙ୍କର ମଧ ବାରଅଣା ଇଚ୍ଛା ସେଇଆ । ତାଙ୍କ ହାତଗୋଡ ପ୍ରାୟ ଅଚଳ ।

"ଏଠି ତ ଗାଁ ଗଣ୍ଡା ନାହିଁ । ଚାଲୁ ଚାଲୁ କ'ଣ ବ୍ୟବସ୍ଥା ସିନା ହବ ! ଏଠି ବସିଗଲେ ଆମ ପାଖକୁ କିଏ କ'ଣ ଆଣିଦେବ ? ଚାଲ, ଉଠ ।"

ସମସ୍ତେ ଘୋଷାରି ହେଲା ପରି କାନ୍ଦି କାନ୍ଦି ବାଟ ଧରିଲେ । ଆଖିବାଟେ ଜୁଳୁଜୁଳିଆ ପୋକ ବାହାରିଯାଉଥାଏ । ପାଦ ସମସ୍ତଙ୍କର ଘୁଷୁରୁଥାଏ ଧୂଳିରେ । ବଡଝିଅଟି ବାପ ହାତ ଧରି ଓହଳିଲା ପରି ଚାଲୁଥାଏ । ନେହୁରା ହେଲା ପରି ନାକକାନ୍ଦଣାରେ କହୁଥାଏ, "ମୁଁ ଆଉ ପାରିବି ନାହିଁ । ମୁଁ ଯିବି ନାଇଁ । ମୁଁ ମରିଯିବି ।" କାନ୍ଧରେ ପୁଅ ରଡିଛାଡୁଥାଏ ଭୋକରେ । ସ୍ତ୍ରୀ ଲୁଚେଇ ଲୁଚେଇ ସକସକ କାନ୍ଦୁଥା'ନ୍ତି ।... ଓଃ... ପାହୁଣ୍ଡଟିଏ କୋଶେ ପରି ଲାଗୁଥାଏ । ତଥାପି ବନ୍ଧୁ ମହାନ୍ତି ଯନ୍ତ୍ର ପରି ଚାଲୁଥା'ନ୍ତି । କାନ୍ ଭାଁ-ଭାଁ ଡାକୁଚି । ଗୋଡ ଘୁଷୁରୁଚି । ଖାଲି ମନର ଜୋର୍‌ରେ ଭିଡିହୋଇ ଚାଲିଛନ୍ତି ବନ୍ଧୁ ମହାନ୍ତି ପରିବାର ।

ସୂର୍ଯ୍ୟ ବୁଡିଲେ । ସନ୍ଧ୍ୟାର ଅନ୍ଧାର ମାଡିଆସିଲା । ଝିଅ ଆଉ ପାଦେ ଆଗେଇବାକୁ ବଳ

ପାଉନାହିଁ । ଓହଳି ରହିଚି ବାପର ଡେଣା ଧରି । କିଛି ପଛରେ ଯନ୍ତ୍ରଣାରେ ଘୋଷାରି ହୋଇ ଆସୁଛନ୍ତି ତାଙ୍କ ସ୍ତ୍ରୀ ।

ଅଠରନଳା ପାରିହୋଇଗଲା ! ଆଉ ମାତ୍ର କେତେ ପାହୁଣ୍ଡ । ତା'ପରେ ବଡଦାଣ୍ଡ ।

"ଓଃ... ଆମେ ଆସିଗଲେ !"

– "କାଇଁ ! କାଇଁ ?" ବୋଲି ଚରିଆଡେ ଚହିଁଲା ଝିଅ ।

ପାଖକୁ ଲାଗିଆସି ଚହିଁଲେ ସ୍ତ୍ରୀ – "କାଇଁ...କୁଆଡେ ?"

ବନ୍ଧୁ ମହାନ୍ତି ହାତ ଟେକି ଦେଖେଇଦେଲେ ଦକ୍ଷିଣକୁ ।

ବିଶ୍ୱାସ ଆସିଗଲା । କାହୁଁ ବଳ ପାଇଲା କେଜାଣି, ଝିଅ ଚଲିଲା ଟାଉ ଟାଉ । ବନ୍ଧୁ ମହାନ୍ତିଙ୍କ ବୁକୁ ଭରିଉଠୁଥାଏ । ପୁଅ କାନ୍ଧ ଉପରେ କୁଁ କାଁ ହେଉଥାଏ । ସମସ୍ତେ ଯାଇ ପହଞ୍ଚିଗଲେ ଶହ ଶହ ଲୋକଙ୍କ ଗହଳି ଭିତରେ, ଗହଗହ କମ୍ପୁଥିବା ସିଂହଦ୍ୱାର ପାଖରେ ।

କାନ୍ଧରୁ ପୁଅକୁ ଓହ୍ଲେଇଦେଇ ଲମ୍ବଦଣ୍ଡା ହୋଇ ଶୋଇଗଲେ ବନ୍ଧୁ ମହାନ୍ତି । ଅଜସ୍ର ଦୁଃଖର ସତେ ଅବା ଅବସାନ ହୋଇଗଲା ।

"କିଓ, ଏକାଠି ଏମିତି ଶୋଇଲେ ତୁମ ବନ୍ଧୁ ଘରକୁ ଆଉ କେତେବେଳେ ଯିବ ?"

ସେ ଉଠି ଚରିଆଡକୁ ଚହିଁଲେ । ନାହିଁ ନଥିବା ଭିଡ । ଠେଲାପେଲା । ବେତବାଡି । ଆସ୍ତେ ଦୀର୍ଘନିଃଶ୍ୱାସଟିଏ ଫୁଲି ଉଠିଲା ବୁକୁରେ । ମୁହଁ ଫେରେଇ କହିଲେ – "ଟିକିଏ ଆଡେଇହେଇଯିବା । ଭୋଜିଭାତ ପର୍ବ କ'ଣ ଲାଗିଛି । ଟିକିଏ ବେଳ ଦେଖି ଆସିବା ।"

"ମୁଁ ଆଉ କୁଆଡେ ଯିବିନାଇଁ ।" – କହିଲା ଝିଅ, "ମୁଁ ଏଇଠି ମରିଯିବ ।" ତଥାପି ଆଡେଇ ହୋଇଗଲେ କିଛିବାଟ ବନ୍ଧୁ ମହାନ୍ତିଙ୍କ ନିରନ୍ନ ପରିବାର । ସେଇଠି ଆଣ୍ଠେଇପଡିଲେ ସମସ୍ତେ । ପେଜନଳାରୁ ମୁହଁ ଲଗେଇ ଦୁଇଟି ବାଛୁରୀ ପିଉଥା'ନ୍ତି । ଆଞ୍ଜୁଳା ପାତିଦେଲେ ବନ୍ଧୁ ମହାନ୍ତି । ଶୋଷିଲା ଭୋକିଲା ପିଲାଗୁଡିକ ପେଟେ ପେଟେ ପେଜ ପିଇ ଥକା ହୋଇ ଲୋଟିପଡିଲେ । ଆଉ ଚିନ୍ତା ନାହିଁ ! ଏଇ ପାଚେରି ପାଖରେ କନା ପାରିଦବଟି, ପିଲାଏ ଶୋଇଯାନ୍ତୁ । ଆମର ଯାତ୍ରା ସରିଲା । ଏଣିକି ହରି ଇଚ୍ଛା ! ସବୁବେଳେ ତ ସେଇ ଗୋଟିଏ କଥା – ଭାବିଲେ ତାଙ୍କ ସ୍ତ୍ରୀ । କହିଲେ, "କିହୋ, ଏତେ ବନ୍ଧୁ ବନ୍ଧୁ ହେଉଥିଲ – ସେ ବନ୍ଧୁ କାହାନ୍ତି ?" – ତାଙ୍କୁ ଶୁଭିଲା ଟାପରା ପରି । ଆଖି ବୁଜି ହୋଇ ଆସୁଥାଏ ହାଲିଆରେ । କିଛି କହିଲେ ନାହିଁ । ତାଙ୍କୁ କି ଜଣା ସେ କୋଉଠି !

ମେଘନାଦ ପାଚେରି ଦାଢରେ ଦେଖୁ ଦେଖୁ ଶୋଇଗଲେ ପାଞ୍ଚଟି ପ୍ରାଣୀ । ଅଚେତ ପରି ଶୋଇଗଲେ ନିଶ୍ଚିନ୍ତରେ । ଯାତ୍ରା ସରିଗଲା । ଆହୁଲା ଛାଡିଦେଇ ସମୁଦ୍ରରେ ଶୋଇଗଲା ଖଣ୍ଡିଏ ଦଦରା ନାଆ । ଏଣିକି ଜୁଆର ଟେକିଲେ ହଁ, ପବନ ଚୋଳିଲେ ହଁ ।

ରାତି ସେତେବେଳକୁ ଅନେକ । ବଡଦେଉଳରେ ଗହଳି-ଚହଳି ଆଉ ଶୁଭୁନଥାଏ । ଦେଉଳ ଶୋଧ ସରିଥାଏ । ଠାକୁରଙ୍କ ପହଡ ଉତାରୁ କୋଲପ ପକେଇ ସେବକମାନେ

ବାହାରିଯାଇଥା'ନ୍ତି । ନିଛାଟିଆ ବଡଦାଣ୍ଡ ଓସାରି ହୋଇ ଶୋଇଯାଇଥାଏ । ଆକାଶରେ ବିଛେଇ ହୋଇ ରହିଥା'ନ୍ତି ବୈଶାଖ ମାସର ଅସଂଖ୍ୟ ତାରା । ଘରିଆଡେ ଛପ୍ ଛପ୍ ଗୋଟାଏ ରହସ୍ୟ । କ'ଣଟାଏ ଓହ୍ଲେଇ ଆସିବ ସତେ ବା ସ ତାରା-ରାଜ୍ୟରୁ ! କ'ଣଠାଏ ହଠାତ୍ ଆସି ପାଣିଖମ୍ବପରି ଝଲମଲ ଉଭାହୋଇପଡିବ ଏ ଶୁଖିଲା ବାଲି ମାଟି ଉପରେ !

ଦକ୍ଷିଣଦ୍ୱାର ପାଖରୁ ପରିଷ୍କାର ଶୁଭିଲା କିଏ ଜଣେ ଗମ୍ଭୀର ସ୍ୱରରେ ଡାକୁଛି – ବନ୍ଧୁ ମହାନ୍ତି, ହେ ବନ୍ଧୁ ମହାନ୍ତି !" ତାଙ୍କ ନିଦ ଘଉଁକିନା ଭାଙ୍ଗିଗଲା । କିଏ ତାଙ୍କୁ ଏ ଅଜଣା ପୁରୀରେ ନାଁ ଧରି ଡାକିଲା ? କେମିତି ? ବୁକୁ ଦାଉଁ ଦାଉଁ ପଡିଲା ଉଠିଲା । ସ୍ୱପ୍ନ ବୋଲି ସେ ଆଖି ଫିଟେଇଲେ ନାହିଁ ।

ପବନରେ ଚତୁର୍ଦ୍ଦିଗ ଗୁମୁରେଇ ପୁଣି ଶୁଭିଲା – "ଆହେ ବନ୍ଧୁ ! ଆହେ ବନ୍ଧୁ ! ଆହେ, ବନ୍ଧୁ ମହାନ୍ତି !"

"ହଇହେ, ଶୁଣିଲଣି ତମକୁ କିଏ ନାଁଧରି ଡାକୁଛନ୍ତି !"

"ବାୟାହେଲ ! ଆମେ କୋଉ ଗାଈର ଗୋବର ଏଇଠି ? ଶହ ଶହ ଛତିଟେକା ରାଜା ମହାରାଜା ଯେଉଁଠି ଆସି ନଇଁ ପଶୁଛନ୍ତି, ସେଇଠି ଆମେ କିଏ ? କେତେ ବନ୍ଧୁ ମହାନ୍ତି ନ ଥିବେ ଏ ରାଜ୍ୟରେ ? ଆମକୁ କିଏ କାହିଁକି ଖୋଜିବ ?"

ହଁ, ସତକଥା । ମେଘନାଦ ପାଚେରି ତଳେ ପେଜ ପିଇ ଦଦରା କନାଉପରେ ଶୋଇଥିବା ବନ୍ଧୁ ମହାନ୍ତିଙ୍କୁ କାହିଁକି କିଏ ଏ ଅଧରାତିରେ ଖୋଜିବ ? ଉଭୟେ ସେମିତି ଆଖି ବୁଜି ରହିଲେ ।

ପୁଣି ଗୁମୁରିଲା ଆକାଶ, ପବନ, ପୃଥ୍ୱୀ !

"ଆହେ ବନ୍ଧୁ ! ହେ ଯାଜପୁରିଆ ବନ୍ଧୁ !! ଆହେ, ବନ୍ଧୁ ମହାନ୍ତି !!!"

ଧଡପଡ ହୋଇ ଉଠି ବସିଲେ । ମୁଣ୍ଡ ଘାଉଁରାଇଦେଲା । ଏଥର ଆଉ ସନ୍ଦେହ ନାହିଁ... ତାଙ୍କୁ ଖୋଜାପଡିଛି ! କାହିଁକି, କ'ଣ ଦୋଷ କଲେ କି ସେ ? ଗଜପତିର ଛାଟିଆ କ'ଣ ଖୋଜୁଛି ତାଙ୍କୁ ବାନ୍ଧିନେବବୋଲି !

ଆଖିମଟକା ମାରି ସେ ଚାହିଁଲେ । ଖଣ୍ଡେ ଦୂରରେ ତରା-ଆଲୁଅରେ କେହି ଜଣେ ଠିଆହୋଇଥା'ନ୍ତି । ପଞ୍ଝହତା ମଣିଷ । ମହମହ ବାସୁଥା'ନ୍ତି ଛତା ମାଳପରି, ଚନ୍ଦନ ତୁଳସୀପରି, କାନିକା ବେସର ମହୁର ପରି, ଗୁଆଘିଅ, ଛେନା ତାଡିଆ, ସରପୁଳି ମାଣୁଅ ପରି !! ତୋଳି ଧରିଛନ୍ତି ଦୁଇ ହାତ ଓସାର ଏଡେ ବଡ ଥାଳି ।

"ତୁମପାଇଁ ଭୋଗ ଆସିଛି, ବେଗି ନିଅ !"

"ମୋ ପାଇଁ ?" ମନକୁ ମନ କହି ବିମୂଢ ବିମୋହିତ ଅବସ୍ଥାରେ କେତେବେଳେ ଥାଳି ଟେକି ନେଇଛନ୍ତି ତାଙ୍କୁ ଜଣାନାହିଁ । ସେ ଜଣକ ଗହଗହ ଟିକିଏ ହସିଦେଇ ଅପସରି ଯାଇଛନ୍ତି ।

ପିଲାଙ୍କ ମଝିରେ ଥାଳି ଥୋଇଦେଲେ ବନ୍ଧୁ ମହାନ୍ତି । ପିଲାଏ ଝାଡିଝୁଡି ହୋଇ ଘେରିଗଲେ ସେ ଶଗଡ ଚକ ପରି ଥାଳିକୁ । ବାସ୍ନାରେ ଆଗ ସମସ୍ତଙ୍କ ପେଟ ପୂରିଗଲା । ପିଲାଗୁଡିକ ନାକ

ଲଗେଇ ଶୁଙ୍ଘି ଦେଉଥା'ନ୍ତି; କିନ୍ତୁ ହୁବ ପାଉନଥା'ନ୍ତି ସେଥିରୁ ପୁଳାଏ ଲେଖାଁ ନେଇ ପାଟିରେ ପୂରାଇଦେବା ପାଇଁ । ତାରା ଆଲୁଅରେ ବନ୍ଧୁ ମହାନ୍ତି ବାରିପାରୁନଥା'ନ୍ତି ସେ ବିସ୍ତୀର୍ଣ୍ଣ ଭୋଗ ଥାଳିରେ କ'ଣ ସବୁ ଦିବ୍ୟ ପଦାର୍ଥମାନ ବଢାହୋଇଥାଏ । ଆଖି ବୁଜି ଉଷୁମ ମଧୁର ବାସ୍ନା ଗୁଳାଟିଏ ନେଇ ସେ ମୁଣ୍ଡରେ ଲଗାଇଲେ । ସେଇଠୁ ଅମୃତ ପାଇଲା ପରି ତାକୁ ସେବା କଲେ । ସମସ୍ତେ ତେଣିକି ତରିତରି, ଥଙ୍ଗେଇ ଥଙ୍ଗେଇ ଅଳ୍ପ ଅଳ୍ପ ପାଟିରେ ଦଉ ଦଉ ମାଟିଗଲେ । ଦୁର୍ଭିକ୍ଷର ଧପଧପ କ୍ଷୁଧା, ଦେବଭୋଗ୍ୟ ଅମୃତ ମଣୋହିର ସ୍ୱାଦ-ବିଭୋର ଗଭୀର ତୃପ୍ତି ଭିତରେ ବନ୍ଧୁ ମହାନ୍ତି ମହାପ୍ରସାଦରେ ଆକଣ୍ଠ ମଜ୍ଜିରହିଥା'ନ୍ତି ଅନେକ ବେଳଯାଏ । ତାଙ୍କୁ ଲାଗିଲା, ଅସୀମ ଆନନ୍ଦର ଗୋଟାଏ ଯୁଗ ପାରିହୋଇଗଲା । ଭୁରି ଭୋଜନ ପରେ ତଥାପି ଥାଳିରେ ବଳକା ରହିଗଲା କିଛି କାନିକା, ଖିରି, ସରପୁଳି, ଆଉ ନାଡି ବେସର । ସାନପୁଅ ଧଇଁସଇଁ ହୋଇ ସେଇଠି ଗଡିପଡିଲା । ଦୁଇ ଝିଅ ପରମ ଆନନ୍ଦରେ ହାତ ଗ୍ଭଟିଦେଇ ଶୋଇଗଲେ ।

"କେଡେ ଅପୂର୍ବ ଜିନିଷ ହେଇଚି ହେ ଏସବୁ! ୟାକୁ ରଜାଘରେ ଖାଉଥିବେ ପରା ?" ହାତ ଗ୍ଭଟି କହୁଥା'ନ୍ତି ସ୍ତ୍ରୀ – "ଆମକୁ କ'ଣ ସବୁଦିନ ଏମିତି ମିଳିବ ?"

ବନ୍ଧୁ ମହାନ୍ତିଙ୍କର ହଠାତ୍ ଚେତା ଆସିଲା ଯେ ଥାଳି ପାଇଁ ସେ ଆହୁରି ଠିଆହୋଇଥିବେ । ସେ ତରବରରେ ଗାମୁଛାକୁ ତୁଛେଇ ଦେଇ ଥାଳି ଟେକିଲେ । ଓଃ, କି ଭାରି ସତେ ! ବନ୍ଧୁ କଷ୍ଟରେ ପଥର ଘୋରଣା ଟେକିଲା ପରି ତାକୁ ନେଲେ । ନିଛାଟିଆ ରାସ୍ତାରେ କେହି କୁଆଡେ ଦିଶିଲେ ନାହିଁ । ଦକ୍ଷିଣ କବାଟ ପଥର ପାଚେରି ପରି ନିବୁଜ ।

"ଆହେ ମାଲିକେ ! ଥାଳି ନିଅ !" ବୋଲି ହୁରିକଲେ ବନ୍ଧୁ ମହାନ୍ତି ।

"ତୁମ ଥାଳି ନେଇଯାଅ ହେ କୋଠଘର ସାଆନ୍ତେ !" – "କେହି କୁଆଡେ ଉଁ ଚୁଁ କରିବାକୁ ନାହିଁ । ହଉ, ସେ ଆସି ବଳେ ନେଇ ଯିବେ ନାହିଁ କି, ବାହାରିଆସ ।" – କହିଲେ ସ୍ତ୍ରୀ । ଚିରା କନା ଗୁଡେଇ ସେ ଥାଳି ଉପରେ ମୁଣ୍ଡ ଦେଇ ରାତି ବିତେଇଲେ ପରମ ଆଶ୍ୱସ୍ତିରେ । ପ୍ରଭୁର ବନ୍ଧୁପଣ ପ୍ରତେ ହେଉନଥାଏ ବନ୍ଧୁ ମହାନ୍ତିଙ୍କୁ । ସେ ଚକିତ ହୋଇଯାଇଥା'ନ୍ତି । ସେ ବିମୂଢ଼ ନିର୍ବାକ ହୋଇଯାଇଥା'ନ୍ତି ।

ସକାଳ ପାହିଲା । ଶାନ୍ତ ସନ୍ତୁଷ୍ଟ ସକାଳଟିଏ ।

ହଠାତ୍ ଗୋଳ ହେଲା ତାଙ୍କ ପାଖରେ । ବନ୍ଧୁ ମହାନ୍ତି ତଥାପି ଶୋଇଥା'ନ୍ତି । ତାଙ୍କ ପିଲାଏ ଶୋଇଥା'ନ୍ତି । ତାଙ୍କ ମୁଣ୍ଡ ତଳୁ ଥାଳିଟାକୁ କିଏ ଓଟାରିନେଇ ଅଭାଷିଆ ଗୁଡାଏ ଗାଳିଦେଲା । ସେ ଧଡପଡ ହୋଇ ଉଠି ବସିଲାବେଳକୁ ତାଙ୍କୁ ଦୁଲ୍‌ଦାଲ୍ ମାଡ ମାରିଦେଇଗଲେ ଗୁଡାଏ ଅବୁଝା ମଣିଷ । କିଏ ସେମାନେ ?

"ମୁଖି ମାରି ତା' ଦାନ୍ତ ପୁଞ୍ଜାଏ ଝାଡିଦିଅ । ବେହିପୁଅ ଚୋରର ସାହସ ଦେଖ ? ଠାକୁରଙ୍କ ରତ୍ନଥାଳି ଆଣି ମୁଣ୍ଡତଳେ ଦେଇ ଶୋଇଚି ! ମାର, ବାନ୍ଧ, ଘୋଷାରିନିଅ !"

ସେମାନେ ସେଇଭଳି ତାଙ୍କୁ ମାରିଲେ, ବାନ୍ଧିଲେ, ଘୋଷାରି ନେଇଗଲେ । ତାଙ୍କ କଥାକୁ

କାନ ଦେଲେନାହିଁ । ପିଲାଙ୍କ ବୋବାଳି – ତାଙ୍କ କାନ୍ଦଣାକୁ କର୍ଣ୍ଣପାତ୍ କଲେନାହିଁ । ଗଲାବେଳେ ପଛକୁ ଚାହିଁ ବନ୍ଧୁ ମହାନ୍ତି ପାଟି ଶୁଣେଇ କହିଲେ, "ଦମ୍ଭ ଧରି ଥାଅ । ସେ ଅବଶ୍ୟ ବୁଝିବ ! ଅବଶ୍ୟ ବୁଝିବ ।"

ଠିଆଗୋଇଠା ତାଙ୍କ ଅଣ୍ଟାରେ ବସିଯାଉଥାଏ । ଦୁଲୁକୁଥାଏ ଶ୍ରୀମନ୍ଦିର । ବଜ୍ରପରି ବିଧା ପଡୁଥାଏ ପିଠିରେ । କମ୍ପୁଥାଏ ରତ୍ନସିଂହାସନ ।

ବନ୍ଧୁ ମହାନ୍ତି କେବଳ ଚମକି ଚମକି ଡାକୁଥା'ନ୍ତି, "ହରି, ହରି !" 'ଜଗବନ୍ଧୁ !' ଦୀନବନ୍ଧୁ !"

"ଗାରଦ ଭିତରେ କେତେବେଳକୁ ତାଙ୍କର ଚେତା ଆସିଲା । ହାତରେ ବେଡ଼ି । ଗୋଡରେ ଶାଙ୍କୁଳି । ଲୁହା କବାଟ ଆଗରେ ଜଗୁଆଳି । ତାଙ୍କର କୋହ ଉଠିଲା । କେତେ ଭରସାରେ ଆଶ୍ରା କରିଥିଲି – କ'ଣ ହେଲା ଶେଷକୁ ? ଏମିତି କ'ଣ ବନ୍ଧୁ ସଙ୍ଖୋଳା ହୁଏ ? ହେଲା ଅବା ବନ୍ଧୁ ପଣକୁ ଭାଜନ ନହେଲି, ତା' ବୋଲି ମାଡ ମାରିବେ, ଗାଳି ଝିଙ୍ଗାସ ଦେବେ ଅକାରଣେ ! ଅନାଥ କୁଟୁମ୍ବ ନିରାଲମ୍ବ ନିରାଶ ହୋଇଯିବେ ! – କାହିଁକି ? କି ଦୋଷ କରିଥିଲି ? କିବା ଅପ୍ରାଧକୁ ଏ ଦଣ୍ଡ ?"

ଥାଳି ଚୋରର କଥା ଶୁଣିଲା ବେଳଠୁ ଗଜପତିଙ୍କୁ ନିଦ ନାହିଁ । ସାତପ୍ରସ୍ତ ଭେଦି ଭଣ୍ଡାର ଘରୁ ସେ ବାଉନଭାର ସୁନାଥାଳି ନେଲା କେମିତି ? ସେ ସହଜ ଚୋର ନୁହେଁ । – ପାହାନ୍ତିଆ ପହରକୁ ଛାଇ ନିଦ ଲାଗିଥାଏ । ଅନ୍ଧାରର ସମୁଦ୍ରଟାଏ ଆଡେଇଦେଇ ଉଭାହୋଇଗଲେ ଠାକୁର – "କିରେ ରାଉତ, ମୋ' ବନ୍ଧୁକୁ ମୁଁ ସଙ୍ଖୋଳିଲି, ତୋର କିସ ଗଲା ? ମୋ' ସୁନାଥାଳିରେ ପରଷିଲି, ତୋ' ବୋପାର କିସ ଗଲା ? ମୋ' ବନ୍ଧୁକୁ ମୋ' ଆଗରେ ମାଡ ମାରିବାକୁ ତୁ କିଏ ? ବେଶୀ ବଳୁଆ ଦେଖାଉଛୁ ? ଦେଖିବୁ ଭୁଜ-ବିକ୍ରମ ?"

ଚମକି ପଡିଲା ପରି ଉଠି ବସିଲା ଗଜପତି । ଆକାଶ ଉଆସ ଭୂଇଁ ଦୁଲୁ ଦୁଲୁ କମ୍ପୁଥାଏ । ଗହଗହ ଚୁଆ ଚନ୍ଦନ ବାସୁଥାଏ ତା' ପହୁଡରେ । "କି କରିବି" କହି ଡେଇଁପଡିଲା ପଲଙ୍କରୁ ଗଜପତି । କେଶବାସ ଅସମ୍ଭାଳ, ଧାଇଁଲା ଉଆସରୁ । ପଛରେ ଗୋଡାଇଲେ ଭୟରେ ବିଶାଶହେ ଅଙ୍ଗରଖା ପାଇକ । ଗଜପତିର ଅସମ୍ଭାଳ ଅବସ୍ଥା । ଗାରଦ ଲୁହା କବାଟରେ ଯାଇ ମୁଣ୍ଡ ପିଟିଦେଲା । 'ଫିଟାଅ' 'ଫିଟାଅ' ବୋଲି ଗର୍ଜିଲା କ୍ରୋଧରେ । ଜଗୁଆଳ ଫିଟେଇଲେ କୋଲପ । ନିମେଷକରେ ଶିକୁଳି ଫିଟିଗଲା, ବେଡି ଫିଟିଗଲା । ବନ୍ଧୁ ମହାନ୍ତିଙ୍କ ପାଦତଳେ ଦାନ୍ତରେ ତିରଣ ଧରି ପଡିଲା ଗଜପତି ।

"ଅପରାଧ କ୍ଷମା ହୋଇଯାଉ ! କିଏ ତୁମେ ଦିବ୍ୟପୁରୁଷ, ଠାକୁରଙ୍କ ବାନ୍ଧବ ବୋଲି କେହି ଚିହ୍ନିପାରିଲେ ନାହିଁ ।"

ସ୍ତବ୍ଧ ଚକିତ ହୋଇ ଚାହିଁଥା'ନ୍ତି ବନ୍ଧୁ ମହାନ୍ତି । ତାଙ୍କୁ ପାଟଯୋଡ ପିନ୍ଧେଇ ଦିଆଗଲା । ହାର କୁଣ୍ଡଳ ମଣ୍ଡି ଦିଆଗଲା । ଶିରୋପା ବାନ୍ଧି ଦିଆଗଲା । ସିଂହଦ୍ୱାର ପାଖରେ ପହଞ୍ଚିଲାବେଳକୁ ସକାଳ ପ୍ରହର । ତିନୋଟି ପିଲା, ତାଙ୍କ ସ୍ତ୍ରୀ ପାଟ ମଣ୍ଡଣିରେ ଚିହ୍ନି ହେଉନାହାନ୍ତି । ପାଟ ଜାମା

ଉପରେ ଟିମିର ପେଟଟିକୁ ଆଉଁସି ତାଙ୍କ ସାନପୁଅ ତାଙ୍କୁ ଚାହିଁ ହସିଦେଲା । ସେ ହସିଦେଲେ । ଗଜପତି ପାଦତଳେ ଭୂଇଁ ଥୟ ହୋଇଗଲା । ପ୍ରଳୟରୁ ବର୍ତ୍ତିଗଲା ପୃଥ୍ୱୀ । ଗରୁଡ ପଛପଟେ ମଙ୍ଗଳ ଆଳତି ଦର୍ଶନକୁ ଧାଡିବାନ୍ଧି ଠିଆହେଲେ ବନ୍ଧୁ ପରିବାର । ପଛରେ ଠିଆହେଲେ ଗଜପତି । ଆଳତି ଟେକିଲେ ପୂଜାପଣ୍ଡା । ଗହଗହ କମ୍ପିଲା ନୀଳାଚଳ । ସାଷ୍ଟାଙ୍ଗ ପ୍ରଣିପାତ ହୋଇ ପଡିଥା'ନ୍ତି ବନ୍ଧୁ ମହାନ୍ତି । ଗଜପତି କହୁଥା'ନ୍ତି ବିନୟରେ, "ଆଜିଠାରୁ ଠାକୁରଙ୍କ ପାତ୍ତିକାର ହେବାକୁ କୃପା କରିବେ ମହାତମା । ଯାବତ୍‌ଚନ୍ଦ୍ରାର୍କେ ପୁରୁଷାନୁକ୍ରମେ ରତ୍ନଥାଳି ଭୋଗ ପାଉଣା ସୀଉକାର ହେବେ । ବନ୍ଧୁପଣେ ଜଗବନ୍ଧୁଙ୍କ ସେବାକୁ ସମ୍ମତି ଦେବାହେବେ ।"



# ଦୁର୍ଦ୍ଦିନ

ଭଡାଘରେ ବଡପାଟିରେ କଥା କହିବା ମନା; କାରଣ ଅଧାକାନ୍ଥ ଆରପଟେ ଘରମାଲିକର ରୋଗିଣା ଘୁମ ତୁହାକୁତୁହା ଭାଙ୍ଗିଯାଏ । ସେ କିନ୍ତୁ ରାତିଅଧରେ ହେମଦସ୍ତାରେ ଘଣ୍ଟାଏ ଲାଗି ପାନ ଗୁଣ୍ଡକରେ । ପାଞ୍ଚଥର କବାଟ ଫିଟାଏ ଏବଂ କିଳେ ।

ଜୀବନର ଦେଢଲକ୍ଷ ଅଭିଳାଷକୁ ମାତ୍ର ତିନୋଟି କୋଠରି ଭିତରେ ଭାଗ ବାଣ୍ଟିଦେଇ ପ୍ରାୟ ପ୍ରତିଦିନ ସକାଳୁ ଶୁଣିବାକୁ ପଡେ, "ସେ ପାଇଖାନା ପାଖ ଘରଟାକୁ କାହିଁକି ରୋଷେଇଶାଳ କରୁନାହାନ୍ତି ? ଆଜିକାଲି ସମସ୍ତେ କୋଇଲା ଚୁଲି କଲେଣି । ଗ୍ୟାସ୍ ଚୁଲିରେ ମଧ ଧୂଆଁ ହେଉନାହିଁ । ଏଥିରୁ ଗୁଡାଏ କାଠ ଜାଳିଲେ କ'ଣ ଚଳିବ ? ବର୍ଷକୁ ତ ଘରେ ଆଉ ପାଞ୍ଚଥର ଚୂନ ମଡେଇ ହେବନାହିଁ!"

"ମଶାରିଦାନ ଯଦି ନାହିଁ, ତା'ହେଲେ ଦୁଇ ଦିନ ଭିତରେ କରେଇଆଣନ୍ତୁ । ପ୍ରତିଦିନ କଣ୍ଟା ପିଟି କାନ୍ଥଟାକୁ ନଷ୍ଟ କଲେ କେମିତି ହେବ ?"

"ପିଲାପିଲିଙ୍କୁ ଠିକ୍‌ଭାବରେ ଖାଇବା ପିଇବାକୁ ଦେଲେ ସେଗୁଡାକ ଏମିତି ବୋବାଳି ଛାଡିବେ ନାହିଁ । ଯଦି ଅଣ୍ଟୁ ନାହିଁ, ତାହାଲେ ଦରମାକୁ ଚାହିଁ ଛୋଟ ଘର ଖଣ୍ଡିଏ ଖୋଜିନିଅନ୍ତୁ – ଏଠି ଆପଣ ଚଳିପାରିବେ ନାହିଁ ।"

ହୁଏତ ଚାରିଟାବେଳେ ପିଲାମାନେ ଦାଣ୍ଡରେ ଖେଳୁଥିବା ଅବସରରେ ଅଫିସ୍‌ରୁ ଆସି ଟୁଟୁବୋଉ ସାଙ୍ଗେ ଟିକେ କଫି ଖାଉଥିବାବେଳେ ଅଧାକାନ୍ଥ ଉପରୁ ଗୋଟିଏ ଜୁଳୁଜୁଳିଆ ମୁହଁ ଏ ଆଡକୁ ଅନେଇଁ କହେ, "ଆଜି ତିନି ତାରିଖ ହୋଇଗଲା । ବାବୁ ପଚାରୁଥିଲେ ଆପଣଙ୍କ ଦରମା ମିଳିଲାଣି କି ନାହିଁ ।" ୟା'ପରେ ସେ ମୁହଁଟି ହଠାତ୍ ଅଧାକାନ୍ଥ ତଳକୁ ଗଳିପଡେ ।

ସେ ଯେଉଁ ଡେଙ୍ଗାଡାହାଳିଆ ଦାନ୍ତୁରାବାବୁ ଜଣକ ସେଇ ଘରେ ଭଡା ଥାଆନ୍ତି, ତାଙ୍କ ନାଁ କଣଟି ? ସେ କେଉଁଠି ଚାକିରି କରନ୍ତି ? ତାଙ୍କ ଦରମା କେତେ ?... ହଉ ନହେଲା ନାହିଁ – ସେଥିରୁ କ'ଣ ମିଳିବ ।

ସେ ବାବୁଙ୍କର କିନ୍ତୁ ଘରର ଡିଜାଇନ ବିଷୟରେ ଭାରି ବଢିଆ ଧାରଣା ଅଛି । ସେ ଦିନ କହୁଥିଲେ କେମିତି ଖଣ୍ଡେ ପ୍ରଶସ୍ତ ଜାଗା ପାଇଲେ ସେଇଠି ସେ ଗୋଟିଏ ଏକତାଲା ପକ୍କା କରନ୍ତେ । ଘର ଆଗରେ ଅଧେ ଜାଗା ବଗିଚା ହୁଅନ୍ତା । ସେଇଠି ନିତି ସକାଳୁ ଭାର ଭାର ଫୁଲ

ଫୁଟୁଥାନ୍ତା । ସେ କୁଆଡେ ଖାଲି ଦେଶୀ ଫୁଲ ଲଗାନ୍ତେ । ଡାହାଳିଆ ଏବଂ ଜିନିଆରେ କେବଳ ବାଡ ହୁଅନ୍ତା । ତାଙ୍କ ମତରେ ହେନା, ଯାଈ, ଯୂଇ, ମଲ୍ଲୀ, ଟଗର, ଚମ୍ପା, ସୁଗନ୍ଧରାଜ ଆଉ ଗଜଦନ୍ତ ହେଲେ ଫୁଲମାନଙ୍କ ଭିତରେ ରଜା । ବାକି ଆଖି ଭେଲିକିବାକୁ ରଙ୍ଗ ଟହଟହ ବିଚିତ୍ର ବର୍ଣ୍ଣର ଗଣ୍ଡେ ନାହିଁ । ଫୁଲର ଗୋଟେ ଗୋଟେ ଗହଳିଆ କୁଞ୍ଜ ମଝିରେ ମୋଟା ଗାଲିଚା ବିଛେଇଲା ପରି ନେଳି ଜଗଜଗ ଦୂବ ଘାସର ଗଦି । ବଗିଚା ମଝିରେ ଧଳା ମୁରୁମ୍‌ର ଚଉଡା ରାସ୍ତା । ତା' ଦି' କଡରେ କାକର ଚିକ୍‌କଣ ସଳଖ ସଳଖ ଦୁଇଧାଡି ଗୁଆ ଗଛ । ଗାଡି ରହିବା ପାଇଁ ପ୍ରଶସ୍ତ ପୋର୍ଟିକୋଟିଏ । ଡ୍ରଇଁ ରୁମ୍‌ଟି ବେଶ୍ ବଡ । ଗାଲିଚା ଖୁବ୍ ମୋଟା । ଶୋଇବା ବଖରାଗୁଡିକରେ ଖୋଲା ଖୋଲା ବଡ ବଡ ଝରକା । ହାଲୁକା ଶୁଆପକ୍ଷିଆ ରଙ୍ଗର କାନ୍ଥ...ଏହିପରି ତାଙ୍କର ଅନେକ ସ୍ୱପ୍ନ । ତାଙ୍କର କବିବନ୍ଧୁମାନଙ୍କ ପାଇଁ ଗୋଟିଏ ଅଲଗା ବଖରା ମଧ୍ୟ ସେଥିରେ ଥିବ । ତା' ଗଦି, ଚାଦର, ପରଦା ସବୁ ନେଳି ସମୁଦ୍ରର ଢେଉରେ ରୁପାଫୁଲ ଫୁଟିଲା ପରି ଉଶ୍ୱାସିଆ; ପବନରେ ଭାସି ଉଡିଗଲା ପରି ରଙ୍ଗ । ଆହୁରି ଗୋଟାଏ ରହିବ କାରିଗରୀ ଘର । ବିଭିନ୍ନ ପ୍ରକାର ପଥର – ଉଛ ଉଛ, ଦେଉଳିଆ, ଚକା, ଖମ୍ବୁଆ, କଳାମୁଗୁନି, ଛିଟମୁଗୁନି, ସଙ୍ଗଜରାତ୍ ଆଉ ଶଙ୍ଖମଲ୍‌ମଲ୍ ପଥରର ଧାଡି ଲାଗିଥିବ । ଖୁବ୍ ଦାନ୍ତୁଆ, ଟାଣପାଣି-ଦିଆ ଛେଣି ମୁଗୁର ଥୁଆହୋଇଥିବ । ଆଉ ଗୋଟିଏ ପଟେ ସାଗୁଆନ, ଶିଶୁଆ କାଠର ପୀଢ ଉପରେ ଅଦ୍ଭୁତ କଳାକୃତି ପଟେ ସାଗୁଆନ, ଶିଶୁଆ କାଠର ପୀଢ ଉପରେ ଅଦ୍ଭୁତ କଳାକୃତି ସଜା ହୋଇ ରହିଥିବ । ବାଡିଆଡେ ଗହଳିଆ ନୁଆଣିଆ କଲମୀ ଆମ୍ବଗଛର ବାଡ । ଲିଚୁ, ପିଜୁଳୀ, ସପେଟା, ଜାତି ଜାତି ଫଳଗଛର ବାଗାନ୍, ମଝିରେ ପଥରବନ୍ଧା ପୋଖରୀ । ପୋଖରୀକୁ ଘେରି ନଡିଆଗଛ । ବହୁ ପ୍ରକାର ପକ୍ଷୀଙ୍କର ବସା-ଲେଉଟାଣି ଡାକରେ ବୋଝେଇ ହେଉଥିବା ନିରୋଳା ସନ୍ଧ୍ୟା...

ସେ କିନ୍ତୁ ଏଇ ତିନିବଖରିଆ ଘରେ ଭଡାଥା'ନ୍ତି, ପଇସା ଅଣ୍ଟେ ନାହିଁ ବୋଲି ଛୋଟ ଘରଟିଏ ଖୋଜିବୁଲୁଥା'ନ୍ତି ।

ଆଉ ଦିନେ ସେ କହୁଥିଲେ ଯେ, ଏବେ ମଧ୍ୟ କୁଆଡେ ତାଙ୍କ ଗାଆଁରେ ତାଙ୍କ ଗୋସେଇଁବାପ ଅମଳର ମାଙ୍କଡାପଥରର ସାହାଲା ଘର ସେମିତି ଠିଆ ହୋଇ ରହିଛି । ଛାତ ଭୁଷୁଡିଗଲାଣି । କାନ୍ଥ ଉପରେ ଗଛପତ୍ର ଉଠିଗଲାଣି । ସାହାଣ ପଥରର ଅଗଣାକୁ ଘୋଡେଇ ପକେଇଲାଣି ଅନାବନା ଗଛର ବଣ । ତାଙ୍କ ଶଙ୍ଖମୁହଁ କିଆରିରେ ଏବେ ମଧ୍ୟ ମୁଗୁରା ବସେଇ ଗାଁ ଟୋକାଯାକ ଭାର ଭାର ମାଛ ଧରନ୍ତି । ତାଙ୍କ ପୁରୁଣା ଆମ୍ବତୋଠାରେ ଏବେ ମଧ୍ୟ ମଣିଷ ମୁଣ୍ଡ ପରି ବେଲୁଆ ଆମ୍ବ ଡାଳ ନୁଆଇଁ ପକାଏ ।

ସେ କିନ୍ତୁ ପେଟ ପୋଷିବାକୁ କ'ଣ ଖଣ୍ଡେ ଚାକିରି କରୁଛନ୍ତି । ବିରାଡି ତା' ପିଲାଙ୍କୁ ସାତଗାତ କଲାପରି ଚାରିମାସକୁ ଥରେ ଲେଖାଁ ବଦଳି ହୁକୁମ ପାଇ ସଜ ହୋଇ ବାହାରିପଡନ୍ତି । ସେଇ ମଉକାରେ ତାଙ୍କ ପିଲାଏ ଭଲ ଜାମାଖଣ୍ଡିଏ ଲେଖାଁ ପିନ୍ଧି ଦାଣ୍ଡଦୁଆରେ ଧାଡିବାନ୍ଧି ଠିଆ ହୋଇଯାନ୍ତି । ତାଙ୍କର ଛୋଟ ବସାଟିକୁ ଏଠୁ ଭାଙ୍ଗିନେଇ ଆଉ କୌଣସି ଅଜଣାଆ ସ୍ଥାନରେ ପୁଣି

ବାନ୍ଧିବାକୁ ସମୟ ଲାଗେ ନାହିଁ । ଏଇଟା ତାଙ୍କର ଦେହସୁଦ୍ଧା ଘଟଣା ।

ସେଇ ଯେଉଁ ଡେଙ୍ଗାଡାହାଳିଆ ଦାନ୍ତୁରା ବାବୁ ଜଣକ ଭଡାଅଛନ୍ତି, ତାଙ୍କ ନାଁ କଣଟି ? – ସେଦିନ ଢୁ-ଢୁ ପାଣି କୁଢେଇଲାବେଳେ ବର୍ଷା-ବତାସିକୁ ଆଡିପତେଇ ମେଲା ଦେହରେ ଧାଇଁଥା'ନ୍ତି । ଲୁଙ୍ଗିଖଣ୍ଡକ ବରକୋଳିଆ ପାଣିଚୋପା ମାଡରେ ଦେହରେ ଲାଖିଯାଇଥାଏ । ~~ଲୁଙ୍ଗିଖଣ୍ଡକ ବରକୋଳିଆ ପାଣିଚୋପା ମାଡରେ ଦେହରେ ଲାଖିଯାଇଥାଏ~~ । ପିଣ୍ଡାରେ ଗୋଡ ଟେକି ବସିଥିବା, କବାଟ ଝରକା ଅଧା ମେଲାକରି ଚାହିଁଥିବା ସେ ସାଇର ଅନେକେ ତାଙ୍କୁ ଅନେଇଲେ; କିନ୍ତୁ କିଛି କହିଲେ ନାହିଁ । ତାଙ୍କର ଆଖି ଦି'ଟା ତରାଟିହେଇ ରହିଥାଏ । ତଳପାଟି ଓହଳି ପଡିଥାଏ । ହାତରେ ଆଗକୁ ଆହୁଲା ମାରିବା ପରି ସେ ସେଇ ବର୍ଷା ବତାସିରେ ଧାଇଁଥା'ନ୍ତି ।

ତାଙ୍କର କିଛି ପଛରେ ଦୁଇ ତିନୋଟି ପିଲା ସେମିତି ଓଦା ସରସର ହେଇ ଧାଇଁଥା'ନ୍ତି । ଦୁଇଟା ଟୋକା କ'ଣ ଘଟଣା ଜାଣିବାକୁ ଲୁଗା ପାଇକଛା ମାରି ଛତା ଧରି ରାସ୍ତାକୁ ଓହ୍ଲେଇପଡିଲେ । ଦେଖୁ ଦେଖୁ ଦଶ ପନ୍ଦର ଜଣ ସେମିତି ଧାଇଁଲେ । ମଝିରେ ମଝିରେ 'କ'ଣ ହେଲା' ବୋଲି ଶୂନ୍ୟକୁ ପଚାରିଦେଇ ଧାଇଁଥା'ନ୍ତି । କେହି ଉତ୍ତର ଦେଉନଥାଏ ।

ସାରା ସହରର ନାଳଯାକ ଯେଉଁଠି ଏକାଠି ହୋଇ ଦକ୍ଷିଣମୁହାଁ ନଈ ଭିତରକୁ ବୋହିଯାଇଛି, ସେଇଠି ସମସ୍ତେ ଧଇଁସଇଁ ହୋଇ ଠିଆହେଲେ । ସମସ୍ତଙ୍କ ବୁକୁ ଧଡପଡ-ପାଟି ମେଲା । କାହାରି ତୁଣ୍ଡରେ କଥା ନାହିଁ ।

ସେମାନଙ୍କ ସାମନାରେ ସ୍କୁଲ ଘରଟି କବାଟ ଝରକା ବନ୍ଦକରି ଆଖିବୁଜି ବର୍ଷାମାଡ ସହୁଥାଏ । ଛାତ ଟାଇଲ ଉପରେ ପାଣିଛିଟାର ଗୋଟେ ଧୂଆଁ ।

ହଠାତ୍ ଶୁଭିଲା, "ହଇରେ, ତା' ଗଙ୍ଗ କ'ଣ କହିଲୁ ?"

ଗୋଟାଏ ଟୋକା ଧଇଁସଇଁ ଭିତରେ କହିଲା – "ନେଳି ।"

ସେ ଡେଙ୍ଗାଡାହାଳିଆ ଦାନ୍ତୁରା ବାବୁଙ୍କର ହଠାତ୍ ବେକମୁଣ୍ଡାଠୁଁ ତଳକୁ ନଇଁଗଲା । ଘୁ-ଘୁ ହୋଇ ବୋହିଯାଉଥିବା ନାଳରେ ତାଙ୍କ ଆଖି ଦୁଇଟି ଭାସିଗଲା ଯେତେ ବାଟ ବର୍ଷା ଭେଦି ଯାଇପାରେ । କ'ଣଟାଏ ଦେଖି ସେ ହଠାତ୍ ଚମକି ପଡିଲେ । ତା'ପରେ କିନ୍ତୁ ମାଟି ହାଣ୍ଡିଟିଏ ଲେଉଟି ଲେଉଟି ପାଣିସୁଅରେ ଗଡିଗଲା । ସେ ସାଙ୍କୁଡିଗଲେ ।

ତା'ପରେ ଦେଖାଗଲା ଯେ ସେ ଭାରି ତରବରରେ ଲୁଙ୍ଗିଟାକୁ କଛା ମାରୁଛନ୍ତି । ତାଙ୍କ ଆଖି ସେଇ ନାଳ ଉପରେ । ହାତ ଯୋଡିକ ଥରଥର । ଲୁଙ୍ଗି ନିଅଣ୍ଟିଆ । ତୁହାକୁ ତୁହା କଛା ଫିଟି ପଡୁଥାଏ । ସେ ତାକୁ ଖୋସି ଖୋସି ପାଣିସୁଅକୁ ପଶିଯାଉଥା'ନ୍ତି ।

ଆଉ ଜଣେ କିଏ ପଚାରିଲା, "ହଇରେ ଟୋକା, ସେ ପିଲାଟା ନଈନାଳରେ ପଡି ଭାସିଯିବାର ତୁ ଦେଖିଚୁ ?"

ସମସ୍ତେ ଏକା ସାଙ୍ଗରେ କହିବାର ଶୁଣାଗଲା, "ପିଲାଟାଏ ନାଳରେ ପଡି ଭାସିଗଲା । ଆହା, ଆହା ଭାସିଗଲା ।"

ଉଚ୍ଚାଟ ବଢ଼ିଲା । ଠେଲାପେଲା ବଢ଼ିଲା । ସମସ୍ତେ ଟେକାଟେକି ହେଇ ନାଳଆଡକୁ ମୁହାଁଇଲେ ।

ଜଣେ କହିଲା, "ଜାଲ ଆଣ ।" ଆଉ ଜଣଏ କହିଲା, "ତଳ ସୁଅକୁ ଚାଲ ।" ପୁଣି କିଏ କହିଲା, "ସେ କ'ଣ ଆଉ ଏତେବେଳଯାଏଁ ଥିବ ? ନଈସୁଅରେ କୁଆଡେ ଭାସିଯିବଣି ।"

ସେ ମ୍ଳାନ ପିଲା ଦୁଇଟି କିନ୍ତୁ ଆବାକାବା ହୋଇ ଚାହିଁଥା'ନ୍ତି । ସମସ୍ତଙ୍କୁ, ବଡମଣିଷମାନଙ୍କର ମୁହଁକୁ, ଚାରିଆଡେ କାଲୁରୁ କାଲୁରୁ ହେଉଥିବା ଓଦା ମଣିଷମାନଙ୍କୁ ଏବଂ ପାଣି ଧାରରେ ପଶି ଯାଉଥିବା ଲୁଙ୍ଗିପିନ୍ଧା କୁମର ବାପାକୁ । ଗୋଟିଏ ତା' ଭିତରୁ କହିଲା, "କେହି ପିଲା ତ ପଡିନାଇଁ ! କୁମ ହାତରୁ ମୋ' ନେଳି ପେନ୍‌ସିଲଟା ଖସିଗଲା ଆଉ ନାଳରେ ପଡି ଭାସିଗଲା ।"

ଓଦା-ସରସର ଏକାପରି ଦିଶୁଥିବା ପିଲାଙ୍କ ଭିତରୁ ଆଉ ଜଣେ ସାଙ୍ଗେ ସାଙ୍ଗେ କହିଲା, "ମିଛ, ଖାଲି ମିଛ । ତୁ ମୋ' ହାତରୁ ଭିଡିନେଲୁ, ତୁ ପକେଇଦେଲୁ ନାଳରେ । ନେଳି ପେନ୍‌ସିଲ ତୁ ପକେଇଲୁ ।"

ହଠାତ୍ ସବୁ ଥମିଗଲା । ସମସ୍ତେ ସେଇ ଝପଝପ ବର୍ଷା ଭିତରେ ସେ ପିଲାଙ୍କ ଆଡକୁ ଖେପିଆସିଲେ । ସମସ୍ତଙ୍କୁ ଠେଲିପେଲି କୁମରବାପା ଦୌଡିଆସି ସେ ପିଲାଟାକୁ କାନ୍ଧରୁ ଦୁଇ ତିନିଥର ଝୁଙ୍କିପକେଇଲେ । ହାତ ଉଞ୍ଚେଇ କହିଲେ, "ଯା ଯାରେ ଯା ! ଏକା ଚାପୁଡାରେ ତୋ' ଗାଲ ବଙ୍କା କରିଦେଇଥା'ନ୍ତି । ଚଣ୍ଡାଳ, ତୁ ମୋତେ ମୂଳରୁ ସେଇଆ କହିଲୁ ନାହିଁ । ଓହୋ... ମଣିଷ ପ୍ରାୟ ଆକଣ୍ଠ ହୋଇ ଯାଇଥିଲା !... କୁଆଡେ ଗଲା ସେ ବଜାତ୍ ଟୋକୀ ?"

ଦେଖିଲାବେଳକୁ କୁମ ତା' ବୋଉକୁ କୁଣ୍ଢେଇଧରି ସକେଇ ହେଉଛି । କହୁଛି, "ତା' ପେନ୍‌ସିଲ୍ ଭାସିଗଲା ବୋଲି ସେ ମୋତେ ତା' ଛତା ଘୋଡେଇଲା ନାହିଁ ।" କହିଲା, ବାପାଙ୍କୁ କହି ମୋତେ ମାଡ ମରେଇବ । ସେ ପଳେଇଗଲାରୁ ମୁଁ ସ୍କୁଲ ପିଣ୍ଡାରେ ଠିଆ ହୋଇଥିଲି, ବର୍ଷା ଛାଡିଲେ ଯିବି ବୋଲି ।"

ଅଇଁଠା ହାତରେ ଭାତଖିଆଠୁ ସେ ଧାଇଁ ଆସିଥିଲେ । ତାଙ୍କ ପଛରେ ଅତର୍କାରେ ଧାଇ ଆସିଥିଲେ ତାଙ୍କ ପତ୍ନୀ ଓ ଦୁଇଟି ପୁଅ ।

ସମସ୍ତେ ଦାଣ୍ଡରେ ଏକବସ୍ତିଆ ହୋଇ ଫେରିଗଲାବେଳକୁ କାହା ଆଡକୁ ଚାହୁଁ ନଥା'ନ୍ତି । ତଳକୁ ମୁହଁ ପୋତି ତୁ ତୁ ବର୍ଷାରେ ସମଗ୍ର ପରିବାରଟି ନୀରବରେ ଫେରିଯାଉଥାଏ ସେହି ତିନିବଖୁରି ଭଡାଘରର ଆଶ୍ରୟକୁ ।

ସମସ୍ତେ କଥାଭାଷା ହୋଇ ଫେରୁଥା'ନ୍ତି – "ସେ ବାବୁଙ୍କ ନାଆଁ କ'ଣ ? ସେ କ'ଣ କାମ କରନ୍ତି କି ?" "ତାଙ୍କ ନିଜ ଘର କେଉଁଠି ? କେଜାଣି – କେଜାଣି – କେଜାଣି !"

ଡେଙ୍ଗାଡାହାଳିଆ ହୋଇ ଦାନ୍ତୁରା ମଣିଷଟିଏ । ସେ ଖୁବ୍ ଭଲ ଘରେ ରହିପାରନ୍ତା । ଏବେ କିନ୍ତୁ ସେ ପାକୁଆ ବୁଢାର କୁଣ ଘରଟାରେ ଗୋଟାଏ ସୋରା ତିନି ବଖରା ଭଡା ନେଇ ସେ ଥାଏ – ତା' ନାଁ କ'ଣଟି ?



# ରାଗ ଯୋଗିଆ

ଏକୁଟିଆ ବସି ବସି ଭାରି ବିରକ୍ତ ଲାଗୁଥାଏ । ସମାଜଖଣ୍ଡିକ ବାରମ୍ବାର ପଢି ସେତେବେଳକୁ ପ୍ରାୟ ସବୁ ମୁଖସ୍ଥ ହୋଇ ସାରିଥାଏ । ଗୋଲାପ ଗଛରେ ଦୁଇଥର ପାଣି ଦେଲା ପରେ ବି ସମୟର ସେ ଅସରନ୍ତି ରବିବାରର ତିନିଟା ଋଳିଶି । ଯେତେ ଗୀତ ମନେଥିଲା ବଡପାଟିରେ ସବୁଯାକ ବୋଲିଲି । ଆସୁ ନ ଥିବା ଧାଡିଗୁଡିକରେ 'ନା-ରେ ନା-ରେ' ଖଞ୍ଜି ସୋଫା ଉପରେ ତବଲା ପିଟି ମନ ଭିତରେ ମୂର୍ଚ୍ଛନା ସୃଷ୍ଟିକଲି । ଷ୍ଟୋଭ୍‌ରେ ଚ କରି ପିଇଲି । ପ୍ରତି ଘରର ପଙ୍ଖା ଲାଇଟ୍ ଦୁଇ-ଦୁଇଥର ଜାଳି ଲିଭାଇଲି । ଫେରିଆସି କ୍ଲାନ୍ତ ହୋଇ ସୋଫାରେ ପୁଣି ବସିପଡିଲି । ଟେବୁଲରେ ସେହି ସମାଜ – ବଡ ବଡ ଅକ୍ଷରରେ ଚୀନ ଭିଏତ୍‌ନାମ ଯୁଦ୍ଧ, ଭାରତ ମାର୍କିନ୍ ସମ୍ପର୍କ, ଅନାହାର ମୃତ୍ୟୁ, ବିହାର ଖବର, ବାଉଁଶ ପାଛିଆରେ ବାସି କୋଳି ଭଳି ଆଗରେ ମେଲେଇ ଧରିଥାଏ । ଧେତ୍‌ତେରି – ସବୁ ବିରକ୍ତିକର । ଭାବିଲି, ଏ ନିରୋଳା ସମୟରେ ବସି ଯୋଗ ସାଧନା କରିବି, ଚଞ୍ଚଳମନକୁ ସ୍ଥିର କରିବି । ଲମ୍ବା ସୋଫାରେ ବସିଗଲି ପଦ୍ମାସନ ପକାଇ । ମନେହେଲା, ଆଣ୍ଠୁରୁ ନିମ୍ନ ପ୍ରକୃତି ଚିତ୍କାର କରୁଛି । ଜବରଦସ୍ତି ବନ୍ଦକରିବା ହେତୁ ଆଖିପତା ଘୋଳିହେଲା । କାନରେ ସବୁ ଶୁଭୁଥାଏ, ହେଇ ସେ ଝିଟିପିଟି ଜାଫ୍‌ରି ବାହାରେ ଖଡ୍ ଖଡ୍ ହୋଇ ଋଲିଗଲା... ଘରଚଟିଆ ଅଇଁଠା ପ୍ଲେଟ୍‌ରୁ ଭାତ ଖୁମ୍ପିଲା । ଗେଟ୍ ଫିଟାଇଦେଇ ବୋଧେ କେହି ପଶିଆସିଲା । ଛାଡ ! ଏମିତିରେ କ'ଣ ଧ୍ୟାନ ହୁଏ ? ବିନା କାରଣରେ ଉଠିପଡି ବାଥ୍‌ରୁମ୍ ହୋଇ ଆସିଲି । ଦର୍ପଣ ଆଗରେ ବସି ଖଣ୍ଡା ଖସିଆସୁଥିବା ଦାନ୍ତଗୁଡିକୁ ଦେଖିଲି । ଋଳିଶିଆ ଚଷମା, ଗୋଲେଇ ପେଟ, ମାଉଁସିଆ ବେକକୁ ଅନେକ ସମୟ ଧରି ଅନେଇଲି । ଗେଞ୍ଜି ଟେକି ନାହିକୁ ଅନାଇଲି । ନା – ସେ ଯାହା କହୁ ପଛକେ, ଏବେ ମୁଁ ବେଶ୍ ସୁନ୍ଦର ଦିଶୁଚି ତ ! ରୋହିଣୀ ଅନେକବାର ସେୟା କହି ମୋ' ପାଖରେ ଗେହ୍ଲେଇ ହେଉଛି... ମୁଁ ସିନା ତାକୁ ଖୋସାମତି ବୋଲି ତାଚ୍ଛଲ୍ୟରେ ଉଡାଇ ଦେଉଛି । ମୁଁ ବାସ୍ତବରେ ଖୁବ୍ ହୃଷ୍ଟପୁଷ୍ଟ, ବଳିଷ୍ଠ ପୁରୁଷ – କିନ୍ତୁ...

ଏ 'କିନ୍ତୁ' ପରେ ଯେଉଁ ଯୁକ୍ତିସବୁ ଆସେ, ସେଗୁଡ଼ାକ ମୋର ଦେହସୁହା ହୋଇଗଲାଣି । ଯଦି ରୋହିଣୀ ପରି ସୁଲକ୍ଷଣା ନାରୀ ବନ୍ଧ୍ୟା ହୁଏ, ସେଥିପାଇଁ କ'ଣ କରାଯାଏ ? ସେଥିପାଇଁ କ'ଣ ମୁଁ ଦାୟୀ ? କ'ଣ ଭଲା କରିବାକୁ ବାକି ଅଛି ? ଓଷା, ବ୍ରତ, ଟୁଟୁକା, ଡାକ୍ତରୀ ବୁର୍ଲା, କଟକ, ଭେଲୋର ସବୁ ତ ସରିଚି । ଭାଗ୍ୟରେ ନଥିଲେ କ'ଣ କିଛି ମିଳେ ? ଭାଗ୍ୟ !!

ସେତେବେଳକୁ ମୁଁ ଗାଲରେ ହାତ ଦେଇ ତଳକୁ ଚାହିଁ ଡ୍ରେସିଂ ଟେବୁଲ ଉପରେ ଅନ୍ୟମନସ୍କ ରେଖା ଟାଣୁଥିଲି । ଗୋଟାଏ ଦୀର୍ଘଶ୍ୱାସ ପକାଇ ଉଠିଲି, ତା'ପରେ ନିସ୍ତବ୍ଧ ହୋଇ ସୋଫାରେ ବସିଲି । ଭାବନାର ଅନ୍ତ ନାହିଁ । ଆମେ ଦୁହେଁ ପଣ୍ଡିଚେରୀ ଯାଇଛୁ । ସକାଳୁ ଉଠି ଯୋଗାଭ୍ୟାସ କରୁ । ଆମିଷ ଅନେକ ଦିନରୁ ଖାଉନା ।

ଆମେ ଆସ୍ତେ ଆସ୍ତେ ସମ୍ପର୍କ ମଧ୍ୟ ବଦଳାଇ ଚାଲିଛୁ । ଯୌବନର ଅମାନିଆ ଉଷ୍ମା ଉପରେ ଖାର ଘୋଡେଇ ହୋଇ ଆସିଲାଣି । ଏଣିକି ବସିଲେ ଅନେକ ସମୟରେ ଆଶ୍ରମ କଥା ପଡେ । ଦୁହେଁ ଭାରି ଉଦାସ ହୋଇପଡୁ । ଘରଟା ହଠାତ୍ ନୀରବ ଜଣାପଡେ । ଆମେ ଯାଆଁଳା ପିଲାଯୋଡିକ ସତେ ବା କୌଣସି ବାପ-ମା'ଙ୍କ ବାଟ ଚାହିଁ ବସିରହୁ – କିନ୍ତୁ କେହି ଆସନ୍ତି ନାହିଁ । ପ୍ରଥମେ ପ୍ରଥମେ ରୋହିଣୀର ବଡ ବଡ ଆଖିଯୋଡିକ ଜକେଇ ଯାଉଥିଲା । ମୁଁ ତଳକୁ ଚାହୁଁଥିଲି । ବୁଢାଆଙ୍ଗୁଠିରେ ଗାଲିଚାଟାକୁ ଉଖାରୁଥିଲି । ଏବେ ଯିଏ ଯାହା ସାମ୍ନାକୁ ଆମେ ଚାହିଁରହୁ, ପତା ପଡେ ନାହିଁ । ଯେ ଯାହା ସମୟରେ ଚାପି ଚାପି ଦୀର୍ଘଶ୍ୱାସଟିମାନ ସ୍ୱାଭାବିକ ଛନ୍ଦରେ ଲୁଚାଇ ଲୁଚାଇ ଛାଡିଦେଉ । ଯେ ଯାହା ସମୟରେ ଉଠି ମଧ୍ୟ ଯାଉ ବିଭିନ୍ନ ବାହାନାରେ । ସେ ହୁଏତ ଯାଏ ଶୋଇବାଘର ସଜେଇବାପାଇଁ । ମୁଁ ଚାଲିଯାଏ ମୋ' ଟେବୁଲ ପାଖକୁ ପଢିବି ଲେଖିବି ବୋଲି । ମୁଁ କଲମ ଧରି ବିଭିନ୍ନ ମୁହଁ ଆଙ୍କେ । ସେ ବି ଆର ଘରେ ବସି ଆଲବମ୍ ଲେଉଟାଏ । ତା'ପରେ ମନ ଭିତରେ ଗୋଟାଳ ବାନ୍ଧିଯାଇଥିବା ଅନ୍ଧାର ଫିଟିଗଲେ ସେ ମୋ' ପଛପଟେ ଆସି କାନ୍ଧରେ ହାତ ପକାଏ । ଅନେଇଲେ ହସିଦିଏ କିମ୍ବା ମୁଁ ଯାଇ ନଇଁପଡି ତା' ମୁହଁକୁ ଅନାଏ ହସିକରି ।

ଆମ ବିଭାଘର ୧୯୫୪ ମସିହା ଫେବୃୟାରୀ ୨୬ ତାରିଖରେ ହୋଇଥିଲା । ବାଇଶି ପୂରି ତେଇଶି ଚାଲିଲାଣି; କିନ୍ତୁ ଗତ ଦଶବର୍ଷ ହେଲା ଆଗର ସେ ଜମାନା ଆଉ ନାହିଁ । ଆମେ ଭାଗ୍ୟକୁ ଆଦରିଗଲୁଣି, ପରସ୍ପରକୁ ଆଦରି ଗଲୁଣି । କାହିଁକି କେଜାଣି, ପିଲାଟିଏ ଆଣି ପୋଷିବା ସପକ୍ଷରେ ମୁଁ ନୁହେଁ – ରୋହିଣୀ ତ ମୋଟେ ନୁହେଁ । ଆମେ ଦୁହେଁ ମିଶିଗଲେ ଆଉ କିଛି ଅପୂର୍ବ ନଥିଲା ପରି ଲାଗିଲାଣି । ତା' ବାହାରେ ଅନୁଭବ ହେଲାଣି, ଏଇଟା ଶେଷକଥା ନୁହେଁ । ଆଉ ଗୋଟାଏ କ'ଣ ଆକାଶିଆ କଥା କିଛି ଅଛି । ପରିଶେଷରେ ବେଳ ମିଳିଗଲେ ଆଖିବୁଜି ବସିବାକୁ ଇଚ୍ଛା ହୁଏ । ଭିଡେଇଗଲାଣି ଜୀବନ । ସେଭଳି ଛୁଟିଦିନ ପଡିଗଲେ ମୁଁ ବସି ଉପନିଷଦ୍‌ର ହିନ୍ଦୀ ଭାଷ୍ୟ ବୁଝାଏ । ରୋହିଣୀ ବି ଖୁବ୍ ବୁଝିଯାଏ । ମୋ' ସାଙ୍ଗରେ ଯାଏ ମୋର ଭାଷଣ ଶୁଣିବାକୁ... ଅନେକ ଅନୁଷ୍ଠାନରେ, ପାଠଚକ୍ରରେ ସ୍କୁଲ-କଲେଜରେ । ଘରେ ଅଭାବ ନାହିଁ ।

ପ୍ରୟୋଜନ କିଛିନାହିଁ । ମୋର ଅନେକ ପୋଷାକ ମୁଁ ଆଉ ପିନ୍ଧେନି, ସେ ବି ତା'ର ଅନେକ ଗହଣା, ଶାଢ଼ି ପିନ୍ଧେନା – ସବୁ ଏମିତି ଚାଲିଥିଲା ଏକ ନିର୍ଦ୍ଦିଷ୍ଟ ଛନ୍ଦରେ ।

ସେଦିନ କିନ୍ତୁ ଛନ୍ଦ ଭାଙ୍ଗିଗଲା । ହଠାତ୍ ଅପ୍ରତ୍ୟାଶିତ ଭାବରେ ମୁଁ ମୋର ଭାରସାମ୍ୟ ହରାଇଲା ପରି ଲାଗିଲା । ମୋର ଜୀବନରେ ଯେ ଏକ ଫାଙ୍କ ଅଛି ଏବଂ ସେ ସମସ୍ତ ସଙ୍ଗେ ରୋହିଣୀ ଏପରି ଭରପୂର କରି ରଖିଛି, ତାକୁ ଆଦୌ ଅନୁମାନ କରି ନଥିଲି । ଜୀବନର ଦୀର୍ଘ ଯାତ୍ରାରେ ମୋର ବନ୍ଧୁକୁଟୁମ୍ବୀଙ୍କୁ ମୁଁ ଜଣ ଜଣ କରି ହରାଇଛି ଏବଂ ସେହି ପ୍ରେମରେ ଝରିପଡୁଥିବା ମମତାର ଡୋରଗୁଡ଼ିକୁ ରୋହିଣୀ ଗରିପଟେ ଅଜାଣତରେ ଗୁଡ଼େଇ ପକେଇଛି । ମୋର ମନେଅଛି, ଯେଉଁଦିନ ମା' ଚାଲିଗଲେ ମୁଁ ଖୁବ୍ କାନ୍ଦିଛି ଏବଂ ରୋହିଣୀ ମୋତେ ଆଉଜାଇଲା ତା' କୋଳ ଭିତରକୁ । ମୁଁ ବାହାରେ ଯେତିକି ହରାଇଛି, ରୋହିଣୀକୁ ସେତିକି ପାଇଚାଲିଛି । ସେ ମୋର ସଂପୂର୍ଣ୍ଣ ସ୍ଥିତିଟାକୁ ସମ୍ଭାଳିଛି । ସେ ଆଡ ହୋଇଗଲେ ମୁଁ ଲେଉଟିପଡ଼ିବି । ସେ ମୋତେ ଶାସନ ନକଲେ ମୁଁ ଉଦ୍‌ଭ୍ରାନ୍ତ ହୋଇଯିବି, ମାତିଯିବ, ବେହିସାବ...ଗୁଡ଼ାଏ ସ୍ୱେଚ୍ଛାଚାରରେ । ମୋଟଉପରେ ପଡ଼ିଯିବି, ଆଉ ସଳଖି ଠିଆହୋଇ ପାରିବି ନାହିଁ ।

ମୁଁ ମୁହଁ ଟେକିଲି । ମୋର ସମସ୍ତ ଚପଳଥା ଚାଲିଗଲା । ମୁଁ ରୋହିଣୀକୁ ସୋଫାର ଅନ୍ୟ ଚଉକି ଉପରେ ଆରୋପ କରି ଅତି ଶାନ୍ତ ଭଦ୍ର ଶିଶୁଟିଏ ପରି ବହିଟିଏ ଧରି ପଢ଼ିବସିଲି । ଭାବିଲି, ଆଜି ଆଉ କିଛି କାମ ନାହିଁ, ଏ ବହିଖଣ୍ଡ ମନଦେଇ ପଢ଼ିନେବା । ବିବେକାନନ୍ଦଙ୍କ ରାଜଯୋଗ ବୋଧହୁଏ ଦୁଇପତ୍ର ପଢ଼ିଥିବି, ଜଣେ କିନ୍ତୁ ସଟକୁସଟ ଗେଟ୍ ଫିଟାଇ ପଶିଲା । ଶବ୍ଦରୁ ଅନୁମାନ କଲି ସେ ସାଇକେଲ ଖଣ୍ଡିଏ ଚଳେଇ ପାଖେଇ ଆସୁଛି । ପରଦା ସେପଟୁ ଇଂରାଜୀରେ ପଚାରିଲା – 'ଆସିପାରେ କି ?'

ଆସନ୍ତୁ ! – କହି ମୁହଁଟିକୁ ଚାହିଁଲି । ହାତରେ ମୋର ଖୋଲା ବହି । ଆଖିରେ ଚଷମା । ଚେହେରା ବୋଧହୁଏ ମୋର ବ୍ୟକ୍ତିତ୍ୱକୁ ଚାହିଁ ଯାହା ହେବା କଥା – ଖୁବ୍ ଗମ୍ଭୀର ।

ଆଗନ୍ତୁକ ଜଣକ ଯୁବକ । ଖୁବ୍ ଲମ୍ବା ଏବଂ ଗୋରା । ଆଖିଯୋଡ଼ିକ ନେଳି ନେଳି । ପରିଧେୟ ଖଣ୍ଡେ ଖୋଲାବେକ ସ୍ପୋର୍ଟିଂ ସାର୍ଟ ଏବଂ ଗାଢ଼ ରଙ୍ଗର ଆଜିକାଲିକା ପେଣ୍ଟ । ତା' ତଳକୁ ଗୋରା ଗୋରା ପାଦକୁ ବେଢ଼େଇ ହଳେ କଳା ଚପଲ । ମୁଣ୍ଡରେ ମଥାଏ କଳା-ମଚମଚ କୁଞ୍ଚୁକୁଞ୍ଚୁଆ ବାଳ । ନିଶ ଦାଢ଼ି ନାହିଁ । ବୟସ ଅତି ବେଶି ହେଲେ ଏକୋଇଶି କିମ୍ବା ବାଇଶି ।

ଖୁବ୍ ଶିଷ୍ଟାଚାର ରଖି ସାହେବୀ ଢଙ୍ଗରେ ଅଳ୍ପ ହସି ସେ କହିଲା, "ମୋ ନାଁ ଅଶୋକ...ଅଶୋକ ଯାଦବ...ଆପଣଙ୍କ ସହିତ ବିଶେଷ କାରଣ ନେଇ ଦେଖାକରିବାକୁ ଆସିଚି ।" ମୁଁ ସାମାନ୍ୟ ବିସ୍ମିତ ହେଲି । ଖୁବ୍ ଖୁସି ହେଲି, ଆପ୍ୟାୟିତ ଅନୁଭବ କଲି । ତାକୁ ଦେଖି, ତା'ର ମାର୍ଜିତ ଇଂରାଜୀ ଶୁଣି ମୁଗ୍ଧ ହେଲି । ଲମ୍ବା ସୋଫାରେ ବସିବାକୁ ଇଙ୍ଗିତ କଲି । ମୁଁ ବହିଟିକୁ ଟେବୁଲରେ ଥୋଇଦେଇ ଚାହିଁଲି ତା' ମୁହଁକୁ ।

ସେ ଅଳ୍ପ ସଙ୍କୋଚରେ ଇତସ୍ତତଃ କଲା, ତା'ପରେ ପରିଷ୍କାର ଭାବରେ କହିଚାଲିଲା –

"ମୁଁ ଆପଣଙ୍କ ପାଖରୁ ଗୋଟିଏ ପ୍ରଶ୍ନର ଉତ୍ତର ଚାହେଁ।" ପ୍ରଶ୍ନଟି ହେଲା – "ମୁଁ କାହିଁକି ବଞ୍ଚିବି ? ଅର୍ଥ କ'ଣ ? ଉଦ୍ଦେଶ୍ୟ କ'ଣ ? ମୁଁ ଅନେକ ଚିନ୍ତା କଲାପରେ ଆପଣଙ୍କୁ ପଚାରୁଛି। ଆପଣଙ୍କର ଭାଷଣ ଶୁଣିଛି ଏକାଧିକବାର। ମୋର ବିଶ୍ୱାସ ଯେ ଆପଣ ହିଁ ମୋତେ ଉତ୍ତର ଦେଇପାରିବେ।"

ମୁଁ ପ୍ରଶ୍ନର ଆନ୍ତରିକତାରେ ଚମକିପଡିଲି। ସଂସାର-ଅନଭିଜ୍ଞ ତରୁଣ ପାଖରୁ ଏଭଳି ପ୍ରଶ୍ନ ହୁଏତ ମୁଁ ଆଶା କରି ନ ଥିଲି ଯେ ସେ ମୋର ଅତ୍ରତତ୍ର ଭାଷଣ ମଧ୍ୟ ଶୁଣିବାକୁ ଯାଏ। ମୁଁ ତାକୁ ବିଶ୍ୱାସ କଲି। ଅନେକ ଆତ୍ମୀୟତାର ଛୋଟ ଛୋଟ ଢଙ୍କ ମୋ' ଭିତରେ ଗଜେଇ ଉଠିଲେ। ମୁଁ ଅଳ୍ପ ହସି ତାକୁ ପଚାରିଲି "ତୁମର ଅସୁବିଧା କ'ଣ ?"

"ଅସୁବିଧା କିଛି ନାହିଁ। ବାପା ଖଣିମାଲିକ। ମାସକୁ ଲକ୍ଷାଧିକ ଟଙ୍କା ବ୍ୟବସାୟ ହୁଏ। ମୂଳରୁ ଡୁନ୍ ପବ୍ଲିକ୍ ସ୍କୁଲରେ ପଢିଛି ଏବଂ ସେଣ୍ଟ୍ ବି.ଏ.ଷ୍ଟିଫେନ୍‌ସନ୍‌ରେ ଇଂରାଜୀରେ ଅନର୍ସ ନେଇ ପାଶ୍ କରିଛି। ଓଡିଶାରେ ରହି ଓଡିଆ ଆଦୌ ଶିଖିନାହିଁ। ଘରେ ମଧ୍ୟ ନିଜ ଭାଷାରେ କଥା କହିପାରେନା।"

ଏତିକି କହି ସେ କେମିତି ଟିକିଏ ଲାଜରା ଭଳି ହସିଲା। ମୁଁ ଯାଦବ-ପରିବାରକୁ ଜାଣେ – ଜାଣିବା ମୋଟ ଉପରେ ଅନିବାର୍ଯ୍ୟ। ଆମ ସାହିର ସବାଶେଷରେ ସବୁଠୁ ବଡ ବଙ୍ଗଳା ତାଙ୍କର। ସେ ଅଞ୍ଚଳରେ ତାଙ୍କର ଚାରିଟା ଗାଡି ଅନବରତ ଯାତାୟାତ କରେ। ଶୀତଦିନେ ସେମାନେ କାଶ୍ମୀରରୁ ପୋଷାକ କିଣନ୍ତି। ଖରାଦିନେ କୋଡାଇ କେନାଇ ଯାଆନ୍ତି ସପରିବାର। ତାଙ୍କରି ଅଲିଅଳ ପୁଅ ଏଇ ଅଶୋକ। ସେ ଆସି ପଚାରୁଛି – ସେ କାହିଁକି ସଂସାରରେ ବଞ୍ଚିବ ? ଆଶ୍ଚର୍ଯ୍ୟ !

ସେ ଅପେକ୍ଷା କଲା। ମୁଁ ତାକୁ ଚାହିଁ ଅଳ୍ପ ହସିଲି କେବଳ। ସେ ହୁଏତ ବୁଝିଗଲା ଯେ ମୁଁ ତାକୁ ତା'ର ବକ୍ତବ୍ୟ ଶେଷ କରିବାକୁ ଇଚ୍ଛାକରୁଛି। କହିଲା – "ମୁଁ ପରିଷ୍କାର ବୁଝିପାରୁଛି ଯେ ଏଠି ସବୁ ସମ୍ପର୍କ ମିଥ୍ୟା। କିଛି ଗୋଟିଏ କଥା କହିବା କିମ୍ବା କାମ କରିବା ପଶ୍ଚାତ୍‌ରେ ସବୁବେଳେ ଅଭିସନ୍ଧିଟାଏ ରହିଯାଇଛି। ସବୁ କେବଳ ଅଭ୍ୟାସ; ଫମ୍ପା ଗତାନୁଗତିକ ଅଭ୍ୟାସ, ଯେଉଁଥିରେ ଆନ୍ତରିକତା ନାହିଁ। ଆମେ ଯାହା କହୁ ତା' ହୁଏତ ଚିନ୍ତାକରୁନା। ଉପରେ କେବଳ ଅଭିନୟ କରୁ। ଏପରି ଏକ ସମାଜରେ ଜଣେ କାହିଁକି ବଞ୍ଚିବ ? ତା'ର ଉଦ୍ଦେଶ୍ୟ ବା କ'ଣ ? ଯଦି ଯନ୍ତ୍ରଭଳି ଏଠି ରହିବାକୁ ହୁଏ... ଆଉ କାହାର ଇଙ୍ଗିତରେ ଚଳପ୍ରଚଳ ହେବାକୁ ହୁଏ ଏବଂ ଆପଣମାନେ ତାକୁ ଅଦୃଷ୍ଟ ବୋଲି କହନ୍ତି; ତେବେ ତ ମଣିଷର କିଛି କରିବାର ନାହିଁ ଏବଂ ଆହୁରି ବଞ୍ଚିବା ନିରର୍ଥକ !"

ମୁଁ ଦେଖିଲି ଯେ ସମସ୍ୟା ଖୁବ୍ ଜଟିଳ। ମୁଁ ଆସ୍ତେ ସେ ଭିତରେ ରାସ୍ତା ଫିଟାଇବା ଉଦ୍ଦେଶ୍ୟରେ କହିଲି, "ଦେଖ ଅଶୋକ, କଥାଟାକୁ ଗୋଳାମାଳିଆ କରନାହିଁ। ତୁମେ ଯଥେଷ୍ଟ ଇଙ୍ଗିତ ଦେଲଣି ଯେ ତୁମେ ଅସନ୍ତୁଷ୍ଟ। ଅସନ୍ତୁଷ୍ଟ ହେବା ଅଧିକାଂଶ ସମୟରେ ସକାରଣ ଏବଂ ସେ କାରଣ ଖୋଜି ବାହାର କରିବ ତୁମେ। ଧରାଯାଉ ତୁମେ ମାନବିକ ସମ୍ପର୍କ ବିଷୟରେ ଅଭିଯୋଗ କରୁଛ। ତୁମକୁ ଏସବୁ ଅଭିନୟ ପରି ଦିଶୁଛି ଏବଂ ଅଭିନୟ ତୁମ ମତରେ ମିଥ୍ୟା –

ତାହାହେଲେ ତୁମେ କିପରି ସମ୍ପର୍କ ଇଚ୍ଛାକର ?" ତାକୁ କହିବାକୁ ବାରଣ କଲି, "ମୋତେ ଶେଷ କରିବାକୁ ଦିଅ । ତୁମର ଅନ୍ୟ ଅଭିଯୋଗଟି ହେଲା ଯେ ସବୁ ଅଦୃଷ୍ଟ କରିଛି । ଯାହା ହେବା କଥା, ସବୁ ଆଗରୁ ନିର୍ଦ୍ଦିଷ୍ଟ ରହିଛି – ଏଣୁ ମଣିଷଜୀବନର ତାତ୍ପର୍ଯ୍ୟ କ'ଣ ? ସବୁ ହୁଏତ ଭାଗ୍ୟ । ଏକଥା ତୁମେ ଶୁଣିଛ । ଏଥିରୁ ଅନେକ ଯୁକ୍ତି ସପକ୍ଷ ବିପକ୍ଷର ଅବତାରଣା କରିପାରେ । ଏହା ପ୍ରମାଣସାପେକ୍ଷ । ଧରାଯାଉ ଅଦୃଷ୍ଟ ବୋଲି କିଛି ନାହିଁ । ତୁମେ ଯାହା ଚାହିଁବ ତାହା କରିପାରିବ । ଏବେ କୁହ, ତୁମକୁ ଅବାଧ ଛାଡିଦେଲେ ତୁମେ କ'ଣ କରନ୍ତ ?"

ସେ ଖୁବ୍ ମନଦେଇ ଶୁଣୁ ଥିଲା । ଟିକିଏ ଭ୍ରୁରୁ କୁଞ୍ଚେଇ କହିଲା – "ମୁଁ ସ୍ୱାଧୀନ ସମ୍ପର୍କ ଚାହେଁ, ମାନେ କେହି କାହାଠାରୁ ବିଧିବଦ୍ଧ କିଛି ଆଶା କରୁନଥିବାର ସମ୍ପର୍କ, ଅର୍ଥାତ୍ ଇଚ୍ଛାଧୀନ ସମ୍ପର୍କ । ଧରାଯାଉ ମୁଁ ଆଜି ଘରେ ଅଛି । ଚାହିଁଲେ ମୁଁ ବାହାରିଯାଇପାରେ...ମତେ କେହି ବାଧା ଦେବେନାହିଁ...ଟାଣି ରଖିବେ ନାହିଁ ।"

ସେ ତା'ପରେ ନୀରବରେ ହସିଲା । ଚମତ୍କାର ଡାଳିମ୍ବ ମଞ୍ଜିର ଦାନ୍ତଗୁଡିକ ତା' ନାଲି ଓଠ ଭିତରେ ଝଲସିଉଠିଲେ ।

"ଯଦି ଧରନ୍ତୁ ଅଦୃଷ୍ଟ ନାହିଁ, ମୁଁ ଯାହା ଚାହିଁବି ତା' କରିପାରିବି – ତେବେ ଆପଣଙ୍କର ପାପପୁଣ୍ୟର ନିୟମ ତ ରହିଛି । ସ୍ୱର୍ଗ-ନରକର ଚାବି ତ ଆପଣଙ୍କ ହାତରେ ।"

ପିଲାଟା ଯେ ବୁଦ୍ଧିମାନ୍ ଏଥିରେ ମୋର ସନ୍ଦେହ ରହିଲାନାହିଁ । କହିଲା – "ଅଚ୍ଛା, ତା'ହେଲେ ସେ ସ୍ୱର୍ଗ-ନରକକୁ ତୁମେ ସ୍ୱୀକାର କରିନେଇଛ । ନର୍କକୁ ଯିବାକୁ ତୁମର ମନ ଥିଲାପରିତ ଦିଶୁନାହିଁ । ଏ ଦୁଇଟି ଚିଡିଆଖାନା ଭିତରୁ କେଉଁଟିକୁ ପଶିବାକୁ ତୁମେ ଟିକଟ କାଟିବ ?"

ହୋ-ହୋ ହୋଇ ହସିଉଠିଲା ଅଶୋକ – "ଚମତ୍କାର ! ଆପଣ କଥାଟାକୁ ବଢିଆ ଢଙ୍ଗରେ କହିଦେଲେ । ଆପଣ ଜଣାପଡୁଛନ୍ତି ଖୁବ୍ ସ୍ୱାଧୀନ ଚିନ୍ତାର ମଣିଷ । ଆପଣ ତା'ହେଲେ ନୈତିକ ଆଚରଣକୁ କିଛି ଗୁରୁତ୍ୱ ଦିଅନ୍ତି ନାହିଁ ।"

"କିଏ କହିଲା ଦିଏ ନାହିଁ ? ଖୁବ୍ ଦିଏ । ମୁଁ ସ୍ୱେଚ୍ଛାଚାରକୁ ପସନ୍ଦ କରେନା; କିନ୍ତୁ ଏତକ ନିଶ୍ଚୟ ବୁଝ ଯେ, ଯାହା କଲେ ମଧ କିଛି ଯାଏଆସେନା । ଏ ଅନନ୍ତ ବିଶ୍ୱ ଭିତରେ ପହଁରିବୁଲୁଥିବା ପୃଥିବୀମାନଙ୍କ ମଧରୁ ଏ ଧୂଳିକଣାଟି ଉପରେ ହଜାରେ ଧର୍ମ-ନିୟମର ଦ୍ୱାହି ଦେଇ କିଛି କରିବା ଯାହା, ନକରିବା ମଧ ତାହା ।"

"ତା'ହେଲେ ଜଣେ ନିଶା ଖାଇପାରେ – ଚୋରି କରିପାରେ – ଲମ୍ପଟ ହୋଇପାରେ ?"

"ନହେଉଥିଲେ ତୁମେ ଏ ତାଲିକା କେଉଁଠାରୁ ପାଇଥାଆନ୍ତ ?"

ଅଶୋକ କହିଲା – "ତା' ଠିକ୍ ! ମୁଁ କିନ୍ତୁ ଏ ତାଲିକା ଦ୍ୱାରା ଆହୁରି ଅନେକ ଅନୁଲେଖ୍ୟ ନିଷିଦ୍ଧ ଅଞ୍ଚଳକୁ ଇଙ୍ଗିତ କରୁଛି ।"

ମୁଁ ଟିକିଏ ଖୁସ୍ ହୋଇଗଲି । ସେ ସୁଯୋଗ ପାଇ କହିଚାଲିଲା – "ମାନେ ନିଜକୁ ପଶୁଠାରୁ ଅଯଥା ପୃଥକ୍ ନରଖି ଯଦି ତାଙ୍କ ଭଳି ସବୁ ସ୍ୱାଭାବିକ ସଂପର୍କ ରଖାଯାଏ, ତେବେ ବି କ'ଣ କିଛି

ଯାଏ ଆସେ ନାହିଁ ?"

ମୁଁ ଗମ୍ଭୀର ହୋଇ ଅନେଇଲି ଲକ୍ଷ ଶତାବ୍ଦୀବ୍ୟାପୀ କାଳକୁ । ଅନେଇଲି ଅକଳନୀୟ ମହାଶୂନ୍ୟକୁ । କହିଲି, "କିଛି ଯାଏ ଆସେ ନାହିଁ ।"

ସେ ପରମ ବିସ୍ମୟରେ ପଚାରିଲା, "କିଛି ଯାଏ ଆସେ ନାହିଁ ?" ମୁଁ ଦୃଢ଼ତାର ସହିତ ଦୋହରାଇଲି – "ନା !"

ସେ ତା'ର କାନ୍ଧ ଦୁଇଟି ସାଇବି ଢଙ୍ଗରେ ଟେକି ହାତରୁ ତାସମୁଠା ଖସାଇ ଦେଲା ଭଳି ଇଙ୍ଗିତ କଲା । ତେବେ ତା' ତା'ର କିଛି ଆଉ କହିବାର ନାହିଁ ! ଦୁହେଁ ନୀରବ ରହିଲୁ ।

ମୁଁ ଭାବିଲି ଅତି ତୀବ୍ରବେଗରେ । ଗୋଟିଏ ଅନଭିଜ୍ଞ ତରୁଣକୁ ମୁଁ ଯୁକ୍ତି ଛଳରେ କେତେ ଭୟାନକ ଅସମାଜିକ ଅନୈତିକ କଥାଟାଏ କହିଦେଲି ! ଧର ଯଦି ସେ ସତକୁସତ ସେହିଭଳି କିଛି କରିବସେ ? ମୁଁ ଆଖି ଏପଟ ସେପଟ ଖେଳେଇ ନେଇ ଖଣ୍ଡିକାଶ ଦେଇ ଟିକିଏ ହସିଲି । ସେ ମୋ' ମୁହଁକୁ ପୁଣି ଚାହିଁଲା ।

"ଏସବୁ ଯୁକ୍ତି ପାଇଁ ଯୁକ୍ତି, ଅଶୋକ ! ଆଚ୍ଛା, ଠିକ୍ ଠିକ୍ କହିଲ ତୁମେ କ'ଣ ଚାହଁ ?"

ସେ ଆଣ୍ଠୁ ଉପରେ କହୁଣି ଯୋଡିକ ଥୋଇଥାଏ । ଲମ୍ବା ଲମ୍ବା ହାତଯୋଡିକ ଆଙ୍ଗୁଠି ଛନ୍ଦି ଗୋଡତଳେ ଦେଇ ଅନେଇଥାଏ । ଗୋଟାଏ ମୁହୂର୍ତ୍ତ ନିଶ୍ଚଳ ହୋଇ ସେ ଆଖି ଭିତରକୁ ଚାହିଁ କହିଲା – "ମୋତେ କହିପାରିବେ ମୁଁ କିଏ ? ମୁଁ ଜାଣିବାକୁ ଚାହେଁ ମୋର ଆତ୍ମା ଅଛି କି ନାହିଁ ?"

ମୁଁ ମନେ ମନେ ଅବାକ୍ ହୋଇଗଲି । ଇଏ କ'ଣ ଦ୍ୱିତୀୟ ବିବେକାନନ୍ଦ ? ତା'ର ପ୍ରଶସ୍ତ କପାଳ, ସେ ତେଜୀୟାନ୍ ଆଖି, ତା'ର ସେ ଦୃଢ଼ତା, ସ୍ୱର, ବୁଦ୍ଧି, ସବୁ ଯେପରି ମନେହେଲା କୌଣସି ମହାପୁରୁଷର ଲକ୍ଷଣ ଇଙ୍ଗିତ କରୁଛନ୍ତି ।

ସବୁ ପ୍ରତିକ୍ରିୟା ଚାପିରଖି ଖୁବ୍ ନିର୍ମମ ସ୍ୱରରେ କହିଲି – "ତୁମେ କ'ଣ ସତେ ଜାଣିବାକୁ ଚାହଁ ? ମୋର କାହିଁକି ମନେହୁଏ ଯେ ଏଭଳି ପ୍ରଶ୍ନଟାଏ କରିଦେଲେ ବୁଦ୍ଧିମାନ୍‌ର ପରିଚୟ ମିଳିଯିବ – ଏଭଳି ପଚାରିବାଟା ଗୋଟିଏ ଫେସନ୍ କିମ୍ବା ଅତି ବେଶି ଗୋଟିଏ ସାମୟିକ କୌତୂହଳ କେବଳ ।"

ମୋର ଆଘାତରେ ସେ ଆଦୌ ବିଚଳିତ ହେଲା ନାହିଁ, ବରଂ କହିଲା – ଏହା ମୋର ଆଜୀବନ ପ୍ରଶ୍ନ । ଉତ୍ତର ପାଇଁ ମୁଁ ଇଂରାଜୀରେ ଯାହା ପାଇଛି, ଘାଣ୍ଟିଛି । ଉପନିଷଦ୍ ଗୀତାର ଇଂରାଜୀ ତର୍ଜମାଗୁଡିକୁ ପଢିଛି – ଡକ୍ଟର ରାଧାକ୍ରିଷ୍ଣନ୍‌ଙ୍କର । ମୋତେ ନିର୍ଦ୍ଦିଷ୍ଟ କିଛି ମିଳିନାହିଁ । ମୁଁ ଜଣେ ଗୁରୁଙ୍କୁ ମନ୍ତ୍ର ମାଗିଛି – ମୁଁ ଜପ କରେ, ଧ୍ୟାନ କରେ, ମୁଁ କିନ୍ତୁ ଏ ସଂସାରରେ ରହିବାର କିଛି ଅର୍ଥ ପାଏନା । ଏଠି ଜରାୟୁରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ମୋର ଯାତ୍ରା ଅତି ବିରକ୍ତିକର ଗତାନୁଗତିକ ।

ମୋର ଶ୍ରଦ୍ଧା ବହୁଗୁଣିତ ହୋଇଗଲା । ତୀବ୍ର ବୈରାଗ୍ୟରେ ଜାଗ୍ରତ ଏ ମହାନ୍ ଆତ୍ମାକୁ ଭଲା କିଏ ଏଠି ରଖିପାରେ ? କିନ୍ତୁ ସେଭଳି ନିଷ୍ପନ୍ଦ ସ୍ୱରରେ କହିଲି – "ତେବେ ଛାଡିଦିଅ ।

ତାତିଲା ଲୁହାପିଣ୍ଡରେ ସଂସାରକୁ ତତ୍‌କ୍ଷଣାତ୍ ଖସାଇ ଦିଅ । ଯାଅ ଚାଲି ସେଇ ହରଦ୍ୱାରେ ।"

ସେ କେବଳ ପେଜୁଆ ପେଜୁଆ ଆଖିରେ ମୋତେ ଭେଦି ଆଉ କୁଆଡେ ଅନେଇ ରହିଲା । ସହସ୍ର ଭିତରେ ଜଣଏ ଯଦି ଏପରି ଜ୍ଞାନଦୀପ୍ତ ସନ୍ନ୍ୟାସ ନେଇପାରେ, କେତେ ଭାଗ୍ୟବାନ୍ ସେ ଏବଂ କେତେ ଭାଗ୍ୟବତୀ ତା'ର ଗର୍ଭଧାରଣୀ ମା' !

ମନେପଡିଗଲେ ବିନୋଦ ଯାଦବ ଏବଂ ତାଙ୍କ ସହଧର୍ମିଣୀ । ସେମାନେ ଆମର ସମବୟସ୍କ । ଅଧିକାଂଶ ଭୋଜି ସଭାରେ ଆମେ ତାଙ୍କୁ ଦେଖିଛୁ । ଲାଗି ଲାଗି ବସି ତାଙ୍କର ପୋଷାକକୁ ଅନାଇଁ ମୂଲ୍ୟ ଅନୁମାନ କରିଛୁ । ଭାବିଛୁ ସେମାନେ ଆଉ ଗୋଟାଏ ପର୍ଯ୍ୟାୟର ମଣିଷ ।

ସେତେବେଳେ ମୋର ମନେପଡିଗଲା ଯେ ଅଶୋକ ତାଙ୍କର ଏକମାତ୍ର ସନ୍ତାନ । ସେମାନଙ୍କର ଗୋରା ଗୋରା ମୁହଁଟିମାନ ହଠାତ୍ କାନ୍ଦୁରା ଦେଖାଗଲା । ଆମର ପୁଅଟିଏ ଥିଲେ ଯାରି ବୟସର ବୋଧହୁଏ ହୁଅନ୍ତାଣି । ଧଡ୍‌କରି ଗୋଟିଏ କ'ଣ ମୋ' ଭିତରେ ବନ୍ଦହୋଇଗଲା । ମୁଁ ଅନାଇଲି ମୋ' ପାଖର ଖାଲି ଚୌକିଟିକୁ, ଯୋଉଠି ରୋହିଣୀ ଭାରି ଗମ୍ଭୀର ହୋଇ ଏଇନେ ବସିଥାଆନ୍ତା । ମୁଁ ଛନଛନ ହୋଇ ଉଠି ଠିଆହୋଇପଡିଲି । ଅଶୋକ ମଧ ଶିଷ୍ଟାଚରରେ ଠିଆହେଲା । ମୁଁ ତା'ର ହାତ ଧରିପକାଇଲି । କହିଲି – ବସ । ମୁଁ ନିଜେ ତା' ପାଖରେ ବସିପଡିଲି । କହିଲି – ଦେଖି ତୁମ ହାତ ! ଫିକା ଗୋଲାପ ପାଖୁଡା ପରି ତା'ର ପାପୁଲି । ମୋ' ଦେହସାରା ଶୀତେଇ ଉଠିଲା । ସେ ସେମିତି ନିର୍ବିକାର ହାତ ଦେଖାଇ ବସିଥାଏ । ମୁଁ ତା'ର ରେଖାକୁ ଚାହିଁଥାଏ କେବଳ । ଏଇ ବୋଧେ ତ୍ରିଶୂଳ ଚିହ୍ନ ! ଏଇ ମହାପୁରୁଷର ଲକ୍ଷଣ । ଏ ଅବଶ୍ୟ ସନ୍ନ୍ୟାସୀ ହୋଇଯିବ ଗୌତମ ପରି । ରାଜା ଭର୍ତ୍ତୃହରି ପରି ତାଙ୍କୁ ଐଶ୍ୱର୍ଯ୍ୟ ବାନ୍ଧି ରଖିପାରିବ ନାହିଁ । ଏ ଚମତ୍କାର ବାଳଗୁଡିକ ଜଟା ହୋଇଯିବ । ଏ ଦେହରେ ଖାର ମାଡିଯିବ । କୌପୀନବନ୍ତ ହୋଇ ଏ ଚାଲିଯିବ ଉତ୍ତରକୁ ।

ମୁଁ ବୋଧହୁଏ ଗୋଟାଏ ହାତ ବା କାନ୍ଧ ଉପରେ ବେଢେଇଦେଇ ତାକୁ ଚପିଦେଲି । ସେ ଟିକେ ଯେମିତି ଘାବରେଇଲ ପରି ଚାହିଁଲା । ମୁଁ କହିପାରିବି ନାହିଁ ମୋ' ଆଖିରେ ସେତେବେଳେ ପାଣି ଭରିଯାଇନଥିଲା ବୋଲି ।

"ଆତ୍ମାକୁ ଜାଣିବାକୁ ହେଲେ ଗୃହତ୍ୟାଗ କରିବା ସେଭଳି ଅନିବାର୍ଯ୍ୟ ନୁହେଁ । ଭିତରର ସାକ୍ଷୀ ପୁରୁଷକୁ ଚିହ୍ନ । ତା'ର ସାକ୍ଷାତ୍ କଲେ ଏଇଠି ରହି ମଧ ସବୁ ହୋଇପାରିବ । ...............ଦ୍ୱା ସୁପର୍ଣ୍ଣା..." ଇତ୍ୟାଦି ଇତ୍ୟାଦି ମୋର ଭାଷଣ – ଚତୁର ମୁହଁରୁ ଅଭ୍ୟସ୍ତ ବକ୍ତୃତା ବାହାରୁଥାଏ । ଭିତରେ କିନ୍ତୁ ଗୁମୁରୁଥାଏ – "ଘଟଣ ନ ଦିଶେ ପୁର ନଥିଲେ ଗୋବିନ୍ଦ ଲୋ କୋଇଲି..." ବାପ-ମା'ଙ୍କୁ ଅନ୍ଧକରି ଅଲିଅଳ ପୁଅ ତୁ ଯାଆନା ରେ । କାହାପାଇଁ ସେ ଆଉ ବଞ୍ଚିବେ ? କାହାପାଇଁ

ଖଣ୍ଡକ୍ଷୀର – କାହାପାଇଁ ଏ ହୀନିମାନ ଜୀବନ ?

X X X X

ମହାପୁରୁଷ ଅଶୋକ । ଏ ଭୂମିର ଆଧ୍ୟାତ୍ମିକ ପୁନରୁତ୍ଥାନ ପାଇଁ ସେ ହୁଏତ ଜନ୍ମ ନେଇଛି । ଯୁଗନ୍ଧର ଅଶୋକ ! ତାକୁ ମୁଁ ନିବର୍ତ୍ତାଉଛି ତା'ର ପ୍ରୋଜ୍ଜ୍ୱଳ ପନ୍ଥାରୁ । ଏ ଭୂମିରେ ପୁଣ୍ୟଶ୍ଳୋକ ମହାପୁରୁଷ ଆଉ ଲକ୍ଷେ ଜନ୍ମ ହେବେ । କିଛି ଶତାବ୍ଦୀ ଘୁଞ୍ଚିଯାଉ ବରଂ ଏ ଜାତିର ଚେତନା...

କିନ୍ତୁ ଏଭଳି ପୁଅ କ'ଣ ମିଳେ ?

ଅଶୋକ କହିଗଲା ଆସନ୍ତା ରବିବାର ପୁଣି ଆସିବ ବୋଲି । ଆସୁ । ସେଦିନ ରୋହିଣୀ ବି ଥିବ । ସେ କହୁ ମୁଁ ଭୁଲ୍ କରୁଛି ନା ଠିକ୍ କରୁଛି ।



# ଚେର

ଚଢେଇଟା ଅନେକ ବେଳୁ ଝରକା ଉପରେ ବସି ଡାକୁଥାଏ । ଏପଟ ସେପଟ ମୁହଁ ବଙ୍କେଇ ଚାହୁଁଥାଏ; ପୁଣି ଡାକୁଥାଏ । କିଶୋର ଭାର୍ଗବ ପକ୍ଷୀଟିକୁ ଏକାଗ୍ରତାରେ ଚାହିଁରହିଥା'ନ୍ତି । ବେଳେବେଳେ ମୁଣ୍ଡ ଉପରେ ବୁଲୁଥିବା ପଙ୍ଖାଟାକୁ ଦେଖିଦେଇ ଫଟ୍‌କିନା ଆଖି ଫେରେଇ ଆଣୁଥା'ନ୍ତି । ତଳକୁ ଗାଲିଚା ଉପରେ ଖୋଜି ଯିବାକୁ ପ୍ରଚଣ୍ଡ ଆଗ୍ରହ ହେଉଥିଲେ ସୁଦ୍ଧା ସେ ଜମା ସେଆଡେ ଚାହିଁ ପାରୁ ନଥା'ନ୍ତି ।

ଠିକ୍ ଆଠଟା ପଇଁତ୍ରିଶ ବେଳେ ଚଢେଇଟିଏ ପଶିଆସିଥିଲା । ଚାହିଁଥିଲା ସର୍‌ସର୍ ବୁଲୁଥିବା ପଙ୍ଖାକୁ ଭେଦି ଯିବାକୁ; କୁଟାଟିଏ ନେଇ ତା' ନୂଆ ବସାରେ ଗୁନ୍ଥି ଦେବାକୁ । ଠକ୍‌କିନା କିଛି ଗୋଟାଏ ଛିଣ୍ଡିଗଲା ପରି ଶବ୍ଦ ହେଲା । ଥପ୍‌କିନା କଣଟାଏ ଖସିପଡିଲା ଗାଲିଚା ଉପରେ । ଛିଞ୍ଚାଡିଲା ପରି ଟୋପାଏ ରକ୍ତ ତାଙ୍କ ଟେବୁଲ ଉପରେ ବୁଣିହୋଇଗଲା । ସେ ତାକୁ ବୁଝିବାକୁ ଚେଷ୍ଟା କଲାବେଳେ ପାତଳ ଶୁଖିଲା କୁଟାଖିଏ ଆସ୍ତେ ଭଉଁରି କାଟି ଓହ୍ଲେଇ ଯାଇଥିଲା ରକ୍ତଛିଟା ଉପରକୁ ।

ତା'ପରେ ଝରକା ଉପରେ ଆତୁର ହୋଇ ଡାକୁଥିବା ଅନ୍ୟ ପକ୍ଷୀଟିକୁ ସେ ଚାହିଁରହିଥା'ନ୍ତି । ଗାଲିଚା ଉପରେ ନିସ୍ତବ୍ଧ ପଡିଥିବା କଟା ମୁଣ୍ଡଟିକି କେହି ଦେଖି ପାରୁନଥା'ନ୍ତି – ସେ କିମ୍ବା ରାବୁଥିବା ସେ ଚଢେଇ ।

ନିସ୍ତବ୍ଧ ଗାଲିଚା ଉପରେ ସନ୍ତର୍ପଣରେ ଚାଲିଆସି ପ୍ରାଇଭେଟ୍ ସେକ୍ରେଟେରୀ ଫେରିଗଲେ । କୌଣସି ବ୍ୟବସାୟଗତ ଦଲିଲପତ୍ର ନେଇ ମେନେଜର ପଶିଆସିଲେ ଏବଂ ଫେରିଗଲେ । କାହାରି ସାହସ ହେଲାନାହିଁ କିଶୋର ଭାର୍ଗବଙ୍କ ଧ୍ୟାନ ଭାଙ୍ଗିବାକୁ ।

ହେଇ ତ' ସେଦିନ ସମଗ୍ର ଲକ୍ଷ୍ନୌ ସହରକୁ ଚମକାଇଦେଲା ପରି ବରାତ୍ ବାହାରିଥିଲା ଚାରବାଗ୍‌ରୁ ସନ୍ଧ୍ୟା ଛ'ଟାରେ । ହଜରତ୍‌ଗଞ୍ଜରେ ପହଞ୍ଚିଲାବେଳକୁ ରାତି ଏଗାର । ରାସ୍ତାସାରା ତୋପ, ଧମାକା, ହାବେଳି, ଫୁଲଝରି ଏବଂ ଦଶହଳ ହରକିସମ ବାଜାରେ ଚମକିଉଠିଥିଲା । ଶୁଭାନ୍ନାଲ୍ଲା ! ଏମିତି ବାରାତ୍ ସେଠିକା ବୁଜ୍‌ରୁଜ୍‌ମାନେ ବି ତାଙ୍କ ଜିନ୍ଦେଗୀରେ ଦେଖିନଥିଲେ ବୋଲି

ମାନିଯାଇଥିଲେ । ବଡବାବୁ ନିଜେ ହିସାବ ଦେଖି କହୁଥିଲେ ଯେ ବାରାତ୍ ବେଳେ ଖାଲି ଅତ୍‌ତର ବିଛାଡିବା ବାବଦକୁ ସାତ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ।

ଦୌଲତରାମ୍ ଝଣ୍ଡେୱାଲା ବି କମ୍ ଲୋକ ନୁହେଁ । ଝିଅବିଭାବେଳେ ସେ ହରିଶ ଭାର୍ଗବଙ୍କୁ ମଧ୍ୟ ତାଜ୍ଜୁବ କରିଦେଇଥିଲା । କି ସେ ଭୋଜି... କି ସେ କାରବାର !! ପଇସା ତ ପାଣି ମାଫିକ୍ ବୋହିଗଲା । ଖାନାର ଖୁସ୍‌ବୁ ଲୋକଙ୍କ ମୁହଁରୁ ଯାଇନଥାଏ; ହାତରୁ ଖାଣ୍ଟି ଘିଅର ଚିକ୍‌କଣ ଛାଡିନଥାଏ, ଅଥଚ...

...ଅଥଚ ଚଉଷଠୀ ବାସି ଦିନ ହରିଶ ଭାର୍ଗବ ଚାଲିଗଲେ ! – ଏବଂ ଦଶ ଘଣ୍ଟା ପରେ, ସେଇ ରାତିରେ ଏଡେ ବଡଘର ଝିଅ, ଏଡେ ବଡଘର ବୋହୂ, ବିଷ ଖାଇ ଶୋଇଗଲା । ହୁଲସ୍ଥୁଲ୍ ପଡିଗଲା ଦେଶସାରା । କେମିତି ଏବଂ କାହିଁକି ଏଡେ ସୁନ୍ଦର ସଂସାର ଏମିତି ଉଜୁଡିଗଲା କେହି ବୁଝି ପାରିଲେ ନାହିଁ । ସେ ଦିନ ସହରର ଅଧେ ଲୋକ ଦୁଃଖରେ ରୋଷେଇ ନ କରି ଶୋଇଗଲେ । ଛୁଟିଦିନ ଭଳି, ଲକ୍ଷ୍ନୌ ରାସ୍ତାରେ ଖଣ୍ଡେ ଦୁଇଖଣ୍ଡ ଗାଡି ଦିନସାରା ଚାଲିଥିଲା । ମେଘୁଆ ପାଗରେ ପବନ ବହୁନଥିଲା । ଗଛଗୁଡିକ ଭାରି ଭାରି ଡାଳ ଝୁଲେଇ ନିସ୍ତବ୍ଧ ଠିଆରହିଯାଇଥିଲେ ।

ହରିଶ ଭାର୍ଗବଙ୍କୁ ବୟସ ହୋଇଯାଇଥିଲା । ଗୋଟିଏ ବୋଲି ପୁଅର ବିଭାଘର ସାରିଦେଲା ପରେ ତାଙ୍କ ଜୀବନର ସାଧ ମେଣ୍ଟି ଯାଇଥିଲା । ସେ ହୁଏତ ଖୁସିରେ ଉଛୁଳିପଡିଥିଲେ ଏବଂ ତାଙ୍କର ବତିଶ ବନ୍ଧନ ଛିଣ୍ଡିଯାଇଥିଲା । କିନ୍ତୁ ତାଙ୍କ ବୋହୂ – ସେ ଅଲିଅଳୀ ରାଜକନ୍ୟା ପରି ଅପରୂପ ଲାବଣ୍ୟମୟୀ ବୋହୂ – ସେ କାହିଁକି ବିଷ ଖାଇଦେଲା ? କିଏ କହିବ କାହିଁକି ଖାଇଦେଲା ?

ଲୋକେ କିନ୍ତୁ ଫିସ୍‌ଫିସ୍ କହିଲେଣି । ଅନେକ ଗୁଜବ୍ ଆସ୍ତେ ଆସ୍ତେ ବାହାରିଲାଣି । ସେଦିନ କୁଆଡେ ବୁଢା ପୁଅ-ବୋହୂଙ୍କୁ ପାଖକୁ ଡାକି ବସିବାକୁ କହିଲେ – ବାକି ସମସ୍ତଙ୍କୁ ଘଉଡି ଦେଇଥିଲେ । ସେଇଠୁ ଥଙ୍ଗେଇ ଥଙ୍ଗେଇ କ'ଣସବୁ କହିଲେ । କେଜାଣି କ'ଣ ସବୁ ସାଙ୍ଘାତିକ ଗୁପ୍ତ କଥା କହିଥାଇ ପାରନ୍ତି ହୁଏତ ! ଦୂରରେ ଥାଇ କେହି କେହି ଦେଖିଲେ ଯେ ବୋହୂଟି ଦୁଇ ହାତରେ ମୁହଁ ଘୋଡେଇପକେଇଥିଲା । କିଶୋର ଭାର୍ଗବଙ୍କ ଆଖି ତରାଟିହୋଇ ତଳପାଟି ଓହଳି ପଡିଥିଲା ।

କ'ଣ କହିଲେ ବୁଢା ହରିଶ୍ ଭାର୍ଗବ ! କାହିଁକି କହିଲେ ? ହୁଏତ ମରିବା ପୂର୍ବରୁ ସେ କୌଣସି ସେପରି ଜରୁରୀ ରହସ୍ୟ ଖୋଲିଦେଇ ଚାଲିଯିବାକୁ ଚାହିଁଥିଲେ ! କ'ଣ ସେ ଭୟାନକ ରହସ୍ୟ ?

ସେଇଦିନଠୁ ଏ ଅଚଳାଚଳ ସମ୍ପତ୍ତିର ମାଲିକ ଏହି ଆନମନା ଯୁବକ ! କିଶୋର ଭାର୍ଗବ ଛ'ମାସ ଭିତରେ କିଛି ଝଡିଯାଇଛନ୍ତି, କିଛି କଳାପଡିଯାଇଛନ୍ତି; କିନ୍ତୁ ଅସମ୍ଭବ ଗମ୍ଭୀର ହୋଇଯାଇଛନ୍ତି । କାହାରି ସାହସ ହେଉନାହିଁ ତାଙ୍କୁ ଆସି ହୁ'କିନା କିଛି କହିଦେବା ପାଇଁ । କାମରେ ଏମିତି ଖଟଣି ଯେ ସମସ୍ତେ ହାଲିଆ ହୋଇ ଘରକୁ ଚାଲିଗଲା ପରେ, ରାତି ବାରଟା ଗୋଟାଏ ପର୍ଯ୍ୟନ୍ତ ସେ ଯନ୍ତ୍ର ଭଳି କାମ କରିଚାଲିଛନ୍ତି । ତାଙ୍କ ଖାସ୍ ଦପ୍ତର ଭିତରେ ଏ ବଖରାରୁ ସେ

ବଖରା ସବୁ ପୁରୁଣା ଦଲିଲ ଘାଣ୍ଟି ଲାଗିଛନ୍ତି – କ'ଣଟାଏ ଖୋଜୁଛନ୍ତି ସତେ ବା ! ନିଜକୁ କୌଣସି କାରଣରୁ ସେ ଏମିତି ଦଣ୍ଡ ଦେଉଛନ୍ତି ସତେ ବା ! ସତେ ବା କୌଣସି ଅପରାଧ ସେ କରିପକାଇଛନ୍ତି ଏବଂ ମୁଣ୍ଡପାତି ନିଜଠାରୁ ନିଜେ ଶାସ୍ତି ଗ୍ରହଣ କରିନେଉଛନ୍ତି ।

ବୁଢା ଜଇସୱାଲ ଅଳ୍ପଦିନ ହେବ ହାତ ମକଚି ଲଇଁ ସାକୁଡି ନେହୁରା ହେଲା ପରେ କହିଲେ, "ଏତେ ଅଳ୍ପ ବୟସରେ ଜୀବନରେ ଏମିତି ଭାରି ଧକ୍‌କା ଲାଗିବା ଅତି କଷ୍ଟର କଥା; କିନ୍ତୁ ସମୟ ଆପେ ଆପେ ଘା' ଉପରେ ବକଲା ବାନ୍ଧିଦେବ । ଆପଣଙ୍କ ଜିନ୍ଦେଗୀ ପୁଣି ହସିଉଠିବ । କିଏ ବା' ହରିଶ ଭାର୍ଗବଙ୍କ ଘରେ ବନ୍ଧୁ ବାନ୍ଧିବାକୁ ଡେଇଁ ନ ପଡିବ ? କେତେ ମାତବ୍‌ର ଲୋକ ଖାଲି ଇସାରା ପାଇଗଲେ... ।" ତାଙ୍କ କଥା ଏଠି ଅଧାରେ ଜମାଟ ବାନ୍ଧିଗଲା । କିଶୋର ଭାର୍ଗବଙ୍କ ସ୍ଥିର ଚାହାଣିରେ କାକର ହୀରା ଜଡଉ ହୋଇଥାଏ । ମୁହଁଟା ତାଙ୍କର ବରଫ ଘୋଡେଇଥିବା ପାହାଡଟାଏ ।... ଜଇସୱାଲ ସାକୁଡିଗଲେ । କିଏ ତ ଜଣେ କହୁଥିଲା ଯେ ବୁଢାର କୁଆଡେ ବିଭା ହେବାକୁ ଝିଅଟିଏ ଅଛି । ହୁଁ, କମ୍ ଛୁବ୍ ନୁହେଁ ତ ! ଠିକ୍ ପାଇଗଲା ପାନେ ।

ଯା'ପରେ ତାଙ୍କର ପୁନର୍ବିବାହ ପ୍ରସ୍ତାବ ଆଉ କେହି ଉଠେଇବାକୁ ସାହସ କରିନାହାନ୍ତି । ସାଙ୍ଗ-ସୁଖ ଆସିଲେ ସାମାନ୍ୟ ଶିଷ୍ଟାଚାରରେ ସେମାନଙ୍କର ଚର୍ଚ୍ଚା କରୁଛନ୍ତି ସତ; କିନ୍ତୁ ତାଙ୍କ ସାଙ୍ଗରେ ଜମା କୁଆଡେ ବାହାରୁନାହାନ୍ତି ।... ଏତେ ଘନିଷ୍ଠ ବନ୍ଧୁ ହରିନାରାଏନ୍ ଶର୍ମା । ହାତ ଧରି ତାକୁ ଭିଡିନେଲା ପରି ଡାକିଲା ମନ ପରିବର୍ତ୍ତନ କରିବାକୁ; କାଶ୍ମୀରଆଡେ ଘେରାଏ ବୁଲିଆସିବାକୁ । ହେଲା ନାହିଁ । ଅଳ୍ପଟିକିଏ ଶୁଖିଲା ହସ ଭିତରେ ସେ ହାତ ଛଡାଇ ଆଣି ମନାକରିଦେଲେ ।

ହେଡ୍ ବବୁର୍ଚ୍ଚି କହୁଥିଲା ଯେ ସେ ଆଉ ପୂର୍ବଭଳି ସଉକ୍‌ରେ କିଛି ଖାଉନାହାନ୍ତି । ଏତେ ଚମତ୍କାର ସରାବ୍, ଖୁସ୍‌ବ୍‌ଦାର ମୁର୍ଗୀ ମୁସଲ୍ଲିମ – ଆଡଆଖିରେ ଟିକିଏ ଚାହିଁ ଦେଉନାହାନତି । ତାଙ୍କର ଦିଲ୍ ଖୁବ୍ ଦବିଯାଇଛି । ନହେଲେ ରାତିରାତି ସେ ତାଙ୍କ କମରାରେ ଆଲୁଅ ଜାଳି ଉଜାଗର ରହନ୍ତେ ନାହିଁ । ଜରୁରୀ ଇଲାଜ ନହେଲେ ଅବସ୍ଥା ଭାରି ନାଜୁକ୍ ହେଇଯିବ ! ଏମିତି ଏମିତି ଦିନେ ହୁଏତ ସେ ନିଜକୁ ଖୁନ୍ କରି ପକେଇବେ !! ଗେପ୍ !... ଗେପ୍‌ବେ, କାଳତୁଣ୍ଡା କାହାଁକା ! କାହିଁକି ସେମିତି ହେବ ?

ସମସ୍ତେ ନିଜ ନିଜ ଆୟତ୍ତରେ ଭାଳେଣି କରୁଛନ୍ତି; କିନ୍ତୁ କ'ଣ କରିହେବ ? ଏତେ ବିରାଟ ସଂସ୍ଥା ! ପାଞ୍ଚ ହଜାର କର୍ମଚାରୀ ! କୋଟି କୋଟି ଟଙ୍କାର କାରବାର ! ଏ ସବୁ ଯେଉଁ ମାତ୍ର ଗୋଟିଏ ସୂତାରେ ଝୁଲିରହିଛି, ତା'ର କେରି କେରି ଏମିତି ଛିଣ୍ଡିଯାଉଥିବା ଏକ ସାଙ୍ଘାତିକ ବିପଦର ସୂଚନା । କିନ୍ତୁ କ'ଣ କରାଯାଇପାରିବ ? ମାଲିକ ମୁହଁ ଫିଟାଇ ହୁକୁମ କଲେ, ସେମାନେ ତାଙ୍କ ପାଇଁ ଆସ୍‌ମାନ୍‌ରୁ ଚାନ୍ଦ ତୋଳିଆଣି ଥୋଇଦେବାକୁ ପ୍ରସ୍ତୁତ ଅଛନ୍ତି । ଚାହିଁଲେ ନିଜ ପ୍ଲେନ୍‌ରେ ସାରା ପୃଥିବୀ ଘୂରି ଆସି ମନ ପରିବର୍ତ୍ତନ କରିବାକୁ କେହି ମନା କରୁନାହିଁ । ଲୋକ ଅଛନ୍ତି ସବୁ ସମ୍ଭାଳି ନେବାକୁ; କିନ୍ତୁ ସେ ଗୁମ୍ ଖାଇ ଏମିତି ବସିରହୁଛନ୍ତି, ଏମିତି ଖଟୁଛନ୍ତି, ଏମିତି ନିଜର

ସ୍ୱାସ୍ଥ୍ୟ, ଚେହେରା, ଜିନ୍ଦେଗୀ ବରବାଦ୍ କରିଦେଉଛନ୍ତି – ଏକଥା କେହି ବୁଝିପାରୁନାହାନ୍ତି, ସହିପାରୁନାହାନ୍ତି । କୌଣସି ପ୍ରତିକାର ମଧ୍ୟ କରିପାରୁନାହାନ୍ତି !

ଅନେକ ବେଳ ପର୍ଯ୍ୟନ୍ତ ଡାକି ଡାକି ସେଦିନ ସେ ପକ୍ଷୀଟି ବାହାରକୁ ଉଡିଗଲା ପରେ ଟେଲିକମ୍‌ରେ ବୋତାମ ଚିପି କିଶୋର ଭାର୍ଗବ ଡାକିଲେ ମେନେଜରଙ୍କୁ । ନିଜ ଇଚ୍ଛାରେ ଏଇ ବୋଧହୁଏ ସେ ଅନେକ ଦିନ ପରେ ପ୍ରଥମ ଥର ଡାକିଲେ । ଧଡପଡ ହୋଇ ମେନେଜର କିଷାନ୍ ଚନ୍ଦ ଲସରପସର ହୋଇ ମାର୍ବଲ ବାରନ୍ଦା ଉପରେ ଆସୁଥିଲାବେଳେ ଆଉରି ଦଶ ପନ୍ଦର ଜଣ ଆଗ୍ରହରେ ଗୋଡେଇ ଚାଲିଥା'ନ୍ତି । ଆଜି ରୁଦ୍ଧ ଗୁମ୍ଫା ଭିତରକୁ ଝଲକାଏ ପବନ ପଶିବାର ସେମାନେ ଅନୁଭବ କଲେ । କ'ଣ ଚାହୁଁଛନ୍ତି ମାଲିକ କିଶୋର ଭାର୍ଗବ ? ?

"ମେନେଜର ସାହେବ ! ମୁଁ କିଛିଦିନ ପାଇଁ ଟିକିଏ ବାହାରକୁ ଯିବାକୁ ଚାହୁଁଛି !" ପିଲାଟିଏ ପରି ଖୁସି ହୋଇ ହାତ ମକଚି ମେନେଜର କୁରୁଳି ଉଠିଲେ, "ଜୀ, ହାଁ ! ଜୀ, ହାଁ !" ପଛେଇ ପଛେଇ ସେ ଏଇ ଇଚ୍ଛାଟିକୁ ଆଞ୍ଜୁଳାରେ ନେଇ ସମସ୍ତଙ୍କୁ ବାଣ୍ଟି ଦେଇଥା'ନ୍ତେ । ସେବା କରିବାକୁ ସଦାତପ୍ତର କର୍ମଚାରୀମାନେ ଧାଇଁଯାଇଥା'ନ୍ତେ । କିଏ ଗାଡି ବାହାର କରି ତାକୁ ଚକ୍‌ଚକ୍ କରିଥାନ୍ତା । କିଏ ଲୁଗାପଟା ସଜାଡି ଦେଇଥାନ୍ତା । କିଏ ସାଙ୍ଗରେ ଯିବାକୁ ସଜବାଜ ହୋଇଥାନ୍ତା । ଖୋଦ୍ ମେନେଜର ନିଜେ ସେସବୁ ବନ୍ଦୋବସ୍ତ କରିଥା'ନ୍ତେ ! କିନ୍ତୁ ଏ ସମସ୍ତ ସମ୍ଭାବନାକୁ ଏଡେଇଲା ଭଳି ସେ କହିଲେ, "ମୁଁ ଟ୍ରେନ୍‌ରେ ଏକା ଯିବି ! ମୋ' ସାଥିରେ କେହି ଆସିବେ ନାହିଁ ।" ମେନେଜରଙ୍କ ଆଖିଯୋଡିକ ବିସ୍ମୟରେ ଡବଡବ । ପୁଣି ଶୁଭିଲା, "କାଲି ଯିବି । କେବେ ଆସିବି ବା ନ ଆସିବି, ଆପଣଙ୍କୁ ଚିଠିରେ ଜଣେଇବି । ଆପଣ ବର୍ତ୍ତମାନ ଆସିପାରନ୍ତି ।"

ମେନେଜରବାବୁଙ୍କ ପାଟି ଖନିମାରିଗଲା । ସେ ବା' ବା' ତା' ତା ହୋଇ ଅନେଇ ରହିଲେ । କିଶୋର ଭାର୍ଗବ ପେଣ୍ଟ୍ ମୁଣାରେ ହାତ ପୂରେଇ ଉଠିଲେ ଏବଂ କିଛି ନକହି ଟପ୍ ଟପ୍ ଚାଲିଗଲେ ଚେମ୍ବର ଭିତରକୁ । କିଷାନ୍ ଚନ୍ଦ ଚାହିଁରହିଲେ ସେଇ ଆଡେ କିଛି ସମୟ । ଛୋଟେ ମାଲିକ ସ୍କୁଲକୁ ଯିବା ଦିନଠାରୁ ସେ ତାଙ୍କୁ ଦେଖିଆସିଛନ୍ତି, ବୁଝିଆସିଛନ୍ତି । ଥରେ ସେ ମନ କୋଉଥିଲେ ଲାଗିଗଲେ ଆଉ ସହଜରେ ଛାଡିବାର ନୁହେଁ ।

ସେ ମୁଣ୍ଡ ପୋତି ଆସ୍ତେ ବାହାରକୁ ଚାଲିଆସିଲେ ! ଛୋଟିଆ ଗହଳିଟିକୁ ଭେଦି ସେମିତି ନିଜ ଅଫିସ୍ ଯାଏ କିଛି ନକହି ଚାଲିଗଲେ । ଦୁଆରମୁହଁରେ ଠିଆହେବାରୁ କିଏ ଜଣେ ପଚାରିଲା, "କ'ଣ ମେନେଜର ସାହେବ ! କ'ଣ ଖବର ଅନ୍ଦର ମହଲ୍‌ରୁ ଆଣିଲେ ?"

କିଞ୍ଚିତ୍ ରାଗିଲା ଭଳି ସ୍ୱରରେ ସେ ଉତ୍ତର ଦେଲେ, "ଆରେ ତୁମେ କ'ଣ କରିପାରିବ ନା ମୁଁ କ'ଣ କରିପାରିବ ? ଜଣେ ଯଦି ଜିଦ୍ ଧରି ବସିବ ପରଷିଲା ପଲାଉକୁ ଗୋଡରେ ମାରି ଭୋକରେ ରହିବାକୁ, ସେମିତି ଅଝଟିଆ ପିଲାକୁ କିଏ ବୁଝେଇବ ? ଠିକ୍ ଅଛି, ଯାଉ ସେ ବୋକା ଯଦି ଚାହୁଁଛି ଏକୁଟିଆ ! ଟ୍ରେନ୍ ଥାର୍ଡକ୍ଲାସ୍‌ରେ ଯେତେ ବାଟ ଚାହୁଛି ଯାଉ । ଏ ସଂସାରରେ ଯେ ଯେତିକି ପାଇବା କଥା ପାଇଯିବ । ତା' ମୁଣ୍ଡରେ ଯେତେ ଅଜାଡିଲେ କ'ଣ ହେବ ? ଇନ୍‌ସାଆଲ୍ଲାହ,

ଏକୁଟିଆ ହେଉ ପଛେ ସେ ଥରେ ଏ ମୌତ୍‌ର ଛାଇ ଭିତରୁ ମୁକୁଳିଯାଇ ବାହାରେ ବୁଲିଆସିଲେ ମିଜାଜ୍ ବଦଳିଯିବ । ଠିକ୍ ଅଛି, ତୁମେ ସବୁ ଯେ ଯାହା କାମକୁ ଚାଲିଯାଅ । ମୁଁ ବୁଝେ – ଆଉ କ'ଣ କରିବାକୁ ହେବ !"

X X X X

ଧୂଳିଆ ରାସ୍ତା ଉପରେ ଖଣଖଣ ଝଣଝଣ ହୋଇ ବସ୍ ଖଣ୍ଡିକ ଆଗେଇଗଲା ପରେ ସମସ୍ତଙ୍କ ଦୃଷ୍ଟି ସେ ନୂଆ ଲୋକଟି ଉପରେ ପଡିଲା । ନଡା ଘର, ମାଟିକାନ୍ଥ, ଲୋଚା କାଳିଆ ଚା ଡେକ୍‌ଚି ଆଉ ସେ ଗହୀର ଆଖିଆ ଟିମିରାପେଟିଆ ଦୋକାନୀ ସମସ୍ତେ ଅନେଇ ରହିଲେ । ଦୋକାନ ଆଗରେ ଦୁଇଟି ଖୁଣ୍ଟି ଉପରେ ବାଡିଆ ହୋଇଥିବା ପଳଖ ପଟା ଉପରୁ ଏକବସ୍ତ୍ରୀ ଦୁଇଟି ମଣିଷ ଚାହିଁରହିଲେ । ଦି'ପହରିଆ ହିଙ୍ଗ୍ ହିଙ୍ଗ୍ ବୁଲୁଥିବା ଧୂଳିଧୂସର ସେ କଇଁରି ମୁଣ୍ଡିଆ ଲଙ୍ଗଳା ପିଲାଟି ଅସନା ଆଙ୍ଗୁଠିଟାକୁ ପାଟିରେ ଭର୍ତ୍ତିକରି ଚାହିଁରହିଲା ।

କିଏ ସେ ଧୋବଧୋଉଳିଆ ଜଣକ ? କାହିଁକି ସେ ଆସି ଏ ଗାଁରେ ଓହ୍ଲେଇଲା ? କାହା ଘରକୁ ଯିବ ? ଲୋକଟି ହାଲିଆ ଜଣାପଡୁଥାଏ; କିନ୍ତୁ ତା'ର ଦୁଇଖଣ୍ଡଯାକ ମୁଣା କଳା ମଚମଚ ଚମଡାରେ ତିଆରି । ଭାରି ଦାମୀ ନିଶ୍ଚୟ ! ତା'ର ଧୋଥି ପଞ୍ଜାବି ମଧ୍ୟ ଅନେକ ସଫା । କୋଉଠି ହେଲେ ଟିକିଏ ଚିରି ନାହିଁ କି ତାଳି ପଡିନାହିଁ । ତା' ଦେହରୁ ଧୂଳି ପୋଛିଦେଲେ ତା' ଚମଡା ମଧ୍ୟ ଖୁବ୍ ଦାମୀ ଆଉ ଟକ୍‌ଟକ୍ ଗୋରା ହୋଇ ବାହାରିବ ।

ସେ ଚାରିଆଡକୁ ଥରେ ଚାହିଁନେଲା । ନରମ ହିନ୍ଦୀରେ ପଚାରିଲା, "ୟେ କାଟାପାଲି ହେ ?" ସମସ୍ତେ ପରସ୍ପର ମୁହଁକୁ ବାଲୁବାଲୁ ଅନେଇଲେ । କିଛି ବୁଝିପାରିଲେ ନାହିଁ । କିଛି ସମୟ ରହି ଦୋକାନୀ କହିଲା, "ହଁ, ଏଇଟା କଟାପାଲି । କାହାକୁ ଖୋଜୁଛନ୍ତି ?"

ସେମିତି ସରଳ ହିନ୍ଦୀରେ – "ଆଚ୍ଛା ଏଠି ଘର ମିଳିବ ?"

ମାନେ ? ଘର କ'ଣ ମିଳିବ ? ଘର କ'ଣ ସଉଦା ? ଘରେ ତ' ଲୋକେ ରହିଛନ୍ତି; ମିଳିବ କ'ଣ ? ଓ...ଭଡାଘର ବୋଧେ ଖୋଜୁଛି !

"ନାହିଁ, ଏଠି ଭଡାଘର ନାହିଁ !"

ସେ ଆଙ୍ଗୁଠି ଟେକି ଦୂରରେ ଦିଶୁଥିବା ଗୋଟିଏ ପକ୍‌କା ଘର ଦେଖେଇ କହିଲା, "ସେ ଘରଟା କାହାର ?" କାଲୁରୁ ବାଲୁରୁ ହୋଇ ସମସ୍ତେ ଆଖି ତରାଟି ଏକାଠି କ'ଣ କହିଲେ । ସେ କିଚି ବୁଝିପାରିଲା ନାହିଁ । ଚା ଦୋକାନୀ କହିଲା, "ଆରେ ଆରେ, ଛି' ଛି ! ସେଇଟା ପରା କୋଢି ଘର ! ସେଇଠି ବଡରୋଗିଆମାନେ ରହନ୍ତି !"

ସେ ତା' ଦୁଇଖଣ୍ଡ ବେଗ୍ ଟେକି ଧରିଲା । ଦୋକାନୀ ଭିତରୁ ଡିଆଁ ମାରି ଆସି ତା' ଆଗରେ ବାଟ ଓଗାଳି ଠିଆହେଇଗଲା – "ହାଁ, ହାଁ, ତମେ କୁଆଡେ ଯିବ !" ତା'ପରେ ଖୁବ୍ ଚେଷ୍ଟାକରି ବୁଝେଇଲା, ବଡରୋଗ କ'ଣ । ତା' ଆଖି ତରାଟି ହୋଇ ରହିଥାଏ । ସେ ଛାନିଆ ହେଲା ପରି ପାଟିକରୁଥାଏ । ବୁଝିପାରୁ ନଥାଏ, ସେ ବିଦେଶୀ ଜଣକ କେମିତି ତା' ବୋଲ ନମାନି

ସେ ନିଷିଦ୍ଧ ଅଞ୍ଚଳକୁ ଯିବାକୁ ଗୋଡ କାଢୁଛି ।

ସେ ଲୋକଟି ପୁଣି ପଚାରିଲା, "ଆଚ୍ଛା, ସେଇଠି ଆଉ କିଏ ଥାଏ ?"

"ସେଇଠି ? ସେଇଠି ଥାଏ ମେରୀ ସାଇବାଣୀ ବୁଢ଼ୀ । – ସେ କୋଢିମାନଙ୍କୁ ସେବାକରେ, ଓଷୁଧ ଦିଏ । ନିଜେ ସେଇଠି ଗୋଟିଏ ଅଲଗା ଘରେ ରହେ । ଆଜକୁ ତିରିଶ କି ଚାଳିଶ ବର୍ଷ ହେଲା ସେ ରହିଗଲାଣି ।"

"ହାଁ – ମୋର ତାଙ୍କରି ପାଖରେ କାମ ଅଛି – ମୁଁ ଆସୁଛି !"

ସମସ୍ତେ ତା'ପରେ ଅପସରିଗଲେ ଏବଂ ସେ ଲୋକଟି ଗୋଟିଏ କଚ୍ଚା ରାସ୍ତା ଉପରେ ଦୁଇଟି ବେଗ୍ ଧରି ଗୋଟିଏ ଗୋଟିଏ ପାହୁଣ୍ଡ କାଢି ଆଗେଇଲା । ଏମାନେ ସମସ୍ତେ ନାଲି ମୁରୁମ୍ ରାସ୍ତା ମୁଣ୍ଡରେ ଠିଆହୋଇ ଦେଖୁଥା'ନ୍ତି । ସେ ଗୋରା, ଉଚ୍ଚ ସୁନ୍ଦର ଟୋକା ମଣିଷଟି କେମିତି ଜାଣିଶୁଣି ବାଘଗୁମ୍ଫା ଆଡକୁ ବୁଡିଯାଉଛି ।

..."ମୁଁ ଭିତରକୁ ଆସିପାରେ କି ?"

ଚମତ୍କାର ଇଂରଜୀରେ ଏ ପ୍ରଶ୍ନ ଶୁଣି ସତୁରୀ ବର୍ଷର ପାଚିଲା ଭ୍ରୂ ଯୋଡିଏ କୁଞ୍ଚେଇଗଲା । ଥରିଲା ବୀଣା-ତାର ପରି ଉତ୍ତର ଆସିଲା, "ଦୟା-କରି ଆସନ୍ତୁ !"

ମୁଣ୍ଡ ନୁଆଇ ସାମାନ୍ୟ ହସ ଭିତରେ ଆଗନ୍ତୁକ କହିଲେ, "ମୋ ନାଁ କିଶୋର ଭାର୍ଗବ, ଘର ଲକ୍ଷ୍ନୌ । ଓଡିଶାକୁ ବିଶେଷତଃ ଆପଣଙ୍କ ପାଖକୁ ଗୋଟିଏ ଗୁରୁତର କାମ ନେଇ ଆସିଛି । କିଛି ସାହାଯ୍ୟ କରିପାରିବେ ?"

ଥୋଲା ଥୋଲା ଲହୁଣି ପରି ଓହଳିଥିବା ତମ୍ବା ବର୍ଣ୍ଣର ଚମଡା ଉପରେ ଅସଂଖ୍ୟ କଳା ଛିଟ । ନୁଆଣିଆଁ ଭ୍ରୂ ଉପରେ କୁଡେଇ ହୋଇ ପଡିଛି କପାଳର ସହସ୍ର ରେଖା । ଘୋଡେଇ ହୋଇ ପଡିଥିବା ପତା ତଳେ ସାମାନ୍ୟ ପେଜୁଆ ନେଳି ନେଳି ସୁଜାମ ନରମ ଆଖି । ଢିଲା ଜାମାତଳେ ସେ ଲୋତରା ପାପୁଲି ଯୋଡିକ ବୋଧହୁଏ ଏକଦା ଖୁବ୍ ଗୋରା ଏବଂ ସୁନ୍ଦର ଥିଲେ ।

ସେ କ'ଣ ସବୁ ବସି ଲେଖୁଥିଲେ । ଅକ୍ଷରଗୁଡିକ ବଡ ବଡ ଥରିଲା ଥରିଲା, କିନ୍ତୁ ଖୁବ୍ ପରିଷ୍କାର । ଧାଡିସବୁ ଗାର କାଟିଲା ପରି ସିଧା । କିଶୋର ଭାର୍ଗବଙ୍କୁ ବସିବାକୁ କହି ସେ ଅଳ୍ପ ହସ ଭିତରେ ତାଙ୍କୁ ଚାହିଁଲେ । ଖାତାଟି ବନ୍ଦକଲେ ଏବଂ ଅପେକ୍ଷା କଲେ ।

ଇସ୍, କେତେ ନୀରବ ସେ ପରିବେଶ ! କଥା କହିବାକୁ କାହାରି ସାହସ ହେବନାହିଁ । ଭାର୍ଗବ ଇତସ୍ତତଃ କଲେ । ଚାହିଁଲେ ଧଳା କାନ୍ଥରେ ଲାଗିଥିବା କଳା କାଠରେ, କ୍ରୁଶବିଦ୍ଧ ଯୀଶୁଙ୍କର ସେ ରୋମାଞ୍ଚକର ଆକୃତିକୁ; ଗୋଠଛଡା ବାଟବଣା ସେ ବରଫଦେଶର ନାରୀ ପକ୍ଷୀଟିକୁ ।

"ଆପଣ ହରିଶ ଭାର୍ଗବଙ୍କୁ ଜାଣନ୍ତି ?"

"ଜାଣେ ।" ଅତି ନରମ ଏବଂ ମଧୁର ଉତ୍ତର । "ସେ କଲିକତାରେ ରହନ୍ତି...ସେ ଭଦ୍ରଲୋକଙ୍କୁ ଆମେ ଅନେକ ଦିନରୁ ଜାଣିଛୁ ! ସେ ଏଠାକୁ କେବେ ଆସିନାହାନ୍ତି; କିନ୍ତୁ

ପ୍ରତିମାସରେ ତାଙ୍କର ଦାନ ଆମେ କୃତଜ୍ଞତାର ସହିତ ସ୍ୱୀକାର କରୁ । ...ଅବଶ୍ୟ ଗତ ଛ'ମାସ ହେବ ତାଙ୍କଠାରୁ କୌଣସି ଚିଠି ପାଇନାହୁଁ; ହଜାରେ ଟଙ୍କା ଲେଖା ଚେକ୍ ଆସିଯାଉଛି । ଆମେ ଚିଠି ଦେଉଛୁ, ଉତ୍ତର ପାଉନାହୁଁ । ଯା'ଭିତରେ ଲକ୍ଷ୍ନୌର ଜଣେ ହରିଶ ଭାର୍ଗବଙ୍କ ମୃତ୍ୟୁରେ ଶୋକ ଖବର ବାହାରିଥିଲା । ଆମେ ଦାତାଙ୍କର ଦୀର୍ଘ ଜୀବନ କାମନା କରି ସେଦିନ ଗିର୍ଜାରେ ପ୍ରାର୍ଥନା କରିଥିଲୁ !... ସେ ବୋଧହୁଏ ବିଦେଶ ଯାଇଛନ୍ତି । ଏମିତି ଗତ ସତେଇଶ ବର୍ଷ ଭିତରେ ଅନେକ ଥର ସେ ବିଦେଶ ଯାଇଥିଲେ... ଫେରିଲେ ନିଶ୍ଚୟ ଚିଠି ଦେବେ ।"

ମୁହଁର ପ୍ରତିଟି ଛୋଟ ଛୋଟ ଲହରୀରେ ଚନ୍ଦ୍ରୋଦୟ ହୋଇଗଲା । ସେ ଆଖି ତୋଳି କାନ୍ଥରେ କାଠ କ୍ରୁଶଟିକୁ ଟିକିଏ ଚାହିଁ ମୁଣ୍ଡ ନୁଆଇଁନେଲେ । ସେମିତି ରହି କିଛି ସମୟ ବୋଧହୁଏ ପ୍ରାର୍ଥନା କଲେ । ପଛପଟ କାନ୍ଥରେ ଖୁବ୍ ଲମ୍ବା ଏବଂ ପୁରୁଣା ଘଣ୍ଟା; ବୁଢାଟିଏ ପରି ନିଦୁଆ ନରମ ପାହୁଣ୍ଡ ପକେଇ ଚାଲିଥାଏ ।

"ଆପଣ କଲିକତା ଯାଇଛନ୍ତି ?"

ଉତ୍ତରରେ ସାମାନ୍ୟ ହସ । ..."ମୁଁ...ମୁଁ କାହିଁକି କଲିକତା ଯିବି ?... ହଁ ବହୁଦିନ ପୂର୍ବେ ଥରେ ଯାଇଥିଲି । ...ଛାଡନ୍ତୁ ସେ କଥା ! ଆପଣଙ୍କର କ'ଣ କାମ ଥିଲା ?"

କିଶୋର ଭାର୍ଗବ ଗୋଟିଏ ଚମଡା ମୁଣା ଆଗକୁ ଟାଣିଆଣି ଫିଟେଇଲେ । ଭିତର ଖୋପରୁ ଖଣ୍ଡିଏ କାଗଜ ବାହାରକରି ଚାହିଁଲେ । ଓଠ ଚାଟି ବାଁହାତରେ ମୁହଁ ପୋଛିନେଲେ । ଗଳା ସଫା କଲାପରେ କହିଲେ, "ସତେଇଶ ବର୍ଷ ତଳେ ମୋହନ ପଣ୍ଡା ବୋଲି କେହି ଜଣେ ଏଠି ଥିଲେ କି ?"

ଭଦ୍ରମହିଳାଙ୍କ ମୁହଁରେ ଛାଇଟାଏ ମଡେଇ ହୋଇଗଲା । ସେ କିଶୋର ଭାର୍ଗବଙ୍କୁ ତାଜୁବ୍ ହେଲା ଭଙ୍ଗୀରେ ଚାହିଁଲେ । ତାଙ୍କର ଦାନ୍ତ ନଥିବା ନରମ ପାଟି ସାମାନ୍ୟ ଫିଟିଯାଇଥାଏ । ହାତର ଆଙ୍ଗୁଳିଗୁଡିକ ଈଷତ୍ ଥରୁଥାଏ ।

ମନକୁ ମନ କଥା ହେଲାପରି କହିଲେ, "ଅସମ୍ଭବ... ସେ ପିଲାଟା ତ ମରିଗଲା... ମାସକ ପରେ... ତେବେ..."

"କ'ଣ କହୁଛନ୍ତି ମୁଁ ବୁଝିପାରୁନାହିଁ ।"

"କଲିକତାରେ ଯେଉଁ ହରିଶ୍ ଭାର୍ଗବ ଥା'ନ୍ତି, ଆପଣ କ'ଣ ତାଙ୍କର ବନ୍ଧୁବାନ୍ଧବ ?"

"ନାଁ...କଲିକତାରେ କେହି ହରିଶ୍ ଭାର୍ଗବ ନାହାନ୍ତି । ...ଆପଣଙ୍କୁ ଯେ କଲିକତା ଠିକଣାରୁ ଟଙ୍କା ପଠାନ୍ତି, ସେ ଲକ୍ଷ୍ନୌର ଜଣେ କୋଟିପତି । ତାଙ୍କ ତରଫରୁ ମୁଁ ଆପଣଙ୍କୁ ଗତ ଛ'ମାସ ହେବ ପଠାଉଛି, କାରଣ ତାଙ୍କର ଦେହାନ୍ତ ହେବା ପରେ ଦାୟିତ୍ୱ ମୋର ।" 'ଓ !'... ରବର କଣ୍ଢେଇଟିଏ ପରି ସେ ଚୌକି ଉପରକୁ ଲଥିକିନା ଆଉଜି ପଡିଲେ । ସେମିତି କିନ୍ତୁ ଏକାଲୟରେ ଆଗନ୍ତୁକ ଯୁବକଟିକୁ ସେ ଚାହିଁ ରହିଥା'ନ୍ତି ।

"ତା'ହେଲେ... ।"

"ହରିଶ ଭାର୍ଗବ ଆଉ ଇହଧାମରେ ନାହାନ୍ତି । ମୁଁ ଏଭଳି ଅଶୁଭ ଖବର ଆପଣଙ୍କୁ ଦେଇଥିବାରୁ ଦୁଃଖିତ ।"

"ତା'ହେଲେ ତୁମେ ତାଙ୍କର ସେଇ ଏକମାତ୍ର ପୁଅ ?" ଆଙ୍ଗୁଠି ଟେକି ସେ ଉତ୍ତେଜିତ କମ୍ପିତ ଗଳାରେ ପଚାରିଲେ । ତାଙ୍କ ସାରା ଶରୀର କୌଣସି ଆବେଗରେ ଥରିଉଠୁଥାଏ ।

"ନା...ମୁଁ ତାଙ୍କ ପୁଅ ନୁହେ ।" ବିନା କାରଣରେ ଗୋଟାଏ ରୁକ୍ଷ ନିଷ୍ପତ୍ତିର ସ୍ୱର – "ସେ ହୋଇପାରନ୍ତି ଧନୀ, ମାନୀ, ଦାନୀ ହରିଶ୍ ଭାର୍ଗବ। ସମସ୍ତେ ଜାଣିବାରେ ହୁଏତ ମୁଁ ତାଙ୍କର ଏକମାତ୍ର ଉତ୍ତରାଧିକାରୀ...କିନ୍ତୁ ମରିବା ପୂର୍ବରୁ ସେ ମୋତେ କହିଦେଇଗଲେ ଯେ ମୁଁ ତାଙ୍କର ପୁଅ ନୁହେଁ । ମୁଁ...ମୁଁ ତାଙ୍କର କେହି ନୁହେଁ ।"

ମୁଣ୍ଡରେ ମୁହଁରେ କଚ୍ଚାରାସ୍ତାର ଅଜସ୍ର ଧୂଳି । ଆଖିପତାରେ ବୋଝେଇ ହୋଇଛି ଶୁଖିଲା ରଙ୍ଗମାଟିର ଗୁଣ୍ଡ । କିନ୍ତୁ ତା' ତଳେ ହୀରା ଝଟକିଲା ପରି ବଡ ଆଖି, ଘନ ନୀଳରଙ୍ଗର ଢଳଢଳ ତୋଳା ।

ମୁହୂର୍ତ୍ତେ ରହି ସେ ପୁଣି ପଚାରିଲେ, "ମୋତେ କହିପାରିବେ ଏ ମୋହନ ପଣ୍ଡା କିଏ ? ସେ ହୁଏତ ଆପଣଙ୍କ କୁଷ୍ଠାଶ୍ରମର ଅନେକ ପୁରୁଣା କଦାକାର କୌଣସି ରୋଗୀ... ମୁଁ କିନ୍ତୁ ତାଙ୍କୁ ଦେଖିବାକୁ ଚାହେଁ । ମୁଁ ସେଥିପାଇଁ ଏତେ ବାଟ ଆସିଛି । ତାଙ୍କୁ ମୋର ଅନେକ କିଛି ପଚାରିବାକୁ ଅଛି ।"

ମେରୀ ହିଲଙ୍କ ବୟସ ପ୍ରାୟ ସତୁରୀ...ପାଚିଲା ଲୁତୁପୁତୁ ଆମ୍ବଟିଏ ପରି । ଜୀବନର ସନ୍ଧ୍ୟାରେ ସେ ଟଳମଳ । ସେ ଆସ୍ତେ ଚୌକି ଛାଡି ଉଠିଲେ କାଠକ୍ରୁଶଟି ତଳେ ଆଣ୍ଠୁମାଡି ବସି ମୁହଁ ଘୋଡେଇ ପକେଇଲେ ଦୁଇ ହାତରେ । ସେ ହୁଏତ ନୀରବରେ ଅଶ୍ରୁପାତ କରୁଥିଲେ !

କିଶୋର ଭାର୍ଗବ ମୁହଁ ଫେରେଇ ବାହାରେ ଅପରାହ୍ଣକୁ ଚାହିଁଲେ । ନିଶ ଏବଂ ଗାଲ ଉପରେ ହାତ ମଡେଇ ରଖିବାରୁ ଓଠ ଆଉ ଥରିଲା ନାହିଁ । ଆଖିମଟକା ମାରିବାରୁ ପତା ଉପରେ ଶୁଖିଲା ଧୂଳି ଓଦା ହୋଇଗଲା । ଲୁହ ଝରିଲା ନାହିଁ ।

ବହୁଦୂରରେ କୋଉଠି କୁମ୍ଭାଟୁଆ ରାବୁଥାଏ । ଆହୁରି ଅନେକ ଦୂରରେ ମଣିଷ ତୁଣ୍ଡର କଥାବାର୍ତ୍ତା ଶୁଭୁଥାଏ । ଆରପୁରରୁ ମଲାମଣିଷମାନେ କଥା କହିଲେ ହୁଏତ ସେମିତି ଶୁଭନ୍ତା । କିଏ ସେମାନେ ସବୁ ସେମିତି ଗୁଣୁଗୁଣୁ ହେଉଥିଲେ ? ଉପରଓଳି ଖରାକୁ ପିଠି ଦେଖେଇ ଝଡିପଡୁଥିବା ବିକୃତ ଅଙ୍ଗଗୁଡିକୁ ବାହୁନି ବାହୁନି ବୋଧହୁଏ କୋଢି କୋଢିଣୀ ସକସକ ହେଉଥିଲେ । ରାସ୍ତାକଡ ଚା ଦୋକାନ ପାଖରେ ହୁଏତ ଗାଁଲୋକେ ବସି ଆଜି ଆସିଥିବା ବିଦେଶୀ ଯୁବକଟି ବିଷୟରେ ଚୁପରୁଚାପର ହେଉଥିଲେ; କିମ୍ବା ସତକୁସତ ସେ ନିରୋଳା ବଙ୍ଗଳାର ଖାଲି ଖାଲି ପିଣ୍ଡାମାନଙ୍କରେ ଅଶରୀରୀ ଭିଡ ଜମିଯାଇଥିଲା... କେଜାଣି ?

କୁମ୍ଭାଟୁଆ କିନ୍ତୁ ଦୂରରେ ରାବୁଥାଏ । ଫିସ୍‌ଫିସ୍ ମଣିଷ ତୁଣ୍ଡର କଥା ପରି କ'ଣ ସବୁ ଅସ୍ପଷ୍ଟ ଶୁଭୁଥାଏ ଆହୁରି ଅନେକ ଦୂରରୁ ।

କାନୁଘଣ୍ଟାର ପାହୁଣ୍ଡଗୁଡିକ ଖୁବ୍ କ୍ଳାନ୍ତ । ସେ ବୋଧହୁଏ ନିଦେଇ ଆସିଲାଣି । ପବନ ଦୋଳିରେ ଦରବୁଜା ଆଖିରେ ଝୁଲୁଛି । କେତେବେଳେ ଠପ୍‌କିନା ଶୋଇଯିବ କେଜାଣି ? ହୁଏତ ଶୋଇଯିବା ପୂର୍ବରୁ ତା' ପେଟ ଭିତରେ କଳକବ୍‌ଜା ପ୍ରଳାପ କରିଉଠିବେ । କୁଣ୍ଡ କୁଣ୍ଡ ଅନେକ କଳା ପଦାର୍ଥ ଝଡିପଡିବ ତା' ଗର୍ଭରୁ...ଯେମିତି ହେଲା ହରିଶ୍ ଭାର୍ଗବଙ୍କର । ଇସ୍ କି ଭୟଙ୍କର ସେ ରାତି !... ପଙ୍ଖା ଦାଢରେ ସୁନ୍ଦର ଚଢେଇଟିର ମୁଣ୍ଡ ଠକ୍‌କିନା ଛିଣ୍ଡିଗଲା । ତା' ଥଣ୍ଟରେ ସେ କୁଟା । ହୁଏତ ପଙ୍ଖା ସେମିତି ବୁଲି ନଥିଲେ ସେ ତା'ର ବସା ବାନ୍ଧିଥାନ୍ତା, ସଂସାର କରିଥାନ୍ତା । ପଙ୍ଖା କିନ୍ତୁ ନିର୍ବିଘ୍ନର ବୁଲିଲାଗିଚି । ଝର୍ଣ୍ଣା ଝଣ୍ଡେବାଲାକୁ କେହି କ'ଣ ପ୍ରେମ କରି ନଥିଲା ? ଇଜତ୍ ସାଙ୍ଗେ ଇଜତ୍‌ର ବିଭାଘର – ଦୌଲତ୍ ସାଙ୍ଗେ ଦୌଲତ୍‌ର । ପ୍ରାଣୀ ଦୁଇଟି ହୁଏତ ପାଖେଇ ଆସିଥା'ନ୍ତେ; କିନ୍ତୁ ସେ ସୁଯୋଗ କାହିଁ ? ଇସ୍, ମଲାବେଳେ କ'ଣ ନକଲ ତୁମେ ହରିଶ ଭାର୍ଗବ ?

କାହାର ନରମ ପାଦଶବ୍ଦରେ ସେ ବୁଲି ଚହିଁଲେ । ହାତରେ ଗୋଟାଏ ମୋଟା ପଟାବନ୍ଧା ରେଜିଷ୍ଟର ଧରି ଧୀରେ ଧୀରେ ପରଦା ଆଡେଇ ପାଖ ବଖରାରୁ ଆଗେଇ ଆସୁଥା'ନ୍ତି ମେରୀ ହିଲ୍ । କିଶୋର ଭାର୍ଗବ ଠିଆହୋଇପଡିଲେ । ଇଚ୍ଛା ତାଙ୍କ ହାତରୁ ସେ ଭାରଟିକୁ ଟେକିନେବେ । ମେରୀ ହିଲ୍ କିନ୍ତୁ ସେ ରେଜିଷ୍ଟରଟିକୁ ଆସ୍ତେ ତାଙ୍କ ଲେଖିବା ଟେବୁଲ ଉପରେ ଥୋଇଦେଲେ । ଚୌକିଟିକୁ ଟିକିଏ ଭିଡିନେଇ ଗୋଟେଇପୋଟେଇ ହୋଇ ବସିଲେ । ଯା' ଭିତରେ ସେ ଖୁବ୍ ସଂଯତ ଏବଂ ଶାନ୍ତ ଦେଖାଯାଉଥା'ନ୍ତି । ମୁହଁରେ ହର୍ଷ ବିଷାଦର ଚିହ୍ନ କିଛି ନାହିଁ; କିନ୍ତୁ କାହିଁ କୋଉ ରାଜ୍ୟରେ ଅନେକ ବାଟ ଚାଲି ଚାଲି ସତେ ବା ସେ ଖୁବ୍ କ୍ଳାନ୍ତ ହୋଇପଡିଥା'ନ୍ତି !

"ଆପଣଙ୍କ ପ୍ରଶ୍ନର ଉତ୍ତର..." ସେ ଆଙ୍ଗୁଠିରେ ରେଜିଷ୍ଟାରଟିକୁ ଦେଖେଇଦେଇ ଚୁପ୍‌ଚାପ୍ ବସିରହିଲେ । କିଶୋର ଭାର୍ଗବ ଦେଖିଲେ ଯେ ରେଜିଷ୍ଟର ସତେଇଶ ବର୍ଷର ପୁରୁଣା । ପ୍ରତିବର୍ଷ ପାଇଁ ଏଇଭଳି ଖଣ୍ଡିଏ ଖାତା ବୋଧେ ଏଇଠି ଅଛି । ଗୋଟାଏ ପୃଷ୍ଠାରେ ଖଣ୍ଡିଏ କାଗଜ ଚିହ୍ନ ଥିବାରୁ ବଳେ ସେଇଠୁ ଫିଟେଇନେଲେ ଏବଂ ଚହିଁରହିଗଲେ କିଛି ସମୟ ।

ବାଁପାଖେ କୌଣସି ଗୋଟିଏ ସୁଶ୍ରୀ ଯୁବକର ଫଟୋ । ବୟସ ବୋଧହୁଏ ତିରିଶି ପାଖାପାଖି । ମେଲା ଦେହରେ ପ୍ରଚୁର ସ୍ୱାସ୍ଥ୍ୟ । ଏଇ ତା'ହେଲେ ମୋହନ ପଣ୍ଡା ? ସେ ଅନେକ ସମୟ ଫଟୋଟିକୁ ଚହିଁ ରହିଥା'ନ୍ତି । ଫଟୋ ଆଖି ମଟକା ମାରିବ । ଦାନ୍ତ କାଢି ହସିବ । ସେ କାଗଜର ଚଉହଦି ଭିତରୁ ବାହାରି ଆସି ଆଗରେ ଠିଆ ହୋଇଯିବ । ହଉ ଦେଖିବା ।

ଡାହାଣପାଖେ ତା' ବିବରଣୀ – ସେ କେମିତି ଏବଂ କେବେ ରୋଗୀ ହୋଇ ଏ ଆଶ୍ରମକୁ ଆସିଲା । କେମିତି ଏବଂ କେବେ ତା'ର ଅବକ୍ଷୟ ହେଲା ଏବଂ ଅମୁକ ସାଲ ଅମୁକ ଦିନ ଉପରଓଳି ସାଢେ ତିନିଟାବେଳେ ସେ କେମିତି ପଇଁତିରିଶ ବର୍ଷ ଆଠମାସ ତେରଦିନରେ ମରିଗଲା ।

ଓଃ, ତା'ହେଲେ କୋଡିଏ ବର୍ଷ ତଳେ ସେ ମରିଗଲାଣି । ତା'ହେଲେ ତ କଥା ସରିଗଲା – ତା' ସାଙ୍ଗରେ ମେଣ୍ଟିଗଲା ସମସ୍ତ ସମ୍ଭାବନା । କିଶୋର ଭାର୍ଗବଙ୍କର ଅକସ୍ମାତ୍ ଦୀର୍ଘଶ୍ୱାସ ପାଇ କେହି ପ୍ରସ୍ତୁତ ନ ଥିଲେ ।

ଖାତାଟିକୁ ସେଇଭଳି ଟେବୁଲ୍ ଉପରେ ଖୋଲା ଛାଡିଦେଇ ସେ ନିଜେ ଚୌକି ଉପରେ ବେକ ରଖି ଶୂନ୍ୟକୁ କିଛି ସମୟ ଚାହିଁରହିଲେ । ହଠାତ୍ ଛାଟିଲାଭଳି ସଳଖିଯାଇ ପଚାରିଲେ – "ଆଚ୍ଛା ମାତାମ୍, ମୋହନ ପଣ୍ଡାର ଏଇ ଗାଁକୁ ଗଲେ କେହି ତା' କଥା କିଛି କହିପାରିବେ ?"

"କୋଉ କଥା ?"

"ମାନେ, ଏଇ ଧରାଯାଉ ତା'ର ବଂଶ ପରମ୍ପରା କ'ଣ ? ସେ ମୋଟାମୋଟି କିଭଳି ଚରିତ୍ରର ଲୋକ ଥିଲେ ? ସେ କାହାକୁ ବିଭା କରିଥିଲେ କି ନାହିଁ ? – ଆଚ୍ଛା ମାତାମ୍, ଆପଣ ତ କହିପାରିବେ – ସେ ଏଠାକୁ ଆସିଲା ପରେ ତା'ର ଗୋଟିଏ ପୁଅ ହୋଇଥିଲା । ସେ କୁଷ୍ଠରୋଗୀର ପିଲାକୁ ଆପଣ କ'ଣ କଲେ ? ସେ ପିଲାଟିର ମା' କାହିଁ ! ମା' କିଏ ?"

ମେରୀ ହିଲ୍ କୋଳ ଉପରେ ଆଙ୍ଗୁଠିଗୁଡିକୁ ଛନ୍ଦି ତାକୁ ଚାହିଁରହିଥା'ନ୍ତି । କିଛି ସମୟ ପରେ ମୁହଁ ଟେକି ପୁଣି ତଳକୁ ଆଖି ଜଗିନେଲେ ।

"ମୁଁ ତୁମର ସମଗ୍ର ଇତିହାସ ଜାଣେ କିଶୋର ! ମୁଁ ହିଁ ବର୍ତ୍ତମାନ ଜାଣେ, ଆଉ କେହି ନୁହେଁ ।"

ଭୃଗୁ କୁଣ୍ଠେଇଗଲା । କେତେ ଆଦରରେ, କେତେ ଆପଣାପଣର ଦରଦରେ ସେ ଟାଙ୍କ ନାଁ ଧରି ଡାକୁଛନ୍ତି । ଏ ତା'ହେଲେ ସବୁକଥା ଜାଣନ୍ତି ? ୟାଙ୍କରି ପାଖକୁ ତା'ହେଲେ ସେ ପଠାଇବାକୁ ଚାହିଁଥିଲେ ? ମୋହନ ପଣ୍ଡା ମରିବା କଥା ଜାଣି ମଧ ତାକୁ କେବଳ ଆଳ କରିଥିଲେ ହରିଶ ଭାର୍ଗବ ।

"...ଆସ କିଶୋର, ଏକାଠି କିଛି ସମୟ ପ୍ରାର୍ଥନା କରିବା । ସେ ସବୁ ଜାଣେ ଏବଂ ଆମର ସବୁ ଅପରାଧ କ୍ଷମା କରେ । ତା' ପାଖରେ ଆଶ୍ରା ନ ନେଲେ ଅନ୍ୟ ଗତି ନାହିଁ ।"

ସେ ଆଖି, ସେ ମୁହଁ ଏବଂ ସେ ସ୍ୱର ଉପେକ୍ଷା କରିବାର ନୁହେଁ । କିଶୋର ଅଗତ୍ୟା ଖାଲିପାଦରେ ଉଠି ଠିଆହେଲେ । ଖଣ୍ଡିଏ ସରୁ ଗାଲିଚା ବିଛେଇ ମେରୀ ହିଲ୍ ଗୋଟିଏ ପାଖରେ ଆଣ୍ଠୁମାଡି ବସିଲେ, ଅନ୍ୟପାଖେ ବସିଲେ କିଶୋର ଭାର୍ଗବ । ଝଲକାଏ ହାଲୁକା ପବନ ପଛପଟୁ ଆସି ପିଠି ଆଉଁଷିଦେଲା । କାହୁଁ ଆସି ମହୁମାଛିଟିଏ ଘରଯାକ ଗୁଣୁ ଗୁଣୁ ହୋଇ ଘେରା କାଟି ଉଡିଗଲା ।

"ହେ ପରମେଶ୍ୱର, ମୋତେ ସମ୍ପୂର୍ଣ୍ଣ ଅଧିକାର କର । ମୋର ହାତ କେବଳ ତୁମ କାମରେ ନିଯୁକ୍ତ ହେଉ । ମୋର ତୁଣ୍ଡ ତୁମର ଯଶୋଗାନ କରୁ । ମୋର ଆଖି ତୁମର ସୃଷ୍ଟିରେ ବିଭୋର ହେଉ । ମୋର ହୃଦୟ କେବଳ ତୁମର ହୋଇ ରହୁ ।"

ନରମ ପବନ ଦେହରେ ଚନ୍ଦନ ବୋଳିଦେଲା । ଆଖିରେ, କପାଳରେ, ବେକ ଉପରେ ଝାଳ ଶୁଖିଗଲା, ପୋଛିହୋଇଗଲା । ନିସ୍ତବ୍ଧ ପୃଥିବୀରେ ପୁରୁଣା ଘଣ୍ଟାଟି ଖୁବ୍ ଆପଣାର ମନେହେଲା । ଟକ୍ ଟକ୍ ସୁନାର ହୃତ୍‌ପିଣ୍ଡଟିଏ ଟୁକ୍ ଟୁକ୍ ଟୁକ୍ ଟୁକ୍ ହେଲା ଅନେକ ଉଞ୍ଚରୁ । ପୂର୍ଣ୍ଣ ଭରସାରେ ଆଙ୍ଗୁଠି ଧରିଥିବା ଦେଢବର୍ଷର ଶିଶୁ ପାଇଁ ଜେଜେଙ୍କ ବୁକୁର ଶବ୍ଦ ଅନେକ ଉଞ୍ଚରେ

ଖୁବ୍ ଆପଣାର ।

ଚରିଆଡୁ ନିଆଁ ଲିଭିଆସିଲା । ଶୀତଳ ହୋଇଆସିଲା ପୃଥିବୀ । ସୁନ୍ଦର ଦିଶିଆସିଲା ଦିଗନ୍ତ । ଅତି ପବିତ୍ର ମହନୀୟ ମନେହେଲା ଚରିଆଡେ ଫୁଟିଥିବା ଅସଂଖ୍ୟ ଫୁଲ ।

"କିଶୋର ! ସେଇ ମୋହନ ପଣ୍ଡା ହିଁ ତୁମର ବାପ ! ସେ ଏ ଅଞ୍ଚଳର ସବୁଠାରୁ ବିଖ୍ୟାତ ଲୋକ ଥିଲେ । ତାଙ୍କ ପରିବାରର ସମସ୍ତେ ଖୁବ୍ ଜଣାଶୁଣା । ସେ ଦୁଷ୍ଟରିତ୍ର ନ ଥିଲେ । ସେ ରୋଗୀ ନ ଥିଲେ । ଦୁର୍ବଳ ମୁହୂର୍ତ୍ତର ପାପକାର୍ଯ୍ୟ ପାଇଁ ତାଙ୍କୁ ପ୍ରାୟଶ୍ଚିତ୍ତ କରିବାକୁ ପଡିଲା । ଘୋର ଦୁଃଖ ଭୋଗକରି କୁଷ୍ଠରୋଗର ଯାତନାରେ ସେ ଚାଲିଗଲେ । ହେ ପ୍ରଭୁ, ଏ ଦୁର୍ବଳ ଜୀବଟିକୁ ପ୍ରଲୋଭନରୁ ରକ୍ଷାକର ! କ୍ଷମାକର ଅସହାୟ ପାପୀଗୁଡିକୁ ।"

– କିଶୋର ଭାର୍ଗବ ମୁଣ୍ଡ ନୁଆଁଇ ଆଖିବୁଜି ନିଶ୍ଚଳ ଭାବରେ ବସିଥା'ନ୍ତି । ପିଠିରେ ସେଇ ପବନ ଲେପିହେଉଥାଏ ।

"ଚଉଦ ବର୍ଷର ଅବୋଧ ସରଳ ଝିଅଟିଏ ଇସାବେଲା । ଅତି ସୁନ୍ଦର । କଇଁଫୁଲ ପରି ପବିତ୍ର ଏବଂ ସୁନ୍ଦର । ତା'ର ନେଳି ନେଳି ଆଖି, ତା'ର ଗଢଣ, ଦେହର ରଙ୍ଗର ତୁଳନା ନାହିଁ । ମୋହନ ପଣ୍ଡା ବ୍ୟବସାୟରେ ଆସୁଥିଲେ । ଇସାବେଲା ତାଙ୍କୁ ବିଶ୍ୱାସ କରୁଥିଲା । ମୋହନ ଦିନେ ପାଗଳ ହୋଇଗଲେ, ଅନ୍ଧ ହୋଇଗଲେ । ଇସାବେଲା ବିଶ୍ୱାସରେ ତାଙ୍କ ସଙ୍ଗେ ଖେଳିଗଲା...ସେ ଠକିହୋଇଗଲା । ଠିକ୍ ତା' ମା' ଭଳି ଠକି ହୋଇଗଲା । ଇସାବେଲା ତିନିଦିନ ତିନିରାତି ଚିତ୍କାର କଲା । କଲିକତା ଡାକ୍ତରଖାନାରେ ପେଟ ଚିରି ସେମାନେ ପୁଅଟାଏ ବାହାର କଲେ । ...କିନ୍ତୁ ଇସାବେଲା ଚାଲିଗଲା । ମଲାବେଳେ ସେ ହସୁଥିଲା । ନିଷ୍ପାପ ସ୍ୱର୍ଗଦୂତ ପରି ସେ ହସୁଥିଲା । ...ଇସାବେଲା ତୁମର ମା' !"

ପାଚି ମେଲା ହୋଇ ପବନ ଶୋଷିହୋଇଗଲା । ମଥା ଆଉରି ନଇଁଗଲା କିଶୋର ଭାର୍ଗବଙ୍କର ।

"ଓଃ, ଏ ଅପରାଧୀ ଜନ୍ତୁ ମଣିଷଟିକୁ କ୍ଷମାକର ! ସେ ଅନ୍ଧ, ସେ ଉଦ୍‌ଭ୍ରାନ୍ତ !"

"କଲିକତାରୁ ଫେରି ମାସକ ପରେ ମୋହନ ପଣ୍ଡା ବିକଟ ରୋଗରେ ଆକ୍ରାନ୍ତ ହେଲେ । ଦେହସାରା ଅଳ୍ପ ଦିନରେ ବ୍ୟାପିଗଲା କୁଷ୍ଠ । ଘରୁ ତଡାଖାଇ ପ୍ରଭୁ ଯିଶୁଙ୍କର ଆଶ୍ରିତ ହେଲେ । ସେ ଭୟଙ୍କର ଦୈବୀଦଣ୍ଡ ଆଉ କହିବାର ନୁହେଁ ! କ୍ଷମାକର ପ୍ରଭୁ, ମଣିଷ ଜୀବନକୁ କ୍ଷମାକର !"

"ସେ ପିଲାଟିକୁ ହସ୍‌ପିଟାଲରୁ ନେଇଗଲେ ହରିଶ ଭାର୍ଗବ ଏବଂ ତାଙ୍କର ନିଃସନ୍ତାନା ପତ୍ନୀ । ଇସାବେଲାର ମା' ପ୍ରତିବାଦ କଲାନାହିଁ । ସେମାନେ ଗାଡିରେ ବସି ଚାଲିଯିବା ପର୍ଯ୍ୟନ୍ତ ହସ୍‌ପିଟାଲ ପିଣ୍ଡାରେ ଠିଆହୋଇ ଚାହିଁ ରହିଥିଲା... "ଅବୋଧ ନିଷ୍ପାପ ଶିଶୁଟିକୁ ଦୀର୍ଘାୟୁ କର ପ୍ରଭୁ, ତା'ର ମଙ୍ଗଳ ହେଉ !"... ନିସ୍ତବ୍ଧ କୋଠରିରେ କାନ୍ଥଘଣ୍ଟାର ହୃତ୍‌ପିଣ୍ଡ ଝୁଲୁଥାଏ । ପାରି ଦେଉଥାଏ ନିଟୋଳ ମୁହୂର୍ତ୍ତଗୁଡିଏ ।

"ହରିଶ ଭାର୍ଗବ ହିଁ ଇସାବେଲାର ବାପ । ଯା'ର ଚୌଦବର୍ଷ ତଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ

ଆରମ୍ଭରେ ଗୋଟିଏ ପରିବାର ଏ ଦେଶକୁ ଆସିଥିଲେ । ପୃଥିବୀରେ ହଠାତ୍ ନିଆଁ ଲାଗିଗଲା । ସ୍ୱାମୀ ଚାଲିଗଲେ ଯୁଦ୍ଧକୁ; ମାତ୍ର ଦୁଇଟି ଚିଟି ଲେଖି ସେ ଚାଲିଗଲେ । ହେ ପ୍ରଭୁ, ନାରୀକୁ ଏତେ ଅସହାୟ କରନାହିଁ, ଏତେ ଦୁର୍ବଳ କରନାହିଁ । ପୋଷ୍ଟଅଫିସରେ ଚିଠି ପାଇ କାନ୍ଦୁଥିଲାବେଳେ ଜଣେ କେହି ତାଙ୍କ ଗାଡ଼ିରେ ବସେଇ ଆଣି କଲିକତା ବସାରେ ତାକୁ ଛାଡ଼ିଦେଲେ । ଦୈନିକ ଆସି ସୁବିଧା ଅସୁବିଧା ବୁଝିଲେ । ହରିଶ ଭାର୍ଗବ ଭାରି ଭଲଲୋକ । ସେ ଦିନେ ଅନେକ ରାତିଯାଏ ରହିଗଲେ । ଆଉ ଗଲେ ନାହିଁ । ଦୁର୍ବଳ ମଣିଷ ଏତେ ପ୍ରଲୋଭନ ଏଡ଼ିବା ସମ୍ଭବ ନୁହେଁ । ଏ ମାଂସ ଭିତରେ ଜଳୁଥିବା ନିଆଁକୁ ସମ୍ଭାଳିବା ସମ୍ଭବ ନୁହେଁ । ...ବର୍ଷକ ପରେ ଇସାବେଲାକୁ ନେଇ ତା'ର ମା' କଲିକତା ଛାଡ଼ି ଆସିଥିଲା ।"

"କିଶୋର, ତୁମେ ହରିଶ ଭାର୍ଗବଙ୍କ ରକ୍ତ । ସେ ମିଛ କହିଥିଲେ । ହସ୍‌ପିଟାଲରୁ ନେବାର ମାସକ ପରେ ପିଲାଟି ମରିଯିବାର ମିଛ ଖବର ମଧ ସେ ପଠାଇଥିଲେ । କିନ୍ତୁ ମରିଥିଲେ ତାଙ୍କ ସ୍ତ୍ରୀ । ପିଲାଟିକୁ ସେ ପ୍ରାଣରୁ ବଳି ଭଲ ପାଉଥିଲେ, ଲୁଚେଇ ରଖିବାକୁ ଚାହିଁଥିଲେ । ହରିଶ ଭାର୍ଗବ ଖୁବ୍ ଭଲମଣିଷ, ନରମ, ଦୟାଳୁ ମଣିଷ । ମିଛ କହିବା ଦୁର୍ବଳ ମଣିଷ ପାଇଁ ଅନିବାର୍ଯ୍ୟ । କିଶୋର, ସତ କହିବାକୁ ବଳ ନାହିଁ – ସତ କହିବାକୁ ସାହସ ଦିଅ ପ୍ରଭୁ, ଛୋଟ ଛୋଟ ମିଛକୁ କ୍ଷମାକର !"

କିଶୋର ଭାର୍ଗବର ଛାତିରେ ପାହାଡ଼ପରି ଗୋଟାଏ ପବନ ଫୁଲି ଉଠୁଥାଏ, ମଡେଇ ହୋଇ ପଡ଼ୁଥାଏ ପଞ୍ଜରା ଉପରେ । ସେ ସେଇଭଳି ଆଖି ବୁଜି ତଳକୁ ମୁଣ୍ଡପୋତି ବସିଥା'ନ୍ତି । କପାଳରେ ଝିର୍‌ଝିର୍ ଝାଳ ଉପରେ କଅଁଳ ପବନ ଫୁଙ୍କି ଦେଇ ଚାଲିଯାଉଥାଏ ।

"ମଣିଷକୁ ଯାତନାରୁ ମୁକ୍ତକର; ଜ୍ୱାଳା-ଯନ୍ତ୍ରଣାରୁ ଉଦ୍ଧାର କର । ସବୁ ଅପରାଧ କ୍ଷମାକର ! କ୍ଷମାକର !"

"ଇସାବେଲା ହିଲ୍...ଇସାବେଲା...ମୋ ଝିଅ...କିଶୋର !...ହରିଶ୍ ଭାର୍ଗବଙ୍କ ଝିଅ–ତୋର ମାଁ ।"

ପବନ ରୁନ୍ଧି ହୋଇ ଆଡ୍‌ଡା ହେଇଗଲା । ଆଖି ତରାଟି ହେଇଗଲା । ଦେହଟି ବରଡାପତ୍ର ପରି ଥରିଉଠିଲା କିଶୋର ଭାର୍ଗବର । କେମିତି ଗୋଟାଏ ଆର୍ତ୍ତନାଦ ବାହାରିଆସି ଧକେଇଲା ହୁତା ହୁତା କୋହ ହୋଇ ।

ଖଣ୍ଡ ଖଣ୍ଡ ହୋଇ ଝରିପଡ଼ୁଥିବା ଆକାଶକୁ ବଡ ବଡ ପାପୁଲିରେ କିଏ ଟେକି ଧରିଲା । ନରମ ଲହୁଣିର ମୂର୍ତ୍ତିପରି ମେରୀ ହିଲ୍ ସେମିତି ନିଶ୍ଚଳଭାବେ ବସିଥା'ନ୍ତି । ଆଖି ବୁଜି ତରଳିଯାଉଥା'ନ୍ତି ନୀରବରେ । କିଶୋର ଅଜାଡ଼ି ହୋଇ ପଡ଼ିଲା ତାଙ୍କ କୋଳ ଉପରେ । ନରମ ପାପୁଲିରେ ପୋଛି ହୋଇଗଲା ପ୍ରସ୍ଥ ପ୍ରସ୍ଥ ଧୂଳି । ପବନରେ ଅଦୃଶ୍ୟ ପାପୁଲିଗୁଡ଼ିଏ ଆଉଁସି ଦେଉଥା'ନ୍ତି ପିଠି, ମୁଣ୍ଡ, ବେକ ଏବଂ ବୁକୁ...ଅଜସ୍ର, ଅଜସ୍ର ସ୍ନେହର କ୍ଷମାଶୀଳ ପାପୁଲିଗୁଡ଼ିଏ ।

□

# ଦୃଶ୍ୟାନ୍ତର

ଏତେ ବଡ ଲୋକର ପୁଅ କାହିଁକି ସର୍କସ୍‌ରେ ଜୋକର୍ ହେଲା ତା' ଉପରେ ଏପର୍ଯ୍ୟନ୍ତ ବାଦବିସମ୍ବାଦ ଚାଲିଛି; କିନ୍ତୁ ତିନିଫୁଟ ଉଚ୍ଚ ସେ ବାମନ ପାଇଁ ଜୋକର୍ ନ ହୋଇ ଅନ୍ୟ କିଛି ହେବାର ଉପାୟ ନଥିଲା । ସେ ଚମତ୍କାର ଇଂରାଜୀ କହିପାରେ । ତା'ର ହିନ୍ଦୀ ଏବଂ ବଙ୍ଗଳା ବି ଖୁବ୍ ମାର୍ଜିତ । ତା' ବାହାରେ ସେ ଭାରି ଭଦ୍ର ।

ତା'ର ଛୋଟ ଛୋଟ ପୋଷାକଗୁଡିକ ଇସ୍ତିଦିଆ । ତିନିନମ୍ବର ଜୋତା ହଳକ ସବୁବେଳେ ଚକ୍ ଚକ୍ । ଦି'ପହରେ ସେ ଅନ୍ୟମାନଙ୍କ ଭଳି ଶୁଏ ନାହିଁ – ନାନା ଜାତି ବହି ପଢେ । ପଢିବାକୁ ତାକୁ ଭଲଲାଗେ । ପ୍ରତିଦିନ ସନ୍ଧ୍ୟାରେ ତା' ମୁହଁରେ ନାଲି ଆଉ ଧଳା ରଙ୍ଗରେ ଗୋଟିଏ ବିସ୍ତୃତ ହସର ଚିତ୍ର ଆଙ୍କି ଦିଆଯାଏ । ଘଣ୍ଟି ଘାଗୁଡି ବନ୍ଧା ଲମ୍ବା ଟୋପି; ହରରଙ୍ଗୀ ପୋଷାକ ଆଉ ତା'ର ଆଠବାଙ୍କ ଚାଲି ଦେଖିବା ମାତ୍ରେ ପାଞ୍ଚ ହଜାର ଦର୍ଶକ ଏକାଠି ହୋ ହୋ ହସିଉଠନ୍ତି । ସବୁଆଡେ ମୁହଁ ବୁଲେଇ ସେ ହସର ଚିତ୍ରଟିକୁ ଦେଖାଏ । ଚମତ୍କାର ଅଭିନୟ କରେ । ସମସ୍ତେ ହସି ହସି ଲୋଟିଯାନ୍ତି । ସେ କିନ୍ତୁ ହସେ ନାହିଁ । କ'ଣ ହସିବାର ଅଛି ସର୍କସରେ ? ସବା ଶେଷକୁ ସର୍କସର ହାତୀ 'ଜୁମ୍ବୋ' ପଲାସି ଆସେ ମଞ୍ଚ ଉପରକୁ । ଫୁଟବଲ ଖେଳେ ଜୋକର୍ ସାଙ୍ଗରେ । ଜୁମ୍ବୋ ଚାଲିଗଲାବେଳେ ଖପ୍‌କିନା ତା' ଲାଙ୍ଗୁଡକୁ ଧରି ସେ ଓହଳିପଡେ ଏବଂ ତୁମୂଳ କରତାଳି ଭିତରେ ହାତ ହଲେଇ ସେ ବିଦାୟ ମାଗେ ଜନତା ପାଖରୁ ।

ଜୋକର୍‌ର ମୂଳ ନାଁ କିନ୍ତୁ ପାବ୍ଲୋ ନୁହେଁ । ସେ ଯେଉଁଦିନ ସକାଳେ ମେନେଜର ସାଙ୍ଗେ ଦେଖା କରିବାକୁ ଆସିଥିଲା, ତାକୁ ମାଳିନୀ ସର୍କସର କଳାକାରମାନେ ବେଢିଯାଇଥିଲେ । ପହିଲିମାନ୍ ଡିଙ୍ଗଲ ରାଓ ତା'ର ବାବନ ଇଞ୍ଚ୍ ବୁକୁ ଓସାରିଦେଇ ତା' ଆଗରେ ଟିପେଇ ବସିଲା । ତା' କପାଳରେ ଚିକ୍ ଚିକ୍ ଝାଳ । ବୋଧହୁଏ କସରତରୁ ଉଠିଆସିଥିଲା । ସର୍କସରାଣୀ ଆଣ୍ଠୁ ଉପରେ ହାତ ରଖି ନଇଁପଡିଲା । ତା' କାଖତଲା ଧଡ ଧଡ ହେଉଥାଏ । ସେ ବି ବୋଧେ ଦୋଳି

ଝୁଲା ଛାଡି ଆସିଥିଲା । ସମସ୍ତଙ୍କର କୌତୂହଳ...ସେ ତିନିଫୁଟର ମଣିଷଟିକୁ ଦେଖିବେ । ସମସ୍ତେ ବେଢିଗଲେ; କିନ୍ତୁ କାହାରି ସାହସ ହେଲା ନାହିଁ ତା' ଦେହରେ ଚିପ ମାରିଦେବାକୁ । ତାକୁ ମାନିଲା ଭଳି ଡୋରିଆ ପୂରା ପେଣ୍ଟ । ପୂରା ହାତ ଧଳା କାମିଜ୍ । ଖୁବ୍ ପାଲିସଦିଆ କଳା ଜୋତା । କଳା ଛିଟର ଟାଇ । ସୁନ୍ଦର ଚିକ୍କଣ ଗୋରା ମୁହଁ । ନିଶହଳକ ଚମତ୍କାର । ଏତେ ମାନନୀୟ ମଣିଷଟିକୁ ଥଟ୍ଟା ବି କରି ହେଲାନାହିଁ । ସମସ୍ତେ ପରସ୍ପରକୁ ଚାହିଁ କରଛଡା ଦେଇ ଠିଆହେଲେ ।

"ମୁଁ ଆପଣଙ୍କ ମେନେଜରଙ୍କୁ ସାକ୍ଷାତ କରିପାରେ କି ?"

ବାପ୍‌ରେ, କି ଟଙ୍କା ସ୍ୱର ! କେତେ ପୋଖତ ଭଦ୍ରକଥା ! କେହି ଜଣେ ମାତବ୍‌ର ଲୋକ ହୋଇଥିବ, କିଏ ଜଣେ ।

ଜନ୍ତା ଭିତରେ ମହାବଳ 'ରାଜା' ଗର୍ଜିଲା । ଫଟାହାଣ୍ଡି ପରି ହାଇଁ ହାଇଁ ସ୍ୱର । ସର୍କସ ମାଙ୍କଡ ଅଣ୍ଟାର ଚେନ୍‌ଟାକୁ ଟାଣିନେଇ ତା' ଖୁଣ୍ଟ ଉପରକୁ ଉଠିଗଲା । ଛନ୍ନ ଛନ୍ନ ହୋଇ ଆଖି ମଟକାଇ ଚାରିଆଡେ ଚାହିଁଲା । ଖିଙ୍କାରି ହେଲା ମଣିଷମାନଙ୍କୁ ।

ମେନେଜର କେସିଓ ପାତ୍ରୋ ଓରଫ୍ କାଶିପାତ୍ର ତାଙ୍କ ତମ୍ବୁ ଭିତରୁ ଖଣ୍ଡେ ସୁଟା ଟାଣି ବାହାରିଆସିଲେ ।

– ଗୁଡ୍ ମର୍ଣ୍ଣିଂ ସାର୍ !

ଚମକିଲାପରି ଛ'ଫୁଟ ଉପରୁ ସେ ଭୂଇଁ ତଳକୁ ଅନାଇଲେ । ଭକ୍ ଭକ୍ ଧୂଆଁ ଛାଡି ହସିପକେଇଲେ; କିନ୍ତୁ ହସ ଆପେ ରୋଧି ହୋଇଗଲା । ସେ ଖୁବ୍ ସଂଯତ ହୋଇ ସେ ଛୋଟ ଭଦ୍ରଲୋକଟିକୁ ଚାହିଁଲେ ।

ସମ୍ଭ୍ରମରେ ଉତ୍ତରଦେଲେ – ଆଜ୍ଞା, କହନ୍ତୁ, ମୁଁ ଆପଣଙ୍କ ପାଇଁ କ'ଣ ସେବା କରିପାର ?

କଳାକାରମାନେ ଆଉ ପାଦେ ଘୁଞ୍ଚିଗଲେ ।

– ନାଁ, ବରଂ ମୁଁ ଆପଣଙ୍କ ସେବାରେ ନିଯୁକ୍ତ ହେବାକୁ ଆସିଛି ।

– ମାନେ ?

ସମସ୍ତଙ୍କର ଭୂରୁ କୁଞ୍ଚେଇଗଲା । ଅଳ୍ପ ହସ ଗଜୁରି ଆସିଲା ଓଠକୁଣମାନଙ୍କରେ ।

– ମାନେ, ମୁଁ ଆପଣଙ୍କ ସର୍କସରେ ଯୋଗଦେବାକୁ ଚାହେଁ ।

'ଆଚ୍ଛା ?' ଦୁଇଥର ସୁଟା ଜୋର୍‌ରେ ଟାଣି ମେନେଜର ଗୋଟାଏ ନୁଆଣିଆ ଖଟୁଲିରେ ବସିପଡି ଚାହିଁଲେ ସେ ପ୍ରାଣୀଟିକୁ । 'କଣ ଖେଳ ଜାଣିଚ ?' ଭାରି ବ୍ୟବସାୟୀ ଗଳା, ବ୍ୟବସାୟୀ ପ୍ରଶ୍ନ । ତାସ୍, ଚେସ୍, କେରମ୍, ବାଗାଟିଲା ? ହୋ ହୋ ହୋ ହସିଲା ଜନତା । ନିଜେ ମେନେଜର ଲୋଟିଗଲା ସେ କଥା ଶୁଣି । ପ୍ରାର୍ଥୀ ଅବିଚଳିତ ଠିଆହୋଇଥାଏ । ତା' ଭଦ୍ର ମୁହଁରେ କୌଣସି ପରିବର୍ତ୍ତନ ନ ଦେଖି ସମସ୍ତେ ବଳେ ସଂଯତ ହୋଇଗଲେ ।

"ମୁଁ ଇଂରାଜୀରେ କହିପାରେ, ଲେଖିପାରେ, ଟାଇପ୍ କରିପାରେ । ମାଉଥ୍ ଅର୍‌ଗାନ୍ ବଜାଇପାରେ ।"

ଏଥର କେହି ହସିଲେ ନାହିଁ । ମେନେଜର ମନେ ମନେ ତା' ଦର କଳି ନେଲେ ।

"ତୁମ ନାଁ କ'ଣ ?"

"ଭ୍ରମରବର ବଳିଆର ସିଂ ।"

ସମସ୍ତେ ଥମିଗଲେ । ବୋଧହୁଏ ଅସୁସ୍ଥ ବୋଧକଲେ ।

"ଆପଣ କ'ଣ ତା'ହେଲେ..." ମେନେଜର ପ୍ରାୟ ବିନୟରେ ପଚାରି ରହିଗଲେ ।

"ହଁ, ଆପଣ ଯାହା ଭାବୁଛନ୍ତି ତା' ସତ । ମୁଁ ଜମିଦାର ନାରାୟଣ ପ୍ରସାଦ ବଳିଆର ସିଂଙ୍କର ପୁଅ । ମତେ କିନ୍ତୁ ଆପଣ ଆଗଭଳି ତମେ ବୋଲି ବରଂ ଡାକନ୍ତୁ–ମୁଁ ତ ଆଉ ଜମିଦାର ନୁହେଁ ? ମୁଁ ସ୍ଥିର କରିଛି ମୋ' ନାଁ ବି ଏଣିକି ପାବ୍ଲୋ ।"

କିଏ ଜଣେ ଖୁସିରେ ପାଟିକଲା 'ବଢ଼ିଆ' । ସମସ୍ତେ ଖୁସିରେ ତାଳି ମାରିଲେ । ମେନେଜର ଖୁବ୍ ସ୍ୱାଭାବିକ ଢଙ୍ଗରେ କହିଲେ, "ଆଚ୍ଛା ପାବ୍ଲୋ ! ତୁମେ ଆମ ସଙ୍ଗରେ ରହିପାରିବ ? ଏ ଜନ୍ତୁଙ୍କ ସଙ୍ଗରେ ଏମିତି ତମ୍ବୁ ଭିତରେ ?"

ବାଁ ହାତରେ ଚାରିଆଡକୁ ଆଙ୍ଗୁଠି ଦେଖେଇ କେସିଓ ପାଡ୍ରୋ ଅପେକ୍ଷା କଲେ ଉତ୍ତରକୁ ।

"ମୋର କିଛି ଅସୁବିଧା ହେବନାହିଁ । ମୁଁ ଏ ପୋଷା ଜନ୍ତୁମାନଙ୍କ ସଙ୍ଗରେ ଚମତ୍କାର ରହିପାରିବି । ମୋର ବାପା ସିନା ସବୁଦିନେ ବନ୍ଧୁକରେ ବଣଜନ୍ତୁଙ୍କୁ ମାରୁଥିଲେ, ମୋ' ମା' କିନ୍ତୁ ଘରେ ଅନେକ ପ୍ରକାର ପଶୁପକ୍ଷୀ ପାଳିଥିଲେ । ମୟୂର, ନେଉଳ, ପାଟିମାଙ୍କଡ, ହରିଣ, ଠେକୁଆ, ଶୁଆ ଏମାନଙ୍କ ସାଙ୍ଗେ ମୋର ବର୍ଷ ବର୍ଷ ବିତିଛି । ମୁଁ ସବୁବେଳେ ଚାହୁଁଥିଲି କେମିତି ହାତୀଟିଏ ସାଙ୍ଗରେ ଖେଳିଥାଆନ୍ତି । ବାଘଟାକୁ ମୁଁ ଡରେ ସତ, କିନ୍ତୁ ତା' ଭାଷା ମୁଁ ବୁଝିପାରେ । ତାକୁ କେତେବେଳେ ଭୋକକଲା, କେତେବେଳେ ତାକୁ ପିମ୍ପୁଡି କାମୁଡିଲା ବା ଶୋଷ କଲା ମୁଁ ଜାଣିଦେବି । ଗୋଟାଏ ବର୍ଷ ଯନ୍ତା ଭିତରେ ମୋ' ବାପା ବାଘଟାଏ ଆଣି ରଖିଥିଲେ । ଦିନେ ସେ ବାଘ ମରିଗଲା । ମୁଁ ତା' ନିଶ ଟାଣିବାରୁ ଦାନ୍ତ ଉପରୁ ଓଠ ଟେକିହେଇଗଲା । ମୁଁ ଡରିଗଲି, କିନ୍ତୁ ଏତେ ମୋଲାଏମ୍ ଜନ୍ତୁକୁ ଛାଡି ଉଠିଲିନାହିଁ । ମତେ ଏଠି ରହିବାକୁ ଭାରି ଇଚ୍ଛା ।"

"ଆଚ୍ଛା...ରହିପାର । ତମେ ଏବେ କେବଳ ରହିଥାଅ, ପରେ ଦେଖିବା କ'ଣ କରାଯାଇ ପାରିବ ।" – ମେନେଜର ଉଠି ଚାଲିଗଲେ । ପାବ୍ଲୋ ମୁହଁ ଫେରେଇ ସର୍କସ ରାଣୀକୁ ଜଣାଇ ଏପରି ଭଙ୍ଗୀରେ ଚାହିଁରହିଲା ଯେ, ସମସ୍ତେ ଏକାସଙ୍ଗରେ ହସିଉଠିଲେ । ଡିଙ୍ଗଲ ରାଓ ଖପ୍‌କିନା ସେ କଣ୍ଢେଇ ମଣିଷଟିକୁ ଶୂନ୍ୟରେ ଟେକି ନେଇ କାନ୍ଧରେ ବସାଇ ଘିରିଘିରି ବୁଲିଗଲା । ତଳେ ଆଣି ଥୋଉ ଥୋଉ ରିଂମାଷ୍ଟର, ତାରରେ ଛତା ଧରି ଚାଲିବା ଝିଅ, ଏ ଦୋଳିରୁ ସେ ଦୋଳିକୁ ପ୍ରାଣମୂର୍ଚ୍ଛା ଡେଇଁଯାଉଥିବା ତାଜା ଟୋକାଦଳ, ସାଇକଲବାଲୀ ଝିଅ, ଏମିତି କେତେ ସବୁ ତାକୁ ନେଇ କଉତୁକ କଲେ । ଦୂରରେ ରହି ଦେଖୁଥା'ନ୍ତି ମଜଦୁରମାନେ । ଟେବୁଲ ଟେକିବା, ଯନ୍ତା ଘୁଞ୍ଚାଇବା, ତମ୍ବୁ ଟାଣିବା କାମ ଏଇମାନେ କରନ୍ତି । ଏମାନଙ୍କ ଶ୍ରେଣୀ ଅଲଗା ।

ସର୍କସ୍‌ର ଜୋକର୍ 'ଲଲ୍ଲୁ' କେତେବେଳୁ ଆସି ପାବ୍ଲୋକୁ ଚାହିଁ ରହିଥାଏ ଖୁବ୍ ଗମ୍ଭୀର

ହୋଇ । ସେ ସବୁ ଖେଳ ଖେଳିପାରେ; କିନ୍ତୁ ଦେଖାଇଲା ଭଳି ଖେଳିପାରେ ନାହିଁ । ସେଥିପାଇଁ ସେ ଜୋକର୍ । ସେ କିଛି ସମୟ ଛକିଲା ପରେ ଯେତେବେଳେ ଜାଣିଗଲା ଯେ ପାବ୍ଲୋକୁ କୌଣସି ସର୍କସ ଖେଳ ଆସେନାହିଁ; ସେ ଫାଳେ ହସିଦେଇ ତା' ଉପରେ ଘାଇଁକିନା ଗୋଡାଟାଏ ବୁଲାଇନେଇ ଚାଲିଗଲା । କହିଲା – "ହେତ୍, ୟା'କୁ କିଏ ପଚାରେ ?"

ଏମିତି ଏମିତି ସେଦିନ ପ୍ରଥମ ପରିଚୟ ସରିଆସିଲା । ପାବ୍ଲୋ କିନ୍ତୁ ସର୍କସରାଣୀକୁ ବୁଲିପଡି ଚାହିଁଥାଏ । ମାର୍ବୋଲ ମୂର୍ତ୍ତି ପରି ତା'ର ଲମ୍ବ ଗଢଣ ତାକୁ ଦେଖିବାକୁ ଭଲଲାଗୁଥାଏ । ପାବ୍ଲୋ ତା' ତୋଳା ଟେକି ଆସ୍ତେ ତା'ର ନୂଆ ବନ୍ଧୁମାନଙ୍କୁ ଚାହିଁଲା । ଏତିକିବେଳେ ଗୋଟାଏ ଘଣ୍ଟି ବାଜିଲା । ସମସ୍ତେ ଖିଜ୍‌ଖାଜ୍ ଦୌଡି ପଳାଇଲେ । ପାବ୍ଲୋ ପରେ ଜାଣିଲା ଯେ ସେମାନେ ଖାଇବାକୁ ଗଲେ । ସେ ମୁହଁ ଫେରେଇ ପାତିମାଙ୍କଡ ପାଖକୁ ଘୁଞ୍ଚିଗଲା । ପାତିଟି ଛନ୍ ଛନ୍ ହେଲା, ଖିଙ୍କାରିହେଲା । ପାବ୍ଲୋ ତା' ଝୋଲାରୁ ଯୋଡିଏ ଭୂଇଁଚଣା କାଢି ଆସ୍ତେ ଦେଖେଇଲା । ପାତି ଖୁଣ୍ଟ ଉପରୁ ଖସିଆସି ତା' ହାତରୁ ଝାମ୍ପିନେଲା । ଆଉ ଯୋଡିଏ ଚଣା ଛଡେି ପାପୁଲିରେ ରଖି ସେ ଦେଖେଇଲା, ପାତି ତରବରରେ ହାତମାରି ତାକୁ ଭୂଇଁରେ ପକାଇଦେଲ, ଚଟ୍‌ପଟ୍ ଗୋଟେଇ ପାଟିରେ ଭରିଦେଇ ଖୁଣ୍ଟ ଉପରକୁ ଉଠିଗଲା । ପୁଣି ଯୋଡିଏ ଚଣା ପାବ୍ଲୋ ଛଡେଇ ହାତରେ ଧରି ପାତିକୁ ଚାହିଁଲା । ବନ୍ଧୁ ଭଳି ହସିଲା । ଖୁବ୍ ଆସ୍ତେ ପାତି ପିଠିରେ ବାଁହାତ ସାଉଁଳିଦେଇ ଡାହାଣ ହାତରେ ତାକୁ ଚଣା ଖୁଆଇ ଦେଲା । ପାତି ମିଟିମିଟି ଅନେଇଁ ଦି ଥର ଖୁବ୍ କାଶିଲା ଭଳି ଡାକିଲା । ବୋଧହୁଏ ସେମିତି ହସିଲା ! ଉଭୟଙ୍କର ଦୋସ୍ତି ଜମିଗଲା ।

ଏକୁଟିଆ ପାବ୍ଲୋ ଆସ୍ତେ ଘୁଞ୍ଚିଲା ଆଗକୁ । କସରା ଘୋଡାଟିଏ ଶୁଖିଲା ଦଳ ଚୋବାଉଥାଏ । ତା' ପାଟି ଖଣ୍ଡିଆ । ତାକୁ ମଣକରି ଖେଳ ଶିଖାଇବାକୁ ବୋଧହୁଏ ସେମିତି ଘା' କରିପକେଇଥା'ନ୍ତି ସର୍କସବାଲାମାନେ । ତା' ଆଗକୁ ଯନ୍ତା ପାଖରେ ପୋଚା ଗନ୍ଧ । ଲୁହା ଯନ୍ତା ଭିତରେ ରାଜା ଶୋଇଥାଏ । ତା' ମୁହଁ ଲୋତରା । ଆଖି କୋଣରେ ମେଞ୍ଚାଏ ଲେଞ୍ଜରାକୁ ମାଛି ବେଢି ରହିଥା'ନ୍ତି । ଦେହଯାକ ଉକୁଟିଲା ପରି ମଇଳା ରୁମ । ପାବ୍ଲୋ ଦେଖି ବୁଝିଗଲା ଯେ ରାଜାର ଲାଙ୍ଗୁଡକୁ ମୋଡି ତିନିଜାଗାରେ ଭାଙ୍ଗି ଦିଆ ହେଇଛି । ତା' ପିଠି କୁଜେଇ ଯାଇଛି । ସେ ନିଃଶ୍ୱାସଟିଏ ମାରି ଘୁଞ୍ଚିଗଲା ।

ଜୁମ୍ବୋ ପାଖରେ ଠିଆ ହେଲାବେଳେ ତିନିଫୁଟିଆ ପାବ୍ଲୋ । ପିଲାଟିଏ ପରି ଦିଶୁଥାଏ । ହାତୀ ତାକୁ ଜମା ଖାତିର କରୁ ନଥାଏ । ଜୁମ୍ବୋକୁ ବୟସ କମ୍ । ତା' ମୁଣ୍ଡରେ ଫୁର୍ ଫୁର୍ ବାଳ । ଧୂଳିଧୂସରିଆ ଗୁଣ୍ଡୁଣୀଟିଏ । ତା' ଆଖିରେ ବି ଛୋପରା । ତା' ପଞ୍ଜରାରେ ଘା' । ତା' ପଛ ଗୋଡରେ ଗୋଟାଏ ଲୁହା ଜଞ୍ଜିର । ପାବ୍ଲୋ ବୁଝିଗଲା ଯେ ଏଇମାନଙ୍କ ସାଙ୍ଗରେ ତାକୁ ରହିବାକୁ ହେବ । ମନ୍ଦ କ'ଣ ? ରାୟବାହାଦୂର ଉଆସ ମଝିରେ ପାଚେରି କାଟି ରାସ୍ତା ପଡିଯାଇଛି । କବାଟ ଝରକା ଚୋରି ହେଇଯାଇଚି । କାନ୍ଥରୁ ଇଟା କାଢି ନେଇଛନ୍ତି । ସେ ବଂଶର ଆଉ କେହି ନାହାନ୍ତି । ମକଦ୍ଦମାରେ ସବୁ ପଇସା ସରିଯାଇଛି । ବାପର ଋଣ ପାଇଁ ଘରଜମି ସବୁ ବାଜ୍ୟାପ୍ତ ହେଇଯାଇଚି ।

ପାବ୍ଲୋ ପାଇଁ ତିନିଫୁଟର ବାଙ୍ଗରା ଅପାରଗ ଦେହଟିଏ! ବୁକୁଠାରୁ ଉପରକୁ ଥାକ ଥାକ କିଛି ସ୍ମୃତି । ତେବେ ?

ସର୍କସରେ ଆସ୍ତେ ସେ ଆରେଇଗଲା । ଆସ୍ତେ ତାକୁ ସମସ୍ତେ ଭଲପାଇଗଲେ – ମଣିଷ, ଜନ୍ତୁ, ସମସ୍ତେ । ପାବ୍ଲୋ ସର୍କସ ତରଫରୁ ଅଫିସର ଅମଲାଙ୍କୁ ଭେଟେ । ତାଙ୍କୁ କହି ପଡିଆ ମାଗେ । ସେମାନେ ତା' କଥା ଶୁଣି ଖୁସି ହୋଇଯାନ୍ତି । ଖୁବ୍ ଭଦ୍ରଭାବରେ ଯେତେବେଳେ ସେ ତାଙ୍କୁ ଏବଂ ତାଙ୍କ ପରିବାରମାନଙ୍କୁ ମାହାଳିଆ ସର୍କସ ଦେଖିବାକୁ ନିମନ୍ତ୍ରଣ କରେ ସେମାନେ ଗ୍ଲ କଫି ଯାଚି ଦିଅନ୍ତି ।

ନୂଆ ଜାଗାର ସରକାରୀ ଅନୁମତି ଆଦି କାଗଜପତ୍ର ଦେଇଦେଲେ ତେଣିକି ଉଠିବା କଥା । ତମ୍ବୁ ଗୁଡିଏ ଲୁହା ତା'ର ବନ୍ଧାହୋଇ ଟ୍ରକରେ ଉଠେ । ଯେ ଯାହା ବାକ୍ସପତ୍ର ଧରି ବୋଝେଇ ହୋଇଯାନ୍ତି । ପାବ୍ଲୋ କିନ୍ତୁ ମ୍ୟାନେଜରଙ୍କୁ କହି ଜୁମ୍ବୋ ସାଙ୍ଗରେ ଯାଏ । ପାତି ଗର୍ଲ ମଧ ତା' ସାଙ୍ଗରେ ହାତୀ ଉପରେ ବସେ । ଏ ତିନିହେଁ ରାସ୍ତାରେ ସମସ୍ତଙ୍କ ପଛରେ ଯାଆନ୍ତି । ହାତୀ ବରଡାଳ ଭାଙ୍ଗେ । ଗର୍ଲ ବତୁରା ଚଣା ତା' ଗାଲିସ ଭିତରୁ ମୁଥା ମାରି ଫେବାଏ । ପାବ୍ଲୋ ତାଙ୍କ ସାଙ୍ଗରେ ମନପାଇଲେ ଓଡିଆରେ ନହେଲେ ଇଂରେଜୀରେ କଥା ହୁଏ; ରାଗିଲେ ହିନ୍ଦୀରେ ଗାଳିଦିଏ । ସକାଳୁ ଜୁମ୍ବୋ ଗୋଟିଏ ନଡିଆ ଭାଙ୍ଗେ । ପାବ୍ଲୋ ସେଥିରୁ ଖଣ୍ଡେ ଗର୍ଲପାଇଁ; ଖଣ୍ଡେ ତା' ପାଇଁ କୌଣସି ପ୍ରକାରେ ଖସେଇଆଣେ । ହାତୀ ମିଛରେ ରାଗି ଶୁଣ୍ଢ ଲଗେଇ ତାକୁ ପେଲିଦିଏ । ପାବ୍ଲୋ ଜୋର୍‌ରେ ଚଟକଣା ମାରି ହିନ୍ଦୀରେ ଗାଳିଦିଏ । ତିନିହେଁ ନଡିଆ ଖାଇ ଝୁଲନ୍ତି । ଥୋଡପାହାରକୁ କୁଣ୍ଢେଇ ପାବ୍ଲୋ ଗୀତ ଗାଏ । ଗର୍ଲ ତା' କାନ୍ଧରେ ବସି କିଛି ଝାଙ୍କି ହୁଏ । ଜୁମ୍ବୋ ଦୁହିଁଙ୍କୁ ନାନା ଭଙ୍ଗୀରେ ଝୁଲାଏ ।

ନୂଆ ସହରେ ସର୍କସ ଆରମ୍ଭ ହେଲେ ଅଫିସର ବାବୁମାନେ ପାବ୍ଲୋକୁ ଖୋଜନ୍ତି । କେହି କେହି ତାକୁ ମ୍ୟାନେଜର ବୋଲି ମଧ ଡାକି ଦିଅନ୍ତି । କେସିଓ ପାଡ୍ରୋ ଅଳ୍ପ ହସିଦେଇ ସେମାନଙ୍କୁ ସଂଶୋଧନ କରି ଦିଅନ୍ତି; କିନ୍ତୁ ତା'ପରେ ସାମାନ୍ୟ ଗମ୍ଭୀର ହୋଇଯାନ୍ତି । ପାବ୍ଲୋ ତାଙ୍କଠାରୁ ବଢିଆ ଇଂରେଜୀ କହିପାରେ – ଖୁବ୍ ସୁନ୍ଦର ଢଙ୍ଗରେ କହିପାରେ । ସେ ଶୁଣନ୍ତି । ତାଙ୍କ ଭ୍ରୂରୁ କୁଞ୍ଚେଇଯାଏ ।

ଯା' ଭିତରେ ପାବ୍ଲୋ ଅନେକ ଝଡିଗଲାଣି । ତା' ଚେହେରା ଅନେକ କଳାପଡିଗଲାଣି । ତଥାପି ସେ ସବୁଦିନେ ନିଶଟିକୁ ବାଗେଇ କ୍ଷୌର ହୋଇପଡେ । ଲୋସନ ଲଗାଇ ମୁହଁଟାକୁ ମାଠିଦିଏ । ନୂଆ ଜାମା, ଜୋତା, ଟାଇ କିଛି ମଧ କିଣିଲାଣି । ଦିନେ ଡୋରିଆ ପାଇଜାମା ଆଉ ଗେଞ୍ଜି ପିନ୍ଧି ସେ କ୍ଷୌର ହୋଇ ଉଠିଥାଏ । ସର୍କସ କୁଇନ୍ ଗୋଟିଏ ଢିଲା ନାଇଟ୍ ଗାଉନ୍ ପିନ୍ଧି କାହୁଁ ଝପଟିଆସି ତାକୁ ଜାକିଧରିଲା । ପାବ୍ଲୋ ଅଝଟ ପିଲାଟିଏ ଅଳିକଲାପରି ସେ ଲମ୍ବା ଲମ୍ବା ଜଙ୍ଘକୁ ବାହୁରେ ଘେରେଇନେଲା । ତା' କୁଣ୍ଢ ଅଣ୍ଟିଲା ନାହିଁ । ଜୁମ୍ବୋର ଯୋଡିଏ ଥୋଡପାହାର ଏମିତି ଲାଗି ଲାଗି ଓହଳିଥିଲେ ମଧ ତା' କୁଣ୍ଢ ପାଆନ୍ତା ନାହିଁ । ପାବ୍ଲୋ ସର୍କସରାଣୀର ଅଣ୍ଟାତଳୁ

ଉପରକୁ ଚାହିଁ ହସିଲା । ସେ ଲଇଁପତି ତା'ର ଶିମୁଳି ତୁଳାଭଳି ଚିକ୍‌କଣ ହାଲୁକା ବାଳ ନୁଆଇଁ ପାବ୍ଲୋର ଗାଲ ଚୋଡିଦେଇ ଖିଲି ଖିଲି ହସିଲା । ତା' ମୁଣ୍ଡକୁ ଆଙ୍ଗୁଳିରେ ସଲସଲ କଲା । ଗେଲରେ ଥାପୁଡି ମାରିଦେଇ ଛଡେଇହେଇ ଚାଲିଗଲା । ଆଲସେସିଆନ୍ କୁକୁର ସାଙ୍ଗେ ସେ ସେଇଭଳି ଗେଲ ହୁଏ । ପାବ୍ଲୋ ସର୍କସର ଗୋଟିଏ ବାମନ ଜନ୍ତୁ । ମଜାକଥା ଯେ ସେ ମଣିଷ ଭଳି କଥାକହିପାରେ ।

ବିରସ ମୁହଁରେ ଅଳ୍ପ ହସି ପାବ୍ଲୋ ସେଇଠି ଠିଆହୋଇଥାଏ । ତା' ଛୋଟ ଛୋଟ ଅସହାୟ ହାତଗୁଡିକ ଓହଳି ରହିଥାଏ । ସେ ଲମ୍ବା ନିଶ୍ୱାସଟିଏ ଛାଡି ପଛକୁ ଫେରି ଚାହିଁଲାବେଳକୁ ଦେଖିଲା ଡୋରିଆ ପାଇଜାମା ପିନ୍ଧି କେସିଓ ପାଡୋ ତା' ତମ୍ବୁ ସାମନାରେ ଠିଆହୋଇଚି । ତାହାରି ତମ୍ବୁରୁ ବୋଧହୁଏ ସର୍କସରାଣୀ ସକାଳୁ ବାହାରିଗଲା ।

ସେଇଦିନ ଦି'ପହରେ ମାନେଜର ପାବ୍ଲୋକୁ ଡକେଇପଠେଇଲେ । କହିଲେ, "ତୁମେ ଆଜି ସନ୍ଧ୍ୟାରେ ଜୋକର୍ ପାର୍ଟ କରିବ ! ଜୁମ୍ବୋ ସାଙ୍ଗେ ଫୁଟ୍‌ବଲ୍ ଖେଳିବ । ଅଭ୍ୟାସ କରିନିଅ । ଯାଅ ।"

ବେଢଙ୍ଗିଆ ହାଫ୍‌ପେଣ୍ଟଟିଏ ସାଙ୍ଗକୁ ଗୋଜିଆ ଟୋପି ଆଉ ନାଲି ଧଳା ଚିତ୍ର ହୋଇଥିବା ମୁହଁ ନେଇ ଯେତେବେଳେ ହାଲିଆ ହେଇ ପାବ୍ଲୋ ବାହାରି ଆସିଲା, ମେନେଜର ତା' ପିଠି ଥାପୁଡାଇ କହିଲେ, "ସାବାସ୍ ! ଆରେ ଆଜି ପାବ୍ଲୋକୁ ଦୁଇପିସ୍ ଅଧିକ ମାଂସ ଦେବ ।" ସବୁ ଜନ୍ତୁକୁ ସେଇଭଳି ଖେଳ ଶେଷରେ ମେନେଜର ମନ ପାଇଲେ ଖାଇବାକୁ ଦେଇଥା'ନ୍ତି ।

ପାବ୍ଲୋ ନଶୁଣିଲା ପରି ଧୀରେ ଧୀରେ ତା'ର ତମ୍ବୁ ଭିତରକୁ ପଶିଗଲା । ସେଇଠି ଦୋଳିଖେଳାଳି ଶାମ ସିଂ, ଆଉ ଦୁଇଜଣ ତୃତୀୟ ଶ୍ରେଣୀ ସର୍କସବାଲା ସାଙ୍ଗରେ ଗୁଣ୍ଡିହେଇ ରହିବାକୁ ପଡୁଥାଏ । ଦୁଇନମ୍ବର ଜୋକର୍ ପାଇଁ ଆଉ କିଛି ବ୍ୟବସ୍ଥା ହୋଇପାରିବ ନାହିଁ । ଏଣିକି କାସିଓ ପାଡ୍ରୋ ଯାଇ ଅଫିସରମାନଙ୍କ ସଙ୍ଗେ କଥାବାର୍ତ୍ତା କରିବେ । ପାବ୍ଲୋ ଖଣ୍ଡେ ଦାମି ପୁରୁଣା ଚମଡା ବାକ୍‌ସ ସାଙ୍ଗରେ ନେଇ ଆସିଥିଲା । ସେଥିରେ ତା'ର ଜାମା ଜୋତା ଟୋପି ଚଉତି ଦେଇସାରିଲା ପରେ ନିଃଶ୍ୱାସଟାଏ ମାରି ସେ ଅଳ୍ପ ହସିଥିଲା ।

ନୁଖୁରାମୁଣ୍ଡିଆ ଅଧାପେଣ୍ଟପିନ୍ଧା ବାମନ ଜୋକର୍ ପାବ୍ଲୋ । ଦିନବେଳେ ଏଠିସେଠି ଭୂଇଁରେ ବସିଥାଏ । ହାତୀ ପେଟତଳେ ଠିଆହୋଇ ଜୁମ୍ବୋ ସାଙ୍ଗରେ କଥାବାର୍ତ୍ତା କହୁଥାଏ । ଏଣିକି ଜୁମ୍ବୋ ସାଙ୍ଗେ ଫୁଟବଲ ଖେଳଟା ତା' ଜୀବନର ଏକମାତ୍ର ମୂଲ୍ୟ ହେଇସାରିଥାଏ ।

ପ୍ରତିଦିନ ପାବ୍ଲୋ ପାଇଁ ଜନତା ଅପେକ୍ଷା କରିଥାଏ । ତା' ପୂର୍ବରୁ ଏକନମ୍ବର ଜୋକର୍ ଯାହା ଖେଳ ଦେଖାଇଲେ ସୁଦ୍ଧା ଜନତାର ମନ କିଣିନେଇଯାନ୍ତି ପାବ୍ଲୋ ଏବଂ ଜୁମ୍ବୋ । ଫୁଟବଲ ଖେଳରେ ହାତୀ ସବୁଦିନ ହାରେ ! ପେଟତଳେ ଗଳି, ଆଗପଛ ଘିରିଘିରି ବଲ୍ ଗଡେଇ ପାବ୍ଲୋ ତାକୁ ନୟାନ୍ତ କରେ । ଇସାରା ପାଇ ହାତୀ ଦୌଡିପଳାଏ; କିନ୍ତୁ ଟିକିଏ ରହିଯାଏ – ପାବ୍ଲୋ ତା' ଲାଙ୍ଗୁଡ ଧରି ଓହଳିବା ପର୍ଯ୍ୟନ୍ତ । କରତାଳିରେ ସର୍କସ ମଇଦାନ ଉଚ୍ଛୁଳିପଡେ ।

ଏକ ନମ୍ବର ଜୋକର୍ ଲଲ୍ଲୁ ଦିନେ ମେନେଜରଠୁ ଗାଳିଖାଇଲା, "ତୁ ବରଂ ଟେବୁଲବୁହାଳିଙ୍କ ସାଙ୍ଗେ ଏଣିକି କାମ କର – ତୋ' ହାତରେ କିଛି ହେଉନାହିଁ।" ସେ ଦିନ ଲଲ୍ଲୁ ଖାଇନାହିଁ। ପାବ୍ଲୋକୁ ଦେଖିଲେ କଟମଟ କରି ଚାହୁଁଛି। ଏଣିକି ପାବ୍ଲୋ ହିଁ ସର୍କସର ଏକମାତ୍ର ଲୋକପ୍ରିୟ ଜୋକର୍। ସେ ଦ୍ୱିତୀୟଶ୍ରେଣୀ କଳାକାର। ତା' ଉପରକୁ ଖାଲି ସର୍କସ-ରାଣୀ ଆଉ ପହିଲିମାନ ଡିଙ୍ଗଲ୍ ରାଓ।

ସର୍କସର ଖୁବ୍ ଲାଭ ହେଉଥାଏ। ଆଉ କୋଡିଏ ମାଇଲ ଘୁଞ୍ଚ ପାଖ ସହରକୁ ଯିବା କଥା ଉଠିଲା। ମେନେଜର ଖୁବ୍ ନିଶା ଖାଇ ପଡିଥାଏ। ଡକେଇଲା ପାବ୍ଲୋକୁ। ପାଟି ଖନିମାଗୁଥାଏ, କିନ୍ତୁ ମିଜାଜ୍ ତେଜା ଥାଏ – ହୋସ୍ ବୁଡିନଥାଏ। – "ରାୟବାହାଦୂର ପାବ୍ଲୋ ସାହାବ, ଆପ୍ କୋ ଆଜ୍ ଯାନା ପଡେଗା – ଓ ଶାଲେ ଅଫିସର ଲୋଗୌଁକେ ଅଛି ତରହ୍ ଖିଲା-ପିଲାକେ କାମ୍ କର୍‌ନା ପଡେଗା। ଅଗଲେ ହପ୍ତା ହମ୍‌ଲୋଗ ଓହାଁ ଯାଏଗା।"

ପାବ୍ଲୋକୁ କୁଣ୍ଢାଇ ପାତ୍ରୋ ଗୁଡାଏ ଗେଲକଲା – "ତୁମ ରାୟ-ବାହାଦୁରକା ବଚ୍ଚା- ମେରା ସର୍କସ କା ସାନ୍ ହୋ! ତୁମ୍ ଜୋକର୍ ନହିଁ ହେ – ତୁମ୍ ରାନୀକା ପିଛା ଲଗାଥା – ହମ୍ ତୁମ୍‌କୋ ଜୋକର୍ ବନାଦିଆ – ତୁମ୍ ହମାରା ଆସିଷ୍ଟାଣ୍ଟ ବନେଗା। ତୁମ୍ ରାନୀକୋ ଛୋଡଦିଆ, ଆଚ୍ଛା କିଆ।"

ପାବ୍ଲୋ ସକାଳ ବସ୍‌ରେ ଯିବା ପାଇଁ ତା'ର ମେନେଜରି ବେଶ ପୋଷାକ ପିନ୍ଧି ଦର୍ପଣକୁ ଚାହିଁ ହସିଥିଲା। ହ୍ୱିସିଲ ମାରି ସେ ଚକ୍ ଚକ୍ ଜୋତା ପିନ୍ଧି ଚାଲିଗଲାବେଳେ ଚାର୍ଲିକୁ ଟିକିଏ ଗେଲ କରିଦେଲା। ଚାର୍ଲି କିନ୍ତୁ ଗୁମାନ କଲାଭଳି ନୀରବରେ ମିଟିମିଟି ଚାହିଁଲା; ସବୁଦିନ ପରି ଡିଆଁ ମାରି ଖେଳିଲା ନାହିଁ। ବୋଧହୁଏ ସେ ପୋଷାକକୁ ଅଚିହ୍ନା ପାଇଲା ନା କ'ଣ?

ବାଟରୁ ମୁହଁ ଫେରେଇ କିଏ ଗୋଟାଏ ଭୁସ୍‌ଭୁସ୍ ହୋଇ ଚିତାବାଘର ଯନ୍ତା ଆଡେ ଚାଲିଗଲା। ବୋଧହୁଏ 'ଲଲ୍ଲୁ'!

ଜୁମ୍ବୋ ପାଖରେ ପହଞ୍ଚ ପାବ୍ଲୋ ଟିକିଏ ଛଡେଇହୋଇ ଠିଆହୋଇଥାଏ। ହାତ ଲମ୍ବେଇ ଥୋଡପାହାରକୁ ଟିକିଏ ଛୁଇଁଦେଲା। ଓହଳିପଡି ବୁଲିବା ତ ସମ୍ଭବ ନୁହେଁ! ଜୁମ୍ବୋ ସାଙ୍ଗରେ ଗେଲ ହେବାକୁ ବେଳନାହିଁ। ଜୁମ୍ବୋ ବୁଝିଲା ଭଳି ତାକୁ ଚାହିଁଥାଏ। ଜୁମ୍ବୋ ପାଖରେ ବରଡାଳ ନାହିଁ। ଜୁମ୍ବୋ ବୋଧହୁଏ ଭୋକିଲା; କିନ୍ତୁ ଏଣେ ବସ୍ ସମୟ ହୋଇଯାଇଥାଏ। ପାବ୍ଲୋ ପୁଣି ଥରେ ଥୋଡପାହାରକୁ କୁଣ୍ଢେଇ ଦେଇ ବୁଲିପଡିଲା। ଦୀର୍ଘନିଃଶ୍ୱାସଟିଏ ବଳେ ବାହାରିଗଲା।

ତା' ପାଦକୁ ଧରି ପଛରୁ କିଏ ଟାଣିଲା ପରି ତାକୁ ଲାଗୁଥାଏ – "ପାବ୍ଲୋ ଜୋକର୍! ପାବ୍ଲୋ ଜୋକର୍! ମାନେଜର ନୁହେଁ।" କେହି ତା' କାନ ପାଖରେ ତାକୁ ଶୁଣେଇ କହୁଥାଏ। କିନ୍ତୁ ପାବ୍ଲୋ ଚାହୁଁଥିଲା – ସର୍କସରାଣୀ ଥରେ ତାକୁ ଦେଖନ୍ତା କି? ସେ ଯେଉଁ ମାର୍ବଲ ମୂର୍ତ୍ତି ଭଳି ଝିଅ! ଯାହାର ଆଖି ଭଅଁରପରି! ଯା'ର ବାଳ ଶିମୂଳି ତୂଳା ଭଳି ଥୋଲା ଥୋଲା କଅଁଳ। ଯା'ର ଜଙ୍ଘକୁ ପାବ୍ଲୋର କୁଣ୍ଢ ପାଏନାହିଁ – ସେଇ ଯଦି ଥରେ ଦେଖିଦିଅନ୍ତା! ଦେଖିଲେ ସେ ଅବଶ୍ୟ

କୁଣ୍ଢେଇପକାନ୍ତା – ଗେଲ କରନ୍ତା । ସେ ତ ଜାଣେ ନାହିଁ ଯେ ପାବ୍ଲୋର ବୟସ ଅଠେଇଶ । ତା' ମନ ପୃଥିବୀ ପରି । ସେ ଚାହିଁଲେ ଜୁମୋ ଭଳି ଗୋଟିଏ ସମ୍ରାଜ୍ୟ ସାଙ୍ଗେ ଖେଳିପାରେ; କିନ୍ତୁ ନିପାଗିଲା ହାତ ଗୋଡକୁ ନେଇ ସେ ଗୋଟିଏ ବାମନ ଜନ୍ତୁ । ତଥାପି କେସିଓ ପାଡ୍ରୋ ତାକୁ ସନ୍ଦେହ କରୁଛି, ଭୟ କରୁଛି !

ପାବ୍ଲୋ ଅଟକିଗଲା । ସେ ରାଣୀର ତମ୍ବୁ ପାରିହୋଇଯାଇଥାଏ । ସକାଳୁ କେହି ଉଠିନଥା'ନ୍ତି । ବାଘ ହେଣ୍ଟାଳୁଥାଏ । ଖେଁ ଖେଁ ହସିଲା ପାବ୍ଲୋ । ତା'ପରେ ଟପାଟପ୍ ଆଗେଇଗଲା ।

ସେ ଫେରୁ ଫେରୁ ରାତି । ଏଥର ପାବ୍ଲୋ ମାତ୍‌କରି ଆସିଛି । ସାରା ଅଫିସର ମହଲ ତା' କଥା ଶୁଣି ତାଜୁବ୍ । ସେ ଯେଉଁଠି ମନ ସେଇଠି ତମ୍ବୁ ପକେଇଲେ କେହି କିଛି କହିଦେବାକୁ ନାହିଁ । ସେ ସିଟିମାରି ଫେରୁଥାଏ ସର୍କସ ମଇଦାନ ଆଡକୁ । ସେଇଟା ତା'ର ଫୁଟବଲଖେଳା ସମୟ । ଦୌଡାଯାଇ ସେ ଜୁମୋକୁ ମାଫି ମାଗିନେବ । ତା' ସାଙ୍ଗରେ ଦୁଃଖ-ସୁଖ ହେବ । ପୋଷାକ ବଦଳକରି ଫୁଟବଲ ଖେଳିବାକୁ ବାହାରିପଡିବେ ଦୁଇବନ୍ଧୁ ।

ଆହୁରି ଅନେକ ବାଟ ମଇଦାନ । ବିରାଟ ଗୋଳ ଶୁଭିଲା । ସେ ଚାଲି ଚାଲି ପହଞ୍ଚିବାକୁ ଅଧଘଣ୍ଟାଏ ଲାଗିଯିବ । ପାହୁଣ୍ଡକେ ଦଶଇଞ୍ଚ କରି ସେ କେତେ ଭୂଇଁ ମାପିବ ? କିଏ ଗୋଟାଏ ଡାକବାଜିରେ କହିଲା, "ଆପଣମାନେ ଆମକୁ କ୍ଷମା କରନ୍ତୁ । ଆଜି ଜୁମୋ ଅସୁସ୍ଥ । କାଲି ଆମେ ଅବଶ୍ୟ ଖେଳ ଦେଖେଇବୁ ।"

ସ୍ୱର ପାଡ୍ରୋର ।

ପାବ୍ଲୋର ଭୂରୁ କୁଞ୍ଚେଇଗଲା । "ଜୁମୋ ଅସୁସ୍ଥ" ସେ ଫିକ୍‌କିନା ହସିଦେଲା । ମେନେଜର ଗୋଟାଏ ଧୂଆଁ ବାଣ ମାରିଦେଲା । ଭାରି ଚାଲୁ ଶଳା ! ମଇଦାନ ପାଖ ହେବାରୁ ସେ ଖପର ଖପର ଧାଇଁଲା । ସେ ଲିମ୍ବଗଛମୂଳେ ଜୁମୋ ଶୁଏ । ସେ ଗଛ ଉପରକୁ ଏମିତି ଆଲୁଅ କାହିଁକି ପଡିଛି ? ଲୋକ ଗହଳି ଅଛି ନା କ'ଣ ?

ପାବ୍ଲୋ ସେଠି ଧକେଇ ଧକେଇ ପହଞ୍ଚିଗଲା । ଭିଡ ଭେଦି ମାଡିଗଲା । ସର୍କସ ସରିଥାଏ । ଭିତରୁ ଅଧେ ଲୋକ ଉଠି ଆସି ଘେରି ରହିଥା'ନ୍ତି । ଜୁମୋ ନିସ୍ତେଜ ଶୋଇଥାଏ । ତା' ପେଟ ଫୁଲିଯାଇଥାଏ ଗୋଟାଏ ବିରାଟ ଫୁଟବଲପରି । ପାବ୍ଲୋ ସମସ୍ତଙ୍କୁ ଆଡେଇ ଜୁମୋ ପାଖେ ପହଞ୍ଚିଲା । ଥୋଡପାହାରକୁ ଭିତରପଟୁ ସଲସଲ କଲା । ଜୁମୋ ବୋଧହୁଏ ବୁଝିଲା – ସାମାନ୍ୟ ଟିକିଏ, ଥୋଡପାହାର ଉଠେଇ ପୁଣି ପକେଇଦେଲା । ପାବ୍ଲୋ ତା' ମୁହଁ ସାଉଁଳି କାନ ସାଉଁଳି ଦେଇଁଲା । କ'ଣ ହେଲା ଜୁମୋକୁ ? କାହିଁକି ଜୁମୋର ପେଟ ଏମିତି ଫୁଲିଯାଇଛି ? ତାକୁ କିଏ କ'ଣ ଖାଇବାକୁ ଦେଲା ?

ମେନେଜର କେସିଓ ପାଡ୍ରୋର ମୁହଁଯାକ ଝାଳ । ସର୍କସରୁ ହାତୀଟାଏ ଚାଲିଗଲେ ଅଧେ ବଳ ଭୁସୁଡିପଡେ ।

କିଏ ଖାଇବାକୁ ଦେଲା ? ଆଜି ପାବ୍ଲୋକୁ ସେ ବାହାରକୁ ପଠେଇଛି । କିଏ ଜୁମୋକୁ

ଖୁଆଇଲା ଆଜି ? ପାତ୍ରୋର ମୁହଁ ଆଉ ଆଖିରେ ଟଟଲା କ୍ରୋଧ ।

ଜଣେ କିଏ କହିଲା – ଆଜି ଲଲ୍ଲୁ ତାକୁ ଦୁଇବସ୍ତା କୁଣ୍ଡା ଖୁଆଇଦେଲା ।

"କାହିଁ ସେ ହାରାମଜାଦା ? ମୁଁ ତା' ତଣ୍ଟି କଣାକରି ରକ୍ତ ପିଇଯିବି । ଚିକିଟିକି କରି କାଟି ରାଜା ଯନ୍ତା ଭିତରେ ଫୋପାଡିଦେବି ।" – ଗର୍ଜି ଉଠିଲା ପାତ୍ରୋ । ଲଲ୍ଲୁ ମିଳିଲା ନାହିଁ । ଖୁବ୍ ଖୋଜାହେଲା, ମିଳିଲା ନାହିଁ ।

ପାବ୍ଲୋ କିନ୍ତୁ କିଛି ଦେଖୁନଥାଏ, କିଛି ଶୁଣୁନଥାଏ । ଜୁମ୍ବୋର ନିଃଶ୍ୱାସ ଘଡଘଡ ହେବାର ଶୁଣି ତାକୁ ବାଉଳିଲାଗିଲା । ସେ ତା' ତମ୍ବୁକୁ ଦୌଡିଯାଇ ସେଦିନର ନଡିଆଟିକୁ ନେଇଆସିଲା । ତାକୁ ଛଡେଇ ନଡିଆ ଗୁଳାଟାକୁ ତା' ପାଟିରେ ପୂରେଇଦବାକୁ ଚେଷ୍ଟାକଲା । ପାଟିରେ ଫେଣ ବଜ୍‌ବଜ୍ । କିଛି ହେଲାନାହିଁ ।

ଜୁମ୍ବୋର ପେଟ ସେମିତି ପଥରପରି ଟୋଳି ହେଇ ରହିଥାଏ । ଥୋଡପାହାରଟି ଧୂଳିରେ ଲୋଟିପଡିଥାଏ । ପାଦ ଚାରୋଟି ବିନା ଶିକୁଳିରେ ଧାଇଁଲା ଭଳି ଢଙ୍ଗରେ ଛାଟି ହୋଇ ରହିଥା'ନ୍ତି । ହଠାତ୍ ଠପ୍‌କରି ଜୁମ୍ବୋର ନିଃଶ୍ୱାସ ରହିଗଲା । ପାବ୍ଲୋ କଣ୍ଢେଇଟିଏ ଭଳି ଠିଆହୋଇଥାଏ ।

ଅନେକ ରାତିରେ କାହୁଁ ଆସି ଦୁଇଜଣ କଂସେଇ ପହଞ୍ଚିଲେ ତାକୁ କାଟିବାକୁ । ନହେଲେ କୁଆଡେ ଜୁମ୍ବୋକୁ ଗୋଟାପଣେ ନେଇ ହେବ ନାହିଁ । ଲୋକଗହଳି ଭାଙ୍ଗିଗଲା । ରାତି ଆଗେଇଲା । ଖଣ୍ଡେ ମାତ୍ର ଗ୍ୟାସ ଲାଇଟ୍ ନେଇ କାମ ଚାଲିଥାଏ । ମଟର ଚକ ଲାଗିଥିବା ବଡ ଠେଲା ଉପରେ ସର୍କସର ସବୁ ମଜୁରିଆ ଲାଗି ଜୁମ୍ବୋର ଗୋଟାଏ ଲେଖା ଗୋଡ ଥୋଉଥା'ନ୍ତି ।

ଗାଁ ବାହାରେ ବିରାଟ ଖାତ ଖୋଳାହେଲା । ହାତୀର ପେଟ ଖାଲି କରି ଲୁଣ ଭର୍ତ୍ତି କରିବାକୁ ବହୁ କଷ୍ଟକର କଂସେଇ ଦୁଇଜଣ ଛୁରୀ ଚଳେଇଥା'ନ୍ତି । ବହଳ ଚର୍ବି ଭେଦିପାରୁନଥାଏ ତା' କାତି । ବହୁ ପରିଶ୍ରମ ପରେ କାଟିଲା ପୁଟା ଭିତରୁ ଭୁସୁଭୁସିଆ ଶୁଖିଲା କୁଣ୍ଡାଗୁଡାଏ ବାହାରିପଡିଲା ପଦାକୁ । ପାବ୍ଲୋ ମୁଠାଏ କୁଣ୍ଡା ଧରି ସେ ନିଛାଟିଆ ରାତିରେ ଚାହିଁରହିଲା ଦୂର ଅନ୍ଧାରକୁ । ହାତୀର କବର ଉପରେ ଶେଷ ମାଟି ମୁଠାଏ ପକେଇଲାବେଳକୁ ପ୍ରଥମ କୁକୁଡା ଡାକିଲାଣି । ମଜୁରିଆ ସବୁ ଗାଜୁ ଗାଜୁ ହୋଇ ଖୋଲା ତମ୍ବୁ ଭିତରେ ପଶିଗଲେ । ସକାଳ ପାହିଲେ ପାଉଣା ନେବାକୁ କଂସେଇ ବି ବିଦାୟ ହୋଇଗଲେ । ପାବ୍ଲୋ ସେହି ନିମ୍ବଗଛ ମୂଳେ ଜୁମ୍ବୋର ଲୁହା ଜଞ୍ଜିର ପାଖରେ ବସି ଏକୁଟିଆ ଖଣ୍ଡିଏ ବିଡି ଟାଣୁଥାଏ । କେହି କୁଆଡେ ନଥା'ନ୍ତି । ଗ୍ୟାସ୍ ଆଲୁଅ ଲିଭିଯାଇଥାଏ । ଏଇମିତି ଦିନେ ତା' ମା' ମରିଯାଇଥିଲା । ବହୁ ଆଗରୁ ବାପା ବି ମରିଯାଇଥିଲେ ।

"ତୋ କ୍ୟା କରେଗା" – ଭାବିଲା ପାବ୍ଲୋ ହିନ୍ଦୀରେ । ଭାରି ଅସହାୟ ବୋଧକଲେ ସେ ହିନ୍ଦୀ କହିପକାଏ । କେଜାଣି କାହିଁକି ସେ ଖପର ଖପର ଧାଇଁଯାଇ ଚାର୍ଲି ପାଟିମାଙ୍କଡଟାକୁ କାନ୍ଧରେ ନେଇ ଆସିଲା । ନିମ୍ବଗଛ ମୂଳେ ପାବ୍ଲୋ ମିଟିମିଟି ଅନେଇଥାଏ । ଆଉ ଗୋଟିଏ କବର ପରି ଅନ୍ଧାର ଜକେଇଗଲା ଚାରିଆଡେ । ଯା'ପରେ ହୁଏତ ସକାଳ ପାହିବ । ଚାର୍ଲି ସେହି ଅନ୍ଧାରରେ କୁଁ କୁଁ ହୋଇ ରାମ୍ପିହେଲା । ପାବ୍ଲୋ ବୁଝିଲା ସେ ଖାଇବାକୁ ମାଗୁଛି । ଜନ୍ତୁକୁ ଏଇମିତି ସବୁବେଳେ

ଭୋକକରେ । ତାକୁ ବି କେଜାଣି କାହିଁକି ରାଉ ରାଉ ଭୋକ କଲା । କୁମୋର ପୁଟା ଭିତରୁ ବାହାରିଥିବା କୁଣ୍ଡା ମୁଠାକ ତା' ମୁଣା ଭିତରୁ ଆଣି ସେ ଋର୍ଲି ମୁହଁ ପାଖରେ ଧରିଲା ।

"ଏଥିରୁ ଅଧେ ଖାଇବୁ ଋର୍ଲି ?"

ଋର୍ଲି ଟିକିଏ ଶୁଙ୍ଘିଦେଇ ମୁହଁ ଆଡେଇଦେଲା ।

ପାବ୍ଲୋ ସେ ଶୁଖିଲା କୁଣ୍ଡାକୁ ମୁଠାରେ ଦୁଇଥର କର୍ କର୍ କରି ଚିପିଲା । ତା'ପରେ ପୁଣି କ'ଣ ଭାବିଲା କେଜାଣି ପୂରେଇଦେଲା ମୁଣାରେ । ଅନ୍ଧାରରେ ତା' ମୁହଁ ଉପରେ ଛୋଟ ଉଦାସ ହସଟିଏ ଆସ୍ତେ ଲିଭିଗଲା ।

ଏତିକିବେଳେ ହଠାତ୍ ଗୋଳ ଉଠିଲା, ହୁତ୍ ହୁତ୍ ହୋଇ ନିଆଁ ଜଳିଉଠିଲା ଏଠି ସେଠି ଚାରିଆଡେ । ମଣିଷ ମାଇକିନା ଜନ୍ତୁ ନାନାପ୍ରକାର ଚିତ୍କାର କଲେ, ଧାଇଁଲେ ଏଣେତେଣେ ।

ପାବ୍ଲୋ ଧଡପଡ ହୋଇ ଉଠିପଡିଲା । ଉହୁଙ୍କି ହେଲା ସେ ନିଆଁ ଘେର ଭିତରକୁ ପଶିବାକୁ; ଜଳିଯାଉଥିବା ଜନ୍ତୁଗୁଡିକୁ, ମଣିଷଗୁଡିକୁ ଓଟାରି ଆଣି ବଞ୍ଚେଇବାକୁ । ଋର୍ଲି କିଚିରି କିଚିରି ରଡି ଛାଡି ତାକୁ ପଛରୁ ଟାଣିଧରିଥାଏ । ତା' ଜାମାକୁ ଭିଣିପକାଉଥାଏ ।

ଋହୁଁ ଋହୁଁ ଚାରିଆଡେ ନିଆଁ ମାତିଗଲା । କନା ବାଡ, ତମ୍ବୁ, କାଠଖୁଣ୍ଟ ହୁତ୍‌ହୁତ୍ ହୋଇ ଜଳିଲା । ଫଟା ହାଣ୍ଡି ପରି ଅସହାୟ ବାଘ ହେଣ୍ଟାଳିଲା । ଦୁର୍ ଦୁର୍ ବାଡେଇଲା ନିଘଞ୍ଚ ଲୁହା ଯନ୍ତାକୁ । କେସିଓ ପାଡ୍ରୋ ପାଗଳ ପରି ଧାଇଁଲା । ସେଇଭଳି ହେଣ୍ଟାଳିଲା ।

ପାବ୍ଲୋର କାନ ତାବ୍‌ଦା ହୋଇଗଲା । ଆଖି ଝଲସିଗଲା । ସେ ପଥର ପରି ସେଇଠି ଠିଆ ହୋଇ ରହିଥାଏ । ତା'ର ଗୋଟାଏ ଗୋଡକୁ କୁଣ୍ଢାଇଧରି ଋର୍ଲି ଥରୁଥାଏ ଠକ୍ ଠକ୍ ।

X X X X

ସେତେବେଳକୁ ନିଆଁ ଲିଭି ସାରିଥାଏ । ସକାଳ ଆଲୁଅରେ ଗୋଟାଏ ଦରପୋଡା ଯନ୍ତା ଉପରେ ଗୋଡ ଫଗକଟେଇଦେଇ, ଦୁଇ ବାହୁ ଓସାରିଦେଇ ପାବ୍ଲୋ ଠିଆହୋଇଥାଏ – ଠାଣିରେ ସତେ ବା ପାହାଡଟାଏ!

ତା' ଚାରିଆଡେ ଧୂଆଁ ଅଙ୍ଗାରରେ ଲଢେଇ କରି ହାରିଯାଇଥିବା ମଣିଷଗୁଡିଏ । କେସିଓ ପାଡ୍ରୋର ମୁଣ୍ଡବାଳ ପୋଡିଯାଇଥାଏ । ଜାମା ଜଳିଯାଇଥାଏ । ଦେହସାରା କଳା ଆଉ କାହାକୁ ଚିହ୍ନିବା କଷ୍ଟ । ସମସ୍ତେ ଝଲସି ଯାଇଥା'ନ୍ତି । ଯନ୍ତ୍ରଣାରେ ଥରୁଥା'ନ୍ତି । ଗର୍ଜୁଥା'ନ୍ତି ।

ପାବ୍ଲୋର ପାଟିଗୋଳ ଭେଦି ଶୁଭୁଥାଏ – ମୁଁ ତୁମକୁ ବଞ୍ଚେଇବି । କେହି ହତାଶ ହୁଅ ନାହିଁ । ମୋ' ଉପରେ ଭରସା ରଖ । ମୋ' ବାହୁରେ ଓହଳିପଡ । ମୋତେ ଆଉଜିଯାଅ ।

ତା' ସ୍ୱର ସକାଳର ଆଲୁଅ ଭଳି ପ୍ରାଞ୍ଜଳ । ଟଲୁ ଅନେଇଲେ ଯନ୍ତା ଉପରେ ଠିଆହୋଇଥିବା ବାମନର ମୁଣ୍ଡ ସର୍ଗରେ ଲାଗିଥାଏ । ତା' ବାହୁ ବିସ୍ତାରି ହୋଇ ରହିଥାଏ ସାରା ଆକାଶର ପୂର୍ବରୁ ପଶ୍ଚିମକୁ । ଏ ହିଁ ତ ଏକମାତ୍ର ଭରସା !



# ପିତୃବଧ

ରାତିର ଚତୁର୍ଥ ପ୍ରହର ବେଳକୁ ଅନ୍ଧାର ଜମିଆସିଥାଏ । କ୍ଳାନ୍ତ ଯାତ୍ରୀମାନଙ୍କର ଆଖିପତା ଉପରେ ନିଦ ଏବଂ ଖଣ୍ଡ ଖଣ୍ଡ ସ୍ୱପ୍ନ ବୋଝେଇ ହୋଇଥାଏ । ସେତେବେଳେ ଚେଇଁବାକୁ କାହାରି ଇଚ୍ଛାନାହିଁ । ଯାହା ଘଟିଗଲେ ସୁଦ୍ଧା ପ୍ରତିବାଦ କରିବାର ପ୍ରବୃତ୍ତି ନାହିଁ ।

ସେଥିପାଇଁ ରାଜଧାନୀକୁ ପାଖେଇ ଆସୁଥିବା ଦ୍ରୁତଗାମୀ ବସ୍‌ଟା ଯେତେବେଳେ ଅଚାନକ ସେ ଅପନ୍ତରା ବଣ ପାଖରେ ଅଟକିଗଲା, ତା' ଭିତରେ ସବୁ ନିଶ୍ଚେଷ୍ଟ ପିଣ୍ଡଗୁଡ଼ିକ ଥରେ ମାତ୍ର ଦୋହଲିଯାଇ ସ୍ଥିର ହୋଇଗଲେ । ଶୀତ ପାହାନ୍ତାରେ କମ୍ବଳ ଟେକିବାକୁ କାହାରି ଇଚ୍ଛା ହେଲାନାହିଁ ପଚାରିବାକୁ – କାହିଁକି ସେ ବସ୍ ସେମିତି ଅଟକିଗଲା, କୋଉଠି ଅଟକିଗଲା, ଯା'ପରେ ଆଗକୁ ଯିବ ନା ନାହିଁ! ନିର୍ବେଦ ନିର୍ଲିପ୍ତ ମେଦପିଣ୍ଡଗୁଡ଼ିକ ବିଭିନ୍ନ ଭଙ୍ଗୀରେ ପଡ଼ି ରହିଲେ । ଅପେକ୍ଷା କଲେ ବସ୍ ଆଗକୁ କିମ୍ବା ପଛକୁ ଘୁଞ୍ଚିଲେ ପୁଣି ଥରେ ଲଦବଦ ହେବେ ।

ଗାଡ଼ିର ସାମ୍ନା ଆଲୁଅରେ ଡ୍ରାଇଭର ଦେଖିଲା ଯେ ରାସ୍ତା ମଝିରେ ଆଗକୁ ମୁହଁକରି ଗୋଟାଏ ଜିପ୍ ଠିଆହୋଇଛି । ବାଟ ସଂପୂର୍ଣ୍ଣ ବନ୍ଦ । ସେ ହର୍ଣ୍ଣ ଦେବା ପୂର୍ବରୁ ପାଞ୍ଚଛଅଜଣ ଓଭରକୋଟ୍, କାନଟୋପି, ହାତମୋଜା ପିନ୍ଧା ମଣିଷ ବାହାରିଆସିଲେ । ସେ ଇଞ୍ଜିନ୍ ଚାଲୁରଖି ତା' ସାଙ୍ଗ ଡ୍ରାଇଭରକୁ ଖେଞ୍ଚି ଉଠାଇଲା । ଅଧରାତି ବଦଳ ପରେ ନିଘୋଡ଼ ନିଦରେ ଶୋଇଥିବା ବୁଢ଼ାଳିଆ ଡ୍ରାଇଭରଟି ଉଠିପଡ଼ି ବାଉଳୁଚାଉଳୁ ହେଲା । ପଛପଟୁ କଣ୍ଡକ୍ଟରଟି ଚମକି ଚାଲିଆସିଲା ଇଞ୍ଜିନ୍ ପାଖକୁ । ତିନିହଳ ଆଖି ନିଷ୍ପଲକ ଚାହିଁରହିଥା'ନ୍ତି ସାମ୍ନାକୁ – ଗାଡ଼ି ଆଲୁଅରେ ଆସ୍ତେ ପାଖେଇ ଆସୁଥିବା ସେ ଛାଇଗୁଡ଼ିକୁ ।

କଣ୍ଡକ୍ଟର୍ ଉଷୁମ ଇଞ୍ଜିନ୍ ଢାଙ୍କୁଣି ଉପରେ ନଥିକିନା ବସିପଡ଼ି କହିଲା – "ପାଞ୍ଚଜଣ"! ତା'ର ସ୍ୱର ଖୁବ୍ ଅସ୍ପଷ୍ଟ । ତା' ଦାନ୍ତ ପାଟି ଠକ୍ ଠକ୍ ଥରୁଥାଏ । ଗୁଡ଼ାଏ ଶୀତ ବୋଧହୁଏ ତା' ପଞ୍ଜରା ଭିତରେ ପଶିଯାଇଥାଏ । ଦୁଇଟିଯାକ ଡ୍ରାଇଭର ସଂପୂର୍ଣ୍ଣ ନୀରବ ।

ଗାଡିର ଇଞ୍ଜିନ୍ ଖୁବ୍ ସ୍ପଷ୍ଟଭାବରେ ଘର୍ ଘର୍ ଡାକୁଥାଏ । ବସ୍ ଭିତରେ ଏବଂ ବାହାରେ ପ୍ରସ୍ତ ପ୍ରସ୍ତ ନିଦ ଏବଂ ଅନ୍ଧାର । ଖୁବ୍ ନିଷ୍ଚଳ ଓ ନିସ୍ତରଙ୍ଗ ।

ସେମାନେ ଗାଡି ସାମ୍ନାରେ ଆସି ଠିଆହେଲେ । ଦୁଇଜଣ ରହିଗଲେ, ଆଉ ତିନିଜଣ ଠପ୍ ଠପ୍ ଆସି କବାଟ ବାଡେଇଲେ । ହେଲ୍ପର୍ ଯେ ଅନେକବେଳୁ ସେଇପାଖେ ଠିଆହୋଇ ଡବଡବ ଅନେଇଁ ରହିଥିଲା, ଏକଥା ଜଣାଗଲା ଯେତେବେଳେ ସେ ସାଙ୍ଗେ ସାଙ୍ଗେ କବାଟ ଫିଟେଇ ଚୁପ୍‌କିନା ପାଖ ସିଟ୍ ଉପରେ ଆଣ୍ଠୁ ମୁଣ୍ଡ ହୋଇ ବସିଗଲା । ଭାରି ଭାରି ଜୋତା ସବୁ ଚଢିଆସିଲେ । ନିଆଁ ପିଣ୍ଡୁଳାଟାଏ ପରି ଏଠି ସେଠି ଟର୍ଚ୍ଚ ଲାଇଟ୍‌ର ଆଲୁଅ ଫୋପାଡିହେଲା । ସେମାନେ ହୁଏତ କ'ଣ ସବୁ ଠାବ କରୁଥିଲେ ! ସେମାନେ ଯାହା ଚାହିଁଲେ ତା' ନେଇପାରିବେ; ଯାହା ଚାହିଁଲେ ତା' କରିପାରିବେ । ଯାହାକୁ ମନ ତାକୁ ଉଠେଇନେଇ ଯା ଇଚ୍ଛା ତା' କରିଦେଇପାରିବେ – କିଏ ପ୍ରତିବାଦ କରିବ ? କାହିଁକି କରିବ ? କେମିତି ପ୍ରତିବାଦ କରିବ ? ମେଦପିଣ୍ଡ କ'ଣ ପ୍ରତିବାଦ କରନ୍ତି ? ହର୍ତ୍ତା କର୍ତ୍ତା ବିଧାତାଙ୍କୁ କ'ଣ ପ୍ରତିବାଦ କରାଯାଏ ? ରାତ୍ରି ଅପେକ୍ଷା କଲା ଶ୍ୱାସରୋଧ କରି – ଏଣିକି କ'ଣ ହେବ ? – ସ୍ପନ୍ଦିତ ହୃତ୍‌ପିଣ୍ଡରୁ କେହି ଗୋଟାଏ ପ୍ରଶ୍ନ କଲା ନ ଶୁଣିଲା ଭଳି ।

"ଯାହା ସେମାନେ ଚାହିଁବେ ।" – ଉତ୍ତର ଦେଲା ଇଞ୍ଜିନ୍ ।

ଠିଆରହି ଡାକୁଥିବା ଇଞ୍ଜିନ୍‌ଟିକୁ ବନ୍ଦ କରିଦେବାକୁ ମଧ ଡ୍ରାଇଭର୍‌ର ସେ ମାଟିମୂର୍ତ୍ତି ହାତ ଘୁଞ୍ଚେଇ ପାରିଲା ନାହିଁ ।

ସେମାନେ ପଛ ପର୍ଯ୍ୟନ୍ତ ନିଷ୍ଚଳ ଆଖି ବୁଜି ପଡିଥିବା ମୁହଁଗୁଡାକୁ ଲାଇଟ୍‌ମାରି ଦେଖିନେଲେ । କମ୍ବଳ, ଏଣ୍ଡିଚାଦର, ମଫଲର୍ ଓଟାରିଆଣି ସବୁ ମୁହଁକୁ ସେ ଦେଖୁଥା'ନ୍ତି । ସବୁ ଆଖି ମିଟିମିଟି ହେଉଥାଏ, କିନ୍ତୁ ବୁଜିହୋଇ ରହିଥାଏ । ସେମାନେ ବୋଧହୁଏ କେହି ଶୋଇ ନଥା'ନ୍ତି । ଉଠିପଡିବାର ଅସ୍ୱନକ ମୁକାବିଲାକୁ ହିଁ ସେମାନେ ସେମିତି ଆଖି ବୁଜି ଦେଇଥା'ନ୍ତି । ଭାବୁଥା'ନ୍ତି ହୁଏତ ଆମେ ଆଗଭଳି ଢୁଳାଉଛୁ । ଆଗଭଳି ଇଞ୍ଜିନ୍ ଶୋଇଛି ଏବଂ କମ୍ପୁଛି । ଗାଡି ବି ଠିକ୍ ଚାଲିଛି ଆଗଭଳି । ଆଖି ଥରେ ଖୋଲିବାରୁ ଯାହା ଦିଶିଯାଉଛି, ତାହା ବୋଧହୁଏ ସପ୍ନ । ସପ୍ନକୁ ରୋଧିବାର ଉପାୟ ନାହିଁ – ପ୍ରୟୋଜନ ମଧ ନାହିଁ ।

ସେମାନେ ଆଗଆଡକୁ ମାଡିଆସିଲେ । କଣ୍ଡକ୍ଟର୍‌ର ପିଠି ଶୀତେଇଗଲା । ଡ୍ରାଇଭର ଯୋଡିକ ନିଷ୍ଚଳ ମାଟିମୂର୍ତ୍ତି ।

ଚାରିନମ୍ବର ସିଟ୍ ପାଖରେ ଖପ୍‌ଖାପ୍ କ'ଣ ଉଠାଇବାର ଶୁଭିଲା । ଭାରି ଜୋତା ଟିଣ ଉପରେ ଖସର୍ ଖସର୍ ହେଲେ । ଛଟପଟ ଗଁ ଗଁ ଶବ୍ଦ ଶୁଭିଲା । ମଝି ଶିରା ହାତଗୁଡିକ ଆଉରି ଠକ୍ ଠକ୍ ଥରିଲେ । ଆଖି ଓସାରିହୋଇ ରହିଥାଏ ସାମ୍ନାକୁ । ଗାଡି ଆଲୁଅରେ ଟେର୍ଚ୍ଛା ପାଣିଟୋପା ଖସୁଥାଏ । ଦୁଇଟି ଓଭରକୋଟ୍ ନିଷ୍ଚଳ ଠିଆରହିଥା'ନ୍ତି । ଇଞ୍ଜିନ୍ ଡାକୁଥାଏ ।

କାହାକୁ ସେମାନେ ଘୋଷାରି ନେଉଛନ୍ତି ? ସେ ଯେଉଁ ଗୋରା ଟକ୍‌ଟକ୍ ପିଲାଟି ଆଗ

ଷ୍ଟପ୍‌ରେ ଖାଇବାକୁ ଓହ୍ଲେଇନଥିଲା ! ସେ ଡୋରି ଡୋରି ବୁସ୍‌ସାର୍ଟ୍ ପିନ୍ଧିଥିବା, ବଡ ବଡ ଆଖି, ନୂଆ ଗଜୁରିଥିବା କଅଁଳ ନିଶ ତଳୁ ଚିକ୍ ଚିକ୍ ଦାନ୍ତରେ ଅତି ଭଦ୍ରଭାବରେ ଝିଲ୍ ଝିଲ୍ ହସୁଥିବା ଟୋକାଟିକୁ ସେମାନେ ଟେକିନେଉଛନ୍ତି ? ତା' ମୁହଁ ଜାକିଧରି ତାକୁ ଓଟାରି ନେଉଛନ୍ତି ?

କଣ୍ଡକ୍ଟର୍‌ର ପିଠି ଝାଳେଇଗଲା । ସେତେ ବଡ ଶୀତରେ ମୁହଁ ଉପରେ ବଡ ବଡ ଟୋପା ଝାଳ ଗୋଟାଳି ବାନ୍ଧି ଗଡିଗଲା । ଗାଡି ଆଲୁଅ ସାମ୍ନାରେ ସେମାନେ ତାକୁ ଟେକିନେଇ ଘେରିଗଲେ । ସେମାନଙ୍କ ଆଖି ଦାଉ ଦାଉ କରୁଥାଏ । ଦାନ୍ତ ନିକୁଟି ରହିଥାଏ । ନିରୀହ ଛେଳିଛୁଆଟିକୁ ଅସଂଖ୍ୟ କଂସେଇ ବେଢିଯାଇଥା'ନ୍ତି । ତେର୍ଛା ପାଣିବୁନ୍ଦା ସବୁ ଚିକ୍ ଚିକ୍ ଖସୁଥା'ନ୍ତି । ସେମାନେ ତାକୁ ଏପାଖ ସେପାଖ ଘୋଷାରି ନେଉଥା'ନ୍ତି; ସେ ଛଟ୍ ଛଟ୍ ହେଉଥାଏ ।

ହଠାତ୍ କଳା କଳା ଓଭରକୋଟ୍‌ମାନଙ୍କ ସନ୍ଧାରୁ ସେ ଗୋରା ମୁହଁଟି ଦିଶିଗଲା । ତା' ପାଟିରେ ମଇଳା ରୁମାଲଟାଏ ବନ୍ଧାହୋଇଥାଏ । ତା'ର କୁଞ୍ଚ କୁଞ୍ଚ ବାଳ ଉଲାରି ହୋଇଯାଇଥାଏ । ତା' ଆଖି ଯୋଡିକୁ ଚାହିଁପାରୁନଥାଏ କଣ୍ଡକ୍ଟର୍ ।

ଓଭରକୋଟ୍ ପିନ୍ଧା ତିନିଟା ହାତମୁଠା ଉପରକୁ ଉଠିଗଲା । କ'ଣ ସବୁ ସେମାନେ ଧରିଛନ୍ତି ? ଓଃ, ରକ୍ଷାକର ପ୍ରଭୁ, ରଖିଦିଅ ହରି ! କଣ୍ଡକ୍ଟର୍‌ର ପେଟ ନାଡ ଭିତରୁ ଥଇ ଟେକିଲା । ପାଟି ଓହଳି ପଡିଲା । ସେ ଥରଥର ହାତରେ ତା'ର ଓଦା ମୁହଁଟାକୁ ଘୋଡେଇଦେଇ ଧକେଇଲା । ଡ୍ରାଇଭର ହାମୁଡି ପଡିଲା ଷ୍ଟିଅରିଂ ଉପରକୁ ।

କଚ୍‌କଚ୍ କଦଳୀ ମଞ୍ଜା ହାଣିଲା ଭଳି ଶବ୍ଦ, ଇଞ୍ଜିନ୍‌ର ରାହାକୁ ଭେଦିଯାଇ ଶୁଭିଲା । ଝିପିଝିପି ବର୍ଷାରେ ଓଦା ରାସ୍ତା ଉପରେ ଲୋଟିପଡିଲା ସେ ଡୋରି ଡୋରି ବୁସ୍‌ସାର୍ଟ ପିନ୍ଧା ରକ୍ତ ସାଲୁବାଲୁ ମେଞ୍ଚାଟି । ସେମାନେ ବୁଲିପଡି ଗାଡି ଆଲୁଅକୁ ଚାହିଁଲେ । ଗଡନିଆଁ ପରି ସେ ଅରଣା ଆଖି ତହକୁଥା'ନ୍ତି । ସେଇ ତିନିଜଣ ବଡ ବଡ ଖୋପାରେ ପୁଣି ମାଡିଆସିଲେ ଫାଟକଆଡକୁ ।

ଚିର୍‌ଚିରେଇ ଉଠିଲା ଅନ୍ଧାର । ଚିତ୍‌କାର କଲା ବସୁଧା । ପାଞ୍ଚନମ୍ବର ସିଟ୍‌ରେ ଠିଆହୋଇ ଛୋଟ ଦୁର୍ବଳ ଟୋକାଟିଏ ଚିତ୍‌କାର କରି ଉଠିଲା, "କିଏ ଅଛ ବାପ ଭାଇ, ମୋତେ ବଞ୍ଚାଅ! ସେମାନେ ମୋତେ ମାରିଦେବାକୁ ଆସୁଛନ୍ତି ! ବଞ୍ଚାଅ, ମୋତେ ବଞ୍ଚାଅ ! ମୁଁ ପ୍ରଥମ ଶ୍ରେଣୀରେ ପାଶ୍ କରିଛି । ସେଥିପାଇଁ ସେମାନେ ମୋତେ ମାରିଦେବେ । ମୋର କିଛି ଦୋଷ ନାହିଁ । ମୁଁ ସେମାନଙ୍କୁ ଅମାନ୍ୟ କରିଛି । ଆପଣଙ୍କ ବୋଲ ମାନି ପାଠପଢିଛି । ଆପଣଙ୍କର ପୁଅ ଥିବ । ଆପଣଙ୍କର ଭାଇ ଥିବ ! ମୋତେ ବଞ୍ଚାନ୍ତୁ । ମୁଁ ନିର୍ଦ୍ଦୋଷ, ମୁଁ ଅସହାୟ !... ହେ ଭଗବାନ, ମୋ' ମା'ଗୋ, ହେ ବାପା...କିଏ ଅଛ ବଞ୍ଚାଅ..."

ନିଶ୍ଚେଷ୍ଟ ମେଦପିଣ୍ଡଗୁଡିକ ନିଶ୍ଚେଷ୍ଟ ପଡିରହିଲେ । ଦାନ୍ତ ପାଟି ଜାବିନେଲେ ହୁଏତ । ହାତ ମୁଠା କରିନେଲେ । ଆଖିପତାଗୁଡିକୁ ଭିଡି ରଖିଲେ; କିନ୍ତୁ ସେମିତି ପଡିରହିଲେ କୁଢ କୁଢ ହୋଇ ।

ଘାଇଁକିନା ପଛରୁ ବାଙ୍କ ମୋଡି ଆଲୁଅଟାଏ ଗର୍ଜିଆସିଲା ଆଉ ଗୋଟାଏ ବସ୍ – ସେ ବି

ଆସି ଯା' ପଛରେ ଘରଘର୍ ହୋଇ ଠିଆରହିଲା । ପଁ ପଁ ଡାକି ବାଟ ମାଗିଲା । ଯୋଡାଏ ଇଞ୍ଜିନ୍‌ର ଶବ୍ଦକୁ ଭେଦି ଆର୍ତ୍ତନାଦ ଶୁଭୁଥାଏ – "କିଏ ଅଛ, ମୋତେ ବଞ୍ଚାଅ ! ମୁଁ ନିର୍ଦ୍ଦୋଷ, ମୋତେ ବଞ୍ଚାଅ ! ମୋତେ ବଞ୍ଚାଅ !" – ପଛ ବସ୍‌ର ଆଲୁଅରେ ସେମାନେ ତାକୁ ଫାଟକରୁ ଘୋଷାରି ନେଉଥା'ନ୍ତି । ସେ ଚିର୍‌ଚିରେଇ ଉଠିଲା, "କିଏ ଅଛ ବଞ୍ଚାଅ !"

ଶୂନ୍ୟରୁ ହଠାତ୍ ଉତ୍ତରଆସିଲା, "ମୁଁ ଅଛି, ମୁଁ ତୋତେ ବଞ୍ଚେଇବି ।" ଗୁରୁଗମ୍ଭୀର ସ୍ୱର – ଦୃଢ଼, ନିଷ୍କମ୍ପ, ପରିଷ୍କାର ।

"ମୁଁ ବଞ୍ଚେଇବି..." – କହି ପଛ ବସ୍‌ରୁ ଜଣେ ପ୍ରୌଢ଼ ଡେଇଁପଡିଲେ ତଳକୁ ।

"ଆରେ, ଆରେ, ଏ କ'ଣ କରୁଛନ୍ତି ଆପଣ ? ଫେରିଆସନ୍ତୁ ! ତୁନି ପଡନ୍ତୁ !" ଗୁଞ୍ଜରି ଉଠିଲା ବସ୍ ସାରା । "ସେମାନେ ଆପଣଙ୍କୁ ମାରିପକାଇବେ । ଯାଆନ୍ତୁ ନାହିଁ ।"

– "ମାରନ୍ତୁ ! ମୋର ଭୟ ନାହିଁ । ବାସାଂସି ଜୀର୍ଣ୍ଣାନି ଯଥା ବିହାୟ । ମୁଁ ବଞ୍ଚିବି ବୋଲି ମୋ' ଆଗରେ ପିଲାଟାକୁ ହତ୍ୟା କରାହେବ ? ଅସମ୍ଭବ ।"

ସେ ଅସମ୍ଭାଳ ପାଟିକଲେ, "ମୁଁ ତୋତେ ବଞ୍ଚେଇବି !"

ଦୁଇଟି ଯାକ ବସ୍‌ର ମେଦପିଣ୍ଡଗୁଡିକ ଠକ୍ ଠକ୍ ଉଠି ବସିପଡିଲେ । କଳା ଓଭରକୋଟ୍‌ଗୁଡିକ ଅବିଶ୍ୱାସରେ ଅବିଚଳିତ ଚାହିଁଲେ ପଛକୁ ।

"ମାର ମାର" ବୋଲି ଝପଟିଗଲେ ଭଦ୍ରଲୋକ । ଆଖିପିଛୁଳାକେ ମନ୍ତ୍ରମୁଗ୍ଧ ପରି ଡେଇଁଆସିଲେ ଦୁଇଟିଯାକ ବସ୍‌ର ଯେତେ ସବୁ ଯାତ୍ରୀ । "ମାର ମାର" ଡାକ ଗୁମୁରିଲା ସେ ଅରଣ୍ୟ ସାରା ।

ଓଭରକୋଟ୍‌ଯାକ ଝପର ଝପର ଧାଇଁଲେ ।

ଗୋଡେଇଗଲେ ଇଟା ପଥର ଗୋଟେଇ ଫୋପାଡୁଥିବା ଜାଗ୍ରତ ମେଦପିଣ୍ଡର ଥାଟ । ସେ ଛୋଟ ଦୁର୍ବଳ ପିଲାଟିକୁ ବାନ୍ଧୁ ବେଢେଇ ଭଦ୍ରଲୋକ ତେବେ ମଧ୍ୟ ଆବିଷ୍ଟ ହେଲାପରି କହୁଥା'ନ୍ତି – "ମୁଁ ତୋତେ ବଞ୍ଚେଇବି ! ମୁଁ ବଞ୍ଚେଇବି !" ସେ ତାଙ୍କ ପ୍ରଶସ୍ତ ବୁକୁ ଉପରେ ମୁଣ୍ଡ ରଖି ସକ୍ ସକ୍ କାନ୍ଦୁଥାଏ ।

ଜିପ୍ ଉପରେ ପଥ୍ର ପଡିଲା । ଜିପ୍ ଘାଉଁକିନା ଧୂଆଁ ଛାଡି ଆଗେଇଗଲା । କେହି ଜଣେ ପାଟିକଲା, 'ବେଗି ଉଠ ଗାଡିରେ । ଗୋଡେଇ ଧର ସେ ଶଳା ଖୁନୀମାନଙ୍କୁ ।' ତା'ପରେ ନାନାପ୍ରକାର ପାଟିତୁଣ୍ଡ ଶୁଭିଲା । ରାସ୍ତା ଉପରେ ରକ୍ତରେ ଜଡସଡ ପଡିଥିବା ୪ନଂ. ସିଟ୍‌ର ସେ ତରୁଣଟିକୁ ଦେଖି କଣ୍ଡକ୍ଟର ବୋବାଳି ଛାଡି କାନ୍ଦିଲା । ଜନତା ଗାଜୁ ଗାଜୁ ହେଲା । ସେଥିରୁ ଅଧିକାଂଶ ପରିସ୍ରା କରି ଆସିଲେ । କିଏ ବିଡି ଟାଣିଲା, କିଏ ହାଇ ମାରିଲା । ସ୍ୱାଭାବିକ ହୋଇଆସିଲା ଉତ୍ତେଜନା । ସକାଳ ବି ପାହି ଆସିଲା । ଗାଡିଯୋଡିକ ପଛକୁ ଫେରି ବାଟ ଭାଙ୍ଗି ଆଗେଇଗଲେ । ରାସ୍ତା ମଝିରେ ଲାସ୍‌ଟା ପଡିରହିଲା ହୁଏତ ପୋଲିସ୍ ପାଇଁ ।

X X X X

କିଏ ସେ ବୁଢ଼ାଜଣକ ? ଘର କେଉଁଠି ? କୁଆଡେ ଆସିଛନ୍ତି ?

– ସେ ପରା ପ୍ରଫେସର୍ ଶାସ୍ତ୍ରୀ ! ଖୁବ୍ ବିଖ୍ୟାତ ଲୋକ । ତାଙ୍କଠି ଯେ ପାଠ ପଢ଼ିଛି, ସେ ତାଙ୍କର ପାଦ ପୂଜାକରେ । ଅଦ୍‌ଭୁତ ମଣିଷ ! ଖୁବ୍ ସ୍ନେହୀ । ଭାରି ନୀତିବାଦୀ ସେ । ସେ ବୋଧହୁଏ କୌଣସି କାମରେ ରାଜଧାନୀ ଆସିଛନ୍ତି । ଅନେକ ସମୟରେ ଏମିତି ଆସନ୍ତି । ତାଙ୍କୁ ସେଇ ପଅର ଦିନର ଘଟଣାନେଇ ବୋଧହୁଏ ଥାନାରୁ ଡାକରା ଆସିଛି । ହେଇ ପରା ସେ ଯାଉଚନ୍ତି ! ଚାଲୁନା, ବୁଝିବା ଘଟଣାଟା ପ୍ରକୃତରେ କ'ଣ ?

ଥାନାରେ ଅନେକ ଲୋକ । ଥାନାବାବୁ ଅସମ୍ଭବ ଗମ୍ଭୀର । ଚାରିଆଡ ନିସ୍ତବ୍ଧ ।

"କହନ୍ତୁ ଥାନାବାବୁ, ମୁଁ ଆପଣଙ୍କର କ'ଣ ସେବାକରିପାରେ ? ଏଠି ମାତ୍ର କାଲି ଦିନଟା ଅଛି, ପୁଣି ଆଜି ସନ୍ଧ୍ୟାରେ ସାଂସ୍କୃତିକ ସଭାର ଆୟୋଜନ କରିଛନ୍ତି । ଆପଣ ଯଦି ଚଞ୍ଚଳ ଛୁଟିଦେଇପାରନ୍ତେ, ହୁଏତ ସେମାନଙ୍କୁ ମୋ' ପାଇଁ ବେଶି ସମୟ ଅପେକ୍ଷା କରିବାକୁ ପଡନ୍ତାନାହିଁ ।"

ଥାନାବାବୁ ତାଙ୍କୁ ଦେଖି ଠିଆହେଲେ ନାହିଁ । ହସି ହସି ସମ୍ବର୍ଦ୍ଧନା ଜଣାଇଲେ ନାହିଁ । କେବଳ ହଳଦିଆ କାର୍ବନ୍ ପେନ୍‌ସିଲ୍‌ଟାକୁ ଦୁଇହାତ ଟିପରେ ସିଗାରେଟ୍ ବୋଲିଲାଭଳି ଖେଳୁଥା'ନ୍ତି । ଗୋଟାଏ ଷ୍ଟୁଲକୁ ଚାହିଁ କେତୋଟି ଅସ୍ୱସ୍ତିକର ମୁହୂର୍ତ୍ତ ପରେ କହିଲେ, "ବସନ୍ତୁ !"

ସମସ୍ତଙ୍କ ଦୃଷ୍ଟି ପ୍ରଫେସର୍ ଶାସ୍ତ୍ରୀଙ୍କ ଉପରେ । ଥାନାବାବୁ ଜଣେ କନେଷ୍ଟବଳକୁ ଚାହିଁ କହିଲେ – ତାଙ୍କୁ ନେଇଆସ ! ସାଙ୍ଗେ ସାଙ୍ଗେ ଜଣେ ଭଦ୍ରମହିଳା ଆସି ଠିଆହେଲେ । ଦେଖିବାକୁ ଖୁବ୍ ସୁନ୍ଦରୀ, କିନ୍ତୁ ପିନ୍ଧାପିନ୍ଧିରୁ ଜଣାପଡୁଛନ୍ତି ଟିକିଏ ନଥିଲା ଘରର ଝିଅବୋହୂପରି । ତାଙ୍କୁ ବସିବାକୁ ଇଙ୍ଗିତ ଦେଇ ଥାନାବାବୁ ପ୍ରଫେସର୍‌ଙ୍କ ଆଡେ ପେନ୍‌ସିଲଟାକୁ ଦେଖାଇ ପଚାରିଲେ, "ଏଇ କ'ଣ ସେଇ ବାବୁ ?"

ଭଦ୍ରମହିଳା ଥରେ ଆଖି ଟେକି ଚାହିଁଲେ ଏବଂ ମୁହଁ ତଳକୁ କରିନେଇ କହିଲେ, "ଆଜ୍ଞା, ହଁ !"

ଥାନାବାବୁ ଛାଟିଲା ପରି ସଳଖିଗଲେ, "ମୁଁ ଆଜ୍ଞା, ବିଶ୍ୱାସ କରିପାରୁନାହିଁ ଆପଣ କେମିତି ତାହା କରିପାରିଲେ !"

ପ୍ରଫେସର ଶାସ୍ତ୍ରୀ ଅଳ୍ପ ହସି କହିଲେ, "ଆରେ ସେଇଟା କିଛି ନୁହେଁ ଥାନାବାବୁ ! ମୋ' ସାମ୍ନାରେ କ'ଣ ପିଲାଟା ମର୍ଡର ହୋଇଯାଇଥାନ୍ତା – ମୁଁ ଚାହିଁରହିଥା'ନ୍ତି !"

"ମାନେ – ଆପଣ କେଉଁ କଥା କହୁଚନ୍ତି ?"

"ସେଇ ପଅରଦିନର ବସ୍ ଘଟଣା କଥା ! ସେ ପିଲାଟା ଭଲ ଅଛି ତ !"

"ଓଃ, ଆପଣ ସେ ବସ୍‌ରେ ଥିଲେ ନା କ'ଣ ? ଅଦ୍‌ଭୁତ ସାହସର ସହିତ ଶଙ୍କର ଦାସ ସାମାଦିକ ପରିସ୍ଥିତିର ମୁକାବିଲା କଲେ ବୋଲି ସେ ପିଲାଟା ବଞ୍ଚିଗଲା । ଛାଡନ୍ତୁ – ସେଇଟା ଅଲଗା କଥା !"

"ଶଙ୍କର ଦାସ !" – ପ୍ରଫେସର୍ ଶାସ୍ତ୍ରୀଙ୍କର ଭୃରୁ ସାମାନ୍ୟ କୁଞ୍ଚେଇଗଲା । ସେ ଅଳ୍ପ

ହସିଦେଇ କହିଲେ, "ଆଜ୍ଞା ଛାଡନ୍ତୁ, ମୁଁ ଭାବିଥିଲି ଆପଣ ସେଇ ସଂକ୍ରାନ୍ତରେ ମୋତେ ଡାକିଛନ୍ତି ।"

"ନାଇଁ ଆଜ୍ଞା, ଆପଣଙ୍କୁ ଡାକିବାର କାରଣ ସଂପୂର୍ଣ୍ଣ ଅଲଗା । ଆପଣ ଏ ଭଦ୍ରମହିଳାଙ୍କୁ ଜାଣନ୍ତି ?"

"ନାଇଁ ତ' ଆଜ୍ଞା !"

"କାଲି ସଂଧ୍ୟା ଆଠଟାବେଳକୁ ଆପଣଙ୍କ ହୋଟେଲ ସାମ୍ନାରେ ଆପଣ ଠିଆହୋଇଥିଲେ !"

"ମୋର ଠିକ୍ ମନେପଡୁନାହିଁ ! କିନ୍ତୁ କାହିଁକି ?"

"ସେତିକିବେଳେ ଏ ଭଦ୍ରମହିଳା ଘରକୁ ଫେରୁଥିଲେ ଏବଂ ଆପଣ ତାଙ୍କୁ ଶହେ ଟଙ୍କାର ନୋଟ୍ ଦେଖେଇ ଆପଣଙ୍କ ରୁମ୍ ଭିତରକୁ ଡାକିଥିଲେ ?"

ସମବେତ ଜନତା ଆଶ୍ଚର୍ଯ୍ୟ ହୋଇ ପବନ ଶୋଷିଲେ ।

ପ୍ରଫେସର ଶାସ୍ତ୍ରୀ ଠିଆହୋଇପଡି ଉତ୍ତେଜିତ ଗଳାରେ କହିଲେ, "ଆବସର୍ଡ ! ମୋର ଏଭଳି ବାଜେ କଥା ପାଇଁ ସମୟ ନାହିଁ । ମୁଁ ଆସୁଛି ।"

"ସଟ୍ ଅପ୍" – ଗର୍ଜିଉଠିଲେ ଥାନାବାବୁ, "ଲାଜ ନାହିଁ ଆହୁରି ଏମିତି ତେଜ କାଢିବାକୁ ? ସ୍ତ୍ରୀଲୋକ ପରା ଝିଅଭଳି ହେବେ – ଟିକିଏ ସଙ୍କୋଚ ଲାଗିଲା ନାହିଁ ଏମିତି ଅଶୋଭନୀୟ ଆଚରଣ ପାଇଁ ? ଏଣେ କ'ଣ ନା ଭାଷଣ, ବକ୍ତୃତା କହିଲେ ନ ସରେ ! ଏଭଳି ଭଣ୍ଡଙ୍କୁ ନେଇ ଆମ ସମାଜ ନଷ୍ଟ ହୋଇଗଲା । ମୁଁ ତୁମକୁ ଆରେଷ୍ଟ କରୁଛି ।"

"ଅସମ୍ଭବ !!" ପ୍ରଫେସର ଶାସ୍ତ୍ରୀ ମନକୁ ମନ କହିଲାପରି ଶୁଭିଲା । ଥାନାବାବୁ କିନ୍ତୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ –

"ଅସମ୍ଭବ କ'ଣ ? ତୁମେ ସିନା ଚଷମା ନ ଲଗେଇଲେ କିଛି ଦିଶିବ ନାହିଁ – ଏ ଟୋକାଏ କ'ଣ ଦେଖିନାହାନ୍ତି ? କିଓ ବାବୁମାନେ, କ'ଣ ଦେଖିଚ କହିବଟି !"

ଯୋଡାଏ ଯୁବକ ଦାନ୍ତ ଦେଖେଇ ହସିଲେ । ଗୋଟାଏ କହିଲା, "ଆଜ୍ଞା, ଏ ବୁଢାଙ୍କର ଗୁଣ କ'ଣ କହିବୁ ? ଆମେ ତାଙ୍କ ହୋଟେଲ ସାମ୍ନା କୋଠାର ପାଚେରି ପାଖରେ ଠିଆହୋଇ କଥାବାର୍ତ୍ତା ହେଉଥିଲୁ । ସେଇଠୁ ସବୁ ଦିଶୁଥାଏ । ସେ ଏ ସ୍ତ୍ରୀଲୋକଙ୍କୁ ଧରିପକେଇବାରୁ ସେ ପାଟିକଲେ । ସେତେବେଳେ ଆମେ ଚମକି ଆସିଲୁ । କିନ୍ତୁ ଏ ବୁଢାବାବୁ ଧାଇଁଯାଇ ତାଙ୍କ କୋଠରିରେ ପଶିଗଲେ ।"

ତିନି ଚାରିଜଣ ସାମ୍ବାଦିକ ବୋଧହୁଏ ଫଟୋ ଉଠାଇନେଲେ । ପ୍ରଫେସର ଶାସ୍ତ୍ରୀ ମୁହଁ ପୋତି ବସିଥା'ନ୍ତି । ଅନେକ ସାନ ଦେଖାଯାଉଥା'ନ୍ତି । ଟିକିଏ ପରେ ସେ ମଥା ଟେକି ହସିଲାଭଳି ଚାହିଁଲେ, "ଏଇଟା କ'ଣ କେହି ହେଲେ ବିଶ୍ୱାସ କରିପାରେ !"

"ସେଇ ତ ମଜା ! କେହି ବିଶ୍ୱାସ କରିବେ ନାହିଁ ବୋଲି ବିରାଡି ଏମିତି ଲୁଚି ଲୁଚି ଦୁଧ ପିଇଚାଲିଛି ! ଖୁବ୍ ସୁବିଧାରେ ଆଜିଯାଏ ଚାଲିଆସିଥିଲା, ନୁହେଁ ?"

ଲଜ୍ଜା, ଅପମାନର ବୋଝ ଏତେ ବେଶି ବୋଲି ତାଙ୍କର ଦୃପ୍ତ ମଥା ଜାଣି ନଥିଲା । ଏମିତି ଗୋଟାଏ ଚୁଟ୍‌କିରେ ଜୀବନଯାକର ସୁନାମ ଭୁଷୁଡିଯାଏ ବୋଲି ସେ ଜାଣିନଥିଲେ! ଏମିତି ବି ହତ୍ୟା କରାଯାଇପାରେ ବୋଲି ସେ ଜାଣିନଥିଲେ!

କିଏ ସେ ସ୍ତ୍ରୀଲୋକ ? କିଏ ସେ ଦୁଇଟା ଯୁବକ ? – ଏମିତି ମିଥ୍ୟା ଜାଲ ବୁଣିଲେ କାହିଁକି ?

X X X X

"କ'ଣ ଥାନାବାବୁ! ସକାଳ ଆଠଟା ହୋଇଗଲା । ସେ ବୁଢାକୁ କ'ଣ ଏଯାଏ ହାଜତ୍ ଭିତରେ ଠୁଙ୍କି ରଖିଛନ୍ତି ?"

ହାତରେ ଦୈନିକ ଖବରକାଗଜଟା ଧରି ପାହାଚ ଉଠିଆସିଲେ ଜଣେ ଏଡ୍‌ଭୋକେଟ । ତାଙ୍କ ସାଙ୍ଗରେ ଆଉ ତିନି ଚାରିଜଣ କିଏ ସବୁ ।

"ମୁଁ ପରା ଖବରକାଗଜ ଦେଖି ଛାନିଆଁ ହୋଇଗଲି ! ବୁଢାଙ୍କୁ ପ୍ରକୃତି ଛାଡିଲାଣି, ନହେଲେ ଏ ଶଳା ଯୁଗ ଲେଉଟିବାକୁ ବସିଲାଣି !"

– "ସେ ପରା ଆମ ସାର୍!"

"ବୁଝିଲେ ଆଜ୍ଞା, ଆପଣଙ୍କୁ ଲାଜ ନାହିଁ କି ଆପଣଙ୍କ ସାର୍‌ଙ୍କୁ ଲାଜ ନାହିଁ! ମୁଁ ତ ଭାବୁଛି ଆପଣ ସବୁ କେହି ଜାମିନ୍‌ରେ ନ ନେଲେ, ତାଙ୍କୁ କୋର୍ଟକୁ ଚାଲାଣ କରି ଜେଲରେ ଭର୍ତ୍ତି କରିଦିଅନ୍ତି । ଛି, ଛି, ଏଇଟା ଗୋଟାଏ କଥା ଅବସ୍ଥା ? ଟୋକାଟାକଳିଆ, ନ ହେଲେ ଆପଣ ବା ମୁଁ ଏ କାର୍ଯ୍ୟ କଲେ ଶୋଭାପାଏ ।" ହୋ-ହୋ ଗୋଟାଏ ହସ ଶୁଭିଲା ହାଜତ୍ ପାର୍ଶ୍ୱ ।

"ଚାଲନ୍ତୁ ଚାଲନ୍ତୁ, ବୁଢାଟାକୁ ଆଉ ହଇରାଣ କରନ୍ତୁ ନାହିଁ । କ'ଣ ଟିକେ କରିଦେଲା ଯଦି ଛାଡନ୍ତୁ ।"

ତାଲା ଫିଟିଲା ।

ପ୍ରଫେସର୍ ଶାସ୍ତ୍ରୀ ଦେଖିଲେ ତାଙ୍କର ଛାତ୍ର ଆଡ୍‌ଭୋକେଟ୍ ତାରାପଦ ତାଙ୍କ ଆଗରେ ଠିଆହୋଇଛି । କାହିଁ ତ ଆଗଭଳି ପାଦଛୁଇଁ ପ୍ରଣାମ କରୁନାହିଁ ?

"ଏମିତି କ'ଣ ହେଲା ସାର୍ ?" – ପତ୍ରିକାର ପ୍ରଥମ ପୃଷ୍ଠାରେ ଟିପ ଲଗାଇ ସେ ତାଙ୍କ ସାମ୍ନାରେ ଟେକିଧରିଲେ ।

"ତଥାକଥିତ ନୀତିବାଦୀ ପ୍ରଫେସର୍ ଗିରଫ ! ମହିଳାଙ୍କ ପ୍ରତି..."

"ଅସଦାଚରଣ !"

ଯୋଡାଏ ଫଟୋ ବାହାରିଯାଇଛି ପାଖେ ପାଖେ । ମହିଳା ଜଣକ ଫଟୋରେ ଅନେକ ଭଲ ଦେଖାଯାଉଛନ୍ତି ।

ପ୍ରଫେସର୍ ଶାସ୍ତ୍ରୀ ପତ୍ରିକାର ପୃଷ୍ଠା ଭେଦି କାହିଁ କୁଆଡେ ଚାହିଁ ରହିଥା'ନ୍ତି । ତାରାପଦ କହିଲେ, "ଯାହା ହେଲା ହେଲା ସାର୍! ମୁଁ ଏମାନଙ୍କୁ କହି ସମ୍ଭାଳି ନେଉଛି । ଆପଣ ଘରକୁ ଫେରିଯାଆନ୍ତୁ । ଆପଣଙ୍କ ବଡପୁଅ ଅଂଶୁମାନ ମୋ' ସାଙ୍ଗରେ ପଢୁଥିଲା । ସେ କିନ୍ତୁ ଭାରି ବଡ

ସକ୍ ପାଇଥିବ ଏଥିରେ ।"

"କିରେ ତାରାପଦ, ତୁ' ଏଇଟା ବିଶ୍ୱାସ କରୁଚୁ ନା କ'ଣ ?"

"ନାଇଁ ସାର୍, ଆପଣଙ୍କୁ ଯେ ଜାଣିଛି ସେ କଦାପି ବିଶ୍ୱାସ କରି ପାରିବ ନାହିଁ । ତଥାପି ସାର୍, ମଣିଷ ମନର ଦୁର୍ବଳତା ତ ସମସ୍ତଙ୍କର ଅଛି !... ଆଉ ଏ ମହିଳା ଅସାମାନ୍ୟା ସୁନ୍ଦରୀ..."

ପ୍ରଫେସର ସାମାନ୍ୟ ହସି ତାଙ୍କୁ ଚାହିଁଲେ । ଆଗେଇଗଲେ ମୁଣ୍ଡ ପୋତି । ଖୁଣୀ ଆସାମୀଟିଏ ଭଳି ଦେଖାଯାଉଥା'ନ୍ତି ସଦରଥାନା ପିଣ୍ଡା ଉପରୁ ।

"ମୁଁ ବୁଢ଼ାଙ୍କ ପାଇଁ ବାସ୍ତବିକ ଦୁଃଖିତ ଥାନାବାବୁ ! ଆପଣ ତାଙ୍କୁ ଜାଣି ନାହାନ୍ତି । ସେ ଆଉ ଯ୍ୟା'ପରେ ମୁଣ୍ଡ ଟେକି ଚାଲିପାରିବେ ନାହିଁ ।"

ସେଇ ଦୁଇଟି ଯୁବକ ଭିତରୁ ଜଣେ ଦାନ୍ତ ନିକୁଟି କହିଲା, "ଠିକ୍ କହିଛନ୍ତି ସାର୍ ! ମାଡଟା ବଡ ଜୋର୍ ଅଣ୍ଟାରେ ବସିଯାଇଛି । ବୁଢ଼ା ଆଉ ଉଠିପାରିବ ନାହିଁ ।"

X X X X

ଅଂଶୁମାନ ଶାସ୍ତ୍ରୀ ଜଣେ ପ୍ରତିଷ୍ଠିତ ଅଫିସର୍ । ତାଙ୍କ ଘରୋଇ ଅଫିସରେ ସେ ବସିଛନ୍ତି । ସାମ୍ନା ଚୌକିରେ ତିନିଜଣ ସେମିତି କେହି ପଦସ୍ଥ ବ୍ୟକ୍ତି । ସମସ୍ତେ ନୀରବ ।

"ଆପଣ କ'ଣ ଭାବୁଛନ୍ତି ଯେ, ଅନେକ ଦିନ ଜବରଦସ୍ତି ଦବେଇ ରଖିବା ଫଳରେ ମୌଳିକ ପ୍ରବୃତ୍ତିଟା ଏମିତି ହଠାତ୍ ବାହାରି ଆସିଲା ? – ଆଉ କଥାଟା ଯାହା କୁହାଗଲା, ମାନେ ସେ ଆଉ ଅନେକଙ୍କ ଭଳି ଜଣେ ପ୍ରତାରକ ବା ହିପକ୍ରିଟ ଏବଂ ସବୁବେଳେ ତାଙ୍କ ଭିତରେ ଏପରି ଗୋଟାଏ ଲାଳସା ଲୁଚିରହିଥିଲା – ସେ ଉପରେ ଅନ୍ୟ ଅଭିନୟ ଦେଖାଇ ନିଜର ଅନ୍ୟ ପରିଚୟ ଦେଇଆସିଥିଲେ – ସେଇଟା କ'ଣ ଏ କ୍ଷେତ୍ରରେ ଲାଗିପାରେ ?"

"ହୋଇପାରେ ଏଥିରୁ ଯେକୌଣସିଟି ଗୋଟିଏ ସତ୍ୟ ! ହୋଇପାରେ ଉଭୟ ସତ୍ୟ !" – ତଳକୁ ମୁହଁ ପୋତି ଉତ୍ତରଦେଲେ ଅଂଶୁମାନ ।

"ଉଁ – କ'ଣ କହିଲୁ ?" ସମସ୍ତଙ୍କ ଅଲକ୍ଷ୍ୟରେ ପଶିଆସିଥିଲେ ପ୍ରଫେସର ଶାସ୍ତ୍ରୀ ।

ବାପାଙ୍କ ସ୍ୱର ଶୁଣି ଅଂଶୁମାନ ଧଡପଡ ଠିଆହୋଇପଡିଲେ । ତାଙ୍କ ଦେଖାଦେଖି ଅନ୍ୟମାନେ ମଧ୍ୟ । କେହି କିନ୍ତୁ ବୁଢ଼ାଙ୍କ ମୁହଁକୁ ଚାହୁଁ ନଥିଲେ ।

ଅଂଶୁମାନ ଟେବୁଲ ଉପରେ ଆଙ୍ଗୁଠିରେ ଗାର ଲେଖିବା ଢଙ୍ଗରେ କହିଲେ, "ନା, ସେ କିଛି ନୁହେଁ !"

ପ୍ରଫେସର୍ ସମସ୍ତଙ୍କୁ ଚାହିଁଲେ ଏବଂ ଘର ଭିତରକୁ ପଶିଲେ । କେହି ତାଙ୍କ ସାମ୍ନାରେ କାହିଁକି କେଜାଣି ରହୁନାହାନ୍ତି । ପାଣି ଗ୍ଲାସ ଥୋଇଦେଇ ତାଙ୍କ ଝିଅ ତାଙ୍କ ପାଖରୁ ତରବର ହୋଇ ଆଡେଇ ହୋଇଗଲା । ନୌକର ପିଲା ପାନ ଥୋଇଦେଇ ଚାଲିଗଲା । ବାକି ରହିଲେ ଅଂଶୁର ମା ! ବୋହୂ ଏଇ କେତେଦିନ ହେଲା ବାପଘରକୁ ଯାଇଛି । ବୋଧେ ଯ୍ୟା'ରି ଭିତରେ ତା'ର ପୁଅ କି ଝିଅ ହେବ ।

ଅନେକ ଅପେକ୍ଷା କରିବାକୁ ହେଲା ପ୍ରଫେସର ଶାସ୍ତ୍ରୀଙ୍କୁ – ତାଙ୍କ ସ୍ତ୍ରୀ ସମୟ ପାଇବା ପର୍ଯ୍ୟନ୍ତ । ତାଙ୍କୁ ମନେହେଲା, କାନ୍ଧ ପାଖକୁ ଗଲେ ମଧ ସେ ଦୁଇହାତ ଘୁଞ୍ଚିଯାଇଛି । ତାଙ୍କ ଚାରିଆଡେ ଗୋଟାଏ ଖାଲି କାଗଜର ପ୍ରଥମ ପୃଷ୍ଠା, ସହସ୍ରେ ସଂଖ୍ୟାରେ ବେଢ଼ିଯାଉଛି । ପବନ ବାଜିଲେ ଫଟ୍ ଫଟ୍ ହୋଇ ସେଇ ଗୋଟିଏ କଥା କଳଗାଉଣା ପରି ଦୋହରାଇ ଯାଉଛି । କେହି ଆଉ ସେ ଖବରକାଗଜଟାକୁ ଡେଇଁ ତାଙ୍କ ପାଖକୁ ଆସିପାରୁନାହାନ୍ତି ।

ତିରିଶିବର୍ଷ କାଳ ଦିନରାତି ଲୋକଟାକୁ ଜାଣିସାରିଲା ପରେ ମାତ୍ର ଗୋଟାଏ ଖବର ଉପରେ ସବୁ ସମ୍ପୃକ୍ତ ସଂପର୍କ ହୁଗୁଳିଯାଉଛି କେମିତି ? ସେଇଟା ମିଥ୍ୟା ହୋଇପାରେ ବୋଲି ମଧ କେହି ସନ୍ଦେହ କରୁନାହିଁ ? ସାମାନ୍ୟ ଉଦ୍‌ବିଗ୍ନ ହୋଇ କେହି ଆଶା କରୁନାହିଁ ଯେ, ଏପରି କୁତ୍ସାର ପ୍ରତିବାଦ ହୋଇପାରେ, ଏଇଟା ଅପ୍ରମାଣିତ ହୋଇପାରେ ! କେହି ଜଣେ ଯା'କୁ ଜୋର୍‌ଦେଇ ଅବିଶ୍ୱାସ କରନାହିଁ ! ଆଶ୍ଚର୍ଯ୍ୟ !

ଅନ୍ୟଥର ତ ଏତେ କାମ ବାହାନାରେ ତାଙ୍କ ସ୍ତ୍ରୀ ବାଆଁରେଇ ହେଇ ରହୁ ନ ଥିଲେ ! ସେ ଥରେ ଯାଇ ରୋଷେଇଘରୁ ଫେରିଆସିଲେଣି । ପ୍ରୟୋଜନ ନଥିଲେ ମଧ ସେ ପାଟିକରି କହିଲେ, "କିଓ, ଚା ଟିକିଏ ଆଣିବନାହିଁ ?" ପତ୍ନୀ ଆସିଲେ । ସାମ୍ନା ଚୌକିରେ ବସିଲେ । ସେ ବି ମୁହଁ ଟେକି ଚାହିଁଲେ ନାହିଁ ।

ପ୍ରଫେସର୍ ଶାସ୍ତ୍ରୀ ବିସ୍ମିତ ହୋଇ ଚାହିଁଥା'ନ୍ତି – ସ୍ତ୍ରୀଙ୍କୁ, ସଂସାରକୁ । ପତ୍ନୀ ମୁହଁ ଘୋଡେଇ କାନ୍ଦିପକେଇଲେ । କହିଲେ, "ହେ ଭଗବାନ ! ଶେଷକୁ କ'ଣ ଶୁଣିବାକୁ ଥିଲା !"

ଚା'ଟାକୁ ମୁହଁ ପାଖରୁ ଥୋଇଦେଇ ପ୍ରଫେସର୍ ଶାସ୍ତ୍ରୀ ଆସ୍ତେ ଉଠିଲେ । ତାଙ୍କର ଝୋଲାଟାରୁ କିଛି କଢ଼ା ହୋଇନଥିଲା । ସେ ସେଇଟାକୁ କାନ୍ଧରେ ପକାଇଲେ । ପୂର୍ବାପେକ୍ଷା ସାମାନ୍ୟ ଅଧିକ ଭାରି ଜଣାଗଲା ।

ଖୁବ୍ ନୀରବ ଏବଂ ଖୁବ୍ ଶାନ୍ତଭାବରେ ସେ ବୈଠକଘରେ ପରଦା ଟେକି ଆଡେଇ ହୋଇ ଯାଉଥିଲେ । କ'ଣ ଭାବି ପୁଣି ଫେରିଆସି ତାଙ୍କର କାଗଜପତ୍ର ବାକ୍ସର ଚାବିଟିକୁ ସ୍ତ୍ରୀଙ୍କ ଆଗରେ ଟେବୁଲ ଉପରେ ଥୋଇଦେଲେ । ସ୍ତ୍ରୀ କିଛି ନ ଦେଖି ସେମିତି କାନ୍ଦୁଥା'ନ୍ତି ।

ପ୍ରଫେସର ଶାସ୍ତ୍ରୀ ପୁଅର ଘରୋଇ ଅଫିସ ବାଟଦେଇ ଆସ୍ତେ ପାରିହୋଇଗଲେ । ଅଂଶୁମାନ ମୁଣ୍ଡ ଟେକି ଚାହୁଁ ନ ଥିଲା । କେହି ଚାହୁଁ ନଥିଲେ । ପ୍ରଫେସର ଶାସ୍ତ୍ରୀଙ୍କର ପାଦଶବ୍ଦ ବି କେବେ ଶୁଣାଯାଏ ନାହିଁ ।

ଗେଟ୍ ପାଖରେ ତାଙ୍କ ପୋଷା କୁକୁରଟା ଗୋଡରେ ଛନ୍ଦି ହୋଇ କିଛି ସ୍ନେହ ଭିକ୍ଷାକଲା । ତା' ମୁଣ୍ଡଟାକୁ ଥରେ ଆଉଁସିଦେଇ ଗେଟ୍ ବାହାରୁ ବନ୍ଦ କରିଦେଲେ । ମୁହଁ ଫେରେଇନେଲେ ପ୍ରଫେସର ଶାସ୍ତ୍ରୀ... ।

କୁକୁରଟା କ'ଣ ବୁଝିଲା କେଜାଣି – ଉପରକୁ ମୁହଁ ଟେକି ଏକାରାହାରେ ରାବୁଥାଏ । ଶୁଭୁଥାଏ ପିଲାଟିଏ କାନ୍ଦିଲାପରି ।

ବହୁବାର ଦେଖିଥିବା ରାଜଧାନୀକୁ ସେ ପୁଣି ଥରେ ନୂଆ ଢଙ୍ଗରେ ଦେଖୁଥା'ନ୍ତି । ଅଚିହ୍ନା ବସ୍ତିର ଅଚିହ୍ନା ମଣିଷଟିଏ ।

ପ୍ରଫେସର ଶାସ୍ତ୍ରୀ ପବନରେ ଶିମୂଳି ତୂଳାଟାଏ ପହଁରିଲା ପରି ଆସ୍ତେ ଚାଲିଥା'ନ୍ତି । ଆଗ ଅପେକ୍ଷା ଖଦଡ ପାଇଜାମାଟି ଖୁବ୍ ଲୋଚାକୋଚା ଏବଂ ମଇଳା, ମୁହଁରେ ଗୁଢ଼ । ବାଳ ମାତ୍ର ଦୁଇଦିନ ଭିତରେ ଅନେକ ଧଳା, କେରା କେରା, ଅବିନ୍ୟସ୍ତ । ସାଇକେଲ ରୋକିଦେଇ କେହି ଜଣେ ଚାହିଁଲା – କେଜାଣି କିଏ ! ଲାଇଟ୍ ଖୁଣ୍ଟ ଉପରକୁ ଆଉଜେଇଦେଇ ତରବରରେ ତାଙ୍କ ପାଖକୁ ଚାଲି ଆସିଲା – କେଜାଣି କାହିଁକି ?

ହୁଏତ ଅଠର ଉଣେଇଶ ବର୍ଷର ତରୁଣଟିଏ ! ସେ ସାମ୍ନାକୁ ଆସିଯିବାରୁ ପ୍ରଫେସର୍ ଶାସ୍ତ୍ରୀ ଅଟକିଗଲେ । ସେମିତି ଉଶ୍ୱାସରେ କିନ୍ତୁ ଟଳମଳ ହେଉଥା'ନ୍ତି । ସେ ଲଇଁପଡି ତାଙ୍କ ପାଦ ଧରି ମୁଣ୍ଡିଆମାଇଲା । ଅଭ୍ୟାସରେ ସେ ତା' ମୁଣ୍ଡ ଆଉଁସିଦେଲେ ।

"ଆପଣ ମୋ' ପ୍ରାଣଦାତା । ମୁଁ ଆପଣଙ୍କ ପାଖରେ ସବୁବେଳେ ବନ୍ଧା ପଡିଲି । ଆପଣ ନ ଥିଲେ ମୋତେ ସେମାନେ ମାରିଦେଇଥା'ନ୍ତେ ।" ତା' ଆଖିରେ ସରରେ ଟୋପା ପାଣି ।

"ଓ–ଗଛରୁ ପତ୍ରଟାଏ ପଡିଲା ପରି ସେ କଥା ଗୋଟାଏ ମୁହୂର୍ତ୍ତର ଘଟଣା । ...ସେମିତି ସ୍ତ୍ରୀଟାଏ ବିଭାହେବା, ପୁଅଟାଏ ଜନ୍ମ ହେବା...ଗୋଟାଏ ଗୋଟାଏ ଘଟଣା !"

ହୁଏତ ଆଖି କୋଣରେ ସାମାନ୍ୟ ଝିଲ୍ ଝିଲ୍ ହସ । ମୁହଁଟି ବସ୍ ଯାତ୍ରା ପରେ ଖୁବ୍ କ୍ଳାନ୍ତ । "ତୁମ ନାଁ କ'ଣ ? ଅବଶ୍ୟ ସେଥିରେ ମୋର ବିଶେଷ କିଛି ଯାଏ ଆସେ ନାହିଁ !"

ଖୁବ୍ କୃତକୃତ୍ୟ ହେଲାପରି ସେ କହିଲା, "ମୋ ନାଁ ଆଶୁତୋଷ ଦାସ ! ସାର୍, ମୁଁ ଆପଣଙ୍କ ପାଖରେ କୃତଜ୍ଞ, ସବୁବେଳେ ବନ୍ଧା ।"

"ଦେଖ ଆଶୁତୋଷ, ତୁମକୁ ବାନ୍ଧି ରଖିଲା ଭଳି ମୋ' ପାଖରେ କୌଣସି ଦଉଡି ନାହିଁ । ମୋର କୌଣସି ଦଉଡି ବି କାମିକା ନୁହେଁ । ମୁଁ କାହାକୁ ବାନ୍ଧି ପାରି ନାହିଁ – ମୋତେ ବି କେହି ବାନ୍ଧିବାକୁ ଚାହିଁ ନାହିଁ । ହଉ, ତୁମେ ତୁମର ଆନନ୍ଦରେ ଥାଅ !"

ତାଙ୍କୁ ବାଟ ଛାଡି ଆଡେଇ ହେଲାବେଳେ ସେ କହିଲା, "ତା'ହେଲେ ସାର୍, ଆପଣ ହିଁ ଶଙ୍କର ଦାସ – ସାମ୍ବାଦିକ !"

ସେ ଲେଉଟି ଚାହିଁଦେଲେ । ଏଥର ତାଙ୍କ ମୁହଁସାରା ନୀରବ ହସରେ କୁଞ୍ଚକୁଞ୍ଚ । ସେ କିଛି ନ କହି ସେମିତି ପହଁରିଗଲେ । ତାଙ୍କର ବୋଧହୁଏ ଶରୀର ନାହିଁ ! ତାଙ୍କ ପାଦ ହୁଏତ ଭୂଇଁରେ ଲାଗୁନାହିଁ !

ତରୁଣଟି ତାଙ୍କ ପଛରୁ ମୁଣ୍ଡ ନୁଆଇଁ ନମସ୍କାର କଲା । ଛଳଛଳ ଆଖିରେ ଚାହିଁରହିଲା, "ବୃଦ୍ଧ ଶଙ୍କର ଦାସ !... ଶଙ୍କର ଦାସ ଜଣେ ଦେବତା !"

□

## ସୂଚୀପତ୍ର

# ଦ୍ରୋହ

ସେଇ ଅଗଣା ଖଣ୍ଡ ଆଜି ଅଯୋଧ୍ୟା ତ କାଲି ଲଙ୍କା...ଗ୍ୟାସ୍ ଆଲୁଅରେ ଛାନ୍ଦ ରାମାୟଣ କିଏ ବୋଲେ କେଜାଣି; କିଏ ଅବା ପାଳି ଧରେ, କିଏ ବଜାଏ ପଖଉଜ ? ...ପିଲା, ବୁଢା, ମାଇପି, ମରଦ ସମସ୍ତଙ୍କୁ ଭେଳିକି ଲାଗିଯାଏ । ମନର ଉଚ୍ଚାଟରେ ସମସ୍ତେ ଚାହିଁ ରହନ୍ତି ପହିଜ କାଟୁଥିବା ଦଶମୁଣ୍ଡିଆ ରାବଣକୁ । କାହାରି ସନ୍ଦେହ ରହେ ନାହିଁ ଯେ ଦଶଟାଯାକ ମୁହଁରେ ଦାନ୍ତ କାଢି ସେ ହସୁଚି । ଆଉ ଟିକକେ ସୀତାଙ୍କୁ ସେ ରଥରେ ବସେଇ ନେଇଯିବ; କେହି ତାକୁ ରୋକି ପାରିବେ ନାହିଁ । କାହାରି ଆଖିରେ ପଲକ ପଡୁନାହିଁ; ନିଃଶ୍ୱାସ ପଡୁନାହିଁ ସ୍ୱଚ୍ଛନ୍ଦରେ । ସେମାନେ ସେତେ ବଡ ଅସୁରକୁ ସେତେ ବଡ କୁକର୍ମ କରିବାର ଦେଖୁଛନ୍ତି । ଏତିକିବେଳେ କେହି ଜଣେ ବୁଢା ସମ୍ଭାଳି ନପାରି କହିପକାନ୍ତି, "ମା' ସୀତାଙ୍କୁ ଛୁ-ନାଁରେ ଦଇତ, ଛୁଇଁଲେ ଗୋଟାପଣେ ଜଳିଯିବୁ !" – ସେଇ ଆବେଗରେ ଚହଲି ଯାଆନ୍ତି ସମସ୍ତେ । ଭେଣ୍ଡିଆମାନେ ଫୁ'-ଫୁ'କାର କରନ୍ତି । ଓଟାରି ଆଣି ଏ ରାବଣଟାକୁ ଭିଣିଦେବା ପାଇଁ ଟାଙ୍କୁ କେତେ ମାତ୍ର ! କିନ୍ତୁ ସେଥିରେ ଅବା ଥାଏ କ'ଣ ? – ମୂଳ ରାବଣକୁ ଭଲା କିଏ ରୋଧି ପାରିବ ? ସେମାନଙ୍କ ଭିତରୁ କେହି କେହି କ୍ରୋଧରେ କାନ୍ଦିପକାନ୍ତି । ସମସ୍ତେ ସେଇ ମୁହୂର୍ତ୍ତ ପାଇଁ ଗଭୀର ଉତ୍କଣ୍ଠାରେ ଟଳମଳ ହେଉଥାନ୍ତି । ପଞ୍ଚପ୍ରାଣ ଲଗେଇ ଭାବୁଥାନ୍ତି, "ରାମଚନ୍ଦ୍ର ଏଇନେ ବାହାରି ଆସନ୍ତେ କି ? ପଶି ଆସନ୍ତେ କି ରାମ ଲକ୍ଷ୍ମଣ ଦୁଇ ଭାଇ ଧନୁର୍ବାଣ ଧରି ?" ଓଃ...କେହି ସେତେବେଳେ ସମ୍ଭାଳି ପାରନ୍ତି ନାହିଁ । ହତବାକ୍ ବେପଥୁ ଦଣ୍ଡକାରଣ୍ୟର ଛୋଟ ବଡ ଗଛ ପରି ସେମାନେ ଅସହାୟ ହୋଇ ଚାହିଁ ରହିଥାନ୍ତି । ଅଘଟଣ ଘଟିଯାଏ ! ବାସ୍ତରି ହଜାର ଥର ପାଇଁ ଘଟିଯାଏ ! କିଏ ସେମିତି ସ୍ୱର ଟୋଳି ସେତେବେଳେ ବିଳାପ କରେ କେଜାଣି – "ବନ ଗିରି... ଆହେ ଲତା ଗିରି ! ମୋ କାନ୍ତ ଗଲେ ମୃଗ ମାରି !" ...ଠପ୍ ଠପ୍ ସବୁରି ଆଖିରୁ ଲୁହ ନିଗିଡିଯାଏ । ଧୂଆଁଳିଆ ଦିସେ ସେ ଅଗଣାର ଦଣ୍ଡକାରଣ୍ୟ । ଭାବାକୁଳ ଯାତ୍ରାଦେଖାଳିଙ୍କୁ ଘେରି ରହିଥାଏ ବହୁ ଦୂରରେ ନିର୍ଜନ ଜହ୍ନ ରାତି ।

ସମସ୍ତଙ୍କ ସାଙ୍ଗରେ ସୁଲବୋଉ ବି କାନ୍ଦି ପକାଏ । ନାକକାନ୍ଦୁରୀ ଗୋଡ ଲମ୍ୱେଇ ବସିଥାଏ । ତା' କୋଡରେ ମୁହଁ ରଖି ପେଟେଇ ଶୋଇପଡିଥାଏ ସୁଲ । ନାକ ସଡସଡ କରି ସେ ବାହୁନି ହୁଏ, "କେତେ କରି ନେହୁରା ହେଲି, ତୁ ରାବଣ ହଁ, ନା ! ତୁ କାଇଁ ରାବଣ ହବୁ ? ଆଉ ଯେ ମନ ସେ ହଉ ଥାଉ ! ନୋହୁ ଏବେ ରାମଲୀଳା ! ଜମା ଶୁଣିଲା ନାହିଁ । ଏ ପାପଭରା କିଏ ଏବେ ମୁଣ୍ଡେଇବ ? ତୁ କାଇଁକି ଦଶଟା ମୁଣ୍ଡ ପିନ୍ଧି ହେମିତି ମା' ଲକ୍ଷ୍ମୀ ଦିହରେ ଟିପ ଦେଉଚୁ ? ସମସ୍ତିଙ୍କ ନିଃଶ୍ୱାସ ପଡିଗଲେ ମୁଁ କି କରିବିଟି !" ପାଖରେ ସଖୀ ମାଉସୀ ସୁକୁସୁକୁ କାନ୍ଦୁଥାଏ । ସୁଲବୋଉର ପିଠି ଆଉଁସି ଦେଇ ସେ ବୁଝାଇଲା ପରି କହେ, "ତୁଟା କାଇଁ ଏମିତି ଅଭିଲା ହଉଚୁ ବା' ? ମୁଁ ବାସୁଆକୁ ଜାଣି ନାଇଁ ? ଶୁଦ୍ଧ ସୁବର୍ଣ୍ଣ ପିଲା ! ସେ ଏମିତି ରଙ୍ଗ କରୁଚି ନା' ...ନହେଲେ କେମିତି ରାମଲୀଳା ହବ କହୁନୁ ! ସମସ୍ତଙ୍କ ନିଃଶ୍ୱାସ ସେ ରାବଣା ଉପରେ ପଡୁକିନା ! ମୋ ବାସୁଆର କାଇଁ କ'ଣ ହବ ?"

ସୀତାଚୋରି ହେଲା ଉତାରୁ ସେଇ କାନ୍ଦ ଭିତରେ ସମସ୍ତେ ପୁଣି ତେଜିଉଠନ୍ତି । ରାତି ବଳେଇ ଯାଉଥାଏ, ତଥାପି ତାଙ୍କୁ ଜଣା ପଡେନାହିଁ । ତାଙ୍କରି ଓଦା ଓଦା ଅରଣ୍ୟ ଭିତରୁ ରାମଚନ୍ଦ୍ର ବାହାରି ଆସିବେ । ବାହାରି ଆସିବେ ସୁଗ୍ରୀବ, ଜାମ୍ବବାନ, ନଳ, ନୀଳ, ସୁଷେଣ । ସେମାନେ ସମସ୍ତେ ଏ ଅଗଣାରେ ଭରିଯିବେ । ଏ ଅଗଣା ହୋଇଯିବ କିଷ୍କିନ୍ଧ୍ୟା ! ପ୍ରଭୁ ରାମଚନ୍ଦ୍ରଙ୍କୁ ଘେରି ଅସଂଖ୍ୟ କପିସେନା ବସିଯିବେ । ସମସ୍ତିଙ୍କ ମନ – ଲାଙ୍ଗୁଳଟିଏ ଲେଖା ଖଞ୍ଜି, ମୁହଁରେ ରଙ୍ଗ ଲଗେଇ ସେଇଠି ମିଶିଯିବାକୁ !

କିନ୍ତୁ ସମସ୍ତଙ୍କ ଦୃଷ୍ଟି ରାମମନ୍ଦିର ଦ୍ୱାର ଉପରେ । ସେଇ ଭିତରୁ ପୂଜା ପାଉଥିବା ରୂପା-ଆଖିଆ, ସିନ୍ଦୂରବୋଳା ମୁହଁ ଲଗେଇ, ନାଲି କାଛେଣି ଭିଡି, ଅଣ୍ଟାରେ ଘୁଙ୍ଗୁରମାଳ ଝମକାଇ ବାହାରି ଆସିବେ ବୀର ହନୁମାନ୍ । ତାଙ୍କ ଦେହସାରା ସୋରା ସୋରା ଚନ୍ଦନ ବୋଳା ହୋଇଥିବ । କଟିରେ, ବାହୁରେ ବୀରବାନା ବନ୍ଧା ହୋଇ ଉଡୁଥିବ । ପାହାଚ ଓହ୍ଲେଇ ଅଗଣାକୁ ଆସିଲା ବେଳେ ଜଣାଯାଉଥିବ ସତେ ବା ଆକାଶରୁ ଓହ୍ଲେଇ ଆସୁଛନ୍ତି ସଙ୍କଟମୋଚନ ହନୁମାନ ! – ଆଉ ରକ୍ଷା ନାହିଁ ରାବଣର, କିମ୍ବା ସେ ଅସୁରମାନଙ୍କର । ଆଉ ଆମର ବି ଚିନ୍ତା ନାହିଁ । ଏଣିକି ସମୁଦ୍ରଲଙ୍ଘନ ହୋଇଯିବ । ସୀତାଠାବ ହୋଇଯିବ ! ଠିକ୍ ଚାଲିବ ସବୁକଥା ! – ସମସ୍ୱରରେ ହର୍ଷରୋଳ ଉଠେ । ସମସ୍ତେ ମୁଣ୍ଡିଆ ମାରି ଗଦ୍‌ଗଦ ହୁଅନ୍ତି । କେହି କେହି ତାଙ୍କର ଛାଟି ହୋଇ ରହିଥିବା ଲାଙ୍ଗୁଡକୁ ସନ୍ତର୍ପଣରେ ଛୁଇଁଦେଇ ପିଲାଙ୍କ ମୁଣ୍ଡରେ ଆଉଳେଇ ଆଣନ୍ତି । ସବୁ ଦୁରିତ ଖଣ୍ଡନ ହୋଇଯାଏ ! – ଓହୋ, ଏଣିକି କିଷ୍କିନ୍ଧ୍ୟାର ସବୁ ପୋଖରୀରେ କଇଁ ଫୁଟିଯାଏ ! ରାମଚନ୍ଦ୍ର ଦିଶନ୍ତି ପ୍ରଭୁ ପରି !

ହରି ବେହେରା ହନୁମାନ୍ ହୋଇ ବାହାରେ । ସେଥିପାଇଁ ସେ ମାସେ କାଳ ଅରୁଆନ୍ନ ହବିଷ୍ୟ କରେ । ମନ୍ଦିର ବେଢାରେ ଶୁଏ । ଘରକୁ ଯାଏ ନାହିଁ । ତା' ପିଲାପିଲି କଥା ଗାଁ ଲୋକେ ବୁଝନ୍ତି । ବଡିସକାଳୁ ପୋଖରୀରେ ଗାଧୋଇ ଓଦାଲୁଗା ପିନ୍ଧି ସେ ଗାଁ ଦାଣ୍ଡରେ ଚାଲି ଆସୁଥିଲା

ବେଳେ, ତା' ଉପରେ ଖରା ପଡି ଝଟକୁଥାଏ । ଛୋଟ ବଡ ସମସ୍ତେ ସମ୍ଭ୍ରମରେ ଆଡହୋଇ ଚାହିଁ ରହନ୍ତି । ଚୁପ୍ ଚୁପ୍ କଥା ହେଉଥାନ୍ତି – 'ବାଟ ଛାଡିଦିଅ, ହନୁମାନ୍ ଆସୁଛନ୍ତି !' ସେ ମନ୍ଦିର ଭିତରେ ପଶିବାଯାଏ ସମସ୍ତେ ନିଶ୍ଚଳ ପ୍ରତିମା ପରି ଠିଆହୋଇ ରହିଥାନ୍ତି । ଦାଣ୍ଡରେ ପିଲାଏ, ପିଣ୍ଡାରେ ବୁଢ଼ାମାନେ । କବାଟ ପାଖରେ ମାଇପେ । ସମସ୍ତଙ୍କ ବିଶ୍ୱାସ ଯେ ହରି ବେହେରା ଭିତରେ ହନୁମାନ୍ ଏ ମାସେ କାଳେ ଉଭାହୋଇଥାନ୍ତି ।

ହରି ବେହେରାକୁ ବୟସ ଅଠେଇଶ । ଗୋରା ମୁହଁରେ ପନ୍ଦର କୋଡିଏ ଦିନର କଳା ମଟମଟ ନିଶ ଦାଢି । ରାଉ ରାଉ ଆଖି । ତା' ବାହୁ ବୁକୁ ଦେଖି ଗେଲି ତାକୁ ବିଭା ହେଇଚି । ନ ହେଲେ ନରି ମଲ୍ଲ ଝିଅକୁ କ'ଣ ବର ମିଳି ନଥାନ୍ତା ! ବଡଘର ଝିଅ । ଶାଗ କିଆରିରେ ପୁଅକୁ କାଖେଇ ସେ ଅନେଇଥାଏ କେମିତି ହରି ବେହେରା ସିଂହ ପରି ପାଣି-କାଦୁଅରେ ଖଟୁଛି । ତା' ପେଟ ପୂରିଯାଏ ତା' ଗେରସ୍ତକୁ ଦେଖି । କୋଟିନିଧି ପାଇଲା ପରି ଲାଗେ ।

ରାମଲୀଳା ମଉଛବ ବେଳେ ଗେଲି ମଧ ଅପସରି ଠିଆହୁଏ । ହରି ବେହେରାକୁ ଗେରସ୍ତ ବୋଲି ଭାବିହେବାକୁ ହୁବ କରିପାରେ ନାହିଁ । ହରି ମଧ କେମିତି ଗୋଟାଏ ତେଜରେ ଝଲୁଥାଏ । ତଥାପି ଗେଲି ଆଖିକୁ ସେ ଟିକିଏ ଶୁଖିଲା ଦିଶେ । ତା' ବେକ ଟିକିଏ ସରୁ ଦେଖାଯାଏ । ଗୋଟାଏ ଓଳି ହବିଷ୍ୟ କରି ତା' ଦେହ ଝଡିଯାଇଛି । କ'ଣ ଆଉ କରାଯାଏ ! ହରି ବେହେରା ବେଳେବେଳେ ତା'ର ନଅ ବର୍ଷର ପୁଅ ସୁନିଆକୁ ଚାହିଁ ଦେବାକୁ ମନ କରେ । ଗାଧୋଇ ଆସିଲା ବେଳେ ଗାଁଦାଣ୍ଡରୁ ତା' ପିଣ୍ଡାକୁ ଅନେଇ ଚାହିଁଦିଏ । ଏବେ କେତେଦିନ ସେ ଜମା ଦିଶୁନାହିଁ । ଲାଜ କରୁଛି କି ? ରାମଲୀଳାରେ ତାକୁ ସୀତା କରି ବାହାର କରୁଛନ୍ତି ତ ! ତା' ଗୋରା ମୁହଁକୁ ସେ ରାଣୀ ବେଶ ଏମେତି ମାନୁଛି ଯେ କହିଲେ ନ ସରେ । ଗେଲି ତାକୁ ଦେଖି ମନରେ ସଡସଡ ହଉଚି – ସୁନିଆଁ ଝିଅଟାଏ ହୋଇଥାନ୍ତା କି !

ସେଦିନ ସୀତାଠାବ ବେଳେ ହରିବୋଲ ହୁଳହୁଳି ପଡିଲା । ହନୁମାନ୍ ଆଣ୍ଠେଇପଡି ସୀତାଙ୍କୁ ବନ୍ଦନା କଲେ । ମୁଣ୍ଡରେ ଲଗାଇ ରାମଚନ୍ଦ୍ରଙ୍କ ମୁଦ୍ରିକା ବଢେଇଦେଲେ । ସୁନିଆଁକୁ ସେ ରୂପାଆଖିଆ ରଙ୍ଗ ଜରଜର ମୁହଁ ଦେଖି ଡର ମାଡିଲା । ହନୁମାନ୍ ଦେହଯାକ ସୋରା ସୋରା ଚନ୍ଦନ ଗାର । ଦେହରୁ ବାହାରୁଥାଏ ଦେଉଳିଆ ଧୂପଗନ୍ଧ । ଡେଇଁ ଡେଇଁ ଆସିଥିବାରୁ ତା' ବୁକୁ ପଡୁଥାଏ ଉଠୁଥାଏ । ସୁନିଆଁ ଜମା ଜାଣି ପାରୁନଥାଏ ଯେ ତା' ବା' ହେମିତି ହନୁମାନ୍ ହେଇଚି ! ହରି ବେହେରା ଆଞ୍ଜୁଳାରେ ମଥାମଣି ନେଲାବେଳକୁ ସେ ସୁନ୍ଦର ମୁହଁଟିକୁ ଦୁଇଥର ଚାହିଁ ପାରିଲା ନାହିଁ । ଏ ତ ସ୍ୱୟଂ ଜନକଜେମା !! ତା' ଦେହସାରା ଗୁମ ଟାଙ୍କୁରି ଗଲା । ସେ କାହିଁକି କେଜାଣି ଚାହୁଁ ନଥାଏ ସେଇଠୁ ଉଠିଯିବାକୁ । ଉଠିଲେ ତ ଲଙ୍କା-ପୋଡି ହେବ, ଅସୁରଙ୍କ ସାଙ୍ଗେ ଲଢେଇ ହେବ । କିନ୍ତୁ ହରି ବେହେରା ପାଇଁ ଲଙ୍କାପୋଡି କିବା ଛାର କଥା ! କୁଦାମାରି ସେ ଖଣ୍ଡମଣ୍ଡଳ ମର୍ଦିଦେବାକୁ ତା'ର ସେ ସିଂହବୁକୁରେ କୋଉ ବଳର ଅଭାବ ହେଇଚି ! ତା' ବାହୁରେ, କଟଟିରେ ବୀରବାନା ଫରଫର ଉଡୁଚି । ତା' ଭିତରେ ହମୁମାନ୍ ଉଭା ହେଇଚନ୍ତି । ସେ କ'ଣ ଡରିଚି

ଅସୁରଙ୍କୁ, ନା ଲଙ୍କାକୁ!

ହରି ବେହେରା କିନ୍ତୁ ଶିଂଶପା ଗଛରୁ ଡିଆଁମାରି ସୀତାଙ୍କୁ ଚାହିଁ ଚମକି ପଡିଥିଲା । ଅବିକଳ ଗେଲି ପରି ଦିଶୁଚନ୍ତି ଜନକଜେମା ! ଗେଲିଠଉ ଦଶଗୁଣ ଡଉଲ, ଦଶଗୁଣ ଝଟଝଟ ଦେବୀପ୍ରତିମା; କିନ୍ତୁ ଯାହା ହେଲେ ସୁଦ୍ଧା ଗେଲି ପରି । କ୍ଷଣକ ପାଇଁ ହରି ବେହେରା କହିପାରିବ ନାହିଁ ତା' ମନକୁ ଲୋଭ ଛୁଇଁ ନାହିଁ ବୋଲି । ସେଇ କ୍ଷଣକ ପାଇଁ ତା' ଭିତରୁ ହନୁମାନ୍ ଓହ୍ଲେଇଗଲେ ନାହିଁ ବୋଲି କହି ପାରିବି ନାହିଁ । ଆଉ ଟିକକରେ ସେ ହୁଏତ ହାତ ବଢାଇ ତାଙ୍କୁ ଧରିପକେଇଥାନ୍ତା । କେତେ ଅଗୁଆଁରଣପ କରିପକେଥାନ୍ତା ହରି ବେହେରା ସତେ! ସେ ଲାଜରେ ସଢିଗଲା । ଦାଉଦାଉ ରୂପାଆଖି ପଛ ଆଡେ ତା' ସତ ଆଖିକୁ ଲୁହ ଜକେି ଆସିଲା । – ଇସ୍, ରାମଚନ୍ଦ୍ର ଜାଣିଲେ କ'ଣ କହିବେ ? ସେ ଖାଲି ଭିତରେ ଭିତରେ ଘୋରି ହେଉଥାଏ – ରାମ ଏହା ନ ଜାଣନ୍ତୁ! ପ୍ରଭୁ ଏହା ନ ଜାଣନ୍ତୁ!

ରୂପାଆଖିରୁ ଲୁହ ଝରେଇଲା ପରି ତଳକୁ ଚାହିଁ ହନୁମାନ୍ ଠିଆ ହେଲେ । ଲଙ୍କାପୋଡିଟା ସତେ ଦୁଲୁକିଲା ନାହିଁ । ଅଶୋକବନ ଭାଙ୍ଗିଲା ବେଳେ ତାଙ୍କ ବିକ୍ରମ ସେତେ ଦିଶିଲା ନାହିଁ । ସେଦିନ ରାମ ଲକ୍ଷ୍ମଣ ବାହାରିବା କଥା ନୁହେଁ । ରାବଣ ବାହାରିବା କଥା ନୁହେଁ । ସେମାନେ ଦେଖଣାହାରି ହୋଇ ବସିଥାନ୍ତି । ବାସୁ ଦଳବେହେରା ଉଠିଯାଇ ସୁନିଆଁକୁ ଗେନି ଆସିଲା । ସୁଲବୋଉ ଖଲଖଲ ହେଲା ତା' ଗେରସ୍ତକୁ କହିଦେବାକୁ – ଆରେ ତୁ କିଆଁ ପୁଣି ସୀତାଙ୍କୁ ଛୁଇଁବାକୁ ଯାଉଛୁ ? ଦେଖି ଦେଇ ପୁଣି ଥୟ ପଡିଲା । ଦଶମୁଣ୍ଡା ରାବଣ ନାହିଁ । ଗେଲବସରିଆ ସୁନିଆଁ ବାସୁ ମଉସା ସାଙ୍ଗରେ ଡରଡର ଚାଲିଆସୁଚି ।

ଗେଲିକୁ ଦିଶୁଚି ତା' ଝିଅ ସେମିତି ରାଣୀବେଶରେ ସୀତା ପରି ଝଟକୁଚି । ବାସୁଆଟା ରାବଣାଟା ! ସେ କ'ଣ ଚାହୁଁଚି ତାକୁ ହରିନେବାକୁ । ତାକୁ ସୁଖ ଲାଗିଲା ନାହିଁ ସେ ଢଙ୍ଗ ଦେଖି । ବାସୁଆର ନୁଙ୍ଗୁରା ଗୁଣ ଏଯାଏ ଯାଇନାହିଁ । ଗେଲିକୁ ଯୋଉଠି ପାଇଲେ ଲୋଭ ଜରଜର ଆଖିରେ ଚାହିଁବା କ'ଣ ସେ ଜାଣିନାହିଁ । ଶାଳୀମାନ୍ୟରେ ତା' ଆଚରଣ ସିନା ଘୋଡେଇ ହେଇଯାଏ, କେହି ସମଝି ପାରନ୍ତି ନାହିଁ । କହନ୍ତି, ବାସୁଆ କୁଆଡେ ଶୁଦ୍ଧ ସୁବର୍ଣ୍ଣ । ନ ହେଲେ ଗେଲି, କ'ଣ ସେ ପୋଡାମୁହାଁକୁ ଚିହ୍ନିନାହିଁ । – ସେ ଏବେ ହେମିତି ଜାକିଲା ପରି ସୁନିଆଁକୁ କାହିଁକି ଧରିଚି ? ମୋ ସୁନିଆକୁ ମୁଁ ଆଉ ଏ ବେଶ କରେଇବି ନାହିଁ – ଭାବିଲା ଗେଲି । ଅଳପେଇଷଙ୍କ ଦୃଷ୍ଟି ପଡିଯିବ । ଆଜି ହନୁମାନ୍‌ଙ୍କ ଲାଙ୍ଗୁଡ ଛୁଆଇଁ ନେଇଯିବି; ଆଉ ଛାଡିବି ନାହିଁ ।...

ତା' ଆରଦିନ ସକାଳୁ ହରି ବେହେରାକୁ ଜର । ସେଇଦିନଠୁ ରାମାୟଣରେ ଲଙ୍କାକାଣ୍ଡ; ରାମଲୀଳାର ଘମାଘୋଟ ସମୟ । ସବୁଦିନେ ହନୁମାନ୍ ବାହାରିବା କଥା । ଅସୁର ମାରଣରେ ଇନ୍ଦ୍ରଜିତ୍ ଆଦି ବଧ ହେବା କଥା । ସମସ୍ତିଙ୍କ ମନ ମରିଗଲା । କ'ଣ ହବ ? ହରିଆ ହନୁମାନ୍ ନ ବାହାରିଲେ ରାମଲୀଳା ବୃଥା । ଦେଉଳ ବେଢାକୁ ସମସ୍ତେ ଗୋଛା ଗୋଛା ଯାଇ ଦେଖି ଆସୁଛନ୍ତି । ତାତିରେ ଖଇ ଫୁଟିଯିବ, ହରି ବେହେରାକୁ ଜର । ଗେଲି ଶୁଣି କାନ୍ଦି ପକେଇଲା । ବେଢାପାଚେରି

ଏପାଖେ ପୁଅକୁ ନେଇ ଠିଆହୋଇ ରହିଲା । ଭିତରକୁ ଯାଇ ଦେଖିବାକୁ ବଳ ନାହିଁ । ହରିଆ କାଷ୍ଠା ତପ କରୁଚି । ବିଘ୍ନ ହେଲେ ହନୁମାନ୍ ମୁଣ୍ଡ ପିନ୍ଧି ରକ୍ତବାନ୍ତି କରି ପଡିଯିବ – ଏ ଭୟ, ବିଶ୍ୱାସ ସମସ୍ତଙ୍କର ଅଛି । କଉଣସି ମାଇକିନିଆ ଛାଇ ତା' ଦେହରେ ପଡିବ ନାହିଁ ଏକୋଇଶ ଦିନ ଯାଏ । ତା' ଭିତରେ ହନୁମାନ ବିଜେ ହେଇଚନ୍ତି । ଗାଁର ବଡବଡିଆ ସବୁ କହୁଛନ୍ତି କ'ଣ ଟିକିଏ ଅନାଚାର ହେଇଗଲା ଏ ବର୍ଷ । ନ ହେଲେ ମଝିରେ ଏମିତି କାହିଁକି ବିଘ୍ନ ହେଇଥାନ୍ତା । ହେଲେ, ଚିନ୍ତା ନାହିଁ । ସଂକଟମୋଚନ ହନୁମାନ୍ ଏଥିରୁ ନିଷ୍ଚେ ମୁକୁଳେଇ ଦେବେ । ସଞ୍ଜବେଳକୁ ଜର ଓହ୍ଲେଇ ଯିବ, ନହେଲେ ପ୍ରଭୁଙ୍କ ଲୀଳା କିମିତି ହେବ ? – ସତେ କେମିତି ହେବ ? – ଭାବିଲା ଗେଲି ଏବଂ ସେଇ ବିଶ୍ୱାସରେ ଫେରିଗଲା ପୁଅକୁ ନେଇ ।

ଜର କିନ୍ତୁ ଓହ୍ଲେଇଲା ନାହିଁ । ହରି ବେହେରା ପାଟିରେ ପାଣି ଟୋପାଏ ନ ଦେଇ ସେମିତି ପଡିଥାଏ ପଟି ଉପରେ । ଫାଇଁ ଫାଇଁ ହେଉଥାଏ । ଜର ପ୍ରକୋପରେ ତା' ରଙ୍ଗ ଜରଜର ଆଖିରୁ ପାଣି ନିଗିଡି ଯାଉଥାଏ । ଜଣାଗଲା ଯେ ସେଦିନ ଆଉ ହନୁମାନ୍ ବାହାରିବେ ନାହିଁ । ରାବଣ ବାହାରିବ । ରାମଲକ୍ଷ୍ମଣ ବାହାରିବେ । ସୁଗ୍ରୀବ, ନଳ, ନୀଳ ସୁଷେଣ, ଗୟ ଗବୟମାନଙ୍କୁ ନେଇ ରାମଲୀଳା ହେବ ।

ସଞ୍ଜବେଳେ ଖାଇପିଇ ଆଉ କେହି ଆସିବା ଆଗରୁ ବାସୁ ଦଳବେହେରା ଆସି ମନ୍ଦିରବେଢା ଭିତରେ ପଶିଲା । ହରି ପାଖରେ ବସି ତା' ଦିହମୁଣ୍ଡ ସାଉଳି ଦେଲା । ପଚାରିଲା "କେମିତି ଲାଗୁଛି ?"

ହରି ଡବଡବ ଆଖିରେ ଚାହିଁଲା । "କିଏ ? ବାସୁ ଭାଇନା ? ମୁଁ ଆଉ ପାରିବି ନାଇଁ ! ମୋ ହଂସା ଉଡିଯାଉଚି । ମୋତେ ତୋ ହାତରେ ପାଣିମୁନ୍ଦେ ଦେଲୁ !"

ବାସୁଆ ପାଣି ଦେଇ ପାଖରେ ବସିଲା । ପ୍ରବୋଧ ଦେଇ କହିଲା, "ତୁ ଚିନ୍ତା କରନା ! ଆମେ ସମସ୍ତେ ମିଶି ଆଜି ଚଳେଇ ନେବୁ ! ତୁ କାଲିଆଡିକି ଭଲହୋଇ ଯିବୁ ଯେ ! ଏ ଶଳା ଠେଙ୍ଗାପିଟା ଜର ଯେତିକି ବେଳକୁ ଆସିଚି, ପାହାନ୍ତିଆ ପହରକୁ ଓହ୍ଲେଇ ଯିବ ! କାଲି ତୁ ଠିଆ ନହେଲେ ସବୁ ଭଣ୍ଡୁର ହୋଇଯିବ, ଜାଣିଥା' ! କାଲିକି ଇନ୍ଦ୍ରଜିତ ବଧ, ଲକ୍ଷ୍ମଣ ଶକ୍ତିଭେଦ, ଗନ୍ଧମାର୍ଦନ ପର୍ବତ ଟେକା ! କାଲି ପାଖ ସାତଖଣ୍ଡ ଗାଁ ଲୋକ ଦେଖିବାକୁ ଆସିବେ ।"

"ମୋର ଭଲା କ'ଣ ଆୟତ୍ତ ଅଛି ? ଏ ଜର ଭଲ ହେବ ବୋଲି ମୋର ବିଶ୍ୱାସ ନାହିଁ । ମୁଁ ଦ୍ରୋହ କରିଚି; ପ୍ରଭୁଙ୍କ ଦ୍ରୋହ କରିଚି; ହନୁମାନଙ୍କ ଦ୍ରୋହ କରିଚି । ସେଥିପାଇଁ ଏ ଦଣ୍ଡ ଭୋଗୁଚି । ଦୈବୀ ଦଣ୍ଡରୁ ମୁକୁଳିବା ବାଟ ନାହିଁ ।"

ବାସୁଆର ଭୃରୁ କୁଞ୍ଚେଇଗଲା । "କିରେ, ତୁ ପୁଣି କ'ଣ ଦ୍ରୋହ କଲୁ ? ତୁ ତ' ଏତେ କାଷ୍ଠାରେ ଏଇ ବେଢା ଭିତରେ ରହି ଗୋଟାଏ ଓଳି ହବିଷ୍ୟ କରୁଚୁ, ସେଥିରେ ପୁଣି ଦ୍ରୋହ କ'ଣ କଲୁ ?"

"ତେମେ ସବୁ ମୋତେ ବିଭ୍ରମ କରେଇବାକୁ ସେମିତି କରିଚ । ତମକୁ କିଏ କହିଲା

ସୁନିଆକୁ ନାରୀବେଶ କରି ବସେଇବାକୁ ? ସେ ଟୋକାଟା ତ ଅବିକଳ ତା' ମା' ପରି ଦିଶୁଚି ! ମୁଁ କ'ଣ ନ କଲିଚି ! ହନୁମାନ୍‌ଙ୍କ ପୂଜାବେଶ ପିନ୍ଧି ମା' ସୀତାଙ୍କୁ ନାରୀ ପ୍ରାୟ ମଣିଲି । ମୋର ଚିତ୍ତ ବିଭ୍ରମ ହୋଇଗଲା । ମଥାମଣି ନେଲା ବେଳକୁ ମୁଁ ତାଙ୍କୁ ଗେଲି ବୋଲି ଜ୍ଞାନ କଲି । ଆଉ କ୍ଷଣକେ ମୁଁ ତାଙ୍କୁ ଧରିପକାଇଥାନ୍ତି ! ମୁଁ ପାପୀ, ଦ୍ରୋହୀ । ଏଇ ଅପରାଧରେ ସେଇଠି ରକ୍ତବାନ୍ତି କରି ମରିଯିବା କଥା ! ମୁଁ ଖାଲି ଭାବୁଚି – ରାମଚନ୍ଦ୍ର ଜାଣିଲେ କ'ଣ କହିବେଟି !"

"ଆରେ ଶୁଣ୍ ! ତୁ ଯାହା କହୁଚୁ, ସେଇଟା ମୋର ପ୍ରତେ ହଉଚି । ମୁଁ ତ ସେଇ ଭେଳିକିରେ ପଡି ତାଙ୍କୁ ଗେଲି ବୋଲି ମଣିଚି । ଭାଇ, ତତେ ଆଉ ଲୁଚେଇ ବି କ'ଣ ମୋ ଶାଳୀଖଣ୍ଡକୁ ସମସରି ଏ ପୃଥିବୀରେ ଆଉକିଏ ଅଛି ଭଲା ? କେବେ ସିନା ରାବଣ ତାଙ୍କୁ ନାରୀ ଭାବି ହରିନେଲା । ମୁଁଟା ଗୋଟାଏ କାଠମୁଣ୍ଡ ପିନ୍ଧି ତା' ଯଦି କରେ ମତେ ବଡ ରୋଗ ହୋଇଯିବନି ! ମୁଁ କାଲି ରାତିଠୁଁ ଖାଲି ଚମକୁଚି ଜାଣ୍ । ରାମଚନ୍ଦ୍ର ଜାଣିଲେ ମୁଁ କ'ଣ କରିବିଟି ! ମୋତେ ତ ନିଶ୍ଚେ ଅଗ୍ନିଶର ମାରି ସେ ଜାଳିଦେବେ ! ତୋ ପୁଅ ସୁନିଆଁ ସେ ନାରୀବେଶରେ କ'ଣ ଦିଶିଲା ପରି ଦିଶୁଚି ! ଦେବୀ ପ୍ରତିମାକୁ ଆଡେଇଦେବ ! ମୋର ନିଜ ଉପରେ ଆଉ ଭରସା ଆସୁନାହିଁ ! ଆଉ ଥରେ ସୀତାଙ୍କୁ ମାଆ ରୂପେ ନ ଦେଖିଲାଯାଏ ମୁଁ କ'ଣ ରାମଲୀଳାରେ ଠିଆ ହୋଇପାରିବି ? ମୋତେ ସେ ଦଶମୁଣ୍ଡ ଗ୍ରାସି ଯିବ ନାହିଁ ?"

ହରି ବେହେରା କେତେବେଳୁ ଉଠି ବସି ବାସୁଆର ମୁହଁକୁ ହାଁକରି ଅନେଇଥାଏ । "କ'ଣ କହୁଚୁ ବା' ? ତୋର ମଧ ସେଇ ବିଭ୍ରମ ହେଲା ? ଧିକ୍ ଆମକୁ ! ଧିକ୍ ଆମ ପୋଡ଼ ମରଦପଣିଆକୁ ! – ଏଥିରେ କ'ଣ ନା, ମୁଁ କାଷାରେ ରହି ହନୁମାନ୍‌ଙ୍କ ପୂଜା ବେଶ ପିନ୍ଧି ରାମଲୀଳାରେ ବାହାରିବି ! ଛି, ଛି ! ତୁ ଯା' ବାସୁଭାଇନା ! ମୋ ଦେଇ ଆଉ ହବନି । ମୁଁ ସେଥିକୁ ଯୋଗ୍ୟ ନୁହେଁ ।"

ହରି ବେହେରା ମୁହଁ ଘୋଡେଇ କାନ୍ଦିଲା କି କ'ଣ ! ପଟି ଉପରେ ମେଞ୍ଚାଟିଏ ହେଇ ଶୋଇଗଲା ।

ବାସୁଆ ପୁଣି ତାକୁ ବୁଝେଇଲା "ଶୁଣ୍ ହରିଆଇ ! ତୁ ଆଉ ଏଗୁଡାକୁ ହେମିତି ଦିହକୁ ନେ ନା ! ଆମେ ତ ଜାଣି ମାଙ୍କଡଠୁ ହୀନ ! ଆମର ଆଉ ଧଇର୍ଯ୍ୟ କେତେ ? ରାମଚନ୍ଦ୍ର କ'ଣ ଆଉ ନ ଜାଣି ଅଛନ୍ତି ?"

ହରି ପୁଣି ହାଉଳି ଖାଇ ଉଠି ବସିଲା । "ହେଁ ? ପ୍ରଭୁ ଜାଣିଚନ୍ତି ? ଆମେ ଠାକୁରାଣୀଙ୍କଠି ଦ୍ରୋହ ଆଚରିଚୁ ବୋଲି ଜାଣିଚନ୍ତି ?"

"ତୁ ହେମିତି କାଇଁକି ହେଉଚୁ ? – ଶୁଣ, ମୁଁ କ'ଣ କହୁଚି ! କାଲି ରତନୀ ମାମୁକୁ କହିବା ସେ ସୀତାବେଶ ପିନ୍ଧି ବାହାରିବ ! ବଅସ ସିନା ଗଲାଣି, ହେଲେ ତା'ଠାଣି ଭଲା ଆଉ କାହାର ଅଛି ? ସେ ତ ପୁଣି କୋଉ କାଳୁ ସେଇ ବେଶରେ ରାମଲୀଳା କରିଆସିଚି !"

ହରି ବେହେରା ଦୀର୍ଘ ନିଃଶ୍ୱାସଟାଏ ଛାଡିଲା । ତାକୁ ଉଶ୍ୱାସ ଲାଗିଲା କି କଣ, ସେ ବାସୁଆର ହାତ ଧରିପକେଇ ତା' ଆଖିକୁ ଅନେଇରହିଲା ।

ତା' ଆରଦିନ ସକାଳୁ ସତକୁ ସତ ଜର ଓହ୍ଲେଇଗଲା । ହରି ବେହେରା ଚେଙ୍ଗା ହୋଇଗଲା । ବୁଢା ତିଆଡୀ ଆସି ଉପଦେଶ ଦେଲେ – ବୁଝିଲୁ ପୁଅ, ଶିବ ପଞ୍ଚାକ୍ଷର ଜପ କରୁଥା ! ହନୁମାନ୍ ଯେ ସ୍ୱୟଂ ଶିବ । ସେ ସନ୍ତୁଷ୍ଟ ହେଲେ ତୋର ଆଉ ପ୍ରମାଦ ରହିବ ନାହିଁ । ସେ ଜପିଲା, ପ୍ରତି ନିଶ୍ୱାରେ, "ନମଃ ଶିବାୟ ! ନମଃ ଶିବାୟ !!" ତା' ନିଶ ଦାଢି ତା' ଆଖି ପୁଣି ଜକଜକ ଦିଶିଲା । ତାକୁ ଉଶ୍ୱାସ ଲାଗିଲା ।

ଗାଁବାଲା ଆସି ତାକୁ ସଙ୍ଖୋଳି ଗଲେ । ଗେଲି ପୁଅକୁ ନେଇ ବେଢା ପାଚେରି ଆରପଟୁ ତାକୁ ଚାହିଁ ଦେଇ ଠିଆହେଲା । ସୁନିଆଁକୁ ହରି ଚାହିଁରହିଲା କିଛି ସମୟ । ଅଳ୍ପ ହସି ପାଖକୁ ହାତ ଠାରି ଡାକିଲା । ସୁନିଆଁ ଡରିଲା ଡରିଲା ପରି ପାଖେଇଲା । ତା' ବା'ପରା ହନୁମାନ୍ । ତା' ପାଖକୁ ଏଇନା କିଏ ପଶିବ ? – ହରି ତାକୁ କୋଳରେ ବସାଇଲା । ଦେହରୁ ଧୂଳି ଝାଡି ଦେଲା । ଅନାଇଲା ପାଚେରି ଆରପାଖେ ଏକଲୟରେ ଲୁହ ଜକଜକ ଆଖିରେ ଚାହିଁଥିବା ଗେଲିକୁ । ପୁଅ ଓଠ ଧରି ଟିକିଏ ଗେଲ କରି କ'ଣ ମନକୁ ମନ ଦି'ପଦ କହିଲା, "ମଣିଷକୁ ମଣିଷ କରି ରଖିଥାଅ ପ୍ରଭୁ ! ସେ କି ଦେବତା ହେବାକୁ ଯୋଗ୍ୟ ?" ସୁନିଆଁ କ'ଣ ଭାବିଲା କେଜାଣି; ତା' ବା' ମୁହଁକୁ ଚାହିଁ କହିଲା, "ଆଜି ହନୁମାନ୍ ବାହାରିବେ ନା ?"

ହରିଆ ଉଶ୍ୱାସରେ ହସିଲା । ମୁଣ୍ଡ ଟୁଙ୍ଗାରି କହିଲା, "ବାହାରିବେ !"

ସେ ରାତିରେ ରାମଲୀଳା ଦେଖି ସାତ ଖଣ୍ଡ ଗାଁଲୋକେ ତାଟକା ହୋଇଗଲେ । ଧନ୍ୟ ଧନ୍ୟ କଲେ । ହନୁମାନ୍ ଅସୁରଥାଟ ମନ୍ଥି ପକାଇଲା । ଦୁଲୁଦୁଲୁ ହେଲା ଲଙ୍କା ତା' ପାଦଭାରାରେ । ସେ ଭୁଇଁରେ କ୍ଷେପିଲା । ଆକାଶେ ଉଡିଲା । ପର୍ବତ ଟାଳିଲା । ସ୍ତବ୍ଧ ହୋଇ ରାତି ଅଧସରିକି ଅସୁମାରି ଲୋକ ଚାହିଁରହିଥାନ୍ତି ।

ନୂଆ ଦୂବଘାସ ରଙ୍ଗରେ ସେମାନେ ରାମଚନ୍ଦ୍ରଙ୍କୁ ରଙ୍ଗେଇ ଦେଇଥାନ୍ତି । ତାଙ୍କର ଜଟାମଣ୍ଡଳି, ସେ ବଡ ବଡ ଆଖି, ସେ କୋଦଣ୍ଡ ଧନୁ ଦେଖି ଭାବାଳୁ ବୁଢାବୁଢୀମାନେ ତଳେ ପଡି ସାଷ୍ଟାଙ୍ଗ ପ୍ରଣିପାତ ହେଉଥାନ୍ତି । କସ୍ତୁରୀ ରଙ୍ଗରେ ଶୋଭା ପାଉଥାନ୍ତି ଲକ୍ଷ୍ମଣ । ଓଃ...କି ମଣି କାଞ୍ଚନ ଯୋଡି ! ତାଙ୍କ ଚାଲି, ତାଙ୍କ ପହିଜ, ଧନୁ ଆମଣ୍ଡିବା ଭଙ୍ଗୀ, ସେ ସିଂହଠାଣି ଦେଖି ମୋହିହେଉଥାନ୍ତି ଦେଖଣାହାରି । ଅସୁରବେଶରେ, ମାଙ୍କଡବେଶରେ ମୁଗ୍ଧ ହୋଇ ଚାହିଁ ରହିଥାନ୍ତି ଗାଁଲୋକେ ! ଆଖିରୁ ଲୁହ ଗଡାଉଥାନ୍ତି ରାବଣ, ହନୁମାନ୍, ସୁଲବୋଉ, ଗେଲି ସମସ୍ତେ ।

ଏତିକିବେଳେ ହାବେଳି ଶବ୍ଦ ହେଲା । ଲକ୍ଷ୍ମଣଙ୍କୁ ଶକ୍ତିଭେଦ କଲା ରାବଣ । ହା-ହା-କାର ପଡିଗଲା ଚାରିଆଡେ । ଧନୁ ଥୋଇ ଦେଇ ରାମଚନ୍ଦ୍ର କପାଳରେ ହାତ ମାରି ଭାଇ ପାଖରେ ବସିଲେ । ଚାରିଆଡୁ ସୁକ୍ ସୁକ୍ କାନ୍ଦଣା ଭିତରେ ବିଳାପ ଶୁଣାଗଲା : "ଆହେ ବିଭୀଷଣ । ହୁଳା ଜାଣିଆଣ । ଦେଖିବା ଭାଇ ଅନୁଜ ବଞ୍ଚିବ କି ନାହିଁ । ଭୀଷଣ ଶକତି । ମାରିଗଲା ଲଙ୍କରାଜ, ଯେ । ସେ ଯେ ଭୀଷଣ ଶର । ଏକଘନୀ ଯେ ନାମ ତାହାର ।" ସୁଲବୋଉ ଶୁଣି ସକସକ ହେଲା – "ତୁ କାଇଁକି ଏତେ ସୁକୁମାର ପ୍ରଭୁଙ୍କୁ ଶର ମାରିବୁ । ତୁ କାଇଁକି ସଦାବେଳେ ଦଶମୁଣ୍ଡା ହବୁ ।

ଏ ପାତକ କାହା ମୁଣ୍ଡରେ ପଡିବ ?"

ସୁନିଆଁ ବିକଳରେ ତା' ବୋଉକୁ ଧରି କାନ୍ଦି କାନ୍ଦି କହିଲା, "ଦାମଭାଇ କାଇଁ ଆଉ ଉଠୁ ନାଇଁ ବୋଉ ? ଦାମଭାଇ କ'ଣ ସତରେ ମରିଗଲେ ?" ନାକ ସଡସଡ କରି ଗେଲି କହିଲା, "ଆରେ ନାହିଁ । ରହିଥା, ଏଇଲାଗେ ହନୁମାନ୍ ବାହାରିବ । ସବୁ ଦୁରିତ ଖଣ୍ଡନ ହୋଇଯିବ !"

ଧୂପଧୂଆଁ ଭିତରେ ଆକାଶରୁ ଓହ୍ଲେଇଲେ ହନୁମାନ୍ । ହର୍ଷରୋଳରେ ନିର୍ଜନ ଜହ୍ନରାତି ଦୁଲୁକିଲା ! ଆଉ କାହାର ଚିନ୍ତା ନାହିଁ ସତେବା ! ଏଥର ଆସିଗଲେ ସଙ୍କଟମୋଚନ ।

ହନୁମାନ୍ ଆକାଶରେ କ୍ଷେପିଲେ । ଟେକି ଆଣିଲେ ପର୍ବତ । ବିଶଲ୍ୟକରଣୀ ନାକପୁଡାରେ ଚିପୁଡିଲେ ଜାମ୍ବବାନ । ସମସ୍ତେ ନିଃଶ୍ୱାସ ରୋଧି, ଆଖିରେ ପଲକ ନ ପକାଇ ଚାହିଁରହିଥା'ନ୍ତି । କାଳେ ବିଶଲ୍ୟକରଣୀ ଏ ଥରକ କାମ ନ କରିବ । କିନ୍ତୁ ନିଦରୁ ଉଠିଲା ପରି ଉଠି ବସିଲେ ଲକ୍ଷ୍ମଣ । ତାଙ୍କୁ କୁଣ୍ଢାଇ ଧରିଲେ ରାମଚନ୍ଦ୍ର । ଠିଆ ହୋଇ ନାଚିପକେଇଲା ସୁନିଆଁ – 'ଦାମଭାଇ ପୁଣି ଲକ୍ଷ୍ମଣ ହେଇ ଏଇନା ଧନୁ ଧରିବ । ସେ କାଇଁ ମରନ୍ତା ? ତା' ବା' ପରା ହନୁମାନ୍ । ଆଉ କିଏ ଭଲା ସେମିତି ହନୁମାନ୍ ହେଇ ପାରିବ ?'

ସମସ୍ତଙ୍କ ତୁଣ୍ଡରେ ସେଇ କଥା । ଏ ଗାଁ ହନୁମାନ୍‌ଙ୍କ ମହିମା ସମସ୍ତେ ଜାଣିଚନ୍ତି; ଆଖିରେ ଦେଖୁଚନ୍ତି ବର୍ଷ ବର୍ଷ ।

ଆଉ ଯୋଡିଏ ଦିନପରେ ଯେତେବେଳେ ସୀତା ବାହାରିଲେ ଅଗ୍ନିପରୀକ୍ଷା ପାଇଁ; ହନୁମାନ୍, ସୁଗ୍ରୀବ ବିଭୀଷଣ ସମସ୍ତେ କରପତ୍ର ଯୋଡି ଠିଆ ହୋଇଥାନ୍ତି । ଗୀତ ଶୁଣି ସମସ୍ତେ ମଜ୍ଜି ରହିଥାନ୍ତି ଆଉ ଏକ ଭାବରେ । ହନୁମାନ୍ ଆଣ୍ଠୁମାଡି ନିଉଛାଳି ହେଲେ ସୀତାଙ୍କୁ, ରାମଚନ୍ଦ୍ରଙ୍କୁ !! ଚାରିଆଡେ ଜୟ ଜୟ ଗାନ ହେଲା । ରାମ, ଲକ୍ଷ୍ମଣ, ସୀତା ଏକା ଧାଡିରେ ଠିଆ ହୋଇ ନାଚିଲେ । "ଜୟ ରାମ ହେ, ଜାନକୀବଲ୍ଲଭ, ଜୟ ରାମ ହେ ।" ସେଦିନ ପାଇଁ ରାମଲୀଳା ସାଙ୍ଗହେଲା ।

ପାଇକରାପୁରରେ କେହି ଜଣେ ଟାହୁଲିଆ ପାଟିକରି କହିଲା, "ଆହେ, ଦେଖିଲଣି ବୁଢାଟାକୁ କ'ଣ ସୀତା କରିଚନ୍ତି ମ ଏ ଗାଁବାଲା ? କିଓ, ଏତିକି ସୁନ୍ଦର ରାମଚନ୍ଦ୍ରଙ୍କୁ ପୁଣି ଏମିତି ଗୋଟେ ସୀତା ! ଧେତ୍ !"

ଗାଁବାଲା ମନେ ମନେ ଲାଜେଇଗଲେ । ତାଙ୍କୁ ଲାଗିଲା ସେମାନେ ଦ୍ରୋହ କରିଛନ୍ତି !



# ସବୁଯାକ ସ୍ୱପ୍ନ

ସଂସାରକୁ ଖେଳି ଖେଳି ଚାଲିଯିବ ଏମିତି ଖେଳୁଆଡ କାହିଁ ? ଏ ରଣଧନ୍ଦୋଳ ଭିତରେ ଏତେ ଖେଳ ବା କାହିଁ ? ଫେଲୁ ଓରେଫ ଫାଲ୍‌ଗୁନୀ ଦଣ୍ଡପାଟ କିନ୍ତୁ ଏଯାଏଁ କେବଳ ଖେଳପଡିଆରେ ହିଁ ବଞ୍ଚିଆସିଛି । ସମତୁଲ ଘାସପଡିଆଟିଏ ଦେଖିଲେ ତା' ଭିତରେ ଅସଂଖ୍ୟ ହରିଣଛୁଆ ଗବ୍‌ଗବ୍ ଡିଆଁ ମାରି ବାହାରି ଆସନ୍ତି । ଚୂନଗାର ପଡିଥିବା ସୋରା ସୋରା ଧାଇଁବାଗୁଳା ଦେଖିଦେଲେ ସେ ଖୁରେଇ ହୁଏ । ଲପଲପ ହୁଏ ତା' ଭିତରେ ଅଗ୍ନି । ସେ ଚହଟିଯିବ ଖୁରୁଙ୍ଗ ପରି, ଉଭାନ ହୋଇଯିବ ଆଖି ପିଛୁଳାକେ; ତା' ଆଗରେ ଈଷତ୍ ନୁଆଣିଆଁ ଧଳା ଧଳା ଗୁଚ୍ଛ ପରି ବିଚରଜମାନେ; ପଛରେ ପୃଥିବୀର ସବୁଯାକ ପ୍ରତିସ୍ପର୍ଦ୍ଧୀ ବୀରପୁରୁଷ; ଆକାଶସାରା ଚରିଆଡେ କରତାଳି; ସମୁଦ୍ରଗର୍ଜନ ପରି ତୁମୁଳ ହର୍ଷଧ୍ୱନି ! – ଫେଲୁ ଦଣ୍ଡପାଟ ବାବନ ବର୍ଷ ବୟସରେ ବଜାର ରାସ୍ତାରେ ଝୋଲାଧରି ହଠାତ୍ ଠିଆ ହୋଇଯାଏ । ତା' ଶିରା-ପ୍ରଶିରା, ମାଂସପେଶୀ ଟାଣି ହୋଇଯାନ୍ତି । ଲୁମ ଠିଆ ଠିଆ ହୋଇଯାଏ ଦେହସାରା । ବୁକୁ ଦାଉଦାଉ ହୁଏ । ବାବନ ହଜାର ଥର ପାଇଁ ଏ ସପ୍ନ ଟାକୁ ଆବିଷ୍ଟ କରି ରଖେ କିଛି ସମୟ । ଚିରା ଜାମା ସାଙ୍ଗକୁ ହାଫ୍‌ପେଣ୍ଟ ପିନ୍ଧା କନ୍ଧମାଳ ହାଇସ୍କୁଲର ଏ ଓଲା ମାଷ୍ଟ୍ରଟିକୁ ସମସ୍ତେ ଜାଣିଛନ୍ତି । ତା'ର ନିଶଫୁଲା ଢଙ୍ଗ, ତା' ଢମକୁହା, ତା' ଛଟପଟ କାନ୍ଦ କାନ୍ଦ କଥା ସମସ୍ତେ ଜାଣିଛନ୍ତି ।

ବେଳ ପାଇଲେ ଫେଲୁ ସମସ୍ତଙ୍କ ଆଗରେ ବଖାଣିଯାଏ କେମିତି ସବୁ ମିଶି ଟାକୁ ଭଣ୍ଡିଦେଲେ । ସ୍କୁଲରେ ସେ ଥିଲା ପକ୍ଷିରାଜ । ଏମିତି କେହି ପୁଅ ନଥିଲା ଟାକୁ ଟପି ଧାଇଁଯିବ । କିନ୍ତୁ କ'ଣ ହେଲା ଶେଷକୁ ? ସେ ବୁଢା କାଇଁତ ଫିସାଦିଆ ଖେଳମାଷ୍ଟ୍ର ପେଞ୍ଚ କରି ଫେଲୁ ନାଁଟିକୁ କାଟିଦେଲା ତାଲିକାରୁ । ସେ ହିଁ ସେ ଗୟାଁ ବଳଦଟାକୁ ପଠେଇଲା ଦିଲ୍ଲୀ । ଗୋଛାଏ ଛେଳି ଭଳି ମିଁ-ମିଆଁ ଓଡିଆ ଯେମିତି ଗଣ୍ଠିଲି ଧରି ଯାଇଥିଲେ, ସେମିତି ଫେରିଆସିଲେ । କୁହାହେଲା କ'ଣ ନା – ଫେଲୁ ଭଲ ପାଠ ପଢେନାହିଁ, ତା' ବାପ ବଡ ଅଫିସର ନୁହେଁ, ତା'

ପାଇଁ ସରକାରୀ ପଇସା ନାହିଁ । ନିଆଁରେ ଲଛା ଦାଗ ଭଳି ଫେଲୁ ଦଣ୍ଡପାଟ ମନରୁ କାହିଁ କେଉଁଦିନର ଏ ଘଟଣାଟାକୁ ଏଯାଏଁ ପୋଛିପାରିନାହିଁ । କଥା ପଡିଗଲେ ସେ ଖେଳ ମାଷ୍ଟ୍ରଟାକୁ ଅଭାଷିଆ ଯାହା ପାରେ ତାହା ଗାଳିଦିଏ । ସେ କାଠବେଙ୍ଗା ପାଇଁ ତା' ଜୀବନ ମାଟି ହୋଇଗଲା ବୋଲି କହିଲାବେଳେ ତା' ଆଖିକୁଣରୁ ଧୂଆଁ ବାହାରିଯାଏ । କିନ୍ତୁ ଉପାୟ କ'ଣ ? – ସେ କାହିଁ କୋଉ କାଳ କଥା । ବୁଢା ଜମ୍ବୁମିଶ୍ର କେବେଠୁ ମରିଗଲାଣି । ଫେଲୁ ନିଜେ ଆସି ବୁଢା ହେଲାଣି । ସେ ଯେଉଁ ରାମ ବେହେରା ପୁଅ ନିକୁଞ୍ଜ ବେହେରା ଯାଇଥିଲା ଦିଲ୍ଲୀ – ସେ ଏବେ ହାକିମ ହେଇ ବସିଛି । ଯୋଉ ବଳଦକୁ ସେଇ ବଳଦ । ହେଲେ ସବୁ ତା' କଲମ ଉପରେ ଝୁଲି ରହିଛି । ଫେଲୁ ତା'ର ମୁକାବିଲା କରିପାରିବ ନାହିଁ ହୁଏତ । ଫେଲୁ କନ୍ଧମାଳ ହାଇସ୍କୁଲର ଡ୍ରିଲ ମାଷ୍ଟ୍ରଟିଏ । ବୟସ ବାବନ... କିନ୍ତୁ...

ଫେଲୁ ମନରେ ସେଇ ଗୋଟାଏ ପୁରୁଣା ରୋଷ ଏବେ ବି ବାଘଆଖି ପରି ଡହକୁଛି । ବର୍ଷ ପରେ ବର୍ଷ ଗୁଡିଏ ଶୁକୁଟା ରୋଗଣା ସଉକିନିଆ ବଙ୍କା ଯାଇ ଦିଲ୍ଲୀ ଘେରାଏ ବୁଲି ଆସୁଛନ୍ତି । ବର୍ଷ ପରେ ବର୍ଷ ହରିଆନା ପଞ୍ଜାବର ସେ ଷଣ୍ଡମାର୍କା ଟୋକାମାନେ ପଡିଆଟାକୁ ଦୁଇଦିନ କାଳ ମର୍ଦ୍ଦି ପକଉଛନ୍ତି; ଟେକି ନେଇ ଚାଲିଯାଉଛନ୍ତି ସବୁ ସୁନାରୂପାର ପାହାଡ । ଫାଲ୍‌ଗୁନୀ ଦଣ୍ଡପାଟ ପତ୍ରିକାଟି ଫିଙ୍ଗିଦେଇ ଦାନ୍ତ କାମୁଡି ଶୂନ୍ୟକୁ କୁଦାମାରି ଯାଉଛି । ରାଗରେ ବାହା କାମୁଡିପକଉଛି । କିନ୍ତୁ ଉପାୟ କ'ଣ ? ଅସଂଖ୍ୟ ଜମ୍ବୁ ମିଶ୍ର ଫାଶ କଟୁରି ଧରି ବସିଛନ୍ତି ପକ୍ଷିରାଜମାନଙ୍କର ମୁଣ୍ଡ କାଟିବେ; ପଘାରେ ଘୋଷାରିବେ ଗଧଙ୍କୁ । କିଏ ପଚାରେ ଯଦି ଚିରକାଳ ହାରି ରହିଥିବା, ଲାଞ୍ଜ ଲୁଚେଇ କୁଁ କୁଁ ହଉଥିବା ଅଣପୁରୁଷା ଜାତିଟା ପୁନଶ୍ଚ କେଉଁଠୁ ହାରି ଚାଲିଆସିଲା ? ଆମେ ପିଲାଟି ଟିକିଏ କେମିତି ଧରାଧରି କରି ସରକାରୀ ପଇସାରେ ଦିଲ୍ଲୀ ବୁଲି ବୁଲି ଚାଲି ଆସିଲେ ହେଲା । ସେ ତ ଅତି ସୁକୁମାରିଆ, ସେ କ'ଣ ଧାଁ ଦଉଡକୁ ସକ୍ଷମ ? ହେଲେ ଖେଳ-ପିଲାଙ୍କ ସାଙ୍ଗରେ ଦିଲ୍ଲୀ ବୁଲିଆସିବାକୁ ତା'ର ବଡ ଶରଧା । ...ଫାଲ୍‌ଗୁନୀ ଦଣ୍ଡପାଟ ନିଆଁବାଣ ହୋଇଯାଏ । ଏମିତି ଦିନେ ଦାନ୍ତ କାମୁଡି ରାଗରେ ହୁଏତ ସେ ଫାଟିପଡିବ । ସେମିତି ଆଖି ତରାଟି ମରିଯିବ । ଆଉ ଭଲା ତା' ହାତରେ କ'ଣ ହୋଇପାରେ ?

ଫେଲୁ ଅନେକ ଆଶା ନେଇ ସ୍କୁଲର ଧୋକଡା, ଅଧାନଙ୍ଗଳା ଟିମିରିପେଟିଆ ପିଲାଙ୍କ ମେଳରୁ ଗୋଟାଏ ଦୁଇଟାକୁ ବାଛିନିଏ । ପ୍ରତିବାଦ ଶୁଭେ ଚାରିଆଡୁ: "ଫେଲୁ ସେ ଭୋକିଲା ପିଲାଙ୍କଅଙ୍କୁ ଦୌଡେଇ ଦୌଡେଇ ମାରିଦେବ । ସେମାନେ ଆଉ ପାଠ କ'ଣ ପଢିବେ; ସେମାନେ ମଣିଷ କ'ଣ ହେବେ ? ଧାଇଁ ଧାଇଁ ତ ଫେଲୁ ନିଜେ ଡ୍ରିଲ୍ ମାଷ୍ଟ୍ରଟିଏ ।" ସେ ସେମାନଙ୍କୁ ଛାଡିଦିଏ । ଖରାବେଳେ ଧୂ'-ଧୂ' ପଡିଆ, ତା' ଆରପାଖେ ପାହାଡ, ଆକାଶରେ ଭସାମେଘକୁ ଚାହିଁ ଠିଆ ରହେ । ପୁଣି ତାକୁ ସେଇ ପୁରୁଣା କଥା ଦିଶିଯାଏ – ଆଗରେ ଈଷତ୍ ନୂଆଣିଆ ଧଳା ଧଳା ଗୁଳ୍ମ ! ଆକାଶ ସାରା କରତାଳି !!

ଦୟାସାଗର ବାବୁ ଡ୍ରଇଂ ମାଷ୍ଟ୍ର – ଫେଲୁର ଏକମାତ୍ର ଘନିଷ୍ଠ ସାଙ୍ଗ । ସେ ବେଳେବେଳେ

ତାକୁ ପାଖରେ ବସାଇ ଚିତ୍ର ଆଙ୍କନ୍ତି; ମୂର୍ତ୍ତି ଗଢନ୍ତି । ଫେଲୁ କେବଳ ଅନେଇଥାଏ । କେମିତି ମଣିଷରୂପଟା ରେଖାଏ ପକ୍ଷୀପରି ଟାଣିହୋଇଯାଉଛି । କେମିତି କାଗଜ ଉପରୁ କୌଣସି ମୁହୂର୍ତ୍ତରେ ଉଡିଗଲା ଭଳି ଦେଖାଯାଉଛି ଚିତ୍ରଟି । ଥରେ ଗୋଟିଏ ମାଟିମୂର୍ତ୍ତିରେ ବର୍ଚ୍ଛା ଫିଙ୍ଗିବା ଠାଣି ଫୁଟାଉଥିଲେ ଦୟାସାଗରବାବୁ । ଫେଲୁ ଖାଲି ଛଟପଟ ହୋଇ ଖୁରେଇହେଲା । କହିଲା, "ଆହେ ବାବୁ ସେମିତି ନୁହେଁ, ସେମିତି ଜମା ନୁହେଁ । ଯା ଦେହସାରା ଖାଲି ମୁଦା ମୁଦା ମାଟି । କାଠୁଆ ନିର୍ଜୀବ ଦିଶୁଚି ମଣିଷଟା । ଯା ଭିତରେ ବିଜୁଳି କାହିଁ? ତାକୁ ଲପଲପ ବିଜୁଳି ଭଳି କରିଦିଅ! ତା' ଟଳିପା'ଠାରୁ ତାଳୁଯାଏଁ ତୀରପରି ମାଜିଦିଅ! ତାକୁ ଟେକିଦିଅ; ଉଡେଇଦିଅ! ଆହୁରି, ଆହୁରି ଲମ୍ବା ପାତଳା ଲପଲପ କରିଦିଅ!!"

ଦୟାସାଗରବାବୁ ଫେଲୁର ଆଖି ଆଉ ମୁହଁକୁ ଚାହିଁରହନ୍ତି । ଅଳ୍ପ ହସି କହନ୍ତି, "ଏ ପରା ମାଟି! ଯାକୁ ନେଇ କ'ଣ ସେମିତି କରିହେବ ?..." ଲେଦାଏ ମାଟିକୁ ଥପ୍‌କିନା ପିଢା ଉପରେ ଛାଟିଦିଅନ୍ତି । ସେ ଲେସେଡିଯାଏ, ଲାଖିଯାଏ, ସେତିକିରେ ସନ୍ତୁଷ୍ଟ ଏବଂ ସ୍ଥିର ହୋଇଯାଏ! ଫେଲୁ ସେଇ ଆବେଗରେ ପୁଣି ବଖାଣିଯାଏ ଅମିତ ପରାକ୍ରମର କଥା ।

"ମୁଁ ଚିତାବାଘ ପରି ଧାଇଁ ପାରୁଥିଲି । ଶହେ ମିଟର, ଦୁଇଶହ ମିଟର ଗୋଟାଏ ନିଃଶ୍ୱାସରେ ଉଡିଯାଉଥିଲି । ମୋର ଇଚ୍ଛା ଥିଲା ଭାରତ ପକ୍ଷରୁ ଯାଇଥାନ୍ତି ରୋମ୍ । ସେଇଠି ସାତ ସେକେଣ୍ଡରେ ଚମକି ଯାଇଥାନ୍ତି ଶହେ ମିଟର । ହୁଲସ୍ଥୁଲ ପଡିଯାଇଥାନ୍ତା ପୃଥିବୀରେ । ତ୍ରିରଙ୍ଗ ପତାକା ଉଡି ରହିଥାନ୍ତା ସେ ଦିନସାରା । ମୁଁ କାହାକୁ ବାଟ ଛାଡି ନଥାନ୍ତି । ପକ୍ଷୀପରି ଡେଇଁଯାଇଥାନ୍ତି ଚାଳିସ ଫୁଟ ଲଙ୍ଗ୍ ଜମ୍ପ୍ । ହାଇଜମ୍ପ୍ ମାରିଥାନ୍ତି ଦଶଫୁଟ । ସଟ୍‌ପୁଟ୍ ତିରିଶ ମିଟର! – ଡିସ୍କସ୍ ଶହେ ମିଟର!! ଆଉ ଏ ଏ ଜାଭେଲିନ୍!! – ଉଡିଯାଇଥାନ୍ତା ଦେଖଣାହାରିଙ୍କୁ ପାରି ହୋଇ! – ମାପୁଥ'ବେ ଶାଲା, ତିନି-ଶହ-ମିଟର! – ସାରାଦିନ ମୋ ତ୍ରିରଙ୍ଗା ଉଡିଥାନ୍ତା ସବାଉପରେ । ମୋତେ ସମସ୍ତେ ଘେରିଯାଇଥାନ୍ତେ! କେତେ କ'ଣ ଯାଚିଥାନ୍ତେ! ମୁଁ ସବୁ ମନାକରି ଦେଇଥାନ୍ତି । କହିଥାନ୍ତି, "ଶହେବର୍ଷ ପାଇଁ ଏ ରେକର୍ଡ ରହିଲା । ତୁମ ଅଲିମ୍ପିକ ପତାକାର ପାଞ୍ଚଟା ଚକି ଉପରେ ମୋ ଦେଶର ମାନଚିତ୍ର ଆଙ୍କିଦିଅ । ଭାରତର ମାନଚିତ୍ର ଆଙ୍କି ଦେଲେ ମୁଁ ପୁରସ୍କାର ପାଇଗଲି; ମୋର ଆଉ କିଛି ଦରକାର ନାହିଁ! ମୁଁ ତୁମ ଦେଶରେ ବି ।ଉ ଦଣ୍ଡେ ରହିବି ନାହିଁ । ମୁଁ ଏଇ ଚାଲିଲି ମୋ ଦେଶକୁ । ତମେ କ'ଣ ଭାବିଥିଲ ଆମକୁ ସବୁବେଳେ ଏମିତି ଲାଞ୍ଜ ଲୁଚେଇ ସମସ୍ତଙ୍କ ପଛରେ ଲୁଙ୍ଗୁରୁ-ପୁଙ୍ଗୁରୁ ହେବାକୁ? – ମୁଁ ହେଉଛି ମୋ ଦେଶ । ମୁଁ ତା'ର ପାହାଡ, ନଦୀ, କନ୍ଦରା ଭିତରେ ଲୁଚି ରହିଥିଲି । ମୁଁ ବାହାରିଆସିଛି । ଏ ଯେଉଁ ସବୁ ମୋର ଦୁର୍ବଳିଆ ଭାଇମାନେ ଆସିଥିଲେ ସେମାନେ ଯାତ୍ରାଦେଖାଳି! – ସରକାରୀ ଟଙ୍କାରେ ଟିକିଏ ବୁଲିଚାଲି ଯିବାକୁ ଆସିଥିଲେ । ସାବଧାନ! ଆଉ ଦିନେ ତଳେଇ ଚାହିଁବ ନାହିଁ ମୋ ଦେଶକୁ । ମୋତେ ଉପେଇବ ନାହିଁ । ମୁଁ ଯେକୌଣସି ସମୟରେ, ଯେକୌଣସି ମୁକାବିଲାରେ ତୁମ ସମସ୍ତଙ୍କୁ ଏକାଠି ମିଶେଇ ପରାସ୍ତ କରି ଦେଇପାରେ!"

ଫେଲୁ ଦଣ୍ଡପାଟଙ୍କୁ କାଳିଶି ଲାଗିଥାଏ । ତା' ଦେହସାରା ଝାଳ । ସେ ଖପର ଖପର ଡେଉଁଥାଏ । ଶୂନ୍ୟକୁ ଉହୁଙ୍କି ହେଉଥାଏ । ତା' ଶିରା-ପ୍ରଶିରାରେ ଲପଲପ ହେଉଥାଏ ଗୋଛାଏ ବିଜୁଳି । ହାଫ୍‌ପେଣ୍ଟ ଆଉ ମଇଳା କମିଜଟା ହୁଏତ ହୁତ୍‌ହୁତ୍ ହୋଇ ଜଳିଯିବ । ଦୟାସାଗରବାବୁ ଏ ଦୃଶ୍ୟ ବହୁବାର ଦେଖିଛନ୍ତି । ତାଙ୍କ ଆଖିକୁ ବି ସ୍ୱପ୍ନ ଜରିଯାଏ । ବେଳେବେଳେ ସେ ଶୁଣିପାରନ୍ତି ଆକାଶସାରା କରତାଳି ଗର୍ଜୁଛି; ଦେଖିପାରନ୍ତି ତିନି ତାଳ ଉଚ୍ଚରେ ତ୍ରିରଙ୍ଗା ପତାକା ଫରଫର ଉଡୁଛି । ...ୟା'ପରେ ହେଡମାଷ୍ଟ୍ରେ ଖବର ପଠାନ୍ତି ଯେ ଅଙ୍କ-ମାଷ୍ଟ୍ରଙ୍କ ଜାଗାରେ ଦୟାସାଗରବାବୁ ଘଣ୍ଟାଏ ଗୋରୁ ଜଗିବେ । – ଇନ୍‌ସପେକ୍ଟର ଆସିବା କଥା ଅଛି । ହତା ଭିତରୁ ଗୋଡି ଖପରା ଗୋଟେଇ ସଫା କରେଇବେ । ଫାଲ୍‌ଗୁନୀ ଦଣ୍ଡପାଟ! ...ଭୁସ୍‌କିନା ସ୍ୱପ୍ନ ଜଳିଯାଏ । ତେଣିକି ନା ପାଉଁଶ, ନା ଧୂଆଁ!!

X X X ଏମିତି ସେଥର ନୂଆ ବର୍ଷା ସାଙ୍ଗକୁ ନୂଆ ପିଲା ଆସି ପହଞ୍ଚିଥାନ୍ତି ସ୍କୁଲରେ । ସମସ୍ତଙ୍କୁ ଫେଲୁ ଦଣ୍ଡପାଟ ଡାହାଣିଆ ଆଖିରେ ଗୋଡଠଉଁ ମୁଣ୍ଡଯାଏଁ ଚାହିଁଯାଏ । ସେ ଯେଉଁ ଟୋକାଟା – ତା' ଗୋଡପେଣ୍ଡାଗୁଡାକ ଭାରି ମଜବୁତ୍ । ହେଲେ ଦେହର ଗଢଣ ନାହିଁ । ନିହାତି ବାଙ୍ଗରାଟାଏ । ପାରିଲେ କିଛି ଭାର ଉଠେଇବ । ତା' ବାପ ହୁଏତ ପାହାଡ ଉପରୁ କାଠଭାର, ଅଙ୍ଗାରଭାର ଧରି ଓହ୍ଲାଏ । ସେ ଆସିଛି କିଛିଦିନ ସରକାରୀ ପଇସାରେ ଖାଇପିଇ ଉଧେଇଯିବ । ତା' ଉତାରୁ ସେଇ ପାହାଡକୁ ଫେରିଯିବ । – ସେ ଆଉ ଟୋକାଟା ଖୁବ୍ ଲମ୍ବା ଦିଶୁଚି । କିନ୍ତୁ ସେ ଡେଙ୍ଗା ଧୋକଡାଟାଏ; ଦୁହିଁହେଇଯାଇଚି । ଅଣ୍ଟାଠଉଁ ଉପରକୁ କିଛି ଭାଗ ମାପ ନାହିଁ, ଭାଙ୍ଗ, ମୋଡ ନାହିଁ । ତା' ଦୁକୁଦୁକି ଦୁର୍ବଳ । ତା' ଛାତିରେ ପବନ ଧରିବ ନାହିଁ । – ଆଉ ସେଇଟା ତ ଗଲା ମହାଜନର ଗେହ୍ଲାପୁଅ । ଭୋଟା, ଥାକୁଲା, କାଦୁଅ ମେଞ୍ଚାଟାଏ । – ଛାଡ, ଫେଲୁ ପ୍ରାୟ ହତାଶ ହୋଇ ଅନ୍ୟ ଆଡେ ମୁହଁ ଫେରେଇଲା ବେଳକୁ ଥମ୍ ହୋଇ ଠିଆ ରହିଗଲା – ଛୋଟ ଖାକି ହାଫ୍‌ପେଣ୍ଟ ତଳକୁ କଳାମୁଗୁନିରେ ତିଆରି ଲମ୍ବା ଗୋଟାଳ ନିଦା ନିଦା ଗୋଡ ଯୋଡିକୁ ଦେଖି ସେ ବିହ୍ୱଳ ହୋଇଗଲା । ଉପରକୁ ଓସାର ବୁକୁ । ଲମ୍ବା ଲମ୍ବା ହାତ । ବଡ ବଡ ଆଖି । ଅତି ଛୋଟ ଘଞ୍ଚ କୁଞ୍ଚକୁଞ୍ଚିଆ ବାଳ । ମୋଟା ଓଠ, ଓସାର ନାକରେ ଗୋଟାଏ ଅଦ୍ଭୁତ ବ୍ୟକ୍ତିତ୍ୱ । କନ୍ଧ ପିଲାଟିଏ । ବୟସ ବୋଧେ ଦଶବର୍ଷ । ଆସିଛି ପଢିବାକୁ ବୋଧହୁଏ ଖ୍ରୀଷ୍ଟାନ୍!

ଫେଲୁ ଦେଖିବାମାତ୍ରେ ବୁଝିଗଲା ସେ କିଏ । ସେଇ ତା' ଆତ୍ମାପୁରୁଷ । ତାକୁ ସେ ଅପେକ୍ଷା କରିଆସିଛି ଜୀବନ ସାରା । ତାକୁ ଏ ଦେଶ ଅପେକ୍ଷା କରିଆସିଛି କେଉଁ କାଳୁ । ଗୋଛାଏ ବିଜୁଳିକୁ ନେଇ ବିଧାତା ତାକୁ ଗଢିଛି । ଶାଳଗଜା ପରି ସଳଖ, ତୀର ପରି ତେଜୀୟାନ୍, ଚିତାବାଘ ପରି ବଳୁଆ ଏ ଟୋକା ତା' ବୟସକୁ ଚମକେଇ ଦେବ ଏ ପୃଥିବୀକୁ । ଆଉ ସାତଟା ବର୍ଷ ସତାରିଯାଅ ସମସ୍ତେ । କୋଉଠି ଅଛ ହତଭାଗା, ନାଲାଏକ ଜମ୍ବୁ ମିଶ୍ର ଦଳ ଆଡହୋଇଯାଅ, ନହେଲେ ତୁମକୁ ଶିମୁଳିତୂଳା ପରି ବିଞ୍ଚା ବିଞ୍ଚା କରି ଏ ଟୋକା ଫୁଙ୍କି ଉଡେଇଦେବ । ଫେଲୁକୁ ଗୋଟାଏ ଥର ଠକିଦେଲ ବୋଲି କ'ଣ ସବୁବେଳେ ତାହା ହେଉଥିବ ? ଆଉ ତୁମେ ପାରିବ ନାହିଁ ।

ଫେଲୁ ଦଣ୍ଡପାଟ ନିଜକୁ ସମ୍ଭାଳି ନପାରି ସେ ପିଲାଟିକୁ ଧାଇଁଯାଇ କୁଣ୍ଢେଇପକାଇଲା । ସେ ତା' ବଡ ବଡ ଆଖିରେ ଆବାକାବା ହୋଇ ଚାହିଁ ରହିଲା ଏ ଅଧାଡିଆ ବୟସର ଠକ୍ ଠକ୍ ଥରୁଥିବା ମଣିଷଟିକୁ । ବୁଝିପାରିଲାନାହିଁ କାହିଁକି ସେ ସେମିତି ଉଲୁସି ଉଠୁଥିଲା ! ସେ କିଏ ? ସେ କ'ଣ କୌଣସି ଗିର୍ଜାର ଧର୍ମଯାଜକ ? ବହୁକାଳୁ ନିଖୋଜ ହୋଇଯାଇଥିବା ତା' ବାପ ? – ସେ କ'ଣ କୌଣସି ଗିର୍ଜାର ଧର୍ମଯାଜକ ? ବହୁକାଳୁ ନିଖୋଜ ହୋଇଯାଇଥିବା ତା' ବାପ ? – ସେ କ'ଣ କୌଣସି ଦୁଷ୍ଟ ଲୋକ ? – ସେ କ'ଣ ଈଶ୍ୱର ?...ଫେଲୁର ଇଚ୍ଛା ସେ କିଶୋର କୃଷ୍ଣଟିକୁ କାଖ କରି ନାଚିବାକୁ, ତା'ର ପାଦଠଉଁ ମୁଣ୍ଡଯାଏଁ ବୋକ ଖାଇବାକୁ । କିଏ ସେ ଟୋକା ? କି ଅଦ୍ଭୁତ ଟୋକା ସିଏ ? କୋଉଠି ଲୁଚିଥିଲା କେଉଁ ପାହାଡଖୋଲରେ ଏ ଦେବଶିଶୁ ? କିଏ ତା'ର ବାପ ? – ସେ କ'ଣ ସତେ କା'ର ପୁଅ ନା ଏମିତି ଆକାଶରୁ ଖସି ଆସିଛି ? –

ଫେଲୁ ଠକ୍‌କିନା ସେ ପିଲାଟିକୁ ଛାଡିଦେଇ ଠିଆହେଲା । ଚକିତ ହେଲାପରି ଚାହିଁଲା ତା'ର ସେ ମୁହଁଟିକୁ । ଅଳ୍ପ ହସିଲା । ପିଲାଟି ବି ତାକୁ ଚାହିଁ ହସିଦେଲା । ବୋଧହୁଏ ଦୁହେଁ ଦୁହିଁଙ୍କୁ ଚିହ୍ନିଗଲେ । କାହିଁ କେଉଁ କାଳର ପିରଚୟ ଉପରୁ ଆବରଣର ପାତଳ ପର୍ଦାଟି ଅପସରିଗଲା ।

"ତୋ ନାଁ କ'ଣ ?"

"ଜନାଥନ୍ ଜାନି ?"

"ବାଃ, ବଢ଼ିଆ ନାଁ ହେଇଚି । ଜାନି ନୁହେଁ, ତତେ ମୁଁ 'ଜନି' ବୋଲି ଡାକିବି । ଖୁବ୍ ସାଇବି ସାଇବି ନାଁ ! – ରାଜି ତ ?"

"ଆମ୍ଭ ଦୟାଳୁ ଫାଦର୍ ଡାକନ୍ତି ମୋତେ ସେହିପରି !"

ଇଟା ଛାଞ୍ଚରେ ପଡିଥିବା ତା'ର ନିର୍ମଳ ଚାରିକୋଣିଆ ପାଦ୍ରି ଓଡିଆ ଶୁଣି ଫେଲୁ ଦଣ୍ଡପାଟକୁ କଉତୁକ ଲାଗିଲା । ସେ ବୁଝିଗଲା ଘଟଣା । – ହଉ, କିଛି ଚିନ୍ତା ନାହିଁ । ସେ ଘଷି ମାଜି ହୋଇ ବଳେ ଶୁଧୁଯିବରି ତା' ବେଳାରେ । – ଜନି ପିଠିରେ ହାତ ମାରି ଫେଲୁ କହିଲା –

"ସ୍କୁଲରେ ନାଁ ଲେଖେଇ ପାଠ ପଢ଼ିବାକୁ ଆସିଚୁ ? – ସେ ସବୁ ହୋଇଯିବ । ମୁଁ ସେ ଦାୟିତ୍ୱ ନେଲି । ତୁ ବାପା ଟିକିଏ ଶିରିଷ ଗଛ ଯାଏଁ ଯେତେ ଜୋର୍‌ରେ ପାରୁଚୁ ଧାଇଁଗଲୁ । ସେ ଗଛକୁ ଛୁଇଁଦେଇ ପୁଣି ଧାଇଁ ଫେରିଆସିବୁ । ମୁଁ ଟିକିଏ ଦେଖେ ।"

ଟଗରାଟ ଫୁଲ ପରି ସେ ଆଖି ଯୋଡିକର ନ ବୁଝିଲା ନ ବୁଝିଲା ଭାବ ! ତା'ପରେ ଟିକ୍ ଟିକ୍ ହସ । – ଇସ୍, କି ବଢ଼ିଆ ସ୍କୁଲ ! ଏଠି ପାଠ ନ ପଚାରି ଧାଇବାକୁ କହୁଛନ୍ତି । – ବାଃ ! ଶାଳବନ୍ଧା ଘୋଡା ପରି ଫିଟିଗଲା ଜନି । ଉନ୍ନତ ଖେଳୁଆଡ ଶିଶୁଝଡଟିଏ ! ଭୂଇଁକୁ ଟିପରେ ଛୁଇଁ ନଛୁଇଁ ସେ ଉଡିଗଲା । ଉଡନ୍ତା ପକ୍ଷୀର ଡେଣାପରି ବିସ୍ତାରି ହୋଇଗଲା ତା'ର ଲମ୍ବା ଲମ୍ବା ଗୋଡଯୋଡିକ । ବୁକୁ ଉଭାରି ରହିଲା ସିଂହ ବୁକୁ ପରି । ସେ ପହଁଚିଗଲା ଶିରିଷ ଗଛଯାଏଁ ଏବଂ ସେମିତି ଫେରିଆସିଲା । ଗୁଡିଏ ପିଲା କାବା ହେଲାପରି ଚାହିଁ ରହିଥାନ୍ତି । ଦୟାସାଗରବାବୁ ମୁଗ୍ଧ । ଫେଲୁ ଦଣ୍ଡପାଟ ବିହ୍ୱଳ, ଉଦ୍‌ବିଗ୍ନ, ଛନଛନ । – ତାକୁ ହଠାତ୍ ହୀରାଟାଏ ମିଳିଯାଇଛି । ସେ

ଜାଣିପାରୁନାହିଁ କ'ଣ କରିବ ତାକୁ ନେଇ !...

"ସାର୍, ସେ ମୋ ଘରେ ରହିବ; ମୋ ପୁଅ ପରି ରହିବ! ମୁଁ ତା'ର ଯାବତୀୟ ଖର୍ଚ୍ଚ ଚଳେଇବି । ମୋତେ ଅନୁମତି ଦିଅନ୍ତୁ । ତାକୁ ଅନୁମତି ଦିଅନ୍ତୁ ମୋ ପାଖରେ ରହିବା ପାଇଁ ।"

"ହେଉ" – ମାଷ୍ଟ୍ରେ ରାଜି ହୋଇଗଲେ ।

ଜନାଥନ୍ ଜାନି ଫାଲ୍‌ଗୁନୀ ଦଣ୍ଡପାଟ ଘରେ ରହିଲା । ତା' ପାଇଁ ସେ କୁକୁଡା ପାଳିଲା; ଗାଈ ରଖିଲା । ପ୍ରତିଦିନ ପାହାନ୍ତିଆରୁ ଘଡିଏ ବେଳଯାଏଁ ଉଭୟେ ସ୍କୁଲ ପଡିଆରେ ଅସାଧ ସାଧିଲା ପରି ମାତି ରହିଲେ । ଜନି ଯେତେ ଧାଇଁଲେ ସୁଦ୍ଧା ଫେଲୁ ଦଣ୍ଡପାଟର ମନ ମାନେନାହିଁ । ଜନି ଅନୁନୟ କରି ଆଉ ପାରିବି ନାହିଁ ବୋଲି ବସିପଡେ । ଫେଲୁ ଗର୍ଜି ଉଠେ: "ଉଠ, ବେଳଙ୍କ କାହାଁକା ! ଏତିକି ଟିକିଏ ଦୁକୁଦୁକି ଜୀବନ ନେଇ ପୃଥିବୀରେ ଲଢିବୁ ? – ନାଲାଏକ, ଏତେ ବାଟ ଆସି ଛାଡିଦବୁ ? ? – ଲଢି ଯା' । ତୁ ପାରିବୁ ନାହିଁ ଯଦି କିଏ ପାରିବ ? ଉଠ୍, ଆଉ ଦୁଇ ଘେରା ! ଆଉ ଘେରାଏ !!"

ଜନିର ନିଃଶ୍ୱାସ ତୋଳି ହେଉଥାଏ । ସେ ଚାହୁଁଥାଏ ପଡିଆରେ ଚରିକାତ ମେଲି ପଡିଯିବାକୁ । ଫେଲୁ ତା' କରିବାକୁ ଦିଏନାହିଁ । ତା' ଡେଣା ଧରି ତାକୁ ଡିଆଁଏ; ନିଜେ ଡିଏଁ । ସେ ଟୋକା କାନ୍ଦିପକାଏ ରାଗରେ, ଯାତନାରେ । ତାକୁ ଘରକୁ ନେଇ ତା' ଦେହ ସାରା ତେଲ ମାଲିସ୍ କରେ ଫେଲୁ । ଦେହର ଗଢଣା ବାଗେ ଆସୁଥିବା ଦେଖି ମନେ ମନେ ଖସି ହୁଏ । କିଛି କହେନାହିଁ । ପୁଣି ତେଲ ମାଲିସ କରେ । ଅଣ୍ଡା ପୋଚ ଦିଏ ଖାଇବାକୁ । କ୍ଷୀରେ ମୁନକ୍‌କା ସିଝେଇ ପିଇବାକୁ ଦିଏ । ଜନିର ମନଲାଖି ରାନ୍ଧି ବାଢି ଖୁଆଏ ତା' ସ୍ତ୍ରୀ । ଦୁହେଁ ତାଙ୍କ ଜୀବନରେ ପ୍ରଥମ ଥର ପାଇଁ ସାର୍ଥକ ବୋଧ କରନ୍ତି । ଜନି ପାଇଁ ବଞ୍ଚିରହିବାକୁ, ପରିଶ୍ରମ କରିବାକୁ, ରାତିରେ ଚେଇଁ ରହିବାକୁ, ଦିନରେ ଚାକି ବସିବାକୁ ଭଲଲାଗେ । ରାତିରେ ଜନି ଚଞ୍ଚଳ ଖାଇ ଶୋଇଯାଏ । ଏ ଦୁହେଁ ଅନେକ ବେଳଯାଏଁ ଗପ କରନ୍ତି । ଫେଲୁ କହେ ଯେ ତାକୁ ଯାହା ମିଳିପାରିଲା ନାହିଁ, ଜନିକୁ ତାହା ମିଳିବ । ଜନି ବିଖ୍ୟାତ ହବ ଦିନେ । ସେମାନେ ବି ତା' ସଙ୍ଗେ ବିଖ୍ୟାତ ହୋଇଯିବେ । – ସପ୍ନ ହୁଗୁଳିଯାଏ । ତା' ଫାଙ୍କବାଟେ ନିଦ ସଞ୍ଚରି ଆସେ । ଖେଳି ଖେଳି ହାଲିଆ ହୋଇଯାଇଥିବା ଦୁଇଟି ସ୍କୁଲ ପିଲା ପରି ସେ ଦୁହେଁ ମଧ ଶୋଇପଡନ୍ତି ।

ଆରମ୍ଭରୁ ଜନିର ଗାଁକୁ ଯାଇ ଫେଲୁ ତା' ମା'କୁ ସବୁ ବୁଝାଇ ଦେଇ ଆସିଥାଏ । ଜନିର ସବୁ ଦାୟିତ୍ୱ ସେ ନେଲା ବୋଲି କହିଆସିଥାଏ । ଯଦି ନିଜର ପଢା ବାବଦକୁ କିଛି ସାହାଯ୍ୟ ମିଳୁଥାଏ ତାକୁ ତା' ମା' ରଖି ଅନ୍ୟପିଲାଙ୍କ ପାଇଁ ଖର୍ଚ୍ଚ କରିପାରେ ବୋଲି ମଧ କହିଆସିଥାଏ ।

କିନ୍ତୁ ଯେଉଁଦିନ ଜନି ସେ ଅଞ୍ଚଳର ବାର୍ଷିକ କ୍ରୀଡା-ପ୍ରତିଯୋଗିତାରେ ତା'ଠାରୁ ସବୁ ବୟସ୍କମାନଙ୍କୁ ଅଧେ ବାଟ ପଛରେ ପକେ କେଳିଲାପରି ଅନାୟାସରେ ହସି ହସି ଜିତିଗଲା, ସମସ୍ତେ ତାଜୁବ୍ ହୋଇ ତାକୁ ଚାହିଁଲେ । କିଏ ସେ ଗଜାଟୋକା ଯେ ସେମିତି ଭଳି ଉଡିଯାଉଛି । ସେ ଜମା ହାଲିଆ ହେଉନାହିଁ । – କାହୁଁ ଆସିଲା ସେ ? – ଫେଲୁ କିନ୍ତୁ ତାଗିଦ କରିଥାଏ,

"ଦେଖ ଜନି, ଜମା ଜୋର୍ ଲଗେଇବୁ ନାହିଁ । ସେଥିପାଇଁ ଅନ୍ୟ ଜାଗା ଅଛି । ଏଠି ଏଗୁଡାକ ତୋ ତୁଳନାରେ ଛେଳି ! ତା' ବାହାରେ ତୁ ପୂରା ଦମ୍ ଲଗେଇ ଧାଇଁଦେଲେ କେହି ତା' ଆଖିକୁ ବିଶ୍ୱାସ କରିବ ନାହିଁ । ନଜର ପଡିଯିବ । ସମସ୍ତେ ଈର୍ଷା କରିବେ; ଅନିଷ୍ଟ କରିବେ !"

ଜନି ସେଥିପାଇଁ ଅତି ସହଜରେ ପଛକୁ ରହିଁ ରହିଁ, ହସିଦେି ଜିଣିଗଲା । ତା'ର ସାତପଛରେ ସେମାନେ ସମସ୍ତ ଝାଳନାଳ ହୋଇ ଭିଡିହେଉଥାନ୍ତି, ଧକଉଥାନ୍ତି । ଜନି କପାଳରେ ଟୋପାଏ ସୁଦ୍ଧା ଝାଳ ଜକେଇଲା ନାହିଁ । ତା' ବୁକୁରେ ନିଶ୍ୱାସ ତୋଳି ହେଲା ନାହିଁ ।

ପତ୍ରିକାରେ ଜନିର ଫଟୋ ବାହାରିଲା । ଅଦ୍ଭୁତ ତରୁଣର ପ୍ରତିଭା ବିଷୟରେ କେହି ଜଣେ ସାମ୍ବାଦିକ କ'ଣ ଦି'ପଦ ଲେଖିଦେଲେ । ଫେଲୁ ତାକୁ ପଢି ଅଳ୍ପ ହସିଲା । କହିଲା, "ରହିଥ, ତୁମର କାହାରି ଭାଷା କୁଳେଇ ନାହିଁ । ଆଉ କିଛି ଦିନ ପରେ ତୁମ କୁଣ୍ଢ ପାଇବ ନାହିଁ ଏ ବୃଷାଳ ଦେବଦାରୁ ଗଛକୁ । ଏଇ ତ ଜମା ଆରମ୍ଭ ।"

ୟା'ର ଅଳ୍ପ କେତେଦିନ ପରେ 'ଜନି'ର ମା' ଜଣେ ବୟସ୍କ ଖୀରସ୍ତାନ୍‌କୁ ଧରି ଆସି ପହଞ୍ଚିଲା । ସେମାନେ ଆସୁ ଆସୁ କହିଲେ, "ଆମ ପିଲାକୁ ଆମେ ଫେରାଇ ନେଇଯିବୁ । – ଆରେ, ଆରେ, ଏମିତି କ'ଣ କରନ୍ତି ? – କ'ଣ ଅଡୁଆ ହେଉଛି ତୁମର, ସେ ଏଇଠି ଥିଲେ ! ସେ ଯେଉଳି ଭାବରେ ବଢିଆସିଲାଣି, ଯେମିତି ସବୁ ଶିଖିଆସିଲାଣି, ସେ କେତେ ବଡ ବିଖ୍ୟାତ ଦୌଡାଳି ହବ ! ତୁମରି ପୁଅ ସେଭଳି ହେବାକୁ କ'ଣ ତୁମର ଇଚ୍ଛା ନାହିଁ ? ତୁମକୁ ତ ହାତରୁ କିଛି ଖର୍ଚ୍ଚ ପଡୁନାହିଁ । ମୁଁ ଏଠି ଅଛି ସବୁ କଥାକୁ । ମୁଁ କ'ଣ ତା'ର ବାପ ଭଳି ନୁହେଁ । ସେ ଜାଣି ଆମରି ପୁଅ । ଆମେ ତା' ପାଇଁ ପ୍ରାଣ ଦେଇଦେବାକୁ ପ୍ରସ୍ତୁତ ଅଛୁ ।"

ବୟସ୍କ ଖିରସ୍ତାନ୍ ସେଇ ଗୋଟିଏ ବାକ୍ୟ ଦୋହରଉଥାନ୍ତି: "ଆମ୍ଭ ଦୟାଳୁ ଫାଦର୍ ତାଙ୍କୁ ଫେରାଇନେବା ନିମନ୍ତେ ଆଦେଶ କରିଅଛନ୍ତି ।"

"ରଖ ହେ ତୁମ ଦୟାଳୁ ଫାଦର୍ । ତାଙ୍କୁ ଏଠିକା ବିଷୟ କିଛି ଜଣାନାହିଁ । ଜନାଥନ୍ ଜାନି ତାଙ୍କ ପାଇଁ ଗୋଟିଏ ମେଷଶାବକ । ତାକୁ ସେଠା ପଡିଆରେ ଚରିବାକୁ ସେ ଚାହାନ୍ତି । ଜନି ବିରାଟ ଲୋକ ହବ; ବିଶ୍ୱବିଖ୍ୟାତ ହବ । ଦୟାଳୁ ଫାଦର୍‌କୁ ଯାଅ କହିଦବ ଯେ ଏଠୁ ତାକୁ ନବା ଅର୍ଥ ହତ୍ୟା କରିବା ।"

ବୟସ୍କ ଖିରସ୍ତାନ୍ କହିଲେ, "ଜନାଥନ ଜାନି ଈଶ୍ୱରପୁତ୍ର ପ୍ରଭୁ ଯିଶୁଙ୍କୁ ବିଶ୍ୱାସ କରୁଛନ୍ତି । ତାଙ୍କର ପିତାମାତା ବିଶ୍ୱାସ କରୁଛନ୍ତି । ସେମାନେ ଗିର୍ଜାକୁ ଯାଆନ୍ତି । ଆପଣ ଯାଆନ୍ତି ନାହିଁ । ଜନାଥନ୍ ଜାନି ଆପଣଙ୍କ ପାଖରେ ରହିବା ପାପ କର୍ମ । ଦୟାଳୁ ଫାଦର୍ ତାକୁ ନେଇଯିବାକୁ ପଠାଇଛନ୍ତି ।"

ଓ, ତାହେଲେ କଥା ଅନ୍ୟ ପ୍ରକାର ! କାହିଁ ଆଜିକୁ ଚାରିବର୍ଷ ହୋଇଗଲାତ କୌଣସି ପାପ କର୍ମ ତାଙ୍କ ଆଖିରେ ପଡିନଥିଲା । ପତ୍ରିକାରେ ନାଁଟା ବାହାରିଯିବାରୁ ଲୋଭ ହୋଇଗଲା ତାକୁ ନିଜର ବୋଲି ଦାବୀ କରିବାକୁ । ଆଚ୍ଛା, ଏଠି ଆଉ କେହି ଗିର୍ଜା ଯାଉଥିବା ଲୋକଙ୍କ ଘରେ

ସେ ରହିଲେ ତା' ପାପ ହେବନାହିଁ । ମୁଁ ତା' ପାଇଁ ଯାହା କରୁଛି ତା' କରିବି – ତାକୁ ଛାଡି ପାରିବ ନାହିଁ ।

"ଫାଦର୍ କହିଛନ୍ତି ଯେ ଜନାଥନ ଜାନିଙ୍କର ଉନ୍ନତି ସେ କରାଇବେ । ପ୍ରଭୁ ଯିଶୁଙ୍କ ନାମରେ ତାଙ୍କୁ ବଡ ଖେଳାଳି ସେ କରାଇବେ । ଆମେ ଆମର ପୁଅକୁ ନେବାକୁ ଆସିଅଛୁ । ସେ ଏଠାରେ ରହିବା ପାପ-କର୍ମ ।"

ସେ ବୁଢା ଶୁଆଟିକୁ ଫେଲୁ ଦଣ୍ଡପାଟ ଦାନ୍ତ କଡମଡ କରି ଶୁଣିବାକୁ ବାଧ ହେଲା । ଫଟ୍‌କିନା ବୁଲିପଡି ପଛକୁ ଚାହିଁଲା । ଦେଖିଲା ଜନି ଠିଆହେଇଚି । ସେ ବୁଢା ସାମ୍ନାରେ ଟିକେ ବସି ତା' ଆଖିକୁ ଚାହିଁ କହିଲା – "ହେ ବୁଢାବାବୁ, ପାପ କ'ଣ ? ପୁଣ୍ୟ କ'ଣ ? – ମଣିଷର ଆତ୍ମାକୁ ଚିହ୍ନିବା ହେଲା ଶେଷକଥା । ଜନି ବିରାଟ ଖେଳୁଆଡ । ଏ ପୃଥିବୀକୁ ତାଜୁବ କଲାଭଳି ଜଣେ । ତାକୁ ଆମେ ସମସ୍ତେ ମିଶି କାନ୍ଧ ପତେଇ ଦେବା । ସେ ଆମ ଉପରେ ଚଢିଯିବ । ଆମ ଦେଶର ମାନ ରଖିବାକୁ ସେ ଜନ୍ମିଛି । ସେଥିରେ ବାଧା ଦେବା ପାପ । ତମେ କିଛି ବୁଝି ପାରୁଛ ନା ନାହିଁ ?"

ବୁଢା ଭୁରୁ କୁଞ୍ଚେଇ କହିଲା, "ଦୟାଳୁ ଫାଦର୍ କହିଛନ୍ତି, ଯଦି ତମେ ଗିର୍ଜାକୁ ଯିବ ତାହେଲେ ଜାନି ତୁମ ପାଖରେ ରହିବ ।"

ଫେଲୁ ଫଟ୍‌କିନା ଠିଆ ହୋଇ ପଡିଲା, ଅଣ୍ଟାରେ ହାତ ଦେଇ ଗୋଡ ଫରକଟେଇ ତାକୁ ଚାହିଁଲା । ବୁଢା ତଳକୁ ମୁହଁ କରିଥାଏ । ଜନିର ମାଆ ଭୂଇଁରେ ଗିରା କାଟୁଥାଏ । ଫେଲୁ ବୁକୁରେ କେଜାଣି କେତେ ପବନ ଭରିଗଲା । ଆଖି ଡହକିଲା, ସେ ଶୂନ୍ୟକୁ ଚାହିଁ କହିଲା, 'ଠିକ୍ ଅଛି ! ତୁମେ ବାଜି ଲଗେଇଚ, ନାଇଁ ? – ମୁଁ ରାଜି ! ମୁଁ ଜନି ପାଇଁ ଖ୍ରିସ୍ତାନ ହେବି । କାଲି ଗିର୍ଜାକୁ ଯାଇ ମୁଁ ଆଉ ମୋ ସ୍ତ୍ରୀ ଦୁହେଁଯାକ ଖ୍ରିସ୍ତାନ ହୋଇଯିବୁ । ସେଥିକୁ ଜଗନ୍ନାଥ ସାକ୍ଷୀ ।'

ନାଗ ସାପ ଲାଙ୍ଗୁଡରେ ଠିଆହେଲା ପରି ଫେଲୁ ଫୁ-ଫୁକାର କରୁଥାଏ । ତାକୁ ସମସ୍ତେ ଚାହିଁଥାନ୍ତି ଡରିଲା ପରି । ତା' ସ୍ତ୍ରୀ ରହିଥାଏ କବାଟ ପାଖରୁ । ଜନି ଚାହିଁଥାଏ । ଝଲମଲ କରୁଥାଏ ସକାଳ ପହରର ନିର୍ମଳ ଖରା ।

ଚାରିଆଡେ ରଟିଗଲା ଯେ ଫେଲୁ ଦଣ୍ଡପାଟ ଖ୍ରିସ୍ତାନ ହୋଇଗଲା । ସ୍କୁଲର ଓଡିଆ ପଣ୍ଡିତ ତା' ପାଖରୁ ଛାଡ ଛାଡ ହୋଇ ବସିଲେ । ଛୋଟ କନ୍ଧମାଳ ହାଟ-ବଜାରରେ ସମସ୍ତେ ଅନ୍ୟ ରକମ ଚାହିଁଲେ, କଥା ହେଲେ । ସେ ଆଉ ଗୋଟାଏ ଜୀବ, ଆଉ ଗୋଟାଏ ଚେହେରା, ଆଉ ପ୍ରକାରେ କ'ଣ ହେଇଗଲା ତାଙ୍କ ଆଖିରେ । ଦୟାସାଗର ବେହେରା ମଧ ପାଣି ପିଇଲାବେଳେ, କେମିତି ଦୋ-ଦୋ ପାଞ୍ଚ ହେଲା ପରି ଦେଖାଗଲେ । ଫେଲୁ ଦଣ୍ଡପାଟ ଭିତରେ ଗୋଟାଏ ଦୀର୍ଘଶ୍ୱାସ ଘାଣ୍ଟିଚକଟି ହୋଇ ନିରୋଳା ବେଳେ ଆଖି ଜକେଇ ବାହାରିଗଲା । ତଥାପି ସେ ଜାଣିଶୁଣି ଏକଥା କରିଛି କେବଳ ତା'ର ଚରମ ସାର୍ଥକତା ପାଇଁ । ସେ ଜନିକୁ ନେଇ ସାରା ସଂସାରକୁ ଛାଡି ଦେଇପାରେ । ଜନି ତା' ଆତ୍ମା, ଜନି ତା' ସପ୍ନ, ତା' ଅଭିଳାଷ, ତା' କୀର୍ତ୍ତି ।

ଫାଲ୍‌ଗୁନୀ ଦଣ୍ଡପାଟ ଠକି ପାରେନାହିଁ । ସେ କଳାକାଠର ଗୋଟିଏ କ୍ରୁଶ ଆଣିଲା । ସେଥିରେ ଲାଖିଥିବା ସେ ମଣିଷ ରୂପଟିକୁ ଚାହିଁଲା । ତା' ସ୍ତ୍ରୀକୁ ନେଇ ବୁଝେଇଲା । – ଦେବତା ହେବାକୁ ହେଲେ ଅଧିକ ହାତ ବା ମୁଣ୍ଡର ପ୍ରୟୋଜନ ନାହିଁ । ଏହି ମଣିଷ ରୂପରେ ଦେବତା ହେବା ହିଁ ଠିକ୍ କଥା । ବିନା ଦୋଷରେ କଣ୍ଟାରେ ବିନ୍ଧିହେବା; ସମସ୍ତଙ୍କ ପାଇଁ ପ୍ରାଣ ଦେଇ ଦେବା ହିଁ ଠିକ୍ କଥା । – ସେମାନେ ରବିବାର ଦିନ ସାଙ୍ଗ ହୋଇ ଗିର୍ଜାକୁ ଗଲେ । ସନ୍ଧ୍ୟାରେ ଆଣ୍ଠୁମାଡି ପ୍ରାର୍ଥନା କଲେ । ଜନିର ପିଲାଦିନ ସହିତ ଏ ଦିନଗୁଡିକ ହଠାତ୍ ଯୋଡି ହୋଇ ଏକାକାର ହୋଇଗଲା । ସେ ମୁକୁଳିଗଲା ଭିତରେ ଏବଂ ବାହାରେ । –

...କାଠ ପ୍ଲକ୍‌ରେ ଜନି ଧାଇଁବା ଆଗରୁ ଓହଟି ରହିଥିଲାବେଳେ, ଫେଲୁ ଦଣ୍ଡପାଟର ବୁକୁ ପଞ୍ଜରାରେ ପିଟି ହେଉଥାଏ । ବାଁ ହାତରେ ଚିପାଘଣ୍ଟାଟିକୁ ଧରି ସେ ଡାହାଣ ହାତ ତଳକୁ କରି କହେ – 'ରାଗୋ'! ଆଖିପିଛୁଳାକେ ଜନି ଉଧୁଳି ଯାଏ ଶହେ ମିଟର । ଘଣ୍ଟାଟିକୁ ଚିପିଦେଇ ଫେଲୁ ଅତି ସନ୍ତର୍ପଣରେ ଅନାଏ । ନିଜ ଆଖିକୁ ବିଶ୍ୱାସ କରିପାରେ ନାହିଁ । କିଏ ଭଲା ବିଶ୍ୱାସକରିବ ? ଜନିକୁ କହେନାହିଁ । କାହାକୁ କହେନାହିଁ । ଏକୁଟିଆ ପଡିଆର ସେଖଣ୍ଡକୁ ଫିତା ପକେଇ ଶହେଥର ମାପେ – ଠିକ୍ ଶହେ ମିଟର ଅଛି ନା ନାହିଁ । ଘଣ୍ଟା ଚିପି ପରୀକ୍ଷା କରେ, ଠିକ୍ ଚାଲିଛି ନା ନାହିଁ । ସବୁ ଠିକ୍! – ତେବେ ସତେ କ'ଣ 'ଜନି' ପୃଥିବୀର ସର୍ବଶ୍ରେଷ୍ଠ ଦୌଡାଳି ? କନ୍ଧମାଳର କନ୍ଧ ଟୋକା, ସ୍କୁଲ ଡ୍ରିଲ ମାଷ୍ଟର ଶିଷ୍ୟ । – କିଏ ବିଶ୍ୱାସ କରିବ ? – ସେ ନିର୍ମମ ଭାବରେ ଜନିକୁ ଦୌଡାଏ ଚାବୁକ୍ ମାରି ଘୋଡାକୁ ଦୌଡାଇଲା ପରି । ସେ ଆଉ ଭୂଇଁରେ ଲୋଟିପଡେ ନାହିଁ । ତା'ର ସେ ଲୁହାଦଣ୍ଡା ପରି ଗୋଡରେ ଛୋଟ ଛୋଟ ଲହରିମାନ ଉଠି ଲିଭିଯାଆନ୍ତି । ବିଜୁଳି ଚମକି ଲିଭିଯାଏ । ସେ ଏବେ ଘଣ୍ଟା ଘଣ୍ଟା ଧରି ଝପ୍ ଝପ୍ ଧାଇଁପାରେ । ତା' ବୁକୁରେ ଅସରନ୍ତି ପବନ, ଅସରନ୍ତି ଶକ୍ତି । ଅନ୍ଧାର ହେଲେ ଦୁହେଁ ନୀରବ ଘରମୁହାଁ ଫେରନ୍ତି । ଆଗ ଜନି ପାଇଁ ଖାଇବାକୁ ଦେଇ କ୍ଷୀର ପିଆଇଲା ପରେ, ଦୁଇଜଣ ବଳକାତକ ବାଣ୍ଟି ଚଳେଇ ଦିଅନ୍ତି ! –

ଫେଲୁର ଚାକିରି ଆଉ ଆଠମାସ । ଜନିକୁ ସତର ପୂରିବାକୁ ଆଉ ଦଶମାସ । ଆସନ୍ତା ଶୀତକୁ ସେ ହେବ ଭାରତର ମୁକୁଟମଣି; ବିଶ୍ୱବିଜୟୀ ଚମ୍ପିଅନ୍ ।

କେଜାଣି କାହିଁକି ଫେଲୁ ଦଣ୍ଡପାଟ ଚାହିଁରହିଥାଏ ଟିକିଏ ଶଙ୍କିତ ହୋଇ ବିସ୍ଫୋରଣର ମୁହୂର୍ତ୍ତକୁ । ଗୋଟାଏ ଦିନସାରା ଜଗତକୁ ସେ ସ୍ତମ୍ଭୀଭୂତ କରିଦେବ । ତା' ପୂର୍ବରୁ ଏ ଦେଶର ଆତ୍ମାପରି, ସେ ସାତପୁର ଆବରଣ ଭିତରେ ଲୁଚି ରହିଥାଉ । ଜମ୍ବୁ ମିଶ୍ରଙ୍କ ଦାଢିରେ ଆଉ ଥରେ ହତ୍ୟା ସ୍ୱୀକାର କରିବାକୁ ଫେଲୁ ଦଣ୍ଡପାଟ ଚିନ୍ତାକରି ପାରୁନାହିଁ । ତା' ଜିଭ ଭିଡି ନେଉଛି । ତାଲୁକ ଶୁଖିଯାଉଛି । ...ଯଦି ସତକୁ ସତ ଜନିକୁ ସେମାନେ କୌଣସିମତେ କାଟିଦିଅନ୍ତି ! ...ନା-ନା-ନା'!! ଏଥର ସେମିତି କଲେ ଫେଲୁ ସେମାନଙ୍କୁ ହତ୍ୟା କରିପକେଇବ!!

ପୂରା ଦମ୍ ଲଗେଇ ଜନି ଏବେ ଥରେ ସମସ୍ତଙ୍କ ଆଗରେ ଧାଇବା ନିହାତି ପ୍ରୟୋଜନ ।

ତେବେ ସେମାନେ ବୁଝିବେ ସେ କିଏ । – ସତର୍କ ହେବେ, ଆଡ ହୋଇ ଠିଆହେବେ ସମ୍ରାଟକୁ ବାଟ ଛାଡିଦେବାପାଇଁ । ଆକାଶ ସାରା କରତାଳିରେ ଉଚ୍ଛୁଳି ପଡିବ ।

ଫେଲୁ ସ୍ଥିର କଲା ଯେ ସର୍ବ ପ୍ରଥମେ ଦିଲ୍ଲୀ ପ୍ରତିଯୋଗିତା ପାଇଁ ଜନିକୁ ସେ ଛାଡିଦେବ । ତାକୁ ଆଉ ରୋକିବା ମଧ୍ୟ ସମ୍ଭବ ନୁହେଁ । ସେ ଆଉ ସମ୍ଭାଳି ରହିପାରିବ ନାହିଁ । ତାକୁ ନିଶା ଘାରିଗଲାଣି । ଏଣିକି ସେ ସୁଯୋଗ ପାଇଲା ମାତ୍ରେ ସିଂହପରି କୁଦିପଡିବ । ଧାଉଁ! ଶହେ, ଦୁଇଶ', ଚରିଶ' ମିଟର ଧାଇ ଏମାନଙ୍କୁ ପ୍ରଥମେ ସେ ତାଜୁବ କରୁ, ତ୍ରସ୍ତ କରୁ! କୃତାର୍ଥ କରୁ ଏ ହିନିମାନିଆ ଦୁର୍ବଳିଆ ପଛୁଆ ଜାତିଟାକୁ । ତା'ପରେ ଭାରତରେ ସେ ପଞ୍ଜାବ ଭେଣ୍ଡିଆଙ୍କୁ ଅଟମା ଭକୁଆଙ୍କ ଭଳି ସାତପଛରେ ଗୋଡାଣିଆ କରି ଉଡିଯାଉ । ଦୁଲୁଦୁଲୁ ହେଉ ଦେଶ । ହୁଲସ୍ଥୁଲ ପଡିଯାଉ ଚତୁର୍ଦ୍ଦିଗରେ!!

ଦିଲ୍ଲୀ ଖେଳ ଆଉ ଚରିମାସ ବାକି । ଫେଲୁ ଦଣ୍ଡପାଟ ଚାକିରିରୁ ଅବସର ନେଇ ଦିନେ ସଞ୍ଜବେଳେ ଘରକୁ ଫେରିଆସିଲା । ଟ୍ରାକ୍‌ସୁଟ୍ ପିନ୍ଧି ଜୋତାକୁ କାନ୍ଧରେ ଓହଳାଇ ଜନି ବାହାରିଥାଏ ପଡିଆକୁ । ଫେଲୁ ଛୋଟ ଧୂଆଁ ରେଖାଏ ଭିତରେ ସାମାନ୍ୟ ଅଟକିଗଲା – ସ୍ତ୍ରୀ ଥରଟେ ଚାହିଁ – ସେ ଖାଲି ଖାଲି ଘରଟିରେ ଆଖି ବୁଲେଇ ଆଣିବାକୁ । ଛୋଟିଆ ନିଶ୍ୱାସଟିଏ । ତା'ପରେ ଖପ୍‌କିନା ଉଠିପଡିଲା ଜନି ସାଙ୍ଗରେ ପଡିଆକୁ ଯିବା ପାଇଁ । ନହେଲେ ସେ ବଞ୍ଚିବ କିପରି ?...

"ଦେଖନ୍ତୁ ଦଣ୍ଡପାଟ ବାବୁ! ଆପଣଙ୍କୁ ଏ ଘର ଛାଡିଦେବାକୁ ହେବ । ଆମେ ଆପଣଙ୍କୁ ଆଉ ରଖେଇ ପାରିବୁ ନାହିଁ । ବେନିୟମ କଥା ।"

"ଓ, ଏଇଥିପାଇଁ ଏମିତି ତଡିବଡି ଡାକରା ? ମୁଁ କ'ଣ ଆଗରୁ ଏଇଆ ହବ ବୋଲି ଜାଣି ନଥିଲି କି ?"...

"...ଆଉ ଶୁଣନ୍ତୁ! ଆପଣ ଏ ପଡିଆକୁ ଆସିବା ମଧ୍ୟ ବେନିୟମ କଥା । ଆପଣ ତ ଆଉ ସ୍କୁଲରେ ନାହାନ୍ତି । ସେଥିପାଇଁ ସ୍କୁଲର କୌଣସି ସୁବିଧା ପାଇଁ ଆପଣ ହକ୍‌ଦାର ନୁହନ୍ତି ।"

"ମୁଁ କ'ଣ ଆପଣଙ୍କ ପଡିଆକୁ ବ୍ୟବହାର କରେ କି ? ମୁଁ କେବଳ ଠିଆ ରହି ଦେଖେ । ଆପଣଙ୍କ ସ୍କୁଲର ସେ ବିଖ୍ୟାତ ଖେଳୁଆଡ 'ଜନି'କୁ ଦେଖୁଥାଏ । କେହି ପଚାରିଲେ ତା'ର ପରିଚୟ ଦେଉଥାଏ । ଏଇଟା ବି କ'ଣ ଆପଣ ମନା କରି ଦେଉଛନ୍ତି ?"

"ଅଗତ୍ୟା !"

ଫେଲୁର ଇଚ୍ଛା ହେଲା ଦି'ପଦ ଶୁଣେଇଦେବାକୁ । କିନ୍ତୁ 'ଜନି'ର ଅନିଷ୍ଟ ଆଶଙ୍କା କରି ଚୁପ୍ ରହିଗଲା; ବରଂ ଅଳ୍ପ ହସି କହିଲା, "ଠିକ୍ ଅଛି । ମୁଁ ଆଉ ଆସିବି ନାହିଁ । ଆସିଲେ ସୁଦ୍ଧା ପଡିଆ ପାଖ ସରକାରୀ ରାସ୍ତା ଉପରେ ବସି ତାକୁ ଦେଖିବି ଆପଣ ହୁଏତ ବୁଝିପାରିବେ ନାହିଁ ଯେ, ମୁଁ ତାକୁ ଚାହିଁ ନ ରହିଲେ ସେ ହୁଏତ ଧାଇଁପାରିବ ନାହିଁ ।"

"ଖୁବ୍ ପାରିବ! ଆପଣ ଆଉ ତା' ବିଷୟରେ ମୁଣ୍ଡ ଖେଳାଇବାର ଦର୍କାର ନାହିଁ । ଆମେ ତା'ର ଦାୟିତ୍ୱ ନେବୁ; ଯାହା କରିବା କଥା କରିବୁ । ସାତବର୍ଷ ପରେ ବୋଧହୁଏ ପ୍ରଥମଥର ପାଇଁ

ଫେଲୁ ପଡିଆକୁ ଯିବନାହିଁ ବୋଲି କହିଲା । ଘରେ ତା' ସ୍ତ୍ରୀ ଶୁଣି ବିଶ୍ୱାସ କଲାନାହିଁ । ଜନି ବିଶ୍ୱାସ କଲାନାହିଁ । ଅନେକ ବୁଝାଇଲା ପରେ ସେ ଜନି ପିଠିରେ ହାତ ରଖି କହିଲା, ଜନି, ମୋତେ ଦିନେ ନା ଦିନେ ତୁ ଛାଡି ଯାଇଥାନ୍ତୁ । ମୁଁ ତୋତେ ମୋର ସବୁ ଦେଇସାରିଛି; ଆଉ କିଛି ଦେବାର ନାହିଁ । ତୋ ପାଖେ ପାଖେ ମୋର ଆତ୍ମା ଚିରକାଳ ରହିଥିବ – ତୁ ଧାଇଁବାବେଳେ ତୋତେ ଜଗି ରହିଥିବ । ତୁ ଯା' ! ଅଭ୍ୟାସ କରି ଆସିବୁ । ତୁ ଆଉ ଭୁଲ କରିବୁ ନାହିଁ ବୋଲି ମୁଁ ଜାଣିଚି । ଯା! – ମୁଁ ଆଉ ତୋ ସଙ୍ଗେ ଆସି ପାରିବି ନାହିଁ ।"

ସମସ୍ତଙ୍କ ମୁହଁ ତଳକୁ । ସମସ୍ତଙ୍କ ଆଖି ଥନଥନ । ତିନିହେଁ ଆଣ୍ଠୁମାଡି ବସିପଡିଲେ ଅଜାଣତରେ । ତିନିହେଁ ନୀରବ ପ୍ରାର୍ଥନା କଲେ କିଛି ସମୟ । 'ଜନି' ପଡିଆକୁ ଏକୁଟିଆ ଗଲାବେଳେ ଦୁଇଜଣ ଚାହିଁ ରହିଥାନ୍ତି ଦୁଆରମୁହଁରୁ । ଜନି ଲେଉଟି ଲେଉଟି ଚାହୁଁଥାଏ ବାରମ୍ବାର । ଫେଲୁ ଦଣ୍ଡପାଟ କିଛି ବାଟ ବଳେଇ ଦେଇ ଆସିପାରିଥାନ୍ତା । ସବୁ ବାରଣ ସତ୍ତ୍ୱେ ପଡିଆ ପର୍ଯ୍ୟନ୍ତ ଯାଇପାରିଥାନ୍ତା । କେବଳ ଭୟ ଜନି ପାଇଁ – କାଳେ କେହି ଜଣେ ଜମ୍ମୁ ମିଶ୍ର ତା' ଗୋଛି କାଟିଦେବ ।

ଫେଲୁ ଦଣ୍ଡପାଟ ଖ୍ରୀଷ୍ଟିୟାନ ସାହିରେ ଗୋଟିଏ ଏକବଖୁରି ଘରଭଡା ଦେଇ ରହିଲା । କନ୍ଧମାଳ ଝଡି ବର୍ଷା ପାରିହୋଇଗଲା ସେମାନଙ୍କ ଉପରେ । ଘରର ଶେଷ ସମ୍ବଳ ଗୋଟିଏ ଦୁଇତୋଳାର ସୋରିଷମାଳ ବିକ୍ରି କରିଦେଲା ଫାଲଗୁନୀ ଦଣ୍ଡପାଟ । ଜନିର ଖର୍ଚ୍ଚ ତୁଲାଇବା ଦିନକୁ ଦିନ ତାକୁ ବଳେଇ ଯାଉଛି । ତଥାପି ହାରିବା କ'ଣ ସେ ଶିଖିନାହିଁ । କରତାଳିର ସ୍ୱପ୍ନରୁ ସେ ମୁକୁଳି ପାରିନାହିଁ । 'ରୋମ୍'ରେ ତ୍ରିରଙ୍ଗା ପତାକା ଦିନସାରା ଉଡିବାର ଦୃଶ୍ୟ ତାକୁ ତଥାପି ବିଭୋର କରି ରଖିଛି ।

ଦିଲ୍ଲୀ ସଦର ମହକୁମାର ଫାଲ୍‌ଗୁନୀ ଦଣ୍ଡପାଟ ହାତରୁ ଖର୍ଚ୍ଚ କରି ଆସିଥାଏ । ସେଇଠି 'ଜନି'କୁ ସମସ୍ତେ ଧାଇଁବାର ଦେଖିବେ । ଚିହ୍ନିବେ ଫେଲୁର ଆତ୍ମାକୁ! 'ଜନି'ର ଆଖିରେ ତିଳେମାତ୍ର ଭୟ ନାହିଁ, ସଂଶୟ ନାହିଁ । – ଦାଉଦାଉ ଜଳୁଚି, ସେ ବିଶ୍ୱ-ବିଜେତାର ଆଖି । ଦଣ୍ଡପାଟ ଅସ୍ଥିର ହୋଇ ଅପେକ୍ଷା କରିଛି ।

ଶହେ ମିଟର ପାଖରେ ଛ'ଜଣ ଧାଡି ବାନ୍ଧି ଠିଆହେଲେ । ଜନିର ତିନି ନମ୍ବର । ସେ ତା' ବ୍ଲକ୍‌କୁ କଣ୍ଟା ମାରି, ଟିକିଏ ତା'ର ସେ ଦେବ-ଦୁର୍ଲଭ ଶରୀରକୁ ପାଣି ପରି ସରଳ କରି ନେଉଥାଏ । ବାକି ସବୁ ତା' ପାଖରେ କାଠବେଙ୍ଗ ପରି ଦିଶୁଥାନ୍ତି ।

ସିଟି ବାଜିଗଲା । ଫେଲୁର ବୁକୁ ଧଡପଡ । ସମସ୍ତେ ଯେ ଯାହା ବ୍ଲକ୍ ଉପରେ ଉଦ୍ୟତ ଚଢେଇଭଙ୍ଗୀରେ ଓହଟି ରହିଥାନ୍ତି । ଓଃ, ଏତେ ସମୟ କ'ଣ ରଖାଯାଏ ? କିଏ ସେ ଯୋଡାଏ ବନ୍ଧୁକ ଧରି ମାଝିଆ ଠିଆ ହେଉଚି । ନାଲାଏକ୍! ଢାଇକିନି ବନ୍ଧୁକ ଫୁଟିଲା ଏବଂ ସାଙ୍ଗେ ସାଙ୍ଗେ ପୁଣି ଫୁଟିଲା ଦ୍ୱିତୀୟ ଥର । ଅଧେ ବାଟରୁ ଜନି ଫେରିଆସୁଥିବାର ଦୃଶ୍ୟ ହେଲା । ତାକୁ ଆସି ସେ ତାଗିଦ୍ କରିଗଲା । ଦଣ୍ଡପାଟ ଠିଆ ହୋଇ ପୁଣି ବସିଗଲା । ଭାରି ଅସ୍ଥିର । ଦ୍ୱିତୀୟ ଥର

ସମସ୍ତେ ସଜିଲ୍ ହୋଇଗଲେ । ଦ୍ୱିତୀୟ ଥର ବି ସେଇଆ । ସେ ଧତଡା ଜନ୍ମା ଜାଣେନାହିଁ କେତେବେଳେ ବନ୍ଧୁକ ଟିପିବ । – ଫେଲୁ ଆଉ ବସି ରହି ପାରିଲାନାହିଁ । ଉଠିଆସି ଆଗଧାଡି ପିଲାଙ୍କ ମେଳରେ ଠିଆହେଲା । ଖାଲି ଛଟପଟ ହେଉଥାଏ । ଆରେ ତୋର ଏତେ ଜୋର୍‌ରେ ଧାଇଁବାର କ'ଣ ଅଛି ? ସେମାନଙ୍କୁ ଛାଡିଦେ ଅଧେ ବାଟ । ତଥାପି ତୁ ତାଙ୍କୁ ଟପିଯିବୁ । ତୋତେ କ'ଣ ଏଇଠି ଏମିତି ଉଡିବାକୁ କହିଥିଲି ? – କିନ୍ତୁ ଉପାୟ ନାହିଁ । ସେ ଦୂରରେ ରହି ଦୁରୁଦୁରୁ କମ୍ପୁଥାଏ କେବଳ ।

ତୃତୀୟ ଥର ବନ୍ଧୁକ ଆବାଜ ସାଙ୍ଗରେ ପୁଣି ଗୁଳି ପରି ଉଡିଗଲା ଜନି ଏବଂ କ'ଣ ଗୁଡାଏ କୋଳାହଳ ଶୁଭିଲା । କ'ଣ ସବୁ ଝାପ୍‌ସା ଦେଖାଗଲା । ଫେଲୁ ତା' ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । 'ଜନି'କୁ ସେମାନେ ବାହାର କରିଦେଲେ । ଫେଲୁ ବାଡ ଡେଇଁ ଅନ୍ଧପରି ଧାଇଁଗଲା । ଚିତ୍କାର କଲା ।

ତାକୁ ଲୋକେ ଧରିନେଲେ । ତା'ର ପ୍ରତିବାଦ କେହି ଶୁଣିଲେ ନାହିଁ । ଜନି ଏବଂ ସରଳ ଦେବଶିଶୁ ପରି ଠିଆ ହୋଇଥାଏ । ସେ ବୁଝି ପାରୁନଥାଏ ତା'ର ପ୍ରକୃତରେ କ'ଣ ହେଲା । ସେ କେବଳ ବିବ୍ରତ ହୋଇ ପଡୁଥାଏ ଫେଲୁର ଅବସ୍ଥା ଦେଖି ।

କେହି କିଛି ଶୁଣିଲେ ନାହିଁ । ଫେଲୁ ଚିତ୍କାର କରି କରି ମୂର୍ଚ୍ଛିତ ହୋଇଗଲା । କାବା ହୋଇ ବସି ରହିଲା ଜନି । ସେ ଅପେକ୍ଷା କରି ରହିଥିଲା ତାକୁ କହିବା ପାଇଁ, ଆପଣ ଏମିତି ଅଧୀର କାହିଁକି ହଉଛନ୍ତି ? ଶହେ ନ ହେଲା, ମୁଁ ଦୁଇଶହ ମିଟର ଦୌଡରେ ସମସ୍ତଙ୍କୁ ଟପିଯିବି । ସମସ୍ତଙ୍କ ପଛରେ ଆରମ୍ଭ କରିବି । କଟିଯିବାର ଭୟ ନାହିଁ । ମୁଁ ଏମାନଙ୍କୁ ଜାଣିଗଲି । ଏମାନେ ଏତେ ବେଗ ସହିପାରୁନାହାନ୍ତି, ବୁଝିପାରୁନାହାନ୍ତି । ଏତେ ଜୋର୍‌ରେ ଗୁଳିର ଆବାଜ ପରି ବାହାରିଗଲେ ଏମାନେ ବୋଧହୁଏ ବିଶ୍ୱାସ କରି ପାରୁନାହାନ୍ତି । ତାଙ୍କୁ ଭୁଲ ପରି ଦିଶୁଛି । ମୁଁ ଏଥର ଠିକ୍ କରିନେବି । ଆପଣ ନିଶ୍ଚିତ ହୁଅନ୍ତୁ ।

ଫେଲୁର ଦେହ ହାଣଖିଆ କୁକୁଡା ପରି ଥରୁଥାଏ । ଓଠ ଶୁଖିଯାଇଥାଏ । ଆଖିକୁ କ'ଣ ଦିଶୁଥାଏ କି ଦିଶୁନଥାଏ କହିହେବ ନାହିଁ । ସେ ଗୋଟାଏ ଖୁଣ୍ଟକୁ ଆଉଜି ବସିଥାଏ । ବହୁ ଦୂରରୁ ତାକୁ ଶୁଭୁଥାଏ ଗୋଟାଏ କୋଳାହଳ । ଆକାଶ ସାରା କରତାଳି । ପଡିଆରେ କ'ଣ ଘଟୁଥାଏ – ଜନି ପୃଥିବୀର ନୂଆ ରେକର୍ଡ ଦେଉଥାଏ, ନା ତା' ପାଖରେ ତୁନିପଡି କାନ୍ଦୁଣୁ-ମାନ୍ଦୁଣୁ ହୋଇ ବସିଥାଏ ତାକୁ ଜଣାନାହିଁ । ହୁଏତ ଆଉ ପ୍ରକାରେ ତାକୁ ଦିଶୁଥାଏ – ଧଳା ଗୁଳ୍ମ ପରି ବିଚାରକମାନେ । ତାକୁ ଦିଶୁନାହିଁ ଯେ କଳାବାଘ ପରି ସେ କନ୍ଧ ପିଲାଟି ହେଉଛି ସାରା ରାଜ୍ୟର ମଉଡମଣି ସମ୍ରାଟ । ସେମାନେ ତାକୁ ନାକଚ କରିଦେଇ ରୁମାଲରେ ହାତ ପୋଛୁଛନ୍ତି । କ'ଣ ଅପରାଧ କରୁଛନ୍ତି ଜାଣିପାରୁନାହାନ୍ତି । ଦେଶର ଆତ୍ମାକୁ ଅସ୍ୱୀକାର କରି କେମିତି କୁଢ କୁଢ ଗେଙ୍ଗୁଟି ପରି ସେମାନେ ଗଦା ହୋଇ ଯାଉଛନ୍ତି, ଜାଣିପାରୁନାହାନ୍ତି । କିଏ ତାଙ୍କୁ ଦିବ୍ୟ ଦୃଷ୍ଟି ଦେବ ? କିଏ ତାଙ୍କୁ ବୁଝେଇବ, ବିଶ୍ୱାସ ଜନ୍ମେଇବ, ତାଙ୍କୁ ବିସ୍ମୟବିମୂଢ କରି କହିବ ଯେ ଏଇ

ତୁମ ଦେଶର ଅପଦସ୍ଥ ଶୀର୍ଷ ବନ୍ଧୁ । ଏଇ ତୁମ ମର୍ଯ୍ୟାଦା । ଯାକୁ ଅବମାନନା କରନାହିଁ । – ଫାଲ୍‌ଗୁନୀ ଦଣ୍ଡପାଟ ହୁଏତ ପାରିଥାନ୍ତା । ତା'ର ତ ପାଟି ଫିଟୁନାହିଁ । ଅଙ୍ଗ ଚଳୁନାହିଁ । ସେ ନିସ୍ତେଜ ସେମିତି ପଡିରହି ସ୍ୱପ୍ନ ଦେଖୁଛି । ଜୀବନର ସବୁଯାକ ସ୍ୱପ୍ନ ଦେଖୁଛି ।

ଜନିକୁ ଜମା ସତରବର୍ଷ । ସେ ସିଂହଛୁଆକୁ କେହି ଅସ୍ୱୀକାର କରିପାରିବେ ନାହିଁ । ପେଟ୍ରମାନଙ୍କ ପ୍ରତିବାଦକୁ ବେଖାତିର୍ କରି ଏ ସୂର୍ଯ୍ୟ ନିଶ୍ଚୟ ଉଠିଆସିବ । ତାକୁ ରୋଧିବାକୁ ଏମାନେ କିଏ ? ସେ ପୃଥିବୀକୁ ଆଚମ୍ବିତ କରି ଅବଶ୍ୟ ନୂଆମାନ ପ୍ରତିଷ୍ଠା କରିବ । ତିନିତାଳ ଉଚ୍ଚରେ ଅଲମ୍ପିକ୍ ପତାକା ଉପରେ ଅଙ୍କିତ ହେବ ତ୍ରିରଙ୍ଗା । ଆକାଶ ଉଚ୍ଛୁଳି ପଡିବ କରତାଳିରେ । – ସମସ୍ତେ ଦେଖିବେ; ନତମସ୍ତକ ହୋଇ ସ୍ୱୀକାର କରିବେ ।

କିନ୍ତୁ ଫାଲ୍‌ଗୁନୀ ଦଣ୍ଡପାଟ ?



# ଶେଷକୁ ସେଇ ଗୁଞ୍ଜମାଳି

ଏ ବରଜା ସେ ବରଜା ନୁହେଁ, ଏ ଆଉଜଣେ । କେଜାଣି କାହିଁକି ବରଜା ମାତ୍ରକେ ଅସାଧାରଣ ଜଣାଯାନ୍ତି ତ ! ହଜାରେ ଧୂମାଳ ମଣିଷଙ୍କ ସ୍ମୃତି ଭିତରେ ସେମାନେ ବାରିହେଇଯାଉଥାନ୍ତି । ସତେ ବା ସେମାନଙ୍କର ଧାତୁ ଅଲଗା, ପଟିଆରା ଅଲଗା, ଅଭିଲାପଣ, ଅଳମୁଷାପଣ ଅଲଗା !

ଏ ଯେଉଁ ବରଜା କଥା କହୁଛି, ସେଦିନ ସେ ପାହାନ୍ତିଆରୁ ଉଠି ଘରର ଆଲୁମାଲୁ ଦରାଣ୍ଡି ଗୋଟିଏ ତାମ୍ପଣ ଖୋଜୁଥାଏ । ଖୁବ୍ ଶୀତ ପଡିଥାଏ ସେ ବର୍ଷ । ବାହାରେ ନିଘଞ୍ଚ କୁହୁଡିରେ ମୁହଁକୁ ମୁହଁ ଦିଶୁ ନଥାଏ । ଅଧା ପେଣ୍ଟ ପିନ୍ଧା ବରଜାର ସେଥିକୁ ଖାତିର ନଥାଏ । ଫୁଙ୍ଗୁଳା ଦେହରେ ଲସରପସର ହଉଥାଏ । ଖୋଜୁଥାଏ ତାମ୍ପଣ ।

ସହରର ସରକାରୀ ମେଲା ଜାଗା ଉପରେ ବାଉଁଶ କଣ୍ଟା ବେଢେଇ ଦେଇ ତା' ବାପ ଏକବଖୁରି ମାଟିଘରଟିଏ ତୋଳିଥାଏ । ଦୁଇପାଖେ ପିଣ୍ଡା । ଗୋଟିକରେ ଘରମଣି ବନ୍ଧାହୁଏ । ଆଖପାଖ ସମସ୍ତଙ୍କ ବଗିଚାରେ ଅପକୀର୍ତ୍ତି କରି ଠଡା ଖାଉଥିବା, ଅଥଚ ସମସ୍ତଙ୍କୁ ଉଚ୍ଚାଟିତ ଲୋଭାନ୍ୱିତ କରୁଥିବା ରଙ୍ଗି ଛେଳି ଘରମଣି । ତା' ଥଲଥଲିଆ ଦେହ ଟିଙ୍କ ପରି ଟାଣି ହୋଇ ରହିଥାଏ । ମାଛି ଖସିପଡିବ ଏମିତି ତା' ଚେହେରା । ତା' ପହ୍ନାଭାରରେ ସେ ଧାଇ ପାରେ ନାହିଁ । ପଛ ଗୋଡ ଯୋଡିକ ଓସାରି ଓସାରି ଚାଲେ । ଚାଲିଲେ ମଟ୍‌ମଟ୍ ଶୁଭେ । ଲକ୍ଷଣବନ୍ତୀ, ଲକ୍ଷ୍ମୀବନ୍ତିଆଣୀ ଛେଳି ଘରମଣି । ଦୁଇଓଳିରେ ସେ ସାତଥର କ୍ଷୀରଦିଏ । ତା'ର ପନ୍ଦରଟା ପିଲା ବିକ୍ରି ହେଇସାରିଲେଣି । ଏବେ ସେ ଗର୍ଭଭାରରେ ଟଳମଳ ହେଉଚି । ଚାରିଟା କି ପାଞ୍ଚଟା ପିଲା ତା'ର ଚମମୁଣାଟାକୁ ବିସ୍ତାରି ରଖିଛନ୍ତି । ମା' ଛେଉଣ୍ଡିଆ ବରଜା ଧଡିଆ ମଢ ପରି ଝୁଣିହୋଇ ଯାଇଥିଲା । ହେଞ୍ଜେ ହେଞ୍ଜେ ହୋଇ ବୁଲୁଥିଲା ଗାଁରେ । ଏବେ ପାଞ୍ଚବର୍ଷ ହେଲା ଏଇ ଛେଳିକ୍ଷୀର ଖାଇ ଗଜା ହିଣ୍ଡିଆ ପରି ପିଛୁଳି ପଡୁଛି । ମହର୍ଗ ସହରରେ ଚଳିବାକୁ ତା' ବାପା ଶ୍ରମ କରୁଛି ଦିନଯାକ । ସଞ୍ଜକୁ ପେଟେ ମଦ ପିଇଦଉଛି । ସକାଳୁ ସଞ୍ଜଯାଏଁ ଘରମଣିକୁ ପେଜପାଣି, ତାଳପତ୍ର ଖୁଆଇବା କାମ ବରଜାର ।

ବରଜା ସେଥିପାଇଁ ତାମ୍ପଣ ଖୋଜୁଥାଏ । ଗୋଟାଏ ଅଖା ଘରମଣି ଉପରେ ପକେଇ ତଳୁ ସିଲେଇ କରିଦେଲେ ଜାମାଭଳି ହୋଇଯିବ । ଶୀତରେ ଏମିତି ସେ କୁକ୍କୁରିକାକ୍କୁରି ହେଇ ଠିଆହେବ ନାହିଁ; ତା' ଦେହସାରା ଠୁକ୍ ଠୁକ୍ ହୋଇ ଥରିବ ନାହିଁ । ଘରମଣିକୁ ଶୀତ ହେଲେ

ବରଜା କେମିତି ସହିପାରିବ । ସେ ତା' ପହ୍ଲାରେ ମୁହଁ ଲଗେଇ ପେଟେ ଲେଖାଁ କ୍ଷୀର ଖାଇଛି । ତା' ଖୁରାରେ, ଛୋଟ ଛୋଟ ଶିଙ୍ଘରେ ତେଲକନା ମାରି ଚକ୍‌ଚକ୍ କରିଚି । ଘରମଣି ପାକୁଳି କରୁଥିଲା ବେଳେ ତା' ପାଖରେ ଚିଙ୍ଗୁଡିପରି ଟେକା ମାରି ତାକୁ କୋଳେଇ ଶୋଇଚି । ସେ ଶିଖିଯାଇଚି ଘରମଣୀର ଛେଳିଭାଷା । ମେଁ ମେଁ ଭିତରେ କେତେ ପ୍ରକାର କଥା, କେତେ ପ୍ରକାର ମାନ ଅଭିମାନ ସେ ଘରମଣିକୁ ଜଣାଏ । ମଣିଷ ତୁଣ୍ଡରେ ଛେଳିଛୁଆର ଦରୋଟି ପରି ସେ କଥା ହୁଏତ ଘରମଣିକୁ ଶୁଭୁଥିବ । ସେ ଦୂରରେ ଥିଲେ ପାଖକୁ ଧାଇଁଆସେ । ବରଜାକୁ ଗେଲରେ ଶିଙ୍ଘ ଲଗେଇ ଭୁସିପକାଏ । ତା' ହାତ ପାପୁଲିକୁ ଚାଟି ପକାଏ । ତା' ଆଣ୍ଠୁରେ ବେକ ଘସି ଗେହ୍ଲେଇ ହୁଏ । ବରଜା ଘରମଣି ବେକକୁ କୁଣ୍ଢେଇ ଧରି ମଣିଷ ଢଙ୍ଗରେ ଗେଲ କରେ । ତା' ମୁହଁରେ ମୁହଁ ଘଷେ । ତା' ଦେହ ଛେଳିପରି ଗନ୍ଧାଏ । ନୁଖୁରା, ଧୂଳିଧୂସରିଆ ଫାସକୁଣ୍ଡିଆ ବରଜା ଭାବେ ସେ ଗୋଟିଏ ଛେଳିଛୁଆ । ଘରମଣି ତା' ମା', ଆଉ ସେ ତା' ପୁଅ ! ବାପା, ଉଠିଲାବେଳକୁ ବରଜା ଘରମଣିର ସବୁ ସେବା ସାରିଦେଇ ତା' ଆଗରେ କଞ୍ଚ ବରକୋଳି ଡାଳ ଆଣି ପକେଇ ଦେଇଥାଏ । କଣ୍ଟାସନ୍ଧାରୁ କଅଁଳପତ୍ର ଚାଖି ଚାଖି ଚରିଯାଉଥାଏ ଘରମଣି । ଯେମିତି ଢଙ୍ଗରେ ସେ ସୁଆଦ ବାରି ବିଭୋର ହୋଇ ଟାଉ ଟାଉ ପତର ଚୋବାଉଥାଏ, ତାକୁ ଦେଖି ବରଜାର ଭାରି ମନ ହେଉଥାଏ ସେମିତି ବରକୋଳିପତ୍ର ଚୋବାଇବାକୁ । ସେ ଲୋଭ ସମ୍ଭାଳି ନପାରି ଆଗରୁ ଦୁଇ ତିନି ଥର ଦାନ୍ତେଇଚି; ବିସ୍ୱାଦରେ ଥୁ' କରି ଦେଇଚି । ...ସେଦିନ ସେ ଏକାଲୟରେ ଘରମଣିକୁ ଚାହିଁ ରହିଥାଏ ।

ତା' ବାପା ଉଠିଲା । ମୋଡିଭିଡି ହେଲା । ଇଟାଚୁଲି ଲଗେଇ ଚା ପାଣି ତିଆରି କଲା । ସବୁଦିନ ଗୋଟାଏ କାନଭଙ୍ଗା କପ୍‌ରେ ସେ ଢାଳେ ହେବ ଚା ପାଣି ପିଏ । ବରଜାକୁ ଚା ବାସ୍ନା ଭଲଲାଗେ; ମାତ୍ର ବାପ କହେ ସେ ପିଲାଲୋକ । ଚା ଖାଇବା ମନା, କଲିଜା ଖରାପ ହୋଇଯିବ । ବରଜା ଓଠ ଲେଉଟାଇ ବାପକୁ ଫେଟ୍ କଲାପରି ଅନାଏ । ମନେ ମନେ ହସୁଥାଏ । ତା' ବା'ଟା ସତେ ଓଲୁଟା ! ସବୁଦିନ ବରଜା ସେଇ କଳା କଷା ଚା ପାଣି ଏକୁଟିଆ ବସି ସେଇ କାନଭଙ୍ଗା କପ୍‌ରେ ପିଏ ବାପ ନଥିଲା ବେଳେ ।

ସେଦିନ ତା' ବାପ ପିଉଥାଏ । ବରଜା ଚାହିଁ ରହିଥାଏ ଘରମଣିକୁ । ତା' ବାପ ବି ଚାହିଁଲା । କହିଲା, "ଦେଖ୍, ବରଜା ! ଘରମଣି ଆଜି ନହେଲେ କାଲି ଭିତରେ ପିଲା ପକେଇବ । ଜଗିଥିବୁ, ନହେଲେ କୁକୁର ଲାଗିଯିବେ । ଏ ଦି'ଦିନ ଚରିବାକୁ ନ ଗଲେ ଭଲ । ଘରେ ପେଜପାଣି ମନ୍ଦେ ପିଇଥାଉ । ମୁଁ ଆଜି ସହଳ ବାହାରି ଆସିବି । କାଲିର ପଖାଳ ଅଛି; ତୁ ଖାଇଦେବୁ । ମୁଁ ଆଇଲେ ରାନ୍ଧିବା ।"

ବାପ ତା' ବାଟରେ ସେ ଚାଲିଗଲା । ବାପର କଥା ବରଜା ଅଦେ ଶୁଣିଲା, ଅଧେ ଶୁଣିଲା ନାହିଁ । ସେ ଖାଲି ଘରମଣିକୁ ଚାହିଁରହିଥାଏ । ତା' ମନରେ ସନ୍ଦେହ ହେବାରୁ ସେ ଛେଳି ଭାଷାରେ ଆସ୍ତେ ଡାକିଲା । ସେ ଚାହୁଁଥିଲା ପଚାରିବାକୁ, "ତତେ କେମିତି ଲାଗୁଛି ? ତୋ ଦିହ ଭଲ ଅଛି

ତ ?" ବରକୋଳିପତ୍ର ଯେବଉ ଯେବଉ ଖୁବ୍ ଆସ୍ତେ ଘରମଣି ସେମିତି ଥରଟେ ବୋବେଇଲା, ହୁଏତ କହିଲା, "ହଅଅ – ସେମିତିଆ !" ବରଜା ସେଥିରୁ ବୁଝିଗଲା ଯେ ଘରମଣିକୁ ବିଶେଷ ସୁସ୍ଥ ଲାଗୁନାହିଁ । ସେ ସବୁମନ୍ତେ ଧିମେଇ ଯାଇଚି । ଶୋଇବାକୁ ଉଠିବାକୁ ଚାହୁଁ ନାହିଁ । ତା' ପହ୍ଳାଟା ଫୁଲିଯାଇଚି । ଗଉଳଧୁଆ ବେତୁଲି ପରି । ସହଜରେ ନିଃଶ୍ୱାସ ନେଇ ପାରୁନାହିଁ । କୁନ୍ଥାଉଚି ।

ବରଜାକୁ ଏକପ୍ରକାର କାତର ଲାଗିଲା । ଦଗ ମାଡିଲା । ସେ ଘରମଣି ମୁଣ୍ଡକୁ ଜଙ୍ଘ ଉପରେ ରଖି ବସିପଡିଲା । ଆଉଁସିଲା ତା' ବେକ, ବୁକୁ, ମୁଣ୍ଡ । କିନ୍ତୁ ତା'ର ସେ ଉଭାରି ରହିଥିବା ପେଟକୁ ଛୁଇଁଦେବାକୁ ତା'ର ସାହସ ହେଲା ନାହିଁ । ତାଙ୍କ ବସ୍ତିର ଛୋଟ ମହାଜନ ସୁବୁଦ୍ଧି ଘର ପାଣିଖିଆ ଖିଲାଣ କାନ୍ଥ ପରି ସେ ପେଟକୁ ଛୁଇଁବାକୁ ତାକୁ ଡର ମାଡିଲା । କାଳେ ଭୁସ୍ ଭୁସ୍ କୁଢେଇ ହେଇ ପଡିବ । ସେ କେବଳ ଡରିଲା ଡରିଲା ଆଖିରେ ଚାହିଁଲା ସେ ଟଳମଳ ପେଟକୁ । ତା' ଭିତରେ କୁଆଡେ ଛେଳିଛୁଆମାନେ ଭର୍ତ୍ତି ହେଇ ରହିଛନ୍ତି । ଖୁନ୍ଦିଖାନ୍ଦି ହେଇ ଅସଂଖ୍ୟ ଛେଳିଛୁଆ । ଠୋ' କିନା ସେ ଗର୍ଭ ଯଦି ଫାଟିଯିବ, ଛିଟିକି ପଡିବେ, ଆଖି ଫିଟି ନଥିବା, ନାଳ-ସରସର କଅଁଳା ଛୁଆଗୁଡିଏ ।

ସେ ଘରମଣିକୁ ଆଉଁସିଲା । ତାକୁ ଉଠେଇବାକୁ ଚାହିଁଲା । ଘରମଣି ଜମା ଉଠି ପାରିଲା ନାହିଁ । ବରଜାକୁ ଅତର୍କେ ଲାଗିଲା । ତାକୁ ଲାଗିଲା ଯେ ଘରମଣି ମରିଯାଉଚି । ସେ କିଲିକିଲିଆ ରଡି ଛାଡି ପାଖ କୁଡିଆକୁ ପଶିଗଲା । ତାଙ୍କ ନୂଆ ଶାଗ ପଟାଳିକୁ ଅଣାୟତ୍ତରେ ଚକଟି ପକେଇଲା । ଡାକ ଛାଡିଲା, "ଧାଇଁଆ, ହେ ଶୁକୁରୀ ନାନୀ; ଆମ ଘରମଣି ମରିଯାଉଚି !" ଶୁକୁରୀ ଓଦା ହାତରେ ଧାଇଁ ଅଇଲା । – "କିରେ କାଇଁ, ଦେଖି ଦେଖି ! ତାକୁ କ'ଣ ସାପ କାମୁଡି ଦେଲା କି ! ଆହା, କି ସୁନ୍ଦର ଛେଳି ଲୋ !" – ନସରପସର ସେ ଧାଇଁଯାଇ କ'ଣ ଦେଖିଲା କେଜାଣି, ବୁଲି ପଡି ବରଜାକୁ ଦି'ପଟା ଶୋଧି ଦେଇଗଲା, "ହଇରେ ଅଲକ୍ଷଣିଅ. କାଳତୁଣ୍ଡା, ନାଗମୁହାଁ ! ଘରମଣି କାହିଁକି ମରନ୍ତା ବା ? ସେ ପରା ପିଲା ପକଉଚି । ଧାଇଁ ଯା' ତୋ' ବା'କୁ ଡାକି ଆଣିବୁ । ମୁଁ ଜଗିଚି ।"

ବରଜା ଆଖି ତରାଟି ଚାହିଁଲା ଶୁକୁରୀ ନାନୀକ; ଚାହିଁଲା ଘରମଣିକୁ । ଭାବିଲା ପିଲା ପକେଇବ ଯଦି ମତେ କାଇଁ କହିଲା ନାହିଁ ? ଶୁକୁରୀ ନାନୀକୁ କାଇଁ ଆସୁ ଆସୁ କହିଦେଲା । କେମିତି କହିଦେଲା ? ସେ ଡାକିଲା ମେଁଃ-ଏଁ-ଏଁ ! ଘରମଣି ଉତର ନ ଦେଇ ଧକେଇଲା । ଶୁକୁରୀ ନାନୀ ଖେଙ୍କି ହେଲା, "କେତେ ଫୋକି କାଢୁଚୁକିରେ ? ତୁ ଯାଉନୁ ନା ଦେଖିବୁ ଅଇନେ ।"

ବରଜା ଡିଆଁ ମାରି ରାସ୍ତା ଉପରୁ ଥରଟେ ଫେରି ଚାହିଁଲା । ତା'ର ପ୍ରତ୍ୟୟ ହେଇଗଲା ଯେ ଶୁକୁରୀ ନାନୀ ଯାହା କହୁଚି ତାହାହିଁ ଠିକ୍ । ସେ ତା' ବାପ ପାଖକୁ ଯାଇ ତାକୁ ଡାକି ଆଣିବ । ସେ ଖୁସିରେ ରାସ୍ତା ଉପରେ ସାପେଇ ସାପେଇ ଧାଇଁଲା । ମଝିରେ ମଝିରେ ଡିଆଁଟାଏ ମାରୁଥାଏ । ହାତକୁ ତନ୍ତୀକଣ୍ଡା ପରି ଚମକଉଥାଏ । ଦୋର୍ଦ୍ଦଣ୍ଡିଆ ବରଜା ଉଲ୍ଲାସରେ ଯୋଡି ଛାଡିଥାଏ, କେମିତି ଯାଇ ତା' ବା'କୁ କହିବ ଯେ ଘରମଣି ପିଲା ପକଉଚି ।

X X X X

କଇଁଫୁଲ ପରି ଧଳା-ସରସର ଏଡେ ଛେଳିଛୁଆ! ବାପକୁ ସାଙ୍ଗରେ ନେଇ ବରଜା ଆସିଲା ବେଳକୁ ଘରମଣି ହମହମ ହେଇ ଚଟିଲାଗିଥାଏ ତାକୁ । ଶୁକୁରୀ ନାନୀ ତଳେ ବସି ଲିପିଲା ପରି କ'ଣ କରୁଥାଏ । କହିଲା, "ମଲାରେ, ଗୋଟେ ବୋଦା ପିଲା ପାଇଁ ଏଡିକି ପେଟ! ମତେ ଲାଗୁଥିଲା ଏଥର ଛ' କି ସାତ୍ ପିଲା ପକେଇବ । ସେଥିରୁ ମାଈଟାଏ ବାଛି ନବାକୁ ମୋର ମନ! କ'ଣ ନା, ଏଡିକି ଷଣ୍ଢ ଅଣ୍ଡିରା ପିଲାଟିଏ ପକେଇଲା ।" ସେ ଉଠିପଡି ଘରମଣି ପିଠିରେ ଗେଲରେ ବିଧାଟାଏ ବସେଇ କହିଲା, 'ଛୋପରୀ!'

ବରଜା ବାପ ମଧ ମନ ଉଣା କଲା ପରି କହିଲା, "ଏଥିରୁ ଗୋଟେ ଶଳା ହାଣମଙ୍ଗଳ ଜନ୍ମ ହେଲା! ଛାଡ, କ୍ଷୀର ମନ୍ଦେ ହେଲେ ବିକିବା । ଏ ସହରିଆ ଓଲୁ ଲୋକେ ତ ଛେଳିକ୍ଷୀର କହିଲେ ନାକ ଟେକୁଛନ୍ତି...ଦେଖିବା ।"

ବରଜା ଛେଳିଛୁଆର ନାଁ ଦେଲା ଚୁନିଆଁ, ସେ ଚୂକ ପରିକା ଧଳା ହୋଇଥିବାରୁ । ସାଇର ସବୁ ପିଲାଙ୍କୁ ଛାଡି ସେ ତାରି ସାଙ୍ଗେ କେବଳ ଖେଳିଲା । ଆସ୍ତେ ଆସ୍ତେ ଘରମଣି ସୁଦ୍ଧା ସେ ଦୁହିଙ୍କୁ ଏକାଠି ପହ୍ନା ଦେଖେଇ ଠିଆହେଲା । ଚୁନିଆଁ ଗୋଟାଏ ଚିରରୁ କ୍ଷୀର ଖାଇଲା ବେଳେ ବରଜା ତଳେ ପେଟେଇପଡି ଆର ଚିରକୁ ଚୁଚୁମିଲା । ମଣିଷ ପାଟି ବାଜିଲେ ଘରମଣି ପ୍ରଥମେ ଟିକିଏ ପେଟ ଖାଙ୍କେଇ ନେଉଥିଲା । କିନ୍ତୁ ସେ ତ' କୋଉଦିନୁ ବରଜାକୁ ସେମିତି କ୍ଷୀର ପିଆଇ ସାରିଥାଏ । ଏଣୁ କିଛି ଅସୁବିଧା ହେଲା ନାହିଁ । ଘରମଣି ପହ୍ନାରୁ ଅମୃତ ନିଗିଡି ଆସିବେଳେ ବରଜା ଆଖି ବୁଜି ଦେଉଥିଲା । ଚମକି ପଡୁଥିଲା ଯେତେବେଳେ ଚୁନିଆଁ କ୍ଷୀର-ଘରାକୁ ଲୋଡଗା କରିବାକୁ ମୁଣ୍ଡିଆ ମାରିଦେଉଥିଲା । ବରଜା ପାଟିରୁ ଚିର ଉପୁଡି ପଡୁଥିଲା, କ୍ଷୀର ଉତୁରି ପଡୁଥିଲା । ପୁଣି ତରବର ହେଇ ମୁହଁରେ ଦରାଣ୍ଡି ସେ ତାକୁ ପାଟିରେ ପୂରେଇ ନେଉଥିଲା । ମଝିରେ କ୍ଷୀର ଢୋକିଲା ବେଳେ ସେ ଛେଳି ଭାଷାରେ ଡାକୁଥିଲା ମେଁଃ-ଏଁ-ଏଁ । ଉତ୍ତରରେ ଘରମଣି ଦି'ପଦ ବୋବେଇ ଦେଉଥିଲା । ତାକୁ ଦୋହରାଉଥିଲା ଚୁନିଆଁ । ମଣିଷ ପିଲାର ଲାଞ୍ଜଥିଲେ କ୍ଷୀର ଖାଇବା ଉଲ୍ଲାସରେ ସେ ଟିପ୍ ଟିପ୍ କରିଥାନ୍ତା । ମାଖୁନା ଶିଙ୍ଗରେ ଭୁଷିଥାନ୍ତା ମା'ର ପେଟକୁ । ଘରମଣିର ପରିପୂର୍ଣ୍ଣ ସଂସାରରେ ଅସୁମାରି କଅଁଳିଆ କୋଳିପତ୍ରର ଅରଣ୍ୟ । ଥନ ଭାଙ୍ଗି କ୍ଷୀରପାନ ଦେବାକୁ କଳା ଧଳା ଦୁଇ ପୁଅ!

ବରଜା ବାପ ସକାଳୁ ଥରେ, ସଞ୍ଜରେ ଥରେ ଘରମଣିକୁ ଦୁହିଁପକାଏ । ଗସ ଡେକ୍‌ଚିର ମଙ୍ଗଯାଏଁ ଫେଣ ଗଜ୍‌ଗଜ୍ କ୍ଷୀର ସେ ଆଡେଇ ନେଇଯାଏ । ତାକୁ ନେଇ ସେ କ'ଣ କରେ ବରଜା ଜାଣେ ନାହିଁ । ବେଳେବେଳେ ଭାବେ ହୁଏତ ଲୁଚି ଲୁଚି ତା' ବା' ସେ ଭଙ୍ଗା କପ୍‌ରେ ସେତକ ପିଉଥିବ । କେଜାଣି! କିନ୍ତୁ ତା' ବା ଯେତେ ଚିପୁଡି ଦୁହିଁଦେଲେ ସୁଦ୍ଧା, ଘରମଣି କୋଉ ଖଞ୍ଜରେ ତା' ପୁଅମାନଙ୍କ ପାଇଁ କ୍ଷୀର ସଞ୍ଚ ରଖିଥାଏ । ଏମାନେ ପହ୍ନାରେ ମୁହଁ ଲଗେଇଲାମାତ୍ରେ କେଉଁ କନ୍ଦରା ଭିତରୁ ନିଗିଡି ଆସେ କ୍ଷୀରର ଛୋଟ ଝରଣାଟିଏ ।

ପାଖ ମୁଣ୍ଡିଆ ତଳ ଝରଣା ଯାଏଁ ବରଜା ଏକା ଏକା ଯାଇଛି । ଚୁନିଆଁ ଆଉ ଘରମଣିକୁ ସଜନାପତ୍ର ଖୁଆଇବାକୁ ସାଙ୍ଗରେ ନେଇ ଯାଇଛି । ସେଇଠି ଚୁନିଆଁ ସାଙ୍ଗରେ ସେ କେତେ ପ୍ରକାର ଖେଳିଛି । ତାକୁ କାଖେଇଛି, ତା' ବେକରେ, ଗୋଡରେ ନାଲି ଗୁଞ୍ଜମାଳ ପିନ୍ଧେଇଛି । ଫୁଲପତ୍ର ତୋଳି ହାତରେ ଖୁଆଇଛି । ଚୁନିଆଁ କୁକୁରପିଲାଟିଏ ପରି ବରଜା ପଛରେ ଡିଆଁ ମାରି ଗୋଡେଇଛି । ସେ ହୁଏତ ତା' ଢଙ୍ଗରେ ବୁଝିଯାଇଛି ଯେ ବରଜା ବଡଭାଇ; ବରଜା ତା' ସୋଦର ଆତ୍ମା । ବରଜା ଯେଉଁଆଡେ ଯିବ, ସେ ତା' ପଛେ ପଛେ ଯିବାକୁ ରାଜି । ବେଳେବେଳେ ତାକୁ ଚିଡେଇବାକୁ ପରାସ୍ତ କରାଇବାକୁ ବରଜା ବଟଗଛର ଶିଖଯାଏଁ ଚଢିଯାଇଛି । ଚୁନିଆଁ ଉପରମୁହାଁ ବୋବେଇଛି କେବଳ । ବରଜା ଖଟେଇ ହୋଇ ଦୁମୁଦୁମୁ ନାଚିଛି ସେ ଡାଳ ଉପରେ । ଆଉ ବେଳେ ଅଣ୍ଟାଏ ପାଣିରେ ନାଳ ପାରି ହେଇ ସେ ଆର କୂଳକୁ ଚାଲିଯାଇଛି । ଚୁନିଆଁ କିଛି ନ ବୁଝି କେତେ ବାଟ ପାଣିରେ ପଶିଯାଇଛି; କିନ୍ତୁ କାକର ପାଣି ଭିତରୁ ଚମକି ଫେରିଆସିଛି । ଛେଳିଜାତି ବିଚରା ! କେମିତି ବା ପାଣି କି ପଶିଯିବ ? ଏଣେ ବରଜା ଭାଇ ଦେହରେ ଲଟେଇ ହେବାକୁ ଭାରି ମନ । ଚୁନିଆଁ କେବଳ ଖୁରେଇ ହୁଏ । କାନ ଯୋଡିକୁ ଓହଳେଇ ଦେଇ ଅସହାୟ ଭାବରେ ଡାକେ, 'ମେଁଃ-ଏଁ-ଏଁ । ହୁଏତ କହେ, 'ମୁଁ ପରା ଛେଳିଟିଏ...ଛୁଆଟିଏ...ଭାଇଟିଏ...ମତେ ଏମିତି କରୁଚ ?' ବରଜା ତାକୁ ଚାହିଁ ଦି'ଚାରିଥର ବୋବାଏ । କ'ଣ ମନକୁ ପାଏ କେଜାଣି, ପାଣି ଚବର ଚବର କରି କେପା ମାରି ଆସେ । ଚନିଆଁକୁ ବୁକୁ ଉପରକୁ ଟେକିନିଏ । ତା' କାନକୁ ଦାନ୍ତାଏ । ଜୋର୍‌ରେ ଚିପିଦେବାରୁ ସେ ଛଟପଟ ହୁଏ, ରଡି ଛାଡେ । ଦୂରରୁ ଘରମଣି ପାଟି ଶୁଣାଏ, 'କିରେ, ତୋ ଭାଇ ପାକେ ଅଛୁଟି ? କାହିଁ ଏମିତି ବୋବାଳି ଛାଡୁଚୁ ?'

ଏମିତି କିଛିଦିନ ପାରିହୋଇଗଲା ।

ଚୁନିଆଁ ଦିଶିଲା କଳାଘୋଡା ପରି ଚିକଣିଆ । ବାଟରେ ଚାଲିଗଲା ଲୋକେ ତାକୁ ଲେଉଟି ଚାହିଁଲେ । ଯେତେବେଳେ ପାରିଲା, ଚୁନିଆଁ ଆଉ ଘରମଣି ପାଖକୁ ଦୌଡିଯାଇ ତା' ପହ୍ନା ତଳେ ଆଣ୍ଠେଇ ପଡି ଚିର ଆଡକୁ ଥୋମଣା ବଢାଇଲା ନାହିଁ । ସେ ଡାକିଲାବେଳେ ଆଉ କଅଁଳିଆ ସ୍ୱର ଶୁଭିଲା ନାହିଁ । କେମିତି ଗୋଟାଏ ଅଣିରା ଅଣ୍ଡିରା ମୋଟାଳିଆ, ବୋଦାଳିଆ ସ୍ୱର ଶୁଭିଲା । ବରଜା କିନ୍ତୁ ଆଗଭଳି ତାକୁ ନେଇ ଖେଳିବାକୁ ଚାହୁଁଥିଲା – ଭାଇ ଖେଳ, ମା' ଖେଳ । ତାକୁ ଗେଲ କରୁଥିଲା । କୁଣ୍ଢାଉଥିଲା । ଛେଳିଭାଷାରେ ଡାକୁଥିଲା । ବେକରେ ଗୋଡରେ ସୋରା ସୋରା ଗୁଞ୍ଜମାଳି ଯତ୍ନରେ ବାନ୍ଧୁଥିଲା । ଚୁନିଆଁ କିନ୍ତୁ ବରଜାକୁ ଦେଖି ଗେଲରେ ଆଡି ପଡେଇ ଗାରଡେଇ ଚାହୁଁଚି । ବରଜା ବସିଥିଲାବେଳେ ତା' ପଛରୁ ଆସି ଦୁଇଗୋଡ ଟେକି ତା' ଉପରକୁ ବଢିଯାଉଚି । ସେ ଏବେ କେମିତି ଗୋଟାଏ ହମହମ ହଉଚି । ପାଟି ନ ମେଲେଇ ଗଳା ଭିତରୁ ଗୁମ୍‌ଗୁମ୍ ଶବ୍ଦ କରୁଚି । ସେମିତି ଶବ୍ଦ କରି ସେ ଘରମଣି ପାଖରେ ଯାଇ ଖୁରେଇ ହଉଚି । ଘରମଣି କିଛି ନ ଜାଣିଲା ପରି ତଳକୁ ମୁହଁ କରି ଦୂବ ଗାମ୍ପୁଚି । ଚୁନିଆଁ ତା' ଉପରେ ଚଢିଗଲେ ସେ ଘୁଞ୍ଚିଯାଉ ନାହିଁ ।

କାହିଁକି କେଜାଣି ବରଜା ସେଦିନ ଚୁନିଆଁ ଉପରେ ଖୁବ୍ ରାଗିଯାଇଥିଲା । ସେ ତା'

କାନ୍ଧ ଉପରେ ଠିଆ ଠିଆ ବୋଦାଗୁମ ଗୁଡାକୁ ମୁଠେଇ ଧରି ଟାକୁ ଘରମଣି ଉପରୁ ଝିଙ୍କି ଆଣି ତଳେ ପକେଇ ଦେଇଥିଲା । ତାକୁ ମାଡିବସି ଖୁବ୍ କଷି କରି ବିଧା ଚାପୁଡା ବସେଇ ଦେଇଗଲା । ଚୁନିଆଁ ଛଟପଟ ହେଲା । ଉଧୁଳିରେ ବରଜାର ଜାବ ଭିତରୁ । କିଛିବାଟ ଦୌଡିଯାଇ ସେ ଡରିଲା ଡରିଲା ଆଖିରେ ବୁଲି ଚାହିଁଲା । ସେ ହୁଏତ ଦେଖିବାକୁ ଚାହୁଁଥିଲା ସେଇଟା ବରଜା, ନା ଆଉ କିଏ ! ବରଜା ଚମକିଗଲା ଚୁନିଆଁ ଆଡକୁ । ଚୁନିଆଁ ଘୁଞ୍ଚିଗଲା ଦୂରକୁ । ଚୁନିଆଁ ବୋଧେ ଦୁଇ ଗୋଡରେ ଧାଉଁଥିବା ସେ କାଳିଆ ଜନ୍ତୁଟାକୁ ଚିହ୍ନିପାରୁ ନଥିଲା । ବରଜା ତ ଛେଳି ନୁହେଁ । ସେ କେମିତି ତା' ଭାଇ ହେଇପାରିବ ?

ସେଦିନ ସନ୍ଧ୍ୟାରେ ବରଜା ବାପ ପ୍ରଚୁର ନିଶା ଖାଇ ଆସି ପହଞ୍ଚିଲା । ବରଜାକୁ ଝଲେବି ଖୁଆଇଲା । ଟଳମଳ ଗୋଡରେ ସେ ତଳପିଣ୍ଡାକୁ ଯାଇ ଅନେଇଲା । ଚୁନିଆଁ ସୋଇ ପାଗୁଳି କରୁଥାଏ । ଝପସରି ପରି ତା' ବେକରେ ତିନିସୋରା ଗୁଞ୍ଜମାଳି ଗାଉ ଗାଉ ଦିଶୁଥାଏ । ବରଜା ବାପ ନିଶା ଜୋର୍‌ରେ କୁଢେଇ ହେଲାପରି ବସିପଡିଲା । ଦାନ୍ତ ଜାବି ପବନ ଶୋଷିଲା । ଗଳା ଭିତରୁ କେମିତି ଗୋଟାଏ ଗୁମ୍‌ଗୁମ୍ ଶବ୍ଦ ବାହାର କଲା । ଚୁନିଆଁ ଚମକି ଉଠିଲା । ତା' ଗୋଡର ଖଟଣି ଦଉଡିଟା ନହେଲେ ସେ ଉଧୁଳି ପଳେଇଥାନ୍ତା ଅନ୍ଧାର ଭିତରକୁ ।

ବରଜା ଅନେଇଥାଏ ତା' ବାପାକୁ ! ସେ ଚୁନିଆଁର କମଳ ପଟାକୁ, ପଛ ଫଡିଆକୁ ମୁଠା ମୁଠା କରି ପକେଇଲା । ଦାନ୍ତ ସଂଧାରୁ କହିଲା, "ଇସ୍ ! କେତ୍‌ଡୁଟାଏ ହୋଇଚି ମ ଏ ଖଣ୍ଡ !" ପୁଣି ସେମିତି ପବନ ଶୋଷିଲା । କହିଲା – "ଯା ଦିହରେ ବାଲ୍‌ତିଏ ଚର୍ବି ଲାଗିଚି । – ଦି'ବୋଝ ମାଉଁସ ନଦି ହେଇଚି – ଇସ୍ ଇସ୍!" ବରଜା କିଛି ନ ବୁଝି କହିଲା, "ହିଁ!" – ସେ ଝଲେବିଟାକୁ ଚୋବାଉଥିଲା ।

ଚୁନିଆଁ ସାପ ଫଣା ପରି ମୁହଁ ଟେକି କାନ ଠିଆ ଠିଆ କରିଥାଏ । ତୁହାଇ ତୁହାଇ ଡାକୁଥାଏ ବିପତ୍ତି ପଡିଲା ପରି । ବରଜା ଜାଣେ ଡରିଗଲେ ଚୁନିଆଁ ସେମିତି ଡାକେ ! କାହିଁକି ଡରୁଥିଲା ଚୁନିଆଁ ? – କାହାକୁ ଡରୁଥିଲା ?

ବରଜା ହସିଲା । ଚୁନିଆଁ ବେକ ଉପରେ ଖପାଙ୍ଗ୍‌କିନା ଘୋଡା ବସିଲା ପରି ଟାକୁ ଧରିଲା । ତା' ମୁହଁକୁ ସାଉଁଳି ଟିପେ ହେବ ଝଲେବି ତା' ପାଟିରେ ଗେଞ୍ଜିଦେଲା । ସେ ଖଣ୍ଡ ପଡିଗଲା ତଳେ । ବରଜା ପୁଣି ଝଲେବି ଚୋବେଇ ହସିଲା । ଚୁନିଆଁ ତା' ବାପକୁ ଦେଖି ଡରିଗଲା । ଓଲୁଟା ! ଛେଳିଛୁଆଟା ! ବାପଟାକୁ କ'ଣ ଡରୁଚି ?

ତା' ବାପ ମଧ କେମିତି ଖିଙ୍କାରିଲା ପରି ହସିଲା । ଉଠିଗଲା । ତଣ୍ଟିରେ କଣ୍ଟା ଲାଗିଲେ ଟଳ ସାହିର କାଳିଆ ବୁଢା କୁକୁର ତଳକୁ ମୁହଁ କରି ସେମିତି ଶବ୍ଦ କରେ !

ବରଜା କେଡେ ଗେଲକଲା ଚୁନିଆଁକୁ । ଅନ୍ଧାର ଭିତରେ ଉଷୁମ ଲାଗିଲା ତା' ଦିହ । ଚୁନିଆଁ ପୁଣି ତା' ଦିହରେ ଲଟେଇ ହେଲା । ଏଇତ ତା' ଭାଇ । ଯାରି ସାଙ୍ଗରେ ସେ ମା' କ୍ଷୀର ଏକାଠି ଖାଇଚି । ବରଜା ତା' କାନକୁ ଦାନ୍ତେଇଦେଇ ଉଠିଆସିଲା । ବାପ ଡାକୁଥିଲା ଟାକୁ ।

ଚୁନିଆଁ ଭୂଇଁ ଶୁଙ୍ଘି ସେ ଝଲେବି ଟିକକ ଖାଇଦେଲା –

"ତୁ ଏସବୁ ବାଟ ତିଅଣ ଖାଇଦେ!" କହିଲା ବରଜାବାପ, "ମୁଁ ସିଆଡୁ ଖାଇଦେଇ ଆଇଚି! – ହେ, ହେ, ହେ,! ଆଇଲୁ ମୋ ପାଖକୁ। ଆ, ମୋ କୋଡରେ ବ। – ମୋ ବରଜା, ଲୋ, ମୋ ବରଜି...!"

ନିଶାରେ ତ ତାକୁ ଗେଲ କରୁଥାଏ। ତା' ଦିହକୁ ମୁଠା ମୁଠା କରୁଥାଏ। ବରଜା ଦିହରେ ବାଲ୍‌ତିଏ ଚର୍ବି ଲାଗିଛି ନା ନାହିଁ ବୋଲି କ'ଣ ସେ ଦେଖୁଥାଏ କି? ବରଜା ତା' ବାପ ମୁହଁକୁ ଚାହିଁ ହସିଲା। – ନିଶା ଖାଇଲେ ତା' ବାପ ସେମିତି କଉତୁକିଆ ଦିଶେ।

ସେଇଠୁ ତା' ବାପ ବହେ ଭାଡୁ ଭାଡୁ କାନ୍ଦିଲା। କହିଲା, "ମୋ ବରଜାର ମା' ନାଇଁ! ତାକୁ କିଏ ଦେଖାଚାହିଁ। କରିବ? – କିଏ ତାକୁ ବେଳ ସହଳ ଖୁଆଇବ – ଯତ୍ନ କରିବ? ...ବରଜା ମ! ମୁଁ ତୋ ପାଇଁ ଗୋଟେ ମା' ଆଣିବି। କାଆଲି ଆଣିବି! – ଦେଖିବୁ... ମୋ ବରଜି ଲୋ..." କହି ସେ ବରଜାକୁ ଜାକି ଧରି ଗେଲକଲା।

"ତୋ ମା' ଆଇବ ବୋଲି କାଲି ଭୋଜି କରିବା। ପାଞ୍ଚ ହାଣ୍ଡି ଭାତ ରନ୍ଧାହେବ। – ମାଉଁସ ହବ ତିନି ହାଣ୍ଡି! – ଯେ ସେତେ ଖାଇଲା।"

ବରଜା କୁରୁଳିଲା। ସତେ ନା...ଭୋଜି ହବ? ଭାତ ମାଉଁସ ହବ– ? କି ବଢିଆ!!

ସେ ସେଇ କଥା ଭାବି ଭାବି ଶୋଇଗଲା। ଭାରି ଘମାଘୋଟ ନିଦ।

X X X X

ତା'ପରଦିନ ଗୁମ୍‌ଗୁମ୍ ସକାଳ। ବରଜା ଉଠିବା ଆଗରୁ ତା' ବାପ ଉଠିସାରିଥିଲା। ତାଙ୍କ ଅଗଣାରେ ସାଇର ଅଣ୍ଡିରା ମାଇକିନିଆମାନେ ଖାଲି ପାଦରେ ଖସର୍ ଖସର୍ ଚାଲୁଥିଲେ। କ'ଣ ସବୁ କଥା ହେଇ ହସୁଥିଲେ। ବରଜା ଉଠୁ ଉଠୁ ଶୁକୁରୀ ନାନୀ ଗେଲରେ ଉଛୁଳି ଉଠିଲା। ...'ଉଠିଲୁ କି ରେ ବାପ? ...ଆଇଲୁ, ଆଇଲୁ, ତତେ ଆଗ ମୁଁ ପୋଛା ପୋଛି କରି ଚିକ୍‌କଣ କରିଦିଏ!'

ଶୁକୁରୀ ନାନୀ ତା' ଡେଣା ଧରି ନିଜ ଘରକୁ ନେଇଗଲା। ମୁଣ୍ଡେ ହେବ ତେଲ ଲଗେଇ ଦେଇ ପାଣି ମାରି ମୁହଁ ଧୋଇଦେଲା। ହାତଗୋଡ ଧୋଇ ପୋଛିଦେଲା। ପୋଛିଲା ବେଳେ ବାହୁନି ହେଲା, "ମୁଁ ମରିଯାଉଥେ କି! ମା'ଖିଆ ପିଲା ବୋଲି ସିନା ଏଡିକି ହୀନିମାନ ହେଇଚି। କେଡେ ସୁନ୍ଦର ପୁଅ ଆମ ବରଜୁ!" – ବରଜାକୁ ସଲସଲ ଲାଗୁଥାଏ। କଉତୁକିଆ ଲାଗୁଥାଏ। ଶୁକୁରୀ ନାନୀ ତା' ଦିହରୁ କେତେଦିନର ଛେଳିଗନ୍ଧ ପୋଛିଦଉଥାଏ। ବିଧେ ବହଳର ଧୂଳିମଲି ଝାଡିଦେଉଥାଏ।

ବରଜାକୁ ବେଶୀ ଗେଲ ସୁଖ ଲାଗେ ନାହିଁ। ସେ ଛଟେଇ ପଟେଇ ହେଲା ପଳାଇବାକୁ। ତାକୁ ଶୁକୁରୀ ନାନୀ ଖଣ୍ଡେ ଛକି କନାର ପେଣ୍ଟ ପିନ୍ଧେଇଦେଲା। ନାଲି ଗେଞ୍ଜିଟିଏ ପିନ୍ଧେଇଦେଲା। କହିଲା, "ତୋ ନୂଆ ମା' ତୋ ପେଇଁ ପଠେଇଚି – ଭଲ ମା'ଟିଏ!"

ବରଜାର କ'ଣ ମନ ପାଇଲା କେଜାଣି, ଖଲଖଲ ହୋଇ ହସିଲା । ଉଧୁଳି ପଳେଇଲା ଶୁକୁରୀ ନାନୀ ପାଖରୁ । ଏ ନୂଆ ଜାମା ପିନ୍ଧି ଚୁନିଆଁ ସାଙ୍ଗରେ ଗୋଟାଏ ଚୂହା ଡେଇଁବାକୁ ତା' ମନ । ସେ ଧାଇଁଗଲା ତଳପିଣ୍ଡାଯାଏଁ । ଦେଖିଲା ସେଇଠି ଚୁନିଆଁ ନାହିଁ । ଘରମଣି ବରଜାକୁ ଦେଖି ଦି'ଥର ବୋବେଇଲା । ପଗ୍ଗରିଲା ହୁଏତ – "କିରେ, ତୁ ତ ଅଛୁ, ତୋ ଭାଇ କାହିଁ ?" ବରଜା ତା' ଥୋମଣାକୁ ଟିକିଏ ଚିପିଦେଇ ଚାହିଁଲା ଚାରିଆଡକୁ । ଚୁନିଆଁର ଗୋଡ ଖଟଣି ଫାଶ ଫୁଗୁଳି ପଡିଚି । ନିଷ୍ଟେ ସେ ବଜାତ୍ କୁଆଡେ ଯାଇ ଡିଆଁ ମାରୁଥିବ ।

ତାଳସାହି, ଉପର, ନାଳକୂଅ, ପଡିଆ, ଗୋହିରି, ମୁଣ୍ଡିଆତଳ ସବୁଆଡେ ଖୋଜି ଆସିଲା ବରଜା । ସକାଳୁ ସକାଳୁ କାକରରେ ବୁଲିଆସିବାରୁ ତାକୁ ଚେଙ୍ଗା ଲାଗିଲା । ଛନଛନ ଲାଗିଲା । ସେ ମଝିରେ ମଝିରେ ରହି ଡାକିଲା, "ମେଃ ଏଁ...ଏଁ...ଏଁ – ଚୁନିଆଁ ହେ...ଚୁନି...ଆରେ ଚୁନମୁନ୍ ।" ତା'ପରେ କାନେଇ ରହିଲା । ଚୁନିଆଁର ସ୍ୱର ଶୁଭିଲା ନାହିଁ । ତା' ଭାଇ ଡାକର ଉତ୍ତର ସେ ପାଇଲା ନାହିଁ ।

ତାଙ୍କ ଅଗଣାରେ ସାହିର ସବୁଲୋକ ଖିସର ହଉଥାନ୍ତି । ଏଡେ ବଡ ଅହିଆ ଜଳୁଥାଏ । ତା' ଉପରେ କଳା ମଚ୍‌ମଚ୍ ଏଡେ ହାଣ୍ଡି । ଶୁକୁରୀ ନାନୀ କ'ଣ ଗୁଡାଏ କାଟିଲାଗିଥାଏ । ତା' ପାଖଘର ମାଇକିନା ପିଆଜ କାଟୁଥାଏ, ଆଳୁ କାଟୁଥାଏ । ସେ ଗହଳି ଭିତରେ ବରଜା ତା' ବାପକୁ ଠାବକଲା । ସେ ଟାଉଟାଉ ଆଡ ହୋଇ ଯାଉଥିଲା । ବରଜା ବାଟଜଗି ତା' ମୁହଁକୁ ଚାହିଁ କହିଲା, "ବା'ମ ! ଆମ ଚୁନିଆଁ କୁଆଡେ ପଳେଇଚି । ମୁଁ ସବୁଆଡେ ଖୋଜି ଆଇଲିଣି । ପାଇଲି ନାହିଁ ।"

ତା' ବା ଟିକିଏ ରହିଗଲା । ତା'ପରେ ଏଡେ ପାଟି କରି ମୁହଁ ଉପରକୁ ଟେକି ହୋ-ହୋ ଖାଲି ହସିଲା । ଇସ୍, କେଡେ ଭୟଙ୍କରିଆ ଶୁଭୁଥିଲା ସେ ହସ ! ବରଜା ତାକୁ ଚାହିଁଥାଏ । ତା' ବାପ କିଛି ନ କହି ସେମିତି ହସି ହସି ଆଡେଇ ହୋଇଗଲା ।

ବରଜାକୁ ଚିଡିମାଡିଲା । ଆଶ୍ଚର୍ଯ୍ୟ ଲାଗିଲା । ତା' ବାପ ସେମିତି କାହିଁକି ହସିଲା ? ଚୁନିଆଁ ମିଳୁନାହିଁ ଶୁଣି ସେ ତ କାହିଁ ଚମକିଲା ନାହିଁ, ଖେଙ୍କିଲା ନାହିଁ, "ଯା ବେ ଟୋକା, ତାକୁ ଖୋଜି ବାହାର କରିବୁ । ମତେ ଆସି କ'ଣ କହୁଚୁ ?" ତା' ନ କରି ସେ ଖାଲି ହସିଲା । କାହିଁକି ? – ସେ କ'ଣ ଜାଣିଚି ଚୁନିଆଁ କୁଆଡେ ଯାଇଚି ?

ବରଜା ତା' ବାପକୁ ପୁଣି ବାଟ ଜଗି ଠିଆହେଲା । କହିଲା, "ତୁ କାହିଁ କହୁନୁ ଚୁନିଆଁ କୁଆଡେ ଗଲା ? – ତୁଇ ତାକୁ କୁଆଡେ ଛାଡିଦେଇଚୁ ! କହ ମତେ, ମୁଁ ଚୁନିଆଁ ପାଖକୁ ଯିବି ।"

ବରଜା ବାପକୁ ଏ ପାଖରୁ ସେ ପାଖରୁ ଲୋକ ଡାକପକେଇଲେ । ସେ ଧିସି ହେଲା ଯିବାପାଇଁ । କିନ୍ତୁ ହାତ ଓସାରି ବାଟ ଜଗି ବରଜା ଠିଆହେଇଚି ତା' ଆଗରେ । ସ୍ୱରରେ ଏକା ଜିଦି – "କହ ଚୁନିଆଁକୁ କାହାକୁ ଦେଲୁ ? ମୁଁ ତା' ପାଖକୁ ଯିବି ।"

ବରଜା ବାପ ତାକୁ ଦୁଇଥର ଝୁଣ୍ଟିଲା । ତା' ରାଗ ଚଢିଗଲା ତାଳୁକୁ । ତା' ଆଖି ରଙ୍ଗ-ଚହଚହ ହୋଇ ଉଠୁରି ପଡିଲା । ସେ ଛାଣ୍ଡିଦେଲା ବରଜାକୁ: "ଆରେ, ଯାଃ, ଯୁଆଡେ ମନ

ସିଆଡେ! – କାଇଁ କାଚୁରୁ କାଚୁରୁ ଲଗେଇଚୁ? ସେ ଶଳା ବୋଦାପିଲାଟାକୁ କ'ଣ ମୁଣ୍ଡରେ ବୋହି ବୁଲୁଥାନ୍ତି। ତାକୁ ମୁଁ ଚଣ୍ଡିଆ କଂସେଇ ପାଖରେ ବିକ୍ରି କରିଦେଲି। ସେ ପାହାନ୍ତିଆରୁ ଆସି ନେଇଗଲା। ଗଲା ତ ଗଲା, କୋଉ ଭାସିଗଲା। ତୁ – ହାରାମି ଟୋକା କାଇଁକି କାଉଲୁ-କାଉଲୁ ହଉଚୁ...ଯା'ଶଳା ତୁ ଯେବେ ଯିବୁ ସେଠିକି। ଉଠ୍, ବାଟ ଛାଡ୍!"

ବରଜା ହାତ ଦୁଇଟିକୁ ଓହଳାଇ ତା' ବାପର ପିଠିକୁ ଚାହିଁଲା। ଭୋଜି ପାଇଁ ଧାଁ-ଧପଡ ଭିତରେ ସେ ବଡମଣିଷମାନଙ୍କୁ ମିଶେଇ ସେ ପିଠିକୁ ଚାହିଁଲା। ଆସ୍ତେ ମୁହଁ ତଳକୁ କରି ରାସ୍ତା ଉପରକୁ ଉଠିଗଲା। କେହି ତାକୁ ଦେଖିପାରିଲେ ନାହିଁ। ସେତେବେଳେ।

ବସ୍ତି ସାମନାରେ କଂସେଇଶାଳକୁ ଘେରି କଣ୍ଟାବାଉଁଶର ନିଘଞ୍ଚ ବାଡ। ବାଡିପଟ ନାଳରେ ନାଳି ନାଳି ପାଣି। ସେଇଠି ଭେଳାଏ ଅସନା ମାଟିରଙ୍ଗର ଧୋକତା କୁକୁର। ତିନିଟା ବିଶାଳ ତେନ୍ତୁଳି ଗଛର ଧୂମାର ଛାଇ ସେ କଂସେଇଶାଳକୁ ଆବୋରି ରଖିଥାଏ। ରାତି ସରିଆସିଲା ବେଳକୁ ସେ ଭିତରୁ ବିଭିନ୍ନ କାନ୍ଦଣା ଶୁଭେ। ଦିନସାରା ସେ ଅଞ୍ଚଳ ନିସ୍ତବ୍ଧ।

ଛକ ପେଣ୍ଟ ଆଉ ନାଲି ଗେଞ୍ଜିଟିଏ ପିନ୍ଧି ବରଜା ସେ ଅଗମ୍ୟ ଇଲାକା ଆଡେ ଚାଲିଥାଏ। ତା' ମୁହଁ ଉପରେ ସକାଳ ଖରା ଚିକ୍ ଚିକ୍ ଦିଶୁଥାଏ। କେହି କୁଆଡେ ନଥାନ୍ତି। ବରଜା ପାଇଁ ସେଇଟା ଗୋଟାଏ ଦୂରସ୍ଥ ଭୟ। ହେଇ ଯେ ଅଧେ ଦିଶୁଚି, ଅଧେ ଦିଶୁନାହିଁ – ସେଇଟା ଚଣ୍ଡିଆର କଂସେଇଶାଳ। ଯେଉଁଠି ଗୋଟା ଗୋଟା ଜନ୍ତୁ ତା' ଯମଦାଢରେ ଗଡଗଡ ହେଇ ହଣାହୁଅନ୍ତି ପ୍ରତିଦିନ। – ବାବା, ସେଠିକି ଯାଏ କିଏ?

ବରଜାର ପାହୁଣ୍ଡଗୁଡିକ ଛୋଟ; କିନ୍ତୁ ନିଧଡକ। ଟିକିଏ ବି ଏପଟ ସେପଟ ନଡବଡ ହଉ ନଥାଏ। ଦୃଷ୍ଟି ସ୍ଥିର। ସେ ଯିବ ଚଣ୍ଡିଆ କଂସେଇ ପାଖକୁ। ତା' ବାପ ତାକୁ ପଠେଇଚି।

କଂସେଇଶାଳରେ ପଶିବାକୁ ଗୋଟାଏ ଓସାର ଖଳାବାଡିର ଦୁଆର ପରି କଣ୍ଟାବାଉଁଶର ଟାଟି ତାକୁ ଆଡେଇଯିବାକୁ ବରଜାର ଆୟତ୍ତ ନାହିଁ। ସେ ସେଇଠି ପହଞ୍ଚି ଚାରିଆଡକୁ ଚାହିଁଲା। କେହି କୁଆଡେ ନଥିଲା ପରି ତାକୁ ନିଃଶବ୍ଦ ଲାଗିଲା। ତା' କାନମୁଣ୍ଡା ଝିମ୍‌ଝିମ୍ କଲା। ସେ ସ୍ଥିର ହୋଇ ପୁଣି ଚାହିଁଲା ସେ ଉଚ୍ଚ ବାଉଁଶ ବାଡ ଆଉ ଟାଟିକୁ। ତା'ପରେ ଆସ୍ତେ ସେଇଠି ବାଟଜଗି ଚକାଟିଏ ପକେଇ ବସିଗଲା। ଚୁନିଆଁ ଯଦି ତାଏ ବାହାରିବ; ଚଣ୍ଡିଆ ଯଦି ଥାଏ ବାହାରିବ!

ବାଡିପଟେ କୁକୁର ଭେଳାଟା ଭାଉ ଭାଉ ହୋଇ ରଡିକଲେ। ବରଜା ତା'ର ସବୁ ଜୋର ଖଟେଇ ଭିତରର ନାଡଗୁଡାକୁ ସମ୍ଭାଳି ନେଲା। ସେମିତି ସ୍ଥିର ହୋଇ ବସି ରହିଲା ଅପେକ୍ଷାରେ।

ବେଳ ଦୁଇଘଡିସରିକି ତାକୁ ଭୋକ କଲା। ଶୋଷ କଲା। ଖରାକାଟିଲା। ସେ ସେମିତି ବସିଥାଏ। ଆହୁରି ଘଡିଏ ବିତିଗଲା। ସେ ସ୍ଥିର କଲା ଯେ ପାଟିକରି ଡାକିଦେବ! ଏମିତି କାଠଗଣ୍ଡି ପରି ନିଃଶବ୍ଦ ଅଞ୍ଚଳକୁ ତା' ଡାକରେ ଦୋହଲେଇ ଦେବ। ସେ ଡାକିବାକୁ ଯାଉଚି, ଭିତରୁ ପାଦଶବ୍ଦ ଶୁଭିଲା। ଦୁମ୍‌ଦୁମ୍ ପାଖେଇ ଆସୁଥିବା ପାଦଶବ୍ଦ।

ମଡମଡ ହେଇ ଆଡେଇ ହେଇଗଲା କଣ୍ଟାବାଉଁଶର ସେତେ ବଡ ଟାଟି। ବରଜା ଦେଖିଲା

କଳା ଓସାର ହାଣ୍ଡିଟାଏ ପରି ଗୋଟାଏ ମୁହଁ । ଥୋପି ପଡିଲା ପରି ଆଖି । ଝୁମ୍ପୁରା ବାଳ । କଟଗା ନିଶ । ତା' ଉଭାରୁ ମେଲା ବୁକୁ ଉଭାରି ମାରଣା ଷଣ୍ଢ ପରି ଭୟଙ୍କର ସେ ରୂପ । ଏଇ ତାହେଲେ ଚଣ୍ଡିଆ କଂସେଇ । ଯାକୁ ଦେଖିଲାମାତ୍ରେ ସମସ୍ତଙ୍କର ଅତର୍କପଣ ଯଥାର୍ଥ ।

ବରଜା କିନ୍ତୁ ସ୍ଥିର ହୋଇ ବସିରହିଲା । କେତେ ଗଉଁ ସେ ଟୋକାର ସତେ ! ଚାହିଁରହିଲା ଚଣ୍ଡିଆକୁ । ଚଣ୍ଡିଆ ଟାଟି ଲଗେଇ ବୁଲିପଡିବାରୁ ଆଗ ଦେଖିଲା ଶଶାଛୁଆଟିଏ ପରି କିଏ ସେଇଠି ସେମିତି ବସିଚି । ସେ କ'ଣ ଛେଳିଟାଏ ସେମିତି ଦିଶୁଛି ?

ବରଜା ଆଗରେ ଗୋଡ ଫରକଟେଇ ଅଣ୍ଟାର ହାତ ଦେଇ ଚଣ୍ଡିଆ ଠିଆହେଲା । କହିଲା "କିରେ ଟୋକା, ଏଠି ବସି କ'ଣ କରୁଚୁ ?"

ବରଜା ଠିଆହେଇପଡି ତା' ଆଖିକୁ ଚାହିଁଲା । ନିର୍ଭୟରେ କହିଲା, "ତମେ କ'ଣ ଚଣ୍ଡିଆ କଂସେଇ ?"

ଚଣ୍ଡିଆ ଉତ୍ତରରେ ନୀରବ ମଇଁଷି ଭଳି ତା' ଖୋପି ପରି ମୁଣ୍ଡଟାକୁ ଟୁଙ୍କାରିଲା ।

"ତମେ କ'ଣ ସବୁ ଛେଳିଛୁଆଙ୍କୁ ଏ କଣ୍ଟାବାଡ ଭିତରେ ଗଡଗଡ କରି ହାଣିପକାଅ ?"

ପୁଣି ସେ ମୁଣ୍ଡ ତଳଖୁ ଉପରକୁ ହେଲା । ପାଟି ଫିଟିଲାନାହିଁ । ରଙ୍ଗ ଚହଚହ ଆଖିରେ ପଲକ ପଡିଲା ନାହିଁ । ମାରଣା ଷଣ୍ଢପରି ସେ ରୂପରେ ଆଉ କୌଣସି ଅଙ୍ଗ ହଲିଲା ନାହିଁ ।

"ତମେ ଆମ ଚୁନିଆଁକୁ ଆଜି ପାହାନ୍ତାରୁ ଏ ଭିତରକୁ ନେଇଚ ?"

ଏଥର ସେ ନିଶ ଟେକି ହେଲା । ପାଟି ଫିଟିଲା । ଗୁମ୍ଫା ଭିତରୁ ଶୁଭିଲା – "ଚୁନିଆଁ ? – ସେଇଟା କିଏ ?"

"ଚୁନିଆଁକୁ ଜାଣିନାହିଁ ? – ଚୁନିଆଁ ଧୋବ-ଫରଫର ଚିକ୍‌କଣ ଛେଳିଛୁଆ । ତା' ଆଖି କହରା । ତା' ବେକରେ ଗୁଞ୍ଜମାଳି । ସେ ମୋ ସାଥିରେ ମୁଢିଖାଏ । ମୁଁ ତା' ସାଥିରେ କ୍ଷୀର ପିଏ । ସେ ମୋ ଭାଇ । ତାକୁ କ'ଣ ତୁମେ ଆଣିଚ ?"

ବରଜା ଦେଖିଲା ଯେ କାନ୍ଥପରି ଓସାର ସେ ପେଟ ଆଉ ବୁକୁ ଥଲ୍‌ଥଲ୍ ହେଇ ନାଚିଲା । ହୁଡା ହୁଡା ହେଇ ଲହଡି ଭାଙ୍ଗିଲା । ଆଉ ସେ ନିଶତଳ ଗୁମ୍ଫା ଭିତରୁ ଗବ୍‌ଗବ୍ ହେଇ ହସ ଫୋପାଡିହେଲା ଚତୁର୍ଦ୍ଦିଗ । ଆକାଶକୁ ମୁହଁ ଟେକି ଟହଟହ ହସିଲା ଚଣ୍ଡିଆ । ଭୂଇଁ ଦୁଲୁଦୁଲୁ ହେଲା ତା'ର ସେ ହସରେ । ମେଘ ଘଡଘଡି ପରି, ପାହାଡ ଧସିଗଲା ପରି, ଗଛ ଉପୁଡି କୁଢେଇ ହୋଇପଡିଲା ପରି ସେ ହସ । ବରଜାର ପଞ୍ଜୁରୀ ଲଗାତ୍ ଫଡ୍‌ଫଡ୍ ହେଉଥାଏ । ସେ ଟଟକା ହେଇ ଅନେଇଥାଏ ସେ ମହାପ୍ରଳୟକୁ ।

ଚଣ୍ଡିଆ ତୁହାକୁ ତୁହା ଦମ୍ ନେଇ ତିନିଥର ସେମିତି ହସିଲା । ତା' ମୁଁ ଦେହ ଜକେଇଗଲା ଝାଳରେ । ବରଜାକୁ ଆଶ୍ଚର୍ଯ୍ୟ ଲାଗିଲା । ସେ ଭାବିଲା ଯେ ଆଉ ତିନିଥର ଏମିତି ଗାହାଟେକି ହସିଦେଲେ ବୋଧେ ଚଣ୍ଡିଆ କଂସେଇ ମରିଯିବ । ତା'ର ସେ ବିଶାଳ ବପୁ ଗଡଗଡ ହେଇ ଭାଙ୍ଗିପଡିବ ।

ସେ ବରଜାକୁ ପାଣି ଡବଡବ ରଙ୍ଗିଲା ଆଖିରେ ଚାହିଁଲା, "ତୁ କ'ଣ ଏଠୁ ସେ ବୋଦାପିଲାକୁ ଫେରେଇ ନବାକୁ ଆସିଚୁ ? – ବେକୁବ୍ ବଛା ! ଏଠୁ କେହି ଫେରିଯାଏ ନାହିଁ । ...ଛେଳିଟାଏ ସଫା କରିବାକୁ ଚଣ୍ଡିଆକୁ ଦି'ମିନିଟ୍ ଲାଗେ ନାହିଁ । ଉପରୁ ଚମମୁଣାଟାକୁ ଉଲାରି ଦେଲେ ପଞ୍ଜୁରିଟାଏ ଦିଶେ । ପଞ୍ଜୁରି ଭିତରେ ସବୁ ଏକା । କଣ୍ଟାରୁ କଣ୍ଟାକୁ ଖଞ୍ଜା ଖସେଇଦେଲେ ଗୋଟିଏ କୁଢ ହେଇଯାଏ ମାଟି ଗୋଡି ପାଣିପରି ।"

ବରଜା ସାହସ ପାଇଲାପରି ପଚାରିଲା, "କାଇଁକି ତମେ ସେମିତି କର ?"

ଚଣ୍ଡିଆ କଉତୁକରେ ଆଖି କୁଞ୍ଚେଇ ଦାନ୍ତ ନିକୁଟିଲା । କହିଲା "ସେଇଟା ଗୋଟାଏ ଗୁମର କଥା ।" – କିଛି ସମୟ ଥମିଯାଇ କହିଲା ଅତି ବିଶ୍ୱାସରେ, "ମତେ ଜଣେ କହିଚନ୍ତି ଯେ ସେ ପଞ୍ଜୁରି ଭିତରେ ପକ୍ଷୀଟିଏ ଥାଏ । – ଏଇ...ଟିକି ଚଢେଇଟିଏ ! – ମୋ ବୁଢା ଆଙ୍ଗୁଠିପରି ! ମୁଁ ସେ ଶାଲା ଚିଡିଆକୁ ଏ ଯାଏଁ ପାଇନାଇଁ । ଅସୁମାରି ପଞ୍ଜୁରିକୁ ଟିକି ଟିକି କରି ଫଟେଇଚି ! – ଛେଳି ଛୁଆଟାକୁ ଧରିଦେଲେ ସେ ଚଢେଇ ତା' ଭିତରେ ଫଡ୍‌ଫଡ୍ ହଉଥାଏ । ଫିଟେଇଦେଲେ କେମିତି ମାର୍ଗେ ଫୁର୍‌କରି ଚାଲିଯାଏ, ମୁଁ ଧରିପାରେ ନାହିଁ !"

ବରଜାକୁ ଲାଗିଲା କଥାଟା । "ଚୁନିଆଁ ଭିତରେ ବି ସେମିତି ଗୋଟାଏ ଚଢେଇ ଥିଲା ନାଁ କ'ଣ ! ତା' ବୁକୁ ପାଖରେ କାନ ଦେଲେ ଦୁକ୍‌ଦୁକ୍ କରୁଥିଲା; ମୁଁ ଜାଣିଚି । ତମେ କ'ଣ ତାକୁ ଫିଟେଇ ତା' ପଞ୍ଜୁରି ଭାଙ୍ଗିଦେଲ ? କ'ଣ ପାଇଲ ତା' ଭିତରୁ ? – ମତେ ଟିକିଏ ଦେଖେଇବ ନାଇଁ ଚୁନିଆଁକୁ ?"

ଚଣ୍ଡିଆ ହଠାତ୍ ଗମ୍ଭୀର ହେଇଗଲା । କହିଲା, "ହେ ଟୋକା ! ତୁ ବେଶୀ ବକ୍‌ବକ୍ କରୁଚୁ ! ତୁ ମତେ ସେଇ ଛେଳିଛୁଆ ପରି ଦିଶିଲୁଣି । ଖବରଦାର ! ମୁଁ ତତେ ଗୋଟେ ବଢିଆ ଜିନିଷ ଦଉଚି, ନେଇଯା ! ଚୁନିଆକୁ ଖୋଜିଲେ ତୁ ପାଇବୁ ନାହିଁ, କି ମୁଁ ପାଇବି ନାଇଁ । କିନ୍ତୁ ଏଇଟା ମୁଁ ପାଇଚି । ତୁ ତାକୁ ନେଇଯା ।"

ସେ ତା' ଅଣ୍ଟିରୁ ତିନିସୋରା ନିଆଁରଡ ପରି ଗୁଞ୍ଜମାଳି କାଢି ବରଜା ଆଗରେ ଟେକିଧରିଲା । ବରଜା ଚାହିଁରହିଲା ଚିହ୍ନିଲା ପରି, ନ ଚିହ୍ନିଲା ପରି !

ଚଣ୍ଡିଆ କଂସେଇ ବରଜାର ଡେଣା ଧରି ବସ୍ତିଆଡକୁ ଯାଉଥିବା ରାସ୍ତାମୁଣ୍ଡରେ ଠିଆ କରେଇଦେଲା । ଚାହିଁଲା କଟମଟ ତା' ଆଖିକୁ । ନାଲିଗଞ୍ଜିର ବୁକୁ ମୁଣାରେ ସେ ତିନିସୋରା ଗୁଞ୍ଜମାଳି ପୂରେଇ ଦେଇ ବରଜାକୁ ପଛଆଡୁ ଆସ୍ତେ ପେଲିଦେଲା ଆଗକୁ । ବରଜା ଘୁଷ୍ଟିଗଲା ପାଞ୍ଚପାହୁଣ୍ଡ । ତା'ପରେ ପଛକୁ ନ ଚାହିଁ ଗୋଟିଏ ଗୋଟିଏ ଚାଲିଲା ଆଗକୁ ।

ବାଟରେ ଥରେ ବୁକୁ ଉପରେ ହାତ ବୁଲେଇ ଆଣିଲା । ତା' ଭିତରେ କ'ଣଟାଏ ଗୁରାଣ୍ଡି ହେଇଗଲା । – ଚୁନିଆଁ କାଇଁ ? – ଘରମଣିର ଗୋରା ପୁଅ ? ମୋ ଭାଇ ? ଏ ତିନିସୋରା ଗୁଞ୍ଜମାଳି କ'ଣ ଚୁନିଆଁ ?



# କୌରବ

ଫୁଲଗଛଟା କାହା ଭାଗରେ ପଡିବ ଜଣା ପଡୁ ନଥାଏ । ପଟୁଆରି ଫିତା ପକେଇଲା ପରେ ଯାହା ଆଡେ ମୂଳ ଆସିଗଲା ତାରି ଭାଗରେ ତ ପଡିବ । ସାନଭାଇ କିନ୍ତୁ କହୁଛି ଯେ ତା' ଆଡକୁ ଲମ୍ବିଥିବା ସବୁଯାକ ଡାଳ ସେ ହାଣିଦବ । ଆଉ ଯଦି ଗଛଟା ତା' ଆଡେ ପଡିଯାଏ ତେବେ ମୂଳରୁ ହାଣିଦବ ।

ସେ ଏଇଲାଗ୍ ଖୁବ୍ ବେଖାତିର୍ ବୁଲିପାରୁଛି; ବେଖାତିର୍ କଥାବାର୍ତ୍ତା କରିପାରୁଛି । ଭାଇନା କହିଲେ ଯେଉଁ ଭୂତଭୟ ତାକୁ ମଡେଇ ହେଇ ପଡୁଥିଲା, ତା' ଆଉ ନାହିଁ । ସୌରୀ ମହାପାତ୍ର ଏଇନେ ଏ ସହରର ଯେକୌଣସି ଗୋଟିଏ ଲୋକ । ତାକୁ ଦେଖିଲେ ମୁହଁ ପୋତି ଆଡ ହୋଇଯିବାର ପ୍ରୟୋଜନ ନାହିଁ । ଦୂରରୁ ଦେଖିଲେ ଦି'କଳ ଶୋଷିଥିବା ସିଗ୍ରେଟ୍‌ଟାକୁ ପଛଆଡିଆ ଫୋପାଡିଦେବାର ପ୍ରୟୋଜନ ନାହିଁ; ବରଂ ତାକୁ ଦେଖି ନ ଦେଖିଲା ପରି ମନୀଷ ଦତ୍ତ, ସୁର ଚୌଧୁରୀ, କିମ୍ବା ଆଉ ଯେ କେହି ଜଣକ ସାଙ୍ଗରେ ଖୁବ୍ ପାଟିରେ କଥାବାର୍ତ୍ତା କରି ଧୂଆଁ ଛାଡି ସେ ଚାଲିଯାଇପାରେ । କପୁର୍ ଦୋକାନରେ ଖୋଲାଖୋଲି ଦିନବେଳେ ଗପ କରିପାରେ । କପୁର ବିଦେଶୀ ମଦ ବିକିଲା ବୋଲି କ'ଣ ପାପ କରିଦେଲା ? ସେ ଲକ୍ଷପତି । ତା'ର ଦୁଇଟା ମଟର ଗାଡି ! ତିନିଟା କୋଠା !! ଚାରିଟା ଆଲ୍‌ସେସିଆନ୍ କୁକୁର !! ତା' ଦୋକାନକୁ ସବୁ ବଡଲୋକ ଆସନ୍ତି । ନୀଲୁ ପଣ୍ଡା କ'ଣ ମଦୁଆ ? କେତେ ଚମତ୍କାର ଦିଲ୍‌ଦାର ଭଦ୍ରଲୋକ ସେ । କେମିତି ଚେହେରା !

ଭାଇନା ନା' ଫାଇନା ! – ବାପ କେଉଁ କାଳରୁ ନ ଥିବାରୁ ସିନା ସୌରୀ ମହାପାତ୍ର ତାକୁ ମାନି ଏମିତି ହଟହଟା ହେଲା । ନ ହେଲେ କ'ଣ ତାକୁ ଉବାର ହୋଇଥାନ୍ତା ! ସେ ସବୁ କରିପାରିଥାନ୍ତା; କିନ୍ତୁ ଡରି ଡରି ତା' ଦିହକ ବିତିଗଲା । କେତେ ମାଡ ଭଲା ନ ଖାଇଛି ସେ ! ପାଠପଢା ନାଁରେ ଓ ଭାଇନାପଣିଆରେ ସେ ତାକୁ ବାଡାଏ । କୋଉ ପାଠ ବା' ସେ ନିଜେ

ପଢ଼ିଛି ? କ'ଣ ନା ପିଲାବେଳୁ ଘରଦ୍ୱାର ଜମିବାଡି ଦାୟିତ୍ୱ ପାଇଁ ସେ ପଢ଼ିପାରିଲା ନାହିଁ!! ପଢ଼ିଥିଲେ ତ ଏସବୁ ଅଙ୍କିଆରକୁ ଆସି ନଥାନ୍ତା ! ଯାଉନ୍ତୁ, ସବୁ ଖାଲି ଗଲବାଜି...

ଭାଇନା ତାକୁ କାଖେଇଚି ବୋଲି ତ ସେ ମନା କରୁନାହିଁ । ଅନେକ ରାତିରେ କୋଡରେ ପୂରେଇ ଶୋଇଚି । ସୌରୀର ମନେପଡୁଚି କେମିତି ମାଇକିନିଆଙ୍କ ପରି ତା' ଭାଇନା ତାକୁ ଗୀତ ବୋଲି ଶୁଣାଉଥିଲା : "ମୋ ସଉରି ବଡ ଦୁଷ୍ଟ, କହୁଣି ମାରେ ରଟ ରଟ । ଦୂର୍ ପଳା, ଦୂର୍ ପଳା !" ତା' ନାଁରେ ଶୁଣି ସେ ଗୋଦର ଭିତରେ କୁରୁଳୁଥିଲା ? ସେଥିରେ ଆଉ ବଡ କଥା କ'ଣ ? ଛେଉଣ୍ଡ ପିଲାଟାଏ ଶୀତଦିନିଆ କୁକୁରପିଲା ପରି । ଯେ ମନ ସିଏ ଟିକିଏ ଆଦର କରିବା କଥା – ଘରେ ବଡଭାଇଟାଏ କ'ଣ ତାକୁ ଫିଙ୍ଗି ଦେଇଥାନ୍ତା ?

ସୌରୀକୁ କିନ୍ତୁ ଏବେ ବି ତା' ନିଜ ଉପରେ ଚିଡିମାଡେ ଗୋଟିଏ କଥା ପାଇଁ । ସେଇ ପିଲାଦିନ କଥା ? ଭାଇନା କହିଲେ ତାକୁ ଲାଗୁଥିଲା ସର୍ଗ ! ଏମିତି ଦିନେ କହୁ କହୁ ସେ କହିଦେଲା ଯେ ସେ ତା' ଭାଇନାକୁ ବାହା ହବ । ଯେ ଶୁଣିଲା, ସେ ହସିଲା । ତାକୁ ତୁହାଇ ତୁହାଇ ଅନେକ ଥର ଲୋକେ ପଗରିଲେ, "କିରେ ପୁଅ କହିବୁଟି, ତୁ ବଡ ହେଲେ କାହାକୁ ବାହା ହବୁ ?" ସେ କେମିତି ଗୋଟାଏ ଏକଜିଦିଆ ବିଶ୍ୱାସରେ କହୁଥିଲା "ଭାଇନାକୁ" । ହୋ ହୋ ହାସ୍ୟରୋଳ ଶୁଭୁଥିଲା । ସେଥିରୁ ଗୋଟାଏ ବୁଢା ତା' ଭିତରେ ଥରେ କହିଥିଲା, "ଆରେ ଦେଖିଲ, ଏଇଟା ଅଣପୁରୁଷଆଟା ହେବ କି ?" କିଛି ନ ବୁଝି ସେ ଚିଡିଯାଇଥିଲା । ସେ ବୁଢାକୁ ବାଡେଇବାକୁ ବସିଲାବେଳେ କାହୁଁ ଆସି ଭାଇନା ତାକୁ କାଖ କରିନେଇ ଗଲିଗଲା ! ଖୁବ୍ ପ୍ରାଞ୍ଜଳ ଭାବେ ଏ କଥାଟି ମନେଅଛି । ସୌରୀ ଏବେ ବି ଦାନ୍ତ କଡମଡ କରି ଟାଣିହେଇଯାଉଛି । ସେ କାହିଁକି ସତେ ଅଣପୁରୁଷିଆ ହୋଇଗଲା । ତା'ର ପିଲାଝିଲା ହେଲେ ନାହିଁ । ତାକୁ ଟାହିଟାପରା ସହିବାକୁ ପଡିଲା ଜୀବନସାରା । ପିଲାବେଳୁ ସେମିତି ଡରିଡରି ବୋଧହୁଏ ତା' ଭିତରର ପୁରୁଷକାର ମରିଗଲା । କାହିଁକି ସେ ଏଇଟାକୁ ସେମିତି ଡରୁଥିଲା । ମନେ ମନେ ରାଗରେ ସେ ଫାଟିପଡିଲା । ତା' ଭାଇନାକୁ ସେ ଇଚ୍ଛା ଅନୁସାରେ ବାଡେଇଦେଇଗଲା; କିନ୍ତୁ ଭାଇନା ମଲା ନାହିଁ । ସେମିତି ଆଖିକୁଣ କୁଞ୍ଚେଇ ରହିଁରହିଲା । ସୌରୀ ନୂଆ କଦଳୀଭଣ୍ଡାଟାଏ ବାଡ ଚଢି ଭାଙ୍ଗି ଦେବାରୁ ମାଧ ଜେନା ପାଟି କରି ତା' ପଛରେ ଗୋଡେଇଥିଲା । ସେ ଆସି ଭୟରେ ଭାଇନାର ଫେରକାନି ଗୁଡେଇ ହେଇ ଆଶ୍ରୟ ନେଇଥିଲା । ମାଧ ଜେନା ଠେଙ୍ଗା ଉଞ୍ଚେଇ ଗର୍ଜୁଥିଲା । ତା' ଭାଇନା ଆଖିକୁଣ କୁଞ୍ଚେଇ ସେମିତି ଠିଆ ହୋଇ ସବୁ ସହୁଥିଲା...

ସୌରୀ ମହାପାତ୍ର ଦି'ପହରେ ଖାଇସାରି ଚୌକି ଉପରେ ଆରାମ ନିଏ । ଭାଇନାର ମୁହଁ ଝଲମଲ ଦିଶିବାରୁ ତାକୁ ଅସୁସ୍ଥ ଲାଗିଲା । ସେ ଉଠି ସେଇଠି ଗଲବୁଲ କଲା । ଝରକାବାଟେ ଅନେଇଲା ସେ ଆକାଶମଲ୍ଲୀ ଗଛଟାକୁ । ଅଣ୍ଟାରେ ହାତଦେଇ ସେ ସରୁ ସରୁ ଦାନ୍ତୁଆ ଆଖିରେ ରହିଁଲା : "ମୁଁ ଅଲବତ୍ ତାକୁ କାଟିଦେବି ।" ପାଟହାତୀର ଛିଟମରା ଥୋଡପାହାର ଭଳି ସେ ବିଶାଳ ଡାଳଗୁଡିକ, ଖୁବ୍ ମାଉଁସିଆ ଆଉ ଚିକ୍କଣ ଦେଖାଯାଉଥାନ୍ତି । ସରୁ ସରୁ ପତ୍ର ଏବଂ

ଅଜସ୍ର ପେଁକାଳିଆ ହାଲକା ଫୁଲ । ଗଛଟା ତ କିଛି ଦୋଷ କରି ନାହିଁ – ନ କରୁ । ଅଲ୍‌ବତ୍ ହଣାହେବ । ବଡଭାଇନା ସେ ଗଛଟାକୁ ପୁଅ ପାଳିଲା ପରି ପାଳିଛି; ତା' ଦିହରେହାଣ ବସିଲେ ଗୌରୀ ମହାପାତ୍ରର ବୁକୁରେ ହାଣ ବସିଲା ପରି । ତାକୁ ସିନା ସୌରୀ ହାତ ଉଞ୍ଚେଇ ପାରିବ ନାହିଁ । ତା' ଗଛକୁ କିନ୍ତୁ ଗଡଗଡ କରି ହାଣିଦେଇ ପାରିବ । ସେ ଲୋକ ଲଗେଇବ ହଣେଇବାକୁ; ନିଜେ ବି କୁରାଢି ପଜେଇ ରଖିଛି, ନିଶ୍ଚୟ ହାଣିବ ।

କ'ଣ ନା ଭାଇନା ! – କ'ଣ ନା ଶୁଦ୍ଧ-ସୁବର୍ଣ୍ଣ ! ଆରେ ଯାଉନୁ । ସୌରୀ ମହାପାତ୍ର ସବୁ ଦେଖିଛି, ସବୁ ଜାଣିଛି । ଗୌରୀ ପ୍ରତିଦିନ ଅନ୍ଧାରରୁ ଉଠି ଲୁହାତାର ଆଙ୍କୁଡିରେ ପରବାଡିରୁ ଫୁଲ ତୋଳେ । ଛପି ଛପି ଯାଏ । ଛପି ଛପି ତୋଳେ । ଧେତ୍... ଶଳା ଚୋର । ଆଉ ଘଡିକୁ ଚିତା-ତିଳକ କରି ଦିଅଁ ଖଟୁଲିରେ ସେ ଚୋରା ଫୁଲ ସଜେଇଲେ କ'ଣ ସେ ସାଧୁ ବନିଗଲା ? ମାଛ ମାଉଁସ ଖାଏ ନାହିଁ; ହେଲେ ଭୋଜିଭାତ ବେଳେ ମାଛ ହାଣ୍ଡି ନେଇ ପରଷେ । ରାହୁଆ ମାଛଖିଆ ମଣିଷ ସବୁ କଣ୍ଟା ଝୁଣି ଖାଇଲାବେଳେ ସେମାନଙ୍କୁ ଅନେଇ ରହିଥାଏ । କିରେ, ମନହଉଚି ଯଦି ଚରିଚକା ବସି ଖାଇଦଉନୁ; ଏମିତି ଡାହାଣୀଙ୍କ ପରି କାହିଁ ହଉଚୁ ? ତୁ ତ' ଖାଉଥିଲୁ । ଏବେ ସିନା କେଇ ବର୍ଷ ହେଲା କ'ଣ ଦୀକ୍ଷା ନେଇ ଛାଡିଛୁ । ହେଲେ ତୋ ମନରୁ ତ ଆଇଁଷ ଛାଡିନାହିଁ । ଛି ଶଳା ଠକ, ମିଥ୍ୟାଚରୀ...

ଆଇଁଷଟା କ'ଣ ଖାଲି ମାଛରେ ନା ମାଉଁସରେ ? ସୌରୀକୁ ପରା ତୁ ପୁଅ ଭଳି ପାଳିଛୁ । ତା' ମାଇପ କ'ଣ ତୋ ଝିଅ ନୁହେଁ ? ତୁ କୁକୁରିଆ ତାକୁ କିଭଳି ଆଖିରେ ଦେଖୁଛୁ ? ତୁ କ'ଣ ତାକୁ ହେମିତି ଗୋଡେ ଗୋଡେ ଜଗିଛୁ ? ସେ କେତେବେଳେ କ'ଣ କଲା ସେ ଫୁଲଗଛ ମୂଳେ ବସି ଅନେଇଚୁ ? ତୋ ମନରେ କ'ଣ ପାପ ନ ଥାଇ ତୁ ଖାଲି ଏମିତି ବାପପଣିଆରେ ତାକୁ ଭଲପାଇଯାଇଛୁ ? ତୋ ନିଜର ମାଇ ଘୁଷୁରି, ଆଉ ସେ ଘୁଷୁରିପିଲାଙ୍କୁ ନେଇ ରହୁନୁ ? ଆମର ପିଲାପିଲି ନଥିଲେ ନାଇଁ । ଆମେ କାହିଁକି ତୋ ଭଳି ଗୁହମୂତରେ ଘାଣ୍ଟି ହୁଅନ୍ତୁ ଯେ ?

ସୌରୀ ମହାପାତ୍ର ଟାଟିରହିଛି । ବିନା କାରଣରେ ଏଣେତେଣେ ଗୁଡାଏ ଛେପ ପକଉଛି । ଅଯଥା ବଡପାଟି କରି କଥା କହୁଛି । ବସିଥିଲେ ପିନ୍ଧା ଧୋତିଟାକୁ ଟାଣୁଛି । ଖୁରେଇ ହେଲାପରି ତଳେ ଦୁମ୍ ଦୁମ୍ ଲାତ ମାରୁଚି । ସାଇପଡିଶାଙ୍କ ପାଖରେ ବସି ରାସ୍ତାରେ ଲୋକ ଶୁଣିଲାପରି ଏଡେପାଟିରେ କହୁଚି, "ସେଇ ଏଣେ ମୋତେ ଓଷୁଅ କରିଦେବାରୁ ମୋ ବଂଶ ବୁଡିଗଲା ! ତେଣେ ଜାମିଶୁଣି ସେଥିରୁ ଗୋଟାଏ ବାଂଝଣି ଖଡଟାକୁ ବିଭା କରିଦେଲା; ଯେମିତି ପିଲାଝଲା ନହେବ । – ଚାରି ପିଲାଗୁଡିକ ସବୁ ଯେମିତି ଭୋଗିବେ । – ମୋତେ ନିର୍ମାଖି କରି ଦାଣ୍ଡରେ ଖପରା ଧରେଇବାକୁ ସେ ଶଳାର ମନ୍ତ୍ରଣା । ମୋ ବିଭାଘର ଟଙ୍କା-ସୁନା ସବୁ ମାରିନେଲା । ମୋ ଭାଗ ଜମିଡିହ ମାରିନେଉଥିଲା । ସ୍ଥାବର ସମ୍ପତ୍ତି କେମିତି ଗିଳିବ । ସବୁ ଏବେ ଠିକ୍ ବାଟକୁ ଆସିଗଲାଣି । ହେଲେ କେତେବେଳେ ସେ ମୋତେ ବିଷ ଦେଇଦେବ, କେତେବେଳେ ମୋ ଶୋଇବାଘରେ ନିଆଁ ଲଗେଇଦେବ, ମୁଁ ଜାଣି ନାହିଁ ।" ଲୋକେ ଶୁଣି ହାଉ ହାଉ ହୁଅନ୍ତି । ସୌରୀ ସମସ୍ତଙ୍କୁ

ଆହୁରି ଟଟାଏ । ଜଣ-ଜଣକୁ ଏକୁଟିଆ ଡାକିନେଇ କାନରେ କ'ଣ କହେ । 'ଓଃ କେତେ ଅନାଚର, ପାପାକଥା' କହି ସେମାନେ କାନରେ ଆଙ୍ଗୁଠି ପୂରାନ୍ତି ।

ଅନ୍ୟ ପକ୍ଷେ ଗୌରୀ ମହାପାତ୍ର ତା' ବଡଝିଅ ପାଇଁ ବରପାତ୍ର ଖୋଜିଚାଲିଛି । ମୁଣ୍ଡ ଉପରେ ବୋଝେ କାମ । ଏଥିରେ ସୌରୀ ଅଡିବସିଲା ଭିନେ ହେଇଯିବାକୁ । ଜମି ଡିହ ଘର ସବୁ ସୋରା ସୋରା ହୋଇଗଲା । ସୌରୀଟାକୁ ସେ ପାଳିପୋଷି ମଣିଷ କରିଥିଲେ; ତା' ଅର୍ଦ୍ଦଳି ସହିଥିଲା; ତାକୁ ପାଠ ପଢେଇ ମଣିଷ କରିଥିଲା, ବିଭା ତୋଳା କରେଇଥିଲା । ତା'ର ଢେର୍ ଅଗୁଆଁ ରପଣ ଢେର୍ ଦୋର୍ଦ୍ଦଣ୍ଡପଣ, ଗାଳି ମନ୍ଦ ବେଙ୍ଗିତ ମଧ୍ୟ ସହିଥିଲା । ଆଶା କରୁଥିଲା ଯେ, ହଉ ପଛେ, ରକ୍ତରେ ବାଡ ପଡିବ ନାହିଁ । ଆଖର କିଛି ଫଳ ହେଲା ନାହିଁ । ଘରଭଙ୍ଗା ଲୋକେ ମିଶି ତା' ମୁଣ୍ଡକୁ ଦେଲେ ବିଗାଡି; ତାକୁ ଟିହେଇ ନାଲିସ୍ କରେଇଦେଲେ – ସୌରୀଟା ଆଉ ମଣିଷ ହେଲା ନାହିଁ । ସଦାବେଳେ କେମିତି ମାଇଗୁଲିଆ ପରବୋଲକରା ହେଇ ରହିଗଲା । କିରେ, ଘରେ ଲକ୍ଷ୍ମୀ ପରି ବୋହୂ! ତୁ ସେମାନଙ୍କ କଥାରେ ପଡି କାହିଁକି ବାରଆଡେ ଯାଇ ଅଣ୍ଡିରାପଣିଆ ଦେଖେଇହଉଚୁ । ତତେ ସେମାନେ ପଛରେ କାହିଁକି ନାକରେ ଲୁଗା ଦେଇ ହସୁଛନ୍ତି ? ତୁ'ଟା ଗୋଟେ ଏତିକି ନୁଙ୍ଗୁରା ? ଭାଉଜ ଯେ ମା' ସରି । ନିଶା ଖାଇଦେଇ କ'ଣ କହିଲୁ ସେଦିନ ? ତୋ ମନ ଭିତରେ ଏତେ ପୋଚ କଥା ଲୁଚିରହିଥିଲା ? ତୁ ଅଣପୁରୁଷିଆ ହବା ପାଇଁ କ'ଣ କିଏ ଦାୟୀ ?

ଗୌରୀ କ'ଣ କେବେ ଚାହିଁଚି ତା' ଭାଇଟା ଏମିତି ନିର୍ବୀର୍ଯ୍ୟା ହେଇଯାଉ ବୋଲି । ହେଲୁ ତ ହେଲୁ, ତାକୁ ଘୋଡେଇବାକୁ ଏମିତି ରମ୍ପା ଝମ୍ପା କାହିଁକି କରୁଛୁ । ବଢିଲା ଝିଅ । ବାପ କିଏ, କକେଇ କିଏ ? କାହିଁକି ସେଦିନ ଝିଅଟା ତୋ ଘରୁ ପାଟିକରି ଦୌଡିଆସିଲା ? ତା' ଲୁଗାକାନି କେମିତି ଚିରିଯାଇଥିଲା ? ମଲା, ଏକ ଛେଳିଗୋତ୍ରିଆ ହାରାମି କାହାଁକା, କ୍ଷୀର ଦେଇ ଯେତେ ପୋଷିଲେ କ'ଣ ସାପପିଲା ସାପ-ଗୁଣ ଛାଡିବ ? ଯା ହେଲା, ଭଲ ହେଲା – ଯାଉ ମଝିବାଟ ପଡିଯାଉ । ତା' ସୋରାରେ ସେ ରହିବ; ମୋ ସୋପାରେ ମୁଁ । ହେଲେ ସେ ଆକାଶମଲ୍ଲୀ ଗଛଟାକୁ ହାଣିଦବ ବୋଲି କହୁଚି; ତା'ରି ମୂଳେ ବେଦୀ, ତା'ରି ମୂଳେ ସବୁ ଶୁଭ କାମ ହେଇଛି । ସେ ନିଜେ ସେଇଠି ବିଭା-ବନ୍ଦାଣ ହୋଇଛି ! ମ୍ଳେଚ୍ଛ ଯାପ ! କ'ଣ ପାଇବୁ ଫୁଲ୍ଟା ଗଛଟାକୁ ହାଣିଦେଇ ? ଅଣପୁରୁଷା, ଆଣ୍ଠୁକୁତା, ପୋକଡା ।...

କପୁର୍ ଦୋକାନ ପାଖରେ ପଞ୍ଚାଏ ବସି ହୋ ହୋ ହେବା ସାଧାରଣ କଥା । ଗୌରୀ ମହାପାତ୍ର ସେ ବାଟଦେଇ ଚାଲିଗଲା । କିନ୍ତୁ କ'ଣ ପଦେ କହିଦେବାରୁ ହାସ୍ୟରୋଳ ଶୁଭିଲା । ପାଦ ଥମିଗଲା, ହେଲେ ଗୌରୀ ପଛକୁ ଫେରି ଚାହିଁଲା ନାଇଁ, ସେମିତି ମୁଣ୍ଡ ପୋତି ଚାଲିଗଲା । 'ଅଭଦ୍ର, ମଦୁଆ, ଗୁଣ୍ଡା, ବଦମାସ୍‌ଙ୍କ ଆଡ୍‌ଡା – କିଏ ଏଠି ମହତ ସାରିବ ? – କାହିଁକି ?'

ହସ ଚାଲିଥାଏ । ଆସି ପହଞ୍ଚିଲା ସୌରୀ । ସେ କିଛି ନ ବୁଝି ପ୍ରଥମେ ହସିବା ଆରମ୍ଭ କରିଦେଲା । ତା' ସାଙ୍ଗ-ସୁଖ ଯଦି ହସୁଛନ୍ତି, ସେମିତି କ'ଣ ହସକଥା ପଡିଥିବ ବୋଲି ସିନା ।

ସେ ଆଉ ପଚାରିବ କ'ଣ ? ଅନେକ ହୋ-ହୋ ହୋଇ ହସିଲେ । ନୀଲୁ ପଣ୍ଡା ସୌରୀକୁ ଆଙ୍ଗୁଠି ଦେଖାଇ ବଡ଼େ କିର୍ କିର୍ ହସିଲା, କହିଲା, "ଆରେ ଚୁପ୍‌କର ସବୁ । ଏମିତି କ'ଣ ହସୁଛ ? ଆମ ଦୋସ୍ତର ଇଜ୍ଜତ୍ କ'ଣ ଆମ ଇଜ୍ଜତ୍ ନୁହେଁ ?"

କଳଗାଉଣା ପରି ହଠାତ୍ ବନ୍ଦ ହୋଇଗଲା ହାସ୍ୟରୋଳ ।

"କଣ ସୌରୀବାବୁ, ଆପଣ ଦୁଇ ତିନି ଦିନ ହେଲା କ୍ଲବକୁ ଆସିନାହାନ୍ତି; ମନ ବୋଧହୁଏ ଭଲ ନାହିଁ ।"

"ସେ ଯାହା ସମ୍ଭାଳିଛନ୍ତି, ଆଉ କିଏ ହୋଇଥିଲେ ତ ମର୍ଡର କରିସାରନ୍ତାଣି !" କହିଲା ଆଉ ଜଣେ ।

"ସାରା ଟାଉନ୍‌ରେ ସେଇ କଥା । ସେ ସେମିତି ମାଇକିନିଆ ବୋଲି ସିନା । ସେ ସୌରୀବାବୁଙ୍କୁ ସେତିକିବେଳେ ବି କହିଥିବେ, କେମିତି ସୌରୀବାବୁ ସମ୍ଭାଳି ରହିଛନ୍ତି ଏ ଯାଏଁ ?"

ସୌରୀ ମହାପାତ୍ର କିଛି କିଛି ଅନୁମାନ କରି ସୁଦ୍ଧା ପଚାରିଲା, "କୋଉ କଥା ପଡ଼ିଚି ଏଇଠି ?"

"ଆହା, ଛାଡ଼ନ୍ତୁ ଆଜ୍ଞା ! ଆପଣଙ୍କ ପରି ଲୋକଙ୍କର ରକ୍ତ କାହିଁ ? ନ ହେଲେ ଯେ ବେଜ୍ଜିତ୍ କଲା ତାକୁ ସମ୍ଭାଳି ଚୁପ୍ ପଡ଼ି ରହିହୁଏ ? ବେହୁଦା କଥା !" କହିଲା ଟଙ୍କ ଦାସ । – ଟଙ୍କ ଦାସର ନିଶ ଠିଆ । ଆଖି ସିନ୍ଦୂର ପରି ।

"ଆରେ ରହ, ଏଠି ଦାଣରେ କ'ଣ ଏମିତି ହଉଚ ।" କହିଲା ନିଲୁ ପଣ୍ଡା – ସୌରୀ ଜାଣେ, ସେଇଟା ଗୋଟାଏ ଭଦ୍ରଲୋକ । – "ଆସନ୍ତୁ ସୌରୀବାବୁ, ଭିତର ବାର୍‌କୁ ଯିବା, ସେଇଠି କଥାବାର୍ତ୍ତା ହେବା ।"

ଭିତରେ କିଛି ସମୟ ପିଆପିଇ ପରେ ପୁଣି ନିଲୁ ପଣ୍ଡା କହିଲା, "ଦେଖନ୍ତୁ ସୌରୀବାବୁ, ଆମେ ଶୁଣି ଭାରି ଦୁଃଖିତ ଯେ ଆପଣଙ୍କ ଭାଇନା କୁଆଡେ ଆପଣଙ୍କ ୱାଇଫ୍‌କୁ ମାନେ ଶ୍ରୀମତୀ ମହାପାତ୍ରଙ୍କୁ ବେଜ୍ଜିତ୍ କରିଛି !"

"ଆପଣ କ'ଣ ବଦ୍‌ଲା ନବାକୁ ଚାହିଁ ନାହାଁନ୍ତି ?" – କହିଲା ଟଙ୍କ ।

"ଆରେ, ମୁଁ ଦେଖୁଛି, ତୁମେମାନେ ସବୁ ମୋ ପାଇଁ ଭାରି ଦୁଃଖ କରୁଛ । ଏବେ ତ ଆମେ ଭିନେ ହୋଇଗଲୁଣି; ସେ ଶଳା ପାଖରେ ମୋର ଆଉ କ'ଣ ଅଛି ?"

"ହେ-ହେ-ହେ ।" – ହସିଲା ଟଙ୍କ । ଖୁରଧାର ପରି ସେ ହସ । "ମୁଁ ହୋଇଥିଲେ" ଟେବୁଲରେ ଗୋଟାଏ ବିଧା ମାରି, ଦାନ୍ତ ରଗଡ଼ି ସେ କହିଲା – "ତା ମାଇପକୁ ଲଙ୍ଗଳା କରି ଚୁଟି ଧରି ଏଇ ଦୋକାନ ସାମ୍‌ନାକୁ ଘୋଷାରି ଆଣିଥାଆନ୍ତି ।" ପୁଣି ଗୋଟାଏ ବିଧା – ଶାଲା, କାର ହିମ୍ମତ୍ ଅଛି, ଆମ ବିବି ଉପରେ ନଜର୍ କରିଦବ ।

ସୌରୀ କାଠେଇଗଲା । ସ୍ଥିରଦୃଷ୍ଟିରେ ଚାହିଁରହିଲା ଗୋଟାଏ ପଟେ । ତା' କାନ୍‌ମୁଣ୍ଡା ଭାଁ ଭାଁ ଡାକିଲା । "...ତୁ ଅଣପୁରୁଷିଆ । ସୌରୀ, ତୁ କ'ଣ ପାରିବୁ ? ତୋ ମାଇପକୁ ସମସ୍ତେ

ଟେକିନେଇଗଲେ ବି ତୁ କିଛି କରିପାରିବୁ ନାହିଁ... ।"

"ଆଉ ଟିକିଏ ପିଇବେ, କି, ଆପଣ ? – କହିଲା ନିଲୁ ପଣ୍ଡା ଏବଂ ସୌରୀର ଗ୍ଲାସ୍‌ଟିକୁ ଭର୍ତ୍ତି କରିଦେଲା । କଳକଣ୍ଢେଇ ପରି ସୌରୀ ସେଥିରେ ମୁହଁ ଲଗେଇ ଶୋଷିଛି କି ନାହିଁ, କିଏ ଗୋଟାଏ ଖିଁ ଖିଁ ହସି କହିଲା, "ଆରେ, କାଇଁ ଆଉ ଠଣ୍ଡା ଖୁନ୍‌ରେ ଟାଉ ଲଗାଉଚ । ଆରେ, ସୌରୀବାବୁଙ୍କୁ ଏକ ବଙ୍ଗା ତ ମିଳିବାର ଅଛି ନା ନାଇଁ ।"

ହୋ-ହୋ-ହୋ ହସ ଭିତରେ ବିସ୍ଫୋରଣ ହେଲା । ଗ୍ଲାସ୍ ଫୋପାଡି ଝୁଣି ହେଇଗଲା ସୌରୀ ମହାପାତ୍ର । ତା' ପାଟିରେ ଫେଣ, ତା' ଆଖିରେ ନିଆଁ ? ଦାନ୍ତ ସନ୍ଧିରୁ କହିଲା, "ମୁଁ ଟାକୁ ମର୍ଡର କରିବି...ଶାଲାକୁ ମର୍ଡର ।" ଗୋଟିଏ ହାତରେ ସଂଯତ ଗ୍ଲାସ୍‌କୁ ଧରି ନିଲୁପଣ୍ଡା, ଆଉ ଗୋଟିଏ ହାତରେ ସୌରୀକୁ ବାରଣ କରୁଥାଏ । ଅନ୍ୟମାନେ ତା' ଡେଣାକୁ ଅଣ୍ଟାକୁ ଧରି ଓହଳିରହିଥାନ୍ତି ।

ସୌରୀ ମହାପାତ୍ର ସାଷ୍ଟମ ହେଲା । ଢେର୍ ରାତି ହେଲା । ସେମାନେ ଟାକୁ ପିଆଇଲେ । ନିଜେ ଖୁବ୍ ପିଇଲେ ?

ତା' ଆରଦିନ ଗୌରୀ ମହାପାତ୍ରକୁ କେହି ଜଣେ ନିରୋଳାକୁ ଡାକିନେଇ କହିଲା, "ଶୁଣାଯାଉଛି, ସୌରୀ କ'ଣ ଆପଣଙ୍କୁ ଗୁଣ୍ଡା ଲଗେଇବ । ସାବଧାନ ରହନ୍ତୁ । ମାଡ ମରେଇବ; ବେଜ୍ଜିତ୍ କରେଇବ । ସ୍ତ୍ରୀ ଆଉ ପିଲାପିଲିଙ୍କୁ ସମ୍ଭାଳନ୍ତୁ ।" ସେ ଘରିଆଡକୁ ଛନଛନ ଚାହିଁ ଚାଲିଗଲା ।

ଗୌରୀ ମହାପାତ୍ରର ତାଳୁରୁ ନିଆଁଟାଏ ଖସିଗଲା ତଳିପା ପର୍ଯ୍ୟନ୍ତ । ଗୋଡପେଣ୍ଡା ଥରିଲା । ବାହାରପାଣି ଦେଖେଇଲା ପରି ଲାଗିଲା । ଆଚ୍ଛା ? ? ନିମକହାରାମ ! ମାଇଗୁଲିଆ ! ବଜ୍ଜାତ୍ ! ମଦୁଆ ! ହଉ, ତୋର ଦିନେ କି ମୋର ଦିନେ । ଯଦି କୁକୁର ହେଲୁ, ତତେ ସେଇଭଳି ପାନେ ମିଳିଯିବ । ସେ ଦୁମ୍ ଦୁମ୍ ଚାଲିଗଲା ନାକସଳଖା ।

"ଆହେ ଗୌରୀ ମହାପାତ୍ରେ, ଶୁଣିଲଣି... ଅକାଳ କଥା... ସୌରୀ କୁଆଡେ ଗୁଣ୍ଡା ଲଗେଇ ତମ ଝିଅ-ମାଇପଙ୍କୁ ଲଙ୍ଗଳା କରି ଦାଣ୍ଡରେ ଘୋଷାରିବ ।" "ଶୁଣିଲଣି, ଶୁଣିଲଣି, ତମକୁ କୁଆଡେ ଛୁରୀ ମରେଇବ, ତମ ଘରେ ନିଆଁ ଲଗେଇଦବ ?"

ଗୌରୀ ମହାପାତ୍ର ମୁହଁ ଫଣଫଣ । ଉତୁରିପଡିଲା ପରି ଆଖି ! ଝିଅ ପୁଅ ସାନପୁଅ ଆଡ ହୋଇଗଲେ । ସ୍ତ୍ରୀକୁ ଚାହିଁରହିଲା ଗୌରୀ ମହାପାତ୍ର, ଏକଲୟରେ କିଛି ସମୟ !

"କ'ଣ ଇମିତି ଭକୁଆଙ୍କ ପରି ଚାହିଁଛ ବା ! ତମ ଦେହପା ଭଲ ଅଛି ତ ! କାଇଁ ଦେଖି ! ...ଇସ୍, ତମ ଦିହ ତ' ତାତିରେ ଖଇ ଫୁଟୁଚି । – ଚାଲିଲ ଗୋଟେ କ'ଣ ଘୋଡେଇ ହେଇ ଶୋଇପଡ ।"

ରାତିସାରା ବାଉଳୁ-ବାଉଳୁ ପବନ ? ବାଉଳୁ-ବାଉଳୁ ଜର ! –

"ତୁ ମୋ ଦିଅଁ ଘରେ କୁକୁର ପୂରେଇବୁ । ମୁଁ ତୋ ତଣ୍ଡି କଣା କରିଦେବି । ତତେ ଗୁଲିଖରି ଉଡେଇଦେବି । ...ରହିଯା, ସୌରୀ, ତେଣିକି ଯା' ନା' । ...ସେଇଠି ତଳେ କୂଅ ।

ଗଳିପଡିବୁ! "ତୁ ଏତିକି ଦୁଷ୍ଟ କାହିଁକି ହେଉଚୁ କହିଲୁ!" "ମୋ ସୌରୀ ବଡ ଦୁଷ୍ଟ, ଦୂର୍ ପଳା, ଦୂର୍ ପଳା।"

"କାଇ ଏମିତି ବାଜୁରୁ ବାଜୁରୁ ହେଉଚ। ଟିକିଏ ତୁନି ପଡି ଶୋଇଲ ଭଲା। ମୁଁ କ'ଣ କରିବିଚି।"

"ଆରେ ହେଇ ସେମାନେ ଆସିଗଲେ। ଲୁଚି ଯା... ଖଟତଳେ... ବାକ୍ସ ପଛଆଡେ! ନହେଲେ କୂଅକୁ ଡେଇଁପଡ... ଇସ୍, ଆରେ ତା' ବାଳକୁ ଏମିତି ଧରି କାଇଁ ଘୋଷରୁଛ। କାଇଁକି ତାକୁ ସବୁ ମିଶି ନଙ୍ଗଳାମୁକୁଳା କରୁଚ... ସୌରୀଟା ପଡିଗଲା – ତାକୁ ଛୁରୀ ମାର୍‌ନା – ମାର୍‌ନା କହୁଛି। – ଓଃ ତା' ବୁକୁ ବିଦାରି ଦିଅନା, ତା' ବାହା ଉପାଡି ତାକୁ ଖଣ୍ଡ ଖଣ୍ଡ କରନା।"

ଆହୁରି ପାଣିପଟି – ଆହୁରି ଜର। ଆହୁରି ବାଉଳୁ-ଗଉଳୁ। ତା'ପରେ ରାତି ଜମି ଆସିଲା ଘରିଆଡୁ। ଖୁବ୍ ଯୁଦ୍ଧ କରି ଗୌରୀ ମହାପାତ୍ର ବେଶୀ ହାଲିଆ ହେଇଗଲା। କ'ଣ ସବୁ ବିଡ୍ ବିଡ୍ ହେଇ ଶୋଇଗଲା।

ଏତେ ବଡ ଗୋଟାଏ କଥାକୁ ଟଙ୍କା ହଜାରେ କି ଛାର କଥା ସୌରୀବାବୁ। ଟଙ୍କା ହଜାରେ ପାଇଁ ଗୋଟାଏ ଖାନ୍‌ଦାନ୍‌ର ଇଜ୍ଜତ ଦିନ ଦି'ପହରେ ବିଚ୍ ବଜାରେ ଘୋଷରା ହେବ।

"ଆପଣ ଯେମିତି କହିବେ, ସେମିତି ହବ।"

"ଆମର ରାଜି, ସକାଳୁ ଛ' ଜଣ କୁରାଢି ଧରି ଆଗ ସେ ଫୁଲଗଛକୁ ହାଣିବେ। ଜବରଦସ୍ତ ହାଣିବେ। ଯେ ବିରୋଧ କରିବ, ତାକୁ ଖତମ୍ କରିବେ।"

"ଠିକ୍ ବାରଟାବେଳେ ଟଙ୍କ ସର୍‌ଦାର ସାଙ୍ଗରେ ଆଉ ତିନିଜଣ ପଶିବେ। ସମସ୍ତଙ୍କ ପାଖରେ ଛୁରୀ ଥିବ। ଟଙ୍କ ପାଖରେ ପିସ୍ତଲ। ମାଇକିନିଆଟାକୁ ଲଙ୍ଗଳା କରି ଘୋଷାରି ଆଣିବା ନା ଏଇଠିକି ଘୋଷାରି ଆଣି ଲଙ୍ଗଳା କରିବା! ଆପଣ ଯେମିତି କହିବେ।"

"ଠିକ୍ ଅଛି। ଏଠି ଆଣି ଖୋଲା ବଜାରରେ ତାକୁ ଲଙ୍ଗଳା କରିବା ବେଶୀ ମଜାଦାର ହବ। ସୌରୀବାବୁଙ୍କୁ ଏଇ ବାରଣ୍ଡା ଉପରେ କୁର୍ସି ପକେଇ ବସାଇବାକୁ ହବ।"

"ଠିକ୍ ଅଛି, ପକ୍‌କା ?"

"ପକ୍‌କା !"

"ଆରେ ବୟ୍, ଆଉ ଗୋଟାଏ ଦି'ଟା କ'ଣ ଆଣ ପିଇବାକୁ।"

ରାତି ଜମିଆସିଲା ଘରିଆଡୁ। ସୌରୀ ମହାପାତ୍ର ଆଖିରେ ମିଜାଜରେ ଅପର୍ଯ୍ୟାପ୍ତ ନିଶା। କାଲି ସକାଳକୁ ଭୀଷଣ ଯୁଦ୍ଧ ହେବ। ଗୌରୀ ମହାପାତ୍ର ଏକାକୀ ପାଞ୍ଚ ଜଣର ସମକକ୍ଷ ହେଲେ କ'ଣ ହେବ ? ଏପଟେ ଶହେଜଣ ଲାଗିଯିବେ। ପୋତିପକେଇବେ ଶଳାକୁ। ତା' ପିଲାଙ୍କ ମୁଣ୍ଡକୁ ହାଣି ଟୋକେଇରେ ପୂରେଇ ନେଇ ଆସିବେ।

ସେଇଠି ଦରି ଉପରେ ଗଡିପଡିଲା ସୌରୀ ମହାପାତ୍ର। ପାଟି ଖନି ମାରୁଥାଏ। କଥା ଭେମ୍‌ଜଳଉଥାଏ। କ'ଣ ପଦେ ଗୀତ ବୋଲିଲା। ତା'ପରେ ବିଳିବିଳେଇଲା... "ମୁଁ ମୋ...

ଭାଇନାକୁ ବାହା ହେବି । ବା ହେବି... ଗେଟ୍ ବେ ସାଲା, ଭାଇନା... ନା ଫାଇନା... ମୁଁ ରଜା, ମୁଁ ମାଲିକ, ମୁଁ ଗୌରୀ ବଡଲୋକ ଗୋଟା ସାରା ମା' ପାତ୍ର !"

ଟକମକ ଫୁଟୁଛି ରକ୍ତ । ନିଶା ଗର୍ଜୁଛି । ପଲ ପଲ ବାଦୁଡି ଉଡୁଛନ୍ତି ନିଃଶବ୍ଦରେ । କଟାଗଛ ସବୁ କବନ୍ଧ ପରି ଠିଆହୋଇଛନ୍ତି ଅନ୍ଧାରରେ । କେହି ଶୋଇ ନାହିଁ କି କିଛି ଗୋଳ ନାହିଁ । ଗୋଟାଏ ମାତାଲ୍ ସ୍ତବ୍ଧତା ଘରିଆତେ ।

ପ୍ରଥମେ ଯେ ଚିତ୍କାର କଲା ସେ ବୋଧେ କୁକୁରଟା ବା କୁକୁଡାଟାଏ ବା ବଣିଟାଏ ।

କୁରାଢିମାନେ ଚେଇଁ ଉଠିଲେ । ବଙ୍କା ବଙ୍କା ଥୋମଣା ଟେକି ଚାହିଁଲେ । ଦାନ୍ତ ଉପରେ ହସିଲେ ।

ଗୋଟିଏ ଦିଗରୁ ଫେଣ ବଜ୍ ବଜ୍ ସମୁଦ୍ର ଉଠୁରି ଆସିଲା ଆକାଶକୁ । ହୋଇପାରେ ରକ୍ତର, ହୋଇପାରେ ସରାବ ସମୁଦ୍ର –

ଖାଲି ପାଦ ଘୋଷାରି ଘୋଷାରି କଳା କଳା କୁରାଢିଆମାନେ ଅଗଣାକୁ ଓହ୍ଲାଇଲେ । ଆକାଶମଲ୍ଲୀ ଶିଖଡାଳରେ କଅଁଳ ପତ୍ର ଉପରେ କଅଁଳ ଖରା ।

ମୂଳରେ ଦୁମ୍ ଦୁମ୍ କୁରାଢି ଚୋଟ । କଞ୍ଚା ଗଛରୁ ରସ ଛିଟିକିଲା । କଅଁଳ ଖରା ଚମକିଲା କଅଁଳା ବାଛୁରୀ ପରି ଗଛ ଶିଖରେ । ଦୁଲୁଦୁଲୁ ହେଲା ବେଢ଼ି, ଅଗଣା, ପିଣ୍ଡା, ଘର, ଘରଛାତ । – ପିଲାଏ ଶୋଇବାଘରକୁ ଧାଇଁଯାଇ ଆଖିରେ ଆଖିଏ ଲେଖାଁ ଛନକା ନେଇ କହିଲେ, "ଫୁଲଗଛକୁ ହାଣିଦଉଛନ୍ତି । ସେମାନେ ହାଣିଦଉଛନ୍ତି । ହାଣି ଦଉଛନ୍ତି ।"

ଗୌରୀ ମହାପାତ୍ର ଚମକିଲା ପରି ଚାହିଁଲା । ବୁଝିଲା । ଦୁମ୍ ଦୁମ୍ ଶବ୍ଦକୁ କାନେଇଲା । କ'ଣ ଭାବି ଅଳ୍ପ ହସିଦେଇ କହିଲା, "ହଅଅ ଏ କୋଉ ନୂଆ କଥା । ସେ ତ କୋଉକାଳୁ ହାଣ ଖାଉଛି ? ସେ କାହିଁକି ମଝିରେ ଠିଆ ହୋଇ ଦୁଇ ପାଖକୁ ଏତେ ଫୁଲ ବୁଣୁଥିଲା ? ଭାଗ ହେଲା ଦିନୁ ସେ ହାଣ ଖାଇସାରିଚି । – ଓଃ, ମତେ ପାଣି ମନ୍ଦେ ଦେଲ । କବାଟ ପକେଇଦିଅ । ମୋ କାନମୁଣ୍ଡାରେ ଗୋଟାଏ ପଟି ଭିଡିଦିଅ । ଭାରି କଅଁଳ ଗଛଟା । ବେଶି ହାଣ ଖାଇପାରିବ ନାହିଁ; ଲୋଟି ପଡିବ । ସମ୍ଭାଳି ଯାଅ... ସମ୍ଭାଳି ଯାଅ ।"

ଚିଙ୍ଗୁଡିପରି ମୁଦାଟିଏ ହେଇ ଗୌରୀ ମହାପାତ୍ର କାନ ଉପରେ ହାତ ମଡେଇ ଗଡିପଡିଲା । ତା' ଉପରେ ରେଜେଇ ମଡେଇ ଦେଲା ତା' ସ୍ତ୍ରୀ ।

ପିଲାଏ ଚିତ୍ରପ୍ରତିମା ପରି ଠିଆହେଲେ ପିଣ୍ଡାରେ । ଆକାଶମଲ୍ଲୀ ହାଣ ଖାଉଥାଏ । ଖରା ଓହ୍ଲାଇ ଆସୁଥାଏ ତା' ଘା' ଉପରକୁ ।

କୁରାଢିଆମାନେ ମଝିରେ ଚାଲିଗଲେ ବାହାରକୁ । ତାଙ୍କୁ କେହି ବାରଣ କଲା ନାହିଁ ହାଣିଲାବେଳେ କିମ୍ବା ହାଣ ଛାଡି ବାହାରିଗଲା ବେଳେ । ସେମାନେ ଅସନ୍ତୁଷ୍ଟ ଜଣାଗଲେ । ହୁଏତ କିଛି ଅପ୍ରତିଭ, ଅପମାନିତ ଜଣାଗଲେ । ଖରାଚଢି ଆସିଲା ମଧ୍ୟାକାଶକୁ । ଆକାଶମଲ୍ଲୀର କ୍ଷତରୁ ଲସା ଝରିଲା । ଡାଳପତ୍ର ଝାଉଁଳିଗଲେ ନୀରବରେ, ଯନ୍ତ୍ରଣାରେ ।

ଗୌରୀ ଛାତି ହେଇ ଉଠିବସିଲା । ତା' ଦେହ ମୁଣ୍ଡ ଝାଳରେ ସରବୁତ୍ । ଗାଧେଇଲାପରି ଝାଳ ଛିଡିପଡୁଥାଏ, "ଫିଟା କବାଟ, ଫିଟା ଝରକା – ପବନ ଦିଅ, ମତେ ପବନ ଦିଅ ।"

ଏକାଥରକେ ଅନେକ କବାଟ ଫିଟିଗଲା ପରି ଶୁଭିଲା । ଦୁମ୍ ଦୁମ୍ କୁଦ୍ଦେଇ ହେଇ ପଡିଲା କେତେ କ'ଣ । ଗୁଡାଏ ଭାରି ଭାରି ଜୋତା ଦୌଡି ଆସିଲେ । ପିଲାଗୁଡାଏ ଚିର୍ ଚିରେଇ ଉଠିଲେ । ଗୁଡାଏ କ'ଣ ଗର୍ଜନ ଶୁଭିଲା । ଧାଁ ଦଉଡ ଶୁଭିଲା । କ'ଣଟାଏ ଅଘଟଣା ଘଟିଯାଉଛି କି ଆଉ !

ଗୌରୀ ମହାପାତ୍ର କିଛି ନ ବୁଝି କବାଟ କୋଣରୁ ଠେଙ୍ଗାଟାଏ ଧରି ଧୂସିଆସିଲା ପିଣ୍ଡାକୁ । ଧପ୍ ଧପ୍ ଖରା ତାକୁ ଦିଶିଲା – ନାଲି, କଳା, ହଳଦିଆ ।

ଏତେ ଲୋକ ତାଙ୍କ ଭିତରେ ପିଣ୍ଡାରେ ଏମିତି କାହିଁକି ଧାଇଁଛନ୍ତି ? କାହିଁକି ପାଟି କରୁଛନ୍ତି ? କାହାକୁ ତ ସେ ଚିହ୍ନୁନାହିଁ ? କିଏ ଏମାନେ ? – ଆକାଶ ଦି'ଫଟା ହୋଇଗଲା ପରି ଗୋଟାଏ ଚିତ୍କାର ଶୁଭିଲା । ଗୌରୀ ମହାପାତ୍ର ଚମକି ପଡିଲା । ଅନ୍ଧପରି ଧାଇଁଗଲା ଆଗକୁ । ଧୂସି ହେଲା ମଣିଷଙ୍କ ଉପରେ, ଖୁଣ୍ଟରେ, କାନ୍ଥରେ । ସାନବୋହୂଟା ତା' ଘରୁ ଏମିତି ପାଟି କରୁଛି ? ଅତର୍କେ ପିଲାଗୁଡା ଅନ୍ଧକାରରେ ଭୁତ ଦେଖି ପ୍ରାଣମୂର୍ଚ୍ଛା ରଡୁଛନ୍ତି କି ? ତାକୁ ଦେଖିଲା ସେମାନେ ତା' ଚୁଟି ଧରି ଟାଣିଆଣୁଛନ୍ତି । କି ସେମାନେ ଘରେ ପଶିବାକୁ ? କୁଳବଧୂଟାକୁ ଛୁଇଁବାକୁ ?

ତାକୁ ଦଶଦିଗ ଅନ୍ଧାର ଦିଶିଲା । ସେ ଠେଙ୍ଗା ବୁଲାଇ ପିଟିଲାଗିଲା । ଗର୍ଜିଲା ଘାଉତା ମହାବଳ ପରି । ହୁଁକାର କରି ଘରିଆଡ ଖେଦିଗଲା । "ମାରି ଶଳାଙ୍କୁ ଗୁଣ୍ଡା କରିଦେବି । ଛାଡ ଛାଡ ମୋ ଝିଅକୁ ? ସେ ମୋ ବଡଝିଅ । ମୁଁ ପ୍ରହରାଜଘରୁ ଝିଅ ଆଣି ବୋହୂ କରିଛି । କାହିଁ ଗଲା ସେ ମାଇଚିଆ, ନାଲାଏକ ଟୋକା । ମାଇପଟାକୁ ସମ୍ଭାଳି ପାରୁ ନାହିଁ ? ସୌରୀ – । ହେ ଟେରୀ – ।"

ଆହୁରି ଗୋଳ ଉଠିଲା । ଆହୁରି ଲୋକ ପଶିଆସିଲା । ସାହିର ବଜାରର ଭେଣ୍ଡିଆମାନେ ପଶିଆସିଲେ । "ମାର ମାର" ରାଜ ଶୁଭିଲା । ଶଳା ମଦୁଆଙ୍କୁ ପିଟ, ବାନ୍ଧ । ଘୋଷାର ।

ସେମାନେ ଛୁରୀଗୁଡିକ ତାଙ୍କ ହାତରୁ ଛଡାଇ ନେଇ ଗୋଛାଏ ଦାନ୍ତକାଠି ପରି ସେମାନେ ବାନ୍ଧିଦେଲେ । ଟଙ୍କ ସରଦାର ସମେତ ସବୁଗୁଡାକୁ ହାତଗୋଡ ବାନ୍ଧି ମୁଦା କରିଦେଲେ ।... "ମାର ମଦୁଆଙ୍କୁ । ଏମାନେ କେମିତି ଏ ଘରେ ପଶିଲେ ? କେତେ ସାହସ ଏମାନଙ୍କର ? କିଏ ତାଙ୍କୁ ସାହସ ଦେଲା ?"

ସୌରୀ ମହାପାତ୍ରକୁ କାନ୍ଥ ବି ଆଶ୍ରା ଦେଇପାରିଲା ନାହିଁ । ସେ ଟଳିଲା । ବଲ୍‌ବଲ୍ ଚାହିଁଲା, ମୁକୁଳା ବାଳ ମେଲେଇ ଅସ୍ତବ୍ୟସ୍ତ ଲୁଗାପଟା ସମ୍ଭାଳୁଥିବା, ବାହୁନି ବାହୁନି ଧକଉଥିବା, ବିଳପୁଥିବା ତା' ସ୍ତ୍ରୀକୁ; ତାକୁ ଯତ୍ନଉଥିବା ତା' ଭାଉଜକୁ, ଚେତାଶୂନ୍ୟ ହେଇ ତା' ଇଜତ ପାଇଁ ଲଢିଥିବା ତା' ଭାଇନାକୁ । ସେ ଠକ୍ ଠକ୍ ଥରି ଥରି ଆସ୍ତେ କାନ୍ଥ ମୂଳେ ସାଙ୍କୁଡିଗଲା, କୁଦ୍ଦେଇ ହେଇ ପଡିଲା । କେତେ ଛୋଟ । କେତେ ହିନିମାନିଆ, କେତେ ବେକୁବ ମଣିଷଟିଏ ଦିଶୁଥିଲା ସୌରୀ ମହାପାତ୍ର ସେତେବେଳେ ।

ଘରସାରା ଅପମାନରେ ନିସ୍ତବ୍ଧ ହେଇଗଲା । କଇଁକଇଁ କାନ୍ଦିଲା । ସାଇପଡିଶାରେ ଫିସ୍‌ଫିସ୍ ବ୍ୟାପିଗଲା ଘରର ଲାଜକଥା, ବେଜ୍ଜିତ କଥା ।

ରାତି ମଡେଇ ହୋଇ ପଡିଲା । ପବନ ଟେକିଲା । ସବୁ ଘା'ରୁ ରକ୍ତ ଝରିଲା । ଗ୍ଲାନି, କ୍ଷୋଭ ସନ୍ତାପରେ ଠୋପା ଠୋପା ଅଠାଳିଆ ରକ୍ତ ।

ଅଧରାତିଆ ବତାସି ଟେକିଲା । ଅଲଗା ଅଲଗା ବଖରାରେ ଆଖିରେ ପଲକ ନ ପକାଇ କାଠପରି ବସିରହିଲେ ଆତଙ୍କିତ ବିଡମ୍ବିତ ମଣିଷଗୁଡିଏ । କ'ଣ ହେଇଯାଉଛି ଆକାଶରେ ? କ'ଣ ସବୁ ଛିଡିପଡିଛି ?

କିନ୍ତୁ ବାଦ ବାଡ ଦୋହଲିଲା ନାହିଁ । ପଟୁଆରି ଆଗରେ ଦୁଇ ଭାଇ ଅଣ୍ଟାରେ ହାତ ଦେଇ ଠିଆହେଇଥିଲାବେଳେ ମୂଲିଆମାନେ ସେ ଖୁଣ୍ଟ ପୋତିଥିଲେ । ଖୁବ୍ ଗହିର, ଖୁବ୍ ମଜବୁତ୍ ।

କିନ୍ତୁ ବତାସିରେ ହାଣଖିଆ ଫୁଲଗଛଟା ସମ୍ଭାଳିଲା ନାହିଁ । ହା-ହା-କାର କରି ମଡେଇହେଇ ପଡିଲା । ମୁକୁଳା ବାଳପରି ବିଛେଇ ହେଇଗଲା ତା'ର ଅଜସ୍ର ଡାଳ, ଅଗଣା ସାରା । ସୌରୀର ସ୍ତ୍ରୀ ପୁଣି ଚିର୍‌ଚିରେଇ ଉଠିଲା ସେ ରାତିରେ । ଗୌରୀର ପିଲାଏ ପାଟିକରି ଉଠିଲେ ।

ଅଗଣା ମଝିରେ ଦୁର୍ଘଟଣା ବିଛେଇ ହୋଇ ପଡିରହିଥିଲା ।

ଛି, ଛି, ତମେ ଫୁଲଗଛ ପାଳିଥାନ୍ତେ ? ? ତମର ସେ ଯୋଗ୍ୟତା କାହିଁ ?



# ଆସନ୍ନ

"କିରେ ବବୁ ! ବାପା ଯାହା ସବୁ କହୁଛନ୍ତି ତା' କ'ଣ ସତ ? ତୁ ତାଙ୍କ ମୁଣା ବାକ୍ସରୁ ବାରଶହ ଟଙ୍କା ଚୋରେଇଚୁ ?"

"ହଁ ଚୋରେଇଛି । କ'ଣ ହୋଇଗଲା ସେଇଠୁ ?"

ବୈଠକ ଘରର କାନୁଗୁଡାକ ଖଜଣା-ଗାରଦ ମନ୍ତ୍ରୀ ପରି ଠପ୍ କିନା ସଳଖି ହୋଇଗଲେ । ନିଃଶ୍ୱାସ ଚଳିଲା ନାହିଁ କିଛି ସମୟ !

"ନା କିଛି ହେଲା ନାହିଁ ଯେ, କିନ୍ତୁ ହୋଇପାରନ୍ତା । ମୋ ଘରେ ତ ମୁଁ ଜଜ୍ ନୁହେଁ । ମୁଁ କେବଳ ତୋ ବାପାର 'ଦ୍ୱାରିକା ଭାଇନା' । ଢେର୍ ଚୋରଙ୍କ ମୁହଁଟାଣ ଆଉ ଭୁରୁଡି ମୁଁ ଦେଖିଆସିଛି !" ନାକପୁଡା ଫୁଲେଇ ଆଖି ତରାଟି ଟିକିଏ ଚଢାଗଳାରେ ଦ୍ୱାରିକାନାଥ ଚୌଧୁରୀ ମୁରବିପଣିଆରେ ଦି'ପଦ ହାଙ୍କି ଦେଲେ ।

"ଆପଣ ଦେଖିଆସିଛନ୍ତି । ମୁଁ କିନ୍ତୁ ଦେଖୁଛି ।" କହିଲା ବବୁ । ଖୁବ୍ ଠୋକ୍‌ଠୋକ୍ ଜବାବ୍ ପଛଆଡେ ଗୋଟାଏ ଗଭୀର ବନସ୍ତର ହେଣ୍ଟାଳ ଲୁଚିରହିଥାଏ । ଦୃପ୍ତ ଭୃରୁ, ଠିଆ ଠିଆ ନିଶ, ସୋଫା ଉପରୁ ଲମ୍ବିଆସିଥିବା ସଳଖ ଗୋଡ ଦୁଇଟାରେ ବେପରୁଆ ଠାଣି ।

ଦିହୁଡିହୁଳା ଉପରେ ଝୁଣାଗୁଣ୍ଡ ବୁଣି ହୋଇଗଲା । ଫାଉଁକିନା ଉଠି ଠିଆ ହୋଇ ପଡିଲେ ଦ୍ୱାରିକାନାଥ । – "କ'ଣ ହେଲା ! ଖୁବ୍ ମୁହଁ ବଢି କଥା କହିଯାଉଚୁ ତ !" କି'ରେ ଅର୍ଜୁନି, ଏଇଟାକୁ ପୋଲିସ୍ ହାଜତରେ ପକେଇଦେଲୁ !! ତୋ' ପୁଅ ହେଇ ଏଇଟା କିଛି ଶିଖି ନାହିଁ । ଯା'କୁ କଥା କହିବା ଜଣା ନାହିଁ । ଭଦ୍ରତା ଜଣା ନାହିଁ । କେମିତି ଗୋଡ ଫରକଟେଇ ବସିଛି ଅଭଦ୍ରଙ୍କ ପରି । ଆମେ ଯୋଡାଏ ଏଠି ଅଛୁ, କିଛି ଟିକିଏ ଖାତିରି ନାହିଁ! କ'ଣ ନା ଚୋରି କରିଛନ୍ତି ବୋଲି କୁଳଚନ୍ଦ୍ରମାଙ୍କର ଏମିତି ଗର୍ଉ!

ବବୁ କିଛି ନ କହି ମୁଣାରୁ ସିଗ୍ରେଟ୍ ପ୍ୟାକେଟ୍ କାଢିଲା !

ଦି'ହଳ ଆଖି ତରାଟି ହୋଇଗଲା । ପାଟି ମେଲା ହୋଇଗଲା !

ସେ ଗୋଟିଏ ସିଗ୍ରେଟ୍ ଆଣି ସୋଫା ଦଣ୍ଡା ଉପରେ ଆସ୍ତେ ଠୁକିଲା । କୌଣସି ପ୍ରକାର ଇତସ୍ତତଃ ନ କରି ଡାହାଣ ଓଠ କତରେ ତାକୁ ଲଗେଇନେଲା । ଦିଆସିଲିଟିକୁ ଥରେ ବଜେଇ ନେଇ କାଠି ବାହାର କଲା । ଛର୍‌କିନା ସିଗ୍ରେଟ୍ ଲଗେଇ କଲେ ଧୂଆଁ ଛାଡି ଅନେଇଲା ଆଗକୁ ।

ଦି'ହଳ ଆଖି ଛାନିଆଁ ହୋଇ ଅନେଇଥାନ୍ତି । ତାଙ୍କ ଆଗରେ ହତ୍ୟା ଅପରାଧ ହୋଇଗଲା । ନାରୀ-ଧର୍ଷଣ ହୋଇଗଲା । ସୂର୍ଯ୍ୟ ଚନ୍ଦ୍ର ଲେଉଟିପଡିଲେ । ଏଇ ବୋଧେ ଯୁଗ ଲେଉଟିଗଲା ।

ଗୁଳି ଫୁଟିଲା ପରି ଶୁଭିଲା, "ବେକୁବ୍ ନାଲାଏକ୍ ଇଡିଅଟ୍, ସୁଅର କା ବଚ୍ଚା – ଅଭଦ୍ର କାହାଁକା, ଠିକଣାରେ ଗୋଡ ଲୋଟେଇ ବସ। ଫୋପାଡ୍ ସେ ସିଗ୍ରେଟ। ନହେଲେ ବଜେଇବି ଚଟ୍‌କଣା ତୋ ଗାଲ ଫଟେଇଦେବି!" ହୁଏତ ବାପା ସେମିତି ଗର୍ଜିଲେ। ହୁଏତ ମଉସା – ହୋଇପାରେ ଉଭୟେ ମିଶି ସେମିତି ଦୁଲୁଦୁଲୁ ହେଲେ।

ବବୁ ସାମାନ୍ୟ ହସିଲା କେବଳ! "ଆପଣମାନଙ୍କ କଲିଜା ଖୁବ୍ ପୁରୁଣା ଆଉ ଦୁର୍ବଳ। ଏମିତି ଅସଂଯତ ଚିତ୍କାର କଲେ ସେଗୁଡିକ ବନ୍ଦ ହୋଇଯିବେ କିମ୍ବା ଖସି ପଡିବେ।"

"ଗେ୍‌ପବେ ଗେ୍‌ର, ସଇତାନ୍ ନିମକ୍‌ହାରାମ୍, ବାଷ୍ଟାର୍ଡ...!"

ବବୁ ଭୂରୁକୁଞ୍ଚେଇ ପୁଣି ସିଗ୍ରେଟ ଟାଣିଲା।

"ତୋର ଏତିକି ସାହସ, ମୋ ମୁହଁକୁ ଏମିତି ଧୂଆଁ ଛାଡିବୁ।"

"ଧୂଆଁ ଛାଡିବାରେ ସାହସର ପ୍ରୟୋଜନ କ'ଣ?" ଅଳ୍ପ ହସି କହିଲା ସେ – "ବସ୍ ଟ୍ରେନ୍ ବଜାରରେ ବହୁ ଆଜେ-ବାଜେ ଲୋକଙ୍କ ଧୂଆଁ ଶୁଙ୍ଘିବାରେ ତ ଆପଣ ଆପତ୍ତି କରିନାହାନ୍ତି!"

କେଜାଣି କାହିଁକି ଦୁଇଟି ବୟସ୍କ ମଣିଷ ସୋଫାକୁ ଭରାଦେଇ ଆଉଜିଗଲେ। ବବୁ ଖୁବ୍ ସହଜ ଭାବରେ ଗୋଡ ଲୋଟେଇ, ସଳଖ ହୋଇ ବସି, ହସିଲା ଏବଂ ଚାହିଁଲା ସେମାନଙ୍କ ମୁହଁକୁ।

"ତୁ...ତୁ ଏମିତି କହିପାରୁଚୁ?"

"ମାନେ ଏମିତି ଆମକୁ ମୁହେଁ ମୁହେଁ ଅପମାନ ଦେଇପାରୁଛୁ?"

"ଅପମାନ! – ମୁଁ ତ ଗୋଟିଏ ହେଲେ ସେପରି ଅପମାନସୂଚକ ଶବ୍ଦ ଉଚ୍ଚାରଣ କରିନାହିଁ! ଅବଶ୍ୟ ଅପମାନିତ ବୋଧ କରିବା ଗୋଟିଏ ନିହାତି ବ୍ୟକ୍ତିଗତ ବ୍ୟାପାର।"

"ତୁ ଏମିତି ଉତ୍ତର ଦେଉଚୁ?"

"ଉତ୍ତର ଦେବା ଶିଷ୍ଟାଚାର।"

"ତୁ ଆମ ଆଗରେ ଧୂଆଁ ଖାଉଚୁ।"

"ଆପଣ ମଦ ପିଅନ୍ତି। ରୁଚି ଟିକିଏ ଅଲଗା!"

"ତୁ କ'ଣ ଆମ ସମକକ୍ଷ?"...

"ସମକକ୍ଷ ତ ନିଶ୍ଚୟ; କିନ୍ତୁ ସମ୍ଭାବନାରେ ମୁଁ ଢେର୍ ବଡ। ଆପଣଙ୍କର ଆଉକିଛି ନାହିଁ। ମୋର ସବୁ ଅଛି। ଆପଣ ପଚିଶ ବର୍ଷ ତଳେ ଯେତିକି ପାଠ ପଢିଥିଲେ ସେସବୁ ଭୁଲିସାରିଲେଣି। ମୁଁ ଅନ୍ତତଃ ସେତିକି ପଢିଛି ଏବଂ ମୋର ସବୁ ମନେଅଛି।"

"ଆରେ ଚୁପ୍ କର, ତୋର ଅଭିଜ୍ଞତା କାହିଁ? ତୁ କ'ଣ ଦେଖିଛୁ ଜୀବନରେ?"

"ଅଭିଜ୍ଞତାର ଓସାର ଅପେକ୍ଷା ତା'ର ଗଭୀରତା ବେଶି ତାତ୍ପର୍ଯ୍ୟପୂର୍ଣ୍ଣ! ଆପଣ ବଞ୍ଚିଛନ୍ତି କେବଳ। ମୁଁ କିନ୍ତୁ ଦେଖିଛି ଏବଂ ବୁଝିଛି!"

ତବତବ ଆଖିରେ ଚାହିଁ ରହିଥାନ୍ତି ଚୌଧୁରୀ ସାହେବ । ତାଙ୍କ ମାଂସଳ ତୋଟି ଥଲ୍ ଥଲ୍ ହୋଇ ଥରୁଥାଏ । ତାଙ୍କ ତଳପାଟି ପେଟ ଭିତରର ନାଡ, ହାତ ପାଦ ସବୁ ବୋଧହୁଏ ଫଡ୍ ଫଡ୍ ହେଉଥାଏ । ସେ କେମିତି ଗୋଟାଏ ଡରିଲା ପରି ଘାବରେଇଲା ପରି ଦେଖାଯାଉଥାନ୍ତି । ଛନ୍ ଛନ୍ ଅନଉଥାନ୍ତି ଏପାଖ ସେପାଖ ।

ଅର୍ଜ୍ଜୁନ ଛୁଆଳସିଂହ ଆଣ୍ଠୁ ମୁଣ୍ଡ ହୋଇ ଚୌକିରେ ଲୋଟେଇ ବସିଥାନ୍ତି । ତାଙ୍କ ଆଖି ଛଳଛଳ । ଭୃତୁରା ମୁଣ୍ଡିଆ, ଦରବୁଢା କାନ୍ଦୁରା ମଣିଷଟିଏ । ସେ ଏକଲୟରେ ଚାହିଁଥାନ୍ତି ସାମନା କାନ୍ଥକୁ; ବୋଧହୁଏ ଶୂନ୍ୟକୁ!

ତା' ବୁଟ୍ ହଳଙ୍କୁ ଠପ୍‌କିନା ଏକାଠି କରି ବବୁ କହିଲା, "ମୋତେ କାହିଁକି ଡାକିଥିଲେ ତ କହିଲେ ନାହିଁ? ତାହେଲେ ମୁଁ ଆସେ ।"

ବସିବାଠୁ ହଠାତ୍ ଛାଟିଲା ପରି ଠିଆ ହୋଇପଡିଲେ ଦ୍ୱାରିକାନାଥ! "ନା, ନା, ତୁ ଖସି ଯାଇ ପାରିବୁ ନାହିଁ! ମୁଁ ସାଙ୍ଗେ ସାଙ୍ଗେ ଫୋନ କରି ପୋଲିସକୁ ଡକେଇଦେଉଛି ।"

"ଆଛା ?" – ହସି ହସି କହିଲା ବବୁ "କାହିଁକି ?"

"ତୁ ଚୋର ! ବାର ଶହ ଟଙ୍କା ଚୋରି କରିଥିବା ଅପରାଧ ତୁ ମୋ ଆଗରେ ମାନିସାରିଛୁ । ପୋଲିସ ଆଗରେ ହୁଏତ ଅନ୍ୟପ୍ରକାର କହିପାରୁ!"

ବବୁ ଖେଁ-ଖେଁ ମାରି ହସିପକେଇଲା – "କାହିଁକି ଅନ୍ୟ ପ୍ରକାର କହିବାକୁ ଯିବି ! ଗୋଟିଏ କଥାକୁ ବାର ପ୍ରକାର କହିବା ଗୋଟାଏ ପିଲାଳିଆ ଖେଳ ! ମୋର ସେ ଅଭ୍ୟାସ ନାହିଁ ।"

"ତା'ହେଲେ ତୁ ସ୍ୱୀକାର କରୁଛୁ ଯେ ତୁ ସେ ଟଙ୍କା ନେଇଛୁ ?"

"ଅବଶ୍ୟ!"

"ସାହସ ତ କମ୍ ନୁହେଁ ଦେଖୁଛି ! ତାଙ୍କ ଟଙ୍କା ତୁ ନେବାକୁ କିଏ ?"

"ମୁଁ ହୁଏତ କେହି ନୁହେଁ; କିନ୍ତୁ ଟଙ୍କା କ'ଣ ତାଙ୍କର ?"

"ହେ ହେ ହେ" – ନିଦରେ ବିଳିବିଳେଇଲା ପରି କିଛି ଦରକଣ୍ଠା ହସ ଶୁଭିଲା, "ତାଙ୍କ ମୁଣାରେ ଥିବା ସେ ଟଙ୍କା ତାଙ୍କର ନ ହୋଇ ଆଉ କାହାର ହୋଇପାରେ ?"

"ମୁଣାରେ ଟଙ୍କା ରହିବା, ଅଧିକାର କିମ୍ବା ଅର୍ଜନ ପ୍ରମାଣ କରେ ନାହିଁ । ଗୋଟାଏ ସରକାରୀ ଚାକିରିଆ ମାସ ଶେଷରେ ବେତନ ପାଏ । ପାଏ ଆଠଶହ । ସତର ତାରିଖରେ କାହା ପାଖରୁ ଧାର ନ ନେଲେ, ବେଙ୍କ୍‌ରୁ ଟଙ୍କା ନ କାଢି, ସେ କେମିତି ଏବଂ କାହାର କାରଣ' ଟଙ୍କା ମୁଣାରେ ଧରି ବୁଲୁଥିଲେ ?"

"ମାନେ ?" ନ୍ୟାୟପତିଙ୍କ ଆଖିରେ ବିମୂଢ ବିସ୍ମୟ!!

ଭୃତୁରାମୁଣ୍ଡିଆ ଦରବୁଢା ମଣିଷଙ୍କ ଆଖି ନିଆଁ ରଡ ପରି ଦହକି ଉଠିଲା ।

"ମୋ ଉପରେ ଗୁଇନ୍ଦାଗିରି କରିବାକୁ ତୁ କିଏ? ମୁଁ ଯୋଉଠୁ ଆଣିଲେ ତୁ କିଏ ପଚାରିବାକୁ ? ସେ ଟଙ୍କା ମୋର!"

ଠିଆ ହେଉ ହେଉ, ସିଗ୍ରେଟ୍ ମୁଣ୍ଡିରୁ ଶେଷ କଲେ ଧୂଆଁ ଛାଡି ସେ କହିଲା, "ଆପଣ ସେ ଟଙ୍କା ଚୋରି କରିଛନ୍ତି ।"

ତା'ପରେ ସିଗ୍ରେଟ୍ ମୁଣ୍ଡି ଉପରେ ଗୋଇଠି ମଡେଇ ସେ ପେଷ୍ଟ୍ ସାମ୍ନା ମୁଣାରେ ଠିଆ ପାପୁଲି ଦୁଇଟି ଭର୍ତ୍ତି କରି ସେ ସାମାନ୍ୟ ତଳମୁହାଁ ହୋଇ ଧୀରେ ଧୀରେ ଚାଲିଗଲା ଦୁଆରଆଡକୁ ।

ସେଇଠି ଫଡ୍ କିନା ବୁଲିପଡି ଫଣା ଟେକିଲା ଭଙ୍ଗୀରେ ଚାହିଁ କହିଲା, "ମୁଁ ପୋଲିସ ଆଗରେ ପ୍ରୟୋଜନ ହେଲେ ପ୍ରମାଣ କରି ଦେଇପାରେ! ମୁଁ ଏଇ ସାମ୍ନା ରାସ୍ତା ଉପରେ ଅଛି, ଆପଣ ଡକାନ୍ତୁ ପୋଲିସ୍!"

ପରଦା ପାଖରେ ମୁଣ୍ଡ ନୁଆଇଁ ସେ ବାହାରକୁ ଚାଲିଗଲା !

ବବୁଟା ଛ' ଫୁଟ ଉଚ୍ଚ ହୋଇଗଲାଣି । ତା' କାନ୍ଧର ମାପ ବାଇଶ ଇଞ୍ଚ !

X X X X

ଚୌଧୁରୀ ସାହେବଙ୍କ ବବୁର୍ଚ୍ଚି ଚା ଆଣି ଚାରିଆଡକୁ ଚାହିଁଲା । ଚୁପ୍‌ଚାପ୍ ମିଠା ଏବଂ ମିକ୍ସଚର ପ୍ଲେଟ୍ ଥୋଇ ତିନିକପ୍ ଚା ସଜାଡି ଦେଲା । ତା' ସାଙ୍ଗରେ ପୋଷା ବିରାଡିଟି ନିଃଶବ୍ଦରେ ଲାଞ୍ଜ ଠିଆକରି ଦେଇ ଗୋଡସନ୍ଧାରେ ଗଳିଆସିଲା ଏବଂ ଗଳିଗଲା । ଆଖପାଖ ରାସ୍ତା ପତିଆ ସାଇପଡିଶାରୁ ଚୁଁ ଶବ୍ଦଟିଏ ମଧ ଶୁଭୁ ନଥାଏ । କାନମୁଣ୍ଡା ପାଖରେ ଛାତି ଧପ୍‌ଧପ୍ ହେବାର ଜଣାଯାଉଥାଏ ।

ଟେଲିଫୋନ୍ ଚକି ବୁଲିଲା ! ଚୌଧୁରୀ ସାହେବଙ୍କ ଭ୍ରୁରୁ ଉପରେ ମହଣ ମହଣ ପଥର । ଚେହେରା ଫାଶିହୁକୁମ ଦେଲାଭଳି ଗମ୍ଭୀର ।

"କିଏ ? ବାହିନୀପତି କହୁଛନ୍ତିଟି ? ମୁଁ ଦ୍ୱାରିକାନାଥ ଚୌଧୁରୀ କହୁଛି । ହଁ... ନମସ୍କାର ! ଆଛା, ଶୁଣନ୍ତୁ, ଆପଣ ଟିକିଏ ପ୍ରସ୍ତୁତ ହୋଇ ଆସିବେ ! ଗୋଟିଏ ଚୋରି କେସ୍ ! – ହଁ, ପ୍ରମାଣ ସହ ସାକ୍ଷୀ ଏଇଠି ଅଛି !"

ଦୁଇହାତ ଉପରକୁ ଟେକି ସଂତ୍ରସ୍ତ ବାପଟି କ'ଣ ସବୁ ଗୁହାରି କରିବାକୁ ଫୋନ୍ ପାଖକୁ ଲସରପସର ହୋଇ ଝପଟିଗଲେ – "ନା ଦ୍ୱାରିକା ଭାଇ, ...ନା !"

ଚୌଧୁରୀ ସାହେବ ସେଇଭଳି ଗମ୍ଭୀର ହୋଇ ଫେରିଆସିଲେ ଚୌକି ଉପରକୁ । "ଆଛା, କ'ଣ ହେବ ଏଇନେ !" – ଭୟ ଉଦ୍‌ବେଗରେ ଟଳମଳ ଅର୍ଜୁନ ଛୁଆଳସିଂହ । "ତୁ ଚୁପ୍‌ଚାପ୍ ବସି ଚା ଖାଇପକା ! ମୁଁ ସବୁ ଠିକ୍ କରିଦେଉଛି ! ...ଲୁହା କର୍ଅଁଳ ହେଲେ ବିରାଡି କାମୁଡେ ! – ମୁଁ ଆଜି ପାଠ ଶିଖେଇ ଦଉଚି ରହିଥା !"

ସେ ଟପ୍‌ଟାପ୍ ଦୁଇଟା ସନ୍ଦେଶ୍ ପାଟିକୁ ପକେଇଦେଲେ । ପ୍ଲେଟ୍ ଟେକି ଧରିଲେ ବନ୍ଧ ମୁହଁ ପାଖରେ । ଗହଳିଆ ଗୁଙ୍ଗା ସ୍ୱରରେ କହିଲେ, "ଆବେ ଖା – ଖାଇଦେ ଲଢିବା ଆଗରୁ !" ଆସ୍ତେ ଆସ୍ତେ ଆରମ୍ଭ ହେଉ ହେଉ ଖିଆଚାଲିଲା । ତୃତୀୟ କପ୍ ଚା'କୁ ଉଭୟେ ବାଣ୍ଟିନେଲେ ଅଧାପିଆ ଭିତରେ ।

"ବୁଝିଲୁ ଅର୍ଜୁନି ! କେମିତି ଯୁଗ ବଦଳିଚାଲିଚି ଦେଖ୍ । ସବୁ ନୀତି-ନିୟମ ଧୋଇଆରେ ଭାସିଗଲାଣି । ସବୁ ଭୁସୁଡି ପଡୁଚି । ଯାର ମୁକାବିଲା ନ କଲେ ଆଉ ସଂସାର ରହିବ ନାହିଁ; ସମାଜ ରହିବ ନାହିଁ ! ଏଇ କେତେଦିନ ହେଲା ଗୁଡାଏ ବେନାମି ଚିଠି ମିଳୁଚି । ସେଥିରେ ଗୁଡାଏ ଖଚ ମିଛ ଡରାଣ ଦେଖେଇ ସାବଧାନ କରାହେଉଚି । ଚୋରି, ଧପ୍ପାବାଜି, ଗୋପନହତ୍ୟା ଆଦି ଯାବତୀୟ ଅପରାଧ ପାଇଁ ପଦସ୍ଥ ଲୋକଙ୍କୁ ଦାୟୀକରି, ତାଙ୍କୁ କୌଣସି ଅଜ୍ଞାତ ଇଜ୍‌ଲାସରେ ହାଜର ହେବାକୁ ଧମକ ଦିଆହେଉଚି । ଉଚିତ ସମୟରେ ଏ ସମସ୍ତଙ୍କୁ ନିପାତ କରିବାରୁ ଭବିଷ୍ୟତବାଣୀ ମଧ ଶୁଣେଇ ଦିଆହୋଇଛି । ଜଣାଯାଉଛି ଏମାନେ ଗୋଟାଏ ଦଳ – ଖୁବ୍ ଚାଲାକ୍ ମଜବୁତ, – ବହୁ ଦୂରକୁ ଚେର ମଡେଇଥିବା ଗୋଟାଏ ଅପରାଧୀ ସଙ୍ଘ । ସେମାନଙ୍କର ସବୁ ଚିଠି କଳାକାଗଜରେ ଧଳା ଅକ୍ଷର ଛପେଇ ଧାଡି ଧାଡି ହାଡମାଳ ପରି; ନିକୁଟି ହେଇଥିବା ଭାଡି ରଡି ଦାନ୍ତପରି !"

"କ'ଣ କହୁଚ ମୁଁ ଭାଇନା ! ଶେଷକୁ ତୁମକୁ ବି ସେମାନେ ଧମକ ଦେଇଛନ୍ତି ନା କ'ଣ– ?"

"ମୋତେ ଚାରି ନମ୍ବର ଚିଠି ଦେଲେଣି । ମୂଳରୁ କହିଛନ୍ତି, ସାତଟି ଖୁନ୍ ମାଫ୍ କଲାପରି ସାତଟି ଚିଠିରେ ସେମାନେ ସତର୍କ କରିବେ । ଯଦି ତଥାପି ପରିବର୍ତ୍ତନ ନଆସେ ତେବେ ତାଙ୍କ ଯଜ୍ଞରେ ପଶୁବଳି ପକେଇବାକୁ ନିର୍ଦ୍ଦିଷ୍ଟ କୌଣସି ତାରିଖରେ ନେଇଯିବେ । ...ଭାରି ନିଧଡକ ରୋକ୍‌ଠୋକ୍ ବ୍ୟାପାର । ଆଚରଣ ବିବାକ୍ ବେପୁରୁଆ । ଅବିକଳ ବଜ୍ର ପରି ।" – ଛପ୍‌କରି ଛାଇଟାଏ ପାରିହୋଇଗଲା ! କଲିଜା ଝୁଣ୍ଟି ପଡିଲା ଗୋଟାଏ ହୁତା ଉପରେ । – "ଗୋଇନ୍ଦା ବିଭାଗ ହାରଗଲେଣି । ସେମାନଙ୍କ ମୁଖିଆ ମୁଖିଆ ଲୋକେ ମଧ ଏମିତି ଚିଠି ପାଇସାରିଲେଣି । ସେଇଟା ଡାକରେ ଆସୁନାହିଁ । ସକାଳୁ ଶେଯରୁ ଉଠିଲାବେଳକୁ ଶୋଇବାଘରେ ପଡିଥିବାର ଦେଖାଯାଉଛି । ସବୁ କବାଟ ଝର୍କା ବନ୍ଦକରି ରଖିଲେ ବି କେମିତି କୋଉ ବାଟେ ଆସିଯାଉଚି !"

ଅର୍ଜୁନ ଛୁଆଳସିଂହଙ୍କ ଆଖିରେ ପଲକ ପଡୁନାହିଁ । ଓଠ ଶୁଖିଲା । ସେ କାଠଗଡାର ଯେକୌଣସି ସାବ୍ୟସ୍ତ ଆସାମୀ ପରି ଠିଆ ରହିଛନ୍ତି ।

"କିରେ ଏମିତି ଅନେଇଛୁ କ'ଣ ? ତୁ ସେଭଳି ଚିଠି ପାଇଛୁ କି ?"

"ପାଞ୍ଚଟା ପାଇଲିଣି ।" – ଓଠ ଆହୁରି ଶୁଖିଗଲା । ଭିଡିଭିଡି ହୋଇଗଲା ଭିତରକୁ !

ଚୌଧୁରୀ ସାହେବ ଉତ୍ତେଜିତ ହୋଇ ସୋଫାରେ ଟିପେଇ ବସିଲେ ! "ଆଚ୍ଛା, ତାହେଲେ ତ କେହି ବୋଧେ ବାଦ୍ ଯାଇନାହାନ୍ତି । ବଜାରରେ, ଦପ୍ତରରେ କେମିତି ଗୋଟାଏ ଆତଙ୍କ ଖେଳିଗଲାପରି ଦିଶୁଚି । ଏତେ ଚିଠି କେମିତି ବଣ୍ଟା ହୋଇ ଯାଇଚି, ଅଥଚ କେହି ଜାଣିପାରୁନାହାନ୍ତି !" –

ତା'ପରେ ଭୁସ୍‌କିନା ସେ ଠିଆହୋଇ ପଡିଲେ । ତାଙ୍କ ଆଖି ବୋଧହୁଏ ପାଚିଲା କରଣ୍ଡା କୋଳି ପରି ଖସିପଡିବ । ବାଁ ହାତ ପାପୁଲିରେ ଗୋଟାଏ ଘୁସିମାରି ସେ ତରବରରେ ପୁଣି

ବସିପଡିଲେ । ଘୋଷାରିନେଲେ ଚୌକିକୁ ଏବଂ ଫିସ୍ ଫିସ୍ କହିଲେ :

"ଗତ ଦୁଇ ସପ୍ତାହ ଭିତରେ ଏହି ସହରରୁ ପାଞ୍ଚଜଣ କୁଆଡେ ଅନ୍ତର୍ଦ୍ଧାନ ହୋଇଯିବା କଥା ଖବର ପାଇଚୁଚ ? ସମସ୍ତେ ଜଣାଶୁଣା ଲୋକ ।"

"କ'ଣ – ତାହେଲେ –" ମୁହଁରୁ ସବୁ ରକ୍ତ ନିଗିଡିଯାଇ ଦେହମୁଣ୍ଡ ଝିମି ଖାଇଗଲା ବୋଧହୁଏ । ଦୁହେଁ ଦୁହିଁଙ୍କ ଅଲକ୍ଷ୍ୟରେ ଛେପ ଢୋକିଲେ ।

କେତେଗୁଡିଏ ଭାରି ଭାରି ପାଦଶବ୍ଦ ପାଖେଇ ଆସିଲା ।

ଚୌଧୁରୀ ସାହେବ ଚୌକି ଘୋଷାରି ନେଇ ଯଥାସମ୍ଭବ ସ୍ୱାଭାବିକ ଏବଂ ଗମ୍ଭୀର ଦେଖାଗଲେ । – ପୋଲିସ୍ ତାହେଲେ ଆସିଗଲା ।

ପରଦା ଟେକି କିନ୍ତୁ ପଶିଆସିଲା ବଢୁ !! ତା' ପଛରେ ଆଉ ତିନିଜଣ ତା'ରି ଭଳି ତରୁଣ !

ଲମ୍ବା ସୋଫାଟିରେ ସେମାନେ ବସିଗଲେ । ଟେଲିଫୋନ୍ ପାଖରୁ ଚେକି ଟେକି ଆଣି ଚୌଧୁରୀ ସାହେବଙ୍କ ସାମ୍ନାସାମ୍ନି ବସିଗଲା ବଢୁ ।

"କାହାନ୍ତି ଆପଣଙ୍କ ପୋଲିସ୍‌ବାହୀନୀ ?"

"ଯଥାସମୟରେ ଆସିବେ । ତୁମ ବାହିନୀ ତ କିଛି କମ୍ ନୁହଁ !"

"ଆଚ୍ଛା, ଆଚ୍ଛା, ମୁଁ ଭାବି ଦୁଃଖିତ ଯେ ମୁଁ ଏମାନଙ୍କୁ ଚିହ୍ନେଇ ଦେଇ ନାହିଁ । ମୁଁ ଭାବିଲି, ଆପଣଙ୍କ ସାହିପିଲାଙ୍କୁ ଆପଣ ହୁଏତ ଜାମିଥିବେ । ଗାଡିରେ ଯିବା ଆସିବା କଲାବେଳେ ଏମାନଙ୍କୁ ଅନ୍ତତଃ ରାସ୍ତା ଉପରେ ଦେଖିଥିବେ ।"

"ହଁ, ଏ ଦୁହିଁଙ୍କୁ କିଛିଟା ଚିହ୍ନି ପାରୁଚି । କିନ୍ତୁ..."

"ଆଜ୍ଞା ଠିକ୍ କହିଚନ୍ତି, ୟା ନାଁ ଶକ୍ତି, ତା' ନାଁ ଯୋଗୀ... ଆଉ ଏଇ ଯାହାକୁ ଆପଣ ଚିହ୍ନିପାରୁନାହାନ୍ତି, ତା' ନାଁ ଅବଧୂତ । ପାଞ୍ଚବର୍ଷ ତଳେ ତା' ବାପକୁ ଆପଣ ଫାଶୀ ହୁକୁମ୍ କରିଥିଲେ ।"

ଚୌଧୁରୀ ସାହେବ ଫଡ୍‌କିନା ଚମକି ପଡିଲେ; କିନ୍ତୁ ପୁଣି ସମ୍ଭାଳି ବସିଗଲେ । ବଢୁର ସ୍ୱର ଖୁବ୍ ସ୍ୱାଭାବିକ । ତା' ସାଙ୍ଗମାନେ ସେମିତି ସ୍ଥିର ।

"ଟିକିଏ ମନେପକାନ୍ତୁ । ପାହାନ୍ତିଆ ପହରରେ ଜଣକୁ ଫାଶୀ ପାଖକୁ ଭିଡିନେଲାବେଳେ ସେ ଚିତ୍କାର କରି ଜେଲ୍ ହତା କମ୍ପେଇଦଉଥିଲା ଯେ, ସେ ନିର୍ଦ୍ଦୋଷ; ତାକୁ ବିନା ଦୋଷରେ ଫାଶୀ ଦିଆହେଉଛି; ତା' ସ୍ତ୍ରୀକୁ ସେ ଖୁବ୍ ଭଲପାଏ; ତାକୁ ସେ କଦାପି ମାରି ନାହିଁ । ତାକୁ ଉଧମ୍ ସିଂ କଣ୍ଟ୍ରାକ୍ଟର, ଆଉ ତା' ପାଞ୍ଚଜଣ ସାଙ୍ଗ ଗୋଟାଏ ରାତି ଭିତରେ ମାରିଦେଲେ । ...ତାକୁ ତୁଣ୍ଡି ବାନ୍ଧି ଫାଶୀ ଦିଆଗଲା !"

ଚୌଧୁରୀଙ୍କ ଇଚ୍ଛା, ଗୋଟାଏ ଚିତ୍କାର କରି ସେ ଏମାନଙ୍କୁ ଘଉଡାଇ ଦିଅନ୍ତେ; ନିଜେ ଉଠି ଚାଲିଯାଆନ୍ତେ ଏ ଅପମାନ ଭିତରୁ ! କିନ୍ତୁ ସେ କିଛି କରିପାରୁନଥାନ୍ତି ! କିଛି କହିପାରୁନଥାନ୍ତି !

"ଉଧମ୍ ସିଂକୁ ତ ଆପଣ ଚିହ୍ନିଥିବେ !...ସେ କେଉଁ ବିଷ୍ଣୁନଗରରେ ଆପଣଙ୍କ କୋଠା

ତିଆରି କରିଛି ମ!" – ଭାରି ଘରୋଇ ଶାନ୍ତସ୍ୱର ବଳ୍ଟୁର!

ଚୌଧୁରୀଙ୍କ କପାଳରେ ଟୋପା ଟୋପା ଝାଳ। ଅର୍ଜୁନ ଛୁଆଳସିଂହ ଚିତ୍ରପ୍ରତିମା ପରି ଚାହିଁରହିଛନ୍ତି। ଆଖିରେ ପଲକ ପଡୁନାହିଁ।

"ଅବଧୂତ ଆସିଥିଲା ଖାସ୍ ଆପଣଙ୍କୁ ଦେଏଖିବ ବୋଲି। ତାକୁ ଜମା ପନ୍ଦରବର୍ଷ; ସେ ଏଇନା ଟ୍ରେନ୍‌ରେ କଫି ବିକ୍ରି କରେ। ତାକୁ କିଏ କହିଲା ଆପଣ ଫିଆଟ୍‌ରେ ଯାଆନ୍ତି। ସେ ଜଗିଛି। ଛ'ମାସ ହେଲା ଆପଣଙ୍କର ଏ ମର୍ସିଡିସ୍ ଆସିବା କଥା ତାକୁ ଜଣାନାହିଁ। – ବେନ୍ ଏଣ୍ଡ୍ ବେନ୍ କମ୍ପାନୀ ଆପଣଙ୍କ ଝିଅ-ଜ୍ୱାଇଁଙ୍କଠୁ ଆମେରିକାରୁ କ'ଣ ସବୁ ଉପହାର ଆଣିବ ଏ ମାସ ଶେଷ ସୁଦ୍ଧା, ସେ କଥା ଏ ବିଚରା ଅବଧୂତ କେମିତି ଜାଣିବ... ?"

"ଶେପ୍ କର୍। ...ଅର୍ଜୁନି, ଏଇ ସେଇ ସର୍ଦ୍ଦାର। ଟୋ ପୁଅ ସେ ଦଳର ସର୍ଦ୍ଦାର। ଏ ସବୁ ଚିଠି ପଢୁଛି। ସବୁ ଖବର ରଖୁଛି। ଆଜି ସେ ସବୁ କଳାଚିଠିର ରହସ୍ୟ ଖୋଲିଗଲା।" ହଠାତ୍ ଜୋର୍‌ରେ ପାଟି କରି ଉଠିଲେ, "ମୁଁ ସେମାନଙ୍କର ଜାଲ କାଟି ତା'ର ସର୍ଦ୍ଦାରର ମୁଖା ଖୋଲିଦେଲି। – କାହିଁ ସେ ବାହିନୀପତି ? ? ! !"

କୌଣସି ଉତ୍ତେଜନା ପ୍ରକାଶ ନକରି ବଳ୍ଟୁ ସେମିତି ସ୍ଥିର ଭାବରେ କହିଲା – "ଆରେ, ଆପଣ କ'ଣ ସେ କଳାଚିଠି ପାଉଛନ୍ତି ନା କ'ଣ ?" – ଆଶ୍ଚର୍ଯ୍ୟ ହେଲାପରି ତା' ସାଙ୍ଗମାନଙ୍କୁ ଚାହିଁ କହିଲା – "ମୁଁ କହୁଛି ପରା, କେହି ସେଥିରୁ ବାଦ୍ ଯିବେ ନାହିଁ! ଦେଖିଲୁ ନା ଅବଧୂତ! ସେ ଯେ ସହସ୍ରାକ୍ଷ ସହସ୍ରବାହୁ, ବୋଲି ଦସ୍ତଖତ ଦେଉଛି! ସେ ସତକୁ ସତ ସବୁ ଦେଖୁଛି, ସବୁ ଜାଣୁଛି, ସବୁ କରୁଛି।"

ତା' କଥାର ଭଙ୍ଗୀରେ ଚୌଧୁରୀ ସାହେବଙ୍କ ସବୁ ଉତ୍ସାହ ମଉଳିଗଲା। – ତାହେଲେ ଏ ସର୍ଦ୍ଦାର ନୁହେଁ। କିନ୍ତୁ ଏ ନିଶ୍ଚୟ ସେ ଦଳରେ ଅଛି। ଗୋଟାକୁ ଟାଣିଲେ ବାକି ସମସ୍ତେ ଉଠିଆସିବେ। କାହିଁ ଗଲା ସେ ବାହିନୀପତି ? ସେ ଓହଟି ଓହଟି ଚାହୁଁଥାନ୍ତି ଦୁଆରଆଡେ!

"ବାହିନୀପତିଙ୍କର ସାମାନ୍ୟ ବିଳମ୍ବ ହେବାର ସମ୍ଭାବନା! ସେ ଟିକିଏ ଅଡୁଆରେ ପଡିଛନ୍ତି। ଆପଣଙ୍କ ଫୋନ୍ ହେଲାବେଳକୁ ବୋଧହୁଏ ସାଢେ ଆଠଟା ସମୟ, ତାଙ୍କ ପାଖରେ ଟିକିଏ ଲୋକଗହଳି ହୋଇଥାଇପାରେ! ଆମେ ଶୁଣୁଥିଲୁ, କୁଆଡେ ତାଙ୍କୁ ଦେଖାକରିବାକୁ କିଏ ସବୁ ଆସିଛନ୍ତି କୁଆଡୁ! ପଅରଦିନ ରାତିରେ ସିନେମା ଘରୁ ଯୋଡାଏ କୁକୁରିଆ ଟୋକାଙ୍କ ଦାଉରୁ ବଞ୍ଚିବାକୁ ଝିଅଟିଏ ଆସି ଥାନାରେ ଆଶ୍ରୟ ନେଇଥିଲା। ତାକୁ ସେ ଟୋକା ବଳାତ୍କାର କଲେ ବୋଲି ରିପୋର୍ଟ ଲେଖେଇନେଲେ। ସେଥିରେ ଡାକ୍ତରୀ ପରୀକ୍ଷା ତାକୁ ନେଇଗଲେ। ପ୍ରମାଣ ଅଭାବରୁ ମିଥ୍ୟା ଅଭିଯୋଗରେ ଜେଲ୍ ହେବ ବୋଲି ଡରାଇଲେ। ତା'ପରେ ତା' ଅଭିଯୋଗର ସତ୍ୟତା ଆଣିବାକୁ ଡାକ୍ତରଙ୍କ ଦେଖିବା ପାଇଁ ଯଥେଷ୍ଟ ପ୍ରମାଣ ତିଆରି କଲେ ରାତିସାରା! ଝିଅଟି ଡାକ୍ତରଖାନାରେ ଏବେବି ପଡିଛି।... ଏମିତି ଅଡୁଆରେ ସେ ହୁଏତ ଆସିବାକୁ ଡେରିହେବ। ଅବଶ୍ୟ ବାହିନୀପତିଙ୍କୁ କେହି ଛୁଇଁପାରିବେ ନାହିଁ। ସେ ଅନ୍ତତଃ ପୁଞ୍ଜାଏ ମନ୍ତ୍ରୀଙ୍କ ଶଳା!"...

..."ଦୁଇଟା ଡକେଇତ ଦଳ ଏକାଦିନରେ ଆସି ସହରରେ ଏବଂ ଗାଁଗହଳିରେ ଝାମ୍ପ ମାରୁଛନ୍ତି । ବାହିନୀପତି ଏଠି ନଥାନ୍ତି କି ସେଠି ନଥାନ୍ତି । ଉଭୟେ ଧରା ନପଡି ଖସିଯାଆନ୍ତି । କିନ୍ତୁ ଉଭୟଙ୍କ ସର୍ଦ୍ଦାର-ସଲାମୀ ତାଙ୍କ ଘରେ ପହଞ୍ଚିଯାଏ । ବିଦେଶୀ ମାଲ ଦେଖି ସେ ମଉକା ଉପରେ ସର୍କାରଙ୍କ ମୁଣ୍ଡିଆଳମାନଙ୍କ ଘରେ ବାଣ୍ଟିଦିଅନ୍ତି । ଆପଣଙ୍କର ସେ ଯେଉଁ ଜାପାନୀ କାନ୍ଥଘଣ୍ଟା, ଅବିକଳ ମାଣିକରାମ ଭଜନଲାଲ୍ ଘରୁ ଚୋରି ହୋଇଥିବା ଘଣ୍ଟା ଭଳି! ଆପଣଙ୍କୁ ଏଇଟା ବାହିନୀପତି ନିଶ୍ଚୟ ଦେଇ ନାହାନ୍ତି!"...

ବବୁ ଘଣ୍ଟା ଦେଖି ଠିଆହେଲା – "ଆଚ୍ଛା, ଆମେ ତାହେଲେ ଆସୁଛୁ ? ଦଶଟା ବାଜିବାକୁ ଯାଉଛି । ବାପା ବୋଧହୁଏ ଯୋଗାଣ-ମନ୍ତ୍ରୀଙ୍କ ପାଖକୁ ଯିବେ । ସେଇଠି ଅନେକ ଆୟୋଜନ ପ୍ରୟୋଜନ ରହିଛି । ଆଜି ରତନଲାଲ କୁଲି-ସର୍ଦ୍ଦାର ଆସିଥିବ; ହଜାରେ ଦାଦନ ଶ୍ରମିକଙ୍କ ମାଲିକ । ଦିନକୁ ମୁଣ୍ଡପିଛା ପନ୍ଦର ଟଙ୍କା ବିଲ୍ କରେ; ଦିଏ ଚାରିଟଙ୍କା ? ଆଜକୁ ବାରବର୍ଷ ହେଲା ତା'ର ବ୍ୟବସାୟ ଚାଲିଛି – ବାପା କିଛି ସେ ଶ୍ରମଝାଳର ହିସାବ-ନିକାଶ କରିବେ । ମନ୍ତ୍ରୀଙ୍କ ପାଣି-ପାନ ଖର୍ଚ୍ଚ ବ୍ୟବସ୍ଥା ହେବ । ଆସନ୍ତାକାଲି ଗସ୍ତବେଳେ ଡାକବଙ୍ଗଳାରେ ପାଞ୍ଚଟିଯାକ ମ'କାର ପାଇଁ ଯୋଗାଡ କରାହେବ ।"

ସୋଫା ଉପରେ ଚିତ୍ରପିତୁଳା ସେମିତି ମେଞ୍ଚା ହୋଇ ଅନେଇଥାଏ ଆଗକୁ ଏବଂ ଶୂନ୍ୟକୁ!

"ପୋଲିସ୍ ଆଜି ଆଉ ଆସିବ ନାହିଁ । କୌଣସି ପ୍ରୟୋଜନ ବେଳେ ସେ ଆସିନାହିଁ । ମୁଁ କିନ୍ତୁ ସବୁବେଳେ ଆପଣଙ୍କ ପାଖେ ପାଖେ ଅଛି; ଡାକିଦେଲେ 'ଓ' କରିବି । ମୁଁ ତ ଚୋର । ବାପାଙ୍କ ମୁଣାରୁ ବାରଶ' ଟଙ୍କା ନେଇଛି । ସୁନାହାଟ ସାହିରେ ମୋର ଜଣେ ବିମାତା ଥାଆନ୍ତି । ତାଙ୍କ ନାଁ ଉଲୁପୀ; ଆମ ବାପାଙ୍କ ଜଣେ ଉପପତ୍ନୀ । ତାଙ୍କର ଦୁଇଟି ପିଲା । ମୁଁ ତାଙ୍କୁ ଟଙ୍କାତକ ଦେଇଚି । ତାଙ୍କ ପାଞ୍ଚବର୍ଷର ପୁଅଟା ଅବିକଳ ବାପାଙ୍କ ପରି । ମୋର କିନ୍ତୁ ସେ ସୌଭାଗ୍ୟ ନାହିଁ । କୌଣସି ସରକାରୀ ବାପାର ଚେହେରା ସହିତ କୌଣସି ପିଲାର ଚେହେରା ଏ ସହରରେ ମିଶେ ନାହିଁ । ...ନାଁ କ'ଣ କହୁଚୁ ଶକ୍ତି ?...ମୁଁ କିନ୍ତୁ ମୋ ଚେହେରାକୁ ଖୋଜି ଦିନେ ନା ଦିନେ ବାହାର କରିନେବି । ସେ ଯିବ କୁଆଡେ ?"

ଚାରିଜଣଯାକ ଆଗପଛ ହୋଇ ବାହାରିଗଲେ ।

ଚୌଧୁରୀ ସାହେବ ବିଡ୍‌ବିଡ୍ ହେଲେ "ଏଇ ସେଇ କଳାଚିଠିର ଦଳ! ସାଙ୍ଘାତିକ! – ଓଃ!!"

ଅର୍ଜୁନ ଛୁଆଳସିଂହ ଭଡ୍‌ଭଡ୍ କାନ୍ଦିପକାଇଲେ । ସେମିତି କାନ୍ଦ ଭିତରେ ହାତ ଟେକି ଆଶୀର୍ବାଦ ଭଙ୍ଗୀରେ କହିଲେ – "ମୋର ସମଗ୍ର ଆୟୁଷ ନେଇ ତୁ ବଞ୍ଚିଥା! ପୁରୁଷ ପୁରୁଷ ଧରି ତୁମର ଆବିର୍ଭାବକୁ ଏ ପୃଥିବୀ ଅପେକ୍ଷା କରି ରହିଥିଲା । ତୁମେ ଆସିଲ । ଏ ପୃଥିବୀକୁ ଏଣିକି ଉଦ୍ଧାର କର! – ଉଦ୍ଧାର କର ଏବଂ ବିନାଶ କର ଆମ୍ଭମାନଙ୍କୁ ।"

ଚୌଧୁରୀ ସେ ବେକୁବ୍ ବାପଟାକୁ ଆଶ୍ଚର୍ଯ୍ୟ ହୋଇ ଅନେଇଥାନ୍ତି । □

# ଚଳଚ୍ଚିତ୍ର

ଖୁବ୍ ଶୀତରେ ରକ୍ତ ବି କିଛି ପରିମାଣରେ ଜମାଟ ବାନ୍ଧିଯାଏ ନା' କଣ । ସେ ଦିନ ଠିକ୍ ଆଜିଭଳି ଡିସେମ୍ବର ମାସ ଏକତ୍ରିଶ୍ ତାରିଖ; ରାତି ସାଢେ ଚାରିଟା । ଅନ୍ଧାର ତଥାପି ଜମିରହିଥାଏ; ଓହଳି ରହିଥାଏ ଧଳା ଧଳା ନିରନ୍ଧ୍ର କୁହୁଡି । ମୋର ପ୍ରତି ନିଃଶ୍ୱାସରେ କୁହୁଡି ଆସୁଥାଏ ଏବଂ ଯାଉଥାଏ । ମୁଁ ମୋର ବେଡିଂଟିକୁ ଧରି କାନପୁର ପ୍ଲାଟ୍‌ଫର୍ମ ଉପରକୁ ଓହ୍ଲେଇ ଆସିଲି, ଫୁଟନ୍ତ ଚା ଟିକିଏ ପିଇଦେଲେ କାଳେ ବଞ୍ଚିଯିବି ଏଇ ଆଶାରେ ! ବଡଦିନ ଛୁଟିରେ ଘରୁ ଫେରୁଥାଏ । ଲୋଗକୋଗ ଗରମ ପେଣ୍ଟ କୋଟ ଉପରେ ଏମିତି ଗୋଟାଏ କମ୍ବଳ ମୁଣ୍ଡ ଉପରୁ ଘୋଡେଇ ହୋଇଥାଏ ନିଃସଙ୍କୋଚରେ । ଏତେ ଶୀତରେ କିଏ ପଚାରେ ଚେହେରାକୁ; କିଏ ବା ସେଇଠି ଥିଲା ଦେଖିବାକୁ ? ଜଣେ ସେଇ ଠେକାଭିଡା ଚା'ବାଲା ଏବଂ ଆଉ ଜଣକ ହେଲା ଶୀତ ରାତିର କୁହୁଡି । ଚା ଭାଡିର ଉତାପରେ ସେ କୁହୁଡିଟା ଯଦି କିଛି ତରଳିଥାନ୍ତା, ତେବେ ଅବା ଦି'ଚାରିଟା ମଣିଷ ବାହାରିଆସିଥା'ନ୍ତେ...

ମୁଁ ସେଇ ମାତ୍ର କପେ ଚା ମୋ ବୁକୁ ପାଖରେ ଟେକିଧରିଥାଏ । ଚା ବାମ୍ଫରେ ମୋ ପାଟିରେ ବାମ୍ଫ ମିଶୁଥାଏ । କହୁଡିଆ ଦିଶୁଥାଏ ମୋ ହାତ ଏବଂ ଚା ପିଆଲା । ମୁଁ ଓଠ ନୁଆଇଁ ଆଣୁଛି, ଏତିକି ବେଳେ ପଛରୁ ଟ୍ରେନ୍ ଝରକା ପାଖରୁ ଶୁଭିଲା – 'ହେ ଚାୟ-ବାଲେ !'

ମୁଁ ବୁଲିପଡି ଚାହିଁଦେଲି । ମୋର ଇଚ୍ଛା ହେଲା ସେଇ ମୁହୂର୍ତ୍ତରେ କମ୍ବଳଟାକୁ କାଢି ଫିଙ୍ଗିଦେବାକୁ; ଟିକିଏ ନିଜକୁ ସଜାଡି ନେବାକୁ । କିନ୍ତୁ ଉପାୟ ନ ଥିଲା । ହାତରେ ଚା ଧରିଥିଲି ତ !... ତା' ବାହାରେ, ସେ ବି ତ' ନିହାତି ବେଖାତିର ରେଜେଇଟାଏ ଘୋଡେଇ ହୋଇ ବସିଥିଲା ! ତା' ଅଲଗା ବାଳ ଏବଂ ମୁହଁ ଉପରେ କୁହୁଡିଘେରା ବାର୍ ଲାଇଟ୍ ଆଲୁଅ ପଡି ରାଫେଲ୍ ଚିତ୍ରଭଳି ଦେଖାଯାଉଥିଲା !...

ମୁଁ ସେ ପର୍ଯ୍ୟନ୍ତ ଜାଣିନଥିଲି ଯେ ମୋ ପାଖ ବର୍ଥ ଉପରେ ଛିଟ ରେଜେଇ ଭିତରେ ଏ ଲହୁଣି ରଙ୍ଗର ଝିଅଟି ରାତିରସାରା ଶୋଇରହିଥିଲା । ଭାରି ଇଚ୍ଛା ହେଲା କମ୍ବଳଟାକୁ ଫିଙ୍ଗିଦେଇ ମୋର ଅବିନ୍ୟସ୍ତ ଚେହେରାଟିକୁ ବାଗେଇନେବା ପାଇଁ । ଇଚ୍ଛା ହେଲା ପୁଣି ସେଇ ଟ୍ରେନ୍‌ରେ

ଚଢ଼ିଯାଇ ପ୍ରୟାଗରୁ ଗଙ୍ଗାସାଗରଯାଏଁ ତୀର୍ଥ କରିବାକୁ । ମୁଁ କିନ୍ତୁ ସେମିତି କମ୍ବଳ ଘୋଡେଇ ହୋଇଥିବା ଭୁତୁରାମୁଣ୍ଡା ଅପରିଚ୍ଛନ୍ନ ଅବସ୍ଥାରେ ସେ ଝର୍କା ପାଖକୁ ଯାଇ ଅଳ୍ପ ହସି କହିଲି :

"ସୁପ୍ରଭାତ ଜଣଉଚି ! ଆପଣଙ୍କ ପଡିଶାରେ ସହଯାତ୍ରୀ ହେବାର ସୌଭାଗ୍ୟ ମୁଁ ଅର୍ଜନ କରିଥିଲି । ଏ ଚା କପ୍‌ଟି ଆପଣଙ୍କୁ ଦେଇପାରେ କି ?"

ମୁଁ ହସିଲେ ମୋ ଦାନ୍ତ ଚମତ୍କାର ଦିଶେ ବୋଲି ମୁଁ ଜାଣିଥିଲି । ସେ ମୁହୂର୍ତ୍ତେ ମୋତେ ଚାହିଁ ହସିଲା କି ? କେମିତି କହିବି ରାଫେଲ୍‌ର ସେ ଉଷ୍ଣମ ଚିତ୍ରଟି ତା' ଲୋହିତ କେନ୍ଦ୍ରରେ କମ୍ପିଲା ନା ନାହିଁ !

ଶୁଭିଲା "ଧନ୍ୟବାଦ !"

କାହିଁକି କେଜାଣି ମୁଁ ହଠାତ୍ ମନେକଲି ଯେ ଚା'ରେ ବୋଧେ ଯଥେଷ୍ଟ ଚିନି ପଡିନାହିଁ । ମୁଁ ଆଲୁଅକୁ ପଛ କରି ଆଡ ହୋଇ ଠିଆ ହୋଇଥିଲି । ସେ ଶୀତାର୍ତ୍ତ ପ୍ଲାଟଫର୍ମର ଯେତେ ଟିକେ ଆଲୁଅ ଥିଲା, ସବୁ ସେଇ ଝର୍କା ଫ୍ରେମ୍ ଭିତରେ ଠୁଳ ହୋଇ ରହିଯିବାକୁ ମୁଁ ଚାହିଁଥିଲି ।

"ଆପଣ ଏଠି କାହିଁକି ଓହ୍ଲେଇଗଲେ ?"

"ବାଧ ହେଲି । ମୋତେ ଏଠି ଆଉ ଗୋଟିଏ ଟ୍ରେନ୍‌କୁ ଅପେକ୍ଷା କରିବାକୁ ପଡିବ ।"

ଚା'ରେ ଛୋଟ ଛୋଟ ଦୁଇଟି ଚୁମୁକ୍ ଦେଇ ସେ କହିଲା, "ଅପେକ୍ଷା କରିବା ଭାରି ବୋରିଂ !"

ମୁଁ କ'ଣ କହିଥାନ୍ତି କେଜାଣି । କିଛି କହିପାରିଲି ନାହିଁ । ମୁଣ୍ଡରୁ କମ୍ବଳ ଖସେଇ ଆଣିଲି କାନ୍ଧ ଉପରକୁ । କାନ ପାଖ ଖୁବ୍ ଗରମ ଲାଗୁଥିଲା ।

ଏତେ ବଡ ଜଙ୍କସନ୍‌ଟାରୁ ଏତେ ଶୀଘ୍ର କ'ଣ ଟ୍ରେନ୍ ଛାଡିଦିଏ; ମିରିଗ କାନ ପରି ହଲୁଥିବା ହାତ ପାପୁଲିଟି ଏତେ ଶୀଘ୍ର କୁହୁଡି ଭିତରେ ମିଳେଇଯାଏ ?

ମୁଁ ଅନେକ ସମୟ ସେ ଖାଲି ପିଆଲାଟିକୁ ଧରି ଠିଆରହିଥିଲି । ଚା'ବାଲା କାଶିଲା । ମୁଁ ତାକୁ ପଇସା ଦେଇ ପିଆଲା ଫେରେଇଦେଲି । ସେ ଜାଣିପାରିଲା କି ମୁଁ ଚା'ପିଇ ନାହିଁ ବୋଲି ? ଭାଟି ପାଖରେ ବସି ସେ ବୋଧେ ନିଆଁ ଦହକଉଥିଲା । ନହେଲେ ତ ମୋତେ ସେ ଆଉ କପେ ଚା ଯାଚିଥାନ୍ତା – କାହିଁ, ଯାଚିଲା ନାହିଁ ତ ! ମୋର ବି ପ୍ରୟୋଜନ ନଥିଲା ।

ଆଠବର୍ଷ ଭିତରେ ଗଙ୍ଗାରେ ଅନେକ ବନ୍ୟା କୂଳ ଲଙ୍ଘି ମାଡିଯାଇଥାଏ । ବିଖ୍ୟାତ ଔଷଧ କମ୍ପାନୀର ଏଜେଣ୍ଟ ଭାବରେ ମୁଁ ଏମିତି କୁହୁଡି ଭିତରକୁ ଓହ୍ଲେଇପଡିଥାଏ ଏଇ କାନପୁର ଷ୍ଟେସନରେ । ଦେହରେ ମୋଟା ଓଭର କୋଟ୍ । ହାତରେ ଗରମ ଦସ୍ତାନା । ଫେଲ୍‌ଟା ଟୋପି । ବ୍ରିଫ୍‌କେସ୍ ଥୋଇଦେଇ ମୁଁ ଚା ପାଇଁ ବରାଦ କରିଥାଏ । ଟ୍ରେନ୍ ପ୍ରାୟ ଛାଡିବା ଉପରେ । କୁହୁଡି ଭିତରୁ କିଛି ପାଦଶବ୍ଦ ପାଖେଇ ଆସିଲା । ସେଇ ମଳିଛିଆ ଆଲୁଅ ଭେଦି ବାହାରିଆସିଲେ ଦୁଇଜଣ । ଜଣକୁ ଦେଖି ମୁଁ ଟିକିଏ ଚମକି ପଡିଲି । ସେ ମୋ'ରି ରଙ୍ଗର ଓଭର୍ କୋଟ୍ ପିନ୍ଧିଥିଲା । ମୁଣ୍ଡରେ ଫେଲ୍‌ଟ ଟୋପି । ସେମିତି କଳା ଗରମ ପେଣ୍ଟ ଏବଂ ସେତ୍ ଜୋତା । ହାତରେ

ଦସ୍ତାନା...କିନ୍ତୁ କାଶ୍ମୀର ଶାଲ୍ ଘୋଡେଇ ହୋଇ ସେ ମହିଳାଟି ମୋତେ କାହିଁକି କେଜାଣି ବୁଲି ବୁଲି ଚାହିଁଲା ।

ପୁରୁଷଜଣକ ଡବା ନମ୍ବର ଦେଖି କହିଲା, "ଏଇ, ଉଠିଆସ! ଏଠି ଗୋଟିଏ ବର୍ଥ ଖାଲି ହେବାର ଥିଲା । ବୋଧହୁଏ ସେ ଓହ୍ଲେଇଗଲାଣି । ଆମର ଦୁଇଟିଯାକ ବର୍ଥ ରିଜର୍ଭ ମିଳିଗଲା ।"

ମହିଳାଟି ତଥାପି ମୋତେ ଚାହିଁ ରହିଥାଏ । ମୋ ଡାହାଣ ହାତରେ ମୁଣ୍ଡରୁ ଟୋପି କାଢିଦେଲି । ମୁହୂର୍ତ୍ତକରେ ସେ ଅତି ଆଶ୍ଚର୍ଯ୍ୟ ହେଲା ପରି ରହିଲା :

"ଆରେ, ଆପଣ ଏପର୍ଯ୍ୟନ୍ତ ଏଇଠି ଅପେକ୍ଷା କରି ରହିଛନ୍ତି!"

ଖଣ୍ଡିଆଭୂତରେ ଶୁଖିଲା ପତ୍ରଗୁଡିଏ ପରି ଆଠଟି ବର୍ଷ ଭଉଁରୀ କାଟି ଉଭେଇଗଲେ । ଝରକା ପଛପଟୁ ରେଜେଇ ଘୋଡେଇ ହୋଇଥିବା ମୁହଁଟି ଝଲମଲ ଦିଶିଗଲା । ମୁଁ କିଛି କହିବା ପୂର୍ବରୁ ସେ ଟ୍ରେନ୍ ଭିତରକୁ ଉଠିଯାଇ ସେ ଝର୍କାଟି ପାଖରେ ବସି ସାରିଥିଲା । ଓଢଣା ପକେଇଲା ପରି ଶାଲ୍ ଘୋଡେଇ ହୋଇଥିବା ସେ ମୁହଁ ଧୂଆଁଳିଆ ଆଲୁଅରେ ଝର୍କା ଫ୍ରେମ୍ ସହିତ ରାଫେଲ ଚିତ୍ର ପରି ମୁହୂର୍ତ୍ତେ ଦିଶିଗଲା । ଅପସରିଗଲା ଚଳନ୍ତି ଟ୍ରେନ୍ କୁହୁଡି ଭିତରକୁ!

ମୁଁ ଅନେକ ଡେରିରେ ବିଡ୍ ବିଡ୍ ହେଲି "କପେ ଚା'...(ପିଇଥାନ୍ତେ କି) ? ଚା'ବାଲା ବୁଢା ବୋଧହୁଏ ପ୍ରସ୍ତୁତ ଥିଲା । ମୋ ସାମ୍ନାକୁ ଧରିଲା ଫୁଟନ୍ତା ଚା'ର ପିଆଲା ।"

ମୋର ମନେପଡିଗଲା ଯେ ସେଦିନ ସେ ଡିସେମ୍ବର ଏକତ୍ରିଶ ତାରିଖ ।

ଆଜି ଏଇ ସେଇ କାନପୁର ପ୍ଲାଟଫର୍ମ ଉପରେ ମୁଁ ଚା ଦୋକାନର ଦର୍ପଣକୁ ଚାହିଁ ଠିଆ ରହିଛି । ମୋ ମୁହଁରେ ଦୁଇ ତିନି ଦିନର ଦାଢି । ମୋ ଅଲରା ବାଳ ସବୁ କେରା କେରା ଧଳା । ମୁଁ ପୁରୁଣା କଳା ସୁଟ୍‌ଟିଏ ପିନ୍ଧିଛି । ସେଇଟା ଅନେକ ଢିଲା ଜଣାପଡୁଛି । ଶୀତ ସମ୍ଭାଳି ହେଉନାହିଁ । ଉପରେ ଘୋଡେଇ ହୋଇଛି ମଡେଲ ଛାପର ମାକିନ୍‌ଟୋସ୍ କମ୍ବଳ । ବଡପୁଅ ସୁରେଶକୁ କଲିକତା ଗାଡିରେ ଚଢେଇଦେବାକୁ ଆସିଥିଲି... ।

ତା' ପାଖ ବର୍ଥରେ ଛିଟ ରେଜେଇ ଘୋଡେଇ ହୋଇ ବସିଥିବା ସେ ଲହୁଣି ରଙ୍ଗର ଝିଅଟିକୁ ମୁଁ ଦେଖିବାମାତ୍ରେ ପାଖେଇଯାଇଥିଲି । ବିନା ଦ୍ୱିଧାରେ କହିଥିଲି, "ସୁପ୍ରଭାତ ଜଣଉଚି । କପେ ଚା ଖାଆନ୍ତୁ ।" – ସେ ମୋର ଏ ଅବିନ୍ୟସ୍ତ ଚେହେରାକୁ କିଛିତ୍ ଡରିଲା ଡରିଲା ଆଖିରେ ଚାହିଁଲା । ଜମା ଚିହ୍ନିଲା ନାହିଁ ।

ଟ୍ରେନ୍ ଛାଡିଲାବେଳକୁ ମୁଁ ଦର୍ପଣକୁ ଚାହିଁ ରହିଥିଲି । ସୁରେଶ ବାଥରୁମ୍‌ରୁ ଆସି ହାତ ହଲେଇ ବିଦାୟ ଜଣାଉଥିଲା । ମୁଁ ଦର୍ପଣରେ ଚାହିଁଥିଲି ଚଳନ୍ତା ଟ୍ରେନ୍‌କୁ ଏବଂ ମୋର ସେ ଅପରିଚିତ ସ୍ଥିର ମୁହଁଟିକୁ ।

ପ୍ଲାଟ୍‌ଫର୍ମରେ ଅପେକ୍ଷା କରିବା ସତେ ଭାରି ବୋରିଂ! ମୁଁ ବା କାହିଁକି ଆଉ ଅପେକ୍ଷା କରିବି ?



# ଭାଗଶେଷ

"ଓ, ଏଇ ତାହେଲେ ସେଇ ?"

"ହଁ, ହଁ, ଏଇ ସେଇ – ଏଇ ସେଇ !"

"କିଏ ?...କ'ଣ... ? କୋଉଠି ?"

ଛୋଟିଆ କୌତୂହଳୀ ମଣିଷଙ୍କ ଭିଡଟିଏ ଠେଲାପେଲା ହୋଇ କଚେରୀ ବାରଣ୍ଡାରେ ମୋତେ ପାରିହୋଇ ଚାଲିଗଲା ହାଜତ୍ ଆଡକୁ । ମୁଁ ସେତେବେଳେ ଅନ୍ୟମନସ୍କ ଚାହିଁ ରହିଥିଲି ସାମନାକୁ । ଟିକିଏ ଦୂରରେ ତଳ ଗୋହିରୀ ଧାନ କିଆରିରେ ଫସଲ ଉଠାଣି ପାଣି ମାଡି ରହିଥାଏ । ଶୀତ ଅପରାହ୍ଣର ଖରା ଲମ୍ବା ଲମ୍ବା ଗଛଛାଇ ଫାଙ୍କରେ ବୋହିଯାଉଥାଏ ପୂର୍ବକୁ । ପାଣି ଉପରେ କୁଆମେଳି ପଡିଥାଏ । ଶହ ଶହ କୁଆ ଥଣ୍ଟରେ ପାଣି ଛାଟି ଡେଣା ଫଡକାଇ ଗାଧଉଥାନ୍ତି । ମୁଁ ଅପେକ୍ଷା କରିଥାଏ ଯୋଗେନ୍ଦ୍ରକୁ । ହୁଏତ ଅଳସରେ କୁହୁଳୁଥିବା ସିଗ୍ରେଟ୍ ଖଣ୍ଡ ସରିବା ପର୍ଯ୍ୟନ୍ତ । ମଣିଷ ତୁଣ୍ଡର ରାଉ ରାଉ ଡାକ ଶୁଣି ମୁଁ ସାମାନ୍ୟ ବିଚଳିତ ହୋଇପଡିଲି; ବିରକ୍ତ ମଧ ହେଲି । ଇସ୍, ୟାଙ୍କ ଅପେକ୍ଷା କାଉମାନେ ବରଂ ଭଲ । କିନ୍ତୁ ମୋର ଧ୍ୟାନ ଭଙ୍ଗିଯାଇଥିଲା । ମୁଁ ଆଉ କାଉମେଳି ଦେଖି ପାରିଲି ନାହିଁ । ଘଣ୍ଟାକୁ ଚାହିଁଦେଇ ବିନା କାରଣରେ, ବିନା ଯୁକ୍ତିରେ ସେଇ କୌତୂହଳୀ ଲୋକଙ୍କ ସୁଅରେ ମିଶିଗଲି । "କିଏ ? କ'ଣ ? କୋଉଠି ?" ମୋ କାନ ପାଖରେ ଅହରହ ଧ୍ୱନିତ ହେଉଥିଲା ।

ଜନାନା ହାଜତ୍ ପାଖରେ ଭିଡଟି ଜମିଯାଇଥାଏ । ନାଲି ରଙ୍ଗର ମୋଟା ମୋଟା ଲୁହା ରେଲିଂ ଲାଗିଥିବା କବାଟ ପଛକୁ ଅନ୍ଧାର ଗୁମ୍ଫା – ଅଣଓସାରିଆ, ଅପରିଚ୍ଛନ୍ନ । ମୁଁ ଓହଟି ଚାହିଁଲି । ବାଘଯନ୍ତା ଭିତରକୁ ଲୋକ ଯେମିତି ଚାହାନ୍ତି । ପ୍ରଥମେ କିଛି ବାରିପାରିଲି ନାହିଁ । ତା'ପରେ ଖୁବ୍ ମଇଳିଆ ମାଟିର ରଙ୍ଗର ଲୁଗା ଘୋଡେଇ ହୋଇଥିବା ଆକୃତିଟାଏ ଦିଶିଲା । କିଏ ସେ ? ମଣିଷ ନା ଜନ୍ତୁ ?...ମରଦ ନା ମାଇକିନା ?... ପିଲା ନା ବୁଢା ?

"ଏଇ ସେଇ, ଏଇ ସେଇ !"

"କିଏ ?"

"ଏଇ ପରା ସେଇ ପିଶାଚୁଣୀ ଯେ ତା' ପୁଅକୁ ମାରି ଖାଇଗଲା !"

"ଇସ୍ !"

"କଞ୍ଚା ମାଉଁସ ଚୋବେଇ ଖାଇଗଲା !"

"ଇସ୍ ! ଇସ୍ !"

ମୋ ଦେହ ଶୀତେଇ ଉଠିଲା । ମନ ବିଷେଇଗଲା । ମା'ହେଇ ପୁଅଟାକୁ ଖାଇଦେଇପାରେ । ମୁଁ ସିଗ୍ରେଟ୍‌ଟାକୁ ଜୋର୍‌ରେ ଟାଣି ତଳେ ପକାଇ ଗୋଡ ମଡେଇଦେଲି । ମୁହଁ ଫେରେଇ ପଳେଇଯିବାକୁ ଚାହିଁଲି । କିନ୍ତୁ ଗଲି ଆଗକୁ । କହୁଣେଇ ପଶିଲି ତାକୁ ପାଖରୁ ଦେଖିବାକୁ ।

ଆଲୁରୁବାଲୁରୁ ଚେହେରା, ଆଲୁରୁବାଲୁରୁ ବାଳ । ସବୁ ସେଇ ଧୂସର ପୋଡାମାଟିର ରଙ୍ଗ । ଶଙ୍ଖି ଶୁଖିଯାଇ ଦୁହିଁ ହେଇ ରହିଥାଏ । ଦୁକୁଦୁକି ବୁକୁରେ ହାଡର ବିଦମାଳ । ହାତ ପାପୁଲି ଶିରାଳ । ଆଙ୍ଗୁଠିଗୁଡାକ ଗଣ୍ଠିଆ, ଦନ୍ତୁରା । ଏଇଥିରେ ସେ ତଣ୍ଟି ଚିପିଦେଇଥିବ । ଏଇଥିରେ ମାଉଁସ ଓଟାରି ଖାଇଥିବ । ପାଦରୁ ମୁଣ୍ଡଯାଏଁ ପୁଣି ଶୀତ କଣ୍ଟା ମାରି ଥରିଗଲା । ମୁଁ ତାକୁ ଚାହିଁ ଠିଆ ରହିଥାଏ । ଲୋକେ ରାଉ ରାଉ ହଉଥାନ୍ତି । ମୋ କାନ୍ଧରେ କେହି ଜଣେ ହାତ ଥୋଇବାର ମୁଁ ଅନୁଭବ କଲି । ବୁଲି ଚାହିଁଲାବେଳକୁ ଯୋଗେନ୍ଦ୍ର !

ଯୋଗେନ୍ଦ୍ର ଚୌଧୁରୀ ଓକିଲ । ମୋ ସାଙ୍ଗେ ପଢୁଥିଲା । ଅଭିଜାତ ଘର ପିଲା । ଏବେ ଜମିବାଡି ସବୁ ଛାରଖାର ହୋଇଗଲାଣି । ଭାଗବଣ୍ଟା, ମାଲିମକଦ୍ଦମା, ବଢ଼ିମଗୁଡ଼ିରେ ସରିଗଲାଣି । ଯୋଗେନ୍ଦ୍ର କିନ୍ତୁ ନିଜ ଅର୍ଜନରେ ଡେର୍ କଲାଣି – କୋଠା, ଗାଡି, ବଗିଚା ! ଓକିଲ ହିସାବରେ ଯୋଗେନ୍ଦ୍ରର ଅନେକ ଖ୍ୟାତି ଏବଂ ଖାତିର ଅଛି ।

ଡେଣା ଧରି ସେ ମୋତେ ଏକରକମ ଟାଣି ନେଇଗଲା : "ଆବେ ଚାଲ୍, ଭୋକ କଲାଣି । କୋଉଠି ବସି କ'ଣ ଟିକିଏ ଖାଇବା । ନ ହେଲେ ଚାଲ୍ ଆମ ଘରକୁ, ମୁଁ ଗାଡି ନେଇ ଆସେ ।"

"ନା, ମୁଁ ଏଇନେ କାହା ଘରକୁ ଯିବାକୁ ପ୍ରସ୍ତୁ ନୁହେଁ । ଚାଲ୍ ପଳେଇବା ଏଠୁ । ଆଠ ଦଶ କିଲୋମିଟର ବାହାରକୁ, ନିରୋଳାରେ ଟିକିଏ ବସିବା । ଜମା କିଛି ଭଲ ଲାଗୁନାହିଁ ।"

"ତୁ ଅଯୋଗ୍ୟ, କବି ହେଲୁ କାହିଁକି ? ଏମିତି ନରମା ମନ ନେଇ ସରକାରୀ ଚାକିରି କଲୁ କାହିଁକି ? ହଉ, ଚାଲ୍ ତେବେ । ବାଟରୁ ଶିବୁ ଦୋକାନରୁ କିଛି ଗରମ ପିଆଜି ଆଉ କିଛି ମିଠା ନେଇଯିବା । ଏମିତି କାକର ପାଗରେ ଆଉ ପ୍ରକାରେ ଜମିଥାନ୍ତା; କିନ୍ତୁ ତୁ ହତଭାଗା ତ ସେଥିକୁ ଅଭାଜନ ! ତୋ ପାଲରେ ପଡି ଆଜି ପିଆଜି ଭଜିବାକୁ ହେବ । କ'ଣ କରାଯାଏ ?" ଥଟ୍ଟାରେ ହସିଦେଇ ସେ ଗଲା ଗାଡି ଆଣିବାକୁ ।

ଆମେ କିଛି ସମୟ ନୀରବରେ ଗହଳି ପାରି ହୋଇଗଲୁ । ତା'ପରେ ସେ ମୋତେ ଆଡଆଖିରେ ଚାହିଁ ପଚାରିଲା, "କିବେ, ଏମିତି ଗମ୍ଭୀର ହୋଇ ବସିଛୁ କାହିଁକି ?"

"ଆରେ, ସେକଥା ତୁ ଓକିଲ ବାପୁଡା କାହୁଁ ବୁଝିବୁ ? ତମେଗୁଡାକ ତ ଏଠି ଖୁଣୀ, ଚୋର,

ଡକେଇତ, ଡାହାଣୀ ପିଶାଚୁଣୀଙ୍କୁ ନେଇ ବଞ୍ଚୁଚ । ତୁମ ଭିତର କାଠେଇଗଲାଣି । ଆଜି ଦିନସାରା ସାଙ୍ଘାଟିକ ଘଟଣାସବୁ ଘଟିଚାଲିଛି । ସବା ଶେଷକୁ ଏଇ ଭୟଙ୍କର କଥା ଶୁଣି ମୋ ମଣ୍ଡ ଦୋହଲିଯାଇଛି । ମା'ଟାଏ କେମିତି ପୁଅଟାକୁ ଖାଇଦେବ ? ଓଃ...ତୁ ଯୋଗେନ୍ଦ୍ର ସେ ମାଇକିନାଟାକୁ ଦେଖିଛୁ ନା ନାହିଁ! ଏମିତି ପୁଣି ଅଛନ୍ତି ? ଦେଖିଲେ ବି ତୋର ସେଥିରେ କ'ଣ ହବ! ତୁ ପରା ଓକିଲ । ଅପରାଧୀ ମଣିଷ ଦେଖି ଦେଖି ତୁ ପାଚିଗଲୁଣି !"

ଯୋଗେନ୍ଦ୍ର ସାମାନ୍ୟ ଗମ୍ଭୀର ହୋଇ ଫଟକିନା ମୋ ଆଡେ ମୁହଁ ବୁଲେଇ କହିଲା, "ସେ ମାଇକିନିଆଟି ମୋ ମହକିଲ ।"

ମୁଁ ପ୍ରାୟ ଚମକିପଡିଲି । "କିବେ, ତତେ ଆଉ କେହି ମିଳିଲେନି । ତୁ ତୋ ବିଦ୍ୟାବୁଦ୍ଧି ସାରି ଏ ପୁତଖାଇଟାକୁ ବଞ୍ଚେଇବାକୁ ବସିଚୁ ?"

ଯୋଗେନ୍ଦ୍ର ଭୁରୁକୁଞ୍ଚେଇ ମତେ ଚାହିଁଲା । କହିଲା, ବୁଝିଲୁ କବି, ତୋର ସାଧାରଣଜ୍ଞାନ ଟିକିଏ ଅଭାବ । ଯେତିକି ଶୁଣିଲୁ ସେତିକି ବୁଝିଗଲୁ ? ଚାଲ୍ ତତେ ସେଠି ପହଞ୍ଚିଲେ ବୁଝେଇବି ।

"ବୁଝେଇବୁ କ'ଣ ନେଫେଡା ! ପାପୀ ଅପରାଧୀଙ୍କୁ ଖଚ ମିଛ କହି ନ ବଞ୍ଚେଇଲେ ଓକିଲଙ୍କ ବେଉସା ବୁଡିଯିବ ନାଇଁ ।"

ଯୋଗେନ୍ଦ୍ର ମୋତେ ଚାହିଁ ବଡ ବିଚିତ୍ର ଢଙ୍ଗରେ ହସିଲା । କିଛି କହିଲା ନାହିଁ । ଲମ୍ବା ନିଃଶ୍ୱାସଟିଏ ନେବାର ମୁଁ ଲକ୍ଷ୍ୟକଲି ।

ରାସ୍ତାକୁ ଲାଗି ଧାନକ୍ଷେତ । ଫସଲ ଉଠାଣି ଲଣ୍ଡା ଲଣ୍ଡା କିଆରି ହୁଡାରେ ଅଳ୍ପବାଟ ଗଲେ ଏମିତି ସେ ଟାଙ୍ଗରା ମୁଣ୍ଡିଆ । ଆମେ ବହୁବାର ସେଇଠି ବସି ସୂର୍ଯ୍ୟାସ୍ତ ଦେଖିଛୁ । ସବୁଥର ନୂଆ ଲାଗେ । ସେଦିନ ଗାଡି ରଖି ଆମେ ପାହାଡ ଉପରେ ପହଞ୍ଚିଲାବେଳକୁ ପ୍ରାୟ ଗୋଠାବାହୁଡା ସମୟ ।

ସେଇଠି ସେ ବସୁ ବସୁ କହିଲା, "କିରେ ଏମିତି କ'ଣ ଆଜି ହଉଚୁ ? ଆ, ବସ୍ । ଏ ପିଆଜି ଖାଇବା । ତୋର ସବୁ ରୋଗ ଛାଡିଯିବ । ଆବେ ଓଲୁ, ସଂସାରଟା କ'ଣ ଖାଲି ତୁ ଯେମିତି ଚାହିଁବୁ ସେମିତି ଚାଲିବ ? ତା' ଢଙ୍ଗ ତା'ର; ତୁ ଖାଲି ଅନେଇ ଥା ।"

"ଶୁଣ ଯୋଗେନ୍ଦ୍ର ! ତୁ ତୋର କଚେରି ଦସ୍ତୁର କଥା ରଖିଥା । ଏ ସଂସାରଟା ପାଗଳା ଗାରଦ ନୁହେଁ । ଏଠି ନିର୍ଦ୍ଦିଷ୍ଟ ନିୟମରେ ସୂର୍ଯ୍ୟ ଚନ୍ଦ୍ର ଆତଯାତ ହେଲାପରି କେତେଗୁଡିଏ ମୌଳିକ ନିୟମ ଅଛି ନା ନାହିଁ ? ସେଇଟା ଭାଙ୍ଗିଗଲେ ଏସବୁ ଭୁଷୁଡି ପଡିବ ।"

"ପଡୁ ! ତୁ କ'ଣ ଠିକା ନେଇଛୁ ତାକୁ କାନ୍ଧେଇ ଠିଆହେବାକୁ । ନା ତୋର ଏଇମାତ୍ର ହଲେ କାନ୍ଧଉପରେ ସେଇଟା ଥୟ ଧରିବ ? କାହିଁ ସେଥିରୁ ଗୁଡାଏ ଅଗଡମ୍ ବଗଡମ୍ ନେଇ ଘାଣ୍ଟି ହଉଚୁ ? ଚୁପ୍‌ଚାପ ବସ୍ ଆଉ ଦେଖ୍ ସଂସାରକୁ ଏ ପିଆଜିଟା ବଢିଆ ହୋଇଚି, ଖା !"

"ଆରେ ଯାଃ, ଦେଖୁଚୁ କ'ଣ, କହୁଚୁ କ'ଣ ? ମା' ଯଦି ପିଲାର ତୋଟି ଚିପି ତା' କଞ୍ଚା ମାଉଁସ ଖାଇଗଲା, ଆଉ କ'ଣ ରହିଲା କହିଲୁ ? ସେ ପିଶାଚୁଣୀକୁ ତିନିଥର ଫାଶି ନ ଦେଇ ତୁ

ବସିଛୁ ପୁଣି ତାକୁ ବଞ୍ଚେଇବାକୁ । ହାୟରେ ଅଭାଗା !"

ଯୋଗେନ୍ଦ୍ର ସେମିତି ବିଚିତ୍ର ଢଙ୍ଗରେ ମୋତେ ଚାହିଁଲା । କହିଲା, "ମୁଁ ଦେଖୁଛି ମୋତେ କହିବାକୁ ହିଁ ପଡିବ । ସବାଶେଷରେ ତତେ ବସେଇ ଦିନେ ସବୁ ନିଶ୍ଚେ କହିଥାନ୍ତି । କିନ୍ତୁ ଉପାୟ ନାହିଁ ।"

ମୁଁ ନ ଶୁଣି ରହିପାରିଥାନ୍ତି । ସେ ବୀଭତ୍ସ କଥା ଶୁଣିବାକୁ ମୋର ରୁଚି ହେଉ ନଥିଲେ ସୁଦ୍ଧା ଉତ୍ସୁକତା ଥିଲା । ଅବଶ୍ୟ ମୁଁ ହିଁ ଆସିଥିଲି, ତାକୁ ସେଦିନ ଘଟିଥିବା ଅନେକ ଭୟଙ୍କର ଘଟନା କଥା କହିଥାନ୍ତି ପରିସ୍ଥିତି ଅନ୍ୟପ୍ରକାର ହୋଇଗଲା । ଯୋଗେନ୍ଦ୍ର ଉପରେ କ'ଣଟାଏ ମଡେଇ ହେଲାପରି ସେ ବସିଥାଏ ।

ଖୁବ୍ ଦୂରରୁ ମଣିଷ ସ୍ୱର ଶୁଭୁଥାଏ । ପକ୍ଷୀଙ୍କ ଡାକ ଶୁଭୁଥାଏ । ଝିମ୍‌ଝିମ୍ କରୁଥାଏ ଚାରିଆଡ ।

ସେ କହିଲା, "ମୁଁ ତାକୁ ଦେଖିଲି ଚାରିଦିନ ତଳେ; ଥାନା ହାଜତ୍‌ରେ । ସେଇଠି ବି ଏମିତି ଲୋକଙ୍କ ଭିଡ । ମୋର କୌତୂହଳର ସୂଚନା ପାଇ ଥାନାବାବୁ ପ୍ରବଳ ଉତ୍ସାହରେ ତାଙ୍କ ପକ୍ଷର ଗଳ୍ପଟିକୁ କହିଗଲେ –

ଯା'କୁ ସାର୍ ଏମିତି ଦେଖୁଛନ୍ତି ଏଇନା । ତା' ପାଖ କେହି ପଶିପାରୁ ନଥିଲେ । ସମସ୍ତଙ୍କ ଭୟ, କାଳେ ତଣ୍ଟି କଣା କରି ରକ୍ତ ପିଇଯିବ । ମୋତେ ତ ସାର୍, ଆପଣ ଜାଣନ୍ତି । ମୁଁ ଯାଇ ଯେମ୍ତି ପହଞ୍ଚିଚି ଜଣକ ହାତରୁ ଲାଠିଟିଏ ଛଡେଇ ମାଡିଗଲି । ଡାଆଣୀ ନା ପିଶାଚୁଣୀ ? ଗୋଟାଏ ଖେଦା ଖାଇ ସେ ସେଇ ଗଛମୂଳେ ଗଡିପଡିଲା । ତା' ଅଣ୍ଟାରେ ଗୋଡ ମଡେଇ ମୁଁ ଆମ ବୀରମାନଙ୍କୁ ଡାକିଲି ତା' ହାତଗୋଡ ବାନ୍ଧିବାକୁ । ତା'ପରେ ତାକୁ ଆଣି ହାଜତରେ ପକାଇଛୁ ! ତା'ର ବୋବାଳି ଶୁଣିଲେ ରକ୍ତ ପାଣି ହୋଇଯିବ । ସେ ମଝିରେ ମଝିରେ ଭୂଇଁକୁ ଦରାଣ୍ଡି ପକେଇ ଗୋଟାଏ ଜନ୍ତୁଭଳି ରଡି ଛାଡୁଛି ! ଏଇଟା ସାର୍ ମଣିଷ ନୁହେଁ । ଯେ ପୁଅଟାକୁ ଚୋବେଇ ଖାଇଗଲା ସେଇଟା କଞ୍ଚାଡାଆଣୀ । ତାକୁ ଜିଅନ୍ତା ପୋଡିଦେଲେ ବି ଦୋଷ ନାଇଁ !

ଯୋଗେନ୍ଦ୍ର ଟିକିଏ ରହିଯାଇ ମୋ ମନକଥା ହିଁ କହିଲା । ମୁଁ ସେ ଥାନାବାବୁକୁ ପଚାରିଲି, 'ଆଜ୍ଞା ଆପଣ ଦେଖିଛନ୍ତି ତାକୁ ତା' ପୁଅ ମାଉଁସ ଖାଇଲାବେଳେ ? ଥାନାବାବୁ ତା' ନିଜ ଢଙ୍ଗରେ କଥା ବାଆଁରେଇଲାବେଳେ ସେ ଗହଳି ଭିତରୁ ଜଣେ ଧଡିଆ ମଳିଛିଆ ଲୋକ ଉପରେ ପଡି କହିଲା, 'ନାଇଁ ବାବୁ ଏମାନେ କେହି ଦେଖି ନାହାନ୍ତି – ମୁଁ...' ସେ ଏତିକି କହିଛି କି ନାହିଁ ଥାନାବାବୁ ଗର୍ଜିଲା – "ଆବେ ଏଇଟା ପୁଣି କ'ଣ ଗାଲୁ କାଢୁଛି ? ଦବଟି ଶଳାକୁ ଗାରଦରେ ପୂରେଇ ତାଲା ଠୁକ !" ସେ ଲୋକଟା କିଛି କହିଲା ନାହିଁ, ତଳକୁ ମୁହଁପୋତି ଅନିଚ୍ଛାରେ ପାହାଚ ଓହ୍ଲେଇ ଚାଲିଗଲା ରାସ୍ତାକଡ ବରଗଛ ମୂଳକୁ !

ମୋତେ ଜଣାଗଲା ଯେ ପ୍ରକୃତ କଥାଟା ସେଇ ମଳିଛିଆ ଲୋକ ହିଁ ଜାଣିଚି ! ମୁଁ ବେଳ ଦେଖି ତା' ପାଖେ ଯାଇ ପହଞ୍ଚିଲି । 'କିଓ ବାବୁ, ତମ ନାଁ କ'ଣ ?' ସେ ଗୋଟାଏ ଆଡେ ଚାହିଁ

କୌଣସି ଆଗ୍ରହ ନଥାଇ କହିଲା – ସୁଦାମ – ସୁଦାମ ନାୟକ ।

'ତମେ ସେ ମାଇକିନିଆଟିକି ଜାଣ ?'

'ଜାଣିଲେ କି ହେବ ? ତମେଗୁଡା ସବୁ ବାବୁନୋକ । ତମକୁ ସତ କଇଲେ ମିଛ ହବ ! କେନେ ତୁଚ୍ଛାଟାରେ କଥା ସାରିବି ! ତମେ ତ ଗହୁଁଚ ସେ ଟିର୍ଲାଟାକୁ ମାରିତେ ! ଦଉନ ମାରି ଚଷଳ – କେନେ ହଇରାଣ କରୁଚ ?'

"ବୁଝିଲୁ କବି ! ସେ ଲୋକଟା ଭିତରେ ଗୁଡାଏ କ'ଣ ସବୁ ଗବ୍‌ଗବ୍ ହେଇ ଫୁଟୁଥାଏ ! ଅଭିମାନରେ, ରାଗରେ ସେ କାନ୍ଦ କାନ୍ଦ ହେଇଯାଉଥାଏ ! ତୁ ଥିଲେ ଦେଖିଥାନ୍ତୁ ତା' ଚେହେରା, ତା' ଢଙ୍ଗ ! ମୁଁ ତା' ବିଶ୍ୱାସ ଜମେଇବାକୁ କପେ ଚା ଦେଲି । ସେ ଗୁମ୍‌ମାରି ବସିଲା । ତା'ପରେ କହିଲା –

'ଏଠି ବିଚାର ନାଇଁ ବାବୁ ! ମଣିଷର ବିଚାର ନାଇଁ କି ସେ ଭଗବାନ୍‌ର ବି ବିଚାର ନାଇଁ ।'

ତା'ପରେ ସେ ତା' ଢଙ୍ଗରେ ଯାହା କହିଲା, ଯେମିତି କହିଲା, ମୁଁ ତତେ କ'ଣ ଆଉ କହିବି ! ମୋଟାମୋଟି କଥାଟା ହେଲା ଏଇ – ଏ ମାଇକିନିଆକୁ ସେ ପିଲାବେଳୁ ଜାଣେ, ସେ ତା' ଗାଁଝିଅ । ଭାରି ସୁନ୍ଦର ଝିଅ କୁଆଡେ । ସେ କଥା କହିଲାବେଳେ ସୁଦାମର ଆଖି ଛଳଛଳ ହେଇଯାଉଥାଏ । ତାକୁ ବାହା ହବାକୁ କେତେ ଲୋକ ଆସିଥିଲେ । କିନ୍ତୁ ଶେଷକୁ ବାହାଘର ଗୋଟାଏ ଧନୀ ପରିବାର ସହିତ ସ୍ଥିର ହେଇଗଲା ! ଝିଅ ଭଲ ଖାଇବ, ପିନ୍ଧିବ ବୋଲି ଲୋଭରେ ପଡି ତା' ବାପ-ମା' ତାକୁ ବାହାକରିଦେଲେ । ବର୍ଷେ ଯୋଡାକରେ ତା'ର ପିଲା ଦି'ଟା ହେଇ ମରିଗଲେ ! ଜନ୍ମ ହେବାର ସାତଦିନ ଭିତରେ ସେଇ ଅନ୍ତୁଡିଶାଳରେ ହିଁ ମରିଗଲେ ! ଶାଶୁଘରେ କଦର୍ଥନା ଆରମ୍ଭ ହେଇଗଲା । ଯାହା ହୁଏ ସାଧାରଣତଃ !

ସୁଦାମକୁ ମୁଁ ପଚାରିଲି – 'ତା' ସ୍ୱାମୀ ତା' ପାଇଁ କିଛି କଲା ନାଇଁ ।'

ସୁଦାମ ଫାଉଁକିନା ରାଗିଗଲା । କହିଲା, 'ସେଇଟା କି କହିବ ! ଅଲାଜୁକ ବେମରଦିଆଟା ! ଟିର୍ଲାଟାକୁ ଖାଇତେ ଦେଲେନାହିଁ । କନାପଟା ଦେଲେନାହିଁ । ସମସ୍ତେ ମିଶିକିନି ତାକୁ ରୋଜ ପିଟିଲେ ! ଏଇଟା ତା' ଗିରସ୍ତ – ସେମାନଙ୍କ ସାଙ୍ଗରେ ମିଶି ପିଟିଲା । ମୁଁ ଦିନେ ଯାଇ ଦେଖିଲାବେଳକୁ ସେ ଖଲାବାଡିରେ ବସିକିନି ସକ୍‌ସକ୍ ଏକୁଟିଆ କାନ୍ଦୁଚି । ଏତିକି ସୁନ୍ଦର ଚେହେରୁ ସବୁ ଜଳିଗଲା... କାଠମିତି କଳା ପଡିଯାଇଚି । ମୁଁ ତା'ର ବଡଭାଇର ସାଙ୍ଗ । ଗାଁ ଭାଇ । ମୋ ଗୋଡ ଧରି ମୁଣ୍ଡ ପଟି ପିଟି ସେ କାନ୍ଦିଲା ଯେମିତି, ମୁଁ ସମ୍ଭାଳି ପାରିଲି ନାହିଁ । ମୁଁ ବି ବସି କାନ୍ଦିଲି । ଦିହେଁ ମିଶି କାନ୍ଦିଲୁ ।'

ସୁଦାମ ସେ କଥା ମନେପକେଇ ବହେ କାନ୍ଦିଲା । ଆଖିରୁ ଲୁହ ପୋଛିଲା । ତା'ପରେ କହିଲା, କେମିତି ସେ ଯାଇ ତା' ଶାଶୁ ଶଶୁର ଗିରସ୍ତକୁ ବୁଝେଇଲା – ସେମାନେ ତାକୁ ଶୋଧିଲେ । ଝିଅ ବାପ ଭାଇ ତ କିଛି କହିଲେ ନାହିଁ...ତୁ କିଏ ? ସେମାନେ ଟଙ୍କା ନେଇ ଝିଅକୁ ବିକିଛନ୍ତି । ଟଙ୍କା ଫେରସ୍ତ ଦେଲେ ଯାଇ ତାକୁ ମୁକୁଳେଇ ନେବେ । ସେଇଟା ନିଜେ ପୁତଖାଇ । ଜନ୍ମ ହଉ

ହଉ ନିଜ ପିଲାଟାକୁ ରକ୍ତ ଶୋଷି ଶୋଷି ମାରି ଦଉଚି । ସୁଦାମ ଏସବୁ ଶୁଣି ଖୁବ୍ ଗୁଡାଏ ଗର୍ଜିଲା । ସେମାନେ ମାରିବାକୁ ଗୋଡେଇଲେ । ସେ ନିଜ ଗାଁକୁ ଆସି ସମସ୍ତଙ୍କୁ ଚହଁକେଇଲା । ଝିଅର ବାପ ଭାଇ ତା' କଥା ଶୁଣିଲେ ନାହିଁ । ବାପ କୁଆଡେ କହିଲା, ଶାଶୁଘରେ ସମସ୍ତଙ୍କର ସେମିତି ଅବସ୍ଥା । ତା' ଭାଇ ଶୁଣି ଗୁମ୍ ଖାଇଗଲା କିଛି ସମୟ । ତା'ପରେ ପାଟି ନ ଫିଟେଇ ବାହାରିଗଲା ! ସୁଦାମକୁ ତା' ଘର ଲୋକେ ଶୋଧିଲେ । ତା'ର ସତେ କ'ଣ ପଡିଥିଲା ? କାହା ଘର ଝିଅ, କାହା ଘର ବୋହୂ । ତାଙ୍କର ସେମାନେ ସମ୍ଭାଳିବେ କିମ୍ବା ସମ୍ଭାଳିବେ ନାଇଁ – ଏଇଟା ସେମାନଙ୍କ ମର୍ଜି ଉପର କଥା । ସେଥିରେ ତା'ର କ'ଣ କହିବାର ଥିଲା – ସୁଦାମ କୁଆଡେ କହିଲା, 'ବିନା ଦୋଷରେ ସେ ଟିର୍ଲାଟାକୁ ଏମିତିନି ଶାସ୍ତିଦେଲେ । ଶଳା ଗାଁସାରା ଲୋକଙ୍କୁ ଅଧର୍ମ ଖାଇଯିବ । ଗୋଟା ଗୋଟା ହେଇ ସମସ୍ତେ ମରିବେ ଶଳେ ! ନିଆଁ ନାଗିଯିବ । ପାଣିରେ ବୁଡିଯିବ ଦୁଇଖଣ୍ଡ ସାରା ଗାଁ ।'

ସୁଦାମ ନାଏକ ଅଭିଶାପ ଦେଇଥିଲା । ଲୋକେ ତାକୁ ଛିଗୁଲେି ହେଲେ, ଖତେଇ ହେଲେ, ଖଚ କହିଲେ, 'ପରମାଇପ, ପରଝିଅ ପାଇଁ ୟାର କାଇଂକି ଏତେ ଦରଦ ! କ'ଣ ଭିତିରିଆ କଥା ଥିବ । ଶଳା ବଡ-ରୋଗିଆ ବୁଡିବୁଡି ପାଣି ପିଉଥିବ !'

ସୁଦାମ ନାଏକର ଜାତି ଉଣା । ଏମିତି ଖଚ ରଟିବାରେ ସେ ଆହୁରି ଉତ୍ୟକ୍ତ ହୋଇ ଦିନେ ବସିଲା ସତକୁ ସତ ସେ ମାଇକିନିଆଟାକୁ ଉଠେଇନେବାକୁ । ହପ୍ତାଏ ଭିତରେ ଶୁଣାଗଲା ଯେ ସେ ମାଇକିନିଆର ସାମୀଟା ଅଚାନକ ମରିଗଲା... ପ୍ରବାସରେ ଥାଇ ମରିଗଲା । ଗାଁରେ ମରିଥିଲେ ତ ତା' ସ୍ତ୍ରୀ ତାକୁ ଖାଇଗଲା ବୋଲି କହିଥାନ୍ତେ । ତଥାପି ପୁତଖାଈକୁ ପ୍ରବାସ କ'ଣ ? ସେ ରାତିରେ ବତାସ ଚଢି ଭ୍ରମିବାକୁ ଯାଏ । ତା' ପିଛା ଲାଗିଗଲେ ଗାଁଲୋକେ । ତାକୁ ଜିଅନ୍ତା ପୋଡିଦେବାକୁ ମସୁଧା କଲେ ।

ସୁଦାମ ତା' ସାଙ୍ଗକୁ ଖୁବ୍ ମନେଇଲା । ଧର୍ମ ଅଧର୍ମ କଥା ବୁଝେଇଲା । ଭଉଣୀକୁ ଭୋକଉପାସରେ କିଏ ମାରିଦେଲାବେଳେ ଭାଇ ସମ୍ଭାଳି ରହିବ – ଏଇଟା ଅମଣିଷ କଥା, ଅଣପୁରୁଷିଆ କଥା ! – ଶେଷକୁ ଦୁହେଁ ସେଇ ରାତିରେ ଯାଇ ତାକୁ ଉଦ୍ଧାର କରିବେ ବୋଲି ସ୍ଥିର କଲେ ।

ସେ ଦିନସାରା ବର୍ଷା ଲାଗିରହିଥାଏ । ନଈପାଣି ଫୁଲୁଥାଏ । ଲୋକେ ସବୁ ଘାଇ ମୁଣ୍ଡ ଜଗିଥାନ୍ତି । ରାତି ଘଡିଏ ବେଳକୁ ହୁରି ପଡିଗଲା । ଯେ ଯୁଆଡେ ଧାଇଁଲେ ଉଚ୍ଚ ଜାଗା ଦେଖି ଆଶ୍ରା ନେବାକୁ ! – ଶାଶୁ ବୁଢୀ ଏଇ ମୌକାରେ ତା' ପୁଅ ମରଣ ଶୁଝିପାରିଥାନ୍ତା । ମାତ୍ର ମାଡିଆସିଲା ସମୁଦ୍ର । ଛିନ୍‌ଛତ୍ର ହୋଇଗଲା ଘରଦ୍ୱାର । ଚାରିଆଡେ ଜଳାର୍ଣ୍ଣବ । କେହି କାହା କଥା ଆଉ ବୁଝିବାକୁ ନାଇଁ । ସୁଦାମ ନାଏକ ଆଉ ତା' ସାଙ୍ଗ ଅଧାବାଟରେ ପଡିଗଲେ ପାଣିସୁଅରେ ! ଗଛକୁ ଚଢିଥିଲେ; ଗଛ ଉପୁଡିଗଲା । ଡାଳକୁ ଧରିଲେ, ଡାଳ ଭାଙ୍ଗିଗଲା । ଅନ୍ଧାର ରାତିରେ କିଏ କୁଆଡେ ଗଲେ ଆଉ ଜଣାଗଲା ନାହିଁ ।

ସେ କାଳରାତ୍ରି ପାହିଲା ବେଳକୁ ସବୁ ପ୍ରଳୟରେ ବୁଡିଯାଇଥାଏ । ସୁଦାମ ଆଖି ଫେରେଇ ଚାହିଁଲା । ଗୋଟାଏ ଅଚିହ୍ନା ବଟର ଡେରସନ୍ଧାରେ ସେ ଲାଖିଥାଏ । ଗାଁଗଣ୍ଡାର ଚିହ୍ନ ନାହିଁ । ସେ ସେଇ ଅବସ୍ଥାରେ ସୁଦ୍ଧା ଭାବିଲା ଯେ ଧର୍ମ ଅଛି ! ନ ହେଲେ ନିର୍ଦ୍ଦୋଷ ଟିର୍ଲାଟାକୁ ଏମିତି କଦର୍ଥନା ଦେବେ; ସେ ଚାହିଁଥିବ । ଦେଲା ଏକାଥରେ ନିପାତ କରି । ତା' ଉତାରୁ ସେ ନିଜ ଘରକଥା ଭାଳି ବିକଳ ହେଲା । ବର୍ଷାରେ ବତାସରେ, ପାଣି ଘେର ଭିତରେ ସେ କେବଳ ଟାକିଥାଏ ତା'ର ଶେଷ ମୁହୂର୍ତ୍ତକୁ ।

ପାଞ୍ଚଦିନ ପରେ ତାକୁ ବିଦେଶୀ ନାଉରିଆମାନେ ଉଦ୍ଧାର କଲେ । ସାଷ୍ଟାମ୍ ହେଲା, ଖୋଜିଲା ନିଜ ଲୋକଙ୍କୁ କାହାକୁ ପାଇଲା ନାହିଁ । ଏତିକିବେଳେ ଶୁଣିଲା ଯେ, ଗୋଟାଏ ମାଇକିନିଆ ତା' ପିଲାଟାକୁ ଧରି ଧାଉଁଚି । ଲୋକେ ଦେଖିଲେ ଧାଇଁପଳଉଚି । ତାକୁ ଗୋଡେଇ ସେମାନେ ଧରିଥାନ୍ତେ, ସେ ମଝିରେ ମଝିରେ ଯେମିତି ରଡି ଛାଡୁଚି କେହି ସାହସ କରୁନାହାନ୍ତି ତା' ପାଖ ପଶିବାକୁ । ସେଇଟା ପାଗଳୀଟାଏ ହେଇଥିବ ।

ସେତେବେଳକୁ ସୁଦାମର ଅବସ୍ଥା ବାର'ଣ୍ଡା-ଦି'କତା । ଓଳିଏ ଚୁଡା ମେଞ୍ଚାଏ ଖାଇ ଆଉ ଦି'ଦିନ ଉପାସ । ପାଣି ଖସିଲା – ଗାଡିବାଲା ଲୋକେ ବି ଖସିଲେ । ତେଣିକି ଚାରିଆଡେ ପୋଚ୍ଚ ପଙ୍କ, ଉଜୁଡା ଭୂଇଁ, ଉଜୁଡା ସଂସାର । କା-ଭାଁ ଏମିତି ପୁରୁଣା ଜଣେ ଦି'ଜଣଙ୍କ ସାଙ୍ଗେ ଦେଖାହେଲା । ବଡଭାଗ ଲୋକ ସୁଅରେ ଭାସିଗଲେ । ସୁଦାମ ଚାଲି ଚାଲି ପାଖ ବସ୍ତି ମୁଣ୍ଡାରେ ପହଞ୍ଚିଲା । ସେଇଠି ଲୋକେ ଟେକା ଫିଙ୍ଗି କାହାକୁ ଗୋଡଉଥାନ୍ତି । ସେ ଥ'ହେଇ ଅନେଇ ଭାବିଲା ସେ ଯେଉଁ ପାଗଳୀ ତା' ପିଲା ଧରି ବୁଲୁଚି, ସେଇ ବୋଧହୁଏ ହେଇଥିବ ! ସେ ଗୋଟାଏ ଗଛ ଆଢୁଆଳକୁ ଚାଲିଯିବାରୁ ତାକୁ ଆଉ ଟେକା ମାରିଲେ ନାହିଁ । ମାତ୍ର କେହି ପାଖ ପଶିଲେ ନାହିଁ –

"ସେ ତା' ପିଲାଟାକୁ ମାରି ପରା ଖାଇଚି । ତା' ଗୋଡ ଯୋଡକ ଚୋବେଇ ସାରିଲାଣି !"

ଉପରଯାଏଁ ସବୁ ଖାଇଯିବ ।

ସୁଦାମ ନିଜେ ପ୍ରେତପରି ଦିଶୁଥାଏ । ତାକୁ ମଧ ସେମାନେ ଦୁର୍‌ଦୁର୍ ମାର୍ ମାର୍ କଲେ । 'ମହାପାପୀ ଶଳେ, ନ ହେଲେ ଏମିତି ଦୈବୀଦଣ୍ଡ ଏଗୁଡାଙ୍କୁ କାହିଁକି ପଡିଥାନ୍ତା । ତଡ ଶଳାକୁ ଏଇଠୁ । ସେମାନେ ପଶିଲେ ଏ ବସ୍ତିକି ବିପତ୍ତି ପଡିଯିବ ।' ସୁଦାମକୁ ମଧ ମାରିଗୋଡେଇଲେ । ସେ ପ୍ରାଣବିକଳରେ ଏଣେତେଣେ ଧାଉଁ ଧାଉ ଗୋଟାଏ ଗଛ ଆଢୁଆଳରେ ଲୁଚିଗଲା ।

ସୁଦାମକୁ ଭୋକ । ଆଖିବାଟେ ପ୍ରାଣ ବାହାରିଯିବା ପରି ଅବସ୍ଥା – ସେ ଫାଁ-ଗାଳିଦେଇ ସେଇଠି ପଡି କେତେବେଳେ ଧକେଇଲା । କହୁଥିଲା, ସେଇଠି ହୁଏତ ମରିଯାଇଥାନ୍ତା – କେମିତି କେଜାଣି ପୁଣି ବଞ୍ଚିଗଲା । ତାକୁ ଝାଇଁମାରିଯାଉଥାଏ । ସେ ଆଖି ମିଟିମିଟି କରି ଚାହିଁଥାଏ । ମଝିରେ ଯୋଡାଏ ଗଛ ଛାଡି ସେ ଦେଖିଲା ସେ ମାଇକିନିଆଟାକୁ । ସେ ଗୋଡ ଲମ୍ବେଇ ପିଲାଟାକୁ ଧରିଥାଏ । ସେ ପିଲାର ସତକୁ ସତ ଗୋଡ ଯୋଡାକ ନଥାଏ । ସୁଦାମ ଦେକିଲା ଯେ, ସେଇଟା ମଲା ପିଲାଟାଏ । ସେତେବେଳକୁ ଫୁଲିଗଲାଣି । ହାବୁକାଏ ପବନରେ ସଢା ଗନ୍ଧ ସୁଦାମର ଅନ୍ତ

ଲେଉଟେଇ ଦେଲା; କିନ୍ତୁ ସେ ମାଇକିନିଆର ଟିକିଏ ବୋଲି ବିକାର ନାଇଁ । ସେ ହୁଏତ କିଛି ଜାଣି ପାରୁନଥାଏ ।

ସୁଦାମ ସେ ମାଇକିନିଆକୁ ନିଘା କରୁ କରୁ ହଠାତ୍ ଚିହ୍ନିପକେଇ ଚମକିପଡିଲା । ସେଇ ତ ସେଇ ମାଇକିନିଆ, ଯାହାକୁ ସେ ଉଦ୍ଧାର କରିବାକୁ ଯାଇ ବଢ଼ିରେ ଭାସିଗଲା ।

ସେ ଚାହିଁଲା ତା' ପାଖକୁ ଯିବାକୁ । କିନ୍ତୁ ସେ ପୋଡ଼ ମଢ଼ ପାଖକୁ କେମିତି ଯିବ । ସେ ବି ବୁଝିପାରୁନଥାଏ ତା'ର ପିଲାଟାଏ ଆସିଲା କୁଆଡୁ । ସେ ବୋଧେ ଆଉ କିଏ ! ହାତ ଉପରେ ଚମ ଲାଗିଗଲେ ସବୁ ପଞ୍ଜୁରି ଏକାପରି ଦେଖାଯାଆନ୍ତି ।

ସୁଦାମକୁ ସେ ଗଛମୂଳେ ଝାଇଁମାରିଦେଲା – ଚେତା ବୁଡିଗଲା ତା'ର । ହୋସ ହେଲାବେଳଖୁ ତାକୁ ଗୋଟାଏ ପିଣ୍ଡାରେ ଶୁଆଇ ଯତ୍ନ କରାହଉଚି । କ'ଣ ଟିକିଏ ଖାଇଦେବା ପରେ ସେ ଚେଙ୍ଗା ହୋଇଗଲା । ସେମାନଙ୍କର ମଞ୍ଜ ଭାରି ଟାଣ । ଦି'ଦିନରେ ଅଳ୍ପ ପେଜ ମିଳିଗଲେ ହାତରେ ମାଉଁସ କଅଁଳିଯିବ । ପଥର ଭିତରେ ଚେର ଫୁଟେଇ ବଞ୍ଚୁଥିବା ନିଲଠା ଅମରିଗଛ ଏମାନେ । ସୁଦାମ ସାଷ୍ଟମ ହେଲା ।

ଯୋଗ ତ ଅନ୍ୟ ପ୍ରକାର । ପୁଣି ସେଇ ମାଇକିନିଆକୁ ନେଇ ହୁରି ହେଲା । ସେ ତା' ପୁଅଟାକୁ ପୂରା ଖାଇଗଲା । ସେ ତ ଆଉ କିଛି ଖାଇନାହିଁ କୋଉଠୁ; କେମିତି ନ ହେଲେ ବଞ୍ଚୁଛି ? ସୁଦାମ କିନ୍ତୁ ଯୁକ୍ତି କରୁଥାଏ ମନକୁ ମନ । ଛୁଆରଙ୍କୁଣୀ ମା'ଟାଏ ପିଲାକୁ ମଲା ପରେ ବି ଛାଡିପାରିନାହିଁ । ପାଗଳୀ ବୁଝିପାରିନି ବଢ଼ିରେ ଏକାକାର ହୋଇଥିବା ପୋଡ଼ ପଙ୍କ ଆଉ ପୋଡ଼ ପିଲାର ଗନ୍ଧ କେମିତି ଅଲଗା ।

ସେଦିନ ଘରିଆଡେ ରାଷ୍ଟ୍ର ହୋଇଯିବାରୁ ସମସ୍ତେ ସେଠିକି ଗଲେ । ସେ ବି ସେପାଖକୁ ଗଲା । ସେ ମାଇକିନିଆଟା ଆଉ କେହି ନୁହେଁ – ପଧାନଘର ବୋହୂ । ତା'ର ପିଲା କେବଠୁ ମରିଥିଲେ । ସେ ବୋଧେ ତା' ନଣନ୍ଦର ପୁଅଟାକୁ ଧରି ସୁଅରେ ପଡିଗଲା; ନ ହେଲେ ଆଉ ଏମିତି ପିଲାଟାଏ ତା' ହାତକୁ ଆସିଲା କୁଆଡୁ । ସେ ତାକୁ ବଞ୍ଚେଇବାକୁ ଚେଷ୍ଟା କରି ମଧ ପାରିଲାନାହିଁ । ଗୋଟିଏ ଢୋକ ପାଣିର ଜୀବନ । ପିଲାଟା ମରିଗଲା । ଏମିତି ଏମିତି କେତେ କଥା ସେ ଭାବିଗଲା । କିନ୍ତୁ ସେତେବେଳକୁ ପୋଲିସ୍‌ବାବୁ ତାକୁ ଧରିବାକୁ ଫୌଜ ନେଇ ପହଞ୍ଚ ଗଲେଣି । ସହରି ଲୋକେ ଆସି ତା'ର ଫଟୋ ଉଠେଇଲେଣି ।

ତାକୁ ସମସ୍ତେ ପିଶାଚୁଣି କହି ଡରିଲେଣି । ସୁଦାମ ପାଟିଫିଟେଇ କହିବାକୁ ତାକୁ ଜବଦ୍ କରି ସାରିଲେଣି ।

ଯୋଗେନ୍ଦ୍ର କହିବା ଭିତରେ ପଧାନଘର ବୋହୂ ବୋଲି କହିଦେଇଥିଲା । ହୁ-ଅ-ଅ-କେତେ ପଧାନଘର ଏ ବଢ଼ିରେ ଭାସିଗଲେ – ମୁଁ ଭାବିଲି । କିନ୍ତୁ କ'ଣ ମନହେଲା ପଚାରିନେଲି, କୋଉ ଗାଁ ପଧାନଘର ବୋଲି କହୁଥିଲା ସୁଦାମ ?

ଯୋଗେନ୍ଦ୍ର ସେମିତି ଆଗକୁ ଚାହିଁ କହିଲା, "ସୁନ୍ଦରପଡା" ।

ଧଡ୍‌କିନା କ'ଣଟାଏ ଖସିଗଲା ମୋ ପଞ୍ଜରାଭିତରୁ । ହେଁ? ସୁନ୍ଦରପଡାର ରାଘବ ପଧାନଘର ବୋହୂ?

ଯୋଗେନ୍ଦ୍ର ପୁଣି ସେମିତି ଆଗକୁ ଚାହିଁ କହିଲା, "ହଁ, ସେ ତୋ ମାମୁଁ ପୁଅ ଭାଇ ବିକ୍ରମ ପଧାନର ସ୍ତ୍ରୀ । ତୋ ଭାଉଜ ।"

ସେ ମୋ ଆଡେ ଚାହିଁପାରିଲା ନାହିଁ । ମୁଁ ପାହାଡର ପଥର ଚଟାଣରୁ ଆଖିତୋଳି ଚାହିଁପାରିଲି ନାହିଁ । ମୋ ଭିତର ଘୁରାଣି ହୋଇ ତୋଫାନ ଭଳି କେଇକଥା ଝଲଝଲ ପାରି ହେଇଗଲା । ହାରାମଣି ଭାଉଜ – ନାଲି ଶାଢୀରେ ଦର୍ପଣ ପରି ମୁହଁ । ଝମ୍‌ଝମ୍ କଳା କାଚ । ବୋଉ କହୁଛି – ଇସ୍, କେମିତି ନିଷ୍ଠୁର ଲୋକ ସେ ରାଘବା ? ଏତେ ସୁନ୍ଦର ବୋହୂଟାକୁ ମାର ମାରି ନାକଦଣ୍ଡାରେ ପ୍ରାଣ ରଖିଲାଣି । ବିକ୍ରମ ଭାଇନା ମାଇପବୋଲକରା, ବାପ-ମା'କୁ ପୋଷିବ ନାଇଁ ବୋଲି କୁଆଡେ କଲିକତା ବାହାରିଗଲା । ସେଇଠି ମରିଗଲା ଯୋଡାଏ ମାସ ଭିତରେ । ଇସ୍! ହାରାମଣି ଭାଉଜ ପିଲାମାଉଁସ ଖାଇଗଲା ବୋଲି ଲୋକେ କହୁଛନ୍ତି ? ଇସ୍! ତାକୁ କେହି ଚିହ୍ନିପାରୁନାହାନ୍ତି । ସୁଦାମ ନାଏକକୁ କେହି ବିଶ୍ୱାସ କରିପାରୁନାହାନ୍ତି ? ମୋର ଦେହ ହାତ କ'ଣ ହୋଇଗଲା । ମୁଁ ମୋ ବୁକୁକୁ ବିଧା ମାରି ହାଉଁ ହାଉଁ ହେଲି । ମୋତେ ଦଶଦିଗ ଅନ୍ଧାର ଦିଶିଲା ।

ଯୋଗେନ୍ଦ୍ର ମୋତେ ମାଡିବସି ଆୟତ୍ତ କଲା । "ରହ ବେ, ମାଇଗୁଲିଆ କବି, ବୁକୁ ବାଡେଇ ପଛେ କାନ୍ଦିବୁ । ଏବେ ଶୁଣ୍ ମୁଁ କ'ଣ କହୁଛି..."

ମୁଁ ହାବୁଡିପଡି ତା' ପାଦ ଧରିପାକାଇଲି – "ଭାଇ, ବଞ୍ଚେଇ ଦେ ମୋ ହାରାମଣି ଭାଉଜକୁ ।"

ସେ ଥମଥମ ଗଳାରେ କହିଲା, "ଆମେ ସବୁ ଗୋଟାଏ ନାଲାଏକ୍ ଭଣ୍ଡପଣ୍ଡା! ଆମ ଆଗରେ ଯାହା ହୋଇଗଲେ ଆମେ ଖାଲି ଚାହିଁରହିଥିବା । ଆମ ହାତରେ ଆଉ କ'ଣ ହୋଇପାରିବ ? ଆମ ମା', ମାଇପ, ଭଉଣୀ, ଭାଉଜ ଏମିତି ସବୁବେଳେ ହେଉଥିବେ ।"

ସେ ଅଟକିଗଲା । କହିପାରିଲା ନାହିଁ କିଛି । ଗଳାଝାଡି କିଛି ସମୟପରେ କହିଲା, "ଶୁଣ୍, ତାକୁ କେହି ଏଯାଏଁ ଚିହ୍ନଟ କରିନାହାନ୍ତି; କେବଳ ସୁଦାମ କରିପାରିବ! ଚିହ୍ନଟ କଲେ ସେ ଯଦି ଖଲାସ ହୁଏ, ଯିବ କୁଆଡେ ? ସେ ବାୟାଣୀ ହେଇ ରହିବ ନାଇଁ, ଟିକିଏ ଆଦର ପାଇଲେ ଭଲ ହେଇଯିବ! ଆଦର ଦବ କିଏ ?"

ମୁଁ ଉଠିବସିଲି । କ'ଣ କହିବାକୁ ଯାଉଥିଲି । ଯୋଗେନ୍ଦ୍ର କୁହାଇ ଦେଲାନାହିଁ ।

"ଆବେ, ମୁଁ ସବୁ ଜାଣେ । ଆମମାନଙ୍କ ଘରକଥା ସବୁ ଏକ! କେହି ତାକୁ ପାଳିବେ ନାହିଁ । ଏବେ କହ, ମୁଁ ଯଦି ତାକୁ ସୁଦାମ ନାଏକର ମାଇପ 'ଗନ୍ଦ' ବୋଲି ଚିହ୍ନଟ କରେଇ ଖଲାସ କରିଆଣେ... ତୋର ମତ କ'ଣ ?"

ମୁଁ ଥମ୍ ହେଇ ରହିଗଲି । ପାହାଡ ଦେହରେ ଲାଖିଗଲି । ପାଷାଣ ହେଇଗଲି ।



# ଅମୁକ୍ତ

ରାତି ଦୁଇଟା ପୂର୍ବରୁ ମୋତେ କେବେ ନିଦ ହୁଏ ନାହିଁ ବୋଲି ମୁଁ ବହି ପଢେ । ସେମିତି କିଛି ଶାସ୍ତ୍ରପୁରାଣ ନୁହେଁ । ସେ ଭାର ବୋହିବାକୁ ମୋ ମନରେ ଜୋର୍ ନାହିଁ । ମୁଁ ପଢେ, ଏଇ ଧରଣ – କିଛି ଡିଟେକ୍‌ଟିଭ, କିଛି ହାଲୁକା ଉପନ୍ୟାସ, କିଛି ଏଣୁତେଣୁ ବହି । – ସେଦିନ ଗୋଟିଏ ବହି ପାଇଥାଏ, ରୋମାନ୍‌ମାନଙ୍କ ଯୌନ-ଜୀବନ ଉପରେ । ସେଥିରେ ଅନେକ ଚିତ୍ର ଫଟୋ । ସେ ଫଟୋଗୁଡିକୁ ଥରେ ଦେଖିସାରିଥାଏ । ଆମୂଳଚୂଳ । ଭାବୁଥାଏ କେମିତି ବିଳାସୀ ରୋମାନ୍‌ମାନେ ଅହରହ ଯୌନଚେତନାରେ ରହିବାକୁ ଘରର ଆସବାବପତ୍ର, ଦୀପରୁପା, ଛଡି, ବାଡି ସବୁଠି ଯୌନାଙ୍ଗର ରୂପଟିକୁ ନକଲ କରିଥିଲେ । ବଡ ବିଚିତ୍ର ଜାତି । ସୁରା ଏବଂ ନାରୀକୁ ନେଇ ଗୋଟାଏ ଜୀବନବୋଧ ପ୍ରତିଷ୍ଠା କରିଗଲେ । ହୁଏତ ସେଥିରେ ହିଁ ସେମାନେ ଲୋପ ପାଇଗଲେ । ପାଆନ୍ତୁ; କିନ୍ତୁ ସେମାନେ ଗୋଟାଏ ବିଚିତ୍ର ଜାତି । ସେ ବହିଟାକୁ ପଢିବାକୁ ମୋର ପ୍ରବଳ ଆଗ୍ରହ ହଉଥାଏ । ମୋତେ କିନ୍ତୁ ବାଧହୋଇ ରାତି ଦଶଟାରେ ଆଲୁଅ ଲିଭେଇଦେବାକୁ ହେଲା ।

ଅନେକ ଦିନ ପରେ ପୁଅବୋହୂ ଆସିଥାନ୍ତି ମୋତେ ଦେଖିରହିଁ ଯିବାକୁ । ପାଖ ବଖରାରେ ଶୋଇଥାନ୍ତି । ଆଲୁଅ ଜାଳି ମୁଁ ଚହିଁରହିଛି ଜାଣିଲେ ସେମାନେ ଅସୁସ୍ଥବୋଧ କରିଥାନ୍ତେ । ହୁଏତ, ଟାଙ୍କୁ ଭାରି ଅଡୁଆ ଲାଗିଥାନ୍ତା, ଲାଜ ମାଡିଥାନ୍ତା । ସେଥିପାଇଁ ମୁଁ ବତି ଲିଭେଇ ଦେଇଥିଲି । କିନ୍ତୁ ନିଦଟା ତ ମୋ ଆୟତ୍ତରେ ନୁହେଁ । ବୁଢାଟିଏ ପିଲାଙ୍କ ପରି ସହଳ ସହଳ ଶୋଇଯିବା ଉଚୀତ ବୋଲି ମୁଁ ମାନୁଛି...ହେଲେ, କ'ଣ କରାଯାଏ । ମୋର ସେଥିପାଇଁ ଉପାୟ ନଥିଲା । ମୁଁ ସେମିତି ସେଇ ଅନ୍ଧାରରେ ତଗଡଗ ଚହିଁ ପଡିଥାଏ । ଅନ୍ଧାରରେ ସବୁ ଶୁଣୁଥାଏ... ଉଶ୍ୱାସ ପବନରେ ଅଗଣା ଅଗସ୍ତି ଗଛର ପତ୍ର ହଲୁଥାଏ । ସବା ଉପର ଛକରେ ଟଣର୍ ଟଣର୍ ଘଣ୍ଟାମାରି ରିକ୍‌ସାଟାଏ ବେଳେବେଳେ ପାରି ହୋଇ ଯାଉଥାଏ । ଗାଧୁଆଘର ନଳାରେ ଦିଆହୋଇଥିବା କାଠଚୁଙ୍ଗାଟାକୁ ଚୁଟିଆମୂଷା ଦାନ୍ତଉଥାଏ । ଆର ବଖରାରେ କିଏ ବୋଧେ କଡ ଲେଉଟେଇଲା । ଏ କାନକୁ ଏ ବୟସରେ ଏତେଗୁଡାଏ ନ ଶୁଭିବା ଉଚିତ । କିନ୍ତୁ କ'ଣ କରାଯାଇପାରେ ? – ମୁଁ ସହଜରେ

ନିଃଶ୍ୱାସ ମାରିପାରୁନଥାଏ । ହଲଚଲ ହୋଇ ପାରୁନଥାଏ । ମୁଁ ଜାଗିଛି ବୋଲି କୌଣସି ସୂଚନା ଦେବାକୁ ଚାହୁଁନଥାଏ । କିନ୍ତୁ, କି କଷ୍ଟ ଅନ୍ଧକାରରେ ଜାଗିରହିବା ଏବଂ ନ ଶୋଇ ନିଶ୍ଚେଷ୍ଟ ପଡିରହିବା !

ସନ୍ଧ୍ୟାରେ ବସି ଚା ପିଇବାବେଳେ ପୁଅ କହୁଥିଲା, "ବାପା, ଋଷିକେଶ୍‌ଟା ଭାରି ବଢ଼ିଆ ଜାଗା । ଆମ ଏଠୁ ଦି'ଜଣ ଯାଇ ସେଇଠି ରହିଗଲେଣି । ଆପଣଙ୍କ ବୟସର ଲୋକ । ଆପଣ ହୁଏତ ସେମାନଙ୍କୁ ଜାଣିଥିବେ ।" – ମୁଁ ସାଙ୍ଗେ ସାଙ୍ଗେ ଚିଡିଯାଇଥିଲି । ଏଇଟା ଏବେ ଟିକିଏ ବେଶି ଜଣାପଡୁଚି । ଆଗ ଏମିତି ମୁଁ ଚିଡୁ ନଥିଲି ତ ! କହିଲି, "ହଅଅ ! ସେଥିରୁ ଗୋଟାଏ ହେଲା ଦୀନା ସାହୁ, ଆଉଟା ବିଶିଆ ଶତପଥି । ଯୋଡାଯାକ ପୁରୁଣା ଦଗଲବାଜିଆ ଟାଉଟର ।" କଥା ସେତିକିରେ ଛିଡିଗଲା ! ମୁଁ କିନ୍ତୁ ବୁଝିଗଲି ପୁଅ କାହିଁକି ଋଷିକେଶ କଥା କହୁଥିଲା । – ସେ ଥାଏ ଦିଲ୍ଲୀରେ । କେବଳ ମୋ ପାଇଁ ଏତେ ବାଟ ଆସିବା ସୁବିଧା ହଉନାହିଁ ହୁଏତ । ସେଇଠି ନେଇ ଛାଡିଦେଲେ ବାପକୁ ତୀର୍ଥ କରେଇବାର ହବ; ଏଣେ ଘରଟି ମଧ୍ୟ ଭଡା ଲାଗିଯାଇପାରିବ !

ମୁଁ ସେ ଅନ୍ଧାରରେ ସାମାନ୍ୟ ହସିଲି । ଆଉ ବଖରାରୁ ଖୁବ୍ ଆସ୍ତେ କଥା ଶୁଣାଗଲା । ପୁଣି ଟିକିଏ ହସିଲି । ହଅଅ – ଏଇ ତ ସଂସାର ! ଘର ସେମାନଙ୍କର । ମୁଁ ଅଯଥା ଗୁଡାଏ ଦିନ ରହିଯିବା ଫଳରେ ବୋଧହୁଏ ସେମାନଙ୍କୁ ଭଲ ଲାଗୁନାହିଁ । ମୁଁ ମରିଯିବାକୁ ସେମାନେ ହୁଏତ ଚାହୁଁନାହାନ୍ତି । କିନ୍ତୁ ସବୁଦିନ ତାଙ୍କ ଶୋଇବାଘର ପାଖବଖରାରେ ବତି ଜାଳି ରାତି ଦି'ଟାଯାଏଁ ଚେଇଁ ରହୁଥିଲେ, ଖୁସୁରୁ ମୁସୁରୁ ହେଉଥିଲେ, ବହିର ପତ୍ର ଲେଉଟାଉଥିଲେ, ସେମାନେ ନିଶ୍ଚୟ ସେଭଳି ଇଚ୍ଛା କରିଥାନ୍ତେ । କିନ୍ତୁ ତା'ତ ନାହିଁ । ସେମାନେ ଅକାଳେ ସକାଳେ ଆସିଥାନ୍ତି । ମୁଁ ବି ଲାଇଟ୍ ଲିଭେଇ ଦେଇଥାଏ । ଏମିତି ସବୁଦିନ ଅନ୍ଧାରରେ ଜାଗିରହିବାକୁ ହେଲେ ମୁଁ ନିଜେ ବଞ୍ଚିପାରନ୍ତି ନାହିଁ ବେଶିଦିନ ।

ମୁଁ ଆସ୍ତେ କୌଣସି ଶବ୍ଦ ନକରି କଡ ବଦଳେଇଲି । ଇସ୍, ଜୀବନରେ କେତେପ୍ରକାର ଭୟ, କେତେପ୍ରକାର ଗୋପନୀୟତା ସତେ !

ବାଁ-କଡ ମାଡି ଶୋଇଲେ ଡାହାଣ ହାତରେ ଖଟବାହୁଟିକୁ ଆଉଁସିବା ମୋର ଅଭ୍ୟାସ । ହାତରେ ମଶାରି ଘଷିହେବା, ଜାକର ନରମ ଗଦିଗଦରରେ ପାପୁଲି ସଲସଲ ହେବା, ମୋ ଡେଣାର ଫାନ୍ଦ ଭିତରେ ତକିଆଠୁଁ ପାଦଯାଏଁ ପାତଳ ଲମ୍ବା ଶୂନ୍ୟଟିଏ ଉଷୁମ ଏବଂ କଅଁଳ ବୋଧହେବା, ଆଜିକୁ ଅନେକ ଦିନ ହେଲା, ମୋର ପ୍ରତି ରାତିର ଅନୁଭବ । ବେଳେବେଳେ ମୋତେ ଲାଗିଛି ସେ ଶୂନ୍ୟଟି ତକତକ ଗୋରା ଏବଂ ସେ ନିଃଶ୍ୱାସ ମାରେ । କାହିଁ କେବେ ଅତୀତରେ ସେ ହୁଏତ ସତକୁ ସତ ନିଃଶ୍ୱାସ ମାରୁଥିଲା । ଅନ୍ଧାରରେ ସୁଦ୍ଧା ବାରିହେଉଥିଲା ତା'ର ଦାଉଦାଉ ସୁନାରଙ୍ଗ ।...

ସେ କିନ୍ତୁ ସବୁ ରାତିରେ ମୋ ପାଖେ ଡୁହାଏ ଲେଖା କାନ୍ଦୁଥିଲା । ମୁଁ ଏଯାଏଁ ବୁଝିନାହିଁ କାହିଁକି କାନ୍ଦୁଥିଲା । ମୁଁ ତାକୁ ବେଶ୍ ଭଲପାଉଥିଲି; ଗେଲ ଗୌରବ କରୁଥିଲି । ସେ ଜମା ପ୍ରତିବାଦ

କରୁନଥିଲା; କିନ୍ତୁ ମୋତେ ହିଁ ମୋ ଆଡୁ ସବୁ କରିବାକୁ ପଡୁଥିଲା । ସେ ନିଜେ କେବେ ମୋ ଗଳାରେ ବାହୁ ଛନ୍ଦି ମୋତେ ଭିଡିଧରିବାର ସୁଖ ମୁଁ ପାଇନାହିଁ । ମୁଁ ହିଁ ପାଳଦଉଡି ଭଳି ତା' ନିସ୍ତେଜ ବାହୁକୁ ମୋ ଗଳାରେ ଗୁଡାଉଥିଲି । ମୁଁ ହିଁ ଦରିଦ୍ର ଭଳି ଛୋଟ ଛୋଟ ସ୍ନେହ-ସୋହାଗ ମାଗୁଥିଲି । ଧେତ୍‌ତେରି ! ମୋତେ ଭାରି ଅପମାନିତ ଲାଗୁଥିଲା; କାରଣ ମୁଁ ବେଶ୍ ଗୋଟାଏ ସୁନ୍ଦର ସୁପୁରୁଷ ଥିଲି ବୋଲି ମୋର ବିଶ୍ୱାସ । ତା'ର ପ୍ରମାଣ ମୋର ଅନେକ ବାନ୍ଧବୀ । ସେମାନଙ୍କୁ ମୁଁ ଏଡାଇପାରିନାହିଁ । ସେମାନେ ମୋ ବାଟ ଜଗି ଠିଆହେଇଛନ୍ତି । ମୁଁ ବି ସେମାନଙ୍କୁ ଖୁବ୍ ସମ୍ମାନ ଦେଇ ଗ୍ରହଣ କରିଛି । ସେଇମାନେ ହିଁ ମୋତେ ଚାଟୁବାକ୍ୟରେ କହିଛନ୍ତି ଯେ ମୁଁ କୁଆଡେ ଆଖି ଟୋଳି ଚାହିଁଦେଲେ କୌଣସି ନାରୀ ଧୈର୍ଯ୍ୟଧରି ସମ୍ଭାଳି ପାରିବନାହିଁ । – ଧୁତ୍, ମିଛେଇଗୁଡାଏ । ମୁଁ ତ ଘରେ କେବେ ସେପରି ପଦେ ଶୁଣିନାହିଁ । ହେଉ ପଛେ ମିଛ । ସେମିତି କ'ଣ ଟିକିଏ ଶୁଣିଦେଲେ ଭାରି କୃତାର୍ଥ ଲାଗେ । ସେଇ ପ୍ରିୟଜନଟି ପାଖରେ ସବୁ ଅଜାଡି ଦେବାକୁ ଇଚ୍ଛା ହୋଇଯାଏ – ଛାଡ, ସେଭଳି ଅମୃତ କ'ଣ ସବୁଠି ମିଳେ ? ନା ସବୁକାଳେ ମିଳେ ?

ଆଚ୍ଛା, ସେଭଳି ଗୌରବ ଅବା ନ ମିଳିଲା; କିନ୍ତୁ ଜଣେ ସବୁବେଳେ ସବୁକଥାରେ କାନ୍ଦିବ, ଯେତେବେଳେ ଦେଖିଲେ ଲୁହରେ ବତୁରିରହିଥିବ ତା' ମୁହଁ; ଉତୁରିପଡୁଥିବ ଆଖି – ଏଇଟା ଦୁର୍ଭାଗ୍ୟଜନକ ନୁହେଁ ? ମୁଁ ତ ପ୍ରଥମେ ଖୁବ୍ ଡରିଯାଇଥିଲି । ମତେ ବୋଧହେଲା ଯେ ମୁଁ ହୁଏତ କୌଣସି ଅପରାଧ କରିପକେଇଛି ଅଜାଣତରେ । କଅଁଳ ପାପୁଲି ଉପରେ ଗୋଇଠି ମଡେଇ ଦେଇଛି ହୁଏତ ! ମୁଁ ବୁଝେଇବାକୁ ଚେଷ୍ଟାକଲି; କିନ୍ତୁ ମୋ ଆୟତରେ ଯେତେ ବିଦ୍ୟା ଥିଲା ସବୁ ପ୍ରୟୋଗ କରି ସୁଦ୍ଧା ସେ ଲୁହର ବନ୍ୟାକୁ ରୋଧିପାରିଲିନାହିଁ । ଜାଣିଲି ଯେ ମୋର ସମଗ୍ର ଲୁଣିଆ ଧରିଗଲା ।

ଜାଣିଗଲା ପରେ ସେ ବିଷୟରେ ଆଉ ଗୁଡାଏ ଗୋଳଘାଣ୍ଟ କରିବାକୁ ମଧ୍ୟ ଚାହିଁଲି ନାହିଁ । ଦିନେ ଓଳିଏ ମାନଭଞ୍ଜନ କରିବାକୁ କିଏ ଏବେ ନାହିଁ କରୁଛି – ସେ ତ ଏକ ଅପୂର୍ବ ଆନନ୍ଦ; କିନ୍ତୁ ଯେଉଁଠି ମାନ ଯଦିକି ମାନଭଞ୍ଜନର ଆଶା ନାହିଁ, ସେଇଠି ବୃଥା ପରିଶ୍ରମ କରିବାର ଅର୍ଥ କ'ଣ ? ନିଜର ବି'ତ ଗୋଟାଏ ଆତ୍ମସମ୍ମାନ ଅଛି – ବିନା କାରଣରେ ଜଣକ ପାଖରେ ନେହୁରା ହେଉଥିବ ।

ଏଇଟା କେଉଁ ପ୍ରକାର ପୁରୁଷକାର ! ମୁଁ ତେଣୁ ସ୍ଥିରକଲି ଯେ କାନ୍ଦୁରୀଟାକୁ ଆଉ ଗେଲବସରୀ କରିବି ନାହିଁ; ଆରେ ଯାଃ – ମୁଁ କାହା ବାପର ଖାଇନାହିଁ ଯେ ତା' ଲୁହ ପୋଛୁଥିବି ଜୀବନସାରା ! ଯାଉନୁ...

ମୁଁ ଡାହାଣ ବାହୁର ଫାନ୍ଦ ଟେକିଆଣି କଡ ଲେଉଟେଇଲି । ଆଗ ବଖରାରେ ପୁଅବୋହୂଙ୍କର ଫିସ୍‌ଫିସ୍ କଥା । କେତେ ଯେ କଥା ଜୀବନସାରା ଶୁଣିବାକୁ ଏବଂ କହିବାକୁ ଥାଏ । ମୋ ପିଠିପଟେ ନୀରବ ଶୂନ୍ୟଟି ସେମିତି ଶୋଇରହିଥାଏ । ଓଦା-ସରସର ହୋଇ ସେଇ ମୁଁ ମୁହଁ ଫେରେଇନେଲି । ଆଉ ଲେଉଟି ଆସିଲି ନାହିଁ ।

ମୋତେ ବିମଳ ଦାସ ପ୍ରଥମେ କହିଥିଲା ଯେ ମୁଁ କୁଆଡେ ସେତେବେଳେ ଭାରି କରୁମ ଏବଂ ଭୋକିଲା ଦେଖାଯାଉଥିଲି । ବିମଳ ଦାସ ବଢ଼ିଆ ଦିଲ୍‌ଦାର ଲୋକ! ମୋତେ ତା' ଘରେ ନେଇ ଖିଆପିଆ କରେଇଲା । ତା' ସ୍ତ୍ରୀ ଅତି ସୁରସିକା; ଅନେକ ଖୋଲାଖୋଲି କଥାବାର୍ତ୍ତା, ଥଟ୍ଟା ପରିହାସ କରି ମୋତେ ଉଲୁସେଇଲା ! ମୁଁ ବିମଳକୁ ଈର୍ଷା କରିଥିଲି : "ଭାଗ୍ୟରେ ଥିଲେ ଏମିତି ପ୍ରବୀଣା ସୁଲକ୍ଷଣା ସ୍ତ୍ରୀଟିଏ ମିଳେ ।" ସେ ଥଟ୍ଟାରେ କହିଥିଲା, "ତୋ ମନକୁ ଯଦି ଏମିତି ପାଇଗଲା, ଯା ନେଇଯା... ମୁଁ ତତେ ଦେଇଦେଲି ।" ତା' ସ୍ତ୍ରୀ ମୋ ଆଡେ ଅଦ୍ଭୁତ ଢଙ୍ଗରେ ଚହିଁ ଖିଲ୍‌ଖିଲ୍ ହସିଥିଲେ । ମୋ ଭିତରେ କମ୍ପିଥିଲା ଦୁଲ୍‌ଦୁଲ୍ ହୋଇ । ବାଃ, କି ଅଦ୍ଭୁତ ଲୋକ ସେମାନେ; କି ଅଦ୍ଭୁତ ତାଙ୍କର ଜୀବନ ? – ମୁଁ ତାଙ୍କ ଘରେ ସବୁଦିନେ ସଞ୍ଜରେ ପହଞ୍ଚିଯାଉଥିଲି । କିଛି କିଛି ନିଶା ଖାଉଥିଲି – ବିମଳ ନଥିଲେ ମଧ୍ୟ ତା' ଘରେ ମୋ ପାଇଁ କୌଣସି ବାରଣ ନଥିଲା ! ତା' ସ୍ତ୍ରୀ ମୋ ସହିତ ଚେସ୍ ଖେଳିଛି; ହାରିଛି, ହରେଇଛି, ଉଭୟରେ ଆନନ୍ଦ ଉଭୟଙ୍କ ପାଇଁ ! ସେ ନାରୀ ହେଲେ ସୁଦ୍ଧା ତା' ଭଳି ମାର୍ମିକ ବନ୍ଧୁଟିଏ ମୁଁ ପୁରୁଷଙ୍କ ମେଳରେ ଏଯାଏଁ ପାଇନାହିଁ ।

ମୁଁ ଥରେ ରାତିରେ ବିଳମ୍ବରେ ଫେରିଥାଏ, ନିଶା ଓହ୍ଲେଇ ନଥାଏ ମୁଣ୍ଡରୁ । ମୁଁ ଯା' ବୋଉକୁ କହିଲି – ଚେସ୍ ଖେଳିବ । ସେ ହଁ କଲା ନାହିଁ, କି ନାହିଁ କଲା ନାହିଁ । ମୁହଁ ଆଡ କରି ବସିରହିଲା । ସେତେବେଳେ ବି ବୋଧେ ସେ କାନ୍ଦୁଥିଲା ! ଇସ୍, ମୁଁ ରାଗରେ ତା' ତୋଟି ଚିପିଦେଇଥାନ୍ତି ! ଚିତ୍କାର କରି ତା' ଉପରକୁ କୁଦି ପଡିଥାନ୍ତି; କିନ୍ତୁ ଦାନ୍ତକୁ ଦାନ୍ତ ଜାବି ମୁଁ ଝରକା ପାଖକୁ ଉଠିଗଲି । ସେଇଠି ଥଣ୍ଡା ପବନରେ ରେଲିଂ ଧରି ଠିଆ ହେବାପରେ, ବୈଠକଘରେ, ଚୌକି ଉପରେ ଶୋଇଗଲି ! ଯାଇଥିଲେ ତା' ଆରଦିନ ସକାଳୁ ମୁଁ ଚାଲିଯାଇଥାନ୍ତି । କିନ୍ତୁ ଶୋଇବା ପୂର୍ବରୁ ମୁଁ ମୋ ଢଙ୍ଗରେ କଥାଟାକୁ ବୁଝୁଥିଲି – ହୁଏତ ଏତେ ରାତିରେ ତାକୁ ଚେସ୍ ଖେଳିବାକୁ ଡାକିବା ଅନ୍ୟାୟ – ହୁଏତ ସେ ଖେଳି ଜାଣେ ନାହିଁ । ହୁଏତ ସେ ମୋତେ ଅଯୋଗ୍ୟ ବୋଲି ଭାବିଛି; କିନ୍ତୁ ପ୍ରତିବାଦ କରି ପାରୁନାହିଁ – ହୁଏତ ତା' ପାଇଁ ମୁଁ ଅଣପୁରୁଷଟାଏ, ମଦୁଆଟାଏ, ଲମ୍ପଟଟାଏ ! କିନ୍ତୁ ଏଥିପାଇଁ ସେ ଘରେ ନିଆଁ ଲଗେଇ ଦେଇପାରିଥାନ୍ତା । ରାଗିମାଗି ହୁଲ୍‌ସ୍ଥୁଲ୍ କରିପାରିଥାନ୍ତା । ଏମିତି ଚୁପ୍‌ଚାପ୍ କାନ୍ଦିଲା କାହିଁକି ? – ଓଃ, ସେ ପାଟି ଫିଟେଇ କଥା ନ କହିଲେ ମୁଁ ହୁଏତ ପାଗଳ ହୋଇଯିବି – ମୋତେ ସେ ବରଂ ଘୃଣା କରୁ, ରାମ୍ପୁଡି କାମୁଡି ବିଦାରି ଲହୁଲୁହାଣ କରୁ, ଗାଳି ବେଜ୍ଜିତ୍ କରୁ – ମୁଁ ଆନନ୍ଦରେ ସହିଯିବି; କିନ୍ତୁ ସେ ମୋତେ ଏମିତି ଲୁଣି ସମୁଦ୍ରରେ ଅବଜ୍ଞାରେ ବୁଡେଇଦେବ, ମୁଁ ଜମା ବରଦାସ୍ତ କରିପାରିବି ନାହିଁ ।

ବିଚିତ୍ର ଏ ସଂସାର...ସେଇ ବିଷମ ଅବସ୍ଥାରେ ସୁଦ୍ଧା ଆମର ଦୁଇଟି ପିଲା ହୋଇସାରିଥାନ୍ତି । ଏଇ ଝୁଲିଆ, ବଡ ପାତଳ ଭଉଣୀ କୁନି, ବଢ଼ିଆ ପିଲା ଦି'ଟାଯାକ । ହେଲେ କ'ଣ ହେବ, ମା'ଟା ତ ଅସମ୍ଭବ କାନ୍ଦୁରୀ । ଏମିତି ନିରୋଳାରେ ଦିନେ ଦି'ପହରେ ମୁଁ ଯାଇ ତାକୁ ମୁହାଁମୁହିଁ ଜଗିଲି । ପଚାରିଲି – ଆଚ୍ଛା, ଆମେ ବିଭାହେବାର ଆସି ପାଞ୍ଚବର୍ଷ ପୂରିଗଲା । ତମର କ'ଣ ଦୁଃଖ, ମୁଁ ତ ଜାଣିପାରିଲି ନାହିଁ – ଯେତେବେଳେ ଦେଖିଲେ ମୁହଁ ଥମ୍‌ଥମ୍ କରି ରଖିଚ – ଯେତେବେଳେ

ଦେଖିଲେ କାନ୍ଦୁଚ ? କ'ଣ ହେଇଚି ତୁମର ? ତଥାପି ସେ କିଛି ନକହି ସେମିତି ବସିରହିଲି । ମୁଁ ଅନେକ ଆଦର କଲି, ଗେଲ କଲି; ସେ ପ୍ରତିବାଦ କଲାନାହିଁ ।

କୋଳରେ ବସେଇ ଓଠ ଧରି ପଚାରିବାରୁ କହିଲା, 'ମତେ କିଛି ଭଲ ଲାଗୁନାହିଁ!' ମୁଁ କୂଳ ପାଇଗଲା ପରି ପଚାରି ଦେଇଗଲି – "ଭଲ ଲାଗୁନାହିଁ ମାନେ କ'ଣ ? ଏ ଘରଦ୍ୱାର, ଏ ଲୋକବାକ ଅବା ମୁଁ ନିଜେ ତମକୁ ଭଲଲାଗୁନାହିଁ ? – କ'ଣ କଥା ?" ସେ ମୁଣ୍ଡ ଲାଡି ନାହିଁ କଲା । – "ତା'ହେଲେ ତମକୁ କ'ଣ ଅଭାବ ହଉଚି କହ ? ଟଙ୍କା ପଇସା ଅଣ୍ଟୁନାହିଁ କି ପିନ୍ଧିବା ଲଗେଇବାକୁ ଅଣ୍ଟୁନାହିଁ, ନା କ'ଣ ଆଉ କହ ?"

"ମତେ କିଛି ସୁଖ ଲାଗୁନାହିଁ ।"

"ବାପଘରେ ତ ସୁଖ ଲାଗୁଥିଲା ?"

"ହଁ, ଲାଗୁଥିଲା ।"

"ତା'ହେଲେ ତୁମେ ବୋଧେ ଚାହୁଁ ନଥିଲ ବିଭାହୋଇ ପରଘରକୁ ଯିବାପାଇଁ ?"

"..."

"ଠିକ୍ ଅଛି; ଏବେ ତ ତମେ ଆମଘରକୁ ଆସିସାରିଛ । ତୁମର ପୁଅଝିଅ ହେଇସାରିଛନ୍ତି । ଏବେ ବି କ'ଣ ତମକୁ ଏଇଠି ଭଲଲାଗୁନାହିଁ ?"

"..."

"ଆଚ୍ଛା, ତାହେଲେ ଗୋଟେ କାମ କରିବା । ଚାଲ, ତୁମକୁ ନେଇ ମୁଁ ବାପଘରେ ଛାଡିଦେଇ ଆସିବି । ସେଇଠି ପିଲାମାନେ ବି ରହି ପାଠ ପଢିବେ । ମୁଁ ଏଠୁ ତମପାଇଁ ଟଙ୍କା ପଠାଇଦେବି ।"

ସେ କ'ଣ କହିଥାନ୍ତା କେଜାଣି ? ଏତିକିବେଳେ କେହି ଜଣେ ଆସିବାର ଶବ୍ଦହେଲା । ସେ ଉଠି ଚାଲିଗଲା । ମୁଁ ସେଇଠି ଶୋଇରହି ନିଷ୍ପତ୍ତି କଲି ଯେ ତାକୁ ନେଇ ତା' ବାପଘରେ ଛାଡିଦେବି ।

ତା'ପରେ ଆମେଦୁହେଁ ଅଲଗା ଅଲଗା ରହିଲୁ । ପିଲାଏ ଅଜାଘରେ ରହି ପାଠ ପଢିଲେ । ମୁଁ ଏକୁଟିଆ ରହିଗଲି । ମୋତେ ବରଂ ଖୁବ୍ ମୁକ୍ତ ଲାଗିଲା । ଲୋକଙ୍କୁ ଦିଶିଲା ମୁଁ ଉଚ୍ଛୃଙ୍ଖଳ ହେଇଗଲି । ମୋର ଖାଇବା, ପିଇବା, ଶୋଇବାକୁ ସେ ନାଲାଏକ ଗୁଡାକ କାହିଁକି ଏମିତି ନିରେଖି ରହିଥିଲେ ।

ଖବର ଆସିଲା ଯେ, ଝୁଲିଆ-ମା' ଦେହ ଖୁବ୍ ଖରାପ । ସେମାନେ ଲେଖିଥିଲେ ଯିବାପାଇଁ । ମୁଁ କହିଥିଲି – 'ମାର ଗୁଲି । ମତେ ତ ସେ ଭଲପାଏନାହିଁ । ମୁଁ କାହିଁକି ତା' ପାଇଁ ଏମିତି ଲଇଁ ପଶୁଥିବି ?' କିନ୍ତୁ ଯାଇଥିଲି ।

ଓଃ, ସେଇଟା ଗୋଟାଏ ଭାରି ଭୀଷଣ ରାତି । ଖୁବ୍ ବର୍ଷା, ବତାସି, ବିଜୁଳି । ମୁଁ ଯାଇ ପହଞ୍ଚିଲାବେଳକୁ ଗୋଛାଏ ଲୋକ ଶେଯ ଚାରିପଟେ ବସି ଯାଇଛନ୍ତି । ମୁଁ ସେ ମଲୁଟିକୁ ଜମା ଠଉରେଇ ପାରିଲି ନାହିଁ । କେତେ ଝଡିଯାଇଥିଲା ସେ ! ଇସ୍ ସେ ମୁହଁ, ସେ ଆଖି ଅବସ୍ଥା କ'ଣ

ହେଇଯାଇଥିଲା ସତେ ! ମୋତେ ଦେଖି ସମସ୍ତେ ଆଡ ହେଇଗଲେ । ମୁଁ ତା' ହାତଟିକୁ ପାପୁଲି ଭିତରେ ଧରି ଖଟଦେଣ୍ଡାରେ ବସିଲି । ଚହିଁଲି ତା' ମୁହଁକୁ । ତା' ଆଖି ପୁଣି ଲୁହ ଛଳଛଳେଇ ଉଠିଲା; ବୋହିଗଲା କାନଯାଏଁ । ସେ କ'ଣ କହିବାକୁ ଚାହୁଁଥିଲା । ମୁଁ ଲଇଁପଡିଲି ଶୁଣିବାକୁ । ସେ କ'ଣ ହୁଏତ କହିଥାନ୍ତା; କିନ୍ତୁ ନାଲାଏକ ଲୋକେ ପୁଣି ପଶିଆସିଲେ । ସେ ମୁହଁ ଫେରାଇନେଲା । ମୁଁ ସଳଖିଗଲି । ମୋ ହାତରେ ତା' ପାପୁଲିଟି ସେମିତି ରଖି ଶୋଇରହିଥିଲା କିଛିକାଳ ।

ସେଇ ରାତିରେ ସେ ଚାଲିଗଲା । ମୁଁ ଆଉ ଗୋଳଘାଣ୍ଟ ଭିତରେ ନ ରହି ଫେରିଆସିଥିଲି ବୋଲି ଖଳ ଲୋକମାନେ ଢେର୍ କଥା କହିଲେ । ଅନେକ ନିନ୍ଦା କଲେ । ମୁଁ କିନ୍ତୁ ବାଦ୍‌ଡା ହେଇଯାଇଥିଲି । ମୋତେ ଦିନରାତି ସେଇ ଲୁହ-ଛଳ ଛଳ ଆଖି, ସେଇ କହିବି କହିବି ମୁହଁ ବାରମ୍ବାର ଦିଶିଲା । ମୁଁ ବାଉଆଡେ ବୁଲିଲି । ଦ୍ୱାରରୁ ଦ୍ୱାରକୁ, ନାରୀରୁ ନାରୀକୁ । ଇସ୍... ସେ ଦିନଗୁଡାକରେ ମୁଁ ଝର୍ ଝର୍ ହୁଏତ କାନ୍ଦୁଥିଲି । କେହି ମୋ ଲୁହ ଦେଖିପାରୁନଥିଲେ । ମୋତେ ଲାଗୁଥିଲା ଯେ ମୁଁ ଗୋଟିଏ ନାରୀ ପାଖରେ ଅପରାଧ କରିଛି । ବହୁ ନାରୀ ପାଖରେ ତା'ର ପ୍ରାୟଶ୍ଚିତ କରିବି । ମୁଁ ସେମାନଙ୍କୁ ଆପଣାର କରିବି । ସେମାନେ ଢେର୍ କଥା କହିବେ; ମୁଁ ଶୁଣିବି । ସେମାନେ ହସି ହସି ମୋତେ ବାହୁ ବେଢେଇନେବେ; ମୁଁ ସାର୍ଥକବୋଧ କରିବି । ସେସବୁ କିଛି ହେଲାନାହିଁ । କିନ୍ତୁ ଯାହା ହେବାର ହେଲା । ଘୋର ଅପବାଦ ହେଲା । କୁତ୍ସା ହେଲା । ମୁଁ ଦରିଦ୍ର ହେଇଗଲି ସବୁମନେ ।

ଦିନେ ବିମଳ ଦାସ ଘରକୁ ଯାଇଥାଏ । ତା' ସ୍ତ୍ରୀ ଆସି ମତେ ବାଟରୁ ସଙ୍ଗୋଳି ନେଲା । ଦାଣ୍ଡଘରୁ ତରବର ହେଇ ଆଡେଇ ନେଉଥିଲା କ'ଣ ସବୁ । ମୁଁ ବାଟ ଜଗି ଠିଆହେଲି । କହିଲି, "ମତେ ଦେଖା !"

ସେ ନାହିଁ ନାହିଁ, ଲାଜ ଲାଜ ହେଇ ଦେଖେଇଲା ଖଣ୍ଡେ ଚିତ୍ର, ତୂଳୀ, ରଙ୍ଗଡବା । ମୁଁ ବିସ୍ମୟରେ ତାକୁ ଅନେଇଲି; ସେ ଚିତ୍ରଟିକୁ ଅନେଇଲି । ହଳଦିଆ ଆଉ ନାଲି ରଙ୍ଗର ଅସଂଖ୍ୟ ଫୁଲ ସେ ଚିତ୍ରଟିରେ । ମୁଁ ଆଉ ସେଦିନ ତା' ସାଙ୍ଗରେ ଅନ୍ୟ କିଛି କଥା ହୋଇପାରିଲି ନାହିଁ...କେବଳ ସେଇ ଚିତ୍ରକଥା । ସେ ମୋ ଆଗ୍ରହ ଦେଖି ବହୁ ଚିତ୍ର ଦେଖେଇଲା । ନାହିଁ ନାହିଁ କହି ସବୁ ଦେଖେଇଲା । ମୋ ଆଗରେ ଫଟିପଡିଲା ସେ ନାରୀଟିର ଅଦ୍ଭୁତ ସୁଷମା । ମୁଁ ଅଜାଡି ଦେଲି ମୋର ଅଜସ୍ର ଆଦର ତା' ଉପରେ । ଆଶ୍ଚର୍ଯ୍ୟ କଥା, ସେ ମୋ ବୁକୁ ଉପରେ ମୁହଁ ରଖି ସକ୍‌ସକ୍ କାନ୍ଦିଲା । ମୁଁ ବିମୂଢ ହେଇଗଲି, ବିଚଳିତ ବ୍ୟସ୍ତ ହେଇପଡିଲି । ପଚାରିବାରୁ ସେ କିଛି ନ କହି ଆହୁରି କାନ୍ଦିଲା । "...ଆରେ ଆରେ, କାନ୍ଦିଲୁ କାହିଁକି ? ମୋତେ ବରଂ କହିଲେ ମୁଁ ନିଜକୁ ଖଣ୍ଡ ଖଣ୍ଡ କରି ତୋ ଆଗରେ ପରଷି ଦେବି । ଯାହା କହିବୁ ତା' କରିବି । ତୁ ଏମିତି କିଛି ନ କହି, କାନ୍ଦ୍‌ନା !" ...ମୁଁ ତାକୁ ଜାବୁଡି ଧରି ତା' କାନ୍ଧ ଉପରେ ନିଜେ ଗୁଡାଏ କାନ୍ଦିପକେଇଲି । କିଛି କାରଣ ନ ଜାଣି କେତେକାଳ ଯେ ଆମେ ଲୁଣ-ସମୁଦ୍ରରେ ଉବୁଟୁବୁ ହେଲୁ, ଜଣାନାହିଁ । କେତେ କ'ଣ ଯେ ଘଟିଗଲା ତା'ର ଇୟତ୍ତା ନାହିଁ ! ଜୁଆର ଥମିଲାବେଳକୁ ରାତିଅଧ ।

ତା' ଆରଦିନ ସକାଳୁ ଖରା ପଡିଥାଏ ପିଣ୍ଡାରେ । ଆମେ ବସି ଚା' ପିଉଥାଉ । ମୁଁ ତା' ମୁହଁକୁ ଚାହିଁରହିଥାଏ । ସେ ମିଚ୍‌ମିଚ୍ ହସୁଥାଏ, କଥା କିନ୍ତୁ କହୁ ନଥାଏ ଜମା । ...ବାବଦୂକୀ ନାରୀ, କଥା କହ...କଥା କହ । ...ମୁଁ ଏ ମନ୍ତ୍ର ଜପୁଥାଏ କେବଳ । ମୋ ଭିତରେ ଅକାତକାତ ଭୟ, କାଳେ ସେ ପୁଣି କାନ୍ଦିପକେଇବ । ସେ କିନ୍ତୁ ହସିଲା । କହିଲା, "କ'ଣ ଏମିତି ଓଲୁଙ୍କ ପରି ଚାହିଁଛ ମ ?"

ମୋ ଉପରୁ ହିମାଳୟ ଓହ୍ଲେଇଗଲା । ମୁଁ ଚା'ଟା ଥୋଇଦେଇ ଚୌକି ଉପରକୁ ଆଉଜିଗଲି । ଭାବିଲି ଯେ ଏତେକାଳ ମୁଁ ମୋର ନାଁ'ଟିକୁ ଜାଣିଲି । ବାରମ୍ବାର ନାରୀକଣ୍ଠରେ ମୋତେ ଓଲୁ ବୋଲି ଡକା ହେଉଥାଉ ବୋଲି ଇଚ୍ଛାକଲି । ସେ ତା'ର ମୃଦୁ ମୃଦୁ ହସରେ ଅମୃତ ବର୍ଷିଦେଇଗଲା ।

କହିଲି, "ଏମିତି ଜଣେ କଳାକାର ମୋତେ ଅନୁଗ୍ରହ କରିଛନ୍ତି ବୋଲି ବିଶ୍ୱାସ କରିପାରୁନାହିଁ । ତୁମକୁ ଦେଖିଲେ ପୂଜା କରିବାକୁ ଇଚ୍ଛା ହେଉଛି ।"

ଲାଜରେ ତା'ର ଆଖିପତା ସାମାନ୍ୟ ନଇଁଗଲା ।

ମୋ ଅଜାଣତରେ ମୋ ଭିତରୁ ପ୍ରଶ୍ନଟାଏ କୁଦିପଡିଲା, "ତୁମେ ସେମିତି କାନ୍ଦିଲ କାହିଁକି ?" ମୁଁ ନିଜେ ସେ ପ୍ରଶ୍ନରେ ଚମକି ପଡିଲି । ତାକୁ ମୁଁ ଜାଣିଶୁଣି କଦାପି ପଚାରିନଥାନ୍ତି; ସେ ବହପ ମୋର ନାହିଁ । କିନ୍ତୁ ଫିଟିଗଲା ଯେତେବେଳେ, ତାକୁ ଆଉ ପ୍ରତିକାର କ'ଣ ? ମୁଁ ପଚାରି ଦେଇ ସେମିତି ପଡିରହିଲି ।

ସେ ଆସ୍ତେ ଚା' କପ୍‌ଟିକୁ ରଖିଲା । ତା'ପରେ ସେ ହୁଏତ ମୋ ଭଳି ଚୌକିକୁ ଆଉଜି ମୋ ଆଡକୁ ଚାହିଁ ହସିଦେଇଥାନ୍ତା । ହୁଏତ ସେଇଠୁ ମୋ ପାଖକୁ ଉଠିଆସିଥାନ୍ତା । ହୁଏତ... ହୁଏତ... ପୁଣି ତା' ଆଖି ଉଚ୍ଛୁଳି ଲୁଣି-ସମୁଦ୍ର ମାଡିଆସିଥାନ୍ତା ।

ସେଇ ସ୍ତବ୍ଧ ମୁହୂର୍ତ୍ତରେ ଚ୍ରିଂ କରି ଚିର୍ ଚିରେଇ ଉଠିଲା ଘଣ୍ଟି । ଧଡଧାଡ୍ କବାଟ ଫିଟିଗଲା । ବିମଳ ଦାସ ଗସ୍ତରୁ ଫେରିଆସିଲେ ନାନାପ୍ରକାର କୋଳାହଳ କରି ।...

"ସକାଳୁ ବୁଲିବାକୁ ଆସି ହଠାତ୍ ପାର ତୁମ ବନ୍ଧୁ ହାଜର୍ ହେଇଗଲେ ।"

"ଆଚ୍ଛା, ଆଚ୍ଛା...ହଲୋ, ତୁ କେବଠୁ ସକାଳୁ ବୁଲିବାହାରିଲୁଣି ? ଖୁବ୍ ଭଲ । ସାସ୍ଥ୍ୟ ଭଲ ରହିବ । ...ଦେଖିଲ, ଦେଖିଲ ସେ କଦଳୀ କାନ୍ଧି – ଉଦୟଗିରିରୁ ଆଣିଛି – ଆଉ ସେ ହାତୀଖୋଜିଆ ମାଟିଆଳୁ ।"

ଘୋ-ଘା' ପାଟିତୁଣ୍ଡ ।

କେଉଁ ବାହାନାରେ ଅଧା ଚା' ଛାଡିଦେଇ ମୁଁ ଚାଲିଆସିଥିଲି ମୋର ମନେ ନାହିଁ । ସେ ଦିନ ସାରା କିନ୍ତୁ ଛାତରୁ ଖସିଥିବା ଝିଟିପିଟି ପରି ଟାବ୍‌ଦା ହେଇ ପଡିରହିଥିଲି ସଂଧ୍ୟା ଯାଏଁ ।

ମୁଁ ଅଧାଡିଆ ବୟସରେ ଚିତ୍ର ଆଙ୍କୁଚି ଶୁଣି ଲୋକେ ମୋତେ ହସିଲେ । ଅନ୍ୟମାନେ କହିଲେ, 'ଭଲ ହେଲା । ଲୋକଟା ଏଥିରେ ହୁଏତ ଶୁଧୁରିଯାଇପାରେ ।'

ମୁଁ ଆଉ ଶୁଧୁରିଲି କ'ଣ ? ମୁଁ ଯାହା ଥିଲି, ସେଇଆ । ମୋର ମୋହ ଭାଙ୍ଗିଲା ନାହିଁ;

ଟିକିଏ ବଦଳିଗଲା ହୁଏତ । ମୁଁ କାମେରାଟିଏ ଧରି ବୁଲିଲି । ମାଳ ମାଳ ଫଟୋ ଉଠେଇଲି... ଅସଂଖ୍ୟ ନାରୀଙ୍କ ଅସଂଖ୍ୟ ଭଙ୍ଗୀର ଚିତ୍ର । ଛପିଛପି ଫଟୋ ଉଠେଇଲି ଚଢେଇଙ୍କର, ପ୍ରଜାପତିଙ୍କର, ଜଙ୍କି ଧରୁଥିବା ଲଙ୍ଗଳା ପିଲାଙ୍କର ।

ପିଲାଏ ବଡ ହେଇ ବିଭା ହେଇଗଲେ । ଝୁଲିଆଟା ତା' ମା' ଭଳି ଭଦ୍ର, ଲାଜକୁଳା । ଟିକିଏ କାନ୍ଦୁରା ବି ! ତାକୁ ସେଥିପାଇଁ ପଦେ ଟାଣ କଥା କହିଦେବାକୁ ମୋର ସାହସ ହୁଏ ନାହିଁ...ତୁ ଶୁଣ୍ ଝୁଲିଆ ! ତୁ ଯଦି କେବେ ରାହା ଟେକି କାନ୍ଦଦେବୁ, ପଚାରିଲେ କିଛି କହିବୁ ନାହିଁ, ମୁଁ ସେଇଦିନ ମରିଯିବି ।...ମୁଁ ଏଯାଏଁ ସେ ନୀରବ କାନ୍ଦଣାର ଅର୍ଥ ବୁଝିନାହିଁ; ଆଉ କାହାକୁ ପଚାରି ପାରିନାହିଁ । ସେଦିନ ବିମଳର ସ୍ତ୍ରୀ ହୁଏତ କହିଥାନ୍ତା, କହିପାରିଲା ନାହିଁ । ତା'ପରେ ବି ଏ ପ୍ରଶ୍ନ ମୁଁ ଆଉ ପଚାରିନାହିଁ ।

ଏବେ ଝୁଲିଆ କହୁଛି, ମୋତେ ଋଷିକେଶ ଯିବାକୁ । ଝୁଲିଆକୁ ପଇଁତ୍ରିଶ ହେଇଗଲା । ତା' ମାନେ ମୋତେ ବାଷଠି ପୂରି ତେଷଠି ଚାଲିଲା ! ଆଛା, ଏତେଗୁଡାଏ ବୟସ କେମିତି ହେଇଗଲା ମ' ! ଧର, ଯଦି ମୁଁ ସତକୁ ସତ ସେ ବାବାଜିଆ ଜାଗାକୁ ଯାଏ, କ'ଣ ହେବ ? – ଅନେକ ବୁଢାଙ୍କ ସାଙ୍ଗେ ଦେଖାହେବ । ସେମାନେ ସବୁ ନାନା ଢଙ୍ଗରେ ମରିବାକୁ ପ୍ରସ୍ତୁତ ହଉଥିବେ । ପଚାରିଲେ ମୁଖସ୍ଥ ଶାସ୍ତ୍ର ବଖାଣିବେ । ଏଠି ବି ପଞ୍ଚାଏ ହଡା ସେମିତି ବୁଲୁଛନ୍ତି; ମୋତେ ଦେଖି ହସନ୍ତି । ମୋ ରଙ୍ଗ-ବେରଙ୍ଗ ଜାମା ତାଙ୍କୁ କୌତୁକ ପରି ଲାଗେ । ମୋ ଚାଲି, ମୋ ଢଙ୍ଗ ତାଙ୍କର ପସନ୍ଦ ହୁଏନାହିଁ । ମୁଁ ତାଙ୍କୁ ହସିଦେଇ ଚାଲିଯାଏ ।

କିଛି ଦିନ ଯାଇ ଋଷିକେଶ ବୁଲାବୁଲି କରି ଆସିବାରେ ମୋର ଆପତ୍ତି ନାହିଁ । ସେଇଠୁ ଗୋଟାଏ ଦି'ଟା ଜପାମାଳି ଆଣିଦେବି ଚୁନା ମହାନ୍ତି ପାଇଁ । ସେଇଟା ମୋ ସାଙ୍ଗ । ହେଲେ ତାକୁ ବୟସ ଗ୍ରାସିଗଲାଣି । ସେଦିନ ତାକୁ ଚିହ୍ନି ନ ପାରି ମୁଁ 'ମଉସା, ନମସ୍କାର' କହି ଚାଲିଯାଉଥିଲି । ସେ ମୋ ଡେଣା ଧରି ପରିଚୟ ଦେଲା, କିଛି ଉପଦେଶ ଦେଲା । ବେକୁବ୍ କାହାଁକା ! – ତା' ପାଇଁ ଯୋଡାଏ ଜପାମାଳି ଆଣିବି । ଋଷିକେଶରୁ ବିମଳର ସ୍ତ୍ରୀ ସୁମି ପାଇଁ ଖଣ୍ଡେ ଶାଲ୍ ଆଣିଦେବି । ଭାରି ଖୁସି ହବ । ବିମଳଟା ବଢିଆ ଲୋକ । ଆମେ ଚିତ୍ର ବିଷୟ କଥା ହେଲେ ସେ ସେଇଠୁ ଉଠି ଚାଲିଯାଏ । ଏବେ ଦିନେ ସୁମି ମୋ ଓଠ ଧରି ଗେଲ କରିପକେଇଲା । କାରଣ ମୁଁ କହିଲି ଯେ ମୁଁ ଖଣ୍ଡେ ଭଲ ପଥର ଆଣି ଥୋଇଛି, ମୂର୍ତ୍ତି କାଟିବି ! ସେ ଖୁସି ହେଇଗଲା । ବିମଳକୁ କହି ମୋ ପାଇଁ ଚାରିଟା ନିହାଣ ଯୋଗାଡ କରି ଦେଇଛି । କହୁଛି ଯେ ମୁଁ କାଟିଲାବେଳେ ସେ ପାଖରେ ବସି ଦେଖିବ ।...

ଏ କାମଟା ସରିଗଲେ ସିନା ମୁଁ ଋଷିକେଶ ଯିବି । ତା' ବାହାରେ ଭାସ୍କର ରାଓ ବୁଢା କହିଛି ମତେ ବେହେଲା ଶିଖେଇଦବ । ଦିନେ ଦିନେ ରାତିରେ ନିଦ ନ ହେଲେ ମୁଁ ବସି ବେହେଲା ଶୁଣେ । କିନ୍ତୁ ରେକର୍ଡରୁ ସେଇ ସେଇ ସୁର୍ ଶୁଣିବାକୁ ଇଚ୍ଛା ହୁଏ ନାହିଁ । – ଓଃ, ସେ ବେହେଲା ଜିନିଷଟି କ'ଣ ସତେ ! କେତେ ହାଲ୍କା, କି ସୁନ୍ଦର, କେତେ ମଧୁର ସେଇଟା । ସେଥିରୁ ଗୋଟାଏ

ନାରୀ-ନାରୀ ଭାବ ମୁଁ ପାଏ ବୋଲି ଦିନେ କହିଦେଲି । ସୁମି ହସିଲା । ଭାସ୍କର ରାଓ ହସିଲା । ତାଙ୍କ ମନକୁ କଥାଟା ପାଇଲା କି ନାହିଁ କେଜାଣି !

...ଆରେ ଝୁଲିଆ, ଶୁଣ୍ ! ତୁ କହିଲେ, ଋଷିକେଶ କ'ଣ, ମୁଁ ନର୍କକୁ ଓହ୍ଲେଇଯିବି । କିନ୍ତୁ ଦେଖୁଚୁ ନା, ଏଇନେ ମୋ ହାତରେ କେତେ କମ୍ ସମୟ ? – ଆଉ କେତେ କ'ଣ କରିବାକୁ ଅଛି । ମୋଟ୍‌ଉପରେ ମୁଁ ଆଉ ବେଶ୍ କିଛିଦିନ ବଞ୍ଚିବାକୁ ଚାହେଁ । ମୋ ଭିତରେ ଏତେ ସପ୍ନ ଶୋଇରହିଥିଲା ବୋଲି ମୁଁ ଜାଣି ନଥିଲି ତ । ସେ ସବୁ ଗୋଟି ଗୋଟି ଖିଅ ଫିଟେଇ ରେଶମ୍ ସୂତା ପରି ଭାସିଆସୁଛନ୍ତି । ମୋତେ ଲାଗୁଛି କ'ଣ ଜାଣୁ ? ମୁଁ ବଞ୍ଚିପାରିଲି ଅନ୍ତତଃ ଛ' ଫୁଟ ଉଚ୍ଚ ଆଠ ଦଶଟା ମୂର୍ତ୍ତି କାଟିପକାନ୍ତି । ଗୋଟିଏ ଅଳ୍ପ ଆଲୁଅ ପଡୁଥିବା ପ୍ରଶସ୍ତ ବଖରାରେ କାନ୍ଥକୁ ଲାଗି ସେମାନେ ଧାଡି ହୋଇ ଠିଆ ହୋଇଥିବାରୁ ଦୃଶ୍ୟ ମୋତେ ସବୁବେଳେ ଦିଶୁଛି । ମୁଁ ଆଖି ବୁଜି ସେମାନଙ୍କୁ ଆଉଁସି ଦେଲେ ଜାଣିପାରୁଛି ପ୍ରତ୍ୟେକ ନିହାଣଦାଗକୁ । ପଥର ଭିତରେ ଏମାନେ ଲୁଚିରହିଥିଲେ; ବନ୍ଧାପଡିଥିଲେ । ବହୁ ଶ୍ରମ କରି ମୁଁ ତାଙ୍କୁ ମୁକୁଳେଇବି । ମୋ ଭିତରୁ ମୁକୁଳେଇବାକୁ ସମୟ ଲାଗିବ । ମୁଁ ବଞ୍ଚିବାକୁ ଚାହେଁ ଆଉ କିଛି ଦିନ ସାର୍ଥକଭାବରେ ।

ଚିତ୍ର ଆଙ୍କିଲି ସିନା । ସେ ବିଦ୍ୟା ମୋର ହେଲା ନାହିଁ । ରଙ୍ଗଗୁଡାକ ଭାରି କଅଁଳ ତରଳ କିମିଆଁ । ସେମାନଙ୍କୁ ମିଶେଇ ଦେଇ ମୁଁ ଚାହିଁ ରହିଥାଏ । ହଳଦିଆ, ନେଳି, ସାବ୍‌ଜା ଦେଖି ମୁଁ ବିଭୋର ହୋଇଯାଏ । କିନ୍ତୁ ସେମାନଙ୍କୁ ନେଇ ତୂଳିରେ ଚିତ୍ର କଲାବେଳେ ସବୁ ଅସନା ବିଜବିଜିଆ ହୋଇଯାନ୍ତି । ତାଙ୍କୁ ସମ୍ଭାଳି ହୁଏନାହିଁ । ତା'ପରେ ବି ମୋତେ ଗୁଡାଏ ରଙ୍ଗ ଦିଶେ ନାହିଁ – ଯଥା ନାଲି । ମୁଁ ଯାହାକୁ ନାଲି ବୋଲି ଧରିନେଇଛି ସେଇଟା ଅନ୍ୟମାନଙ୍କୁ ଆଉ ପ୍ରକାରେ ଦିଶେ । ସାବ୍‌ଜା ବି ସେମିତି ଭଲଭାବରେ ମୋତେ ଦେଖାଯାଏ ନାହିଁ । ନେଳିଆ ହେଲା ମୋ ରଙ୍ଗ ! – ଛାଡ, ସେ ଜିନିଷ କିଛି ବାଗ ଧରିଲା ନାହିଁ । ସୁମିର ଖାତିରରେ ଏଯାଏଁ ତୂଳୀ ଘୋଷାରୁଛି ସିନା; ନ ହେଲେ ସେ ଆଦୌ ବୋଲ ମାନୁନାହିଁ । ସୁମି ହାତ ବୁଲେଇଦେଲେ ଫୁଲଟାଏ ଆଙ୍କି ଦେଇପାରେ । ମୋ ଫୁଲଟା କିନ୍ତୁ ଖଜୁରି ଗଛ ପରି ଝାଙ୍କୁଣିଆ ବେବାଗିଆ ହେଇଯାଏ । ସେ ହସେ ଖୁବ୍; କିନ୍ତୁ ପୁଣି ମତେ ସେଇ ଫାନ୍ଦରେ ପକେଇ ଘାଣ୍ଟୁଥାଏ । ତା'ର ସବୁକଥା ସେମିତି । ମୁଁ ଜାଣେ, ସେ ମୋତେ ଫାନ୍ଦିଛି । ସମସ୍ତେ ଜାଣିଛନ୍ତି । ଝୁଲିଆ ବି ! ହେଲେ ମୁଁ ଚାହୁଁ ନାହିଁ ମୁକୁଳିବାକୁ । କାରଣ ମତେ ଲାଗୁଛି ଯେ ଅନ୍ତତଃ ଗୋଟିଏ ବାହୁ ମୋତେ ବେକ ପାଖରେ ନିଷ୍ଠାର ସହିତ ବେଢେଇଧରିଛି । – ତୁ ସୁମି, କେବେ ଯଦି ବାହୁ ହୁଗୁଳେଇନେବୁ, ସେଦିନ ମୁଁ ଋଷିକେଶ ଚାଲିଯିବି । ତା'ପରେ ଏଠି ରହିଲେ ବି ସେମିତି ହିମାଳୟ ପରି ଥଣ୍ଡା ହେଇଯିବ ଚାରିଆଡ ।...

...ଆର ବଖରାରେ ପୁଣି ଖୁସ୍‌ମୁସ୍ ଶବ୍ଦ । ବୋହୂ ବୋଧହୁଏ ଉଠିଲା । ଝିଅଟି ଖୁବ୍ ଭଲ ପିଲା । ଝୁଲିଆକୁ ଯେତେବେଳେ ଦେଖିଲେ ହସିପକାଏ । ତା' ପାଖରେ ପାଖରେ ହଉଥାଏ । କେତେ ବାହାନାରେ ତାକୁ ଟିକିଏ ଛୁଇଁଦିଏ । କୋର୍ଟ ପିନ୍ଧେଇଦିଏ । ଟାଇ ସଳଖିଦିଏ । ଝୁଲିଆ ପିନ୍ଧିଥିବା ଜାମାରେ ବୁକୁ-ବୋତାମ ସିଲେଇ ଦେଇ ଦାନ୍ତରେ ସୂତାଟାକୁ କାଟିବା ପାଇଁ ଡେର୍

ସମୟ ନିଏ । ଭାରି ହସକୁରୀ; ଭାରି ଚତୁରୀ । ଭାରି ବଢ଼ିଆ ଝିଅଟିଏ । ଦେଖ୍ ଝୁଲିଆ, ତୁ ମୋ ବୋହୂକୁ ଖୁସି କରି ରଖିଥିବୁ । ମୁଁ ତୋ'ଠୁ ଅନେକ ଅଧିକା କଥା ଜାଣିଛି । ତୁ ମତେ ବିଶ୍ୱାସ କର । ଏମିତି ସ୍ତ୍ରୀଟିଏ ପାଇବା ସହଜ ନୁହେଁ । ଭାଗ୍ୟରେ ଥିଲେ ମିଳେ । ତତେ ସେଥିପାଇଁ ଢେର୍ ଲୋକ ଈର୍ଷା କରିବେ । ତୁ ଚାଲାକ ପିଲା, ଠିକ୍ ବୁଝିଯିବୁ ।...

ରାତି ଦି'ଟା – ମଶାରି କନାରେ ହାତ ଘଷିବାରୁ କାକର ଲାଗିଲା । ହାଇ ଆସିଲା । ମୋର ବାଥ୍‌ରୁମ୍ ଯିବା ପ୍ରୟୋଜନ । ଭାବିଲି, ଆଉ ଟିକିଏ ବରଂ ଯାଉ । ତା'ପରେ ମୁଁ ଆସ୍ତେ ଉଠିଲି । ହାତଗୋଡ ପଥର ପରି ଲାଗୁଥାଏ । ମୋଡିଭିଡି ହେଲି । ହଠାତ୍ ଡାହାଣ ପାଖ ତଳିପେଟଟା ରଟ୍‌ରଟ୍ କାମୁଡିଦେଲା । ମୁଁ ଝାଳେଇଗଲି । ମନେପଡିଗଲା ଆଉ ଥାକେ କଥା । ଡାକ୍ତର ଓଷୁଧ, ଏକ୍‌ସରେ ଫଟୋ ପରୀକ୍ଷା...ଇତ୍ୟାଦି । ସେଦିନ ସୁମି ଗୋଟିଏ ଚିତ୍ର କରିଥାଏ । ବିରାଟ ଗୋଟାଏ ବଣୁଆ ବୁଦା ପଛଆଡ, ନ ଦିଶିଲା ପରି ମହାବଳ ବାଘର ନାକ ଆଉ ନିଶ! ଦେହ ଶୀତେଇଗଲା । ମୁଁ ଢେର୍ ରୋଗ ଭୋଗିଛି । ରୋଗ ଅପେକ୍ଷା ବେଶୀ ଭୟ ଭୋଗିଛି । ମରିଯିବାକୁ ମୋର ଭାରି ଭୟ । ମୋର ଗୁଡାଏ ସବୁ ବାକି ରହିଛି; ତାକୁ ନ କଲେ ମୁଁ କେମିତି ମରିଯିବି ?

ମୋତେ ସେ ରାତି ଜମା ନିଦ ହେଲା ନାହିଁ ।

ତା' ଆରଦିନ ସକାଳୁ ଚା ଖାଉଛୁ ତିନିହେଁ ମିଶି । ମୁଁ ନିଜେ କଥା ଉଠେଇଲି । "ଶୁଣ୍ ଝୁଲିଆ ! ତୁ ଆଉ ସାତଟାଦିନ ରହିଯାଇପାରିବୁ ?"

"ନାଇଁ ବାପା, ଆଜି ନ ଗଲେ ନ ଚଳେ । ଫ୍ଲାଇଟ୍‌ରେ ବୁକ୍ କରିସାରିଚି । ଆଜି ନ ପହଞ୍ଚିଲେ କାଲି ଜାମାନରୁ ଦଳେ ଆସୁଛନ୍ତି ଭାରତ ସରକାରଙ୍କ ସହିତ ଗୋଟାଏ ଚୁକ୍ତି କରିବାକୁ । ମୋତେ ସେଇଠି ରହିବାକୁ ହେବ । ତାଙ୍କୁ ଢେର୍ କଥା ବୁଝେଇବାକୁ ହେବ ।"

ମୁଁ ଚା ପିଇଲି ନୀରବରେ । ବୋହୂଟି ମୋ ପ୍ଲେଟରେ ଆଉ ଖଣ୍ଡେ ଦି'ଖଣ୍ଡ ବିସ୍କୁଟ ଥୋଇଦେଇ ମୋତେ ଚାହିଁ ହସି ହସି କହିଲା, "ତମେ ବାପା, ଆଗ ଅପେକ୍ଷା ଢେର୍ କମ୍ ଖାଉଛ । ନ ଖାଇଲେ ଦେହ ଦୁର୍ବଳ ହେଇଯିବ ଯେ!"

ତାକୁ ଖୁସି କରିବାକୁ ମୁଁ ପିଲାଙ୍କ ପରି ଭାତୁ ଭାତୁ ସେ ବିସ୍କୁଟ ଦି'ଟା ଗେଲେଇଦେଲି । ଝୁଲିଆ କିଛି ନ କହି ଚାହିଁଥାଏ । ଭାବୁଥାଏ ବୋଧହୁଏ, 'ବାପାଙ୍କର ଏଇନା ଋଷିକେଶ ଯିବାର ବେଳ ହୋଇନାହିଁ ।'

ପୁଅବୋହୂ ଯିବାର ଆଜିକୁ ଛ'ଦିନ ହେଇଗଲା ।

ମୁଁ ଘ୍ୟା' ଭିତରେ କିଛି କାମ କରିନାହିଁ । କରିପାରିନାହିଁ । କେବଳ ସେ ରୋମାନ୍ ଜୀବନ ଉପରେ ବହିଟିକୁ ଏଠୁ ସେଠୁ ପଢୁଛି । ବେଶିକରି ଚିତ୍ରଗୁଡାକୁ ଦେଖୁଛି ବାରମ୍ବାର । ସୁମି ପାଖକୁ ତିନିଥର ଯାଇଛି । ପେଟ କାଟିଲେ, ଦେହମୁଣ୍ଡ ମୋଡିଭିଡି ହେଲେ ପିନ୍ଧାପିନ୍ଧି କରି ଚାଲିଯାଉଛି କାମେରାଟି ଧରି ।

ମୋତେ କିଛିଦିନ ହେଲା ରାତିରେ ବୋଧେ ଜର ହଉଚି ନା କ'ଣ ? ମୁଁ ଦୁର୍ବଳ ବୋଧ କରୁଚି । ଦୁର୍ବଳ ଦିଶୁଛି ବୋଲି ସୁମି କହୁଥିଲା ।

କାଲି ସେ ରିପୋର୍ଟ ଆସିବ । ସୁମି କହୁଛି ଯେ ଏ ଡାକ୍ତରଗୁଡାକ ଗଜମୂର୍ଖ । ବୃଥାରେ ଲୋକଙ୍କୁ ଡରାଇ, ଚମକେଇ ପଇସା ଝଡେଇବା ତାଙ୍କ କାମ । ସେ ଫଟୋରେ କ'ଣ ବାହାରିଛି କି ନାହିଁ, ତୁଚ୍ଛାରେ ଛାନିଆଁ । କେଉଁଠି କ'ଣ ଟିକିଏ ଦରଜ ହେଇଗଲେ କ'ଣ ନା କାନ୍‌ସର୍! ଧୁତ୍...ବେକୁବ୍ ଗୁଡାକ!

ଆଜି ସକାଳୁ ମୋତେ ଭାରି ଛନ୍‌ଛନ୍ ଲାଗୁଚି! ମୁଁ ଯାଇ ଦୁଇ ଘଣ୍ଟା ସେ ପଥରଟାକୁ ହାଣିଲି । ଖୁବ୍ ଟାଣ ଅମାନିଆଁ ପଥର । ନିହାଣ ମୁନରୁ ନିଆଁଝୁଲ ଛିଡିକିଲା । ମୋ ଦେହ ମୁଣ୍ଡରୁ ଗରମ ବାମ୍ଫ ବାହାରିଲା । ଝାଳ ନିଗିଡିଗଲା । ମୁଁ ଖୁସି ହେଇ ଚାଲିଆସିଛି । ହେଲେ ମନ ଦମ୍ଭ ଧରୁନାହିଁ । ଅନ୍ତତଃ – ଦଶଟା ନ ହେଲା ନାହିଁ – ଏ ଖଣ୍ଡିଏ ପଥରକୁ କାଟି ଦେଇ ପାରନ୍ତି ଯଦି...

ଦେଖାଯାଉ! କାଲି ଯଦି ସେମାନେ କହନ୍ତି ଯେ ପରୀକ୍ଷାରେ କାନ୍‌ସର୍ ବାହାରିଲା, ତେବେ...ତେବେ ଝୁଲିଆକୁ ଚିଠି ଲେଖିଦେବି ଋଷିକେଶ ଯିବି ବୋଲି ।

କିନ୍ତୁ ସୁମିକୁ କ'ଣ କହିବି ? ସେ ଯଦି ନୀରବରେ ସକ୍‌ସକ୍ କାନ୍ଦେ ?...ପଚାରିଲେ ଯଦି ଉତର ନ ଦିଏ ?...

ବାଘ ଯଦି ବୁଦା ଉହାଡରୁ ବାହାରିଆସେ, ତା' ସାଙ୍ଗରେ ତ ଯିବାକୁ ହବ । ଛାଡିଯିବାକୁ ହବ ମନର ମଣିଷମାନଙ୍କୁ, ସପ୍ନକୁ, ସଂସାରକୁ! ଉପାୟ କ'ଣ ? ଅଗତ୍ୟା ଯିବାକୁ ହିଁ ହେବ! ମୋର ଦୁଃଖ ତ ଅନେକ! ସବୁଠୁ ବଡ ଅବଶୋଷ ମୁଁ ଜାଣି ପାରିଲିନାହିଁ କିଛି; ମଣିଷକୁ, ପଥରକୁ, ରଙ୍ଗକୁ, ହସକୁ, କାନ୍ଦକୁ – ସେ ଭିଡିନେଲେ ମୋର ଚାରା କ'ଣ ? କିନ୍ତୁ ଈଶ୍ୱର ଜାଣନ୍ତି ମୋର ଜମା ଇଚ୍ଛା ନାହିଁ ଋଷିକେଶ ଯିବାକୁ ।



# ଭାବକୁ ନିକଟ...

ଶ୍ରୀକ୍ଷେତ୍ରରେ ହୁରିପଡିଗଲା ଯେ ଅଠରନଳାଠେଇଁ କାହୁଁ ଗୋଟେ କୋଟିପତି ଆସି ହାବୁଡିଛି । କିଏ କହିଲା, ଛଅଖଣ୍ଡ ମଟରଗାଡି ନେଇ ଆସିଛି । କିଏ କହିଲା, ସେଇଠୁ ଟଙ୍କା ବୁଣି ବୁଣି ସିଂହଦ୍ୱାରଯାଏ ତାଆରି ଉପରେ ଗାଡି ମଡେଇଯିବ । ଆଉ କିଏ କହିଲା, ସେ ଆସିଛି କୋଉଠି ଗୋଟେ ସୁନାଛାଉଣି ମଣ୍ଡିଦବ । କିଏ ସେ ଶେଠ୍ ? କାହା ଯଜମାନ ? କାହୁଁ ଆସିଛି ? ଧାଇଁଲେ ପଣ୍ଡା ପଡିହାରୀ ଯେଝା ମାର୍ଗେ । ଯଜମାନୀ ନଥିଖାତା ନେଇ ଗାମୁଛାଖଣ୍ଡମାନ କାନ୍ଧକୁ ଛାଟିଦେଇ ଇଏ ତାକୁ ଡେଇଁ, ସିଏ ଆକୁ ଡେଇଁ ଭିଡିଗଲେ ଯାଇ ଅଠରନଳା ମୁହାଣ ପାଖରେ । ସତକୁ ସତ ସେ ଯଜମାନଖଣ୍ଡ ଅକାତପାଣି-ମାଛ । ସତକୁ ସତ ଛଅଖଣ୍ଡ ଗାଡିରେ ଖୁନ୍ଦିହେଇ ରହିଛି ଅସରପି । ଏତେ ବଡ ମାଛକୁ କାହାରି ଜାଲ ଅଣ୍ଟୁନାହିଁ । ଛେନାଘଣ୍ଟୁଡି ଥୋପିପଡୁଛି, କାହାରି କାନିରେ ଥାନ ନାହିଁ ତାକୁ ଗଣ୍ଠିରା କରି ବାନ୍ଧି ନବାକୁ ।

ସାତପୁର କରି ତାକୁ ସେମାନେ ଘେରିଗଲେ । ସମସ୍ତଙ୍କୁ ଆଡେଇଦେଇ ସବା ଆଗକୁ ଠେଲି ପଶିଲେ ଭୁଜବଳ ଓ ଭେଣ୍ଡିଆ ପଣ୍ଡାମାନେ । – କୁସୁମାଖିଆ ଆଖି, ପାନଖିଆ ପାଟି, କୁଲାପରି ବୁକୁ, ଖମ୍ବପରି ଡେଣା, ଷଣ୍ଢପରି ରଡି । ଠେଲାପେଲା ପାଟିତୁଣ୍ଡ ଭିତରେ ଗୋଳ ଉଠିଲା, ମଟରଗାଡି ସବୁ ସେଥିରେ ଦୋହଲିଲେ ପକ୍ଷୀପରି । ଗାଡିଭିତରୁ ଗୁଡିଏ ଗୋରାଗୋରା ହାଲିଆ ମୁହଁ ଏପାଖ ସେପାଖ ଚାହିଁଲେ, ଗହମ ରଙ୍ଗର ଦୁଇଟି ପିଲା ମସିଆ ଦାନ୍ତ କାଢି ହସିଲେ । ସ୍ତ୍ରୀଲୋକମାନେ ସଜାଡି ହେଇ ବସିଲେ । ...କଥା କ'ଣ ?...ଏମାନେ କିଏ ? ଏମାନେ କ'ଣ ସ୍ୱାଗତ ଜଣଉଛନ୍ତି ଶେଠ୍ ମାଣିକରାମ କରୋଡମଲ୍ଲଙ୍କୁ ? ପ୍ରଥମ ଗାଡିଭିତରୁ ଜଣେ ବଇସିଆଳ ଲୋକ ବାହାରି ଆସିଲେ । ହାତଯୋଡି ବିନୟରେ ପଚାରିଲେ ତାଙ୍କ ନିଜ ଭାଷାରେ – "ଆପଣମାନେ କ'ଣ ଚାହାନ୍ତି ?" ସମସ୍ତେ ତୁନି ପଡିଗଲେ । ଚାହିଁଲେ ୟା' ମୁହଁକୁ ତା' ମୁହଁ; ଟୋକାଦଳ ଘୁଞ୍ଚିଗଲେ । ପଛରୁ ଦି'ଚାରିଜଣ ପୋଖତ ପଣ୍ଡା ସେଇ ଭାଷାରେ କଣସବୁ କହିଲେ ।

ପଚରାପଚରି ପରେ ଜଣାଗଲା ଯେ ପଞ୍ଚାଅଶୀ ବର୍ଷୀୟ ଶେଠ୍ ମାଣିକରାମ ଠାକୁରଦର୍ଶନକୁ ସପରିବାର ଆସିଛନ୍ତି । ବହୁ କଷ୍ଟରେ ମାସେକାଳ ବାଟରେ ରହି ରହି ଡାକ୍ତରଙ୍କୁ ସାଙ୍ଗରେ ଧରି ସେମାନେ ଆସି ପହଞ୍ଚିଛନ୍ତି । ପ୍ରଥମେ କୌଣସି ଧର୍ମଶାଳାରେ ରହି ଟିକିଏ ସୁସ୍ଥ ହେଲାପରେ ଯଜମାନୀ ଆଦି ବିଷୟ ସ୍ଥିର କରାଯିବ । ଠେଲି ପଶୁଥିବା ଗହଳି ଗୋଠ ଭାଙ୍ଗିଲା ପରି ଟୁଟିଗଲା । ଆଗରେ କେତେଜଣ ଧାଇଁଗଲେ । ଦୁଇପାଖେ ଆଡହୋଇ ଚାଲିଲେ ବାକି ଲୋକେ । ଧୂଳିଆ ପ୍ରବାସୀ ଗାଡିଗୁଡିକ ଆଗପଛ ହୋଇ ବଡଦାଣ୍ଡ ଧରିଲେ ।

ମଝି ଗାଡିଟି ସବୁଠୁ ବଡ । ସେଇଠି ବୁଢା ଶୋଇରହିଥାନ୍ତି । ପାଖରେ ଡାକ୍ତର । ବୁଢା ମୁହଁରେ ପାଚିଲା ରୁଢ । ଲୋଥରା ଆଖି ଯୋଡିକରେ କିଛି ଲୁହ । ହୁଡା ହୁଡା ମେଘ ପଛରୁ ଚମକୁଥିବା ତାରା ପରି ଝିଲିମିଲି କିଛି ଆଶା । ...ପଞ୍ଚାଅଶୀ ବର୍ଷ ତଳେ ତାଙ୍କ ବାପ ମାଆ ଆସି ଜଗଦୀଶ ଦର୍ଶନ କରିଥିଲେ । ପୁଅଟିଏ ମାଗିଥିଲେ କୁଳ ମଣ୍ଡିବାକୁ । ସେଇଦିନଠୁ ଛାଡବାଡ । ଖାଲି କେତେବେଳେ କେମିତି ଏତେ ଦୂରରେ ଜଣେ ଜ୍ଞାତି ରହିଛନ୍ତି ବୋଲି କଥା ପଡେ । ଶେଠ୍ ପରିବାରରେ ଜଗଦୀଶ ଜଣେ ଆତ୍ମୀୟ ଭଳି । ବିପଦବେଳେ ତାଙ୍କୁ ଡକାହୁଏ । ବିବାହ ମଉଚ୍ଛବରେ ନିମନ୍ତ୍ରଣ ଯାଏ । କିନ୍ତୁ ମାଣିକରାମ ଅଚଳାଚଳ ସମ୍ପତ୍ତିର ଜଞ୍ଜାଳ ଆଡେଇଦେଇ କେବେହେଲେ କ୍ଷେତ୍ରକୁ ଆସି ଆଖି ପଖାଳିପାରିନାହାନ୍ତି । ଯେତେବେଳେ ପଥରପରି ରୋଗର ବୋଝ ମଡେଇ ହୋଇଗଲା, ସଂସାର ଦେଖାଗଲା ଲିଭିଆସୁଥିବା ଗାରଟିଏ ପରି ପାଣିଚିଆ, ମାଣିକରାମ ହଠାତ୍ ଗୋଟେ ଦିନ ସକାଳୁ ସମସ୍ତଙ୍କ ମୁହଁକୁ ବାଲୁବାଲୁ ଚାହିଁଲେ । ପୁଅମାନେ ଆସି ଠିଆହେଇଗଲେ ପାଖରେ । ଇନ୍ଦ୍ର ବରୁଣ ପରି ଐଶ୍ୱର୍ଯ୍ୟରେ ଜାଜ୍ୱଲ୍ୟମାନ ସେମାନେ ଏକେ ଏକେ କୋଟିପତି । କିଏ ଦକ୍ଷିଣ ପ୍ରାନ୍ତରୁ ଆସିଛି ତ କିଏ ଉତ୍ତରରୁ । ବାପ ଚାହିଁଲେ ଆକାଶରୁ ଚାନ୍ଦ ଆଣି ଥୋଇଦେଲାଭଳି ପାରଙ୍ଗମ ପିଲାଏ । ବୋହୂମାନେ ସେମିତି ଏକୁ ଆରେକ ଜଗଜ୍ଜିଣଆ । ବୁଢା ନିଜେ ସେମାନଙ୍କୁ କାହୁଁ କାହୁଁ ଖୋଜି ତୋଳି ଆଣିଛନ୍ତି । ପଦବନ ପରି ମାଣିକରାମ ପରିବାର । ନାତିନାତୁଣୀ ହୀରା-ନୀଳାପରି ଝଟକୁଛନ୍ତି । ସେମାନଙ୍କର ପିଲାମାନେ ଏବେ ସୁନାର ପଦ୍ମକଢପରି ଉଭାରି ଆସିଲେଣି । ପଞ୍ଚାଅଶୀ ବର୍ଷରେ ଶେଠ୍‌ଜୀଙ୍କର ଅଭାବ ବୋଲି କିଛି ନାହିଁ ।

ସେଦିନ ସକାଳୁ ସେ ସମସ୍ତଙ୍କୁ ବାଲୁବାଲୁ ଚାହିଁଗଲେ । ଡାକ୍ତର ଉତ୍ସାହିତ କଲାଭଳି କହିଲେ, "କ'ଣ ଇଚ୍ଛା ହେଉଛି କହନ୍ତୁ, ଯାହା ଚାହିଁବେ ତାହା ହେବ ।" ଶେଠ୍‌ଜୀ ଡାକ୍ତରଙ୍କୁ ଥଣ୍ଡା ଥଣ୍ଡା ଆଖିରେ ଚାହିଁଲେ । ପିଲାଏ ବୁଝିଗଲେ ଯେ ଡାକ୍ତରଙ୍କ କଥାକୁ ସେ ନାମଞ୍ଜୁର କରୁଛନ୍ତି । କିଏ ଏଇ ଦରମାଖିଆ ଡାକ୍ତର, ମାଣିକରାମ ଶେଠ୍‌କୁ କହୁଛି, କି ବର ମାଗିବୁ ମାଗ୍! – କମ୍ ସାହସ ନୁହେଁ ତ ! ଡାକ୍ତରଙ୍କୁ ପଛ କରି ପୁଅମାନେ ଧାଡିହୋଇ ଠିଆ ହେଲେ ନୀରବରେ । ବୁଢା ଖୁବ୍ କ୍ଳାନ୍ତ ଅଥଚ ପରିଷ୍କାର ଗଳାରେ କହିଲେ, "ଆମେ ଆସନ୍ତାକାଲି ଜଗଦୀଶଦର୍ଶନକୁ ବାହାରିବା ।" – ବାସ୍! ଦ୍ୱିରୁକ୍ତି ନାହଁ, ପଚାରିବାକୁ ସାହସ ନାହିଁ । ଆଦେଶ ପାଇଲା ପରେ ପାଳନ କରିବାକୁ ସମସ୍ତେ ତତ୍ପର ହୋଇଗଲେ । ଉଡାଜାହାଜରେ ଯାଇପାରିବେ ନାହିଁ ବୋଲି

କହିଲେ ଦିଲ୍ଲୀର ଡାକ୍ତର । କଲିକତା ଡାକ୍ତର କହିଲେ ଯେ, ଘଣ୍ଟାକେ କୋଡିଏ ମାଇଲ୍‌ରୁ ଅଧିକ ଜୋର୍‌ରେ ଗଲେ ବୁଢ଼ାଙ୍କ କଲିଜା ବନ୍ଦ ହୋଇଯିବ । ଏଣେ କିନ୍ତୁ କୌଣସିମତେ ବାହାରିବାକୁ ପଡିବ । ଶେଷକୁ ଛଅଖଣ୍ଡ ଗାଡିରେ ଯେତେଜଣ ପାରିଲେ ବସି ବାହାରିଲେ ମାସକ ତଳେ । ବାଟଯାକ ତିନିଚାରିଦିନ ଅନ୍ତରରେ ବଡଡାକ୍ତରଖାନାମାନଙ୍କରେ ବୁଢ଼ାଙ୍କ ପରୀକ୍ଷା ଚାଲିଥାଏ । ଔଷଧଦିଆ ମଧ୍ୟ ଚାଲିଥାଏ । ଗାଡି ବଡଦାଣ୍ଡ ଧରିଲା । ବୁଢ଼ା ତକିଆ ଉପରୁ ମୁଣ୍ଡ ଟେକି କ'ଣ ଟିକିଏ ଦେଖିଦବାକୁ ଚାହୁଁଥାନ୍ତି, ଜଗଦୀଶ ସତେ ଦେଖିବାକୁ କେମିତି । ଯେଉଁ ଚିତ୍ର ସବୁ ମିଳେ, ସେ କ'ଣ ସେହିଭଳି ? ଯାହାକୁ ସେ କେବେ ଦେଖିନାହାନ୍ତି ତାକୁ ଥରେ ଦେଖିବାକୁ ସେ କାହିଁକି ଏମିତି ଅଡି ବସିଛନ୍ତି ? କ'ଣ ହେବ ତାକୁ ଦେଖିଦେଲା ପରେ ? – ବୋଧହୁଏ ତାଙ୍କ ଜୀବନର ଶେଷ ଅଭିଳାଷ ମେଣ୍ଟିଯିବ । ଶେଷ ଇଚ୍ଛାଟା କ'ଣ ଏମିତି ପାହାଡଚୁଳିଆ ଆକାଶ ପରି ଚତୁର୍ଦ୍ଦିଗ ଆବୁରି ରହେ, ଘୋଟିଯାଏ ଭିତରେ ବାହାରେ ? ଆଉ ତେଣିକି କ'ଣ କଛି ନାହିଁ ? ଯେଉଁ ଗୋଟିଏ ସୂତାରେ ସେ ଓହଳିଛନ୍ତି ସେଇଟା ତାହେଲେ କ'ଣ ଛିଣ୍ଡିଯିବ ? ଯେଉଁ ରହସ୍ୟରୁ ସେ ନିଃସନ୍ତାନ କରୋଡମଲ୍ଲ ପରିବାରରେ ଜନ୍ମ ହୋଇଥିଲେ, ସେଇ ରହସ୍ୟକୁ ସେ କ'ଣ ପଞ୍ଚାଅଶୀ ବର୍ଷ ପରେ ପୁଣି ଫେରିଆସୁଛନ୍ତି ? ଯେଉଁଠୁ ଯାଇଥିଲେ ସେଇଠିକି ?...ଏଠୁ ବୋଧେ ଆଉ ସେ ଫେରିପାରିବେ ନାହିଁ । ...ପ୍ରୟୋଜନ ବା କ'ଣ ?

ମାଣିକରାମଙ୍କ କପାଳରେ ଝାଳ । ଖଞ୍ଜା ହୋଇଥିବା ଗୋଟିଏ ଯନ୍ତ୍ରରେ କଣ୍ଟା ଦେଖେଇଲା, ସାମାନ୍ୟ ହୃତ୍‌କମ୍ପ, ସାମାନ୍ୟ ଅଧିକ ରକ୍ତଚାପ ! – ସାଙ୍ଗେ ସାଙ୍ଗେ ଗାଡି ରଖିବାକୁ କହି ଡାକ୍ତର, ନର୍ସ ତତ୍ପର ହୋଇଗଲେ । ଆଖି ଫିଟାଇ ବୁଢ଼ା ସେମାନଙ୍କୁ ଦେଖିଲେ । ଅଳ୍ପହସି କହିଲେ, "ମୁଁ ସମ୍ପୂର୍ଣ୍ଣ ଭଲ ଅଛି । ଗାଡି ଚଳାଅ ।" କଣ୍ଟାଗୁଡିକ ସତକୁ ସତ ଖସିଗଲେ ଯେଝା ସ୍ଥାନକୁ ! ଆଗରୁ ଖୁବ୍ ସଉକିନିଆ ଦାମୀ ହୋଟେଲମାନଙ୍କୁ ଲେଖି ଜାଗା ରଖାସରିଥିଲା । ହେଲେ ବୁଢ଼ା ରହିବାକୁ ଚାହିଁଲେ ଧର୍ମଶାଳାରେ । ସାଧାରଣ ଏକବସ୍ତ୍ରୀ ମଣିଷ, ଯାହାର ସଖା ସହୋଦର କେହି ନାହିଁ, ଯେ ଖାଲି ବଡଦାଣ୍ଡରେ ଠିଆ ରହିଥାନ୍ତା, ସେମାନଙ୍କ ପାଇଁ ଏ ପଥର କାନ୍ଥର ଘର ! ଛୋଟ ଛୋଟ ବଖରା କାନ୍ଥରେ ଖୋପ – କାକର ଚଟାଣରେ କିଛି ଧୂଳି । ଏଠି ସେଠି ଅସନା । ମାଣିକରାମଙ୍କ ପାଇଁ ଏଇ ଯଥେଷ୍ଟ ! ତାଙ୍କୁ ଡେଣାଧରି ଚଳେଇ ନିଆଗଲା । ସେ ଘରେ ଗାଦି ପଡିଲା, ତକିଆ ପଡିଲା; ସେ ସେଇଠି ଆଉଜି ବସିଲେ । ସମସ୍ତଙ୍କୁ ଚାହିଁ ଅଳ୍ପ ଅଳ୍ପ ହସିଲେ । ଗହଳି ସବୁ ଓଡେଇ ନେଇ ଅନ୍ୟଆଡେ ପିଲାମାନେ ସବୁକଥା ସମ୍ଭାଳି ନେଲେ । ଡାକ୍ତର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଯେ, ସେ ପଥର ଚଟାଣ ଉପରେ ମାଣିକରାମଙ୍କୁ ଅନେକ ଦିନ ପରେ ତା' ମନକୁ ନିଦ ଲାଗିଗଲା ! ମୁହଁରେ କୌଣସି ପୀଡାର ଚିହ୍ନ ନାହିଁ ! ଚାରିଆଡୁ କ'ଣ ଗୁଡାଏ ବୋଝ ଓହ୍ଲେଇଗଲା । ସମସ୍ତେ ଉଶ୍ୱାସ ବୋଧ କଲେ । ପିଲାଙ୍କୁ ଲାଗିଲା ବଣଭୋଜି କରି ଆସିଛନ୍ତି । ସରକାରୀବାବୁ ଜଣେ ଆସି ତଦାରଖ କରିଗଲେ । ଅନେକ ସମ୍ପତ୍ତି ପାଖରେ ଥିବାରୁ ପହରା ଜଗି ଦେଇଗଲେ । ପ୍ରତି ପାଞ୍ଚ ମିନିଟ୍‌ରେ ଘେରାଏ ଲେଖା ଜଣେ ଡାକ୍ତର ବୁଲିଆସୁଥାନ୍ତି;

ଝରକା ଆଡେଇ ଦେଖୁଥାନ୍ତି । ନର୍ସ ଅଳ୍ପ ହସି ମୁଣ୍ଡ ଟୁଙ୍ଗାରି ଜଣାଇ ଦେଉଥାଏ । ଉଲ୍ଲାସରେ ସେ ଫେରିଆସି କହୁଥାନ୍ତି, କେବଳ ତାଙ୍କ ଔଷଧର ଅତୁଳ କାମ ଏତେବେଳକେ ଜଣାଗଲା । ଏଥର ବୁଢ଼ା ସମ୍ପୂର୍ଣ୍ଣ ଭଲ ହୋଇଯିବେ ।

ତିରିଶବର୍ଷ ହେଲା ବୋଧେ, ମାଣିକରାମ କେବେ ଏକାଠି ଚାରିଘଣ୍ଟା ଶୋଇ ନଥିଲେ । ନିଦରୁ ଉଠିଲାରୁ କିଏ ଓଷୁଧ ପାଇଁ, କିଏ ଏଥିପାଇଁ ଧାଁଧପଡ କଲେ । ବୁଢ଼ା ସବୁ ମନା କରିଦେଲେ । ଆରେ, ମୋର ଏବେ ଆଉ କିଛି ଦରକାର ନାହିଁ । ମତେ ଲୁଗା ବଦଳ କରିଦିଅ । ମତେ ନେଇଚାଲ, ମୁଁ ଜଗଦୀଶ-ଦର୍ଶନ କରିବି ! ସମସ୍ତେ ଭାରି ଖୁସି । ଡାକ୍ତରଟି କେବଳ ଭୁରୁ କୁଞ୍ଚେଇ ଅନେଇ ରହିଛନ୍ତି । ତାଙ୍କୁ କିଛି ବୁଝାପଡୁନାହିଁ । ଏତେଦିନକେ ବୁଢ଼ା ହଠାତ୍ ଏମିତି ଚଞ୍ଚଳ ହେଇଗଲା କେମିତି ! ସେ ହୁଏତ ଏପର୍ଯ୍ୟନ୍ତ ଠକୁଥିଲା । ଲୋକେ ସେବା କରିବାକୁ ଥିବାରୁ ନିଜେ ଜାଣିଶୁଣି ସେମିତି ବେଲି କାଟୁଥିଲା ! ସେ ତ ଏକରକମ ପଙ୍ଗୁ ହୋଇଯାଇଥିଲା । କଡ ଲେଉଟାଇ ନ ଦେଲେ ଶେଯରେ ବୁଲିପାରୁ ନଥିଲା । ଘଟଣା କ'ଣ ? ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା, ଯେତେବେଳେ ମାଣିକରାମ ଧୋତି ପଞ୍ଜାବି ପିନ୍ଧି, ତୁଳସୀମାଳ ପକେଇ ଠିଆହେଲେ, ପୁଅମାନଙ୍କ କାନ୍ଧରୁ ହାତ ଖସେଇ ଆଣି ଗୋଡ ଥାପି ଥାପି ବର୍ଷକିଆ ପିଲାଟିଏ ପରି ଗୋଟିଏ ଗୋଟିଏ ଚାଲିଲେ ! ପଣନାତିମାନେ ତାଳିମାରି ଖୁସିରେ ଡେଇଁଲେ । ନାତିନାତୁଣୀ ପରିହାସ କଲେ ଯେ, ଜଗଦୀଶ ଜେଜେବାପାଙ୍କୁ ପୁଣି ଟୋକା କରିଦେଲେ ! ପୁଅମାନେ ଉଦ୍‌ବିଗ୍ନ ହୋଇ ପାଖେ ପାଖେ ଲାଗି ଚାଲିଥାନ୍ତି, କାଳେ ବୁଢ଼ା କୁଢେଇ ହେଇ ପଡିବେ ! – ଧର୍ମଶାଳା ଦୁଆରମୁହଁ ପାଖରେ ଗାଡି ଲାଗିଲା । ବୁଢ଼ା ମନା କରିଦେଲେ ସମସ୍ତଙ୍କୁ ! ସେ ଏକୁଟିଆ ଯିବେ ଦର୍ଶନକୁ । ତାଙ୍କ ସାଙ୍ଗରେ ଡାକ୍ତର ବି ଯିବେନାହିଁ ! ସେ ସରକାରୀ ବାବୁଜଣଙ୍କୁ ପାଖରେ ଡାକି ବସେଇଲେ । ଟୋକା ଅଫିସର । ଦେଉଳ-ଶାସନରେ ଅଳ୍ପ ଦିନ ଆସି ଲାଗିଥାନ୍ତି । ତାଙ୍କ ଡରରେ କିନ୍ତୁ ପଣ୍ଡା ପଶିପାରୁ ନଥାନ୍ତି ପାଖରେ । ତଥାପି ପାଞ୍ଚ ସାତଜଣ ଘେରି ରହିଥାନ୍ତି । ଗାଡି ବାହାରିଲା ! ବୁଢ଼ାଙ୍କର ବଡପୁଅ ସବା ଶେଷ ପାହାଚରେ ଠିଆ ରହିଥାନ୍ତି । କେଜାଣି କାହିଁକି ତାଙ୍କ ଆଖିରୁ ଲୁହ ଡବ ଡବ ହୋଇ ବାହାରିଆସିଲା । ସମଗ୍ର କରୋଡମଲ୍ଲ ପରିବାର ସ୍ତବ୍ଧ ହୋଇ ଠିଆ ରହିଥାନ୍ତି । ଗାଡି ଲୁଚିଯିବାରୁ ସେମାନେ ଫେରିଗଲେ । ଡାକ୍ତର ଜଣକ ସେଇଠି ଠିଆ ହୋଇ ସିଗ୍ରେଟ୍ ଟାଣୁଥାନ୍ତି । ଚାହିଁରହିଥାନ୍ତି ଆକାଶକୁ...ଧୂଆଁକୁ ।

ତେଣେ ବଡଦାଣ୍ଡ ଉପରୁ ଗରୁଡଖମ୍ବଯାଏ ସାତଶ ପଚାଶ କୋଶ । ପାହାଡଟିଏ ଉଠିବା, ପର୍ବତ ଚଢ଼ିବା ପରି ଦୁଷ୍କର । ମାଣିକରାମ ପ୍ରତି ଦୀର୍ଘଶ୍ୱାସରେ 'ଜଗଦୀଶ' ଡାକୁଥାନ୍ତି । ବେଢା ବୁଲି ତାଙ୍କ ପାଖରେ ଘେରିରହିଥିବା ଗୋଟିଏ ଯାତ୍ରାଗହଳିକୁ କଟେଇ କଟେଇ ତାଙ୍କୁ ସାତପଛରୁ ପାରି କରେଇଲାବେଳକୁ ସେ ବାବୁଜଣକ ଝାଳରେ ବୁଡିସାରିଥାନ୍ତି ! ପଇସାଟିଏ ନ ପାଇ ତାଙ୍କ ଆଗରେ ପଛରେ ବୋଲିବାଣୀ କରି ଲାଗିଥାନ୍ତି ଅସନ୍ତୁଷ୍ଟ ସେବାୟତକୁଳ । ସମସ୍ତଙ୍କୁ ସେ କହୁଥାନ୍ତି, "ମିଳିବ...ଟା ବେଳାରେ ବୁଢ଼ା ସମସ୍ତଙ୍କୁ ଦବ !" କିଏ କାହିଁକି ଶୁଣନ୍ତା, ସମସ୍ତଙ୍କର ଓଲଟି ରାଗ

ଯାଙ୍କ ଉପରେ । ବୁଢାକୁ ପାଲେଇ ପଟେଇ ସେ ତା'ଠୁ ଟଙ୍କାଟକ ମାରିନେଲାଣି ବୋଲି ମଧ କେହି କେହି ଦେଢାରେ କହିଲେଣି । ସବୁ ସହି ସେ ନେଇ ବୁଢାଙ୍କୁ ପହଞ୍ଚେଇଲେ ଗରୁଡଖମ୍ବ ପାଖେ । ଘିଅଦୀପଟିଏ ନିଜେ ଠାକୁରଙ୍କୁ ଟେକିଦେଇ କହିଲେ, "ଶେଠ୍‌ଜୀ, ଦର୍ଶନ କରନ୍ତୁ, ଜଗଦୀଶଙ୍କୁ ଏଇଠୁ ଦେଖି ଚୈତନ୍ୟ ମହାପ୍ରଭୁ ଟରଳିଯାଇଥିଲେ । ଆସନ୍ତୁ, ଦେଖନ୍ତୁ, ହେଇ ରତ୍ନସିଂହାସନ ଉପରେ ବଳିୟାରଭୁଜ, ପତିତପାବନ ଜଗନ୍ନାଥ!"

ବୁଢା ଛନଛନ ହୋଇ ଆଗକୁ ଚାହିଁଲେ । ଏକତ ସେକତ ହେଇ କାତର ହେଲାପରି ପଚାରିଲେ, "କାହିଁ ? କାହିଁ ଜଗଦୀଶ ? କୋଉଠି ?"

"ହେଇ ପରା, ଗମ୍ଭୀର ଭିତରୁ ରତ୍ନସିଂହାସନରେ ବିଜେ ହେଇ ଚାହିଁଛନ୍ତି ।"

"କାହିଁ କାହିଁ ?" – ବୋଲି ବାଉଳି ହେଲେ ମାଣିକରାମ, "ମୁଁ କିଛି ଦେଖି ପାରୁନାହିଁ! ମତେ ଦୟା କର । ଆଉ ମତେ ଛଳ କରନାହିଁ । ମତେ ଠିକଣାରେ ଦେଖେଇଦିଅ ।"

ସମସ୍ତେ ଆଶ୍ଚର୍ଯ୍ୟ ହେଇ ପାଖେଇ ଆସିଲେ । ବୁଢା ଆଖିକୁ ଦୂର ଜିନିଷ ଦେଖାଯାଉନାହିଁ । ସେ ଗରୁଡପୃଷ୍ଠରୁ ଠାକୁରଦର୍ଶନ କରିପାରିଲେ ନାହିଁ! ହଉ । ତାଙ୍କୁ ପ୍ରଥମ ଅର୍ଗଳ ପାରିକରାଇନେଲେ । କେହି ଆଉ ଆଗରେ ନାହିଁ । ଗମ୍ଭୀରା ଘର ଉଛୁଳେଇ ଠାକୁର ଚତୁର୍ଦ୍ଧାମୂରତି ଚାହିଁରହିଛନ୍ତି । ଏଥର କୌଣସି ସନ୍ଦେହ ନ ରଖି କହିଲେ, "ଶେଠ୍‌ଜୀ, ଏଇ ଯେ ଦେଖୁଛନ୍ତି ବଳଭଦ୍ର, ମଝିରେ ସୁଭଦ୍ରା, ଆଉ ସେ ହେଲେ ପତିତପାବନ ଜଗନ୍ନାଥ!"

"ଆପଣ ମୋର ନାତିର ବୟସ ହେବେ; ମତେ କପଟ କରୁଛନ୍ତି । କାହିଁ, ମତେ ତ କିଛି ଦିଶୁନାହିଁ । କାହିଁ ଜଗଦୀଶ ? କୋଉଆଡେ – ସେ ଦ୍ୱାର ପାଖରେ ଲୋକ ଯିବାଆସିବା କରୁଛନ୍ତି, ତା' ପଛକୁ ତ ଖାଲି କାନ୍ଥଟାଏ!"

"ଏଁ ? ? – ଚମକି ପଡିଲେ ସେ ବାବୁଜଣକ । ଖାଲି କାନ୍ଥ ! ? – କ'ଣ କହୁଛନ୍ତି ଆପଣ ? ଏଇଠୁ ଆପଣଙ୍କୁ ଠାକୁର ଦିଶୁନାହାନ୍ତି ?"

ମାଣିକରାମଙ୍କ ସାରା ଦେହ ଟକମକ କୋହରେ ଅସ୍ଥିର । ସେ ମୁହଁ ଘୋଡେଇ କାନ୍ଦିଲାଗିଛନ୍ତି । ଆଖିଯୋଡକୁ ଉପାଡି ଆଣିବାକୁ ଚାମ୍ପି ଲାଗିଛନ୍ତି; ତାଙ୍କୁ ତଥାପି ଦୁଇଆଡ ବାହୁ ବେଢେଇ ସେମାନେ ଆଗକୁ ବଳେଇନେଲେ । ପଛରେ ସମସ୍ତେ ରହିଗଲେ । ଗୋଟାଏ କିଏ ପାଟି କରି କହିଦେଲା, "କୋଉଠିକା ପୋଚ୍‌ ପାପୀ ଶଳା ଆଇଚି, ତା' ଆଖିକୁ ଠାକୁରେ ଉଭାନ ହେଇଗଲେ ।" ଅନ୍ୟମାନେ ଦୋହରେଇଲେ, "ପାପୀ", "ପୋଚ୍‌ ପାପୀ", "ପାପୀ"... ।

ମାଣିକରାମ ଗୋଡ ରହିଗଲା । ଲଡଥଡ ହେଲା । ଆଉ ବୋଧେ ଆଗକୁ ଯାଇ ପାରିବେ ନାହିଁ! ବାବୁଜଣକ ବଳ ଦେଲାପରି କହୁଥାନ୍ତି, "ଆସନ୍ତୁ ନା, ବୟସ ହେଲେ ଦୃଷ୍ଟି ଦୁର୍ବଳ ହୋଇଯାଏ; ସିଂହାସନ ପାଖରେ ଆପଣ ଦର୍ଶନ କରିବେ ।" ବାଙ୍ଗରା ମଣିଷ ମାଣିକରାମ ଶେଠ୍, ତାଙ୍କୁ ଦେଖେଇଲା ପରି କଳାହାଟ ଦ୍ୱାରବାଟେ ପୋଖରିଆକୁ ଓହ୍ଲେଇ ନେଇଗଲେ । ସିଂହାସନ ତଳେ ଠିଆକରେଇ କହିଲେ, "ଏଥର ଦେଖନ୍ତୁ, ଆପଣଙ୍କ ଆଗରେ ଜଗଦୀଶ ସ୍ୱୟଂ ଠିଆ ରହିଛନ୍ତି ! ଏଇ

ରତ୍ନସିଂହାସନ! ଲକ୍ଷେ ଜୀଅନ୍ତା ଶାଳଗ୍ରାମ ଏଥିରେ ଢଳଢଳ ହଉଚନ୍ତି!"

ଥରିଲା ଥରିଲା ହାତରେ ମାଣିକରାମ ରତ୍ନସିଂହାସନକୁ ଦଗାଣ୍ଡି, ଉପରକୁ କଲବଲ ଚାହିଁଲେ, ଢୋ-କିନା ମୁଣ୍ଡ ପିଟିଦେଲେ ସିଂହାସନ ଉପରେ! ପିଲାଙ୍କ ପରି ରାହା ଟେକି ଲୁହ ସିଙ୍ଗାଣି ହୋଇ କାନ୍ଦି କାନ୍ଦି ସେଇଠି କୁଢେଇ ହେଇ ପଡିଲେ – "ଜଗଦୀଶ! ଜଗଦୀଶ ମତେ ଦର୍ଶନ ଦେଲେନାହିଁ, ମତେ କିଛି ଦିଶୁନାହିଁ!" ସମସ୍ତେ ଭାବିଲେ, ବୁଢା ଅନ୍ଧ। ତାଙ୍କୁ କିଛି ଦିଶୁନାହିଁ। କିନ୍ତୁ ସେ ବିକଳ ହେଇ ସେ ବାବୁଙ୍କ ହାତ ଧରି କହିଲେ, "କ'ଣ ହେଲା, ମତେ କହନ୍ତୁ, ଯାହା କହିବେ ମୁଁ ତା' କରିବି। ମୁଁ ତମ ପାଦ ତଳିପା ଜିଭ ଲଗେଇ ଚାଟିବି। ମତେ ଜଗଦୀଶଙ୍କୁ ଦେଖାଇଦିଅ।"

"ଅଦ୍ଭୁତ! ଏ ବିଶାଳ ଭୁଜ, ଏ ରାଉରାଉ ଆଖି, କବାଟ ଫିଟିଗଲେ ବଡଦାଣ୍ଡ ଆଲୁଅ ହେଇଯିବ। ସିଂହାସନ ତଳୁ ୟାଙ୍କୁ ଦିଶୁନାହିଁ!" – ବାକି କେଇଜଣ ପଣ୍ଡା ହାତ ଛିଞ୍ଚାଡି କ'ଣ ଅସନା ଝାଡିଲା ପରି ଚାଲିଗଲେ। ଜଣେ ରହିଗଲେ। ସେ ହେଲେ ତାଙ୍କ ସାତପୁରୁଷୀ ପଣ୍ଡା – କହିଲେ, ପଇସାଲୋଭରେ ଯୋଉମାନେ ଆସିଥିଲେ, ଖସିଗଲେ। ଏଭଳି ପାପୀ ଅଜାମିଳ ଉଣ୍ଠାରୁ ଆଜି ଆସି ଠାକୁର ଆଗରେ ଉଭାହେଲା – ଆମେ ତ ତାଙ୍କ ପଣ୍ଡା, ଆମର ଆଉ ଆୟତ୍ତ କ'ଣ? ଆମେ ରହିବୁ!

"ଆଜ୍ଞା ଶେଠ୍‌ଜୀ, ଠାକୁରଙ୍କ ପଦ୍ମମାଳ ମହକୁଚି ଜଗମୋହନ ଯାଏ। ତମକୁ ବାସୁଚି!"

ଦି'ଥର ନିଶ୍ୱାସ ବଡ ଆଶାରେ ଟେକିଲା ପରେ ମୁଣ୍ଡ ଲାଡି ସେ ନାହିଁ କଲେ। ସେମିତି ପାଟି ମେଲେଇ କାନ୍ଦିଲାଗିଥାନ୍ତି।

ପଣ୍ଡା କହିଲେ, "ଚାଲନ୍ତୁ ଆଜ୍ଞା, ଯାହା ହବ ସିନା, ବୁଢାଙ୍କୁ ନେଇ ଶ୍ରୀଅଙ୍ଗ ଛୁଆଇଁ ଦବା! – ହେଲେ ତ ଏ ଉତ୍କଟ ପାପ ଛିଣ୍ଡିଯିବ, ନହେଲେ ନାଡି ଛାଡିଯିବ!"

ବାବୁଜଣକ ପିଲାଲୋକ। "–ଆରେ ଆରେ, ଏମିତି କ'ଣ କହୁଚ? – ୟାଙ୍କ ହାତ କ'ଣ ଆଗ ସିଂହାସନ ଉପରକୁ ଓହଟି ପାରିବ ପ୍ରଭୁଙ୍କ ପାଦ ଛୁଇଁବାକୁ!"

ସତକୁ ସତ ସିଂହାସନର ମଙ୍ଗ ଓଳେଇ ଆଣି ସେ ବାଙ୍ଗୁରା ହତାଶ ହାତଯୋଡିକ କାନ୍ଦି କାନ୍ଦି ଓହଳିପଡିଲେ।

କୌମସି ଉପାୟ ନାହିଁ! କାହାକୁ ଆଉ କହିବେ। ନିଜ ଲାଜ ନିଜେ ଲୁଚେଇ ଦୁହେଁ ଶେଠ୍ ବୁଢାଙ୍କୁ ବାହାରକୁ ଆଣିଲେ। ବାହାରେ ଆସି ବୁଢା ସାଷ୍ଟମ ହେଲେ। ଝାଳରେ ତିନ୍ତି ସରବୁଡ! ଆଖିରୁ ଲୁଗାକାନିରେ ଲୁହ ପୋଛି ସେ ଚାହିଁଲେ ତାଙ୍କର ମାତ୍ର ଦୁଇଜଣ ସହୃଦୟ ସଜନଙ୍କୁ – "ମୁଁ ଜଗଦୀଶଙ୍କୁ କାହିଁକି ଦେଖିପାରିଲି ନାହିଁ କହନ୍ତୁ? ପଚାରନ୍ତୁ ଏଠା ପଣ୍ଡିତଙ୍କୁ – ମୁଁ ପାପୀ, ମୋ ପାପର ହିସାବ ନାହିଁ; ହେଲେ ସବୁ ପାପର ଖଣ୍ଡନ କ'ଣ ଜଗଦୀଶ କରିପାରିବେ ନାହିଁ? ମୋର ଆଉ କିଛି ଅଭିଳାଷ ନାହିଁ... ଥରେ ଦେଖିଦେଇ ମରିଯାନ୍ତି! ଯାହାଙ୍କର ଆଶୀର୍ବାଦରେ ଜନ୍ମିଛି, ତାଙ୍କୁ ଦେଖିଦେଲେ ଜୀବ ଛାଡିଯିବ! ମୁଁ ଥରେ ଦେଖିବି...ଦେଖିବି!"

ଦରଦର ଲୁହ ବୋହିଗଲା, ବୁକୁ ଭାଙ୍ଗି କୋହ ଉଚ୍ଛୁରି ପଡୁଥାଏ । – ସେ ତିନିଜଣ ଫେରିଲେ ଆସ୍ତେ ଆସ୍ତେ ବାଇଶି ପାହାଚ ଯାଏ – କେହି ତାଙ୍କ ପାଖେ ପଶିଲେ ନାହିଁ । – ସିଂହଦ୍ୱାର ପାଖରୁ ମାଣିକରାମଙ୍କ ପୁଅମାନେ ଦେଖି ଧାଇଁଆସିଲେ ବୁଢ଼ାଙ୍କୁ ଟେକିନେବାକୁ । ବୁଢ଼ା ଆହୁରି ଆହୁରି କାନ୍ଦିଲେ – "ମୁଁ ଆପଣଙ୍କ ହାତ ଧରୁଚି, ଓଠ ଧରୁଚି, ପାଦ ଧରି ନେହୁରା ହେଉଚି..." କହି କହି ସେ ପାହାଚ ଓହ୍ଲେଇଗଲେ । ତାଙ୍କୁ ଗାଡିରେ ବସେଇ ନେଇଗଲାବେଳେ ସେ ପାଟିକରି କାନ୍ଦୁଥାନ୍ତି ।

ଏ ଦି'ଜଣ ଯା' ମୁହଁକୁ ସେ, ତା' ମୁହଁ ଯେ ଚାହିଁରହିଲେ । ପାଟିକୁ କଥା ପଇଟୁ ନାହିଁ । ଏଭଳି ଆଶ୍ଚର୍ଯ୍ୟ କଥା ଶୁଣାନାହିଁ । ବୁଲିପଡି ସେ ବାବୁଜଣକ ସେଇଠି ମୁଣ୍ଡିଆ ମାରି ମାରି ବସିପଡିଲେ – "ଓହୋ, ସବୁଦିନ ଆସି ଗରୁଡ ପଛରୁ ଚାହିଁଦେଲେ, ରତ୍ନସିଂହାସନ ପୂରିରହିଛି ବୋଲି ସିନା ! ଚାହିଁ ଦେଲାବେଳକୁ କୋଉ ଦିନ ଯଦି ଶୂନ୍ୟ ହେଇଗଲା, ଆଉ ଧଇର୍ଯ୍ୟ ରହିବ ତ ? !..."

ପଣ୍ଡାଏ ମଧ ସେଇଆ ଭାବିଲାଗିଥାନ୍ତି – "ପରମ ପାପୀ ନହେଲେ ଏମିତି ହବନାଇଁ ଆଜ୍ଞା ! ଚାଲନ୍ତୁ, ମୁକ୍ତିମଣ୍ଡପରେ ପହୁଞ୍ଚେଇବା । କ'ଣ କହିବେ, ଶୁଣିବା ।" ବାବୁଙ୍କର ଆଗ୍ରହ ନାହିଁ । ସେ କୋଟରାପିନ୍ଧା, ଗୁଡିଆ, ବ୍ରାହ୍ମଣ ଗୁଡାକ କ'ଣ ଜାଣନ୍ତି ? କ'ଣ କହିବେ ?

"ଏ ତ କାହିଁ କୋଉ ଗହୀରରେ ରହସ୍ୟ ଚାଲିଚି – ଆଶ୍ଚର୍ଯ୍ୟ, ଆଶ୍ଚର୍ଯ୍ୟ !" – କେତେବେଳେ ପୁଣି ଉଠିଲେ । "ହଉ, ପଚରାଯାଇଥାଉ । ଥାଏ ତ କେତେବେଳେ କୋଉ କଥା !"

ଏଣେ ବୁଢ଼ା ଆଉ କାହା ମୁହଁକୁ ନ ଚାହିଁ ଫୁଲି ଫୁଲି କାନ୍ଦିଲାଗିଥାନ୍ତି ! କ'ଣ ହେଲା କିଛି ବୁଝିବାକୁ ଉପାୟ ନାହିଁ । କିଏ କହିଲା, "ବୁଢ଼ାଙ୍କୁ ଅପମାନ ହେଇଗଲା । ଯେ ଅପମାନ କଲା ତା'ର ଛପର ଉଡେଇଦେବା ।" କିଏ କହିଲା, "ତାଙ୍କ ବାପ-ମା' ମନେ ପଡିଲେ, ତାଙ୍କୁ ବାହୁନି ସେ କାନ୍ଦୁଛନ୍ତି !" ଆଉ କିଏ କହିଲା, "ତୁମେ ତାଙ୍କୁ ସମ୍ଭାଳିଥାଅ, ମୁଁ ସେ ହାରାମୀ ବାବୁକୁ ଧରିଆଣୁଚି । ସେ ସବୁ କହିବ ।" – କାହା କଥା ବୁଢ଼ା ଶୁଣୁନାହାନ୍ତି । କେହି ଛୁଇଁଲେ, ଛିଞ୍ଚାଡି ଦଉଛନ୍ତି ! ଓଃ, ଏପରି ପୁଣି ବାଧେ ! ଏଡେ ଗମ୍ଭୀର, ଏଡେ ମାଲିକପଣର ମଣିଷ, ଏମିତି ପିଲାଙ୍କ ପରି ରାହାଧରି କାନ୍ଦିବାର କାହା ଆଖି ଦେଖି ବିଶ୍ୱାସ କରିପାରୁନାହିଁ ! ସମସ୍ତେ ତଟସ୍ଥ ହୋଇ ଚାହିଁରହିଛନ୍ତି ।

ଅନେକ ବେଳ ଲୁହରେ ଗାଧେଇବା ପରେ ସେ ମନକୁ ମନ ବୋଧେଇ ଉଠିଲେ । ବସିଲେ ଗୁମ୍ମାରି ଆଖିବୁଜି କିଛି ସମୟ । ସମସ୍ତେ ଚୁପ୍‌ଚାପ୍ ଅପେକ୍ଷା କରିଥାନ୍ତି । ଅଳ୍ପ ବଇଷିଆ ସବୁ କିଏ କୁଆଡେ ପଳେଇଥାନ୍ତି ସମୁଦ୍ରକୂଳରେ ବୁଲିଆସିବାକୁ । ବୁଢ଼ା ଶୂନ୍ୟକୁ ଚାହିଁଲା ଭଳି କହିଲେ, ଆଜି ନିଷ୍ପତ୍ତି ହେଇଗଲା ! – ନିଷ୍ପତ୍ତି ହେଲା ଯେ ତୁମେମାନେ କାଲି ସକାଳୁ ଏଠୁ ଚାଲିଯିବ । ମୁଁ ଆଉ ଯିବି ନାହିଁ । ...ମୁଁ ପାପୀ, ମୁଁ ଏଇଠି ଜଗଦୀଶ ପାଇଁ ଅପେକ୍ଷା କରି ରହିବି । ମୋ ବିଷୟରେ ତୁମେ ଚିନ୍ତା କରିବ ନାହିଁ । ତାଙ୍କୁ ନ ଦେଖିବାଯାଏ ମୁଁ ମରିବି ନାହିଁ ! ମରିବାଯାଏ ଏଠି ଯେମିତି ହଉ ଚଳିଯିବି ! ନାଇଁ ଯଦି ସେମିତି ମରିଯିବି, ମରିଯିବି !

"ଆପଣ ରହିବାକୁ ଚାହିଁଲେ ଏଠି ବ୍ୟବସ୍ଥା କରିବାକୁ କେତେ ସମୟ ଲାଗିବ ? ସମୁଦ୍ରକୂଳରେ କୋଠା ଖଣ୍ଡେ କିଣିନେଲେ, ଗାଡି ନେଇ ଡ୍ରାଇଭର ରହିଯିବ, ଖାନସାମା, ଦରବାନ୍ କରି ଚାରି ଛ'ଜଣ, ଆଉ ଜଣେ ମେନେଜର ରଖିଦେଲେ ଚାଲିଲା । କିନ୍ତୁ ଆମେ ସବୁ ଦୂରରେ ରହି... ଆପଣ ଏଠି ଏକୁଟିଆ କେମିତି ଚଳିବେ ?"

ଲୁହ-ଦରଦର ଆଖିରେ ଖେଁ-ଖେଁ ହସିଲେ ମାଣିକରାମ । ସେ ହସ ଶୁଣି ସମସ୍ତଙ୍କ ଦେହ ଶୀତେଇଗଲା । ପ୍ରଳାପ କରୁଥିବା ରୋଗୀ, ବା ଭୂତ ଲାଗିଥିଲେ ଲୋକ ଯେମିତି ହସେ, ପ୍ରାୟ ସେମିତି ସେ ହସୁଥାନ୍ତି । ବଡପୁଅ, ନିଜକଥାରେ ନିଜେ ଅପ୍ରତିଭ ହେଲାପରି ଚାହିଁ ରହିଥାନ୍ତି । ବୁଢା କହିଲେ, "ଆରେ କରୋଡମଲ୍ଲ ପୁଅ, କାହାପାଇଁ ତୁ ଏତେ ଆୟୋଜନ କରୁଚୁ ! ମାଣିକରାମ ତ ଫକିର । ଭିକ୍ ମଙ୍ଗା, ସେ ଏବେ ରାସ୍ତାକଡର ପୋକ । – ସଂସାରର ସମସ୍ତଙ୍କୁ ଜଗଦୀଶ ଦର୍ଶନ ଦଉଚନ୍ତି; ତାକୁ ଦଉନାହାନ୍ତି...ସେ ଏଠି କୋଠାରେ କ'ଣ ରହିବ ? – ହେଁ..." ତା'ପରେ ପୁଣି କାନ୍ଦର ପ୍ରଳାପ ।

"ତାହେଲେ ସେ ହାରାମି ପଣ୍ଡାମାନେ ବୁଢାଙ୍କୁ ଦର୍ଶନ କରାଇ ଦେଲେ ନାହିଁ, ତାଙ୍କୁ ଫେରେଇଦେଲେ ? କାଙ୍ଗାଳ, ପଇସାଖୋର, ନାଲାଏକ ନିକମା ଲୋକ ! ତାଙ୍କୁ ଏବେ ତକେଇ ପଇସାରେ ପୋତିଦିଆଯାଉ – ବଳେ ସେମାନେ କାନ୍ଧରେ ବସେଇ ନେବେ, ଆଉ ଦର୍ଶନ କରାଇ ଆଣିବେ । ହଁ, ହଁ, ମୁଁ ଚାଲିଲି, ସେ ଭୋକୀମାନଙ୍କୁ ଓଡେଇ ଓଡେଇ ଆଣିବି ।"

ବୁଢା ହାତ ଟେକି ବାରଣ କଲାବେଳକୁ, ସେ ଟୋକାବାବୁଜଣକୁ ଆଣି ପହଞ୍ଚିଲେ ଜଣେ ଉଦ୍ଧତ ଯୁବକ : "କଣ ବାବୁଜୀ, ଆପଣଙ୍କୁ ଆଉ ଆପଣଙ୍କର ସେ ପଣ୍ଡାଗୋଠଟାଙ୍କୁ କେତେ ପଇସା ଦରକାର କୁହନ୍ତୁ, ଏଇ ସାଙ୍ଗେ ସାଙ୍ଗେ ଦିଆଯିବ । ଏତେ ଦୂରରୁ, ଏତେ ବୟସରେ ସେ ଆପଣଙ୍କର ଠାକୁର ଦର୍ଶନ କରିବାକୁ ଆସିଛନ୍ତି; ସେ ଅଲବତ୍ ଦର୍ଶନ କରିବେ । ଆପଣ ମନାକରିବାକୁ କିଏ ?" – ସ୍ୱରରେ କୋଟିପତିର ଆହତ ଆତ୍ମାଭିମାନ ।

ବୁଢା କେବଳ ହାତ ଟେକି ତାକୁ ବାରଣ କଲେ ।

ସେ ବାବୁଜଣକ ଅଳ୍ପକଥାରେ ସବୁ ବୁଝାଇଦେଲେ । କାହା ତୁଣ୍ଡରୁ କଥା ବାହାରିଲା ନାହିଁ । ମୁଣ୍ଡ ନୁଆଇଁ ସବୁ ବସିରହିଲେ । ଅଦ୍ଭୁତ କଥାରେ ବିଶ୍ୱାସ ଆସୁନଥାଏ । ବୁଢାଙ୍କର ସେ ତେଜା ନାତି କହିଲା, "ଆଚ୍ଛା ବାବୁଜୀ ! ଆପଣ ଠିକ୍ ଜାଣିଛନ୍ତି ଯେ ଆପଣଙ୍କ ଠାକୁର ସେଇଠି ଅଛନ୍ତି ?"

"କ'ଣ ହେଲା ? ସେ ଯେଉଁ ଠାକୁର, ସେ କୋଉ କାଳୁ କୋଟି କୋଟି ଭକ୍ତଙ୍କ ପାଇଁ ସେଇଠି ବିରାଜମାନ ଅଛନ୍ତି । ଆଖିରେ ଦେଖିଦେଲେ ଯଦି ଅଛି ବୋଲି ପ୍ରମାଣ ହେଇଗଲା, ତେବେ ଆପଣ ନିଜେ ଯାଇ ପରୀକ୍ଷା କରି ଆସୁନାହାନ୍ତି ।"

କେଜାଣି କାହିଁକି ସେ ନାତିଟୋକା ଟିକିଏ ଦବିଗଲା, ବାକି ସମସ୍ତେ ଦବିଗଲେ ।

ବୁଢା ଛଳଛଳ ଆଖିରେ ତାଙ୍କୁ ଚାହିଁ କହିଲେ, "ସେ ଅଛନ୍ତି, ଅବଶ୍ୟ ଅଛନ୍ତି । ମୋ ବାପା

ଆସି ତାଙ୍କ ପାଖରେ ଗୁହାରି କରିଥିଲେ । ପ୍ରତିବର୍ଷ ହଜାର ହଜାର ଯାତ୍ରୀ ଜଗଦୀଶ ଦର୍ଶନ କରି ଫେରିବାର ମୁଁ ଜାଣେ । ସମସ୍ତଙ୍କ ପାଇଁ ସେ ଅଛନ୍ତି; କିନ୍ତୁ ମୋ ଭଳି ପାପୀ ପାଇଁ ସେ ଅନ୍ତର୍ଦ୍ଧାନ ହୋଇଗଲେ ! ମୋର ଆଉ ବଞ୍ଚିରହି ଲାଭ କ'ଣ ? ମୁଁ ଘୋର ପାପୀ, ମୁଁ ଏଇମାତ୍ର ମରିଯିବା ଭଲ ।"

ସହି ନ ପାରି ନାତି ଜବାବ ଦେଲା, "ନାହିଁ ଜେଜେ ! ଜଗଦୀଶ ଦେଖା ନ ଦେଲେ କ'ଣ ହେଲା !... ଆମ ଭାରତରେ ଠାକୁରଙ୍କର ଅଭାବ ନାହିଁ । ଚାଲ ଦ୍ୱାରକାନାଥ, ବଦ୍ରିନାଥ, ବିଶ୍ୱନାଥ ଦର୍ଶନକୁ ଯିବା । କ'ଣ ସେମିତି ଟିକିଏ ଜଗନ୍ନାଥ ଦିଶିଲେ ନାହିଁ ବୋଲି ତୁମେ କାହିଁକି ଏତେ ଭାଙ୍ଗି ପଡୁଚ ଯେ ?"

ବୁଢ଼ା ନାତି ମୁହଁକୁ ଚାହିଁଲେ କେବଳ ! ସେ ସେତିକିରେ ମୁଣ୍ଡ ତଳକୁ କରି ଠିଆହେଲା । ସେ ସରକାରୀ ବାବୁ କହିଲେ, "ଶେଠ୍‌ଜୀ ! ଆପଣଙ୍କ ବିଷୟ ନେଇ ଦେଉଳରେ ଚହଲ ପଡିଯାଇଛି । ଏମିତି ଆଶ୍ଚର୍ଯ୍ୟ କଥା କେବେ ହେଇନଥିଲା । ମୁକ୍ତିମଣ୍ଡପ ପଣ୍ଡିତମାନେ କହୁଛନ୍ତି ଯେ ଜାଣତରେ କି ଅଜାଣତରେ କ'ଣ କିଛି ପାପ-କର୍ମ କରିଥିବାରୁ ପ୍ରଭୁ ଅଦୃଶ୍ୟ ହେଇଗଲେ ! ସେଥିପାଇଁ କାଲି ପଞ୍ଚତୀର୍ଥ କରି, ସମୁଦ୍ର ସ୍ନାନ କରି, ଆଉ ଥରେ ଦର୍ଶନକୁ ଚାଲନ୍ତୁ – ସେ ଆପଣଙ୍କୁ ହୁଏତ ପରୀକ୍ଷା କରୁଛନ୍ତି । ଭକ୍ତମାନଙ୍କୁ ପରୀକ୍ଷା କରିବା କଥା ପୁରାଣମାନଙ୍କରେ ଲେଖାଅଛି ।" ଆଉ ଜଣେ ପଣ୍ଡିତ କହିଲେ, "ଆପଣଙ୍କ ମନର ଉଚ୍ଚାଟ ଏତେ ଅଧିକ ହେଇଗଲା ଯେ, ଆପଣ ଯାହାକୁ ଦେଖିବି ଦେଖିବି ବୋଲି ଅନେକ ଦିନରୁ ବ୍ୟାକୁଳ ହଉଥିଲେ, ସେ ଆପଣଙ୍କ ଆଖି ଆଗରେ ଘୋଡେଇ ହେଇଗଲେ ।" ଖୁବ୍ ପଢୁଆ ନାତି-ନାତୁଣୀମାନେ ଭୃରୁ କୁଞ୍ଚେଇ କିଛି କିଛି ବୁଝିବା ଭଙ୍ଗୀରେ ଚାହିଁଲେ ।

"ଆପଣଙ୍କ ମନରେ ଯଦି ଜଗଦୀଶଙ୍କୁ ଦର୍ଶନ କରିବା ଛଡା ଆଉ କିଛି ମାତ୍ର ଇଚ୍ଛା ନାହିଁ, ତେବେ ଦେଖିବାମାତ୍ରେ ଆପଣଙ୍କ ଜୀବନର ଶେଷ ସୂତା ଛିଣ୍ଡିଯିବ; ତେଣୁ ଆପଣଙ୍କର ଆଉ କିଛି ଆୟୁଷ ଥିବା ହେତୁରୁ ଆପଣଙ୍କ ଆତ୍ମାପୁରୁଷ ଆଖି ଉପରେ ପରଳ ଘୋଡେଇଦେଲେ । ଆପଣ କ'ଣ ଗୋଟିଏ ଶୁଭ ସଂକଳ୍ପ କରନ୍ତୁ । କାମଟି ହେବା ପର୍ଯ୍ୟନ୍ତ ଅଭିଳାଷ ମେଣ୍ଟିବ ନାହିଁ । ତେବେ ଠାକୁରଙ୍କ ଦର୍ଶନ ଆପଣ ସମ୍ଭାଳି ଯାଇପାରିବେ ।"

ସମସ୍ତଙ୍କ ମନକୁ ପାଇଲାଭଳି ଜଣାଗଲା । ଜଣେ କହିଲା, "ହଁ, ହଁ, ଠିକ୍ କଥା ଜେଜେ ! ଏଠି ଗୋଟେ ବଢିଆ ଧର୍ମଶାଳା କର । ଏଇଟା ଦେଖୁନ କେତେ ପୁରୁଣା, କେତେ ବାଜେ, କେତେ ଅସନା ହେଇଚି ।"

କେଜାଣି କାହିଁକି, ମାଣିକରାମଙ୍କ ଆଖି ଉପରକୁ ଚିକ୍‌ଚିକ୍ ନୂଆ ଆଲୁଅ ଉତୁରି ଆସିଲା । ସମସ୍ତେ ସେ ନାତିଟୋକା ସାଙ୍ଗରେ ସହମତ ହେଇଗଲେ, "ହଁ, ଗୋଟେ ଧର୍ମଶାଳା ହଉ, ଖୁବ୍ ବଡ, ଖୁବ୍ ବଢିଆ । ଶଙ୍ଖ-ମଲ୍‌ମଲ୍, ବିଜୁଳି ଆଲୁଅ, ପଙ୍ଖା, କଳାପାଣି..."

ବୁଢ଼ା ହାତ ଟେକିବାରୁ ସମସ୍ତେ ତୁନିପଡିଲେ । ମାଣିକରାମ କହିଲେ – "ଠିକ୍ ଅଛି, ଏଠି

ଗୋଟାଏ ଧର୍ମଶାଳା ହବ !" ସରକାରୀ ବାବୁ ଖୁସିରେ ତାଳିମାରିପକେଇଲେ; କରୋଡମଲ୍ଲ ପରିବାର ତାଳି ନମାରି ଖୁସିରେ କୁରୁଳିଲେ । ବୁଢ଼ା ପୁଣି ବିରସ ହେଇ କହିଲେ, "ହେଲେ ବାବୁଜୀ ! କେମିତି ଦର୍ଶନ ପାଇବି ! ମୋର ପାପ କ'ଣ ପଞ୍ଚତୀର୍ଥ କଲେ ଧୋଇହେଇଯିବ ? ମୁଁ ଜଗଦୀଶ-ଦର୍ଶନ କରିପାରିବି ? ମୋତେ ସେ ଜନ୍ମ ଦେଇଛି; ଆଉ କିଛି ଚାହୁଁ ନାହିଁ, ସାରାଜୀବନ ସରିଗଲା...ଥରେ ସଚକ୍ଷୁରେ ତାକୁ ଦେଖିବି ବୋଲି ମୋର ମୃତ୍ୟୁଶଯ୍ୟାରେ ପଡି ଇଚ୍ଛା ହେଲା । ଏମାନେ ମମତା ଏଡି ନ ପାରି ଏତେବାଟ କଷ୍ଟରେ ଆଣିଲେ । ମୁଁ ଜାଣେ, ମୁଁ ତାଙ୍କୁ ଆଉ ହଇରାଣ କରିବିନାହିଁ । ମୁଁ ତୁମ ଜଗଦୀଶଙ୍କୁ ମଧ ଆଉ ହଇରାଣ କରିବିନାହିଁ । ଏଇ ତ ଶେଷପର୍ବ, ମୁହୂର୍ତ୍ତକର କଥା, – ଥରେ ଦେଖିଦେଲେ ତେଣିକି ଆଲୁଅ ଲିଭୁଥାଉ; ମୁଁ ସେଥିପାଇଁ ପ୍ରସ୍ତୁତ !"

ଆପଣଙ୍କର ଅଭିଳାଷ ନିଶ୍ଚୟ ପୂରଣ ହେବ ! ମୁଁ ତାହେଲେ କାଲି ସକାଳୁ ଆସି ଆପଣଙ୍କୁ ସାଙ୍ଗରେ ନେଇଯିବି; ଆସୁଛି ।

କରୋଡମଲ୍ଲ ପରିବାର ନୀରବରେ ବସିରହିଲେ ବୁଢ଼ାକୁ ଘେରି; ସଂସାରକୁ ଟାଳିଦେଲାପରି କୋଟିପତିମାନେ ଭାରି ଛୋଟ ଅସହାୟ ହେଇ ବସିଥାନ୍ତି, ନାତିଟୋକା ପୁଣି ପାଟି ଫିଟେଇଲା – ଜର୍ମାନୀରୁ ଏଇ ଅଳ୍ପଦିନହେଲା ଫେରିଛି – "ଆଚ୍ଛା ଜେଜେ, ସେ ପିତୁଳାକୁ ଦେଖିଦେଲେ ତମର କ'ଣ ଏମିତି ହୋଇଯିବ ! ମୁଁ ତ ଯାଇନାହିଁ କି କେବେହେଲେ ଯିବିନାହିଁ । ତୁମର ଏତେ ବୁଦ୍ଧି ସବୁ ପାଣିରେ ପଡିଲା !" ପରିହାସର ସ୍ୱର ! ସମସ୍ତେ ଅଳ୍ପ ଅଳ୍ପ ହସି ଶୁଣୁଥାନ୍ତି ।

ମୁଁ ବାହାରେ ଗୋଟେ ଦି'ଟା ଚିତ୍ର ଦେଖିଛି – ତୁମ ଜଗଦୀଶର ଭୟାନକ ଚେହେରା – ପେଚାଭଳି ଆଖି, ସଇତାନ ଭଳି ରଙ୍ଗ, ଆଦିମ ଅସଭ୍ୟ ମଣିଷମାନଙ୍କର ଏ ହେଲେ ଦିଅଁ ! ତମେ ତୁଚ୍ଛଟାରେ ତାକୁ ଏତେ ପ୍ରେମ କରିପକେଇଚ !

ପରିହାସ କଲେ ମଧ ଟୋକାର ସାହସ କିଛି କମ୍‌ନୁହେଁ । ମାଣିକରାମ ଆଗରେ ସଳଖି ଠିଆ ହେବାର କାହାର ସାଧ ନଥିଲା । ପାଟି ଫିଟେଇବା ତ ଦୂରର କଥା ! ବୁଢ଼ା କିନ୍ତୁ ଦବିଯାଇ ମେଞ୍ଚାଟାଏ ହେଇଯାଇଛନ୍ତି । କୌଣସି କଥାକୁ ପ୍ରତିବାଦ କଲାଭଳି ଇଚ୍ଛା ଆଉ ତାଙ୍କର ନାହିଁ ।

ବୁଢ଼ା ଶୋଇବାର ଉପକ୍ରମ କଲେ । ଡାକ୍ତର କହିଲେ, ଓଷୁଅ ଖାଆନ୍ତୁ । ପୁଅବୋହୂମାନେ କହିଲେ, ଫଳମୂଳ ପଥି ଖାଆନ୍ତୁ । ହାତ ଛିଞ୍ଚାଡି ବୁଢ଼ା ସମସ୍ତଙ୍କୁ ବିଦାୟ କରିଦେଲେ । ଚଦର ଖଣ୍ଡିଏ ଟାଣିବାରୁ ନର୍ସ ତାଙ୍କୁ ସେଥିରେ ଘୋଡେଇ ଦେଲେ । ସମସ୍ତେ ଆସ୍ତେ ଆସ୍ତେ ବାହାରକୁ ଚାଲିଆସିଲେ । ଭିତରୁ କବାଟ ଆସ୍ତେ ଆଉଜେଇ ନର୍ସ ଜଣକ ଚୁପ୍‌ଚାପ୍ କରି ଅପେକ୍ଷା କଲେ । ବାହାରେ ନାତିଟୋକା ଆହୁରି କ'ଣ କହିବାକୁ ଚାହିଁବାରୁ କେହି ତା' କଥା ଶୁଣିଲେ ନାହିଁ । ସେ ବଜାରକୁ ଯାଇ ଖଣ୍ଡେ ସିଗ୍ରେଟ୍ ଶୋଷି ଏକତ ସେକତ ଟହଲିଲା ।

ରାତିରେ ଧର୍ମଶାରେ ଗହଳି ଲାଗିଥାଏ । ସେପାଖ କିନ୍ତୁ ଲୋକ ଲଗେଇ ପହରା ଦିଆହୋଇଥାଏ । ରାତି ଆଗେଇଲା । ଆସ୍ତେ ନୀରବ ହୋଇ ଆସିଲା । ମାଣିକରାମ ଚଦର ଭିତରେ ସେମିତି ପଡିରହି କାନେଇଥାନ୍ତି ସଂସାରକୁ, ଅତୀତକୁ ! ପ୍ରସ୍ତ ପ୍ରସ୍ତ ମେଘ ଘୋଟି ଆସୁଥାଏ

ଏବଂ ଆତେଇ ହେଇଯାଉଥାଏ । ଓଃ, ଅସମ୍ଭବ ଭିଡ, ଆଲକାତରା ରଙ୍ଗର ଅସଂଖ୍ୟ ମଣିଷ ଉଠି ଆସିଛନ୍ତି କୋଇଲାଖଣି ଭିତରୁ । ସେମାନଙ୍କର ହାସ, ଚିତ୍କାର, ଗୁହାରି ଇସ୍ପାତ୍ ପରି ଧଳା । କ'ଣ କହୁଛନ୍ତି ସେମାନେ ? ଖାଇବାକୁ ଅଣ୍ଟୁନାହିଁ ? ରୋଗ ପାଇଁ ପଇସା ନାହିଁ ? ମରିଗଲେ ତା' ପିଲା ମାଇପଙ୍କୁ ତଡି ଦିଆହୋଇଛି ? ଲୁହା ତରଳୁଥିବା କୁଣ୍ଡରେ ମଣିଷଟାଏ ପଡି ଫାଉଁକିନା ଜଳିଗଲା ? ଫୁରୁକୁଟିଆ ମାଉଁସ-ପୋଡି ଗନ୍ଧ ସେ ଖଣ୍ଡମଣ୍ଡଳ ବ୍ୟାପିଗଲା । ଆଉରି ଗୋଟାଏ ପଡିଗଲା ? ଟପ୍ ଟପ୍ ଟପ୍ ମଣିଷ ଗଳିପଡିଲେ ସେ ଚାହିଁ ସହୁ ନଥିବା ନିଆଁର ସମୁଦ୍ରକୁ ? ମାଣିକରାମ ଝାଳେଇଗଲେ କପାଳରୁ । ତେଲ ମିଲ୍, ଲୁଗାକଳ, ସ୍କୁଟର, ମଟରଗାଡି, ନାନା ଜାତି ଇଞ୍ଜିନ ତିଆରି କାରଖାନା, ଶହ ଶହ ସହରରେ ଶହ ଶହ ଘୂରୁଥିବା ଚକ, ରାଇଁ ରାଇଁ ଶବ୍ଦ । ଚାଦର ତଳେ ମାଣିକରାମ ଛଟପଟ ହେଲେ । ଢୋଳଉଥିବା ନର୍ସ ଉଠିପଡି ଲାଇଟ୍ ଟିପିଲେ । ସାଙ୍ଗେ ସାଙ୍ଗେ ଯନ୍ତ୍ର ଖଞ୍ଜିବାକୁ ବସିଲେ । ରକ୍ତଚାପ, ହୃତ୍‌କମ୍ପ ଇତ୍ୟାଦି ପରୀକ୍ଷା ହବ । ବୁଢା ହାତ ଟେକି ବାରଣ କଲେ, ଆଖିବୁଜି ମାଗିଲେ, "ଟିକିଏ ପାଣି ଦିଅ ।"

ନର୍ସ ପାଣି ଆଣି ବଢାଇଲେ । ବୁଢା ଖୋଜିଲେ କ'ଣ କେଜାଣି, ତକିଆ ପାଖରୁ ଛଡା ତୁଳସୀମାଳଟିକୁ ଆଣି ମୁଣ୍ଡରେ ଲଗେଇ ଧରିଲେ କେତେବେଳ । ପତରଟିଏ ଛିଣ୍ଡେଇ ପାଟିରେ ପକାଇଲେ । ପାଣିମନ୍ଦାଏ ପିଇ ପୁଣି ଲୋଟିପଡିଲେ ତକିଆ ଉପରକୁ ।

ମନର ମଞ୍ଚ ଉପରେ କୋଡି କୋଡି ବର୍ଷର ନାନାପ୍ରକାର ନାଟକ ପୁଣିଥରେ ଅଭିନୀତ ହେଇଗଲା ! ମାଣିକରାମ ସବୁ ପୁଣି ଥରେ ଦେଖିଲେ ଏବଂ ବସ୍ତିଲେ । ଅନ୍ଧାର ଜ୍ୱାଳା ଭିତରେ ପୁଣି ଥରେ ତାଙ୍କ ଆତ୍ମା ପାରିହେଇ ଆସିଲା ।

ଭାରି ସନ୍ଦିଗ୍ଧ, ଅଥଚ ଚୂଡାନ୍ତ ନିଷ୍ପତ୍ତିର ସକାଳ ।

ମାଣିକରାମଙ୍କ ପୁଅବୋହୂ ଗୋଟି ଗୋଟି ହେଇ ଉଠିଲେ । ସେମାନଙ୍କ ପାଇଁ ଏ ପ୍ରବାସ-କଷ୍ଟ, ଏ ଧର୍ମଶାଳାର ପଥର ଚଟାଣ ପରି ଦୁଃସହ ଏବଂ ଅପରିଚିତ । କିଏ କେମିତି ତାଙ୍କୁ ଘୋଡେଇବାକୁ ଚେଷ୍ଟାକରୁଥାଏ । କୌଣସି ପ୍ରକାରେ ଏ ପର୍ବର ସମାପ୍ତ ସେମାନେ ଚାହୁଁଥାନ୍ତି । ବଡ ନାତି ତିନିଟା ଅସମ୍ଭାଳ ଅଧୀର ହୋଇ ଉଠିଥାନ୍ତି ।

ବିଳାସିନୀ ବୋହୂମାନେ ଦୁଇ ତିନିଥର ସମୁଦ୍ରକୂଳରୁ ବୁଲିଆସିଲା ପରେ ଏତିକି ଟିକିଏ ସହ ଭିତରେ ଆଉ ଦଣ୍ଡେ ରହିବାକୁ ଚାହୁଁ ନଥାନ୍ତି ।

ଖାଲି ମାଣିକରାମ ତାଙ୍କ ଆଗରେ ଏକା ଗୋଟାଏ ପାହାଡ । ତାଙ୍କୁ ଏଡିଦେବାକୁ କାହାର ସାହସ ନାହିଁ ।

ତେଣେ ସାରା ବେପାର-ବଣିଜରେ ଲକ୍ଷ ଲକ୍ଷ ଟଙ୍କା କ୍ଷତି ଚାଲିଥାଏ ।

ସାନପୁଅ ମୁହଁ ଫିଟେଇ କହିସାରିଥାଏ ଯେ ବଡଭାଇ ଏକାକୀ ରହି ବୁଢାଙ୍କ କଥା ସମ୍ଭାଳନ୍ତୁ । ତାକୁ କାନପୁର ଫେରିଯିବାକୁ ପଡିବ । ଆଉ ଭାଇ କହିଲାଣି ଯେ, ତା'ର ବିଦେଶ ଯାଇ କାରଖାନା ପାଇଁ କଳ-ସରଞ୍ଜାମ ଆଣିବା କଥା; ନହେଲେ ହାଇଦ୍ରାବାଦରେ ଦିନକୁ ଦେଢଲକ୍ଷ

ଟଙ୍କା କ୍ଷତି ଗଲିଛି ।

ନାତି ସକାଳ ପାହିଲେ ଗୋଡ ଟେକି ବସିଛି ଗଲିଯିବ ଉଟକାମଣ୍ଡ । ଏମିତି ଏମିତି ସବୁ । ଅତି ଉତ୍କଣ୍ଠିତ, ଉଦ୍‌ବିଗ୍ନ, ଭାରି ଭାରି ହେଇ ମାଡିପଡୁଥିବା ସକାଳଟିଏ ।

ବଡପୁଅ ଖାନ୍‌ସାମା ହାତରୁ ଚା କପ୍‌ଟିଏ ଧରି ବୁଢାଙ୍କ ବଖରା ଦୁଆରେ ଆସି ପହଞ୍ଚିଲେ ।

ଦୁଆର ମେଲା ।

ବୁଢା ଧୋତି ଖଣ୍ଡିଏ ପିନ୍ଧି ମେଲା ଦେହରେ ବସିଛନ୍ତି । ଟାଙ୍ଗରା ମୁଣ୍ଡ, ଲୋତରା ହାଡୁଆ ଚମ ଧୁଡୁଧୁଡୁ ଦେହ । ଖୁବ୍ ଅପରିଚିତ ଦେଖାଯାଉଛନ୍ତି ମାଣିକରାମ । ଏମିତି କେହି କେବେ ତାଙ୍କୁ ଦେଖିନଥିଲେ ।

ସେ କିଛି କହିବା ଆଗରୁ ମାଣିକରାମ ତାଙ୍କୁ ପାଖରେ ଆସି ବସିବାକୁ ଠାରିଲେ । ସିଧା ପୁଅର ଆଖି ଭିତରକୁ ଚାହିଁ ଆଗଭଳି ମୁରବି ଢଙ୍ଗରେ କହିଲେ, "ସମସ୍ତଙ୍କୁ କହିଦିଅ ଘଣ୍ଟାଏ ଭିତରେ ଫେରିଯିବାକୁ ପ୍ରସ୍ତୁତ ହେଇଯିବେ ।"

ଗତ ପଚାଶ ବର୍ଷଧରି ବିନା ଦ୍ୱିଧାରେ ମାନିଆସିଥିବା ଆଦେଶର ସ୍ୱର । ଦ୍ୱିଧା ନାହିଁ, ଇତସ୍ତତଃ ନାହିଁ ।

ସେ ପୁରୁଣା ଅଭ୍ୟାସରେ 'ଜି...ହାଁ' କହି ଉଠିଲେ; ତଟସ୍ଥ ହୋଇ ବୁଢାଙ୍କୁ ଚାହିଁଲେ । ଦେଖିଲେ, ନର୍ସ ତାଙ୍କର ବନ୍ଧାବନ୍ଧି କଲେଣି । ଆଗରୁ ବୋଧହୁଏ ବୁଢା ତାଙଅକୁ ଆଦେଶ ଦେଇଥିଲେ ।

ଘଣ୍ଟାଏ ଭିତରେ ମାଣିକରାମ ପରିବାରରେ ଗୋଟାଏ 'ହୁ' ଉଠିଲା । ଯେ ଯେମିତି ପାରିଲା ଧାଁ-ଦଉଡ କରି ସବୁ ଠିକ୍ କରିଦେଲେ । ଗାଡି, ତେଲ, ଡ୍ରାଇଭର – ସବୁ ।

ଧାଡି ଧାଡି ହେଇ ପାଉଣା ପାଇବାକୁ ଲୋକ କାହୁଁ ଶୁଣି ଜମାହେଇଗଲେ ।

ବଡନାତି ଆଉଜଣକ କହିବାର ଶୁଣାଗଲା, "ମୁଁ ଜାଣେ, ଜେଜେ ବୁଝିଯିବେ । ଏ ଗୋଟାଏ ଫାଲ୍‌ତୁ ଧନ୍ଦା । ଏଠୁ ଚାଲିଯିବା ବୁଦ୍ଧିମାନ୍‌ର କାମ ।"...

ପିନ୍ଧାପିନ୍ଧି କରି ତିନି ପୁଅ ଆସି ବୁଢା ପିଣ୍ଡାରେ ବୁଲି ଚାଲିଗଲେଣି । ବୁଢା ସେମିତି ବସିଛନ୍ତି । କାହାର ସାହସ ନାହିଁ ତାଙ୍କୁ ପ୍ରସ୍ତୁତ ହବାକୁ କହିବା ପାଇଁ ।

କେହି କେବେ ସେ କ'ଣ କରିବେ ବା ନ କରିବେ ସେ ବିଷୟରେ ତାଙ୍କୁ କହି ନାହିଁ ।

ବଡପୁଅ ଶେଷକୁ କହିଲେ, "ପିତାଜୀ ! ସମସ୍ତେ ପ୍ରସ୍ତୁତ ହେଇଗଲେଣି ।" ଏତିକିବେଳେ ବୋହୂ ଓ ନାତିନାତୁଣୀମାନେ ମଧ୍ୟ ଆସିଗଲେ ।

"ଆସ, ଏଠି ବସ !"

ପୁଅମାନେ ଆଗରେ ବସିଗଲେ, ବୋହୂମାନେ ଅଳ୍ପ ଦୂରକୁ; ନାତିନାତୁଣୀ କେହି ପାଟି ଫିଟାଇ ପାରୁନାହାନ୍ତି ।

ବୁଢା ଅସମ୍ଭବ ଗମ୍ଭୀର । ତାଙ୍କ ମେଲା ଦେହ ଦେଖି ସମସ୍ତେ ଆଖି ଖୋସିଦେଇଥାନ୍ତି;

କିନ୍ତୁ କିଛି କହିବାକୁ ସାହସ ନାହିଁ ।

"ସବୁ ସାମାନ୍ ତୁମେ ଗାଡିରେ ଡ୍ରାଇଭର ହାତରେ ପଠାଇଦିଅ । ଭୁବନେଶ୍ୱରରୁ ପ୍ଲେନ୍‌ରେ ସମସ୍ତେ ଚାଲିଯାଅ !"

ସମସ୍ତଙ୍କ ଆଖି କୁଞ୍ଚେଇଗଲା । ସମସ୍ତେ ଚାଲିଯାଅ ?...ଆଉ ମାଣିକରାମ ?

କିଛି ସମୟ ପରେ –

"ବଡ କୋଠିର ସାତ ନମ୍ବର ଟ୍ରେଜେରୀରେ ଉଇଲ୍‌ନାମା ଦସ୍ତଖତ ହେଇ ଥୁଆହେଇଛି । ଜଗଦୀଶ ତୁମକୁ ଆନନ୍ଦରେ ରଖନ୍ତୁ ! – ଯାଅ !"

ଶେଷ ପଦକ ଚଡକ ପରି ନିଷ୍ପତ୍ତିର ଆଦେଶ ।

ଯାହା ବୁଝି ହେଉ ନ ଥିଲା, ତାହା ସ୍ପଷ୍ଟ ହୋଇଗଲା ।

ସମସ୍ତେ ଥମ୍ ହୋଇ ଚାହିଁଲେ ।

ସମସ୍ତଙ୍କର ପ୍ରଶ୍ନ ବଡପୁଅ ତୁଣ୍ଡରେ ଶୁଭିଲା, "ଆଉ ଆପଣ... ?"

ନାତି ଚଟ୍‌କିନା ଉତ୍ତର ଦେଲା – "ଜେଜେଙ୍କର ସବୁ ସାମାନ୍ ତ ଗାଡିରେ ଚଢିଗଲାଣି ?"

ସତକୁ ସତ ସମସ୍ତେ ଦେଖିଲେ ଯେ ବୁଢା ଧର୍ମଶାଳାର ଗଦି ଉପରେ ହିଁ ବସିଛନ୍ତି । ବଖରାରେ ଧର୍ମଶାଳାର ଲୁହା ବାଲ୍‌ଟି, ପିତଳ ଡାଳ, – ଆଉ କିଛି ନାହିଁ ।

"ଆପଣ ତାହେଲେ ଗାଡିରେ ଆସିବେ ?"

"ନା ।"

ଲୁହାପରି ଭାରି ନୀରବ ମୁହୂର୍ତ୍ତଗୁଡିଏ ପାରିହୋଇଗଲା ।

"ମୋର ଯାତ୍ରା ସରିଯାଇଛି । ...ମୁଁ ଆଉ କୁଆଡେ ଯିବି ?"

ଘରକୁ ଫେରିଯିବାର ସମସ୍ତ ଯୋଜନା କୁଢେଇ ହେଇପଡିଲା ପରି ଲାଗିଲା । ସମସ୍ତେ ଚାହିଁଲେ ତଳକୁ, ପରସ୍ପରକୁ ।

ବଡପୁଅ କହିଲେ, "ଠିକ୍ ଅଛି ପିତାଜୀ ! ତାହେଲେ ମୁଁ ରହିଯାଉଛି, ଆପଣଙ୍କର ସାମାନ୍ ନେଇଆସିବା ?"

"ମୋର ସାମାନ୍ ?" ମାଣିକରାମ ଅଳ୍ପ ହସିଲେ ବୋଧହୁଏ – "ମୋର ତ ଏ ପୁରୁଣା ଦେହଟାକୁ ଛାଡିଦେଲେ ଆଉ କିଛି ସାମାନ୍ ନାହିଁ ! ଏଇଟା ବି ବେଶୀ ଦିନ ନୁହେଁ । ଯାହାଠୁ ନେଇଛି, ତାକୁ ଶୁଝିଦେବି । ଖାଲି ତା'ର ଟିକେ ଦେଖା ପାଇଲେ ହେଲା !" –

ଭାରି ଅଡୁଆ ଲାଗୁଥାଏ ସମସ୍ତଙ୍କୁ ।

ଆଉ ଜଣେ କିଏ କହିଲା – "ଏଠି ରହିଲେ ଚଳିବ କେମିତି ? ଘର, ପଇସା, ନୌକର... !"

ମାଣିକରାମ ତାକୁ ଚାହିଁ ଅଳ୍ପ ହସିଲେ –

"ଏଠି ରାସ୍ତା ଖୁବ୍ ଚଉଡା..."

ମାଣିକରାମ ଏସବୁ କ'ଣ କହୁଛନ୍ତି ? ପ୍ରଥମେ ତାଙ୍କ କଥା ବୁଝିବ କିଏ ? ସେ ଖାଇବେ

କ'ଣ ?

ଏତିକିବେଳେ କେହି ଜଣେ ଖାଲି ପାଦରେ ଛମ୍‌ଛମ୍ ହେଇ ପାଖେଇ ଆସିଲା । ସମସ୍ତେ ବୁଲି ଚହିଁଲେ । ଦୁଆର ପାଖରେ ମେଲା ଦେହରେ ମୋଟାସୋଟା କାଳିଆ ପିଲାଟିଏ । ହଳଦିଆ ରଙ୍ଗର ଗାମୁଛା ଖଣ୍ଡେ କାଛି କରି ପିନ୍ଧିଛି । ତା'ର ମୁଣ୍ଡରେ ତାଳପତ୍ରର ବଡ ଭୋଗେଇଟିଏ ।

"ଏଠି ମାଣିକରାମ କିଏ ଅଛନ୍ତି ?"

ମୁହୂର୍ତ୍ତେ ଭିତରେ ସେଇଠି-କେତେ ପ୍ରକାର ଭାବନା ତେଜିଗଲା । କେହି ଗୋଟାଏ ଭିକମଗା ଟୋକା । – ହାରାମି, ପିତାଜୀଙ୍କ ନାଁ ଧରି ଡାକୁଚି; ମାଲିକ୍ ବୋଲି କହୁନାହିଁ! ଧକ୍କା ଦେଇ ତାକୁ ବିଦା କରିଦେଲେ ଯିବ । ବାହାରେ ଦରବାନ୍ ଡ୍ରାଇଭର କ'ଣ ସବୁ କରୁଛନ୍ତି ?...

ପିଲାଟିର ହସରେ କଉଡି ବୁଣି ହେଇ ଯାଉଥାଏ । ଆଖି ଯୋଡିକ ଢଳଢଳ । ମାଣିକରାମ ହିଁ ଉତ୍ତର ଦେଲେ, "ହଁ ଭାଇ, ମୋ'ରି ନାଁ ମାଣିକରାମ୍ ।"

"ଏଇ ପରସାଦ୍ ରଖନ୍ତୁ । ସକାଳର ନାସ୍ତା କରିବେ ।"

ଚଟ୍‌କିନା ତଳେ ଥୋଇଦେଇ ସେ ଚାଲିଗଲା କେହି କିଛି କହିବା ପୂର୍ବରୁ ।

ବଖରା ଭିତରେ ଆମୋଦ ବାସ୍ନାଟାଏ ।

ନାତିଟାଏ ପୁଡାଟାକୁ ଆଣି ବୁଢା ପାଖରେ ଥୋଇଦେଲା । କିଏ ଜଣେ ଫିଟାଇଦେଲା – ଖୁଆ ମଣ୍ଡା, ଗଜା, ଖଜା, ନାଡ଼ି, କୋରାରେ ଚାଙ୍ଗୁଡି ଭର୍ତ୍ତି । କଳା ତୁଳସୀର ମେଞ୍ଚାଏ ଜଟା । ଦି'ଚାରିଟା ଦୟଣା ମହକୁଥାଏ । ଦେଉଳ ଭଳି ବାସ୍ନାରେ ଘର ଭରିଗଲା ।

ସମସ୍ତେ କିଛି କିଛି ପ୍ରସାଦ ପାଇଲା ପରେ ବଡପୁଅ କହିଲା, "ଆରେ, ସେ ପିଲାକୁ – ପଇସା ଦେଇଦିଅ ।" ଚାରି ପାଞ୍ଚଟା ଶହେଟଙ୍କିଆ ନୋଟ ଏକାଥରେ ବାହାରିଲା – ଦୁଆରମୁହଁରୁ ସାନ ନାତି କହିଲା, "ଏଠି ତ କେହି ନାହିଁ, କିଏ ନବ ? ସେ ନୌକର୍ ଚାଲିଗଲାଣି... ।"

ଠାଇକିନା କଥାଟା ସମସ୍ତଙ୍କୁ ଆଘାତ କଲା ।

ସମସ୍ତେ ଅସୁସ୍ଥବୋଧ କଲେ ।

ବଡନାତି କହିଲା, "ଠିକ୍ ଅଛି, ଯିଏ ତାକୁ ପଠେଇଥିଲା ସେ ପଇସା ନେବାକୁ ନିଜେ ଆସିଯିବ । ସେଥିପାଇଁ ଚିନ୍ତା କରିବା ଦରକାର ନାହିଁ ।"

"କୌଣସି କଥା ପାଇଁ କାହାକୁ ଚିନ୍ତା କରିବା ଦରକାରା ନାହିଁ ।" – ମାଣିକରାମଙ୍କର ନିଷ୍ପତ୍ତିର ସ୍ୱର ।

ସମସ୍ତେ ଚୁପ୍ ।

ଧର୍ମଶାଳାର ଅଗଣାରେ କିଏ ଜଣେ ଡାକିଲା, "ପଇଡ ନେବେ, ପଇଡ!"

ନାତିଟୋକା ଚଞ୍ଚଳ ହେଇ ବୁଲିପଡିଲା । କହିଲା, "ଆଣ୍!"

ଖାକି ଜାମାପିନ୍ଧା କଟରାନିଶିଆ ଗୋଟିଏ ବିହାରୀ, ପାନକଷ ଦାନ୍ତ କାଢି ଅତି ଯତ୍ନରେ ପଇଡ ମୁଣ୍ଡି କାଟି ଗୋଟିଏ ଗୋଟିଏ ନଳି ଯୋଖି ବଢେଇଦେଲା – ଜଣ ପିଛା ପଇଡ ।

ସମୁଦ୍ରକୂଳିଆ ପଇଡ ଅପେକ୍ଷା ଏ ଢେର୍ ମିଠା, ଢେର୍ ଥଣ୍ଡା ।

ସମସ୍ତଙ୍କ ଅଜାଣତରେ ମାଣିକରାମ ପରିବାରର ସମସ୍ତେ ଚକିତ ହେଉଥାନ୍ତି । ବିହାରୀଟି ସେମିତି ହସି ହସି ପଇସା ନେବାକୁ ମନାକରିଦେଲା । – "ଆରେ, ପଇସା ନେଇ ମୁଁ କ'ଣ କରିବି । ଦାତା ଦେଲା ପଇଡ; ମୁଁ ବାଣ୍ଟିଲି । ଶହେ ଆଠ ପଇଡ; ଯେ ଛୁଇଁବ ତାକୁ ପିଆଇଦେବି...ବାଆସ୍ । ଏ ପେଟଋଖଣ୍ଡକ ପାଇଁ ଚିନ୍ତା ନାହିଁ । ଆପଣମାନେ ସୁଖୀ ହୁଅନ୍ତୁ ।" ସେ ହସି ଦେଇ ଚାଲିଗଲା । ନୋଟଗୁଡ଼ିକ ପୁଣି ଚମଡା ମୁଣିମାନଙ୍କରେ ଲୁଚିଗଲେ । ମାଣିକରାମ ପରିବାର କିଛିକ୍ଷଣ୍ ନଇଁଗଲେ ବିସ୍ମୟରେ ।...

...ପଇସା ସତେ କ'ଣ ହବ ?

ମାଣିକରାମ ପଇଡ ପିଉଥାନ୍ତି । ତାଙ୍କ ମେଲା ଦେହରେ କୁଲା କୁଲା ଶୀତ । ରୁମ ଠିଆ ଠିଆ । ଆଖିରେ ଡବଡବ ପାଣି !

ଅନ୍ୟମାନେ ସବୁ ବୁଝି ନବୁଝିଲା ପରି ବସିଥାନ୍ତି ।

ଗାଧୋଇପାଧୋଇ ପାଟଯୋଡଟିଏ ପିନ୍ଧି ଚନ୍ଦନ ବାସ ଚହଟେ ପଣ୍ଡାଟିଏ ପଶି ଆସିଲେ । ଅତି ଆପଣାର କଥା...ଅତି ଆପଣାର ହସ । ବଖରା ଭିତରେ ପଶି ବୁଢ଼ାଙ୍କ ଆଖି ପୋଛିଲା ପରି କର୍ପୂର ମଖେଇଦେଲେ । ପାନବିଡିଆଟିଏ ଧରେଇଦେଲେ । ଅନ୍ୟ ସମସ୍ତଙ୍କ ଆଖିରେ କର୍ପୂର ବାଜି କାକର ଲାଗିଲା । ଗମ୍‌ଗମ୍ ବାସିଲା ।

ସେ କହିଲେ, "ଆପଣ ସମସ୍ତେ ଆସନ୍ତୁ । ଆପଣଙ୍କୁ ଡକେଇଛନ୍ତି !"

"କିଏ ?"

"ଆମ ମାଲିକ୍ ଡକେଇଛନ୍ତି !"

ମାଣିକରାମ ଧଡପଡ ହୋଇ ଉଠିଲେ । ତାଙ୍କ ନଡଥଡ ଗୋଡ ଅସମ୍ଭାଳ । ତାଙ୍କ ଡେଣା ଧରିନେଲେ ପଣ୍ଡା ଆରପାଖେ ବଡପୁଅ !

"ଆଚ୍ଛା, ଆପଣଙ୍କୁ ମୁଁ କେତେ ପଇସା ଦେଇପାରେ..."

ଭାରି ବିନୟରେ ପଋରିଲା ଆରପୁଅ ! ପଣ୍ଡା ଅଳ୍ପ ହସି କହିଲେ, "ଆରେ ଭାଇ, ଆପଣ କ'ଣ ଦେବେ ଏଇଠି ? ଦେଲାବାଲା ମାତ୍ର ଜଣେ । ବାକି ଯେ ଯେତେ ପାରିଲା ନେବାଲୋକ ।" ଖୁବ୍ ଅମାୟିକ ହସ । ସେ ବୁଢ଼ାଙ୍କୁ କଢେଇନେଲେ ।

କୁଆଡେ ? ଦେଉଳକୁ ? ସେଠି ପରା ଦିଅଁ ଦିଶୁନାହାନ୍ତି ?...

କେଜାଣି !!

ମାଣିକରାମଙ୍କୁ ଜୁଆରିଆ ଟୋଳି ହେଲାପରି ଲାଗୁଥାଏ, ସେମିତି ଏକବସ୍ତ୍ରୀ ମେଲା ଦେହରେ, ଖାଲି ପାଦରେ ସେ ବଡଦାଣ୍ଡକୁ ଓହ୍ଲେଇଗଲେ । ଟିକିଏ ପଛରେ ତାଙ୍କର ସମଗ୍ର ପରିବାର; ବୁଢ଼ା ଥରଟିଏ ସୁଦ୍ଧା ପଛକୁ ଫେରି ଋହୁଁ ନଥାନ୍ତି !

ସକାଳ ପହରର ସାମାନ୍ୟ ସିଂହଦୁଆରିଆ ଭିଡ ଅରୁଣଖମ୍ବ ଆଗକୁ; ମାଣିକରାମ

ଠିଆହେଇ ଦେଉଳ ଭିତରକୁ ଅନେଇଲେ !

ଠକ୍ ଠକ୍ ଥରିଲେ, ପତିତପାବନଙ୍କୁ ଦେଖିଦେଇ ତାଙ୍କ ଅନ୍ତର ତରଳିଗଲା... ମିଳେଇଗଲା ସବୁ ଅଭିମାନ ।

ସେ ହାତ ଛଡେଇ ନେଇ କରପତ୍ର ଯୋଡି ଠିଆହେଲେ । ମୁହଁଟି କୁଞ୍ଚ କୁଞ୍ଚ ହେଇ ଚିପୁଡି ହେଇଗଲା ଲୁହରେ ।

କୋଟିପତି ମାଣିକରାମ । ଭିକାରିଟିଏ ପରି ଲୋଟିପଡିଲେ ସେଇ ପଥର ଉପରେ । ମାଣିକରାମ ସ୍ତବ୍ଧ । କାହାରି ତୁଣ୍ଡରୁ କଥା ବାହାରୁ ନଥାଏ ।

ବୁଢା ଉଠିଲେ । ପୁଣି ପଡିଲେ । ପୁଣି ଗଡିଲେ । ଉନ୍ମତ୍ତ ପରି ପାଟିକଲେ । ତାଙ୍କୁ ସମ୍ଭାଳିନେଇ ଦେଉଳ ଭିତରକୁ ଧରିନେଲେ । ବାଇଶି ପାହାଚରେ ସେ ସାଷ୍ଟମ ହେଇ ଆସ୍ତେ ଚାଲିଲେ । ଅଳ୍ପକେ ବୋହିଯାଇ ତଳେ ଲଟେଇଯିବାକୁ ସେ ଲୋଡେଇ ଯାଉଥାନ୍ତି ।

ବେଢାବୁଲା ସରିଲା । ବୁଢାଙ୍କ ପଛରେ ଦେଖଣାହାରି ଅନେକ ସାତପାହାଚ ଉଠି ଜଗମୋହନରେ ପହଞ୍ଚିଲା ବେଳକୁ ସେ କାହା ବୋଲ ନ ମାନି ନିଜେ ଧସିହୋଇଗଲେ ।

ଗରୁଡ ପଛରେ ଠିଆହୋଇ ପୁଞ୍ଜାଏ ଟୋକା ଟୋକା ସେବକ ସର ଟୋଳି ବୋଲୁଥାନ୍ତି – "ବଡ ଦୟାଳୁ ଠାକୁର... ।"

ମାଣିକରାମ ସେଇଠୁ ଚାହିଁଦେଲେ ଗମ୍ଭୀରା ଭିତରକୁ । ତାଙ୍କର ଶୂନ୍ୟ ସମୁଦ୍ରରେ ଜହ୍ନ ଉଇଁଲା ପରି ପ୍ରଭୁ ହୋଇଗଲେ । ଆକାଶ ଭରିଗଲା ଚନ୍ଦନରେ । ତାଙ୍କ ଛଳଛଳ ଆଖିରେ ଉଜାଣି ସମୁଦ୍ର । ମନପ୍ରାଣରେ ମହମହ ଆକାଶ ।

ମାଣିକରାମ ସାରାଦେହ ଝାଳରେ ସରବୁଡ୍ । ବୁକୁସାରା ଲୁହରେ ଜୁଡୁବୁଡୁ ।

ସବୁ ତୀର୍ଥରେ ସ୍ନାନକରି ପଥଶ୍ରମୀ ସୁଦୂର ଯାତ୍ରୀଟିଏ ପରି ସେ କୃତାର୍ଥ ହୋଇ ଠିଆହୋଇଥାନ୍ତି ।

ଭାବବିଭୋର ଆଖିଯୋଡିକ ତାଙ୍କର ବୁଜି ହୋଇଗଲା । ସେ ସେଇଠି ଲୋଟିପଡିଲେ ।

ଅଳ୍ପ ବିଷ୍ଣାବିଷ୍ଣୁରେ ଉଠି ବସିଲେ । ଶୁଖିଲା ଓଠପରି ତାଙ୍କ ଆଖିରେ ଅସୁମାରି ଶୋଷ । ସେ ପଥର ଖୁଣ୍ଟିକୁ ଆଉଜି ଅନେଇଥାନ୍ତି । ପ୍ରାଣ ଲହଡି ଟୋଳୁଥାଏ । ପଞ୍ଜୁରି ଥରୁଥାଏ ।

ସିଂହାସନରୁ ଜଗମୋହନଯାଏ ଗୋଟାଏ ଥନଥନ ସମୁଦ୍ର ଟୋଳିହୋଇ ରହିଥାଏ । ଜୁଆର ଟୋଳୁଥାଏ । ପଥର ପାଣିହୋଇ ବୋହିଯିବ କି !

ମାଣିକରାମ ପରିବାରର ପୁଅବୋହୂ, ନାତିନାତୁଣୀ ସେ ସମୁଦ୍ର-ସ୍ନାନରେ ଉଲ୍ଲସିତ ହୋଇ ମାତିଉଠିଲେ ।

ଦେଉଳସାରା ଚହଳ ପଡିଗଲା । ଦାନଶୀଳ କୁବେର ଭଣ୍ଡାର ଫିଟିଗଲା ! ଦୁଃଖୀରଙ୍କିଙ୍କ ଆଞ୍ଜୁଳା ଭରିଗଲା । ପେଟ ପୂରିଗଲା ।

ଭିତର ଅଗଣାଠାରୁ ଆନନ୍ଦବଜାର ପର୍ଯ୍ୟନ୍ତ ହରିହାଟ ।

ମାଣିକରାମଙ୍କ ବଡପୁଅ ସବୁ ସମ୍ଭାଳୁଥାନ୍ତି । ଟାଙ୍କ ଆଖିରେ ଅଜସ୍ର ଲୁହ ! ଚୋକା ଅଫିସର ଜଣକ ସ୍ୱୟଂ ବିସ୍ମିତ । କାଲିଠାରୁ ଆଜି ଭିତରେ ସୃଷ୍ଟି ସତେବା ଓଲଟପାଲଟ ହୋଇଯାଇଛି !

ମାଣିକରାମଙ୍କର ସନ୍ତୁଷ୍ଟ ଆତ୍ମା ଉପରୁ ସବୁ କୁହୁଡି ଅପସରି ଯାଇଛି । ସେଇଠୁ ତାଙ୍କୁ ଉଠେଇ ଆଣିଲାବେଳକୁ ତାଙ୍କର କୌଣସି ପ୍ରତିବାଦ ନାହିଁ । କୌଣସି ଇତସ୍ତତଃ ନାହିଁ ।

କିଏ ଜଣେ ଆସି ତାଙ୍କ ଆଗରେ ଠିଆହୋଇ ଗୋଟିଏ ଦଧିବାମନ ମୂର୍ତ୍ତି ଟେକିଧରିଲା । ଦେଖିଲାପରି ମୂର୍ତ୍ତି । ଟଙ୍କାତୋଳାର ଦିବ୍ୟ ଠାଣି ।

ବାହୁ ପ୍ରସାରି ମାଣିକରାମ ସେ ମୂର୍ତ୍ତିଟିକୁ ନବଜାତ ଶିଶୁପରି କୋଳେଇନେଲେ । ଆଖି ବୁଜି କହିଲେ, "ହଉ, ଜଗଦୀଶ ! ତୋର ଇଚ୍ଛା ? ମୋର ଭାଗ୍ୟ..."

ବଡଦାଣ୍ଡ ସାରା ଭରିଗଲା ଜୟ ଜୟକାର । ବୁରିପଡିଗଲା ଯେ ଆଠଲକ୍ଷ ଟଙ୍କାରେ ନୂଆ ଧର୍ମଶାଳା ତୋଳାହେବ !

ଗାଡି ସଜାହେଲା । ଶଙ୍ଖ ବାଜିଲା । ଫୁଲ-ଚନ୍ଦନରେ ମୂର୍ତ୍ତି ପୂଜା ହେଲେ ! ମାଣିକରାମ ବସିରହିଲେ କୃତାର୍ଥ, ଆପ୍ୟାୟିତ, ପରିପୂର୍ଣ୍ଣ ପଦ୍ମପୋଖରୀ ପରି ! ସନ୍ତୁଷ୍ଟ ପଣ୍ଡା ପଡିଆରୀ, ସନ୍ତୁଷ୍ଟ ଦୁଃଖୀରଙ୍କି, ସନ୍ତୁଷ୍ଟ ବଡଦାଣ୍ଡ ଚାହିଁରହିଲେ ଘୁଞ୍ଚିଯାଉଥିବା ମାଣିକରାମ ଓ ତାଙ୍କ ପରିବାରକୁ ।



# ଛାୟା-ପୁରୁଷ

ରାସ୍ତାର ଉପରମୁଣ୍ଡରୁ ଜହ୍ନ-ଆଲୁଅରେ ନିଃଶବ୍ଦରେ ଖାଲି ରିକ୍ସାଟିଏ ଗଡିଚାଲିଗଲା । ରାସ୍ତା ଦୁଇପାଖେ ଲମ୍ବା ଲମ୍ବା ଘୁମନ୍ତ ଝାଉଁଗଛ । ଟଳମଳ ବିଶାଳ ପାଣିଖଣ୍ଡ ପରି ନିସ୍ତବ୍ଧ ଜହ୍ନରାତି । ଆକାଶର ମଙ୍ଗଯାଏଁ ଶୀତଳ ନୀରବତା ।

ରାତି ସେତେବେଳକୁ କେତେ ହେବ କହିପାରିବି ନାହିଁ ।

ମୁଁ ଜାଣିଥାଏ ଯେ ସେ ଆଖପାଖ ତିନି କିଲୋମିଟର ଭିତରେ ଆଉ କେହି ଜନମାନବ ନ ଥାନ୍ତି । ମୋତେ ମତେଇ ହେଇପଡିଲା ପରି ଲାଗୁଥାଏ । ରାତି-ଚଢେଇଟାଏ ରାବିଦେଲେ ମୋ ନାହିତଳ ଲେଉଟି ପଡୁଥାଏ; ତେନ୍ତୁଳିଆ ବିଛା ଚଢିଯାଉଥାଏ ମଝିଶିରା ହାଡ ଉପରେ । ତଥାପି ବୟସ-ଖାତିରରେ ମୁଁ ନ ଡରି ସମ୍ଭାଳିଯାଉଥାଏ । ସେ କିନ୍ତୁ ବେଶୀ ବେଳ ନୁହେଁ; ପୁଣି ସେ ନିସ୍ତବ୍ଧ ଜହ୍ନ-ଆଲୁଅରେ ମଞ୍ଜ ଥରିଉଠୁଥାଏ । ମୋତେ ଲାଗୁଥାଏ ଯେ ସେ ରାତି ହୁଏତ ଆଉ ପାହିବ ନାହିଁ...ବେଳକୁ ବେଳ ଗଭୀରରୁ ଗଭୀର ହେଇ ଚାଲିଥିବ ।

ମୋ ମନକୁ ହୁଏତ ମୁଁ ସେଠିକି ଯାଇ ନ ଥାନ୍ତି; ମଧୁପୁରର ସେ ଡାକବଙ୍ଗଳାକୁ ମୋତେ ସିଦ୍ଧନାଥ ହିଁ ଅନୁରୋଧ କରିଥିଲା । ସିଦ୍ଧନାଥକୁ ଏଡେଇଯିବା ମୋ ପାଇଁ ସମ୍ଭବ ନୁହେଁ । ସେ ମୋ ପାଇଁ ଏକ ବିଚିତ୍ର ଆକର୍ଷଣ । ତା' ସହିତ ମୋର ଘନିଷ୍ଠତା ନ ଥିଲା ସତ, କିନ୍ତୁ ମୁଁ ତାକୁ ଜାଣିଥିଲି – ଜାଣିବାକୁ ଚାହୁଁଥିଲି । କାରଣ ମୋତେ ଖୁବ୍ ବିଚିତ୍ର ଏବଂ ରହସ୍ୟମୟ ଜଣାଯାଉଥିଲା ସିଦ୍ଧନାଥର ଚାଲିଚଳନ ।

ଗୋଟାଏ ସାଧାରଣଭାବରେ ଏମିତି ତା' ସହିତ ମୋର ସାକ୍ଷାତ ହୋଇଥିଲା । ସେତେବେଳକୁ ଅଳ୍ପ ରାତି ହୋଇଯାଇଥିଲା । ମୁଁ ନିଛାଟିଆ ଗଛ ମୂଳରୁ ସ୍କୁଟର କାଢିଲାବେଳେ ସେ ସେଇଠି ହଠାତ୍ ପହଞ୍ଚି ନମସ୍କାର କଲା ଏବଂ ସେ ମୋତେ ତାଜୁବ କରି ମୋ ବିଷୟରେ ଘଣ୍ଟେ କାଳ ପ୍ରଗଲ୍ଭ ଗପିଯାଇଥିଲା । ମୁଁ ଆଦୌ ବୁଝିପାରୁନଥିଲି ସେ ମୋତେ ସେପରି ଟିକିନିଖି ପରଖିଲା କେବେ ଏବଂ କେମିତି । ମୁଁ କେବେ କ'ଣ କହିଛି ବା ଲେଖିଛି; ତା'ର ଏକରକମ

ନିର୍ଭୁଲ ତାଲିକା ଦେଇଗଲା । ମୁଁ ବାରମ୍ବାର ତାକୁ ସେଇ ଗୋଟିଏ ପ୍ରଶ୍ନ ପଚାରିଛି – "ଆପଣ ଏତେ କଥା ଜାଣିଲେ କେମିତି ? ମୁଁ ତ ସେପରି କୌଣସି ବିଖ୍ୟାତ ଲୋକ ନୁହେଁ ।" ସେ କୌଣସି ଉତ୍ତର ନ ଦେଇ ମୋ ବିଷୟରେ ଆହୁରି ଗହନ କଥା କହିଚାଲିଲା । ମୁଁ ସତେ ବା ତା'ପାଇଁ ଗୋଟାଏ ଖୋଲା ବହି । ମୁଁ କେମିତି ଗୋଟାଏ ପରାସ୍ତ ବୋଧ କରିଥିଲି ଏବଂ ଏକପ୍ରକାର ଚିଡିଯାଇଥିଲି । କହିଥିଲି, "ହେଲା, ମୋ ବିଷୟରେ ମୁଁ ଶୁଣିବାକୁ ଚାହୁଁନାହିଁ । ଆପଣ ଖୁବ୍ ଜାଣିଛନ୍ତି, ମୁଁ ସ୍ୱୀକାର କରୁଚି । କିନ୍ତୁ ଆପଣ କିଏ ? ଆପଣଙ୍କ ନାଁ ସିଦ୍ଧନାଥ ବୋଲି କହିଲେ; କିନ୍ତୁ ତା' କ'ଣ ଯଥେଷ୍ଟ ? ଆପଣ ଏଇଠି କୋଉଠି ଥାଆନ୍ତି ? କ'ଣ କରନ୍ତି ? ଜଷ୍ଟିସ୍ ଶିବନାଥ ଆପଣଙ୍କର କ'ଣ ହେବେ କି ?"

ସିଦ୍ଧନାଥ ମୋର କୌଣସି ପ୍ରଶ୍ନର ଉତ୍ତର ନ ଦେଇ ସେଦିନ ଚାଲିଯାଇଥିଲା । ମୁଁ ସେଇଠି ପଣ କରିଥିଲି ଯେ ତାକୁ ଦିନେ ମୁଁ ନିଶ୍ଚୟ ଆବିଷ୍କାର କରିବି । ତା'ର ପ୍ରଗଲ୍‌ଭତା ଯେମିତି ମୋତେ ଅଭିଭୂତ କରିଥିଲା, ତା'ର ନୀରବତା ସେମିତି ଉଚ୍ଚାଟିତ କରିଥିଲା । କିଏ ସେ ନିଜକୁ ସିଦ୍ଧନାଥ କହୁଥିବା ଛୋଟକୋଟର ମଣିଷଟି ଯେ ଖଣ୍ଡିଏ ଧୋତି ଏବଂ ଧଳା ହାଫ୍ ସାର୍ଟଟିଏ ପିନ୍ଧିଥାଏ । ତା' ମୁହଁରେ ଦଶ ପନ୍ଦର ଦିନର ଦାଢ଼ି । ସେଥିରେ କାଁ-ଭାଁ ଗୋଟିଏ ପାଚିଲା ବାଳ । ଖୁବ୍ ବଡ ବଡ ପୂରିଲା ପୂରିଲା ଆଖିରେ ଦାଉଦାଉ ବୁଦ୍ଧି । କପାଳରେ ଝଲମଲ ନିର୍ଭୀକତା, ବାଙ୍ଗୁରା ହାତ ଯୋଡିକ ଲୋମଶ... ।

ଏ ମଣିଷଟିକୁ ଥରେ ଦେଖିଦେଲା ପରେ ମୋ ପକ୍ଷରେ ଭୁଲିଯିବା ସମ୍ଭବ ନ ଥିଲା । ମୁଁ ମନେ ମନେ ତା' ବିଷୟରେ ମୋର ଅନେକ ବନ୍ଧୁଙ୍କୁ ପଚାରିବାକୁ ସ୍ଥିର କରି ଶେଷକୁ ରହିମ୍ ଖାଁକୁ ହିଁ ପଚାରିଲି । ରହିମ୍ ପୁରୁଖା ପୋଲିସ ଅଫିସର । ସେ ସିଦ୍ଧନାଥର ବର୍ଣ୍ଣନା ଶୁଣିବାମାତ୍ରକେ ସଳଖିଯାଇଥିଲା । କହିଥିଲା, "ଆବେ ହେ, ୟେ ତ' ବଡା ତାଜୁବ୍ ବାତ୍ ଠହରିଲା । ହାମେ କ'ଣ କହୁଚୁ ବାବୁ, ଶୁଣନା ! ୟେ ଯେ ବାଙ୍ଗରା ଦାଢ଼ିଆ ନୁହଁ – ଏ ହେଲା ପୋଲିସ ପାଇଁ ଏକ ଲମ୍ବର ସର୍ଦ୍ଦାର । ତାକୁ ହାମେ ଖୋଜୁଚ ଯେ ଖୋଜୁଚ । ସେ ଆସି ତମ ପାଖେ ହାଜର ! ? ରହିମ୍ କହିବା ଅନୁସାରେ ସହରର ଡକେଇତ ପଳାତକ ଖୁଣି ଆସାମୀମାନଙ୍କର ସେ କୁଆଡେ ସର୍ଦ୍ଦାର । ହାଲକୁ କଲିକତାରୁ ଆସିଚି । ତା' ଫଟୋ ସେମାନେ ପାଇନାହାନ୍ତି; କିନ୍ତୁ ଏମିତି ତାକୁ ଦେଖିବା ଲୋକଙ୍କ କଥାରୁ ଏଇଭଳି ଚେହେରାଟାଏ ଜଣାପଡୁଛି । ମୁଁ କିନ୍ତୁ ଠିକ୍ ଜାଣିପାରିଲି ନାହିଁ ରହିମ୍ ଖାଁର ସେ ବାଙ୍ଗରା ମଣିଷଟି ସିଦ୍ଧନାଥ ନା ନୁହେଁ ।"

ରହିମ୍ ପାଖରୁ ସବୁ ଶୁଣି ପୋଲିସ ସ୍ଥିର କଲେ ମୋତେ ନଜରରେ ରଖିବାକୁ । ଜାଣିବାକୁ ଚାହିଁଲେ ସିଦ୍ଧନାଥ ବିଷୟରେ ଅନେକ କିଛି । ମୁଁ ଯେତେ କହିଲି ମୁଁ କିଛି ଜାଣେ ନାହିଁ ବୋଲି, ସେମାନେ ବିଶ୍ୱାସ କଲେ ନାହିଁ । ମୁଁ ପୁଣି ମନେ ମନେ ପଣ କଲି – ଯାହା ହବାର ହବ ପଛେ, ପୋଲିସକୁ ଆଉ କିଛି କହିବି ନାହିଁ । ସିଦ୍ଧନାଥ ବିଷୟରେ ମୁଁ ଏଯାଏ କିଛି କହିନାହିଁ ।

ଅନୁପମା ପ୍ରଧାନ ନାରୀନେତ୍ରୀ । ବେଳେବେଳେ ତାଙ୍କ ଘରେ ସାମ୍ବାଦିକମାନଙ୍କର

ଆଡ୍‌ଡା ଜମିଯାଏ । ଦିନେ ଖିଆପିଆ ସରୁ ସରୁ ରାତି ଗୋଟାଏ ପାରିହେଇଗଲା । ଆମ ଭିତରୁ ଚାରି ପାଞ୍ଚଜଣଙ୍କୁ ବେହୋସ ଅବସ୍ଥାରେ ଟେକିନିଆଗଲା ଗାଡି ଭିତରକୁ । ମୁଁ ବିଶେଷ ପିଆପିଇ କରେ ନାହିଁ ବୋଲି ଆମ ମହଲରେ ମୋର ସାମାନ୍ୟ ଦୁର୍ନାମ । ସେଥିପାଇଁ ମୋର ଡାକ ନାଁ 'ବାବାଜି' । ଆସ୍ତେ ଆସ୍ତେ ଚିଠିପତ୍ର ମଧ୍ୟ ସେଇ ନାଁରେ ଆସିବା ଆରମ୍ଭ କଲାଣି । ସେଥିରେ ମୋଆଡୁ କୌଣସି ଆପତ୍ତି ଅଭିଯୋଗ ନାହିଁ ।

ହଁ, ସେଦିନ ରାତି ଗୋଟାକ ପରେ ଅନୁପମା ପ୍ରଧାନ ଉଠିଯାଇଥିଲେ ତାଙ୍କ ସରକାରୀ ଘରଭିତର ବାରଣ୍ଡାକୁ । ମୁଁ ବୈଠକଘର ଝରକା ପାଖରେ ବସିଥାଏ । ମୋ ଆଖି ନିଦରେ ବାଟିହୋଇପଡୁଥାଏ । ମୁଁ ଥରଟେ ଦେଖିଲି କେବଳ ଯେ ଜଣେ କିଏ ଅଗଣାରେ ଠିଆହୋଇଥିଲା । ପିଣ୍ଡା ଉପରୁ ଶ୍ରୀମତୀ ପ୍ରଧାନ ତାକୁ ଶୁଣୁଥାନ୍ତି, ସେ କ'ଣ ଗୁଡାଏ ଅନର୍ଗଳ ଗପିଯାଉଥାଏ । ମୋ ଆଖିପତା ପଡିଗଲା । ମୁଁ ମନେ ମନେ କଥାଟାକୁ ହେଜିଲି । ତା'ପରେ କେତେବେଳେ ଗଲା, ମୁଁ ଜାଣିନାହିଁ । ହାଉକିନା ମୋର ହୋସ ଆସିଗଲା । ସେ ଯେ ଅଗଣାରେ ଠିଆହୋଇଥିଲା, ସେ କ'ଣ ସିଦ୍ଧନାଥ ? ମୁଁ ଧଡପଡ ଉଠିବାକୁ ଚେଷ୍ଟାକଲି, ପାଖ ଚୌକିରୁ ଶ୍ରୀମତୀ ପ୍ରଧାନ ବାରଣକଲେ : "ଆପଣ ବସନ୍ତୁ ବାବାଜି ବାବୁ ! ମୁଁ ସବୁ ବ୍ୟବସ୍ଥା କରିଦଉଚି !"

ମୁଁ କିଛି ପଚାରିବା ପୂର୍ବରୁ ମୋତେ ସେମାନେ ଗାଡିରେ ନେଇ ଘରେ ଛାଡିଦେଲେ । ତା' ଆରଦିନ ସକାଳୁ ମୁଁ ଆସି ଶ୍ରୀମତୀ ପ୍ରଧାନଙ୍କ ପାଖେ ପହଞ୍ଚିଲି । ସେ ବିଶେଷ ଖୁସି ଜଣାଗଲେ ନାହିଁ; କିନ୍ତୁ ସେଥିକୁ ମୋର ଖାତିର ନ ଥିଲା ।

"ଆଚ୍ଛା ମିସେସ୍ ପ୍ରଧାନ ! ମୁଁ ଆପଣଙ୍କୁ ଗୋଟିଏ କଥା ପଚାରିବି ବୋଲି ଏତେ ସକାଳୁ ଚାଲିଆସିଛି । କଥାଟି ହେଲା, କାଲି ରାତିରେ ଆପଣଙ୍କ ଅଗଣାରେ ଠିଆହୋଇ ଯେ ଆପଣଙ୍କ ସହିତ କଥା ହେଉଥିଲା, ସେ କିଏ ?"

ଶ୍ରୀମତୀ ପ୍ରଧାନ ଖୁବ୍ ସତର୍କ ହୋଇଯିବାରୁ ମୁଁ ଲକ୍ଷ୍ୟ କଲି : "ନାହିଁ ତ, ସେପରି କେହି ନୁହେଁ । ତା'ପରେ ଆପଣ ଯେଉଁ ଅବସ୍ଥାରେ ଥିଲେ, ସେତେବେଳେ ନଥିଲା ମଣି, ମଧ୍ୟ ଆପଣଙ୍କ ଦିଶିଥାଇପାରେ ।" ସେ ନିଜେ ନିଜ ପରିହାସରେ ଏକୁଟିଆ ହସିଲେ । ମୁଁ ଚା ସୋଡକି ଦେଇ ତାଙ୍କ ଆଖିକୁ ଚାହିଁ କହିଲି, "ଆପଣ କୌଣସି ସନ୍ଦେହ କରନ୍ତୁ ନାହିଁ । ସିଦ୍ଧନାଥ ମୋ ବନ୍ଧୁ ! ମୁଁ ତା' ବିଷୟ ଜାଣିବାକୁ ଚାହେଁ ।"

ତାଙ୍କ ମୁହଁ ଉପରେ ବାରମ୍ବାର ଛାଇଆଲୁଅ ପାରିହୋଇଗଲା । ତା'ପରେ ସେ ତାଙ୍କର ଅପୂର୍ବ ହସ ଭିତରେ କହିଲେ, "ସେ କେତେବେଳେ କେଉଁଠି ଥାଏ, କାହା ସହିତ ତା'ର କିପରି ସମ୍ପର୍କ, କେହି ଜାଣନ୍ତି ନାହିଁ । କିନ୍ତୁ ସେ ଅନେକ ଲୋକଙ୍କର ନିଜଲୋକ ବୋଲି ମୁଁ ଆଗରୁ ଶୁଣିଛି, ଯାହାକୁ ପଚାରିବେ ସେ ହୁଏତ କହିବ ଯେ ତା' ପାଖରେ କିଛି ଲୁଚେଇବାର ନାହିଁ । ସେ ଏତେ ଆପଣାର ଯେ, ସେ ସବୁ ଜାଣେ ।"

"ସେସବୁ ଠିକ୍ । ମୁଁ କିନ୍ତୁ ଆପଣଙ୍କୁ ପଚାରିବାକୁ ଆସିଛି, ଆପଣ ତା' ବିଷୟରେ କ'ଣ

ଜାଣିଛନ୍ତି ?"

ଶ୍ରୀମତୀ ପ୍ରଧାନ ବିଚିତ୍ର ଭଙ୍ଗୀରେ ଭୃରୁ ଟେକି ପରିହାସ-ଛଟାରେ କହିଲେ, "ସେ ମୋର ଜଣେ ପ୍ରେମିକ । ନାରୀ କହିଲେ ସେ ମୋତେ ହିଁ ଜାଣେ ! ଆହା ବିଚରା, ସେ କେତେ ଗଭୀର ଭାବରେ ମୋତେ ଭଲପାଏ ଏବଂ ଭକ୍ତି କରେ । ସେ ମୋ ଜୀବନର ପ୍ରତ୍ୟେକଟି ଘଟଣା ସହିତ ପରିଚିତ ।"

ମୁଁ ସାଙ୍ଗେ ସାଙ୍ଗେ କହିଲି, "ଅଥଚ ଆପଣ ତା' ବିଷୟରେ କିଛି ଜାଣନ୍ତି ନାହିଁ । ସେଇ ତ ଆଶ୍ଚର୍ଯ୍ୟ ! ସେ ସମସ୍ତଙ୍କୁ ଜାଣେ; ଅଥଚ ତାକୁ କେହି ଜାଣନ୍ତି ନାହିଁ । ସେ ଆପଣଙ୍କ ପାଖରେ ଥିଲାବେଳେ ଆପଣଙ୍କ ଧାରଣା ହୋଇପାରେ ଯେ ସେ ଗୋଟାପଣେ ଆପଣଙ୍କର; କିନ୍ତୁ ସେଭଳି ଆଉ ପରଶ ସ୍ତ୍ରୀ ସେପରି ଭାବୁ ନ ଥିବେ ବୋଲି ଆପଣ କାହିଁକି ବିଚାର କରୁନାହାନ୍ତି ?"

ହସି ହସି ଶ୍ରୀମତୀ ପ୍ରଧାନ କହିଲେ, "ଆରେ ନାଇଁ ନାଇଁ । ସେଇଟା ସମ୍ଭବ ନୁହେଁ । ସେ ମୋତେ ଯାହା ସବୁ କହିଲା, ସେଦିନ ଆପଣ ଶୁଣିଥିଲେ ଏମିତି କହନ୍ତେ ନାହିଁ । ଆପଣ ତ ବେହୋସ ହୋଇ ପଡିଥାନ୍ତି । ପାହାନ୍ତିଆକୁ ଆପଣଙ୍କ ପାଖେ ଆସି ବସିବାରୁ ଆପଣ ଆଖି ଫିଟେଇ ଚାହିଁଲେ ।"

ମୁଁ ବୁଝିଗଲି । ଆଉ ତାଙ୍କୁ କିଛି ନ ପଚାରି ଉଠିଆସିଲି । ପୁଣି ପଣ କଲି, "ସିଦ୍ଧନାଥ ! ମୁଁ ଦିନେ ନା ଦିନେ ନିଶ୍ଚୟ ତତେ ପଦାରେ ପକେଇଦେବି ।"

ତା'ପରେ ଶୁଣିଲି ଯେ ସେ ତାପସୀ ନାଏକ ପାଖକୁ ପ୍ରାୟ ଆସେ । ତାପସୀ ତଳ ମାଳିସାହିର ଖୁବ୍ ଦରିଦ୍ର ରୂପାଜୀବାଟିଏ । ଏବେ ଆଉ ଜୀବିକା କରୁନାହିଁ । ତା'ର ଅଭାବ ନାହିଁ । ଯଦି ଏମିତି କେବେ କାହାକୁ ମାନିଗଲା ତ ସେ ଭିନ୍ନ କଥା । ସିଦ୍ଧନାଥ ସେଠିକି ଆସିବା କଥା ପୋଲିସ ପାଖରେ ପହଞ୍ଚିଛି । ସେଥିପାଇଁ ସେପାଖରେ ସତନ୍ତ୍ର ପହରାଦାର ନିଯୁକ୍ତ ହୋଇଛନ୍ତି ନଜର ଦବାକୁ । ମୁଁ ଯାଇ ତାପସୀ ପାଖରେ ପହଞ୍ଚିଲି ଦିନେ । ସେ ମୋତେ ଦେଖି ଚକିତ ହେଲା, ସନ୍ଦେହ କଲା । ତା'ପରେ ତାକୁ ଯେତେବେଳେ ମୁଁ ଠୋକ୍‌ଠୋକ୍ ପଚାରିଲି ସିଦ୍ଧନାଥ କଥା, ସେ କାନ୍ଦ କାନ୍ଦ ହୋଇ ଭାଙ୍ଗିପଡିଲା ।

"ନା, ମୁଁ କିଛି ଜାଣେ ନାହିଁ । ମୋତେ ମାରିଦେଲେ ସୁଦ୍ଧା ମୁଁ କିଛି କହିବି ନାହିଁ । ଆପଣ ଏଇଠୁ ଦୟାକରି ଚାଲିଯାନ୍ତୁ ।" – ସେ ଛନ୍‌ଛନ୍ ହୋଇ ଏଣେତେଣେ ଚାହିଁଲା । ମୁଁ କାଳେ ଛଦ୍ମବେଶୀ ଗୋଇନ୍ଦା ହୋଇଥିବି...ସିଦ୍ଧନାଥକୁ ଧରିବାକୁ ସାଙ୍ଗରେ ଫଉଜ ଆଣିଥିବି !

ମୁଁ ଆଦୌ ବିଚଳିତ ନ ହୋଇ ଅପେକ୍ଷା କଲି । ଖୁବ୍ ଗମ୍ଭୀର ହୋଇ ସିଗ୍ରେଟ୍ ଲଗେଇଲି । ତାପସୀ ମ ସାମ୍ନାରେ ଆସି ଠିଆହେଲା । ମୁଁ ତା' ବିଶ୍ୱାସ ଜନ୍ମେଇଲା ପରି କହିଲି, "ମୁଁ ସିଦ୍ଧନାଥର ବନ୍ଧୁ । ମୁଁ ତାକୁ ପ୍ରୟୋଜନ ହେଲେ ରକ୍ଷା କରିବାକୁ ଚାହେଁ । ମୋ ସହିତ ତା'ର ଆଳାପ କଥା ମଧ୍ୟ କହିଗଲି । ତାପସୀ ମୋ ହାତଟିକୁ ଦୁଇ ହାତରେ ମୁଠା କରି କହିଲା, "ଆପଣ ସତ କହୁଛନ୍ତି ?"

ମୁଁ ତାକୁ ପାଖରେ ବସେଇଲି । ତାକୁ ଅନେକବେଳ ନିବିଡଭାବେ ଜାକିଧରିଲି । ସେ ଗୁଡାଏ କାନ୍ଦିଲା । ନିଜର ଗୁଡାଏ ଦୁଃଖ କାହାଣୀ ଗାଇଲା । ମଝିରେ ମଝିରେ କହିଗଲା କେମିତି ତା'ର ଘୋର ବିପତ୍ତି ବେଳେ ସିଦ୍ଧନାଥ ଆସି ପହଞ୍ଚିଲା ଏବଂ କେମିତି ତାପସୀର ସାରା ଜୀବନରହସ୍ୟ ସେ ବଖାଣିଗଲା । ଆଉ କେହି ଏ ପୃଥିବୀରେ ତାପସୀକୁ ସେପରି ଜାଣନ୍ତି ନାହିଁ । ତାପସୀ ତା' ଉପରେ ବାରମ୍ବାର ଜୋର୍ ଦେଇ କହୁଥାଏ । ଅନ୍ତତଃ ସିଦ୍ଧନାଥ କାହାକୁ ସଂପୂର୍ଣ୍ଣ କାବୁ କରିବା ପୂର୍ବରୁ କେମିତି ତାକୁ ତା' ଆଗରେ ଖିନ୍‌ଭିନ୍ କରି ଫିଟେଇ ଦିଏ, ତା' ଜୀବନର ଅସଂଖ୍ୟ ଘଟଣାକୁ ଶାଗମଞ୍ଜି ପରି ବୁଣିଦିଏ – ଏଇଟା ଜଣାପଡିଗଲା । ବାକି ସେ ରାତିରେ ସୁନା କାରବାର କରେ କି ନାହିଁ, ଅଫିମ, ହିରୋଇନ ଚାଲାଣରେ ସଂପୃକ୍ତ କି ନାହିଁ, ସଠିକ ଜାଣିବା ସମ୍ଭବ ନୁହେଁ । ତଥାପି ସେ ଯଦି କୋଟିପତି, ସେ କାହିଁକି ଏଠିସେଠି ସାଧାରଣ ଲୋକଗୁଡିକଙ୍କ ସହିତ ଏମିତି ଜାଣିଶୁଣି ନିଜକୁ ଛନ୍ଦେ ? ସେ ତ କଲିକତା କିମ୍ବା ବମ୍ବେରେ ବେଶ୍ କୋଟିପତି ଢଙ୍ଗରେ ରହିପାରନ୍ତା । କେହି ତା'ର ଟେର୍ ପାଆନ୍ତେ ନାହିଁ! ସେ କାହିଁକି ଏଠି ହାଫ୍ ସାର୍ଟ, ଧୋତି ପିନ୍ଧି ଲୁଚି ଲୁଚି ବୁଲୁଛି ? ସେଥିରେ ତା'ର ମତଲବ କ'ଣ, ଲାଭ ବା କ'ଣ ?...

"ଆଚ୍ଛା ତାପସୀ, ତୋ ସହିତ କେତେଦିନ ହେବ ସିଦ୍ଧନାଥ ସମ୍ପର୍କ ରଖିଛି ?"

"ପ୍ରାୟ ପାଞ୍ଚବର୍ଷ ହେଇଯିବ!"

ତା'ହେଲେ ତ ରହିମ୍ ଖାଁ ସନ୍ଦେହ କରୁଥିବା ଡକାଏତ ସର୍ଦ୍ଦାର ହୁଏତ ଆଉ ଜଣେ, ସେ କୁଆଡେ ଏବେ ନୂଆ ହେଇ କଲିକତାରୁ ଆସିଛି । –

"ତତେ ସେ କାହିଁକି ସାହାଯ୍ୟ କରେ କହିପାରିବୁ ? ସେ କ'ଣ ତୋର ଜଣେ ଖାଲି ମାତବର ଗରାଖ ? ଟଙ୍କା ଥିବାରୁ ଅଜାଡି ଦଉଚି, ନା ଆଉ କିଛି ?"

"ମୋର ତ ଦୁଃଖ ସେଇଠି । ସେ ଯଦି ଗରାଖଟିଏ ହେଇଥାନ୍ତା, ମୁଁ ବୁଝିପାରିଥାନ୍ତି । ସେ ମୋତେ କେବଳ ଭଲପାଏ । ମୁଁ ଜାଣେ ପୃଥିବୀରେ ସେ ମୋତେ ହିଁ ଭଲପାଏ । କେଜାଣି କେତେଦିନୁ ସେ ମୋ ପିଛା ଧରି ଧରି ମୋର ସବୁ ଦେଖିଛି, ସବୁ ଟିକିନିଖି ଜାଣିଛି । ମୋ' ଭଳି ହତଭାଗିନୀଟିଏ କାହିଁକି ତା' ଆଖିରେ ପଡିଲା, ମୁଁ ଜାଣିପାରୁନାହିଁ । ତା'ରି ପାଇଁ ଏ ଅଲଣା ଜୀବନର କିଛି ହେଲେ ମୂଲ୍ୟ ଅଛି ବୋଲି ଭାବୁଛି । କିନ୍ତୁ ତାକୁ ମୋ ଗରାଖ କହିଦେବାକୁ ମୋ ଜିଭ ଲେଉଟୁନାହିଁ; ସାହସ କୁଳଉନାହିଁ । ଅଥଚ ଏସବୁ ଯାହା ଦେଖୁଛନ୍ତି, ଏ ଆସବାବପତ୍ର, ଏ ବିଛଣା, ସୋଫା, ଶାଢି ସବୁ ତା'ରି ଦାନ!"

ମୁଁ ଅବିଚଳିତ ଥାଏ ମୋ ଭୂମିରେ । "ଆଚ୍ଛା ସେ କ'ଣ ସପ୍ତାହକୁ ଥରେ ଆସେ ନା' ମାସକରେ ଥରେ ? – ନା' କେମିତି ?"

ସେ ସକସକ କାନ୍ଦିପକେଇଲା – "ସେଇଟା ମୋର ଦ୍ୱିତୀୟ ଦୁଃଖ । ସେ ମାତ୍ର ସେଇ ଥରେ ଆସିଥିଲା । ନିଜର କରିଦେଇ ଚାଲିଗଲା ଯେ, ଆଉ ଆସିଲା ନାହିଁ । ମୁଁ କେତେ ଅନୁନୟ କରି ଚିଠି ଲେଖିଛି । ତା' ଲୋକମାନଙ୍କ ଆଗରେ କେତେ ନେହୁରା ହେଇଚି । ସେ ଆଉ ଥରେ

ଆସିନାହିଁ ଏ ଯାବତ୍! କିନ୍ତୁ ସେ ମୋତେ କେଉଁଠି ରହି ଚାହିଁଛି, ନ ହେଲେ ମୋର ଯେତେବେଳେ ଯାହା ପ୍ରୟୋଜନ କେମିତି ସେ ଯୋଗାଇ ଦେଇପାରୁଛି ? କେତେଥର ମୁଁ ତା'ର ଏ ଜିନିଷ ଫିଙ୍ଗି ଦେବାକୁ ମନ କରିଛି । ହେଲେ ଯେମିତି ସେ ପ୍ରଥମ ଥର ଆସି ମୋତେ ଅଥଳ ଜଳରୁ ଟେକି ନେଇଥିଲା, ମନେ ପଡିଲେ ମୁଁ ତରଳିଯାଇଛି । ଛାଡ, ତା' କଥା ହେଇ କିଛି ଲାଭ ନାହିଁ । ସେ ଏଇଠି କେଉଁଠି ଲୁଚିରହିଛି ବୋଲି ମୋର ବିଶ୍ୱାସ; ମୋ ସାମ୍ନାକୁ କିନ୍ତୁ ଆସୁନାହିଁ । ମୋତେ ତହଲବିକଳ କରି ମାରୁଛି । ମୁଁ ଭାବିଛି ଦିନେ ତା' ନାଁ ଡାକି ଡାକି ମୁଁ ବିଷ ଖାଇଦେବି ।"

ତା'ହେଲେ ତାପସୀ ପାଖକୁ ସେ ବରାବର ଆସୁଥିବା କଥା ମିଛ । ସେ ବେଳେବେଳେ ଜିନିଷପତ୍ର ପଠାଏ । ସେଇଟା ତା' ପାଇଁ ଖୁବ୍ ସହଜ । କେହି ହେଲେ ତାକୁ ଥରକରୁ ଅଧିକ ଦେଖିନାହିଁ । ଏପରି କି ଅନୁପମା ପ୍ରଧାନ ମଧ ନୁହେଁ! ଆଶ୍ଚର୍ଯ୍ୟ!

ସେ ମୋ ପାଖକୁ ରହସ୍ୟଜନକ ଭାବରେ ଟାଇପ୍ ରାଇଟର ଖଣ୍ଡିଏ ପଠେଇ ଦେଇଥିବା କଥା ମୋର ମନେପଡିଗଲା । ଗୋଟିଏ ଫୋଲଡିଂ ଛତା ପହଞ୍ଚିଲା ସେମିତି । ମୋତେ ବିଚିତ୍ର ବୋଧହେଲା ଯେ ମୋର ଏ ପ୍ରୟୋଜନ ଅଛି ବୋଲି ସେ ଜାଣିଲା କେମିତି ? ସେ କ'ଣ ମୋ ଆତ୍ମା-ପୁରୁଷକୁ ପଚାରି ନେଇଥିଲା ? ସେ କ'ଣ ସତକୁ ସତ କୌଣସି ଅନ୍ତର୍ଯାମୀ ସିଦ୍ଧପୁରୁଷ ? – ନାଁ ସେ ଏକ ଅଦ୍ଭୁତ ଗୋଇନ୍ଦା ଯେ ମୋତେ ପ୍ରତି ମୁହୂର୍ତ୍ତରେ ଦେଖେ ଏବଂ ଶୁଣେ ? – ତା' ତ ସମ୍ଭବ ନୁହେଁ । ସେ ତାପସୀକୁ, ଶ୍ରୀମତୀ ପ୍ରଧାନକୁ ମଧ ସେହିପରି ତା' ଦୃଷ୍ଟିରେ ଘୋଡେଇ ରଖିଛି । ଆମେ ସବୁ ତ ଅତି ସାଧାରଣ ମଣିଷ, କୋଟି କୋଟି ମଣିଷଙ୍କ ଭିତରେ ନଗଣ୍ୟ ଛୋଟ ମଣିଷ ଗୁଡିଏ । ଆମ ଜୀବନ୍‌ରେ ଛୋଟ ଛୋଟ ଅରମାନ, ଛୋଟ ଛୋଟ ଘଟଣା, କେହି ନ ଜାମିଲା ଭଳି, କେହି ନ ଦେଖିଲା ଭଳି । ଅଥଚ ସିଦ୍ଧନାଥ ଆମକୁ ଏମିତି ଟିକିନିଖି ଦେଖିପାରିଲା କେମିତି ? ଜାଣିଲା କେମିତି ଯେ ତାପସୀ ଏଇଭଳି ଶାଢି ଚାହେଁ କିମ୍ବା ବାବାଜି ଏମିତି ଛତାଟିଏ ଚାହେଁ ? – ସିଦ୍ଧନାଥ ନିଜେ ବି କେତେ ସାଧାରଣ ଦେଖାଯାଉଛି । ହୁଏତ ସେ ଦାଢିଆ ବାଙ୍ଗରା ମଣିଷ ସାନ-ବଡ ସମସ୍ତଙ୍କ ପଛରେ ରହି ଅନେଇଛି । ସାନ ବଡ ଇଚ୍ଛାଗୁଡିକୁ ପୂରଣ କରିଦେଉଛି । କିଛି କିଛି ସୁଖ ବାଣ୍ଟିଦେଉଛି । କିଛି କିଛି ସନ୍ତାପ ମଧ...

ଏମିତି ତା' ବିଷୟରେ ନିର୍ଦ୍ଦିଷ୍ଟ କିଛି ଖବର ନ ପାଇ ମୁଁ ଛଟେଇ-ପଟେଇ ହେଉଥାଏ । ହଠାତ୍ ଚିଠିଟିଏ ପହଞ୍ଚିଲା ! ତା' ଚିଠି ହୁଏତ ! କିନ୍ତୁ ତା'ପରେ ଯାହା ଘଟିଲା ମୁଁ ଏଇନେ କହିପାରିବ ନାହିଁ ଜୋର୍ ଦେଇ ଯେ, ସେଇଟା ତା' ହାତଲେଖା ଚିଠି ବୋଲି ! ସେଥିରେ ଲେଖାଥିଲା, "ମଧୁପୁର ଡାକବଙ୍ଗଳାରେ ମଙ୍ଗଳବାର ଦିନ ସନ୍ଧ୍ୟା ସୁଦ୍ଧା ପହଞ୍ଚି ଅପେକ୍ଷା କରିଥିବ! ସିଦ୍ଧନାଥ!" ମୁଁ ସେଥିପାଇଁ ଅନେକ ଆଶଙ୍କା, ଅନେକ କୌତୂହଳ ନେଇ ସେଇଠି ପହଞ୍ଚିଥାଏ । ରହିମ୍ ଖାଁ କହିଛି, ସେ ଡକେଇତ ସର୍ଦ୍ଦାର । ତାହେଲେ ମୋତେ ଏଇଠି ପଣବନ୍ଦୀ ରଖି ସେ ଲକ୍ଷେ ଟଙ୍କା ଦାବି କରିପାରେ; ନ ପାଇଲେ ମୋ ଗଳା କାଟିଦେଇପାରେ । କିନ୍ତୁ ସେ କ'ଣ ଏମିତି ବ୍ୟବହାର ମୋ ସହିତ କରିପାରେ ?...

ମୁଁ ତଥାପି ଖୁବ୍ ଚହଲିଯାଇଥାଏ । ମନ ପ୍ରାଣ ଦୋହଲୁଥାନ୍ତି । ଚମକୁଥାନ୍ତି । ନିସ୍ତବ୍ଧ ଜହ୍ନରାତି; ଠିଆ ହୋଇଥାନ୍ତି ଟଳମଳ ପାଣିଖମ୍ବ ପରି ।

ମୋତେ ଅନେକ ଚିତ୍ର ଦିଶୁଯାଉଥାଏ । ଅନେକ କଥାବାର୍ତ୍ତା ଶୁଭିଯାଉଥାଏ । ଆଖି ମିଟିକା ମାରିଲା ବେଳକୁ ଶୂନଶାନ୍ । ମୁଁ ଖାଲି ମନକୁ ମନ ସେମିତି ଭ୍ରମୁଥାଏ ବୋଲି ଜଣାପଡିଯାଉଥାଏ ।

ମୁଁ ସେତେବେଳେ ମଟମଟ ଚାହିଁଥାଏ । ରାସ୍ତା ଉପରକୁ ଛପକିନା ଆସ୍ତେ କ'ଣଟାଏ ଘୁଞ୍ଚିଲା ପରି ମୋତେ ଶୁଭିଲା । ମୁଁ କାନ ଡେରିଲି । ମୋ ଦେହରେ ପ୍ରତ୍ୟେକ ରୋମ ଉତ୍କର୍ଣ୍ଣ ହେଇ ଠିଆହେଇଗଲେ । ନିଃଶ୍ୱାସ ସତର୍କ ପ୍ରହରୀ ପରି ନିଶ୍ଚଳ ଠିଆ ରହିଗଲା । କିନ୍ତୁ ଆଉ କିଛି ଶୁଭିଲା ନାହିଁ । ମୁଁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଥାଏ ପାଚେରି ସୋପାରିକୁ, ଗେଟ୍ ଉପରକୁ!

ରାତିର ପକ୍ଷୀ ପାଖ ଆମ୍ବଗଛରୁ ରାବିଦେଲା । ମୋ ହୃତ୍‌ପିଣ୍ଡ ଧଡ୍‌ଧଡ୍ ହେଲା । ମୁଁ ପୁଣି ନିଜକୁ ସଂଯତ କଲି । ଭର୍ତ୍ସନା କଲି । କାହିଁକି ବେକୁବ୍ ଭଳି ରାତିଟାଏ ସେଇଠି ସେମିତି ବିତାଉଛି ବୋଲି ନିଜକୁ ନିଜେ ଥଙ୍ଗାକଲି । ସିଦ୍ଧନାଥ କ'ଣ ତୋ' ପ୍ରେମିକ ? – ତୁ କ'ଣ ଅଭିସାରିକା ଏ ଜହ୍ନରାତିରେ ? କ'ଣ ଚିଠିଟିଏ ପାଇ ଏଠି ଆସି ଜଗି ବସିଚୁ ?

ଏହିପରି ଭାବନା ଭିତରେ ମୋ ଓଠରେ ସାମାନ୍ୟ ହସ ଆସିଯାଇଥିଲା । ଏତିକିବେଳେ ଗେଟ୍ ଫିଟେଇ ସେ ପଶିଆସିଲା । ଖୁବ୍ ସଂଯତ ନିଃଶବ୍ଦ ଚାଲି । ସେମିତି ଧୋତି ଚପ୍‌ପଲ । ହାଫ୍‌ସାର୍ଟ । ମୁହଁରେ ସେମିତି ପନ୍ଦର ଦିନର ଗୁଡ଼ ।

ସିଦ୍ଧନାଥ ଆସି ବାରନ୍ଦାରେ ମୋ ସାମ୍ନା ଚୌକିରେ ବସିପଡି ହସି ହସି ମୋତେ ଚାହିଁଲା । ମୋ ଦେହସାରା ବାରମ୍ବାର ଶୀତକଣ୍ଟା ମାରି କାଠେଇଗଲା । ଭିତର ଦୁରୁଦୁରୁ କରି ଟାବ୍‌ଦା ହେଇଗଲା । ମୁଁ ସମ୍ମୋହିତ ବୋଧକଲି । ଏବେ ବି କହିପାରିବି ନାହିଁ, ମୁଁ କେମିତି କ'ଣ ଦେଖୁଥିଲି ଏବଂ ଶୁଣୁଥିଲି –

ମୁଁ ନୋଟ୍ ବହି ପେନ୍‌ସିଲ ନେଇ ପ୍ରସ୍ତୁତ ହୋଇ ବସିଥିଲି । ପେନ୍‌ସିଲ୍‌ଟିକୁ ତଦାରଖ କରିବା ଭଙ୍ଗୀରେ ପଚାରିଲି, "ଆପଣଙ୍କ ପରିଚୟ ନ ଦେଇ ଏତେ ଘନିଷ୍ଠତା ରଖିବା କ'ଣ ଉଚିତ କି ?"

ଏତେ ରାତିରେ ବି ତା' ସ୍ୱରରେ ନିଦର ସ୍ପର୍ଶ ନ ଥିଲା । ସେ ଖୁବ୍ ପରିଷ୍କାର ଗଳାରେ କହିଲା, "ମୁଁ ତ ସେଥିପାଇଁ ଆସିଛି ।"

ମୁଁ ମୋ' ଅଣାୟତ୍ତରେ ପୁଣି ଥରେ ଶୀତେଇଗଲି । ସେ ବୋଧେ ଲକ୍ଷ୍ୟ କରିନେଲା, କାରଣ ତା'ର ସେ ବିଜୁଳି ପରି ଚମକୁଥିବା ଆଖିକୁ ଏଡେଇଯିବା ସହଜ ନୁହେଁ ।

"ରହିମ୍ ଖାଁ କହୁଥିଲା... ।"

ମୋ କଥାକୁ ଅଧାରେ କାଟି ସେ କହିଲା, "ସେ ଠିକ୍ କହୁଥିଲା ।"

"ତାପସୀ କହୁଥିଲା... ।"

ପୁଣି କଥା କାଟିଦେଇ ସେ କହିଲା, "ସେ ବି ଠିକ୍ କହୁଥିଲା ।"

ସେ ମୋ ଆଖିକୁ ସଳଖ ନିଷ୍ପଲକ ଚାହିଁଥାଏ । ଦ୍ୱିଧା-ଦ୍ୱନ୍ଦ୍ୱ କିଛି ନାହିଁ ସେ ଚାହାଣିରେ । ମୋ ଭିତରେ କେମିତି ଓଲଟପାଲଟ ହୋଇଗଲା । ମୁଁ ଚାହୁଁ ନ ଥିଲି ତା' ବିଷୟରେ ସେ ସବୁ ଲୋକାପ୍ରବାଦ ସତ୍ୟ ହୋଇଯାଉ ବୋଲି । ସିଦ୍ଧନାଥ ବୋଧହୁଏ ପରିହାସରେ ସେମିତି କହୁଛି, ସେ କଦାପି ଡକେଇତ ନୁହେଁ । ସେ କଦାପି ଚୋରାବେପାରୀ ନୁହେଁ । ତା' କପାଳ ଏମିତି ଝଟଝଟ ଦିଶୁଚି । ତା' ଆଖିରେ ଏତେ ବୁଦ୍ଧି ! ସେ ଏତେ ସରଳ, ଶୁଦ୍ଧ ଦେଖାଯାଉଛି !

ମୁଁ ତାକୁ ଚାହିଁଦେଇ ଆଖିତଳକୁ କରି ନେଇଥାଏ । ସେ କ'ଣ ମୋତେ ନେଇ ଖେଳୁଛି, ମୋତେ ଠକୁଛି ? – ଶଠ, ଜୁଆଚୋର ! ...ଶେଷରେ ଦାନ୍ତକୁ ଦାନ୍ତ ଜାକି ମୁଁ ବଳ ସଞ୍ଚୟ କରି ବକିଦେଇଗଲି, "ତୁମେ ତାହେଲେ ଅଫିମ ହିରୋଇନ୍ କାରବାର କରୁଚ ! ଡକେଇତି କରି ରେଳଯାତ୍ରୀଙ୍କୁ ଉଚ୍ଛନ୍ନ କରୁଚ ! ହତ୍ୟା କରୁଚ, ନାରୀଧର୍ଷଣ କରୁଚ ! ହିଂସା ପ୍ରତିହିଂସାରେ ନିରୀହ ଲୋକଙ୍କୁ ଛେଳି ପରି ହାଣିପକଉଚ ? – ତୁମର କି ଅଧିକାର ଅଛି ଆମମାନଙ୍କୁ ନେଇ ଏମିତି ଖେଳିବାରେ ? ଆମକୁ ଛୋଟପିଲା ଭାବି କାହିଁକି ଖେଳନା ବାଣ୍ଟୁଚ ? ଆମର ବ୍ୟକ୍ତିଗତ ଜୀବନରେ ଗୋଇନ୍ଦାଗିରି କରି ସବୁ ଗୋପନୀୟ ବିଷୟ ଜାଣିବାରେ ତୁମର ଲାଭ କ'ଣ ? ଏମିତି ସାଧୁତାର ଅଭିନୟ କରି ତୁମେ କେତେକାଳ ଲୁଚି ରହିପାରିବ ବୋଲି ଭାବିଚ ?"

ସିଦ୍ଧନାଥର ସ୍ଥିରଦୃଷ୍ଟି ମୋତେ ବିଚଳିତ କଲା । ମୁଁ ଇତସ୍ତତଃ ହେଲି । ତୁନି ପଡିଗଲି । ସ ସବୁ ବୁଝିଲା ପରି ଅଳ୍ପ ହସିଲା କି କ'ଣ ! କହିଲା, "ମୁଁ ତେବେ ଯାଉଚି ! ମୋର ଇଚ୍ଛା ଥିଲା ଅନ୍ତତଃ ଜଣଙ୍କୁ ମୋର ପରିଚୟ ଦବାକୁ ! କିନ୍ତୁ ସେ ତ ମୋତେ ଜାଣିବାକୁ ଚାହାନ୍ତି ନାହିଁ । ତାଙ୍କର ମୋ ବିଷୟରେ କୌଣସି ସ୍ଥିର ଧାରଣାକୁ ମୁଁ ବଦଳେଇବାକୁ ଚାହେଁ ନାହିଁ ।"

ମୁଁ କଥାଟାର ଗୁରୁତ୍ୱ ହଠାତ୍ ଅନୁଭବ କଲି । ଭାବିଲି ହୁଏତ ମୁଁ ଯାହା ସବୁ କହିଗଲି ସେ ସମସ୍ତ ମିଥ୍ୟା । ତେବେ... ? ମୁଁ କଥା ବଦ୍ଳେଇ କହିଲି, "ଯେଉଁମାନଙ୍କୁ ଥରେ ମାତ୍ର ଦେଖିବାର ସମ୍ଭାବନା ଥାଏ, ତାଙ୍କ ବିଷୟରେ ତ ଗୁଜବ ଅନୁମାନ ଉପରେ ହିଁ ଧାରଣା କରିବାକୁ ପଡେ । ଉପାୟ କ'ଣ ? ସେମାନେ ତ ଆମ ଭଳି ଏମିତି ଖୋଲା ବହି ନୁହନ୍ତି ଯେ, ଯେ ମନ ସେ ତାକୁ ପଢିଯିବ !"

"ଆପଣ ବିସ୍ମିତ ହେବାର କାରଣ ଅଛି । ଆପଣଙ୍କର ସବୁଠାରୁ ଗୋପନୀୟ କଥା ମୁଁ ଜାଣିଲି କେମିତି, ଆପଣ ବୁଝିପାରୁନାହାନ୍ତି; ଆହତ ହେବାର କାରଣ ବି ଅଛି । ନିଜ ବିଷୟରେ ସମସ୍ତଙ୍କର ଖୁବ୍ ଗୋଟାଏ ଉଚ୍ଚ ଧାରଣା ଥାଏ । ଯଦି କେହି ତାକୁ ବୁଝେଇଦେଇ ପାରିଲା ଯେ ସେଭଳି କୌଣସି ମହତ୍ ଲୋକ ସେ ନୁହନ୍ତି, ତେବେ ସେ ଖପ୍‌ପା ହୋଇଯିବେ ।"

ମୁଁ ଅସୁସ୍ଥ ବୋଧ କଲି । "ହେଲା, ଆପଣ ଅନ୍ୟ ଜଣକୁ ତା' ଜୀବନର ସତ୍ୟଯାକ କହିଦେଇ ତାକୁ ଦୁର୍ବଳ କରିଦିଅନ୍ତି । ସେ ଆପଣଙ୍କ ଆଗରେ ପରାସ୍ତ ବୋଧ କରେ । ତା'ପରେ ହୁଏତ ତାକୁ ଅତି ସହଜରେ ଡରାଣ ଦେଖେଇ ଅର୍ଥ ଆଦାୟ କରାଯାଇପାରେ ।"

"ଠିକ୍ କହିଛନ୍ତି । ସେଇଟା ସାଧାରଣ କଥା । କିନ୍ତୁ ଜଣେ ଯଦି ଅସାଧାରଣରେ ବିଶ୍ୱାସ

କରେ, ଜଣେ ଯଦି ଚାହେଁ ଯେ ଭୁଲ କରୁଥିବା ମଣିଷଟି ସଚେତନ ହେଉ, ନିଜକୁ ଟିକିଏ ଦେଖି ଶିଖ, ତେବେ ତ ଉଦ୍ଦେଶ୍ୟ ସଂପୂର୍ଣ୍ଣ ଭିନ୍ନ ହୋଇଗଲା ।"

"ଅବଶ୍ୟ!" ମୁଁ ଅନେକ ଆଶ୍ୱସ୍ତ ବୋଧକଲି ।

"ବାବାଜିବାବୁ! ଆପଣଙ୍କ ଜୀବନର ସବୁ ଅନ୍ଧାର-ଆଲୁଅ ଭିତରେ ଆପଣ ଚାହିଁଛନ୍ତି ମଣିଷ ସୁଖଦୁଃଖର କାହାଣୀ ଲେଖିବାକୁ । ଆପଣ ସେମିତି ଅସୁବିଧାରେ ପଡି ସାମ୍ବାଦିକତା କରନ୍ତି ସତ; କିନ୍ତୁ ବହୁବାର ଆପଣ ଚାହିଁଛନ୍ତି, ଆପଣଙ୍କ ଆଗରେ ହସି ହସି ମୁଖସ୍ଥ ପ୍ରଶ୍ନର ମୁଖସ୍ଥ ଉତ୍ତର ହେଉଥିବା ମହାମାନ୍ୟ ଜନନେତାଟିର ମୁଖା ଫିଟାଇ ଦେଖିବାକୁ । ଆପଣଙ୍କର ଦୃଷ୍ଟି ନାହିଁ; ହୁଏତ ସାମର୍ଥ୍ୟ ନାହିଁ । କିନ୍ତୁ ତଥ୍ୟ ଯୋଗାଇଦେଲେ ଆପଣ ଚମତ୍କାର ଲେଖିପାରନ୍ତେ । ...ମୁଁ ଆପଣଙ୍କୁ ସେଥିପାଇଁ ବାଛିଛି । ଆପଣ ଯେକୌଣସି ବ୍ୟକ୍ତି ବିଷୟରେ ଜାଣିବାକୁ ଚାହିଁଲେ ଆପଣଙ୍କୁ ଟିକିନିଖି ସବୁ ମିଳିଯିବ, ସବୁ ଦିଶିଯିବ! ଆପଣ ପ୍ରତ୍ୟେକଥର ସତ୍ୟର ଆବିଷ୍କାର କଲାବେଳେ ଆଶ୍ଚର୍ଯ୍ୟ ହେଉଥିବେ । ବୁଝିପାରୁଥିବେ ଯେ ଉପରେ ଯାହା ଦିଶେ, ଭିତରେ ସତ୍ୟ ସହିତ ତା'ର ଆଦୌ ସମ୍ପର୍କ ନାହଁ । ...ଏଇ ଧରନ୍ତୁ ମୋ ଚେହେରା! ମୋ ନାଁ – ଏଥିରୁ ଆପଣ କ'ଣ ଜାଣିପାରିବେ ? ମୋ ଆଚରଣର କେତେ ଅବା ଆପଣ ଦେଖିଛନ୍ତି ମୋତେ ବୁଝିବା ପାଇଁ ?"

ସେ ଇତସ୍ତତଃ କଲା । ମୋତେ ଚାହିଁ କିଞ୍ଚିତ୍ ହସିଲା । କିଛି କହିଲା ନାହିଁ ।

ମୁଁ ତାକୁ ଚାହିଁରହିଲି ଏକାଲୟରେ!

ସେ ଆସ୍ତେ ଆରମ୍ଭ କଲା, "ମୁଁ କ'ଣ କରିଛି, ସେଗୁଡାକ ଆପଣଙ୍କୁ କହି କିଛି ଲାଭ ନାହିଁ । ସେଥିରେ ଆପଣ ବରଂ ଉତ୍ତ୍ୟକ୍ତ ହେବେ । ଆପଣ ମୋ ବିଷୟରେ ଯାହା ଶୁଣିଛନ୍ତି, ଧରନ୍ତୁ ସେସବୁ ମୁଁ କରିଛି । ତା'ଠାରୁ ଆହୁରି ଅନେକ ହୁଏତ କରିଛି । ସେଇଟାରେ କ'ଣ ନୂଆ କଥା ଅଛି ? ଏମିତି କ'ଣ ଡକେଇତ ସର୍ଦ୍ଦାର କିମ୍ବା ଆଡବାଯ୍ଡା କୋଟିପତି ବିଷୟରେ ଆପଣ ଶୁଣିନାହାନ୍ତି ? ମୋ ପାଖରେ ଅସଂଖ୍ୟ ଡକେଇତି ଗଳ୍ପ ଅଛି, ଆପଣ ଲେଖିଲେ ସରିବ ନାହିଁ । ମୁଁ ବହୁ ଡକେଇତଙ୍କୁ ଜାଣେ – ଚିହ୍ନା-ଅଚିହ୍ନା ଅନେକ! ମୁଁ ସମସ୍ତଙ୍କୁ ଦେଖାଦେଇଛି । ଏମିତି ନିରୋଳା ରାତି ମୋ ପାଇଁ ପ୍ରଶସ୍ତ ସମୁଦ୍ର । ଏଥିରେ ମୋ ଯିବା ଆସିବା ଖୁବ୍ ସହଜ ମନେହୁଏ । ମୁଁ ସେମାନଙ୍କୁ ତାଙ୍କ କଥା ଶୁଣାଇଦେବାରେ ସେମାନେ ଉତ୍କ୍ଷିପ୍ତ ହୋଇଛନ୍ତି । ମୋତେ ଗୁଳି କରିଦେବାକୁ ଚାହିଁଛନ୍ତି । ମୁଁ ତାଙ୍କୁ କହିଛି ଯେ, ତାଙ୍କର ଟିକିନିଖି ଖବର ନଥିଖାତାରେ ଚଢି ରହିଛି । ମୁଁ ମରିବା ପରଦିନ ପ୍ରମାଣ ସହ ରାଷ୍ଟ୍ର କରି ଦିଆଯିବ । ସେମାନେ ବନ୍ଧା ବାଘ ପରି ଗର୍ଜିଛନ୍ତି । ମୁଁ ସେମାନଙ୍କୁ ହସି ହସି କାନ୍ଦିବାର, କାନ୍ଦି କାନ୍ଦି ହସିବାର ଦେଖିଛି । ସେମାନେ ପ୍ରଳାପ କରିଛନ୍ତି । ମୋ ପାଖରେ ମହଜୁଦ ଅଛି । ନିଶୁଣିର ସବା ଉପରେ ଧାପରୁ ସବା ତଳ ଧାପ ପର୍ଯ୍ୟନ୍ତ ଯାହା କଥା ଚାହିଁଲେ ମୁଁ ବଖାଣି ଯାଇପାରେ ।"...

ମୁଁ ଚିତ୍ରପ୍ରତିମା ପରି ତାକୁ ଚାହିଁ ବସିଥାଏ ।

ସେ ପୁଣି ଟିକିଏ ହସିଲା । କହିଲା ମୋର କିନ୍ତୁ ଏବେ ବି ଇଚ୍ଛା ହେଉ ନାହିଁ! କାହାକଥା

କହିଦେବାକୁ । ମୁଁ ଜଣକୁ ତା' ନିଜକଥା କହିଦେବାରେ ସିନା ଆପତ୍ତିନାହିଁ ! ...ଧରନ୍ତୁ ଆପଣ ଜଣେ ପଦସ୍ଥ ବ୍ୟକ୍ତି; ସବୁ ସଭାରେ ଆଗ ଧାଡିରେ ବସିବା ଲୋକ । ମୁଁ ଆଉ ଜଣେ କାହାକୁ କେମିତି କହିପାରିବି ଯେ, ବାବାଜିବାବୁ ଦିନେ କାର୍ତ୍ତିକ ମାସରେ ସକାଳୁ ତାଙ୍କ ସାଙ୍ଗର ଜାମାଟିଏ ଚୋରେଇ ପିନ୍ଧିଥିଲେ ବୋଲି । ଲୋକଗହଳି ଭିତରେ ଲୁଚି ଲୁଚି ବୁଲୁଥିଲେ । ମନ୍ଦିରରୁ ମନ୍ଦିରକୁ ଦଉଡୁଥିଲେ ପୁଣ୍ୟ ଅର୍ଜୁଥିବା ଲୋକଙ୍କ ଆଡୁଆଳରେ । ପିଲାଦିନେ ଏହି ଛୋଟିଆ ପାପଟିଏ କରିଛନ୍ତି । ପରେ ଯା'ଠାରୁ ଅୀକେ ବଡ ପାପଗୁଡିଏ ଲୁଚି ଲୁଚି କରିଛନ୍ତି । ମୁଁ କ'ଣ ଚାହେଁ ଆଉ କେହି ତାଙ୍କୁ ଏଇଠି ବିଚାର କରୁ ଏବଂ ଦଣ୍ଡ ଦେଉ ! ଯେ ବିଚାର କରିବେ ତାଙ୍କୁ କ'ଣ ମୁଁ ଜାଣିନାହିଁ ? ମୁଁ ଯାହାକୁ ଜାଣିଯାଏ, ମୋତେ ଲାଗେ ମୁଁ ତା'ଠାରୁ ଭିନ୍ନ ନୁହେଁ । ମୁଁ ହିଁ ନିଜେ ସେଇ ଲୋକଟି । ପାପ ଅପେକ୍ଷା ତା'ର ଅସହାୟତା, ତା'ର ଗରିବପଣ, ତା'ର ପିଲାଳିଆମି ମୋତେ ବିଚଳିତ କରିପକାଏ । ...ଦଣ୍ଡ କ'ଣ ଦବ ଏ ମଣିଷଟିକି ? ଦୟାକର !...ତାକୁ ଜାଣିଯାଅ ଏବଂ ଦୟାକର, ତାକୁ କ୍ଷମା କରିଦିଅ ! – ସେଥିପାଇଁ ମୁଁ ଡକେଇତମାନଙ୍କୁ ଛାଡିପାରେ ନାହିଁ । ତାଙ୍କ ଭିତରୁ ପ୍ରତ୍ୟେକଟିକୁ ମୁଁ ଜାଣିଛି, ତାକୁ ବୁଝିଛି । ସେମାନେ ମୋ ଉପରକୁ ଆଉଜି ପଡିଛନ୍ତି । ମୁଁ ତାଙ୍କୁ ଖୁବ୍ ଆପଣାର ମନେ ହେଉଚି ବୋଧହୁଏ । ...ଯେଉଁମାନେ ମୁଖାଟିମାନ ପିନ୍ଧି ତା' ଭିତରେ ଝାଳଉଛନ୍ତି, ତାଙ୍କୁ ବି ଜାଣିଛି – ସବୁଗୁଡିକ ଅପରାଧୀ – ଛୋଟ, ବଡ, ଗୁରୁତର ! – ତେବେ କ'ଣ କରାଯାଏ ? ମୁଁ ନିଜେ ଏଇ ସମସ୍ତଙ୍କ ଭିତରେ ନିଜକୁ ବାଣ୍ଟି ଦେଇଛି । ମୁଁ ସେମାନଙ୍କୁ ମୋ ଢଙ୍ଗରେ ଭଲପାଇଯାଇଛି । ମୁଁ ଭାବିଛି, ଏ ସମସ୍ତେ ମୁଁ ନିଜେ ! ମୁଁ ଗୋଟି ଗୋଟି କରି ଆପଣଙ୍କୁ ମୋ କଥା କହିଯିବି । ଆପଣ ଚାହିଁଲେ ଲେଖନ୍ତୁ ବା ଆଉ କାହାକୁ କହନ୍ତୁ । ମୋର ସବୁକଥା ଶୁଣିବାକୁ ଆପଣଙ୍କୁ ବେଳ କାହିଁ ? ଏମିତି ରାତିରେ ଘଣ୍ଟାଏ ଘଣ୍ଟାଏ ବଖାଣି ଯାଇପାରେ ।

ମୁଁ ସମ୍ମୋହିତ, ନିଶ୍ଚଳ ହୋଇ ବସିଥାଏ ।

ସେ ଟିକିଏ ହସିଦେଇ ଠିଆହେଲା । ବୁକୁ ଉପରେ ଡାହାଣ ହାତ ରଖି ଦରାଣ୍ଡି ଆଣିଲା । ହାତରେ ତା'ର ପଚ୍‌ପଚ୍ ରକ୍ତ । ତା' ହାଫ୍ ସାର୍ଟଟି ରକ୍ତରେ ଜୁଡୁବୁଡୁ । ମୋ ଚେତନା ଥରଥର ହୋଇ କମ୍ପିଉଠିଲା । ଅଙ୍ଗ ଟଳିବା ପୂର୍ବରୁ ସେ ଉଦାସ ହସଟିଏ ଭିତରେ କହିଲା, "ମୋର ଏମିତି ସବୁଥର ହୁଏ ।"

ସେ ପଛକରି ସେମିତି ନିଃଶବ୍ଦରେ ଚାଲିଗଲା । ବାହାରେ ଜହ୍ନରାତିର ପାଣିଖିଆ । ମୁଁ ବୋଧହୁଏ ସେ ଚୌକି ଉପରେ ହିଁ ଶୋଇଗଲି । ଆଖି ଫିଟେଇଲା ବେଳକୁ ଥମ୍ ଥମ୍ ସକାଳ । ଫୁଲବଗିଚାରେ ବୁଢା ମାଳୀର ଖୁସୁର୍ ମୁସୁର୍ ଚାଲି । ଗଛ ଉପରେ ନିରୋଳା ବଣି ଚଢେଇର ଡାକ ।

ଗୋଡହାତ ପଥର ପରି ଭାରୀ ଲାଗୁଥାଏ । ଟିକିଏ ଚା ପିଇଦେଇ ମୁଁ ସେମିତି ପଡିଥାଏ । ସାଇକଲରେ କିଏ ଜଣେ ଆସି ଖବରକାଗଜଟାଏ ଫିଙ୍ଗି ଦେଇଗଲା । ମୋର ଜମା ଇଚ୍ଛା ନ ଥିଲା ପଢିବାକୁ । ଦୈବାତ୍ ପ୍ରଥମ ପୃଷ୍ଠାର ବଡ ହରଫ୍ ଉପରେ ଆଖିପଡିବାରୁ ମୁଁ ଗୋଟେଇ

ଆଣି ପଢ଼ିଲି :

"ସିଦ୍ଧନାଥ ବୋଲାଉଥିବା ରହସ୍ୟଜନକ ସର୍ଦ୍ଦାର ପୋଲିସ ଗୁଳିରେ ନିହତ ।"

ମୁଁ କିଛି ସମୟ ନିଃଶ୍ୱାସ ନେଇପାରିଲି ନାହିଁ । ମୋର ସାରା ପିଣ୍ଡ ଦୋହଲିଗଲା । ପଢ଼ିଗଲି ସୋମବାର ସନ୍ଧ୍ୟାର ଘଟଣା ! – ତା'ହେଲେ...

ଏବେ ବି ମୋ ଦେହ ଶୀତକଣ୍ଟା ମାରିଯାଉଛି । ଦିଶିଯାଉଛି ସିଦ୍ଧନାଥର ବୁକୁର ରକ୍ତ । ରକ୍ତରେ ପଚ୍‌ପଚ୍ ହାତ ପାପୁଲି । ମୋର କିନ୍ତୁ ବିଶ୍ୱାସ ଅଛି ଯେ, ଅଶିଣ ମାସର ଜହ୍ନପକ୍ଷ ରାତିରେ ସେ ଅବଶ୍ୟ ଆସି ମୋତେ ତା'ର ସବୁକଥା ଗୋଟି ଗୋଟି କରି ବଖାଣିଯିବ । ସେ ରାତିରେ ମୋତେ ଯାହା କହିବ, ମୁଁ ସ୍ଥିର କରିଛି, ସୂର୍ଯ୍ୟୋଦୟ ବେଳଖୁ ମୁଁ ତାକୁ ଲେଖିଦେବି । ଅସଂଖ୍ୟ ସତ୍ୟର ପଦ୍ମଫୁଲ ।

ମୁଁ ତାପସୀକୁ କହିଛି ସିଦ୍ଧନାଥ ଆସିବ ବୋଲି । ସେ ଅଗାଧ ବିଶ୍ୱାସରେ ଅପେକ୍ଷା କରି ବସିଛି ।



# ସେମାନେ ସେଭଳି ଯାଆନ୍ତି

କେତେ ହିମ୍ମତ ସତେ! ଏ ପାହାଡଟାକୁ ସେ ପାହାଡ ସାଙ୍ଗରେ ସେମାନେ ଯୋଡିଦେବେ? ରୋଧିଦେବେ ମତୁଆଲା ହାତୀଯୂଥ ପରି ଏ ଅଥଳ ଜଳର ପ୍ରବାହକୁ? ଏଇଠି ଆସି ପାହାଡେ ଉଞ୍ଚ ପାଣି ଠିଆହୋଇଯିବ? – ଧେତ୍, ଏଗୁଡା ସବୁ ମିଛ! ବାହାପିଆ ଢମକୁହା ଅଫିସରବାବୁଯାକ ତୁଚ୍ଛାରେ ରାବ କରି ଡରଉଛନ୍ତି!

ନଈକୂଳର ଉଞ୍ଚ ପଥର ଉପରେ ସେଦିନ ଠିଆହୋଇ ଚାହିଁଥିଲା ଶୁଧୁ। ଦୁଇ କାନ୍ଧରେ ଭାର ବାହୁଙ୍ଗା ପରି ଧରିଥିଲା ତା'ର ଭେରୁକାଠର ବାଡିଟାକୁ। ତା' ଆଖିରେ ଅବିଶ୍ୱାସ, ଚାଞ୍ଚଲ୍ୟ, ଭୟ! ଧର, ଯଦି ଏସବୁ ସତ ହୋଇଯାଏ!...ସତକୁ ସତ ଯଦି ପାହାଡ ଉଞ୍ଚ ପାଣି ଜମିଯାଏ ଏଇଠି...ବାପରେ...ଶୁଧୁକୁ ପାଣିରେ ବୁଡିଗଲା ପରି ଅଣନିଃଶ୍ୱାସୀ ଲାଗିଲା। ସେ ଆଖି ମଟମଟ କରି ଚାହିଁଦେଲା ବର୍ଷାପାଣିରେ ଗୋରୁମାଟିଆ ଦିଶୁଥିବା, ଗୁମ୍‌ଗୁମ୍ ଗର୍ଜୁଥିବା ସେ ନଦୀକୁ। ...ଆବ୍‌ବେ ଯା' ଯାକୁ ସେମାନେ ବନ୍ଧ ପକେଇ ବାନ୍ଧିବେ – ପଥରେ ନା ଲୁହାରେ?

ନଦୀ ଉପରେ ତା'ର ଅଗାଧ ବିଶ୍ୱାସ ଫେରିଆସିଲା। ସେ ଓହ୍ଲେଇ ଆସିଲା ପଥର ଉପରୁ। ପୁରୁଣା ଅଭ୍ୟାସରେ ଚାରିଟି ସାଉଁଳିଆ ଚେପ୍‌ଟା ବାଲିଗରଡା ଗୋଟେଇଲା। ସେଇଠି ଆଉ ଦଶ ପନ୍ଦର ଦିନ ବର୍ଷା ପରେ ପାଣି ମାଡିଯିବା କଥା ତାକୁ ଜଣାଥିଲା। ଶୁଧୁ ଜାଣେ ସେ ନଈକୁ। ସବୁଠାରୁ ତାକୁ ଭଲଲାଗେ ଖରାଦିନ ସଞ୍ଜ ଅନ୍ଧାରରେ ତା' ନିର୍ମଳ ଧାରରେ ବୁଡିଲାବେଳେ; ଉପର ତାତି ତଳେ ପ୍ରସ୍ତ ପ୍ରସ୍ତ କାକର ପାଣିକୁ ଓହ୍ଲେଇଲା ବେଳେ, ନଈ ତା' ପାଦତଳୁ ସିର୍ ସିର୍ ବାଲି ଟାଡି ନିଏ, ତାକୁ ସଲସଲ କରେ। ସେ ଖୁସିରେ ପାଣି ପିଟି ଉଧୁଳେ।

ସେ ବାଲିଗରଡାଗୁଡିକୁ ହାତରେ କିଟିର୍ କିଟିର୍ ମକଚିଲା। ସେଥିରୁ ଗୋଟାକୁ ବାଛି ଚାହିଁଲା ନଈକୁ। ନାକପୁଡା ଫୁଲେଇ ଜିଦ୍ କଲା ନଈ ସାଙ୍ଗରେ 'ମୁଁ ଏଥର ପାରି କରିଦେବି ତତେ।' ସେ ସେମିତି ସହସ୍ରେ ଥର ଟେକା ମାରିଛି। ଅନେଇ ରହିଛି ଆକାଶରେ ସର୍‌ସର୍ ଉଡିଯାଉଥିବା ସାଉଁଳିଆ ଗୋଡିଟିକୁ। ସବୁଥର ଟୁବ୍‌କିନା ପାଣିଧାରରେ ପଡିଯାଇଛି ବାଲିଗରଡା।

...ଇସ୍, କାହିଁ କେତେ ବାଟ ତାହେଲେ ଆରକୂଳ! ପଡିଲାଠଉ ଗୋଟେଇ ଗୋଟେଇ ଦଶଥର ଫିଙ୍ଗିଲେ କେଜାଣି ଅବା ଆରପାରି ଛୁଇଁହେବ !...ତଥାପି ସେ କେବେ ସମ୍ଭାଳି ପାରେ ନାହିଁ। ଦୁଇଚାରିଟା ଗୋଡ ନିଶ୍ଚୟ ଫିଙ୍ଗେ । ଆଉ ସେ ଉଞ୍ଚ ପଥର ଉପରୁ ନଇଁପଡି ପାଣିଧାରକୁ ଛେପ ପକାଏ । ଅନେଇଥାଏ ପବନରେ ପହଁରି ପହଁରି କେମିତି କେତେ ଦୂରରେ ପାଣିରେ ସେଇଟା ପଡେ, ଆଉ ସେଇଠୁ ଭାସିଯାଏ! ଶୁଧୁ ସେଦିନ ଡେର୍ ବେଳଯାଏଁ ଟେକା ଫିଙ୍ଗିଲା । କୁସି ନାହିଁ କି ଜିଦ୍ ନାହିଁ; ଏମିତି ଖାଲି ଅନ୍ୟମନସ୍କ; ଉଦାସ ଢଙ୍ଗରେ ପାଖକୁ ଦୂରକୁ ଫିଙ୍ଗିଲାଗିଥାଏ ଛୋଟ ବଡ ଅନେକ ଗୋଡି ।

ସେ ଗାଁକୁ ଫେରିଲା ବେଳକୁ ହୁରି ପଡିଗଲାଣି । ସମସ୍ତେ ଗୋଛା ଗୋଛା ହେଇ କଥା ହେଉଥାନ୍ତି । ପାଖ ଗାଁରେ କୁଆଡେ ନୋଟିସ୍ ଲାଗିଗଲାଣି । ସମସ୍ତଙ୍କୁ ସେ ଚଞ୍ଚଳ ଛାଡିଯିବାକୁ ହେବ । ଦୁଇ ପାହାଡର ତେମା ତଳେ ଗୁମ୍‌ସୁମ୍ ଘୁମଉଥିବା ଦୁଇଶହ ଗାଁକୁ ପାଣିରେ ବୁଡେଇବାକୁ ହେବ – ନହେଲେ କୁଆଡେ ନଈ-ତଳମୁହାଁ ଗାଁଗଣ୍ଡା ସହର ଭାସିଯିବ!

ଏଠା ଲୋକଙ୍କୁ ଉପାଡି ନେଇ ଧାନଗଛ ପରି ଅନ୍ୟ ଜାଗାରେ ରୋପି ଦିଆଯିବ । କିନ୍ତୁ କୁଆଡେ ସେ ନୂଆ ଜାଗା ? ସେ କ'ଣ ଏ ଗାଁ ଭଳି ସୁନ୍ଦର ? ଏମିତି ଜମି ? – ଏମିତି ପାଣି ପବନ ?...

ଦିନ ସାରା ଏଇଭଳି କଥା ଶୁଣି ଶୁଣି ଶୁଧୁ ରାତିରେ ପଧାନ ଘର ପିଣ୍ଡାରେ ଶୋଇପଡିଲା । ତାକୁ ଭଲ ନିଦ ହେଲା ନାହିଁ । ଗାଁଦାଣ୍ଡରେ ଖାଲି ପାଦରେ ଅନେକ ଲୋକ ଚାଲିଲା ପରି ତାକୁ ଶୁଭିଲା । ନଈପାଣି ଛାତି ଉପରେ କଳକଳ ହେଲା ପରି ଶୁଭିଲା । ଉବେଇ ଟୁବେଇ ହୋଇ ସେ କେତେଥର ଉଠି ବସିଲା ! ଡରିଲା ପରି କାନେଇ ରହିଲା । ଗାଁ ସେ ମୁଣ୍ଡରୁ ଗାଈଟାଏ ହମ୍ବାରଡି ଦେଲା । କାହା ଘର ପିଲାଟିଏ ରାହାଟେକି କାନ୍ଦିଲା । ତାକୁ ଡର ମାଡିଲା । ସେ ଛନକା ହେଲା ପରି ଚାହିଁଲା ଏଣେତେଣେ । ତାକୁ ଲାଗିଲା ଯେ ସେ ଗାଁ ଆଉ ରହିବ ନାହିଁ । ସେଇଠି କେହି ରହିବେ ନାହିଁ । ଶୁଧୁ ସେ ନଈକୂଳିଆ ଗାଁଟାର ଏମୁଣ୍ଡରୁ ସେମୁଣ୍ଡ ସବୁ ମନେପକେଇଗଲା । ...ସେ ବରଗଛ, ସେ ପଡିଆ, ସେ ଧାନକ୍ଷେତ, ସେ କମାରଶାଳ । ଏ ସବୁ ଅକାତକାତ ପାଣିରେ ବୁଡିଯିବ ? ତାକୁ ଲାଗିଲା, ତା' ମା' ପୁଣିଥରେ ମରିଯାଉଛି । ତା' ଭିତର ବିଦାରି ହୋଇଗଲା । ସେ ଚାହିଁଲା ପାଟିକରି ସେମିତି ରାହାଟେକି କାନ୍ଦିବାକୁ ।

ଶୁଧୁ ଅନ୍ଧାର ଥାଉ ଥାଉ ଚାଲିଗଲା ନଈଆଡେ । କେତେ ପ୍ରକାରେ କେତେଆଡୁ ସେଦିନ ସେ ମେଘୁଆ ସକାଳଟାରେ ସେ ତା'ର ପରିଚିତ ଗାଁକୁ ଅପରିଚିତ ଭଙ୍ଗୀରେ ଦେଖିଲା । ତାକୁ ଲାଗିଲା ଯେ ସବୁ କେମିତି ମାଡିପଡିଲା ପରି ଓହଳି ରହିଛି । ହାଣ ଖାଇବାକୁ ଥିବା ଛେଳି ମୁଣ୍ଡ ପରି ଗାଁଟା ନଇଁପଡିଛି ନଈମୁହାଁ । ଶୁଧୁଟା ଛୋଟ ଟାଙ୍ଗିଆଟିରେ ଆଖପାଖ ଗଛମାନଙ୍କରେ ଚେଟେ ଲେଖା ହାଣି ଦେଇଗଲା । କାରଣ କିଛି ନାହିଁ । ତାକୁ ହୁଏତ ଭୋକ କରୁଥିଲା । ସେ କେମିତି ଟିକିଏ ଚିଡିଯାଇଥିଲା ।

ଏତିକି ବେଳେ ତାକୁ ନୂଆ ଶବ୍ଦଟାଏ ଶୁଭିଲା । ବହୁ ଦୂରରୁ ଗୋଟାଏ ଟ୍ରକ୍ ବୋଧହୁଏ ଆସୁଥିଲା । ସେ ଗାଁ ମୁଣ୍ଡେ ଯାଇ ପହଞ୍ଚିଲାବେଳକୁ ସତକୁ ସତ ଗୋଟାଏ ରାହୁଆ ଟ୍ରକ୍ ଆସି ଠିଆହୋଇଥାଏ । ତା' ଭିତରୁ ଯୋଡାଏ ଦାଢିଆ ବାଘା ପଞ୍ଜାବୀ ଓହ୍ଲେଇଲେ । ଗୋଟାଏ ଖଦଡ ପିନ୍ଧା ମୋଟା ବାବୁ ଓହ୍ଲାଇଲା । ସେଇମାନେ କହିଲେ ଯେ ଗାଁ ପାଞ୍ଚବର୍ଷ ଯାଏଁ ଉଠିବ ନାହିଁ । ଲୋକେ ଧାଇଲେ ଘରିଆଡୁ । ସେମାନେ ହସି ହସି ସେଇ କଥା କହିଲେ । ଆସ୍ତେ ଆସ୍ତେ ବୁଝେଇଦେଲେ । ପାହାଡରୁ ପାହାଡକୁ ଆଙ୍ଗୁଠି ଦେଖେଇ କହିଲେ, "ଇଏ କ'ଣ ଛୋଟିଆ ହୁଡାଟିଏ ହେଇଚି କି ? – ଏମିତି କୋଡିଏଟା ପାହାଡ ଏ ମଝିରେ ଗଦାକଲେ ଏ ଘାଇ ଯୋଡିହେବ । ତା' ଉତ୍ତାରୁ ନଈସୁଅ ବନ୍ଧାଯିବ । ପାଣି ଫୁଲିବ । ସେ ଯାଇ କେତେ କାଳ କଥା ।" ଲୋକଙ୍କୁ ଲାଗିଲା ତାଙ୍କୁ ନୂଆ ଜୀବନ କିଏ ଦେଇଦେଲା । ଓଃ...ପାଞ୍ଚବର୍ଷ ତ, ଆଗ ସେମାନେ ନିଃଶ୍ୱାସ ମାରିବେ । ସେମାନେ ସେ ଟ୍ରକ୍‌ବାଲାଙ୍କୁ କେତେ ଆଦର ଗୌରବ କଲେ । ବିଶ୍ୱାସରେ ଖାଇବା ପିଇବାକୁ ଦେଲେ ।

କଥା ପୁଣି ଉଠିଲା । ଏ କାମରେ କୋଟି କୋଟି ଟଙ୍କା ବୁଣାହେବ । ହଜାର ହଜାର ଲୋକ କାମରେ ଲାଗିବେ । ଦିନଟେ ମାଟି ପକେଇଲେ ପାଞ୍ଚଟଙ୍କା ମିଳିବ । ଇସ୍, ପାଞ୍ଚଟଙ୍କା ! ଶୁଧୁ ଭଲ କରି କାନେଇଲା – ମାସକୁ ପାଞ୍ଚଟଙ୍କା ନା ଦିନକୁ ? ଜୋର୍‌ଦେ ଯେତେବେଳେ ମୋଟା ଖଦଡିଆ ବାବୁ କହିଲା, "ଆରେ ଦିନକୁ । ସବୁଦିନ ସଞ୍ଜରେ ଜଣପିଛା ପାଞ୍ଚଟଙ୍କା ମୂଲ ଗଣିଦିଆଯିବ ।" ଶୁଧୁ ନିଃଶ୍ୱାସଟିଏ ଭିତରେ ସ୍ଥିର କରିନେଲା ଯେ ସେ ଯିବ ମାଟି ବୋହିବାକୁ । ହୁଡା ପକେଇ ଏ ପାହାଡକୁ ସେ ପାହାଡ ସାଙ୍ଗରେ ଯୋଡିବ ।

ଟ୍ରକ୍ ସେଦିନ ଉପରଓଳି ଆଖପାଖ ଗାଁରୁ ଗଜା ଭେଣ୍ଡିଆ ଆଉ ସମର୍ଥ ଟୋକୀମାନଙ୍କୁ ବୋଝେଇ, ଧୂଳି ଉଡେଇ ବାହାରିଗଲା ପୂର୍ବଦିଗକୁ । କହିଲା ପୁଣି ଆସିବ ବୋଲି ।

ଗାଁ ଛାଡି ଆସିବାରେ ଶୁଧୁର ଦୁଃଖ ନାହିଁ; କିନ୍ତୁ ନିରୋଳା ରାତିରେ ତାକୁ ବେଳେବେଳେ, କେମିତି ଅସୁସ୍ଥ ଲାଗେ । ସେ କାମରେ ତାକୁ ଭୁଲିବାକୁ ଚେଷ୍ଟା କରେ । ତା'ର ସରୁ ଗଣ୍ଡିଆରେ ଟଙ୍କା ଖୁନ୍ଦି ହୋଇଯାଇଥାଏ । ତା'ର ଇଚ୍ଛା ଦିନେ ଫିଟେଇ ନୋଟ ଟଙ୍କାତକ ସମତୁଲ କରି ସେ ନିଶୁଆ ବିହାରୀ ପରି ରବର ଫିତା ବାନ୍ଧିବ । ତାକୁ ବେଳ ମିଳେ ନାହିଁ । ଧାଡି ଧାଡି କୁଡିଆ ଘର ଭିତରେ ସେମାନେ ଦୁଇଶ ପାଖାପାଖି ମଜୁରିଆ ପିଲାପିଲି ଧରି ରହିଥାନ୍ତି । ସଞ୍ଜ ହେଲେ ଏକାଠି ଧାଡି ହୋଇ ଚୁଲି ଜଳେ । ଫୁଟିଆସୁଥିବା ଭାତର ବାସ୍ନାରେ ଦଳ ଦଳ ହୋଇ ସେମାନେ ବିଭୋର ହୋଇ ଗୀତ ଗାଆନ୍ତି । ଏଣୁତେଣୁ ଭତା ଖବର ପ୍ରଚାର ହୁଏ । ମୋଟା ନିଶୁଆ କାମଦାର୍‌କୁ ସମସ୍ତେ ଥଟ୍ଟା କରି ହସି ହସି ଗଡିଯାଆନ୍ତି ।

ଶୁଧୁ ଏକୁଟିଆ ରାନ୍ଧି ଖାଏ । ଜହ୍ନପକ୍ଷ ରାତିରେ ତା' ନିଦ ଚଞ୍ଚଳ ଭାଙ୍ଗିଯାଏ । ସେ କୁଡିଆ ବାହାରେ ଆସି ଠିଆହୁଏ । ଘୁମଉଥିବା ପାହାଡକୁ ଚାହେଁ । ସେମାନେ ଗଢୁଥିବା ମାଟି ହୁଡାକୁ ଚାହେଁ । ତା' ଭିତରେ କ'ଣ ସବୁ ଗୁରାଣ୍ଡି ହୋଇଯାଏ । ନିସ୍ତବ୍ଧ ରାତିରେ ତାକୁ ଶୁଭେ ନଦୀର

ଗର୍ଜନ । ଖାଲି ପାଦରେ ଧାଉଥିବା ମଣିଷଙ୍କ ଛପ୍ ଛପ୍ ପଦଧ୍ୱନି । ଆଖିରେ ମଟକା ନ ପକାଇ ସେ ଜହ୍ନ-ଆଲୁଅରେ ଶୂନ୍ୟକୁ ଚାହେଁ । ତାକୁ ଦିଶେ ଗାଁ ବରଗଛ, ସେସବୁ ଗଡାଣିଆ ଜମି; ସେ ନଈକୂଳ, ଏବଂ ଆଉ କେତେ କଥା । ସେ ଗାଁଟି ବୁଡିଯାଏ ଟଳମଳ ବଢି ପାଣିରେ । ଗୋଳିଆ ବହଳିଆ ଅକାଟ୍‌କାଟ୍ ପାଣି । ତା' ନିଃଶ୍ୱାସ ବେତାଳିଆ ଧରିଯାଏ । ସେ ଆଖିମିଟିକା ମାରି ମାଟିହୁଡାକୁ ଚାହେଁ । ସେ ନିଜେ ମାଟି ପକେଇ ସବୁଦିନ ତାକୁ ଉଚ୍ଚ କରୁଛି । ଶୁଧୁ ଏ ପାହାଡକୁ ସେ ପାହାଡ ସାଙ୍ଗେ ଯୋଡିବ । ନଈପାଣି ବାନ୍ଧିଦେବ । ସେ ବୁଡେଇବ ତା' ଜନ୍ମମାଟିକୁ । ତାକୁ ଅସୁସ୍ଥ ଲାଗେ । ସେ କୁଡିଆ ଭିତରୁ ମେଲା ତାଟି ଫାଙ୍କରେ ଚାହିଁରହେ ବୁଡିଯାଇଥିବା ଜହ୍ନକୁ । ଭାରି ମନହୁଏ ସକାଳୁ ଉଠି ଚାଲିଯିବା ପାଇଁ; କିନ୍ତୁ ପାହାନ୍ତିଆରୁ ଉଠି ସେ କାମକୁ ବାହାରି ପଡେ । ସେଥିପାଇଁ ବିହାରୀ ସର୍ଦ୍ଦାର ତାକୁ ସଦାବେଳେ ଡାକେ । ଶୁଧୁଟା ଭାରି କାମିକା ପିଲା ।

ଆର ପାହାଡ ଆଡୁ ସେମିତି ଶହ ଶହ କୁଲି ମଜୁରିଆ ମାଟି ହାଣି ହୁଡା କରୁଥାନ୍ତି । ଘାଇଁ ଘାଇଁ ଅସୁର ମାର୍କା ଟ୍ରକ ଗାଡି, ଡୋଜର୍ ଗାଡି ଲାଗୁଥାନ୍ତି । ବଡ ବଡ ଥଣ୍ଟିଆ କଳ ଗୋଟା ଗୋଟା ଟ୍ରକ୍‌କୁ ଶୂନ୍ୟରେ ଟେକି ନେଇ ଥୋଇଦେଉଥାନ୍ତି । କେତେ ପ୍ରକାର କାମ ଚାଲିଥାଏ! କେତେ ଦାଢିଆ ସର୍ଦ୍ଦାର, କେତେ ଦକ୍ଷିଣୀ ସାଇବ, କେତେ ଜିପ୍‌ଗାଡିଆ ବାବୁ ଆସି ତଦାରଖ କରନ୍ତି । ମାଟିକାମଟି ସବୁଠୁ ମୂଳକାମ; କିନ୍ତୁ ନିରସା କାମ । ଶୁଧୁ ଚାହିଁଲା ପଥରକାମ କରିବାକୁ । ବିହାରୀକୁ କହିବାରୁ ତାକୁ ସେ ଆଉଜଣଙ୍କୁ ପଇଠ କରିଦେଲା । କୋଡି କାଙ୍କ ଛାଡି ଶୁଧୁ ଧରିଲା ଗୋଟାଏ ବିରାଟ ଲୁହାର ମୁଦ୍‌ଗର । ବୁଲେଇ ପିଟିଲେ ଢିମା ପଥର ଫଟା ଫଟା ହୋଇ ମେଲା ହୋଇଯାଏ । ତା' ଭିତରୁ ଧୂଆଁ ବାହାରେ । ତାକୁ ନୂଆ ଲାଗେ, ଖୁସିଲାଗେ ।

ଦିନେ ଏମିତି ହାଟପାଳିରୁ ସେ ଚାହିଁଲା ଆରପାଖ କାମ ଦେଖିବାକୁ । ସେଠି ପହଞ୍ଚିଲା ବେଳକୁ କିଏ ଜଣେ ତାକୁ ନାଁ ଧରି ଡାକିଲା – 'ହେ, ଶୁଧୁ!'

ସେ ଚକମି ଚାହିଁଲା । ଡିଆଁ ମାରି ତା' ପାଖେ ପହଞ୍ଚି ତାକୁ କୁଣ୍ଢେଇ ଧଇଲା । 'ଆରେ, ତୁଇ ? ମହନା ?' ମହନା ବୁଢୀପଦର ଗାଁର ପିଲା । ଶୁଧୁ ସାଙ୍ଗରେ ନଈକୂଳରେ କେତେଥର ଦେଖାଦେଖି । ଶୁଧୁର ଗାଁ ସାନଟିକ୍ରା ମଶାଣି ପାଖରୁ ଚାହିଁଲେ ମହନା ଗାଁର ଯାଆଁଳା ଶାଳଗଛ ଦିଶେ । ତା' ପାଖକୁ କଇଠ ଗଛ ମଧ ଦିଶେ । ସେଠିକି ଶୀତ ଛାଡି ଆସିବା ବେଳକୁ ଶୁଧୁ ଯାଇ ପହଞ୍ଚିଛି କେତେ ଥର । ପାଚିଲା କଇଠର ଗମ୍‌ଗମ୍ ବାସ୍ନା ଗଛ ଚାରିଆଡେ ଘୁମୁରୁଥିବାର ସେ ଅନୁଭ କରିଛି ।

ମହନା କହିଲା, "ଆମ ଗାଁ ଲୋକେ ସବ୍ ପଳେଇଗଲେ । ଆଉ କେହି ନାଇଁ । ସବ୍ ଘର ଦୁଆର ଛାଡି ଚାଲିଗଲେ । ଆଉ ସାନ ଟିକ୍ରା ? – ସେମାନେ ବି ଏ ଦୁଇ ବରଷ ଭିତରେ ଚାଲିଗଲେ!" କାଇଁ ପାଞ୍ଚ ବର୍ଷ ଯାଏଁ ତ ପାଣି ମାଡିବାର ନାହିଁ! କାହିଁକି ସେମାନେ ଏତେ ତରତରରେ ଗାଁ ଛାଡିଦେଲେ ? – ଭାବିଲା ଶୁଧୁ ।

ତାକୁ ଦିଶିଲା, କେମିତି ଗାଁଦାଣ୍ଡରେ ବୋଝ ମୁଣ୍ଡେଇ ଭାର ଧରି ଶଗଡ ବୋଝେଇ କରି

ସମସ୍ତେ ଗଦା ହୋଇଥିବେ, କେମିତି ମୁକ୍ତା ମା' ବୁଢୀ ତା' ମୁଣ୍ଡା ଡିହ ଉପରେ ବସି ମାଟିକୁ ଦରାଣ୍ଡୁଥିବ, ସକସକ ହଉଥିବ । କେମିତି ଜଟିଆ ବୁଢା ବରଗଛ ମୂଳେ ହାତଯୋଡି ସବୁ ଦେବତାମାନଙ୍କୁ ସାଙ୍ଗରେ ଯିବାପାଇଁ ଡାକୁଥିବ । ଛିଟ ପିନ୍ଧି ସିନ୍ଦୂର ଲଗେଇ ବସିଥିବା ଛୋଟ ଛୋଟ ଦିଅଁମାନେ କେମିତି ଛାନିଆଁ ହେଇ ଚାହିଁଥିବେ ପିଲାଙ୍କ ପରି । ପିଲାଏ ବଡମାନଙ୍କ ଡରରେ ପାଟି କରୁନଥିବେ । ହେଲେ କୁରୁକୁରୁ ହସୁଥିବେ । ତାଙ୍କୁ ଲାଗୁଥିବ ଉତ୍ସବ ପରି । କନା ବୁଜୁଳାଟିଏ ମୁଣ୍ଡେଇ ସେ ଯେ ଆସୁଥିବ, ଶୁଧିର ଦୂବ ଉଠିଯାଇଥିବା ଡିହକୁ ଚାହିଁଦେଇ ଘୁଞ୍ଚି ଆସିଥିବ – ସେ ମାଳତୀ । ସେ ଫାସ୍‌କୁଣ୍ଡୀ, ହସ୍‌କୁରୀ, ଫୁଲେଇକୁ ମନେ ପଡୁ ପଡୁ ଶୁଧି ହଠାତ୍ ପଚାରିଲା, 'ଆଚ୍ଛା ମାଲ୍‌ତୀ ଚାଲିଆସିଲା ଗାଁ ଛାଡି ?'

ମହନା କିଛି ବୁଝି ନପାରି ପଚାରିଲା, "ମାଲ୍‌ତୀ କିଏ ?"

ଶୁଧି ମଟମଟ ଚାହିଁ ହସିଦେଲା । କହିଲା, 'ଏମିତି ଆମ ଗାଁର ଝିଅଟେ!'

ମହନା କହିଲା, 'ସବୁ ତ ଚାଲିଆସିଲେ; ସେ କେମିତି ରହିଥାନ୍ତା ? – ତା'ର ଘଇତା ସେଇଠି ଅଛି କି ?' କହିଦେଇ ହେଣ୍ଡେଡା ପରି ହି-ହି ହସିଲା । – ମହନା ଏବେ ବୋଧେ ଖୁବ୍ ବିଡି ଟାଣୁଚି । ସେଇଟା ତ କେମିତି; ମୂଳରୁ ବେହିଆଟାଏ । ଶୁଧିଠଉଁ ପାଞ୍ଚବର୍ଷ ବଡ; ହେଲେ ଶୁଧିକୁ ସେ ଭଲପାଏ । ତା' ଆଗରେ ନାନା ଭେସଡା କଥା କହେ । ଶୁଧି ତାକୁ ସେତେ ଭଲ ପାଏ ନାହିଁ ? ହେଲେ ଗାଁପିଲା । ଗାଁର ଖାଲ ଖମା କାଦୁଅ କ'ଣ ସେ ଭଲପାଏ ନାହିଁ ? ଥରେ ତା'ର ଭଙ୍ଗା କାନ୍ଥ ପାଖରେ ଜହ୍ନ ପକ୍ଷ ରାତିରେ ଘାସ ଉପରେ ସେ ଶୋଇଯାଇଥିଲା । କେତେ କେତେ ସ୍ୱପ୍ନ ତାକୁ ଦିଶିଲା । ତାକୁ ଲାଗିଲା ତା' ବାପ, ଗୋସେଇଁବାପମାନଙ୍କୁ ସେ କାନ୍ଥକୁ ଲାଗି ଠିଆହେବାର ଦେଖିଲା । ତା'ଘର, ତା' ଗାଁ ସତେ କେତେ ଆପଣାର, କେତେ ସୁନ୍ଦର!

'ଶୁଣ୍ ମହନା, ତୁ ଥଟ୍ଟା ମାନିଲେ କହିବି ନାଇଁ । ଆମ ଗାଁବାଲା କୁଆଡେ ଗଲେ ଟିକିଏ ଖବର ନବୁ । ତୁ ଏ ରାସ୍ତା ପାଖରେ ଅଛୁ । ଆମର ଆଉ ପାଖେ ରାସ୍ତା ନାଇଁ । ମୁଁ ସେମାନଙ୍କୁ ଥରେ ଦେଖିବି । ...ଆଉ...'

"ଆଉ କ'ଣ ?" ହସି ହସି କହିଲା ମହନା ।

"ଆଉ...ମୁଁ ଆଉ ଥରେ ସାନଚିକ୍ରାକୁ ଯାଇ ଦେଖିଆସିବି ।"

ମହନା ହସିଲା । "ଆରେ ଉଲ୍ଲୁ; କହ ମାଲ୍‌ତୀକୁ ଦେଖିବୁ, ତାକୁ ବାହା ହବୁ । ଏଆଡେ ସହରରେ ତାକୁ ନେଇ ଘର କରିବୁ ।"

ଶୁଧି କହିଲା "ଉହୁଁ" । ଘର ଆଉ କାହିଁ? ଏ ଛାଉଣି କ'ଣ ତୋର ଘର! ଏଇ କାମ ସରିଗଲେ ତ ତାକୁ ଭାଙ୍ଗିଦେବେ । ତଡେ ଖେଦି ଦେବେ । ସହର ପାଖେ ରହିଲେ ଏକା କଥା! – ଘର୍ କହିଲେ ଗାଁ! ଗାଁ ତ ନାଇଁ, ଘର କାହୁଁ ଆସିବ ?

ତାକୁ ଦିଶିଲା ପୁଣି ତା'ର ସେ ଘାସ ଉଠିଯାଇଥିବା ମୁଣ୍ଡା ଡିହ ଖଣ୍ଡ । ଭାରି ଇଚ୍ଛା ହେଲା ସେଇଠି କାନ୍ଥ ଟେକି ଦି'ବଖରା ଟେକିଦେବାକୁ । ସେ ଏକାକୀ କରିଦେଇ ପାରିବ । ଖାଲି ଛାତ

ବାନ୍ଧିଲା ବେଳକୁ ଯଦି ମାଲ୍‌ତୀ ତାକୁ ତଳ ପାଖୁ ଡୋର ବଢେଇଦିଏ ।

ମହନା ଶୁଧୁକୁ ସେ ପାଖ କାମ ଛାଡି ଏଆଡେ ଚାଲିଆସିବାକୁ ପ୍ରବର୍ତ୍ତେଇଲା । ଛାଇ ଲେଉଟାଣି ପର୍ଯ୍ୟନ୍ତ ସେମାନେ ବସି କେତେ କଥା ଗପିଲେ । ଶୁଧୁ ଫେରିଲାବେଳକୁ ତାକୁ ଭାରି ଉଦାସ ଲାଗୁଥାଏ. "ଇସ୍, ସେ କେମିତି ସତେ ସାନଟିକ୍ରା ଛାଡି ଚାଲିଆସିଲା । କେମିତି ସେ ତାକୁ ପାଣିରେ ବୁଡେଇ ଦେବାକୁ ଏଇଠି ହୁତା ପକେଇଲା !"

ସେ ହୁତା ନ ପକେଇଲେ କ'ଣ ହୁତା ପଡିବ ନାହିଁ ? ସେ ନ ଚାହିଁଲେ କ'ଣ ତା' ଗାଁ ଉପରେ ପାଣି ମାଡିବ ନାହିଁ ? ସେ ସେଇଠି ରହିଥିଲେ କ'ଣ ଏ ଯାଏଁ ଆଉ କିଏ ରହିଥାନ୍ତା ? – ମାଲ୍‌ତୀ ରହିଥାନ୍ତା ? ନା' – ନା' – ନା' ! –

ସେ ପାଦ ବଢେଇଲା ଆଗକୁ । ଲିଭା ଦୀପର ଧୂଆଁ ପରି ନିଃଶ୍ୱାସଟିଏ ବାହାରିଗଲା ସନ୍ଧ୍ୟା ପବନରେ । ନଈପାଣିରେ ତା' ଛାଇ ପଡିଲା ନାହିଁ ।

X X X X

ଯାହା ତୁଚ୍ଛା ଗୋଟାଏ ବାହାଦୁରିଆ ହିମ୍ମତ ପରି ଦିଶୁଥିଲା, ତାହା ସତକୁ ସତ ସରିଆସିଲା । ହୁତା ଉପରେ ପଥର ଛାଉଣି ସରିଆସିଲା । ଅଶିଣ ମାସକୁ କଥା ରଟିଗଲା ଯେ ଆସିଲା ବର୍ଷାକୁ ସୁଅ ବାନ୍ଧି ଦିଆଯିବ । ଯେଉଁ କେତୋଟି ନଲା ବାଟେ ପାଣିକୁ ଛାଡିଦିଆଯାଉଥିଲା ସେଇଠି କଳକବାଟ ଖଞ୍ଜି ଦିଆଯିବ । କେତେ ସବୁ ନୂଆ ଯନ୍ତ୍ର ଆସି ପହଞ୍ଚିଲାଣି । ପାଣିରୁ କ'ଣ ବିଜୁଳି ବାହାରିବ ବୋଲି କହୁଛନ୍ତି । ଶୁଧୁ ତବତବ ଆଖିରେ ସେ ଅଦ୍ଭୁତ କାମ ଦେଖୁଥାଏ । ଅଶିଣ ମାସର ଆମ୍ବୁଲିଆ ଶୀତରେ ଜହ୍ନ ନିର୍ମଳ ପଡିଥିଲେ; କିନ୍ତୁ ରାତିରେ ତାକୁ ବେଶି ବେଶି ଅସୁସ୍ଥ ଲାଗେ । ତାକୁ ଅସଂଖ୍ୟ ପାଦ ଶବ୍ଦ ଶୁଭେ । ନୀରବ ଖାଲି ପାଦର ମଣିଷମାନଙ୍କ ଅସରନ୍ତି ପଟୁଆରଟିଏ ପୂର୍ବରୁ ପଶ୍ଚିମକୁ ଚାଲିଯାଉଥିବାର ସେ ଅନୁଭବ କରେ ।

ସେ ତା' ଗାଁଲୋକଙ୍କୁ ମଝିରେ ଗୋଟାଏ ଗୋଟାଏ ହାଟପାଳିକୁ ଖୋଜେ । ଖବର ନିଏ ମହନା ପାଖରୁ, ଅନ୍ୟମାନଙ୍କ ପାଖରୁ । କିଛି ଜଣାପଡେ ନାହିଁ । କେହି ତାକୁ କିଛି କହିପାରନ୍ତି ନାହିଁ । ମଝିରେ ମଝିରେ ସେ କେବଳ ମହନାକୁ ପଚାରେ ମାଳତୀ ବିଷୟ । ସେ ସେମିତି ଥୋବଡା କଥା କହି ହେଁ-ହେଁ ହେଇ ହସେ । କହେ, "ଆରେ ଏତେ ମାଇକିନିଆ ଭିତରେ ତୋର ମନ ପୂରୁ ନାଇଁ । ତୁ ଖାଲି ସେଇ ଗୋଟାକୁ ଝୁରୁଛୁ ? ତାକୁ ଏବେ ପନ୍ଦର କି ଷୋଳ ହୋଇଯିବଣି । ତୁ କହିଲା ପରି ଯଦି ସେ ଖୁସ୍‌ମୁସିଆ ହସ୍‌କୁରୀଟିଏ ହେଇଥାଏ, ସେ ଚିଡିଆ କ'ଣ ଆଉ ଥିବ ? – ତାକୁ ସହରିଆ ଉଡେଇ ନେଇ ସାରିବେଣି । ଶୁଧୁ ଗୁମ ଟାଙ୍କୁରାଇ ମହନା ଉପରକୁ ରାଗରେ ଖିଙ୍କାରି ଉଠେ । ତା'ପରେ ବୁଝିଯାଏ । କାନ୍ଦୁଣୁ ମାନ୍ଦୁଣୁ ହୋଇ ସାଙ୍କୁଡିଯାଏ । ...ହଉ...ନ ହେଲା । ...ତା' ପାଖରେ ସେ ଯେଉଁ ଟଙ୍କା ସଞ୍ଚି ରଖିଥିଲା ମାଳତୀ ପାଇଁ ସୁନାହାର କିଣିଦେବ ବୋଲି; ଟଙ୍କା ରଖିଥିଲା ଘର କରିବ ବୋଲି – କାଠ, କଡି, ବରଗା, ନଡା, ଝାଟି, ମାଟି ! ? – କ'ଣ କରିବ ତାକୁ ନେଇ ? – ଭୁସ୍‌କିନା ହାଟପାଳି ଛୁଟି ସରିଯାଏ । ରାତି ପାହିଲେ ପଥର ସାଙ୍ଗେ, ଲୁହା

ସାଙ୍ଗେ ଲଢେଇ ।"

ଶୀତ ଯାଇ ଖରା ହେଲା । କାମରୁ ଆସ୍ତେ ଆସ୍ତେ ଲୋକ ବିଦାହୋଇଗଲେ । ଦିନେ ଦେଖିଲାବେଳକୁ ମହନା ହେରିକା ରହୁଥିବା କୁଡିଆ ଘରଯାକ ଉଲୁରା ହେଇ ଗଦା ହଉଥାଏ । ଟ୍ରକ୍‌ରେ ବୋହିନଉଥାଏ ଶସ୍ତା ନିଲାମରେ କିଣିଥିବା ବେପାରୀ । ହେଲେ, ମହନା କାହିଁ ? – ତା' ସ୍ତ୍ରୀ, ତା'ର ସେ ତିନିବର୍ଷର ଝୁମ୍ପୁରିମୁଣ୍ଡିଅ ଝିଅ ? – କେଜାଣି ! ସେ ପଥରବନ୍ଧ କ'ଣ ଉତ୍ତର ଦବ ନା ସେ ଲୁହାକଳ, ସେ ବାବୁ ଅଫିସରମାନେ ଉତ୍ତର ଦେବେ –

ଏତେଟିକେ ମଣିଷ ଶୁଧୁ । ପାହାଡରୁ ପାହାଡକୁ ବିସ୍ତାରି ହୋଇ ଶୋଇଥାଏ ପଥର ବନ୍ଧ । ନଈଗର୍ଭର ଛୋଟ ପଥରଟି ଉପରେ ବସି ସେ ଅନେଇଥାଏ ପାତିମାଙ୍କଡଟିଏ ସମୁଦ୍ରକୁ ଅନେଇଲା ପରି । ଇସ୍...ଦିନକୁ ପାଞ୍ଚଟଙ୍କା ମୂଲ ଦେଇ ଏ ପାହାଡ କିଣିଥିଲା ଶୁଧୁକୁ... ଶହ ଶହ ମଜୁରିଆଙ୍କୁ ! କାମ ସରିଗଲା । ଏବେ ଯେ ଯାହାର ବାହୁଡିଯିବେ ତାଙ୍କ ନିଜ ନିଜ ଗାଁକୁ ।

ଘାଉଁକିନା ଚାରିଆଡ ମେଲା ହେଇଗଲା ଶୁଧୁ ପାଇଁ । ସେ ଯିବ କୁଆଡେ ? ତାକୁ ଏକୁଟିଆ କେବେ ହେଲେ ଲାଗିନଥିଲା । ସେ କିଛି ସମୟ ନଈପାଣିରେ ଅନ୍ୟମନସ୍କ ବାବରେ ଗୋଡକୁ ହଲେଇ କଳକଳ କଲା । ଲଇଁପତି ଛୋଟ ଗୋଡି ଗୋଟେଇ ପାଣିକୁ ପକେଇଲା । 'ପୁରୁଣା ଅଭ୍ୟାସରେ ଦି'ଟା ବାଲିଗରଡା ଗୋଟେଇ କିଚିରିକିଚିରି କଲା । ସେଇଠୁ ଚାହିଁଲା ଏ କୂଳକୁ; ସେ କୂଳକୁ ! ଜମା ଇଚ୍ଛା ହେଲା ନାହିଁ ପଥର ଫିଙ୍ଗିବା ପାଇଁ । ଆକାଶରେ ସେତେବେଳେ ଆହୁଲା ମାରି ଉଡିଯାଉଥିବା ହଳେ ବଗପକ୍ଷୀଙ୍କୁ ଚାହିଁଲା । ସେମାନେ ବନ୍ଧ ଆରପାଖେ ବୁଡିଗଲେ । ତା' ଗାଁ ଉପର ଦେଇ ବୋଧହୁଏ ସେମାନେ ଉଡିଯିବେ । ସେମାନେ କ'ଣ ସେଇ ବଟଗଛରେ ସବୁଦିନ ବସୁଥିବା ଅସଂଖ୍ୟ ବଗ ଭିତରୁ ହଳେ ? କେତେବେଳେ ତା' ହାତରୁ ଚିକ୍‌କଣ ବାଲିଗରଡା ଯୋଡିକ ଆଣ୍ଠୁଏ ପାଣିକୁ ଟୁବ୍‌ଟୁବ୍ ଗଳିପଡିଲେ । ସେ ବିଶେଷ ଦୃଷ୍ଟି ଦେଲା ନାହିଁ । ମୁଠାଏ ବାଲି ଧରି ସୁର୍ ସୁର୍ କରି ପାଣିରେ ଛାଡିଲା । ବାଲି ସବୁ ପାଣି ଭିତରେ ସଳଖ ଓହ୍ଲେଇ ଯାଇ ତଳେ ଜମାହବାର ତାକୁ ଦିଶୁଥାଏ ।

ସେ ଉଠିଗଲା ଆରକୂଳ ଆଡେ । ବାଟରେ ସେ କଳ କବାଟଗୁଡାକୁ ଚାହିଁଲା, ସେବାଟେ ଆଉ ଟୋପାଏ ପାଣି ଝରୁ ନାହିଁ । – ନଈପାଣି ଆରପାଖେ ଫୁଲୁଥିବ । କେତେ ବାଟ ଉଠିବଣି ହୁଡା ଚଢି ଅନାଇଲେ ଜଣାଯାନ୍ତା ! – ଧୁତ୍, କିଏ ଏତେ ଶ୍ରମ କରୁଚି । ଶୁଧୁ ମନ ଭାରି ଉଦାସ ।

ସେ ଆରପାଖେ ପହଞ୍ଚିଲା ବେଳକୁ ସବୁ କେମିତି ଶୂନ୍‌ଶାନ୍ ଜଣାଗଲା । ମଜୁରିଆ ବସ୍ତିରେ ଚିଁ ଶବ୍ଦ ନାହିଁ । କଥା କ'ଣ ? ଏମାନେ ବି ଚାଲିଗଲେ ନା' କ'ଣ ? ସେ ଦେଖିଲା ଯେ କେହି ଯାଇନାହାନ୍ତି । ସମସ୍ତେ କିନ୍ତୁ ଚୁପ୍‌ଚାପ୍ ବନ୍ଧାଛନ୍ଦା କରୁଛନ୍ତି । ଏଠୁ ତାହେଲେ କାମ ସରିଗଲା । ତା' କାମ ବି ସରିଗଲା । ସେ କାହାକୁ କିଛି ନକହି ତା' କୁଡିଆରେ ବସି ଲୁଗାପଟା ଦି'ଖଣ୍ଡ ଯୋଗାଡିଲା । ଖଣ୍ଡେ ବାକ୍‌ସ ସେ କିଣି ସାରିଥିଲା । – ବାଲ୍‌ତି, ଡାଳ, ଡେକ୍‌ଚି । ଷ୍ଟୋଭ୍‌ଟିଏ ବି କିଣିଥିଲା, ଘର କଲେ ସୁବିଧା ହେବ ବୋଲି । ବେକୁବ୍ !

ନିସ୍ତବ୍ଧ ଖରାଦିନ ରାତି । ଦିନ ସାରା ନିଆଁଗଡ ପରି ତାତିଥାଏ ସେ ଅଞ୍ଚଳ । ରାତିରେ ସେ ପବନ ଆଉ ଜହ୍ନ ପୁଣି ନୂଆ ଜୀବନ କଅଁଳେଇ ଦିଅନ୍ତି । ଶୁଧୁକୁ ଭୋକଶୋଷ ନାହିଁ । ଖାଲି ସେ କେମିତି ଡରିଲା ପରି ଜାନେଇଥାଏ । ଡରିଲା ପରି ଚାହୁଁଥାଏ ପଛକୁ ଆଗକୁ! ପଛରେ ଜହ୍ନରାତିରେ ପାଣି ନଥିବା ପଥୁରିଆ ଖାଙ୍କରା ନଈ ଭାରି ନିଛାଟିଆ ମଶାଣି ପରି ଦିଶୁଥାଏ । ମଲା ନଈଟିଏ । ତା'ର କୁଢ କୁଢ ହାଡସବୁ ଉଭାରି ଦିଶୁଚି । ତା'ର ରସ ନିଗିଡିଯାଇଚି । ନୀରବ ବାଲି ପଥରର ମଶାଣି ବିଛେଇ ହେଇ ପଡିଛି ଜହ୍ନ ଆଲୁଅରେ । ତେଣିକି ତେଣିକି ଖାଲି ବୋଧହୁଏ ମଶାଣି । ସେଠିକି ସେ କ'ଣ ଯାଇପାରିବ ? କେମିତି ଯିବ ? କାହା ପାଖକୁ ଯିବ ଜିଅନ୍ତା ମଣିଷଟା ? ତେବେ...

ସେତେବେଳକୁ ରାତି ଅଧ ସମୟ ବୋଧେ ହେଇଥିବ । ମଜୁରିଆ ବସ୍ତିରେ ଡାକହାକ ଶୁଭିଲା । ସମସ୍ତେ ଚୁଲି ଲଗେଇ ଯେ ଯାହାର ଗଣ୍ଡେ ରାନ୍ଧିବାକୁ ବସିଗଲେ । ସେତକ ନେଇ ସେମାନେ ଚଳିବେ ତା' ଆର ଦିନ ସାରା !

ଶୁଧୁର କିଛି କରିବାର ନଥିଲା । ଚାଉଳ ଆଳୁଗଣ୍ଡେ ସେ ବାନ୍ଧିଥିଲା ! ମାଟିତେଲ ସରିଯାଇଥିବାରୁ ରାନ୍ଧିବାକୁ ଉପାୟ ନଥିଲା । କାହାକୁ କହିଥିଲେ ହୁଏତ ସେ ୟାର ମିଶେଇ ରାନ୍ଧି ଦେଇଥାନ୍ତା । ଛାଡ – ଭୋକ ତ ନାହିଁ ! – ସେ ସେମିତି ବସିରହିଲା ଚୁପ୍‌ଚାପ । ଭାତ ଫୁଟିବାର ବାସ୍ନା ତା' ନାକରେ ଆସି ବାଜିଲା । ସେଇଟା ତା' ଗାଁ ବାସ୍ନା ପରି ତାକୁ ଲାଗିଲା । ହଠାତ୍ ତାକୁ ଭୋକ ବି କଲା । ସେ ସାଙ୍ଗେ ସାଙ୍ଗେ ତିନୋଟି ଗୋଟାଳିଆ ପଥର ଥୋଇ ଚୁଲିଟାଏ କଲା ! ତା'ରି କୁଡିଆକୁ ଦି'ଖଣ୍ଡ ଖତରା ଗୋଟାଳ ବାଉଁଶ କାଢି ଗଣ୍ଡେ ନଡା ଲଗେଇ ନିଆଁ ଜାଳିଲା !

ବାଉଁଶ ଦି'ଖଣ୍ଡ ହୁତ୍‌ହୁତ୍ ହେଇ ଜଳିଲା । ଡେକ୍‌ଚିରେ ଚାଉଳ ପକେଇଦେଇ ସେ ବାଲି ଉପରେ ବସିଥାଏ । ହଠାତ୍ ଦେଖିଲା ଯେ ଗୋଟାଏ ବାଉଁଶ ପବ ଫାଟିଗଲା । ତା' ଭିତରୁ ଅସଂଖ୍ୟ ଡିମ୍ବଲଗା ଡଗଡଗା ପିମ୍ପୁଡି ସାଉଁସାଉଁ ହେଇ ବାହାରି ଆସିଲେ । କାହିଁ କେତେ ପୁରୁଷର ରହିବା ଘରେ ତାଙ୍କର ନିଆଁ ଲାଗିଗଲା । ସେମାନେ ସମସ୍ତେ ଆସି ବାଲି ଉପରେ ମନ୍ଦାବାନ୍ଧି ସ୍ଥିର ହେଇଗଲେ । ଓଃ, କେତେ ପିମ୍ପୁଡି ସତେ ଥିଲେ ସେ ବାଉଁଶ ପବଟା ଭିତରେ । ଶୁଖିଲା ଜାକର ବାଲି । ମଣିଷ ଖୋଜରେ ଖାଲଢିପ ବାଲି ! ସେଥିରେ କୁଆଡେ ଯିବେ ସେ ପିମ୍ପୁଡିମାନେ । ସେ ନିର୍ମମ ଅପରିଚିତ ବାଲିରେ କେତେ ବାଟ ଯିବେ ? – କେମିତି ଯିବେ ?...

ଶୁଧୁ ଅନେଇଥାଏ । ଚର୍ ଚର୍ ହେଇ ଜଳିଯାଉଥାଏ ବାଉଁଶ । ଆଲୁଅ ଚହଟି ପଡୁଥାଏ ପିମ୍ପୁଡି ମନ୍ଦା ଉପରେ ! ସେମାନେ ସ୍ତବ୍ଧ ହୋଇ କିଛି ସମୟ ରହିଗଲେ । ତା'ପରେ ମନ୍ଦା ଭିତରୁ ମୋଟା ଧାରଟିଏ ବାହାରିଲା । କୌଣସି ପ୍ରକାର ଇତସ୍ତତଃ ନକରି ସେଇ ବାଉଁଶ ଉପରକୁ ସେମାନେ ଚଢିବାକୁ ଲାଗିଲେ । କଳାପଟିଟିଏ ପରି ବାଉଁଶ ଉପରେ ସେମାନେ ଆଗେଇଗଲେ ସେମାନଙ୍କ ଜନ୍ମସ୍ଥାନକୁ – ସେମାନଙ୍କ ସ୍ମୃତିକୁ – ନିଆଁକୁ ! – ଶୁଧୁ ବିବ୍ରତ ହୋଇ ତାଙ୍କୁ ରୋଧି ଦେବାକୁ ହାତ ଉଠେଇଲା । 'ଆରେ, ନା' ନା' । ସେଆଡେ କୁଆଡେ ଯାଉଛ ? କ'ଣ ଅଛି ଆଉ

ସେଆଡେ ? ପିମ୍ପୁଡିମାନେ ଶୁଣିଲେ ନାହିଁ । ସେମାନେ ଶୁଣନ୍ତି ନାହିଁ ! ଫାଟିଯାଇଥିବା ବାଉଁଶ ପବଟି ଜଳିସାରିଥାଏ । ପିମ୍ପୁଡିମାନେ ଗୋଛା ଗୋଛା ହେଇ ତାଙ୍କ ବସା ଖୋଜି ଖୋଜି ଶହ ଶହ ଡିମ୍ବ କାଖେଇ ପଶିଗଲେ ତାଙ୍କର ପୁରୁଣା ମୋହ ଭିତରକୁ, ହୁତ୍‌ହୁତ୍ ଅଗ୍ନି ଭିତରକୁ ! ଲହଲହ ନିଆଁରେ ମୁଡୁମୁଡୁ ହୋଇ ଜଳିଗଲେ ମନ୍ଦାକଯାକ ପିମ୍ପୁଡି । ଶୁଧୁ କାଠ ପରି ଠିଆହୋଇରହିଲା । ସେ ବାରଣ କରିପାରିଲା ନାହିଁ ! କେମିତି କରିଥାନ୍ତା ? – ସେ ପିମ୍ପୁଡିମାନେ ଆଉ କୁଆଡେ ଯାଇଥାନ୍ତେ ? ସେଭଳି ବାଉଁଶ ପବଟିଏ ଏ ପୃଥିବୀରେ ଆଉ କେଉଁଠି କିଏ ତାଙ୍କୁ ଦେଇପାରିଥାନ୍ତା ? –

ଶୁଧୁ ସ୍ତବ୍ଧ ହେଇ ବସିରହିଲା । ନିଆଁ ଜଳି ଲିଭିଗଲା । ଭାତର ପେଜ ପାଣି ମରିଗଲା । ଜହ୍ନ ଢଳିଗଲା ପଶ୍ଚିମକୁ ! ଅନ୍ଧାର, କାକର, ଜମିଆସିଲା ଚାରିଆଡୁ !

ଉଦ୍‌ବାସ୍ତୁ ମଣିଷଙ୍କର ପଟୁଆର ବାଲି ଉପରେ ! ଅସଂଖ୍ୟ ଖାଲି ପାଦର ଖୁସୁର୍‌ମୁସୁର୍ ଶବ୍ଦ ! ମଳିଛିଆ ଜହ୍ନ ଆଲୁଅରେ ନଦୀବନ୍ଧ ପାରିହୋଇ ସେମାନେ କୁଆଡେ ଯାଉଥିଲେ ସେ ନୀରବ ପଶ୍ଚିମକୁ ? ସେମାନେ ଗୋଟାଏ ଅଭ୍ୟାସରେ, ଗୋଟାଏ ମୋହରେ, ଭିଡି ହେଲାପରି, ସ୍ୱପ୍ନରେ ପହଁରିଲା ପରି ଆଗେଇଯାଉଥିଲେ ଛୋଟଚେଟ ପିଲାଙ୍କୁ କାଖେଇ !

ସେପଟେ ବୁଡି ଅଞ୍ଚଳରେ, କାହିଁ କେତେ ଦୂର ବ୍ୟାପିରହିଥିବା ଜହ୍ନ-ଆଲୁଅରେ ଟଳମଳ ହେଉଥିବା ନିଥର ଜଳରାଶି । ନିଃଶ୍ୱାସ ରୋଧି ଫୁଲିଆସୁଥିବା ଅଖଣ୍ଡ ସମୁଦ୍ର !



# ଉଭୟ ପକ୍ଷ

ତା' ଖୁସିରେ ଆଉ କେହି ହେଲେ ଖୁସି ନ ହେବାର ଦେଖି ଗିରୀଶଚନ୍ଦ୍ର ଖୁବ୍ ଆଶ୍ଚର୍ଯ୍ୟ ବୋଧକରିଥିଲା । ଏକରକମ ଡରିଯାଇଥିଲା କହିଲେ ବି ଠିକ୍ ହେବ । ତା'ର ଆଶା ଥିଲା ଯେ ମିଠା ପୁଡିଆଟିକୁ ବୈଠକଘର ଟେବୁଲ ଉପରେ ଥୋଇଦେଇ ସେ ଯେତେବେଳେ କହିବ ଯେ ତା'ର ଚାକିରିରେ ଉଚ୍ଚ ପାହ୍ୟା ମିଳିଛି ଏବଂ ତାକୁ ହାଇଦ୍ରାବାଦ ଯିବାକୁ ହେବ, ସେତେବେଳେ ବୋଧହୁଏ ସମସ୍ତେ ଏକାବେଳେ ଖୁସିରେ ତାଳିମାରି ନାଚିଉଠିବେ । କିନ୍ତୁ ସେପରି କିଛି ହେଲାନାହିଁ ।

ବରଂ ସାନଭାଇ ହରୀଶ ନୀରବ ଗମ୍ଭୀର ହୋଇ ଜୋତା ପିନ୍ଧି ପଦାକୁ ବାହାରିଗଲା । ହରୀଶ୍ ଏଯାଏଁ ଚାକିରି କରିନାହିଁ, ବାହାସାହା ହୋଇପାରିନାହିଁ । ସେଥିପାଇଁ କମ ସେ ଦାୟୀ ? ସେ ତ ପୁଣି ତାକୁ ଗତ ଛ'ବର୍ଷ ଧରି ପାଖରେ ରଖି କଲେଜ ପାଠ ପଢେଇଚି । ପରୀକ୍ଷାଫରୀକ୍ଷା କ'ଣ ସବୁ ଦଉଚି; କ'ଣଟାଏ ବ୍ୟବସ୍ଥା ହୋଇଯିବ ନାଇଁ! ସେ କ'ଣ କେବେ ଚାହିଁଚି ଯେ ଏମିତି ଭେଟା, ଉଦ୍‌ବାସ୍ତୁ ଭଳି ବୁଲୁଥାଉ ? ତା'ର କୌଣସି ଥଇଥାନ ନ ହେଉ ? ତା'ର ସବୁ କଥାକୁ ଜଗି ତା' ବୟସର ଭେଣ୍ଡା ପିଲାଟାକୁ ସବୁବେଳେ ପାଳି ପୋଷି ରଖିବାକୁ କ'ଣ ତାକୁ ସୁଖ ଲାଗୁଛି ? ବୋଉ କିନ୍ତୁ ତାରି ଚିନ୍ତାରେ ଦିନରାତି ଘାରି ହେଉଛି । ତା' ସାନପୁଅ ସବୁଠୁ ନିର୍ମାଖି; ତାକୁ କେହି ପଚାରୁ ନାହାନ୍ତି । ସେ ଶରଣ ପଶିଲା ପରି ପଡିରହିଛି, ତା'ର ବଢତି କେହି ଦେଖିବାକୁ ଚାହୁଁନାହାନ୍ତି – ମିଛଟାରେ ଏମିତି ଗୁଡାଏ ସେ ମନକୁ ମନ ବାହୁନି ହେଉଚି ! ତା' ସାନପୁଅ ଏବେ କାଲି ସକାଳୁ ହୁ-କିନା ଅଫିସରଟାଏ ହେଇଯିବାକୁ କିଏ ମନାକରୁଚି ? ମା' ହେଇ ଏମିତି ପାତର ଅନ୍ତର ସେ କାହିଁକି କରେ, ଗିରୀଶଚନ୍ଦ୍ର ଜମା ବୁଝିପାରେନାହିଁ । ସାନପୁଅକୁ ସେ ଦଶମାସ ଗର୍ଭରେ ଧରି ଜନ୍ମ କରିଚି, ଆଉ ତାକୁ କ'ଣ ଏମିତି ଗୋଟେଇ ଆଣିଚି ? କେଜାଣି !

ତା'ର ବଡ କାମ ପାଇବା କଥା ଶୁଣି ବୋଉ ଉଁ କି ଚୁଁ କିଛି କଲାନାହିଁ । ଓଦା ହାତଟାକୁ ପଛରେ ପୋଛି ପୋଛି ଅଗଣାକୁ ଓହ୍ଲେଇଗଲା । ତା' ସାନପୁଅ ବାବନାଭୂତ ପରି ବୁଲୁଚି, ଅଥଚ

ଆରପୁଅ ବଡ ହାକିମଟାଏ ତ ହୋଇଥିଲା; ତା' ଉପରେ ଆଉରି କ'ଣ ତା'ଠୁ ବଡ ପାହ୍ୟାକୁ ଉଠିଲାଣି, ଏଇଟା ସେ ସହିପାରୁ ନଥିଲା କି ? କେଜାଣି !

ବାପା ବି ଭିତର ପିଣ୍ଡାରେ କାନ୍ଥକୁ ଆଉଜି ଆଣ୍ଠୁ ମୁଣ୍ଡ ହେଇ ବସିରହିଲେ । ଏମିତି ମନ ମାରି ବସିବାର କାରଣ କିଛି ନ ଥିଲା । ସେ ହିଁ ତ ସବୁବେଳେ କହୁଥିଲେ – ଆମ ଗିରୀଶର ଭାଗ୍ୟରେଖା ଏ ଘରେ ସବୁଠୁ ତେଜା ! ସେ ଆମ କୁଳ ଉଜ୍ଜ୍ୱଳ କରିବ । କିନ୍ତୁ ତାଙ୍କ ମନ ଭିତରେ କ'ଣ ଏମିତି ବିପରିତିଟାଏ ପଡିଯିବା ଭଳି ଆଶଙ୍କା ସେ ଘୋଡେଇ ରଖି ପାରୁନଥିଲେ ? ଗିରୀଶ ହିଁ ସତକୁ ସତ ତାଙ୍କ ଘରେ ସବୁଠୁ ଯୋଗ୍ୟ ହୋଇ ବାହାରିଲା । ସେଥିରେ ତା' ଉପର ବଡ ଦି'ଭାଇ ଖୁସି ହୋଇ ନ ପାରିବା ସେ ବୁଝିପାରୁଛି । ସେମାନେ ତା' ତୁଳନାରେ ନ୍ୟୁନ ଅନୁଭବ କଲେ । ଉଦାର ହୋଇ ଭାବିପାରିଲେ ନାହିଁ ଯେ ଗିରୀଶଟା ତାଙ୍କ ସାନଭାଇ; ତା'ର ଗୌରବ ହେଲେ ସେମାନଙ୍କର ଗର୍ବ କରିବାର ଅଛି । ଭାଉଜମାନେ ମଧ ମୁହଁ ଫଣଫଣ କରି ଫିଙ୍ଗିଲା ଫୋପାଡିଲାପରି କଥାମାନ କହିଲେ । କିନ୍ତୁ ବାପା ଏମିତି ଅବୁଝା ହେବାର କାରଣ ସେ ଖୋଜି ଖୋଜି ପାଉ ନଥିଲା । ତାକୁ ସେଥିପାଇଁ ଭାରି ବ୍ୟସ୍ତ ଲାଗୁଥିଲା ।

ତାକୁ ସବୁଠୁ ବେଶି ଆଶ୍ଚର୍ଯ୍ୟ ଲାଗିଲା ଯେତେବେଳେ ତା' ସ୍ତ୍ରୀ ସୁଦ୍ଧା ଏ ଖବରଟାରେ ଖୁସି ହେଲା ନାହିଁ । ଷ୍ଟୋଭ୍‌ରେ ନିଆଁ ଲଗେଇଲାବେଳେ ପଛକୁ ନ ଚାହିଁ ଶୁଣିଲା ଏବଂ କିଛି ନ କହି ଅଟା ଚକଟିବାରେ ମନଦେଲା – ସତେବା ତା'ର କିଛି ଯାଏଆସେ ନାହିଁ । ଗିରୀଶ ସତେ ଅବା ତା'ର କେହି ନୁହେଁ । ...ହେମା ଯା ଭିତରେ ଅନେକ ଝଡିଯାଇଛି । ଦେହରେ ସଞ୍ଜବେଳେ ଜର ରହୁଚି ବୋଲି କହୁଥିଲା । ବିଭା ହେବାର ଛ'ବର୍ଷ ଭିତରେ ସେମାନେ ବୋଧହୁଏ ଦି'ଥର ସିନେମା ଯାଇଛନ୍ତି, ଏବଂ ଶେଷଥର ବୋଉ ଏମିତି ପାଟିତୁଣ୍ଡ କରି କମ୍ପେଇଲା ଯେ ଭୟରେ ଆଉ ଥରେ ଯିବାର ପ୍ରଶ୍ନ ବି ଉଠିଲା ନାହିଁ । କହିଲା ଘଇତାଟାକୁ ଏ ମଉମୁହାଁ ମେଣ୍ଢା କରି ସାରିଲାଣି । ସେ ଅଣପୁରୁଷିଆ ଟୋକା ମଧ ଯେତେବେଳେ ଦେଖ ତା'ରି ପାଖରେ ନଙ୍ଗରପଙ୍ଗର ହଉଚି...ତା'ରି ବୋଲରେ ରହିଚି । ଆରେ, କୁକୁରକୁ ଆଶ୍ୱାସନା କଲେ ସେ ମୁହଁରେ ମୁତିବନାଇଁ ! ସେ ଟୋକୀ ତ ଛତରଖାଇ ଘର ଝିଅ; ହିଣ୍ଡି ହିଣ୍ଡି ଦାଣ୍ଡରେ ବୁଲିବାକୁ ତା' ମନ । ତାକୁ ମଣକଲେ ସିନା । ସେ ବାଟକୁ ଆସିବ ! ଆମେ କିଏ ଯେ ଏବେ କହିବାକୁ ? ତମେ ଅଫିସର ଆଉ ସେ ଅଫିସରର ମାଇପ । ଆମେ ତ ଘରେ ଚାକରାଣୀଠୁ ହୀନ । କୁକୁର ପରି ମୁଠେ ଖାଇ ପଡିଚୁ ! ତା'ପରେ ସେ ଏଡେ ପାଟିରେ ସେଇ ରାତିଟାରେ ଭେଁ-ଭେଁ ହୋଇ କାନ୍ଦିଲା, ବାପା ବି ସେମିତି ଗୁଡାଏ କ'ଣ କଟୁକଥା କହିଲେ । ଗିରୀଶ ଥ' ହୋଇ ଶୁଣିଲା । ହେମାକୁ ବୁଝାଇବାକୁ ଅନେକ ସମୟ ଲାଗିଲା – ପୁରୁଣାକାଳିଆ ଲୋକ ସେମାନେ, ଏମିତି ଟିକିଏ ବୁଲାବୁଲିକୁ ପସନ୍ଦ କରନ୍ତି ନାହିଁ । ସେ ଗୁଡାଏ କାନ୍ଦିଲା । ବୁଝିଲା କି ନବୁଝିଲା କେଜାଣି । ସେଇ ଦିନଠୁ କିନ୍ତୁ ସିନେମାଦେଖା ବନ୍ଦ ହେଇଗଲା ।

ଆଉଦିନେ ଅଫିସ୍‌ରୁ ଫେରୁ ଫେରୁ ରାତି ହୋଇଯାଇଥାଏ । ହେମା କମ୍ବଳ ଘୋଡେଇ

ହୋଇ ଶୋଇଥାଏ । ତାକୁ ଭୀଷଣ ଜର । ସଞ୍ଜବେଳୁ ବାପାବୋଉଙ୍କ ଖାଇବା କଥା । ହେମା ସେଇ ଜର ଦେହରେ ରାନ୍ଧିବାଢ଼ି ଥୋଇଦେଇଥାଏ । ବାଢ଼ିଦେଲାନି ବୋଲି ସେମାନେ ସେମିତି ନଖାଇ ଅଡି ବସିଥାନ୍ତି । ଗିରୀଶ ନିଜେ ବାଢ଼ିଦେଲା । ବୋଉ ପୁଣି ତାକୁ ସେମିତି ମାଇଗୁଲିଆ ଫାଇଗୁଲିଆ କହି ଶୋଧିଲା । ତା'ର ମନେଅଛି, ସାନଭାଇଟା ମଧ୍ୟ ସେମିତି କ'ଣଟାଏ କହିଦେଇ ଚାଲିଗଲା ନା କ'ଣ !...ହେମାକୁ ସେ ବାପଘରକୁ ଛାଡିଦେବାକୁ ଅନେକ ଚେଷ୍ଟା କଲାଣି । ମାତ୍ର ତା' ବାପଘରୁ ବିରାଡି ପିଲାଟାଏ ସୁଦ୍ଧା ଆସିଲେ ଏମାନେ ତା' ଉପରକୁ କ୍ଷେପିଉଠୁଛନ୍ତି । ସେଦିନ ସାରା ତା' ବାପଘରର ସାତପୁରୁଷ ଉଖାଳିବାରେ କଟିଯାଇଚି ।

ଦୋଷୀଟିଏ ପରି ଗିରୀଶ ବୈଠକଘରେ ଯାଇ ବସିଲା । ସନ୍ଧ୍ୟାବେଳେ ଖେଳିସାରି ଚାରିବର୍ଷର ପୁଅ ନନ୍ଦୁ ଆସି ପହଞ୍ଚିଲା । ଗିରୀଶ ତାକୁ କୋଳରେ ପୂରାଇ ମିଠା ପୁଡିଆରୁ ସନ୍ଦେଶ କାଢ଼ି ଦେଖେଇବାରୁ ସେ ଝାମ୍ପି ନେଇ ପାଟିରେ ପୂରେଇଦେଲା । ଖୁସିରେ ଡେଇଁଲା । ପୁଡିଆ ଉପରେ ଟିପ ମଡେଇଥାଏ । ଏକାଲୟରେ ଚାହିଁଥାଏ ଧୋବ ହଳଦିଆ ସନ୍ଦେଶ ଚକିଗୁଡିକୁ । ଏଣେ ପାଟି ଉଛୁଳେଇ ବୋହିଆସିଥିବା ମିଠାଟାକୁ ଘଣେଇ ଲାଗିଥାଏ । ଗିରୀଶ ତାକୁ ସାଉଁଳା-ସାଉଁଳି କରି କହିଲା, "ନନ୍ଦୁ, ଆମେ ହାଇଦ୍ରାବାଦ ଯିବା, ମୁଁ ଆଉରି ବଡ ଅଫିସର ହେଇ ସେଠିକି ଯିବି । ବଡ ବଙ୍ଗଳା ମିଳିବ ।" ନନ୍ଦୁ ସଂକ୍ଷିପ୍ତ 'ହୁଁ'ଟିଏ ମାରିଦେଇ ଆଉ ଗୋଟାଏ ସନ୍ଦେଶ ପାଟିରେ ପୂରେଇଲା । ଗିରୀଶ ଆସ୍ତେ ବାହୁ ହୁଗୁଳେଇ ଆଣି ପୁଅକୁ ଛାଡିଦେଲା । ସେ ମିଠା ପୁଡିଆଟି ଧରି ଡେଇଁଡେଇଁ ଚାଲିଗଲା ଘରଭିତରକୁ ।

ଗିରୀଶ ତଳକୁ ଚାହିଁ ବସିରହିଲା କିଛି ସମୟ । ତା'ର ମନ ହେଲା ନାହିଁ ଜୋତା କାଢ଼ି ଜାମାପଟା ବଦଳ କରିବାକୁ; ବରଂ ଚାଲି ଚାଲି ଛକପର୍ଯ୍ୟନ୍ତ ଯାଇ କପେ ଚା ଖାଇ ଆସିବାକୁ ଇଚ୍ଛାହେଲା ତା'ର । ସେ ଠିଆହୋଇ ଚାହିଁଲା କାନ୍ଥରେ ଟଙ୍ଗାହୋଇଥିବା ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀଅରବିନ୍ଦଙ୍କ ଫଟୋମାନଙ୍କୁ । ତା' ଭୃରୁ ସାମାନ୍ୟ କୁଞ୍ଚେଇଗଲା । ସେ ପେଣ୍ଟ ପକେଟରେ ହାତ ଦୁଇଟି ଭର୍ତ୍ତି କରି ତଳକୁ ଚାହିଁ ବାହାରିଗଲା ।

ସେ ଭାରି ଦୁର୍ବଳ ବୋଧ କରୁଥିଲା । ଖୁବ୍ କ୍ଳାନ୍ତ ଅବସନ୍ନ ଲାଗୁଥିଲା ତାକୁ । ସେମିତି ଜୋତା ଫୋତା ନକାଢ଼ି ବିଛଣାରେ ଲମ୍ବହୋଇ ପଡିଗଲେ, ସେ ହୁଏତ ତା' ପରଦିନ ସକାଳଯାଏଁ ଶୋଇଯାଆନ୍ତା । ତା'ର ବୋଧହୁଏ କିଛି କାନ୍ଦିପକେଇବାକୁ ବି ମନ ହେଉଥିଲା ।

ଅଥଚ ଗିରୀଶ ସେପରି କିଛି ନପାରିଲା ମଣିଷ ନଥିଲା । ଅନେକ ଦୁଃଖ-କଷ୍ଟକୁ ସେ ମୁକାବିଲା କରିଛି । ମଠରେ ଓଳିଏ ଖାଇ ପାଠ ପଢ଼ିଛି । ଟିଉସନ କରି ଟଙ୍କା ପଠେଇଛି ଗାଁକୁ । ବଡଭାଇ ବହୁକାଳୁ ସବୁ କଥାରୁ ଆଡ ହୋଇ ଚଳୁଥାନ୍ତି । ବାପା କେବେହେଲେ ତାଙ୍କ ଉପରେ ରାଗିବା କିମ୍ବା ଅସନ୍ତୁଷ୍ଟ ହେବା ଗିରୀଶ ଜାଣିନାହିଁ; ବରଂ ସେ କହନ୍ତି, 'ଆରେ ସେ କୁଟୁମ୍ବୀ ଜଞ୍ଜାଳି ମଣିଷ । ନିଅଣ୍ଟିଆ ଦରମା ନେଇ ଚଳିବା ତାକୁ ଅଠାଠି । ଜମିରୁ କିଛି ଚାଉଳ ନ ପଠାଇଲେ ସେ ଚଳିବ କେମିତି ? ଅଥଚ ଗିରୀଶ ମଠରେ ରହି ଚଳିବାକୁ ସେ ବିରୋଧ କରି ନାହାନ୍ତି ।

ସହରରେ ଏବେ ବଡଭାଇନାଙ୍କର ସତନ୍ତ୍ର କୋଠାଟିଏ । ଭାଉଜଙ୍କ ବେକରେ ଅସୁମାରି ସୁନାହାର । ସେମାନେ କେବେ କେମିତି କୁଣିଆ ସଞ୍ଚୁଳିଲା ପରି ବାପାବୋଉଙ୍କୁ ଓଳିଏ ଖୁଆଇ ଦେଇ ଛାଡିଦିଅନ୍ତି । ସେଥିରେ ବୁଢାବୁଢୀ କୃତକୃତ୍ୟ ଯେ କହିଲେ ନ ସରେ । ତାଙ୍କ ତଳ ଭାଇ ସେମିତି ବେଶ୍ ରୋଜଗାର କରନ୍ତି । ନିଶା ଖାଆନ୍ତି । ଜୁଆ ଖେଳନ୍ତି । ଭାଉଜଙ୍କୁ କାଠଫାଳିଆରେ ବାଡାନ୍ତି । ତାଙ୍କର ପ୍ରତିଦିନ କଳି-ତକରାଳ ଲାଗେ । ଭାଉଜ ପ୍ରଚଣ୍ଡ ମୁଖରା । ବୋଉ ତାଙ୍କୁ ଡରି ମରିଥାଏ; ତାଙ୍କ କଥା ପଡିଲେ ପାଟି ଫିଟାଏ ନାହିଁ । ବାପା ମଧ ଖାଲି ବାହୁନି ହେଲା ପରି କହନ୍ତି, "ତା'ର କପାଳ ଅଣ୍ଟିଲା ନାହିଁ ବୋଲି ସିନା, ନ ହେଲେ ସେ ସୃଷ୍ଟି ତାଡିପକେଇଥାନ୍ତା !"...ସାନଭାଇ ହରୀଶ୍ ମୂଳରୁ ଗେଲବସର, ହଲିଲା ପାଣିକୁ ଗୋଡ ଦେବ ନାହିଁ । ଗିରୀଶ ନିଜେ ସାରେ ଜୋତାକୁ ତିନିବର୍ଷ ଚଳାଏ, ଅଥଚ ତା' ପାଇଁ ତିନି ସାର ଧାଡି ହୋଇ ଥୁଆ ନ ହେଲେ ଝିଙ୍ଗାସ ସହିବାକୁ ହୁଏ । ଗିରୀଶ ସବୁ ଦିଏ, ସବୁ କରେ; କିନ୍ତୁ ସବୁବେଳେ ଗାଳି ଶୁଣୁଥାଏ, ଡରୁଥାଏ ! ସେମାନେ କିଛି ଦିଅନ୍ତି ନାହିଁ, କିଛି କରନ୍ତି ନାହିଁ; ଅଥଚ ତାଙ୍କୁ କେହି ଚୁଁ କରିଦିଏ ନାହିଁ ।

ଆଜି ନୁହେଁ; କେଉଁକାଳୁ ଗିରୀଶ ବୁଝିପାରିଛି ଯେ ତାକୁ ସମସ୍ତେ ପରଜ୍ଞାନ କରନ୍ତି । କାହିଁକି କରନ୍ତି ସେ କହିପାରିବ ନାହିଁ । ତାକୁ କେହି ସତେ ଭଲପାଆନ୍ତି ନାହିଁ । ତା'ର ବେଳେବେଳେ ଖୁବ୍ ସନ୍ଦେହ ହେଉଚି ଯେ ତାକୁ ହୁଏତ ଏମାନେ ସତକୁ ସତ କେଉଁଠୁ ଗୋଟେଇ ଆଣିଛନ୍ତି । ମା'ଛେଉଣ୍ଡ, ଅଣବାବୁଆ ପିଲାଟିଏ ହୁଏତ । ତାକୁ ଯେତିକି ପାଖରେ ପୂରେଇବା କଥା, ଏମାନେ ପୂରେଇଛନ୍ତି । ତା'ଠୁ ଅଧିକ ବୋଧହୁଏ ସମ୍ଭବ ନଥିଲା । କିନ୍ତୁ ସେ ବର୍ଷା ରାତି, ସେ ମେଘ ଘଡିଘଡି ଭିତରେ ବାପା ବିକଳରେ ଧାଇଁ ପାଖକୁ ଦୌଡିଥିଲେ ତ ! ଅବାଟରେ ପଶିଗଲେ... ସେଇଠୁ ବେଙ୍କେ ପାଣିରୁ ଉଠିଆସି ଓଦା ସରସର ତା' ଦୁଆରେ ପହଂଚି ତାକୁ ଡାକିଥିଲେ । ଏଣେ ସେ ନିଜେ କୁଆଡେ ପାଦଆଡୁ ଜନ୍ମ ହୋଇ ନପାରି ଅଧାରେ ଲାଖି ରହିଥାଏ । ବୋଉ ଚେତା ବୁଡି ପଡିଥାଏ । ସେ ରାତିରେ ହୁଏତ ତିନୋଟିଯାକ ପ୍ରାଣୀ ମରିଯାଇଥାନ୍ତେ । ପ୍ରଥମେ ସେ ନିଜେ ! ତେବେ ଏସବୁ କ'ଣ ତାହେଲେ ମନଗଢା ମିଛ ? ମିଛ ହେଇଥିଲେ କ'ଣ ଗାଁ ଲୋକଙ୍କ ତୁଣ୍ଡରେ ଏତେକାଳ ତୁଣ୍ଡି ବନ୍ଧାହେଇଚି ଯେ ସେମାନେ ନ କହି ରହିଥାନ୍ତେ ? ନାଁ, ଏସବୁ ନିଶ୍ଚୟ ସତ ! ସତ ବୋଲି ଏବଂ ମୂଳରୁ ସେ ତାକୁ ସେମିତି ତଣ୍ଟିଆଳି ହୋଇଥିଲା ବୋଲି ବାପାମା'ଙ୍କର ଏତେ ଶତ୍ରୁପଣ !

ଗିରୀଶ ସର୍ବଭାରତୀୟ ସ୍ତରରେ ଚାକିରି ପାଇଲା । ଅନେକ ଚାହିଁଲେ ତାକୁ ଝିଅ ଦେବାକୁ । ବଡଭାଇନାଙ୍କ ପାଖରେ ପ୍ରସ୍ତାବ ସବୁ ଠୁଳହେଲା । ସେଇ ସମୟଟା... ଭାଇନା, ଭାଉଜ, ବାପା, ବୋଉ ଗିରୀଶକୁ ଖୁବ୍ ଯତ୍ନ କରିଥିବାର ତା'ର ମନେଅଛି । ସେ ଖୁବ୍ କୃତକୃତ୍ୟ ବୋଧକରିଥିଲା । ହେମାର ବାପା ଉଚ୍ଚପଦସ୍ଥ ଅଫିସର୍ । ଝିଅ ବି ଦେଖିବାକୁ ସୁନ୍ଦରୀ । ବିବାହ ପୂର୍ବରୁ ଗିରୀଶକୁ କୁହାଗଲା ଦଶହଜାର ଟଙ୍କା ଋଣ କରିବାକୁ । ସେ ସବୁ ଋଣ ଟଙ୍କାତକ ଅଭିଭାବକଙ୍କ ହାତକୁ ଟେକିଦେଇଥିଲା । ବିଭାଘର ପରେ ବୋହୂ ଆସିଲା ଗାଁକୁ ଏବଂ ସେଇଠି ରହିଲା ବର୍ଷେ କାଳ ।

କେହି କହିଲେ ନାହିଁ ସେ ଗିରୀଶ ପାଖକୁ ଯାଉ । ଦରମାର ତିନିଭାଗ ସେ ଗାଁକୁ ପଠେଇଦେଇ କେବଳ ଅପେକ୍ଷା କରିଥିଲା; ଋଣ ମଧ ଶୁଝି ଚାଲିଥିଲା । ଏପର୍ଯ୍ୟନ୍ତ ଆଉରି ବାକି ଅଛି ଶୁଝିବାକୁ । ହେମାକୁ ଶେଷରେ ଯେତେବେଳେ ସେ ଆଣିଲା, ସେତିକିବେଳୁ ସାନଭାଇ ଆସିଲା ପଢିବାକୁ । ବାପା ବୋଉ ଆସିଲେ ନୂଆ ସଂସାରରେ ବାଟକଢେଇ ଚଳେଇବାକୁ । ଗିରୀଶ ପୁଣି ଗୋଟିଏ ସୋଫା, ଗୋଟିଏ ଖଟ, ଗୋଟିଏ ଷ୍ଟୋଭ କିଣି ଘରସଂସାର ଆରମ୍ଭ କରିଥିଲା । ହେମାର ବାପଘର କୁଆଡେ ଅନେକ ଜନିଷ ଦେଇଥିଲେ । କିଛି ଗାଁରେ ପଡିରହିଲା । ଆଉ ସବୁ ବଡଭାଇ ଦୁହିଁଙ୍କୁ ବୋଉ ବାଣ୍ଟି ଦେଇଥିଲା । କୁଟୁମ୍ବୀ ଘର । କେମିତି ସେମାନେ ଚଳିବେ ନହେଲେ !

ହେମା କୌଣସି କଥାର ପ୍ରତିବାଦ କରିନାହିଁ ।

ଗିରୀଶ ଛୋଟ ଦୋକାନଟିରୁ କପେ ଚା ନେଇ ବାହାରେ ଅନ୍ଧାରକୁ ଚାହିଁ ଠିଆ ହୋଇଥାଏ । ପିଆଲାର ଉଷ୍ମ ଆଉଁସିବାକୁ ଭଲ ଲାଗୁଥାଏ । ତତଲା ଚା ପାଣି ଟିକେ ସୋଡକିବାରୁ ପ୍ରାଣକୁ ସୁହାଉଥାଏ ।

ହେମା ସେମାନଙ୍କ ଆଖିରେ ସବୁବେଳେ ପରଘର ଝିଅ । ତା'ରି ସାଙ୍ଗେ ସେମାନେ ବାଦ ସାଧି ଲାଗିଛନ୍ତି । ସେ ଖଣ୍ଡେ ଭଲ ପିନ୍ଧିଲେ, ଲଗେଇଲେ ସହିବା କଷ୍ଟ ହଉଚି ତାଙ୍କୁ! ସେମାନେ କ'ଣ ସତେ ଚାହୁଁଛନ୍ତି ତାଙ୍କ ପୁଅକୁ ଏ ମାଇକିନାଟାର କବଳରୁ ଛଡେଇ ନବାକୁ! କ'ଣ କରିବେ ଛଡେଇ ନେଇ ? ସେ କ'ଣ ଖାଲି ତାଙ୍କର ପୁଅ ହେଇ ଆଉ ଅଛି ? ସେ ପରା ଅଣ୍ଡିରାଟାଏ, ଘଇତାଟାଏ, ପୁଅର ବାପଟାଏ ! ବୁଢାବୁଢୀ ହେଲେ କ'ଣ ଏମିତି ଅଭିଲା ହୋଇଯାନ୍ତି ? ସାଧାରଣ କଥାଟାକୁ ବୁଝିପାରନ୍ତି ନାହିଁ ? ନିଜ କଥାକୁ ଭୁଲିଯାନ୍ତି !

ଗିରୀଶ ହାତରେ ଚା କପ୍‌ଟା ଚହଲିଗଲା । ସେ ତା' ହାତମୁଠା ହୁଗୁଳେଇ ଚାହିଁଲା ଅନ୍ଧାରକୁ ।

ହେମା ଶୋଇବା ଆଗରୁ ବୋଉ ଗୋଡ ଘଷି ଦେଉଥାଏ । କେବେହେଲେ କାହିଁ ଆପତ୍ତି କରିନାହିଁ! ସେଦିନ ତାକୁ ହୁଏତ ଅବଶ ଲାଗୁଥିଲା । ଗର୍ଭବତୀ ହେଲେ ଛେଳିଟିଏ ବି ଅବଶ ବୋଧକରେ । ଶାଶୁଙ୍କ ଗୋଡ ମଣ୍ଡାଳିଲା ବେଳକୁ ତାକୁ ଢୋଳ ମାଡିଲା । ଆଖି ଟିକିଏ ପଡିଗଲା ହୁଏତ । ସେତିକିରେ ସେଇ ଅନ୍ଧାରରେ ବୋଉ ବସେଇଦେଲା ଗୋଟାଏ ଗୋଇଠା । ହେମା କଚ୍‌କାଚ୍ ତଳେ ଆସି ପଡିଲା । ବିକଳ ହେଲା । ଉଜୁନ୍ତି ହେଲା । ହୁଏତ ସେ ମରିଯାଇଥାନ୍ତା । ବୋଉ କ'ଣ ଚାହିଁଥିଲା ସେ ପରଘର ଝିଅଟିକୁ ସେମିତି ମାରିଦେବାକୁ ? କେମିତି କହିବା ?

ଗିରୀଶ ହଠାତ୍ ଛାଟିଦେଲା ଗରମ ଚା ଗୁଡାକ ଶୂନ୍ୟକୁ ।

ଗାଁ ଘରେ ବାପାବୋଉ ରହିଛନ୍ତି ପଚାଶ ବର୍ଷ । ଏବେ ଯାଇ ସେଇଠି ରହିଲେ କ'ଣଟା ଅସୁବିଧା ହେଇଯିବ ସେମିତି ? ଗିରୀଶକୁ ଦିଶିଗଲା ଯୋଡିଏ ଗଣ୍ଠିଲି, ଗୋଟିଏ ଟିଣ ବାକ୍‌ସ ଧରି ବାପାବୋଉ ବସ୍‌ରୁ ଓହ୍ଲେଇ ଠିଆ ହୋଇଛନ୍ତି ଦୋଛକି ସାହାଡା ଗଛମୂଳେ । ବେଳ ରତରତ । ସେଇଠୁ ଆଗପଛ ହେଇ ଅପସରି ଯାଉଛନ୍ତି ଦୁଇଟି ଦୁର୍ବଳ ଛାଇ ମାଛି ଅନ୍ଧାର ଭିତରକୁ । ନିଛାଟିଆ

ଭିତର ପିଣ୍ଡାଟିରେ ଧୂଳିଆ ଗୋଡ ଟେକି ବସିଛନ୍ତି ବାପା । ମୁହଁରେ ଗୁଡ । ଡାହାଣ ପଟ ପାଟି ପାଖରୁ ପାନପିକ ବୋହିଆସିଛି । ଆଖିଯୋଡିକ ଅବଶ, ଚିଲାଚିଲା, ନୁଆଣିଆ । ବୋଉ ଗାଲରେ ହାତ ଦେଇ ସେମିତି ବସିରହିଛି ଗଣ୍ଠିଲିକୁ ଆଉଜି । ଦିକିଦିକି ନିଆଁଟିଏ ଜାଳୁଚି ସେଇଠୁ ଉଠିଯାଇ । କଳ କଣ୍ଢେଇ ପରି ଦୁଇଟି ପ୍ରାଣୀ ନୀରବ ଚଳପ୍ରଚଳ ହେଉଛନ୍ତି ସେ ଅନ୍ଧାରୁଆ ବଖରା ଏବଂ ସେ ଛୋଟ ଅଗଣାଟିରେ । ତା'ପରେ ଜଣେ ତା' ଭିତରୁ ମୁହଁ ଘୋଡେଇ ତଳ ପିଣ୍ଡାରେ ସକସକ କାନ୍ଦୁଚି, ବାହୁନି ହେଉଚି । ଅସହାୟ ଏକୁଟିଆ ପକ୍ଷୀଟିଏ ! କିଏ ସେ ? – ବାପା, ନା ବୋଉ ?

ଗିରୀଶ ବୁଲିପଡିଲା ଚ ପିଆଲା ଧରି ଦୋକାନଆଡେ । ପଇସା ଦେଇସାରି ଖଟ୍‌ଖଟ୍ ଚାଲିଗଲା କିଛିବାଟ । ଘରଆଡେ ନୁହେଁ, ଘରଠୁ ଦୂରକୁ । ନିରୋଳା ରାସ୍ତା । ଏଠିସେଠି କାଁ-ଭାଁ ଶୀତଦିନର ଚଦର ଘୋଡେଇ ହୋଇଥିବା ଗୋଟିଏ ଯୋଡିଏ ମଣିଷ !

ହେମା ଦେଖିବାକୁ ସୁନ୍ଦରୀ । ଖୁବ୍ ସହଣିକ, ଖୁବ୍ ନୀରବ ଝିଅଟିଏ । ବେଳୁବ୍, ଓଲୀ, ଡବଡବ ଆଖିରେ ଅନେଇଥିବା, ମୃଗୁଣୀଟିଏ । ସେ ଏତେ ଦୁଃଖରେ ଟଳମଳ ହେଉଥାଏ ଯେ ଗିରୀଶ ତାକୁ ନେଇ କ'ଣ କରିବ ବୁଝିପାରେ ନାହିଁ । ସେ ହାତକୁ ଚ ବଢେଇ ଦେଇ ଆଡ ହୋଇଯାଏ; ଜୋତା ସଫା କରି ଥୋଇଦେଇ ଆଡ ହୋଇଯାଏ । କେବେ କେମିତି ଟିକିଏ ନିରୋଳାରେ ଗେଲ କରିଦେଲେ କିଛି କହେ ନାହିଁ; ବୋଧହୁଏ ତାକୁ ବି ସହିଯାଏ । ହେମାକୁ ବୋଧେ ଜମା ବିଶ୍ୱାସ ହେଉନାହିଁ ଯେ ସେ ସତେ ହାଇଦ୍ରାବାଦ ଯିବ ତା' ପୁଅକୁ ନେଇ ! ସ୍ୱାମୀ-ସୋହାଗ ପାଇବ । ଛୋଟ ସଂସାରଟିଏ କରିବ । ସେମାନେ ଏକାଠି ବଜାର ଯିବେ; ସିନେମା ଯିବେ ! ନାଁ, ହେମା ସେଥିକୁ ଆଶା କରିନାହିଁ । ତାକୁ ଏକୁଟିଆ ହୁଏତ ଶାଶୁ-ଶ୍ୱଶୁରଙ୍କ ସେବା କରିବାକୁ ସେ ଛାଡିଦେଇ ଯିବେ । ଦିଅର କଥା ବି ବୁଝିବାକୁ ହେବ । 'ନନ୍ଦୁ'କୁ ହୁଏତ ଜର । ରନ୍ଧାଘରୁ ଆସି ତା' କଥା ବୁଝିବାକୁ ସମ୍ଭବ ହେଉନାହିଁ । ସେ ଛନ୍‌ଛନ୍ ହେଇ ଆସୁଚି । ନନ୍ଦୁ କପାଳରେ ହାତ ମାରିଦେଇ ଚମକିପଡୁଛି । କେତେ ଯେ ତାତି ତା' ପିଲା ଦେହରେ ! ସେ ବୋଧେ ଡାଲିରେ ଲୁଣ ପକେଇବାକୁ ଭୁଲିଯାଉଛି । ତିଅଣ ଚକିରୁ ଟିକିଏ ଲାଗିଯାଇଛି, ସେ ଜାଣିପାରୁନାହିଁ । ସେ ସମସ୍ତଙ୍କ ଗାଳିକୁ ଶୁଣିପାରୁନାହିଁ । ଫିଙ୍ଗାଫୋପଡାକୁ ଲକ୍ଷ୍ୟ ରଖୁନାହିଁ । ଶାଲ ଖଣ୍ଡିଏ ଘୋଡେଇ ହୋଇ ଟଗଟଗ ବାହାରିଯାଉଛି ରାସ୍ତା ଉପରକୁ । ଡାକ୍ତର ପାଖକୁ । ରାତି-ଅଧସରିକି ନନ୍ଦୁ ଖଟ ପାଖରେ ବସି ଚିଠି ଲେଖୁଚି ହାଇଦ୍ରାବାଦ !...କିଏ ସେଇଟା ଲୁଙ୍ଗି ପିନ୍ଧି ଘର ଭିତରକୁ ଟିପେଇ ଟିପେଇ ପଶିଆସୁଛି ? କବାଟ ବନ୍ଦ କରିଦେଉଚି ଭିତରୁ ପଟୁ ? ହେମା ସେ ଭୋକିଲା ଶିଆଳ ପରି ଦିଶୁଥିବା ଦିଅରଟା ସାଙ୍ଗରେ ଖୁବ୍ ଲଢୁଚି । ମଇଁଷି, ଗୟଳ, ହେଟାମାନଙ୍କ ମୁକାବିଲା ସେ କ'ଣ କରିପାରିବ ? ଛଟପଟ ନୀରବ ମାଛଟିଏ ପରି ତୁଣ୍ଡ ବନ୍ଧା, ଝାଳସରସର, କ୍ଷତବିକ୍ଷତ, ବିବସ୍ତ୍ରା ମାଇକିନିଆଟିଏ ! ...ହେମା ଚିଠିଟିକୁ ସାରିପାରୁନାହିଁ । ପିନ୍ଧା ଶାଢିଟାକୁ ପଙ୍ଖାରେ ବାନ୍ଧି ଝୁଲିପଡୁଚି ! ତା' ଆରଦିନ ଗୁରୁଜନମାନେ ସକାଳ ଚ ଜଳଖିଆ ନ ପାଇ ଖୁବ୍ ଅସୁବିଧା ଭୋଗୁଛନ୍ତି କି ? ହାଇଦ୍ରାବାଦରୁ ପଠାହୋଇଥିବା ଦରମାର ତିନି-ଚଉଠରୁ

କିଛି ପଇସା ସାରି ପୋଇଲାଟିଏ ପାଉନାହାନ୍ତି କି ?...

ଗିରୀଶ କେତେବେଳେ ନିଜ ଅଜାଣତରେ ଦାନ୍ତ ଜାବି ରାସ୍ତାଟାରେ ଠିଆହୋଇ ଯାଇଥିଲା । କଟମଟ ଅନେଇ ରହିଥିଲା । ଅନିର୍ଦ୍ଦିଷ୍ଟଅଟ ଶୂନ୍ୟକୁ । ତା' ତଣ୍ଟି ଶୁଖିଯାଇଥିଲା । ଦେହସାରା ଝାଳ ଜକେଇ ଆସିଥିଲା । ଗୋଟିଏ ସାଇକେଲ୍ ତା' ସାମ୍ନାରେ ଇତସ୍ତତଃ ହେଇ ଗୋଟାଏ ପଟେ ପାରିହେଇଗଲା । ଗିରୀଶ ଆସ୍ତେ ଘୁଞ୍ଚିଗଲା ବାଁ ଆଡକୁ । ଆଗକୁ ଯିବାକୁ ଆଉ ଇଚ୍ଛା ହେଲା ନାହିଁ । ସେଇଠି ତଳକୁ ଚାହିଁ ସେ ଠିଆ ହେଇ ରହିଲା । ମୁଣ୍ଡ ଭିତରେ ଅଜସ୍ର କୋଳାହଳ ଭେଦି ତାକୁ ଶୁଭିଲା, ରହିମ୍ ମିଆଁ କହୁଛି, "ମୁବାରକ୍ ଜଣଉଚି ବଡଭାଇ ! ବଡ କାମ ପାଇଲ; ସେଥିରେ ପୁଣି ହାଇଦ୍ରାବାଦ ଯାଉଚ ! ଓ୍ୱା, ଓ୍ୱା, କ୍ୟା କହନେ !"..."ସାର୍ ମିଠେଇ ଦିଅନ୍ତୁ !" ..."କ'ଣ ଗିରୀଶବାବୁ, କେବେ ଭୋଜି ଦେଉଚନ୍ତି !"

ଗୋଛା ଗୋଛା ଫୁଲମାଳ ! ଟ୍ରେନ୍‌ରେ ଚଢେଇଦେଉଛନ୍ତି କେତେ ଯେ ବନ୍ଧୁ, ମିତ୍ର, ସୁହୃଦ୍ ! ସମସ୍ତେ କେତେ ଯେ ଖୁସି ଦିଶୁଛନ୍ତି ! ସେ ବେକରୁ ମାଳ କାଢି କିଛି ସମୟ ଚୁପ୍‌ଚାପ୍ ବସିଯାଇଛି । ଆରପାଖକୁ ମୋଟାଳିଆ ଗୋରା ଭଦ୍ରଲୋକ ଲମ୍ବା ଗାଉନ୍‌ଟିଏ ପିନ୍ଧି ପତ୍ରିକା ପଢୁଛନ୍ତି । "ଆପଣ ହାଇଦ୍ରାବାଦ ପ୍ରଥମଥର ପାଇଁ ଆସୁଛନ୍ତି ? ଆସନ୍ତୁ, ଦେଖିବେ କେମିତି ବଢିଆ ଜାଗା ! ପାଞ୍ଚତାରା ହୋଟେଲ୍ ! ପଚିଶତାଲା କୋଠା ! ସକାଳେ ସିମିଂ, ସନ୍ଧ୍ୟାରେ କାବାରେ ! ପିଇବାକୁ ବାଦଶାହୀ ସରାବ୍ ! ଓଃ, ଆପଣ ପିଇନାହାନ୍ତି ଏ ଯାଏଁ ? ଆଶ୍ଚର୍ଯ୍ୟ ! ଆପଣ ଏତେବଡ ଅଫିସର ! ଖାଇବେ ନାହିଁ, ପିଇବେ ନାହିଁ, ଜୀବନକୁ ଭୋଗ କରିବେ ନାହିଁ, ତେବେ ବଞ୍ଚିବାର ଅର୍ଥ କ'ଣ ? ଠିକ୍ ଅଛି, ଆପଣଙ୍କୁ ମୁଁ ସବୁଠି ଚିହ୍ନା କରେଇ ଦେବି । ମୋର ଅନେକ ନାରୀବନ୍ଧୁ ଅଛନ୍ତି । ଆପଣଙ୍କୁ ଦେଖିଲେ ଭାରି ଖୁସି ହେବେ । ...ଓଃ, ଆପଣଙ୍କ ବାପା ମା' ଅଛନ୍ତି ? ସେମାନେ ବୁଢା ହେଇଯାଇଛନ୍ତି । ହା, ହା, ହା, କାହାର ବାପ ମା' ବୁଢା ନୁହଁନ୍ତି ? ଆପଣଙ୍କ ସ୍ତ୍ରୀ ଦେଖିବାକୁ ବହୁତ ସୁନ୍ଦରୀ ? ବା, ଆଣନ୍ତୁ ନା ! ଆମେ ତାଙ୍କୁ ସବୁ ଶିଖେଇଦେବା । ସେ ଏଠି ଖୁବ୍ ଚାଲାକ୍ ହୋଇଯିବେ !"...

ଗିରୀଶ ନିଃଶ୍ୱାସ ଚେଜିଯାଇଥାଏ । ଅନ୍ଧାରକୁ ମୁହଁ କରି ସେ ସେମିତି ଠିଆ ହୋଇ ରହିଥାଏ ରାସ୍ତାଟାରେ ।

ତାକୁ ଲାଗିଲା ସେ ଖୁବ୍ ଜୋର୍‌ରେ ଗାଡିଟାଏ ଚଳଉଚି । ପାଣିପରି ଢଳଢଳ ଦିଶୁଚି ହାଇଦ୍ରାବାଦର ବିରାଟ କୋଠାସବୁ । ତାକୁ କେହି ହୁଏତ ପଛରୁ ଗୋଡେଇଚି ଧରିବାପାଇଁ । ତା' ଚାରିଆଡେ ସତର୍କ-ଘଣ୍ଟି ସବୁ ବାଜୁଚି; ଚିତ୍କାର ଶୁଭୁଚି ନାନାପ୍ରକାର । ସାମ୍ନାରୁ ମାଳ ମାଳ ଧଳା ଆଲୁଅ ଏକାଠି ଜଳିଉଠୁଛନ୍ତି, ନାଲି ହୋଇଯାଉଚନ୍ତି । ତୁମୁଳ ଶବ୍ଦ ଭିତରେ ଧପ୍‌କିନା ଲିଭିଯାଉଚି ସାରା ଆକାଶ ।

ଗିରୀଶ ବୋଧେ ମରିଯାଇଚି ! ବେଶ୍ ଭଲ ହେଇଚି !! ସେଥିରେ କାହାର କ'ଣ କହିବାର ଅଛି ? କାହାର ବା କ'ଣ ଯାଏ-ଆସେ ? ଓ...ସେ ଜ୍ଞାତିକୁଟୁମ୍ବ ଟିକିଏ ସକସକ ନ ହେଲେ ଲୋକେ କ'ଣ କହିବେ ? ମା' ହେଇ ଦି'ଚାରି ଟୁହା ବୁକୁ ବାଡେଇ ନ କାନ୍ଦିଲେ କେମିତି ଚଳିବ ? ଆଉ

ହେମା ତ ଛେଳିକୋଡି ହେବା କଥା । ସେ ଏକୁଟିଆ ବିକଳ ହଉଚି; ନିଃଶ୍ୱାସ ନ ଅଣ୍ଟିଲା ପରି ପାଟି ସେମିତି ପାକୁପାକୁ କରୁଛି କାହିଁକି ? ସେ ବି ମରିଯିବ ନା କ'ଣ ? ଭାଇନା ଭାଉଜ ହେମାକୁ ଏମିତି ଜଗିପାଳ କରୁଛନ୍ତି କାହିଁକି ? ତା'ର ସରକାରୀ ଟଙ୍କା କିଛି ପାଇବା କଥା ତ ! ସେଥିପାଇଁ ତାକୁ କବ୍‌ଜାରେ ନ ରଖିଲେ କେମିତି ହେବ ? ନନ୍ଦୁ ଉପରେ ବି ଭିଡାଓଟରା ଚାଲିଛି । ପାଚିଲା ଫଳକୁ ଚମ୍ପାଚମ୍ପା ହେଲାପରି ସେମାନେ ଦିଶୁଛନ୍ତି । ସେମାନେ ଜାଣନ୍ତି ଯେ ଚିପୁଡି ଜାଣିଲେ ବେଶ୍ ରସ ନିଗାଡିବା ଜିନିଷ ଏ ଖଣ୍ଡ ! ନନ୍ଦୁର ଦୁଇହାତକୁ ଧରି ଦୁଇଆଡୁ ସେମାନେ ଟାଣିଲାଗିଛନ୍ତି । ନନ୍ଦୁ ଚିତ୍କାର କରୁଚି । କେହି ନାହିଁ ତାକୁ ରକ୍ଷା କରିବାକୁ ।

ଗିରୀଶର କାନମୁଣ୍ଡା ଗରମ ହୋଇଗଲା । ସେ ସେଇକ୍ଷଣି ବୁଲିପଡିଲା ଘରମୁହାଁ । ସେ ସ୍ଥିରକଲା ଯେ ନନ୍ଦୁକୁ ସେ ହିଁ ବଞ୍ଚେଇ ରଖିପାରେ । ଆଉ କାହାରି କିଛି ଯାଏ ଆସେ ନାହିଁ । ଗିରୀଶର ସୁଖଦୁଃଖର ଭାଗିଦାର ଆଉ ଏ ପୃଥିବୀରେ କେହି ନାହିଁ । କେବଳ ନନ୍ଦୁ ହିଁ ସେ ସମ୍ଭାବନା ନେଇ ଆସିଛି ।

ଗିରୀଶ ଜାଣି ନ ଥିଲା ଯେ ଏତେବେଳଯାଏଁ ସେ ତା' ସରକାରୀ ଘରର ମାତ୍ର ପଚାଶ ଗଜ ଦୂରରେ ହିଁ ଥିଲା । ପାନ ଦୋକାନୀ ହସି ହସି ପାନ ଟେକି ଧରି କହିଲା, "ଆପଣଙ୍କ ପାନ ମୋଡି ଦେଉ ଦେଉ ଆପଣ ଚାଲିଗଲେ । ଏଇ ନିଅନ୍ତୁ!"

ଗିରୀଶ ଦେଖିଲା ଯେ ମାତ୍ର ଦଶ ମିନିଟ୍ ପାଇଁ ସେ ଆଗକୁ ଯାଇ ଫେରିଆସିଛି । ସେ ପାନଯୋଡିକ ନେଇ ଘରଆଡିକି ଫେରିଲା । ତା' ଗୋଡଯୋଡାକ କୋଡିଏ ମାଇଲ୍ ଚାଲି ଆସିଥିବା ପରି ଘୁଷୁରୁଥାନ୍ତି । ଆଖିଯୋଡାକ ସାରା ରାତି ଜାଗି ରହିଥିବା ପରି କ୍ଲାନ୍ତ ।

ଘରର ଫାଟକ ପର୍ଯ୍ୟନ୍ତ ଗୁନ୍ଥି ହୋଇ ରହିଥାଏ ଅଦୃଶ୍ୟ କୁହୁଡି । ଗିରୀଶ ଅଟକିଗଲା ମୁହୂର୍ତ୍ତେ । ତା'ପରେ ଧପ୍‌ଧପ୍ ପଶିଗଲା ଘର ଭିତରକୁ । ନନ୍ଦୁ ଆସି ତାକୁ ପାଛୋଟି ନେଲା ହାତ ଧରି । "ଆଉରି ମିଠେଇ ଆଣିଚ ?" ବାପା, ମିଠେଇ ଆଣିଚ ? ପଚାରୁଥାଏ । ହେମା ହାତରେ କ'ଣଟାଏ ଧରି ତା' ସାମ୍ନାରେ ପାରିହେଇଗଲା ରନ୍ଧାଘରକୁ । ଫେରି ଚାହିଁଲା ନାହିଁ । ବୋଉ ବାପା ସେମିତି କେଉଁଠି ଛକି ରହିଗଲେ, ଦିଶିଲେ ନାହିଁ । ହରୀଶ୍ ବୋଧେ ଫେରିନଥିଲା ।

ଗିରୀଶର ଭିତର ମଞ୍ଜ ଭୂମିକମ୍ପରେ ଦୂରୁଦୂରୁ କମ୍ପିଲା । ସେ ବୋଧହୁଏ ଦୁଇଫାଳ ହେଇଯିବ । ତା' ଦେହରେ ନିଆଁ ଲାଗି ହୁତ୍‌ହୁତ୍ ଜଳିଯିବ । ସେ ବୋହିଯିବ ଦୁଇଟି ଦିଗରେ ଲାଭାସ୍ରୋତ ପରି !

ସେ ଭିତର ପିଣ୍ଡାରେ ଗୋଡ ଫରକଚେଇ ଠିଆହେଲା । ତା' ଅନ୍ତନାଡି, ନାଭିକେନ୍ଦ୍ର, ବୁକୁ ଭେଦି ଗୋଟାଏ ଅପରିଚିତ ଗର୍ଜନ ଗୁମୁରି ଆସିଲା : "ଶୁଣ, ସବୁ କିଏ କୁଆଡେ ଅଛ ! କାଲି ସକାଳୁ ଯେ ଯେମିତି ଏଠୁ ବିଦା ହେଇଯାଅ ! ବୁଢାବୁଢୀ ତାଙ୍କ ଗାଁକୁ ଚାଲିଯାନ୍ତୁ । ଏ ମା'ପୁଅ ହଳକ ଯାଆନ୍ତୁ ତା' ବାପଘରକୁ! ହରୀଶ୍ ତା'ର ଯୁଆଡେ ମନ ସିଆଡେ ଯାଉ । ମୁଁ ଯିବି ହାଇଦ୍ରାବାଦ ! ଏ ଘରେ ତାଲା ପଡି ସରକାରକୁ ଜମା ହେଇଯିବ ।"

ଏତେପାଟିରେ ଗିରୀଶ ବୋଧେ କେବେ କହି ନ ଥିଲା...ଏଭଳି ନିଷ୍ପତ୍ତି ନେଇ କହି ନ ଥିଲା! ଥମ୍ ହୋଇଗଲା ଘରସାରା!

ଗିରୀଶ୍ ତା' ଶୋଇବା ବଖରାକୁ ପଶିଗଲା । ଭୁସ୍‌ଭାସ୍ ଫିଙ୍ଗାଫୋପଡା କଲାପରି ତା' ବାକ୍ସରେ ଲୁଗାପଟା ଥୋଇଲା । ଝୋଲାରେ କ'ଣ ସବୁ ଭର୍ତ୍ତିକଲା । ତା' ପାଦ-ଶବ୍ଦରେ ଘରସାରା ଦୁଲୁକିଲା ପରି ମନେହେଲା । କେହି ଆଉ ଚୁଁ ଶବ୍ଦଟିଏ କଲେନାହିଁ । ତା' ସାମ୍ନାକୁ କେହି ବାହାରିଲେ ନାହିଁ । ଘରେ ସତେ ବା ତା'ଛଡା ଆଉ କେହି ନଥିଲେ ।

କିଛି ସମୟ ପରେ ସେ ଆଉ ଜାଣିପାରିଲା ନାହିଁ କ'ଣ କରିବ! ସେ ବାକ୍ସଖଣ୍ଡକ ଏବଂ ଝୋଲାଟାକୁ ଟେକି ନେଲା ଦାଣ୍ଡଘରକୁ । ହେଇ ବୋଧେ ଗାଡି ଆସି ଅପେକ୍ଷା କରିଛି । ଦୁଇ ମିନିଟ୍‌ରେ ବାହିରିଯିବ! ଏଇ ଭଙ୍ଗିରେ ସେ ଡଗଡଗ ଚାଲୁଥିଲା ।

ବୋଉ ପାଟି ଶୁଭିଲା : "ଆଉ ଅନେଇଚ କ'ଣ ? ଶୁଣିଲ ତ! ଉଠ ଏଥର ।" ତା'ପରେ ଅଳ୍ପ ଅଳ୍ପ କଥାବାର୍ତ୍ତା । ଖସର ଖସର ଚାଲି । ଖୁଟ୍ ଖୁଟ୍ ଟିଣ ଡବାଆଦିର ଶବ୍ଦ ।

ଗିରୀଶ ମୁସାଫିରଖାନାରେ ଉଦ୍‌ବିଗ୍ନ ଯାତ୍ରୀପରି ଦାଣ୍ଡଘରେ ବସିଥାଏ । କାନେଇଥାଏ । ତା' ବୁକୁ ଭିତରେ ତଥାପି ଅନେକ ଉତାପ! ଟିକିଏ ଉଖାରି ଦେଲେ ଅଜସ୍ର ଅଗ୍ନ୍ୟୁତ୍ପାତ ହେଲାଭଳି ତରଳ ଉପାଦାନ ମନ୍ଥି ହୋଇ ବୋହିଯିବ । କିନ୍ତୁ ସଂସାର ସେତେବେଳେ କ୍ରୀତଦାସଟିଏ ପରି ତା' ପାଦତଳେ ଲେପଟି ପଡିଥାଏ; ମିଟିମିଟି ଅନେଇଥାଏ । ପ୍ରତିବାଦ କରିବ କିମ୍ବା ପ୍ରତିରୋଧ କରିବ, ଏଭଳି ଶକ୍ତି ତା'ର କାହିଁ ?

କେତେବେଳୁ ବୋଉ ବୋଧହୁଏ ଆସିଲା! ଗିରୀଶ ଉଠିଲା ଭଳି ବସିଥାଏ । ଆଣ୍ଠୁ ଉପରେ କହୁଣୀ ରଖି ଆଙ୍ଗୁଠି ଛନ୍ଦୁଥାଏ ବାରମ୍ବାର । ବୋଉକୁ ଚାହିଁଦେଇ ମୁହଁ ଫେରେଇନେଲା କାନ୍ଥଆଡେ ।

ବୋଉ ଅସ୍ୱାଭାବିକ ଗହଳିଆ ସ୍ୱରରେ କହିଲା, ଆମେ ଏମିତି ବାହାରିସାରିଥିଲୁ ଗାଁକୁ ଯିବୁ ବୋଲି । ତତେ କହିପାରୁ ନଥିଲୁ । ଭଲ ହେଲା । ମଗୁଶିର ମାସ ଶେଷ ପାଳିଟା ହେଲେ ସାତପୁରୁଷୀ ମାଟିରେ ଲକ୍ଷ୍ମୀ ବସିବେ । ଆମେ କାଲି ସକାଳୁ ଯିବୁ । ହରୀଶ୍ ଆମ ସାଙ୍ଗରେ ଆସିବ! ଆଉ ରହିଲା ହେମା...

ବୋଉ ଟିକିଏ ରହି କହିଲା, "ସେ କାହିଁକି ତା' ବାପଘରକୁ ଯିବ ? ତୁ କାହିଁକି ପ୍ରବାସରେ ଏକୁଟିଆ ରହି ହାତରେ ରାନ୍ଧି ଖାଇବୁ?" ଧୂଆ ଥାନ! ପୁଅ-ମାଇପଙ୍କୁ ସାଙ୍ଗରେ ନେଇଗଲେ ତୋର କ'ଣ ଅସୁବିଧା ହେବ ? ବାପା କେତେବେଳେ ନିଃଶବ୍ଦରେ ଆସି ଠିଆହୋଇଥିଲେ । କହିଲେ, "କାଲି ଦକ୍ଷିଣ-ଯାତ୍ରା ଅନୁକୂଳ ନାହିଁ ।" ଆଉ ଯୋଡାଏ ଦିନ ସତାରିଗଲେ ବୁଧବାର ସକାଳୁ ପୃଷ୍ଠଯୋଗିନୀ ପଡିବ । ଆମେ କାଲି ଗାଁରେ ପହଞ୍ଚିଲା ଉତାରୁ ପଅରଦିନ ସକାଳୁ ସେ ବାସମତୀ ଚାଉଳଗଣ୍ଡାକ ପଠେଇ ଦିଅନ୍ତି । ଆମର ଏଠି କିଏ ତାକୁ ଖାଇବ ? ସେ ଦକ୍ଷିଣ ମୁଲକରେ ଯାଉ ଯାଉ କ'ଣ ମିଳିବ କି ନାହିଁ କେଜାଣି ? ଏଠୁ ନେଇଯିବା ଭଲ ।

ଗିରୀଶର ଉତପ୍ତ ପୃଥିବୀରେ ହଠାତ୍ ଗୁମ୍‌ଗୁମ୍ ବର୍ଷା; ମେଘବତାସି ଅସୁମାରି । ତାକୁ ଧୂଆଁ ପାଣିରେ ଆକ୍‌ତା ଆକ୍‌ତା ଲାଗିଲା । ସେ ବୁଝିପାରିଲା ନାହିଁ, ବିଶ୍ୱାସ କରିପାରିଲା ନାହିଁ କିଛି ! ମୁହଁ ଫଡ଼୍‌କରି ବୁଲେଇ ଆଣି ଘର ଭିତରକୁ ଉଠି ଚାଲିଯାଉଥିଲା । ଦେଖିଲା ପଛ ଚୌକିରେ ହରୀଶ ନନ୍ଦୁକୁ ଜାକିକରି ଚୁପ୍‌ଚାପ୍ ବସିଚି ତଳକୁ ମୁହଁକରି । ବାପା ବୋଉ ଠିଆହୋଇଛନ୍ତି ! ଆଲୁଅରେ ନିର୍ମଳ ଦିଶୁଚନ୍ତି । ଭିତର ପିଣ୍ଡାରେ ଶାଶୁଙ୍କ ବାକ୍‌ସରେ ହେମା କେତେ କ'ଣ ଜିନିଷ ରଖୁଚି । ତା'ର ନିଜ ଶାଲ୍ ଖଣ୍ଡିକ ଭର୍ତ୍ତି କରିଦେଉଚି, ଶୀତଦିନେ ବୁଢୀକୁ ଶୀତ ହେବ ବୋଲି !

ଗିରୀଶର ଆଣ୍ଠୁ ହୁଗୁଳିଗଲା ପରି ଲାଗିଲା । ସେ ଖଟ ଉପରେ ସେମିତି ଜୋତା ପିନ୍ଧି ଗଡିପଡିଲା । ଆଖି ବନ୍ଦ କରି ଶୁଣୁଥିଲା ତା' ଭିତରର ଘନଘୋର ବର୍ଷା । ଲୁହ ନିଗିଡି ଆସୁଥିଲା ଅବାରିତ । "ମୁଁ ବେକୁବ୍... ମୁଁ ଉଲ୍ଲୁ...ମୁଁ ଛୋଟଲୋକ ।"

ବୋଉ କହୁଥିଲା, "ନାଇଁ ମ ! ହେମା କାଇଁ ବାପଘର ଯିବ ? ସେ ସବୁବେଳେ ସେମିତି ମାଇଅଁଶିଆ, ଲାଜକୁରା ! ମାଇପକୁ ସାଙ୍ଗରେ ନବ ବୋଲି ମନ ଥିଲେ ସୁଦ୍ଧା କହିପାରିବ ନାହିଁ ! ମୁଁ ତାକୁ ଚିହ୍ନିନାଇଁ ?"

ହେମା ଆସି କେତେବେଳେ ନୀରବରେ ତା' ଜୋତା ମୋଜା ଫିଟେଇ ଦେଉଥିଲା । ଗିରୀଶ ବିସ୍ତାରି ହୋଇ ଯାଉଥିଲା ପୂର୍ବରୁ ପଶ୍ଚିମ ଦିଗନ୍ତ ଯାଏ । ଆକାଶରେ ଦିଗ ଅଛି, ନା ଆକାଶ କଥା କହେ ?



ଗଳ୍ପ ସମାହାର (ପ୍ରଥମ ଭାଗ) ■ ୨୧୦

## ସୂଚୀପତ୍ର

# ସ୍ୱପ୍ନ-ବାହକ

ଏ ପୋଲଟା ପାରିହେଲେ ତେଣିକି ଅନ୍ୟ ରାଜ୍ୟ । ଅନ୍ୟ ରାଜ୍ୟ କହିବାର ଅର୍ଥ ହେଲା ଯେ, ସେମାନେ ଆମକୁ ଆଉ ପ୍ରକାରେ ଦେଖାଯା'ନ୍ତି । ଥରେ ସେଇଠି ପହଞ୍ଚିଗଲେ ଏ ଧାରଣାଆ ବଦଳିଯାଏ । ତାଙ୍କ ବୈଠକଘରର ପରିଚିତ ଆସବାବପତ୍ର ଭିତରେ ବସି ତାଙ୍କ ମେଳରେ ଚା ଖାଇଦେଲେ ଜଣାଯାଏ ଯେ, ସେମାନେ ଆମ ଭଳି ଲିପ୍‌ଟନ୍ ଗ୍ରିନ୍ ଲେବଲ୍ ବ୍ୟବହାର କରନ୍ତି । ଖଦି ବୋର୍ଡରୁ ଛିଟକନା ନେଇ ଗଦି ଖୋଳ କରନ୍ତି । ସେମାନେ ବି ଦକ୍ଷିଣପଟ ଝରକା ଖୋଲା ରଖନ୍ତି ପବନ ପାଇଁ, ପୂର୍ବପାଖ ଝର୍କା ଦେଇ ସୂର୍ଯ୍ୟୋଦୟ ଦେଖିବାକୁ ଭଲପାଆନ୍ତି – ସବୁ ଆମରି ଭଳି । କିନ୍ତୁ ସେଇ ପୋଲଟି ମଝିରେ ରହିବାରୁ ଅସୁବିଧା । ସଞ୍ଜ ପହରଟା କେମିତି କେଜାଣି ସବୁଦିନ ଗୋଟାଏ ଧୂଆଁ କି କୁହୁଡି କାହୁଁ ସେଇ ପୋଲ ଉପରକୁ ଉଠିଆସେ । ଆଲୁଅ ବତି ସବୁ ନୂଆ ରଙ୍ଗ ଲେସିହେଲାପରି ବିସ୍ମୃତ ଦେଖାଯାଆନ୍ତି । ଏ ପାଖର ଖୁବ୍ ପରିଚିତ ଠୋସ୍ ମଣିଷଗୁଡିକ ପୋଲ ଉପର ଦେଇ ଗଲାବେଳେ ଭାରି ଝାପ୍‌ସା, ଅପରିଚିତ, ଅପସରିଯାଉଥିବା ପିଠିଗୁଡିଏ । ସେତେବେଳେ ଲାଗେ ଯେ ବୋଧେ ସେ ଆଉ ଆଦୌ ଫେରିବେ ନାହିଁ ।

ମୁଁ ସେ ପୋଲ ପାଖାପାଖି ଗୋଟାଏ ଦୋକାନରୁ ପାନ ଖାଇବାକୁ ଠିଆହୋଇଥିଲି । ସରୁ ଗୁଆ, ଜାୟତ୍ରୀ, ଲବଙ୍ଗ, ଗୁଜୁରାତି, ଚମନବହାର୍‌ରେ ସାମାନ୍ୟ ବାବା ଜର୍ଦ୍ଦା ଦେବାକୁ ବରାଦ କରିଥିଲି । ଖଇର ଚୂନ ବୋଳରେ ଲଷେଇଥିବା ଟିପମାନଙ୍କରେ ସେ ପାନଫାଳ ଉପରେ ପରଷି ଲାଗିଥାଏ ବିବିଧ ସାଦ ଆଉ ବାସ୍ନା । ମୁଁ ଅନ୍ୟମନସ୍କଭାବେ ଚାହିଁଥାଏ ରାସ୍ତାରେ ଅନବରତ ଲାଗିଥିବା ଗହଳିକୁ ।

କେତେ ଯେ ଲୋକ ଏଠି ଅଛନ୍ତି ସତେ ! ହରେକ ଲୋକ ପାଇଁ ସତନ୍ତ୍ର ଚିନ୍ତା, ଯୋଜନା । ଗୋଟାଏ ଅଲଗା ପୃଥିବୀ । ମୋତେ ସାମାନ୍ୟ ହସ ମାଡିଲା – ଏସବୁ ତା'ହେଲେ ପୃଥିବୀମାନେ ଚାଲିଛନ୍ତି, ମଣିଷ ନୁହନ୍ତି । ମୁଁ ଘରୁ ବାହାରିଲାବେଳକୁ ମୋର ସାମାନ୍ୟ ବିଳମ୍ବ ହୋଇଯାଇଥିଲା,

କାରଣ ମୋ' ଚପଲର ବୁଢ଼ା ଆଙ୍ଗୁଠି ପାଖ ଫିତାଟା ପଞ୍ଚମ ଥର ଛିଣ୍ଡିଥିବାରୁ ତାକୁ କଣ୍ଟା ପିଟି ମରାମତି କରୁ କରୁ ଡେରିହୋଇଗଲା । ମୋର କି ସେଥିକୁ ଆଦୌ ଖାତିର ଅଛି ? ମୁଁ କ'ଣ କୋଉ ସାହୁର ଖାତକ ହୋଇଚି କି ? ମୋ' ମନେହେଲା ମୁଁ ଆସିଲି ବା ନ ଆସିଲି, କହିଲି ବା ନ କହିଲି, ଭୋଟ ଦେଲି ବା ନ ଦେଲି । ମୁଁ ଏମିତି ଗୁଡାଏ ଆବୁରୁ ଜାବୁରୁ ନିୟମ ମାନି ମାନି, ପାଦ ହାତ ପାଟିକୁ ଜଗି ଜଗି ଏତେ ବର୍ଷ ବିତେଇଦେଲି – ଆଉ ନୁହେ ।

ଦି' ଚାରିଟା ଗାଡି ଚାଲିଗଲା । ଏବେ ଅନେକ ଗାଡି ହେଇଗଲାଣି । ଯାହାକୁ ଦେଖିବ ଗାଡି ଧରି ବୁଲୁଚି । ଟିନ୍ ଟାରାରେ ଚିକନ୍ ରୋଷ୍ଟ ଖାଉଚି, ମଣିଷଙ୍କୁ ଆଖି ଠାରି ଚିଟା କାଟିଦଉଚି । ବେଳେବେଳେ ଆଗ ଗାଡିର ଧୂଳି ଭେଦି ଅନେଇଲେ ପଛ ଗାଡିର ପରିଚିତ ହସଟିଏ ଦିଶିଯାଉଚି । ସବୁ ଠିକ୍ ଭାଇ ! – କାହିଁକି କାହାକୁ କ'ଣ କହିବା ? ଆମେ ଏମିତି କିଏ କି ?

ସେ ଗହଳି ଭିତରେ ଧୂଆଁ ଆଉ ସନ୍ଧ୍ୟା ଫେଣ୍ଟି ହେଉଥିଲାବେଳେ, ସେ ପୋଲ ଉଠାଣି ପାଖରେ ଗୋଟିଏ ପିଠି ଦେଖି ମୁଁ ଚମକି ପଡିଥିଲି । ଆରେ, ଏ ତ' ନିଖିଳ ପଟ୍ଟନାଏକ ! ସେମିତି ଡେଙ୍ଗାଳିଆ ଚେହେରା, ଖଦଡ ପଞ୍ଜାବି ଉପରକୁ ବଙ୍ଗାଳୀ ବଙ୍ଗାଳୀ ପଛ-କାତୁଆ ମୁଣ୍ଡ । ଉପରଟା ସାମାନ୍ୟ ଚନ୍ଦା । ସେଇ ତ...ସେ କୁଆଡେ ଚାଲିଚନ୍ତି ? ତା'ପରେ ତାଙ୍କ ଗାଡି କାଇଁ ? ସେ ତ ଏମିତି ଚାଲି ଚାଲି ସାଧାରଣ ଲୋକଙ୍କ ସାଙ୍ଗେ ପଦଯାତ୍ରା କରିବା ଲୋକ ନୁହନ୍ତି । ତାଙ୍କ କଥା, ଠାଣି, ଚେହେରା ଚିନ୍ତା ସବୁଠି ଆଭିଜାତ୍ୟର ଛାପ ।

"ଆଜ୍ଞା ପାନ !"

ମୁଁ ବୁଲିପଡି ପାନ ବିଡାଟା ଗୋଟାଏ ହାତରେ ନେଇ ଆଉ ହାତରେ ତାକୁ ଦୁଇଟଙ୍କା ବଢ଼ାଇଦେଲି । ତରତର ହେଇ ଆଗେଇଗଲି ଗହଳି ଭିତରେ ନିଘା ରଖି । ନିଖିଳ ପଟ୍ଟନାୟକ ଆଉ ଦିଶୁନଥିଲେ । ତେବେ ସେ ଯିବେ କୁଆଡେ – ଏଇ ଭିତରେ ତ ଥିବେ । ଟିକିଏ ଆଗେଇଗଲେ ବଳେ ଦେଖାଯିବେ ନାହିଁ କି !

ମୁଁ ଗୋଟାଏ ଠେଲାଗାଡି ପଛପଟେ ପଡିଗଲି । ସେଥିରେ ଧୋବା କାଚିଥିବା ଲୁଗା ମୋଟା ହୋଇ ବୋଝେଇ ହୋଇଥାଏ । ପାଖରେ ସୋଡା ଖାର ପାଣିର ସଫା ସଫା ଗନ୍ଧ । ମୁଁ ତାକୁ ଆଉ କୌଣସି ପ୍ରକାରେ ପାରି ହୋଇପାରୁ ନଥାଏ । କି ଦୁର୍ଯୋଗ! ପୋଲ ଉପରେ ମୋର ଉତ୍କଣ୍ଠା ଆଉ କହିବାର ନୁହେଁ । ମୋ' ଉପରେ, ଠେଲା ଉପରେ, ସେ ମଣିଷଟା ଉପରେ ମୁଁ ଭୟଙ୍କର ଚିଡିଯାଇଥାଏ । ମୋର ଦୁର୍ଭାଗ୍ୟ ଯେ, ଗୋଟାଏ ଏମିତି ବୋଝେଇ ଠେଲା ସବୁବେଳେ ମୋର ପଥରୋଧ କରି ଆସିଛି । ମୁଁ ତାକୁ ଅତିକ୍ରମ କରିପାରିନାହିଁ । ବାଁ ଡାହାଣ ଦେଇ ଲମ୍ବା ପାହୁଣ୍ଡ ନେଲାବେଳକୁ ଅନ୍ୟ ଲୋକଙ୍କ ଉପରେ ହାବୁଡି ଯାଇଛି । ତାଙ୍କୁ ଝୁଣ୍ଟି ଚକଟି ଠେଲା ଖାଇ ପଛେଇଯାଇଛି । ଧେତ୍‌ତେରି – ଗୋଟାଏ ମାଇକିନା ଛତାଟେକି ମର୍ଦାନି ଢଙ୍ଗରେ ସେ ଠେଲାଟାକୁ ପାରି ହୋଇଗଲା ପରେ ମୁଁ ଆଉ ସମ୍ଭାଳି ପାରିଲି ନାହିଁ, ଧସେଇ ପଶିଲି ଡାହାଣ ପାଖ ଗହଳି ଭିତରକୁ, ଅପରିଚିତ ଜନସ୍ରୋତକୁ । ସମ୍ମୁଖରେ ବାଟ ରୋଧି ଠିଆ ରହୁଥିବା କାନ୍ଥ

ପରି ସେ ଠେଲା ଡାକ ଛାଡି ଡାହାଣକୁ ମୋଡ ନେଲା, ପାଟିତୁଣ୍ଡ ହେଲା, ଗାଳିଗୁଲଜ ହେଲା । ମୁଁ ବି ଗାଳିଦେଲି ଏବଂ ଶୁଣିଲି । ସେତିକିବେଳେ ମୋର ମନହେଲା ସେ ଶାଲା ଠେଲା ଖଗଡକୁ ପୋଲ ତଳକୁ ଜବରଦସ୍ତ ଗଡେଇଦେବାକୁ ଏବଂ ସେତେକିବେଳେ ମୁଁ ତା' ଆଗକୁ ଚାଲିଯାଇଥିଲି ।

ଓଃ, ମୋ' ଉପରୁ ଗୋଟାଏ ଦୁର୍ବହ ବୋଝ ସତେଜି ଓହ୍ଲେଇଗଲା । ମନେ ମନେ ଜଣାଇଲି – ଧୋବା ଭାଇ, ତୋ' ଚରିଖୁରାକୁ ନମସ୍କାର । ତୁ ଯାହା କର ପଛେ ମୋ' ଆଗରେ ତୋର ବିପୁଳ ବିଭବକୁ ନେଇ ବାଟ ରୋଧି ଆଉ କେବେ ଠିଆହୁଅନା ।

ଏତିକିବେଳେ ମୁଁ ଆଖି ବୁଲାଇ ଆଣିଲି । ହେଇ ତଳେ, ପୋଲ ଗଡାଣିର ଶେଷ ମୁଣ୍ଡରେ, ସେଇ ଖଦଡ ପଞ୍ଜାବିରେ ଡେଙ୍ଗାଳିଆ ମଣିଷ । ମୁଁ ତାଙ୍କ ଉପରୁ ଆଖି ନ ଫେରାଇ ଧୁସି ହେଲି । କିନ୍ତୁ କହୁଣି ମାଡ ଖାଇ ପୁଣି ସଚେତନ ହେଲି । ଯେତିକି ହେଲା ସେତିକିରେ ସନ୍ତୁଷ୍ଟ ରହିବା ଉଚିତ ମନେକଲି । ଆଉ ବ୍ୟସ୍ତ ହେଲି ନାହିଁ ।

ନିଖିଳ ପଟ୍ଟନାୟକଙ୍କ ସାଙ୍ଗରେ ଅବଶ୍ୟ ଦେଖାହେବ – ସେ ଯିବେ କୁଆଡେ ? କିନ୍ତୁ ମୋଟ ଉପରେ ପୋଲ ପାରି ହୋଇ ଏମିତି ଚାଲି ଚାଲି ଏ ପାଖକୁ ଆସିଲେ କାହିଁକି ? ...ସନ୍ଧ୍ୟା ଅନ୍ଧାର ଘନେଇ ଆସିଥାଏ । ରାସ୍ତାରେ ଆଲୁଅ । ଘର ଭିତରେ ଆଲୁଅ ଜଳି ଆସିଥାଏ । ମୁଁ ଖଣ୍ଡିଏ ପାନ ପାଟିରେ ପୂରେଇ ଦାନ୍ତ ମଡଉଥାଏ, ସରୁ ଗୁଆ ଓ ଗୁଜୁରାତି ଦାନା ଉପରେ । ନାକ ବାଟେ ଜର୍ଦାର ଧାସ ଆଉ ବାସ୍ନା ଭଲଲାଗୁଥାଏ ।

ଆଚ୍ଛା ନିଖିଳ ପଟ୍ଟନାଏକ ସେଇ ବାଟେ ଆସିଲାବେଳକୁ ପାନ ଦୋକାନ ପାଖରେ ମୋତେ ନିଶ୍ଚୟ ଦେଖିଥିବେ । ସେ କାହିଁକି ପାଖେଇଯାଇ ମୋ' କାନ୍ଧରେ ହାତ ପକେଇ ବନ୍ଧୁ ବୋଲି ଡାକିଲେ ନାହିଁ ? କାହିଁକି ପ୍ରସ୍ତାବ ଦେଲେ ନାହିଁ ସାଙ୍ଗ ହୋଇ ପୋଲ ଏପାରି ଆସିବାକୁ ? ମୁଁ ତ ସଦା ପ୍ରସ୍ତୁତ ହେଇ ରହିଚି ଯେଉଁଆଡେ ମନ ସେଇଆଡେ ଯିବା ପାଇଁ – ଖାଲି ମଣିଷଟିଏ ତା' ଉଷୁମ ହାତରେ ମୋ' ହାତ ଧରି ମୋ' ଆଖିରେ ଆଖି ରଖି ମୋତେ ଅଳ୍ପ ହସି ଡାକିଦେଲେ ହେଲା । ମୁଁ ସେତେବେଳେ ଭାବେ ସେଇ ତ ଈଶ୍ୱର – ତାକୁ କ'ଣ କିଛି ମନାକରିହୁଏ ?

ମୋର ସଂସ୍କୃତିଆ ବ୍ରାହ୍ମଣିଆ ଢଙ୍ଗ, ଚା ସିଗ୍ରେଟ୍ ନିଶା କିଛି ପାଖ ନ ପଶିବାର 'ମଫ' ପ୍ରକୃତ ଦେଖି ସୁଦ୍ଧା ନିଖିଳବାବୁ ମୋତେ ଭଲପାଇଛନ୍ତି । ମୋ' ସହିତ ଆଳାପ କରିବାକୁ ସମୟ ଦେଇଛନ୍ତି । ଏମିତି ଈଶ୍ୱର ପ୍ରସଙ୍ଗରେ ଥରେ ମୋତେ ଅପଦସ୍ଥ କରିବାକୁ ସେ କହିଥିଲେ, "ବୁଝିଲେ ରଥବାବୁ, ଆପଣଙ୍କର ଈଶ୍ୱରଫିଶ୍ୱର ମୁଁ ଜାଣେ ନାହିଁ; ଜାଣିବାକୁ ଚାହେନାହିଁ । କିନ୍ତୁ ଈଶ୍ୱର ମହାପାତ୍ରକୁ ଜାଣେ । ଭଗବାନ ସାଇଁକୁ ଜାଣେ । ରାମ ପଟ୍ଟନାୟକ, କୃଷ୍ଣ ସାହୁ, ଜଗନ୍ନାଥ ବେହେରାମାନଙ୍କୁ ଜାଣେ । ଏମାନେ ଏଇଠି ଅଛନ୍ତି ଆମ ସାଙ୍ଗରେ । ଆପଣ ଚାହିଁଲେ ତାଙ୍କ ସହିତ ଭଲ ଝଟ୍‌ଟିଏ ଉପଭୋଗ କରିପାରନ୍ତି । ଫ୍ଲସ୍ ଖେଳିପାରନ୍ତି, କ୍ଲବ୍‌ରୁ ରାତି ଦୁଇଟାରେ ଅଶ୍ଳୀଳ କଥା କହି ଠୋ ଠୋ ହସି ହସି ଫେରିପାରନ୍ତି । ତାଙ୍କ ସାଙ୍ଗରେ ଦୋସ୍ତି, କଜିଆ, ଗାଳିଫଜିତ୍ ସବୁ ଚଳେ । ବେଳ ପଡିଲେ ଡାକବଙ୍ଗଳାରେ ଈଶ୍ୱରବାବୁ ବା ଭଗବାନବାବୁ ସଂପୂର୍ଣ୍ଣ ଲଙ୍ଗଳା

ହେଇ ଆପଣଙ୍କ ସାମ୍ନାରେ ଉଭା ହୋଇଯାଇ ପାରନ୍ତି । ଏତେ କଥା କ'ଣ ଆପଣଙ୍କ ଈଶ୍ୱର, ଭଗବାନ ଅଥବା ଆଉ କିଛି ବୋଲାଉଥିବା 'ଗଡ୍' ପାଖରେ ସମ୍ଭବ ?"

"ନିଶ୍ଚୟ ସମ୍ଭବ; କିନ୍ତୁ ଏତେ ନିକଟେଇଗଲେ ତେଣିକି ସମ୍ଭାଳିବା କଷ୍ଟ ।"

"କଷ୍ଟ ? ମାନେ, ଏ ଦୁରାଚାରୀ ମଣିଷ ଈଶ୍ୱରଙ୍କ ପାଖକୁ ଲାଗିଗଲେ ହୁତ୍‌ହୁତ୍ ହେଇ ଜଳିଯିବ ନା କ'ଣ ? ନା – ଆପଣଙ୍କ ଈଶ୍ୱର ତାଙ୍କୁ ଛୁଆଁ ଦେଇ କଳୁଷିତ ହୋଇଯିବେ ଏବଂ ମହାସ୍ନାନ କରିବେ ? – ଓଃ, ଧନ୍ୟ ଆପଣଙ୍କର ବୁର୍ଜୁଆ, ଜମିଦାରିଆ ଈଶ୍ୱର ! ତାଙ୍କର ଗୋଟାଏ ସର୍ବସାଧାରଣଙ୍କ ପାଇଁ ଟିପ୍ ଏଡିସନ୍ କରାନ୍ତେ ନାଇଁ ?"

ମୁଁ ତା'ପରେ ଚୁପ୍ ରହିଯାଇଥିଲି । କାରଣ ନିଖିଳ ବାବୁଙ୍କୁ ସେତେବେଳକୁ ସାମାନ୍ୟ ନିଶା ଧରି ଆସୁଥିଲା । ବକର୍ ବକର୍ ହବା ପାଇଁ, ଯାହା ମନ ତାହା କହି ଜିଭର ଅରମାନ୍ ମେଣ୍ଟାଇବାକୁ ସେ ସଜ ଉଣ୍ଡୁଥିଲେ । ମୁଁ ପାଟି ଫିଟେଇଥିଲେ ଇ ସେ ଦି'ଗୁଣ ଉତ୍ସାହରେ ଗପିଥା'ନ୍ତେ ।

ପୋଲ ଗଡାଣି ପାଖରେ ଗହଳି ଭାଙ୍ଗି ଯାଉଥାଏ । ବାଁ ଡାହାଣ ସାମ୍ନା ରାସ୍ତାମାନଙ୍କରେ ଲୋକ ସବୁ ଓହ୍ଲେଇ ଯାଉଥା'ନ୍ତି । ଘୁଞ୍ଚିଯାଉଥା'ନ୍ତି ଦୂରଦୂରାନ୍ତରକୁ । କିନ୍ତୁ ସେ ଲୋକଟା କାହିଁ ? ମୁଁ ଚାରିଆଡକୁ ଚାହିଁଲି । ମୁଁ ଯାହା ମୂଳରୁ କହୁଥିଲି ସେଇଟା ସତ୍ୟ ଅନୁଭବରୁ କହୁଥିଲି । ସତକୁସତ ସେ ଅଞ୍ଚଳଟା କେମିତି ଗୋଟାଏ ଖାଲୁଅ, ଅନ୍ଧାରିଆ ଶୁନ୍‌ଶାନ୍ ଲାଗେ । ସତେ ବା ଲୋକେ ଚାଲିଲେ ତାଙ୍କ ପାଦ ଶବ୍ଦ ଶୁଭେ ନାହିଁ । କଥାବାର୍ତ୍ତା ଶୁଭେ ନାହିଁ । ଖାଲି ଛାଇ ଆଲୁଅ ଦିଶୁଥାଏ । ସେଥିରେ ବଡଭାଗ ଛାଇ । ଭାରି ଅସସ୍ତି ଲାଗେ । ସେଥିପାଇଁ ମୋତେ ସେତିକିବେଳେ ସେଇଭଳି ଲାଗୁଥିଲା । ମନ ହଉଥିଲା ପଛେଇଆସିବାକୁ ।

ଏତିକିବେଳେ ଡାହାଣ ପାଖ ସାମାନ୍ୟ ଦୂର ବତିଖୁଣ୍ଟ ତଳେ ସେ ଲୋକଟା ପାରି ହେଉଥିବାର ମୁଁ ଦେଖିପାରିଲି । ଆଛା କଥା ! ସେ କ'ଣ ପହରି ଯାଉଛି ନା କ'ଣ ? ମୁଁ ତ ବେଶ୍ ଜୋର୍‌ରେ ଚାଲିପାରେ – ଆଛା କଥା ! ସେ କ'ଣ ପହରି ଯାଉଛି ନା କ'ଣ ? ମୁଁ ତ ବେଶ୍ ଜୋର୍‌ରେ ଚାଲିପାରେ – ସେ କେମିତି ମୋର ଏତେ ଦୂରକୁ ଚାଲିଗଲା ? ନିଖିଳ ପଟ୍ଟନାଏକକୁ ମୁଁ ନୂଆ ଦେଖୁଛି ନା କ'ଣ ! ମୁଁ କେବଳ ନୁହେଁ – ଆମ ସହିତ ଜଣାଶୁଣା ସମସ୍ତେ କହିବେ ଯେ, ସେ ଲୋକଟା ଟହଲିବା, ହାୱା ଖାଇବାରେ ବିଶ୍ୱାସ କରେ । ଟାଉଟାଉ ଏମିତି ଚାଲିବା ତା'ର ଅଭ୍ୟାସ ନାହିଁ । ବିଶ୍ୱାସ ବି ନାହିଁ । ଧାଉଁଥିବା ଲୋକଗୁଡାକୁ ସେ ଇତର ଜ୍ଞାନ କରେ – କହେ ସେଗୁଡାକ ସବୁ ସ୍ଲେଭ୍ । ସେମାନଙ୍କୁ ଚାବୁକ୍ ଦେଇ ଶାସନ କରାଯାଇପାରେ । ବିଭିନ୍ନ ପ୍ରକାର ବୋଝ ବୋହିବାରେ ନିଯୁକ୍ତ କରାଯାଇପାରେ ।

ମୁଁ ତଥାପି ଯଥାସମ୍ଭବ ଜୋର୍‌ରେ ସେଇ ଗଳି ଭିତରେ ତାଙ୍କୁ ଗୋଡେଇ ଗଲି । ଆଉ ଗୋଟାଏ ବତିଖୁଣ୍ଟ ପାଖରେ ଧଇଁସଇଁ ହୋଇ ତାଙ୍କ ପଛକୁ ଲାଗିଯାଇ ଡାକିଲି – "ନିଖିଳବାବୁ !"

ସେ ବତି ଆଲୁଅ ପାଖରେ ଥମ୍ ହେଇ ଠିଆହୋଇଗଲେ – କିନ୍ତୁ ଫେରି ଚାହିଁଲେ ନାଇଁ ।

ମୁଁ ଆଉ ଦୁଇ ପାହୁଣ୍ଡ ଆଗେଇ ଯାଇଥିଲି । ଦେଖିଲି ଗୋଟାଏ ସମ୍ପୂର୍ଣ୍ଣ ଅପରିଚିତ ମୁହଁ ମୋତେ ପ୍ରଶ୍ନ କଲାପରି ଚାହିଁଛି ।

ମୁଁ ଥମିକିଗଲି । ମୋ' ତୁଣ୍ଡରୁ ସ୍ବତଃ ବାହାରିଗଲା – "ଆଇ ଏମ୍ ସରି ।"

ସେ ଲୋକଟା ଦାନ୍ତ କାଢି ହସିଲା – ନିଃଶବ୍ଦ ଅପରିଚିତ ହସ ।

ମୁଁ କିଛି ମାତ୍ରାରେ ଡରିଗଲି । ଅତି ଅପ୍ରସ୍ତୁତ ବୋଧକଲି । କହିଲି, "କ୍ଷମାକରିବେ, ମୁଁ ଆପଣଙ୍କୁ ମୋର ଜନୈକ ବନ୍ଧୁ ନିଖିଳ ପଟ୍ଟନାଏକ ଭାବିନେଇଥିଲି । ଆପଣ ବିଶ୍ୱାସ କରନ୍ତୁ, ପଛପଟୁ ଆପଣ ଅବିକଳ ତାଙ୍କ ଭଳି ଦେଖାଯାନ୍ତି । ଆପଣଙ୍କୁ ଅଟକାଇଥିବାରୁ ମୁଁ ଦୁଃଖିତ ।"

ସେ ସେମିତି ଦାନ୍ତ କାଢି ହସୁଥିଲା – ତା'ର ସଫା ଦାନ୍ତ, ଆଖି ଆଉ ସେ କପାଳ, ସଳଖ ନାକ, ସାମାନ୍ୟ ଓସାରିଆ ପାଟି – ମୁହୂର୍ତ୍ତକ ପାଇଁ ପରିଚିତ ଜଣାଗଲା । ବତି ଆଲୁଅରେ ପୁଣି ସେ ମୁହୂର୍ତ୍ତକରେ ଅପରିଚିତ ହୋଇଗଲା । "ଆପଣ ତ' ଏତେ ବାଟ ଆସିଲେଣି – ଆସୁ ନାହାନ୍ତି ମୋ' ଘରକୁ ।" ମୋର ଦ୍ୱିଧା ଭାବ ଦେଖି ପୁଣି ସେ କହିଲା – "ହେଇ ଏଇଠୁ ସେ ଦ୍ୱିତୀୟ ଘରଟା – ଆସନ୍ତୁ ।"

ମୁଁ ତ' ମୋହାବିଷ୍ଟ ଥିଲି । ଯିବି ନଯିବି ବିଚାର କରୁ କରୁ ମୁଁ ସେ ଲୋକଟା ସହିତ ତା' ଦୁଆରେ ଯାଇ ପହଞ୍ଚ ଯାଇଥିଲି । ସେ ବାହାର କବାଟର ତାଲା ଫିଟାଇ ଘରେ ପଶିଲା । ମୋତେ ଲେଉଟି ଚାହିଁ ସେମିତି ହସିଲା ଏବଂ ସ୍ୱାଗତ ଜଣାଇବା ଭଙ୍ଗୀରେ ଦ୍ୱାର ମେଲାକରି ଅପେକ୍ଷା କଲା ।

ଲାଇଟ୍ ଲାଗିବାରୁ ଦେଖିଲି ସେ ଆସବାବ୍‌ପତ୍ର ସାଧାରଣ । ଏଠି ସେଠି କିଛି ମାଗାଜିନ୍, କିଛି ଜାମାପଟା, କିଛି ଅସହାୟ ଏକୁଟିଆ ଅଣିରାପଣର ନମୁନା ।

ଗୋଟିକିଆ ସୋଫା ଉପରେ ବସି ମୁଁ ତା' ଆଡେ ଚାହିଁଲି । ସେ ପକେଟ୍‌ରୁ ସିଗ୍ରେଟ୍ କାଢି ଟେବୁଲ ଉପରେ ଆସ୍‌ଟ୍ରେଟାକୁ ମୋ' ଆଡକୁ ଘୁଞ୍ଚାଉଥିଲା ।

ପେକେଟ୍‌ଟିକୁ ମୋ' ଆଡିକି ଖୋଲିଧରି, ମୁଁ ନାହିଁ କରିବାରୁ ଅଳ୍ପ ହସି ଫେରସ୍ତ ନେଇଗଲା ।

"ବଡ ଆଶ୍ଚର୍ଯ୍ୟ କଥା ! ମୁଁ ଶେଷ ପର୍ଯ୍ୟନ୍ତ ଆଦୌ ଭାବି ନଥିଲି ଯେ ଆପଣ ନିଖିଳ ପଟ୍ଟନାଏକ ନୁହନ୍ତି । ମୁଁ ପଛେ ପଛେ ଆସିବାର ଅର୍ଥ ଥିଲା ମୁଁ ନିଖିଳବାବୁଙ୍କୁ ପଚାରିଥା'ନ୍ତି ସେ କେବେଠୁ ଏମିତି ଚାଲି ଚାଲି ଲୋକଗହଳିରେ ପଶିଲେଣି ? କେବେଠୁ ପୋଲ ପାରିହେଇ ଏପଟକୁ ଆସିଲେଣି ? କାରଣ ମୁଁ ଜାଣେ ସେ ଲୋକ ଏପଟକୁ ଆସିବାକୁ ଜମା ପସନ୍ଦ କରେ ନାହିଁ ଏବଂ କମ୍ୟୁନିଷ୍ଟ ବିଷୟ ଉପରେ ଖୁବ୍ ଚମତ୍କାର ଭାଷଣ ଦେଲେ ସୁଦ୍ଧା ସେ ସାଧାରଣ ଜନତା ଭିତରେ ପଶି ପାଦରେ ଏମିତି ଚାଲିବ ନାହିଁ । ମୁଁ ଗୋଟାଏ ପ୍ରକାର କୈଫିୟତ ଦାବି କରିବାକୁ ପଛରେ ଏମିତି ଗୋଡାଇ ଆସିଥିଲି । ବର୍ତ୍ତମାନ ଏକ ପ୍ରକାର ଅସ୍ୱସ୍ତି ଲାଗୁଚି ଯେ..."

"ଯେ... ମୁଁ ନିଖିଳ ପଟ୍ଟନାଏକ ନୁହେଁ!" – ଧୂଆଁ ଛାଡି ସେ ଠୋ ଠୋ ହସିଲା । ମୁଁ

ଆହୁରି ତାଜୁବ୍ ହେଲି ଯେ ତା' ହସ ଅବିକଳ ନିଖିଳ ପଟ୍ଟନାଏକ ହସ ଭଳି । ଏତେ ବଡ ପାଟି ମେଲାକରି ହା ହା ହା ହା...ହସର ଉଲ୍ଲାସ । ମୁଁ ସାମାନ୍ୟ ଇତସ୍ତତଃ କରି ପଚାରିଲି, "ଆପଣଙ୍କର ପରିଚୟ ମୁଁ ଜାଣିପାରେ କି ?"

"ସେଥିରୁ ଆପଣ କ'ଣ ପାଇବେ ? ମୁଁ ଆପଣଙ୍କର ନିଖିଳ ପଟ୍ଟନାଏକ ନ' ହେବା ହିଁ ଅର୍ଥପୂର୍ଣ୍ଣ । ଯଦି ଆପଣ ଥରେ ଭୁଲ କରିଛନ୍ତି ବରଂ ସେଇ ଭୁଲ ଜାରି ରଖିଲେ କ୍ଷତି କ'ଣ ? ମୋ' କହିବାର ଉଦ୍ଦେଶ୍ୟ ହେଲା ଯେ ଆପଣ ସ୍ୱଚ୍ଛନ୍ଦରେ ମୋତେ ନିଖିଳ ପଟ୍ଟନାଏକ ଡାକି ପାରନ୍ତି – ମୋ' ଆଡୁ କୌଣସି ଆପତ୍ତି ନାହିଁ । ସେମିତି ମୁଁ ଆପଣଙ୍କୁ ଗୋଟାଏ ମୋର ମନମୁତାବକ ନାଁରେ ଡାକିବି – ଆପଣ ମୋତେ ଯାହା ଭଳି ଦିଶୁଚନ୍ତି ସେଇ ନାଁରେ ସମ୍ବୋଧନ କରିବି – ଆପଣଙ୍କର କିଛି ଆପତ୍ତି ଅଛି କି ?"

ମୁଁ ଲୋକଟାର ଖେଳୁଆଡ ମିଜାଜ୍‌ରେ ଖୁସିହୋଇଗଲି । ବାଃ ବଢିଆ ଲୋକଟା ତ ! ହସି ହସି କହିଲି, "ନା, ମୋର ଆପତ୍ତି ନାହିଁ । କିନ୍ତୁ ମୁଁ ବି କ'ଣ ଆପଣଙ୍କୁ ଆଉ କାହା ଭଳି ଦିଶୁଚି କି ?"

"ଆବଶ୍ୟ – ନହେଲେ ଆପଣଙ୍କୁ ଆଣି ଏଠି ବସେଇବାର ଅର୍ଥ କିଛି ନଥିଲା । ମୋ' ଜାଣିବାରେ ମୋ'ରି ବନ୍ଧୁ ଅବିକଳ ଆପଣଙ୍କ ଭଳି ଦେଖାଯା'ନ୍ତି । ସେ ହେଲେ ରଥବାବୁ ।" ମୁଁ ଚମକିପଡିଲି ମୋ' ପୂରା ନାଁଟା ସେ କହିଦେବ କି ଆଉ ?

"...ମାନେ ଶଶାଙ୍କଶେଖର ରଥ । – ମୁଁ କିନ୍ତୁ ତାଙ୍କୁ 'ରଥବାବୁ' ବୋଲି ଡାକେ । ସେ ଆପଣଙ୍କ ଭଳି ଦେଖିବାକୁ, ସେମିତି ହସ, ସେମିତି ଆଖି ନାକ । ଆଉ ବୋଧେ ସେମିତି ପ୍ରକୃତି ବି ହୋଇପାରେ । ଆପଣ ସିଗ୍ରେଟ୍ ନେଲେ ନାହିଁ, ସେ ଲୋକଟା ବି ଆଦୌ କିଛି ଛୁଏଁ ନାହିଁ, ବିଡି, ସିଗ୍ରେଟ୍, ପାନ, ଚ଼', କଫି, ସରବତ, ମଦ କିଛି ନାହିଁ; ଏପରିକି ଆମିଷ ବି ନୁହେଁ । ଛାଡନ୍ତୁ ସେ ମୋର ଘନିଷ୍ଠ ବନ୍ଧୁ, ସେ ଏବେ ଏ ସହରରେ ଆଉ ନାହିଁ । ଆପଣଙ୍କୁ ପାଖରେ ପାଇ ଭାରି ଖୁସି ଲାଗୁଛି, ମନେହେଉଛି ଆପଣ ଆଦୌ ଅପରିଚିତ ନୁହନ୍ତି । ଆପଣ ଅବଶ୍ୟ ଆଜି ମୋ' ସହିତ ରାତ୍ରିଭୋଜନ କରି ଯିବେ ।"

"ଆଦୌ ନୁହେଁ – କାରଣ ମୋର ହଜାରେ ପ୍ରକାର କଟକଣା । ମୁଁ କ'ଣ ଖାଇବି, କେତେବେଳେ ଖାଇବି, କେତେ ପରିମାଣରେ ଖାଇବି, ସେସବୁ ଅନ୍ୟମାନେ ସ୍ଥିର କରନ୍ତି । ମୋର ସେଥିରେ ଆଦୌ ସ୍ୱାଧୀନତା ନାହିଁ । ଆଜି ଆପଣଙ୍କ ଘରେ ଡିନର୍ ଖାଇବାକୁ ସାତ ଦିନ ଆଗରୁ ଯୋଜନା କରିବାକୁ ହୋଇଥାନ୍ତା, ଡିନର୍ ପୂର୍ବରୁ ଏବଂ ପରେ ଅନେକ ବ୍ୟବସ୍ଥା କରିବାକୁ ପଡିଥାନ୍ତା ।"

ସେ ଖାର ଝାଡିଦେଇ ସିଗ୍ରେଟ୍‌ର କୁହୁଳୁଥିବା ଧୂଆଁକୁ ଚାହିଁ ରହି ମୃଦୁ ମୃଦୁ ହସୁଥିଲା । "ମୁଁ ଏଇଆ ଶୁଣିବାକୁ ପ୍ରାୟ ପ୍ରସ୍ତୁତ ଥିଲି । ବୁଝିଲେ ରଥବାବୁ ! ମୁଁ ଏଣିକି ଦି'ଚାରିଟା କଥା ଆପଣଙ୍କୁ ପଚାରିବାକୁ ଲୋଭ ହେଉଚି । ଆପଣଙ୍କ ନନାଙ୍କ ଭଙ୍ଗା ହାତରୁ ପ୍ଲାଷ୍ଟର କାଢିଲେଣି କି ନାହିଁ ?

ଆପଣଙ୍କ ଝିଅର ପଢ଼ାବହି ବଜାରରୁ ଆସିଲାଣି କି ନାହିଁ ? ଆପଣଙ୍କ ପୁଅ ଦିଲ୍ଲୀରୁ ଚିଠି ଦେଲାଣି କି ନାହିଁ ?"

ମୁଁ ପ୍ରାୟ ଟାଟକା ହେଲାପରି ତାକୁ ଚାହିଁରହିଲି । ସେ ଖୁବ୍ ଆମୋଦିତ ହେଲା ପରି ଜଣାଯାଉଥିଲା । ସେ ବୋଧେ ପୁରାପୂରି ବିଶ୍ୱାସ କରି ସାରିଥିଲା ଯେ ମୁହିଁ ଗୋଟିପଣେ ଶଶାଙ୍କଶେଖର ରଥ । ମୋର କାହିଁକି ମନ ହେଲା ନାହିଁ ତା'ର ସେ ପ୍ରତ୍ୟୟକୁ ଭାଙ୍ଗି ଦେବାପାଇଁ । ମୁଁ କୌଣସି ପ୍ରତିବାଦ ନକରି ତାକୁ ଚାହିଁରହିଲି ।

"ତା'ହେଲେ ତ' ଆପଣ ସବୁ ଠିକ୍ ବୁଝିସାରିଚନ୍ତି – ଜାଣିସାରିଚନ୍ତି । ମୋତେ ପଚାରି ବୁଝୁ ନାହାନ୍ତି, ମୁଁ ନିଖିଳ ପଟ୍ଟନାଏକ ଆପଣଙ୍କର ସବୁ କଥା ଜାଣିଚି ନା ନାହିଁ ।"

"ଦେଖନ୍ତୁ ନିଖିଳବାବୁ, ଆପଣ ଅନେକ ସମୟରେ ପରିହାସପ୍ରିୟ, ତା' ମୁଁ ଜାଣେ । ଆପଣ ଥରେ ମୋ' ସାଙ୍ଗରେ ଗୋଟାଏ ଅନୁଷ୍ଠାନକୁ ଯାଉଥିଲେ । ଉଭୟଙ୍କୁ ବକ୍ତୃତାବାଜି କରିବାକୁ ଥିଲା । କିନ୍ତୁ ବାଟ ସାରା ଆପଣ ଏତେ ଗପିଲେ ଯେ, ସେଠି ଆପଣଙ୍କର ଆଉ କହିବାକୁ ଇଚ୍ଛା ହେଲା ନାହିଁ । ମୁଁ ବି ବାଟଯାକ ହସି ହସି ଏମିତି ଢିଲା ଧରି ଯାଇଥିଲି ଯେ କେମିତି ଗୋଟାଏ ବେପରୁଆ ଫୁଲାଫାଙ୍କିଆ ଢଙ୍ଗରେ କ'ଣ ସବୁ କହିଲି । ସେମାନେ ସବୁ ଆଶ୍ଚର୍ଯ୍ୟ ହେଲେ । ତା'ପରେ କ'ଣ ହେଲା କହିଲେ..."

"ଓଃ ମୁଁ ଦେଖୁଚି ଆପଣ ହିଁ ପରିହାସପ୍ରିୟ । ଆପଣ ଡାକବାଜିପୁର କଥା ବୋଧେ କହୁଛନ୍ତି...ସେଥର ତ' ଆମେ ଭାରି ସିରିୟସ୍ ବିଷୟ ଆଲୋଚନା କରିଥିଲେ ।"

ମୁଁ ବିସ୍ମିତ ହେଲି । କିନ୍ତୁ ମୁଁ ବି ଗୋଟାଏ ପ୍ରତ୍ୟୟରେ କଥାବାର୍ତ୍ତା କରୁଥିଲି ତ, ଏଣୁ ମୋର ମନେହେଉଥିଲା ଯେ ସେ ଲୋକଟାହିଁ ନିଖିଳ ପଟ୍ଟନାଏକ । ଏଣୁ ଆମ ଭିତରେ ପ୍ରକୃତ ଘଟଣା ସେ ଯଦି ମନେପକାଇ କହିଦେଲା, ସେଥିରେ ନୂଆ କଥା କ'ଣ ହେଲା ?

"ଆଚ୍ଛା ରଥବାବୁ, ଆମେ ଆଉ ପରସ୍ପରକୁ ପରୀକ୍ଷା ନକରି ସତକୁ ସତ କିଛି ଆଲୋଚନା କଲେ କେମିତି ହୁଅନ୍ତା ? ହେଇ ଧରନ୍ତୁ ଆମ ପିଲାପିଲିଙ୍କ କଥା, ଦେଶ କଥା, ସମାଜ କିମ୍ବା ସାହିତ୍ୟ କଥା !"

"ମୁଁ ଜମା ଆଲୋଚନା କରିବା ଅବସ୍ଥାରେ ନାହିଁ । ମୁଁ ବରଂ ଫେରିବା କଥା ହିଁ ଚିନ୍ତା କରୁଚି ।"

ସୋଫା ପଛକୁ ବେକ ଭାଙ୍ଗି ସେ ଛାତକୁ ଚାହିଁ ଠୋ ଠୋ ହସିଲା । ମୁଁ ଅପ୍ରସ୍ତୁତ ବୋଧ କଲି । ମୁଁ ଅଭ୍ୟାସରେ ଘଣ୍ଟା ଦେଖିବାକୁ ବାଁ କଚଟିକୁ ଚାହିଁଲି । ଘଣ୍ଟା ନଥିଲା । ମୁଁ ଆଣିବାକୁ ଭୁଲିଯାଇଥିଲି । ତା' ହାତକୁ ଚାହିଁଲି, ସେ ବି ଘଣ୍ଟା ପିନ୍ଧିନଥିଲା । କାନ୍ଥରେ କିମ୍ବା ସେ ଟେବୁଲ୍‌ରେ ବି ଘଣ୍ଟା ନଥିଲା ।

ସେ ମୋ' ଢଙ୍ଗରୁ ବୋଧେ ଅନୁମାନ କରିନେଲା... ଖୁବ୍ ଚାଲାକ୍ ଲୋକଟା ତ' –

"ଆପଣ ଯାହା ଥିଲେ ତାହାହିଁ ରହିଗଲେ ରଥବାବୁ । ଆପଣ ପ୍ରକୃତରେ ଭାରି ଡରୁଆ

ଲୋକ । ସେଥିପାଇଁ ଆପଣ ଏତେ ନୀତି ନିୟମକୁ ଭୟ କରି ଆସିଚନ୍ତି । ଆପଣ ଭଲ ଲୋକ, ନୀତିବାନ୍ ଲୋକ ହବାରେ ଆପତ୍ତି ନାହିଁ, କିନ୍ତୁ ଏତେ ଡରୁଛନ୍ତି କ'ଣ ? କାହାକୁ ଏବଂ କାହିଁକି ?"

ମୁଁ ମୋ' ସପକ୍ଷରେ ଯୁକ୍ତି ଦେବାକୁ ଚାହିଁଲି ନାହିଁ । ଅଯଥା କିଏ ସେ ଝାମେଲା ଭିତରେ ପଶେ ? "ଆଚ୍ଛା, ଆପଣ ସମୟ ଜାଣିବାକୁ ଚାହୁଁଛନ୍ତି, ମତେ ପଚାରୁ ନାହାନ୍ତି ! ସମୟ ବର୍ତ୍ତମାନ ଏଗାରଟା ଚାଳିଶ । ହାଁ, ହାଁ, ଏମିତି ଚମକୁଚନ୍ତି କାହିଁକି ? ଆପଣ କ'ଣ ଅପରାଧ କରିପକେଇଚନ୍ତି ? କ'ଣ ହେିଗଲା ଯଦି ଆପଣ ବନ୍ଧୁଘରେ ରାତିଏ ବିତେଇଦେଲେ ? ଆପଣଙ୍କ ଚରିତ୍ରରେ କଳଙ୍କ ଲାଗିଯିବ ବୋଲି ଭାବୁଚନ୍ତି ?... ହା ହା ହା..."

"ମୁଁ ତା' ଦ୍ୱାରା ବଶୀଭୂତ ହୋଇଯାଉଥିଲି । ଆଚ୍ଛା ଯା'ଭିତରେ କେମିତି ଏଗାରଟା ହୋଇଗଲା – ହେଇ ମାତ୍ର ଅଧଘଣ୍ଟାଏ ଭିତରେ ସନ୍ଧ୍ୟାବେଳେ ମୁଁ ଯା'ଙ୍କୁ ପଛରୁ ଦେଖି ଏଠିକି ଚାଲିଆସିଛି । ଆମେ ଏଠି ଦଶ ପନ୍ଦର ମିନିଟ୍ କ'ଣ କଥାବାର୍ତ୍ତା ହେଇଚୁ କି ନାହିଁ – ଏଗାରଟା ଚାଳିଶ ହେଇଗଲା ଯା ଭିତରେ ! ଏଇଟା ମିଛ କହୁଚି ।"

"ଆପଣଙ୍କର ବୋଧେ ବିଶ୍ୱାସ ହେଉନାହିଁ । ନହେବା କଥା । ମୋର ବି ପ୍ରଥମେ ପ୍ରଥମେ ସେଇୟା ହେଉଥିଲା । ସମୟଟା ଏଇଠି ହୁସ୍‌କିନା ଚାଲିଯାଏ । କେମିତି ଯାଏ କେଜାଣି । ଛାଡନ୍ତୁ, ଏଇନା ଏଗାରଟା ଚାଳିଶ । ଆଉ ପାଞ୍ଚ ଦଶ ମିନିଟ୍ ଭିତରେ ଆମର ଖାଇବା ଆସିଯିବ । ପ୍ରଥମେ ଖାଇନବା, ତା'ପରେ ମୁଁ ଆପଣଙ୍କୁ ଛାଡି ଆସିବି । ମୋର ତ ଏମିତି ରାତିପାହିଥାଆନ୍ତା – ଆଜି ଜାଣି ଆପଣଙ୍କ ସାଙ୍ଗରେ ପାହିଯିବ ।" ମୋର ପାଟି ଫିଟେଇବାକୁ ଇଚ୍ଛା ହେଉନଥିଲା । ଏଗାରଟା ଚାଳିଶ ମାନେ ମୋର ଭାତ ନିଦ ଭାଙ୍ଗିବା ବେଳ – ମଧରାତ୍ରି ଯାଏଁ ନ ଶୋଇ ଗୋଟାଏ ଅଚିହ୍ନା ଲୋକ ସାଙ୍ଗରେ ପିଲାଖେଳ ଚାଲିଚି । ଗୋଟାଏ କେମିତି ନିଦୁଆ ନିଦୁଆ ଅଳସ ଭାବ ମୋତେ ଘାରିଯାଉଥିଲା । ମୁଁ ଜାଣୁଥିଲି ଯେ ସେ ନିଖିଳ ପଟ୍ଟନାଏକ ନୁହେଁ – ଅଥଚ ସେ ହେଇ ବି ପାରେ । ମୁଁ ବିଶ୍ୱାସ କିମ୍ବା ଅବିଶ୍ୱାସ କରିପାରୁନଥିଲି । ମୋଟ ଉପରେ ସେଭଳି କୌଣସି ଶ୍ରମ କରିବାକୁ ମୁଁ ଚାହୁଁ ନଥିଲି ।

"ଆଚ୍ଛା ରଥବାବୁ, ଆପଣ ଜାଣିପାରୁଛନ୍ତି କି ନାହିଁ କେଜାଣି – ପୋଲ ଏପାଖ ସବୁ କେମିତି ଖୁବ୍ ଅଲଗା ଅଲଗା ଲାଗେ । ଏଠି ଲୋକବାକ କେମିତି ଗୋଟାଏ ପହଁରିଲା ପରି ଚାଲିଯାନ୍ତି । କେମିତି ଝାପ୍‌ସା କୁହୁଡିଆ ଦେଖାଯାନ୍ତି । ଏଠି ଆପଣ ଦେଖିବେ ଦିନ ହେଲେ ବି ମହଳଣ ଆଲୁଅରୁ ଅଧିକ ତେଜ ହୁଏନାହିଁ । ମେଘ ସଦାସର୍ବଦା ଆକାଶ ଘୋଡେଇ ରଖିଥାଏ । – ଲାଗେ ସତେ ବା ଏଇଟା ଆଉଗୋଟେ ପୃଥିବୀ; ଏଠି ଲୋକଗୁଡାକ ଅଶରୀରୀ ଆତ୍ମା । ...ମୁଁ ବି ଗୋଟାଏ ଭୂତ ହେଇପାରେ ।" ତା'ପରେ ସେ ଖେଁ ଖେଁ ଗୁଡାଏ ହସିଲା ।

ମୁଁ ବାହାରକୁ କାନେଇଥିଲି – ସତକୁ ସତ ଅଧ ରାତି ବେଳା । କୋଉଠୁ ଚୁଁ ଶବ୍ଦ ଟିକେ ବି ଶୁଭୁ ନଥିଲା । ମୋ' ଆଗରେ ବସି ଯେ ଟହ ଟହ ହସୁଥିଲା, ସେ କ'ଣ ସତେ ହସୁଥିଲା ନା ମତେ ସେମିତି ଶୁଭୁଥିଲା ? ସେଇଟା ସତେ କିଏ ? ମୁଁ ସୋଫାଟାକୁ ଲୁଚେଇ ଲୁଚେଇ ଚିପିଲି,

ମୋ' ନିଜ ଜଙ୍ଘକୁ ତଳ ଆଡୁ ଚିମୁଟିଲି । ଆଖି ମଟମଟ କଲି । ନାକରେ ପବନ ଶୋଷିଲି ।

ସେ ସେତେବେଳଯାଏଁ ହସୁଥିଲା । "ଆପଣ ଫେରିଯିବାକୁ ଚାହିଁଲେ ବି ଏଠୁ ସହଜରେ ଯାଇ ପାରିବେ ନାହିଁ । ମୁଁ ନିଜେ ବ୍ୟବସ୍ଥା ନକଲେ ଆପଣ ହଇରାଣ ହୋଇଯିବେ । ଆପଣ କିନ୍ତୁ ନିଶ୍ଚୟ ଫେରିଯିବେ, ମୁଁ ସେଥିପାଇଁ ଆପଣଙ୍କୁ କଥା ଦଉଚି । ଆଚ୍ଛା ଛାଡନ୍ତୁ ସେ କଥା ପରେ ଦେଖିବା । ମୁଁ କେବଳ ଆପଣଙ୍କ ଖାତିରରେ ଏଯାଏଁ ସମ୍ଭାଳି ବସିଛି, ନହେଲେ ମୋତେ କେତେବେଳୁ ଶୋଷ କଲାଣି । ଆପଣ ଆପତ୍ତି ନକଲେ ମୁଁ କିଛି ପିଇବାକୁ ଚାହେଁ ।"

"ପିଉନାହାନ୍ତି, ସେଥିରେ କ'ଣ ମୁଁ କେବେହେଲେ ଆପତ୍ତି କରିଚି ?"

"ମାନେ ଆପଣ ଆଜି ବି ଏ ପଦାର୍ଥ ଛୁଇଁବେ ନାହିଁ? ମୁଁ କଥା ଦଉଚି ରଥବାବୁ ଏ ଜିନିଷଟା ଅତି ବଢ଼ିଆ ।"

ନୂଆ ବୋତଲଟିକୁ ସୋଫା ପଛଆଡୁ ଟେକିଆଣି ସେ ଆଲୁଅ ଆଡକୁ ଟେକି ଧରିଲା – "ରଥବାବୁ, ଆପଣ ଜଣେ ହତଭାଗ୍ୟ – ନହେଲେ ଏଭଳି ଜିନିଷକୁ ନଚାଖି ମଣିଷ ଜନ୍ମ ପାରିହେଇଯିବ । ଆପଣଙ୍କ ପାଇଁ ମୋର ଅଜସ୍ର ସହାନୁଭୂତି ଜାଣିବେ..."

ତେଣିକି ସେ ତା'ର ଅଭ୍ୟସ୍ତ ଢଙ୍ଗରେ, ଗ୍ଲାସରେ ଚୁମୁକ୍ ଦେଇ ସିଗ୍ରେଟ୍ ଟାଣିଲା ଏବଂ କହିଲା, "ଯାହା ଖାଇବା ଜିନିଷ ସେ ଆଣିବ ତାକୁ ଆପଣ ହିଁ ଖାଇ ନିଅନ୍ତୁ । ଆପଣ ଜାଣନ୍ତି ଖାଇବା ଅପେକ୍ଷା ପିଇବା ଉପରେ ମୁଁ ବେଶୀ ଜୋର୍ ଦିଏ ।"

"ମୋର ବି ବୋଧେ ଖାଇବାର ପ୍ରୟୋଜନ ନାହିଁ । ମୋତେ ଭୋକ ନାହିଁ । ଆଠଟାରୁ ସାଢେ ଆଠଟା ଭିତରେ ମୋର ଖାଇନେବା, କଥା – ସେତେବେଳେ ଅଭ୍ୟାସ ପଡିଯାଇଥିବାରୁ ଭୋକ ବି କରେ । କିନ୍ତୁ ସେ ସମୟଟା ପାରିହୋଇ ଗଲାଣି, ଆଉ ଖାଇବି ନାହିଁ ।"

"ସେଇ ତ ଦୁର୍ଭାଗ୍ୟ ! ମଣିଷଟିଏ ସ୍ୱଚ୍ଛନ୍ଦରେ ବଞ୍ଚିବାକୁ ଜନ୍ମ ହେଇଚି । କିନ୍ତୁ ନିଜେ ନିଜକୁ ବିଭିନ୍ନ ପ୍ରକାରେ ବାନ୍ଧିରଖିବାରେ ତା'ର ସାର୍ଥକତା ବୋଲି ସେ ଭାବେ । ଶୋଷ କଲେ, ଭୋକ କଲେ ସହଜ ଢଙ୍ଗରେ ପିଇବା କିମ୍ବା ଖାଇବା ଆମ ଜାତକରେ ନାଇଁ । ଏତେଟାରେ ଖାଇବା, ଏତେଟାରେ ଶୋଇବା, କିମ୍ବା ସହବାସ କରିବା... ଗୋଟାଏ ରୁଟିନ୍ । ଏମିତି ହେଇ ହେଇ ଏ ଶଳା ବେକୁବ୍ ଜନ୍ତୁଟି ତା'ର ଚମତ୍କାର ସମ୍ଭାବନା ଗୁଡିକୁ ନିଜ ହାତରେ କବରଦେଇଦିଏ ।"

ନିଖିଳ ପଟ୍ଟନାଏକର ଠିକ୍ ଏଇଭଳି କଥା । ମୁଁ ତାକୁ ପ୍ରଶଂସା ନକରି ରହି ପାରିଲି ନାହିଁ । କେବଳ ଚାହାଣିରେ ସେ କିନ୍ତୁ ବୁଝିଗଲା ।

"ମନକୁ ପାଇଗଲା ବୋଧହୁଏ । ଛାଡନ୍ତୁ...ଆପଣ ବିଶ୍ୱାସ କଲେ ଆଉ ଗୋଟିଏ କଥା କହିବି । ମୁଁ ହିଁ ଚାହିଁଥିଲି ଆପଣଙ୍କୁ ଦେଖିବାକୁ – ମାନେ ଖୁବ୍ ଚାହିଁଥିଲି । ପୋଲ ପାରିହେଲାବେଳେ ତୀବ୍ର ଭାବରେ ଆପଣଙ୍କୁ ସ୍ମରଣ କରିଥିଲି । ଆପଣ ନିଜ ଇଚ୍ଛାରେ ମୋତେ ଦେଖିଆସିନାହାନ୍ତି – ବରଂ ମୁଁ ଚାହିଁଛି ଆପଣ ଆସନ୍ତୁ ବୋଲି ।"

ସେ ସିଗ୍ରେଟ୍‌ଟାକୁ ସାମ୍ନାରେ ଟେକିଧରି ଧୂଆଁ ରେଖାକୁ ଅନେଇ ରହିଲା । ମୁଁ ଅଗତ୍ୟା

ଅପେକ୍ଷା କଲି ।

"ମୁଁ ଜାଣେ ଆପଣଙ୍କୁ ଏମିତି ଏତେ ରାତିଯାଏ ଅଟକାଇ ରଖିବା ଦୋଷାବହ । କିନ୍ତୁ ଆପଣ ବି ଜାଣନ୍ତି ଦୋଷାଦୋଷ ବିଷୟରେ ମୋର ସତନ୍ତ୍ର ଧାରଣା । ଏଣୁ ମୋ' ଭିତରେ ସେଥିପାଇଁ କୌଣସି ଅପରାଧବୋଧ ନାହିଁ – ଆଦୌ ନାହିଁ; କେବେ ବି ନଥିଲା । ...ତେବେ ଆପଣଙ୍କୁ ଆଣିବାର ଉଦ୍ଦେଶ୍ୟ ହେଲା ଯେ, ଆପଣଙ୍କୁ ଗୋଟିଏ ଦାୟିତ୍ୱ ଦେବାକୁ ମୁଁ ସ୍ଥିର କରିଛି । ଆପଣ ମୋ' ପାଇଁ ଗୋଟାଏ ଉପନ୍ୟାସ ଲେଖିପାରିବେ ? ମୁଁ କହୁନାହିଁ ଆପଣ ସମର୍ଥ ନୁହନ୍ତି ବୋଲି, ଖାଲି କହୁଚି ଯେ ଆପଣ ସେଥିପାଇଁ ସମୟ ଦେଇପାରିବେ କି ? କଥାବସ୍ତୁ, ଘଟଣା, ଚରିତ୍ର ମୁଁ ସବୁ ଆପଣଙ୍କୁ ଯୋଗାଇଦେବି । ଆପଣ ତାକୁ ରକ୍ତମାଂସ ଦେଇ ଗଢିବେ ଏବଂ ପ୍ରାଣପ୍ରତିଷ୍ଠା କରିବେ । ମୁଁ ସେ ଉପନ୍ୟାସଟାକୁ ସର୍ବପ୍ରଥମ ପଢିବାର ସର୍ତ୍ତ ବି ଦେବାକୁ ଚାହେଁ । ମୋ' ଆଗରୁ ତାକୁ ଆଉ କେହି ପଢିପାରିବେନାହିଁ ।"

"ଆପଣଙ୍କର ଏ ଅତର୍କ୍କ ଢଙ୍ଗ ଗଲା ନାହିଁ । ନଈ ନଦେଖୁଣୁ କାହିଁକି ଲଙ୍ଗଳା ହୋଇ ପଡୁଛନ୍ତି ? ଉପନ୍ୟାସ ଲେଖାହବ, ତା' ପୁଣି ମୁଁ ଲେଖିବି, ଆପଣ ସାମଗ୍ରୀ ଯୋଗାଇବେ – ଏ ତ 'ଷାଠିଏ ମହଣ ଘିଅ' କଥା । ଏ ଲେଖା ହେଲେ ସିନା ଆପଣ ପଢିବା ସର୍ତ୍ତ ଜାରି କରିବେ ।"

"ଅଲବତ୍ ହବ । ମୁଁ କ'ଣ ନବୁଝି ଏସବୁ ଯୋଜନା କରିଛି ? ଉପନ୍ୟାସ ଲେଖାହବ ଏବଂ ଆପଣ ହିଁ ଲେଖିବେ । ଏଇଟା ଅନୁରୋଧ ନୁହେଁ – ଆଦେଶ । ଆପଣ ଜାଣନ୍ତି ମୁଁ ଆପଣଙ୍କଠୁ ବୟସରେ ବଡ । ଏ ବେକୁବ୍ ଦେଶରେ ତରୁଣମାନଙ୍କ ବିଷୟରେ ବୁଢାମାନେ ହିଁ ନିଷ୍ପତ୍ତି ନିଅନ୍ତି ଏବଂ ସେଇ ବାପ ରାଣରେ ଢିଙ୍କି ଗିଳାହୁଏ ।" ହୋ... ହୋ... ହୋ... ସେ ଉପରକୁ ମୁହଁ ଟେକି ଗୁଡାଏ ହସିଲା ।

ମୋତେ ଭାରି ଅଜବ୍ ଲାଗୁଥିଲା ତା'ର କଥା ଆଉ କାଇଦା ।

"ବୁଝିଲେ ରଥବାବୁ! ମୁଁ କ'ଣ ଜାଣିନାହିଁ ଉପନ୍ୟାସଟାଏ ଲେଖିଦେବା କିଛି ଖେଳଘର ନୁହେଁ ? ତଥାପି ମୁଁ ଆପଣଙ୍କୁ କହିଦବାକୁ ଚାହେଁ..."

ସେ ଦି'କଳ ଧୂଆଁ ଶୋଷି ଦୁଇ ଆଣ୍ଠୁରେ କହୁଣି ରଖି ତଳକୁ ଚାହିଁ ବସିଲା କିଛି ସମୟ ।

ତା'ପରେ ସେ ମୋତେ ତା' ଢଙ୍ଗରେ କ'ଣ କହିଲା କି ମୋତେ ଦୃଶ୍ୟ ପରେ ଦୃଶ୍ୟ ସେମିତି ଦିଶିଗଲା ମୁଁ କହିପାରିବି ନାହିଁ । ବନସ୍ତ ପରେ ବନସ୍ତ ଥାକ ମାରିଲା ପରି ଗୁନ୍ଥି ହୋଇଗଲା । ମୁଁ ନିଖିଳ ପଟ୍ଟନାଏକର ମୁହଁଟାକୁ ହିଁ ବାରମ୍ବାର ଦେଖୁଥିଲି । ସେ ଚିତ୍ରପଟମାନଙ୍କ ଭିତରେ – କୁହୁଡିମାନଙ୍କ ଭିତରେ – ସର୍ଣ୍ଣାଭ ମେଘମଣ୍ଡଳରେ – ଲୋକଙ୍କ ଗହଳିରେ – ସେ ମୁହଁ ବେଳେ ବେଳେ ଲୁଚିଯାଉଥିଲା; କିନ୍ତୁ ପୁଣି ଉଇଁଆସୁଥିଲା ଉହାଡ ଅନ୍ତରାଳରୁ । ମୋର ମନେହେଉଥିଲା ଯେ ଏକ ଦୀର୍ଘ ଉପନ୍ୟାସ ଲେଖା ହୋଇଯାଉଛି, ପରିଚ୍ଛେଦ ପରେ ପରିଚ୍ଛେଦ । ସବା ଶେଷ ଦୃଶ୍ୟରେ ମୋତେ ଦିଶିଗଲା ସେଇ ପୋଲ, ସେଇ କୁହୁଡି ଏବଂ ମୋତେ ପିଠି କରି ଘୁଞ୍ଚି ଯାଉଥିଲା ନିଖିଳ ପଟ୍ଟନାଏକ । ମୋର ହୋସ୍ ଫେରିଲାବେଳକୁ ବେଶ୍ ଆଲୁଅ ହୋଇଯାଇଥିଲା ଏବଂ ମୁଁ

ଆଖି ଫିଟେଇ ଚାହିଁଲି – ସେ ବଖରାଟାରେ ଆଉ କେହି ନଥିଲେ ।

ଦୁଆରେ ଆଠ ଦଶ ଜଣ ଭିଡ ଲଗାଇ ଜମା ହୋଇଥିବାରୁ ମୋର କୌତୂହଳ ବଢ଼ିଯାଇଥିଲା – "କ'ଣ ହେଲା ?"

ଜଣେ ସାହସ କରି କହିଲା, "ଆପଣ ଏ ଘରେ କ'ଣ କରୁଛନ୍ତି ?"

ମୁଁ ଲାଜ ଲାଜ ହୋଇ ଠିଆହୋଇ ପଡିଲି । ମତେ ଲାଗିଲା, ସତେ ତ' ମୁଁ କେମିତି ଏବଂ କାହିଁକି ଏ ଘରଟାରେ ରାତି ପୁହାଇଦେଲି ?

ଅଲାଜୁକ ହସଟିକୁ ମୋ' ମୁହଁରେ କେଉଁଠି ଥୋଇବି ଜାଣିପାରୁ ନଥିବା ଅବସ୍ଥାରେ ଅନୁନୟ ହେଲା ପରି କହିଲି, "ଭୁଲ ହୋଇଗଲା ।"

କ'ଣ ଭୁଲ ହୋଇଗଲା ? "ଆପଣ ନିଖିଳ ପଟ୍ଟନାଏକଙ୍କୁ ଜାଣନ୍ତି ?"

ମୁଁ ସାମାନ୍ୟ ଚମକିଲାପରି ତାଙ୍କୁ ମଟମଟ ଅନେଇଲି । "ଆଚ୍ଛା, ତା'ହେଲେ ଏ ବାବୁ ନିଖିଳ ପଟ୍ଟନାଏକ ?" "ଆଉ ନହେଲେ କିଏ ? ଆପଣ ତାଙ୍କୁ ନ'ଜାଣି କ'ଣ ତାଙ୍କ ଘରେ ପଶିଗଲେ ? ଭଲ ଲୋକ ତ ଆପଣ ?"

ପାଖ ଲୋକଟି ଆସ୍ତେ ଫିସ୍‌ଫିସ୍ କଲା, "ଆବେ ରାତିସାରା ଟେଣ୍ଟା ଚାଲିଚି...ଆଉ ହୋସ୍ ଅଛିକି ଭଗିଆର ?"

ସମସ୍ତେ ହସିଉଠିଲେ ।

"ଆଚ୍ଛା ଆପଣ ପଶିଲେ କେମିତି ? ଚାବି କୋଉଠୁ ପାଇଲେ ? ଏଇଟା ତ ନେଲାଦିନୁ ନିଖିଳବାବୁ ତାଲା ଠୁକିଦେଇଛନ୍ତି । ଆପଣ ଚାବି କୋଉଠୁ ପାଇଲେ ?"

"ଚାବି ? ନିଖିଳବାବୁ ପରା ନିଜେ ମତେ କବାଟ ଫିଟେଇ ଘରଭିତରକୁ ଆଣିଲେ ?"

ପୁଣି ଅବିଶ୍ୱାସର ହସ । "ଆବେ ହୁଏତ ସତ । ନିଖିଳବାବୁ ଯେମିତି ମଜାଦାର ଲୋକ ସେ ହୁଏତ ୟାଙ୍କୁ ଆଣିବାକୁ ଚାବି ଧରି ଆସିଥିବେ । ଆଉ ସକାଳୁ ଛୁ' – ଆମେ କେହି ଦେଖିବା ପୂର୍ବରୁ ।"

"ହଉ ହଉ, ଆଜ୍ଞା ଆପଣ ଏଠି ରହି ଆପଣଙ୍କ ବନ୍ଧୁଙ୍କୁ ଅପେକ୍ଷା କରିବେ ତ' ?"

"ନା ନା – ମୁଁ ଫେରିଯିବାକୁ ଚାହେଁ ଏବଂ ଏଇମାତ୍ର ଯିବାକୁ ଚାହେଁ" – କହି ମୁଁ ଧକ୍କେଇ ବାହାରି ଆସିଲି ପଦାକୁ । ସକାଳ ପହରଯାକ ମୁଁ ପାନ ଦୋକାନ ପାଖରେ ଠିଆହୋଇ ଦେଖୁ ଦେଖୁ ରାତି ।

"ବାବା, ତମେ ଏଠି କାହିଁକି ଠିଆ ରହିଛ ? ଚାଲ ଘରକୁ ଯିବା – ଏଣିକି ମୁଁ ତୁମ ପାନ ବରାଦ କରି ନେଇଯାଉଥିବି ।"

ମୋ ପୁଅ ଗାଡିରୁ ଆସି ମୋତେ ସାମ୍ନା ସିଟ୍‌ରେ ନେଇ ବସାଇଦେଲା । ମୋର ଭାରି ଇଚ୍ଛା ହେଉଥିଲା ତାକୁ କହିଥା'ନ୍ତି ପୋଲ ଆରପାରି ଦେଇ ଯିବାକୁ । ସେ ଟୋକା କ'ଣ ରାଜି ହୋଇଥାନ୍ତା ? ମୁଁ ବରଂ କହିଲି – "ଆଜି ନିଖିଳ ପଟ୍ଟନାଏକ ଗୋଟାଏ ଉପନ୍ୟାସର ଖସଡା

ମୋତେ ଦେଇଛନ୍ତି, ତାକୁ ବସି ଲେଖିବାକୁ ହବ ।"

ଚିଡ୍ ଚିଡ୍ ହେଲାପରି ପୁଅ କହିଲା, "ସେଇ ନିଖିଳ ପଟ୍ଟନାଏକ, ନିଖିଳ ପଟ୍ଟନାଏକ – ତୁମର ଏ ବଦ୍‌ଖୋଇ ଛାତ ବାବା । ମୁଁ କେତେଥର କହିଲିଣି ଆଉ ତାଙ୍କୁ ଖୋଜି ଲାଭ ନାହିଁ –"

ମୋର କେଜାଣି କାହିଁକି ସାହସ ହେଲା ନାହିଁ କହିବାକୁ – "ଆରେ, ମୁଁ ପରା ଏଇଲାଗ୍ ଫେରିଲି ତାଙ୍କ ପାଖରୁ ।"

ମୁଁ କିନ୍ତୁ ଏ ବେକୁବ୍‌ମାନଙ୍କୁ ଗୁଜବ୍‌ରେ ବିଶ୍ୱାସ କରି ନାହିଁ ଯେ ନିଖିଳ ପଟ୍ଟନାଏକଙ୍କ ମୃତ୍ୟୁ ଘଟିଚି ।

ମୁଁ ଖାଲି ଅପେକ୍ଷା କରିଚି କେବେ ସେ ଉପନ୍ୟାସଟା ଲେଖାହେବ ।



# ପାଲଟ ଯାତ୍ରା

କେଡେ ସୁନ୍ଦର ଆଉ ବୃକ୍ଷାଳ ସେ ଜାମୁଗଛ ! ତା'ରି ମୂଳେ ଠିଆହୋଇ କେହି ଜଣେ ଦୂରକୁ ଚାହିଁଥିଲା । ପୃଥିବୀକୁ ଦୁଇଫାଳ କରି ଚିରିଦେଲା ପରି ତା' ସାମ୍ନାରେ ଏଇ ରେଳ ପଇକୁ ଚାହିଁଥିଲା । ତା' ପଛରେ ଅସ୍ପଷ୍ଟ ପକ୍ଷୀଡାକ, ଛୋଟ ପିଲାଙ୍କ ପାଟିତୁଣ୍ଡ ଶୁଭୁଥିଲା । ଏବଂ ଏବେ ସ୍ଥିର କରିଥିଲା ଯେ ଏଇଠି ଷ୍ଟେସନଟିଏ ହେବ ।

ତା'ପରେ ଏଇ ଗଛମୂଳେ ଘରା ବନ୍ଧିଲା ପରି ସଂକଳ୍ପ ବଢ଼ିଥିବ । ଥୋକେ ଆସି ମାପଚୁପ କରିଥିବେ । ଆଉ ଥୋକେ ଆସି ଏଇ ଗଛମୂଳେ କାଗଜ ଥୋଇ ଯୋଜନା କରିଥିବେ । ଏହାରି ମୂଳେ ନୂଆ ହାଣ୍ଡିରେ ପାଣି ରଖି ଖରାଦିନେ ହାଲିଆ ମାରି ପିଇଥିବେ । କେହି କେବେହେଲେ କହିନଥିବ ଏ ଗଛକୁ କାଟି ଏଇଠି ଘର କରିଦେବାକୁ, ବାଡ ଟେକିଦେବାକୁ । ସମସ୍ତେ ତାରି ଆଶ୍ରାରେ ଷ୍ଟେସନଟିଏ କରିବାକୁ ଯୋଜନା କରିଥିବେ । ତାକୁ ବାପ ପରି ଦିଶିଥିବ ଏ ଗଛ । ବର୍ଷା ପଡୁ ପଡୁ ତା' ମୂଳେ ବୋଝ ବୋଝ କୋଳି । ଏ ଖଣ୍ଡକଯାକ କୋଳି ରସରେ ଓଦା ହୋଇଥିବ । ଏ ଗଛ ମୂଳରୁ ଏ ଷ୍ଟେସନଟିକୁ ଜନ୍ମ ଦେଇ ଏଯାଏଁ ପାଳି ଆସିଛି । ଏ ଷ୍ଟେସନଟିର ନାଁ କ'ଣ କେଜାଣି ! ଯାକୁ ଜମ୍ବୁଦେଇପୁର ଡାକିଲେ ଭାରି ସୁନ୍ଦର ଲାଗନ୍ତା !

ଖରାଦିନ ସକାଳ ପହର ରେଳ ପାରିହେଲାବେଳେ ଏ ନିରୋଳା ଷ୍ଟେସନଟିରେ ଏମିତି କାଁ ଭାଁ ପାଞ୍ଚ-ସାତ ଜଣ ଚଢୁଥିବେ । ଜଣେଅଧେ ଓହ୍ଲାଉଥିବେ । ଏତେ କାକର ଆଉ ନିରବ ଏ ଜାଗାଟି ଯେ ଜାମୁଗଛ ଡାଳରେ ପକ୍ଷୀଙ୍କ କଥାବାର୍ତ୍ତା ଯାତ୍ରୀମାନଙ୍କୁ ଶୁଣାଯାଏ । କୌଣସି ଗୋଟାଏ ଆଳରେ ଏଇଠି ଏ ରେଳଗାଡିଟା ଆଉ ଟିକିଏ ବେଳ ରହନ୍ତାନି ! ସେଇ ମିନିଟିଏ କି ଦି'ମିନିଟ୍ ପରେ ଧପ୍ ଧପ୍ ଧୂଆଁ ଛାଡି ଘୁଞ୍ଚିଯିବ ଦୂରକୁ ଯେଉଁଠି କଳା ମାଟି କ୍ଷେତ ହୁଡାରେ ଥୁଣ୍ଟା ବବୁଲ ଗଛଗୁଡିକ ଧାଡି ବାନ୍ଧି ଠିଆ ହୋଇଛନ୍ତି ।

ସକାଳ ପହର ହେଉଥାଏ । ଆମେ ସବୁ ରାତି ଅଧରୁ ବସିଥିବା ଯାତ୍ରୀ ଢୋଳେଇଲା ଆଖିରେ ଚାହିଁଥାଉ । ମୁଁ ବସିଥାଏ ଗୋଟିଏ ସାଇଡ୍ ସିଟ୍‌ରେ । ସେଇଠୁ ସେ ଷ୍ଟେସନ, ସେ ଜାମୁଗଛ ଦେଖାଯାଉଥାଏ – କେହି ଜଣେ ବୟସ୍କ ଲୋକ ତରବର ହେଇ ବ୍ୟାଗ୍‌ଟିଏ ଧରି ଧାଇଁଆସିଲେ । ଯାତ୍ରୀ ମାତ୍ରେ ସେମିତି । ତାଙ୍କର ସବୁବେଳେ ଭୟ ଯେ ତାକୁ ସେଇଠି ଛାଡିଦେଇ ରେଳଗାଡିଟା ଚାଲିଯିବ ।

ଆମରି ଡବାକୁ ସିଧା ଚଢିଆସି ସେ ଚାରିଆଡକୁ ଚାହିଁଲେ । ମୋ' ସାମ୍ନାର ଗୋଟିକିଆ ସିଟ୍‌ଟି ଖାଲିଥାଏ । ସେ ଆସ୍ତେ ସେଇଠି ବ୍ୟାଗ୍‌ଟିକୁ ଥୋଇ ଆଡ ହେଲା ପରି ବସିଲେ । ବାହାରକୁ ଚାହିଁରହିଲେ ଗୋଟାଏ ଲୟରେ । କେହି କ'ଣ ତାଙ୍କୁ ଛାଡିବାକୁ ଆସି ନ ଥିଲେ ?

ରେଳ ଆସ୍ତେ ଘୁଞ୍ଚିଲା ଏବଂ ଘୁଞ୍ଚି ଘୁଞ୍ଚି ଗଲା ଜମ୍ବୁଦେଇପୁର ।

ଆମେ ଦୁହେଁ ବାହାରୁ ଦୃଷ୍ଟି ଫେରାଇଆଣି ପରସ୍ପରକୁ ଚାହିଁଲୁ । ମୁଁ ବୋଧେ ଅଳ୍ପ ହସିଦେବାରୁ ସେ ବି ହସିଲେ ।

"ମୋତେ ଅନେକ ଦୂର ଯିବାକୁ ହେବ । ସଞ୍ଜ ହେଇଯିବ । ଦିନ ସାରା ଏଇଠି ବିତେଇବାକୁ ହବ ।"

ମୁଁ କିଛି କହିଲି ନାହିଁ । ତା'ପରେ ନକହି ରହିପାରିଲି ନାହିଁ ।

"ଆପଣ କ'ଣ ଏଇଠି ରହନ୍ତି ?"

"ନା, ଏଇନେ ନୁହଁ । ଏଇଠି ମୋ' ବାଲ୍ୟକାଳ ବିତେଇଛି । ଆପଣଙ୍କର ଲକ୍ଷ୍ୟ ନଥିବ, ସେଇ ଷ୍ଟେସନ ଦାଢକୁ ଗୋଟେ ଜାମୁକୋଳି ଗଛ ଅଛି । କାହିଁ କୋଉ କାଳର ଗଛ । ବୁଢାମାନେ କହନ୍ତି ସେଇଟା ସତ୍ୟଯୁଗ ଗଛ । ତା' ଡାଳରେ ଆପଣ ଦେଖିବେ ସବୁବେଳେ ଫୁଲ କଷି ଲାଗିଛି । ବର୍ଷ ଯାକ ଫଳ ପାଚି ପଡୁଚି ।"

"ଆଚ୍ଛା! ମୁଁ ସେ ଗଛଟାକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଚାହିଁଥିଲି । ଏତେ ବଡ ଜାମୁଗଛ, ଏମିତି ଗାଢ ରଙ୍ଗର ପତ୍ର ମୁଁ ଆଉ ଦେଖି ନାହିଁ । କିନ୍ତୁ ଏଥିରେ ଏମିତି ବର୍ଷସାରା ଫଳ ଧରିଥାଏ ଶୁଣି ଆହୁରି ଆଶ୍ଚର୍ଯ୍ୟ ଲାଗୁଛି । ବଡ ଇଣ୍ଟେରେଷ୍ଟିଂ ।"

"କ'ଣ କହିଲେ ?"

"ମାନେ, ମୁଁ କହିଲି ଭାରି ବିଚିତ୍ର ଗଛ ।"

"ହଁ, କହିଲି ପରା ସତ୍ୟଯୁଗର ଗଛ ବୋଲି । ଆମର ପୁରୁଖା ପୁରୁଖା ଲୋକେ ସବୁ ବିଶ୍ୱାସ କରୁଥିଲେ ଯେ ସ୍ୱୟଂ ଜାମ୍ବବାନ ସୀତାଠାବ ବେଳେ ଏ ଗଛରୁ କୋଳି ଖାଇଥିଲେ ।"

"ମୋ ପିଲାବେଳ କଥା କହୁଛି । ସେତେବେଳେ ଏ ଷ୍ଟେସନଫେସନ୍ ନଥିଲା । ଏ ଗଛମୂଳେ ରାମଲୀଳା ହେଉଥିଲା । ଯା'ରି ଡାଳ ଉପରୁ ସପ୍ତବୀର ଓହ୍ଲାଇଥିଲେ । ଯା'ରି ମୂଳେ ପଞ୍ଚବଟୀ । ସୀତାଚୋରି ହେଉଥିଲା । ଯାକୁ ଶିଂଶପା ବୃକ୍ଷ କରି ସୀତାକୁ ଏଇଠି ବସଉଥିଲେ । ଲଙ୍କାକାଣ୍ଡ ସବୁ ଯାରି ମୂଳରେ । ତା' ଉତ୍ତାରୁ ଯା'ରି ମୂଳରେ ରାମଙ୍କ ଅଭିଷେକ ହଉଥିଲା ।

ଚୈତ୍ର ମାସ ସାରା ଏଇଠି ରାତି ପାହିଯାଉଥିଲା । ...ଏବେ ଏ ଷ୍ଟେସନ ହେଲା ଦିନ ରାମଲୀଳା ପଡିଆ ଘୁଞ୍ଚିଗଲା ଆରପଟକୁ । ତେବେ ପ୍ରଥମ ଦିନ ମୁଖା ଅନୁକୂଳ ଏଇଠୁ ହୁଏ । ଯା' ଡାଳରୁ ହନୁମାନ ଓହ୍ଲାନ୍ତି । ବାନରସେନା ଓହ୍ଲାନ୍ତି । ତାକୁ ଧୂପଦୀପ ଦିଆହୁଏ । ତାଙ୍କ ଭିତରେ ଦେବତାମାନେ ପ୍ରବେଶ କରନ୍ତି । ଆମ ଏଠିକା ରାମଲୀଳା ପରି ଆଉ କୋଉଠି ହୁଏ ନାହିଁ ।"

ସେ ତାଙ୍କ ପିଲାଦିନର ଅଞ୍ଚଳ ଆଖିରେ ଲଗେଇ ବିଭୋର ହୋଇ କିଛି ସମୟ ବସି ରହିଲେ । ମୁଁ ବୋଧେ ତାଙ୍କୁ ଦେଖା ଯାଉ ନଥିଲି । ତା'ପରେ ସେ ତୁରୁତୁରିଆ ପିଲାଟିଏ ପରି ଗୋଡହାତ ହଲେଇଲେ । ମୋତେ ଚାହିଁ ପଚାରିଲେ – "ଆପଣଙ୍କର ଆଉ କେତେ ବାଟ ଅଛି ଯିବାକୁ ?" ଉତ୍ତରକୁ ଅପେକ୍ଷା ନ ରଖି କହିଲେ, "ମୋର ଢେର୍ ବାଟ ଅଛି । ଦିନସାରା ଏମିତି ଏ ଗାଡି ଚାଲିଥିବ । ଗୋଟା ପରେ ଗୋଟା ଷ୍ଟେସନ ଆସୁଥିବ ଯାଉଥିବ – ମୁଁ ବସିଥିବି ।"

ଜଣାଯାଉଥିଲା ସତେବା ସେ ଅଜସ୍ର ଧନର ଅଧିକାରୀ – ଖାଇଲେ ବୋହିଲେ ସରିବ ନାହିଁ । ଇସ୍, ସତେ ସାରା ଦିନ କେତେ ଲକ୍ଷ ମୁହୂର୍ତ୍ତର ବାଟ ତାଙ୍କର ଅଛି । ସେ ଖୁବ୍ ନିଶ୍ଚିନ୍ତ ଏବଂ ବେପରୁଆ ଦେଖାଯାଉଥିଲେ ।

ସେ ଗୋଡ ଲମ୍ବେଇ ବସୁଥା'ନ୍ତି, ପୁଣି ଲୋଟେଇ ଆଣୁଥା'ନ୍ତି । ବ୍ୟାଗ୍ ଫିଟେଇ ବଟୁଆ କାଢୁଥା'ନ୍ତି, ପୁଣି ରଖିଦେଉଥା'ନ୍ତି । ଭାରି ଖୁସି ।

"ତା'ହେଲେ ଆପଣ ମଧ ମୋ' ସାଙ୍ଗରେ ସେଇ ସଞ୍ଜବେଳେ ଓହ୍ଲେଇବେ ? ...ଏମାନେ ମାତ୍ର ସମସ୍ତେ ବାଟରେ ଓହ୍ଲେଇଯିବେ । କିଏ କୋଉଠି କିଏ କୋଉଠି – ଆମେ ରହିବା ଶେଷଯାଏଁ । ଆପଣ କୋଳି ଖାଇବେ ?"

ଷ୍ଟେସନରେ ଲିଚୁକୋଳିବାଲା ଡାକି ଡାକି ଯାଉଥିଲା । ସେ ତାକୁ ଅଟକାଇ ସେଥିରୁ ଗୋଛାଟିଏ କିଣିଲେ । ଲମ୍ବା ନହକା ଡେମ୍ଫ ଅଗରେ କୋଳିଟିମାନ ସିନ୍ଦୂର ରଙ୍ଗର ଥୋପା ପରି ଓହଳିଥା'ନ୍ତି ।

ଫଳଯାକ ସେ ମଝି ଦଣ୍ଡାରୁ ଓହଳେଇ ରଖିଲେ । ଗଛରୁ ତୋଳିଲା ପରି କୋଳି ଛିଣ୍ଡେଇ ଖାଉଥା'ନ୍ତି, ମୋତେ ଯାଚୁଥା'ନ୍ତି । ଚୋପା କାଢ଼ିଲାବେଳକୁ ରସ ପୁଚ୍‌କିଗଲେ ତାଙ୍କର ସେ ହସ, ହାତପାପୁଲିରୁ ରସ ଚାଟିବାର ଭଙ୍ଗୀ ଏବଂ ଖୁସିରେ ତଳେ ଗୋଡ ବାଡେଇବାର ଦୃଶ୍ୟ ଦେଖି ମୁଁ ଅନୁମାନ କରୁଥାଏ ସେ କେତେ ଆବିଷ୍ଟ ରହିଥା'ନ୍ତି ।

"ଲାଜଉଚନ୍ତି କ'ଣ ମ ? ଖାଉନାହାନ୍ତି । ଆମେ ପରା କାହିଁ କେତେ ବାଟ ଯିବାକୁ ଅଛି ସାରା ଦିନ । ଇସ୍, କେତେ ଯେ ବାଟ ! ଏଇଟା କ'ଣ ସତେ ସରିଯିବ ?"

ମୁଁ ସମ୍ଭାଳି ନପାରି ପଚାରିଲି, "ଆଚ୍ଛା, ଆପଣ କ'ଣ ଯା' ପୂର୍ବରୁ ରେଳରେ ଏତେ ବାଟ ଯାଇନାହାନ୍ତି ?"

"ଏତେ ବାଟ ! ଆହେ ବାବୁ, ରେଳରେ ତ ଚଢ଼ିଲେ ଓହ୍ଲେଇବା କଥା । ଯା'କୁ ମିଶେଇ ମୁଁ ଚାରିଥର ରେଳ ଚଢ଼ିଚି । ସବୁବେଳେ ରାତି ଗାଡିରେ ଉତ୍ତରକୁ ଯାଇଚି । ଏମିତି କଥାଭାଷା ହଉ

ହଉ ଓହ୍ଲା ଓହ୍ଲା ଡାକ । ଏଥର ଦକ୍ଷିଣକୁ, ଆଉ ଦିନସାରା ରେଳଯାତ୍ରା । – କୋଳି ଖାଆନ୍ତୁ! ଆମର ଏଇନେ ଚିନ୍ତା କ'ଣ ? ଆମେ ପହଞ୍ଚିଲେ ଏଇଠି ଚୂଲି ଲଗେଇ ଭାତଡାଲି ରାନ୍ଧି ଖାଇପିଇ ଶୋଇପାରିବା । କେତେ ସମୟ ଅଛି ହାତରେ ।"

ତା'ପରେ ଟପଟାପ୍ କୋଳିଖିଆ, ହସ ଏବଂ ଗୋଡବାଡିଆ । ଅନ୍ୟମାନେ ବୋଧେ ସେତେବେଳକୁ ତାଙ୍କୁ ଲକ୍ଷ୍ୟ କରିସାରିଥିଲେ । କେହି କେହି ମୁଚୁକି ମାରୁଥିଲେ । ଆଉ କେହି କେହି ମୁହଁ ଆଡକରି ମେଗାଜିନ ଦେଖୁଥିଲେ । ତାଙ୍କ ଚେହେରା ଏବଂ ବୟସକୁ ଦେଖିଲେ ଅନେକ ଅସ୍ୱାଭାବିକ ଜଣାଯାଉଥିଲା ତାଙ୍କ ଆଚରଣ ।

ମୁଁ ପଚାରିଲି, "ଆପଣଙ୍କର ପିଲାପିଲି କ'ଣ ମଉସା ?"

ସେ ସେତେବେଳେ କୋଳିଟିଏ ପାଟିରେ ପୂରେଇବାକୁ ଯାଉଥିଲେ । ମୁହୂର୍ତ୍ତେ ରହିଗଲେ । ମୋତେ ଚାହିଁ ଅଳ୍ପ ହସିଦେଇ କୋଳିଟିକୁ ପାଟିରେ ପୂରେଇଦେଲେ । ତାକୁ ଏକଳ ସେକଳ କରି ମଞ୍ଜିଟିକୁ କାଢିଲା ପରେ କହିଲେ –

"ସେଥିରେ କ'ଣ ଯାଏଆସେ ? ସେମାନେ ସମସ୍ତେ ଭଲ ଅଛନ୍ତି ।"

"ଆପଣ ଏ ଗାଁ ଛାଡି କେବେ ଗଲେ ?"

"ଗଲି ଆଉ କ'ଣ ? ଏଇଟା ମୋ' ମାମୁଘର । ଥିଲି ଅଜାଙ୍କ ପାଖରେ । ତାଙ୍କ ଅନ୍ତେ ଆମ ଗାଁକୁ ଚାଲିଗଲି । ଆମ ଗାଁ ବୋଇଲେ ମଝିରେ ଖଣ୍ଡେ ଗୋହିରୀ, ଆଉ ଗୋଟାଏ ନାଳ । ସେ ଯେଉଁ ଜାମୁଗଛ କଥା କହୁନଥିଲି, ତାରି ଡାଳକୁ ଚଢିଗଲେ ଆମ ଗାଁ ଦେଖାଯାଏ । ସବୁ ଟିକିନିଖି ଦିଶେ । ମଣିଷକୁ ସେତେ ଦୂରରୁ ଚିହ୍ନିହୁଏ ନାହିଁ । କିନ୍ତୁ ଚଳପ୍ରଚଳ ହେବା ସବୁ ପ୍ରାଞ୍ଜଳ ଜଣାପଡେ । ଅଜା କହୁଥିଲେ, ସେ ଜାମୁଗଛ ଶିଖପର୍ଯ୍ୟନ୍ତ ଚଢି ଦକ୍ଷିଣକୁ ନିଘା କଲେ କୁଆଡେ ଲଙ୍କାଗଡ ଦେଖାଯାଏ ।"

"ଆପଣ ଶିଖକୁ ଚଢିଛନ୍ତି ?"

"ଆହେ, ଯାଇଁଲ – ସେ ଶିଖକୁ କିଏ ଚଢିପାରିବ ? ଜାମୁଡାଳରେ ଭାରି ପାଦ ପଡିବାମାତ୍ରେ ମଟକା ଡାଳ ଭାଙ୍ଗିଯିବ । ବହୁ ଯୁଗର ଗଛ ହେଇଥିବାରୁ ଯା'ର ଶସ ହାଲୁକା । ଏତେ ମୋଟ ଡାଳଟାକୁ ଧରି ଓହଳିପଡିଲେ ମଡାଲ୍‌କିନା ଭାଙ୍ଗିଯାଏ । ତା' ଶିଖରେ ବଗ ବସିବାର ମୁଁ ଦେଖିଚି । ସାନ ସାନ ପାତି ପିଲା ଚଢିଯିବାର ଦେଖିଚି । ମଣିଷ କିଏ ଚଢିବ ସେ ଯାଏଁ ? ଆଚ୍ଛା ଛାଡ ସେ କଥା ! ଆମେ ତା'ହେଲେ ଦିନସାରା ଏମିତି ଏଇଠି ବସିରହିବା, ନୁହେଁ ! ବାଃ..."

ସେ ପିଲାଟି ଏଭଳି ପୁଣି ମନକୁମନ ଖୁସିହୋଇଗଲେ ।

ବାରଟା ପାଖାପାଖି ଖାଇବା ଥାଳି ଆସିଗଲା । ମଉସା ଆଇଁଷପ୍ରିୟ ଜଣାଗଲେ ଏବଂ ପରମ ସନ୍ତୋଷରେ ସେ ସବୁ ପୋଛାପୋଛି କରି ଖାଇଦେଲେ । ଲାଜଉଥିଲେ – ମୁଁ କହି ଆଉ ଗୋଟିଏ ପ୍ଲେଟ ଭାତ ମଗେଇଦେଲି । କିଛି ମାଂସଝୋଳ ମଧ୍ୟ । ସେ ସେତକ ଖାଇଦେଇ ବେଶ୍ ଆରାମରେ ବସିଗଲେ । ବେଶ୍ ଭଲ ଦେଖାଗଲେ । ଭେଣ୍ଡିଆ ଭେଣ୍ଡିଆ ଭାବ ଆଉ ଆଚରଣ ।

ମୋ' ସାଙ୍ଗରେ ଟାହିଟାପରା ହେଲେ । କିଛି କିଛି ବେଶ୍ ଆଇଁଷିଆ ହସ କଥା କହି ଏତେ ପାଟିରେ ହସିଲେ । ଅନ୍ୟମାନଙ୍କୁ ସଂପୂର୍ଣ୍ଣ ବେଖାତିର କରି ସେ ଜଙ୍ଘରେ ଚାପୁଡ଼ା ମାରି ହସିଲାଗିଲେ । ମୋତେ ହିଁ ଲଗାମ୍ ଭିଡ଼ିବାକୁ ପଡ଼ିଲା ।

"ଅଧେଦିନ ଆଉରି ଅଛି କ'ଣ କରିବା ? ରାଗଚଣା ଖିଆଯାଉ ।"

"ଆପଣ ଖାଆନ୍ତୁ । ମୁଁ ଭାତ ଉପରେ କିଛି ଖାଇବାକୁ ପସନ୍ଦ କରେନାହିଁ ।"

"ଖାଇବେ ନାହିଁ ତ ଏତେ ସମୟ ନେଇ କ'ଣ କରିବେ ? ଯାହା ପାଉଛନ୍ତି ଘଣେଇଯିବା କଥା ।"

"ଏମିତି ଖାଇଲେ ଦେହ ଅସୁସ୍ଥ ହେଇପାରେ ।"

"ଓହୋ ହୋ ! ଜଗି ଜଗି କ'ଣ ଲୋକ ରୋଗରେ ପଡ଼ୁନାହାନ୍ତି ? ଏତେ ହିସାବ କରି ବଞ୍ଚିଲେ ବଞ୍ଚିଲା ପରି ଲାଗିବ ନାହିଁ । ମନର ଅରମାନ ମେଣ୍ଟିବ ନାହିଁ ।"

ପ୍ରାୟ ତିନିଟା ବେଳକୁ ମୁଁ ସାମାନ୍ୟ ଢୋଳେଇପଡ଼ିଥିଲି । କେହି ଜଣେ ମତେ ହଲେଇଦେବାରୁ ଉଠିପଡ଼ିଲି । ନିଦ ମଳମଳ ଆଖିରେ ଅନେଇଲି । ବେଶ୍ କିଛି ବେଳ ଅଛି । ଜିନିଷପତ୍ର ସବୁ ଠିକ୍ ଅଛି । ପୁରୁଣା ନୂଆ ଯାତ୍ରୀ ବସିଛନ୍ତି । ରେଳ ଚାଲିଛି ଖେତ ଜମିମାନଙ୍କୁ ଭେଦ କରି । କଞ୍ଚାନିଦିଆ ଉଠିପଡ଼ିବାରୁ ଖିଚ୍‌ଖିଚ୍ ଲାଗିଲା ।

ସେ ଭଦ୍ରଲୋକ ତାଙ୍କ ତାଙ୍କ ମୁଣାଟିକୁ ଖାଲି କରିଦେଇ ପୁଣି ସଜାଡୁଥା'ନ୍ତି । ମୁହଁରେ ଆଗଭଳି ବେପରୁଆ ହସ ନାହିଁ – ବରଂ ବେଶ୍ ଗମ୍ଭୀର । ସେ କହିଲେ, "ଶୋଉଛନ୍ତି କ'ଣ – ଉଠନ୍ତୁ । ଆଉ ବେଳ କାହିଁ ? ସଞ୍ଜବେଳେ ପରା ଓହ୍ଲେଇଯିବା ?"

ମୁଁ କିଛି ବିରକ୍ତ ହେଲି – କିଛି ହସିଲି ଏବଂ କହିଲି – "କେଉଁଠି ଓହ୍ଲେଇବେ ? ଏଇ ଅପନ୍ତରା ବାଟରେ ? ଓହ୍ଲେଇବାକୁ ଆଉରି ଢେରି ସମୟ ଅଛି ।"

"କିଓ, ଆଉ ସମୟ କାଇଁ ? ସଞ୍ଜ ପରା ଦେଖୁ ଦେଖୁ ହେଇଯିବ । ଆକାଶର ଗଡ଼ାଣିରେ ସୂର୍ଯ୍ୟ ପହଞ୍ଚିଲେଣି । ଏଣିକି ଧାଉଁକିନା ଖସିଯିବେ ତଳକୁ ।"

ସେ ବାହାରକୁ ଆଉ ଭିତରକୁ ଛନଛନ ହେଇ ଚାହୁଁଥା'ନ୍ତି । ଗୋଡ ଉପରେ ଗୋଡ ଥୋଇଲେ । ପୁଣି ବଦଳ କଲେ । ଭୁରୁ କୁଞ୍ଚେଇଲେ ।

"ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ଓହ୍ଲେଇବା ସମୟ ହେଲେ ମୁଁ କହିଦେବି । ଏଇନେ ଆରାମ୍‌ରେ ବସନ୍ତୁ ।"

ସେ ଉଠିପଡ଼ିଲେ – "ହୁଃ !"

ମନେହେଲା ସେ ମୋତ ବିଶେଷ ଗୁରୁତ୍ୱ ଦେଲେ ନାହିଁ । ଦି'ପାହୁଣ୍ଡ ଯାଇ ପୁଣି ଫେରିଆସି ପଚାରିଲେ – "କେତେଟା ବାଜିଲା କହିଲେ ?"

"ତିନିଟା ଦଶ ।"

"ତିନିଟା ହେଇଗଲା ? ଆଉ ବେଳ କାହିଁ ? ହେଇ ଦେଖୁ ଦେଖୁ ଚାରି ପାଞ୍ଚ ଆଉ ସଞ୍ଜ ।"

ସେ ତାଙ୍କ ଜାମା ମୁଣାରେ ଟିକଟଟିକୁ ଦରାଣ୍ଡି ନେଲେ । ବେଗ୍ ଭିତରକୁ ଟିକିଏ ଚାହିଁଦେଲେ । ତା'ପରେ ପୁଣି ଉଠିଲେ ।

ମୁଁ ଆସ୍ତେ ଆଖି ବୁଜିଦେଲି । ଭଲ ପବନ ହେଉଥିଲା ସେଠିକି । ମୁଁ ବୋଧେ ବେଶ୍ କିଛି ସମୟ ଶୋଇଗଲି ।

ନଈ ପୋଲ ଉପର ଦେଇ ରେଳ ପାରିହେଉଥିଲା । ଯା'ପରେ ଷ୍ଟେସନ । ଇସ୍, ସତକୁ ସତ ସଞ୍ଜ ହୋଇସାରିଥିଲା । ମୋ' ସାମନା ସିଟ୍‌ଟା ଖାଲି ଦେଖି ବିସ୍ମିତ ହେଲି । 'ବୁଢ଼ା ଗଲା କୁଆଡେ ? ଆଉ କୋଉଠି ଓହ୍ଲେଇ ଯାଇନାହିଁ ତ ? ହଉ ଦେଖିବା ।' ମୁଁ ମୁହଁ ଧୋଇ ଆସିବାକୁ ଉଠିଲି । ଦେଖିଲି ଦୁଆର ପାଖରେ ବେଗ୍ ଥୋଇଦେଇ ବୁଢ଼ା ମୁହଁ ଗଳେଇ ଚାହିଁରହିଚି ବାହାରକୁ । ମୁଁ ମୁହଁ ଧୋଇ ଚାଲିଆସିଲି । ବାକ୍‌ସ, ବେଗ୍ ସଜାଡିଦେଇ ଘଣ୍ଟା ଦେଖିଲି । ଗାଡି ପ୍ଲାଟଫର୍ମ ଧରିଲା । ଧମେଇଲା । କବାଟ ପାଖକୁ ଧାଇଁଲା ପରି ଚାଲିଆସିଲେ ସେ ମଉସା ଜଣକ । ଆଖି ଯୋଡାକ ଡବ ଡବ । ପାଟି ସାମାନ୍ୟ ମେଲା ।

"ଆରେ ଧାଇଁଆସ ବେଗି ! ଆସିଗଲା ! ଆସିଗଲା !!" ସେ ପୁଣି ସେମିତି ଚାଲିଗଲେ କବାଟ ପାଖକୁ ।

କାନ୍ଧରେ ବେଗ୍, ହାତରେ ସୁଟ୍‌କେଶ୍ ଓହଳାଇ ମୁଁ ବାହାରିଲି । ମୋ' ଆଗରେ ଆଉ କିଛି ଓହ୍ଲେଇବା ଲୋକ । ଏତିକିବେଳେ ଗୋଟାଏ ଅସାଭାବିକ ଶବ୍ଦ ହେଲା ।

ଖସିପଡିଲା କ'ଣଟାଏ । ପାଟି ଶୁଭିଲା । ଧାଁ-ଦଉଡ ହେଲା । ଧିମେଇଥିବା ରେଳଗାଡି ହଠାତ୍ କେଚ୍‌କାଚ୍ ଶବ୍ଦ କରି ଠିଆହେଇଗଲା ।

ଧାଁ-ଦଉଡ । ଠେଲାପେଲା । ପାଟିତୁଣ୍ଡ ।

'ପଡିଗଲା', 'ମାଡିଗଲା', 'ଛିଡିଗଲା' ଇତ୍ୟାଦି ଶବ୍ଦ ।

କିଏ ? କେଉଁଠି ? କେମିତି ? – ଆଦି ପ୍ରଶ୍ନ ।

ମୁଁ ଭିଡ ଠେଲି ତଳକୁ ଓହ୍ଲେଇଲି ।

ଚାରିଆଡକୁ ଚାହିଁଲି । ମଉସାଟି କିନ୍ତୁ ଦିଶୁନଥିଲା । କୋଡିଏ ଗଜ ପଛରେ ଲୋକ ଭିଡ । ପ୍ଲାଟଫର୍ମ ଏବଂ ଚକ ସନ୍ଧିରୁ ଯାହା ସେମାନେ ବାହାରକରି ଆଣିଲେ ତା' କେବଳ ରକ୍ତାକ୍ତ ପିଣ୍ଡଟିଏ ।

ପୋଲିସ୍ – ଲୋକବାକ – ପଚରାଉଚରା ।

ଜଣେ ମୋତେ ଆଙ୍ଗୁଠି ଦେଖେଇ କହିଲା, "ଏଇ ବାବୁ ତା' ସାଙ୍ଗେ ଆସୁଥିଲେ । ପାଖାପାଖି ବସିଥିଲେ ।"

ମୋତେ ଅସୁମାରି ପ୍ରଶ୍ନ । ମୋ' ଉପରେ ଅସୁମାରି ଦୃଷ୍ଟି ।

ଟିକଟ ଦେଖି ପୋଲିସ ପଚାରିଲା, "ଇଏ କ'ଣ ଜାଣେତ୍ରି ଷ୍ଟେସନ୍‌ରୁ ଉଠିଲେ ?"

ମୁଁ ଅନୁଚ୍ଚ ସ୍ୱରରେ କହିଲି, "କେଜାଣି ! ସେଇଟା କିନ୍ତୁ ଜମ୍ବୁଦେଈପୁର ହେବା କଥା ।"

"କ'ଣ କହିଲେ ?"

"ୟା'ଙ୍କ ଗାଁ କ'ଣ ସେ ଜାଣେତ୍ରି ଷ୍ଟେସନ୍ ? ତା'ହେଲେ ସେଠିକି ଲାସ୍ ପଠାଇବାର ବନ୍ଦୋବସ୍ତ କରାଯିବ ।"

"ସେଇଟା ତାଙ୍କ ମାମୁଘର । ଷ୍ଟେସନ୍‌ର ଜାମୁଗଛ ତାଳରୁ ଚାହିଁଲେ ଯେଉଁ ଗାଁ ଦେଖାଯାଏ, ନାଳ ଆଉ ଗୋହରୀ ଆରପଟେ ସେଇଟା ତାଙ୍କ ଗାଁ ।"

"କୋଉ ଜାମୁଗଛ ?"

"ଯାହା ଶିଖରୁ ଅନେଇଲେ ଲଙ୍କା ଦେଖାଯାଏ ।"

ପାଖ ଲୋକେ ହୋ ହୋ ହସି ଦୂରକୁ ଘୁଞ୍ଚିଯିବାର ମୁଁ ଅନୁଭବ କଲି ।

ମୋ' ସାମ୍ନା ଦୃଶ୍ୟ ଝାପ୍‌ସା ହୋଇ ଲିଭିଯିବାର ଅନୁଭବ କଲି । ମଉସା ଯେମିତି ଧୋତି ଫଟେଇ ପିନ୍ଧି ମୋତେ ପାନଖିଆ ପାଟି ମେଲେଇ ପଚାରିଲେ –

"ଏଠୁ ତୁମ ଜମ୍ବୁଦେଇପୁରକୁ ଫେରିଯାଆନ୍ତେ ନାଇଁ ? କାଲି ସକାଳୁ । ପୁଣି ଗୋଟାଏ ଦିନ ପରେ ସଞ୍ଜବେଳକୁ ସେଇଠି ପହଞ୍ଚଯାଆନ୍ତେ । ତୁମର ସେଇ ବୃକ୍ଷାଳ ସୁନ୍ଦର ଜାମୁଗଛ । ସତ୍ୟଯୁଗର ଗଛ । ସବୁବେଳେ ଫଳବନ୍ତ; ଜାମ୍ବବାନ୍ କୋଳି ଖାଇଥିବା ଗଛ ।"

ଖୁବ୍ ପାଟିକରି ମୋତେ କିଏ କ'ଣ ପଚାରିଲା ପରି ଲାଗିଲା – ବୋଧହୁଏ ପୁଲିସ୍ ।

"କାଲି ସକାଳୁ ଟ୍ରେନ୍‌ରେ ଆମ ଲୋକ ଲାସ୍‌କୁ ନେଇ ଜାଣେତ୍ରି ଯିବେ । ଆପଣ ତାକୁ ଚିହ୍ନନ୍ତି – ଯିବେ କି ଲାସ୍ ସାଙ୍ଗରେ ?"

ସେ ଜାମୁଗଛଟା ମୋ' ସାମ୍ନାରେ ଉଭାହୋଇଗଲା ।

ମଉସା "ତା' ତାଳରୁ ଗାଁ ଦେଖାଯାଏ । ଆଗ ଗୋହିରୀ – ତା'ପରେ ନାଳ – ସେଇଠୁ ଆମ ଗାଁ – ଦେଖିଲେ ଚିହ୍ନିଦବ ।"

ମୁଁ କିଛି ନ କହି ରାଜିହୋଇଗଲି ।

'ବୁଢାଟା କ'ଣ ଖାସ୍ ଏଇଥିପାଇଁ ଏତେ ବାଟ ଆସିଥିଲା ?' ମୋତେ ବିନା କାରଣରେ ଶୀତ ମଡେଇ ଆସିଲା । ମୋ' ମଣ୍ଡ ଥରିଲା ଠକ୍ ଠକ୍ ହୋଇ ।

ମୁଁ ସୁଟ୍‌କେଶ୍ ଆଉ ବେଗ୍ ଓହଲାଇ କାହାକୁ କିଛି ନକହି ସିଧା ସେଇଠୁ ଚାଲିଗଲି ଗେଟ୍ ପାଖକୁ । ପଛରୁ କ'ଣ ସବୁ ଶୁଣାଯାଉଥିଲା । ଥଟ୍ଟା, ଟିଟିକାରି, ଭର୍ତ୍ସନା ।

ମୁଁ ଜାଣିପାରୁଥିଲି ଯେ, ସେଠିକି ଆଉଥରେ ଯିବା ଆଦୌ ସମ୍ଭବ ନୁହେଁ । ଗଲେ ମୁଁ ବି ଫେରିବି ନାହିଁ ଏମିତି । ଜମ୍ବୁଦେଈପୁର – ଜାଣେତ୍ରି । ଗହୀର କୂଅର ଅନ୍ଧାରପରି ତା'ର ଘଞ୍ଚ ଛାଇ । ଗାଢ ରଙ୍ଗର ଟଳମଳ କୋଳି !!

କେବେ ନୁହେଁ, ଆଉ କେବେ ନୁହେଁ । ତଥାପି ସେଠିକି କାଲି ସକାଳୁ ନଯାଇ କ'ଣ ମୁଁ ରହିପାରିବି ?



# ଏ ପାଖେ ଅସଂଖ୍ୟ ଲୋକ

ସେପାଖେ କେବଳ ସେ ପାହାଡଟା !

ମତେ ସେଇଟା ଦେଖାଯାଏ ମୁହଁ ପରି । କାହା ମୁହଁ ପରି କହିପାରିବି ନାହିଁ; କିନ୍ତୁ ସେ ଥୁଣ୍ଟା ପଳାଶଗଛ ଡାହାଣ ପାଖେ ଠିଆହୋଇ ଅନେଇଲେ ଅବିକଳ ମଣିଷ ମୁହଁଟାଏ ଦେଖାଯାଏ । ନାକ, ଭୃରୁ, ଓଠ, ଆଖି ସବୁ ବାରି ହୋଇ ଦେଖାଯାଏ । ସେଇଠୁ ଘୁଞ୍ଚିଗଲେ, ଆସ୍ତେ ଆସ୍ତେ ସେଇଟା ତରଳିଯାଏ ଏବଂ ପୁଣି ପାହାଡ ପାହାଡ ହୋଇଯାଏ । ସେଇଠି ସେ ସମୟରେ ଗଛପତ୍ର ଜନ୍ମା ନ ଥିଲା । ଏତେ ପଥର ଭିତରେ ଗଛ ଚେରକୁ ଥାନ କାହିଁ ? ତା' ବାହାରେ, ସରୁ ପାହାଡରେ, କାହିଁକି ବା ଗଛ ଉଠନ୍ତା ?

ମୁଁ ମହେଶକୁ ଦିନେ ନେଇ ଦେଖେଇଥିଲି । ସେ ମୋର ପିଲାଦିନ ସାଙ୍ଗ । ପଳାଶଗଛ ଡାହାଣ ପାଖେ ଠିଆକରେଇ ଖୁବ୍ ବୁଝେଇଥିଲି । ମୋ' ଖାତିରରେ ସେ ଅନେକ ସମୟ ପରେ କ'ଣ ଟିକିଏ ସେମିତି ଦିଶୁଚି ବୋଲି କହିଥିଲା । କିନ୍ତୁ ମୁଁ ଜାଣେ ତାକୁ କିଛି ଦିଶି ନଥିଲା । ଏତେ ସ୍ପଷ୍ଟ, ଏମିତି ଦପ୍ ଦପ୍ ଜଳୁଥିବା ଗୋଟାଏ ଆଖି, ଆବଡା ଥାବଡା ଗାଲ, ଓଠ, ନାକ ତାକୁ କେମିତି ଦିଶିଲା ନାହିଁ ? ଆଉ କେତେ ବଡ ମୁହଁ ହେଇଥିଲେ ତାକୁ ଦିଶିଥା'ନ୍ତା ? ଆକାଶ ପରି ?

...ଧେତ୍ ! ମହେଶ ଯଦି ଦେଖି ନ ପାରିଲା ତେବେ କ'ଣ ଫକୀର ପାରିବ, ନା ନରି, ବଟ ଚଇତନ ପାରିବେ ? ସେଥିପାଇଁ ମୁଁ ସେଥିରୁ ନିରସ୍ତ ହେଲି । ଆଉ କାହାକୁ ନେଇ ଦେଖେଇଲି ନାହିଁ । ନିଜେ କିନ୍ତୁ ତାକୁ ଏଡେଇ ପାରିଲି ନାହିଁ । ବାରମ୍ବାର ପଳାଶଗଛର ଡାହାଣ ପାଖେ ଠିଆହୋଇ ଘଣ୍ଟା ଘଣ୍ଟା ଅନେଇଲି ସୂର୍ଯ୍ୟ ଅସ୍ତ ଯାଏଁ, ଅନ୍ଧାର ମାଡିଆସିବା ଯାଏଁ ।

ଗୋଟାଏ ସମୟରେ ହୁ' ହୁ' ପବନ ମାଡି ଆସିଲା ଜୀବନ ଭିତରକୁ । ଆମେ ସମସ୍ତେ କିଏ କୁଆଡେ ଉଡିଗଲୁ । କୋଡିଏରୁ ପଚିଶ ବର୍ଷ ବୟସ । ଭିତରେ ବାହାରେ ଜୁଆର ଉଛୁଳିବାର ବୟସ । ଆମେ ସମସ୍ତେ ପ୍ରାୟ ସେ ସମୟ ଭିତରେ ବିଭାହେଇଯାଇଥିଲୁ । ଚାକିରି ବି କରିଗଲୁ । ମୁଁ ଚାଲିଗଲି ଦକ୍ଷିଣକୁ ।

ଗଲାବେଳେ ନନା ବୋଉ କ'ଣସବୁ କହୁଥିଲେ । ସାଧାରଣ ଉପଦେଶ ଭାବି ମୁଁ ଜମା କାନେଇନଥିଲି । ମୋ' ସ୍ତ୍ରୀର ଅଫେନକ ମୃଦୁହସ ଭିତରେ, ତା' ଚାହାଣିର ସ୍ଫଟିକ ସ୍ୱଚ୍ଛତା ଭିତରେ ସେ କଥାଗୁଡାକ ଝାପସ‌ଦେଉଥିଲେ । ମୁଁ ଅକୁଣ୍ଠିତ, ଅକାତର ଚାହିଁରହିଥିଲି । ମଝିରେ ମଝିରେ କେବଳ କହୁଥିଲି, "କିଛି ଅସୁବିଧା ହେବ ନାହିଁ । ମୁଁ ପ୍ରତି ମାସରେ ଟଙ୍କା ପଠାଇଦେବି ।" – ସେମାନେ କିନ୍ତୁ ଚାହୁଁଥିଲି ମୋଠାରୁ ନିୟମିତ ଖଣ୍ଡେଲେଖା ଚିଠି ପାଇବାକୁ । ମୋର ଠିକ୍ ମନେପଡୁ ନାହିଁ । ସେ ବିଷୟରେ ମୁଁ ବୋଧେ କୌଣସି ପ୍ରତିଶ୍ରୁତି ଦେଇନଥିଲି । ଚିଠି ଲେଖିବା ଗୋଟାଏ ନିହାତି ଘଷରା, ବୋରିଂ କାମ – ନୁହେଁ କି ! ମୁଁ ତ ଭଲରେ ରହିବି – ସେଇଟା ପୁଣି ଲେଖିବା ଏମିତି କ'ଣ ଜରୁରି ! ବୁଢାବୁଢୀ ହେଲେ ହିଁ ବାର ପ୍ରକାର ଅଜବ କଥା ଏମାନେ କହନ୍ତି । କଥାକଥାକେ ଛୁଆଙ୍କଭଳି ନାକରେ କାନ୍ଦନ୍ତି, ରୁଷନ୍ତି, ହସନ୍ତି, ଚୁଗୁଲି କରନ୍ତି ।

ଘର ଛାଡି ଗଲାବେଳେ ମୋର ଦୃଷ୍ଟି ମୀରା ଉପରେ । ସେ ଠିକ୍ ବସିଲା କି ନାହିଁ... ମୁଁ ଆଣିଥିବା କାଞ୍ଜିବରମ୍‌ରେ ତା'ର ଅଙ୍ଗରେଖା, ନୂଆ କାନପୁରୀ ଚପଲ ସାଙ୍ଗକୁ ବେଶ୍ ମାନୁଥିଲା କି ନାହିଁ ! ଛଳ ଛଳ ଆଖିରେ ମୋ' ଡେଣାକୁ ନୀରବ ସାଉଁଳୁଥିବା ବୋଉ ମୁହଁକୁ ମୁଁ ଚାହିଁ, ତା' ହାତକୁ ଥାପୁଡି ଦେଇଥିଲି ଏବଂ ସେତିକିରେ ତା' ହାତ ମୋ' ଡେଣା ଉପରୁ ଖସିଯାଇଥିଲା । ଗାଡି ଛାଡିଲାବେଳକୁ ନନାଙ୍କ ଉପରେ ଆଖି ପଡିଗଲା । ଦାଉଁକିନା ମୋ' ବୁକୁରୁ କ'ଣଟାଏ ଖସିଗଲା । ସେ କେମିତି ଗୋଟାଏ ଉଦାସ ଭଙ୍ଗୀରେ ମୁହଁ ଟେକି ଚାହୁଁଥିଲେ । ସନ୍ଧ୍ୟାବେଳର ଦୁର୍ବଳ ଖରା ତାଙ୍କ ମେଲା ଦେହ ମୁହଁରେ ପଡୁଥିଲା । ଉଠି ରହିଥିବା ହନୁହାଡ, ଠିଆ ନାକ, କପାଳ ଓ ଓଠ କିମ୍ଭୂତ ଦିଶୁଥିଲା ।

ଗାଡି ରୋକିବାର ଉପାୟ ନଥିଲା । ଗୋଟାଏ ମୁହୂର୍ତ୍ତରେ ବି ସେ ଚେହେରା ତରଳିଗଲା । ନନା ଛୋଟକୋଟର ଧୋତିପିନ୍ଧା ଅଧାଡିଆ ବୁଢାଟିଏ, ଦୁଆରମୁହଁରେ ଠିଆହୋଇ ଅନଉଥିଲେ । ମୁଁ ହୁଏତ ତାଙ୍କୁ ଆଉ କିଛି ସମୟ ରାସ୍ତା ବାଙ୍କଯାଏଁ ଚାହିଁରହିଥା'ନ୍ତି । ପାଖ ସିଟ୍‌ରୁ କାଚ କଙ୍କଣର ରୁଣୁଝୁଣୁରେ ମୁହଁ ଫେରେଇ ଆଣିଲି । ମୀରା ମୋତେ ଚାହିଁ ନୀରବ ହସିଦେଲା । ମୁଁ କିନ୍ତୁ ନନାଙ୍କୁ ସେମିତି ଦେଖିବାର ସେଇ ଗୋଟାଏ ମୁହୂର୍ତ୍ତର ପାହାଡକୁ ମୁଣ୍ଡରୁ ଓହ୍ଲେଇ ପାରୁନଥିଲି । ପନ୍ଦର ମିନିଟ ପରେ ଯେତେବେଳେ ସେ ପଳାଶଗଛ ପାଖେଇ ଆସିଲା, ମୁଁ କହିଲି – "ଡ୍ରାଇଭର୍, ଏଠି ଟିକିଏ ଗାଡି ଗୋଟାଏ ପାଖକୁ କରି ରଖିଦିଅ ।"

ମୀରାକୁ ଓହ୍ଲେଇବାକୁ କହି ମୁଁ ଚାଲିଲି ପଳାଶଗଛ ଆଡକୁ । ସେ ବି କ'ଣଟାଏ ହେବ ଭାବି ଭାରି ଖୁସିରେ ମୋ' ପଛେ ପଛେ ଚାଲିଲା ।

ମୁଁ ଗଛର ଡାହାଣ ପାଖେ ଠିଆହୋଇ ଅନେଇଦେଲାବେଳକୁ ସନ୍ଧ୍ୟାର ମହଳଣ ଦୁର୍ବଳ ଆଲୁଅ ପାହାଡ ଉପରେ ପଡି ସେ ଅଦ୍ଭୁତ ମୁହଁ ଦେଖାଯାଉଥିଲା । ମୁଁ ମୀରା ହାତକୁ ଚାପିଧରି ପାଖକୁ ଟାଣିଆସିଲି । ସେଇଆଡେ ଆଙ୍ଗୁଠି ଟେକି ପଚାରିଲି – "କ'ଣ ଦିଶୁଚି ତମକୁ ?"

"ସେଇଟା ତ' ପାହାଡଟା !"

ତା' ସ୍ୱରରେ କେମିତି ଗୋଟାଏ ଅପ୍ରତ୍ୟାଶିତ ରୁକ୍ଷତା ମୁଁ ଅନୁଭବ କଲି । ମନେହେଲା, ପାହାଡ ପଥରରେ କିଏ ସତେ ବା ମୋତେ ରଗଡିଦେଲା !

ତଥାପି କହିଲି, "ଭଲକରି ଦେଖିଲ, ସେ ପାହାଡଟା ଗୋଟାଏ ମଣିଷମୁହଁ ପରି ଦିଶୁନାହିଁ ?"

ମୀରା କିଛି ସମୟ ସେଇଆଡକୁ ବ୍ୟାଜ ଭଙ୍ଗୀରେ ଚାହିଁ କିଛି କହିଲା ନାହିଁ । ମୁଁ ବୁଝିଗଲି ଯେ ଆଉ ବୃଥା ଚେଷ୍ଟାକରି କିଛି ଲାଭ ନାହିଁ ।

ମୁଁ ଏକଲୟରେ ସେ ମୁହଁଟାକୁ ଚାହିଁଲି । ଦେଖୁ ଦେଖୁ ସେ ମୁହଁ ଉପରେ ଛାଇର ରେଖା ଲମ୍ବିଆସିଲା । ମୁହଁଟା ଦେଖାଗଲା ଖୁବ୍ କରୁଣ ଏବଂ ତା'ପରେ ଅତ୍ୟନ୍ତ ବିକଟାଳ । ମୁଁ ଅସୁସ୍ଥ ବୋଧକଲି ଏବଂ କିଛି ନ କହି ତଳକୁ ଚାହିଁ ଚାହିଁ ଗାଡି ପାଖକୁ ଫେରିଆସିଲି । ସେ ନୀରବତା ଭିତରେ ମୋ' ପଛରୁ ପାଉଞ୍ଜିର ମୃଦୁ ଶବ୍ଦ ଶୁଣାଯାଉଥିଲା ।

X X X X

ଦକ୍ଷିଣ ରହଣିକାଳରେ ଅନେକ ଘଟଣାଆ ଘଟିଗଲା । 'ସୁବ୍‌ବୁ' ଆଉ 'ଟିକି' ଜନ୍ମହେଲେ । ମୋର ପ୍ରମୋଶନ ହେଲା । ଦିଲ୍ଲୀଗସ୍ତ ଭିତରେ ନୂଆଗାଡି ଆକ୍‌ସିଡେଣ୍ଟରେ ମୀରା ମରୁ ମରୁ ବଞ୍ଚିଗଲା । ତା'ର ଗୋଟାଏ ହାତହାଡ ଭାଙ୍ଗିଗଲା । ବୈଶାଖ ମାସ ପୋଡିଖରା ସମୟକୁ ନନାଙ୍କର କାଳ ହୋଇଗଲା ।

ମୁଁ ଯାଇ ପହଞ୍ଚିଲାବେଳକୁ ହାଡ ଶୀତଳା ସରିଥିଲା । କୋକେଇରେ ଚଢେଇବା ପୂର୍ବରୁ ତାଙ୍କର ସେ ଆଖିବୁଜା ମୁହଁଟିର ଫଟ ଉଠାହେଇଥିଲା । ଥୋଡିଟି ସାମାନ୍ୟ ଟେକି ହୋଇଥିଲା । ମନେହେଉଥିଲା ଯେ ସେ ମୁହଁଟି ପଥରରେ ଗଢା । ମୁଁ ପୁଣି ସେ ପଳାଶ ମୂଳକୁ ଯାଇଥିଲି । ସଞ୍ଜବେଳେ ବେଶ୍ ଘଣ୍ଟାଏ ସେଇଠି ବସିରହି ସେ ମୁହଁକୁ ଅନେଇଲି । ଗୋଟାଏ ଗୋଟାଏ ମୁହୂର୍ତ୍ତରେ ସେ ମୁହଁରେ ଢେଉଟାଏ ଲହରେଇ ଯାଉଥିଲା – ବୋଧେ ଭସାମେଘର ଛାଇ ହୋଇଥିବ । ସେତିକିବେଳେ ଖପ୍‌କିନା ସେ ମୁହଁଟା ନନାଙ୍କ ମୁହଁପରି ଦିଶିଯାଉଥିଲା । ମୋ' ଭିତର ଦୁର୍ ଦୁର୍ କମ୍ପୁଥିଲା । ମୁଁ କୌଣସି ପ୍ରକାରେ ମୋର ସଂଯମ ନ ହରାଇ ପାହାଡକୁ ପାହାଡ ଭାବିବାକୁ ଚେଷ୍ଟା କରୁଥିଲି ।

ମୋତେ କିନ୍ତୁ ମନେହେଲା ଯେ ସେ ପାହାଡଟା କେବଳ ମୁହଁଟାଏ ନୁହଁ – ସେଇଟା ଗୋଟାଏ ପୋତା ମଣିଷ । ତା'ର ବେକଯାଏଁ ମାଟିତଳେ ଅଦୃଶ୍ୟ ରହିଛି । ଉପରକୁ ଦିଶୁଚି କେବଳ ଏଇ ଆବତା ଥାବଡା ମୁହଁ । ତାକୁ ବୋଧେ ମହାତୃଷା ଘାରୁଛି । ଶୋଷ ଆତୁର ହୋଇ ପଥର ସାଙ୍କୁଡି ଯାଉଛି, ଶୀର୍ଣ୍ଣ ହୋଇଯାଉଛି – ଏବଂ ମନେହେଲା ଯେ ସତେ ବା ସେ ମହାତୃଷା ପାଇଁ ମୁଁ ଦାୟୀ । ତାକୁ ନିବାରଣ କରିବା ମୋର କର୍ତ୍ତବ୍ୟ । ମୁଁ ସେତେବେଳେ ନିଜେ ପ୍ରବଳ ଶୋଷ ଅନୁଭବ କରିଥିଲି । ଫେରିଆସିଥିଲି ଏକମୁହାଁ ଘରକୁ । ଢାଳେ ପାଣି ପିଇବା ପରେ ସାଷ୍ଟମ ହୋଇଥିଲି ।

ତେରଦିନ ପରେ ମୁଁ ଫେରିଯିବାକୁ ବାହାରିଲି । ପୁନର୍ବାର ମୁଁ ଗାଡିରେ ବସିଲାବେଳକୁ ନୀରବରେ ମୋ' ଡେଣାଟିକୁ ସାଉଁଳୁଥିବା ବୋଉକୁ ମୁଁ ସାନ୍ତ୍ୱନା ଦେବାକୁ ସାହସ କରିପାରିଲି ନାହିଁ । ମୁଁ ଜାଣୁଥିଲି ତା' ଆଖିରୁ ଡବ ଡବ ନିଗିଡି ଆସୁଥିବା ବନ୍ୟା ମୁହଁରେ କିଛିହେଲେ ଟିକ୍ଷିପାରିବ ନାହିଁ । ମୁଁ ମୋ' ଭିତରେ ନରମି ଗଲି, ଲତପତ ହୋଇ ମନ୍ଥିହୋଇଗଲି । କିନ୍ତୁ କ'ଣଟାଏ ପଥରବାଡ ପଡିଥାଲ କେଉଁଠି । ମୁଁ ବୋଉ ପାଖରେ ଆଣ୍ଠେଇପଡି ତା'ର ସେ ଧଡି ନଥିବା ଧଳାଲୁଗାରେ ମୁହଁ ଲୁଚେଇ କଇଁ କଇଁ କାନ୍ଦିଲି ନାହିଁ । ଏତିକିବେଳେ ଭାଇନା ବୋଧେ ଦୋହରଉଥିଲେ, "ମଲାବେଳେ ତତେ ଡାକି ଡାକି ପ୍ରାଣ ଛାଡିଲେ । ତୁ ଏକା କୁଳକୁ ଭଗୀରଥ ଜନ୍ମିଚୁ ବୋଲି ବାରମ୍ବାର କହୁଥିଲେ । ପୂର୍ବପୁରୁଷ ତତେ ଚାହିଁରହିଛନ୍ତି । ତାଙ୍କ ଅଭିଳାଷ ମେଣ୍ଟେଇବାକୁ ତୁ ଜନ୍ମିଚୁ ।" ଆସିଲାଦିନୁ ଏକଥା ମୁଁ ଦିନକୁ ପାଞ୍ଚଥର ଶୁଣିସାରିଥିଲି । ଏଣୁ ମୋର କୌଣସି ପ୍ରତିକ୍ରିୟା ହେଉନଥିଲା ।

ମୀରା ବୋଧେ ଡ୍ରାଇଭରକୁ କହିବାରୁ ଇଞ୍ଜିନ୍ ରାଉକିନା କମ୍ପି ଉଠିଲା । ସେଇ ଚମକରେ ମୋ' ଡେଣା ଉପରୁ ବୋଉର ହାତ ମଲାଡାଳଟିଏ ପରି ଖସିପଡିଲା । ମୋ' ଭିତରେ ତରଳ ଜଉପରି କୋହ ଟକ୍‌ମକ୍ ଫୁଟୁଥିବା ଅବସ୍ଥାରେ ପବନ ବାଜିଯିବାରୁ ମୁହୂର୍ତ୍ତକରେ ଫୋଟକାଗୁଡିକ ଗୁଳାବାନ୍ଧି ପଥର ପାଲଟିଗଲା । ହାତ-ଗୋଡରେ ଭାର ଭାର ଓଜନ ଓହଳିବାର ମୁଁ ଅନୁଭବ କଲି ଏବଂ ଗାଡି ଭିତରେ ପଶି କୁଢେଇ ହେଇ ପଡିଲି । ପଛ ସିଟ୍ ହୁଡାରେ ମୁଣ୍ଡ ଢାଳି ଆଖି ବୁଜି ଜାଣିପାରୁଥିଲି ଯେ ଗାଡି ବାଁରେ ମୋଡିଗଲା । ତା'ପରେ ଡାହେଣେ ମୋଡି ସିଧା ରାସ୍ତା ଧରିନେଲା । ପିଲାଏ ପୁଟ୍ ପୁଟ୍ କଥାହେଲେ । 'ଟିକି' ମୋ' ବୁକୁପକେଟ୍‌କୁ ଆସ୍ତେ ଚିମୁଟିଲାପରି ଟେକିଲା । ସେଇ ବୋଧେ ମୋ' ଲଣ୍ଡା ମୁଣ୍ଡରେ ଟିପମାରି ଚଟ୍‌କିନା ହାତ କାଢିନେଇଗଲା ଟାଆଁସା ପଥରରେ ହାତ ବାଜିଗଲା ପରି ।

ମୁଁ ବିନା କାରଣରେ ତା' ଆଡକୁ ଚାହିଁ ମୁଚୁକି ମାରିଲି । ମୋ' ମୁହଁ ଉପରେ ପଶ୍ଚିମରୁ ଖରା ପଡୁଥିଲା । ଆମର ପଶ୍ଚିମମୁହାଁ ଘରେ ଏତେବେଳକୁ ସବୁଦିନେ ଖରାପଡେ ।

କିଛି ବାଟ ଗଲା ପରେ ଚଉଁକିନା ମୁଁ ଉଠିପଡି ଡ୍ରାଇଭରକୁ ଗାଡି ରଖିବାକୁ କହିଲି । ସେ କସିକରି ବ୍ରେକ୍ ମାରିବାରୁ ସମସ୍ତେ ଆଗକୁ ଝୁଙ୍କିପଡିଲୁ । ମୁଁ ଦରୱାଜା ଫିଟାଇ ବାହାରିଲାବେଳକୁ ମୀରା ଶାସନ କଲାପରି କହିଲା – "କୁଆଡେ ଯାଉଚ ? ସେ ପାହାଡ ଫାହାଡ ଆମର ଦେଖିବା ଦରକାର ନାହିଁ ।"

ମୁଁ ମୁହଁଫେରେଇ ତାକୁ କେବଳ ଚାହିଁଲି । ସେତିକିରେ ସେ ଧାସ ସହିନପାରି ପଛକୁ ଅପସରିଗଲା । ଖୁବ୍ ନରମ ଥଗାଳିଆ ସରରେ କହିଲା, "ସେଇଠି ଟମକୁ ମୁହଁଟାଏ କେମିତି ଦିଶୁଚି କେଜାଣି ?"

ମୁଁ ବି ନରମା ଗଳାରେ କହିଲି, "ଆସୁନ, ଆଉ ଥରେ ଦେଖିବ ।" ସେ ସାମାନ୍ୟ ତେଜିଯାଇ କହିଲା, "ଯାଉନ, ମୋ' ମୁଣ୍ଡ ଖରାପ ନା' ପେଟ ଖରାପ ? ମୁଁ କାହିଁକି ଟୁମର ସେ

ଅଜବ ଖିଆଲ୍‌ରେ ମାତିବ ? ମୋର ତ' ଟଙ୍କାପଇସା ସବୁ ଝାଡିଝୁଡି ଦେଇ ଆସିଚି ଯେ ମାସବାକ କେମିତି ଚଳିବ ସେଇ ଭାଳେଣି ଘାରିଚି..."

ମୁଁ ଧଡାସ୍‌କିନା କବାଟ ପକେଇଦେଇ ବାହାରିଆସିଲି ଏବଂ ପ୍ରୟୋଜନରୁ ଅଧିକ ଟାଉ ଟାଉ ଆଗେଇଗଲି ସେ ପଳାଶଗଛ ଆଡକୁ । ଥୁଣ୍ଟାଗଛଟା ଆଉରି ଥୁଣ୍ଟାଳିଆ ଦିଶୁଥିଲା । କିଛି ବାଟ ଯିବାକୁ ଥାଏ, ଦେଖିଲି ରାସ୍ତା ଆରପାଖରୁ ମୋ'ରି ଆଡେ କିଏ ଜଣେ ଆଗେଇଆସିଲା । ଧୋତି ଉପରେ ବେକ ଚିପା କାମିଜ୍ । ଧଳାବାଳ ସାଙ୍ଗକୁ ମୌଲବୀ ଦାଢି । ମୁସଲମାନ ଚେହେରା । କାନ୍ଧରେ ଗାମୁଛା, ପାନଖିଆ ଓଠ ।

"ସଲାମ୍‌ମାଲେକୁମ୍ ! ମତେ ଆପଣ ଚିନିବେ ନାହିଁ ନା କ'ଣ ? ଲେକିନ୍ ମୁଁ ଆପଣଙ୍କୁ ପିଲାଦିନୁ ଜାଣିଚି । ରାମୁ ଭାଇନା ମଝିଲାପୁଅ ଆପଣ । ଭାଇନାଙ୍କର ତ' କାଳ ହେଇଗଲା । ଆପଣଙ୍କ ବଡଭାଇ ସାନଭାଇ ପାଖରେ ରହି ଖୁବ୍ କାମ କଲେ । ଆପଣ ତ ବଡ ହାକିମହୁକୁମା ହେଇଚନ୍ତି । ଛୁଟି ବୋଧେ ମିଳିଲା ନାହିଁ ! ନହେଲେ କ'ଣ ବାପ ମରିଲାବେଳକୁ ଆସିନଥା'ନ୍ତେ ?"

ମୁଁ କିଛି ନ କହି ତାକୁ ଚାହିଁରହିଲି । କ'ଣ ବା କହିବାର ଥିଲା ? ସେ ଟିକିଏ ପାଖକୁ ଲାଗିଆସି ମୋ' ଆଖି ଭିତରକୁ ଅନେଇ ହଠାତ୍ ଅଙ୍ଗୁଳି ଦେଖେଇ କହିଲେ – "ହେଇ ଯେ ପାହାଡଟା" ମୋ' ତାଳୁରୁ ତଳିପାଯାଏଁ ଗୋଟିଏ ନିଆଁହୁଳା ଓହ୍ଲେଇଗଲା ! ମୁହଁ ଉପରକୁ ଧାସ ପିଟିଲାପରି ହାଉ ବାହାରିଲା । ମୁଁ ପାହାଡକୁ ନ ଚାହିଁ ତାକୁ ଚାହିଁ ଅପେକ୍ଷା କଲି ।

"ହେଇ ଯେ ପାହାଡଟା...ତା' ଚାରିତରଫ ଗୋଟାଏ ଚକଡା ଜମିନ୍ ଅଛି । ବିଶ୍ ଏକର । ପାହାଡଟା ତା' ଭିତରେ । ସେ ଜମିନ୍ ବିକ୍ରୀ ହେବାକୁ ଅଛି । ଆପଣ ଚାହିଁଲେ ଓ୍ୱାଜିବ ଦାମ୍‌ରେ ମିଳିଯିବ । ଖୁବ୍ ଶସ୍ତାରେ ଛାଡୁଚି । ଏକର ପାଁଶ ଟଙ୍କା । ଜମିନ୍‌ଟାକୁ ଟିକେ ତୟାର କରି ପାଣି ବେବସ୍ତାଟା କରିଦେଲେ ଖାସମାହାଲ ଲାଏକ ବନିଯିବ ।"

ମୁଁ ସେଇଆଡେ ଚାହିଁଲି । ପାହାଡଟା ପାହାଡ ପରି ଦିଶୁଥିଲା । ଗଛବୃକ୍ଷହୀନ ଆବଡା-ଥାବଡା, ଗୋଟାଏ ବିଶାଳ ଅକର୍ମା ପଥର । ମୋ' ଦେହସାରା ଶୀତେଇଗଲା । ମନେହେଲା, ମୋ' ଭିତରେ କ'ଣଟାଏ ପ୍ରବେଶ କରିଯାଉଥିଲା, ମୋତେ ଜଟେଇ ଲଟେଇ ନେଉଥିଲା, ଆତ୍ମସାତ କରିନେଉଥିଲା ।

"ସେଇଟା ବଳବନ୍ତରାଏର ଜମିନ୍ । ତା' ଅବସ୍ଥା ଅଇନେ ଢିଲା ଧରିଚି । ଭଲ ମଉକାରେ ଜମିନ୍‌ଟାକୁ ଲେଇଯାଅ । କହିବ ଯଦି ମୁଁ ତା' ସାଙ୍ଗେ ବାତ୍ ପକ୍‌କା କରିଦେବି । ତମେ ବଡନୋକ ହେଇଚ । ଟଙ୍କା ଦଶ ହଜାର ତମପାଇଁ କି ଛାଇ କଥା !"

ମୋର ମନେହେଲା, ମୋ' ତଳିପାରୁ ସରୁ ସରୁ ଚେର ବାହାରି ଭୂଇଁ ଭିତରକୁ ବୁଡିଯାଉଥିଲେ । ମୁଁ ହଲିପାରୁ ନଥିବା ଗଛପରି ଠିଆରହିଥିଲି । ଦଶ ହଜାର ଟଙ୍କା ପ୍ରକୃତରେ କିଛି ନୁହେଁ । ଏତେଗୁଡାଏ ଜମି...କିନ୍ତୁ ସେ ପାହାଡଟା ? ସେ ଥାଉ ! ସେଥିରେ କ'ଣ ଯାଏଆସେ ?... କିନ୍ତୁ ସେ ମୁହଁ ? ସେ ପୋଡା ମଣିଷ... ? ? ମୋର ମେରୁଦଣ୍ଡ କମ୍ପିଉଠିଲା । ମୁଁ ଅବଶ୍ୟ

ଜାଣିପାରୁନଥିଲି ଯେ ମୁଁ ତାକୁ ଏତେଇ ଦୂରକୁ ଚାଲିଯିବାକୁ ଚାହୁଁଥିଲି କି ଆପଣାର ବୋଲି ସ୍ୱୀକାର କରିନେବାକୁ ଚାହୁଁଥିଲି ।

ଏତିକିବେଳେ ପଛରୁ ଖଟ୍‌କିନା ଗାଡ଼ିର କବାଟ ଖୋଲିଗଲା ଏବଂ କୋଳିପରି ପାନପଚା ଦାନ୍ତ କାଢ଼ି ମୋ' ସାମ୍ନାର ସେ ଲୋକଟି କହିଲା – "ଆପଣ ଜାଣନ୍ତିନି ଯେ ସେ ଜମିନ୍‌ଟା ଆପଣଙ୍କର ଖାନଦାନୀ ସମ୍ପତ୍ତି । ତିନିପୁରୁଷ ତଳେ ଏଇ ବଳବନ୍ତରା'ର ଗୋସିଁବାପ କିଣିଥେଲା; ଲେକିନ୍ ଜିରେଇ ପାରିଲା ନାହିଁ । ଏବେ ପୁଣି ତମ ଜମିନ୍ ତମ ପାଖକୁ ଓ୍ୱାପିସ୍ ଆସିବା ବେଳ ହେଇଗଲା । ବାମୁଣ ସମ୍ପତ୍ତି ବାମୁଣ ନ କିଣିଲେ ଏମିତି ହୁଏ ।"

ପରିହାସ ପରି, ବିଧିବିଧାନ ପରି, ଅକାଟ୍ୟ ଶୂନ୍ୟବାଣୀ ପରି ଶୁଭିଲା ସେ ବାକ୍ୟମାନ । ସତେ ବା କେଉଁକାଳୁ ଅପେକ୍ଷା କରି ରହିଥିବା ସେ ଭୂଖଣ୍ଡ ମୋତେ ଶୋଡକି ନେଉଥିଲା ! ସେ ଜାବ ଭିତରୁ ସତେ ବା ମୋର ମୁକୁଳିବାର ଉପାୟ ନଥିଲା ! ମୁଁ ସତେ ବା ମୋ' ପିତୃପୁରୁଷଙ୍କ ଅଭିଳାଷ ପୂର୍ଣ୍ଣ କରିବାକୁ ଜନ୍ମିଥିଲି !

ମୋ କପାଳରେ ଝାଳ ଜକେଇବାର ମୁଁ ଅନୁଭବ କଲି ଏବଂ ପାଖେଇ ଆସୁଥିବା ପାଦଶବ୍ଦରୁ ଜାଣିପାରିଲି ଯେ ମୀରା ଆସି ମୋ' ପଛରେ ଛିଡ଼ାହେଇଗଲା । ତା' ପାଉଞ୍ଜି ଶବ୍ଦ ସେ ନିରବତାର ରାତିର ଫିସ୍ ଫିସ୍ କଥାପରି ଶୁଭୁଥିଲା ।

"କ'ଣ କି ?"

ସେ ଲୋକଟି କଥାଟାକୁ ଅକ୍ତକେ ଦୋହରାଇଦେଲା –

"କୋଡ଼ିଏ ଏକରକୁ ଦଶ ହଜାର ଟଙ୍କା !" – ମନେହେଲା, ମାଛବଜାରରେ ପରମ ବିସ୍ମୟ ଓ ପ୍ରଚ୍ଛନ୍ନ ଆହ୍ଲାଦରେ ମୀରା ପଚାରୁଚି, "ଗଙ୍ଗା ଇଲିଶି କିଲୋ ସାତ ଟଙ୍କା ?"

ମୁଁ ମୀରା ମୁହଁକୁ ଚାହିଁଲି, ମୁସଲମାନ ଟାଚା ମୁହଁକୁ ଚାହିଁଲି । ଲଣ୍ଡା ମୁଣ୍ଡର ଗୁନ୍ଥ ଉପରେ ହାତ ମାରିବାରୁ ଫୋଡ଼ିହେଲାପରି ଲାଗିଲା । ବାପର ଅନ୍ତ୍ୟେଷ୍ଟି ସାରି ଏଇ ନିଛାଟିଆ ସଞ୍ଜବେଳେ ମୁଁ ପୁଣି ଗୋସେଇଁବାପର ଜମି କିଣିବାକୁ କଥାବାର୍ତ୍ତା କରୁଚି... ମୋ' ପାଖରେ ମୋ' ସ୍ତ୍ରୀ ଠିଆହେଇଚି... ହେଇ ମୋ' ଗାଡ଼ି ଭିତରେ ମୋ' ପିଲାଏ ଖେଳୁଚନ୍ତି... ଆଉ ସେ ଥୁଣ୍ଟା ପଳାଶଗଛ ମୋର ସମଗ୍ର ଅତୀତକୁ ଗୋଟେଇପୋଟେଇ ଠିଆହେଇଚି – ଆହୁରି ଥୁଣ୍ଟାଳିଆ ଦିଶୁଚି । ମୋର ଇତିହାସ, ମୋର ଅଦୃଷ୍ଟ ସମଗ୍ର ଭବିଷ୍ୟତକୁ ଏକାଠି ମୁଠେଇ ଏ ବାଙ୍ଗରା ବୁଢ଼ା ମୁସଲମାନ ଠିଆହେଇଚି ।

"ଏସବୁ ମୋ' ମଗଜ ଭିତରକୁ ନେଇ ସତ ବୋଲି ବିଶ୍ୱାସ କରିବାକୁ ମୋତେ ସମୟ ଲାଗୁଥିଲା । କୌଣସି କଥା କହିବା ଆଗରୁ ରୁନ୍ଧିହୋଇ ରହିଥିବା ପବନଟାଏ ବୁକୁ ଭିତରୁ ବାହାରିଆସିଲା । ମୋ' ମୁହଁରୁ ଅଣାୟତରେ ବାହାରିଆସିଲା – ଓଃ !!"

"କ'ଣ କହୁଚନ୍ତି – ମିଆଁ ବିବି ଏକାଠି ରାଜିହେଇ ହଁ କରିଦେଲେ ହେଲା ।"

ମୀରା ମୋ' କଚଟି ଚିପିଦେଇ କହିଲା, "ହଁ କରିଦଉନ !"

ମୁଁ କିଛି ନ କହି ମୁସଲମାନ ଲୋକକୁ ଚାହିଁ ଅଳ୍ପ ଟିକିଏ ହସିଲି ନା' କ'ଣ । ଆଉ ରାଜ୍ୟରେ ବର୍ଷୁଥିବା ମେଘରେ ବିଜୁଳି ଏ ରାଜ୍ୟ ଦିଗ୍‌ବଳୟ ପାଖରେ ଫିକ୍‌କିନା ଦିଶିଯାଏ; ତା'ର ଅମାପ ଦୂରତା ସେ କଳିପାରିଲା କି ନାହିଁ ଜାଣେ ନାଇଁ । ସେ ସାଙ୍ଗେ ସାଙ୍ଗେ କାଗଜ କଲମ କାଢି ପଚାରିଲା, "ଆପଣଙ୍କ ଠିକଣା ଦିଅନ୍ତୁ – ମୁଁ ଚିଠିଦେବି ଏଇ ହପ୍ତା ଭିତରେ ।"

X X X X

ଦଶବର୍ଷ ଭିତରେ ପୋଖରୀ ଖୋଳାହେଲା, ପମ୍ପ ବସିଲା, ପାଣି ମଡେଇବାକୁ ନାଳ ଖୋଳାହେଲା । ମୋ' ପାଖରେ ଖବର ପହଞ୍ଚିବାରେ ଲାଗିଲା ଯେ ସେ ମାଟିରେ ପାଣି ମଡେଇବା ସମ୍ଭବ ନୁହେଁ । ଗୋଟିଏ ଗୋଟିଏ କିଆରିରେ ସମୁଦ୍ରେ ପାଣି ପିଇଯିବାର ଶୋଷ । ମୋତେ କଥାଟା ଅପରିଚିତ କିମ୍ବା ଅସ୍ୱାଭାବିକ ବୋଧହେଲାନାହିଁ ।

ମୁଁ ଆଫ୍ରିକାରୁ ଆରବ ଗଲି । ଅଜସ୍ର ଟଙ୍କା ପଠାଇଲି । ମୀରା ସେଇଠି ରହି ସହଯୋଗ କଲା । ଭାଇନା ଓ ସାନଭାଇ ସମସ୍ତେ ମିଶି ସେ ଜମିରେ ଫସଲ କଲେ । ବୋଉ ମୋ' ପାଖକୁ ଖୁସି ହେଇ ଚିଠି ଲେଖିଲା –

"ତୁ ଆସି ନ ଦେଖିଲେ ବିଶ୍ୱାସ କରିପାରିବୁ ନାହିଁ । ତୁ କହିବା ଅନୁସାରେ ବଗିଚା ହୋଇ ଫଳ ପାଚିଲାଣି । କିଆରିରେ ସୁନା ଫଳୁଚି । ତୁ କେବେ ଆସିବୁ ? ଆମେ ତୋ' ଆସିବା ବାଟକୁ ଚାହିଁବସିଚୁ । ତୁ ଏ କୁଳକୁ ଭଗୀରଥ..."

ମୁଁ ଯିବାକୁ ଯୋଜନା କଲି ବହୁବାର । ମୋତେ କିନ୍ତୁ ସେ ପାହାଡ ପରି ମୁହଁ ପ୍ରତ୍ୟେକ ଥର ଦିଶିଲା । ଜିଭ ଭିଡିନେଲା ଶୋଷରେ । ମୁଁ ଦୁବାଇରୁ ବିଭିନ୍ନ ଆଳରେ ଚିଠି ଦେଇ ଆଉ ଆସିଲି ନାହିଁ ।

ମୋ ପାଖକୁ ରଙ୍ଗିନ ଫଟୋ ଥାକ ଥାକ ପଠାହେଉଥିଲା । ଗୋଟାଏ ଚମତ୍କାର କୋଠା, ପୃଷ୍ଠଭୂମିରେ ପାହାଡ । କୋଠାଟା ମୋରି ପ୍ଲାନ୍ ଅନୁସାରେ ଗଢାହୋଇଥିଲା । ଚାରିପଟେ ବଗିଚା, ଜମି, ପୋଖରୀ, ଫୁଲ । ମୁଁ ସେ ଫଟୋଗୁଡାକୁ ବିଭିନ୍ନ ଢଙ୍ଗରେ ଦେଖି ସେ ପାହାଡକୁ ଜମା ଚିହ୍ନିପାରୁ ନଥାଏ । ଆହୁରି ଫଟୋ ପଠାଇବାକୁ ଲେଖୁଥାଏ ।

ମଝିରେ ଚିଠି ଆସି ପହଞ୍ଚିଲା । ମୀରା ଲେଖିଚି – 'ତମର ମନେଅଛି ନା... ସେ ପଳାଶ ଗଛ ? ଯାହା ପାଖରେ ଏ ଜମି ବିଷୟରେ କଥା ଆରମ୍ଭ ହେଇଥିଲା ? – ମୁଁ ଭାବିଚି ସେ ପଳାଶ ମୂଳରେ ଚନ୍ଦିନୀ କରି ତା'ର ଯତ୍ନ ନେବାକୁ । ତମେ ଆସିଲେ ତା' ମୂଳେ ବସିବାକୁ ନିଶ୍ଚୟ ଭଲପାଇବ । ସେଇଠୁ ତମକୁ ଗୋଟାଏ କ'ଣ ମୁହଁ ଦିଶେ ପରା !'

ମୁଁ ଉତ୍ତ୍ୟକ୍ତ ହୋଇ ସେଇ ମୁହୂର୍ତ୍ତରେ ଚିଠି ଲେଖିଦେଲି । "ମୀରା, ଯଦି ମୋର ମଙ୍ଗଳ ଚାହଁ, ତୁମେ ସେ ପଳାଶ ଗଛଟାକୁ ଲୋକ ଲଗେଇ କାଟିଦିଅ । ତା'ର ଚିହ୍ନସୁଦ୍ଧା ଯେମିତି ନରହେ । ମୁଁ ସେ ଅଞ୍ଚଳକୁ ଗଲେ ଯେମିତି ଜାଣିନପାରେ କେଉଁଠି ସେ ଗଛଟା ଥିଲା..."

ଚିଠି ଲେଖିଦେଇ ମୁଁ ଥମ୍ ହେଇ ଅନେଇଲି । ସେଇ କାଗଜ କାଳି ଭିତରେ ଆସ୍ତେ

ଆସ୍ତେ ସେ ଥୁଣ୍ଟା ପଳାଶ ଗଛଟା ଉକୁଟି ଉଠିଲା । ମୋତେ ଆତଯୋଇ ସାମାନ୍ୟ ବାଁ'କୁ ଘୁଞ୍ଚିଗଲା ପରି ଲାଗିଲା... ଏବଂ ସେଇଠୁ କାହୁଁ କେଜାଣି ସେ ପାହାଡଟା ପହରି ଆସିଲା ମୋ' ଦୃଷ୍ଟି ଭିତରକୁ । ମୋ' ରକ୍ତପ୍ରବାହ କ୍ରମଶଃ ଥମିଯାଉଥିଲା । ମୋ' ନିଃଶ୍ୱାସ ରୁନ୍ଧିହୋଇ ଆସୁଥିଲା । ମୁଁ ନିଷ୍ପଲକ ଆଖିରେ ସେ ପାହାଡର ମୁହଁଟାକୁ ଚାହିଁ ରହିଥିଲି । କେତେବେଳେ କେଜାଣି ! ମୋର ସଂବିତ୍‌ର ଗହୀର କେନ୍ଦ୍ରରେ ମୁଁ ମୋ' ନିଜ ସ୍ୱର ଶୁମିପାରୁଥିଲି... "ସେ ଗଛଟାକୁ ହାଣିଦେଲେ କ'ଣ ଦିଗଟାକୁ ଛିଣ୍ଡେଇଦେଇ ପାରିବୁ ? ସେଇ ଦିଗରୁ ତ ମୁହଁ ଅବଶ୍ୟ ଦିଶିବ..."

ମୁଁ ମୋ' ଚିଠିଟାକୁ ଆସ୍ତେ ଚିରି ଖଣ୍ଡ ଖଣ୍ଡ କରିଦେଲି ।

ଯଥାସମୟରେ ପୁଣି ଚିଠି ଆସିଲା... ମୁଁ ନିଜେ ଯାଇ ସେ ପଳାଶଗଛ ଚାରିପାଖ ସଫା କରେଇଲି । କିନ୍ତୁ ଚାନ୍ଦିନୀର ପୁନାଦି ପକାଇବାକୁ ଖୋଳାହେଲାବେଳେ ଗଛର ଡାହାଣ ପାଖେ ଗୋଟାଏ କବର ବାହାରିଲା । ମୁସଲମାନ ଚାରି ତାକୁ ସାଡେଂଗ ସାଙ୍ଗେ ପୋତିପକେଇବାକୁ କହିଲେ । ଚାନ୍ଦିନୀକୁ ଆଉ ତିନିହାତ ଲେଖା ଚାରିଆଡେ ବଢେଇଦେଲେ ତା' ତଳେ କବର ରହିଯିବ – କିଛି ଅସୁବିଧା ହେବ ନାହିଁ ବୋଲି କହିଲେ । ତମର ମତ କ'ଣ ? କାମ ଆରମ୍ଭ କରିବା ନା ନାହିଁ ? ପାଣି ଆଦି ଯତ୍ନରେ ଦେବାରୁ ଗଛ ନୂଆ ପତ୍ର ପକେଇ ସୁନ୍ଦର ଦିଶିଲାଣି । ତମେ ସେ ଗଛଟାକୁ ଏତେ ଖାତିର କର ବୋଲି ମୁଁ ଏସବୁ କରିବାକୁ ଚାହୁଁଛି । ତେବେ ଏ କବର କଥାଟାରେ ମୋ' ମନରେ ଟିକିଏ ଖଟ୍‌କା ଲାଗୁଛି । ମୋର ଆଉ ଉତ୍ସାହ ହେଉ ନାହିଁ । ତା' ପୁଣି ମୁସଲମାନ କବର ! ମୋତେ ଡରମାଡୁଛି । ଘରେ ସମସ୍ତେ ଶୁଣି ନାହିଁ ନାହିଁ କଲେଣି । ତେବେ ତମେ ଯାହା କହିବ ତାହା ହିଁ ହବ । ଶୀଘ୍ର ଲେଖି ଜଣାଅ ।

...ଆଚ୍ଛା, ତା'ହେଲେ ମୁଁ ଯେଉଁଠି ଠିଆହୋଇ ପାହାଡଟାକୁ ଦେଖୁଥିଲି ସେଇଟା କବରଟାଏ ? ମୋ' ଦେହ ଶୀତେଇଗଲା । କ'ଣ ଗୋଟାଏ ରହସ୍ୟ ହୁଏତ ଯା ପଛରେ ଥାଇପାରେ । ...ମୁଁ ଦେଖିଲି ଯେ ଆଉ କୌଣସି ଉପାୟ ନାହିଁ । ମୁଁ ସଂକଳ୍ପ କରି ମୀରା ପାଖକୁ ଚିଠି ଲେଖିଦେଲି –

"ଦେଖ, ମୀରା ! ତମକୁ ଆଉ ଲୁଚେଇ ଲାଭ ନାହିଁ । ସେ ପାହାଡଟା ମୋ' ପାଇଁ ଏକ ଗଭୀର ରହସ୍ୟ । ମୁଁ ତାକୁ ଭୁଲିପାରୁନାହିଁ କି ତାକୁ ସାମ୍ନା କରିବାକୁ ସାହସ କରି ପାରୁନାହିଁ । ସେଇଟା ମୋତେ ଦୁଃସପ୍ନ କରି ଡାକି ରଖିଛି । ମୁଁ ଯା ଭିତରେ ଖୁବ୍ ବଦଳି ଯାଇଛି । ଖୁବ୍ ହାଡୁଆ, ବୁଢାଳିଆ ହେଇଯାଇଚି । ଏଥିରେ ଗତକାଲି ନେଇଥିବା ଗୋଟିଏ ଫଟୋ ପଠଉଛି । ସେଇଠୁ ଜାଣିବ ମୁଁ ସେ ପାହାଡ ଭୟରେ ତୁମମାନଙ୍କ ପାଖକୁ ଆସିପାରୁନାହିଁ ।"

ତା'ପରେ ଅସଂଖ୍ୟ ଚିଠି । ସମସ୍ତଙ୍କର । ସବୁ ପ୍ରାୟ ଏକା ପ୍ରକାର ଲେଖିଥିଲେ । ସୁବ୍‌କୁ ହାଇସ୍କୁଲ ସାର୍ଟିଫିକେଟ ଦେଇସାରିଥିଲା । ସେ ଲେଖିଥିଲା – "ବାବା, ତମେ ଏଥର ନ ଆସିଲେ ମୁଁ ନିଜେ ଯାଇ ତମକୁ ସାଙ୍ଗରେ ନେଇଆସିବି । ପାହାଡ ବିଷୟରେ ତୁମର ହାଲୁସିନେସନ୍ ହେଉଚି । ମୁଁ ମା'ଙ୍କୁ କହିଛି, ସେ ଡିନାମାଇଟ୍ ଲଗେଇ ସେ ପାହାଡଟାକୁ ଉଡେଇଦେବେ ।

ଦଦେଇ, କକେଇ, ଜେଜେମା ସମସ୍ତେ ସେଇଆ କହୁଚନ୍ତି । ତମେ ଆସିଲାବେଳକୁ ଆମେ ସେ ପାଜି ପାହାଡଟାକୁ ପୂରାପୂରି ଉଡେଇଦେଇଥିବୁ ।"

ମୁଁ ବିଚଳିତ ବୋଧକଲି । ସେ ହାଡୁଆ ଆବତା ମୁହଁ, ସେ ଆଖି, ଆଉ ଟେକିଲା ପରି ସେ ଥୋଡିଟା ମୋ' ଆଡକୁ ନିରବରେ ଅନେଇ ରହିଲା । ଭାରି କରୁଣ ସେ ଚାହାଣି, ଖୁବ୍ ଅସହାୟ । ମନେହେଲା ଆମ ପଶ୍ଚିମମୁହାଁ ଘର ସାମ୍ନାରେ ନନା ଠିଆହୋଇଛନ୍ତି । ଚାହୁଁ ଚାହୁଁ ସେ ପୋତିହୋଇଯାଉଛନ୍ତି ବେକ ପର୍ଯ୍ୟନ୍ତ । ଆକାଶକୁ ଚାହିଁଲା ପରି ହୁଏତ କହୁଛନ୍ତି –

"ମୁଁ ତ କାହାରି କିଛି ଅନିଷ୍ଟ କରିନାହିଁ – ମୁଁ ଏ ମାଟିରେ ପୋତିହୋଇ ଘୁଞ୍ଚି ପାରୁନାହିଁ ବୋଲି ମୋ' ମୁହଁଟାକୁ ବାରୁଦ ଲାଛି ବିଦୀର୍ଣ୍ଣ କରିଦେବ ? ମୋ' ମୁହଁକୁ ମୂଳପୋଛ କରିଦେଲେ କ'ଣ ମୋ' କବନ୍ଧଟାକୁ ଖୋଳି କାଢିନେଇ ପାରିବ ? ତା' ପାଦ ଜାଣିଚ କେତେ ଗହୀର ଯାଏଁ ବୁଡି ରହିଚି ? ସେ ମୁହଁଟା କ'ଣ ଖାଲି ମୋର ? ସେଇଟା ପରା ଆମ ଖାନଦାନୀ ମୁହଁ ! ଗୋଟାଏ ସମୟରେ ସମସ୍ତେ ସେମିତି ହାଡୁଆ ଦେଖାଯା'ନ୍ତି । ଥୋଡି ଟେକି ଆକାଶକୁ ଅନେଇଲା ପରି ଉଦାସଭଙ୍ଗୀରେ ଚାହାନ୍ତି..."

ମୁଁ ଚମକିଲା ପରି ଉଠିପଡିଲି ଚୌକିରୁ । ମୋ' ମୁଣ୍ଡ ବୁଲେଇଦେଲା । ପାଖରେ ପଡିଥିବା ବିଛଣାରେ ମୁହଁ ମାଡି ଅନେକ ସମୟ ପଡିରହିଲି । ଆସ୍ତେ ଉଠି ମୁହଁରେ ପାଣି ଛାଟି ସତେଜହେଲି । ମୁହଁ ପୋଛି ଦର୍ପଣକୁ ଅନେଇଲି । ମୁହଁକୁ ବାମୋଡ କରି କଣେଇ ଚାହିଁଲି । ଗୋଟାଏ ଦୀର୍ଘଶ୍ୱାସ ବୁକୁ ଥରାଇ ଲମ୍ବିଗଲା ନାହିଁ କେତେ ବାଟ ।

ମୁଁ ଚିଠି ଦେଲି, "ସ୍ନେହର ସୁବ୍ବୁ ! ତୁମେ ସମସ୍ତେ ଭୁଲ ବୁଝିଚ ସେ ପାହାଡକୁ, ଯେମିତି ମୁଁ ନନାଙ୍କୁ ଭୁଲବୁଝୁଥିଲି, ସେମିତି ତୁ ମୋତେ ଭୁଲ ବୁଝିବା ଆରମ୍ଭ କଲୁଣି । କେବେ ସୁବିଧା ହେଲେ ସେ ପାହାଡକୁ ଥୁଣ୍ଟା ପଲାଶ ଗଛର ଡାହାଣ ପାଖେ ଠିଆହୋଇ ଦେଖିବୁ । ମୋ' ବିଶ୍ୱାସ, ତତେ ନିଶ୍ଚୟ ସେ ଦୃଶ୍ୟ ହେବ । ସେଇଟା ହେଲୁସିନେସନ ନୁହେଁ । ତାହା ଆଉ ଏକ ଭୂମିର, ଆଉ ଏକ ଗଭୀରତାର ସତ୍ୟ । ଗୋଟାଏ ବଂଶ ପୁରୁଷ ପୁରୁଷ ପୋତି ହୋଇଯାଇଛି ମାଟିତଳେ – କେବଳ ସେଇ ମୁହଁଟା ହିଁ ଦିଶୁଛି । ତା' ଗାଲରେ ସିଆର ସିଆର ଗାର ପଡିଚି । ତା'ର ହନୁହାଡ ଉଭାରି ଆସିଚି । ମୋ' ଫଟୋ ସାଙ୍ଗେ ମିଳାଇବୁ ପୁଣି ଯାଇ ଦେଖିବୁ... ସେଥିପାଇଁ କହୁଚି ତୁମର ସେ ଯୋଜନା ବନ୍ଦ କର । ଯଦି ଡିନାମାଇଟ୍ ଲଗେଇ ଉଡେଇଦିଅ, ସେଇ ବିସ୍ଫୋରଣରେ ମୋର ମୂର୍ଦ୍ଧା ଏଇଠି ବିଦୀର୍ଣ୍ଣ ହେଇଯିବ ବୋଲି ମୋର ଆଶଙ୍କା ହେଉଛି । ମୁଁ କୌଣସି କାରଣ ଦର୍ଶାଇ ପାରିବି ନାହିଁ । କିନ୍ତୁ ମୁଁ ଅନୁଭବ କରୁଛି ଯେ ମୋ' କହିବା କଥା ସତ । ବରଂ ଯଦି ପାରିବ ସେ ପାହାଡର ଖାଲଖଣାରେ ମାଟି ଭର୍ତ୍ତିକରି ଫୁଲଗଛ ଲଗେଇଦିଅ । ପାହାଡ ସାରା ସାନବଡ ଗଛ ଖଞ୍ଜିଦିଅ । ଏତେଗୁଡାଏ ପଥରକୁ ଲୁଚାଇବାକୁ କିଆରି କିଆରି ଫୁଲ ଲଗେଇଦିଅ । ମୁଁ ସେଥିପାଇଁ ସତନ୍ତ୍ର ପଇସା ପଠଉଚି । ଏ ବର୍ଷ ଏପ୍ରିଲ୍ ଆଡକୁ ମୁଁ ଆସିବି – ନିଶ୍ଚୟ ଆସିବି ।"

X X X X

ବିମାନବନ୍ଦରରୁ ଘରକୁ ଯିବା ବାଟରେ ମୁଁ ସେ ପଳାଶ ଗଛ ପାଖରେ ରହିବି ବୋଲି ବୋଧେ ସମସ୍ତେ ଜାଣିଥିଲେ । ଚନ୍ଦିନୀକୁ ଘେରି ସମସ୍ତେ ଠିଆହୋଇଥା'ନ୍ତି । ପଳାଶ ଗଛରେ ଅଗ୍ନିଶିଖା ପରି ଅସଂଖ୍ୟ ଫୁଲ ମଣ୍ଡିହୋଇଥାଏ । ମୁଁ ଚାହିଁଲି ପାହାଡକୁ, ମୁହଁ ଉପରେ ରଙ୍ଗବେରଙ୍ଗୀ ଅବଗୁଣ୍ଠନ ସତ୍ତ୍ୱେ ମୁଁ ତାକୁ ଦେଖିପାରୁଥିଲି । ମୁଁ ପହଁରି ଯାଉଥିଲି ଗୋହିରୀ ବିଲ ପାରିହୋଇ ସେ ପାହାଡର ଅପରିମେୟ ମୁହଁ ପାଖକୁ । ଅନୁଭବ କରୁଥିଲି ଯେ ମୋ' ପାଦତଳ କବରରେ ଥିବା ମୁସଲମାନ ଚଗ ମୋତେ କାନ୍ଧରେ ଟେକିଦେଉଥିଲା କୌଣସି ଅଜଣା ଆକାଶକୁ । ସେ ନିଶ୍ଚେ ଦିନେ ମୋର ଗୋସିବାପ ସାଙ୍ଗରେ ଏମିତି ଏଇଠି ସେ ପାହାଡକୁ ଚାହିଁ ଠିଆହୋଇଥିବେ ବୋଲି ମୋର ବିଶ୍ୱାସ ହେଉଥିଲା । ମୁଁ ପୁଣି ଅନୁଭବ କରୁଥିଲି ଯେ, ମୁଁ ମାଟି ଭିତରେ ବେକଯାଏ ବୁଡିଯାଉଥିଲି । ଏ ସମସ୍ତଙ୍କୁ ଏପାଖେ ଛାଡି ଏକାକୀ ଲୀନ ହୋଇଯାଉଥିଲି ସେ ପାହାଡରେ । ଏପାଖେ ଅସଂଖ୍ୟ ଲୋକ, ଅସଂଖ୍ୟ ସପ୍ନ, ଅସଂଖ୍ୟ ଯୋଜନା ସାଧନା ଏବଂ ସିଦ୍ଧି କ୍ରମେ ଅପସରିଯାଉଥିଲେ, ଛୋଟ ହୋଇଯାଉଥିଲେ । ସେପାଖେ କେବଳ ମୁଁ ଏବଂ ପାହାଡ, ଅଭିନ୍ନ, ଅନନ୍ୟ, ଚିରନ୍ତନ !

ଏବେ ମୁଁ ସେ ପାହାଡ ଚୂଳରେ ଗୋଟିଏ ଟୁଙ୍ଗିଘର କରି ରହୁଛି । ମୋ' ପୁଅ 'ସୁବ୍‌ବୁ' କହୁଥିଲା ଯେ ପଳାଶ ଗଛ ଚନ୍ଦିନୀ ଉପରୁ ଗତକାଲି ସଂଜବେଳେ ଗୋଟାଏ ବିରାଟ ମୁହଁ ତାକୁ ଦୃଶ୍ୟହେଲା । ମୁଁ ଜାଣିଲି ଯେ ମୋର ପାହାଡ ହେବାର ବେଳ ଆସିଗଲା ।



# କିଛି ପ୍ରମାଣ ନାହିଁ

ତଥାପି ମୋର ଏଥିରେ ଅଖଣ୍ଡ ବିଶ୍ୱାସ । ତା' ବାହାରେ ସବୁ କ'ଣ ପ୍ରମାଣ କରାଯାଇପାରେ ନା କରିବା ଉଚିତ ? ଜଗମୋହନର ଖମ୍ବ ଆଢୁଆଳରେ ଲୁଚିଯାଉଥିବା କାହାରି ପଛଆଡ ମୋତେ ଚିହ୍ନା ଚିହ୍ନା ଦିଶିଯାଏ ଏବଂ ଅଳ୍ପ ମୁରୁକି ମାରି... ସେ ଦିଲ୍ଲୀବାଲା କାହିଁକି ଏ ସମୟରେ ଏଠିକି ଆସିବ ଭାବି... ଓହ୍ଲେଇଗଲାବେଳକୁ ବାଇଶି ପାହାଚ ପାଖରେ ସେଇ ଜ୍ଞାନଚନ୍ଦ ସାହାନିକୁ ଦେଖି ମୁଁ ଅଚମ୍ବାଖାଇଯାଏ ।

"ଆବେ ଜ୍ଞାନ୍, ତୁ ଇଧର କୈସେ ?"

କୋଳାକୋଳି ବିନିମୟ ପରେ ସେ କହେ – ଆରେ ୟାର୍ ମେ ତୁମ୍‌ହାରେ ବାରେ ମେ ହିଁ ଶୋଚରହାଥା କି ଆପ୍‌ମଥା ସେ ତୁମ୍ ଟପ୍‌କେ । ବଡି ତାଜୁବ କି ବାତ୍!!

ମୁଁ ତାକୁ କହେନାହିଁ ଯେ ଜଗମୋହନ ଖମ୍ବ ପଛରେ ତାକୁ ଲୁଚିଯିବାର ମୁଁ ଦେଖିସାରିଛି । ବିଚରା ଆଉରି ଘାବରେଇଯିବ ଏବଂ ମୁଁ ଗାଲୁ ପେଲୁଚି ବୋଲି ସନ୍ଦେହ କରିଯିବ, ଏଇ ଭୟରେ କିଛି କହେ ନାହିଁ ଏବଂ ତାକୁ ସାଙ୍ଗରେ ନେଇ ପୁଣି ମନ୍ଦିର ଭିତରକୁ ଯାଏ । ସତ୍ୟନାରାୟଣ, ବାଞ୍ଛାବଟ, ମୁକ୍ତିମଣ୍ଡପ, ବିମଳା ଠାକୁରାଣୀ କଥା କହି ତାକୁ ବେଢାବୁଲାଏ । ସେ ଆଖି ପାଟି ମେଲାକରି ମୋତେ ଗୋଟାପଣେ ଢୋକିଯାଏ । ତା' ପିଠିରେ ହାତ ରଖି ଅଣ୍ଟାକୁ ବେଢେଇ ଧରି ମୁଁ ଗଦଗଦ ହୁଏ । ପୁଣି ଗରୁଡ ପଛରେ ଠିଆହେଇ ଦେଖେ ଆଉ ଦେଖାଏ । ସେ ଆଖିବୁଜି ଖମ୍ବକୁ କୁଣ୍ଢାଇଲାବେଳେ ମୋ' ଆଖି ଜକେଇଯାଏ ।

ତା'ପରେ ଜଗମୋହନ ଭିତରେ ଆଗେଇଗଲାବେଳକୁ ମୁଁ ତା' ପଛରେ ଲାଗି ରହିଥାଏ । ମୋର ଛା ଛା ଆଶଙ୍କା ହୋଇଯାଏ ଯେ ଜ୍ଞାନଚନ୍ଦ ସାହାନି ବୋଧେ ଏଇ ପବନରେ ପବନ ହେଇ ମିଳେଇଯିବା ବେଳେ ଆସିଗଲା । ଏଇଠି ସେ ଉଦୟ ହେଇଥିଲା – ଏଇଠି ଅସ୍ତ ହେଇଯିବ ।

କିନ୍ତୁ ତାହା ହୁଏନାହିଁ । ଆମେ ସାଙ୍ଗହେଇ ଫେରୁ । ପାନ୍ଥନିବାସରେ ତା' ବଖରାରେ କିଛି ସମୟ ବସି ବାହାରିଯାଉ ସମୁଦ୍ରକୂଳକୁ । ସେଇଠି ଢେଉ ଉପରେ ଢେଉ ମଡେଇ ଅତୀତ ଓଦା ବାଲି ଉପରେ ଲୋଟିପଡେ । ହାତରେ ଅମୃତ କଳସ ନନେଇ ଅପରୂପା ଅପ୍‌ସରା ପରି ଅମ୍ରିତା ରୋହାଦ୍‌ଗି ଉଠିଆସେ ସ୍ମୃତି-ସମୁଦ୍ରରୁ । ହସିଦେଇ ଇତସ୍ତତଃ ବୁଣିଦିଏ ଜୀବନର ସବୁଯାକ ରଙ୍ଗନେଳି ସପ୍ନ । ତାକୁ ଗୋଟେଇବା ଭିତରେ ସେ ପୁଣି ଉଭାନ ହେଇଯାଏ ।

"ଆଚ୍ଛା ୟାର୍, ଓମିକୋ ନହିଁ ଲାୟେ ସାଥ୍ ? ତୁମ୍ ତୋ' ନହିଁ ଶୋଚ୍‌ତେ ହୋ କି ଅଭି ବି ମେଁ ଉଠାକେ ଲେଜାଉଁଗା !"

"ହେ, ହେ, ହେ... ଅରେ ନହିଁ, ଓ୍ୱହ କହରହିଥି ଆନେକେ ଲିୟେମ... ଗର୍..."

– ଏଇଠି ମୋ' ପିଠିରେ ହାତ ରଖି ତୁମେ ମୋତେ ପଚାରିଛ, "କ'ଣ ସେ ଖମଟାକୁ ଅନେଇ ଜଗମୋହନଟା ଭିତରେ ଏମିତି ଭକୁଆଙ୍କ ଭଳି ଠିଆହେଇଚ ? ଯିବା ପରା ଚଞ୍ଚଳ – ଲକ୍ଷ୍ମୀବଜାର, ମର୍ଚିକୋଟ୍ ହେଇ ଦରଡୋଟା ।"

ମୁଁ ଆଖି ମଟମଟ କରି ଚାହିଁଛି । ଅଳ୍ପ ହସି ଗୋଡ କାଢିଛି । କିନ୍ତୁ ମୁଁ ଜାଣିଯାଇଛି ଯେ ଜ୍ଞାନଚାନ୍ଦ ନିଶ୍ଚୟ ଓଡିଶା ଆସୁଚି । ମୁଁ ତୁମକୁ ସେ କଥା ସାଙ୍ଗେ ସାଙ୍ଗେ ବି କହିଛି ।

"ତାର ପ୍ରମାଣ କ'ଣ ?" – ତୁମର ନିତିଦିନିଆ ପ୍ରଶ୍ନ ।

"ଆରେ ପ୍ରମାଣ ଆଉ କ'ଣ ? ହେଇ ପରା, ମୁଁ ଆଖିରେ ଦେଖି କହୁଛି । ସେସବୁ ଟିକିନିଖି ମୁଁ ଦେଖିଛି ଏବଂ ତାହା ଘଟିନଥିଲେ କେମିତି ଦେଖିଥା'ନ୍ତି ?"

ତା'ପରେ ତୁମେ ଜାଣିଛ କେମିତି ଟେଲିଗ୍ରାମ୍ ଆସିଲା ଏବଂ କେମିତି ମାସକ ଉତ୍ତାରୁ ଅବିକଳ ସେଇ ଘଟଣା ଘଟିଗଲା । ତଫାତ୍ କେବଳ ଏତିକି ଯେ ଅମ୍ରିତା ରୋହାଦ୍‌ଗି ଆସିନାହିଁ କି ଦିଶିନାହିଁ; କାରଣ ବର୍ଷକ ଆଗରୁ ସେ ତା'ର ତୃତୀୟ ସନ୍ତାନକୁ ଜନ୍ମ ଦେଇନପାରି ମରିଯାଇଥିଲା ।

ତୁମେ ମୋର ସେଇ ଗୋଟିଏ ଦୁର୍ବଳ ବିନ୍ଦୁ ଉପରେ ଅନେକ ଥଟ୍ଟା ପରିହାସ କରିଛ । ଅପୂର୍ବ-ଅପ୍‌ସରା ବୋଲି ମୁଁ ଯାହାକୁ ବିଶେଷିତ କରିଛି, ତାକୁ ତୁମେ ଦେଖି ପାରିନଥିବାରୁ ଅନେକ ଟାଣ୍ଡଲ୍ୟ କରିଛ । ଖୋଳିତାଡି ଜାଣିବାକୁ ଚାହିଁଛ ମୋ' ସହିତ ତା'ର ଘନିଷ୍ଠତା କେତେ । ମୁଁ ଯାହା କହିଲେ ବି ମୋତେ ତୁମେ ବିଶ୍ୱାସ କରିନାହିଁ । ମୁଁ ହଲଫ୍ କରି କହିଛି ଯେ ଲାଇବ୍ରେରି ସାମ୍ନା ଲନ୍‌ରେ, ରାତି ଆଠଟାରେ ଚୁପ୍‌ଚାପ୍ ବସି ସିଗ୍ରେଟ୍ ଟାଣୁଥିଲା ବେଳେ, ଅମ୍ରିତାକୁ ମୋ' ଆଗରେ ଠିଆହୋଇଯିବାର ଦେଖି ମୁଁ ଚମକି ପଡିଥିଲି । କିନ୍ତୁ ତୁମେ ତଳ ଓଠକୁ ଦାନ୍ତରେ ଚାପି ବିଚିତ୍ର ଢଙ୍ଗରେ ହିସଛ ଏବଂ ଉତ୍ସାହିତ କଲାଭଳି କହିଛ, "ହଉ ହେଲା - ତା'ପରେ କ'ଣ ହେଲା କହିଯାଆ ।" ମୁଁ ତୁମ ଉପରେ ଚିଡିଛି । ତୁମେ ଆହୁରି ହସିଛ – ସତେ ବା ମୁଁ ଯାହା କିଛି ରହସ୍ୟ ତୁମଠାରୁ ଲୁଚେଇବାକୁ ଚେଷ୍ଟାକରୁଛି, ତୁମେ ସେସବୁ ଜାଣିସାରିଛ । ମାନେ, ଏଇ ଘଟଣାରେ ତୁମେ ଜାଣିଯାଇଛ ଯେ ମୋ' ସହିତ ତା'ର ଲକ୍ଷ୍ୟ ବେଳେ ଦେଖାହେଇଥିବ । ତା'ପରେ ତିନିଟାରେ

ଘ ପାଇଁ ମଧ ଭେଟ ହେଇଥିବ । ଛୋଟ ଚିଠି ଆଦାନ ପ୍ରଦାନ ହେଇଥିବ... ଇତ୍ୟାଦି... ଇତ୍ୟାଦି... ।

ସେବେ ହଲପ୍ କରିଥିଲି, ଏବେ ପୁଣି କରୁଛି – ତୁମେ ବିଶ୍ୱାସ କର ବା ନକର ଏଗୁଡ଼ା ସବୁ ମିଥ୍ୟା । ମୁଁ ମାନୁଛି ଯେ ସେଭଳି ଅସାମାନ୍ୟ ସୁନ୍ଦରୀ ତରୁଣୀ ସହିତ ଏଭଳି ସବୁ ବୋଧହୁଏ ହେବା କଥା – ଆହୁରି କିଛି ମଧ ହେବା କଥା । କିନ୍ତୁ ତୁମକୁ ମିଛ କହିବାରେ ସେପରି କିଛି ଘଟିନାହିଁ ବା ଘଟିପାରିନାହିଁ ।

ତା'ର କାରଣ ହେଲା ଜ୍ଞାନଚନ୍ଦ ମୋର ଘନିଷ୍ଠ ସାଙ୍ଗ । ତାଙ୍କ ଘରକୁ ସେ । ଦୁଇବର୍ଷ ଭିତରେ ମୁଁ ଶହେଥର ଯାଇଥିବି । ମୋତେ ଦେଖିଲେ ତା' ମା' ରଙ୍କ ରଙ୍କ ହୁଏ । ବାପା ବି ଭାରି ଖୁସି ହୁଅନ୍ତି । ସେଇମାନେ ମୋତେ ପ୍ରଥମେ ତନ୍ଦୁର ସାଙ୍ଗରେ ଚିକେନ୍ ଖୁଆଇଥିଲେ । ଜ୍ଞାନ ଭାରି ଲାଜକୁଳା । ମୋତେ ଗୋଟାଏ ଦିନ ହାତଧରି କହିଥିଲା ଯେ ଅମ୍ରିତା ପାଇଁ ସେ ଜୀବନ ହାରିଦବ । ବେକୁବ୍ କାହାଁକା – ଆରେ ସେ କଥା ତାକୁ କହିଦଉନୁ କାହିଁକି ? ତାକୁ ନହେଲେ ତା' ବାପ ଭାଇକୁ... ସେଇଟା ସମ୍ଭବ ନଥିଲା । କାରଣ ଜାତିଆଣ ଗୋଳମାଳଟାଏ କ'ଣ ତା' ଭିତରେ ଥିଲା । ଅମ୍ରିତା ମୋ' ସହିତ ଦେଖାହେଲାବେଳେ କେମିତି ଗୋଟାଏ ଅନ୍ୟମନସ୍କ ଢଙ୍ଗରେ ଆଖି ପଲକ ନପକାଇ ଚାହିଁରହୁଥିଲା । ମୁଁ କହିବା କଥା ସେ ଆଦୌ ଶୁଣୁନଥିଲା – କେବଳ ଚାହିଁ ରହୁଥିଲା ମୁଗ୍ଧ ହେଲାଭଳି । ଲାଜ ଲାଜ ହେି ତା' ଘରକୁ ଥରେ ନିମନ୍ତ୍ରଣ କରିଥିଲା । ମୁଁ ଗୋଟାଏ ବାହାନା ଦେଖେଇ ଗଲିନାହିଁ । ମୁଁ ଅନୁଭବ କଲି ଯେ ଏଣିକି ମୁଁ ଜ୍ଞାନପାଇଁ ଓକିଲାତି କରିବା ନିରାପଦ ନୁହେଁ । ମୁଁ ଭିତରେ ଭିତରେ ଦୁର୍ବଳ ଅନୁଭବ କଲି । ଦକ୍ଷିଣା ପବନରେ ନୂଆପତ୍ର କଅଁଳିଲା ପରି କ'ଣଟାଏ ମୋ' ଭିତରେ ଆଲୋଡ଼ିତ ହେବାର ଅନୁଭବ କଲି । ଅମ୍ରିତା ଦିନକୁ ଦିନ ଆହୁରି ଆହୁରି ବିଲୋଳ ଲାବଣ୍ୟରେ ମଣ୍ଡିହୋଇ ମୋ' ପାଖରେ ଠିଆହୋଇ ଅପେକ୍ଷା କରିବାଦ୍ୱାରା ମୁଁ ବହୁଚର୍ଚ୍ଚିତ ହେବାକୁ ଲାଗିଲି । ମୁଁ ହୋଇଗଲି ସମସ୍ତଙ୍କର ଈର୍ଷାର ପାତ୍ର ।

ଏତିକିବେଳେ ବଜ୍ରପାତ ହେଲା । ଘରୁ ଟେଲିଗ୍ରାମ୍ ଗଲା । ବାପାଙ୍କ ମୃତ୍ୟୁରେ ଛାରଖାର ପରିବାରକୁ ସାଉଁଟୁ ସାଉଁଟୁ ବର୍ଷେକାଳ ବିତିଗଲା । ସେ ଧୂଆଁ ଆଉ ଅଗ୍ନି ଭିତରେ ମୁଁ ଦିନେ ଏମିତି ସକାଳଟାରେ ଆଚ୍ଛନ୍ନ ଅବସ୍ଥାରେ ଦେଖିଲି ଜ୍ଞାନଚନ୍ଦ ସାହାନି ଘୋଡ଼ା ଚଢ଼ି ପଟୁଆର ଭିତରେ ଆସୁଛି ଏବଂ ଧଳା ଗୋଲାପୀ ବାସନ୍ତି ରଙ୍ଗର ମୋଲାଏମ୍ ରେଶମ ଘେର ଭିତରେ ଅମ୍ରିତା ପୁଷ୍ପମଣ୍ଡିତା ହେଇ ଠିଆହେଇଚି । ମୁଁ ବୁଝିଗଲି ଏବଂ ଚିଠି ଦେଇଥିଲି ଜ୍ଞାନ ପାଖକୁ । ତା'ର ସ୍ୱପ୍ନ ଚରିତାର୍ଥ ହୋଇଥିବାରୁ ତାକୁ ଅଭିନନ୍ଦନ ଜଣାଇଥିଲି । ସେ ମତେ ଜବାବରେ ଲେଖିଥିଲା ଯେ ମୁଁ ଗୋଟାଏ ବେକୁବ୍ । ଯାହା ମୁଁ ସ୍ୱପ୍ନରେ ଦେଖିଛି ସେଗୁଡ଼ାକ ମିଛ । ମୁଁ କିନ୍ତୁ ଜାଣିଥିଲି ଯେ ତାହା ଅନ୍ୟଥା ହେବା କଥା ନୁହେଁ । ତା' ଆରମାସ ୨୩ ତାରିଖରେ ଜ୍ଞାନ ପାଖରୁ ଟେଲିଗ୍ରାମ୍ ଆସିଲା ସେ ଆଇ.ଏ.ଏସ. ପାଇଛି – ସେ ଅମ୍ରିତାକୁ ବାହା ହେବାକୁ ଯାଉଛି । ଦିଗବିଦିଗରୁ ଫୁଲ ଝରିବାର ସଂବାଦ ଆସି ପହଞ୍ଚୁଛି ବାରମ୍ବାର । ଏମିତି ଏମିତି ଅମ୍ରିତା ମୋର ଦିଗ୍‌ବିଳୟକୁ ଘୁଞ୍ଚିଯାଇଛି ସୁନେଲି ମେଘଖଣ୍ଡପରି । ତୁମେ ବାରମ୍ବାର ସେଇଆଡେ ଆଙ୍ଗୁଠି ଟେକି ଦେଖେଇବାରେ ମୁଁ ବି

ମାନିଯିବାକୁ ରାଜି ଯେ ସେ ସମୟରେ ଯାହା ଘଟୁଥିଲା ତା' ହୁଏତ ଆଉ କିଛି । ମୁଁ ଏଯାଏଁ ତା'ର ଅର୍ଥ ବୁଝିନଥିଲି । ଏବେ ତାକୁ ତର୍ଜମା କଲାବେଳେ ଲୁଚିଥିବା ଚମ୍ପାର ମହକ ପରି, ମୋଲାଏମ୍ ଅର୍ଥ ସବୁ ବାହାରୁଛି । ତୁମେ ମୋତେ ଅନେକ ସମୟରେ ବେକୁବ୍ ଠଉରେଇଛ – ସେଇ କାରଣରୁ ଆଶ୍ୱସ୍ତ ବୋଧ କରିଛି । ଏଇ ଘଟଣାରେ ମୋର ବେକୁବ୍‌ପଣ ପାଇଁ ତମେ ମୋତେ ଅନେକ ଭଲପାଇଛ । ବେକୁବ୍ ଲୋକଟି କେତେ ନିରାପଦ ସତେ !

ତୁମକୁ ଏଭଳି କୈଫିୟତ୍ ଦେବାର ପ୍ରୟୋଜନ କିଛି ନାହିଁ । ତୁମକୁ ଏସବୁ ଏମିତି ଲେଖି ଜଣାଇବାର ମଧ୍ୟ ଆପାତତଃ କିଛି କାରଣ ନାହିଁ । ତୁମେ ହୁଏତ ଆଉ କୋଡିଏ ଦିନ ପରେ ଏଠି ଆସି ପହଞ୍ଚିଯିବ ତୁମ ଯୋଜନା ଅନୁସାରେ । ତା'ପରେ ତୁମ ସହିତ ବସି ଚା ଖାଇଲାବେଳେ ସବୁ କଥା କହିଦେଇହେବ । ସେଇଆ ହିଁ ହୁଏତ ହୋଇପାରେ । ସେଥିପାଇଁ ମୁଁ ଏ ଲେଖାକୁ ତୁମ ପାଖକୁ ଡାକରେ ପଠଉନାହିଁ – କେବଳ ଲେଖି ରଖିଦେଉଛି ଟେବୁଲ ଉପରେ ଥିବା ଫଟତଳେ – ସେଇଠୁ ତୁମେ ଅତି ସହଜରେ ପାଇଯିବ । ପଢ଼ିଲେ ହୁଏତ ସବୁ ଜାଣିବ ଏବଂ ମୁଁ ଯାହା ଲେଖୁଛି ପ୍ରମାଣିତ ହୋଇସାରିଥିବ ।

ଗତକାଲି ପାହାନ୍ତିଆ ପହର କଥା । କେହି ଜଣେ ବାହାରେ ଘଣ୍ଟି ଟିପିଲା ଖୁବ୍ ଆସ୍ତେ । ନୂଆ ଲୋକ ନିଶ୍ଚୟ । ମୁଁ ଯାଇ ଫିଟେଇଲି କି ତା' ହାତର ସ୍ପର୍ଶରେ କବାଟ ସେମିତି ଫିଟିଗଲା କହିପାରିବିନାହିଁ । ମୋତେ ଦେଖୁ ଦେଖୁ ମୋ' ଗଳାରେ ବାହୁ ବେଢ଼େଇ ମୋତେ ସେ ଜାବୁଡ଼ି ଧରିଲା ଗଭୀର ଆବେଗରେ । ମୋତେ ଲାଗିଲା ମୁଁ ମୂର୍ଚ୍ଛିତ ହୋଇଯିବି । ମୋ' ଆଖିକୁ ମୁଁ ବିଶ୍ୱାସ କରିପାରୁନଥିଲି । ଇନ୍ଦ୍ରପଦଠୁ ବଳି ମୋର ସୌଭାଗ୍ୟକୁ ମୁଁ ବିଶ୍ୱାସ କରିପାରୁ ନଥିଲି । ମୁଁ ମାନୁଛି, ଏମିତି କଛି ହେଉ ବୋଲି ବୋଧେ ଖୁବ୍ ନିଭୃତରେ ମୋର ଆତ୍ମାପୁରୁଷ ବହୁକାଳୁ ଅଭିଳା, କରିଥିଲା । ମୁଁ ତାକୁ ମୋର ନୀତିବାଦୀ ମନ ଓ ଉପରସ୍ଥ ଚେତନାରେ ସ୍ୱୀକାର କରୁନଥିଲି । କିନ୍ତୁ ସେ ଯାଇ କୋଉ କାଳ କଥା – ଆଜିକୁ ପଇଁତ୍ରିଶ ବର୍ଷ ତଳର । କଷ୍ଟା ଡାଳରେ ସେତେବେଳେ ଗୋପନରେ ବୋଧହୁଏ ଫୁଲଟିଏ ଫୁଟିଯାଇଥିଲା । ତା'ର ମହକ ଅନ୍ଦିସନ୍ଧିରେ ବାହାରି ଆସୁଥିଲା ବେଳେବେଳେ । ତୁମେ ତା'ର ଟେର୍ ହୁଏତ ପାଇଯାଇଥିଲ କେଜାଣି କେମିତି । ନହେଲେ ସେ ବିଷୟରେ ଏମିତି ଗୁଡେଇ ତୁଡେଇ କାହିଁକି ପଚାରିଚାଲିଥା'ନ୍ତି ଏଯାଏଁ ?

ଅମ୍ରିତା ଏପରି ଅଚାନକ ଆସି ପହଞ୍ଚିଯିବ ବୋଲି ମୁଁ ବା କାହିଁକି ଆଶା କରିବି ? ତା'ହେଲେ ଜ୍ଞାନଚନ୍ଦ ବୋଧେ ମିଛ କହିଥିଲା ! ସେ ମିଛ କହେ, ମୁଁ ଜାଣେ । ସେଥିପାଇଁ ମୁଁ ବହୁବାର ଦୁଃଖିତ ହୋଇଛି – କାହିଁକି ଲୋକଟା ଏମିତି ମିଛ କହିଚାଲିଛି କେଜାଣି ! ଏଥର କିନ୍ତୁ ତା' କଥା ମିଛ ପ୍ରମାଣିତ ହେବାରୁ ମୋ'ଠୁ ବଳି ସାରା ପୃଥିବୀରେ ଆଉ କେହି ବେଶୀ ଖୁସି ହେଇନଥିବ । ବେକୁବ୍ ଜ୍ଞାନ୍‌ଚନ୍ଦ – ଅମ୍ରିତା ନାରେ ଏମିତି ଅଲକ୍ଷଣା କଥାଟାଏ କାହିଁକି କହୁଥିଲା ? ଏଇଟା କ'ଣ ସମ୍ଭବ ଯେ ସେ ତାକୁ କୌଣସି କାରଣରୁ ମରିଯିବାକୁ ଚାହୁଁଥିଲା ଏବଂ ସେଇ ଇଚ୍ଛାକୁ ପ୍ରକାଶ କରିବାକୁ ମୋତେ ସେମିତି ମିଛ କହିଦେଇଥିଲା ? କିମ୍ବା ମୋତେ ପରୀକ୍ଷା କରିବାକୁ ସେମିତି କହିଥିଲା ?

ଜ୍ଞାନକୁ ମୁଁ ମନେ ପକାଇ ତା'ର ସେ ମିଛପାଇଁ ତା' ଜିଭକୁ ଟାଣି ଧରିବା ପରିବର୍ତ୍ତେ ତାକୁ କୁଣ୍ଢେଇପକେଇଲି । ତା' ଗାଲରେ ବୋକଦେଇ ମିଛପାଇଁ ବଧେଇଜଣେଇଲି ।

ଏସବୁ ଘଟୁଥିଲା ଯେତେବେଳେ ଅମିତା ମୋତେ ତା' ବାହୁରେ ବେଢ଼େଇ ରଖିଥିଲା । ମୋର ଅବିଶ୍ୱାସୀ ମନ ତାକୁ ପାଇ ସୁଦ୍ଧା ପାଇପାରୁନଥିଲା । ଆଚ୍ଛା, ପଇଁତ୍ରିଶ ବର୍ଷ ପରେ ଅମିତା କ'ଣ ସେମିତି ଝିଅଟିଏ ହୋଇ ରହିପାରେ ? ଏଇଟା ବୋଧେ ମୋର ଭ୍ରମ ।

ଏତିକି ଭାବିବାମାତ୍ରେ ତା' ହାତ ଯୋଡିକ ଢିଲା ହେଇ ଆସ୍ତେ ଫିଟିଗଲା ଏବଂ ସେ ମୋ' ସାମ୍ନାରେ ଠିଆହୋଇ ମୁଚ୍‌ମୁଚ୍ ହସିଲା । ଏ ତ ସେଇ ଅମିତା ! ସେଇ ଅପ୍‌ସରା ଗଢ଼ଣ, ସେଇ କେତକୀ ପାଖୁଡ଼ା ରଙ୍ଗ । ସେଇ ଲମ୍ବା ବେକ ଉପରେ ଜହ୍ନପରି ମୁହଁ । କିନ୍ତୁ...

ମୁଁ ଇତସ୍ତତଃ ହେବାର ଦେଖି ସେ ତା'ର ଦୁଇଟା ବ୍ୟାଗ୍ ହାତରେ ଧରି ପାହାଚ ଉଠିବା ଆରମ୍ଭ କରିଦେଲା । ମୁଁ ତା' ପଛେ ପଛେ ପ୍ରାୟ ବିହ୍ୱଳ ହୋଇ ଉଠିଆସିଲି ।

ଡାଇନିଂ ହଲ୍‌ର ଆଲୁଅ ଜଳୁଥିଲା ଏବଂ ସେଇଠି ବ୍ୟାଗ୍ ଥୋଇଦେଇ ସେ ଗୋଟାଏ ଚୌକିରେ ବସି ଖୁସିରେ ଗୋଡ ହଲେଇଲା ଏବଂ ପ୍ରଥମଥର ପାଇଁ ପାଟି ଫିଟେ କହିଲା – "ପାପାନେ କହାଥା କି ଆପ୍ ହମେ ଦେଖ୍‌ତେ ହିଁ ପହଚ୍ଚାନ୍ ଯାଏଁଗେ ।"

ମୁଁ ପାଦଠାରୁ ମୁଣ୍ଡଯାଏଁ ଥରିଗଲି । ମୋ' ଭିତରେ ବାହାରେ ଭୂମିକମ୍ପ ହେଉଥିଲା । ମୁଁ ତା' ଆଡକୁ ଆଙ୍ଗୁଠି ଟେକି କହିଲି – "ଇସ୍‌କେ ମାନେ, ତୁମ...ୟାନି ତୁମ୍... ବୈଶାଲୀ ହୋ... ଜ୍ଞାନ କି ଛୋଟି ଲଡକି... ତୁମ୍... ତୁମ୍ ଅମ୍ରୁ..."

ସେ ଖିଲିଖିଲି ହସି ଗଡିଗଲା । "ଅଙ୍କଲ, ଆପ୍ ତୋ' କମାଲ୍ କରତେ ହେ । ...ମେଁ ଭଲା ମମ୍ମି କୈସେ ହୋ ସକ୍‌ତି ? ମେ ଅମିତା ନହିଁ ହୁଁ ନା' । ମଗର୍ ଆପ୍‌କୋ ତୋ' ଅଚମ୍ଭା ସା ହୋ ଗୟା ନା ? ପିତାଜୀ ଭି ୟହ କହରହେଥେ କି ଆପ୍ ହମେ ପହିଲିବାର ଦେଖ୍‌କର୍ ହି ହଡବଡାଯାଏଁଗେ ।"

ଛାଡ – ସେ ତା'ପରେ ଗୋଟାଏ ମୁହୂର୍ତ୍ତରେ ଝିଅହୋଇଗଲା ଏବଂ ତା'ର ନାନା ପ୍ରକାର ଯୋଜନା କଥା କହିଚାଲିଲା । ମୁଁ ଥ' ହୋଇ ତା' ଭୃରୁ, ଦାନ୍ତ, ହସ, କପାଳ ରେଖା, ତା'ର ଗୋଲାପୀ ରଙ୍ଗର କୁର୍ତ୍ତା ସାଲଓ୍ୱାର ଦେଖି ବହୁ କଷ୍ଟରେ ଆହୁଲା ମାରି ଅତୀତର ଗହୀର ପାଣିରୁ ଉଠିଆସୁଥାଏ । ପୁଣି ଟାଣି ହୋଇ ଯାଉଥାଏ ସେ ପ୍ରବଳ ଭଉଁରି ଭିତରକୁ ।

ମୁଁ ବୈଶାଳୀକୁ ଆଦୌ ଶୁଣିପାରୁନଥାଏ । ଜଙ୍ଗଲର ସବୁ ସୁନ୍ଦର ପକ୍ଷୀ ସକାଳ ପହରଟାରେ କଳରବ କରିଉଠୁଥା'ନ୍ତି – ମଧୁର ଅସ୍ପଷ୍ଟ ଶବ୍ଦାର୍ଥବିହୀନ ସ୍ୱନଟିଏ କେବଳ । ...ମୁଁ କିଛି ବଢ଼େଇ କରି କହୁନାହିଁ – ତୁମେ ତାକୁ ଥରେ ଦେଖନ୍ତ କି ! କିନ୍ତୁ ବିଧିବିଧାନରେ ତା'ର ବୋଧେ ସମ୍ଭବ ନୁହେଁ – ଛାଡ । ଶେଷକୁ ସେ ଏକପ୍ରକାର ନିଷ୍ପତ୍ତି ନେଇ ମୋତେ କହିଲା ଯେ ଏକୋଇଶ ତାରିଖରେ ତାକୁ ନେଇ କୌଣସି ପ୍ରକାରେ ମୋତେ ହାଇଦ୍ରାବାଦ ଯିବାକୁ ପଡିବ । ତା' ବାପ ଚିଠି ଲେଖିଛି । ସେଇଠି ଆମର ସହପାଠୀ ଦୁଇଜଣଙ୍କ ସାଙ୍ଗେ ଦେଖା କରିବାକୁ ହେବ... ଇତ୍ୟାଦି...

ଇତ୍ୟାଦି ।

ମଝିରେ ଆଉ କ'ଣ ସବୁ ହେଲା ମନେନାହିଁ । ଆମେ ଟ୍ରେନ୍‌ରେ ଚଢ଼ିଲୁ ସଂଧ୍ୟାବେଳେ । ଷ୍ଟେସନ ଛାଡିବାର କିଛି ସମୟ ପର୍ଯ୍ୟନ୍ତ ଡାହାଣ ପାଖ ଆକାଶରେ ଈଷତ୍ ଆଲୁଅ କ୍ରମେ ମଳିନ ହୋଇ ଆସୁଥିଲା ।

ସେ ଛୋଟ କୁପେ ଭିତରେ ଆଉ କେହି ନଥିଲେ । ଖୁବ୍ ସହଜ ଢଙ୍ଗରେ ବୈଶାଳୀ ଗପକରୁଥିଲା । ମୋ' ଉପରକୁ ଆଉଜି ଆସୁଥିଲା ଏବଂ ମେଗାଜିନର ପୃଷ୍ଠାଗୁଡା ଫଡ ଫଡ ଓଲଟାଉଥିଲା । ମଝିରେ ମଝିରେ କହୁଥିଲା ଯେ ମୋର ଗୋଟାଏ ଫଟୋ କୁଆଡେ ତାଙ୍କ ଘରେ ସେ ପିଲାଦିନୁ ଦେଖୁଥିଲା ଏବଂ ମୋତେ 'ବେହଦ୍' ଭଲପାଉଥିଲା । ଆଉ ଶୁଣିବ – ଆଶ୍ଚର୍ଯ୍ୟ କଥା, ପିଲାଦିନେ କୁଆଡେ ତା' ମା'କୁ କହୁଥିଲା ସେ ମୋତେ ହିଁ ବାହାହବ । ପାଗ୍‌ଲୀଟା ନୁହେଁ ?

ସେ ରାତି ମୁଁ ଜମା ଶୋଇପାରିନାହିଁ । ବୈଶାଳୀ ବେଶ ହାତଗୋଡ ମେଲି ନିଶ୍ଚିନ୍ତରେ ଶୋଇଯାଇଥାଏ । ମୁଁ ହୁଙ୍କା ପରି ବସିଥାଏ କିମ୍ବା ଟହଲୁଥାଏ । ଭୟରେ ଚାହୁଁ ନଥାଏ ତା' ଆଡେ – କାରଣ ଚାହିଁବାମାତ୍ରେ ତରଳିଯାଉଥାଏ ସମୟର ବ୍ୟବଧାନ ଏବଂ ମୁହୂର୍ତ୍ତେ ମୁହୂର୍ତ୍ତେ ସେ ଅମ୍ରିତା ହୋଇଯାଉଥାଏ । ଟାଟିଲା ବଜ୍ରପରି ମୋ' ଦେହସାରା ଟଣକିଯାଉଥାଏ । ଝାଳ ଥୋପି ଆସୁଥାଏ ଭୃରୁ ଉପରୁ । ତୁମେ ଜାଣ, ମୁଁ କୌଣସି ଯୋଗୀପୁରୁଷ ନୁହେଁ । ତା'ର ପ୍ରମାଣ ତମ ପାଖରେ ଥାକ ଥାକ ହୋଇ ରହିଛି ବର୍ଷ ବର୍ଷର ଦାମ୍ପତ୍ୟ ଭିତରେ । ମୋତେ ଦୁର୍ବଳ ବୋଲି ପ୍ରମାଣ କରିବାକୁ ତୁମେ ସୁଖପାଇଛ । ସାମାନ୍ୟ ଟିକିଏ ବାସ୍ନାରେ, ଶିଲ୍‌କର ସାମାନ୍ୟ ଶବ୍ଦରେ ମୁଁ ହାରିଯାଇଛି । ତୁମକୁ ଖୁସି କରିବାକୁ ନୁହେଁ, ସତକୁସତ ହାରିଯାଇଛି ଜୁଆରରେ ବାଲିବନ୍ଧ ପରି । ତୁମର ଧାରଣା ଠିକ୍ ଯେ ଏ ପୁରୁଷଟିକୁ ଆଙ୍ଗୁଠି ଅଗରେ ନଚାଯାଇପାରେ । ମୁଁ ବି ନାଚିଛି ଖୁବ୍ – ଆମ୍ବ ବଉଳିଲାବେଳେ, କମଳା ପାଚିଲାବେଳେ, ଜହ୍ନରୁ ଝଲମଲ କୁହୁଡି ନୀରବ ଝରିଗଲାବେଳେ । ମୁଁ ଜାଣେ ଯେ ବେ ବି ମୋର ସେ ଦୁର୍ବଳତା ଉପରେ, ମୋର ପୌରୁଷ ଉପରେ ତୁମର ଆସ୍ଥା ରହିଛି – ସତ ନା ମିଛ ?

ସେ ରାତିରେ ବି ଆକାଶରେ ନାଲାଏକ ଜହ୍ନ ଉଇଁଥିଲା । ଝରକା ବାଟେ ଆଲୁଅ ପଡୁଥିଲା ବୈଶାଳୀର ବାହୁ ଉପରେ । ମହ ମହୁ ସୁବାସିତ ହୋଇଉଠୁଥିଲା ମୋର ସମଗ୍ର ଚେତନା ଅମ୍ରିତାର ସ୍ମୃତିରେ । ମୁଁ ପୁଣି ହଲଫ୍ କରି କହୁଛି ଯେ ମୁଁ ଅମ୍ରିତାକୁ କେବେହେଲେ ଛୁଇଁନାହିଁ । ଏକଦା ମୁଁ ସେଥିପାଇଁ ଗର୍ବକରୁଥିଲି । ଅନେକ ଡେରିରେ ମୋର ମନସ୍ତାପ ହେଲା ଯେ ମୁଁ ଏତିକି ବେକୁବ୍ କାହିଁକି ହେଲି ? କିନ୍ତୁ କିଛି ଲାଭ ନାହିଁ । ଟ୍ରେନ୍‌ରେ ମୋ' ସାମ୍ନାରେ ସେ ଅପରୂପା ଅପ୍ସରା ଯଦି ସତୁ ସତ ଅମ୍ରିତା ହୋଇଥାନ୍ତା, ତେବେ ବି ହୁଏତ ମୁଁ ମୋର ଉତାପରେ ହୁତ୍‌ହୁତ୍ ଜଳିଯାଇଥା'ନ୍ତି ସିନା, ତା' ଦେହରେ ଟିପ ମାରିପାରିନଥା'ନ୍ତି । ତଥାପି ମୁଁ ଗୋଟାଏ ଟଳମଳ ଲାଭାର ସମୁଦ୍ରକୁ ସମ୍ଭାଳିଥାଏ ଏବଂ ଆଖିବୁଜି ଲୁହା ଉପରେ ଲୁହା ବାଡେଇହେବାର ଶବ୍ଦକୁ ମୋ' ଭିତରେ ହିଁ ସ୍ତବ୍ଧ ହୋଇ ଶୁଣୁଥାଏ । କାକର ରାତିରେ ମୋ' ଦେହସାରା ଝାଳ ଜକେଇ ରହିଥାଏ । ମୋତେ

ଦିଶୁଥାଏ 'ଜିମ୍ନାସିଅମ୍'ର ଠିଆ-ଦର୍ପଣ । ଗ୍ରୀକ୍ ମୂର୍ତ୍ତିଭଳି ସେ ଭିତରୁ ଗଜା ନିଶ ତଳୁ ଅଳ୍ପ ହସୁଥିବା ମୋର ତରୁଣ – ରୂପ-ଝାଳ ସରସର, ମାର୍ବଲ ପରି ଚକ୍‌ଚକ୍ ଆଉ ଚିକ୍‌କଣ; ପଥର ପରି ଟାଣ ଆଉ ଗୁଳାଗୁଳା । ମୁଁ ନିଜେ ମୁଗ୍‌ଧ ହେଇ ସେ ଦର୍ପଣ ପୁରୁଷକୁ ଚାହିଁରହିଥାଏ ।

ଏତିକିବେଳେ ସେ ପ୍ରଚଣ୍ଡ ଶବ୍ଦଟାଏ ହେଲା । ମୁଁ ଛିଟିକି ଯାଇ ପଡିଲି ବୈଶାଳୀ ଉପରେ । ମୁହୂର୍ତ୍ତକରେ କଞ୍ଚା ମାଟିର ବାଗୁଡି ପରି ପେଶିହୋଇଗଲା ଲୁହାର ଡବାଗୁଡାକ । ରକ୍ତ-ମାଂସ-ମେଦ ତା' ସହିତ ଏକାକାର ହୋଇଗଲା । ଖଣ୍ଡ ଖଣ୍ଡ ହୋଇଗଲା ଦେହ, ପଞ୍ଜରା । ମୁଁ କିନ୍ତୁ ଅବଶିଷ୍ଟ ଅଙ୍ଗରେ ବୈଶାଳୀକୁ ଆବୋରି ରଖିଥିଲି । ସେ ରେଳ ଦୁର୍ଘଟଣାରେ ଆମ ଉଭୟଙ୍କର ମୃତ୍ୟୁ ହୋଇଗଲା । ମୋ' ଦୃଷ୍ଟିରୁ ଚଳଚ୍ଚିତ୍ର ପରି ଏ ଦୃଶ୍ୟ ଓହରିଗଲା । ମୁଁ ସେ ପାହାନ୍ତା ପହରରେ ନିଜକୁ ନିଜେ ପୁଣି ଆବିଷ୍କାର କଲି । ଖାଲି ଘରେ କେହି କୁଆଡେ ନଥିଲେ । ଦୂରରୁ ପକ୍ଷୀ ଡାକ ଶୁଭୁଥିଲା । ତଥାପି ମୋ' ଆଖିରୁ ସେ ଭୟାବହ ଦୃଶ୍ୟର ବସ୍ଫୋରଣ ଲିଭିନଥିଲା । ବୁକୁ ଭିତରୁ ତଥାପି ହାତୁଡିର ଶବ୍ଦ ଶୁଭୁଥିଲା ।

ଏତିକିବେଳେ ବାହାର ଘଣ୍ଟି ବାଜିବାରୁ ମୁଁ ଚମକି ଡେଇଁପଡିଲି । ମୋର ହାତ ଗୋଡ ଫଡ୍ ଫଡ୍ ଥରୁଥିଲା କବାଟ ଫିଟେଇଲାବେଳେ । ବାସନ ମାଜିବାକୁ ରତ୍ନାମା' ଆସିଥିଲା । ତାକୁ ବାଟ ଛାଡିଦେଇ ମୁଁ ଆଡହୋଇଗଲି ଏବଂ ଆସ୍ତେ ଶୂନ୍ ମାରିଲା ପରି କାନ୍ଥକୁ ଆଉଜିଗଲି ।

ତୁମେ ଏ ଲେଖା ପଢିଲାବେଳକୁ ଘଟଣା ଘଟିସାରିଥିବ । ଏଇଟା ହେବ ଏକୋଇଶ ରାତିର ଘଟଣା – ଆଜଠୁ ଠିକ୍ ପନ୍ଦର ଦିନ । ତୁମେ ଆସି ପହଞ୍ଚିବ ପଚିଶ୍‌ରେ । ହଉ କ'ଣ କରାଯାଏ ? ଏହା ହେବ ହିଁ ହେବ । ୟା'ର ଆଉ ତିଳାର୍ଦ୍ଧେ ପରିବର୍ତ୍ତନ ହୋଇପାରିବ ନାହିଁ । ଅନ୍ୟ ସବୁଥର ପରି ତୁମେ ଏଠି ଥିଲେ ଆଦୌ ମାନିନଥା'ନ୍ତ – ପ୍ରମାଣ ଲୋଡିଥାନ୍ତ । ଏଠୁ ପଳେଇବାକୁ ଉପାୟ ଚିନ୍ତା କରିଥାନ୍ତ; କିନ୍ତୁ ସବୁ ଛଟପଟ ସତ୍ତ୍ୱେ ଅଦୃଶ୍ୟ ଲୁହାଗୁଳା ଉପରେ ଅନିବାର୍ଯ୍ୟ ଚକଗୁଡିକ ଠିକ୍ ଗଡିଯାଇଥା'ନ୍ତେ ।

ସେଇ କାରଣରୁ ମୁଁ ଆଜିଠୁ ତୁମକୁ ଫୋନ୍ କରି କହିପାରୁନାହିଁ । ଟିକଟ କରି ପୁଅ ପାଖକୁ ପଳେଇଯାଇପାରୁନାହିଁ । ଝିଅକୁ ବି ଖବର ଦେଇପାରୁନାହିଁ । ତୁମେମାନେ ମୋତେ କସ୍ମିନ୍‌କାଳେ ବିଶ୍ୱାସ କରିନାହଁ । କିନ୍ତୁ ଏ ଖବର ପାଇଗଲେ ହୁଏତ ମୋର ପାଗଳାମୀ ପାଇଁ ହସିପାର କିମ୍ବା ସୃଷ୍ଟି ପ୍ରଳୟ କରିପକେଇବାକୁ ତମ୍ଫୁତୋଫାନି କରିପାର । ବାପାଙ୍କୁ ବଞ୍ଚେଇବା ପାଇଁ ସବୁ ହୁଲ୍‌ସ୍ଥୁଲ୍ କରିପକେଇପାର । ମୁଁ କିନ୍ତୁ ଏ ସ୍ଥିର ରେଖାଗୁଡିକୁ ଚିହ୍ନେ । ଏମାନେ ଘୁଞ୍ଚିବେ ନାହିଁ, ଘୁଞ୍ଚିପାରିବେ ନାହିଁ । କାରଣ ଏମାନେ ତାରା ସୂର୍ଯ୍ୟ ଚନ୍ଦ୍ର ସାଙ୍ଗରେ ଗୁନ୍ଥି ହେଇ ରହିଛନ୍ତି ।

ଛାଡ । ତୁମେ ପଢିଲାବେଳକୁ ସବୁ ସରିଯାଇଥିବ । ମୋର ସଂକ୍ରାନ୍ତରେ ଦୁଇଟି ଅନୁରୋଧ –

ପ୍ରଥମ ହେଲା ଯେ ଏମିତି ଗପଭଳି ତୁମକୁ କାହିଁକି ଚିଠିଟାଏ ଲେଖିଲି ସେଥିପାଇଁ କିଛି ମନେକରିବନାହିଁ । ମୋର ଧାରଣା ତୁମେ ଗପ ପଢିବାକୁ ଭଲପାଅ, ଏଣୁ ତୁମକୁ ମୋର ଶେଷ

କଥାଟା ସେଇ ଢଙ୍ଗରେ ଲେଖିଲେ ହୁଏତ ତୁମର ରୋଚକ ହେବ । ଅନ୍ତତଃ ପ୍ରମାଣଟିଏ ମିଳିବ ଯେ' ତୁମକୁ ଖୁସି କରିବାକୁ ମୁଁ ଚେଷ୍ଟା କରିଚି – ପାରିଛି କି ନାହିଁ କେଜାଣି ? ମୋତେ ଲାଗିଛି ଯେ ଖୁସି ହେବା ନହେବା ତୁମ ମର୍ଜି ଉପର କଥା । ଯୋଡିଏ ଆତ୍ମା ପରସ୍ପରକୁ ଚିହ୍ନିବା ପାଇଁ କେତେ ଯେ ସମୟ ନିଅନ୍ତି ସତେ ! ଚିହ୍ନିବା କ'ଣ ଏତେ ସହଜ କଥା ପଡିଛି ? ମୁଁ ଏଯାଏଁ ବୁଝିନାହିଁ । ଚିହ୍ନିଲେ ଭଲପାଇହୁଏନା, ଭଲ ପାଇଲେ ଚିହ୍ନିହୁଏ ନା – ଉଭୟ ଏକତ୍ର ହୁଏ । ଅନେକ ସମୟରେ ତୁମେ ମୋତେ ବିକ୍ଷତର ପକ୍ଷୀ ପରି ଦେଖାଯାଅ । କେଜାଣି ତୁମେ ଅବା ବୁଝିଥିବ !

ଦ୍ୱିତୀୟ ଅନୁରୋଧ ହେଲା ଯେ, କାଳେ ଯଦି ତୁମେ ଦୁର୍ଘଟଣା ପାଖକୁ ଯାଅ, କାଳେ ସେ ଡବାର ହତ୍ୟାକାରୀ ଲୁହାଫଳାମାନଙ୍କ ଭିତରେ ସେ ମାଂସପିଣ୍ଡକୁ ଆବିଷ୍କାର କର, ଯଦି ତୁମେ ହାତରେ ବୋତାମ ଲଗାଇଥିବା ଜାମାକୁ ଚିହ୍ନଟ କର, ପରମାଂସ ଭିତରେ ପରମାଂସର ସେ ଛନ୍ଦ ଦେଖି ଆଉ ଯେମିତି କିଛି ଭାବିନଯାଅ !

ତୁମ ପାଖରେ ମୋର ଦୁର୍ବଳତାର ସୀମା ନାହିଁ । ତେବେ ବିଶ୍ୱାସ କର ମୁଁ ଭଲ ମଣିଷଟିଏ । ପ୍ରମାଣ ଖୋଜ ନାହିଁ । ସବୁ କଥାରେ କ'ଣ ପ୍ରମାଣ ଦିଆଯାଏ ନା' ଦେବା ଉଚିତ !



# ଫଳିବାର ନାହିଁ ମୋର ଆଶା

"ସଞ୍ଜବେଳେ ଗଛଟାକୁ ମାର୍ ନାଇଁ ବାବୁ! ସେପାଖ ଗଛଟା ରାତିସାରା ଟାକୁ ଝୁରିବ। ଦିନବେଳେ ପାଣିଖରା ଖାଇଲାବେଳେ ମାରିଦେଲେ ଜାଣିପାରିବ ନାଇଁ।"

ସଜନାତାଙ୍କ ପରି ଡେଙ୍ଗୀ ନିଷ୍ଫଳା ଅମୃତଭଣ୍ଡା ଗଛଟାକୁ ମୁଁ ହାଣିବାକୁ ଗଲାବେଳେ ପାଣିକଳମୂଳରୁ ସେ ବାରଣକଲା। ମୋ' ହାତର କାତି ନଇଁଗଲା। ହାଣକୁ ଅପେକ୍ଷା କରିଥିବା ଗଛଟାକୁ ମୁଁ ବାଁ ହାତରେ ଆଉଁସିଦେଇ ଆଡ ହୋଇଗଲି। ମୋ' ଭିତରେ ଆତତାୟୀର ସ୍ୱର ଦୂରକୁ ଦୂରକୁ ଘୁଞ୍ଚିଗଲା... ତଥାପି ଶୁଭୁଥିଲା, ବେକାର ଗୁଡାଏ ନିଷ୍ଫଳ ଗଛକୁ ଏଠି ରଖିବାର ପ୍ରୟୋଜନ କ'ଣ? ଅନ୍ୟ ଗଛର ଆହାର ଊଣା ହୋଇଯାଉଛି, ଆୟୁଷ ଊଣା ହୋଇଯାଉଛି। ବହୁ ଯତ୍ନରେ ବଢେଇ ଆଣିଥିବା ଗଛ ଯଦି ଧୋକା ଦିଏ, ତାକୁ ଦୟା ମାୟା ପୁଣି କ'ଣ? ପଡିଶାଘରେ ତା' ସାଙ୍ଗରେ ଲାଗିଥିବା ଗଛରୁ ସେମାନେ ପାଚିଲା ଫଳ ଖାଇ ବାଣ୍ଟିଲେଣି... ଶାଲା ବାଂଝୁଣିଖତା, ଡେଙ୍ଗୀ ସୋତପି ନାଲାଏକ ଆଜି ତତେ ଦଉଚି ସଫା କରି! ମୁଁ ଆସ୍ତେ ସେ ଫଣଫଣ ଉଠୁରି ଆସୁଥିବା ମୁହଁ ଆଉ ଆଖି ଉପରେ ଫୁଙ୍କିଦେଲି। କହିଲି, ...ହ ଅ ଅ, କୋଉ ଅନ୍ୟାୟଟା ହୋଇଗଲା ନଫଳିଲାରୁ? କେମିତି ପତ୍ର ମେଲିଚି ଦେଖୁନୁ! ଗଛଟା ସୁନ୍ଦର ଦିଶୁଚି ନା ନାଇଁ? ଟଙ୍କା ଦି'ଟା ଫୋପାଡିଦେଲେ କଥାରୁ ପରି ପାଚିଲା ଭଣ୍ଡାଟାଏ ମିଳିଯିବ। କିଏ ବା ଅଛି ଖାଇବାକୁ...?

ମୋ ବୁକୁରୁ ଗୋଟାଏ ହୁଳା ଓହ୍ଲେଇଗଲା ବାଁ ଗୋଡ ଦେଇ। ଝିମି ଖାଇଗଲା ଅଣ୍ଟାଠଉଁ ତଳକୁ। ଏମିତି ଗୋଟାଏ ବଜ୍ର ମାଡରେ ବୋଧହୁଏ କୋଉଦିନ ପ୍ରାଣ ଗ୍ଳଲିଯିବ। ମୁଁ 'ସୁମି'କୁ ମନେପକେଇଲେ ହିଁ ଏମିତି ହୁଳାଟାଏ ଖସିଯାଏ।

"ମୋ ଦେହ ମୁଣ୍ଡକୁ ଦିଅଁ ଚଢିଲା ପରେ ମୁଁ ପୁଣି ସେ ମୂଳକୁ ଯାଇ ସେ ଡେଙ୍ଗୀ ଭଣ୍ଡାଗଛଟିକୁ ଆସ୍ତେ କୁଣ୍ଢେଇଲି। ଆଖି ବୁଜି ଆଉଁସିଲି। ମଣିଷ ଦେହଭଳି ଚିକ୍କଣ ଲାଗିଲା ହାତକୁ। ମନେହେଲା ସେ ନିଶ୍ୱାସ ମାରୁଛି। ସକ୍‌ସକ୍ କାନ୍ଦୁଚି ନିରବରେ। 'ମୋର ଫଳ ନହବାକୁ

ମୁଁ କ'ଣ ଚାହୁଁଥିଲି ? ଯଦି ନଫଳିଲା, ମୁଁ ଅବା କ'ଣ କରିପାରିବି ? ପ୍ରାଣ ହାରିଦେବି ? ...ମତେ ବରଂ ତମେ ହାଣିଦେଇଥିଲେ ଭଲ ହୋଇଥାନ୍ତା । ତମ ହାତରେ ଲଗେଇଥିଲ, ପାଳିଥିଲ, ସେଇ ହାତରେ ହାଣିଦେଇଥାନ୍ତ । ...ହେଇ ମୋ' ପାଖରେ 'ଗୁମି' ଠିଆହେଇଚି । ଆମେ ହାତ ଛନ୍ଦାଛନ୍ଦି ହେଇ ଠିଆ ହେଇଛୁ । ତାକୁ ବେଢ଼ି ରହିଛନ୍ତି ପୁଅଝିଅମାନେ, ଅଥଚ ମୋ' ଭାଗ୍ୟକୁ ଏଇଆ । ମୋତେ ବରଂ ହାଣିଦିଅ । ମୁଁ ମରିଯାଏ । ଏମିତି ନିଷ୍ଫଳ ବଞ୍ଚି ଲାଭ କ'ଣ ?"

...'ନା ନା, ସୁମି, ତୁ ସେମିତି କହନା ।' ...ମୁଁ ହାତ ବୁଲେଇ ଆଣିଲାବେଳକୁ ଭଣ୍ଡାଗଛର ପତରଝଡା ଚିହ୍ନରେ ଲାଗି ଅଟକିଗଲା । ମୁଁ ଆଖି ଫିଟେଇ ଚାହିଁଲି । ଗଛଟାକୁ ଅଭୟ ଦେଲାପରି ଥାପୁଡିଦେଲି । ଧିସି ହେଲାପରି ସେଇଠୁ ଉଠି ଆସିଲି, ଉପର ପିଣ୍ଡାକୁ । ବାଟ ଦିଶୁ ନଥିଲା । ଆଜିକାଲି ଏମିତି ଛୋଟ କଥାମାନଙ୍କରେ ଆଖି ଜକେଇଯାଉଛି କାହିଁକି ? ବୟସ ହେଇଗଲେ ବୋଧେ ସମସ୍ତଙ୍କର ଏମିତି ହେଉଥିବ ।

"ଗଛଟାକେ ମୁଇଁ ସକାଳୁ ମାରିଦେବି ?" କହିଲା 'ସୁଲ'ର ଆଈ । ସେ ଘରକାମ ସାରି ପାଇପ୍‌ମୂଳେ ହାତଗୋଡ ଧୋଉଥିଲା ।

"ନାହିଁ, ସେ ଗଛକୁ କେହି ମାରିବେ ନାହିଁ ।"

ହି, ହି, ହି... ହସିଲା ବୁଢ଼ୀ । ପାଇପ୍‌ରୁ ପାଣି ଝରିଲା ପରି ସେ ଆଦିବାସୀଆ ହସ । ହସରେ କହୁଥିଲା ସତେ ବା... 'ମୁଇଁ ଜାଣିଚି – ତୁ କେବେ ସେ ଗଛଟାକେ ମାରି ପାର୍‌ବୁ ନାଇଁ । ତତେ ଡର୍ ଲାଗୁଚି, ସେ ଗଛ ରକତ୍ ଝରେଇବି ବଲି...'

ପାଦରୁ ବାଲି ଝାଡି ସେ ବଗୀଚ୍‌ର କବାଟ ଫିଟେଇ ଧୀରେ ଧୀରେ ଚାଲିଗଲା । କବାଟ ବନ୍ଦ ନହେଉଣୁ ପଶିଆସିଲା ସୁମି । ଛତା, ବେଗ୍, କାମରୁ ଫେରିଥିବା କ୍ଳାନ୍ତ ମୁହଁ, ବାପକୁ ଦେଖି ଖୁସିହେଉଥିବା ଧୋବ ଫରଫର ହସ ।

"ଆଜି ଏତେ ଡେରି କରିଦେଲୁ ଯେ ?"

"ନାଇଁ ତ ବାପା, ଏଇ ଜମା ପାଞ୍ଚଟା ପଇଁଚାଳିଶ ତ ହେଇଚି ।"

"ଓ, ତା'ହେଲେ ଏଇ ମେଘପାଇଁ ରାତି ମାଡିଆସିଲା ପରି ଲାଗୁଚି ।"

ମୁଁ ସୁମି ପିଠିରେ ହାତ ଆଉଁସି । ତା'ର ପଖା ହାଡଗୁଡାକ ତ ଏମିତି ବାରି ହଉନଥିଲା । ଭଣ୍ଡାଗଛରୁ ପତ୍ର ଝଡିଗଲେ ଗୋଟାଏ ଅସମାନ ଦାଗଭଳି ଲାଗିଲା ମତେ । ...ଖୁବ୍ ପାତଳୀ ଡେଙ୍ଗୀ ଝିଅଟା ନୁହେଁ କି ଆମ ସୁମି... ।

ଆମେ ଉପରକୁ ସାଙ୍ଗ ହେଇ ପାହାଚ ଉଠି ଗଲୁ । ଛତା ବସ୍ତାନି ଥୋଇ ସୁମି ବାଥ୍‌ରୁମ୍‌କୁ ଗଲା ମୁହଁ ହାତ ଧୋଇବାକୁ ।

ମୁଁ ଡାକିଲି ତା' ମା'କୁ – "ଆହେ ଶୁଣୁଚ, ସୁମି ଆସିଲାଣି ।"

– "ମୁଁ ଜାଣିଚି ।"

ଓଃ, ଏ ମାଇକିନିଆଟା ଆବେଗ କ'ଣ ଜାଣିଲା ନାଇଁ । ଯେତେବେଳେ ଶୁଣ ଖାଲି

ଏମିତି ହାଣିଲାପରି କଥା । କ'ଣ କରିବ ମଣିଷ ଯା'କୁ ନେଇ ? ଯାଃ ଶଳା, ଭାଗ୍ୟ ଖରାପ ଥିଲେ ଏଇଆ ହୁଏ । ଏଥିରୁ ଗୋଟେ କାଠଘଣ୍ଟା ବେକରେ ଓହଳେଇ ଆସି ଦିହକ ବିତିଗଲା ।

ମୁଁ ବିରକ୍ତ ହେଇ ବାଲ୍‌କନିଆଡେ ବାହାରିଯାଉଥିଲି । ଫେରି କ'ଣ ଭାବି ପଶିଗଲି ରୋଷେଇଘରକୁ ।

ଆଖି ଟୁମା ଟୁମା କରି ତଳକୁ ଆଙ୍ଗୁଠିରେ ଚିରୁଥିଲେ ସେ । ବହୁତ ବେଳୁ ବୋଧେ କାନ୍ଦୁଥିଲେ । ମୁଁ ପିଠିରେ ହାତ ରଖିଲି । ସେ ଉପରକୁ ଚାହିଁଲେ ନାହିଁ କି କିଛି କହିଲେ ନାହିଁ ।

ଯାତନା ଏମିତି ଜୁଆର ତୋଳିଲାବେଳେ ମୁଁ ଆଡହୋଇଯାଏ ।

ସୁମି ଆସିଲା । ସେ ମା' ପାଖରେ ଚୁପ୍‌ଚାପ୍ ବସିଲା । ହୁଏତ ମୋ' ଅପେକ୍ଷା ସେ କିଛି ଅଧିକ ବୁଝିପାରୁଥିଲା । ହଜିଲା ହଜିଲା ଦୃଷ୍ଟିରେ ଚାହିଁରହିଲା କୁଆଡେ କେଜାଣି ।

ମୁଁ ଚାଲିଗଲି ବୈଠକଘରକୁ । ଏମିତି ଆବୁରୁଜାବୁରୁ ବହି, ଏଣୁତେଣୁ ଖବରକାଗଜ, ଉଦାସ ଉଦାସ କିଛି ଆସବାବପତ୍ର ।

ସୁମି ବିଭାହେବାର ଦଶବର୍ଷ ହେଇଗଲା । ଜ୍ୱାଇଁଟା ବଢିଆ ପିଲା । ଏବେ ଦୁଇଜଣ ମିଶି ମାସକୁ ସାତ-ଆଠ ହଜାର ଟଙ୍କା ଦରମା ପାଆନ୍ତି । ବାପାମା'ଙ୍କ ଗୋଟିଏ ପୁଅ । ଗାଁରେ କୋଠାବାଡି, ପୋଖରୀ, ନଡିଆଗଛ । ତେବେ କ'ଣ କରାଯାଏ – ସେ କଥାକୁ ତ କାହାରି ଆୟତ୍ତ ନାହିଁ ?

ବର୍ଷେ ହେଲା 'ସୁମି' ଏଠିକି ବଦଳି ମାଗି ଚାଲିଆସିଚି । ଜ୍ୱାଇଁ ଧାନବାଦ୍‌ରେ । ବର୍ଷେ ହେଲା ସେମାନଙ୍କର ଦେଖାସାକ୍ଷାତ୍ ନାହିଁ । ବର୍ଷେହେଲା ଚିଠିପତ୍ର କ'ଣ ଆସିଥିବ କେଜାଣି... । 'ସୁମି' ମୁଣ୍ଡରେ ଏ ଅବୟସରୁ ଅଧେ ବାଳ ପାଚିଗଲାଣି ବୋଲି ତା' ମା' କହୁଥିଲା ସେଦିନ । ସେ ନିଜର ବି ।ଉ କିଛି ଯତ୍ନ ନେଉନାହିଁ ।

ରାତି ନିଃଶବ୍ଦରେ ଟାଣି ନଉଥିଲା ଗହୀରକୁ । 'ସୁଲ'ର ଆଈ କହୁଥିଲା ରାତିରେ କୁଆଡେ ଗଛ ଗଛକୁ ଝୁରିଥା'ନ୍ତି । ରାତିରେ କୁଆଡେ ଝୁରିବାକୁ ସମୟ ମିଳେ । ଏକୁଟିଆ ପାଣି ପବନ ବତାସି ପାରିହୋଇଯାଏ, ସାଇପଡିଶା କେହି ଜାଣି ପାରନ୍ତିନାହିଁ । ପାଖ ବଖରାରେ ଘୁଙ୍ଗୁଡି ମାରୁଥିବା ମା' ବାପ ବି ନୁହେଁ ।

ସେଦିନ ସୁଲର ଆଈ ବଗିଚାରେ ମକା ମଞ୍ଜି ପୋତିଲାବେଳେ ତା' କଥା କହୁଥିଲା ।

– ଆସାମ ଚା ବାଗାନ୍ କଥା – ଖୁବ୍ ପଇସା ଭୋଗଭାଗ୍ୟର କଥା । ତା'ର ଗୋଟାକ ପରେ ଗୋଟାଏ, ଏମିତି ତିନିଟା ମର୍ଦ । ସେଥିରୁ ଶେଷଟାର ପିଲାଝିଲା ହେଲା ନାହିଁ । ବୁଢୀକୁ ଦୋଷ ଦେଇ ପାରିଲାନାହିଁ । ବୁଢୀର ଆଗ ଗେରସ୍ତମାନେ ତାକୁ ପାଞ୍ଚଟା ପିଲା ଦେଇଥିଲେ । ଶେଷଟା ଟୋକାଳିଆ ଛୁଆଟା, ବୁଢୀଠଉଁ କେତେ ସାନ । ବୁଢୀ ତାକୁ ହିଁ ବେଶି ଭଲପାଉଥିଲା ନା କ'ଣ । ତାକୁ ସବୁଦିନ କୁକୁଡା ରାନ୍ଧି ଦଉଥିଲା । ନିଶା ଖାଇଲେ କଳିକରୁଥିଲା । ...ସେ ଦେଖିବାକୁ ଭାରି ସୁନ୍ଦର । ସେମିତି ମଣିଷଟେ ଏ ସହରରେ କୋଉଠି ଦେଖିନାହିଁ ବୋଲି ବୁଢୀ ଭାରି ଜୋର୍

ଦେଇ କହେ । ହେଲେ ସେ ମର୍ଦଟା ଖାଲି ନିଶା ଖାଇଲା । ଯେତେ କହିଲେ ମାନିଲା ନାହିଁ । ଖାଇ ଖାଇ ମରିଗଲା... ହେ କାହିଁ କୁଡ଼ିଏ ବର୍ଷ ତଳେ...

ଇସ୍ – ଅପାର ସଂସାର ପାରି ହୋଇ ଆସିଥିଲା ବୁଢ଼ୀ । ପାଞ୍ଚଟା କିଏ କୋଉଠି ମେହେନତ୍ କରି ପେଟ ପୋଷିଲେ । ବଡଝିଅଟା ପାଖ ଛାଡିଲା ନାଇଁ । ସେ ବି ପହିଲା ମର୍ଦକୁ ଦି'ଟା ପିଲା ଦେଇ ଝିଅଟାକୁ ନେଇ ଚାଲିଆସିଲା । ସେଇ ଏଇ 'ସୁଲ' । ଆଈ ପାଖରେ ଥାଏ...

ରାତି ଏମିତି ମଡେଇ ହେଇ ଆସୁଥାଏ । ଆର ବଖରାରେ ମା' ଝିଅ ଏକାଠି ଶୋଇଛନ୍ତି । ହୁଏତ ଗୋଟିଏ ତକିଆର ଏକଡ ସେକଡକୁ ମୁହଁ କରି ଅଲଗା ଅଲଗା କାନ୍ଦୁଛନ୍ତି । ଝୁରୁଛନ୍ତି ରାତିସାରା, ଗହୀର ଅନ୍ଧାର ଭିତରେ ।

ତା' ବାଲିମାଟି ବଖରାରେ ଛିଣ୍ଡା ସଅପ ଉପରେ ବୁଢ଼ୀ ବୋଧେ ତା' ନାତୁଣୀକୁ କୋଡରେ ଧରି ଶୋଇଯାଇଛି । ଦିନସାରା ପରିଶ୍ରମ ପରେ ପଡିଯାଇଥିବ ଅଚେତ ହେଲାପରି । ନହେଲେ କେଜାଣି ହୁଏତ ସେ ବି ନଶୋଇ ଝୁରୁଥିବ କେତେ କଥା । ତା' ଝିଅ ଏଥର ନୂଆ ମର୍ଦ ସାଥିରେ ଯାଇଚି ଫୁଲବାଣୀ । ସେମାନଙ୍କର ପୁଅକୁ ବର୍ଷେ ପୂରିଗଲାଣି । ଏଇ ଠିଆଠିଆ ହଉଚି । ମୁହଁକୁ ଚାହିଁ ହସୁଚି, ତାଳି ମାରୁଚି । ପାଟିରୁ ଅନବରତ ଲାଳଗଡଉଚି । ତା' ବାପ ତାକୁ ଗୁଡାଏ କାଚମାଳି, ଗୁଞ୍ଜମାଳି ପିନ୍ଧେଇଚି । କୁଞ୍ଚ କୁଞ୍ଚ ବାଳରେ ବେଣୀ ପକେଇ ଜୁଡା ବାନ୍ଧିଚି । ଭାରି ହସକୁରା ପିଲା । ତା' ତା ଦା ଦା କହିଲାଣି । ଚିହ୍ନା ଅଚିହ୍ନା ବାରିଲାଣି ।

ଏ ଜ୍ୱାଇଁଟା ବି ମଦୁଆ । ବୁଢ଼ୀ ସେଥିପାଇଁ ତାକୁ ଦିନେ ଠେଙ୍ଗାରେ ପିଟିବାକୁ ବସିଥିଲା । ତା' ଝିଅ ଆସି ମଝିରେ ଠିଆହୋଇଗଲା । ଯା, ବେକୁବ୍ ନାଲାଏକ୍ ଝିଅ, ତତେ କ'ଣ ମର୍ଦ ଅଭାବ ହୋଇଥିଲେ ? ବୁଢ଼ୀ କହେ ତା' ଝିଅ ଯମୁନା ଭାରି ସୁନ୍ଦର । ଖୁବ୍ ଖଟିପାରେ । ହେଲେ ଭାରି ମନମୋଟୀ । ତାକୁ ବୁଢ଼ୀ କେବେ କାମକୁ ପଠେଇପାରେ ନାହିଁ କି ଗଲେ ରୋକିପାରେନାଇଁ ।

ମୁଁ ତା'ର ସେ ଜ୍ୱାଇଁଟାକୁ ଦେଖିଛି । ଦିନେ ସଞ୍ଜବେଳେ ଯମୁନାକୁ ଖୋଜି ଆସିଥିଲା । ମତେ ଦେଖି ଜୁହାରହେଲା ।

"କିରେ ଭଲଅଛୁ ? କ'ଣ କମଧନ୍ଦା କରୁଚୁ ନା ନାଇଁ ?"

ଅଲାଜୁକ ହସ ଭିତରେ ସେ କହିଲା – ନାଇଁ, ବାହାର କାମକୁ ମୁଁ ପାରେନାଇଁ । ଯମୁନା କାମକୁ ଗଲେ ଘର ସମ୍ଭାଳୁଚି ଆଉ ତା'ର ପିଲାକୁ ଜଗୁଚି ।

ମାଇଚିଆଟା ! ମୁଁ ସାମାନ୍ୟ ଚିଡିଗଲି । ଆବେ ତୁ କାମକୁ ଗଲେ ସେ ସିନା ଘର ସମ୍ଭାଳନ୍ତା ! ତୁ ଅଣ୍ଡିରାଟାଏ ହେଇ ଆଉ କ'ଣ ଅଧିକା କଲୁ ?

ସେ ପାଟିରେ ହାତ ରଖି କୁର୍‌କୁର୍ ହସିଲା । ତା'ର ସେ ଝୁମ୍ପୁରା ବାଳ, କଳା ଭ୍ରୁଲତା ତଳୁ ମୁଚ୍ ମୁଚ୍ ଅନେଇଲା ଦୁଷ୍ଟାମିର ହସ । ବୁଲିପଡିଲା ବେଳକୁ କହିଲା, "ଯମୁନାର ଆଉ ଗୋଟେ ପିଲା ହବ ଆଜ୍ଞା !"

ମୁଁ କାଳେ ଖପା ହେଇ ତା' ଉପରକୁ ଝାମ୍ପିପଡିବି ଏଭଳି ଅଭିନୟ କରି ସେ ଘୁଞ୍ଚିଗଲା ।

ତା'ପରେ ଟାଉ ଟାଉ ଚାଲିଗଲା ଯମୁନାର ମଜୁରୀ ପଇସାରେ ନିଶା ଖାଇବା ପାଇଁ କିନ୍ତୁ... ଜାନୁଆର କାହାଁକା !

ମୁଁ ରାଗରେ ହାତ ମୁଠା ମୁଠା କରିପକେଇଲି, ଆଖି ଫିଟିଗଲା । ନିଃଶବ୍ଦ ରାତି ଘେରି ରହିଥିଲା ଚାରିଆଡୁ । ପାଖ ଟିପଏରୁ ପାଣି ମନ୍ଦେ ନେଇ ପିଇଲି । କଡ ବଦଳେଇ ଶୋଇବାକୁ ଚାହିଁଲି । ଇଷ୍ଟମନ୍ତ୍ର ଜପିଲି । ମୋ' ଅଜାଣତରେ କେତେବେଳେ ସୁମି କଥା ଆସି ଯୋଡିହୋଇଗଲା । ...ସୁମି କ'ଣ ଚାହିଁନାଇଁ ପିଲାଟିଏ କୋଡରେ ଧରିବାକୁ ? ତା' ସ୍ୱାମୀର ମର୍ଦପଣକୁ କ'ଣ ପାରୁପର୍ଯ୍ୟନ୍ତ ପାଳିନାହିଁ ? ସହି ନାହିଁ ଦଶବର୍ଷ ହେଲା ? କିନ୍ତୁ କାହିଁକି ? ମୁଁ ପୁଣି ତକିଆ ଉପରେ ଘୁସିଟାଏ ମାରି ଝାଳେଇଗଲି । ପିଲାଟାଏ ନହେଲେ ନାଇଁ, କ'ଣ ଭାସିଗଲା ସେଇଠୁ ? ଦୁହେଁ ବେଶ୍ ଆରାମରେ ଅଏସ୍ କରନ୍ତୁ । ନା ଜଞ୍ଜାଳ, ନା ଝାମେଲା । ପାଟିତୁଣ୍ଡ ନାଇଁ, ଭଙ୍ଗାରୁଜା ନାହିଁ, ଧୂଳିମଳି ନାହିଁ । ଇଚ୍ଛା ହେଲେ ଆଜି ଏଇଠି ତ କାଲି ଚାଲିଗଲ କାଶ୍ମୀର । ବୁଲିଲ ମନଇଚ୍ଛା ! କେହି ବାନ୍ଧି ରଖିବାକୁ ନାଇଁ – ଅଥଚ ତାଙ୍କ ଦୁଃଖ କାହିଁ କେତେ ଗଭୀରରେ ମନ୍ଥିହଉଚି ! ଜୀବନ ଅସଫଳ ହେଲା ବୋଲି ସେମାନେ ଝାଉଁଳିଯାଉଚନ୍ତି ।

...ଆରେ ମାରୋ ଗୋଲି – ମୁଁ ତୁମକୁ ପିଲାଟିଏ ଆଣିଦେବି, ଯଦି ତୁମେ ବାପ ମା'ର ସୁଆଙ୍ଗ କରିବାକୁ ଚାହଁ । ଏଇ ଯମୁନାକୁ କହିଲେ ସେ ପିଲାଟାଏ ମାଗଣା ଦେଇଦେବ । ତା'ର କ'ଣ ଅଛି ? ଆସନ୍ତା ଶୀତକୁ ସେ ପୁଣି ପିଲା ଫଳେଇ ନେଇପାରିବ ।

...ପାଖ ବଖରାରୁ କିଏ ସେ ଉଠିଲା ? ସୁମି ମା' କି ? ଧୁତ୍, ସେଇଟା ଢେଙ୍କି ଶୋଇଲା ପରି ପଡିଥିବ – ସେ କି ଉଠେ ! ତା'ହେଲେ ସୁମି ! ସେ ଚୁପ୍ ଚୁପ୍ ବାଥରୁମ୍ ଆଡେ ଚାଲିଗଲା । ତା'ର ଉଶ୍ୱାସ ପାଦଶବ୍ଦରୁ ମୁଁ ଜାଣିଗଲି । ତା'ପରେ ସେ ଅନେକ ସମୟ ଯାଏ ଫେରିଲା ନାଇଁ । ଗୋଟାଏ ସିଚ୍ ଟିପିବାର ଶବ୍ଦ ବୋଧେ ଶୁଭିଲା । ବୈଠକଘରେ ଆଲୁଅ ଜଳିଲା ନା କ'ଣ ! ଏତେ ରାତିରେ ସୁମି କ'ଣ କରୁଚି ! ମୁଁ ହାତ ବଢେଇ ଘଣ୍ଟାକୁ ଅନେଇଲି । ଗୋଟାଏ ପଇଁଚାଳିଶ । ଇସ୍ ! ଏତେ ରାତି ଅଛି !

ସୁମି ବୋଧେ ନିଦ ନଲାଗିବାରୁ କ'ଣ ବହିଟାଏ ଧରି ପଢିବାକୁ ବସିଚି । ବେଶ୍ ଭଲକଥା । ...ନହେଲେ ବୋଧେ ଚୁପ୍‌ଚାପ୍ ଚୌକିରେ ବସି ଆଖିବୁଜି କାନ୍ଦୁଚି । ଧୁତ୍, ନିହାତି ବେକୁବ୍ କଥା । କାନ୍ଦିବ କାହିଁକି – ତା'ର କ'ଣ ହେଇଚି କି ? ବୋଧେ ସେ ତା' ସ୍ୱାମୀକୁ ଝୁରିହେଉଥିବ ! ନିଶ୍ଚୟ ହବା କଥା । ରାତିରେ ହିଁ ତ ଝୁରିବାକୁ ହୁଏ । ସେ ନାଲାଏକ ଟୋକା ସେଇଠି କ'ଣ କରୁଚି ଏକୁଟିଆ ? ମର୍ଦାନି ଦେଖଉଚି ଆଉ କୋଉଠି ? ...ନିଶା ଖାଇ ପାହୁଣ୍ଡ ଟଳମଳ ପକେଇ ଖାଲି ଘରଟାରେ ଏ ବଖରାରୁ ସେ ବଖରା କାହାକୁ ଖୋଜି ଖୋଜି ବୁଲୁଚି ? କାହାକୁ ନ ପାଇ ଆସି ବିଛଣାରେ ମୁହଁମାଡି କଚଡି ହେଇ ପଡୁଚି ? ଉଲ୍ଲୁ କାହାଁକା ।

ରହ, ରତି ପାହିଲେ ମୁଁ ସୁମିକୁ ନେଇ ଚାଲିବି ଧାନବାଦ । କାହା କଥା ଆଉ ଶୁଣିବି ନାଇଁ । ସେ ଟୋକାକୁ ଭଲକରି ଦି'ପଦ ବତେଇବି । କି ମର୍ଦ ହେଇଚି ସେଇଟା ? ମାଇକିନାଟାକୁ

ପାଖରେ ମନେଇ ରଖିପାରୁନାଇଁ ? ମୁଁ ଯମୁନାର ଅଣିରାକୁ ନେଇ ସେ ଟୋକାକୁ ଦେଖେଇବି ।

ମୁଁ ଆଉ ଶୋଇପାରିଲି ନାଇଁ । ଉଠିବସିଲି କିଛି ସମୟ । ପୁଣି ଇଷ୍ଟ ଜପିଲି । ତା'ପରେ ଆସ୍ତେ ଯାଇ ଅନେଇଲି ବୈଠକଘରକୁ । ସେଇଠି ସୁମି ବସି କ'ଣ ଲେଖୁଚି । ଓ, ତା'ହେଲେ ଏଇଆ ? ଗୋଟାଏ ଲମ୍ବା ଚିଠି ଲେଖୁଚି ଧାନବାଦ ? ଠିକ୍ ଅଛି ତାକୁ ନେଇ ତା' ସ୍ୱାମୀ ପାଖରେ ଛାଡି ଆସିବାକୁ ହବ ।

ମୁଁ ମୋ' ବଖରାକୁ ଫେରିଗଲି । ଗୁଡାଏ ଆବୁରୁଜାବୁରୁ ସପ୍ନ ଭିତରେ ଗୋଟାଏ ସରୁ ଖିଅ ପରି ନିଦ ହୁଏତ ଗୁନ୍ଥିଗଲା ସବୁ ରାଜ୍ୟକୁ । ଖୁବ୍ ଗହଳ ଆମ୍ବତୋଟା ଘଞ୍ଚ ପତ୍ରଗହଳ ଭିତରେ ଗୋଟାଏ କଖାରୁ ପରି ଆମ୍ବ ଫଳିଚି, କଦଳୀ କାନ୍ଦିରେ ଆଳୁଅ ପଡିଲା ପରି ଫେଣାଏ ପାଚିଯାଇଚି । ପେନ୍ଥାଏ ଅଙ୍ଗୁର ଓହଳିଚି ଆମ ଛାତ ଉପରୁ ।

X X X X

"ଆହେ ଉଠ, କ'ଣ ଶୋଇଚ ? କଥା ସରିଗଲା, ମୁଁ କି କରିବି ଲୋ ?"

ଚିତ୍କାରରେ ମୁଁ ହଡବଡେଇ ଉଠିପଡିଲି । ମୋର ଅବୟବ ସବୁ ଏକାଠି ହୋଇ ପାରୁନଥିଲା । ମୋ' ପଞ୍ଜରା ଭାଙ୍ଗିପଡୁଥିଲା କଲିଜା ମାଡରେ । ମୁଁ ବାଲୁବାଲୁ ଚହିଁଲି ଚରିଆଡକୁ ।

ମୋ ସ୍ତ୍ରୀ ଓହ୍ଲାଇଗଲେ ଅଗଣାକୁ ଧାଇଁଲାପରି । ଅଗଣାରେ ହାଲହୋଳି ପଡିଥାଏ ।

ମୁଁ ପହଞ୍ଚିବା ମାତ୍ରେ ପାହାନ୍ତା ଆଲୁଅରେ ବାଳ ମୁକୁଳା କରି ଚିତ୍କାର କରୁଥିବା ମାଇକିନାମାନେ ଦେଖାଗଲେ । ଯମୁନା, ତା' ମା' ହାଉଳି ହଉଥା'ନ୍ତି । ମୋ' ସ୍ତ୍ରୀ ଗୁଡାଏ ଅବୁଝା ଶବ୍ଦ କରି ବୁକୁ ବାଡେଇହଉଥା'ନ୍ତି । ସୁଲ ତା' ଆଈ କାନିଧରି ରଡୁଥାଏ । ...କିଛି ଦୂରରେ ବଗିଚା ବାଡିରେ ସେମିତି ବାଳ ମୁକୁଳା କରି ସୁମି ବୋଧେ ଠିଆହୋଇଥାଏ । ତା'ର ବି ଲୁଗାପଟା ଅଯତ୍ନ; କିନ୍ତୁ ତା' ହାତରେ ସେଇଟା କ'ଣ ? କାଚ ? ...ତା'ହେଲେ କ'ଣ ?

ମୁଁ ଆଉ ଭାବିପାରିଲି ନାଇଁ । ମୋ' ଭିତରେ କମ୍ପିଲା, କ'ଣ ଗୋଟାଏ ଅଘଟଣ ଘଟିଗଲା କି ?

ସୁଲ ଆଈ ମତେ ଦେଖି ଆସି ମୋ' ଆଗରେ ବୁକୁ ବାଡେଇଲା, 'ସରିଗଲା, ଆଜ୍ଞା, ଭାସିଗଲା ସଂସାର...'

ମୋତେ ଶୁଭିଲା ଚରିଦିଗରୁ କାନ୍ଥବାଡ, ରାସ୍ତାଘାଟ ଦୂରଦୂରାନ୍ତରୁ ସେଇ କାନ୍ଦଣା, "ସରିଗଲା ବାବୁ ।"

ମୁଁ ପ୍ରାୟ କିଛି ନବୁଝି ସେ କାନ୍ଦଣା ଭିତରେ ତାଙ୍କଭଳି ବୁକୁ ବାଡେଇ ଚିତ୍କାର କରିଥାଆନ୍ତି । ମୋ' ମରଦପଣ ଖମ୍ବ ପରି ଅଟଳ ଠିଆହେଲା ସେ ପ୍ରଳୟରେ । ସମସ୍ତଙ୍କ ଚିତ୍କାରକୁ ଟପିଲା ପରି ମୁଁ ଗର୍ଜିଲି – "ଆବେ କ'ଣ ହେଲା କହୁନୁ କାହିଁକି ?" ମୋ' ସ୍ୱରରେ ମୁଁ ସାରା ସଂସାର ସହିତ ସମସ୍ତ ପ୍ରକାର ବିପର୍ଯ୍ୟୟ, ଅଘଟଣ ସାଙ୍ଗେ ଯୁଝିବାକୁ ଉଦ୍‌ଘୋଷଣା କଲି ବୋଧେ ।

ଚିତ୍କାର ଥମିଗଲା । ଥଙ୍ଗେଇଲା ପରି ସେ କହିଲା – ଫୁଲବାଣୀରେ ଯମୁନାର ସଂସାର

ସରିଗଲା ଆଙ୍କା – ଏତିକି କହିଚି କି ନାହିଁ ପୁଣି ବନ୍ୟା ମାଡିଗଲା ସାରା ପୃଥିବୀ ଉପରେ । ମୁଁ ଅପେକ୍ଷା କଲି ।

– ରାତିରେ ଟ୍ରକ୍ ମାଡିଗଲା ଆଙ୍କା, ତା' ପୁଅ ଆଉ ଗେରସ୍ତ ଉପରେ ।

ତା'ପରେ ଆକାଶକୁ ଚିରିଲା ପରି ଧାରୁଆ ଚିତ୍କାର । କାଚମାଳି ପିନ୍ଧିଥିବା ଝାମ୍ପୁରାମୁଣ୍ଡିଆ ସେ ପୁଅ । ତାରି ପରି ଝାମ୍ପୁରାମୁଣ୍ଡିଆ ନିଶାଖୋର, ଦୁଷ୍ଟ ହସ ହସୁଥିବା ସେ ମର୍ଦତୋକା ଉପରେ ଟ୍ରକ୍ ମାଡିଗଲା ? ଓହୋ, ଓହୋ... କହିଲା ମୋ' ଆତ୍ମାପୁରୁଷ । ମୋ' ଆକାଶସାରା ଚିରିହୋଇଗଲା ସୋରା ସୋରା ହୋଇ ।

ଆମେ ଦୁହେଁ ମିଶି ତାକୁ ସାଷ୍ଟମ କରିବାକୁ ବେଳନଥିଲା । ମୁଁ ଚମକିଲା ପରି ସୁମି ପାଖକୁ ଧାଇଁଗଲି । ସେ କାଚିଟାକୁ ହାତରୁ ଖସେଇ ସେମିତି ଖୁଣ୍ଟଟାଏ ପରି ଠିଆହୋଇଥାଏ । ଟିପ ବାଜିଲେ ବୋଧେ ଭୁସୁଡିପଡିବ । ମୁଁ ପିଠିରେ ହାତ ରଖିଲି । ମୋତେ ହାଉକିନା ବିଜୁଳି ମାରିଗଲା । ମୋ' ଦେହ ଝିମିଖାଇଗଲା । ସେଇଠୁ ଦେଖିଲି ଡେଙ୍ଗା ଅଫଳନ୍ତି ଅମୃତଭଣ୍ଡା ଗଛଟା ତଳେ ଲୋଟିପଡିଥିଲା । ହାଣ ଖାଇ ବାଳ ମୁକୁଳା କରି ହୋଇଯାଇଥିଲା ରକ୍ତାକ୍ତ ।

ଯମୁନା ବିକଳରେ ତଳେ ଗଡୁଥାଏ । ତା' ମା' ଲୋଟୁଥାଏ ଭୂଇଁରେ । ଯମୁନା ଗର୍ଭିଣୀ । ଯମୁନାର ସଂସାର ଟ୍ରକ୍‌ତଳେ ଦଳିହୋଇଯାଇଥାଏ । ତଥାପି ଯମୁନା ମରି ପାରିବ ନାହିଁ । ତାକୁ କେହି ମାରିପାରିବେନାହିଁ । ବିଧାତା ବି ନୁହେଁ । ସେ ପରା ଫଳନ୍ତିଗଛ !

ସୁମିର ଦେହ-ପଞ୍ଜୁରି କମ୍ପୁଥାଏ । ସେ ଖୁବ୍ ଆସ୍ତେ ମୋ' ଉପରକୁ ଆଉଜି ଆସି ଫିସ୍ ଫିସ୍ କରି କହିଲା – ମୁଁ ଆଜି ଧାନବାଦ୍ ଚାଲିଯିବି ବାପା, ମୁଁ ଏଠି ଆଉ ରହିପାରିବି ନାହିଁ ।



# ମୃତ୍ୟୁଭେଦ

ମୁଁ ଜାଣିନଥିଲି ଯେ ମୁଁ ସେ ବୁଢାଟାକୁ ଏତେ ବେଶି ଘୃଣାକରେ । ତାକୁ ଗତକାଲି ମୁଁ ବିନାଦ୍ୱିଧାରେ ହତ୍ୟା କରିଥା'ନ୍ତି । କେବଳ ସେ ମୋର ପ୍ରତିବାଦ କଲାନାହିଁ ବୋଲି ବର୍ତ୍ତିଗଲା । ଆଜି କିନ୍ତୁ ମୋତେ ତାକୁ ଅବଶ୍ୟ ଖତମ୍ କରିବାକୁ ହବ । ସେ ଥିଲେ ମୁଁ ବଞ୍ଚିରହି ପାରିବିନାହିଁ – ଏଣୁ ତାକୁ ମରିବାକୁ ହିଁ ହେବ ।

ମୁଁ କିନ୍ତୁ ଦିଲୀପ ଦାସ ମହାପାତ୍ର ଓରଫ୍ ଦୁଲିଆକକାକୁ ବହୁକାଳ ମୁଣ୍ଡରେ ବସେଇ ବୁଲିଥିଲି । ଲୋକଙ୍କୁ ତାଜୁବ୍ କଲା ପରି କହିଥିଲି କେମିତି ଦୁଲିଆକକା ମହାବଳ ବାଘ ସାଙ୍ଗରେ ଲଢିଥିଲା । ଜଙ୍ଗଲ ଦାଢରେ ଠିଆ ହେଇ ଥରେ ହେଣ୍ଟାଳି ଦେଲେ ସବୁ ଜାନୁଆର କେମିତି ଆଣ୍ଠେଇପଡୁଥିଲେ । ବାଘଯାକ କେମିତି ନାକ ଅଗକୁ ଚଟିଚଟି ଲାଙ୍ଗୁଡ ଜାକି ପାଖ ବଣକୁ ପଳଉଥିଲେ ।

ଏ ଗୁଲିଗପ ସବୁ ମୁଁ ନିଜେ ଫାନ୍ଦିଥିଲି ମନରୁ – ଲୋକଙ୍କୁ ଡରେଇବା ପାଇଁ । ମୁଁ ନିଜେ ସେ ବାଘ ଖୋଳ ଭିତରୁ ହେଣ୍ଟାଳିବାପାଇଁ । ଗୋଟାଏ କଥା ମୁଁ ଏଯାଏଁ ବୁଝି ପାରିନାହିଁ – ଦୁଲିଆକକାର କରାମତି ବିଷୟରେ ଯାହା ମିଛସତ ବଢେଇ କହିଦେଲେ ବି ଲୋକେ କେମିତି ନିର୍ବିରୋଧ ବିଶ୍ୱାସ କରିଯାଉଥିଲେ ? କ'ଣ ଦେଖୁଥିଲେ ସେ ଲୋକଟା ଭିତରେ କେଜାଣି ? ସେ ବାଘ ସଙ୍ଗେ ଲଢୁ କି ନଲଢୁ ସେ ସେଇଭଳି ଦେଖାଯାଉଥିଲା ନିଶ୍ଚୟ । କିନ୍ତୁ ସେ ମୋ' କୁକୁରଟା ସାଙ୍ଗରେ ମଧ ମୁକାବିଲା କରିପାରିବନାହିଁ । ତା' କଛା ଫିଟିଯିବ । ଟିଙ୍ଗଲ ବାରମିଶା ହେଲେ କ'ଣ ହେଲା, ପାହାଡିଆ କୁକୁର । ଥରେ ଭାଉଭାଉ ରଡି ଦେଲେ ପୃଥ୍ୱୀ କମ୍ପିଯିବ । କୋଉ ମହାବଳ ନା ଫହାବଳ ତା' ଆଗରେ କିଛି ନୁହଁ । ଯେତେହେଲେ ସେ କାହା କୁକୁର ? ହେଁଃ, ଖେଳଘର ପଡିଚି !!

ମୁଁ ଦୁଲିଆକକାକୁ କହିଲି, "ଆଚ୍ଛା କକା, ତମ ନାଁରେ ମୁଁ ବାରପ୍ରକାର ଗୁଲିଗପ ମାରୁଚି । ଏ ବେକୁବ୍ ଲୋକେ ବି ତାକୁ ଶୁଣି ବିଶ୍ୱାସ କରୁଛନ୍ତି – ହେଲେ ତୁମେ ତ କେବେ ପ୍ରତିବାଦ କରିନାହଁ ? ମୋ' ମିଛକୁ ମିଛ ବୋଲି କହିନାହଁ । ମୁଁ ଭାଷଣ ମାରିଲାବେଳେ ବରଂ ବୀରଠାଣିରେ ନିଶକୁ ସାମାନ୍ୟ ଫୁଲେଇଦେଇଛ । ତୁମକୁ ବାହାଦୁର ଭାବି ସ୍ତାବକମାନେ ବେଢିଗଲେ ତୁମେ ସନ୍ତୁଷ୍ଟ ମୁଦ୍ରାରେ ମୃଦୁମୃଦୁ ହସିଚ । ଏଇ ବାଗେ ଖୁବ୍ ଖ୍ୟାତି ବି ଅର୍ଜିଛ । ଏଣେ ତୁମ ନାଁରେ ମିଛ କହି କହି ମୁଁ ଭକୁଆ ହେଇ ବସିଚି । ...ମୋତେ ଗୋଟେ କଥା କହ ଦୁଲିଆକକା, ତୁମେ କ'ଣ ସତେ ମୋ' କଥାରେ ଅନ୍ୟମାନଙ୍କ ପରି ବିଶ୍ୱାସ କରିଯାଇଛ ଏବଂ ଭାବିଛ ଯେ ତୁମେ ସତକୁ ସତ ମହାବଳ ସାଙ୍ଗଅଗରେ ଯୁଝିଛ ବୋଲି ?"

"ନା ! – ମୁଁ ଜାଣେ, ମୁଁ କ'ଣ କରିଛି କ'ଣ ନକରିଛି । କିନ୍ତୁ ତୁ ଯେତେବେଳେ ଗପୁଥାଉ ତୋ' ଗରିପଟେ ଲୋକ ବେଢିଯାନ୍ତି । ତୁ ସେଇଥିପାଇଁ ଗପୁ ! ବାଘ ସାଙ୍ଗେ ମୁକାବିଲା କରିଥିବା ଗୋଟାଏ ପ୍ରବଳ ଯୋଦ୍ଧାକୁ ତୁ ମୁଣାରେ ପୂରେଇ ବୁଲିପାରୁ ବୋଲି ସେମାନେ ଦେଖୁଥା'ନ୍ତି । ତୁ ଖାଲି ମୋ' କଥା ନୁହେଁ ତ, ଆଉ ଗରିପାଞ୍ଚ ଓସ୍ତାଦ୍‌ଙ୍କ ଖାତିର୍‌ରେ ମଧ୍ୟ ସେଇଭଳି ଗପୁଥାଉ, କେବଳ ବେଳପଡିଲେ ସେମାନଙ୍କୁ ତୋ' ମୁଣାରୁ କାଢି ଲୋକଙ୍କୁ ତାଜୁବ କରିବାପାଇଁ । ମୁଁ ସେତେବେଳେ କ'ଣ କରନ୍ତି ? ମୁଁ ତୋ' କଥାରେ ହଁ କରେ ନାହିଁ କି ନା' କରେ ନାହିଁ । ହଁ କଲେ ମିଥ୍ୟାପରାଧ – ନାହିଁ କଲେ ତୋର ଅପବାଦ । ଏମିତି ଧର୍ମସଙ୍କଟରେ ତୋ' ଇଜ୍ଜତ ରଖିବାପାଇଁ ମୁଁ ତୁନି ପଡିଯାଏ – ସେଥିରୁ ଯେ ଯାହା ବୁଝିଲା ।"

ଏଇଭଳି କହି କହି ତୁ ମୋତେ ଭୁତେଇ ଆସିଛୁ । ମୁଁ ବେକୁବ୍ ତୋ' କଥାରେ ବିଶ୍ୱାସ କରିଯାଇଛି । ଆଉ ଅନବରତ ତୋ' ବିଷୟରେ ସେମିତି ଗପି ଗପି ବିଶ୍ୱାସ କରି ଯାଇଚି ତୁ ଗୋଟାଏ ସତକୁ ସତ ଖେଳୁଆଡ । ଧୂତ୍ ! ତୁଟା ଗୋଟାଏ ମୂଷା, ତତେ ମୁଣାରୁ କାଢି ଫୋପାଡି ଦେଇପାରେ ଶୂନ୍ୟକୁ । ସେଇଠି ତତେ ଚିଲ ଝାମ୍ପି ନେଇପାରେ । ତୁ ଜାଣୁ ମୁଁ ଗହିଁଲେ ଗୋଟାଏ ମାଡରେ ତତେ ସାବାଡ କରି ଦେଇପାରେ ! ତୁ ତ କେବେ ବାଘର ପୁଚ୍ଛ ବି ଦେଖିନାହୁଁ, ମୁଁ ଖାଲି ସେମିତି କହିବାରୁ କଥା ଚେର ଧରିଯାଇଚି । ଏଇଥର ମୁଁ କ'ଣ କହିବି ଜାଣୁ ? କହିବି, ଗୋଟାଏ ମଶାଶୁଣ୍ଢକୁ ଧରି ଦୁଲିଆକକା ତିନିବର୍ଷ ହେଲା ବଙ୍କା କରି ପାରିନାହିଁ । ସେଇ ଗୋଟାଏ ମାଡରେ ସମସ୍ତେ ବାଘଗପ ଭୁଲିଯିବେ । ତୁ ବି ଭୁଲିଯିବୁ । ହଉ ରହ, ମୌକା ମିଳୁ । କିନ୍ତୁ ଆଜି ତ' ତୋର ଶେଷ ଦିନ । ଏସବୁ ପାଇଁ ବେଳ ନାହିଁ ? ଠିକ୍ ଅଛି, ଛାଡ । ତତେ ହତ୍ୟା କରି, ସେଇ ବାଘାସିପାହି ଖେଳରେ ହିଁ ଦାହ କରିଦେବି । ସେଥିପାଇଁ ଚିନ୍ତା କରନା...

ଦୁଲିଆକକା ଆମ ବାପାଙ୍କ ଦୂରସମ୍ପର୍କ ଭାଇ । ଏକାଠି କୁଆଡେ ପାଠ ପଢୁଥିଲେ । ଗଳକୁ ଗଳ ଲାଗି ଘର । ହୁଡା ଏପାଖ ସେପାଖ ଜମି । ଆମ ଘର ସାଙ୍ଗରେ ମୂଳରୁ ଭାବଦୋସ୍ତି ଜମେଇ ଖୁବ୍ ଗନ୍ଦା ଉଠେଇଚି ଏ ହାରାମି । କ'ଣ ନା ବାହା ହବନାଇଁ । ଭାଇର ପିଲା କ'ଣ ତା'ର ପିଲା ନୁହଁନ୍ତି ? ଇସ୍ କି ଆଦର୍ଶ ! ତା'ପରେ ପାଞ୍ଚ ଏକର ସାତ ଡେସିମିଲ୍ ଜମି ବାପାଙ୍କ ନାଁରେ କବଲା

କରିଦେଲା । କ'ଣ ନା ଏକୁଟିଆ ଲୋକ କାହିଁକି ସେଥିରେ ଛନ୍ଦି ହବ ! ବାପା ମହା ଭୋଳା ମଣିଷ । ଯା' ଗଲ୍ ବୁଝିବାକୁ ସେ ବା କାହୁଁ ସମର୍ଥ ? ଜାଗାଟି ଦେଇଦେଲା ପରେ ଦୁଲିଆକକା ଆମ ଘରେ ଜ୍ୱାଇଁ କୁଣିଆ ଆଜିକୁ ଚାଳିଶ ବର୍ଷ ହେବ । ଦି'ଓଳି ଦିବ୍ୟ ଭୋଜନ । ହାତକୁ ଗୋଡକୁ ଲୋକ । ମହା ଅଏସ୍‌ରେ ବସି କ'ଣ ସବୁ କଣ୍ଢା ପାଠରୁ ପାଞ୍ଚକଥା ଏଠା ଲୋକଙ୍କ ବଖାଣି ଦେଇ ଚଳେଇଚି ଧନ୍ଦା । ଏବେ ମତେ ହେଲାଣି ମହା ବିପତ୍ତି ।

ଲୋକଙ୍କୁ ଲଗେଇଲି ମୁଁ । ଏବେ କ'ଣ ନା ସେମାନେ ତା'ରି ପାଖରେ ଲାଖି ରହିଗଲେ ! ଯାହାହେଲେ ବି ଦିଲୀପ ଦାସ ମହାପାତ୍ରକୁ ଡାକ । କିବେ ଆମେ କ'ଣ ମରିଗଲୁ ? ଆମକୁ ଭଲା କେବେ କେଉଁଠିକି ନିମନ୍ତ୍ରଣ ହୁଅନ୍ତା ? ରହ, ମୁଁ ସେ ଭୂତ ଛଡଉଚି ! ଆବେ, ସେ ବୁଢ଼ାକୁ ତମେ ଯାହା ଭାବିଛ ସେ ତା' ନୁହେଁ । ସେ କେବେହେଲେ ବାଘ ସଙ୍ଗେ ଲଢେଇ କରିନାହିଁ । ମୁଁ ହିଁ ଲଢ଼ିପାରେ, ମୋର ପାରିଲାପଣିଆ ତମେ କେହି ଦେଖିନାହଁ । ମୁଁ ତାକୁ କକା ବୋଲି ମାନିଯାଇଥିବାରୁ ତାକୁ ତ ପୁଣି ସମସ୍ତଙ୍କ ଆଗରେ ଦି'ପଦ ଟେକାଟେକି କରି କହିବା କଥା । ଏବେ ମୁଁ ସେସବୁ ମିଛି ବୋଲି ମାଇକ୍ ଲଗେଇ ଏଡେ ପାଟିରେ କହୁଛି । ଛାଡ ସେ ଅକ୍ଷମ ବୁଢାଟାକୁ । ଚାଲିଆସ ମୋ' ପାଖକୁ, ଦେଖ ମୋର ବାହାଦୁରି । ବାଘଟାକୁ ମୁଁ ରଦି କାଗଜ ପରି ଚିରିଦେଇପାରେ ।

ଏଣେ ଘରେ ଅବସ୍ଥା ଅସମ୍ଭାଳ ।

"ଆଚ୍ଛା, ବାପା କୋଉ କାଳୁ ତୁମକୁ ଭାଇକରି ଏଠି ବସା ବାନ୍ଧି ରହିଛନ୍ତି ବୋଲି ଆମେ ତ ତାଙ୍କୁ କକା କହି ଡାକିଲୁ ଓ ସମ୍ମାନ ଦେଲୁ । ସେ କ'ଣ ଜାଣିପାରୁନାହାନ୍ତି ଯେ ଆମ ପରିବାର ବଢ଼ିଲାଣି ? ଆମକୁ ଆଉ ଥାନ ଅଣ୍ଟୁନାହିଁ । କିଛି ନହେଲେ ଦି'ଟା ପିଲା କଲେଜରେ ପଢୁଛନ୍ତି, ତାଙ୍କୁ ସେ ବଖରାଟାରେ ଜାଗା କରିଦେଲେ କେମିତି ହୁଅନ୍ତା ?"

"ଆରେ, ଦୁଲିଆକୁ କେହି ହଇରାଣ କରନାହିଁ । ସେ ସଂସାରରେ ଥାଇ ସୁଦ୍ଧା ଅସଂସାରୀଟାଏ । ତାକୁ ଗହଳିଚହଳି ସୁଖଲାଗେନାହିଁ । ସେ ତା'ର ଏକୁଟିଆ ସେ ଘରେ ପଢାପଢି କରୁଥାଏ । କ'ଣ ସବୁ ଲେଖୁଥାଏ ।"

"ଏମାନେ କ'ଣ ସେଠି ହାଟ କରିବେ କି ? ଏମାନେ ବି ସେଇ ଲେଖାପଢି କରିବେ ନା । ତା'ହେଲେ କ'ଣ ହୁଅନ୍ତା କି ଏପଟେ ଟିକିଏ ଭିଡ କମିଯାଆନ୍ତା ।"

"କିରେ ତତେ କ'ଣ ଆମେ ସବୁ ଅସୁଖ ଲାଗୁଛୁ କି ? ତୁ ତ ତିରିଶି ବର୍ଷ ସେଇଠି ଚଳି ଆସିଚୁ । ଏବେ ସେ ବୋହୂଟା ଆସିଲା ବୋଲି ତତେ ସବୁ ଅଡୁଆ ଲାଗିଲାଣି ।"

"ଦେଖ ବାପା, ତମେ ସିଧା କଥାଟାକୁ ବଙ୍କାରେ ନଉଚ । ମୁଁ ଚାହେଁ ସେ ବଖରାଟାକୁ ଡ୍ରଇଂ ରୁମ୍ କରିବାକୁ । କିଏ ଆସିଲେ ବସେଇବାକୁ ଘରେ ଥାନ ଟିକିଏ ନାହିଁ ।"

"ଦୁଲିଆ କୁଆଡେ ଯିବ ?"

"ଯୁଆଡେ ମନ ସେଆଡେ । ସେ କଥା କ'ଣ ମୋତେ ବ୍ୟବସ୍ଥା କରିବାକୁ ହେବ ନା'

କ'ଣ ?"

ଏତିକିବେଳେ ମା' ଆସି ଦୁଆରମୁହଁରେ ଠିଆହେଲା ।

"କିରେ, କଫି ତିଆରି କରିବାକୁ କହିଦେଇ କୁଆଡେ ପଳେଇଆସିଲୁ ?"

ଗୋଟାଏ ଚୌକିରେ ବସି ସେ ଆମ ଦୁହିଁଙ୍କୁ ଚାହିଁଲା । ନୌକର ପିଲା ଟ୍ରେରେ ତିନିକପ୍ କଫି ଧରି ଆସି ଠିଆହେଲା ।

"ଏଠି ଦୁଇ କପ୍ ଥୋଇଦେ । ଆଉ କପ୍‌ଟା ନେଇ ସାନବାବୁଙ୍କୁ ଦେଇଦେବୁ ଯା ।"

"ତୁ ପିଉନୁ କାହିଁକି ?" ମୁଁ ଚିଡିଲା ଭଳି କହିଲି, "ଏଠି ଯେତେ ଥର କଫି ହେଉଥିବ ସେତେଥର ସାନବାବୁ ପିଉଥିବେ ନା କ'ଣ ?"

ମା' ତା' ଢଙ୍ଗରେ ହେଁ ହେଁ ହସିଲା । ନୌକର ଟୋକା ଚାଲିଗଲା କଫି ନେଇ । "ତାକୁ ତ' କଫି ସ୍ୱର୍ଗ । ଯେତେ ଦେବ ସେ ନାହିଁ କରିବ ନାହିଁ ।"

ବାପା କିଛି ନକହି କଫି ଧରି ଉଠି ଚାଲିଗଲେ । ମୁଁ ପାଟି ପାଖରୁ କଫି କପ୍‌ଟାକୁ ପ୍ଲେଟରେ କଚିଦେଇ କହିଲି, "ଏ ଘରେ କଅଣ ସବୁ ହଉଚି ଗୋଟାଏ ବାହାରିଆ ଲୋକକୁ ନେଇ ?"

ମା' ଆଶ୍ଚର୍ଯ୍ୟ ହେଇ କହିଲା, "କାଇଁ, କ'ଣ ହେଲା କି ?"

ମୁଁ ଖେଙ୍କିଲା ପରି କହିଲି, "କିଛି ଜଣାପଡୁ ନାହିଁ ? ସେ ଦୁଲିଆକକା କ'ଣ ବାପାଙ୍କ ନିଜ ଭାଇ ? ଆମେ ସମସ୍ତେ ଏମିତି ଖୁନ୍ଦାଖୁନ୍ଦି ହେଇ ଏଇ ତିନିଟା ବଖରାରେ ଚଳିବୁ ଆଉ ସେ ଏକୁଟିଆ ଗୋଟାଏ ବଖରା ମାଡିବସିଥିବେ ? ମୁଁ ବାପାଙ୍କୁ କହିଲି କୁନିଆ ଆଉ ଝୁଲି ଯାଇ ସେ ଘରେ ଅନ୍ତତଃ ଟେବୁଲ ଚୌକି ପକେଇ ପାଠପଢନ୍ତୁ । ଗୋଟାଏ ଝରକା ପାଖକୁ ସେମାନେ ବସିଲେ ବାକି ଜାଗାରେ ସେ ଚଳିବାରେ କ'ଣ ଅସୁବିଧା ଅଛି ?"

"କିରେ, ଏମିତି କ'ଣ ଫିଙ୍ଗିଲା ଫୋପାଡିଲା ପରି କଥା କହୁଚୁ ? ତୋ' ମୁହଁ ବଢିଯାଉଚି କି ? ସେ ପରା ଗୁରୁଜନ । ସେ ତୋ' ପାଇଁ କ'ଣ କରିଚନ୍ତି ତୁ ଜାଣିଚୁ ? ଏ ଘରପାଇଁ କ'ଣ କରିଚନ୍ତି ଜାଣିଚୁ ? ସେ ଏଇନେ ବାହାରଲୋକ ହେଇଗଲେ ? ମୁଁ ଜାଣେ ସେଇ ଟୋକୀ ତୋ' କାନରେ ମନ୍ତ୍ର ଫୁଙ୍କି ତତେ ବିଗାଡିଚି ।"

ମୁଁ ହଠାତ୍ ଚିଡିଯାଇ କହିଲି, "ଚୁପ୍ କର । କିଛି ନଜାଣି ନଶୁଣି ଜଣକ ଉପରେ କାହିଁକି ଦୋଷଟାଏ ଲଦିଦଉଚୁ ?"

"ବାଧିଗଲା ପୁଅକୁ ପରା ? ସେ ତ ଚାହୁଁଚି ତତେ ନେଇ ଅଲଗା ଘର କରିବାକୁ । ତୁ ତାରି କଥାରେ ପଡି ଏମିତି ଡେଉଁଚୁ । ତୁ'ଟା ଏମିତି ମାଇପବୋଲକରା ହବୁ ବୋଲି ଜାଣିନଥିଲି !"

ମୁଁ ଚାଉଁକିନା ଚିଡିଗଲି । ଠିଆହୋଇ ଗର୍ଜିଲି – "ମୁଁ ଜାଣେ ତୁ ହିଁ ଏ ସବୁ ନାଟର ମୂଳ । ସେଥିରୁ ଗୋଟେ ପରଲୋକକୁ ଘରେ ପୂରେଇଚୁ ତୁଇ । ଆମକୁ ପର ଜ୍ଞାନ କରୁଚୁ ତୁଇ । ମୁଁ ଏ ଘରେ ଆଉ ପାଣି ଛୁଇଁବିନାହିଁ କି ମୁହୂର୍ତ୍ତେ ରହିବିନାହିଁ ।"

ନିଆଁ ହୁଳା ପରି ଜଳିଉଠିଲା ମା' ।

"କ'ଣ କହିଲୁରେ ଛୋକାର ବଜାତ୍ ବେଇମାନ ଟୋକା ?"

ଢାଇକିନା ଗୋଟାଏ ଚଟକଣା ମୋ' ବାଁ ଗାଲରେ ବସିଗଲା । ସମସ୍ତେ ସେତେବେଳକୁ ଦୌଡ଼ି ଆସି ବେଢ଼ିଯାଇଥା'ନ୍ତି । ହୋ-ହଲ୍ଲା ପାଟିତୁଣ୍ଡ । ମୁଁ ଭିଡ଼ି ହେଉଥାଏ ଘରୁ ପଳେଇବାକୁ । ମୋତେ ପଛରୁ କିଏ ସବୁ ଓଟାରି ଧରିଥା'ନ୍ତି । ମୁଁ ଗର୍ଜୁଥାଏ ଭୟାନକ । ଅନ୍ୟମାନେ ଗର୍ଜୁଥା'ନ୍ତି ।

ମନ୍ଥି ହେଉଥାଏ ସାରା ପରିବାର । ତା' ଭିତରେ ନୌକର ଟୋକା ଆସି ଯାକୁ ତାକୁ କ'ଣ କାଗଜଟିଏ ଦେଖେଇବାକୁ ଚେଷ୍ଟାକରିଛି – କେହି ତାକୁ ଶୁଣିନାହାନ୍ତି ।

ମା'ର କାନ୍ଦଣା, ମୋର ଫୁଫୁକାର, ବାପାଙ୍କ ପାଟି ଚାଲିଥାଏ ଅନ୍ଧାର ହେବାଯାଏଁ । ତା'ପରେ ସବୁ କେମିତି ଥମିଆସିଲା ।

ବାପା ବୋଧେ ସୋଫା ଟେବୁଲ ଉପରୁ ସେ କାଗଜଖଣ୍ଡ ନେଇ ପଢ଼ିଲେ । ତା' ଉପରେ ଯେଉଁ କଲମଟା ଥୁଆହୋଇଥିଲା ସେଇଟା ଦୁଲିଆକକାର । ପୁରୁଣା ସେଫର୍ସ ଲାଇଫ୍ ଟାଇମ୍ ।

ବାପା ବିଜୁଳି ମାଇଲା ପରି ସେଠୁ ଉଠି ଚାଲିଗଲେ । ତାଙ୍କ ପଛେ ପଛେ ଅନ୍ୟମାନେ ବି ଚାଲିଗଲେ । କେବଳ ମୁଁ ବସିରହିଲି । ମୋର ଗଉଁ ମୁଁ ସେଇଠୁ ଘୁଞ୍ଚିବି ନାହିଁ । ଯଦି ମୁଁ ଘର ଛାଡ଼ିଲିନାହିଁ, ତେବେ ଉଠିବି କାହିଁକି ? କେବଳ ଦୁଲିଆ କକା ନୁହେଁ, ଆଉ କାହା ସାଙ୍ଗରେ ମୋର ପଡ଼ିବନାହିଁ ।

ମୁଁ ବାଁହାତରେ ସେ କାଗଜଟାକୁ ମେଲେଇ ଦୂରରୁ ପଢ଼ିଲି – "ମୁଁ ଯାଉଚି । ଏ କଲମଟା ଲାଲୁପାଇଁ ଛାଡ଼ିଯାଉଚି । – ଇତି ଦୁଲୁ ।"

ମାନେ ? ମାନେ ଦୁଲିଆକକା ଘର ଛାଡ଼ି ଚାଲିଗଲା ? ଉତ୍ତମ ! ଏ କଲମଟାକୁ ମୋତେ ଖୋସାମଦ୍ କରିବାକୁ ଛାଡ଼ିଯାଇଚି । ମୁଁ ତାକୁ ଗୋଇଠି ମଡେଇ ଭାଙ୍ଗିଦେଇପାରେ । କିନ୍ତୁ କାହିଁକି ? ଘର ମାଲ୍ ଘରେ ରହିଲା । ମୁଁ ତାକୁ ଅଲବତ୍ ରଖିବି । ସେଥିରେ ଦୁଲିଆକକାର କୀର୍ତ୍ତି ଲେଖିବି । ମୁଁ ସେ କଲମକୁ ଛୁରି ଧରିଲା ପରି ଟେବୁଲ୍‌ରେ ଭୁସୁଥିଲି ।

ବାହାରେ ପାଟିତୁଣ୍ଡ ଶୁଭୁଥାଏ ।

"ସେ ଇଜ୍ଜତ୍‌ଦାର ମଣିଷ । କୋଉଠି ଅସମ୍ମାନ ସହିନାହିଁ – ଏଠି କାହିଁକି ସହିଥାନ୍ତା ? ପିନ୍ଧା ଲୁଗା ଆଉ ଚପଲ ଛଡା ଆଉ କିଛି ନେଇନାହିଁ ।"

ଓ... ସେ କୁଆଡେ ଯିବ ମ' ! ତା'ର ଆଉ ଗତି କାହିଁ । ସେ ବଳେ ଏଇଠିକି ଲେଉଟି ଆସିବ ନାଇଁ ? ସେ ଖାଲି ଚାହୁଁଥିବ ତା'ର ଆତଡ଼ୁଷା ଭାଙ୍ଗିବାପାଇଁ ଆମ ଭିତରୁ କିଏ ଯାଇ ତାକୁ ଖୋସାମଦ୍ କରି ଡାକିବ – ହୁଁଃ ।

ପ୍ରଥମେ ବାପା ଆସିଲେ ।

"ହେଲା, ଏଥର ମନସ୍କାମନା ପୂର୍ଣ୍ଣ ହେଲା ତ ? ସେ ଆଉ ଆସିବ ନାଇଁ ।"

ମୁଁ କିଛି ନକହି ବସିରହିଲି । ସେ ବି କିଛି ନକହି ଜାମା ଜୋତା ପିନ୍ଧି ବାହାରିଲେ 'ଭାଇ'ଙ୍କ ସନ୍ଧାନରେ । ମୁଁ ମନେ ମନେ ହସୁଥାଏ ।

ମା' ଆସି କ'ଣ ଗୁଡାଏ ଶୋଧିଦେଇ ଚାଲିଗଲା । ପିଲାମାନେ କିଛି ନକହି ନିଃଶ୍ୱାସ ଛାଡି ଚାଲିଗଲେ ।

ମୁଁ ସେ କଲମ ଧରି ଚିଠି କାଗଜରେ ଗାରଉଥାଏ – "ବେ (ଘୋର ଅଶ୍ଲୀଳ ଶବ୍ଦ) – ମୁଁ ତତେ ଅଲ୍‌ବତ୍ ଖତମ କରିବି ବେ ।" (ସେହିପରି ଅଶ୍ଳୀଳ ଶବ୍ଦ) ସେ କଲମରେ ଗୁଡାଏ ଅଶ୍ଳୀଳ ଚିତ୍ର ଆଙ୍କିଲି । କଲମମୁନର ଆଘାତରେ କାଗଜ କଣାହୋଇଗଲା । କାଳି ଚପିଗଲା ସେ କ୍ଷତ ଚାରିପଟେ ।

ମୋ ସ୍ତ୍ରୀ କେତେବେଳୁ ଆସି ଠିଆହେଇଥିଲା । ମୁଁ ତାକୁ ଚାହିଁବାରୁ କହିଲା, "ଦୁଲିଆ କକା ଚାଲିଯିବା ଭଲ ହେଲାନାହିଁ । ସେ ଆମପାଇଁ ହିଁ ଗଲେ ବୋଲି ସମସ୍ତେ କହୁଛନ୍ତି ।"

"ଆବେ ଯା, କୋଉ ଶଳା (ଅଶ୍ଲୀଳ ଶବ୍ଦ) କ'ଣ କହିଲେ ମୋର ଖାତିର ନାଇଁ ।" (ହାତରେ ଅଶ୍ଳୀଳ ଇଙ୍ଗିତ) "ତୁ କ'ଣ କହୁଚୁ କହ ।"

"ମତେ ବି ଭଲଲାଗୁନାହିଁ ।"

"କ'ଣ ହେଲା, ତତେ ଭଲ ଲାଗୁନାହିଁ ? ଯା' ସେ ଶଳା ଭଣ୍ଡ ପାଖରେ ଶରଣ ପଶିଯା । ସେଇ ଜାଣି ସମସ୍ତଙ୍କୁ (ଅଶ୍ଳୀଳ ଶବ୍ଦ) ଟେକିଧରିଚି । ଯା, ଏଠୁ ଚମ୍ପଟ !"

ମୋ ପାଟି ଶୁଣି ସେ ଶଙ୍କିଗଲା । ଭିତରକୁ ଯିବା ଆଗରୁ କେମିତି ଗୋଟାଏ ବିଚିତ୍ର ଢଙ୍ଗରେ ମୋ' ମୁହଁକୁ ଚାହିଁଲା, ସତେ ବା ମୁଁ କୌଣସି ଅପରିଚିତ ବାହାର ମଣିଷ ।

ରାତିରେ ବାପା ଖବର ଆଣିଲେ ଯେ ଦୁଲିଆକକା ଆଉ ଫେରିବ ନାଇଁ । ସେ ଏଇ ସହରର ନୂଆ କଲୋନୀରେ ଜଗନ୍ନାଥ ମନ୍ଦିରରେ ରହିଲା । ସେଇଠି ସେ ମନ୍ଦିର କମିଟିର ପ୍ରେସିଡେଣ୍ଟ । ବେଶ୍ ଭିତରେ ଗେଷ୍ଟ ରୁମ୍‌ରେ ଅଛି – ସମସ୍ତେ ଶ୍ରଦ୍ଧା ସମ୍ମାନ ଦଉଚନ୍ତି । ଏଠି ଏ କୁକୁରଙ୍କ ମେଳରେ ସେ କାହିଁକି ରହିଥା'ନ୍ତା ।

ମୁଁ ଦୁଲିଆକକା ବଖରାରେ ଏକୁଟିଆ ରହୁଚି ଦଶଦିନ ହେଲା । ମୋ' ପାଖକୁ କେହି ଆସୁନାହାନ୍ତି – ମୋ' ସ୍ତ୍ରୀ ସମେତ୍ । ନୌକର ହାତରେ ଖାଇବା ପଠେଇଦଉଚନ୍ତି । ମୋତେ ଏମିତି ବେଇଜତ୍ ସହିବାକୁ ପଡୁଚି କେବଳ ସେଇ ରାସ୍କେଲ୍ ବୁଢାପାଇଁ । ମୁଁ ତାକୁ ନିଶ୍ଚୟ ଖୁନ୍ କରିବି ।

ସେଇ ମତଲବ୍‌ରେ ମୁଁ କାଲି ଯାଇଥିଲି । ସେ ମତେ ଦେଖି ମିଠେଇ ଯାଚିଲା ଖାଇବାକୁ । ମୁଁ ସେଆଡେ ନ ଚାହିଁ ଶୋଧିଦେଇଗଲି । ସେ କିଛି କହିଲା ନାହିଁ । କ'ଣ ବା କହିଥା'ନ୍ତା ? ଚୋରକୁ ଚୋର କହିଲେ କ'ଣ ଆଉ ଉତ୍ତର ଥାଏ ? ମୁଁ ଭୂଇଁକୁ ତିନି ଚାରିଥର ଗୋଇଠା ମାରିଚି । ଓଠ କାମୁଡି ଖଣ୍ଡିଆ ହେଇଯାଇଚି । କିନ୍ତୁ ସେ ପାଟି ଫିଟେଇ ନାହିଁ । ସେ ଡରିଗଲା – ପ୍ରାଣଭୟରେ ସବୁ ଶୁଣି ସହିଗଲା । ମୁଁ ବି ପୂରା ତାଉ ଉପରକୁ ଆସିପାରିଲି ନାହିଁ । ନହେଲେ ତାକୁ ମୁଁ ଖତମ୍ କରିଦେଇଥା'ନ୍ତି ।

ଆଜି ପୁଣି ଯିବି । ଭାବିଛି, ବିନା କିଛି ଚିନ୍ତା କରି ଯାଉ ଯାଉ ଗୁଳିକରିଦେବି । ଆଳଟି

ଉଠିଲାବେଳେ ସେ ବିଭୋର ଦେଖାଯାଏ । ସେତେବେଳେ ସେ ହାତଯୋଡି ଠିଆହେଇଥାଏ ବେକୁବ୍ ଭଳି । ମୁଁ ତାକୁ ଗୋଟିଏ ଗୁଳିରେ ଶୁଆଇଦେବି । ଜଣାପଡିବ ଯେମିତି ମୁଁ ଗୁଳି କଲାବେଳେ ସେ ମୋତେ ହିଁ ହାତଯୋଡି କ୍ଷମା ପ୍ରାର୍ଥନା କରୁଥିଲା – ମୁଁ ତାକୁ କ୍ଷମା ନକରି ଦଣ୍ଡଦେଲି । ତା'ର ଅପରାଧର ତାଲିକା ମୁଁ ପ୍ରତିଦିନ ବୟାନ କରିପାରେ ସମସ୍ତଙ୍କ ଆଗରେ । ଯାହା କହିଲେ ବି ଚଳିବ – ସେ ତ' ନଥିବ ପ୍ରତିବାଦ କରିବାକୁ ?

ମୁଁ ଚାହେଁ ବଞ୍ଚିବାକୁ । ଅମର ହେବାକୁ । ସଂସାର ସାରା ଚାରିଆଡୁ ଘେରି ଜୟ ଜୟକାର କରିବାକୁ । ସେଥିପାଇଁ ଦୁଲିଆକକା ବଞ୍ଚିଲେ ଚଳିବ ନାହିଁ ।

ଦୁଲିଆକକା, ମୁଁ ତତେ ହତ୍ୟା ନକଲେ ରହିପାରିବି ନାହିଁ । ତୁ ମୋ' ବାଟ ଜଗି ଠିଆରହିଛୁ । ମୋ' ପାଇଁ ତତେ ମରିବାକୁ ହବ । ତୁ ଯଦି ମତେ କେବେହେଲେ ଭଲପାଇଥାଉ ଏଥିରେ ଥରେ ସହଯୋଗ କରିପାରିବୁ ? ନହେଲେ ତୁ କି ଦୁଲିଆକକା ? ତୁ ମତେ ବୁଝେଇ କହିବୁ, ମୁଁ ତତେ କେମିତି ମାରିବି ! କେମିତି କେଉଁ ବାଗେ ଖସିବି । ତୋ' ମୁର୍ଦ୍ଧାର ଉପରେ କେମିତି ଠିଆହେଲେ ମୁଁ ବାଙ୍ଗରା ହେଲେ ବି ଉଚ୍ଚ ଦିଶିବି, ଉଚ୍ଚ, ଆହୁରି ଉଚ୍ଚ !



# କରାଘାତ କରନାହିଁ

କାରଣ ଏ କାବଟ ଆଉ ଫିଟିବନାହିଁ; ଫିଟି ପାରିବନାହିଁ । ଏତେ ଉଚ୍ଚ ପାଚେରିରେ ଏତେ ଉଚ୍ଚ କବାଟଟାଏ ଲଗେଇବାର କୌଣସି ପ୍ରୟୋଜନ ନଥିଲା । ମୋତେ ପଚାରିଥିଲେ ମୁଁ ନିଶ୍ଚୟ ମନାକରିଦେଇଥା'ନ୍ତି । କିନ୍ତୁ ସେ ତା' ମନକୁ ମନ କରିଗଲା । ଗୋଲକୁଣ୍ଡା ଦୁର୍ଗଭଳି ଦିଶୁଛି ବୋଲି ମୁଁ ତାକୁ ଥଟ୍ଟା କରିଥିଲି । କାଳେ ସେଇଭଳି ଦିଶୁଥାଇ ପାରେ ବୋଲି ସେ ଗର୍ବ କରୁଥିଲା ।

ସେ ଥିଲା ସେଇଭଳି ଏକ ବେକୁବ୍ । ହୁଏତ ସେଥିପାଇଁ କିମ୍ବା କୌଣସି ବିଚିତ୍ର କାରଣରୁ ମୁଁ ରାଜୁକୁ ଭଲପାଇଯାଇଥିଲି । ସେ ନୂଆହୋଇ ଆମ ଅଫିସ୍‌କୁ ବଦଳିରେ ଆସିଥାଏ । ଏମିତି ଅକସ୍ମାତ୍ ଆମେ ଦୁହେଁ ସାମ୍ନାସାମ୍ନି ପଡିଗଲୁ ଏବଂ କେଜାଣି କାହିଁକି ପରସ୍ପରକୁ କୁଣ୍ଢେଇପକେଇଲୁ । ଦେଖିବା ଲୋକେ କେହି ବିସ୍ମିତ ହେଲେ ନାହିଁ । ସେମାନେ ହୁଏତ ଭାବିନେଲେ ଯେ ଆମେ ଦୁହେଁ ଅନେକ ଆଗରୁ ପରସ୍ପର ଘନିଷ୍ଠ ବନ୍ଧୁ, ନହେଲେ ଦେଖୁ ଦେଖୁ ଏମିତି ଆଚରଣ କରିବା ସମ୍ଭବ ନୁହେଁ । କିନ୍ତୁ ମୁହୂର୍ତ୍ତେପରେ ସଚେତନ ହୋଇ ଆମେ ପରସ୍ପରକୁ ଚାହିଁ ଅବାକ୍ ହୋଇଯାଇଥିଲୁ । ସଂପୂର୍ଣ୍ଣ ଅପରିଚିତ ଦୁଇଟି ବ୍ୟକ୍ତି କେହି କାହାକୁ ଚିହ୍ନିପାରୁ ନଥିଲୁ । ସାମାନ୍ୟ ଅପ୍ରତିଭ ବୋଧକରୁଥିଲୁ ନିଶ୍ଚୟ । କିନ୍ତୁ ସେ ପରିସ୍ଥିତିରେ ନାଁ ଗାଁ ପଚରାପଚରି ହେବା ନିହାତି ଅବାନ୍ତର ମନେହେଉଥିଲା ।

କିଛିଦିନ ପରେ...

"ଆଚ୍ଛା, ତୁ କାହିଁକି ମୋତେ ଦେଖୁ ଦେଖୁ ସେମିତି ହେଲୁ ? ମୁଁ କ'ଣ ତୋର ପରିଚିତ ଆଉ କାହାପରି ଦେଖାଯାଉଥିଲି ?"

"ତା ହୋଇଥିଲେ ତ' ସେଇ ନାଁ ଧରି ମୁଁ ତତେ କୁଣ୍ଢେଇଥାଆନ୍ତି ଏବଂ ପରେ ଭୁଲ ଜାଣିପାଇଥିଲେ ତୋ' ମୁହଁ ଚାହିଁନଥା'ନ୍ତି । ଆଉ ଜଣକ ପରି ଦିଶିବାପାଇଁ ମଧ୍ୟ କିଛି ସମୟ ଦରକାର । କ'ଣ ହେଲା ବୋଲି ଜାଣିବା ପୂର୍ବରୁ ମୁଁ ତତେ ଧରି ସାରିଥିଲି ।"

ରାଜୁ ଯାହା କହିଲା, ତା' ସମ୍ପୂର୍ଣ୍ଣ ସତ । ମୁଁ ତ ସେଇଭଳି ତାକୁ ଦେଖିବାମାତ୍ରେ ବାହୁରେ ବେଢେଇନେଇଥିଲି । ଏ ଘଟଣା ପରେ ଆଣେ ତ' ବନ୍ଧୁ ହେବାପାଇଁ ଏକପ୍ରକାର ବାଧ ହୋଇଯାଇଥିଲୁ । ପିଲାବେଳୁ ବନ୍ଧୁ ହୋଇଥିଲେ ଯାହା ହୋଇଥାନ୍ତା, ତା' ଅପେକ୍ଷା ଏ ସମ୍ପର୍କ ଅନେକ ବେଶି ଘନିଷ୍ଠ, ନିବିଡ ଏବଂ କିମ୍ଭୂତ ଭାବରେ ଅଭିପ୍ରେତଭଳି ଜଣାଯାଉଥିଲା । ତା'ପରେ ଆମେ କେହି କାହାକୁ ଆଉ ଛାଡିପାରିଲୁନାହିଁ । ଅନେକ ସନ୍ଧ୍ୟା ଏମିତି ଏକାଠି ସୂର୍ଯ୍ୟାସ୍ତ ଦେଖି ଦେଖି ବିତେଇଲୁ । ଆମ ଦୃଷ୍ଟି ଯୋଡିଏ ପକ୍ଷୀପରି କାହିଁ କେଉଁ ଦୂରକୁ ଭେଦିଯାଇଛି । କଳ୍ପନା ଲଟେଇ ହୋଇଯାଇଛି ଅବିଚ୍ଛେଦ୍ୟ ଭାବରେ ।

ସ୍ୱପ୍ନ ବୁଣିଲାବେଳେ ଆମେ ଯୋଜନା କରିଥିଲୁ ଯେ ବିରାଟ ଗୋଟାଏ ନଡିଆ ବଗିଚା କରି ଲକ୍ଷେ ଗଛ ଲଗେଇବୁ । ସେଇ ବଗିଚା ଭିତରେ ରାସ୍ତା, ଘର, କାରଖାନା, ସୁନ୍ଦର ସୁନ୍ଦର ନିଃଶବ୍ଦ ମଟରଗାଡି, ପବନରେ ଦୋହଲୁଥିବା ବଡ ବଡ ରକ୍ତଗୋଲାପ – ଆଉ ଏମିତି କେତେ କ'ଣ । ନଡିଆରୁ ତେଲ, ଖଦାରୁ କୋରା, ଚକ୍‌ଲେଟ୍ । ଦୁଧଗୁଣ୍ଡ ପରି ନଡିଆ ପାଉଡର ବଡ ବଡ ଟିଣରେ ଭର୍ତ୍ତିହୋଇ ଲମ୍ବା ଧାଡିରେ ଘୁଞ୍ଚିଯିବ । କତାରୁ କଏର୍ କାରଖାନା, ଗଦି, କାଲିଚା, ପାପୋଛ, ଖୁବ୍ ପାତଳ ବୁଣେଇରେ ଚପଲ୍ ଫିତା, ପର୍ସ ଆଦି ନୂଆ ନୂଆ ନଦେଖିଥିବା, ନଶୁଣିଥିବା ଜିନିଷ ସବୁ ବାହାରିବ ।

ସନ୍ଧ୍ୟାବେଳେ ପଶ୍ଚିମମୁହାଁ ବସି ନଈକୂଳରେ ପାତଳ ପବନ ସାଙ୍ଗରେ ଏଥିରୁ ଅସଂଖ୍ୟ ସ୍ୱପ୍ନ ଆମେ ଉପଭୋଗ କରିଛୁ । ଅବସ୍ଥାରେ ଅନୁଭବ କରିପାରିନାହୁଁ ସ୍ୱପ୍ନ ବୁଣିବାରେ କାହାର ଚନ୍ଦୁ କେତେ ।

"ତୁ ଜମିପାଇଁ ଚିନ୍ତା କରନା – ମୁଁ ସେ ଦାୟିତ୍ୱ ନେଲି ।" କହିଲା ରାଜୁ ।

"ତା'ହେଲେ ମାର୍ ବାଜି, ମୁଁ ବାକିସବୁ ଅଲବତ୍ ଖଞ୍ଜି ନେଇଯିବି ସେଇଠି ତୋ' ସତନ୍ତ୍ର କୋଠାରେ ମର୍ସିଡିଜ ଲାଗିବାଯାଏଁ ।"

ରାଜୁ ବିହ୍ୱଳ ହୋଇ ଖୁବ୍ ଖୁସିରେ ହସିଥିଲା । ମୁଁ ଆହୁରି ବିଶ୍ୱାସ ଦେବାକୁ କହିଥିଲି:

"ଗୋଟାଏ ପ୍ରକାର ନଡିଆ ଖାଲି କତାପାଇଁ ପ୍ରସିଦ୍ଧ । ସେଥିରୁ ଗାଢ ଚମ୍ପା ବର୍ଣ୍ଣର ସରୁ ସୂତା ବାହାରିବ । ତାକୁ କୋମ୍ବିଙ୍ଗ୍ କରି ସେଥିରେ ନେକ୍‌ଟାଇ ବୁଣାହୋଇପାରେ । ବାଇଗଣୀ ରଙ୍ଗର ଭେଲ୍‌ଭେଟ୍ ଚପଲପାଇଁ ଫିତା, ଭେନିଟି ବେଗ୍ ପାଇଁ ଫିତା । ଚମଡା ବେଗ୍ ଦେହରେ ଚମ୍ପାରଙ୍ଗର ସରୁ ଫୁଲର ତାରକସି କାମ । ରିଷ୍ଟୱାଚ୍‌ପାଇଁ ସେଇ କଏର୍ ଫିତା କେତେ ଫେସନେବଲ୍ ନହେବ କହିଲୁ ।"

ରାଜୁ ମୁହଁରେ ଜହ୍ନ ଆଲୁଅ ପଡି ଚହଟୁଥାଏ । ସେ ମୋ' ହାତଟାକୁ ଚପିଧରି ଖୁବ୍ ଜୋର୍‌ରେ କିଛି ସମୟ ଝାଙ୍କିଲା । ମୁଁ ବି ମୋ' ନିଜ କଥାରେ ମସ୍‌ଗୁଲ୍ ହୋଇ ଉଠିଥିଲି ।

"ହଇବେ, ତୁ ତ ଗୋଟାଏ ଏକ୍‌ସପାର୍ଟ ଭଳି କହୁଛୁ! ତୁ' କ'ଣ ଏ ବିଷୟରେ ରିସର୍ଚ୍ଚ ଆଦି କରିଛୁ କି ?"

"କରି ନାହିଁ, କରିବି । ତୁ ଆଗ ଜମି ଦେଖା, ସେଥିରେ ଯାହା ପୁଞ୍ଜି ଅଛି ତାକୁ ନେଇ ଆଗ ଦଶ-ପନ୍ଦର ହଜାର ନଡିଆ ପକେଇବା । ଏବେ ଦଶ-ପନ୍ଦର ହଜାର ଟଙ୍କାରୁ ଅଧିକ ଖର୍ଚ୍ଚ ଲାଗିବ ନାହିଁ । ସେଇଠି ଗୋଟେ ଛୋଟ ଚଳିଘର ହବ । ତା' ଚାରିପଟେ କିଛି ଯୁଇ, ଗଜଦନ୍ତ, ହେନା ଗଛ ଲାଗିବ । ବାସ୍ନା ନଥିବା ଫୁଲକୁ ମୁଁ ଫୁଲ ତଳେ ମଣେ ନାହିଁ । ସେଇ ଟୁଙ୍ଗି ଘରେ ବସି ଦିନ ପନ୍ଦରଟାରେ ତୋ' ପାଇଁ ଯେଉଁ ରିସର୍ଚ୍ଚ ଥେସିସ ଦେଇଦେବି, ଏ ହାରାମି ସମସ୍ତେ ଦେଖି ଥ' ହେଇଯିବେ ।"

"ଆମେ କ'ଣ ଖାଲି କତା ପାଇଁ ନଡିଆ ଚାଷ କରିବା ନା ?" ଏଇ ହେଲା ରାଜୁର ବୋକାମି, ଯୋଉଥିପାଇଁ ମୁଁ ଚିଡେ ଏବଂ ତାକୁ ଭଲ ବି ପାଏ ।

"ତୁ'ଟା ଗୋଟାଏ ସ୍ଲେଜ ଗାଡି – ଧକ୍କା ଲଗେଇଲେ ଘୁଞ୍ଚିବୁ – ନ ହେଲେ ଯୋଉଠି ସେଇଠି । କତାକୁ ଭେଦି ଆଉ ଆଗେଇ ପାରୁନୁ ?" ଶୁଣ, ମୁଁ କତା ବିଷୟରେ ବଖାଣୁଥିଲି ଏଇଥିପାଇଁ ଯେ ସେଇଟା ନଡିଆର ସବୁଠୁ ଅଲୋଡା ଅଂଶ । ତାକୁ ନେଇ ମଧ ଆମେ ଗୋଟାଏ ଧମାକା ସୃଷ୍ଟି କରିନେଇପାରିବା ।

...ଏ ଗଛଟାର ମୂଳରୁ ଚୂଳଯାଏଁ ଲକ୍ଷ୍ମୀ । ସେଇଥିପାଇଁ ଯାକୁ ବୋଧେ ଶ୍ରୀଫଳ କହୁଛନ୍ତି । ନଡିଆ କୋରିଲା ପରେ ଘିଅ ନଡିଆ ଅଲଗା ତେଲପାଇଁ ରଖାଯିବ, ବାକି ନଡିଆରୁ କ୍ଷୀର ଚିପୁଡି ତାକୁ ଗୁଣ୍ଡକରିଦିଆଯିବ । ଏ ଜନ୍ତୁ କ୍ଷୀରଗୁଣ୍ଡ ଅପେକ୍ଷା ନଡିଆ କ୍ଷୀର ଗୁଣ୍ଡ ଦଶଗୁଣ ଅଧିକ ମିଠା ପଡିବ । ଲୋକେ ସ୍ୱାଦ ପାଇଁ ତାକୁହିଁ ବେଶୀ ପସନ୍ଦ କରିବେ । ସଢେଇ ଗୁଡାକରେ ତ' ଅନେକ କିଛି ହୋଇପାରିବ । ପାତଳ ସଢେଇରୁ ବଢିଆ କାନଫୁଲ, ମୁଦି, ଇଅରିଂ; ମୋଟା ସଢେଇରୁ ବଳା, ଚୁଲି, ଟାଇପିନ୍, ଏମିତିକି ମାଇକିନାଙ୍କ ଚିପା ବି ଗଢାଯାଇପାରେ । ସେଥିପାଇଁ ବେଶି କିଛି କଷ୍ଟ ନାହିଁ । ସାଧାରଣ କଟା ଛଟା ପାଲିସକରା ମେସିନ୍‌ଟିଏ ଆଉ ଗୋଟାଏ ଆର୍ଟିଷ୍ଟର ମଗଜ ହେଲେ ହେଇଗଲା । ଏମିତି ଏମିତି ନଡିଆ ଗଛ, ତା' ଖଡିକାକୁ ନେଇ ନାନା କଥା ଗଢାଯାଇପାରେ... କହିବୁ ଯଦି ମୁଁ ସେଥିରେ ସୁନାର ନାଆ, ରୂପାର ଆହୁଲା କରି ତତେ ଅସୁମାରି ସମ୍ପତ୍ତିର ମାଲିକ, ଦେଶବିଦେଶରେ ବିଖ୍ୟାତ ସାଧବପୁଅ କରିଦେଇପାରେ ।

"ବ୍ରାଭୋ !!" ସେ ମୋତେ କୁଣ୍ଢେଇ ଧରି ନାଚିଲା । ତାକୁ ଲାଗିଲା ବୋଧେ ଆମେ ସେଇ ଲକ୍ଷେ ନଡିଆର ସପ୍ନ ବଗିଚାରେ ସତକୁସତ ବିଚରଣ କରୁଛୁ । ମୁଁ ବି କିଛି ମାତ୍ରାରେ ମୋ' ନିଜ ବର୍ଣ୍ଣନାରେ ମୁଗ୍ଧ ହୋଇଯାଇଥିଲି । ବିଶ୍ୱାସ କରିଯାଇଥିଲି ଯେ ସେ ସବୁ ହାତପାଆନ୍ତି ଫଳ – ସାମାନ୍ୟ ଉହୁଙ୍କିଲେ ତୋଳିହେବ । ରାଜୁ ହେବ ମୋର ପାର୍ଟନର୍ । ମୁଁ ସପ୍ନର ସୌଦାଗର । ଚାହିଁଲେ ହୀରା ଜହରତ୍‌ରେ ମଣ୍ଡିଦେବି ଯେକୌଣସି ପୃଥିବୀକୁ – ମାତ୍ର ଗୋଟାଏ ମୁହୂର୍ତ୍ତରେ ।

ପେଣ୍ଡୁଲାଏ କୋରା ନଡିଆ ଭଳି ଚତୁର୍ଦ୍ଦଶୀର ଜହ୍ନକୁ ଆମେ ସେଦିନ ସନ୍ଧ୍ୟାରେ ଖୁବ୍ ଚିପୁଡି ପିଇଯାଇଥିଲୁ ଛଣା ସପ୍ନର ଅମୃତ ।

ଏକାଠି ହୋଟେଲରେ ଚିଙ୍ଗୁଡିଝୋଳ ଭାତ ଖାଇଲୁ । ରାଜୁ ଆଖି ପର୍ଯ୍ୟନ୍ତ ବୁଡି ରହିଥାଏ

ଅନ୍ୟ ରାଜ୍ୟରେ । କଥା କହୁନଥାଏ ଜମା । ଚାହିଁଲେ ଜଣାଯାଉଥାଏ ଯେମିତି ନଡିଆ ବଗିଚାର କୋଠା ଛାତ ଉପରୁ ଅନେଇଚି । ...ମୁଁ ତାକୁ ଜୋର୍‌ରେ ଚିମୁଟିଦେଲି । ସେ ଚମକିପଡିଲା । ମୁଁ ହସିଦେଇ କହିଲି – ଆବେ, ଓହ୍ଲେଇଆ ସେଇଠୁ । ଆଉ ଦି'ପ୍ଲେଟ୍ ଚିଙ୍ଗୁଡି ମଗା । ଆଜି ଭାରି ଭୋକ ।

ରାଜୁ ଜମିଦାରିଆଘର ପିଲା । ଦୈବାତ୍ ମୋରି ଭଳି ତିନିଶହ ଟଙ୍କା ବେତନରେ ମୁଣ୍ଡ ଗଳେଇଦେଇଥାଏ । ତାକୁ ଚଳିବାପାଇଁ ପଇସା ଅଣ୍ଟେ ନାହିଁ । ଘରୁ ଦୁଇଶହ ମଗାଏ । ଅଥଚ ମୁଁ ଘରକୁ ଶହେ ପ୍ରତିମାସ ନପଠେଇଲେ ନଚଳେ । ଉଭୟେ ମାସକୁ ନବେ ଟଙ୍କା ଲେଖାଁ ଦେଇ ଅନ୍ନପୂର୍ଣ୍ଣା କାବିନ୍‌ରେ ମାସୁଆରି ଗରାଖ ହେଇ ଚଳୁଥାଉ ।

ହୋଟେଲ୍‌ରୁ ମୁହଁ ଧୋଇ ପାନଦୋକାନ ପାଖରେ ଠିଆହେଲାବେଳେ ସେ ମୋ' ହାତକୁ ଧରି ଚାହିଁଲା ।

"ଧନିଆ (ମୋ ନାଁ ଧନେଶ୍ୱର ବରାଳ), ତୁ ସତରେ ଗୋଟେ ଜିନିଅସ୍ । ଆଜି ଯାହାସବୁ କହିଲୁ ନା... ଶଳା... ମାଷ୍ଟର ପିସ୍... ଟିକିଏ ବୋଲି ଫାଙ୍କ ନାଇଁ କୋଉଠି । ସବୁ ଖାଲି ସଲିଡ୍ ନିଦା ଜିନିଷ । ଓ୍ୱଣ୍ଡରଫୁଲ୍ ! ମୁଁ କାଲି ଯାଉଚି ଗାଁକୁ ।"

ସେ ଗଲା ନାହିଁ – ଗଲି ମୁଁ ।

ବସାରେ ପହଞ୍ଚିଲାବେଳକୁ ଟେଲିଗ୍ରାମ୍... ଗାଁରେ ପହଞ୍ଚି ଦେଖିଲି ବାପାଙ୍କ କୋକେଇ ଉଠୁଚି...

ତା'ପରେ... ତା'ପରେ... ତା'ପରେ...

ବଡଭଉଣୀକୁ ଦେହସାରା ଲାଛି ତା' ଶ୍ୱଶୁର ଘରୁ ତଡିଦେଲା ।

ସବା ସାନଭାଇଟା ଚିକନ୍ ପକ୍‌ସରେ ଦିନ ସାତଟା ଭିତରେ ଚାଲିଗଲା ।

ଘରେ ମା' ପାଞ୍ଚ ଭାଇ-ଭଉଣୀ ଆଉ ଅଜସ୍ର ମଳିନ ଦୁଃଖ – ଚିରା ଲୁଗାରେ ଲୁଚିପାରୁନଥିବା, ଚୂନଛଡା କାନ୍ଥରେ ଆଢୁଆଳ ହୋଇପାରୁନଥିବା ମୋର ଅଠେଇଶ ବର୍ଷ ଜୀବନର ତନ୍ତୁ ଶିରାଉପଶିରାରେ ଜରିରହିଥିବା ନିଦାରୁଣ ଦୁଃଖ ।

ଚିତାଟାଏ ଜଳିଗଲେ ତା' ସାଙ୍ଗରେ ଆଉ ଗୁଡାଏ କ'ଣ ହୁତ୍ ହୁତ୍ ହୋଇ ଜଳିଯାଏ । ହାତର ଛାଞ୍ଚଟା ବି ରହେନାହିଁ । ତେଣିକି କିଛି ଗୁଣ୍ଡ ହାତକୁ ମାଟି କୁଣ୍ଡିରେ ଧରି ଗଙ୍ଗା ଯାଅ, ଗୟା ଯାଅ – ଜୁଇ ଜଳିବାର ଦାଗ ତୀର୍ଥଜଳରେ ଲିଭେ ନାହିଁ । ଜଳିଯାଇଥିବା ବଟାକୁ ଯୋଡି ମୁଣ୍ଡ ଉପରେ ଛାତଟିଏ ବନ୍ଧାଯାଇପାରେ ନାହିଁ ।

ଦେଢ ମାସ ଛୁଟି ସାରି ଲଣ୍ଡାମୁଣ୍ଡରେ ଅଧଇଞ୍ଚ ଗୁଢ ନେଇ ମୁଁ ଫେରିଆସି ଶୁଣିଲି ଯେ ରାଜୁକୁ ବଦଳିହୋଇଗଲା । ଆମେ ଏକାଠି ତିନିବର୍ଷ ବିତେଇଥିବାର ସ୍ମୃତି ରାସ୍ତା, ଗଳି, ପଡିଆ, ନଈକୂଳରେ ବିଛେଇହେଇପଡିଥିଲା ।

ରାଜୁ ପ୍ରତି ଦଶଦିନରେ ଗୋଟାଏ ଲେଖାଁ ଲମ୍ବା ଚିଠି ଲେଖିଲା – କିନ୍ତୁ ଆସିପାରିଲା

ନାହିଁ । କାହିଁ ପାରଳାଖେମୁଣ୍ଡି, କାହିଁ ବାରିପଦା । ସେଇଠି ସେ ଛଟପଟ ହେଉଥିବାର ମୁଁ ଅନୁଭବ କରୁଥାଏ । ଚିଠି ଲେଖାରେ ମୁଁ ସେମିତି ପାରଙ୍ଗମ ନୁହେଁ । କେବେ କେମିତି ଖଣ୍ଡେ ଲେଖିଦେଉଥାଏ । କାରଣ ଏଣେ ଗାଁରୁ ସବୁବେଳେ ଚିଠି ଆସୁଥାଏ । ସବୁ ଚିଠରେ ପଥର ମୁହଁଟାଏ ନିଷ୍କଳଙ୍କ ଚାହିଁଥାଏ ତା'ର ଉଦାସ ଭଙ୍ଗୀରେ, ସତେବା ଗୋଟାଏ ଅସହାୟ ଟାଣପଣ । ଖରା, ବର୍ଷା, ଶୀତକୁ ଫୁଙ୍ଗୁଳା ଦେହରେ ପାରି ହୋଇଯିବାକୁ ଗୋଟାଏ ଅନୁଚ୍ଚାରିତ ସଂକଳ୍ପ ।

ମୋ ତଳଭାଇ କଲେଜରେ ନାଁ ଲେଖେଇଲା । ସେଥିପାଇଁ ମା' ତା' ବେକରୁ ସୁନାଚେନ୍‌ଟି ବିକିଦେଲା । ଏ ମାସ ହାତଉଧାର ଦେଢଶ' ଟଙ୍କା ବୋଲି ସାନଭଉଣୀ ହାତରେ ଚିଠିଦେଇଥିଲା ।

ମୁଁ ସେଦିନ ସନ୍ଧ୍ୟାରେ ନଈକୂଳରେ ଏକୁଟିଆ ବସି ଗୋଡି ଫୋପାଡୁଥିଲି ତଳକୁ । ମୋ' ଅଜାଣତରେ କେତେବେଳେ ମୁଁ ରାଜୁ ସାଙ୍ଗରେ ନଡିଆବଗିଚାକୁ ପଶିଯାଇଥିଲି । ପତ୍ରଗହଳରେ ପବନ ମର୍ମରୁଥିଲା । ଜହ୍ନ ଉଇଁଥିଲା ସବୁଜ ସମୁଦ୍ର ଉପରେ । ଧଳା ଫର୍ ଫର୍ ସିଲ୍‌କ ଜାମାରେ ରାଜୁ ପହଁରୁଥିଲା । କ'ଣ ସବୁ କହୁଥିଲା ଆଙ୍ଗୁଠି ଦେଖେଇ । କୋଠାମାନ ଢଳ ଢଳ ଦେଖାଯାଉଥିଲେ । ନାଲି ପଥରବନ୍ଧା ପଦ୍ମପୋଖରୀରେ ସୁନା ମାଛ ପହଁରୁଥିଲେ ଅସଂଖ୍ୟ । ଗୋଟିଏ ଗୋଡି ଉପରେ ଟିପ ଅଟକିଯାଇଥିଲା । ବୁକୁରେ ଲମ୍ବା ପବନଟାଏ ଅଟକିଯାଇଥିଲା । ...ଆଖିରୁ ଓହ୍ଲେଇଗଲା ଅନ୍ୟ ଏକ ପୃଥିବୀ । ଏ ପୃଥିବୀ ଉପରକୁ ଅନ୍ଧାର ନଇଁଆସିଥିଲା ଅସତର୍କ ।

ରାତିରେ ମୁଁ ଚିଠିଲେଖିଲି :

"ରାଜୁ, ତୁ ମତେ ବାରମ୍ବାର ଡାକିବା ସତ୍ତ୍ୱେ ମୁଁ ଯାଇପାରୁନାହିଁ । ଚିଲିକା ପାଖରେ ତୋ' ଜମି ନଦେଖିଲେ ବି ମୁଁ ଜାଣିପାରୁଛି, ସେଇଠି ଏସବୁ ହୋଇପାରିବ । ଖୁବ୍ ବଢିଆ ହୋଇପାରିବ । ଏଇ ଆଷାଢକୁ କିଛି ନଡିଆ ଲଗେଇବାର ଯୋଜନା କରିବା କି ? ମୁଁ କିନ୍ତୁ ଏ ଅବସ୍ଥାରେ ତତେ କିଛି ସାହାଯ୍ୟ କରିପାରିବି ନାହିଁ । ସେମିତି ଆଗରୁ ଯୋଜନା ନକଲେ ଏଠୁ ଘୁଞ୍ଚିବା ମଧ କଷ୍ଟ ।"

ରାଜୁ ମୋ' ପାଖକୁ ରାସ୍ତାଖର୍ଚ୍ଚ ଶହେ ଟଙ୍କା ପଠେଇଥିଲା – ଲେଖିଥିଲା ଶ୍ରୀପଞ୍ଚମୀର ପାଞ୍ଚ ଦିନ ଆଗରୁ ପହଞ୍ଚିବାକୁ – ଜାଗା ଜମି ଦେଖିଲା ପରେ ଆଷାଢକୁ ଅନୁକୂଳ । ମୁଁ ପ୍ରସ୍ତୁତ ହୋଇଛି କି ନାହିଁ ଘରୁ ଆସି ଚିଠି ପହଞ୍ଚିଲା ଯେ ସାନଭଉଣୀକୁ ଗୋଟାଏ ବରପକ୍ଷ ଦେଖିବାକୁ ଆସିବ । ବାନ୍ଧିଥିବା ବେଗ୍ ଖଣ୍ଡିକ ଧରି, ରାଜୁର ରାସ୍ତାଖର୍ଚ୍ଚ ନେଇ ମୁଁ ଗାଁକୁ ଚାଲିଗଲି ଅଗତ୍ୟା । ସେଇଠି ହିସାବ ଫର୍ଦ୍ଦ ଏପାଖ ସେପାଖ ମିଶିଲା ନାହିଁ । ସେମାନେ ଅନ୍ୟ ଗହୀର ପାଣିରେ ଜାଲ ଫିଙ୍ଗିବାକୁ ଚାଲିଗଲେ । ...ସେମିତି ହେବ ବୋଲି ମୁଁ ଆଗରୁ ହିଁ ଜାଣିଥିଲି । ସମସ୍ତେ ମିଶି ବଳକା ଚେନାଚୂର ଚୋବେଇଲୁ । ମୁଁ ଉଠି ବାହାରକୁ ଚାଲିଗଲି । ମା'ର କାନ୍ଦ କାନ୍ଦ ମୁହଁକୁ ଚାହିଁବା ସହଜ ହେଲାନାହିଁ ।

ଜମି ଦେଖା ନୋହିଲା । ରାଜୁ ଦୁଇ ତିନିଖଣ୍ଡ ଚିଠି ଦେଲା । ଗୋଟାକରେ ତା'ର ବିବାହ ପ୍ରସ୍ତାବ ପଡିଚି ଲେଖିଥିଲା – ତା'ର ଆଦୌ ମନନାହିଁ ବୋଲି ମଧ ଲେଖିଥିଲା । କିନ୍ତୁ ଯାହ ହେବାର ଥିଲା ହୋଇଗଲା ।

ମୁଁ ତା' ବିଭାଘରକୁ ଯାଇଥିଲି । ସେଇଠି ରାଜୁର ବଡଶାଳା ସାଙ୍ଗେ ସାକ୍ଷାତ୍ ପରିଚୟ ହୋଇଥିଲା ।

"ହଲୋ, ଆପଣ ତା'ହେଲେ ଧନେଶ୍ୱର ବରାଳ! ଆଚ୍ଛା! ନାଇସ୍ ମିଟିଂ ୟୁ । ମୁଁ କଲିକତାରେ ଥାଏ । ସେଇଠି ମୋର ବିଜିନେସ୍ । ଏଇ ରାଜୁ ଆପଣଙ୍କ ପ୍ଲାନ୍ ବିଷୟରେ କହୁଥିଲା । ଆପଣଙ୍କର ଆଇଡିଆ ଅଛି । ଆଉ ଏବେ କ'ଣ ସବୁ ଭାବିଚନ୍ତି ? କାହା ସାଙ୍ଗରେ କନ୍‌ସଲ୍‌ଟ କରିଥିଲେ ଏସବୁ ?"

"ନାଇଁ ଭାଇ, ତମେ ଜାଣନା, ଧନିଆ ଗୋଟାଏ ଜିନିଅସ୍ । ସେ କାହାକୁ କନ୍‌ସଲ୍‌ଟ କରିବା ଦରକାର ନାହିଁ ।"

ଚୁରୁଟ୍ ଧୂଆଁ ପଛଆଡୁ ନିଶଚେକା ହସ... କୁଞ୍ଚ କୁଞ୍ଚ ଆଖିରେ ଅବିଶ୍ୱାସ, କିଛି ବିସ୍ମୟ, କିଛି କୌତୂହଳ ।

"ଆଇ ସି!" ଆସ୍ତେ ପାଇଜାମା, ହାଲୁକା ଚପଲ ଏବଂ ସୁନା ବୋତାମ୍‌ଲଗା ସିଲ୍କ ପଞ୍ଜାବି ଆମକୁ ପଛ କରି ଚାଲିଗଲା ।

"ତୁ କିଛି ଚିନ୍ତା କରନା ଧନିଆଁ । ଇଏ ହଉଚନ୍ତି ମୋ' ଶଶୁରଙ୍କର ପ୍ରଥମ ସ୍ତ୍ରୀଙ୍କ ପୁଅ ସମରେଶ ବଳବନ୍ତ ରାଏ । ତାଙ୍କର ଏଠି ଜମିସବୁ ପଡିରହିଚି । ତାଙ୍କୁ ଆମ ଯୋଜନାରେ ଯୋଡିନବା ।" ମୋତେ ଆଶ୍ୱାସିଲା ପରି ପୁଣି କ'ଣ ସବୁ ଜମିଜମା କଥା କହିଲା । ଜଣାଗଲା ବ୍ୟାପରଟା ସହଜ ନୁହେଁ । କିନ୍ତୁ ବିଭାଘରଟି ଖୁବ୍ ସହଜରେ, ସୁରୁଖୁରୁରେ ହେଇଗଲା । ପରେ ଶୁଣିଲି ଯେ ଗାଁମୁଣ୍ଡରେ ଖଣ୍ଡେ ଡିହ ତାକୁ ଯୌତୁକ ମିଳିଛି । ପାଖାପାଖି ଗୋଟିଏ ଏକର । ସେ ହମ୍ ହମ୍ ହଉଚି ସେଇଠି କ'ଣଟାଏ କରିପକେଇବ ।

ଆମ ଘରେ କଥା ଅଲଗା । ବଡଭଉଣୀ ଚାହିଁଲା ଚାକିରି କରିବାକୁ । ବାବୁମାନଙ୍କୁ କିଣିବାକୁ ପଇସା ନଥିଲା । ସେ ଚାହିଁଲା ଗାଁରେ ଶଙ୍ଖାସିନ୍ଦୂର ଦୋକାନ ଦବାକୁ । ପଇସା ନଥିଲା । ଯାହା କରିବାକୁ ହେଲେ କଥା ବୁଲି ବୁଲି ସେଇ ଗୋଟିଏ ମାତ୍ର ଅସାମର୍ଥ୍ୟ ଉପରେ ଭାଙ୍ଗି ପଡୁଥିଲା ।

ଲକ୍ଷେ ନଡିଆର ସପ୍ନ ଶିଖଆଡୁ ମଉଳିଆସୁଥିଲା – ତାକୁ ବଞ୍ଚେଇ ରଖିବା ସମ୍ଭବ ନଥିଲା । ରାଜୁ ଚିଠି ଲେଖିଥିଲା – ତା' ବାପା ଇଞ୍ଚେ ଜମି ଏଥିରେ ଖଟେଇବେ ନାହିଁ । ଧାନଜମିରେ କିଏ କ'ଣ ନଡିଆ ଲଗାଏ ? – ଶଶୁର ଘର ହଠାତ୍ ଫାଶରେ ମୁଣ୍ଡ ଗଳଉନାହାନ୍ତି । ଏତେ ଜମି କେମିତି ଲଗେଇଦେବେ ? କାହା ନାଆଁରେ ? କେଉଁ ଭରସାରେ ?

ରାଜୁ କିନ୍ତୁ ବିଶ୍ୱାସରେ ଅଟଳ । ଅଲବତ୍ ହବ । ନହେଇ ଯିବ କୁଆଡେ ? ସେଥିପାଇଁ ସେ ତା'ର ଡିହଟାକୁ ପାଚେରି ବେଢେଇଦେବ ବୋଲି ମୋତେ ଲେଖିଥିଲୁ । ସେଇ ଡିହ ଖଣ୍ଡ ହେବ ସମଗ୍ର ଯୋଜନାର ଆଦିବିନ୍ଦୁ ଇତ୍ୟାଦି ଇତ୍ୟାଦି... । ରାଜୁ ବି ବେଳେ ବେଳେ ମୋରି ଭଳି ସାହିତ୍ୟ ଲେଖେ । ସେଥିରେ ଖୁବ୍ ଉତ୍ସାହିତ ବୋଧକରେ । ସେଇଟା ତା'ର ଆଉ ଏକ ବେକୁବ୍‌ପଣ – ଯେଉଁଥିପାଇଁ ମୁଁ ତାକୁ ଭଲପାଏ ।

ତା' ଚିଠି ପଢ଼ି ମୁଁ ସାମାନ୍ୟ ହସିଥିଲି । ...ଏତେ ବଡ ସପ୍ନକୁ ତୁ କେତେବଡ ପାଚେରି ପକେଇ ବେଢ଼ିବାକୁ ଚାହୁଁଚୁବେ, ବେକୁବ୍ ? ହଉ ଆରମ୍ଭ ହେଇଯାଉ ଗୋଟାଏ କିଛି – ତା'ପରେ ଦେଖିବା ।

ଦେଖିବା ଆଉ କ'ଣ ? ଅନେକ ଭାରାକ୍ରାନ୍ତ ଦିନ, ରାତି ଓ ଦୁଃଖକୁ ଏକାଠିକରି ସେଇବର୍ଷ ଶୀତକୁ ମା' ଚାଲିଗଲା । ମୋ' ଭିତରେ ଜମାଟ ବାନ୍ଧି ରହିଥିବା ଲୁଣିପାଣିର ସମୁଦ୍ରକୁ ତରଳିବା ପାଇଁ ବେଳ ନଥିଲା । ଅନ୍ତ୍ୟେଷ୍ଟି ସରିଲା । ଦଶାତୁଠରେ ମହାତୃଷା ନିବାରଣପାଇଁ ଜଳ ତିଳତର୍ପଣ କଲାବେଳେ ମୁଁ ଆତଙ୍କିତ ବୋଧକଲି । ଓଃ, ମଣିଷର ତୃଷା ସତେ ମେଣ୍ଟିବାର ନୁହେଁ ! ମରିଗଲା ପରେ ବି ନୁହେଁ । ମୁଁ ଅସହାୟ ଭାବରେ ଚାହିଁଥିଲି ସାନଭାଇ ଆଉ ଭଉଣୀଙ୍କ ମୁହଁକୁ । ...ସେମାନେ ଚାହିଁଥିଲେ ଆତଙ୍କିତ ହେଲାପରି । ଏଣିକି କ'ଣ ହବ କେଜାଣି ?

ରାଜୁ ଗତ ସପ୍ତାହରେ ଲେଖିଥିଲା । ସମରେଶ କଲିକତାରୁ ତା' ବାପ ନାଁରେ ଜମିବାଡି ଦଖଲ ନେଇ ନାଲିସ୍ କରିଛି । ତା'ର ଯୁକ୍ତି ଯେ ତା'ର ସାବତ-ମା' ବିବାହିତା ନୁହେଁ, ରକ୍ଷିତା – ଏଣୁ ରାଜୁର ସ୍ତ୍ରୀ ସମେତ ଆଉ ତିନି ଭାଇଭଉଣୀ ସମସ୍ତେ ଅବୈଧ । ...କାହାରି ପୈତୃକ ସମ୍ପତ୍ତି ଉପରେ ଅଧିକାର ନାହିଁ । ରାଜୁକୁ ମିଳିଥିବା ଡିହଖଣ୍ଡକ ମଧ ତା'ର ପ୍ରାପ୍ୟ ନୁହେଁ ।

ଇସ୍... ରାଜୁ ଯେ ତା'ର ସମସ୍ତ ସଞ୍ଚୟ ଖର୍ଚ୍ଚ କରିଦେଇଛି ପାଚେରି ବେଢେଇବାରେ !

ଆଜି ଆପଣମାନେ ମୋତେ ଡାକିଆଣିଛନ୍ତି ସମରେଶବାବୁଙ୍କୁ ତାଙ୍କ ନଡିଆ ବଗିଚାର ଯୋଜନା ବିଷୟରେ ପରାମର୍ଶ ଦେବାପାଇଁ । ଏଇ ପାଚେରି ପାଖେର ଠିଆହୋଇ ସାରା ଯୋଜନା ବଖାଣିବାକୁ କହୁଛନ୍ତି । ସମରେଶବାବୁ ଆସି ପହଞ୍ଚିବେ । ତାଙ୍କୁ ଯାହା କହିବାର କଥା ମୁଁ କହିବି । ଆପଣ କିନ୍ତୁ ସେ କବାଟ ଫିଟେଇବାକୁ ଚେଷ୍ଟା କରନ୍ତୁ ନାହିଁ । ରାଜୁକୁ ଡକେଇଚନ୍ତି ପରା । ସେ ଆସୁ । ସବୁ ଏକାଥରେ ଉଭୟେ ମିଶି ହସ୍ତାନ୍ତର କରିଦେବୁ । ...ହାତୀପରି ସପ୍ନକୁ ଶିକୁଳିରେ ବାନ୍ଧିବାପାଇଁ ହାତୀଶାଳର ପାଚେରି ଆଉ ଦୁଆର ସେ କରିଥିଲା । ଏଇବାଟେ ବୋଝେଇ ଲିଲାଣ୍ଡ ଟ୍ରକ୍ ଯିବାଆସିବାପାଇଁ ଯୋଜନା କରିଥିଲା । ବେକୁବ୍‌ଟାଏ ତ' ପ୍ରାୟ ମୋରି ଭଳି ! ଏବେ ବି ଭଙ୍ଗା ଦର୍ପଣରେ ନିଜ ମୁହଁକୁ ପାଖୁଡା ପାଖୁଡା ମେଲିଯିବାର ଦେଖି ସେ ଖୁସିହେଉଛି । ଅଭଙ୍ଗା ଦର୍ପଣରେ ମୁହଁ ଦିନକୁ ଦିନ ଶୀର୍ଣ୍ଣ ହୋଇଯିବାର ଦେଖିଲେ ବୋଧେ ସହିପାରୁନାହିଁ । ସେଥିପାଇଁ ଭଙ୍ଗାଦର୍ପଣଟାକୁ ଦେଖୁଚି... କେଡେ ଅଶୁଭ କଥା !

"ଆପଣ ସେ ସନ୍ଧା ବାଟେ କ'ଣ ଦେଖୁଚନ୍ତି ?"

"ଭିତରଯାକ ଖାଲି ଅରମା ଲଟାବୁଦା ମାଡିଗଲାଣି । ସେ ଖଜୁରୀ ବୁଦା ପରି ହଳଦିଆ ପତ୍ର ଦି'ଚାରିଟା ଶୁଖିଲା ମଲା ବାହୁଙ୍ଗା ବୋଧହୁଏ ନଡିଆଗଛଟାଏ । ସେମିତି କାହିଁକି ହେଇଚି ସେଇଟା ?"

"ଯତ୍ନ ଅଭାବରୁ ।"

"ପାଣି ବୋଧହୁଏ ପାଇନାହିଁ ।"

"ଉହୁଁ! ସେସବୁ କିଛି ନୁହେଁ। ତା' ଚେରରେ ଉଇ ଲାଗି ସବୁ କାଟିପକେଇଲେଣି – ନା କ'ଣ କହୁଛନ୍ତି ଆପଣ ?"

ମୁଁ ଦାନ୍ତ ଜାକି ନିଜକୁ ସମ୍ଭାଳି ଠିଆରହିଛି। ମୋର ସବୁ ଡାଳ ଶୁଖିଲା। ମୋ' ଚେରକୁ ବେଢି ଅସଂଖ୍ୟ ଉଇ। ଭାବୁଛି ରାଜୁକୁ ବି କହିବି ସେ ସମରେଶବାବୁଙ୍କ ଫାର୍ମରେ ମୋ' ଭଳି ସାହାଯ୍ୟ କରୁ। ହେଉ ଏବେ ସମରେଶ ୟାର ମାଲିକ। ଏଇଠି ରହି ଆପଣା ସପ୍ନକୁ ତ ସାକାର କରିହେବ!

ସେତିକି କ'ଣ କମ୍ କଥା!



# ଗୋପନୀୟମ୍

ମତେ ଦେଖି ସେ ସିଗ୍ରେଟ୍ ମୁଣ୍ଡିଟାକୁ ପାଟିରୁ କାଢ଼ି ଫୋପାଡ଼ିଲା ପରେ ଧୂଆଁ ଛାଡ଼ି କହିଲେ, "କିରେ ଭଲଅଛୁ?"

ତା'ପରେ ପଛକୁ ଲେଉଟି ଚାହିଁଲେ । ମୁଣ୍ଡବୋଝିଆ କୁଲିଟିଏ ଦି'ଟା ମଧ୍ୟମ ଧରଣର ସୁଟ୍‌କେଶ୍ ଏବଂ ଯୋଡ଼ାଏ ବେଗ୍ ଧରି ଆମ ଦୁଆରେ ଟଳମଳ ହୋଇ ଠିଆହେଲା ।

"ଆରେ ଠିଆହେଲୁ କାହିଁକି – ଭିତରକୁ ଆଣ..."

ଗୋଟିଏ ଚୌକିରେ ବସି ଖୁବ୍ ଗୋଡ଼ହାତ ଓସାରି କାନ୍ଥବାଡ଼ ଛାତକୁ ଚାହିଁ କହିଲେ – "ଆଃ ! ତୋ' ବାପା ତ ଏଇନେ ପୂଜାରେ ବସିଥିବ । ସାଢ଼େ ଛ'ରୁ ଆଠ୍ ! ଲେମ୍ବୁପଣା ପିଇ ବସିଥିବ । ଆସିଲେ ଖାଇବ ଖଇ ଆଉ କ୍ଷୀର । ଗୋଟାଏ ଯନ୍ତ୍ର ତ, ଟିକିଏ ଏପଟ ସେପଟ ନାଇଁ । ତମ ଘରେ ଆସ୍‌ଟ୍ରେ ନାହିଁ ମୁଁ ଜାଣେ । ତେବେ ସେ ସାନ ଷ୍ଟୁଲଟା ମୋ' ପାଖରେ ଥୁଅ । ଆଉ ସେ କୁଲିକୁ ତୁଟେଇ ଦେଇଛି ଚାରିଟଙ୍କା, ହେଇ ନେ ତା'ଠୁ ବାକି ପଇସା ନେଇଆଣ ।"

ମୁଁ ଆଶ୍ଚର୍ଯ୍ୟ ହୋଇ ତାକୁ ଚାହିଁଥାଏ । ଏଭଳି ଏକ ଅଚାନକ ଘଟଣାରେ ମୋ' ଭିତର ବାହାର ସ୍ତବ୍ଧ ହୋଇଯାଇଥାଏ । କିଏ ସେ ମାନ୍ୟ ଭଦ୍ରଲୋକ ? ମୁଁ ତ' ତାଙ୍କୁ କସ୍ମିନ୍‌କାଳେ ଦେଖି ନଥିଲି ? କିନ୍ତୁ ଆମ ପରିବାର ସହିତ ଏତେ ଘନିଷ୍ଠତା, ଏତେ ନିବିଡ଼ ସମ୍ପର୍କ, ଏତେ ଆପଣାପଣ, ଏତେ ସହଜ ଆତ୍ମୀୟତା, ମୋତେ ଚକିତ କରିଦେଉଥାଏ ।

ଭଦ୍ରଲୋକଙ୍କୁ ବୟସ ପଚାଶ ପାଖାପାଖି । ତାଙ୍କ ଗୋରାମୁହଁ, ଠିଆନାକ ଏବଂ ବଡ଼ ବଡ଼ ଆଖିକୁ ଫରାସୀ ଦାଢ଼ିନିଶ ଭାରି ଚମତ୍କାର ମାନୁଥାଏ । ମୁଣ୍ଡବାଳ ଟେରିକଟା, ଧଳା କଳା ମିଶା; କିନ୍ତୁ ବେଶ୍ ସଂଯତ, ସୁବିନ୍ୟସ୍ତ । ପୋଷାକ ବି ଖୁବ୍ ରୁଚିପୂର୍ଣ୍ଣ । ଗାଢ଼ ଆକାଶୀ ରଙ୍ଗର ପୂରାହାତ ସାର୍ଟ । ତା' ସିଲେଇ କଳା ଏବଂ ପାଲିସ୍ ଦୃଷ୍ଟିରୁ ବିଦେଶୀ, ବିଦେଶୀ ପାଉଁଶିଆ ରଙ୍ଗର ପେଣ୍ଟ । ଖୁବ୍ ଦାମୀ ଏବଂ ସୁନ୍ଦର ଜୋତା ଆଉ ମୋଜା । ବାଁ ହାତ ଆଙ୍ଗୁଠିରେ ଗନ୍‌ମେଟାଲ ବସିଥିବା

ମାନିଲା ଭଳି ଗୋଟିଏ ସୁନାମୁଦି ।

ଦେଖିଲାମାତ୍ରେ ଯେ କେହି ଖୁସି ହେଇଯିବ । ସେ ଚେହେରା ମୋତେ ବଶୀଭୂତ କରି ସାରିଥିଲା । ମୁଁ ପ୍ରାୟ ମୁଗ୍ଧ ହୋଇ ସାମ୍ନାରେ ଠିଆହେଇ ବେକୁବ୍‌ଭଳି ତାଙ୍କୁ ଚାହିଁ ରହିଥିଲି ।

"କିରେ ଠିଆ କ'ଣ ହେଇଚୁ ? ବସୁନୁ... । ନା' ଘରେ ଖବର ଦେଇ ଆସିବୁ ମୁଁ ଆସିଚି ବୋଲି ? ମୋର ବର୍ତ୍ତମାନ କିଛି ଦର୍କାର ନାଇଁ । ମୁଁ ସକାଳୁ ଚା ଖାଇସାରିଚି । କିଛି ସମୟ ପରେ ଆଉ କପେ ଚା ହେଲେ ନିତ୍ୟକର୍ମ ଆରମ୍ଭ ହବ । ମୁଁ ତୋ' ବାପାଭଳି ଚନ୍ଦ୍ରେଇଙ୍କ ସାଙ୍ଗେ ବାଦ କରି ପାହାନ୍ତିଆରୁ ଉଠେନାହିଁ କି ବଡିଭୋରରୁ ନିଜକୁ ଦଣ୍ଡ ଦେଲାପରି ଥଣ୍ଡାପାଣିରେ ଗାଧାଏନାହିଁ । ସେଥିରେ ଯେ ପୁଣ୍ୟ ଗୋଟାଉଛନ୍ତି ଗୋଟାନ୍ତୁ – ମୋର ସେଥିରେ ଜମା ବିଶ୍ୱାସ ନାହିଁ । ତୋ' ସାନଝିଅର ଦାନ୍ତଉଠା ଝାଡା ହଉଥିଲା । ତୁ ସେଥିରେ ମହାବ୍ୟସ୍ତହେଇ ରାତିସାରା ଶୋଇଲୁନାହିଁ । ମୁଁ ଦେଖୁଛି ତୁ ତୋ' ବାପଭଳି ମହା ଛେରକୁରା । ଅଳ୍ପ କଥାରେ ଏମିତି ଘାବରଉଚୁ କାହିଁକି ?"

ମୁଁ ଏ କଥାରେ ଛାନିଆ ହେଇଯାଉଥାଏ । ଘରର ଏତେ କଥା ସେ ଜାଣିଲେ କେମିତି ? ଅଥଚ ମୁଁ ତାଙ୍କୁ କେବେହେଲେ ଦେଖି ନାହିଁ । କି ଆଶ୍ଚର୍ଯ୍ୟ ! ଘରେ ଜଣେ ନ ରହିଲେ ତ' ଏସବୁ କଥା ଜାଣିବ ନାହିଁ । କିନ୍ତୁ ମୋର କୌତୂହଳ ପ୍ରକାଶ କରିବାର ଧୃଷ୍ଟତା ନଥାଏ । ତାଙ୍କର ସେ ଗଭୀର ଆପଣାପଣରେ ମୁଁ ପରାସ୍ତ ବୋଧ କରୁଥାଏ ଏବଂ ମୋ' ଜିଭ ଅଗରେ ଝୁଲି ରହିଥାଏ ସେ ସରଳ ଅଥଚ ମାରାତ୍ମକ ପ୍ରଶ୍ନ – "ଆପଣ କିଏ ?" ମୋ' ଶିରାପ୍ରଶିରା ଟଣକୁଥାଏ ସେ ପ୍ରଶ୍ନର ଉତ୍ତାପ ଏବଂ ଓଜନରେ । ଭାରି ଅସହ୍ୟ ହେଉଥାଏ । ମନେହେଉଥାଏ ଯେ ମୁଁ ପଚାରିବା ଆଗରୁ ସେ ପ୍ରଶ୍ନ ବଳେ ମୋତେ ବିଦୀର୍ଣ୍ଣ କରି ପଚାରି ହେଇଯିବ । କିନ୍ତୁ ତାକୁ ଲୁହାବାଡ ଭିତରେ ଲୁହାଜଞ୍ଜିର ପକେଇ ମୁଁ ସମ୍ଭାଳିରଖିଥାଏ ।

ସବୁ ସତ୍ତ୍ୱେ ମୁଁ ଲକ୍ଷ୍ୟକରୁଥାଏ ଯେ ସେ ମଧ୍ୟ କୌଣସି ଗୋଟାଏ ଉଦ୍‌ବେଗକୁ ବହୁକଷ୍ଟରେ ଚାପିରଖିଥା'ନ୍ତି । ସିଗ୍ରେଟ୍ ଟାଣିବା ଢଙ୍ଗରୁ ମୋଡ ବଦଳ କରିବା, ଛାଟିବା ଢଙ୍ଗରୁ ଅନୁମାନ କରିହେଉଥାଏ । ମୁଁ କିଛି ସମୟ ପରେ ଲକ୍ଷ୍ୟ କଲି ଯେ ତାଙ୍କ କପାଳରେ ଚିକ୍ ଚିକ୍ ଝାଳ ଜକେଇଲା । ମୁଁ ହୁଏତ କହିଥା'ନ୍ତି – କିନ୍ତୁ ସେ ପୁଣି ଆରମ୍ଭ କଲେ –

"ତୋ ସ୍ତ୍ରୀ ସାଙ୍ଗରେ ତୋ' ମା'ର କ'ଣ ଟିକିଏ ଅପଡ ହଉଚି । ତୁ ଜାଣୁ ରାତିରେ ଭିତର ପାଖ ବାରଣ୍ଡାରେ ଏକୁଟିଆ ବସି ତୋ' ମା' କାନ୍ଦେ ? ଏବେ କିଛି ଦିନ ହେଲା ସେ ରାତିରେ ଚା ଖାଏ ମୁଣ୍ଡ ବଥାଏ ବୋଲି । ତା'ର ସେଭଳି ଅଭ୍ୟାସ କେବେ ନଥିଲା ।"

ମୁଁ ବୋଧେ ଖୁବ୍ ଅସ୍ଥିର ହୋଇ ଉଠିପଡିଲି । ସେ ବାଁହାତ ଇଙ୍ଗିତରେ ମୋତେ ବସିବାକୁ କହି କିଛି ସମୟ ଚୁପ୍‌ଚାପ୍ ସିଗ୍ରେଟ୍ ଟାଣିଲେ । "ଆଚ୍ଛା ସେ କଥା ଛାଡ୍ । ଶୀତଦିନେ କାମକୁ ଗଲାବେଳେ ତୋର ଜର୍କିନ୍‌ଟାଏ ଦର୍କାର ଥିଲା ନା, ମୁଁ ଆଣିଦେଇଛି । ଗୋଟାଏ କାନଟୋପ୍ ବି ଆଣିଚି । ଇଟାଲୀରେ ସେଗୁଡା ବେଶ୍ ଶସ୍ତା । ...ଦେଖିଲୁ, ସେ ବଡ ସୁଟ୍‌କେଶଟା ଖୋଲ । ନେ

ଏ ଘରବି ।"

ମୋର ସମଗ୍ର ସତ୍ତା ଟଣକି ରହିଥାଏ । ପ୍ରତି ମୁହୂର୍ତ୍ତରେ ଫାଟିପଡିବାକୁ ମୋ' ଭିତର ଟକମକ ହେଉଥାଏ । ଚମକି ଠିଆହୋଇପଡନ୍ତି, ହାତଗୋଡ ଟାଣି ବେକ ଶିରା ଫୁଲେଇ ମୁଁ ଚିତ୍କାର କରନ୍ତି, "ଆପଣ କିଏ ? କାହିଁକି ଆସିଛନ୍ତି ? କେମିତି ଆମ ଘର ବିଷୟରେ ଆପଣ ଏତେ କଥା ଜାଣିଲେ ?" ସେ ତାଙ୍କର ବଡ ବଡ ଆଖି ଖୋଲି ମୋତେ ଚାହାନ୍ତେ, ଅଳ୍ପ ହସନ୍ତେ । ତା'ର ଅର୍ଥ ବୋଧହୁଏ ହୁଅନ୍ତା – "ଛି ଛି ଛି, ତୁଟା ଏତିକି ହୁଣ୍ଡାଟାଏ । ତୁ ତୋ' ଗୁରୁଜନଙ୍କୁ, ଘରର ମୁରବିମାନଙ୍କୁ ଚିହ୍ନିଲୁ ନାହିଁ, ତାଙ୍କ ସାଙ୍ଗେ କେମିତି ବ୍ୟବହାର କରାଯାଏ ତା' ବି ଜାଣିଲୁ ନାହିଁ ? ରହ, ମୁଁ ତୋ' ବାପମା'ଙ୍କୁ ଏକାଠି ବସେଇ ପଚାରୁଛି ।"

ମୁଁ ଶଙ୍କିଗଲି ସ୍କୁଲପିଲାଟିଏ ପରି । ମୋ' ତୁଣ୍ଡରୁ ବାକ୍ୟ ସ୍ଫୁରିଲା ନାହିଁ । ତାଙ୍କ ହାତରୁ ଚାବି ନେଇ ବାକ୍ସ ଫିଟେଇଲି । ବହୁ ଜିନିଷ ଚିପିଚାପି ତା' ଭିତରେ ଭର୍ତ୍ତି ହେଇଥିଲା ।

"ସେଇ ସାଲଟା ତୋ' ବାପାପାଇଁ – ଲାଦାଖ୍ ଅଞ୍ଚଳରେ ବୁଣାହୁଏ । ସେ ଉଲ୍‌ରେ ମିଶାମିଶି ନାହିଁ । ତା' ତଳେ ସୁଟ୍ କନାଯାକ ଅଛି, ଆଡେଇଦେ । ସେଗୁଡାକ ସବୁ ତୋର । ସେ କଞ୍ଜିବରମ୍ ସିଲ୍‌କ ଥାକଟା ବୋହୂପିଲାର, ମାନେ ତୋ' ସ୍ତ୍ରୀର... ଆଉ... ଆଉ... ଛାତ, ସବୁ ତୋ' ସ୍ତ୍ରୀର... ସେ ଅଳଙ୍କାର ସେଟ୍, ସେ ବାସନ୍ତୀ ବନାରସୀ ପାଟ, ସେସବୁ ତା'ର ମାନ ଗୁନିର, ମାନେ ତୋ' ମା'ର । ତାଙ୍କର ସେ ଇତସ୍ତତଃ ଭାବ ଭିତରେ କ'ଣ ଥର ଥର କମ୍ପୁଥିବାର ମୁଁ ଅନୁଭବ କଲି ଏବଂ ପଛକୁ ବୁଲି ଚାହିଁଲି ତାଙ୍କ ମୁହଁକୁ ।"

ମୁଁ ଚାହିଁଦେବାରେ ସେ ସାମାନ୍ୟ ଅପ୍ରତିଭ ହୋଇଗଲାପରି ମୋତେ ଜଣାଗଲେ; କାରଣ ଗାଲ ବେକ କପାଳ ଫଗୁ ବୁଣିହେଲା ପରି ଲାଲ ଦେଖାଯାଉଥିଲା । ସେ ଅନ୍ୟଆଡେ ସାମାନ୍ୟ ଅନ୍ୟମନସ୍କ ଚାହିଁରହିଥିଲେ, ତାଙ୍କ ହାତରେ ସିଗ୍ରେଟ୍ କୁହୁଳୁଥିଲା ।

ସେ ଯେ କେହି ହୁଅନ୍ତୁ, କେତେ ସୌମ୍ୟ ଦର୍ଶନ ସୁପୁରୁଷ ସେ ଦେଖିବାକୁ! ସେ ତାଙ୍କ ନାଁଟା ନକହିଲେ କ'ଣ ହେଲା, ସେ ଯେ ଆମ ନିଜ ଲୋକ ଏଥିରେ କ'ଣ ଆଉ ସନ୍ଦେହ ଥାଇପାରେ ? ସେ ମା'କୁ 'ଗୁନି' ବୋଲି ଡାକୁଛନ୍ତି ମାନେ ଏ ନିଶ୍ଚୟ ତା'ଠାରୁ ବୟସରେ ବଡ ଏବଂ ସେ ତାକୁ ମାନ୍ୟ କଲାଭଳି କେହି ଜଣେ! ହେଇପାରେ ତା' ଭାଇନା – ତା' ହେଲେ ତ ମୋ' ମାମୁ । କିନ୍ତୁ ବାପା ତ କେବେ ଆମ ମାମୁଘର କଥା କହନ୍ତି ନାହିଁ । ବରଂ କହନ୍ତି ଯେ ଆମର କେହି ମାମୁ ନାହାନ୍ତି । ତା' ବି ଠିକ୍ । ଅଜାଙ୍କର ତ ଏଇ ଗୋଟିକ ମାତ୍ର ଝିଅ – ଆଉ କେହି ନାହିଁ । ଅଜା ତ କୋଉ କାଳୁ ମଲେଣି । ତେବେ... ଏ ବୋଧେ ଲେଖାଯୋଖା ଭାଇ ହେଇଥିବେ । ନହେଲେ ଏତେ ମୁରବିପଣ, ଏତେ ସ୍ନେହାଧିକାର କେମିତି ସମ୍ଭବ ହୁଅନ୍ତା ?

ମୋର ହଠାତ୍ ମନେପଡିଗଲା । ଅନେକ ଦିନ ତଳେ ଶୁଣିଥିଲି ଯେ ବାପା-ମା ପ୍ରେମ ବିବାହ କରିଥିଲେ । ସେ ବିଷୟ କେବେ ଆଉ ଉଠେ ନାହିଁ କି ଉଠିବାର ପ୍ରୟୋଜନ ନଥାଏ । ତେବେ କ'ଣ...

"...କିରେ କ'ଣ ସେମିତି ଅନେଇଛୁ ? ତୁ ପରା ତୋ' ଜର୍କିନ୍ କାଢୁଛୁ!" ମୁଁ ଚମକିଲା ପରି ତଳକୁ ଚାହିଁ ଜିନିଷ ବାହାରକଲି । ପାଞ୍ଚ ଛ'ଟା ଅଳଙ୍କାର ସେଟ୍ ବେଶ୍ ବଡବଡ । ତା' ତଳେ ଜର୍କିନ୍ । ଇସ୍, କି ବଢିଆ ଜିନିଷ ! ମୁଁ ପିଲାଙ୍କ ପରି ଖୁସିଟାଏ ହେଇଗଲି । ଜର୍କିନ୍‌କୁ ହାତରେ ଧରି ତାଙ୍କୁ ଚାହିଁବାରୁ ଜଣାଗଲା ସତେ ବା ସେ ଶୁଣିପାରିଲେ, "ମଉସା, ଆପଣ ସତେ କି ବଢିଆ ! ଇସ୍ ଏଇଟା କି ସୁନ୍ଦର ହେଇଚି !" ସେ ଅଳ୍ପ ହସି ସିଗ୍ରେଟ୍ ଟାଣୁଥା'ନ୍ତି ।

ମୋର ସେଇଠୁ ଭାରି ଇଚ୍ଛା ହେଲା ପାଟିକରି ସମସ୍ତଙ୍କୁ ଡାକିଦେବାକୁ – ଆସ ସବୁ, ଦେଖ କିଏ ଆସିଚନ୍ତି ! ସମସ୍ତେ ତାଙ୍କୁ ଘେରି ଏଇଠି ଠିଆହୋଇଯାନ୍ତେ । ସେ ଯାହା ଉପହାର ଦେଇ ଖୁସି ହୁଅନ୍ତେ । ମଉସାଙ୍କ ପାଇଁ ଧାଁଦଉଡ ହୁଅନ୍ତା । ସେ ଖାଇବେ କ'ଣ – ଶୋଇବେ କୋଉଠି – ଗରମପାଣି, ଅଣ୍ଡା, ମାଛ, ମାଂସ, ଆଉ କ'ଣ ଆଉ କ'ଣ –

"ସେ ଜର୍କିନ୍ ପଦାରେ ଥାଉ । ବାକି ସେସବୁ ଭିତରେ ପୂରେଇଦେ, ଆଉ ଘର ଭିତରକୁ ନେଇଯା !... ନା ବରଂ..."

ସେ କିଛି କହିଲେ ନାହିଁ । କିନ୍ତୁ ମୁଁ ବୁଝିଗଲି । ପ୍ରଥମେ ହୁଏତ ସେ ସଂକୋଚ କଲେ ଯେ ଆସୁ ଆସୁ ଏମିତି ପସରା ମେଲିବା ପରି କାହିଁକି ଏଗୁଡାକ ଏଠି ପଡିଥିବ, ବରଂ ସମସ୍ତେ ଘରେ ନେଇ ଖୋଲନ୍ତେ ଖୁସି ହୁଅନ୍ତେ । ତା'ପରେ ହୁଏତ ଭାବିଲେ – କ'ଣ ଯାଏ ଆସେ ? ଖୋଲା ତ' ହେଇସାରିଲାଣି – ବରଂ ଏଠିକି ସମସ୍ତେ ଚାଲିଆସିଲେ ଭଲ । ଦାଣ୍ଡଦୁଆରଟା ବନ୍ଦକରିଦେଲେ ଏ ବୈଠକଘରଟା କ'ଣ ମନ୍ଦ ହେଇଚି !

ମଝିରେ ମଝିରେ କିନ୍ତୁ ଏ ବନ୍ୟାଜଳକୁ ଭେଦକରି ଅମାନିଆ ଢିମା ପଥରଟାଏ ପରି ଦେଖାଯାଉଥିଲା ସେଇ ମୂଳ ପ୍ରଶ୍ନ । ମୁଁ ତାଙ୍କୁ ଦେଖିବାମାତ୍ରେ ପୁଣି ବିବ୍ରତ ହୋଇପଡୁଥିଲି । ଏ ସତେ କିଏ ? କ'ଣ ସମ୍ପର୍କ ୟାଙ୍କର ଆମ ସାଥିରେ ? ଏ ନିଶ୍ଚୟ ଆମଠାରୁ ଯଥେଷ୍ଟ ବେଶୀ ବଡଲୋକ, ଖୁବ୍ ପଇସାବାଲା । ଅନେକ ରାଜ୍ୟ ବୁଲିଚନ୍ତି । ଅନେକ କଥା ଜାଣିଛନ୍ତି । କିନ୍ତୁ... ଅନେକ ଦିନ ପର୍ଯ୍ୟନ୍ତ – ମାନେ ବୋଧହୁଏ ମୋ' ଜନ୍ମହେବା ଆଗରୁ ସେ ଆସିନଥିଲେ । ଆଜି ଆସିଛନ୍ତି... କାହିଁକି ? ଆସିନଥିଲେ ସୁଦ୍ଧା କୋଉ ଟିକିନିଖି ଭଲା ସେ ନଜାଣିଚନ୍ତି ଆମ ବିଷୟରେ ? ...ବଡ ଆଶ୍ଚର୍ଯ୍ୟ କଥା... ଏତେ ଦିନ ପରେ ଯେହେତୁ ଆସିଛନ୍ତି, ତାଙ୍କ ପିଲାପିଲିଙ୍କୁ ସାଙ୍ଗରେ ଆଣିବା ଉଚିତ ନଥିଲା କି ? ତା'ହେଲେ କ'ଣ ସେ ବିବାହକରିନାହାନ୍ତି ? ଏକୁଟିଆ ଅଛନ୍ତି ଏଯାଏଁ ? କାହିଁକି ?

"ଆଚ୍ଛା ଠିକ୍ ଅଛି, ସବୁ ସେ ବାକ୍ସରେ ଭର୍ତିକରିଦେ ଆଉ ଘରେ ଯାଇ କହିଦେ ମୁଁ ଆସିଚି ବୋଲି । କହିବୁ ରାଖାଲ ଦାସ ଆସିଚନ୍ତି । ଅବଶ୍ୟ 'ସୋମୁ' ଆସିଚି କହିଲେ ସେ ବୋଧେ ବେଶୀ ଖୁସି ହୁଅନ୍ତା ।"

ମୁଁ ଛାନିଆ ହେଲାପରି ପୁଣି ଶୂନ୍ୟକୁ ଚାହିଁ ରହିଲି । 'ରାଖାଲ ଦାସ' ? 'ସୋମୁ' ? ଏ ନାଁ ତ' ଆମ ଘରେ କେବେହେଲେ କେହି କହିବାର ମୁଁ ଶୁଣିନାହିଁ... ତା'ପରେ ବିଜୁଳି ମାରିଲା ପରି

ମୋର ମନେପଡିଗଲା ଗୋଟିଏ ଅତି ଛୋଟିଆ ଘଟଣା । ଆମ ବଡ ପୁଅ ରାଜେଶର ନାଁ ଦିଆଯାଉଥାଏ । ଅନେକ ଅନେକ ନାଁ ସବୁ କହୁଥା'ନ୍ତି । ବୋଧହୁଏ ମା' ଥରେ କହିଥିଲା – ଯା'ଙ୍କ ନାଁ 'ସୋମୁ' ହେଲେ ଭାରି ଭଲ ହୁଅନ୍ତା ।" ବାପା ଶୁଣି ଠୋ ଠୋ ହସିଥିଲେ; ତା'ପରେ ଗମ୍ଭୀର ହୋଇ କହିଥିଲେ "ହେଃ, ସେ ନାଁ'ଟା ଜମା ଚଳିବ ନାଇଁ ।" – ତା'ହେଲେ କ'ଣ ମା' ଯାଙ୍କ ସ୍ମୃତିରେ ମୋ' ପୁଅର ନାଁ' ଦେବାକୁ ଚାହୁଁଥିଲା ? କାହିଁକି ? ବୋଝେଇ ହେଇ ରହିଥିବା ସବୁ ଭିତର ଅମାପ ଚାପକୁ ମୁଁ ଦୀର୍ଘ ଶ୍ୱାସଟିରେ ଖଲାସ କରିପାରିଲି ନାହିଁ । ତଥାପି ବସିପଡି ସେସବୁ ଖୋଲାରେ ପଡିଥିବା ଜିନିଷକୁ ପୁଣି ବାକ୍ସରେ ପୁରାଇ ବନ୍ଦକରିବାକୁ ପଡିବ ତ' ! ସେ କାର୍ଯ୍ୟ କରିବା ଭିତରେ ମୁଁ ଆଉ ଅନେକ କଥା ଭାବିଯାଉଥାଏ ।

ବହୁବର୍ଷ ପୂର୍ବେ, ହୁଏତ' ମୋ' ଜନ୍ମ ହେବାର ଆଠ-ଦଶବର୍ଷ ପୂର୍ବରୁ ଏମାନେ ସମସ୍ତେ ତରୁଣଥିଲେ । ଏ ରାଖାଲ ଦାସ ସେତେବେଳେ ଅସାମାନ୍ୟ ସୁନ୍ଦର ଯୁବକ । ମା'ବି ତାଙ୍କ ବାପଘର ଫଟୋଭଳି ସୁନ୍ଦର ଏବଂ ବାପା ଜଣେ ଖେଳୁଆଡ ବଜ୍ରବାହୁ ଦନ୍ତା ଟୋକା । ହୁଏତ ସେମାନେ ଏକାଠି ପଢୁଥିଲେ । କିମ୍ବା ଏକା ସହରରେ ପାଖାପାଖି ରହୁଥିଲେ – ହୁଏତ ଦେଖାସାକ୍ଷାତ ହେଉଥିଲା । ହୁଏତ...

ମୋ ହାତ କେତେବେଳୁ ସ୍ଥିର ରହିଯାଇଥିଲା । ମୁଁ ଚିତ୍ରପ୍ରତିମା ପରି କେବଳ ଆଗକୁ ଏବଂ ଶୂନ୍ୟକୁ ଚାହିଁରହିଥିଲି । ମୋ' ଭିତରେ ଦୃଶ୍ୟ ପରେ ଦୃଶ୍ୟ ଗୋଟିଏ ସମ୍ଭାବ୍ୟ ନାଟକ ଅଭିନୀତ ହୋଇଯାଉଥିଲା ।

କ'ଣ ଗୋଟାଏ ଶବ୍ଦରେ ମୋର ଧ୍ୟାନ ଭାଙ୍ଗିଲା । ବୋଧହୁଏ ଘରେ ଶବ୍ଦ ହେଲା । ମା' ରନ୍ଧାଘରେ ଟ୍ରେଟାକୁ ଟାଣିନେଲା ସିମେଣ୍ଟ ଉପରେ, କିମ୍ବା ବାପା ଦିଅଁ ଘରେ ରେକାବିରେ ପାଦୁକପାଣି ରଖି ଘୁଞ୍ଚାଇଦେଲେ । ଏପରି ଗୋଟାଏ ଭୂଇଁ ସାଙ୍ଗରେ ଘୋସାରି ହେବାର ଶବ୍ଦ ହେଲା । ମୁଁ ଭାରି ଅସୁସ୍ଥ ଅନୁଭବ କଲି ।

ଏତିକିବେଳେ କେହି ଆଉ ଜଣେ ସେ ପରିବେଶକୁ ପଶିଆସିଥିଲେ ମୁଁ ଅନେକ ଆଶ୍ୱସ୍ତ ହୋଇଥା'ନ୍ତି । ହୁଏତ ମୋର ମସ୍ତିଷ୍କ କାମ କରିଥାନ୍ତା । ପାଟି ଫିଟିଥାନ୍ତା । କିନ୍ତୁ କାହିଁ! ପୁଅ ସ୍କୁଲରୁ ଫେରିବାପାଇଁ ଆଉ ତିନିଘଣ୍ଟା । ସ୍ୱାତ ଏଘରକୁ ଆସିପାରିବ ନାହିଁ । ବାପା ତ ପୂଜାରେ । ମା' କ'ଣ ଆସିପାରନ୍ତା ନାହିଁ ? ସେଇଠି ଥାଇ ବଡପାଟିରେ ମା'କୁ ଡାକପକେଇବାକୁ ମନହେଲା । କିନ୍ତୁ ଆଗନ୍ତୁକଙ୍କ ବ୍ୟକ୍ତିତ୍ୱ, ତାଙ୍କ ଭଦ୍ରତା ମୋତେ ଅଦୃଶ୍ୟ କାଚବାଡପରି ବାରଣ କଲା କୌଣସି ସୀମା ଲଙ୍ଘନ କରିବାକୁ ।

ଯାହାହେଉ ବାକ୍ସ ବନ୍ଦକରି ଜର୍କିନଟାକୁ ତା' ଉପରେ ଏକରକମ କଚି ଥୋଇଦେଇ ଉଠିବା ଉପକ୍ରମ କରୁଚି ।

"ହଉ, ତୁ ଘରେ ଖବର ଦେ, ମୁଁ ଏଇ ପାନଦୋକାନରୁ ଆସୁଚି । ଆଚ୍ଛା ଗୋପାଳକୁ ଟିକିଏ ସେଠିକି ସାଙ୍ଗେ ସାଙ୍ଗେ ପଠେଇଦେ !"

ଗୋପାଳ ଆମର ପୁରୁଣା ନୌକର । କାହିଁ କୋଉ କାଳୁ ଅଛି । ଭାରି ଭଦ୍ର । ଖୁବ୍ କାମିକା । ତା' ନିଜ ଘରେ ରହେ । ବେଶ୍ ପଢ଼ାପଢ଼ି କରିଚି । ଘରର ଯାବତୀୟ କାର୍ଯ୍ୟ କରେ । ତା' ଉପରେ ସମସ୍ତଙ୍କର ଅଗାଧ ବିଶ୍ୱାସ । ତା' ଉପରେ ସମସ୍ତେ ମଧ୍ୟ ନିର୍ଭରଶୀଳ । ସବୁ କାମକୁ ଗୋପାଳ । ତା'ର ପରିବାର ନାହିଁ । ସେ ଏକୁଟିଆ... ତା'ହେଲେ ଗୋପାଳକୁ ମଧ୍ୟ ଏ ଜାଣନ୍ତି ?

ରାଖାଲ ଦାସ ଓରଫ୍ ସୋମୁ – କିଏ ଏ ଲୋକ ? ମୁଁ ଘର ଭିତରକୁ ପଶିଗଲାବେଳେ ଦେଖିଲି ଯେ ତଳ ପିଣ୍ଡା ପାଖରେ ମା' କ'ଣ ଟଙ୍କା ଦଉଚି ଗୋପାଳକୁ – ବୋଧହୁଏ ବଜାରକୁ ପଠଉଚି । ମୁଁ ସେଆଡକୁ ଯାଉ ଯାଉ ବାଟରୁ କହିଲି, "ଗୋପାଳ କକା (ଆମେ ସେମିତି ଡାକୁ ଡାକୁ) – ତତେ କିଏ ଜଣେ ରାଖାଲ୍ ଦାସ ଡାକୁଛନ୍ତି ।"

ଝଣଝାଣ୍ ସବୁ ପଇସା ତଳେ ପଡିଗଲା ।

ମା' ଏବଂ ଗୋପାଳ କକା ବିଜୁଳିତାର ଛୁଇଁଦେଲାପରି ଚମକି ପଡିଲେ । ମୁଁ କିନ୍ତୁ ଋରି ପାଞ୍ଚପାହୁଣ୍ଡ ପାରିହେବା ଭିତରେ ମା' ଖୁବ୍ ସଂଯତ ସ୍ୱରରେ କହିଲା "ଓହୋ, ଏମିତି ହୁଣ୍ଡାଙ୍କପରି କ'ଣ ପାଟିକରୁଚୁ ? କିଏ ଆସିଚି ଯଦି ତୁ ବୁଝିଲୁନାଇଁ – ଗୋପାଳ କ'ଣ କରିବ ?"

ଗୋପାଳ କକାର ମୁହଁ ଶେତାପଡିଯାଇଥାଏ । ସେ କିଛି କହିନପାରି କେବଳ ବଲବଲ କରି ଋହିଁଥାଏ ମୋ' ମୁହଁକୁ ।

"ସେ ପରା ଏଇନା ଆସି ପହଞ୍ଚିଲେ । ବୋଧେ ଟ୍ରେନରୁ ସିଧା ଆସିଚନ୍ତି । ଅନେକ ଜିନିଷ ଆଣିଚନ୍ତି । କହିଲେ ଘରେ ଯାଇ କହିଦବୁ 'ସୋମୁ' ଆସିଚି ।"

ଗୋପାଳ ପ୍ରାୟ ଦୌଡିଲା ପରି ଟାଉ ଟାଉ ଦାଣ୍ଡଆଡେ ବାହାରିଗଲା । ମା'ର ପଇସା ଗଣୁଥିବା ହାତ ଆସ୍ତେ ଓହଳିପଡିଲା, ତା' ଆଖି ନଇଁଗଲା ତଳକୁ ।

"ଆ ଦେଖିବୁ, ସେ କେତେ କ'ଣ ଆଣିଚନ୍ତି ଆମପାଇଁ । ଆଉ ଆଶ୍ଚର୍ଯ୍ୟ କଥା ମା', ସେ ଆମ ଘର କଥା ସବୁ ଜାଣିଚନ୍ତି । 'କୁନିଆ'ର ଝାଡାହେବାଠଉ ତୁ କୁଆଡେ ରାତିରେ ମୁଣ୍ଡବଥା ପାଇଁ ଋ ଖାଉଚୁ ଏ ପର୍ଯ୍ୟନ୍ତ ସବୁ ତାଙ୍କୁ ଜଣା । ମୁଁ ତାଙ୍କ କଥା ଶୁଣି ତାଙ୍କ ଢଙ୍ଗଢାଙ୍ଗ, ଚେହେରା ଦେଖି ଅବାକ୍ ହେଇଯାଇଚି । ତୁ ଆସିଲୁ ଦାଣଘରକୁ ଆ ।"

ମୁଁ ମା'ର ହାତଧରି ପ୍ରାୟ ଟାଣିଲା ପରି ନେଇଯାଉଥିଲି – ଦୁଆରବନ୍ଧ ପାଖରେ ସେ ଠିଆହେଇ ଶାଢି ପଣତଟାକୁ ମୁଣ୍ଡକୁ ଟାଣିଆଣିଲା ଏବଂ ଖୁବ୍ ଗୋଟାଏ କ'ଣ ବିଶେଷ ଘଟଣା ଘଟିବାକୁ ଗଲାଭଳି ସେ ବଖରା ଭିତରକୁ ପଶିଲା । ସେଠି କେହି ନଥିଲେ । କେବଳ ଦିଖଣ୍ଡ ବଡ ସୁଟ୍‌କେସ୍ ଏବଂ ଦୁଇଟା ବେଗ୍ ମଝିରେ ଥୁଆହେଇଥିଲା । ମୁଁ ଦାଣ୍ଡ ଆଡେ ଟିକିଏ ଉଣ୍ଡିଦେଇ କହିଲି – "ଏତ ଭାରି ଅଦ୍ଭୁତ ଲୋକ ! ଏ ସୁଟ୍‌କେସଟା ଭର୍ତି ଖାଲି ଦାମୀ କପଡା ଆଉ ଅଳଙ୍କାର ସେଟ୍‌ରେ । ଆଉ ବାକ୍ସଟାରେ କ'ଣ ଥିବ କେଜାଣି ?"

ମୁଁ ମା'କୁ ଚୌକି ଉପରେ ବସାଇ ପୁଣି ବାକ୍ସଟିକୁ ଖୋଲିପକାଇଲି । ମୋର ମନେ ହେଉଥିଲା ଯେ ତାଙ୍କ ଜିନିଷ ସବୁ ସେପରି ଖୋଲିବା ମୋର ଅଧିକାରଭୁକ୍ତ । ସେ ଯେମିତି ଅତି

ସହଜ ଭାବରେ ତାଙ୍କ ଆପଣାପଣକୁ ଜାହିର କରିଛନ୍ତି, ତାକୁ ନିଜର ଏବଂ ଅତି ଘନିଷ୍ଠ ଭାବରେ ଆତ୍ମୀୟ କରି ନେବା ଛଡା ଅନ୍ୟ ଉପାୟ ନାହିଁ ।

ମୁଁ କୌତୂହଳରେ ସବୁଠାରୁ ବଡ ଅଳଙ୍କାର ବାକ୍ସଟିକୁ ଖୋଲିଦେଇ ଆଶ୍ଚର୍ଯ୍ୟ ହେଇଗଲି । ଦାମୀ ଭେଲଭେଟ୍ ଉପରେ ଦାଉଦାଉ ଚମକୁଥାଏ ଐଶ୍ୱର୍ଯ୍ୟ । ଆଖି ଝଲସି ଯାଉଥାଏ । ମା' ତାକୁ ଥରେ ଚାହିଁଦେଇ ଆଖି ତଳକୁ କରିନେଲା । ହଠାତ୍ ବିମର୍ଷ ଦେଖାଗଲା । ମୁଁ ତା'ପରେ ଦେଖିଲି ଯେ ସେଥିରେ ମା'ର ଗୋଟିଏ ରଙ୍ଗିନ ଫଟୋ ଲାଗିଛି ଏବଂ ତା' ତଳେ ଲେଖାହେଇଛି ୧୯୫୩ । ମା'କୁ ଚିହ୍ନିହଉନାଇଁ । ବରବଧୂ ବେଶରେ ଯେ କେହି ଅଲଗା ଦିଶିବା କଥା ।

ମୁଁ ଆଉ ପାଞ୍ଚଟା ଅଳଙ୍କାର ବାକ୍ସକୁ ଦେଖାଇ କହିଲି – ଏ ସବୁଯାକ ତୋ' ପାଇଁ ଆଣିଛନ୍ତି । ଏଥିରୁ ସେ ଗୋଟାକ କେବଳ ତୋ' ବୋହୂପାଇଁ । ମୁଁ ସେଥିରେ ସାମାନ୍ୟ କ୍ଷୁର୍ଣ୍ଣ ହେଲାପରି କହିଲି କି ? କେଜାଣି ! ମଣିଷର ତ ବିଚିତ୍ର ପ୍ରକୃତି – କେତେବେଳେ କାହାକୁ ନେଇ ମୁଣ୍ଡରେ ବସାଏ ।

ରାଖାଲ ଦାସ ବୋଧହୁଏ ସେଇକାଳୁ ବିଦେଶରେ ଅଛନ୍ତି । ବିଭିନ୍ନ ସମୟରେ ଏ ଉପହାର ସବୁ କିଣିଛନ୍ତି; କିନ୍ତୁ ପଠାଇନପାରି ସାଇତି ରଖିଛନ୍ତି । ଚିଠିପତ୍ର ବି ହୁଏତ ଦେଇନାହାନ୍ତି – ଦେଇଥିଲେତ ଅବଶ୍ୟ ନାଁଟା ମୋର ପରିଚିତ ହୋଇଥାନ୍ତା ଏ ଚଉତ୍ରିଶ ବର୍ଷ ଭିତରେ । ସେ ବି ଜଣାଯାଉଚନ୍ତି ବିଦେଶରେ ଥିଲାଭଳି । କିନ୍ତୁ ଏତେ ଦିନ ପରେ ସେ କାହିଁକି ଆସିଛନ୍ତି ? ହଁ ଆସିଛନ୍ତି, କାରଣ ଆସିବାରେ ତ ବାଧାନାହିଁ ! ଯା ପୂର୍ବରୁ ମଧ ଆସିପାରିଥା'ନ୍ତେ । ଏ ସମସ୍ତ ଘଟଣାର ମୂଳରହସ୍ୟ ହେଲା ଯେ ସେ ଦୂରରେ ଥାଇ ଏତେ ଘନିଷ୍ଠ ସମ୍ପର୍କ ଯୋଡି ରଖିପାରିଛନ୍ତି । ସେ କ'ଣ ଏଇଠି ଆମ ଭିତରେ ଅଶରୀରୀ ଆତ୍ମା ହୋଇ ଘୁରିବୁଲୁଛନ୍ତି ଏତେ କାଳ ?

ମା' କିଛି ନକହି ସେମିତି ତଳକୁ ଚାହିଁରହିଥାଏ । କ'ଣ ଦେଖୁଥାଏ କେଜାଣି – ମୁଁ ଉସୁକେଇଲା ପରି ପଚାରିଲି – "ଏ ଆମର କ'ଣ ହେବେ କି ? କୋଉଠି ଥାଆନ୍ତି ଇଏ ?"

ମା' କିଛି ନକହିବାରୁ ମତେ କେମିତି ମଡେଇପଡିଲାପରି ଲାଗିଲା । ମୁଁ ସେ ଚାରିଟା ସାମାନ କାନ୍ଥକଡକୁ ଘୁଞ୍ଚେଇଦେଇ କହିଲି – 'ମୁଁ ଦେଖେ ସେ କୁଆଡେ ଗଲେ' ଏବଂ ବାହାରକୁ ଚାଲିଆସିଲି । ମୋତେ ଗୋଟାଏ ଅଦୃଶ୍ୟ ଜାଲ ଗୁଡେଇହେଲାପରି ଲାଗୁଥିଲା । ଜାଲସାରା ଗଣ୍ଠି ମୁଁ ଅନୁଭବ କରୁଥିଲି । ଖସିଯିବାକୁ ଚାହିଁଥିଲି ଜାଲରୁ, ମୋ' ନିଜଠାରୁ ।

ମୁଁ ମନେ ମନେ ଅଦ୍ଭୁତ କଥା ସବୁ ଭାବିଯାଉଥିଲି । ସବୁ ସମ୍ଭବ ଅସମ୍ଭବକୁ ମିଶେଇ ନାନାଦି ଚିତ୍ର ଗଢୁଥିଲି ଏବଂ ସବୁ ଲିଭିଗଲା ପରେ ପୁଣି ସେଇ ମୂଳରହସ୍ୟକୁ ଫେରିଆସିଥିଲି । ଅନ୍ଧାରଘରେ ବାରମ୍ବାର ଝୁଣ୍ଟୁଥିଲି ।

ରାଖାଲ ଦାସ କିମ୍ବା ଗୋପାଳ ପାନଦୋକାନ ପାଖରେ ନଥିଲେ । ଆମ ସହରର ସେ ସାହିରେ ଦୋକାନପତ୍ର ନାହିଁ । ରାସ୍ତା ଦୁଇପାଖେ କେବଳ ଛୋଟବଡ ଘର । ସେ ଭିତରେ ଛୋଟବଡ ଅନେକ ଲୋକ । ମୁଁ ରାସ୍ତା ଉପରକୁ ଆସୁ ଆସୁ ଅନୁଭବ କଲି ଯେ ସମସ୍ତ ଦୁଆର

ପିଣ୍ଡାର ଝରକାରେ ଲୋକ ମୋଗିଆଡେ ଚାହିଁରହିଛନ୍ତି । ମୋତେ ନିଶ୍ଚୟ ଅଡୁଆ ଲାଗିଲା । ଚିହ୍ନାଲୋକଗୁଡାକ ଅଚିହ୍ନା ଢଙ୍ଗରେ ଚାହିଁଲେ ଯାହା ଲାଗେ । ଭାବିଲି ଯେ ସେମାନେ ରାଖାଲ ମଉସାଙ୍କୁ ଦେଖିଲା ପରେ ଏମିତି କୌତୂହଳୀ ହୋଇ ଯାଇଛନ୍ତି । ସେଥିରେ ଆଶ୍ଚର୍ଯ୍ୟ ହେବାର ମଧ କିଛି ନାହିଁ । ସେଭଳି ଜଣେ ଲୋକ ଚାଲିଗଲେ ତ' ଶହେଜଣ ଅନେଇବେ ! ମୁଁ ଖୁବ୍ ଗୋଟାଏ ଟାଣପଣରେ ଖୋଜିପକେଇଲି । ପଛରୁ ଜଣେ ଦି'ଜଣ ହସିଲେକି ? ମୋ' ଆଣ୍ଟୁ ପୁଣି ହୁଗୁଳା ହେଇଗଲା । କାହିଁକି ହସୁଛବେ ନାଲାଏକ କାହାଁକା ! ଅସହଣିକ ଶଳାଙ୍କର କିଛି କାମ ନାହିଁ । କାହାର ଶିରୀ ଦେଖିଲେ ସହିପାରିବେ ନାହିଁ । କ'ଣ ନା ସେତିକି ମାତବ୍ବର ଲୋକଟେ କାହିଁକି ନବଘନ ସାଆନ୍ତ ଘରେ ପଶିଲା । ଆଉ କ'ଣ ତୁମ ଘରେ ପଶିଥାନ୍ତା ଶାଲା, ଲୋଚ୍ଚ ଚୁଚୁନ୍ଦ୍ରା ବେହିପେ !

ଆମ ସାହି ମୋଡ ପାଖରେ ଅପୂର୍ବ ପାତ୍ର ଦୋକାନ । ସେ ମୋତେ ଦେଖୁ ଦେଖୁ ଡାକପକେଇଲା, "ହେଇ ସାନବାବୁ, ଆସ ଆସ ଏଣିକି । ତମ ଗୋପାଳକକା ତମକୁ ଦେଇଛନ୍ତି ଏ ଚିଠି ଆଉ ଏ ଡିବା । ତାଙ୍କ ସାଙ୍ଗରେ ଜଣେ ସାଇବ ଲାଖି ଲୋକ ଥିଲେ – ସେ କିଏ କି ?" ସେ ହାତ ବଢେଇ ଯାହା ଦଉଥିଲା ମୁଁ ନନେଇ ତାକୁ ପଚାରିଲି, "ସେମାନେ ଗଲେ କୁଆଡେ ?"

"ସେ ସାଇବର ଗୋଟାଏ କଳା ନୂଆଧରଣର ଗାଡି ଆସି ଏଇଠି ଠିଆହେଲା । ସେ ଗୋପାଳକକାର ହାତଧରି ଭିତରକୁ ଟାଣିନଉଥିଲେ । ଗୋପାଳ କାନ୍ଦ କାନ୍ଦ ହେଇ ଡମରି ସାଇଆଡେ ଓଟାରି ହେଇ ଚାହୁଁଥିଲା । ତା' ଉତ୍ତାରୁ ଦୁହେଁ ଭିତରେ ବସି କବାଟ ପକେଇଲେ । ଏଇଆଡେ ସେ ଗାଡି ଚାଲିଗଲା ।"

ମୁଁ ଝାମ୍ପିଲା ପରି ସେ ଚିଠିଟାକୁ ଟାଣିନେଲି । ଡବାଟିକୁ ତା' ଟଙ୍କା ବାକ୍ସ ଉପରେ ଥୋଇ ଅପୂର୍ବ ପାତ୍ର ଅପେକ୍ଷା କଲା । ଚିଠିଟା ମୋ' ପାଖକୁ ।

"ବୁନୁ

ଶେଷକୁ ଅନ୍ୟ ପ୍ରକାର ନିଷ୍ପତ୍ତି ନେବାକୁ ବାଧ ହେଲି । ଯଦି ମୁଁ ଯାଉଯାଉ ଅଚାନକ ତୋ' ସାଙ୍ଗେ ଦେଖା ନହୋଇ ରୁନି ସହିତ ସାମ୍ନାସାମ୍ନି ହୋଇଯାଇଥାନ୍ତା ମୁଁ ହୁଏତ ସମ୍ଭାଳିଯାଇଥା'ନ୍ତି, କାରଣ ସେଥିପାଇଁ ପ୍ରସ୍ତୁତ ହୋଇଆସିଥିଲି । ସେଥିପାଇଁ ମୋତେ ଅନେକ ବର୍ଷ ଲାଗିଥିଲା । କିନ୍ତୁ ତା' ହୋଇପାରିଲା ନାହିଁ । ତତେ ଘର ଭିତରକୁ ପଠାଇ ମୁଁ ତା' ପାଇଁ ସେଇଠି ଅପେକ୍ଷା କରି ବସିବା ଏବଂ ହୁଏତ ଭିତର ପିଣ୍ଡାରୁ ପାହୁଣ୍ଡ ପକେଇ ପଇଁତ୍ରିଶ ବର୍ଷ ପାରି ହେଇ ସେ ମୋ' ସାମ୍ନାରେ ଆସି ଠିଆହେବା ଏ କଥା ମୁଁ ସମ୍ଭାଳିବା ସମ୍ଭବ ନଥିଲା ।

ମୁଁ ଗୋପାଳକୁ ନେଇଯାଉଛି, କାରଣ ୟାପରେ ସେ ବି ଏଠି ରହିପାରିବନାହିଁ । ତୁମମାନଙ୍କୁ ଖୁବ୍ ଅସୁବିଧା ହେବ । କିନ୍ତୁ ଉପାୟ ନାହିଁ । ଗୋପାଳର ହାରନିଆ ବେଲ୍ଟ ଆଜି ବାହାରିଗଲା । କାରଣ ସେ କେବେ ହାର୍‌ନିଆପାଇଁ ତାକୁ ପିନ୍ଧି ନଥିଲା, ସେଥିରେ ଗୋଟିଏ ଗୋଇନ୍ଦା କ୍ୟାମେରା ଖଞ୍ଜାହେଇଥିଲା । ସେ ଗତ ତିରିଶ ବର୍ଷରେ ପ୍ରାୟ ତିନି ହଜାର ଫଟୋ ମୋ' ପାଖକୁ ପଠାଇଚି ।

ମୁଁ ତାକୁ ଆଉ ଗୋଟିଏ ଠିକଣାରେ ମାସକୁ ହଜାରେ ଟଙ୍କା ଦେଇ ଏ କାମରେ ନିଯୁକ୍ତ କରିଥିଲି । ତୁ ମୋତେ ଭୁଲ ବୁଝିବୁ ନାହିଁ । ମୋର ଆଉ ଅନ୍ୟ ଉପାୟ ନଥିଲା ।

ଆଉ ସୁଟ୍‌କେସ ଖୋଲିଲେ ସବୁ ଜାଣିପାରିବୁ । ତୋ' ବାପା ଅତି ଉତ୍ତମ ମଣିଷ । ଗୁନି ତାକୁ ଅତ୍ୟନ୍ତ ଭଲପାଏ । କିନ୍ତୁ ତୋ' ବାପା ଅପେକ୍ଷା ଗୋପାଳ ଗୁନିକୁ ଅନେକ ଅନେକ ବେଶୀ ଭଲପାଉଥିଲା । ସେଥିପାଇଁ ସେବାକରି ଆସିଥିଲା ଏ ଅସଂଖ୍ୟ ବର୍ଷ । ମୋ' ସେବାକରିଆସିଥିଲା । ମୁଁ ତାକୁ ମୋ' ସାଙ୍ଗରେ ନେବାପାଇଁ ଆସିଥିଲି । ଏ ପର୍ଯ୍ୟାୟ ଏଇଠାରେ ହିଁ ସରିଲା ।

ମୁଁ ଅଣାୟତ୍ତ ବେଳାମାନଙ୍କରେ କିଛି ଚିଠି ଲେଖିଥିଲି । କୌଣସିଟି ପଠାଇ ନାହିଁ । ସେସବୁ ଏଇ କାସ୍କେଟରେ ଦଉଚି । ମା' ହାତରେ ଦେଇଦେବୁ । ଗୋପାଳର ବି ଦି'ଖଣ୍ଡ ଚିଠି ଅଛି । ସେ ତାକୁ ସବୁବେଳେ ବୁକୁ ପକେଟରେ ଧରି ବୁଲୁଥିଲା । ତାକୁ ଅଲଗା କାମ ଭିତରେ ଦେଇଚି । ତା' ବି ଦେଇଦେବୁ ।

ତୁ ଜନ୍ମ ହେଲାଦିନୁ ଏଯାବତ୍ ତୋ' ବିଷୟରେ ମୁଁ ସବୁକଥା ଜାଣେ । ସବୁଦିନ ଡାଏରୀ ଲେଖି ଗୋପାଳ ମୋ' ପାଖକୁ ପଠାଏ । ତୁ ଭାରି ଭଲପିଲା । ତୋ'ର କୌଣସି ଅସୁବିଧା ହେବନାହିଁ । ମୁଁ କିଛି ପଇସା ତୋ' ନାଁରେ ବେଂକ୍‌ରେ ଜମା କରିଦେଇଚି । କାଗଜାତ୍ ସେଇ ବାକ୍ସରେ । ଈଶ୍ୱର ତୋର ମଙ୍ଗଳ କରନ୍ତୁ । ମୁଁ ପୂଜାକରେନାହିଁ ସତ, କିନ୍ତୁ ପ୍ରାର୍ଥନା କରେ । ମୋର ଗୋଟିଏ ଅନୁରୋଧ – ବେଳ ପାଇଲେ ତୋ' ମାଆ ପାଖରେ ଟିକିଏ ବସିବୁ । ଭଲ ମନ୍ଦ ଟିକିଏ ବୁଝୁଥିବୁ । ତାକୁ କାନ୍ଦିବାକୁ ଦେବୁ ନାହିଁ । ଇତି, ରାଖାଲ୍ ଦାସ ।"

ମୁଁ ସେ କାଗଜଗୁଡିଆ ହେଇଥିବା କାସ୍କେଟ୍‌ଟିକୁ ଉଠାଇଲାବେଳେ ମସ୍ତବଡ ଓଜନ ଭାରରେ ନଇଁଯାଉଥିଲି । ମୋ' ମୁଣ୍ଡ ଉପରେ ଆଉ ଗୋଟାଏ ପୃଥିବୀ ମଡେଇ ହୋଇ ପଡିଥିଲା । ମୁଁ ଟଳମଳ ଠିଆ ହେଲି ଏବଂ କୌଣସି ମତେ ଘରେ ପହଞ୍ଚିଲା ବେଳକୁ ମନେହେଲା ସବୁ କେମିତି ସ୍ତବ୍ଧ ହୋଇଯାଇଚି । ଦାଣ୍ଡଘରେ ମା' ବସି ରହିଚି ସେଇ ଚୌକିରେ । ବାପା ଧୋତି ଚଦର ପିନ୍ଧି ପଛରେ ହାତ ଛନ୍ଦି ଠିଆ ହୋଇଛନ୍ତି । ମୁଁ କିଛି ଭାବିବା ପୂର୍ବରୁ ମୋର ଖୋଲା ଚିଠିଟା ତାଙ୍କୁ ବଢେଇଦେଲି ।

ସେ ପଥର ମୂର୍ତ୍ତିପରି ନିଶ୍ଚଳ ଠିଆ ହେଇ ଆମୂଳଚୂଳ ପଢିଗଲେ । ପଢିସାରି ହାତ ବଢେଇଲେ ମୋ' ଆଡେ । ମୁଁ ଉପରୁ କାଗଜ ଖୋଳଟି କାଢି ଦାଉଦାଉ ଚମକୁଥିବା ରୂପା କାସ୍କେଟ୍‌ଟିକୁ ଧରେଇଦେଲି । ସେ ନୀରବରେ ମା' ସାମ୍ନାକୁ ଚାଲିଯାଇ ଠିଆହେଲେ । ମା' ନରମ ମହମ କଣ୍ଢେଇଭଳି ଆସ୍ତେ ଠିଆହେଲା । ବାପା ଦୁଇହାତରେ ସବୁ ସମର୍ପିଦେବା ଭଙ୍ଗୀରେ ଠିଆହେବା ଦେଖି କେଜାଣି କାହିଁକି ମୋର କୋହ ଉଠିଲା । ମୁଁ ସେ ଗଭୀର ଗମ୍ଭୀର, ମାନନୀୟ ମୁଖଟିକୁ ଆଉ ଚାହିଁ ପାରିଲି ନାହିଁ । ତରବର ହୋଇ ଚାଲିଗଲି ଘର ଭିତରକୁ । ଆଖିରୁ ତବ୍‌ତବ୍ ତାତିଲା ଲୁହ ନିଗିଡିଗଲା । କାହାପାଇଁ କେଜାଣି !



# ସେଇଟା ମୋ' ଦୋଷ

"ତାକୁ ଜାଣିନାହିଁ ବୋଲି କେମିତି କହିବି ? ଏ ତ କିଛି ଆଜିକାଲି କଥା ନୁହେଁ । ଜାହିଁ କୋଉ କାଳୁ ତା' ସହିତ ମୋର ପରିଚୟ । ମୋତେ କିନ୍ତୁ ଆପଣଙ୍କ କଥା ଶୁଣି ତାଜୁବ୍ ଲାଗୁଛି । ହସ ବି ମାଡୁଛି । ଆପଣ ଯେଉଁ ଢଙ୍ଗରେ ତାକୁ ଦେଖୁଛନ୍ତି, ସେଥିରେ ମୋର ବରଂ କିଛି ନକହିବା ଭଲ, କାରଣ ହୁଏତ ଆପଣ ଖୁବ୍ ଚିଡିଯାଇପାରନ୍ତି ମୋ' ଉପରେ, ନିଜ ଉପରେ, ସାରା ସଂସାର ଉପରେ ।"

ବିମଳବାବୁ ମୋ' କଥାକୁ ଭ୍ରୁକ୍ଷେପ ନକଲାପରି ଅଳ୍ପ ଅଳ୍ପ ହସୁଥା'ନ୍ତି । ଜଣାଯାଉଥାଏ ସତେ ବା ମୁଁ କ'ଣ କହିବି, କେମିତି କହିବି ସେସବୁ ସେ ଆଗରୁ ଜାଣିସାରିଛନ୍ତି । କୌଣସି କଥାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ; ବରଂ ପରିଚିତ ନାଟକଟିଏ ଦେଖିବାର କୌତୁକ ସେ ଉପଭୋଗ କରୁଛନ୍ତି ।

ମୁଁ କିଛି ମାତ୍ରାରେ ନିଜେ ଚିଡିଯାଇଥିଲି ।

"ଦେଖନ୍ତୁ ବିମଳବାବୁ, ନିଜକୁ ନିର୍ଭୁଲ୍ ଭାବିନେଇଥିବା ବ୍ୟକ୍ତିଙ୍କ ସହିତ ଯୁକ୍ତିତର୍କର ଅର୍ଥ କିଛି ନାହିଁ । ଯାହା ବିଷୟରେ ଆପଣ ମୋଠାରୁ କିଛି ଶୁଣିବାର ପରିବେଶ ସୃଷ୍ଟିଅଟି କରିଛନ୍ତି, ସେ ମୋ' ସକାଶେ ଆଉ ଏକ ଭିନ୍ନ ବ୍ୟକ୍ତି । ତା' ସହିତ ଆପଣଙ୍କର ଭେଟ ହୋଇନାହିଁ । ମୁଁ ଚିହ୍ନେଇଲେ ବି ଆପଣ ଚିହ୍ନିବାକୁ ପ୍ରସ୍ତୁତ ହେବେ ନାହିଁ । ଘଟଣା ବର୍ତ୍ତମାନ ଏମିତି ଯେ ହୁଏତ ଆମ ଭିତରୁ ଜଣେ କେହି ନିଶ୍ଚୟ ଭୁଲ କିମ୍ବା ଉଭୟେ ଭୁଲ, କାରଣ ଉଭୟେ ଠିକ୍ ହେବାର ସମ୍ଭାବନା ନାହିଁ ।"

ବିମଳବାବୁ ସୋଫାକୁ ଆଉଜିଗଲେ । ମୁଣ୍ଡ ପଛପଟେ ହାତ ଆଙ୍ଗୁଳି ଛନ୍ଦି ମୋତେ ସେମିତି କ୍ଷମାଶୀଳ ଢଙ୍ଗରେ ପୁଣି ଅନେଇଲେ । 'ଆହା ବିଚରା ମୂଢଟିଏ ! ନିଜ ମୂଢତା ବିଷୟରେ ସୁଦ୍ଧା ସେ ସଚେତନ ନୁହେଁ ।'

ମୁଁ ସେ ଚାହାଣିରେ ଉତ୍ୟକ୍ତ ଅନୁଭବ କଲି ଏବଂ ହଠାତ୍ ଠିପିଟାଏ ଫିଟିଗଲା ପରି କହିଗଲି – "ସେଇଟା ଗୋଟାଏ ଘୋଡା ମଦୁଆ । ତା'ର କେତେବେଳେ ହୋସନଥାଏ । ତାକୁ

କେତେଥର ଯେ ରାସ୍ତାକଡ ନାଳ ଭିତରୁ ମୁଁ ନିଜେ ଏଇ ହାତରେ ଟେକି ଟେକି ରିକ୍ସାରେ ପକେଇଚି ମୁଁ ଜାଣେ । ସେ ମୋ' ହାତଧରି ନିଲଠାଙ୍କ ପରି ଦାନ୍ତକାଢି ନେହୁରା ହେଇଚି ତା' ପାଇଁ ଖିଚ କହିବାକୁ । ସେ ନିଜେ କେବେ କାହାକୁ ପଦେହେଲେ ସତ କହେ ବୋଲି ମୋର ବିଶ୍ୱାସ ନାହିଁ; କାରଣ ମୋତେ ଅନ୍ତତଃ ସହଜ ସତଟିଏ ସେ କେବେ କହିନାହିଁ । ତା'ର କପଟ ଆଚରଣ ଜନ୍ମଗତ । ମୋତେ ଗୋଟେ କଥା କହିଥିବ; ପେଟରେ ରଖିଥିବ ଆଉ ଗୋଟେ କଥା । ମୋ' ନାଁରେ ଆପଣଙ୍କୁ ଚୁଗୁଲି କରିଥିବ; ଆପଣଙ୍କ ନାଁରେ ମୋତେ । ଧରାପଡିଗଲେ, ନିର୍ଲଜ ଢଙ୍ଗରେ ହସିଦେଇ ହାତ ଯୋଡିପକେଇବ, ପାଦ ଧରିପକେଇବ । କହିବ, 'ଭାଇ, ତୁ ମୋର ସର୍ବସ୍ୱ ! ତୁ ନଥିଲେ ମୁଁ କି ବଞ୍ଚିପାରିବି ?'" ପଛ କରୁ କରୁ କହିବ, 'ଶାଲା, ବେକୁବ୍ ତୁ କି ମତେ କଳିପାରିବୁ । ତତେ ଏ ହାଟରେ ବିକି ସେ ହାଟରେ କିଣିନେବି ।' – ତା' କଥା ପଡିଲେ ହିଁ ମୋ' ବ୍ରହ୍ମ ଚିଡିଯାଉଛି; କିନ୍ତୁ କେଜାଣି କାହିଁକି ବେକୁବ୍ ଭଳି ମୁଁ ତା' ସଙ୍ଗେ ଛନ୍ଦି ହେଇ ପଡିଚି । ତାକୁ ଠେଲି ଦେଇପାରୁ ନାହିଁ, ଯଦିବା ତା' ସହିତ ମୋର ଶହେରେ ଶହେ ଅପତ ।

ବିମଳବାବୁ ଟିକିଏ ବେଶି ଆମୋଦିତ ହେବାରୁ ଦାନ୍ତ ଦିଶିଗଲା । ମୋରି ଭଳି ତାଙ୍କର ମଧ ବାଁପାଖ ମୁନିଆଁ ଦାନ୍ତଟା ନାହିଁ । ମୋରି ବୟସ ହେବ ତାଙ୍କୁ ତା'ହେଲେ । କିନ୍ତୁ ସେ କଳା ମଚମଚ ବାଳ, ପୂରିଲା ପୂରିଲା ମୁହଁ, ଟୁମା ଟୁମା ଆଖି, ଖୁବ୍ ସନ୍ତୁଷ୍ଟ ଚେହେରା, ତାଙ୍କୁ ମୋଠୁ ଅନ୍ତତଃ କୋଡିଏ ବର୍ଷ ସାନପରି କରିରଖିଚି । ହେଇପାରେ ସେ ସତକୁ ସତ ମୋଠୁ ସାନ । କିମ୍ବା ହେଇପାରେ ସେ ଏବେ କ'ଣ ଯୋଗ କରୁଛନ୍ତି ପରା, ସେଥିପାଇଁ ତାଙ୍କ ଚେହେରା ଏମିତି ସଜଫୁଟା ଫୁଲପରି ଦେଖାଯାଉଚି; ତାଙ୍କ ମୁହଁକୁ ଚାହିଁଦେଲେ ମୋ' ଭିତରୁ ସବୁ ଧାସ ଓହ୍ଲେଇଯାଉଚି ।

ମୁଁ ତାଙ୍କୁ ଚାହିଁରହିବାରୁ ତାଙ୍କ ଆଖି କୁଞ୍ଚେଇଗଲା । ସେ ପୁଣି ମୋତେ ଉସ୍‌କେଇବା ପାଇଁ ବିଭୋର ହେଲା ପରି ଶୂନ୍ୟକୁ କରଯୋଡି ନମସ୍କାର କଲେ ।

ତାହାରି ଉଦ୍ଦେଶ୍ୟରେ ଏ ନମସ୍କାର ହେଇଥିବ ଭାବି ମୁଁ ଖୁବ୍ ଜୋର୍‌ରେ ଭୂଇଁକୁ ଲାତଟାଏ ମାରି କହିଲି – "ବେକୁବ୍ ନହେଲେ ସେଭଳି ଲୋକ ଫାନ୍ଦରେ କେହି ପଡିବେ ନାହିଁ । ମୁଁ ଜାଣୁଚି ସେ ଭାରି ଚାଲାକ । କାହାକୁ କ'ଣ କହି ଫାନ୍ଦିପାରିବି ସେ ବିଦ୍ୟା ତାକୁ ଜଣା । ସେଥିରେ ସେ ଯାହାକୁ ମନ ତାକୁ କାବୁ କରିନେଇପାରିବ । ଆପଣଙ୍କ ଭଳି ଲୋକ ତ' ପୁଣି ତା'ର ପାଦପୂଜା କରୁଛନ୍ତି । କେହି କେହି ଭକ୍ତ ପାଦକୁ ଜିଭରେ ଚାଟୁଥିବେ । ସେଥିରେ ମହାପୁରୁଷ ବି ପରମ ସନ୍ତୁଷ୍ଟ ହଉଥିବେ । ହବା କଥା । ଉଷୁମ କଅଁଳ ଜିଭଟିଏ ପାଦରେ ବାଜିଲେ ସଲସଲ ଲାଗିବ, ରୋମାଞ୍ଚ ହବ । ସମ୍ଭୋଗ ଭଳି ଲାଗିବ! କିନ୍ତୁ ମୁଁ ନ କହି ରହିପାରୁ ନାହିଁ । ସେଇଟା ପୁରୁଣା ବେଧୁଆଟାଏ । ନିଶା ଖାଇଲା ପରେ ସେ ପୋଢଭଳି ସାଉଁସାଉଁ ହୁଏ । ଉନ୍ମତ୍ତ ହୋଇ ଖୋଜେ । ତାକୁ ସେତେବେଳେ ଯେ ଦେଖିଛି ସେ ହିଁ ବିଶ୍ୱାସ କରିପାରିବ । ଏଣୁ ସାବଧାନ ! ସେଇଟା ସେତେବେଳେ ଜାନୁଆରଟାଏ ।"

ବିମଳବାବୁ ଆହତ ହେଲେ ନା କଣ ! ମୁଁ ପ୍ରାୟ ସେଇଆ ଚାହୁଁଥିଲି । ନିହାତି ସ୍ଥୁଳ ଭାବରେ

କଥାଟା କହିନଦେଲେ ତାଙ୍କର ମୋହ ଭଙ୍ଗ ହବ କେମିତି ?

ସେ ଗମ୍ଭୀର ହେଇ ତଳକୁ ଚାହିଁ ରହିଲେ । ମୁଁ ଅପେକ୍ଷା କଲି... "ହୁଁଃ, ଶାଲା ମହାପୁରୁଷ ବନିଚି । ତାକୁ କ'ଣ ସବୁ ଦୃଶ୍ୟ ହଉଚି – ଏ ବେକୁଦମାନେ କିଛି ଜାଣିନାହାନ୍ତି ବୋଲି ସିନା ତୁ ଧପେଇ ଚାଲିଚୁ । ରହ, ମୁଁ ଦଉଚି ତୋ' ପୋଲ ଖୋଲି । ନାଲାଏକ୍ କାହାଁକା..."

ବିମଳବାବୁ ଆଖିମିଟିକା ମାରି ମତେ ଚାହିଁଲେ । ଆଗଭଳି ବିଭୋର ଭଙ୍ଗୀ । ହସ ହସ ମୁହଁ । ପୁଣି ସେ ଶୂନ୍ୟକୁ ନମସ୍କାର କଲେ । ମୁଁ ଉଠିପଡିଲି ।

"ଆଚ୍ଛା, ତା'ହେଲେ ବିମଳବାବୁ, ଆପଣଙ୍କର ଅନେକ କାମ ଥିବ । ଆପଣଙ୍କୁ ଆଉ ଅଟକେଇ ରଖିବା ଉଚିତ ମଣୁ ନାହିଁ । ହଉ, ତା'ହେଲେ ନମସ୍କାର ।"

ସେ ଉଠିଲେ ନାହିଁ । କହିଲେ – "ଆପଣ ମୋ' ସାଙ୍ଗରେ ଯିବେ ପରା ! ବାହାରନ୍ତୁ..."

"ମୁଁ ?... କାହିଁକି ? – ଆପଣଙ୍କୁ କିଏ କହିଲା ମୁଁ ଯିବି ବୋଲି ?"

"ମୁଁ ଜାଣେ ।"

"ମାନେ ? ଆପଣ ବି ଏତିକିରେ ସିଦ୍ଧସାଧକ କ'ଣ ସବୁ ହେଇଗଲେଣି ! ବୁଝିଲେ ବିମଳବାବୁ, ସେ ଢଙ୍ଗ ଛାଡନ୍ତୁ । ମୁଁ କଦାପି ଯିବି ନାହିଁ । ମୋର ସମୟ ନାହିଁ । ତା' ବାହାରେ ପାଖଣ୍ଡ, ଭଣ୍ଡ, ଶଠଙ୍କ ପାଲରେ ପଡିବା ଲୋକ ମୁଁ ନୁହେଁ । ଆପଣ ଅଯଥା ସମୟ ନଷ୍ଟ କରୁଛନ୍ତି । ଯାଆନ୍ତୁ ସହର ତଳିରେ ଜାଲ ପକେଇବେ । ସେଇଠି ହାତ ଦେଖେଇବାକୁ, ଶୁଆ, ମାଙ୍କଡ ହାତରେ ଭାଗ୍ୟ ପତ୍ରିକା ଉଠେଇବାକୁ ଢେର୍ ଲୋକ ଅଛନ୍ତି । ତାଙ୍କୁ କ'ଣ ଟିକିଏ ହାତସଫେଇ ଦେଖେଇଦେଲେ ସେମାନେ ମାତିଯିବେ । ଆପଣଙ୍କ ଗୋଠ ବଢିବ ।"

ସେ ସେଇଭଳି ଚାହିଁବସିରହିଲେ ।

ମୁଁ ମୋ' ବାଁହାତ ପାପୁଲିରେ ଗୋଟାଏ ଘୁଷିମାରି ତାକୁ କଟମଟ ଚାହିଁଲି । ଯଦି ସେ ଭଲରେ ଉଠି ଚାଲିଯିବେ ତ ଯିବେ, ନହେଲେ କିଛି ଏଭଳି ବ୍ୟବସ୍ଥା କରିବାକୁ ହେବ ବୋଲି ଯଥେଷ୍ଟ ସୂଚନା ମଧ୍ୟ ମୁଁ ଦେଇଦେଲି । କୌଣସି ଫଳ ହେଲା ନାହିଁ ।

"ଆପଣ ଏଠୁ ଯାଉଚନ୍ତି ନା ନାଇଁ !" ମୁଁ ପାଟିକରି ଗର୍ଜିଲି ।

ସେ ଆଖି ମିଟି ମିଟି କରିନେଲେ । କାନ ଉପରେ ହାତ ରଖି ମୋତେ ପୁଣି ଚାହିଁଲେ । ମୋର ଆଉ ଧୈର୍ଯ୍ୟ ରହିଲା ନାହିଁ ।

ମୁଁ ଖପ୍‌କିନା ତାଙ୍କ ବୁକୁ ଉପରେ ସାର୍ଟଟାକୁ ମୁଠାକରି ଧରି ଉପରକୁ ଟାଣିନେଲି ।

ବିମଳବାବୁ ନୀରବ ଠିଆହେଇଗଲେ । କୌଣସି ପ୍ରତିବାଦ କଲେ ନାହିଁ । କୌଣସି ବିକ୍ରିୟା ମଧ୍ୟ ପ୍ରକାଶ କଲେ ନାହିଁ ।

ମୁଁ ଦାନ୍ତସଂଧାରୁ ଦାଢୁଆ ଫେଣବଜ୍‌ବଜିଆ ଶବ୍ଦରେ ପଚାରିଲି, "କ'ଣ ଦରକାର କହ ?"

ମୋର ସମସ୍ତ ଉତାପ ଏବଂ ବିସ୍ଫୋରଣକୁ ତିଳାର୍ଦ୍ଧେ ଖାତିର ନକରି ସେ କହିଲେ –

"ଆପଣ ବାହାରିଲେ ସାଙ୍ଗ ହେଇ ଯିବା ପରା ! ଆପଣ କାହିଁକି ଆଉ ସମୟ ନଷ୍ଟ

କରୁଛନ୍ତି ?"

ମାନେ ?... ମୋ' ଭିତରୁ ଭୂକମ୍ପ ଜାତ ହେଲା । ଆଖିକୁ ଅନ୍ଧାର ଦେଖାଗଲା । ମୁଁ ତାଙ୍କ ଗାଲରେ ଚୋ'କିନା ଚଟକଣାଟାଏ ବସେଇଦେଲି । ସେଥିରେ ତାଙ୍କ ବାଳ ଉଲୁରିଗଲା । ସେ ବାଁହାତରେ ଥରେ ଗାଲ ଆଉଁସିଆଣିଲେ ।

"ବାଆସ୍, ବାହାଦୁର ଏଥର । ଏଇ କାର୍ଯ୍ୟଟି ଆଗରୁ ସାରିଦେଇଥିଲେ ଆମର କେତେ ସମୟ ବଞ୍ଚିଯାଇଥାନ୍ତା !!"

ମୋ ହାତ ଦୁଇଟି ଝୁଲିପଡିଲା । ତଳପାଟି ଓହଳିପଡିଲା । ମୁଁ ହାଁକରି ଚାହିଁରହିଲି ବିମଳବାବୁଙ୍କୁ ଏବଂ ତାଙ୍କର ସେ ଅବିଶ୍ୱାସ୍ୟ ଆଚରଣକୁ ।

"ମାନେ – ଆପଣ... ମାନେ... ତଥାପି..."

"ଆପମ ବାହାରିଲେ – ଚଞ୍ଚଳ ଲୁଗା ବଦଳ କରି ଆସନ୍ତୁ ।" ଅବିଚଳିତ ଆତ୍ମୀୟତାର ସ୍ୱର । ସେଥିରେ ଆଦୌ ଅଭିନୟ ନ ଥିଲା । କୌଣସି ପ୍ରୟାସ ନ ଥିଲା ମୋ' ଭିତରେ ବିଶ୍ୱାସ ଜମେଇବାକୁ । ଅତି ସହଜ ସରଳ ଅନାବିଳ କଥା ଏବଂ ଆଚରଣ ।

ଏ ଲୋକ ପୁଣି କହୁଛି କହ୍ନେଇ ବେହେରା ମହାପୁରୁଷ, କହ୍ନେଇ ଉଦ୍ଦେଶ୍ୟରେ ଥରକୁଥର କରଯୋଡି ନମସ୍କାର କରୁଛି । ଆଶ୍ଚର୍ଯ୍ୟ !

ମୋ ଭିତର ବାତ୍ୟାରେ ସମୁଦ୍ର ପରି ମନ୍ଥିହୋଇ ଯାଉଥିଲା । ଓଲଟପାଲଟ ହୋଇଯାଉଥିଲା । ମୁଁ ପରାସ୍ତ ବୋଧକରୁଥିଲି । ସାଙ୍କୁଡି ଯାଉଥିଲି ଛୋଟରୁ ଛୋଟ ହୋଇ ଲିଭିଯିବା ପର୍ଯ୍ୟନ୍ତ ।

ବିମଳବାବୁ ମୋ' ତେଣାଟିକୁ ସହଜ ଢଙ୍ଗରେ ଧରି ମୋ' ଆଖି ଭିତରକୁ ଚାହିଁଲେ ।

"ଆପଣ ଆସନ୍ତୁ, ଲୁଗା ବଦଳ କରିବେ । ଆପଣଙ୍କୁ ପରା ମୁଁ ନେବାକୁ ଆସିଛି । ଏତିକି ଆପଣ ବୁଝିପାରୁ ନାହାନ୍ତି କାହିଁକି ?... ଆପଣ ଚାହୁଁ ନଥିଲେ ସୁଦ୍ଧା ଆଉ ଜଣେ ଆପଣଙ୍କୁ ଦେଖିବାକୁ ଚାହୁଁଥିବାରୁ ଆପଣ ମୋ' ସାଙ୍ଗେ ବାହାରିବାକୁହେବ ।"

ମୁଁ ତାଙ୍କ ହାତ ମୁଠାରୁ ଆସ୍ତେ ମୋ' ତେଣାକୁ ହୁଗୁଳେଇ ଆଣି ତାଙ୍କୁ ଚାହିଁଲି । ତାଙ୍କ ଗାଲ ନାଲିପଡିଯାଇଥିଲା । ନୋଲାଦାଗ ପରି ପଡିଯାଇଥିଲା । ମୁଁ ତାଙ୍କ ଆଖିକୁ ଚାହିଁପାରୁ ନଥିଲି ଲଜ୍ଜାରେ । ସେ ବରଂ ମୋତେ ସହଜ କରାଇବାକୁ ଚେଷ୍ଟା କରୁଥିଲେ । ମୁଁ ସବୁକଥା ଏଡେଇ ଦେଲାପରି କହିଲି –

"ଆଚ୍ଛା, ଆପଣଙ୍କ କହ୍ନେଇ ବେହେରା କଥା ମୋଠୁ ନ ଶୁଣିଥିଲେ ବରଂ ଭଲ ହୋଇଥାନ୍ତା । ଆପଣ ଭାରି ଭଲଲୋକ, ମାନେ ଅସାଧାରଣ ଲୋକ । ଆପଣ ଦୟାକରି ଆପଣଙ୍କ କାମରେ ଯାଆନ୍ତୁ । ମୋତେ କ୍ଷମା କରନ୍ତୁ – ମୁଁ ଆସିପାରିବିନାହିଁ ।"

"ମୋର ଏକମାତ୍ର କାମ ଆପଣଙ୍କୁ ମୋ' ସାଙ୍ଗରେ ନେଇଯିବା । ଆପଣ ନ ବାହାରିବା ଯାଏଁ ଏଠି ଅପେକ୍ଷା କରି ରହିବାକୁ ମୋ' ପାଇଁ ନିର୍ଦ୍ଦେଶ ଅଛି ।"

ନିର୍ଦ୍ଦେଶ ? ...ଓ ତା'ହେଲେ ସେଇ ନିଜେ ପଠେଇଚି ମତେ ଧରିନବାକୁ! ନାଲାଏକ୍, ସେ କ'ଣ ବୋଲି ପାଇଚି କି ମତେ ? ମୁଁ ତା' ପାଖରେ ଯାଇ କରପତ୍ର ଯୋଡି ଠିଆହେବି ନା କ'ଣ ? ଏ ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ କଦାପି ନୁହେଁ ।

"କ'ଣ ହେଲା – ଠିଆରହିଗଲେ କାହିଁକି ?"

ମୁଁ ବିମଳବାବୁଙ୍କର ଏ ଆତ୍ମୀୟ ବାକ୍ୟକୁ ସହିପାରିଲି ନାହିଁ । ଖିଙ୍କାରିଲା ପରି କହିଲି – "ଆରେ ହେ, ଚୁପ୍‌କର୍ ।" ପଛକୁ ଲେଉଟି ତାକୁ ଚାହିଁଲିନାହିଁ ।

"ମୁଁ ଯାଇପାରିବି ନାହିଁ – ତାକୁ ଯାଅ କହିଦେବ ।" ମୁଁ ଦୁମ୍ ଦୁମ୍ ହୋଇ ଘର ଭିତରକୁ ପଶିଗଲି । ଶୋଇବାଘରେ କେହି ନଥିଲେ । ସ୍ତ୍ରୀ ଶୋଭାମୟୀ ପୁଅ ପାଖରେ ଛୁଟି କାଟିବାକୁ ଚାଲିଯାଇଥିଲେ । ନୌକର ପିଲାଟି ସକାଳୁ ତା' ମାମୁଘରକୁ ଯାଇଥିଲା । ସଞ୍ଜକୁ ଫେରି ଆସିବା ପାଇଁ କହିଥିଲା । ଶୋଇବା ଘର କୁଣକୁ ଡ୍ରେସିଂ ଟେବୁଲ୍‌ର ଠିଆ ଦର୍ପଣ । ମୁଁ ଅଭ୍ୟାସରେ ତା' ସାମ୍ନାରେ ଠିଆ ହେଇଗଲି । ନିଜ ଚେହେରାକୁ ଦେଖି ମତେ ହସମାଡିଲା । ...ଆବେ ଯିବୁ ତ ନାଇଁ ଯିବୁ ନାଇଁ – ଏମିତି କାଇଁକି ଟାଣିହେଇ ରହିଚୁ ? ବେକୁବ୍ କାହାଁକା । ସବୁ ଢିଲା ଛାଡି ଦେ ! କୌଣସି ଜାଗାକୁ ଯିବା ନଯିବା କ'ଣ ଏମିତି ଗୁରୁତ୍ୱପୂର୍ଣ୍ଣ ବୋଲି ଭାବୁଛୁ ? ନ ଯିବାକୁ ଏମିତି ଜିଦ୍ କରି ଅଟିବସିବା ଅପେକ୍ଷା ବରଂ ଘେରାଏ ବୁଲିଆସିଲେ ଉଶ୍ୱାସ ଲାଗନ୍ତା । କ'ଣ ଘଟଣା ଥରେ ଆଖିରେ ଦେଖି ଦିଅନ୍ତୁ । ତା' ବାହାରେ ତୁ ଚାହିଁଲେ ତାକୁ ସମସ୍ତଙ୍କ ଆଗରେ ଲଙ୍ଗଳା କରିଦେଇପାରୁ । ସେ ତତେ କ'ଣ କରିପାରିବ ? ହଁ ଏମିତି ଯଦି ସୁଯୋଗ ପାଏ ତେବେ ତା' ବଚଙ୍କରମାନଙ୍କୁ ଇସାରା କରିଦେଲେ ସେମାନେ ଦି'ମିନିଟରେ ମୋର କାଟି ଛଡେଇ ଦେଇପାରନ୍ତି । ଆତ୍ମାଟିକୁ ମୁକ୍ତକରିଦେଇପାରନ୍ତି ଦେହର ପଞ୍ଜୁରିରୁ ।

ମୁଁ ଦର୍ପଣକୁ ଚାହିଁ ଖେଁ ଖେଁ ହସିପକେଇଲି । ତା'ପରେ ଆଲମାରିରୁ ହଳେ ପେଣ୍ଟସାର୍ଟ କାଢି ଗଳେଇହେଇପଡିଲି । ...ମୁକାବିଲା ଚାହୁଁଚୁ ତ – ଠିକ୍ ଅଛି ବେଟା – ମୁଁ ବି ତତେ ଦେଖିନେବି ।

ପ୍ରାୟ ଯୁଦ୍ଧ କରିବା ଭଙ୍ଗୀରେ ମୁଁ ବାହାରିଆସିଲି ବୈଠକ ଘରକୁ । ବିମଳବାବୁଟି ଅତି ସାଭାବିକ ଭାବରେ ଠିଆହେଲେ ମୋ' ସଙ୍ଗେ ବାହାରିବାକୁ । କୌଣସି ପ୍ରକାର ଖୁସି ବା ବିସ୍ମୟ ପ୍ରକାଶ କଲେ ନାହିଁ । ଏହା ହିଁ ହେବ ବୋଲି ସେ ଜାଣିଥିଲେ ସତେ ଅବା !

ଗୋଟାଏ ମୁହୂର୍ତ୍ତ ପାଇଁ ଇଚ୍ଛାହେଲା ତାଙ୍କୁ ଅପ୍ରମାଣିତ କରିବାକୁ – ମୁଁ ସବୁ ଓହ୍ଲେଇ କେବଳ ଚଢି ପିନ୍ଧି ଏଇଠି ଉଭାହୋଇଯାଇପାରେ ଏବଂ କହିପାରେ – ମୁଁ ଯାଉନାହିଁ, ଏବେ ନୁହେଁ କି କେବେ ନୁହେଁ । ୟୁ ଗେଟ୍ ଆଉଟ । ତା' ନ କରି ମୁଁ ଫୋପାଡିଲା ପରି କହିଲି – "ଚାଲନ୍ତୁ ।"

"ଆଜ୍ଞା ଚାଲନ୍ତୁ!" ସେ ମୋ' ପଛକୁ ଲାଗିଆସି କହିଲେ । ତାଙ୍କରି ଗାଡିରେ ହିଁ ଆମେ ସହର ଆରପାରି ବଡବଡିଆଙ୍କ କୋଠା କରାମତି ଅଞ୍ଚଳରେ ପଶିଲୁ । 'ଋଷିଭିଲା'ର ଫାଟକ ବାଟେ ଗାଡି ପଶିଲାବେଳେ ମୁଁ ସାମାନ୍ୟ ଦବିଗଲି । ଓ ଏତ ମହାପ୍ରତାପୀ ଡା: ମହାପାତ୍ରଙ୍କ

ବଙ୍ଗଳା । ସେ ଅଗସ୍ତ୍ୟ ଭଳି ସାତସମୁଦ୍ର ଶୋଷିଦେଇ ମିଟିମିଟି ଅନେଇଛନ୍ତି କିଛି ନ ଜାଣିଲା ପରି । ତାଙ୍କର ପୁଞ୍ଜାଏ ଖଣ୍ଡେ କୋଠା ଭିତରୁ ଏ ଖଣ୍ଡିକ ଖୋଦ୍ ତାଙ୍କ ନାଁରେ । ...ଏଠିକି କହ୍ନେଇ କେମିତି ଖେପିଆସିଲା ?

ମୁଁ ରୁମାଲ କାଢି ମୁହଁ ପୋଛିଲି ।

ଗାଡି ପୋର୍ଟିକୋ ପାଖରେ ରହିବା ଆଗରୁ ମୁଁ ଲକ୍ଷ୍ୟ କରିସାରିଥିଲି ଆଉ ଦଶ ବାରଖଣ୍ଡ କାର୍ ।

ମୋ ବାବାରେ... ଏ ତ ବିରାଟ କାରବାର !

ବିମଳବାବୁ ମୋ' ପାଇଁ କବାଟ ଖୋଲି ଧରିଲେ । ଦରବାନ୍ ସଲାମ୍ ମାରି ଠିଆହେଲା ।

ଦୁଆରବନ୍ଧ ପାରି ହେଲା ବେଳକୁ ଗୋଟାଏ ବାସ୍ନା ମୁଁ ବାରିପାରିଲି । ଘର ଭିତର ବେଶ୍ ଥଣ୍ଡା ଲାଗିବାର ମଧ ଅନୁଭବ କଲି । ସ୍ୱାଭାବିକ କଥା – ବଡଲୋକ ଘର – ସେଣ୍ଟ୍ରାଲ ଏଆର କଣ୍ଡିସନ ଲାଗିଥିବ । ବାସ୍ନା ସ୍ପ୍ରେ କରାହେଇଥିବ ।

କିନ୍ତୁ ସେ ଅମାପ ନୀରବତା ! ଗହନ ଗଭୀର ନୀରବତା ! ମୋ' ନିଜ ପାଦଶବ୍ଦ ବି ଶୁଭୁ ନଥିଲା ସେ କାର୍ପେଟ ଉପରେ । ଏତେ ଚୁପ୍‌ଚାପ୍ ଅସ୍ୱାଭିବକ ମନେହେଉଥିଲା । ସାମାନ୍ୟ ଭୀତି ସଞ୍ଚାର କରୁଥିଲା । ମହାଶୂନ୍ୟକୁ ଉଶ୍ୱାସରେ ଗଳିପଡିଲା ପରି ଲାଗୁଥିଲା ।

ଦୋତାଲାରେ ଗୋଟାଏ କବାଟ ପାଖକୁ ଧାଡି ଧାଡି ଜୋତା ପାଖରେ ନଇଁପଡି ବିମଳବାବୁ ତାଙ୍କ ସେଣ୍ଡଲ ହଳକ କାଢିଦେଲେ ।

ମୁଁ ମୋ' ଚପଲ କାଢିଦେଲି । ଜଣେ ଦରଓ୍ୱାନ ଦିହଳ ଜୋତାକୁ ଯଥାସ୍ଥାନରେ ସଜାଡି ରଖିଦେଲା । କବାଟ ଫିଟେଇ ଆମେ ଭିତରେ ପଶିଲୁ । ଈଷତ ନୀଳ ଆଲୁଅ ଭିତରେ ସମସ୍ତଙ୍କ ପିଠି ନିଶ୍ଚଳ ଦେଖାଯାଉଥିଲା । ସବା ଆଗରେ ଏଇ ଆଡକୁ ମୁହଁକରି ଯେ ଆଖି ବୁଜି ବସିଥିଲେ ତାଙ୍କୁ ଦେଖି ମୁଁ ଚମକିପଡିଲି । ମୁଁ ଆଶା କରିଥିଲି ଗେରୁଆ ପିନ୍ଧା ଜଟା ଦାଢି ଲମ୍ବେଇଥିବା କୌଣସି ଏକ ବାବା ରୂପ ।

ଦେଖିଲି ସେଇ ହାଫ୍ ବୁସ୍‌ସାର୍ଟ ଆଉ ପେଣ୍ଟ ପିନ୍ଧା ଖୁରୁମୁସିଆ କହ୍ନେଇ ବେହେରା । କୌଣସି ରୂପସଜ୍ଜା ନାହିଁ, କୌଣସି ଆଡମ୍ବର ନାହିଁ ।

ମୋ ମୁହଁ ଉପରେ ଆସ୍ତେ ରୁମ ଟାଙ୍କୁରିଗଲା । ନୀରବ ହସଟିଏ ମୁକୁଳିଗଲା ଫୁଲ ପରି । ମୁଁ ଖୁବ୍ ସହଜ ବୋଧକଲି । ମୋ' ଦେହରୁ ଉତାପ ଓହ୍ଲେଇଗଲା । ମୁଁ ସବା ଶେଷଧାଡିରେ ଚୁପ୍‌କିନା ବସିଗଲି, ମୋ' ପାଖରେ ବିମଳବାବୁ । ଆମେ ସେ ନୀରବ ସମୁଦ୍ର ଭିତରେ ସମସ୍ତଙ୍କ ଅଲକ୍ଷ୍ୟରେ ଟୁପ୍‌ଟାପ୍ ବୁଡିଗଲୁ । ନିସ୍ପନ୍ଦ, ନିଶ୍ଚଳ ବସିରହିଲୁ ଅନ୍ୟମାନଙ୍କ ପରି ।

ଏଠିକି କହ୍ନେଇ ବେହେରା ଧାପିଆସିଲା କିପରି ? ସେ କ'ଣ ଗୋଟାଏ ଯାଦୁ ଦେଖେଇ ନଥିଲେ ଏ ଦରଓ୍ୱାନ ତାକୁ ଧକିଆ ମାରି ବିଦାକରିଦେଇନଥାନ୍ତା ? କିନ୍ତୁ ସେ କ'ଣ ଚମତ୍କାର ଦେଖେଇ ପାରିବ ? ପୁରୁଣା ବାହାପିଆ କହ୍ନେଇ – ଭୁରୁଡି ମାରିବାରେ ଓସ୍ତାଦ୍ । ହେଲେ ଏ

ଯେଉଁସବୁ ଏଠି ବସିଚନ୍ତି, ଏମାନେ କ'ଣ ସହଜେ ବହପିଯିବା ଜନ୍ତୁ ? ଏ ତ ତହୁଁ ବଡା ତହୁଁ ବଡା ସବୁ ଜମିଛନ୍ତି, ଆଖିମିଟିକାରେ ସୃଷ୍ଟିଅଟି ଟାଳିଦେଲା ଭଳି ଲୋକ । ...ହେଇପାରେ, ସେ ଯ୍ୟା' ଭିତରେ ବଦଳିଯାଇଚି । ...ଧର, ମଦ ପିଇବା ଛାଡିଦେଇଚି... ସେମିତି ଆଉ କ'ଣ ସବୁ ମାଛ, ମାଉଁସ ଆଦି ଛାଡିଦେଇଚି, ଅଫିସର ସ୍ଥିର ହେଇ ବସି ସବୁ କାମ ନିର୍ଦ୍ଦୋଷ କରିପକେଇଚି । ସମସ୍ତଙ୍କୁ ଚହିଁ ମୃଦୁକଥା କହିଚି... ପ୍ରଫୁଲ୍ଲ ଦେଖାଯାଇଚି... ଆଦୌ ରାଗିନାହିଁ, ଆଦୌ ପାଟିକରିନାହିଁ, ଖୁବ୍ ଶାନ୍ତ ସ୍ଥିର ଦେଖାଯାଇଚି ।

ଲୋକେ ହୁଏ ତ ପ୍ରଥମେ ଥଟ୍ଟା କରିଛନ୍ତି, ତା'ପରେ ଆଶ୍ଚର୍ଯ୍ୟ ହେଇଛନ୍ତି । ଚିଡେଇଛନ୍ତି । ଚୁଟୁକା ଇଲମ ମାଗିଛନ୍ତି । ସମାଧାନ ଲୋଡିଛନ୍ତି । ଆଉ କହ୍ନେଇ ହୁଏତ ତାଙ୍କୁ ଶାସ୍ତ୍ର ଶୁଣେଇଚି । କଥା କାନରୁ କାନକୁ ବ୍ୟାପିଚି ।

ଡା: ମହାପାତ୍ର ଘରେ ଡାକରା ପାଇ ସେ ପହଞ୍ଚିଚି, ହାତ ଦେଖିଚି, କୋଷ୍ଠୀ ଦେଖିଛି କିମ୍ବା କାହାର ମୁଣ୍ଡବଥା, କାହାର ଜର ଛୁଇଁଦେଇ ଭଲକରିଦେଇଚି ।

ତା'ପରେ ହୁଏତ ତାକୁ ଲୋକେ ଘେରିଯାଇଛନ୍ତି, ସେ ମହାପୁରୁଷ ବନିଯାଇଚି । ତାକୁ ସେଇ ଭୂମିକା ଜାରିରଖିବାକୁ ପଡିଚି ଏ ପର୍ଯ୍ୟନ୍ତ । ଆହା ବିଚରା !

ସେଇଠୁ ନିଜକୁ ମହାପୁରୁଷ ମନେକରି ଅଭିନୟ କରୁ କରୁ ସତକୁସତ ମହାପୁରୁଷ ଲକ୍ଷଣ ବି କିଛି କିଛି ଦେଖାଦେଇଚି ।

ଖୁସ୍‌ମୁସ୍ ଶବ୍ଦ ଶୁଭିଲା ।

ମୁଁ ଆଖି ଟେକି ଚହିଁଲାବେଳକୁ କେତେଜଣ ସ୍ତ୍ରୀଲୋକ ଏବଂ ଏ ପାଖରୁ କିଛି ପୁରୁଷ ଉଠି ମଞ୍ଚଆଡକୁ ଗଲେ । ପାଦ ପାଖେ ମୁଣ୍ଡ ଲଗେଇ, କରଯୋଡହେଇ ପଛେଇ ପଛେଇ ବାହାରକୁ ଚାଲିଗଲେ ।

ବିମଳବାବୁ ଠିଆହେବାର ମଞ୍ଚସ୍ଥ ମହାପୁରୁଷ କ'ଣ ବୋଧେ ଇସାରା କଲେ । ବିମଳବାବୁ ମୋ' ଅଣ୍ଟାରେ ହାତମାରି ଆସ୍ତେ ଆଗେଇବାକୁ ସାମାନ୍ୟ ଚପ ପକେଇଲେ । ମୁଁ ଦୋ-ଦୋପାଞ୍ଚ ହେଇ ଘୁଞ୍ଚିଲି; ହେଲେ ଭିତରେ ଭାଗ ଭାଗ ହୋଇ ଯାଉଥିଲି । ଏ ଯେଉଁ ରଙ୍ଗନାଥନ୍, ପିଲାଇ, ଅମୃତଲିଙ୍ଗମ, ମହାପାତ୍ର, ଦାସବାବୁମାନେ ସବୁ ଆସିଛନ୍ତି, ଏମାନେ ଏକେ ଏକେ ଦୁର୍ଲଭ ପଦାର୍ଥ । ତାଙ୍କୁ ସଲଖେ ଚହିଁଦେବାକୁ କାହାରି ହୁବ ପାଇବ ନାହିଁ । ଆବେ, ଏମାନେ ଯୋଉଠି ମାଟିଗୋଡି ପରି ଗଡିଯାଉଛନ୍ତି ମୁଁ କି ଛାର – ତାଙ୍କ ତୁଳନାରେ ମାଝିଗୋଡରେ ଗୋଟେ ମଣିଷ !

ଅନ୍ୟପକ୍ଷେ ଭିତରୁ ହାବୁକେଇ ଉଠୁଥାଏ – ଏଇସବୁ ମୂଳରେ ସେଇ କହ୍ନେଇ ବେହେରାଟି ? ସେଇଟାକୁ ପରା ମୁଣ୍ଡ ନୁଆଇଁ ମୁଁ ପଣେ ହବ ବିଧା ଖୋବିଦେଇପାରେ । ସେଇଟା ପରା ମତେ ଦେଖିଲେ ଛେରିପକେଇବ । କେତେ ନେହୁରା ହବ ପାଖରେ ବସେଇବାକୁ । ତା'ର ସବୁଯାକ ମିଛ ଶୁଣିବାକୁ ଆଉ କେହି ତା'ର ସେମିତି ନାହାନ୍ତି ବୋଲି କେତେ ମନଧରା କଥା କହିବ । ଆଉ ମୁଁ ? ମୁଁ ତା' ଗାଲ ତୋଡିଦେଇପାରେ, କାନ ମୋଡି ଦେଇପାରେ । ତାକୁ ବାହୁ

ବେଢେଇ ତା' ନାକକୁ ଦାନ୍ତେଇପାରେ । ଏମାନେ କ'ଣ ଜାଣିବେ ତା' ସାଙ୍ଗେ ମୋର ଭାବଦୋସ୍ତି ? ନିଶା ଖାଇ ଅଚେତ ହୋଇପଡିଥିଲାବେଳେ ତାକୁ କାନ୍ଧରେ ବୋହି ମୁଁ ରାତିରେ ତା' ଘର ପିଣ୍ଡାରେ ଶୁଆଇଚି । ତା'ର ବାର ପ୍ରକାର ଲୁଙ୍ଗୁରା ଆଚରଣ ଛଡେଇ ମିଆଁ-ବିବିର କଳି ଭାଙ୍ଗିଚି । ଆହା ବିଚରା, ଯା' ଦାଉ ସହିନପାରି, ଏ ହାରାମିଖୋର ପାଇଁ ମରିଗଲା । ତା'ପରେ ଏଇଟାକୁ ମୁଁ ଦେଖିନଥିଲି ସାତବର୍ଷ । ସେ ଥିଲା ସେଇ କୋରାପୁଟ ଭିତରେ କୋଉଠି । ସେଇଠୁ କ'ଣ ନା ଏକାଥରେ ମହାପୁରୁଷ ! ଆବ୍‌ବେ ମହାପୁରୁଷ କ'ଣ ଗଛରେ ଫଳିଚନ୍ତି ?

ମୁଁ ସେମିତି ବସି ବସି ଆଉ ଟିକିଏ ଘୁଞ୍ଚିଲି । ପ୍ରାୟ ସମସ୍ତେ ଜଣ ଜଣ ହୋଇ ମୁଣ୍ଡ ଗଡେଇ ବିଦାହୋଇସାରିଥିଲେ । କେବଳ ଡା: ମହାପାତ୍ର ଆଉ ବିମଳବାବୁ ଥାଆନ୍ତି । ମୁଁ ତଳକୁ ମୁହଁପୋତି ବସି ରହିଥିବାରୁ ଅନେକେ ହୁଏତ ଭାବିଥିବେ ଯେ ମୁଁ କୌଣସି ଯୋଗଫୋଗ କରୁଥିବି ।

ବିମଳବାବୁ ଘୁଞ୍ଚିବା ମୁଁ ଜାଣିପାରିଥିଲି । ତା'ପରେ ମୁଁ ସିଧାସଳଖ କହ୍ନେଇ ପାଖକୁ ଉଠି ଚାଲିଯିବା ଉଚିତଥିଲା । ଏବେ ସିନା ଭାବୁଛି – କିନ୍ତୁ ସେତେବେଳେ କେଜାଣି କାହିଁକି ଗୁଷିଲା ଭଳି ସେଇଠି ବସିରହିବାକୁ ଇଚ୍ଛା ହେଉଥିଲା । ମୋ' ଆଖିକୁ ହୁଏତ ଘୁମ ମାଡିଆସୁଥିଲା । ଭାରି ନରମ କାର୍ପେଟ, କାକର ନରମ ଆଲୁଅ । ନିଘଞ୍ଚ ନୀରବତା ।

ଏତିକିବେଳେ ପିଠିରେ ଦାଉଁକିନା ଗୋଟାଏ ବିଧା ପଡିବାରୁ ମୁଁ ଏକାଥରେ ଚମକିପଡି ଠେଙ୍ଗା ହେଇଗଲି ।

ବିମଳବାବୁ ଆଉ ଡାକ୍ତର ମହାପାତ୍ର ବିଭୋର ହୋଇ ଠିଆହୋଇଥା'ନ୍ତି ଦୂରରେ । ମୋ' ଆଗରେ କହ୍ନେଇ ଅଳ୍ପ ହସି ଠିଆହେଇଥାଏ ।

ମୁଁ ଛଲାଙ୍ଗ ମାରି ଠିଆହେଇଗଲି । ତାକୁ କୁଣ୍ଢେଇପକେଇବାର ନିମେଷ ପୂର୍ବରୁ ସେ ଠିକ୍ ମୋ' ପହଞ୍ଚ ବାହାରକୁ ଘୁଞ୍ଚିଯାଇଥିଲା । ତା'ପରେ ଅନ୍ୟମାନେ ସେଇଠି ଚାହିଁରହିଥିବା କଥା ମୁଁ ଅନୁଭବ କରିବାରୁ ନିଜକୁ ସଂଯତ କରିନେଲି ।

କିନ୍ତୁ କହ୍ନେଇ ମୋ' ପିଠିରେ ବିଧାଟି ବସେଇଥିବା ତ' ମିଛ ନୁହେଁ । ହଉ, ଦେଖାଯାଉ । ମୁଁ ତା' ପଛେ ପଛେ ଗଲି । ଆମେ ଗଦି ଉପରେ ବସିଲୁ । ବୁଲି ଚାହିଁଲାବେଳକୁ ଆର ଦୁଇଜଣ ସେଇଠୁ ଘୁଞ୍ଚିଯାଇଥିଲେ । ହୁଏତ କହ୍ନେଇ ସେମାନଙ୍କୁ ଚାଲିଯିବାକୁ ଇଙ୍ଗିତ ଦେଇଥିଲା ।

ମୁଁ ସାମ୍ନାରେ ବସି ତା' ମୁହଁକୁ ଚାହିଁବା ମାତ୍ରେ ମୋତେ ଭାରି ହସମାଡିଲା ।

"କିବେ କହ୍ନେଇ, ଏସବୁ କ'ଣ ଅପୂର୍ବ କଥା ?"

ମୁଁ ତା' ଜଙ୍ଘଉପରେ ଚାପୁଡାଟିଏ ବସେଇ ଦେଇଥା'ନ୍ତି । ମୋ' ହାତ ଠିକ୍ ନ ପହଞ୍ଚିବା ଭଳି ସେ ବସିଥିଲା । ମୁଁ ଘୁଞ୍ଚିଯାଇ ସେ କାର୍ଯ୍ୟଟା କରିବାକୁ ଇଚ୍ଛା କଲି ନାହିଁ । କେମିତି ଟିକିଏ ମତେଇପଡିଲା ପରି ଲାଗିଲା । ବୋଧହୁଏ ସେ ପରିବେଶ ପାଇଁ ସେମିତି ଲାଗୁଥିଲା ।

"ଆଚ୍ଛା କହ୍ନେଇ, କ'ଣ ଏ ଘଟଣା ମତେ ଟିକିଏ ବୁଝେଇଦେବୁ ?"

"କିଛି ନାଇଁ । କ'ଣ ତତେ ବୁଝେଇବି ?"

"ଆଚ୍ଛା, ତା'ହେଲେ ଏମାନେ ସବୁ ତୋ' ପାଦପାଖରେ ମୁଣ୍ଡିଆ ମାରୁଛନ୍ତି କାହିଁକି ?"

ସେ ସାମାନ୍ୟ ହସିଲା । ସେତେବେଳେ ସେ ଖୁବ୍ ଉଦାସ ଦେଖାଯାଉଥିଲା ।

ତା'ପରେ ମୋ' ଆଖିକୁ ଅନେଇ କହିଲା, "ତୁ ଯାହା ଯାହା ମୋ' ବିଷୟରେ ଜାଣିଛୁ ଏମାନେ ସମସ୍ତେ ସେସବୁ ଜାଣନ୍ତି ।"

"କେମିତି ?" – ମୁଁ ଅବିଶ୍ୱାସରେ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

"ମୁଁ କହିଛି ।"

"ମାନେ, ତୁ ନିଜେ ସେମାନଙ୍କୁ କହିଛୁ ତୋର ସବୁ କଥା ?"

"କାହିଁକି – ସେଥିରେ ଅସୁବିଧା କ'ଣ ?" ସେ ସେମିତି ଉଦାସ ଢଙ୍ଗରେ ସାମାନ୍ୟ ହସୁଥିଲା ।

"ତୋର ଅସୁବିଧା ନ ଥାଇପାରେ – ତଥାପି ତୁ ନିଜେ ସବୁ କଥା ଖୋଲି କହିପାରିବା ସହଜ କଥା ନୁହେଁ । ତେବେ ଶୁଣିଲାପରେ ସେମାନଙ୍କର ଅସୁବିଧା ହେଇ ନାହିଁ ?"

"ଓ ବୁଝିଲି – ସନ୍ଦେହ, ଅବିଶ୍ୱାସ କଥା ତ ? ହେଇଚି ସେ ସବୁ ଅସୁବିଧା, ତେବେ ତାକୁ ସେମାନେ ନିତିଦିନ କିଛି କିଛି ପାରିହଉଛନ୍ତି । କେହି ତା' ଭିତରୁ ସଂପୂର୍ଣ୍ଣ ମୁକ୍ତ ହୋଇନାହିଁ ଏଯାଏଁ । ହେବା ବି ସହଜ ନୁହେଁ । ମୁଁ ବି ନିଜେ ସେଥିରୁ ମୁକ୍ତ ନୁହେଁ ।"

"ମାନେ ?" ମୋ' ଭୃରୁ କୁଞ୍ଚେଇଗଲା । ସେ ସାମାନ୍ୟ ଆମୋଦିତ ହେଲା ପରି କହିଲା – "ଆରେ, ଏ ସମସ୍ତ ବିଷୟରେ ମୋର ତ' ବିଶ୍ୱାସ ରହିବା କଥା ନା ନୁହେଁ ? ମୁଁ ନିଜେ ଆଚମ୍ବିତ ହେଲା ପରି ଦେଖୁଚି ଅନ୍ୟମାନଙ୍କ ଭଳି । ଅବିଶ୍ୱାସ କରିବା ସମ୍ଭବ ନୁହେଁ । ବିଶ୍ୱାସ କରିବା ମଧ ଭାରି କଠିନ ।"

ମୁଁ ସମ୍ଭାଳି ନପାରି ତା' ପାଖକୁ ଘୁଞ୍ଚିଗଲି । ତେବେ ବି ସେ ମୋ' ପହଞ୍ଚ ବାହାରେ ରହିଯିବାରୁ ମୋତେ ଗୋଟାଏ କିମ୍ଭୂତ ଅନୁଭବ ହେଲା । ମୁଁ ହୁଏତ ଘୁଞ୍ଚି ଘୁଞ୍ଚି ତାକୁ ପାଇବା ଯାଏଁ ଆଗେଇ ଯାଇଥା'ନ୍ତି । କିନ୍ତୁ ମୋର ମନେହେଲା ଯେ ସେ ବୋଧହୁଏ ମୋର ଅପହଞ୍ଚ ହେଇଯାଇଛି । ମୁଁ ମନକୁ ମନ ବୁଝାଇ ସେ ବ୍ୟବଧାନଟାକୁ ସ୍ୱୀକାର କରିନେଲି । ମୁଁ ଛୁଇଁ ନ ପାରିଲେ ସୁଦ୍ଧା ସେ ତ ଚାହିଁଲେ ଛୁଇଁପାରୁଚି । ହେଇ ମୋ' ସାମ୍ନାରେ ନିରୋଳାରେ ବସି ଘନିଷ୍ଠ କଥାବାର୍ତ୍ତା କରିପାରୁଛି !

ତେବେ ମୁଁ ତା' ସହିତ ମୋ' ନିଜ ଢଙ୍ଗରେ କଥା ହୋଇପାରୁନଥିଲି । ସେଭଳି ଇଚ୍ଛା ହିଁ ହେଉନଥିଲା । ମୁଁ ତାକୁ ପଚାରିପାରିଲି ନାହିଁ – "ଆଜିକାଲି କ'ଣ କରୁଛୁ... କେମିତି ଚଳୁଚୁ ? ତୋ' ଝିଅ କୋଉଠି ଅଛି... କେତେ ପାଠ ପଢ଼ିଲାଣି ? ତୁ ଏଇନା ରହୁଚୁ କୋଉଠି ?"

ଖୁବ୍ ପିଲାଳିଆ ପ୍ରଶ୍ନଗୁଡିଏ – ତା'ର କିଛି ଅର୍ଥ ନାହିଁ ।

ଆଉ ଟିକେ ଗହୀରରେ ଗୋଳିଘାଣ୍ଟି ହେଉଥିବା ପ୍ରଶ୍ନଗୁଡିଏ ପଚାରିପାରିଥା'ନ୍ତି । ଯଥା "ଏବେ ତୁ ପୁରୁଣା ବଦ୍‌ମାସି କରୁଚୁ ନା ନାହିଁ ? ...ମାନେ ମାତାଲ ହଉଚୁ ନା ନାହିଁ, ସୁନ୍ଦର

ମୁହଁଟିଏ ଦେଖିଲେ ମତୁଆଲା ହଉଚୁ ନା ନାଇଁ ?"

ଖୁବ୍ ଅଭଦ୍ର ଅବାଞ୍ଛିତ ମନେହେଲା ସେସବୁ । ସେ ହଁ କରିଥିଲେ ମୁଁ ଓଠ ଲେଉଟାଇ ଟାକରା ମାରିଥା'ନ୍ତି । ମୁଁ ତା'ଠୁ କାହୁଁ କାହୁଁ ବଡା ଆଦମି – ଶୁଦ୍ଧ, ପୂତ, ମାନନୀୟ । – ଏଇ ଇଚ୍ଛାଟି ବୋଧେ କାମ କରୁଥିଲା । ନାହିଁକରିଥିଲେ କହିଥା'ନ୍ତି, "ଓ, ବୁଝିଗଲି, ତୋର ଗୁମର ତା'ହେଲେ ଏଇଠି ! ସେ କଥା କହୁନୁ ! ଏସବୁ ଥାଇ କ'ଣ ତୁ ଭଗବାନ୍ ହେଇଯିବୁ ?"

କିନ୍ତୁ କେଜାଣି କାହିଁକି ଭାରି ନିର୍ବୋଧ ଭଳି ଲାଗିଲା, କିମ୍ବା ସାହସ ହେଲା ନାହିଁ ସେମିତି ପଚାରିଦେବାକୁ ।

ମୁଁ ବାଧ ଶିଶୁଟିଏ ପରି ତଳକୁ ମୁହଁ ପୋତି ବସିଥିଲି । କିଛି କରିବାକୁ କିମ୍ବା କହିବାକୁ ମୋର ପ୍ରବୃତ୍ତି ଆସ୍ତେ ଆସ୍ତେ ଲିଭିଯାଉଥିଲା । ଗଭୀର ରାତି ମୋତେ ଘେରିଯାଉଥିଲା ପରି ଲାଗୁଥିଲା । ମୋର ଭିତର ବାହାର ଅବୟବ ଥକି ଯାଇଥିବା ପିଲାଙ୍କ ଭଳି ଘୁମେଇ ପଡୁଥିଲେ । ମୋ' ଆଖିପତା ମତେଇ ହୋଇଆସୁଥିଲା । କହ୍ନେଇ କ'ଣ ବୋଧେ କହୁଥିଲା ପରମ ବିଶ୍ୱାସରେ ଆତ୍ମୀୟତାରେ । ମୋର ସେସବୁ କିଛି ମନେପଡୁନାହିଁ; କିନ୍ତୁ ଗୋଟାଏ ବାକ୍ୟ ଅତି ପ୍ରାଞ୍ଜଳ ମନେରହିଯାଇଛି ।

"ଶୁଣ୍, ବାଘ ଗ୍ରାସିଲା ପରି ସେ ଗ୍ରାସିଯାଏ; ଭଲମନ୍ଦିର ବାରଣ କରେ ନାହିଁ । ଗ୍ରାସିଗଲା ପରେ କେବଳ ବାଘପଣ ହିଁ ରାଜୁତିକରେ ।"

ନିଦ ମଳମଳ ଆଖିରେ ମୁଁ ଥରେ ତାକୁ ଚାହିଁଲି । କ'ଣ ସବୁ ସେ କହୁଥିଲା ?

କିଛି କାହାକୁ ପଚାରିବା ଦରକାର ନାହିଁ – ପଚାରିଲେ ନିଜକୁ ପଚାର୍ । ଆକାଶକୁ ଫିଙ୍ଗିଥିବା ପେଣ୍ଡୁ ପରି ତୋ' ପ୍ରଶ୍ନ ନିଶ୍ଚୟ ଫେରିଆସିବ ଉତ୍ତର ହୋଇ । ଏଠି ଗୁରୁ ଗୁରୁ ନୁହେଁ କି ଲଘୁ ଶିଷ୍ୟ ନୁହେଁ । ତୋରି ନିଜ ତାଳରେ ସତ୍ୟ ଫଳିଛି । ତୁ ତାକୁ ଅନୁଭବି ନାହୁ । ସମସ୍ତେ ତାକୁ ହିଁ ପାଇଛନ୍ତି । ତୁ ତୋ' ଢଙ୍ଗରେ, ମୁଁ ମୋ' ଢଙ୍ଗରେ ଆସି ଏଇଠି ଏକାଠି ବସିଛୁ । ଏତେ ପାଖରେ ହେଲେ ବି କେହି କାହାକୁ ଛୁଇଁବା ମନା । ...କିନ୍ତୁ ସେ ଚାହିଁଲେ କାହାକୁ କେତେବେଳେ ଗ୍ରାସି ଯାଇପାରେ । ଚାହିଁଲେ ଆମ ଉଭୟଙ୍କୁ ଏକାଠି ଗ୍ରାସିଯାଇପାରେ ।

ଏଇଟା କ'ଣ କହ୍ନେଇ ବେହେରା କହୁଛି ? କାଇଁ ନାହିଁ ତ !

ମୁଁ ମୁହଁ ଟେକି ଚାହିଁଲି । କହ୍ନେଇ ଉଠିଯାଇଥିଲା – କେତେବେଳେ କେଜାଣି ! ମୁଁ ହୁଏତ ଶୋଇଯାଇଥିଲି । ଖୁବ୍ ନରମ ଗଦି, କାକର, ବାସ୍ନା, କଅଁଳ ନେଳି ନେଳି ଆଲୁଅ, ଗହନ ନିଃଶବ୍ଦ ରାଜ୍ୟ ! ...ମଙ୍ଗ ଭରିଯାଉଥିଲା । ନିଦ ମତେଇହୋଇପଡୁଥିଲା ।

ବିମଳବାବୁର ମୁହଁ ଖୁବ୍ ପାଖରେ ଦେଖି ମୁଁ ଚେଙ୍ଗାହୋଇଗଲି । ତା'ପରେ ସେ ମୋତେ ଇସାରା ଦେଉ ଦେଉ ମୁଁ ଏତେ ପାଟିରେ କହିଲି, "ସେଇଟା ପରା ମୋ' ଦୋସ୍ତ । ଏକାଠି ଖାଇଚୁ, ଶୋଇଚୁ, ଗପିଚୁ । ସେ ଏବେ ମତେ ଡରେଇଲେ କ'ଣ ମୁଁ ଡରିଯିବି ?"

ହାଉ ହାଉ ଭିତର ଗର୍ଜନଟାଏ ଲେଉଟି ଆସି ମୋ' ଉପରେ ଅଜାଡିହୋଇଗଲା । ମୁଁ

ଆକ୍ଟା ମାକ୍ଟା ହୋଇ ଉଠିଗଲି । ପହଁରିଲା ପରି ପାରିହୋଇଗଲି ସେ ଯାଦୁମଣ୍ଡପ ।

ପାଖ ବଖରାରେ ତରବରରେ ଚପଲ ପିନ୍ଧି ଠିଆହେଲି ମୁହୂର୍ତ୍ତେ । ଭିତରେ ବସିଥିବା ଲୋକଙ୍କ ପଟୁଆର ସେଇଠି କେଜାଣି କାହିଁକି ନୀରବ ଅପେକ୍ଷା କରିଥିଲା – ମୋତେ ଦେଖି ସେମାନେ ଆଡହୋଇଯାଉଥିଲେ ।

"ଏକ୍‌ଜାକ୍ଟଲି – ମୁଁ ତ ସେଇଆ କହୁଚି !"

"ଫାଣ୍ଟାଷ୍ଟିକ୍ – ଏଇଟା ତ ମିରାକ୍‌ଲ୍ ।"

ମୁଁ ବିମଳବାବୁଙ୍କୁ ପ୍ରାଣପଣେ ସେ ଗହଳି ଭିତରେ ଖୋଜୁଥାଏ । ସେ ବିଚରାଟି କୋଉଠି ?

ଦୁଆରମୁହଁ ପାଖରେ ତାଙ୍କୁ ଦେଖି ମୁଁ ତରବରରେ ସେଇଆଡେ ମାଡିଗଲି । ଆମେ ଦୁହେଁ ଗାଡିରେ ବସିଲାବେଳେ ସମସ୍ତେ ନିଃଶବ୍ଦ ଆସି ଗାଡି ପାଖରେ ଠିଆହେଇଥିଲେ ।

ଘରେ ଆସି ହୋସ୍ ଫେରିଲା ।

ବିମଳବାବୁ ଆଗଭଳି ଆତ୍ମୀୟତା ପରିବର୍ତ୍ତେ ଗୋଟାଏ ପ୍ରକାର ସମ୍ଭ୍ରମରେ ଆଡ ଆଡ ହେଉଥିବାର ଲକ୍ଷ୍ୟ କଲି ।

ସେ ଗୋଟିଏ 'କ୍ୟାସେଟ୍' ବଢେଇ କହିଲେ, "ଆପଣଙ୍କ ଭଏସ୍ !" ଏବଂ ନମସ୍କାର କରି ଘୁଞ୍ଚି ଘୁଞ୍ଚି ଚାଲିଗଲେ ।

ମୋ ଭଏସ୍ ? ମାନେ ମୁଁ କମ କେତେବେଳେ କ'ଣ କହିଲି ? ସେଇଠି ?

ମୁଁ ତରବର ତାକୁ କ୍ୟାସେଟ୍ ପ୍ଲେଅରରେ ଲଗେଇ ବୋତାମ ଟିପିଲି ।

"କିଛି କାହାକୁ ପଚାରିବା ଦରକାର ନାଇଁ... ପଚାରିଲେ ନିଜକୁ ପଚାର୍ । ...ଆକାଶକୁ ଫିଙ୍ଗିଥିବା ପେଣ୍ଡୁପରି..."

ମୁଁ କାଠପିତୁଳା ପରି ଠିଆ ରହିଥିଲି । ଏ ତ ନିଶ୍ଚୟ ମୋର ହିଁ ସ୍ୱର ! କିନ୍ତୁ...

ତା'ପରେ ବିଜୁଳି ମାରିଲା ପରି ମୁଁ ଡିଆଁମାରି ଦୁଆରକୁ ଧାଇଁ ଯାଇଥିଲି – ବିମଳବାବୁ ଚାଲିଯାଇଥିଲେ । ମୋର ଇଚ୍ଛା ହେଲା ରାସ୍ତାରେ ଧାଇଁ ତାଙ୍କୁ ଗୋଡାଇ ଧରିବାକୁ । ମୋ' ଭିତରେ ପ୍ରବଳ ବିସ୍ଫୋରଣ ଘଟୁଥିଲା । ବିସ୍ମୟ, ବିଦ୍ରୋହ, କ୍ରୋଧ, କୌତୂହଳ, ଆନନ୍ଦ – ସବୁ ମିଶି ଘୋର ବ୍ୟୁତ୍ପାତ ।

କନ୍ହେଇ ବେହେରା ! ତୁ ମତେ ଫାନ୍ଦିବାକୁ ଜାଲ ପକେଇଚୁ ! ମୁଁ ଧରା ଦଉନାଇଁ ଏତେ ସହଜରେ, ମୁଁ ଏବେ ବି ମାନିପାରୁନାହିଁ ଯେ ତୁ ସେଇ ଚାଲାକ୍ ଈଶ୍ୱର ! ଆଉ ଆମେ ସବୁ ବେକୁବ – ମୁଁ ଆଉ ଥରେ ତା' ସଙ୍ଗେ ମୁକାବିଲା ଚାହେଁ । ମୁଁ ଅପେକ୍ଷା କରିଛି । ତୁ ନିଜେ ମୋତେ ନ ଡକେଇବାଯାଏଁ ମୁଁ ନିଜେ ଯିବିନାହିଁ ବୋଲି, ଯାଇପାରିବି ନାହିଁ ବୋଲି ଜାଣିସାରିଛି । ମୁଁ ମୁଁ, ଏତେବଡ ନିଦା ପଥରର ପାହାଡ... କେମିତି ନଈ ହୋଇ ବହିଯାଇପାରିବି କହୁନୁ !

ତେବେ ଆଉଥରେ ମୁକାବିଲା ନ ହେବାଯାଏ କିଛି କହିହେଉ ନାହିଁ ।



# ମାନସପୁତ୍ର

ଆକାଶରେ ମେଘ ଟେକିଲେ ହିଁ ମୋ' ଭିତର ମନ୍ଥି ହୋଇଯାଏ । ଅତୀତ ଆସି ଅଧିକାର କରିନିଏ ମୋର ସ୍ୱର୍ଗ, ମର୍ତ୍ତ୍ୟ ଏବଂ ପାତାଳ । କୋଡ଼ିଏ ବର୍ଷ ତଳର ସେ ଗୋଟିଏ ମାତ୍ର ବର୍ଷାଋତୁ କ'ଣ ଯଥେଷ୍ଟ ନଥିଲା ମୋତେ ମାଟିପିତୁଳାଟିଏ ପରି ବିଲୀନ କରିଦେବାକୁ ? ତା'ପରେ କେଉଁ ସମ୍ଭାବନାକୁ ନେଇ ମୋତେ ଏମିତି ଉବୁଟୁବୁ ଅବସ୍ଥାରେ ବଞ୍ଚେଇ ରଖାଗଲା ?

ମୁଁ ତାକୁ ବର୍ଷାରେ ଯା'ନା ବୋଲି ମନାକରିପାରିଥା'ନ୍ତି । ତା' ପୂର୍ବରୁ ବହୁବାର ପାଣିରେ ତିନ୍ତିବାକୁ ମୁଁ ମନାକରିଛି । କିନ୍ତୁ ସେଦିନ ତା' ଜବ୍‌ଲପୁରୀ ସ୍ତ୍ରୀକୁ ସାଙ୍ଗରେ ନେଇ ଗଲାବେଳେ ମୋ' କଥା ଶୁଣିବା ଅବସ୍ଥାରେ ସେ ନଥିଲା । ସେମାନେ ତାଙ୍କ ପିଠିପାଖେ ଯେଉଁ ପୃଥିବୀକୁ ଭୁଲିଯିବାକୁ ଚାହୁଁଥିଲେ ମୁଁ ସେଇଠି ସେ ପୁରୁଣା ପୃଥିବୀର ଦୁଆରବନ୍ଧକୁ ଆଉଜି ଠିଆ ହୋଇ ରହିଗଲି । ଡୋରିଆ ପୁରାହାତ ସାର୍ଟ ଏବଂ ଖଇରିଆ ରଙ୍ଗର ପେଣ୍ଟ ପିନ୍ଧି ରାଜା ଚମତ୍କାର ଦେଖାଯାଉଥିଲା । କମଳା ରଙ୍ଗର ଶାଢ଼ିରେ ରଜନୀ ଚମ୍ପାକଢ଼ୀଟିଏ ପରି ଦିଶୁଥିଲା । ସେମାନେ ଆଉ ଥରେ ଫେରିବେ ନାହିଁ ବୋଲି ଜାଣି ସୁଦ୍ଧା ମୁଁ ସେତେବେଳେ ଆକାଶସାରା ମେଘରୁ ତାଙ୍କ ଉପରେ ଆଶୀର୍ବାଦ ହିଁ ବର୍ଷା କରୁଥିଲି ।

ରାଜା ଦିଲ୍ଲୀରେ ପାଠ ପଢ଼ୁଥିଲା । ସେଇଠୁ ପରୀକ୍ଷା ଦେଇ ଆଇ.ପି.ଏସ୍. ପାଇଲା ଏବଂ ଉତ୍ତରପ୍ରଦେଶ ଭାଗରେ ପଡ଼ିଲା । କିଛି ଅସୁବିଧା ନାହିଁ । ଆଜିକାଲି ଏତେଟିକେ ପୃଥିବୀରେ ଯୋଉଠି ରହିଲେ ବି ଦିନକର ବାଟ । ସେ ଦିଲ୍ଲୀରୁ ଚିଠି ଦେଲା, ଲକ୍ଷ୍ନୌରୁ ବି ଲେଖିଲା । ସେସବୁ ଚିଠିରେ ରାଜାର ସେଇ ପୁରୁଣା ଲାଜ ଲାଜ ଥମ୍‌ଥମ୍ ଭାବ, ଥଙ୍ଗେଇ ଥଙ୍ଗେଇ କଥା କହିବା ଢଙ୍ଗ । ସେ ଅକ୍ଷର, ସେ ଶବ୍ଦ, ସେ ବଙ୍କା ବଙ୍କା ଧାଡ଼ି ଦେଖିଲେ ହିଁ ସେ କାଗଜ ଖଣ୍ଡ ଉଷୁମ ଲାଗୁଥିଲା, ନରମ ଲାଗୁଥିଲା ।

ରାଜା ଉପରେ ମୁଁ ରାଗିପାରେ ନାହିଁ, କାରଣ ସେ କାନ୍ଦିଲେ ମୁଁ ସହିପାରେ ନାହିଁ। ଟିକିଏ କ'ଣ କାଟିଲେ ସେ 'ମାଲୋ' ବୋଲି ରଡିଛାଡେ। ସେତିକିରେ ମୁଁ ଖଣ୍ଡ ଖଣ୍ଡ ହୋଇ ଧୂଳିସାତ୍ ହୋଇଯାଏ। ସେ ଆଉ ଏକ ବର୍ଷାଋତୁ, ଏମିତି ଓଦା ସରସର ଅନ୍ଧାର, ଯେତେବେଳେ ରାଜାକୁ ମୋ' ଉପରକୁ ଆଉଜେଇଦେଇ ଆକାଶ ଛିଣ୍ଡିପଡିଲା ବଜ୍ରାଘାତରେ। ମୁଁ କାତର ଗଛଟିଏ ପରି କମ୍ପୁଥିଲାବେଳେ ମୋ' ପୃଥିବୀ ଦୁଇଫାଳ ହୋଇଯାଇଥିଲା। ଧସିଯାଇଥିଲା ମୋ' ଚତୁର୍ଦ୍ଦିଗରୁ ଉଷୁମ ଆବୁଆଳ। ନନ୍ଦିତା ଚାଲିଯାଇଥିଲା।

ଶ୍ରାବଣ ଆକାଶରେ ଅଦୃଶ୍ୟ ସୂତାରେ ଝୁଲିରହିଛି ମୋର ଅତୀତ। ଘରସଂସାରକୁ ଗୋଟାଏ ପାହିଆରେ ଚଳେଇବାର ଅବିଶ୍ରାନ୍ତ ସଂଗ୍ରାମ। ରାଜା ପାଠ ପଢିବ, ରାଜା ବଡ ହେବ, ରାଜା ଭଲ ପିନ୍ଧିବ, ଭଲ ଖାଇବ, ଛତା, ଜୋତା, ଜାମା, ବହି, କାଗଜ, କଲମ, ଦରମାପତ୍ର। ବର୍ଷାଋତୁରେ ମୁଁ ଓଦା ହେବା ନୂଆକଥା ନୁହେଁ। ମୋର ଜୀବନସାରା ତ ଗୋଟିଏ ମାତ୍ର ବର୍ଷାଋତୁ। କିନ୍ତୁ ରାଜାକୁ ମୁଁ ତିନ୍ତିବାକୁ ଦେଇନାହିଁ।

ରାଜା ଲକ୍ଷ୍ନୌରେ ହଠାତ୍ କିଛିଦିନ ନୀରବ ହୋଇଗଲା। କାମରେ ହୁଏତ ବ୍ୟସ୍ତଥିବ। ବାପକୁ ଚିଠି ଲେଖିବା ଏମିତି କିଛି ଜରୁରୀ ବି ନୁହେଁ। ମୁଁ ଚିଠି ଲେଖି ଉତ୍ତର ବି ପାଉ ନଥାଏ। ହଠାତ୍ ଦିନେ ସୁରଜିତ୍ ଅଗ୍ରୱାଲ – ଏଇ ରଜନୀର ବାପା – ମୋ' ପାଖକୁ ଚିଠି ଲେଖିଲେ ଯେ ରାଜା ତାଙ୍କ ଝିଅକୁ ବିଭାହୋଇଗଲା। ଦୁହେଁ ଖୁସିରେ ତାଙ୍କ ଘରେ ଅଛନ୍ତି। ଉତ୍ତରପ୍ରଦେଶରେ ସବୁଦିନ ଚାକିରି କରିବ; ରାଜାର ନିଜର ହୋଇ ସେଇଠି କେହି ରହିବା ଦରକାର – ଇତ୍ୟାଦି ଇତ୍ୟାଦି। ହଠାତ୍ ଝଙ୍କା ପବନରେ ମୋ' ନଡାଛାତ ଉଡିଗଲା। ପୁରୁଣା ବାଉଁଶ ଗୁଅ ଦିହରୁ କଳା କଳା ପାଣିଟୋପା ଝରି ମୋତେ ବିବର୍ଣ୍ଣ କରିଦେଲା। ମୁଁ କିନ୍ତୁ ଦୁଆରବନ୍ଧକୁ ଧରି ସମ୍ଭାଳିଗଲି। ନଚେତ୍ ମୁଁ ଜାଣିଥିଲି ଯେ ମୋ' ଆଖିରୁ ଲୁହ ଝରିଯାଇଥିଲେ ଲକ୍ଷ୍ନୌ ଆକାଶର ସବୁ ବର୍ଷାପାଣି ରାଜାକୁ ଲୁଣିଆ ଲାଗିଥାନ୍ତା।

ରାଜାର ବିଭାହେବା କଥା। ତାକୁ ବୟସ ହୋଇସାରିଥିଲା। ସେ ବୋଧେ ମନେ ମନେ ତା' ମା'କୁ ହିଁ ଖୋଜୁଥିଲା। ରଜନୀ ପଙ୍ଖା କରିଥିବ। ତା' ମା' ଭଲ ରନ୍ଧାବଢା କରି ପରଷିଥିବ। ରଜନୀର ଛୋଟ ଭାଇ ଭଉଣୀମାନେ ଚାରିଆଡେ ଚଢେଇଭଳି କଳରବ କରିଥିବେ। ରାଜା ରାଜିହୋଇଯାଇଥିବ। ସ୍ନେହକାଙ୍ଗାଳ ଟୋକା ତା' ବାପ ପାଖରୁ କ'ଣ କେବେହେଲେ ଏତକ ପାଇଥାନ୍ତା ?

ମୁଁ ଖାଲି ଥରେ ସେ ଦିହିଁକୁ ଦେଖିବାକୁ ଚାହିଁଥିଲି। ମାସେ ଚାଲିଗଲା କିଛି ଉତ୍ତର ପାଇଲି ନାହିଁ। ଭିତର ମନ୍ଥିହେଉଥିଲା ଆଜିଭଳି। ଭାବୁଥିଲି, ଚାକିରିରୁ ଛୁଟି ନେଇ ସେଠିକି ଯାଇ ଦେଖିଆସିବି। ଏମିତି ମେଘ ଟେକି ରହିଥାଏ। ହଠାତ୍ ଆସି ରାଜା ଆଉ ରଜନୀ ପହଞ୍ଚିଲେ।

ଅସଜଡା ଲକ୍ଷ୍ମୀଛଡା ଘର। ଝାଡୁ ଲାଗି ନଥିବା ବିଣ୍ଡାବିଣ୍ଡା ଅଧୁଆ ଲୁଗା ଏଠିସେଠି ପଡିଥିବା, ବିଛଣା ଚାଦର ଲୋଚାକୋଚା ହୋଇଥିବା ଏବଂ ସକାଳର ଛତୁଆ ଖାଇଥିବା ରସଡବାରେ ମାଛି

ବେଢିଥିବା ପରିବେଶରେ ସେ ଦି'ଜଣ ହଠାତ୍ ଅନ୍ଧାରରୁ ଓହ୍ଲେଇଆସି ବାଟ ପାଉନଥିବା ପକ୍ଷୀ ପରି ଇତସ୍ତତଃ ହେଲେ । ରଜନୀ ତା' ବାକ୍ସ ଉପରେ ମୁହଁଘୋଡେଇ ବସିପଡିଲା । ରାଗରେ ଅପମାନରେ ରାଜାର ମୁହଁ ରଙ୍ଗ ଜରଜର ହୋଇ ଉତୁରିପଡୁଥିଲା । ସେ ପେଣ୍ଟ ମୁଣାରେ ହାତରଖି ଏପାଖ ସେପାଖ ହେଉଥିଲା ।

ମୁଁ ଲୁଗାବିଣାଗୁଡାକୁ ଏକାଠି କଲାବେଳେ, ବିଛଣା ଚଦରଟାକୁ ଟାଣି ବିଛାଇଲାବେଳେ ବେଳେ ବିଡବିଡ ହେଉଥିଲି – 'ଓହୋ ଆଜି ଏ ଘରକୁ ଲକ୍ଷ୍ମୀ ଆସିଗଲେ... ଆଉ ଏଣିକି ଚିନ୍ତା ନାହିଁ...ପିଲାଏ ଆସିଗଲେ...ରାଜା ଆସିଗଲା... ରାଜାକୁ ଟିକିଏ ଆଉଁସିଦେବା କଥା । ବୋହୂ ମୁଣ୍ଡରେ ହାତବୁଲେଇ ନେବାକଥା ! ରାଜା ଏତେ ଉଷ୍ପ ଦିଶୁଚି, ଏମିତି ଚକ୍‌ଚକ୍ ଗୋରା ଦିଶୁଚି । ...ଆଃ...ସେ ଝିଅ ବି କେଡେ ସୁନ୍ଦର । ...ସେମାନେ ଆଗ ସୁସ୍ଥ ହୁଅନ୍ତୁ । କ'ଣ ଖାଇବେ ସେମାନେ ?... କୋଉଠି ବସିବେ... ? କୋଉଠି ଶୋଇବେ ?...ଇସ୍...ଏ ଘରଟା ସତେ କେତେ ଛୋଟ କେତେ ସଂକୀର୍ଣ୍ଣ !'

ଝିଅଟି ବିଜୁଳି ପରି ଉଠିପଡିଲା । କହିଲା – ବସ୍ ହୋଗିଆ, ଅବ୍ ଚଲୋ ।

ରାଜା ନଇଁପଡି ମୋ' ପାଦ ଛୁଇଁଦେଲା – ପ୍ରଭୁ ତାକୁ ମୋର ସବୁ ଆୟୁଷ ଦେଇଦିଅ !

କହିଲା – 'ବାପା, ତା'ହେଲେ ଆମେ ଆସୁଚୁ ।'

ମୁଁ କିଛି ବୁଝିବା ଆଗରୁ ସେ ବାକ୍ସ ଧରି ଦୁଆରବନ୍ଧ ପାରି ହୋଇ ଯାଉଥିଲା । ରଜନୀ ଆଗେ ଯାଉଥିଲା ରାସ୍ତାକୁ । ସେତେବେଳେ ବର୍ଷା ଝରୁଥିଲା ।

ମୋ ଦେହସାରା ଓଦା ହୋଇଯାଉଥିଲା ଅସରା ଅସରା ଝାଳରେ । ମୁଁ ଦୁଆରବନ୍ଧ କାଠକୁ ଆଉଜି ଠିଆହୋଇ ରହିଥିଲି । ଭାବୁଥିଲି ମୁଁ ହିଁ ବର୍ଷାକୁ ଓହ୍ଲେଇଯିବା ଉଚିତ ଥିଲା । ସେମାନେ ଏଇ କାନ୍ଥବାଡକୁ ଆପଣାର ବୋଲି ଚହିଁଦେଇଥିଲେ ଏଥିରେ ସୁନାଛାଉଣୀ ହୋଇଯାଇଥାନ୍ତା । କିନ୍ତୁ ସେମାନେ ଏ ଅତୀତକୁ ପଛକରି ଚାଲିଯିବାକୁ ପସନ୍ଦ କଲେ ।

ସେଦିନର ବର୍ଷା ଏଯାଏଁ ଥମିନାହିଁ । ମୁଁ ସେ ଅପସରିଯାଉଥିବା, ଆସ୍ତେ ଅସ୍ପଷ୍ଟ ବାମ୍ଫୁଆ ଦେଖାଯାଉଥିବା ଦୁଇଟି ପିଠିର ସ୍ମୃତିକୁ ଦରିଦ୍ର ରତନ ପାଇ ହରାଇଲାପରି ସାଇତି ରଖିଛି । ସେ ଅଖଣ୍ଡ ବର୍ଷାଋତୁ ଦଶବର୍ଷକୁ ପୁରିଗଲା । ବ୍ୟାବହାରିକ ଅର୍ଥରେ ଚିହ୍ନାମୁହଁ ପରି ଶୀତ ଖରା ବସନ୍ତ ଶରତମାନେ ଆସି ପଚାରିଛନ୍ତି – "କେମିତି ଅଛନ୍ତି ତାପସବାବୁ ?" – ଉତ୍ତରକୁ ଅପେକ୍ଷା ନରଖି ଘୁଞ୍ଚିଯାଇଛନ୍ତି । ମୁଁ କୃତଜ୍ଞ ସେମାନଙ୍କ ପାଖରେ । କିନ୍ତୁ ମୁଁ କାହିଁକି ସେ ଦୁଆରବନ୍ଧ ପାଖରେ ଠିଆହୋଇ ରହିଲି, ଏମାନେ ପାରିହୋଇଗଲା ବେଳେ ? ସେ ଗୋଟିଏ ବର୍ଷାଋତୁ କ'ଣ ଯଥେଷ୍ଟ ନଥିଲା ମୋତେ ବିଲୀନ କରିଦେବାକୁ, ମାଟି ପିତୁଳାଟିଏ ପରି ?

X X X X

ଆଜି କିନ୍ତୁ ଭିତରେ ବାହାରେ ଅବିଶ୍ରାନ୍ତ ବର୍ଷା । ରାତି ବୋଧେ ଦଶଟା ଉପରେ ହେଇଥିବ ସେତେବେଳକୁ, ଦିନଯାକ ଖଟିସାରି ଦାନା ଖାଇଲା ପରେ ଘୋଡାଟି ତା' ଚରିଟାପୁ ଉପରେ

ଶୋଇଯିବା ସମୟ । ତଥାପି କେଜାଣି କାହିଁକି ମୁଁ ମଟମଟ ଚାହିଁ ରହିଥିଲି ଅନ୍ଧାରକୁ, କାନେଇ ରହିଥିଲି ଝପ୍‌ଝପ୍ ବର୍ଷାର ଶବ୍ଦକୁ । ବିଜୁଳି ପଶିଆସୁଥିଲା ଫାଙ୍କମାନଙ୍କରେ । ଘଡଘଡି ଓହ୍ଲେଇ ଯାଉଥିଲା ଆକାଶର ଗଡାଣିରେ ଛିଣ୍ଡିପଡୁଥିବା ମେରୁ ଶୃଙ୍ଗପରି ।

ଏତିକିବେଳେ ଗୋଟାଏ ମୋଟର ସାଇକେଲ ବୋଧେ ରହିଲା ଦ୍ୱାରମୁହଁରେ । ମୋ' ନିଶ୍ୱାସ ହଠାତ୍ ବନ୍ଦହୋଇଗଲା । କାନ ଠିଆ ଠିଆ ହୋଇଗଲା । ଅବିଶ୍ୱାସରେ ଆତଙ୍କରେ, ମୋ' ବୁକୁ ଦାଉଁ ଦାଉଁ ହେଲା, ତଣ୍ଟିପାଖରୁ ଗୁଳାଟାଏ ଖସିଲା ନାହିଁ ଯେତେ ଢୋକିଲେ ସୁଦ୍ଧା !

ଖୁବ୍ ଆସ୍ତେ, ବୋଧେ ବିଶିଆଙ୍ଗୁଠି ଟିପରେ ଆସ୍ତେ ଛୁଇଁଲାପରି କିଏ କବାଟରେ ଟୁପ୍ ଟୁପ୍ ଶବ୍ଦକଲା । ସେ କ'ଣ ଆଶାକରୁଥିଲା ମୁଁ ତା' ଇସାରାକୁ ଅପେକ୍ଷା କରି ରହିଥିଲି ? ସେ କ'ଣ କୌଣସି ଗୋପନୀୟ କାର୍ଯ୍ୟରେ ଆସିଥିଲା ଏବଂ ଚାହୁଁଥିଲା ପଡିଶାକୁ ତା' ଶବ୍ଦ ନଶୁଭୁ ?

ଜଣାଯାଉଥିଲା ସେ ଖୁବ୍ ନରମ ମିଜାଜର ଖୁବ୍ ଲାଜ ଲାଜ ଥଙ୍ଗେଇ ଥଙ୍ଗେଇ କଥା କହୁଥିବା କେହି ଜଣେ । ମୁଁ ଖଟରୁ ନଉଠି ସେମିତି ଭୂରୁକୁଞ୍ଚେଇ ପଚାରିଲି – "କିଏ ?"

ଉତ୍ତରରେ କବାଟରେ ସେଇ ନରମ ଟୁପ୍‌ଟୁପ୍ ଶବ୍ଦ । ମୁଁ ଉଠିଲି । ଖଟ ଡାକିଲା ମଟ୍ ମଟ୍ । ମୁଁ ଉଠିଲେ, ବସିଲେ, କଡ ଲେଉଟେଇଲେ ସେ ସେମିତିକି ଡାକେ । ବହୁ ଦିନର ପରିଚିତ ଡାକ । ମୋର ନୀରବତା ଭିତରେ ଅତୀତର ପାଦଶବ୍ଦ ।

ମୁଁ କବାଟ ଫିଟେଇଲି । ଅନ୍ଧାରରେ ସେ ଠିଆହେଇଥିଲା ।

ଖୁବ୍ ଭଦ୍ରଭାବରେ କହିଲା – "କ୍ଷମାଦେବେ, ମୁଁ ଆପଣଙ୍କୁ ଅସମୟରେ କଷ୍ଟଦେଲି ।"

ମୁଁ କିଛି ନକହି ସେମିତି ଦରମେଲା କବାଟକୁ ଧରି ଅପେକ୍ଷା କଲି । ସେ ପୁଣି ସେଇଭଳି କହିଲା – "ଆପଣଙ୍କର ଦୁଇମିନିଟ୍ ସମୟ ନେବି । ମୁଁ ଭିତରକୁ ଆସିପାରିବି କି ?"

ମୁଁ ପୁଣି କିଛି କହିପାରିଲି ନାହିଁ । କବାଟ ଖୋଲିଦେଲି, ସେ ପା'ପୋଛରେ ପାଦ ଘଷି ଘରକୁ ପଶିଆସିଲା । ମୁଁ ଆଲୁଅ ଲଗେଇଲାବେଳକୁ ସେ ତା' ଓଦା ଟୋପିଟିକୁ ମୁଣ୍ଡରୁ କାଢୁଥିଲା ।

ତାକୁ ମୁଁ ଜମା କେବେ କୋଉଠି ଦେଖିନଥିଲି । ସେ ଖୁବ୍ ପାରିବାର ଦେଖାଯାଉଥିଲା । ତା' ବାହୁରେ ବୁକୁରେ ଅମାପ ବଳ । ତା' ନିଶ, ଦାଢି, ଭ୍ରୂଲତା ତା' ବାବୁରି ବାଳ ତାକୁ ଚମତ୍କାର ମାନୁଥିଲା । ମୋତେ ଦିଶୁଥିଲା ପୋଷା ସିଂହଟାଏ ପରି ।

ତା' ଅଣ୍ଟା ପାଖରେ ଯାହା ଓହଳିଥିଲା ସେଇଟା ବୋଧେ ରିଭଲଭର୍ । ବାଁ କାନ୍ଧରୁ ଗୋଟାଏ ପଟି ପଇତାମାର୍ଗେ ପଡିଥିଲା । ସେଥିରେ ବୋଧେ ଗୁଳି ଭର୍ତ୍ତିହୋଇଥିଲା ।

ସେ ପଛକୁ ହାତରଖି ଟୋପିଟିକୁ ଧରିଥିଲା ଏବଂ ଖୁବ୍ ସ୍ଥିର ଦୃଷ୍ଟିରେ ମୋତେ ଚାହିଁରହିଥିଲା । ମୁଁ ତା' ଗୋଡଠୁ ମୁଣ୍ଡଯାଏଁ ଦେଖିନେବା ଉଚିତ ବୋଲି ବୋଧେ ଅପେକ୍ଷା କରିଥିଲା । ସେ ବୋଧେ ବନ୍ଧୁକରେ ଖେଳିଚି । ଗୁଳିକରି ହତ୍ୟାକରିଛି, ଲୁଟ୍‌ତରାଜ କରିଛି, ସେ ଚାହିଁଲେ ମୋତ ବି ଗୁଳିକରି ମୋଟର ସାଇକେଲ ନେଇ ଉଭାନ୍ ହେଇଯାଇପାରିଥା'ନ୍ତା । ସେ ବରଂ ମୋତେ ଖଟ ଦେଖାଇ କହିଲା, "ଆପଣ ବସନ୍ତୁ । ମୋର ଆପଣଙ୍କ ସାଙ୍ଗେ ଟିକିଏ କଥା

ଅଛି ।"

ତା' ବୋଲ ମାନିବାକୁ ମୋତେ ଭଲଲାଗୁଥିଲା । ମୋର ମନେହେଉଥିଲା ଯେ ସେ ମୋ' ପାଖରେ ଛିଡାହୋଇଗଲେ ମୁଁ ସାରା ଜଗତ୍‌ର ମୁକାବିଲା କରିପାରିବି ।

ସେ ସେଇଠି ସେମିତି ଆଲୁଅ ସାମ୍ନାରେ ପଛକୁ ହାତ କରି ଠିଆହୋଇଥାଏ । ତା' ଚେହେରା ଦୃଷ୍ଟି ସବୁ ଆସ୍ତେ ଟାଣିଯିବାର ମୁଁ ଲକ୍ଷ୍ୟକଲି । ସେ ଦୃଢ ଅଥଚ ସଂଯତ ଗଳାରେ କହିଲା – "ଆପଣ ୧୯୯୫ ମସିହାରେ ରାଉରକେଲାରେ ଥିଲେ ?"

ମୁଁ ଦୁର୍ବଳ ଅନୁଭବ କଲି । ଏମିତି ଜେରା କରିବାର ମାନେ କ'ଣ ? ମୋ' ବୁକୁ ଦୁମ୍ ଦୁମ୍ ହେଲା ।

"ହଁ ଥିଲି ।"

"ଦିଲୀପ୍ ସାସମଲ, କୁମାର ଷଢଙ୍ଗୀ, ମକବୁଲ ଖାଁ, ଆଇଜାକ୍ ଋକୋ..."

ସେ ଗୁଡାଏ ନାଁ ଗୋଟି ଗୋଟି କରି କହିଗଲା । ମୁଁ ପ୍ରତିଟି ନାଁରେ ଚମକି ପଡୁଥିଲି ।

"ଏମାନଙ୍କୁ ଆପଣ ଜାଣନ୍ତି ?"

ମୁଁ ସମସ୍ତଙ୍କୁ ଜାଣେ । ତା' ଭିତରୁ ଗୁଡାଏ ମଦୁଆ, ଜୁଆଡ଼େର, ଫନ୍ଦିବାଜ, ଲମ୍ପଟ । ସମସ୍ତେ କିନ୍ତୁ ସେତେବେଳେ କିଏ ସରକାରୀ, କିଏ କମ୍ପାନୀ କିଏ ରେଳବାଇ ଋକିରିରେ ସେଇଠି ଥିଲୁ । ଭଡାଘରେ ମେସ୍ କରି ତିନିଋରି ମିଶି ରହୁଥିଲୁ । ନୂଆ ଋକିରି; ଟୋକା ଅଭିଆଡା ବୟସ । ତାସ୍ ଖେଳୁଥିଲୁ, ଖଡ୍‌ଗପୁର ସିନେମା ଦେଖି ଯାଉଥିଲୁ ।

"ହଁ ସେମାନଙ୍କୁ ଜାଣେ; କିନ୍ତୁ..."

ସେ ବାଧାଦେଇ କହିଲା, "ଆପଣ କମଳା ବେହେରାଣୀକୁ ଜାଣନ୍ତି ?"

ତା' ସ୍ୱର ଲମ୍ବା ତଲବାର ପରି ପ୍ରସ୍ତ ପ୍ରସ୍ତ ଭେଦିଯିବ ସତେ ବା ପାତାଳ ପର୍ଯ୍ୟନ୍ତ !

ମୋ ଆଖି ସାମ୍ନାରେ ସାବନା ରଙ୍ଗର ଗୋଟିଏ ଝିଅ ଦିଶିଗଲା । ସେ ଆସିଥିଲା ମେସ୍‌ରେ କାମ କରିବାକୁ ଖୁବ୍ ଚୁପ୍‌ଋପ୍ ଡରିଲା ପରି ଝିଅଟିଏ । ମନେହେଉଥିଲା ସତେ ବା ବହୁ ଦୁଃଖ ଭୋଗିବା ପରେ ସେ ମୁହଁ ଟେକି ଆଉ ଭରସାରେ ଋହିଁପାରୁନାହିଁ କାହାକୁ । ତା'ର ଡେଙ୍ଗା ବେକ, ଠିଆ ନାକ, ବଡ ବଡ ଆଖି, ନହକା ଡେମ୍ଫରେ ତମାଳ ଫୁଲ ପରି ମୁହଁଟିକୁ ଯାହାର ହେଲେ ଇଚ୍ଛା ହେଉଥିଲା ଋହିଁରହିବାକୁ ।

"ମନେପଡୁଚି କିଛି ?"

ତା' ସ୍ୱର ଇସ୍ପାତ୍ ପରି ଟାଣ ହୋଇଯାଇଥିଲା ।

"ହଁ ମନେପଡୁଛି, ସେ ଆମ ମେସ୍‌ରେ ଋକରାଣୀ କାମ କରୁଥିଲା ।"

ତା' ଭୃରୁ କୁଞ୍ଚେଇଗଲା, ଆଖି ଜଳିଉଠିଲା । ଉପର ଓଠକୁ ସେ କାମୁଡି ନେଇ – ବୋଧହୁଏ ନିଜକୁ ସଂଯତ କଲା –

"ହଁ ସେଇ ସେ ବାସନ ମାଜୁଥିଲା, ଘର ଝାଡୁ କରୁଥିଲା – ଗୋଟାଏ ଓଳି ଖାଇ ମାସକୁ

ପନ୍ଦର ଟଙ୍କା ନଉଥିଲା । ଆପଣ ତାକୁ ଆଉ କେମିତି ଜାଣନ୍ତି ?"

ମୁଁ ବିନା କାରଣରେ ହତବତେଇ ଗଲି । ମୁଁ କମଳା ବେହେରାଣୀକୁ ଆଉପ୍ରକାରେ ଜାଣିବାରେ ବୋଧହୁଏ ଅବକାଶ ଥିଲା । ସେପରି ନଜାଣିବାରୁ ମନରେ ଅବଶୋଷ ମଧ ଥିଲା ନା କ'ଣ! ସେଇ ଲୋଉକୋଉ ମନର ପାଖୁଡା ଉପରେ ସେ ହଠାତ୍ ଟିପ ମାରିଦେବାରୁ ମୁଁ ସେମିତି ଚହଲିଯାଇଥିଲି ।

"ଆଉ କେମିତି...ମାନେ ?" ମୋ' ସ୍ୱର ଦୁର୍ବଳ, ତା' ଓଠ ଗୋଟାଏ ପାଖ ଟେକି ହୋଇଯିବାରୁ ହୀରାଖଣ୍ଡ ପରି ଦାନ୍ତ ଚିକ୍‌ଚିକ୍ କଲା ।

"ମାନେ ? ମାନେ ଆପଣଙ୍କର ଅନ୍ୟ ସାଙ୍ଗମାନେ ଯେମିତି ପ୍ରତି ରାତିରେ ତାକୁ ଜାଣିଥିଲେ ।"

ମୋ' ଅଣାୟତରରେ ମୁଁ ଛାଟିଲା ପରି ଠିଆହୋଇପଡିଲି । ସେ ଯେମିତି ପାହାଡପରି ଠିଆହୋଇ ରହିଥିଲା ଏବଂ କଟମଟ ଚାହିଁଥିଲା । ଦାନ୍ତ ସଂଧାରୁ ସେ ଆଦେଶ ଦେଲା –

"ବସନ୍ତୁ ।"

ମୁଁ ପ୍ରତିବାଦ ନକରି ଆସ୍ତେ ନଇଁଲା ପରି ବସିଗଲି ।

"ଆପଣ ଏମିତି ଶଙ୍କିଯାଉଛନ୍ତି କାହିଁକି ? ମୁଁ ଜାଣେ କମଳା ବେହେରାଣୀ ଆସିବାର ମାସକ ପରେ ଆପଣଙ୍କର ବିବାହ ହୋଇଥିଲା । ଆପଣ ଅଲଗା ଘରଭଡା ନେଇ ରହିଲେ । କିନ୍ତୁ ଆପଣଙ୍କର ନଅଜଣ ସାଙ୍ଗ କମଳା ବେହେରାଣୀକୁ ଇଚ୍ଛାଅନୁସାରେ ମାସ ମାସ ଧରି ବଳାତ୍କାର ଭୋଗିଲେ ।"

ସେ ଦାନ୍ତ ଜାକି ଆଖି ତରାଟି ଶୂନ୍ୟକୁ ସେମିତି ଚାହିଁରହିଲା । ତା' ମୁହଁରୁ ନିଆଁଝୁଲ ଛିଟିକି ପଡୁଥାଏ । ତା' ଆଗରେ ସେତେବେଳେ ଯେ ପଡିବ ହୁତ୍‌ହୁତ୍ ଜଳିଯିବ ।

ତା' ନାକପୁଡାରୁ ବୋଧେ ଲୁହ ନିଗିଡି ଆସିଲା ।

ସେ ସବୁଯାକ ନିଆଁକୁ ଢୋକିନେଇ କହିଲା – "ମୁଁ କମଳା ବେହେରାଣୀର ପୁଅ । ମୋତେ ପାଞ୍ଚବର୍ଷ ବେଳେ ମୋ' ମା' ମୋତେ ନେଇ ସେଇ ମେସ୍‌କୁ ଯାଇଥିଲା । କହିଥିଲା ମୋ' ଜନ୍ମ ଆଗରୁ ସେ ସେଇଠି ବାବୁମାନଙ୍କ ଅତ୍ୟାଚାର କେମିତି ସହିଥିଲା । ସେତେବେଳେ ସେମାନେ କେହି ସେଇଠି ନଥିଲେ । ମୋ' ମା'ର ଗୋଡ ଫୁଲିଯାଇଥିଲା । ସେ ଚାଲିପାରୁନଥିଲା । ତିନିଦିନ ପରେ ସେ ରେଳଷ୍ଟେସନ୍‌ରେ ପଡି ମରିଗଲା ।"

ଡହଡହ ଅଙ୍ଗାର ପରି କିଛି ନୀରବତା ।

"ମୁଁ ସେଇଦିନୁ ଲଢିଆସିଚି । ଯାହା ଚାହିଁଚି ତା' କରିଚି । କିନ୍ତୁ ଜାଣିପାରି ନାହିଁ ମୋ' ବାପ କିଏ ? – ସେ ଶାଳା ନଅଜଣ ଯା'ଙ୍କୁ ମୁଁ ଠାବ କରିଛି । ଜାଣିବାକୁ ଚାହିଁଛି କାହା ଔରସରୁ ମୁଁ ଜନ୍ମିଛି । ସେଥିରୁ ତିନିଜଣଙ୍କ ତଣ୍ଟିକାଟି ଫିଙ୍ଗିଦେଇଚି । କାରଣ ସେମାନେ କମଳା ବେହେରାଣୀକୁ ସ୍ୱୀକାର କଲେ ନାହିଁ । ବାକି ଛ'ଜଣକୁ ନଙ୍ଗଳା କରି ଗୋଟାଏ ଗୁମ୍ଫା ଭିତରେ ରଖିଛି । ସବୁଗୁଡାକର

ରକ୍ତ ନେଇ ମୋ' ରକ୍ତ ସାଙ୍ଗରେ ମିଳେଇଚି । ଡାକ୍ତରକୁ ପଚାରିଚି କାହା ସାଙ୍ଗରେ ମିଳୁଚି ବୋଲି । ଡାକ୍ତର କହି ନ ପାରିବାକୁ ମୁଁ ତାକୁ ଗୁଳିକରିଦେଇଚି । ସେ ଛ'ଜଣଯାକକୁ ଗୋଟେ ନଡାଘରେ ପୂରେଇ ଜାଳିଦେଇଛି ।"

ସେ ଅହିରାଜ ପରି ଫଁ ଫଁ ଗର୍ଜୁଥାଏ । ମୁଁ ସ୍ଥାଣୁ ପାଲଟିଯାଇଥାଏ । ଫଡକୁଥାଏ ମୋର ସର୍ବାଙ୍ଗ – "ମୁଁ ଚାହିଁଲେ ଏ ସହରକୁ ଜାଳିଦେଇପାରେ; ଚାହିଁଲେ ତାକୁ କିଣିଦେଇପାରେ । ମୋ' ଇସାରାରେ ଏ ଦେଶରେ ଦଶହଜାର ବାଘ ମାତିଯାଇ ପାରନ୍ତି । ମୁଁ ଚାହିଁଥିଲେ ମର୍ସିଡିସ୍ ଗାଡିରେ ଆସିଥା'ନ୍ତି । ଆଗପଛରେ ଛ'ଟା ଗାଡି ଆସିଥାନ୍ତା – କିନ୍ତୁ ମୁଁ ମୋର ବଡିଗାର୍ଡ ବେଶରେ ଏଠିକି ଗୋପନରେ ଆସିଛି । କାରଣ..."

ମୋ କଲିଜା ଆସି ପଞ୍ଜରାରେ ପିଟିହେଲା । ମୋ' ନାଭିକେନ୍ଦ୍ର କମ୍ପିଲା । ଆଉ ବୋଧେ ଅଳ୍ପ ସମୟ ପରେ ସେ ମୋତେ ଗୁଳି କରି ଚାଲିଯିବ ।

"କାରଣ ମୁଁ ଆପଣଙ୍କ ପାଖକୁ ଗୋଟାଏ ଆଶା ନେଇ ଆସିଛି । ଆପଣ କମଳା ବେହେରାଣୀକୁ ସ୍ୱୀକାର କରିପାରିବେ ? ନିଃସଂକୋଚରେ ମୋର ବାପ ହୋଇପାରିବେ ?"

ଆରେ ଆରେ ଏ କି କଥା !! ମୁଁ ମୋ' କାନକୁ ବିଶ୍ୱାସ କରିପାରିଲି ନାହିଁ । ତା' ସ୍ୱର ବାମ୍ଫରେ ରୁନ୍ଧିହୋଇଯାଉଥିଲା । ପଥର ପରି ଭାରି ଏବଂ ଓଦା ଓଦା ।

"ମୁଁ ମୋ' ଜୀବନକୁ ହାତପାପୁଲିରେ ଧରି ଖେଳୁଚି । କେତେବେଳେ ହଠାତ୍ ପୋଲିସ୍ ଗୁଳିରେ ହୁଏତ ମରିଯିବି । ହୁଏତ ଆମ ଭିତରୁ କେହି ସଜ ଉଣ୍ଡି ମୋତେ ମାରିଦେଇପାରେ । ସେତିକିବେଳେ ମୋ' ନିୟମ ଅନୁସାରେ ମୋତେ ସେମାନେ କବର ଦେବେ । କବର ଉପରେ ମୋ' ମା'ବାପାଙ୍କ ନାଁ ରହିବ ମାର୍ବଲରେ ଖୋଦେଇ ହେଇ । ପୋଲିସ୍ ମୋତେ ଜୀଅନ୍ତା ଧରିପାରିବ ନାହିଁ । ଯଦି କେବେ ଧରିନିଏ ସେଇଠି ବି ମୋତେ ପରିଚୟ ଦେବାକୁ ହେବ ମୁଁ ଅମୁକଙ୍କ ପୁଅ ।"

ମୁଁ ତା' ଆତ୍ମା ଭିତରୁ ଝରିଆସୁଥିବା ଏ ଲବଣାକ୍ତ କଥା ଶୁଣୁଥାଏ ଟଟସ୍ଥ ହେଲାପରି । ସେ ବାପଟାଏ ଚାହେଁ – ବାପ ଥିବା ପିଲାର ଇଜ୍ଜତ୍ ପାଇବାପାଇଁ ।

ସେ ମୁହଁଟେକି ମୋ' ଆଖିପିତୁଳାକୁ ଚାହିଁ କହିଲା – ମୁଁ ଆପଣଙ୍କ ଉତ୍ତରକୁ ଅପେକ୍ଷା କରୁଛି – ଆପଣ ସବୁ ବିଷୟ ଭଲରୂପେ ଭାବି ମୋତେ ଉତ୍ତର ଦେବେ । ରାଜା ଆପଣଙ୍କ ପୁଅ; ସେ ଲକ୍ଷ୍ନୌରେ ଆଇ.ପି.ଏସ୍. ଅଫିସର । ସେ କିନ୍ତୁ ଏଠିକି ଆସେ ନାହିଁ । କାଗଜପତ୍ରରେ ସେ ଆପଣଙ୍କ ନାଁ ବ୍ୟବହାର କରେ । ତା' ବିଷୟରେ ଆପଣଙ୍କ ଆଗରେ କିଛି କହିବାର ଅଧିକାର ମୋର ନାହିଁ । ଆପଣଙ୍କ ଉପରେ ତା'ର ଯେତେ ଅଧିକାର, ଅନ୍ତତଃ ଆପଣଙ୍କ ନାଁ ଉପରେ, ମୋର ହେବାକୁ ମୁଁ ଆଶା କରୁନାହିଁ ।

ସେ ମୁହୂର୍ତ୍ତେ ଆଖି ଫେରାଇ ନେଇ ପୁଣି କଟମଟ ଚାହିଁଲା ଓ କହିଲା – "କମଳା ବେହେରାଣୀ ସହିତ ଆପଣଙ୍କ ସଂପର୍କ ଥିଲା କି ନଥିଲା ଆପଣ ହିଁ ଜାଣନ୍ତି । ସେ ବିଷୟରେ

କିଛି କହିବା ନକହିବା ଆପଣଙ୍କ ମର୍ଜି । ଆପଣଙ୍କପାଇଁ ସେଇଟା ହୁଏତ ଅତି ମାମୁଲି ଘଟଣା; କିନ୍ତୁ ମୋ' ପାଇଁ ସେଇଟା ଜାଣିବା ଖୁବ୍ ଜରୁରୀ ।"

ସେ ତୁନିପଡି ଠିଆହେଲା ।

ମୋ ଆକାଶରେ ଚନ୍ଦ୍ରସୂର୍ଯ୍ୟ ସ୍ତବ୍ଧ ହୋଇଗଲେ । ଅତୀତ ଆସି ମୋତେ ଆଚ୍ଛନ୍ନ କରିଗଲା । ମୋ' ସାମ୍ନାରେ କମଳା ବେହେରାଣୀ ବାରମ୍ବାର ଉଭାହେଲା । ସେ ମୋତେ କେବେହେଲେ ଏମିତି ଚାହିଁ ହସିନଥିଲା । ସେ କେବେହେଲେ ମୁଁ ଦେଖିଲାଭଳି ଏମିତି ଦେହରୁ ଲୁଗା ଖସେଇ ନଥିଲା, ଏମିତି ହାତଠାରି ଡାକିନଥିଲା । – ସାବଧାନ କହୁ କହୁ ଆଲୁଅ ଲିଭିଯାଇ ସ୍ୱର୍ଣମୟ ଜଗତରେ ନିମଗ୍ନ ହେବାର ଏମିତି ଅବକାଶ କେବେହେଲେ ଆସିନଥିଲା । ମତେ କ୍ଷମା କର କମଳା ବେହେରାଣୀ, ମୁହିଁ ଦିଲୀପ ସାସମଲ, ମୁହିଁ ଆଇଜାକ୍ ରକୋ ! ମୁଁ ତତେ ସ୍ୱୀକାର କରୁଛି ! ତୋ' ପୁଅକୁ ସ୍ୱୀକାର କରୁଛି । ମୋର ଦୁରନ୍ତ କାମନାକୁ ସ୍ୱୀକାର କରୁଛି – ଏ ସମସ୍ତଙ୍କୁ କ୍ଷମା କରିଦେ କମଳା ବେହେରାଣୀ – ଏ ପୁରୁଷ ଜାତିଟାକୁ କ୍ଷମା କରିଦେ ।

ମୁଁ ଆଖିମଟକା ମାରି ଫେରିଆସିଲି ଉପସ୍ଥିତ ସମୟକୁ । ଯଥାସମ୍ଭବ ସ୍ୱଷ୍ଟ ଗଳାରେ କହିଲି – "ମୁଁ କମଳା ବେହେରାଣୀକୁ ସ୍ୱୀକାର କରୁଛି ।"

ସେ ଝାମ୍ପିପଡିଲା ମୋ' ପାଖକୁ । ଆଗରେ ଆଣ୍ଠେଇ ବସି ମୋ' କାନ୍ଧକୁ ଧରି ଝୁଙ୍କିଦେଇ ମୋତେ ଚାହିଁ କହିଲା – "ଠିକ୍ କହୁଛ ତୁମେ ମୋ' ବାପ ?"

ମୁଁ କିଛି ନକହି ତାକୁ ସେମିତି ଚାହିଁରହିଲି । ତା' ବାହାଉପରେ ହାତ ବୁଲେଇ ଆଉଁସି ଆଣିଲି ।

ସେ ଖପ୍‌କିନା ମୋତେ କଣ୍ଢେଇଭଳି ଶୂନ୍ୟକୁ ଟେକିନେଇ ବଖରାସାରା ଦୁମ୍ ଦୁମ୍ ଡେଇଁଲା । ତା'ପରେ ଆସ୍ତେ ଥୋଇଦେଇ ମୋ' ହାତଯୋଡିକୁ ଧରି ମୋତେ ଚାହିଁଲା । ମୁହଁ ଥମ୍‌ଥମ୍ କରି କିଛି କହିପାରିଲାନାହିଁ ।

ଠିଆହେଇ ଫଟ୍‌କିନା କବାଟ ଫିଟେଇ ଗୋଟାଏ ଡିଆଁରେ ବର୍ଷା ଭିତରକୁ ପଶିଗଲା । ଘାଇଁ ଘାଇଁ ଗର୍ଜିଲା ମୋଟର ସାଇକଲ୍ । ଘୁଞ୍ଚିଗଲା ଦୂରରୁ ଦୂରକୁ ।

ବର୍ଷା ଟପ୍‌ଟପ୍ ଅଜାଡି ହେଉଥିଲା ଅନ୍ଧାର ଭିତରକୁ ।

ମୁଁ ସେଇ ଦୁଆରବନ୍ଧକୁ ଆଉଜି ଠିଆହେଇଚି ।

ମୁଁ ମିଛ କହିଲି ବୋଲି ଘେନା କରିବୁ ନାହିଁ କମଳା ବେହେରାଣୀ । ମୋତେ କ୍ଷମା କରିଦେବୁ ।

ନନ୍ଦିତା ମୋତେ ଭୁଲ୍ ବୁଝିବ ନାହିଁ ମୁଁ ଜାଣେ । ରାଜା ଭୁଲ୍ ବୁଝିବ ନାହିଁ । କିନ୍ତୁ ଏ ପୁଅଟି ନାଁ କ'ଣ ତ ମୁଁ ପଚାରିପାରିଲି ନାହିଁ । ସେ ବି କ'ଣ ଆଉ ଫେରିବ ନାହିଁ ? କେଜାଣି !

□

# ପୁନରୁଦ୍ଧାର

ସମୁଦ୍ର ପରି ଅକାତକାତ ସମୟ ଘୋଟି ରହିଛି ଦିଗଦିଗନ୍ତ । ଏକକୀ ହୁଲି ଡଙ୍ଗାଟିଏ ବାହିବାକୁ ମନ ବଳୁନାହିଁ । ବରଂ ତା' ଭିତରେ ଚିତ୍‌ମାତ୍ ପଡିଯାଇ ଆକାଶକୁ ଚାହିଁ ଚାହିଁ ଶୋଇଯିବାକୁ ଇଚ୍ଛା ହେଉଛି ।

"ହେଇ, ତମେ ବର୍ତ୍ତମାନ ମୋ' ପାଖରେ ବସିଛ । ମୁଁ ବେଶ୍ ବୁଝିପାରୁଛି ତୁମେ କାହିଁକି ଲୁଚେଇ ଲୁଚେଇ ଦୁଇଥର ଘଣ୍ଟାକୁ ଅନେଇଲଣି । ତୁମେ ତୁମର ଧରାବନ୍ଧା କେତେଟା ପ୍ରଶ୍ନ ପଚାରିବା କଥା । ତା'ର ଜବାବ ଶୁଣିବା ସେମିତି କିଛି ଜରୁରୀ ନୁହେଁ । ..."କେମିତି ଅଛନ୍ତି ମଉସା ? ...ଔଷଧ ଠିକ୍ ଚାଲିଛି ତ ?... ଆପଣଙ୍କର କିଛି ଚିନ୍ତା କରିବାର ନାହିଁ । ଆମେ ସବୁ ଅଛୁ ପାଖରେ । ଦରକାର ପଡିଲେ ଆସିଯିବୁ..."

"ଏସବୁ ସରିଯିବା ପରେ ଆଉ କିଛି କହିବାର ନାହିଁ – ଆଉ କ'ଣ ବା ଅଛି କଥା ହେବାକୁ... ?"

"ତମେ ରମେଶ, ଯିବ ଯଦି ଯାଉନା ! ମୋର କିଛି ଭାବିବାର ନାହିଁ । ତୁମେ ସୁବିଧା ହେଲେ ଆସିବ, ନହେଲେ ନାହିଁ ! ତେଣେ ଘରଜଞ୍ଜାଳ ପୁଣି ଅଛି ତ ! ...ହଉ ତମେ ତା'ହେଲେ ଆସ ।"

ରମେଶ କିନ୍ତୁ ବସିରହିଲା । ଆଣ୍ଠୁ ଉପରେ ହାତ ରଖି ଫଟୋ ହବା ଭଙ୍ଗୀରେ ସ୍ଥିର ଚାହିଁ ରହିଲା ଡାହାଣ ପାଖ କାନ୍ଥକୁ ।

"ତମେ ମତେ ଭୁଲ୍ ବୁଝିବ ନାଇଁ ମଉସା ! ମୁଁ ଅନ୍ୟମାନଙ୍କ ଭଳି ଏମିତି ଖାଲି ହାଜିରାଟାଏ ପକାଇବାକୁ ଆସେ ନାହିଁ । ମୁଁ ଆସେ ତୁମକୁ ଶୁଣିବା ପାଇଁ । ମୁଁ ତ ତୁମ ଆଗରେ ପିଲାଦିନୁ ଏମିତି ବସି ଆସିଛି ।"

"ହଁ, ମାନୁଛି ଯେ ଏବେ ଟିକିଏ ଜଞ୍ଜାଳ ବଢିଯାଇଛି । ତଥାପି ଏଠିକି ଆସିବାର ଆକର୍ଷଣ ନଥିଲେ କ'ଣ ମୁଁ ପଲାଶୁଣି ପାଖରୁ ସାଇକେଲ ମାରି ଏତେ ବାଟ ଆସନ୍ତି !"

"ମୁଁ ଅବଶ୍ୟ ସମୟ କେତେ ହେଲା ବୋଲି ଘଣ୍ଟାକୁ ଅନେଇଚି । ଏଠୁ ଉଠିଯିବା ପାଇଁ ନୁହେଁ, ବରଂ ଆପଣଙ୍କର ବିଶ୍ରାମ ନେବା ଆଗରୁ ମୋତେ କେତେ ସମୟ ମିଳିବ ଏଇଆ ଜାଣିବା ପାଇଁ ।"

"ଓ, ତା'ହେଲେ ଠିକ୍ ଅଛି । ମୁଁ ଆଉ ବିଶ୍ରାମ ନେବି କ'ଣ ! ମୁଁ ତ ବିଶ୍ରାମ ନେଇ ସାରିଛି – ସବୁ କାମରୁ, ସବୁ ଜଞ୍ଜାଳରୁ, ସମସ୍ତଙ୍କ ପାଖରୁ !"

"ତୁମେ, ମଉସା, ଯାହା କହ, ଭୟଙ୍କର ସିନିକାଲ୍ ! ଏମିତି ଗୋଟିଏ ଦିଗରୁ କଥାଟାକୁ ଦେଖିବା ତୁମର ପୁରୁଣା ଅଭ୍ୟାସ ! ଆର ଦିଗଟା ବି ତ ଅଛି ।"

"ଆରେ, କିଏ ନାହିଁକଲା ? ଦିଗ କ'ଣ ଗୋଟାଏ ନା ଦଶଟା ? ଦିଗ ପରା ଅନନ୍ତ ! ହଉ, ଛାଡ୍; ଆଜି କ'ଣ ସବୁ ବିଶେଷ ଖବର ନେଇ ଆସିଛୁ କହ ! ...ତୋ' ବାପା କେମିତି ଅଛି ? ତା'ର ସେ ସାଇଟିକା ଛାଡିଲାଣି ନା ନାହିଁ ?"

"ସେ ଏଇନା ଭଲ ଅଛନ୍ତି । କହିଛନ୍ତି ନୂଆବନ୍ଧରେ କୁଆଡେ ଜାଲ ପଡୁଛି, ବଡ ବଡ ବାଉଁଶପତ୍ରି ମାଛ ଆଉ ଫେଟା ମଞ୍ଜିଲଗା କେରାଣ୍ଡି ନେଇଯିବାକୁ ।"

"ସେଇଟା ସବୁବେଳେ ସେଇଆ !... ଆଇଁଷିଣାଟା ! ସେ ତା' ବେଳେ ଖୁବ୍ ଖାଇଛି । ଖୁବ୍ ଖୁଆଇଛି ।"

"ଏବେ ବି ସେ କୋଇ ଛାଡିନାହାନ୍ତି । ବୋଉ ସେଥିପାଇଁ ଯାହା ବିରକ୍ତ, ଆଉ କହ ନାହିଁ । କିନ୍ତୁ ତାଙ୍କପାଇଁ ଏଇଟା ଦିହସହା ହେଇଗଲାଣି । ଆମର ବି ।"

"ମଉସା, ତମେ ଆରଥର ଯୋଉ ଭୋଜି କଥା କହିନଥିଲ... ସେ ଯୋଉ ପଧାନଘର ଛେଳିଟାକୁ ତୁଣ୍ଡି ବାନ୍ଧି ହଡପ୍ କରି ନେଇଥିଲ ! ...ଅଜାଣତରେ ପଧାନ କେମିତି ତା' ପୋଷା ଛେଳିର କଲିଜାଟାକୁ ଭାଜି ଖାଇଗଲା । ଓଃ, ଟ୍ରେମଣ୍ଡସ୍ ! ମୁଁ ତାକୁ ନେଇ ଗୋଟାଏ ଗପ ଲେଖିଲି । ସେଇଟା ମଉସା, ଏମିତି ଚମକେଇଚି ଲୋକଙ୍କୁ ଯେ, କହି ନୁହେଁ ।"

ରମେଶର ଆଖି ଚକ୍‌ଚକ୍ କରୁଥାଏ । ତା' ଗଜୁରା ନିଶ, ତା' ଠାଣି, ତା' କହିବା ଢଙ୍ଗ ...ସତେ ଯେମିତି ଗବ୍ ଗବ୍ ଉଛୁଳି ଆସୁଛି ଗୋଟାଏ ଝରଣା !

"ହଁ ସତେ ତ ! ତୁ ଆଜିକାଲି ଭଲ ଗପ ଲେଖିଲୁଣି କୁଆଡେ ! ଆଣନ୍ତୁ ନାଇଁ, ତୋ' ଲେଖା ଥରେ ଶୁଣନ୍ତେ ?...ଏ ଭୋଜି ଗପଟାକୁ କେମିତି ଲେଖିଚୁ ?"

"ତୁମେ କହିବା ଭଳି ଲେଖିପାରିଥିଲେ, ମଉସା, ଆହୁରି ପାୱାରଫୁଲ ହେଇଥାନ୍ତା । କିନ୍ତୁ ମୋର ଦମ୍ କେତେ ? ମୁଁ ତାକୁ ନେଇ ଆଣି ଥୋଇପାରିଲି, ଏଇ ହେଲା ବଡ କଥା । ଆଉ ଆପଣ ଯୋଉ ଶୀତ ରାତି କଥା ବର୍ଣ୍ଣନା କରୁଥିଲେ – ...ବଡ ବଡ କେଣ୍ଡଲ୍ ଘରିପଟେ ପଟଙ୍ଗ ଉଡୁଥା'ନ୍ତି । ପଧାନର ଆଖି ଗେଣ୍ଡାଭଳି ବାହାରିଆସିଥାଏ । ସେ କିଛି ନିଶା ଖାଇଥାଏ । ସେ ସେଇ କଲିଜା ଫୁସ୍‌ଫୁସ୍‌କୁ ଟେକି ଧରିଥାଏ, ଘଣ୍ଟି ଝୁଲେଇଲା ପରି ଦୋହଲାଉଥାଏ । ...ବାବା, ସେ ଯେଉଁ ଡେସ୍‌କ୍ରିପସନ୍ !!"

ମୁଁ ରମେଶର ମୁହଁକୁ, ଆଖିକୁ ଚାହିଁ ରହିଥାଏ । ସେ ଜଣାଯାଉଥାଏ ଖୁବ୍ ଉତେଜିତ ।

"ମୁଁ ତାକୁ ଅବିକଳ ସେମିତି ନେଇପାରିଲି ନାହିଁ ମଉସା ! ଭାରି ଦୁର୍ବଳିଆ, ମାଖୁନା, ମୁଲାଏମ୍ ହେଇଗଲା । ତେବେ ବି ସମସ୍ତେ ଖୁବ୍ ପସନ୍ଦ କରିଛନ୍ତି ।"

ମୁଁ କିଛି କହିଲି ନାହିଁ । ସେ ବି ଚୁପ୍ ରହିଲା । ଏମିତି କିଛି ସମୟ ବିତିଗଲା ।

"ରମେଶ, ତୁ ତୋ' ବାପାପାଇଁ ମାଛ ନବୁ ପରା ?"

ରମେଶ କିନ୍ତୁ ଉଠିବା ମତଲବ୍‌ରେ ନଥିଲା । ସେ ବୋଧହୁଏ ଚାହୁଁଥିଲା, ଆଉ ସେମିତି କିଛି 'ମାଲ୍' ପାଇଗଲେ ଗପ ଲେଖିବ । ବେକୁବ୍, ଏମିତି କ'ଣ ମାଗାଯଚାରେ କାମ ଚଳେ ? କିବେ, ତୋ' ପାଣ୍ଠି କେତେ ? ତୋ' ଅକ୍ଷୟ ଭଣ୍ଡାର କାହିଁ ? ତଥାପି ଭାରି ଚାଇଁଆ ଟୋକା ରମେଶ । ଭାରି ବଢ଼ିଆ ପିଲା ।

ମୁଁ ତାକୁ ଚାହିଁ ହସିଲି । କ'ଣ ବୁଝିଲା କେଜାଣି, ଦାନ୍ତ ନ ଦିଶିଲା ପରି ସେ ବି ହସହସ ହେଲା ।

"ବାପା କହୁଥିଲେ ଆପଣ କୁଆଡେ ମିସୋଜିନିଷ୍ଟ – ମାନେ ସ୍ତ୍ରୀଲୋକଙ୍କୁ ଆଦୌ ଭଲପାଆନ୍ତି ନାହିଁ । ମୁଁ କିନ୍ତୁ ବିଶ୍ୱାସ କରୁନାହିଁ । ଆପଣଙ୍କ ଭଳି ଜଣେ ଅନୁଭବୀ ମଣିଷ କାହିଁକି ଏବଂ କେମିତି ତା' କରିପାରିବ ? ମୁଁ ତ ଭାବେ ମିସୋଜିନିଷ୍ଟ ପ୍ରକୃତରେ ନାହାନ୍ତି । ସେଇଟା ଗୋଟାଏ ଖାଲି ଥିଓରି । ପୁରୁଷ ମାତ୍ରେ ନାରୀକୁ ସ୍ୱୀକାର କରିବା ଭିତରେ ସ୍ୱାଭାବିକ ଭାବରେ ଭଲପାଇବା ବି ଆସିଯାଉଛି । ଯେଉଁମାନେ ଭଲପାଆନ୍ତି ନାହିଁ ବୋଲି କହନ୍ତି, ସେମାନେ ଭିତରେ ଭିତରେ ଅତି ତୀବ୍ର ଭାବରେ ନାରୀମାନଙ୍କୁ ଚାହୁଁଥା'ନ୍ତି ।"

ରମେଶ ତା' ବୁଦ୍ଧିବଳ ଖଟେଇ ବ୍ୟାଖ୍ୟା କରି ଚାଲିଥାଏ । ମୋ' ମନରେ ବାରମ୍ବାର ଉଙ୍କିମାରି ଯାଉଥାଏ ଗୋଟାଏ ଅବିସ୍ମରଣୀୟ ଅନୁଭବ ।

"ଶୁଣ୍ ରମେଶ, ତୁ ଆଜି ତୋ' ବାପାପାଇଁ ବାଉଁଶପତ୍ରି ନେଇ ଯା' । ପରେ ଆଉ କେବେ ସମୟ କରି ଆସିବୁ । ଆଜି ମୁଁ ଟିକିଏ ମାନ୍ଦା ପଡିଯାଇଛି । ମୋର କିଛିହେଲେ କହିବାକୁ କିମ୍ବା ଶୁଣିବାକୁ ଜମାରୁ ମନ ହଉ ନାଇଁ । ...ତୁ ଆଉ କେବେ ଆ'!"

ଦୁଇଦିନ ଛାଡି ଆସିବାକୁ କହିଦେଇ ରମେଶ ଚାଲିଗଲା ।

ମୁଁ କିନ୍ତୁ ଘୁଞ୍ଚିଗଲି ସମୁଦ୍ର ଉଜାଣିରେ ବହୁ ଦୂରକୁ । ଆଖି ବୁଜିଦେଲି –

ପୁଣି ଫେବୃଆରୀ ମାସର ମୋଲାଏମ୍ ପବନ । ପୁଣି ପେଣ୍ଟା ପେଣ୍ଟା ଫୁଲ । ଯାହା ମନ ତା' କରିନେବାକୁ ପୁଣି ଦୁର୍ବାର ଇଚ୍ଛା ।

ତଳ ଆଡକୁ ଗୋଡ ଲମ୍ବେଇଦେଇ ଚିନ୍ତାମଣି ବସିଥାଏ ଗୋଟାଏ ଚୌକିରେ । ଭାରି ବଢିଆ ଲନ୍ । ବଢିଆ ରଙ୍ଗ ବେରଙ୍ଗ ଫୁଲର ଧାଡି ।

"ଆବ୍‌ବେ, ଆଜି କ'ଣ ଏତେ ଡେରି ? ଆ' ବସ୍!"

ଟ୍ରାକ୍ ସୁଟ୍‌ରେ ଚିନ୍ତାମଣୀର ଖେଳୁଆଡ ଚେହେରା ଦପ୍‌ଦପ୍ ଝଟକୁଥାଏ । ସେ ସମୟର ସେ ଅପ୍ରତିଦ୍ୱନ୍ଦ୍ୱୀ ହିରୋ !

ଚିନ୍ତାମଣି ସାମନ୍ତରା । ମୋର ସହପାଠୀ ଦିଲ୍ଲୀରେ । ଏବେ ଭୁବନେଶ୍ୱରରେ ଦେଖାସାକ୍ଷାତ୍ । ମୋର ପୋଷ୍ଟିଂରେ ସେ ବହୁତ ଖୁସି ।

କ'ଣ ଖାଇବୁ କହ! – ଆଚ୍ଛା ଥାଉ ସେଇଟା ପଛକଥା – ଆଗ ଗୋଟାଏ ରାଉଣ୍ଡ କଫି ହେଇଯାଉ – ତା'ପରେ ଦେଖିବା

ସେ ବଡ ପାଟିରେ ଡାକିଲା ସ୍ତ୍ରୀକୁ "ଡଲି, କଫି ପଠାଅ । ଶେଖର ଆସିଚି!" – ଏବଂ ମୋ' ଆଡକୁ ଚାହିଁ ମୁଚୁକି ମାରିଲା । ସେ ଜାଣେ ଯେ ଏମିତି ଗୁଡାଏ ପାଟିକରି ଡକାହକା ଶୁଣିଲେ ମୋତେ ଚିଡିମାଡେ । ସେ ସେଇଆ ଚାହୁଁଥିଲା, ମତେ ଚିଡେଇବାକୁ!

ଲନ୍‌ରେ ଗୋଡ ବାଡେି ସେ ଖେଁ ଖେଁ ଗୁଡାଏ ହସିଲା । କହିଲା, "ତୁ ଶେଖର ଗୋଟାଏ ମଫ! ତୁ ଏତେ ଭଦ୍ର କାଇଁ ବନିଚୁବେ ? ଏମିତି କ'ଣ ଚଳି ପାରିବୁ ? – ତୁ ଶଳା ବାଆଜି ହେଇ ଯାଉନୁ କାହିଁକି ?"

"ଶୁଣ୍ ଚିନ୍ତୁ, ମୁଁ ତୋଠୁ ବଳି ବେବୁବ୍ ନୁହେଁ । ତୋର ଢଙ୍ଗ ମୋଠୁ ଭିନ୍ନ । ତୁ ଗୋଟାଏ ପ୍ରକାର ବୁଝିବୁ, ମୁଁ ଆଉ ପ୍ରକାରେ ବୁଝିଚି ।"

"କ'ଣ ଆଲୁଟା ବୁଝିଚୁ ? ଆବେ, ତତେ ଏଇନା ବୟସ କେତେ ? ମୋ'ଠୁ ଚୌଦ ସାନ । ଅଣତିରିଶ ବର୍ଷରେ ତୁ ଗୋଟାଏ ସାଧୁ ବନୁଚୁ କ'ଣ ? ଦେଖ୍, ତତେ ମୁଁ ଦେଢଶ' ଥର କହିଲିଣି । ତୁ ଶଳା ଯଦି ଖୋଲାଖୋଲି ଗୋଟାଏ ଝିଅ ମୁହଁକୁ ନିଃସଂକୋଚ ଚାହିଁପାରୁନୁ, କଥା କହିପାରୁନୁ, ତତେ ହୁଏତ ମାନସିକ ବ୍ୟାଧି ଘୋଟିଲାଣି, ନହେଲେ ତୁଟା ଗୋଟାଏ ମାଇଚିଆ ନହେଲେ ପକ୍‌କା ହିପୋକ୍ରିଟ୍ ।"

"ସ୍ଟପ୍ ବେ ।" ମୁଁ ପ୍ରୟୋଜନରୁ ଅଧିକ ପାଟି କରିଥିଲି ।

ସେ ପୁଣି ଖେଁ ଖେଁ ହସିଲା ।

"ବାଧିଗଲା ସତକଥାଟା ।"

ଡଲି କଫି ନେଇ ଆସିଲା । ମୋତେ ଚାହିଁ ମୁଣ୍ଡ ଟୁଙ୍ଗାରି ହସିଲା । ମୁଁ ତାକୁ ଥରେ ଚାହିଁ ଅଭ୍ୟାସରେ ଅନ୍ୟ ଆଡକୁ ଆଖି ଫେରାଇ ନେଉଥିଲି ।

"ଦେଖ୍ ଶେଖର, ଡଲିଟା କ'ଣ ଅସୁନ୍ଦର ? ତାକୁ କ'ଣ ଏମିତି ଥରେ ଚାହିଁ ନଜର ଆଡ କରି ନିଆଯାଏ ? ସତ କହ, ତାକୁ ଆଉଥରେ ଚାହିଁବାକୁ ତୋର ଇଚ୍ଛା ହଉନାହିଁ ?"

"ଏମିତି କ'ଣ ଭଦ୍ରଲୋକକୁ କହୁଚ ମ ? ସେ କ'ଣ ତମଭଳି ବେସରମ୍ ହେଇଛନ୍ତି, ମାଇକିନାଙ୍କ ମୁହଁ ଦିହକୁ କଟାସ ଭଳି ଚାହିଁରହିଥିବେ! ନିହାତି ଅଭଦ୍ର କଥା!"

ଚିନ୍ତାମଣି ଡଲିକୁ ଆଉ ଗୋଟେ ଚୌକିରେ ବସେଇଦେଇ କହିଲା – "ବସ, ମୁଁ ବୁଝେଇଦଉଚି କଥାଟା!"

"କ'ଣ ବୁଝେଇବ, ସେଇ ଫ୍ରଏଡ୍ ଶାସ୍ତ୍ର କଥା ତ! ମୁଁ ଢେର୍ ଶୁଣିଚି ସେଗୁଡାକ!"

"ସେ କଥା ନୁହେଁ । ମୁଁ ଚାହେଁ ଶେଖର ତୁମକୁ ନିଃସଂକୋଚ ଅନେଇ ସ୍ୱାଭାବିକ କଥାବାର୍ତ୍ତା କରୁ । ସେଥିରେ ଅଭଦ୍ରତାର ପ୍ରଶ୍ନ ଉଠୁଚି କେଉଁଠୁ ? ବେ ଶେଖର, କ'ଣ କହୁଚୁ ?"

ମୁଁ ଡଲିକୁ ଅଳ୍ପ ଚାହିଁ ହସି କହିଲି – "ଦେଖ୍ ଚିନ୍ତୁ, ଭଦ୍ରମହିଳାଙ୍କ ଆଗରେ ଆଉ ଫାଜିଲାମି କରନା!"

"ଆବ୍‌ବେ ତୁ ଡଲି ଆଡେ ଗହିଁ କହୁନୁ କାହିଁକି ? – ବନ୍ଧୁଭଳି, ଅନ୍ତତଃ ତା' ସ୍ୱାମୀର ବନ୍ଧୁଭଳି ସ୍ୱାଭାବିକ ସହଜ ହୋଇପାରୁନାହୁଁ କାହିଁକି ? – ତମେ ଦୁହେଁ ଶାଳା ହିପୋକ୍ରିଟ୍ । ଭଦ୍ରତା ନାଁରେ ଅଭିନୟ କରୁଚ । ଭିତରେ ପ୍ଲାନ୍ ଅଲଗା !"

ମୁଁ ମୁହୂର୍ତ୍ତକ ପାଇଁ ଲକ୍ଷ୍ୟ କଲି । ଡଲିର ମୁହଁ ଉପରେ ଫଗୁ ବୁଣି ହେଇଗଲା । ସେ ମୋତେ ଗହିଁଦେଇ ଉଠିପଡିଲା ଯିବାକୁ ।

"ହଉ କ'ଣ ଯାକୁ ଖାଇବାକୁ ଦବ । ଶଳାକୁ ଚିଙ୍ଗୁଡିଭଜା ଖୁଆଅ । ଟିକିଏ ତା' ରକ୍ତରେ ତେଜ ଆସୁ । ଶଳା ମାନ୍ଦା ଗୋପାଳ !"

ଚିନ୍ତାମଣି ଆଉ ହସୁନଥିଲା । ସେ ସତକୁ ସତ ରାଗିଯାଇଥିଲା ।

ମୁଁ ତା'ପରେ ତା' ଘରକୁ ଯାଇଛି । ଥରେ ସେ କଲିକତା ଯାଇଥିଲା । ମୁଁ କିନ୍ତୁ ଜାଣି ନଥିଲି । ମୁଁ ନିମନ୍ତ୍ରଣ ପାଇ ଯାଇ ପହଞ୍ଚିଯାଇଥିଲି । ସେଠି ଦେଖିଲାବେଳକୁ ସେ ନାହିଁ । ଡଲି ତା' ଘରେ ଚ଼ ଜଳଖିଆ ଏବଂ ଶେଷକୁ ଡିନର୍ ଖାଇବାକୁ ବାଧ୍ୟ କରିଥିଲା ।

ଭାରି ଖୋଲା ବ୍ୟବହାର । ମଝିରେ ମ କାନ୍ଧରେ ହାତ ପକେ ମୋ' ଆଖିକୁ ଗହିଁ ହସିବାରୁ ମୁଁ ହୁତ୍‌ହୁତ୍ ଜଳିଯିବା ଭଳି ଅନୁଭବ କଲି । କିନ୍ତୁ ପୁଣି ଦୃଶ୍ୟ ବଦଳିଗଲା । ସେ ସେମିତି ଦୂରକୁ ଘୁଞ୍ଚିଗଲା ।

ପୁଣି ଆସିବାକୁ କହିଲାବେଳେ ସେ ମୋ' ହାତକୁ ଧରିନେଇଥିଲା । ମୁଁ ସାମାନ୍ୟ ଅନୁଭବ କରିଥିଲି କି ମୋତେ ସେମିତି ଲାଗିଲା କେଜାଣି, ସେ ମୋତେ ଟିକିଏ ଟାଣିଲା ନା କ'ଣ !

ମୁଁ କାନମୁଣ୍ଡା ଯାଏଁ ତାତିଗଲି ଏବଂ ଓହ୍ଲେଇଗଲି ରାସ୍ତା ଉପରକୁ ।

ସେତିକିବେଳେ ଏଇ ରମେଶର ବାପ 'ବିମଳ'କୁ ଦେଖିଲି । ସେ ବି ସେଇଠି ମତେ ଦେଖି ସାମାନ୍ୟ ଚମକି ପଡିଲା । ବିମଳ ପାତ୍ର ଶଳା, ମହାହାରାମି ଖୋର୍ । ମୁଁ ତାକୁ ଏମିତି ଦୂରରୁ ଜାଣିଥିଲି । ପରେ ସିନା ସାଙ୍ଗ ହେଇଗଲୁ ।

ସେ ହାତରେ କ'ଣ ଗୋଟାଏ ପାର୍ଶଲ୍ ଧରିଥାଏ । ସେ ମୋତେ ଗହିଁଲା – "ଆପଣ ଭଲ ଲୋକ କ'ଣ ଏଇଆଡେ ?"

ମୁଁ ଖୁବ୍ ଚିଡିଗଲି; କିନ୍ତୁ କହିଲି, "ଏମିତି ଆସିଥିଲି ଚିନ୍ତାମଣି ପାଖକୁ । ସେ ଘରେ ନାହିଁ । ସେ କଲିକତା ଯାଇଚି ।"

ମୋର ଏସବୁ କହିବାର ଆଦୌ ପ୍ରୟୋଜନ ନ ଥିଲା । ମୁଁ ବୋଧେ ଗହୁଁ ନଥିଲି ସେ ଭିତରକୁ ଯାଉ । ବୋଧେ ଗହୁଁଥିଲି ସେ ଡଲିକୁ ଗହିଁ ହସି ହସି କଥା ନ କହୁ । ସେ ସେଇ ଦୁଆରମୁହଁରୁହିଁ ଲେଉଟିଯାଉ !

ସେ କିନ୍ତୁ ମୋତେ ଗହିଁ କେମିତି ଗୋଟାଏ ହସିଲା ଥଟ୍ଟା କଲା ପରି ଯା'ର ତାତ୍ପର୍ଯ୍ୟ ଥିଲା, "ଆବେ ବେକୁବ୍ ମୁଁ ଜାଣେ ସେ ନାହିଁ – ସେଥିପାଇଁ ତୁ ମୁଁ ଆସିଚି । ତୁ ଶଳା ମଫ କ'ଣ ବୁଝିବୁ ଏଥିରୁ ?"

ତା'ର ସେ ଥଟିଲା ହସ ମୋ' ଦିହରେ ନିଆଁ ଲାଛି ଦେଲା । ମୁଁ ତା' ଆଗକୁ ମାଡିଯାଇ

ଦୁଆରମୁହଁ ଜଗି ଠିଆ ହେଇଗଲି, ସେ ମୋତେ ତିଳାର୍ଦ୍ଧେ ଖାତିର୍ ନ କରି ବେଲ୍ ମାରିଲା ଏବଂ ସାଙ୍ଗେ ସାଙ୍ଗେ ଡଲି କବାଟ ଫିଟେଇଦେଲା ।

ମୁହୂର୍ତ୍ତକପାଇଁ ମୁଁ ଦୁହିଁଙ୍କ ମଝିରେ ଠିଆ ରହିଲି ରୋଧିବାକୁ ।

ଡଲି ମୋତେ ନ ଦେଖିଲା ଭଳି କହିଲା, "ଆରେ ବିମଳ, ଭିତରକୁ ଆସୁନାହଁ କାହିଁକି ?" ମୁଁ ଘର୍ମାକ୍ତ ଅନୁଭବ କଲି ।

ବୁଲି ଚାହିଁଲି, କିଛି କହିପାରିଲି ନାହିଁ । ବିମଳ ମୋତେ ଘସିହେଲାପରି ଘର ଭିତରକୁ ଗଲା ।

ଡଲି ମୋତେ ଚାହିଁ କହିଲା, "ଆପଣ ଆସିବେ କି ଶେଖରବାବୁ ? ଆସୁ ନାହାନ୍ତି ?"

"ନା ଧନ୍ୟବାଦ ! ମୁଁ ଆସୁଚି ।"

"ଆଚ୍ଛା, ଗୁଡ୍ ନାଇଟ୍ !"

ମୁଁ ପୁଣି ରାସ୍ତାକୁ ଓହ୍ଲେଇଗଲି ଏବଂ ଧପ୍ ଧପ୍ ଚାଲିଲି ବଜାର ଆଡକୁ ।

"କ'ଣ ହେଲା ! ବିମଳ ପାତ୍ର ଏତେ ରାତିରେ ଏଇଠି ? ସେ ଶଳା ଚିନ୍ତାମଣି ଏଥିପାଇଁ ଦାୟୀ । ସେ ଚାହେଁ ଖୋଲା ବ୍ୟବହାର ପରା ! ଏଇ ହେଲା ତା'ର ଫଳ । ଭୋଗୁ ଶଳା, ଯାହା ତା' ଭାଗ୍ୟରେ ଅଛି । ...ମୋର ବାରମ୍ବାର ଇଚ୍ଛା ହେଉଥିଲା ସେ ନମଖାରାମ୍ ବିମଳ ପାତ୍ରକୁ ଟାଣି ଆଣି ବାଡେଇବାକୁ । ସେଇଟା ଗୋଟାଏ ଚରିତ୍ରହୀନ ମଦ୍ୟପ । ଶଳା ଇଚ୍ଛା ହେଉଥିଲା ଚିନ୍ତାମଣିକୁ ବାଡେଇବାକୁ । ଶେଷରେ କିନ୍ତୁ ଇଚ୍ଛା ହେଉଥିଲା ଡଲିକୁ ଗୋଟାଏ ମୋଟା କାଠଫାଳିଆରେ ଗୋଡଠୁ ମୁଣ୍ଡଯାଏଁ ପିଟିଯିବାକୁ । ତାରି ଭିତରେ ତାକୁ ଗୋଡଠଉ ମୁଣ୍ଡଯାଏଁ ଚାହିଁବାକୁ ବି ମନ ହେଉଥିଲା । ତାକୁ ଧରି କାନ୍ଦିବାକୁ ଇଚ୍ଛାହେଉଥିଲା ।"

ମୁଁ ରାତିସାରା ଶୋଇନାହିଁ । ଉତ୍ୟକ୍ତ, ଉତ୍ତେଜିତ ହେଇ ମୋ' ଭଡାଘର ଛାତରେ ବୁଲିଚି । ...ବାରମ୍ବାର ମୋ' ଆଖି ଆଗରେ ଅସଂଯତ, ଅଶ୍ଳୀଳ ଚିତ୍ରସବୁ ଦିଶିଯାଉଥାଏ । ମୁଁ ବାରମ୍ବାର ସେମାନଙ୍କୁ ଶାସ୍ତି ଦେଉଥାଏ ନାନାପ୍ରକାର । ଗୋଟାଏ ସମୟରେ ସେ ତିନିଜଣଯାକ ନଗ୍ନ ଜନ୍ତୁଭଳି ମୋତେ ଭିନ୍ନ ଭିନ୍ନ ଭଙ୍ଗୀରେ ମୁଦ୍ରା ଏବଂ ବନ୍ଧରେ ଉତ୍ତେଜିତ କଲେ ।

ରାତି ପାହିବା ମାତ୍ରେ ମୁଁ ଯାଇ ଚିନ୍ତାମଣି ଦୁଆରେ ପହଞ୍ଚିବାକୁ ସ୍ଥିର କଲି । ପୁଣି କ'ଣ ଭାବି ଅପେକ୍ଷା କଲି ଆଠଟାଯାଏଁ ।

ଖୁବ୍ ଟମ୍‌ଟମ୍ ହେଇ ପହଞ୍ଚିଲାବେଳକୁ ତିନିହେଁ ଡ୍ରଇଁରୁମ୍‌ରେ ଚା ଖାଉଥିଲେ । ସକାଳୁ ଆସି ଚିନ୍ତାମଣି ପହଞ୍ଚିଯାଇଥିଲା ।

ମୁଁ କଟମଟ ବିମଳକୁ ଅନେଇ ରହିଲି । ସେମିତି ରାଗିଲା ପରି ଡଲିକୁ ବି ଚାହିଁଲି କିଛି ସମୟ । ତା'ପରେ ଚିନ୍ତାମଣି ଉପରେ ସବୁଯାକ କ୍ରୋଧ । ତାକୁ ଜାଳିଦେବି ସତେ ବା ।

"କିବେ, ବସୁନୁ କାହିଁକି ?"

"ନା, ସେ ମୋ' ପାଖରେ ବସିଲେ ମାରା ହେଇଯିବେ ।" କହିଲା ବିମଳ ।

ଚିନ୍ତାମଣି ହସିଲା ଖେଁ ଖେଁ ।

"କିବେ ଶେଖର, ତୁ ଆମ କୀର୍ତ୍ତିଚନ୍ଦ୍ରକୁ ଜାଣିଚୁ ନା କ'ଣ ? କାଲି ଡିନର୍ ପୂର୍ବରୁ ଆସି ତୋର ଚର୍ଚ୍ଚା କରିବାକୁ ମୁଁ ଯାକୁ କହିଯାଇଥିଲି । ସେ ଆସିଲା,ତୁ ଗଲାବେଳକୁ ରାତିରେ ଘର ଜଗିବାକୁ । କିନ୍ତୁ ତୁ ଯେ ଏକୁଟିଆ ଡଲି ସାଙ୍ଗରେ କଥାବାର୍ତ୍ତା ହେଲୁ, ଖିଆପିଆ କଲୁ, ଏଇଟା ଗୋଟାଏ ନ୍ୟୁଜ୍! – ବଢ଼ିଆ !"

ବିମଳ ନାଇଟ୍ ଗାଉନ୍ ପିନ୍ଧି ଘର ଭିତରକୁ ପଶିଯାଉଥିଲା । ମୋ' ଆଖିରେ ନିଆଁ ଦହକୁଥିଲା ।

ଚିନ୍ତାମଣି କହିଲା, "ସେଇଟା ଛତରା ହେଇଗଲା । ଡଲିର ସାନଭାଇ ହେଇଥିବାରୁ ତାକୁ ସମସ୍ତେ ଗେହ୍ଲା କରିଦେଲେ ।"

ମୁଁ ବୋଧହୁଏ ଭୁସ୍‌କିନା କୁଢେଇହେଇ ପଡିଥା'ନ୍ତି । ଡଲିର ସାନଭାଇ, ଇସ୍! ମୁଁ ଶାଲା କେତେ ବେକୁବ୍ ।

ମୁଁ ଲାଜରେ ସାଙ୍କୁଡିଯାଉଥିଲି; ଧୂଳିସାତ୍ ହେଇଯାଉଥିଲି ।

ମୋର କି ଆଉ ସାହସ, ଡଲି ମୁହଁକୁ ଆଖି ଟେକି ଚାହିଁପାରିବି ।

X X X X

ସବୁ ଚିତ୍ର ଅପସରିଗଲା – କାହିଁ କୁଆଡେ । ମୁଁ ମିଟିମିଟି ଅନେଇଲି, ଅକାଟକାଟ ସମୁଦ୍ରପରି ସମୟକୁ । ରମେଶ କହିଚି ଦୁଇଦିନ ପରେ ଆସିବାକୁ । ତାକୁ କ'ଣ ମୁଁ ଏକଥା କହିପାରିବି ? ସେ ଟୋକା କ'ଣ ଏଇଭଳି ତାକୁ ବୁଝିବ ? ତା' ବାପ, ପିଉସା, ପିଉସୀ, ତା' ପୂର୍ବପୁରୁଷଙ୍କୁ ନେଇ ସେ ଖେଳିପାରିବ ? ତା'ର ବଳ କାହିଁ ? ସେ ସମସ୍ତଙ୍କୁ ନେଇ କଣ୍ଢେଇ କରିଦବ ! ଯେଉଁମାନେ ବସିଥିଲେ ଉଠିପାରନ୍ତି ନାହିଁ – ଉଠିଲେ ବସିପାରନ୍ତି ନାହିଁ । ତାକୁ ତଥାପି କିଛି ଆଭୁଆଳ କରି କହିଦିଆଯାଇପାରେ । ତା' ଭିତରେ ଯଦି ବିଧାତା ପୁରୁଷ ଯା'କୁ ଖଣ୍ଡି ଠିଆ କରିଦେଇ ପାରିଲା, ମନ୍ଦ କ'ଣ!

ମୋର କିନ୍ତୁ ପ୍ରବଳ ଇଚ୍ଛା ହେଉଛି, ତାକୁ ଆଉ ଥରେ ଖଣ୍ଡି ଦେଖିବାକୁ । ଏଇନେ ତ ଡଲି ନାହିଁ, କି ଚିନ୍ତାମଣି ନାହିଁ । ସେମାନେ ଆଗପଛ ହେଇ ଚାଲିଗଲେ । ଆଜିକୁ ଦଶବର୍ଷ ହେବ ନା କ'ଣ! ଖାଲି ସେ ଆଇଁଷିଣା ବିମଳଟା ଅଛି ଏଯାଏଁ । ସମୁଦ୍ର ପରି ସମୟ ଘୋଟି ରହିଛି ଅକାଟକାଟ !

ରମେଶର ଆଖିରେ ମୁହଁରେ ଚକ୍‌ଚକ୍ କରୁଚି କ'ଣ କେଜାଣି ! ସେଇ ବୋଧେ ପାରିବ । ଏ ଗହୀର ଭିତରେ ବୁଡାମାରି ସେ ସମ୍ପଦକୁ ତୋଳି ଆଣିପାରିବ । କିନ୍ତୁ କୋଉ ଢଙ୍ଗରେ ତା'ର ସେ ସରୁ ସରୁ ଆଙ୍ଗୁଳିରେ ତାକୁ ଖଞ୍ଜିବ କେଜାଣି ? ସେ ଠିକ୍ ଠିକ୍ ବୁଝିଯିବ କି ? ମୋ' ବୁକୁ ଦାଉଁ ଦାଉଁ ହଉଚି । ଲାଗୁଚି ମୁଁ ବିଧାତାର ଚକ ଉପରେ ପୁଣି ମାଟି ମେଣ୍ଟା ହୋଇ ଅପେକ୍ଷା କରିବି । ସେ କ'ଣ ଗଢ଼ିବ କେଜାଣି ? 

## ସୂଚୀପତ୍ର

# ନାଗାନ୍ତକ ବିଦ୍ୟା

ଭାରି ଗହନ, ଗୋପନ ବିଦ୍ୟା । ଯାଁ ଭାଁ ଅଲୌକିକ ଖେଳ ଦେଖେଇ ଦିଅନ୍ତି କେଳାଏ । ତଥାପି ମଞ୍ଜ ଟାଣ ନଥିଲେ, ମନ ସରଳ ନଥିଲେ, ବିଶ୍ୱାସ କରିହୁଏ ନାହିଁ, ଈଶ୍ୱରଙ୍କୁ ବା କେଳାଙ୍କୁ । କିନ୍ତୁ ସେ ହାତିମୁଣ୍ଡିଆ ପାହାଡ ତଳକୁ ଯୋଉ ଦଶ କୋଡିଏ ଖଣ୍ଡ ଗାଁ ଅଛି, ସେଇଠି ସାନ ବଡ ସମସ୍ତଙ୍କର ତିଳାର୍ଦ୍ଧେ ହେଲେ ଅବିଶ୍ୱାସ ନାହିଁ ଯେ ଝାମ୍ପୁରା କେଳା ବିଷୟରେ ଯାହା ଶୁଣାଯାଉଛି ସେ ସବୁ ଠିକିନିଖି ସତ ! ସେଦିନ ସକାଳ ପହରଟାରେ ସେ ଧୂସରିଆ ସାପଟାଏ ହୋଇ ପଥର ଖୋପ ଭିତରେ ପଶିଗଲା । ନଈପଠା ଉପରେ ଯୋଉଠି ସେ ମରି ପଡିଥିଲା ସେଇଠି କେହି ତା' ମଲା ପିଣ୍ଡଟାକୁ ଖୋଜି ପାଇ ନଥିଲେ ।

ତା'ର ନାଁଟାଏ ଥିଲା କି ନାହିଁ କେହି ଜାଣନ୍ତି ନାହିଁ । ଆଣ୍ଠୁଆଣି ବୁଦାପରି ତା' ମୁଣ୍ଡର ବାଳ ଦେଖି ଝାମ୍ପୁରା କହିଲେ ସମସ୍ତେ ତାକୁ ବୁଝି ଯାଉଥିଲେ । ତ୍ରିପଣ୍ଡ ଚିକ୍କଣ କଳା । ଗୋଜିଆ ପାଟଳା ନିଶଦାଢି । ଟାଣିଲା ପରି ଆଖିରେ ଛୋଟ ଛୋଟ ବଳଭଦ୍ରିଆ ଡୋଳା । ସୁସଷ୍ଟ ଧଳା ଦାନ୍ତ । ପିଞ୍ଜିଲା ପରି ହାତ ଗୋଡ । ମେଲା ଦେହ । ଆଣ୍ଠୁଯାଏ ଡୋରିଆ ବେହରଣ । ବେକରେ ଦି ସୋରା ଗଦମାଳି । କାନ୍ଧରେ ସାନବଡ ଭାରେ ସାପ ପେଡି । ଆଗ ପେଡି ଉପରେ ଗଦମୁଣି, ଲାଉତୁମ୍ବୀ ନାଗେଶ୍ୱର । ପଛପାଖେ ଖଣ୍ଡିଏ ମୁନିଆ ଛୁରୀ, ଗୋଟେ ଡେଙ୍ଗାଳିଆ ନହକା ବାଡି । ସେ ଗାଁ ଦାଣ୍ଡରେ ସାପଖେଳ ଦେଖାଏ । ଅଣ୍ଡାଟିଏ ମିଳିରେ ସବୁଠୁ ବଡ ସାପଟିକୁ ଖୁଆଏ, ଆଉ ଗୋଟିଏ ମିଳିଲେ ନିଜେ ଖାଏ । ମୂଷା, ବେଙ୍ଗ ଦେଇ ସାନ ସାପଙ୍କୁ ପୋଷେ । ଡିବି ଡିବି ବଜାଇ ଗାଁରେ ପଶେ । ଏମିତି ପେଟ ପୋଷେ । ଜାତିରେ କେଳା । ଖେଳ ଦେଖେଇ ଯାହା ପଇସା ପାଏ ବଡ ସାପ ପେଡିରେ ପୂରେଇ ଦିଏ । କାହାର ଦମ୍ଭ ସେ ପେଡିରେ ହାତ ମାରିଦବ !

ଚୁଡା ଚଉଳ ଫଳ ମୂଳଟାଏ ମିଳିଲେ ନାକିରେ ବାନ୍ଧି ଗଦମୁଣିରେ ରଖିଦିଏ । ପେଡିରୁ ସାପ ବାହାର କଲାବେଳେ ତା'ର କୁହାଟ, ସାପକୁ ନାଁ ଧରି ଡାକହାକ ସବୁ ନିଆରା । ଡାକୁଣି

ଅଙ୍କ ଟେକିଦେଲେ ପାଞ୍ଚହାତ ଲମ୍ବର ଜନ୍ତୁ ଆସି ଫଣା ଟୋଳି ଉଭା ହୋଇଯାଏ ।

'ବାହା, ବାହାରେ ମୋ' ରଜା, ମୋ' ଖାଉନ୍ଦ । ଯାର ଠାଣି ଦେଖ, ଫଣା ଦେଖ ସାଆନ୍ତ ସାଆନ୍ତାଣୀମାନେ, ତା'ର ଝୁଲା... ହାଓ୍ଵେରି... ତା' ଚୋଟ ଦେଖ...'

ଝାମ୍ପୁରାର ମୁଣ୍ଡବାଳ ଝାଙ୍କି ହେଉଥାଏ । ଚୋଟ ମାରିବାକୁ ବାଁହାତ ମୁଠା କରି ଆଗରେ ଦେଖେଇଥାଏ । ଚୋଟ ଖାଇବାକୁ ପେଡି ଢାଙ୍କୁଣିକୁ ଢାଲକରି ଟେକି ଧରିଥାଏ ।

'ଯେ ହେଲା ଶଙ୍ଖଚୂଡ ସାଆନ୍ତେ । ଯାର ଫଣା ଉପରେ ଶଙ୍ଖ ଚିହ୍ନ । ଏକା ଚୋଟରେ ହାତୀ ଟଳିପଡିବ । ଟେକି ଧରିଲେ ପାଞ୍ଚବର୍ଷର ମଣି, ପିଲା ଠଉ ଭାରୀ ।'

ଆଉସବୁ ସାପମାନଙ୍କୁ ଡାକି ଲାଙ୍ଗୁଡ ଗଳିଦିଏ । ସେମାନେ ପାଟି ମେଲେଇ ଫୁଫୁକାର କରନ୍ତି । କିଏ ତମ୍ପ, କିଏ ଗୋଖର, କିଏ ଚମ୍ପାନାଗ, କିଏ ବୋଡା – ବିଜୁଳି ବେଗରେ ସାପ ଚହଟି ଯା'ନ୍ତି । ବିଜୁଳି ବେଗରେ ଝାମ୍ପୁରା ତାଙ୍କୁ କାବୁ କରିନିଏ । ଅଙ୍କ ଫାଙ୍କ କରି ପେଡି ସନ୍ଧାରେ ମୁଣ୍ଡ ଗଳେଇ ଦେଲେ ପୋଷାମନା ଜନ୍ତୁ ଅନ୍ଧାର ଭିତରେ ପଶିଯାନ୍ତି । ଢାଙ୍କୁଣି ପଡିଯାଏ ।

ସେ ନାଗେଶ୍ଵର ବଜେଇବାକୁ ସମସ୍ତେ ଟାକି ବସିଥା'ନ୍ତି । ସୁନ୍ଦରିଆ ଚମ୍ପାନାଗକୁ ନେଇ ଝାମ୍ପୁରା ତା' ଖେଳ ଦେଖାଏ । ଗୋଟାଏ ଆଣ୍ଠୁରେ ବସି ଆର ଆଣ୍ଠୁକୁ ଝୁଲାଏ । ଏଣେ ନାଗେଶ୍ଵରର ଲହରିଆ ସ୍ଵରରେ ସାପ ଝୁଲେ । ଦେଖଣାହାରି ଝୁଲନ୍ତି । ଆଖିରେ ପଲକ ପଡେନାହିଁ । ସାପର ବା ସେମାନଙ୍କର ।

ଚମ୍ପାନାଗ ଉପରେ ପଇସା ପଡେ । ଗାଁ ମାଇପେ କର ଯୋଡନ୍ତି । ଅଫଳନ୍ତି ଗଛ ଫଳିବାକୁ ମନାସନ୍ତି । ଝାମ୍ପୁରା ପୋଷମନା ଚମ୍ପାନାଗକୁ ଗଳାରେ ପକାଇ ଠିଆହୁଏ । ମହାଦେବଙ୍କ ଗଳାହାରକୁ ଛୁଆଁଇ ପଇସା ବଢାଇଲେ ସେ ହାତ ପତେଇ ଦିଏ । କବାଟ ଆଢୁଆଳରୁ ନାକେଇ ଚହିଁଥିବା ଭୁଆସୁଣୀକୁ ମୁରବି ମାଇପେ ଟାଣିଆଣନ୍ତି । 'ପୁଆଣୀ ଦେଢବର୍ଷ ହେଇଗଲା, କଷିଟିଏ ନାହିଁ କି ଫଳଟିଏ ନାହିଁ । ଯାକୁ ଟିକିଏ ଛୁଆଇଁ ଦିଅ, କେଳା ପୁଅ । ଯାର ଗଛ ଫଳିଯାଉ ।'

ଝାମ୍ପୁରା ସେ ସୁଢଳ ମୁହଁଟିକୁ ଅନାଏ । ସାପର ଲାଞ୍ଜ ମୁଣ୍ଡକୁ ଦୁଇ ହାତରେ ଧରି ଆସ୍ତେ ତା' ବେକରେ ପକାଇବାକୁ ଟେକି ଧରିଲେ ସେ ଚିହିଁକି ଉଠେ । ଭିଡିହୁଏ ପଳେଇବାକୁ । ଅନ୍ୟମାନେ ତାକୁ ଧରି ରଖିଥା'ନ୍ତି । ସେ ଭୟରେ ଆଖି ବୁଜିନିଏ । ଚମ୍ପାନାଗ ସେ ଭୁଆସୁଣିଆ ଦେହରେ ଲହଡି ଭାଙ୍ଗେ । ସେତିକିରେ ସେ ଝାଳରେ ଗାଧେଇଯାଏ । ତା' ଦେହ କମ୍ପେ ଠକ ଠକ ହୋଇ । ଝାମ୍ପୁରା ନାଗକୁ ଟୋଳିଆଣି ନିଜ ବେକରେ ଗୁଡେଇ ଦିଏ । – 'ଆରବର୍ଷ ଏ ଦିନକୁ ନାତିକି ଗେଲ କରିବ ସାଆନ୍ତାଣୀ', କହି ଘୁଞ୍ଚିଆସେ ।

ସାପର ମୁହଁରେ ବିଷ, ଲାଙ୍ଗୁଡରେ ଅମୃତ । ଲାଙ୍ଗୁଡ ଛୁଆଇଁ ଦେଲେ ପୁରୁଣା ଘା' ଭଲ ହେଇଯିବ । କାନଗିରି ପାଚି ପୂଜ ବାହାରୁଥିଲେ ସାପ ଲାଙ୍ଗୁଡ ପୂରେଇ ଦେଲେ ଶୁଖିଯିବ । – ଏମିତି ବାର ପ୍ରକାର ଟୁଟ୍‌କା ପାଇଁ ସେମାନେ ଝାମ୍ପୁରାକୁ କଟାଳ କରନ୍ତି । ସେମାନେ ତାଙ୍କ ବିଶ୍ଵାସରେ ଭଲ ହୋଇଯାନ୍ତି । ଝାମ୍ପୁରା ତ ଏମିତି ସେମିତି କେଳା ନୁହେଁ । ସେ ଅମୃତହସ୍ତା ।

ଯାହାକୁ ଛୁଇଁଦେବ ସେ କଅଁଳି ଯିବ । ସେ ନାଗାନ୍ତକ ବିଦ୍ୟା ସାଧିଚି । ଡାକିଦେଲେ ସାପ ଓହ୍ଲେଇ ଆସନ୍ତି ଗଛ କୋରଡରୁ, ପଥର ଖୋପରୁ । ସେ ମନ୍ତୁରି ଦେଲେ ସେମାନେ ଘୁଞ୍ଚି ପାରନ୍ତି ନାହିଁ । ଯେତେବଡ ସାପ ବିଷ ହେଲେ ଝାମ୍ପୁରାର ଗଦ ବାଜିଲେ ଉଭେଇ ଯାଏ । ଅତି ଅସାଧ ହେଲେ ସେ ସେଇ ଅହିରାଜକୁ ହକାରି ଆଣେ । ସେ ନିଜେ ଘାରେ ମୁହଁ ଲଗେଇ ନିଜ ବିଷ ଶୋଷିନିଏ । ଦେଖିଲା ଲୋକେ ଟାଟକା ହୋଇଯାନ୍ତି । ...ଥୋକେ ଅବିଶ୍ୱାସୀ କହନ୍ତି, ସେ ତା'ର ପୋଷା ସାପକୁ ନେଇ ଏ ଖେଳ ଖେଳେ । ଲୋକେ ଶୁଣନ୍ତି ନାହିଁ । ସେମାନେ ଆଖିରେ ଦେଖନ୍ତି ସାପ ଆସେ । ସାପ ବିଷ ଓହରିଯାଏ । ଅବିଶ୍ୱାସୀ କ'ଣ ବୁଝିବେ ? ଝାମ୍ପୁରା ପରା ନାଗାନ୍ତକ ସାଧିଛି ।

ଖେଳ ସରିଗଲେ, କାହା ପିଣ୍ଡାରେ ବସି ଝାମ୍ପୁରା ହାଲିଆ ମାରେ । ପିକା ଟାଣେ । କିଛି ମାଇପି ମରଦ ତାକୁ ବେଢି ରହନ୍ତି । ପଚାରନ୍ତି ନାନା କଥା । ବଡଭାଗ ମାଇପେ ତାକୁ ଚାହିଁ ରହନ୍ତି । ତା'ର ସେ ଚିକ୍କଣ କଳା ଦିହ, ସାଉଁଳିଆ ଗୋଟାଳିଆ ଗଢଣ । ସତେବା ସୁଠାମ ସୁନ୍ଦର କଳା ନାଗଟାଏ । ଆଖି ଲାଖି ରହୁଛି, ହେଲେ ତାଳୁରୁ ତଳିପା ଯାଇ ସିରିସିରି ଭୟ । ମୋ' ବାପଲୋ, କେତେବେଳେ କ'ଣଟି । ସାପୁଆ କେଳା ପରା ! ନାଗାନ୍ତକ ବିଦ୍ୟା ସାଧିଚି । କେଳା କିଏ, ସାପ କିଏ ?

ଏଭଳି ଅସାଧ ଜନ୍ତୁକୁ କେମିତି ମଣ କରୁଛୁ ?

ଝାମ୍ପୁରା ତା' ଦାନ୍ତ କାଢି ହସେ । କିଛି କହେ ନାହିଁ । ପିକା ଟାଣେ । ଆଉ ଜଣେ ତା' ପକ୍ଷରୁ କହେ, 'ସେ କେଳା ପିଲାଟି । ତାକୁ ସାପ କ'ଣ କରିବ । – ସାପ ପରା ତା'ର ଜ୍ଞାତିକୁଟୁମ୍ବ ।'

'ଝାମ୍ପୁରା ଦିହଯାକ ଗଦ ଚହଟି ରହିଚି । ସାପ ବିଷଠୁ ଗଦ ବିଷ ଆହୁରି ତେଜା । ୟାକୁ ଏବେ ଯୋଉ ସାପ କାମୁଡିବ, ସେ ତା' ବିଷ ଛାଡି ୟା' ବିଷ ନବ । ସେଇଠି ମରି ପଡିଯିବ ।'

ଝାମ୍ପୁରାର ଆଖିକଣ କୁଞ୍ଚେଇ ଯାଏ । ନିଶ ଅଗ ଟେକିହେଲା ପରି ଦିଶେ । ସେ କିନ୍ତୁ ହସେ ନାହିଁ । କିଛି କହେ ନାହିଁ । ବିଜୁଳି ପରି ଆଖି ଚମକିଯାଏ । ସଳଖେ ମରଦଙ୍କୁ ଚାହେଁ । ତେରେଛା ମାଇପିଙ୍କୁ ଚାହିଁଦେଇ ଗାଁ ଦାଣ୍ଡକୁ ଆଖି ଫେରେଇ ନିଏ ।

'ଆରେ ଝାମ୍ପୁରା କିଛି କହୁନାହୁଁ କାହିଁକି ? କହ କ'ଣ ଟିକିଏ ଶୁଣିବା । ଝାମ୍ପୁରା ତା' ପାଟିକୁ ଗୋଜିଆ କରି ପିକାଧୂଆଁ ଛାଡିବା ଭଳି ସୁ'କିନା ପବନ ଛାଡିଲା । ସମସ୍ତେ ଥମ୍ ହୋଇଗଲେ । ସେତିକିବେଳେ ସବାଟଳ ସାପ ପେଡି ଭିତରୁ ଅବିକଳ ସେମିତି ସୁ' ଶବ୍ଦଟାଏ ଶୁଭିଲା । ସମସ୍ତଙ୍କ ନାହି ସାକୁଡିଗଲା । ଦେହ ଶୀତେଇ ଗଲା । ସେଇ ପାଞ୍ଚହାତିଆ ଶଙ୍ଖଚୂଡ ସେମିତି ନାଦ କଲା ।

ଝାମ୍ପୁରା ମୁରୁକି ମାରି ସମସ୍ତଙ୍କୁ ଚାହିଁଲା । କହିଲା, 'ଆମେ ଦିହେଁ କଥାହେଲୁ । ସାପ ଭାଷାରେ । ସବୁ ସାପଙ୍କ ଭାଷା ଅଛି । ଅଲଗା ଅଲଗା । ପିଲାଦିନୁ ମୁଁ ତାଙ୍କ ସାଙ୍ଗେ ଅଛି । ତାଙ୍କ ଭାଷା ମତେ ଜଣା ।'

ସେ ଚୁନି ପଡିଗଲା । ବାକି ସବୁ କି କାଠପିତୁଳି ପରି ସ୍ତବ୍ଧ ହୋଇଗଲେ । ଝାମ୍ପୁରା ତାଙ୍କୁ

ଅଲୌକିକ ଲାଗିଲା ।

ସେ ଆସ୍ତେ ପୁଣି କହିଲା, 'ସବୁ ଜନ୍ତୁଙ୍କର ହାତଗୋଡ କେନା ବାହାରିଛି । ସେସବୁ ପୋଛିପାଛି ଚିକ୍କଣ କରିଦେଲେ ହେଲା ସାପ । ଯା ଉତ୍ତାରୁ ବିଧାତା ଆଉ କିଛି କରିପାରିବ ନାହିଁ । ସାପ ପରି ସୁନ୍ଦର ଜନ୍ତୁ ଆଉ କାହିଁ? ସାପ ଶୋଇଗଲେ ବାଲୁତ, ରାଗିଗଲେ ନିଆଁ । – ଏମିତି ତ' ଲଚପଚ କଅଁଳ, ନଇଲେ ଟାଣିଗଲେ ଲୁହା ।'

ସମସ୍ତେ ଅପଲକ ଚାହିଁଥା'ନ୍ତି ଝାମ୍ପୁରାକୁ । କେହି କେହି ଉତ୍କଣ୍ଠାରେ ଛେପ ଢୋକୁଥା'ନ୍ତି । କ'ଣ ସବୁ ସତେ କହୁଛି ଝାମ୍ପୁରା !

'ସାପ ଶୁଏ, ଉଠେ, ମୋଡିଭିଡି ହୁଏ, ଖାଏ, ପିଏ, ରାଗ ରୋଷ କରେ, ଆଦର ସରାଗ ବୁଝେ, ଜାକି ଧରିଲେ ଉଷୁମ ଲାଗେ, ଭାରୀ ଲାଗେ ମଣିଷ ପିଲା ଭଳି... ଖରାଦିନେ ଥରେ...'

ଆରମ୍ଭ କରିଦେଇ ଝାମ୍ପୁରା ଥମିଗଲା । ବୋଧେ ଦଶବର୍ଷ ତଳ କଥା ପୁଣି ମନେପକଉଥିଲା । ସେତେବେଳେ ସେ ଗଜା ଟୋକା !

'...ପିତାପୁର ପାଖ ନଈ ଶୁଖି ଯାଇଥାଏ । ମେଲାରେ ନଈ ବାଲିରେ ପେଡି ଥୋଇଦେଇ ମୁଁ ଶୋଇଥାଏ । ରାତିରେ କଯାଁଗଛ ମୂଳେ ଶୋଇଲେ ଗଛର ବିଷ ଘାରିଯିବ । ପବନରେ ପଶି ନଳି ରୁନ୍ଧିଦବ । ସେ ବିଷକୁ ଗଦ ନାହିଁ । ...ମୁଁ ଏମିତି କାକର ପବନରେ ମେଲାରେ ନଈ ବାଲିରେ ଶୋଇଥାଏ । କେମିତି କେଜାଣି ନିଦଟା ଭାଙ୍ଗିଗଲା । ପେଡି ଭିତରୁ ସବୁ ସାପ ଏକାଠି ମୋତେ ଡାକ ଛାଡି ଉଠେଇଦେଲେ । ଅଳ୍ପ ଜହ୍ନ ଆଲୁଅରେ ମୋତେ ଦୃଶ୍ୟ ହେଲା ଗୋଟାଏ ବଳୁଆ ଟୋକା ନାଗ । ଛୋଟ ପେଡି ଚାରିପଟେ ଲଟେଇ ହଉଚି, ପେଡି ଉପରେ ଥୋଣା ମାରୁଚି, ବାଟ ଖୋଜୁଚି... ।'

ଝାମ୍ପୁରା ଆଖି ସରୁ ହେଇଗଲା । ସେ ମୃଦୁ ହସିଲା ପରି ଭୂଇଁକୁ ଚାହିଁ କହିଲା, 'ମୁଁ ଜାଣିଗଲି ସେ କାହିଁକି ଆସିଥିଲା । ପାଞ୍ଚ ଛ'ଦିନ ଆଗରୁ ମୁଁ ନାଗୁଣୀଟିଏ ଧରିଥିଲି, ମୋର ମନ ଥିଲା ନାଗବନ୍ଧ ଦେଖେଇବି । – ତାରି ପାଖକୁ ସେ ନାଗ ଆସିଥିଲା । ସେ ପବନରେ ବାରି ଦେଲା ନାଗୁଣୀକୁ । ସେ ଆସିବାରୁ ପେଡି ଭିତର ସବୁ ସାପ ତାକୁ ବାରି ଦେଲେ । ତାକୁ ତଡିବାକୁ ନାଦ କଲେ । ମତେ ଉଠେଇ ଦେଲେ ।'

ସମସ୍ତଙ୍କ କାନ ଡେରି ହୋଇ ରହିଥାଏ – ତେଣିକି କ'ଣ କରିଥିବ ଝାମ୍ପୁରା – ସେ କିଛି ସମୟ ସେମିତି ଅଳ୍ପ ଆଖି କୁଞ୍ଚେଇ ଅଳ୍ପ ହସି ଆଗକୁ ଚାହିଁ ବସିରହିଲା । ତା' ଉତ୍ତାରୁ ଗୋଟେ ଦୀର୍ଘନିଶ୍ୱାସ ପକେଇ କହିଲା, 'ମୁଁ ସେ ନାଗକୁ ଧରିଲି ନାହିଁ । ଆସ୍ତେ ନାଗୁଣୀର ପେଡି ଟେକିଦେଲି । ସେ ଦିହେଁ ତାଙ୍କ ଠାଣିରେ ଲାଞ୍ଜପିଟି ଚାଲିଗଲେ ନଈହୁଡା ଉପରକୁ ।'

କାହାଣୀଟିଏ ସରିଗଲା । ଝାମ୍ପୁରା ତା' ଢଙ୍ଗରେ ସାରିଦେଲା । ହେଲେ କାହିଁକି କେଜାଣି ଉଦାସ ଲାଗିଲା ସମସ୍ତଙ୍କୁ, ଝାମ୍ପୁରାକୁ ବି ।

ସମସ୍ତ ସେ ଛାପଛାପୁଆ ଜହ୍ନ ଆଲୁଅରେ ରହିଗଲେ କିଛି ସମୟ । ନାଗନାଗୁଣୀ ତ'

ଚାଲିଗଲେ ତାଙ୍କ ବାଟେ । ସେମାନେ କାହିଁକି ଲୁଚେଇ ଲୁଚେଇ ଦୀର୍ଘନିଶ୍ୱାସ ମାରୁଥିଲେ ! କାହା ଦୁଃଖରେ ?

ଯେ ସେଥିରୁ ପ୍ରଥମ ଉବୁରି ଆସିଲେ, ସେ ବଡ ସାଆନ୍ତେ । ବୟସ ବେଶ୍ ଢଳି ଗଲାଣି । ଦେହରେ ତାତି ଅଛି ହେଲେ ହୁତାଶ ନାହିଁ । କହିଲେ 'ସେ ନାଗ କ'ଣ ମନକୁ ଧରା ଦବାକୁ ଆସିଥିଲା, ନା ତାକୁ ସେ ନାଗୁଣୀ ଡାକିଥିଲା ବା' ? – ତୁ ତାକୁ ଛାଡିଦେଲୁ କାହିଁକି ?'

ଝାମ୍ପୁରା ତାଙ୍କୁ ଏମିତି ଚାହିଁଲା ଯେମିତି ସେ ବାଳୁତଟିଏ, କିଛି ଜାଣନ୍ତି ନାହିଁ । ସେ କ'ଣ ବୁଝିବେ ସତେ ସାପଜଗତ କଥା ? – ବୁଝେଇଲା ପରି କହିଲା – 'ତା' ଭିତରେ ଗରଳ ଉତୁରିଲେ ନାଗ ସେମିତି ହୁଏ । ତାକୁ ସେତେବେଳେ ଧରି ପେଡିରେ ପୂରେଇଲେ ଦିଅଁ ଦେବତା ରୋଷ କରିବେ । ଗଛବୃଛ, ପଶୁପକ୍ଷୀ ରୋଷ କରିବେ । ପାଣି ପବନରେ ବିଷ ପଶିଯିବ । ...ନାଗନାଗୁଣୀ ବନ୍ଧ ପେଡିରେ ରଖିଲେ ହେବନାହିଁ, ଯୋଉଠି ହବ ତାଙ୍କ ମର୍ଜିରେ ହବ । ଦେଖିବା ବଡ ଭାଗ୍ୟ, ଦେଖିବା ବଡ ପୁଣ୍ୟ । ନାଗ ଯୋଡି ଉପରେ ନୂଆ ଲୁଗା ପାହାଡା ପକାଇ ରଖିଲେ ଘରର ମଙ୍ଗଳ ।'

ମାଇପି ଭିତରୁ କିଏ ଜାଣିବା ମଣିଷ କହିଲା, 'ହଇ, ହଇ !'

'ତୋ ପେଡିରେ ଥିବା ନାଗସାପର ଗରଳ ଉତୁରିଲେ କ'ଣ କରୁ ?' ଜଣେ ପଚାରିଲା ।

'ମୁଁ ତାକୁ ଦୁହିଁ ପକାଏ । ସେ ଭାରି ଚିଡେ । ଛଟପଟ ହୁଏ । ତା'ପରେ ଶୋଇଯାଏ ।'

'ଏଇ ଗରଳ ପାଇଁ ତ' ସାପ ଏତିକି ଭୟଙ୍କର ଜନ୍ତୁ; ସେଥିପାଇଁ ପରା ତା' ନାଁ ବିଷଧର ।'

ଝାମ୍ପୁରା ତା' ଆଡେ ଥରେ ଚାହିଁ ଆଖି ତଳକୁ କରିନେଲା । କହିବ କି ନାହିଁ ବୋଲି ଦୋଦୋପାଞ୍ଚ ହେଲା । ଚଟ୍‌କିନା ଫଣା ବିସ୍ତାରି ତାରି ଆଡକୁ ଚାହିଁଲା । ତା' ଆଖି ଝଟ୍‌କୁ ଥିଲା । ମୁହଁ ଉତୁରି ପଡୁଥିଲା । ତଥାପି ନିଜକୁ ସମ୍ଭାଳି ଆସ୍ତେ କହିଲା ।

'ସାପଟା ଭାରି ସୁଧାର ଜନ୍ତୁ, ସେ କାହିଁକି ଭୟଙ୍କର ହବ ! ସେ ତା' ଢଙ୍ଗରେ, ତା' ରାଜ୍ୟରେ ଥାଏ । ତାକୁ ଚାଳିଦେଲେ, ସେ ଲଢିଯାଏ । ସେତିକିବେଳେ ସେ ଭୟଙ୍କର ଦିଶେ । ସବୁ ଜନ୍ତୁ ସେମିତି । ମଣିଷ ବି ।'

'ଗରଳଟା କେତେବେଳେ ବିଷ କେତେବେଳେ ଅମୃତ । ସମସ୍ତଙ୍କର ଗରଳ ଅଛି । ଗରଳ ନଥାଇ ଜନ୍ତୁ ନାହିଁ । ସମସ୍ତେ ତ' ଗରଳରୁ ଜାତ ହେଇଚନ୍ତି । ମଣିଷ, ପଶୁ, ପକ୍ଷୀ, ଗଛବୃଛ ସମସ୍ତେ । ଗଛର ଲସାଟା ତ ଗରଳ, ଫୁଲର ମୁହଟା ତ ଗରଳ । ମଣିଷର, ବାଘର ପକ୍ଷୀର ଲାଳ ଟିକିକ ଗରଳ... ସେଇଟା ଆତଯାତ ହେଉଥାଏ । ସେଇଥିରୁ ସେମାନେ ସବୁ ଜାତ ହୁଅନ୍ତି ।

'ସାପର ବିଷ ଅଛି । ସବୁ ସାପର ଅଛି । ସମସ୍ତଙ୍କର ବିଷ ଅଛି । ଆମ ସମସ୍ତଙ୍କର ବିଷ ଅଛି । ନ ଘାରିଲା ଯାଏଁ ବିଷ ଚିହ୍ନା ପଡେନାହିଁ । ସମସ୍ତଙ୍କୁ ସବୁ ବିଷ ବି ଘାରେ ନାହିଁ । – ଦେଖୁନାହାଁନ୍ତି, ଏତେ ଫଳ ଫଳୁଛି । ମଣିଷ ପାଇଁ କିଏ ବିଷ, କିଏ ଅମୃତ । ଅନ୍ୟ ଜନ୍ତୁ ପାଇଁ ସେମିତି ନୁହେଁ । ...ଗରଳଟା ବିଷ ନୁହେଁ କି ଅମୃତ ନୁହେଁ । ହେଲେ ଏଇ ଗରଳ ବିଷ, ଏଇ ଗରଳ

ଅମୃତ ।'

ସମସ୍ତେ ଝାମ୍ପୁରାକୁ ଶୁଣୁଥା'ନ୍ତି । ଅଧେ ବୁଝା ପଡୁଥାଏ, ଅଧେ ବୁଝା ପଡୁ ନଥାଏ । ହେଲେ କେଳା ତୁଣ୍ଡରେ କେଳା ଭାଷାରେ ସବୁ କେମିତି ଅଲୌକିକ ଶୁଭୁଥାଏ ।

ଝାମ୍ପୁରାକୁ କ'ଣଟାଏ ଖାରିଥାଏ । ସେ ଗୋଟେ ଆଡକୁ ଗହିଁ ବସିଥାଏ । ମନକୁ ମନ କହିଲା ପରି କହୁଥାଏ । 'ଅଙ୍ଗାର ଅଛି, ବିଷ ଅଛି । ତା' ବାମ୍ଫ ପିଇଦେଲେ ମଣିଷ ମରିଯିବ । ସୂର୍ଯ୍ୟ ଗରଳ ବୃଷ୍ଟି କରୁଚି । ଦେହ କଳା ପଡିଯିବ, ଜଳିଯିବ, ହଂସା ଉଡିଯିବ ! ଜହ୍ନରେ ବିଷ ଅଛି । ସେ ତାତିରେ ନିଦ ଉଡିଯିବ । ଲହୁ ଚହଲି ଯିବ । ମେଘରେ ବିଷ ଅଛି ବର୍ଷିଲେ ଦିହ ଫୋଟକା ହେଇଯିବ ।'

'ନାନାଦି ବିଷ ଅଛି ସାଆନ୍ତେ । ବାଲୁତ ବିଷ, ପାକଳ ବିଷ । ଅଣ୍ଡିରା ବିଷ, ମାଈ ବିଷ ! କିଏ ନିଆଁପରି ଜାଳିଦବ, କିଏ ଧୂଆଁପରି ଗୁନ୍ଧିଦେବ । ପାଳଗଦାରେ ନିଆଁ ଚହଟିଗଲା ପରି ମଣିଷ ଦିହରେ ଅହିରାଜର ବିଷ ଚହଟି ଯାଏ । ବର୍ଷାରେ ନିଆଁ ଲିଭିଗଲା ପରି, ଗଦରେ ବିଷ ଲିଭିଯାଏ । ଯାହା ଜଳି ଯାଇଥାଏ ନୂଆ ଦୂବ ପରି ତାକୁ କଅଁଳେଇ ଦିଏ । – ଏମିତି ବିଷ ଖେଳ, ଅମୃତ ଖେଳ । ଗରଳର ଏପାଖ ସେପାଖ !'

ଝାମ୍ପୁରା କିଛି ସମୟ ସେମିତି ସ୍ଥିର ହେଇ ବସିରହିଲା । ତା'ପରେ ଗଉଁକିନା ଚମକି ଆସିଲା ସମସ୍ତଙ୍କ ଗହଣରୁ । ପିଣ୍ଡା ତଳେ ସାପ ପେଡିର ଭାର । ଗାଁର ଦାଣ୍ଡ । ତା'କୁ ଗହିଁ ବସିଥିବା, ଠିଆହେଇ ନିଶ୍ଚଳ ରହିଥିବା ଗାଁର ମାଇପି ମରଦ ।

ଝାମ୍ପୁରା ହଲଚଲ ହେଲା । ସମସ୍ତେ ଆଖି ମଟକା ପକେଇଲେ । ନିଶ୍ୱାସ ମାରିଲେ – ଓହୋ, ସତେ ଝାମ୍ପୁରାଟା କ'ଣ ଖାଲି ସାପୁଆ କେଳାଟାଏ ? ପେଟ ପୋଷିବା ପାଇଁ ଗାଁରୁ ଗାଁକୁ ବୁଲି ସାପ ଖେଳ ଦେଖାଉଚି ? ନା, ନା, ଏଇଟା ଆଉ ଗୋଟାଏ କ'ଣ । ଇଏ ପରା ନାଗାନ୍ତକ ବିଦ୍ୟା ସାଧିଚି !

ବଡ ସାଆନ୍ତେ କେତେ ବର୍ଷ ହେଲା ଝାମ୍ପୁରାକୁ ଆଉ ତା' ଖେଳକୁ ଦେଖିଆସୁଥିଲେ । ହେଲେ କେବେ ଝାମ୍ପୁରା ପାଟି ଫିଟେଇ ଏମିତି ଗୁମର କଥା କହି ନଥିଲା । ସେ ଖୁସିରେ ଖୋସଣିରୁ ପଇସା କାଢି ପିଣ୍ଡାରେ ପକେଇ ଦେଲେ । ତାଙ୍କ ଦେଖାଦେଖି ଆଉ କେତେ ପଇସା ପକେଇଲେ ।

ମାଇପେ ଚୁଡାଗୁଡ ଆଣିଲେ, ମୁଆଁ ଆରିଷା ଆଣିଲେ । କେଳାପିଲା କାହାଘର ରନ୍ଧା ଭାତ ତିଅଣ ଛୁଇଁବ ନାହିଁ ବୋଲି ଏମିତି ଶୁଖିଲା ଦରବ ଆଣି ଥୋଇଲେ । ଝାମ୍ପୁରା ତା' କରିଆ ବିଛେଇ ଦେଇଥିଲା । ସେଇଠୁ ତଳସାହି ଝିଅଟିଏ କେତେବେଳେ ତା' ଘରକୁ ଝପଟି ଯାଇଥିଲା । ଘରୁ ଆଞ୍ଜୁଳାରେ କ'ଣ ଧରି ଧାଇଁ ଆସିଲା । ଦଶବାର ବର୍ଷର ଝୁମ୍ପୁରିମୁଣ୍ଡୀ ଝିଅ । ତରା ଫୁଟିଲା ପରି ଆଖି । କପାଳରେ ଝାଳ ଚିକ୍‌ଚିକ୍ କରୁଥାଏ । ହାଲିଆ ହେଇ ନାକପୁଡା ଫୁଲି ନିଶ୍ୱାସ ଯାଉଥାଏ । ପାଟି ପାଖୁଡା ମେଲା ହୋଇ ରହିଥାଏ । ସେ ତା'ର ଈଷତ୍ ଗୋଲାପି ପାପୁଲିରେ ଈଷତ୍ ଗୋଲାପୀ ଛ'ଟି ସଜ କୁକୁଡା ଅଣ୍ଡା ଝାମ୍ପୁରା ଆଗରେ ଟେକି ଧରିଲା । ଦେବତାଙ୍କଅକୁ

ଆଞ୍ଜୁଳାଏ ଫୁଲ ଅର୍ପିଲା ପରି ।

ଝାମ୍ପୁରା ବିଚିତ୍ର ଢଙ୍ଗରେ କୁରୁଳିଲା । ସେ ଝିଅଟିର ଆଞ୍ଜୁଳାକୁ ଧରିନେଇ ତାକୁ ଚାହିଁଲା । ଆସ୍ତେ ଛ'ଟି ଯାକ ଅଣ୍ଡାକୁ ଗୋଟି ଗୋଟି କରି ରତ୍ନ ସଜାଡିଲା ପରି ଧାଡିକରି ପିଣ୍ଡାରେ ଥୋଇଲା । ଝିଅଟିର ଦୁଇ ପାପୁଲିକୁ ଆସ୍ତେ ସାଉଁଳି ଆଣିଲା । ମନେହେଲା ଛ'ଟି ଅଣ୍ଡା ଦେଇ ସେ ଝିଅଟି ଝାମ୍ପୁରାକୁ ବଶୀଭୂତ କରିଦେଲା । ମନେହେଲା ଝାମ୍ପୁରାର ପଞ୍ଚପ୍ରାଣ ଯାହା ଚାହୁଁଥିଲା ତାକୁ ମିଳିଗଲା । ତା' ଶୁଖିଲା ଡାଳ କଅଁଳିଗଲା । ଡାଳରେ କଢ ଫୁଟିଗଲା । – ଖାଲି ଅଣ୍ଡା ଛ'ଟି ପାଇଲେ କ'ଣ ମଣିଷ ଏତିକି ଖୁସି ହୁଏ ? ଏତେ ଦରବ ତା' କାନିରେ ଅଜାଡ଼ା ହୋଇଥିଲା, ଏତେ ପଇସା ପଡିଥିଲା । ହେଲେ ଆଇଁଷିଆ ଅଣ୍ଡା ଝାମ୍ପୁରାର ଅତି ପ୍ରିୟ । ତା' ସାପଙ୍କର ପ୍ରିୟ । ସାପ କିଏ, କେଳା କିଏ ? ଝାମ୍ପୁରା କ'ଣ କଳାନାଗଟିଏ ପରି ଦିଶୁ ନାହିଁକି ?

ତାକୁ ଅଣ୍ଡା ଆଇଁଷିଆ ବାସିଲା । କିଛି ମାଇପେ ତା' ଆଖିକୁ ଚାହିଁ କ'ଣ ଦେଖିଲେ, କ'ଣ ବୁଝିଲେ କେଜାଣି ? କେହି କେହି ଭାବିଲେ କି ତଳ ସାହିର ସେ ପାତଳୀ କାଳୀ ଝିଅଟି ବି ଝାମ୍ପୁରାକୁ ଆଇଁଷିଆ ବାସିଲା ବୋଲି ?

ଝିଅଟିର ଆଞ୍ଜୁଳାରୁ ଅଣ୍ଡାଗୁଡିକ କାଢି ରଖିବା, ତା' ପାପୁଲିକୁ ଆଉଁଶି ଦେବାରେ ସୃଷ୍ଟି କିଛି ଆନଥାନ ହୋଇଗଲାନି । ତଥାପି ସେ ଛୋଟ ଘଟଣାଟି ଅନେକଙ୍କୁ ନିଆରା ଦେଖାଗଲା ।

ଜଣେ ଉପରେ ପଡି କହିଲା, 'ଇଏ ହେଲା ନିଧିଆ ଭୋଇ ଝିଅ ମରୁଆ । ବାପ ଛେଉଣ୍ଡିଟା । ପାଞ୍ଚବର୍ଷ ତଳେ ନିଧିଆକୁ ସାପ ଦଂଶିଦେଲା । ଯା ମା'ଧନି । ଦୁଃଖ କରି ପେଟ ପୋଷେ । ଗଣ୍ଡେ ଛ'ଟା କୁକୁଡା ପାଳିଛି ।'

ଝାମ୍ପୁରା ବାପ ଛେଉଣ୍ଡି ଝିଅଟିକୁ ପୁଣି ଚାହିଁଲା । ତା' ଗାଲରେ ବାଁ ହାତ ରଖି ଆଉଁଶି ଆଣିଲା । ସମସ୍ତେ ଚାହିଁଥା'ନ୍ତି । ଭାବୁଥା'ନ୍ତି ହୁଏତ ଝାମ୍ପୁରା ହାତ ଉଷୁମରେ ମରୁଆର ଫଣା ଉଭାରି ଆସିବ । ଦେଖୁ ଦେଖୁ ସେ ନାଗୁମୀଟିଏ ହେଇ ଝାମ୍ପୁରାର ଖାଲି ପେଡି ଭିତରେ ପଶିଯିବ ! କିଛି ବିଚିତ୍ର ନୁହଁ । ସେ ନାଗାନ୍ତକ ବିଦ୍ୟା ପରା ସେଇଆ ।

କିନ୍ତୁ ସେପରି କିଛି ହେଲା ନାହିଁ । ଝାମ୍ପୁରା ଗୁଡ୍ରାନ୍ତ ଖରାବେଳେ ସାପ ଭାର ଟେକି ଗାଁ ପାରି ତୋଟାକୁ ଚାଲିଗଲା । ସେଇଠୁ କେତେବେଳେ ଆଉ ଗାଁକୁ ଯାଇଥିବ । ସଂଜବେଳେ ଏ ଗାଁ ଲୋକେ ଜାଣିଲେ ଯେ ମରୁଆ ଘରଯୋଗ୍ୟା ହୋଇଗଲା । ସେ ସାତଦିନ ଯାଏଁ ଘରୁ ବାହାରିବ ନାହିଁ । ମାଇପେ ଗାଲରେ ହାତ ଦେଇ ସୁଜାଣ ଆଖିରେ ଚାହାଁଚାହିଁ ହେଲେ । ଜଣେ ଶୁଣେଇଲା ପରି କହିଲା, 'ସେ କେଳା ଟୋକା ପରା ସେଇଆ । ତା' ହାତ ବାଜିଲେ ଶୁଖିଲା ଡାଙ୍ଗରେ ଫୁଲ ଫୁଟିଯିବ ।'

ପାହାଡ ଉପରେ ନୂଆ ମେଘ ଟେକିଲା । ଅଜାଡିଲା ବର୍ଷା । ବିଲମାଳରେ ପାଣି ମାଡିଗଲା । ସାପ ଗାତରେ ପାଣି ପଶିଗଲା । ସାପ ମାତିଲେ । ବେଙ୍ଗ ମାତିଲେ । ବଣିବସାରେ ଡିମ୍ବ ଫୁଟିଲେ । ଚାଳିଆମୂଷା ରଣଭଣ ହେଲେ । କେଳାଏ ଜବର ନାଗମାନଙ୍କୁ ଧରି ପେଡିରେ

ପୂରେଇଲେ ।

ହେଲେ ସମସ୍ତେ ଆଶ୍ରା ଲୋଡିଲେ ପାଣିପବନ ବସ୍ତାସୀରେ । ସେଇ ପିତାପୁର–ଫାଳକେ ନଈ, ଫାଳକେ ପାହାଡ । ଗାଁଠୁ ନିଆରା ପାହାଡ ଲାଞ୍ଜି ଉପରେ ଦଶବାର ଘର କେଳାବସ୍ତି । ସେଇଠି ଝାମ୍ପୁରାର ବସାଘର । କେହି ଆଉ ସାପ ଖେଳ ଦେଖଉ ନଥିଲେ । ସମସ୍ତେ, କିଏ ମୁଣ୍ଡପୋତା ଖେଳ, କିଏ ବାଉଁଶରାଣୀ ଖେଳ ଦେଖେଇ ପେଟ ପୋଷୁଥିଲେ । ନାଗ ଧରି ସହରରେ ବିକୁଥିଲେ । ଭାରି ପଇସା କୁଆଡେ । ସାପ ଚମଡା ପାଇଁ, ସାପ ଗରଳ ପାଇଁ ବେପାରୀ ହେଇଗଲେଣି । ସେଇମାନେ କିଣି ନଉଛନ୍ତି ।

କେବଳ ଜମ୍ବୁକକା, ଝାମ୍ପୁରାର ବାପ ବୟସ ହବ, ଗୋଟାଏ ଅଜଗର ପୋଷିଥିଲା । ତା' ପାଇଁ ପେଡି ନିଅଣ୍ଟ ହେଉଥିଲା । ପେଡି ଭିତରେ ରହି ତା' ଲାଙ୍ଗୁଡ ବଙ୍କା ହେଇ ଯାଇଥିଲା । ହେଲେ ଜମ୍ବୁ ଦଶପନ୍ଦର ଦିନରେ ଗୋଟାଏ କୁକୁଡା ଚୋରି କରୁଥିଲା ତାକୁ ଦବାକୁ । ବୁଢା ସାପଟାକୁ ବିକିଦେଲେ ତା' ମହୁଲି ଖର୍ଚ୍ଚ ଦୋକତା ଖର୍ଚ୍ଚ ଉଠିଯାଆନ୍ତା । ହେଲେ ସେ ବିକିବା ନାଁ ଶୁଣିଲେ ଚିଡି ଯାଉଥିଲା । (ତା' ଅଜଗରକୁ କିଏ ନେଇଯିବ କଥା ଭାବି କାନ୍ଦି ପକଉଥିଲା । ଖାଲି ଝାମ୍ପୁରାକୁ ତା' ଦୁଃଖ ସେ କହୁଥିଲା ।)

ଝାମ୍ପୁରା ଝିପିଝିପି ବର୍ଷାରେ କ୍ଷେତ ହୁଡାରୁ ବିଲିକଙ୍କଡା ଗୋଟେଇ ଆଣୁଥିଲା । ରତ ନିଆଁରେ ପୋଡି ଲୁଣ ମଡେଇ ଭାତ ସାଙ୍ଗରେ ଖାଉଥିଲା । ତା'ର ସାତପେଡି ସାପଙ୍କୁ ବେଙ୍ଗ ମୂଷା ଦେଇ ପୋଷୁଥିଲା ।

ହେଲେ ସେ ବାକି ସମସ୍ତଙ୍କଠୁ ବାରି ହୋଇପଡୁଥିଲା । ନିରୋଳାରେ ରହିବାକୁ ସୁଖ ପାଉଥିଲା । ମାଇପିଙ୍କ ପାଖ ପଶୁନଥିଲା । ବାଉଁଶରାଣୀ ବିନ୍ଦା, ବେଳ ଅବେଳରେ ତାକୁ ନିଘା କରୁଥିଲା, ଛଇଛଟକ କରୁଥିଲା । ଦିନେ ରାତି ଅଧରେ ଝାମ୍ପୁରା ବସା ଆଗରେ ଆସି ଠିଆହେଲା । ଟାଟି ଫାଙ୍କରେ ଦେଖିଲା ଝାମ୍ପୁରା ପଦ୍ମତୋଳାରେ ନାଗ ପରି ଝୁଲୁଚି । ସେ ଛାନିଆରେ ସେଇଠୁ ପଳେଇଲା । ତେଣିକି କଥା ପଡିଲେ କହିଲା ସେଇଟା, 'ମଶାଣି ଚଣ୍ଡିଆଟା । ଅଣପୁରୁଷା ପାଷାଣଟା !'

ଆଉ ସମସ୍ତେ ଶୁଣି କହିଲେ, 'ଝାମ୍ପୁରା ଆମ ତୁମ ଭଳିଆ ନୁହେଁ । ସେ ଅଗ୍ନାଅଗ୍ନି ବନସ୍ତରେ ଭ୍ରମିଛି । ଗୁରୁ କରିଛି । ତାରି ପାଖରେ କେଳା ବିଦ୍ୟା ଅଛି । ନାଗାନ୍ତକ ବିଦ୍ୟା । ସେ ଚାହିଁଲେ ଜାଳିଦବ । ଚାହିଁଲେ ଉଡେଇ ଦବ, ଉଭାନ କରିଦବ !'

ତେବେ ବି ମଙ୍ଗୁ କେଳା ତା' ଝିଅ ଝୁଲିକୁ ଝାମ୍ପୁରା ସାଙ୍ଗରେ ଖଞ୍ଜିବାକୁ ଚାହିଁଥିଲା । ଝୁଲି ମୁହଁରୁ ବୟସ ଉତୁରି ପଡୁଥିଲା । ସେ ଦଉଡି ଉପେର ବାଉଁଶଦଣ୍ଡା ଧରି ନାଟ ଦେଖେଇଲା ବେଳେ ଥାଟପଟାଳି ଲୋକ ତାକୁ ଚାହିଁ ରହୁଥିଲେ । ମଙ୍ଗୁ ଚଇଁଚଇଁଆ ତେଲେଙ୍ଗା ବାଇଦ ବଜେଇ ପଇସା ଗୋଟଉ ଥିଲା । ଗୋଟେ ଜମିଦାରିଆ ଟୋକା, ଝୁଲିକୁ ଆଖେଇଲା ଦିନୁ ମଙ୍ଗୁ ଚାହିଁଲା ଆଉ ତାକୁ ଆଣିବ ନାହିଁ । ଝାମ୍ପୁରା ଘର ଖାଲି ରହିଚି । ତାକୁ ଦେଇଦବ ।

ମଙ୍ଗୁ ଜମିଦାର ଟୋକାକୁ ଗାରଡେଇ ରହିଁଲା । ମନ୍ତୁରା ଧୂଳି ଉଡେଇ ଦେଲା । ଫୁଫୁକାର, ସୁସୁକାର କଲା । ଲୋକେ କହିଲେ ସେଇ ଦିନଠୁ ଜମିଦାର ଟୋକାର ଗୋଟାଏ ଆଖି ମନ୍ଥି ହେଲା । ବିଷେଇଗଲା । ବଇଦ ଗୁଣିଆ କାନେଇଲା ନାହିଁ । ଫୁଟିଗଲା । ମଙ୍ଗୁ ଝୁଲିକୁ ନେଇ ଝାମ୍ପୁରା ଆଗରେ ଠିଆ କରେଇଲା । କହିଲା 'ଯାକୁ ରଖ୍ ।'

ଝାମ୍ପୁରା ଗୋଟାଏ ରହାଣିରେ ତାକୁ କଳିଦେଲା । କହିଲା, 'ମଙ୍ଗୁ ଦାଦି । ଯାର ତ' ଭୋଗ ଭାଗ୍ୟ ଲେଖା ଅଛି । ମୋ' ପାଖରେ କାହିଁକି ଗୁଡେ ସାପ ପିଲା ଜନ୍ମ କରିବ ? – ବିଷ ବାଣ୍ଟିବ ? – ମୋର ତ' କିଛି ଥୟ ନାହିଁ । କେତେବେଳେ କ'ଣ । ମୋ' ନାଟିକା ଗୋଟେ ଉଛାଟରେ ଚଳିଚି । କାଳସର୍ପକୁ ନେଇ ଖେଳୁଚି । କେତେବେଳେ ଛିଡିଯିବ ।'

ତଳକୁ ରହିଁ ନ ଶୁଭିଲା ପରି କହିଲା, 'ମୋତେ ଗୁରୁ ଆଜ୍ଞା ନାଇଁ ।'

ମଙ୍ଗୁ ବୁଝିଲା । କେଳା ପିଲା ତ' । ଝାମ୍ପୁରା ସତ କହୁଥିଲା । ସତକୁ ସତ ସେଇ ହାଟ ପାଳିକୁ ଝୁଲି ଯାଇଥିଲା, ଆଉ ଫେରିଲା ନାହିଁ । ସେଇଠୁ ଉଭାନ ହେଇଗଲା । ଗୋଟେ ସାଉଁତାଳି ଟୋକା ସାଥୀରେ ଆସାମ ପଳେଇଲା ।

ଏଇଟା ପାଞ୍ଚ ସାତବର୍ଷ ତଳର କଥା । ସେଇ ଦିନଠୁ ଝାମ୍ପୁରାକୁ କେହି ଆପଣେଇବାକୁ, ଫାନ୍ଦିବାକୁ, ମଣ କରିବାକୁ ଆଗେଇ ନାହିଁ । ସେ ସେମିତି ନିଆରା ହୋଇ ରହିଚି ।

ବର୍ଷା ଆଉରି ଛାଡି ନଥାଏ । ଶୀତ ଆଉରି ପଡି ନଥାଏ । ସାପଙ୍କର କାତି ଛାଡିବା ଦିନ । ଚେକାମାରି ପଡିରହିବା ଦିନ । କେତେବେଳେ ଦେହ ସାଂକୁଡିବ, ଖୋଳ ହୁଗୁଳିବ । ମା' ପେଟରୁ ମୁଣ୍ଡଆଡୁ ପିଲା ଜନ୍ମିଲା ପରି ସାପ ତା' ଖୋଳପା ଦିହରୁ ଆସ୍ତେ ଖସିଆସେ । ଜନ୍ମିଚ ଶିଶୁପରି ନିସ୍ତେଜ ପଡିରହେ । ତା' ଦିହରେ ପବନ ବାଜେ । ସେ ପବନ ଶୋଷି ଫୁଲେ, ନିଜ ଦେହରେ ଛନ୍ଦିହେଇ ଅଳସ ଭାଙ୍ଗେ । ବିଜୁଳି ପରି ଚହଟିଯାଏ କାତିଛଡା ନାଗ । ତା'ର ସେତେବେଳେ ନବଯୌବନ । ସେତେବେଳେ ଦାନ୍ତର ଦାଢ ବେଶୀ, ଗରଳର ଜ୍ୱାଳା ବେଶୀ, ରଙ୍ଗର ଚହଟ ବେଶୀ ।

ଝାମ୍ପୁରାର ପେଡି ନାଗ ବି କାତି ଛାଡେ । ସେତେବେଳେ ସେ ଭାରି ଯତ୍ନ ନିଏ । ପାଖରେ ପାଟିତୁଣ୍ଡ କରେନାହିଁ । କାତି ଛାଡିଲା ବେଳେ ସାପ ଘୁଷୁରେ, କୁନ୍ଥାଏ । କିଛି ଖାଏ ନାହିଁ । କାତି ଛାଡି ବାହାରି ଆସିଲେ ତାକୁ ହାଇଁ ହାଇଁ ଭୋକ । ଝାମ୍ପୁରା ସେତିକି ବେଳ ପାଇଁ ଅଣ୍ଡାଟିଏ, ଜିଅନ୍ତା ମାଟିବିରାଡିଆଟିଏ, ମୂଷାଟିଏ ସଜିଲ କରି ରଖିଥାଏ । ସାପମାନଙ୍କର କାତିଛଡା ଉଜାଣି ବେଳା ସୁଧୁରିବାକୁ ଲାଗିଯାଏ କିଛି ଦିନ । ତା' ଉରାରୁ ପେଡିଭାର ଟେକି ଝାମ୍ପୁରା ଖେଳ ଦେଖେଇବାକୁ ବାହାରେ ।

ମଗୁଆ ଗାଁର ପାଳି ଆସିଲା ବେଳକୁ ବସନ୍ତ ଋତୁ । ଦି'ପହର ଖରାତେଜ ରଇଁ ରଇଁ । ଝାମ୍ପୁରା ଡିବିଡିବି ବଜେଇ ଗାଁରେ ପଶିଲା । ମଝିଦାଣ୍ଡରେ ପହଞ୍ଚିଲା ବେଳକୁ ତା' ପଛରେ ଗୋଛେ ପିଲା ।

ଏଥର ଝାମ୍ପୁରା ଛୋଟ ପେଡି ନେଇ ନଥାଏ । ଚରିଟା ବଡ ପେଡିରେ ଚରିଟା ବଡ

ସାପ । ଚମ୍ପାନାଗ ତ ଶୁଭ, ସମସ୍ତିଙ୍କ ପାଇଁ । ଶଙ୍ଖଚୂଡ଼ରୁ ଖେଳ ଆରମ୍ଭ । ତାକୁ ନ ରଖିଲେ ନ ଚଳେ । ଏଥର ଗୋଟେ ଜବର ଗୋଖର ଆଣିଥାଏ । ନୂଆ ଧରା ସାପଟା, ଆଉରି ଆରେଇ ନଥାଏ । ହେଲେ ତା'ର ଫୁକାର, ତା' ରୋଟ ଆଉଲମ୍ବ ଦେଖି ଗାଁ ଲୋକ ତାଟକା । ଶେଷ ଖେଳ ପାଇଁ ଏଥର ମୁଣ୍ଡିଆ ପଥର ଖୋପରୁ ଝାମ୍ପୁରା ଅହିରାଜ ପିଲାଟାଏ ଆଣିଥାଏ । କଳା ନାଗ ଦେହରେ କଳା ପଟି । ଜବର ଆଠହାତିଆ ଭୁଜଙ୍ଗ । ଝାମ୍ପୁରା ତାକୁ ପେଡିରୁ ବାହାରକଲା ବେଳେ ଆଉ ବସେ ନାହିଁ । ତା' ଫଣାଟା ତ ମଣିଷେ ଉଞ୍ଚ । କେମିତି ଏତେବଡ ଜନ୍ତୁକୁ ସେ ଆୟତ୍ତ କରିଥାଏ କେଜାଣି ? ଲୋକଙ୍କୁ ଅତର୍କ ଲାଗିଲା ବେଳେ, ସେ ଆହୁରି ଚେତେଇ ଦିଏ । ଏଇଟା ତ' ପିଲାଟାଏ । ବଡ ହେଲେ ଏଇଟା ହେଇଯିବ ବାର ହାତରୁ ପନ୍ଦର ହାତ । ତା' ଫଣାକୁ ହାତ ପାଇବ ନାହିଁ ।' – ମୋ' ବାବାରେ ! କି ଜନ୍ତୁ ! ନହେଲେ କି ଅହିରାଜ !

ଏଥର ଖେଳ ନିଆରା । ବାଘୁଆ ଡରାଣିଆ ଖେଳ । ପିଲାଏ ଛାନିଆ । ବଡ ଲୋକ ବି ଭୟରେ ମେଞ୍ଚା ମେଞ୍ଚା । ମାଇପେ ବଡ ଅସୁଖ ପାଇଲା ପରି ଚହିଁଥା'ନ୍ତି । 'ଯେ କି ଖେଳ ବା,' ଏମିତି ହାତୀ ପରି ଜନ୍ତୁ ନେଇ କି ଖେଳ ?

ସମସ୍ତଙ୍କ ମନ ଜାଣି ଝାମ୍ପୁରା ଚମ୍ପାନାଗଟିକୁ କାଢିଲା । ଖେଳ ଦେଖେଇଲା । ବେକରେ ଓହଳେଇ ଠିଆହେଲା । ସମସ୍ତେ ଭାରି ଖୁସି । ଆର ତିନିଟା ମହାଜନ୍ତୁ ପେଡିରେ ଆକଟ ହୋଇଯିବାରୁ ଆହୁରି ଖୁସି । କିନ୍ତୁ ଝାମ୍ପୁରା ଆର ଥର ଭଳି ଚିକଣିଆ ସୁନ୍ଦରିଆ ଦିଶୁଥିଲେ ବି କେମିତି କେଜାଣି ସମସ୍ତଙ୍କୁ ଆନ ଆନ ଦିଶୁଥାଏ । ତା' ପାଖ ପଶିବାକୁ ଡର ମାଡୁଥାଏ । ସତେବା ସେଇ ଦୁର୍ଦ୍ଦଣ୍ଡ ଗୋଖର ଆଉ ସେ ନାହିଁ ନଥିବା ଅହିରାଜର ଛାଇ ତା' ଉପରେ ମଡେଇ ହୋଇଯାଇଛି ।

ଆଗଥର ଯୋଉ ପିଣ୍ଡାରେ ସେ ବସିଥିଲା, ସେଇଠି ପୁଣି ବସି ଝାମ୍ପୁରା ପିକା ଟାଣିଲା । ଏଥର ତାକୁ କେହି କିଛି ପଚରିଲେ ନାହିଁ । ସେ ନିଜେ ପଚରିଲା ପଚରିଲା ଆଖିରେ ଚରିଆଡକୁ ଚହୁଁଥିଲା । ଭାରି ଭୋକିଲା ଶୋଷିଲା ଚହାଣିରେ ନିରୀହ ଦିଶୁଥିଲା । ମାଇପିମାନଙ୍କ ଗହଣରୁ ମାଉସୀ ଜଣକ ତାକୁ ମନ ନେଲାପରି କହିଲା, 'ଯୋଉ ବୋହୂପିଲାକୁ ଆର ଥର ନାଗ ଛୁଆଁଇ ନଥିଲ କି କେଳାପୁଅ, ତା'ର ପିଲାହବ । ତମ ହାତ ବାଜିଲେ ପରା ପୁନିଅ ଜହ୍ନ ! ତମେ ଜାଣି ଅମୃତହସ୍ତା । – ଆଉ ଗୋଟେ ଆସି ନଥିଲା କି ! ସେ ସେମିତି ସାପ ତା' ବେକରେ ପକେଇଥିଲା । ସେ ମଢିଆଟା ହାତରେ କ'ଣ ହବ ! ତା' ପାଖରେ ବିଦ୍ୟା କାଇଁ ?'

ଝାମ୍ପୁରା ଦାନ୍ତ କାଢି ଅଳ୍ପ ଟିକିଏ ହସିଦେଲା । ହେଲେ ସେ ପିଲାଙ୍କ ମେଳକୁ ଲେଉଟି ଲେଉଟି ଚହୁଁଥିଲା । କାହାକୁ ମନେ ମନେ ଖୋଜୁଥିଲା କି ?

କେଜାଣି କେମିତି ସେଇ ମାଉସୀ ପୁଣି କହିଲା, 'ଆଉ ଜାଣିଚ ନା, ଆର ଥର ସେ ଯେଉଁ ଭୋଇ ଝିଅ ମରୁଆ ତମକୁ ଅଣ୍ଡା ଆଣି ଦେଇଥିଲା...'

ଝାମ୍ପୁରା ଆଗ୍ରହରେ ଚହିଁଲା । ସୁଜାଣ ଆଖିରେ ମାଇପେ ଠରାଠରି ହୋଇଗଲେ ।

'ସେ ପରା ସେଇ ଦିନ ଘରଯୋଗ୍ୟା ହେଇଗଲା ! ଏବେ ଆଉ ସେତେ ଦାଣକୁ ବାହାରୁ ନାହିଁ । ତା' ମା' ଆକଟ କରିଚି ।'

ଝାମ୍ପୁରା ଆଖିରେ ଓହରେଇ ନେଲା ତଳକୁ । ସମସ୍ତଙ୍କର ଅଜାଣତରେ ଝାମ୍ପୁରାର ବୁକୁ ଭାଙ୍ଗି ନିଶ୍ୱାସଟାଏ ବାହାରିଗଲା । ବାପଛେଉଣ୍ଡ ଝିଅଟା କଥା ଭାବୁଥିଲା କି ? ଏତେ ଡଉଲ ଝିଅଟି ସତେ କାହିଁକି ତା' ବାପକୁ ହରେଇଲା ?

କାହିଁକି ନିଧିଆକୁ ସାପ କାମୁଡିଲା ? କି ସାପ ସିଏ ? କୋଉଠି କାମୁଡିଲା ? – ଏ ଜନ୍ତୁ ସେଇଆ । ଏମିତି କ'ଣଟାଏ କରିଦେଇ ଅକୀର୍ତି ମୁଣ୍ଡେଇବେ ।

ଝାମ୍ପୁରା ସବୁ ସାପଙ୍କ ପାଇଁ ଦୁଃଖ କରୁଥିଲା । ସବୁଗୁଡାକ ଡରକୁଳା । ବଡଭାଗ ସେଥିରୁ ଭୟରେ କାମୁଡି ପକାନ୍ତି । ମୁଣ୍ଡଟିଏ, ପାଟିଟିଏ, ଦାନ୍ତ ହଳେ ଛାଡିଦେଲେ ଆଉ କ'ଣ ଅଛି କି ତାଙ୍କର ? ଯାହାହେଲେ ପାଟିଟିକୁ ମେଲା କରିଦେବେ । ରାଗରେ ହେଉ, ସରାଗରେ ହେଉ, ବିପଦରେ ହେଉ, ଭୟରେ ହେଉ । ପାଟି ମେଲେଇ ଦାନ୍ତ ଦେଖେଇବେ । ଗୁଡାଏ ପବନ ଶୋଷି, ସୁଁସୁ ହେବେ । ଛାଡ, ଏ ଜନ୍ତୁଟା ତ ସେଇଆ । କିଏ କାଇଁ ବୁଝିବ ଯାଙ୍କ କଥା ? ଦେଖିଲେ ତ' ଗୋଡେଇ ଗୋଡେଇ ମାରି ପକେଇବେ । ଇଏ ତାକୁ ନ ମାରିଲେ ସେ ଯାକୁ ମାରିଦେବ । ଏଇ ଭୟରେ । ଦୁଷ୍ଟ ଜନ୍ତୁ ବୋଲି ଅପଯଶ ରଟି ଯାଇଛି ତ' !

ଝାମ୍ପୁରା ତା' ଭାର ଟେକି ପାଦ କାଢିଲା । କେଜାଣି କାହିଁକି ପଛକୁ ଥରଟେ ସମସ୍ତଙ୍କୁ ଚାହିଁଦେଲା । ଏମିତି ତ' ଲେଉଟାଣି ସେ କେବେ ଚାହେଁ ନାହିଁ !

ଜବର ଭାରୀ ଚରିଟା ପେଡିରେ ଭାରଦଣ୍ଡା ନଇଁ ଯାଉଥାଏ । ହେଲେ ଝାମ୍ପୁରା ଚାଲି ଯାଉଥାଏ । ସରସର । କାଳିଆ ଚିକ୍କଣ ମେଲା ଦେହ, ବଳିଲା ପରି ହାତଗୋଡ । କଳା ନାଗଟିଏ ସତେବା, ଗାଁ ମାଇପେ ଗାଲରେ – ଟିପ ଦେଇ ତାକୁ ଚାହିଁ ରହିଥା'ନ୍ତି, ସେ ଦକ୍ଷିଣ ମୋଡରେ ନ ଦିଶିବା ଯାଏଁ !

ବାଟରେ ଭୋଇସାହି ପାଖରେ ଝାମ୍ପୁରା ଏକତ ସେକତ ଚାହିଁବକି ? ଦରଆଉଜା କବାଟ ଫାଙ୍କରେ ଚିହ୍ନା ମୁହଁଟାଏ ଦିଶିଯିବ କି ? ଝାମ୍ପୁରା ଆନମନା ହେଇ ଗାଁ ପାରିହେଇ ଯାଉଥିଲା ।

ସାପଟାଏ କାମୁଡିଦେଲେ କିଏ କାହିଁକି ମରିବ ? ନିଧିଆ ବି ମରି ନଥାନ୍ତା । ମରୁଆର ବା' ଟାଏ ଥିଲେ, ସେ ଏମିତି ଛେଉଣ୍ଡି ଦିଶୁନଥାନ୍ତା ।

ଝାମ୍ପୁରାରର ମନ ଗୋଳଘାଣ୍ଟ ହଉଥିଲା କି ? ତା'ର ସେ ସରସର ଚାଲି ଧିମେଇ ଯାଇଥିଲା କି ?

ନା' ସେମିତି କିଛି ହଉନଥିଲା । ଗାଁଠୁ ଖଣ୍ଡେ ଦୂର ସେ ତୋଟା ପାଖରେ ଝାମ୍ପୁରା ଘଡିଏ ଭାର ରଖି ଠିଆହେଲା । ଲେଉଟି ଚାହିଁଲା ଗାଁ ମୁଣ୍ଡକୁ । ଗଛ ଆଢୁଆଳରେ ଭୋଇସାହି ଦିଶୁ ନଥିଲା । ଝାମ୍ପୁରା ପିକାଟିଏ ଟାଣି କିଛି ସମୟ ସେଇଆଡେ ଚାହିଁ ରହିଲା । ତା' ଉତାରୁ ଭାର ଟେକି ଭୁସ୍ ଭୁସ୍ ଆଗେଇଗଲା । ଖରା ମହଳଣ ପଡିଆସିଥିଲା ।

ବର୍ଷେ କାଳ ଝାମ୍ପୁରା ବାରଆଡେ ଭ୍ରମିଲା । କେଳା ବସ୍ତିରେ ସେମାନେ ଜାଣିଥିଲେ ଯେ ସେ ମଣିନାଗ ଖୋଜୁଥିଲା । ମଣିଚୂଡ ଏମିତି ସେମିତି ସାପ ନୁହେଁ । ମଣିଚୂଡ ରଜା । ସାପମାନଙ୍କ ମଉଡମଣି । ତାକୁ କେହି ସାପୁଆ ଧରି ନାହାନ୍ତି । ବହୁ ପୂର୍ବେ ଜଣେ ଧରିଥିଲେ । ବିଦ୍ୟା ବଳରେ ଆୟତ୍ତ କରିଥିଲେ । ହେଲେ ଲୋଭ ସମ୍ଭାଳି ପାରିଲେ ନାହିଁ । ତା' ତାଳୁ ବିଦାରି ମଣି କାଢି ନେଇଥିଲେ । ରଜାକୁ ଦେବାରୁ ତାଙ୍କୁ ସୁନାବଳା କୁଣ୍ଡଳ ମିଳିଥିଲା । ମଣିକୁ ରଜା ରଖି ପୂଜା କଲା । ଯାହା ଚାହିଁଲା ତା' ପାଇଲା । ସାତ ଦିନରେ କେଳାକୁ ସାପ ଦଂଶିଦେଲା । ସାପଙ୍କ ବିଶ୍ୱାସ ଭାଙ୍ଗିବାକୁ ବିଦ୍ୟା ଛାଡିଗଲା କେଳାକୁ । ତାକୁ କେହି ବଞ୍ଚେଇ ପାରିଲେ ନାହିଁ ।

ତଥାପି ଝାମ୍ପୁରା ବାତୁଳ ପରି କାହିଁକି ମଣିଚୂଡକୁ ଖୋଜୁଥିଲା ? ସେ ବି କ'ଣ ଚାହୁଁଥିଲା ତା' ତାଳୁ ବିଦାରି ମଣି ହରଣ କରିବାକୁ? – କାହାପାଇଁ ? ସେ କ'ଣ ପୁଣି ସେଇ ପାତକ କରିବାକୁ ଚାହୁଁଥିଲା ? ସେମିତି ତାକୁ ସାପ ଦଂଶିବାକୁ ସେ ଚାହୁଁଥିଲା ? କାହିଁକି ?

ଝାମ୍ପୁରା ଯୁଆଡେ ଯାଉଥିଲା ସାପ ଖେଳ ଦେଖଉଥିଲା । ତା' ଅହିରାଜ ଦଶହାତ ଲମ୍ବା ହୋଇ ସାରିଥିଲା । ଗୋଖର ଆହୁରି ବଳୁଆ ହୋଇଥିଲା । ଶଙ୍ଖଚୂଡ ପୋଖତ ହୋଇଯାଇଥିଲା, ତେଣିକି ସେ ବୁଢେଇ ଯିବ । ଆଉ ଚମ୍ପାନାଗର ଚହଟ ଉଣା ଧରି ଆସିଥିଲା ।

ଶେଷକୁ କଥା ବ୍ୟାପିଗଲା କେଳାରୁ କେଳାକୁ ଯେ ଝାମ୍ପୁରା ମହାନଦୀ କୂଳ ପର୍ବତରେ ଅଗ୍ନାଅଗ୍ନି ବନସ୍ତରେ ଶହେ କୋଶ ଦୂରରେ ମଣିଚୂଡ଼କୁ ଠାବକଲା ।

ସେଇଠି ସେ ପେଡି ଫିଟେଇ ସାପଗୁଡିକୁ ସାଉଁଳି ଦେଇ ମୁକୁଳେଇ ଦେଲା । ଭାର ପେଡି ସବୁ ସେଇଠି ପଡିରହିଲା । ସେ ନିଜେ ମୁକୁଳି ଆସିଲା ଏକୁଟିଆ ।

କେଳାଏ କହିଲେ ଯେ ସେ ମଣିଚୂଡକୁ ବିଦ୍ୟାବଳରେ ବାନ୍ଧି ନେଇଥିଲା । ତାକୁ ନେଇ ଆସିଲା ଶହେ କୋଶ ବାଟ । ଝାମ୍ପୁରା ନରମାର୍ଗରେ ଆସିଲା ବେଳେ ସେ ନାଗ ମାର୍ଗରେ ଆସୁଥିଲା । ଗଛରୁ ଗଛକୁ ବୁଦାରୁ ବୁଦାକୁ ବିସର୍ପି ଆସୁଥିଲା ।

ପିଟାପୁର କେଳାବସ୍ତିରେ ପହଞ୍ଚିଲା ବେଳକୁ ବସ୍ତି ଖାଲି । ଅଜଗର ବୁଢାକୁ ଛାଡିଦେଲେ ଯେ ଯୁଆଡେ ଯାଇଥା'ନ୍ତି ଖେଳ ଦେଖେଇବାକୁ ।

ଜମ୍ବୁ କେଳା, ପୋଖତ ସାପୁଆ । ସେ ଝାମ୍ପୁରାକୁ ଦେଖୁ ଦେଖୁ ବାରିଦେଲା, ସେ ଅସାଧ ସାଧି ଆସିଛି । ତା' ଆଖି ଚମକୁଥିଲା । ତା' ଭୂରୁ ଦମ୍‌କୁ ଥିଲା । ତା' ଦେହ ଗୋଟା ସାରା ଲହଲହ କମ୍ପୁଥିଲା ।

'କିରେ, ପାଇଲୁ ?'

ଝାମ୍ପୁରା ତା' ଆଖିକୁ ଥରେ ଚାହିଁଦେଲା । କିଛି କହିଲା ନାହିଁ । ଜମ୍ବୁ ବୁଝିଗଲା । ଝାମ୍ପୁରା ତା' କୁଡିଆ ଭିତରେ ପଶି ତାଟି କିଳିଦେଲା ।

ସଂଜ ସୁଦ୍ଧା କେଳା ବସ୍ତିରୁ ଅଧେ ଫେରିଆସିଲେ । ଜମ୍ବୁ ଯାହା କହିଲା ଶୁଣିଲେ । କେହି ଡୁବ କଲେନାହିଁ ଝାମ୍ପୁରାକୁ ଯାଇ ଡାକିଦେବାକୁ । ସେମାନେ ଛନ ଛନ ହଉଥିଲେ, କାଳେ କୋଉଠି

ମଣୀଚୂଡ ଉଭା ହେଇଯିବ ।

ତା' ଆରଦିନ ସକାଳୁ ଦେଖିଲା ବେଳକୁ ନଈ ବାଲିରେ ଝାମ୍ପୁରା ଚିତ୍‌ମାତ୍ ଶୋଇଥିଲା । ସେ କ'ଣ କାକର ଖାଇବାକୁ ସେମିତି ପଡିଥିଲା ? ସେମିତି ତ ସେ କେବେ ଶୁଏନାହିଁ !

ଡକାହକା ହେଇ କେଳାବସ୍ତି ଲୋକେ, ନଈ ବାଲିରେ ଗୁଣ୍ଡହେଇ ଚହିଁଲା ବେଳକୁ ଝାମ୍ପୁରାର ଚିହ୍ନବର୍ଣ୍ଣ ନଥିଲା । ସେ ପିଲାଟି ଯେ ପ୍ରଥମେ ଦେଖିଥିଲା, ଯାଇ ସେ ଜାଗା ଦେଖେଇ ଦେଲା । ଜମ୍ବୁ ନଇଁପଡି ତନଖି କଲା । ମୁହଁ ଟେକି କହିଲା, 'ସେ ଏଇଠି ଶୋଇଥିଲା । ହେଲେ ସେ ଆଉ ସେ ରୂପରେ ନାଇଁ । ନାଗବଳକୁ ମନ୍ତ୍ରବଳ ଅଣ୍ଟିଲା ନାହିଁ । ରାତିସାରା ଯୁଝିଲା ପରେ କେଳା ହାରିଗଲା । ନାଗ ଜିଣିଗଲା । ନାଗ ହାରିଥିଲେ ସେ ମଣିଷ ରୂପ ନେଇଥାନ୍ତା । କେଳା ହାରିଲାରୁ ନାଗ ରୂପରେ ତା' ଖୋପରେ ପଶିଗଲା । ଏଠି ଯାହା ପଡିଥିଲା, ସେଇଟା ମଲା ପିଣ୍ଡ । ସେଇଟା ବଦଳି ଗଲା ନାଗରେ । ମଣିଚୂଡ ଶୂନ୍ୟରେ ଫିଟିଗଲା ମଣିନାଗ ପର୍ବତକୁ । ଏକ ନିଶ୍ୱାସକେ ଏ କାଣ୍ଡ ଘଟିଲା । ମୁଁ ଶୁଣିଥିଲି ବୁଢାମାନଙ୍କୁ ଯେ ଏମିତି ହୁଏ । ଆମେ ଜାଣିବାରେ ଏଇଠି ହେଲା ।'

ଚିତ୍ରପିତୁଳା ପରି ସମସ୍ତେ ଚହିଁ ରହିଲେ ଶୁଖିଲା ବାଲିରେ ମଣିଷର ଛାପଟାକୁ । ଚହିଁଲେ ନଈ କୂଳ ପଥର ଖୋପକୁ । କଥା ପ୍ରସରିଗଲା, ଗାଁରୁ ଗାଁକୁ ସଂଜ ହବା ଆଗରୁ ।

X X X X

ଛାଇ ନିଦରୁ ହାଉଳି ଖାଇ ଉଠିପଡିଲା ମଗୁଆ ମା' । କଳା ନାଗଟାଏ ବାଡି ଟାଟି ବାଟେ ବାହାରିଗଲା । ମଣିଷେ ଉଞ୍ଚ ତା' ଫଣା । ପଡିଶା ଘରୁ ସବୁ ଠେଙ୍ଗାବାଡି ଧରି ପଶିଆସିଲେ । ବାଡି ଟାଟି ଦରମେଲା, କେହି କୁଆଡେ ନାହିଁ । ସର୍ପ ଦଂଶିଲା ପରି ମଗୁଆ ଠକ୍ ଠକ୍ ଥରୁଥିଲା ଗୋଟାପଣେ ।

ଗାଁ ଲୋକେ କହିଲେ – ଝାମ୍ପୁରା କଳାନାଗ ରୂପରେ ଆସିଥିଲା ଏ ଅନାଥ ପରିବାରକୁ ଆଢୁଆଳ ଦେବାପାଇଁ ।

"ସତ, ସତ" କହିଲେ ସୁଜାଣ ପାଇପିମାନେ ।



# ଦେବୀ

ଉଆଁସ ଦିନ ଦି'ପହରଟାରେ ଅନ୍ଧାର ଘୋଟିଗଲା ।

କେତୁ ଗ୍ରାସିଗଲା ସୂର୍ଯ୍ୟଙ୍କୁ । ପୂର୍ଣ୍ଣପରାଗ ବେଳେ ଅତିକାୟ ସାପ ପରି ହୁତାହୁତା ଅନ୍ଧାର ଲହଡି ମାରିଗଲା ଉତ୍ତରରୁ ଦକ୍ଷିଣକୁ ।

ପକ୍ଷୀମାନେ ଅଘଟନକ ବିପତ୍ତି ପଡିଲାପରି ରାବ କଲେ ।

ବିଲହୁତା ଟଲୁ ବାହାରି ଆସିଲେ ସାପମାନେ ଗାତ ଭିତରୁ । ଫଣା ଟଳକୁ କରି ଛାନିଆ ହେଲାପରି ଇତସ୍ତତଃ ଆଶ୍ରା ଲୋଡିଲେ ।

ବାଦୁଡିମାନେ ଉଡିଲେ ନୀରବ ଆକାଶରେ ।

କିଛି ସମୟ ପାଇଁ ତାରାମାନେ ଉହୁଙ୍କି ଚାହିଁଲେ ଦୁର୍ଭାଗ୍ୟ ଭୋଗୁଥିବା ପୃଥିବୀକୁ । ମଣିଷମାନେ ନୀରବି ଯାଇଥିଲେ ଭୟରେ, ବିସ୍ମୟରେ ।

ପଞ୍ଚୁ ପଣ୍ଡିତେ ପିଣ୍ଡା ପାହାଚରେ ଶୂନ୍ୟକୁ ଚାହିଁ ବସିଥିଲେ । ସୂର୍ଯ୍ୟଙ୍କୁ ବୁଡେଇ ଦେଇଥିବା କେତୁ କଳଙ୍କ ତାଙ୍କଅକ ଦେହସାରା ଲେସି ହୋଇ ଯାଇଥିବାର ସେ ଅନୁଭବ କରୁଥିଲେ । ଅପେକ୍ଷା କରୁଥିଲେ କେତେବେଳେ ପାପମୋଚନ ହେବ । ସେ ଚଣ୍ଡାଳଛୁଆଁ ଗାଧୋଇ ଘରେ ଦିଅଁଙ୍କୁ ଗଙ୍ଗାସ୍ନା କରାଇବେ । ତାଙ୍କ ଦିହକରେ ସେ ଏପରି ପୂର୍ଣ୍ଣଗ୍ରାସ କେବେ ଦେଖି ନଥିଲେ । ଓଃ, କି ଘୋର କାଳ ସତେ!!

ଏତିକିବେଳେ ତାଙ୍କ କାନରେ ପଡିଲା, ମାଇପେ କଥା ହେଉଥିଲେ –

"ଇସ୍ ଏତିକି ଅଶୁଭ ବେଳାରେ କ'ଣଟାଏ ସେ ବେଇବ କେଜାଣି, ଅସୁର କି ରାକ୍ଷସ ?"

ପଡିଶା ଘର ବୋହୂ ପ୍ରସବ ବେଦନାରେ ରଡି କରୁଥିଲା ।

ଆକାଶରେ ଆହୁରି ଉଦ୍‌ବିଗ୍ନ ତାରା ଦେଖାଦେଲେ । ଝୁଲା ବାଦୁଡି ଡେଣା ଫଡ୍‌ଫଡ୍ କରି ଉଡିଗଲେ । ଅନ୍ଧାର ଆହୁରି ଗାଢତର ହେଲା । ପାଖ ଗଛରେ ଗୁଡାଏ ବଣି ଏକାଠି ତ୍ରସ୍ତ

ହୋଇ ରାବି ଉଠିଲେ ।

ସେତିକିବେଳେ ଆଉ ଗୋଟାଏ ଶବ୍ଦ ଶୁଣି ସମସ୍ତଙ୍କ ଗୁମ ଟାଙ୍କୁରିଗଲା । ପଡିଶା ଷଡଙ୍ଗୀ ଘରେ ପିଲା ଜନ୍ମହେଲା ।

କିଏ ସେ ଜନ୍ମିଲା କେଜାଣି ଏ ଘୋର ବ୍ୟତିପାତବେଳେ । କାନ୍ଥବାଡ ପରି ପଡିଶାଘରେ ସମସ୍ତେ ସ୍ତବ୍ଧ ହୋଇ ଯାଇଥିଲେ । କାହାରି ସୋର ଶବ୍ଦ କିଛି ନାହିଁ । ଫୁଲନାଡ ନେଇ ରକ୍ତସାଲୁବାଲୁ ହୋଇ ଭୂଇଁରେ ପଡିଥିବା ସେ ପିଲାଟାର କାନ୍ଦ କେବଳ ଶୁଭୁଥିଲା ତୁହାକୁ ତୁହା ।

ବାଦବାଡ ଫାଙ୍କରେ ଅନେଇଲେ, କାନେଇଲେ ପଣ୍ଟୁ ପଣ୍ଡିତଙ୍କ ଭୁଆସୁଣୀଏ !

ଝିଅଟାଏ ! – ଇସ୍ ଝିଅଟାଏ ? ଉଆଁସରେ ଝିଅଟାଏ ? ? – ଏମିତି ଖର ବେଳା, ବିଷାକ୍ତ, ଅଶୁଭ ବେଳାରେ ଜନ୍ମହେଲା – ସେ ପୁଣି ଝିଅଟାଏ !! ?

ଏ ଝିଅ ସୃଷ୍ଟି ଛାରଖାର କରିଦେବ । ଏ ଚାହିଁଦେଲେ କଞ୍ଚା କଦଳୀଗଛ ଠିଆରେ ଜଳିଯିବ । ଅମଙ୍ଗୁଳି, ଅଲକ୍ଷଣୀ ପାଇଁ ବିପତ୍ତି ପଡିଯିବ ଘରେ, ବାହାରେ, ସାରା ମୁଲକରେ !! ଷଡଙ୍ଗୀ ଘରେ ବତୀ ଲାଗିଲା ଡେରିରେ, ନୀରବରେ । ସେଇ ଆଲୁଅରେ ସେମାନେ ନିରେଖି ଚାହିଁଲେ । ସେମାନଙ୍କ ଆଖି ଖୋସି ହୋଇଗଲା । ନାଳ ସରସର, ରକ୍ତଜରଜର ହୋଇ ଝଟକୁଥିଲା ସୁନା ପ୍ରତିମା । ହାଲିଆ ହୋଇ ଶୋଇ ଯାଇଥିଲା । ନାହି କାଟି ଇଙ୍ଗାକରି ପରେ ଷଡଙ୍ଗୀଏ ଦେଖି କହିଲେ, "ଇଏ ତ' ବିଜୁଳି କନ୍ୟା ! ଦେବୀ ଜନ୍ମ ହେଇଚି ମୋ' ଘରେ ।"

ଉଶ୍ୱାସ ହୋଇଗଲା ଷଡଙ୍ଗୀଙ୍କ ଘରେ ରୁନ୍ଧି ହୋଇ ରହିଥିବା ପବନ । ଉଶ୍ୱାସ ହୋଇଗଲେ, ଗୁଅ, ଶେଣି, କାନ୍ଥବାଡ, ମଣିଷମାନେ ଶାଶୁ ନଣନ୍ଦମାନେ ।

ସେତେବେଳକୁ ସୂର୍ଯ୍ୟ କେତୁମୁକ୍ତ ହୋଇ ସାରିଥିଲେ । ସ୍ୱାଭାବିକ ଦ୍ୱିପହର ଖରା, ଆଲୁଅ, ପବନ । ପଣ୍ଟୁ ପଣ୍ଡିତଙ୍କ ଘରେ ଘଣ୍ଟି ବାଜୁଥିଲା । ସେ ଠାକୁରଙ୍କୁ ଗଙ୍ଗାସ୍ନାନ କରାଉଥିଲେ ।

ପିଲାକୁ ଇଙ୍ଗାରିବାକୁ ଆସିଥିବା ସପନି ମା' ଧାଈ, ସେ କୁଆଡେ ପିଲାର ମା'କୁ ବି ଇଙ୍ଗାରିଥିଲା ତା' ଜନ୍ମବେଳେ । ତା' ନିଜର ପିଲାପିଲି କେହି ନାହିଁ । କାହିଁକି କେଜାଣି ସେ ନିଜକୁ ସପନି ମା' ବୋଲି କହେ । ତା' ନିଜ ନାଁ କେହି ଜାଣନ୍ତି ନାହିଁ । ସେ କାହାଘର ଝିଅ, କାହା ଘର ବୋହୂ, ତା' ଗେରସ୍ତ କିଏ, କେହି କିଛି ଜାଣନ୍ତି ନାହିଁ । ପୁରୁଖାଲୋକ କହନ୍ତି ଯେ ତିରିଶ ବର୍ଷ କାଳ ସେ ଅଞ୍ଚଳରେ ସବୁ ଝିଅ ବୋହୂଙ୍କୁ ସେ ପୋଖତି କରେଇଚି । ଭାରି ପିଲାରଙ୍କୁଣିଟିଏ ।

ସପନି ମା' କହୁଥିଲା –

"ଏମିତି ସର୍ଗ ଅପସରୀ ଝିଅ ଜନ୍ମ ହେବାର ମୁଁ ମୋ' ଦିହକରେ ଦେଖି ନାହିଁ । ଜନ୍ମବେଳା, ମରଣବେଳା କ'ଣ କାହାର ହାତ କଥା ହେଇଚି । ଯିଏ ତମକୁ ଏ କନ୍ୟାରତ୍ନ ଦେଇଚି ସିଏ ସବୁ ବୁଝିବ ନାହିଁ !"

ମା' ବୁକୁକୁ ଲଗେଇ ପିଲାକୁ ଶୁଆଇ ଦେଇଥିଲା ସପନି ମା' !

ଲୁହ ଜରଜର ଆଖିରେ ଝିଅକୁ ଚାହିଁଦେଇ ମା' ଆଖି ବୁଜି ନେଇଥିଲା । କେତେ କ'ଣ ଅର୍ବୁଦ ଅର୍ବୁଦ ସ୍ମୃତି ଆଉ ସ୍ୱପ୍ନ, ବର୍ଷା, ବିଜୁଳି, ବତାସି ତା' କୋହ ଭିତରେ ଝରି ଯାଇଥିଲା । ଧାରଧାର ହୋଇ ।

କଷ୍ଟ ପାଇଲାବେଳକୁ ତା' କାନରେ ପଡୁଥିଲା, ସେ ଅଶୁଭ ବେଳାରେ ସେ ଅମଙ୍ଗଳଟାକୁ ଇ ଜନ୍ମ କରିବ ! ତା'ର ବା ଆୟତ୍ତ କ'ଣ ? ତୁହାକୁ ତୁହା ଶୂଳ ଆସିଲାବେଳେ ତା'ର ପ୍ରାଣପିଣ୍ଡ ବିଦାରି ହେଇ ଯାଉଥିଲା । ଝାଳରେ ବୁଡି ଯାଉଥିଲା ଦିହ । ଶୋଷରେ ଭିଡି ନେଉଥିଲା ଜିଭ । ଆଖିରୁ ଜୁଳୁଜୁଳିଆ ପୋକ ବାହାରି ଯାଉଥିଲା । ତଥାପି ମଝି ଭିତରେ ଭୟ ହେଉଥିଲା କାଳେ ଯଦି ଝିଅ ଜନ୍ମ ହୁଏ ।

ସପନି ମା' କଥାରେ ତା'ର ପ୍ରତ୍ୟୟ ହେଉ ନଥାଏ । କ'ଣ କରିବେ ସେମାନେ, ଘରଲୋକେ, ସାଇପଡିଶା ଲୋକେ, ଗାଁ ମୁଲକ ଲୋକେ, ସେ ପିଲାଟାକୁ ନେଇ ? ସେମାନେ କ'ଣ ଏନ୍ତୁଡିଶାଳରେ ତା' ତଣ୍ଟି ଚିପିଦେବେ ? – କନା କତରା ସାଙ୍ଗରେ ଗୋଟେଇ ପୋଟେଇ ନଈକୁ ପକେଇ ଦେବେ ? ସତେ କ'ଣ କିଏ ତାକୁ ତା' କୋଳରୁ ଝିଙ୍କି ନେଇଯିବେ ? ଚମ୍ପା ପାଖୁଡା ପରି ପାଦ ଯୋଡିକୁ ଧରି ଶିଳାରେ ଛେଚି ଦେବେ ?

ସେ ଭୟରେ ମଟମଟ ଚାହିଁଆଡକୁ ଚାହିଁଦେଇ ଆସ୍ତେ ତା' କାନିକୁ ଝିଅ ଦେହରେ ଘୋଡେଇ ଦେଇଥିଲା ।

ଷଡଙ୍ଗୀ ଘରେ ଗ୍ରହଣ ଛୁଆଁ । ସବୁ ଲୁଗାପଟା କଢାହେଲା ଧୂଆ ହେବା ପାଇଁ । ସାନବଡ ସମସ୍ତେ ଗାଧୋଇଲେ କୂଅ ମୂଳେ । ବେଣୁ ଷଡଙ୍ଗୀ ନିଜେ ଧୁଆ ଗାମୁଛା ପାଲଟି ଦିଅଁଘର ଏଗୁଣ୍ଡି ଉପରେ ମୁଣ୍ଡିଆ ମାରି ଫେରି ଆସିଲେ । ଛୁତିକିଆ ଅଶୌଚରେ ଆଉ କାହାକୁ କହିଲେ ସେ ଆସି ଦିଅଁ ବସେଇ ଦେବ କିଛିଦିନ ।

ନିରୋଳା ଦେଖି ଷଡଙ୍ଗୀଏ ପିଣ୍ଡାରେ ଶ୍ରୀ ଲେଖି ଖଡି ଗୋଟାଳିକୁ ମୁଣ୍ଡରେ ଲଗାଇଲେ । ପାଞ୍ଜି କାଢି କୋଷ୍ଠି କାଟିଲେ ଗ୍ରହଗଣନା କରିବାକୁ । ଗ୍ରହରାଜ ରବି ପାପଗ୍ରସ୍ତ ଥିବାବେଳେ ଆଉ କ'ଣ ସ୍ଥିତି ମିଳିବ ବୋଲି ଭାବୁଥା'ନ୍ତି, ଲେଖୁଥା'ନ୍ତି ।

...ରବି ଶଶୀ ଏକତ୍ର । ବୁଧ, ଶୁକ୍ର, ଏକତ୍ର । ଲଗ୍ନେ ବୃହସ୍ପତି । ଭାଗ୍ୟାଧିପତି ସଗୃହେ । ସବୁଗ୍ରହ ଉଚ୍ଚରେ । ଏ ତ' ମହାସରସ୍ୱତୀ ଯୋଗ । ରାଜ-ରାଜେଶ୍ୱର ଯୋଗ । କୋଟିକେ ଗୋଟିଏ ମହାପୁରୁଷ କୋଷ୍ଠୀ !

ସେ ଅବିଶ୍ୱାସରେ ପୁଣି ଗଣନା କଲେ । ପୁଣି ଗଣନା କଲେ । କୋଷ୍ଠି ଲିଭେଇ ଖଡିକୁ ମୁଣ୍ଡରେ ଲଗେଇଲେ । ହେଲେ ସୁଦର୍ଶନ ତିଆଡିକୁ କହି ଜାତକଟାଏ କରେଇଦେଲେ ହୁଏ । ଭାରି ଟାଣୁଆ ଜଉତିଷ । ସମ୍ପର୍କରେ ଭାଇ ଲେଖା ହବ ! ସେ କ'ଣ କହିବଟି !

ପାଟି ଶୁଣେଇ କହିଲେ, 'ଆରେ ସେ ପିଲାଟା ପାଟିରେ ମହୁ ଚଟେଇ ଦିଅ ।'

କାହାକୁ ନ ଶୁଭିଲା ପରି କେହି ଜଣେ କହିଲା କି କ'ଣ "ମଲା, ମୋର ! ମହୁ ନା

ମହୁରା ବା !"

ସଞ୍ଜ ପାଖେଇ ଆସିବାରୁ ଲୋକେ ପୁଞ୍ଜି ପୁଞ୍ଜି ହେଲେ ଦାଣ୍ଡରେ । ସେଇ ଦିବସରେ ଅନ୍ଧାର ଘୋଟିବା କଥା, ସେଇ ଅଲୌକିକ କଥା, ସେଇ ନାହିଁ ନଥିବା ଗ୍ରହଣ କଥା ସଭିଙ୍କ ତୁଣ୍ଡରେ । ସମସ୍ତେ ଜାଣ ତାବ୍‌ଦା ହେଇ ଯାଇଥିଲେ । ତା' ଭିତରୁ ଜଣେ କହୁଥିଲା –

"ଜାଣିଚ ନା – ତଳ ସାହି ଟଙ୍କ ସାହୁ ସେତିକିବେଳେ ନଈ ଆରପାଖ ଗାଁରୁ ଫେରୁଥିଲା । ସେତେବେଳକୁ ଅନ୍ଧାର ଘୋଟି ଗଲାଣି । ପୂର୍ଣ୍ଣଗ୍ରାସ ସମୟ । ସେତିକି ବେଳେ ସେ ଦେଖିଲା, ହୁଳାପରି ଉଲ୍‌କାଟିଏ ଖସିଲା ଆମରି ଗାଁ ଉପରେ ।"

"ହଁ, ହଁ, ଆଉ ବି ଲୋକ ଦେଖିଛନ୍ତି । ବଡ ଆଶ୍ଚର୍ଯ୍ୟ କଥା । ଦିବସରେ ଉଲ୍‌କା ଖସିବା ଆଉ ଏକ ବିପ୍ରାତ । କ'ଣ ହବଟି କେଜାଣି !"

"ଆମେ ସମସ୍ତେ ତ' ସେତେବେଳେ ଆକାଶରେ ତାରା ଦେଖିଲୁ । ସେମିତି ଏ ଉଲ୍‌କା ଖସିବା ବି ଦେଖାଗଲା ।"

ବେଣୁ ଷଡଙ୍ଗୀ ପିଣ୍ଡାରେ ବସି ସବୁ ଶୁଣିଲେ । କାହିଁକି କେଜାଣି ହାତ ଯୋଡି ପ୍ରଣାମ କଲେ । କାହାକୁ କିଛି କହିଲେ ନାହିଁ ।

ଷଡଙ୍ଗୀଙ୍କ ପୁଅ ସୁରେଶ ତିନିମାସ ହେବ ପ୍ରବାସରେ । ଘରେ ତା' ମା' ସୁଲକ୍ଷଣା, ଅଭିଆଡି ଭଉଣି 'ଦୁଲ' । ସ୍ତ୍ରୀ ଯୋଶୁ – ଭଲ ନାଁ ଯଶୋଦା – ପାଖ ଗାଁ ଝିଅ ।

ଦୁଲ ଆଉ ଯୋଶୁ ଖୁବ୍ ସାଙ୍ଗ ।

"ଭଲ ହେଲା ନା ଭାଉଜ ! ଆଗ ମୁହଁରେ ଝିଅ ହେଲା ! ଭାଇନାର ଆୟୁଷ ବଢିବ କହୁଥିଲା ବୋଉ ।"

ଯୋଶୁ ଦୁଲକୁ, କାନ୍ଥକୁ ବାଡକୁ ଚାହିଁଲା ବଲବଲ । କିଛି କହିଲା ନାହିଁ । ଆଖି ତା'ର ଛଳଛଳ ଦିଶୁଥିଲା । ଶାଶୁ କେବେ ସିନା ସେମିତି କହୁଥିଲେ ହେଲେ ଆଜି...

ସୁଲକ୍ଷଣାଙ୍କ ମନ ଜମା ଭଲ ନାହିଁ । ଏମିତି କାଳବେଳାରେ ଝିଅଟାଏ ଜନ୍ମହେଲା । ଉଚ୍ଛଟ ଉଆଁସଟାରେ ! ଦିନେ ଓଳିଏ ନ ହେଲା ନାହିଁ ସେଇ ଘୋର ଗ୍ରହଣ ବେଳାଟା ଭଲା ଘୁଞ୍ଚି ଯାଇଥାନ୍ତା ! ଏ ବୟସରୁ ପୁଅଟା ମୁଣ୍ଡରେ ପେଗ୍ର ବସିଲା ଜାଣ ! ପ୍ରବାସରେ ଅଛି । ଶୁଣିଲେ କେତେ କଷ୍ଟ ନ ହେବ ତା' ମନରେ ।

ସୁଲକ୍ଷଣା ଉଦାସ ମନରେ ଗୋଟେ ଆଡକୁ ଚାହିଁ ବସିଥା'ନ୍ତି । କେତେବେଳେ କେମିତି ଡରିଲା ଡରିଲା ପରି ପୋଖତି ଘର ଆଡେ ଚାହିଁଦେଇ ଆଖି ଫେରେଇ ଆଣୁଥା'ନ୍ତି । ବୁକୁରୁ ପବନଟା ଓହ୍ଲେଇ ଯାଉଥାଏ । ପାଟି ଫିଟେଇ କିଛି କହି ପାରୁ ନଥା'ନ୍ତି । କ'ଣ ବା କହିବେ ? ନିଜ ଭାଗ୍ୟ ତ ଫାଳ ଫାଳ !

ଅଗଣାକୁ ଗଲେ ପଡିଶା ଘରୁ ଟାହି ଟାପରା ଶୁଣିଲା ପରି ଲାଗୁଥାଏ । କଥାଟା ତ ସେ ବାଗେ ହେଇଚି । ତାଙ୍କୁ ଦୋଷ ଦେଇ ଲାଭ କ'ଣ ? ହାଇରେ କପାଳ ! ଥିଲା ଥିଲା କ'ଣ ନା'

ସେତିକି ବେଳଖୁ ଝିଅଟାଏ ହେଲା !

ଦୁଲ ଧଡପଡ ଅଗଣାକୁ ଓହ୍ଲେଇ ଆସି କହିଲା, "ବୋଉ ମ' । ସାଇପଡିଶା ମାଈକିନେ ସବୁ ଆସିଲେଣି ବେଗି ଆ ।"

ସୁଲକ୍ଷଣାଙ୍କ ହାତଗୋଡରୁ ଜିଅ ଛାଡିଗଲା ପରି ଲାଗିଲା । – ଏ ହିଁସ୍‌କୁଟି ଯାକ କାଇଁ ଆସୁଛନ୍ତି ବା ? ସୁକଟ ଦେଖିବାକୁ ନା ଉଲୁଗୁଣା ଦବାକୁ ? କେତେ ବାଗେ କେତେ ବାଙ୍କେ କଥା କହିବେ ଯେ ଛୁରୀ କଟୁରୀ ପରି ମର୍ମ ଭେଦିଯିବ । ଏମିତି ତ କାହାଘରେ ପିଲା ଜନ୍ମ ହଉ ହଉ କେହି ଆସନ୍ତି ନାହିଁ । ଏଠିକି କାଇଁ ଆସିଲେ ?...

ସତକୁ ସତ ଗୋଛେ ମାଇକିନା ଷଡଙ୍ଗୀକୁ ଆଡହେଇ ଘର ଭିତରକୁ ପଶି ଆସିଲେ । ସୁଲକ୍ଷଣାଙ୍କ ପାଟିରୁ ବଚନ ବାହାରିଲା ନାହିଁ । ସେମାନେ ବି ମୁହୂର୍ତ୍ତେ କେହି କିଛି କହିଲେ ନାହିଁ । ଦୁଲ ଟାଟକା ହେଲା ପରି ଚାହିଁ ରହିଲା । ସୁଲକ୍ଷଣାଙ୍କ ନିଶ୍ୱାସ ଚଳିଲା ନାହିଁ ।

ତା'ପରେ ହୁ କିନା କାଉ କାଉ ରାଉରାଉ ସମସ୍ତେ ରାବି ଉଠିଲେ ।

"ଝିଅଟାଏ ହେଲା ପରା ?"

"କେତେବେଳେ ଜନ୍ମ ହେଲା ? ଗୋରୀ ନା କାଳୀ ?"

"ଉଆଁସ ତ ଉଆଁସ ସେଥିରେ ପୁଣି ଏମିତି ଉଗ୍ରବେଳା !"

"ସପନି ମା' କହୁଥିଲା ସେଇଟା କୁଆଡେ ନାହିଁ ନଥିବା ସୁନ୍ଦରୀ ହେଇଚି !" ସେଗୁଡାକ ସେମିତି ସୁନ୍ଦରୀ ହୁଅନ୍ତି ବା ! ସୁନ୍ଦରୀ ହେଲେ କ'ଣ ହେବ ? ଖୁଣଟା ତ ରହିଗଲା !"

କା... କ. ରା... ରା, ହଇ ହଇ, ଚଇ ଚଇ... ଓଃ !

ଘନା ଘଡେଇ ଝିଅ ସେ ଡେଙ୍ଗୀଛେଳି, କାଣ୍ଡେଇଖଡା ଆଗକୁ କହୁଣେଇ ଆସି କହିଲା, "ଖାଲି କ'ଣ ସୁନ୍ଦରୀ ? ତା' ଦିହରୁ ମହମହ ବାସ୍ନା ବାହାରୁଥିବ ନା !"

ଠପ୍ କିନା ସବୁ ଚୁପ୍ ହେଇଗଲେ । ପିଣ୍ଡାରେ ବେଣୁ ଷଡଙ୍ଗୀଙ୍କ ଗଳା ଖଙ୍କାରିବା ଶୁଣାଗଲା ।

"ହଉ," ଜଣେ କହିଲା, "ଚାଲିବଟି ସେ ଅପସରୀ ନାତୁଣୀକୁ ଟିକିଏ ଦେଖିବା !"

କେମିତି କେଜାଣି ସୁଲକ୍ଷଣାଙ୍କୁ ଉଶ୍ୱାସ ଲାଗିଲା, ଏକ ପ୍ରକାର ଉଷତ ଲାଗିଲା । ଜନ୍ମ ହଉ ହଉ କେହି ତ ଏମିତି ଦିଅଁ ଦର୍ଶନ ହେଲାଭଳି ଭିଡ ଭିଆଇ ଦିଏ ନାହିଁ ।

ଯୋଶୁ ଶଙ୍କିଗଲା ସେମାନଙ୍କୁ ଦେଖି । ସେମାନେ ଘେରିଗଲେ । ଜଣେ କିଏ ତା' କାନି ଆଡେଇ ଦେଲା ।

"ଦେଖମ', ଦେଖମ', କେତେ ଡଉଲ ହେଇଚି ।"

"କେତେ ଗୋରୀ ହେଇଚି ମ' ସତେ, କେମିତି ସୁନାପରି ଝଟକୁଚି ତା' ଦିହ !"

"କେତେ ମୂର୍ତ୍ତି ସେ ହେଇଚି ଦେଖିଲ ଆଗ । ଗୋଟେ ଛ' ମାସିଆ ପିଲାପରି ହେଇଚି ।"

ଯୋଶୁ ତା' ଆଖିକୁ ଚାହିଁ ଡରିଗଲା । ବାଁ ହାତରେ କାନି ଟାଣି କେତେବେଳେ ପିଲାଟାକୁ ଘୋଡେଇ ପକେଇଲା ଜାଣି ପାରିଲା ନାହିଁ ।

"ଆଲୋ, ଆଲୋ, ଆମେ କ'ଣ ତୋ' ପିଲାଟାକୁ ଖାଇଯିବୁ ନା କ'ଣ ବା ? ଯୋଉ ସୁଲକ୍ଷଣୀ ଝିଅଟା ତ । ସେଥିରେ ପୁଣି ଦେଖୁ ଦେଖୁ ଘୋଡେଇ ପକେଇଲୁ ! ହଉ ଚାଲ ସମସ୍ତେ । ଗ୍ରହଣ ଗାଧୁଆ, ଆଉ ପୋଖତି ଛୁଆଁ, ଏକାଥରେ ଲୁଗାଧୋଇ ଗାଧୋଇବାକୁ ହେବ ।"

ଗୋଠ ପାଗି ହେଲାବେଳେ ସୁଲକ୍ଷଣା କାନ୍ଥକୁ ଆଡଘସା ଦେଇ ଠିଆ ହେଇଥା'ନ୍ତି । କଲର କଲର ହେଇ ସେମାନେ ଯାଉଥା'ନ୍ତି । ମଝିରେ ମଝିରେ ଶୁଭୁଥାଏ "ଉଆଁସିଟା ତ ! ଗ୍ରହଣ ବେଳାରେ ପୁଣି ଜନ୍ମ ହେଇଚି । ଅମଙ୍ଗୁଳି ସବାଖାଇଟାଏ ହବ ।"

ଦୁଲ ତା' ଭାଉଜ ପାଖକୁ ଫେରି ଆସିଲା ।

"ଅଲକ୍ଷଣି, ଅସହଣି, ହିଂସିକା ଯାକ ସବୁ । କାହାର ଶିରି ସହିପାରିବେ ନାହିଁ । ସେଗୁଡାକ ଆଉଥରେ ଆସିଲେ ମୁଁ କବାଟ ପକେଇ ଦେବି ।"

ବେଣୁ ଷଡଙ୍ଗୀ ଅଣ୍ଟା ପାଣି କରି ଦିଅଁଘର ପିଣ୍ଡାରେ ସନ୍ଧ୍ୟା କରିବାକୁ ବସିଲେ । ସୁଲକ୍ଷଣା ଗଲେ ରାତି ରୋଷେଇ କରିବାକୁ । ପଥିପାଇଁ ତ' ପୁଣି ରାନ୍ଧିବାକୁ ହେବ !

ରାତି ମାଡି ଆସିଲା । ପାଟିତୁଣ୍ଡ ନୀରବି ଆସିଲା । ଯୋଶୁକୁ ଛପଛପିଆ ନିଦ ହେଇ ଭାଙ୍ଗି ଯାଉଥାଏ । ହାତ ଗୋଡ ପଥର ପରି ଭାରି ଲାଗୁଥାଏ । କାହିଁକି କେଜାଣି ତାକୁ ଭାରି ଡର ମାଡୁଥାଏ । ଚମକିଲା ପରି ସେ ଚାରିଆଡକୁ ଚାହିଁ ଆଖି ବୁଜି ଦଉଥାଏ । ତୁହାଇ ତୁହାଇ ମନେ ପଡୁଥାଏ ତା' ବୋଉ ! ଶୁଣିଲାଣି କି ନାହିଁ କେଜାଣି ? ଶୁଣିଥିଲେ ତ ନିଶ୍ଚେ ପଳେଇ ଆସିଥାନ୍ତା । ହେଇତ' ପିଛିଲା ଗୁରୁବାରଦିନ ଆସିଥିଲା ଥାଳିଏ ରସବରା ନେଇ, ତାକୁ ସୁଆଦ ଲାଗେ ବୋଲି ।

ଯୋଶୁର ଆଖିପତା ଫିଟି ପୁଣି ମଡେଇ ହୋଇ ପଡୁଥାଏ । କାନ୍ଧରେ ବେଗ୍ ଝୁଲେଇ ପଶି ଆସୁଥିବା ସୁରେଶ ଦିଶି ଯାଉଥାଏ । ତା' କପାଳରେ ଖରା ପଡି ଝଟକୁଥାଏ । ସେ କ'ଣ ସହଜେ ଆସି ପାରିବେ ? ସୁନ୍ଦରଗଡ କାହିଁ କେତେ ଦୂର ? ଏଇଠୁ ରାତିଏ ବାଟ ! ଚିଠି ପାଇ କ'ଣ ଭାବିବେ କେଜାଣି । ଝିଅଟାକୁ କ'ଣ ଦେଖିବାକୁ ମନ କରିବେ ।

ପତା ତଳେ ଯୋଶୁର ଆଖିତୋଳା ଢଳଢଳ ହେଲା । ଲୁହ ଜକେଇ ଗଲା ଦି' କୋଣରେ !

କେତେ ରାତି ହେଇଥିବ କେଜାଣି ! ସବୁଆଡ ଶୁନ୍‌ଶାନ୍ । ସମସ୍ତେ ଶୋଇ ଯାଇଥିଲେ କି କ'ଣ ? ପିଲାଟା ତା' କନା ଶେଯ ଉପରେ ହଲଚଲ ହେଲା । ଯୋଶୁ ମଟ ମଟ ଚାହିଁଲା । ସେ ଲେମ୍ପ୍ ଆଲୁଅରେ ବି ତା' ମୁହଁ କେତେ ଉଜ୍ଜ୍ୱଳ ଦିଶୁଥିଲା । କାଳେ କାନ୍ଦିବ, କାନ୍ଦିଲେ ସମସ୍ତଙ୍କ ନିଦ ଭାଙ୍ଗିବ । ସମସ୍ତେ ଆହୁରି ବିରକ୍ତ ହେବେ । ଏମିତିଆ ଝିଅଟାଏ ପୁଣି କାହାକୁ ଶୁଆଇ ଦେଉ ନାହିଁ ରାତିସାରା ।

ସେ ବଡ କଷ୍ଟରେ ଉଠି ବସିଲା । ଧାଈ ଯେମିତି ବତେଇଥିଲା ସେମିତି ପିଲାଟାକୁ ବୁକୁ ପାଖରେ ଧରି କ୍ଷୀର ଖୁଆଇଲା । କଅଁଳ ଉଷୁମ ଓଠ ଭିତରେ ଯୋଶୁର ମାତୃତ୍ୱକୁ ସେ ଆସ୍ତେ ଚୁଚୁମିଲା । ଯୋଶୁର ଦେହସାରା ଶୀତେଇଲା । ଅପୂର୍ବ ଲାଗିଲା ତାକୁ । ସେ ଆଉ ଟିକିଏ ଜାକିଧରିଲା ପିଲାଟାକୁ । କେତେ ନରମ, କେତେ ଚିକ୍କଣ, କେତେ ଗୋରା ଆଉ ସୁନ୍ଦର ତା' ଝିଅଟା ସତେ !

ପିଲାକୁ ଶୁଆଇ ସେ ଶୋଇଗଲା । କେହି ପାଖରେ ନାହାନ୍ତି । ତା' ଆଖି ପଡି ଆସିଲା । ତାକୁ ଲାଗିଲା କିଏ ସବୁ ଛାଇ ପରି ଚଳପ୍ରଚଳ ହଉଛନ୍ତି ସେ ବଖରାଟାରେ । ଚାହିଁଦେଲେ କେହି ନାହିଁ । ବୁକୁ ଦାଉଁ ଦାଉଁ ହୁଏ । ନିଃଶ୍ୱାସ ଧିମେଇ ଯାଏ । ପୁଣି କେତେବେଳେ ଆଖିପତା ମଡେଇ ହୋଇପଡେ ।

ତା' ପାଟି ଶୁଣି ଘର ଭିତରକୁ ପଶି ଆସିଲେ ଦୁଇ ଆଉ ସୁଲକ୍ଷଣା । ଦୁଇ ଯୋଶୁକୁ ହଲେଇ ନିଦରୁ ଉଠେଇଲା । ଯୋଶୁ ସପ୍ନରେ ବିଳବିଳେଇ ପାଟି କରିଥିଲା ।

"ବୁକୁ ଉପରେ ହାତଦେଇ ଶୋଇଲେ ସେମିତି ସପ୍ନ ହୁଏ ।" କହିଲା ଦୁଲ । "ମୁଁ ନହେଲେ ଏପାଖକୁ ମୋ' ଖଟିଆ ପକେଇ ଶୋଇଯିବି କି ?"

ଯୋଶୁ ମୁଣ୍ଡ ହଲେଇ ନାହିଁ କଲା । ସୁଲକ୍ଷଣା କହିଲେ, "ଟିକିଏ ଚେତା ରହି ଶୁଅ । ଦୁଲ ଆଉ ମୁଁ ପାଖ ବଖରାରେ ଅଛୁ ।"

ସେ ଚାଲିଗଲା ପରେ ଦୁଲ କହିଲା, "ପାଣି ପିଇବ ଭାଉଜ ? ତମ ଦିହସାରା ଝାଳ ସରସର ହେଇଯାଇଛି ।"

ପାଣି ଆଣୁ ଆଣୁ ପଚାରିଲା, "କ'ଣ ସପନ ଦେଖିଲ କି ? ଏମିତି ପାଟି କରୁଥିଲ 'ନେଇଗଲା, ନେଇଗଲା' – କିଏ କ'ଣ ନେଇଗଲା ?"

ଯୋଶୁ ସାଷ୍ଟମ ହେଇ ଦୁଲ ମୁହଁକୁ ଚାହାଁଲା । ଆସ୍ତେ କହିଲା –

"ମତେ ଛାଇ ନିଦ ହେଇ ଯାଇଥାଏ । ମତେ ଲାଗିଲା ଏ ଘରେ ଘରେଲୋକ ଭର୍ତ୍ତି ହେଇଗଲେ । ଉଚ୍ଚ ଉଚ୍ଚ ଗୋରା ଗୋରା ସାହେବ ପରି ସମସ୍ତେ । ମର୍ଦ୍ଦ କି ମାଇକିନା ଜଣା ପଡୁ ନଥା'ନ୍ତି । ସେମାନେ ଚୁପ୍‌ଚାପ୍ ପହଁରିଲା ପରି ପଶି ଆସୁଥା'ନ୍ତି । ସେମାନେ କିଏ ବୋଲି ଠଉରାଇଲା ବେଳକୁ ମୋ' ଚାରିଆଡେ ବଡ ବଡ ଗଛ ସବୁ ଠିଆ ହେଇଗଲେ । ସେ ଗଛ ଗହଳି ଭିତରେ ମୋତେ ବାଟ ମିଳୁ ନଥାଏ । ମୁଁ ଧନ୍ଦି ହେଉଥାଏ । ଏତିକି ବେଳେ ଗଛମୂଳ ଅନ୍ଧାର ଭିତରୁ ଗୋଟେ ପଟାଳିଆ ବାଘ ଲମ୍ଫି ଆସିଲା । ମୁଁ ପ୍ରାଣ ବିକଳରେ ଧାଇଁଲି । ମୋ' ବୁକୁ ଉପରେ କ'ଣ ବୁଜୁଳାଏ ଜାକି ଧରିଲା ପରି ଲାଗୁଥାଏ । ବଣରୁ କେତେବେଳେ ବାହାରି ଆସି ମୁଁ ନିଛାଟିଆ ଚଉଡା ରାସ୍ତାରେ ଧାଇଁଥାଏ । ପଛକୁ ଲାଗି ଆସୁଥାଏ ବାଘ । ମୁଁ କାକର୍ଛନିଆ ହେଇ ଘର ଭିତରେ ପଶି କବାଟ ପକେଇ ଦେଲି । ...ରନ୍ଧାଘର ପରି ଲାଗୁଚି । ମୁଁ ପଛକୁ ଚାହାଁଲା ବେଳକୁ ପଦ୍ମ ପତ୍ରରେ ଗୁଡା ହେଇଥିବା ସୁନେଲି ରୋହିମାଛଟିକୁ ସେ ଅଲକ୍ଷଣା ଭୁଆଁ ଧରି ନେଇଛି । ଦାନ୍ତରେ ଜାବିଧରି ମତେ ଚାହିଁଛି । ମାଛଟି ଝାଉଁଳି ପଡିଛି । ମୁଁ କହିପାରୁ ନାହିଁ ସେଇଟା ବିରାଡି ନା ବାଘ, ମାଛ ନା ମଣିଷପିଲା । ସେ ତାକୁ ଟେକି ନେଲାବେଳେ ମୁଁ ପ୍ରାଣପଣେ ପାଟି କରୁଛି, "ନେିଗଲା, ମୋର ସବୁ ସମ୍ପତ୍ତି ନେଇଗଲା, ମୋ' ପଞ୍ଚପ୍ରାଣକୁ ନେଇଗଲା ପରି ମତେ ଲାଗୁଛି ।"

ଯୋଶୁ ଏତକ କହି ହାଲିଆ ହେଇଗଲା । ତା' ଆଖିରୁ ଲୁହ ଗଡି ଆସିଲା କାନଯାଏଁ । ସେ ଛାତକୁ ଚାହିଁ ରହିଲା ଶୂନ୍ୟ ଦୃଷ୍ଟିରେ ।

ଦୁଲ ଭରସା ଦେଲା ପରି କହିଲା, "ସପ୍ନଟା ତ ସପ୍ନ । ସେଥିରେ କ'ଣ ସତ ଥାଏ ? ମନରେ ଭୟ ପଶିଗଲେ ବାଘ ସପ୍ନ ଆସେ । ତୁମେ ଆଦୌ ଡରିବାର ନାହିଁ । ଯେ ଯାହା କହିଲେ କ'ଣ ହବ ? ଦେଖିବ, ସମସ୍ତେ ଯା ମୁହଁକୁ ଚାହିଁଦେଲେ ସବୁ ଭୁଲିଯିବେ ।"

ସେ ନଇଁପଡି ପିଲାଟାର ମୁହଁକୁ ଚାହିଁଥାଏ । "ଯେ ପରା ମୋହିନୀ କନ୍ୟା ଜନ୍ମ ହେଇଚି । ସମସ୍ତଙ୍କୁ ମୋହି ଦବ । ଜଗତଜିଣା ହବ ଏ ଝିଅ ଦେଖୁଥ ! – ଏଥର ଶୋଇପଡ ।"

ଯୋଶୁ ଶୋଇପାରୁ ନଥାଏ । ତା' ଭିତରେ ଆକାଶ ପାତାଳ ମନ୍ଥି ହେଉଥାଏ । ରାତି ଘୋର ଅରଣ୍ୟ ପରି ଘୋଟି ରହିଥାଏ ଦଶଦିଗରୁ । ଆଖିପତା ପଡିବା ଫିଟିବା ଭିତରେ ତାକୁ ଦିଶିଯାଉଥାଏ, ବର୍ଷା, ବିଜୁଳି, ଅନ୍ଧାର, କଳା ଝିମ୍ ଝିମ୍ ଅଥଳ ସମୁଦ୍ର । ପୁଣି ଦିଶି ଯାଉଥାଏ ଅସୁମାରି ରଙ୍ଗର ଅସୁମାରି ଫୁଲ । ଅସଂଖ୍ୟ ଧଳାକଇଁ ଫୁଟି ଯାଉଥାଏ ପୋଖରି ସାରା । ପୁଣି ହାଉକିନା ହୁଳାଟାଏ ଖସିଯାଉଥାଏ ତାଳୁରୁ ତଳିପାଯାଏଁ । ଆଖି ଫିଟିଯାଉଥାଏ । ତୁହାଇ ତୁହାଇ ଶୁଭୁଥାଏ 'ଉଆଁସରେ ଝିଅ ଜନ୍ମହେଲା', 'ଗ୍ରହଣ କାଳରେ ଜନ୍ମହେଲା ।' ସେ ଛୋଟ ବତୀଟିର ମିଟିମିଟି ଆଲୁଅକୁ ଆଖିରେ ପତା ନ ପକାଇ ଚାହିଁରହେ । ଆଲୁଅ ଲୁହରେ ଟଳମଳ ହୋଇ ଏତେ ବଡ ହୋଇଯାଏ । ତା'ପରେ ଗଡିଯାଏ ଲାଞ୍ଜିବାଟେ କାନ ପର୍ଯ୍ୟନ୍ତ ।

– କେମିତି ସତେ ସେ ତାକୁ ଜଗି ପାରିବ ? କେମିତି ଦୁଇ ବି ଜଗି ପାରିବ ? ସେମାନେ ଯେମିତି ହେଉ ତାକୁ ମାରିଦେବେ । ସେମାନେ ବଞ୍ଚିବେ ବୋଲି ତାକୁ ମାରିଦେବେ । ତା' ମୁହଁକୁ ଚାହିଁବେ ନାହିଁ, ତଣ୍ଟିରେ ଗୋଇଠି ମଡେଇ ଦେବେ । ତାକୁ ଭିଣି ବିଦାରି ପକେଇବେ । ଠେକୁଆ ଛୁଆଟାକୁ କଟାସ ପରି ବେଢିଯିବେ ।

ଯୋଶୁ ଦେହସାରା ଠକ୍ ଠକ୍ ହୋଇ ଥରିଲା । ଶୀତରେ କମ୍ପିଲା । ସେ ହାତଗୋଡ ମୁଦା କରିନେଲା । ଉହୁ ଉହୁ ହେଲା । ସେତିକିରେ ଦୁଲର ପାତଳ ନିଦ ଭାଙ୍ଗିଗଲା । ସେ ଉଠିଆସି ଭାଉଜ କପାଳରେ ହାତ ରଖିଲା ।

"ଆରେ ତମକୁ ତ' ଭରି ଜର । ମୁଁ ଆଗ କନ୍ଥାଟାଏ ମଡେଇଦିଏ । ଯାଉଛି ବୋଉକୁ ଉଠେଇବି । କ'ଣ କେମିତି କରିବାକୁ ହବ । ଜରଟା ହେଲା କାହିଁକି ?"

ଯୋଶୁ ଜମା କିଛି ଶୁଣି ନଥିଲା ।

ସୁଲକ୍ଷଣା ଉଠିଲେ । ଷଡଙ୍ଗିଏ ଉଠିଲେ ।

"ଆମ କର୍ମକୁ ପରା ସବୁ ବିପରି । ଦେଖୁନ ଆଗ ମୁହଁରେ କେମିତି ରୋଗ ବେଦନା ଦେଖେଇଲାଣି ।"

"ଏମିତି କାହିଁ ଗୁଡାଏ ଗଜଗଜ ହଉଚ । ଟିକିଏ ଦେଖୁଥାଅ । ମୁଁ ଯାଏ ସେ ଧାଇକୁ ଡାକିଆଣେ ।"

ଦୁଲ କହିଲା, "ଡାକ୍ତରଙ୍କୁ ଡାକିଲେ ଭଲ ହୁଅନ୍ତା । ସେ ଇନ୍‌ଜେକ୍ସନ ହେରିକା କ'ଣ ଦେଇଥା'ନ୍ତେ ।"

କଥା କାଟି ସୁଲକ୍ଷଣା କହିଲେ, "ଏମିତି ତ ପାହାନ୍ତିଆ ହେଇଗଲାଣି । ପୋଖତି ଜର ଜଣଜଣଙ୍କୁ ହୁଏ । ସେ ସପନି ମା' ଆସି ଦେଖି କହୁ । ତେଣିକି ଲୋଡା ହେଲେ ଡାକ୍ତରଙ୍କୁ ଡାକିବା ।"

ଷଡଙ୍ଗିଏ ମଧ୍ୟ ସେଥିରେ ରାଜି ହେଲାପରି ବାହାରିଗଲେ ।

ସପନି ମା' ଆସୁ ଆସୁ ଉହ୍ନେଇଟାଏ ସଜ କଲା । କାଠ ନିଆଁ ଧରୁ ଧରୁ ସୋରିଷ ତେଲ ରସୁଣ ଫୁଟେଇ ଯୋଶୁର ଅଣ୍ଟାପିଠି ତଳିପା, ଦେହସାରା ପେଶିଦେଇଗଲା ।

"କଞ୍ଚା ଦିହ, ଏମିତି ଜରଟାଏ ହେଇଗଲା ନା । ଓହ୍ଲେଇଯିବ । ଭଲ ରାଗପାଣି ବେସର କରିଦିଅ, ପଥି ସାଙ୍ଗରେ ଖାଇଦବ । ଏଇନେ ଦି' ଗ୍ୟରିଦିନ ଆସି ମୁଁ ତାକୁ ସେକା ସେକି କରିଦେବି । ପିଲାଟାକୁ ତ' ପୁଣି ତେଲ ଲଗେଇବାକୁ ହବ ନାଁ ନାଇଁ ! ସେ ତ' ସହଜେ ସୁନାପ୍ରତିମା । ତାକୁ ଗୁଆଘିଅରେ ମାଜଣା କଲେ ଆଉରି ଝଟକିବ ।"

"ଭାଇଜ ପାଇଁ ଖାଇବାକୁ ଘିଅ କିଣା ହେଇଚି । ସେଇଥିରୁ ଝିଅ ଦିହରେ ଲଗେଇବା ନା!" କହିଲା ଦୁଲ । ସୁଲକ୍ଷଣା କିଛି କହିଲେ ନାହିଁ ।

ଯୋଶୁ ଦେହରେ ଉଷୁମତେଲ ଘସିଲା ବେଳେ ତାକୁ ଫାଇଁ ଫାଇଁ ଲାଗୁଥାଏ । ସପନି ମା' ଜାଣିଲା ପରି ଶୁଣ୍ଠି ବିସ୍ୱଳି କାନିରେ ବାନ୍ଧି ଆଣିଥିଲା । ତାକୁ ପକେଇ ପାଣି ଫୁଟେଇ ଦେଲା । ଫୁଙ୍କି ଫୁଙ୍କି ପିଇବାକୁ ଦେଲା ।

ଯୋଶୁକୁ ଉଶ୍ୱାସ ଲାଗିଲା । ଆଖି ପଡିଆସିଲା ।

"ଗୋଟେ କ'ଣ ଉଶ୍ୱାସିଆ ଉଷୁମ ଗ୍ୟଦର ଦିଅ, ଘୋଡେଇଦବା । ନିଦ ହେଇଯିବ ।" ସପନିଆ ଘୁଞ୍ଚି ଆସିବାରୁ ବାକି ସମସ୍ତେ ଘୁଞ୍ଚି ଆସିଲେ ।

"ମୁଁ ଆସୁଛି ସାଆନ୍ତେ ! ଲୁଗା ବଦଳ କରି ଧାଇଁ ଯାଇ ଧାଇଁ ଆସିବି । ପିଲା କଥା ସମ୍ଭାଳିବି । ମା'ର ଜର ଓହ୍ଲେଇଗଲାଣି । ତମର ସବୁ ଶୁଭ ହବ ସାଆନ୍ତେ । ୟେ ଯେ ତମ ଘରକୁ ଆସିଚି, କୋଟିକେ ଗୋଟିଏ! ପଛରେ ମନେ ପକେଇବ ସପନିମା' ସତ କହୁଥିଲା ବୋଲି ।"

ଯୋଶୁ ଶୋଇଗଲା ରାତିକ ଯାକର ନିଘୋଡ ନିଶ୍ଚଳ ନିଦ ।

କଅଁଳ ଧଳା କନା ଭିତରୁ ଜହ୍ନପରି ମୁହଁ ଦିଶୁଥିଲା ଝିଅଟିର । ବୁଜିଲା ଆଖି କପାଳ, ନାକ, ଓଠ, ଯେ ଯାହାକୁ ଅପୂର୍ବ !

ବେଶ୍ କିଛି ସମୟ ଶୋଇଗଲା ସାରା ପୃଥିବୀ, ନୀରବ, ନିଶ୍ଚଳ । ବହୁ ଦୂରରୁ ପକ୍ଷୀଡାକ ଶୁଭିଲା । ଆକାଶରୁ ଘୁଞ୍ଚିଗଲା ରାତିର ସମୁଦ୍ର । ଖୁବ୍ ପାଖରେ କାକର ପବନ ଫୁଲ ପାଖୁଡା ପରି ବୁଣି ହୋଇଗଲା । ବାରି ହେଉଥିଲା ନୂଆ ସକାଳର ମହକ ।

ଯୋଶୁର ପତାତଳେ ଢଳଢଳ ହେଲା ଡୋଳା । ନିଦ ଅଳସ ଭାଙ୍ଗିଲା ଆଖି ପତା ଉପରେ । ତାକୁ ଲାଗିଲା କିଏ ସବୁ ଆସି ଠିଆ ହେଇଛନ୍ତି । – ଉଜ୍ଜ୍ୱଳ ସୁନାରଙ୍ଗର ଦେବ ଦେବୀମାନେ । ଝରକା ଫାଙ୍କବାଟେ କଅଁଳ ଖରା ସୋରା ସୋରା କାନ୍ଥକୁ ଆଉଜି ଠିଆ ହୋଇଥିଲା । ଯୋଶୁ

ଆଖି ଅଳ୍ପ ମେଲି ପୁଣି ବୁଜିନେଲା ।

କିଏ ସବୁ କଥାବାର୍ତ୍ତା ହେଉଥିଲେ । ବହୁ ଦୂରରେ ମୃଦୁ ମୃଦୁ ମଧୁର କଥା । ଭାରି ପରିଚିତ ଆପଣାର ସ୍ୱର । ଯୋଶୁ ଉଲୁସି ଉଠିଲା । କେହି ତା' ଦେହକୁ ଆଉଁସି ଦେଉଥିଲା । ଶୀତକଣ୍ଟା ମାରିଗଲା ତାଳୁରୁ ତଳିପାଯାଏଁ ।

ନିଦ ଭାଙ୍ଗିଗଲା । ସେ ଆଖି ଫିଟେଇ ଚାହିଁଲା । ତାକୁ ଲାଗିଲା ପୋଖରିକ ଯାକ ପଦ୍ମ ଫୁଟିଯାଇଛି ଏକାଥରକେ ।

ତା' ପାଖରେ ବସିଛି ତା' ମା' । ବଖରା ଦୁଆରେ ବାପା ଠିଆ ହେଇଛନ୍ତି । ତାଙ୍କ ପାଖକୁ ସୁରେଶ ସବୁଠୁ ଉଞ୍ଚା, ସବୁଠୁ ସୁନ୍ଦର ! ଦୁଲ, ଶାଶୁମା'... ।

ଯୋଶୁ ସମ୍ଭ୍ରମରେ ଉଠିବାକୁ ଓହଟି ହେବାରୁ ଆକାଶରୁ ପୁଷ୍ପ ବୃଷ୍ଟି ହେଲାପରି ସମସ୍ତଙ୍କ ସ୍ୱର ଶୁଭିଲା, "ନା, ନା ଶୋଇଥା !"

ସନ୍ଧ୍ୟା ସୁଦ୍ଧା ସମସ୍ତଙ୍କ ପାଖରେ ଖବର ପହଞ୍ଚି ଯାଇଥିଲା । ସମସ୍ତେ ପହଞ୍ଚି ଯାଇଥିଲେ ସକାଳୁ ସକାଳୁ । ସୁରେଶ ବି ରାତିକ ରାସ୍ତା ପାରିହୋଇ ଚାଲି ଆସିଥିଲା ସୁନ୍ଦରଗଡରୁ ।

"ଉଠିବଟି, ମା'ମାନେ, ବାପାମାନେ ! ମୁଁ ମୋ' ସୁନାପ୍ରତିମାକୁ, ମୋ' ରାଜଜେମାକୁ ଟିକିଏ ସେକାସେକି ଟେକପାଳ କରିଦିଏ ।" – ଶୁଭିଲା ସପନିମା'ର ସ୍ୱର ।

ମା' କେବଳ ବସି ରହିଲା ଯୋଶୁ ପାଖରେ । ବାକିସବୁ ଘୁଞ୍ଚିଗଲେ ।

ଦାଣ୍ଡ ଦୁଆରୁ କେହିଜଣେ ପାଟି ଶୁଣେଇଲା ପରି ଶୁଭିଲା –

"ଆହେ, ଭାଇନା ଅଛ କି ? ମୁଁ ସୁଦର୍ଶନ ଆସିଛି ।" –

ବେଣୁ ଷଡଙ୍ଗୀ ଆଶ୍ଚର୍ଯ୍ୟ ହୋଇ ଡାକିଲେ, "ଆରେ ସୁଦର୍ଶନ, ମୁଁ ତ' ତୋରି ପାଖକୁ ଆଜି ଯେମିତି ହେଲେ ଯାଇଥା'ନ୍ତି ।"

"ମୁଁ ଜାଣିଚି ଭାଇନା ! ମୁଁ ପରା ସେଇଥିପାଇଁ ନିଜେ ଆସିଲି । ରହିପାରିଲି ନାହିଁ । କାଲି ଗ୍ରହଣକାଳ ଉତ୍ତାରୁ କିଏ କହିଲା ତମର ନାତୁଣୀ ହେଇଚି । ପୂର୍ଣ୍ଣ ଗ୍ରାସବେଳେ ଜନ୍ମ ହେଇଚି । ମୋତେ କୌତୂହଳ ହେବାରୁ ମୁଁ କୋଷ୍ଠି ଗଣନା କରି ତାଟକା ହେଇଗଲି । ତମକୁ ଆଉ କ'ଣ କହିବି ଭାଇନା ଏଭଳି କୋଷ୍ଠି ମୋ' ଦିହକରେ ମୁଁ କରିନାହିଁ ।"

ତା' ଉତ୍ତାରୁ ଚାରିଦିଗରୁ ଶ୍ଳୋକମାନ ଲହଡି ମାଡିଆସିଲେ । ଗହ ଗହ କମ୍ପିଲା ଷଡଙ୍ଗୀଙ୍କ ଘର । ଯୋଶୁ ମା' ପାଖରେ କାନ୍ଥକୁ ଆଉଜି ବସିଥିଲା । ତାକୁ ଦେଖା ଯାଉଥିଲା ପଦ୍ମପୋଖରି ସାରା ଫୁଟିଲା ପଦ୍ମ । ସୁଲକ୍ଷଣା ବି ସମସ୍ତଙ୍କ ସାଙ୍ଗରେ ପାଖୁଡା ମେଲି ଦୋହଲୁଥିଲେ ସକାଳ ପବନରେ ।

ସତକୁ ସତ ମହକୁଥିଲା ପଦ୍ମବନ । ଦେବୀ ବିଜେ କରିଛନ୍ତି ପରା !!!



# ଯୋଗିନୀ

"ବନ୍ଧୁ ବରେଷୁ, ଗୋଟାଏ ବିଚିତ୍ର ଅନୁଭବ କଥା ଲେଖୁଛି, ଶୁଣନ୍ତୁ! ଏଇ ପଅର ଦିନ କଥା। କିଛି ସମୟ ପୂର୍ବରୁ ମୁଁ ପ୍ରାୟ ବିଭୋର ହୋଇ ଫେରିଥାଏ। ଫୁଟିଲା ଧଳା କଇଁଫୁଲ ଉପରେ ଜହ୍ନ ଆଲୁଅ ଆଉ ପାଣି ଉପରେ ଛୋଟ ଛୋଟ ବର୍ଷା ବିନ୍ଦୁ ପଡିବାର ଦୃଶ୍ୟ ଅନେକ ବେଳଯାଏଁ ମୋତେ ଆଚ୍ଛନ୍ନ କରି ରଖିଥିଲା। ସେଇଠୁ ମୁଁ ଫେରିଲି ସତ। କିନ୍ତୁ ଘାସ ପଡିଆ ପାରି ହେଲା ବେଳେ ଅନୁଭବ କରୁଥିଲି ଯେ ମୁଁ ମେଘଖଣ୍ଡ ପରି ଓହ୍ଲେଇ ଆସୁଥିଲି ଧରାପୃଷ୍ଠକୁ। ଏତେ ହାଲୁକା, ଏତେ ମୁଲାୟମ ଯେ ମୋର ସ୍ଥୁଳ ଆକୃତି ଅଛି ବୋଲି ମୁଁ ଜାଣିପାରୁ ନଥିଲି।"

ନା! ମୋର ଏମିତି ଅନୁଭବ ହୁଏ ନାହିଁ। ଅନ୍ତତଃ ଯ୍ୟା ପୂର୍ବରୁ କଦାପି ନୁହେଁ। ହୋଇପାରେ ବେଳେବେଳେ ମୁଁ କୌଣସି କାରଣରୁ ଉଲ୍ଲସିତ ହୋଇଉଠିଲେ ଏମିତି ଉଡିଗଲା ପରି ବା ବୁଡିଗଲା ପରି ଆକ୍ତା ମାକତା ଲାଗିଛି କିନ୍ତୁ ଏଭଳି କେବେ ନୁହେଁ।

ଉହୁଁ, ମୁଁ କବି ବି ନୁହେଁ ଆପଣ ଜାଣନ୍ତି। ଭଅଁର ପରି, ମହୁମାଛି ପରି ମତ୍ତ ବିଭୋର ହୋଇ ଉଡି ବୁଲିବାର ମାନସିକତା ମୋର ନାହିଁ। ମୁଁ ଅମୃତ କଳସ କଳ୍ପନା କରିପାରେ କିନ୍ତୁ ସେ ସ୍ୱାଦ କଳ୍ପନା କରିପାରେ ନାହିଁ। ମେଘ ଉପରେ ବିଚରଣ କରିବାର ସ୍ୱାଭାବିକ ବିଳାସ ମୋର ନାହିଁ। ମାନୁଛି ଯେ, ତାରୁଣ୍ୟ ପାରିହେଲା ବେଳେ କବି ଭାବ ମୋତେ ଘାରିଛି। ଜୀବନର ସ୍ୱପ୍ନମୟତା, ଶରୀରର କ୍ଷୁଧାମୟତା ମୁଁ ଅନୁଭବିଛି। କିନ୍ତୁ ସେ ଘାଟ ଛାଡି ଜୀବନ ପ୍ରବାହ ଢେର୍ ବାଟ ବହି ଆସିଲାଣି। ତେବେ...

ବୟସରେ, ଅନୁଭବରେ ଜୀବନର ଉଠାଣି ଗଡାଣି ପାରିହେବାରେ ମୋତେ ଜଣେ ପୋଖତ ମଣିଷ ବୋଲି ଅଭିହିତ କରାଯାଇପାରେ। ସହଜରେ ଭଳିଯିବା ଲୋକ ମୁଁ ନୁହେଁ। କେହି ମୋତେ ଚକମା ଦେଖେଇ ଭୁଲେଇ ଦେବ, ଏଇଟା ମୁଁ ଅନ୍ତତଃ ବିଶ୍ୱାସ କରୁନାହିଁ। ମୁଁ ଜାଣେ ଆପଣ ବି ବିଶ୍ୱାସ କରନ୍ତି ନାହିଁ।

ଆପଣ ବି ଜାଣନ୍ତି ମୋର ନିଶାପାଣି ଚଳେ ନାହିଁ, ଚିଲମ ଚୁରୁଟ ଚଳେ ନାହିଁ, ଚରସ୍ ଗଞ୍ଜା ଚଳେ ନାହିଁ । ମୋର ଆଖିକାନ ଖୋଲା ଥାଏ । ବ୍ୟାୟାମସିଦ୍ଧ ଶରୀର, ତର୍କସିଦ୍ଧ ମନ, ବିଚାରଶୀଳ ବୁଦ୍ଧି ସଦା ତତ୍ପର ଥା'ନ୍ତି । ଏଣୁ କୁହୁଡି ପହଁରିବା ମୋର ଅଭ୍ୟାସ ନୁହେଁ । ମୁଁ ଠକିଯାଏ ନାହିଁ ସହଜରେ ।

ଏତେ କଥା ମୁଁ ଆପଣଙ୍କୁ କହୁନାହିଁ । କହୁଛି ମୋତେ । ନିଜକୁ ସମ୍ବୋଧନ କରୁନାହିଁ ସତ । କିନ୍ତୁ ଆପଣଙ୍କୁ ଆଳ କରି, ନିଜକୁ ହିଁ ଦମ୍ଭ ଦେଇ ଲାଗିଛି । କାରଣ ଲାଉତଙ୍କ ପରି ମୋର ଆତ୍ମବିଶ୍ୱାସ ଭୂଇଁରେ ଲୋଟିପଡିଛି । ରଞ୍ଜା ଦେଇ ତାକୁ ଟେକି ଠିଆ କରିବା ପାଇଁ ଏ ପ୍ରୟାସ ।

ମୁଁ କାହିଁକି ଦୋହଲି ଯାଇଛି, ତାହା କହିବା ପୂର୍ବରୁ ମୁଁ ନିଃସର୍ତ୍ତ ମାନି ନେଉଛି, ଯେ ମୋର ବର୍ତ୍ତମାନ ସ୍ଥିତିରେ ଯାହା ଘଟିଗଲେ ସୁଦ୍ଧା ମୁଁ ଆଉ ବିସ୍ମିତ ହେବିନାହିଁ । ସ୍ଥୁଳ ଜଗତଟା ଧୂଆଁ ହୋଇଗଲେ ତେଣିକି ତାହା ଯେକୌଣସି ଆକୃତି ନେବାରେ ବିସ୍ମିତ ହେବାର କିଛି ନାହିଁ ।

ମୋର ଘର ଆପଣ ଦେଖିଛନ୍ତି । ଭଡା ନେଇଥାଏ । ଏକୁଟିଆ ଥାଏ । ପିଲାମାନେ ସବୁ ଦୂରରେ । ମୋ' ସ୍ତ୍ରୀ ମଝିରେ ମଝିରେ ଆସନ୍ତି, କିନ୍ତୁ ନାତି ନାତୁଣୀଙ୍କ ମୋହ ତାଙ୍କୁ ଟାଣିନିଏ । ମୁଁ ତା'ହେଲେ ଏଠି ରହେ କାହିଁକି ? ତା'ର କାରଣ ହେଲା ଯେ ମୁଁ ଏଇଠି ପଚାଶ ବର୍ଷ ରହିଗଲିଣି । ମୋର ଚେର ମାଡିଗଲାଣି । ମୁଁ ଏ ଭୂଇଁ ଛାଡି ଯାଇପାରିବି ନାହିଁ । ଦୂରର ସେ ପାହାଡ ଯେଉଁଠି ସୂର୍ଯ୍ୟ ଉଏଁ – ପଶ୍ଚିମରେ ନଈ, ଓସାର ଦାଣ୍ଡର ଏ ମୁଣ୍ଡେ ମନ୍ଦିର ସେ ମୁଣ୍ଡେ ମନ୍ଦିର । ଏଇତ ଆପଣମାନଙ୍କ ପରି ସୁହୃଦ, ଦକ୍ଷିଣା ପବନ, ଆଷାଢର ଅସରା ମେଘ, ଆକର୍ଷଣ ନିଶ୍ଚୟ । କିନ୍ତୁ ମୋର ଏଠି ଏମିତି ଜଡିଯିବାର କାରଣ ନୁହେଁ । ମୋର ଗୋଟାଏ ଅଦୃଶ୍ୟ ରକ୍ତନାଳି, ଏ ଭୂଇଁ ସାଙ୍ଗରେ ଯୋଡି ହୋଇ ରହିଛି । ସେଇଟା ଛିଡିଗଲେ ମୁଁ ବଞ୍ଚିପାରିବି ନାହିଁ । ସେଇଟା କ'ଣ ମୁଁ ଏଯାଏଁ ଜାଣିନାହିଁ । କିନ୍ତୁ ଯେତେଥର ମନ ହେଇଚି, ଜବଲପୁର ପୁଅ ପାଖକୁ ଯିବା ପାଇଁ ବା ତ୍ରିଭାନ୍ଦ୍ରମ୍ ଝିଅ ପାଖକୁ, ମୁଁ ତା'ର ଟାଣ ଅନୁଭବ କରିଛି ।

ଛାଡନ୍ତୁ, ଏକଥା ମୋଟାମୋଟି ଆପଣ ଜାଣନ୍ତି । ଏ କିଛିଦିନ ହେଲା ଆପଣ କାହିଁକି ମୋ' ବସାକୁ ଆସି ନାହାଁନ୍ତି ବୋଲି ଭାବୁଥିଲି, ଶୁଣିଲି ଆପଣ ଇନ୍ଦୋର ଯାଇଛନ୍ତି । ଫେରୁ ଫେରୁ ମାସେ ଲାଗିଯାଇ ପାରେ । ମୁଁ ସେତେକାଳ ଆଉ ଏ ଅଜବ କଥା ନିଜ ଭିତରେ ରଖି ରହିପାରିବି ନାହିଁ, ଏଣୁ ଆପଣଙ୍କୁ ଚିଠିରେ ଜଣାଇବାକୁ ବସିଛି ।

ଆପଣ ମୋ' ଘରକୁ ଆସିଛନ୍ତି ବହୁବାର । କିନ୍ତୁ ମୋ' ଘରର ପୂର୍ବକୁ ତିନିଟା ଘର ଛାଡି ଗୋଟିଏ ଏକତାଲା ନାଲିରଙ୍ଗର ପୁରୁଣା କୋଠାକୁ ଲକ୍ଷ୍ୟ କରିଛନ୍ତି କି ? ନା, ବୋଧହୁଏ କରିନାହାଁନ୍ତି । ନହେଲେ ମୋତେ ନିଶ୍ଚୟ କହିଥା'ନ୍ତେ । ସେ ଘରଟାର ସେମିତି କିଛି ବିଶେଷତ୍ୱ ନାହିଁ । କିନ୍ତୁ ସେଇ ତ ଯେ ରହେ... ନାଁ, ନାଁ, ମୁଁ ତାକୁ ଜାଣେ ନାହିଁ । ମୁଁ ବି ତାକୁ ଦେଖି ନଥିଲି । ଦେଖି ନଥିଲି ନୁହେଁ । ଦେଖିଥିଲି, କିନ୍ତୁ ସେଇଟା ନ ଦେଖିଲା ସାଙ୍ଗେ ସମାନ ।

ମୁଁ ସେଦିନ ଜହ୍ନ ପକ୍ଷ ଦେଖି ଘର ସାମ୍ନାର ପୋଖରୀ କୂଳରେ ବସିଥିଲି । କୃଷ୍ଣଚୂଡା ଗଛ

ଟଲେ ଯେଉଁ ସିମେଣ୍ଟ ବେଞ୍ଚ ଉପରେ ଆମେ ଅନେକ ସମୟ ବସି ଗପ କରିଚେ, ସେଇ ବେଞ୍ଚରେ ବସିଥିଲି । ନିର୍ମଳ ଜହ୍ନ ରାତିରେ କଇଁ ଫୁଲ ଦେଖାଯାଉଥିଲା ଚମତ୍କାର । ପାଣିରେ ଚନ୍ଦ୍ର ବିମ୍ବ ଟହଲି ଯାଉଥିଲା ଛୋଟ ଛୋଟ ବର୍ଷା ବିନ୍ଦୁରେ । ରାତି ବେଶି ନୁହେଁ । କିନ୍ତୁ ଚାରିଆଡ ଶୁନ୍‌ଶାନ୍ ହେଇଯାଇଥିଲା । କିଛି ଦୂରରେ ରେଳଲାଇନ୍ । ତା' ଆରପାରି ବୁଦ୍‌ବୁଦି କଣ୍ଟା ଜଙ୍ଗଲ ଦିଗନ୍ତ ଯାଏଁ । ଏସବୁ କିନ୍ତୁ ନିରାପଦ । ଆମର ଚରାଭୂଇଁ । ଆମେ ସାଙ୍ଗ ହୋଇ ସେ ଖଣ୍ଡମଣ୍ଡଳ ଭ୍ରମିଛେ ।

ମୁଁ ସତକୁ ସତ ବିଭୋର ହୋଇ ପୋଖରୀ ଆଡେ ଚାହିଁ ବସିଥାଏ । ଉଠିବାର କୌଣସି କାରଣ ନଥାଇ ମୁଁ ସେଇଠୁ ଉଠିଲି । ମୁଁ ଖାଇ ସାରିଥାଏ । ଆଉ କିଛି ସମୟ ସେଇଠି ବସି ପାରିଥା'ନ୍ତି । କିନ୍ତୁ ଉଠିଲି । କାହିଁକି ଉଠିଲି ମୋତେ ପଚରନ୍ତୁ ନାହଁ । କାରଣ ମୁଁ ଜାଣିନାହିଁ ।

ତା'ପରେ ତ ସେଇ ବିଚିତ୍ର ଅନୁଭବ । ମୋତେ ଲାଗିଲା ମୁଁ ଶୂନ୍ୟରେ ପହଁରୁଛି । ଗୋଟାଏ ମୋଟାମୋଟି ଦିଗର ଧାରଣା ମୋର ଥାଏ । ସେଥିପାଇଁ ଆସି ଘରେ ପହଁଚିଲି । କିନ୍ତୁ ସେଇ ହାଲୁକା ପଣ ଦେଇ ମୁଣାରୁ ଚାବି କାଢିଲା ପରେ ବି ଲାଗୁଥିଲା, ମୁଁ କୌଣସି ସ୍ଥୂଳ ପଦାର୍ଥ ଧରିନାହିଁ ।

କବାଟ ଫିଟେଇ ପାରିବି ବୋଲି ବିଶ୍ୱାସ ନଥିଲା । କିନ୍ତୁ ଭିତରେ ପଶିଲି, ଆଉ ମୋର ସେ ଲମ୍ବା ସୋଫାଟାରେ ଫୁଲଟିଏ ଖୋଲିଦେଲା ପରି ବସିଲି । ସୋଫା ଦାଢରେ କେବେ କେମିତି ବସିଗଲେ ସେଇଟା କଟମଟ ହୁଏ । ସେଦିନ କିଛି ହେଲାନାହିଁ । ମୁଁ ଭାବିଲି ମୁଁ ବୋଧହୁଏ, ଠିକ୍ ତା' ଉପରେ ବସିନାହିଁ । ତା' ଉପରେ ପହଁରୁଛି କେବଳ । ହେଇ ଉହୁଙ୍କିଗଲେ ସିଲିଂରେ ମୁଣ୍ଡ ବାଜିବ !

ଘରକୁ ଆସିଲା ବେଳେ ଆଉ ଗୋଟାଏ ଅନୁଭବ କଥା ଭୁଲଗଲି କହିବାକୁ । ମୁଁ କହିଛି ଚାରିଆଡ ଶୁନ୍‌ଶାନ୍ ହୋଇଯାଇଥିଲା । କେହି କୁଆଡେ ନଥିଲେ । କିନ୍ତୁ ମୁଁ ଜାଣିପାରୁଥିଲି ଯେ ମୋ' ପଛେ ପଛେ କେହି ଜଣେ ଥିଲା । ମୋର ଆଦୌ କୌତୁହଳ ନଥିଲା ଲେଉଟି ଚାହିଁ ଦେବାକୁ । ମୁଁ ଏତେ ମାତ୍ରାରେ ଆତ୍ମବିଭୋର ଥିଲି ଯେ ସେ କଥାଟାକୁ ଆଦୌ ଗୁରୁତ୍ୱ ଦେଲିନାହିଁ । ହଅ ଅ, କିଏ ହେଇଥିବ !

ସୋଫା ଉପରେ ପହଁରିବା ଅବସ୍ଥାରେ ହଠାତ୍ ଦୁମ୍‌କିନା ମୋର ସବୁ ଓଜନ ଫେରିଆସିଲା । ମୋ' ବୁକୁ ଦାଉଁ ଦାଉଁ ହେଲା । ମୁଁ ମଟମଟ ଚାହିଁ ରହିଥାଏ । ମୋର ଦେଖିବାରେ କୌଣସି ତ୍ରୁଟି ନଥିଲା, ବିଶ୍ୱାସ କରନ୍ତୁ ମୋ' ଦାଣ୍ଡ ବଖରାର ପରଦା ସେପଟେ, ସେ ଠିଆ ହେଇଥିଲା ।

ଗୋରା ପାଦରେ ବାଦାମି ରଙ୍ଗର ପାଣ୍ଡେଇ । ତା' ଉପରକୁ ହାଲୁକା ମନ୍ଦାର ରଙ୍ଗର ଶାଢି । କେବଳ ଆଖି ନୁହେଁ, ମୋର ସର୍ବାଙ୍ଗ କହିଲା, ମୁଁ ତାକୁ ଚିହ୍ନିଛି । ଏଇତ ସେଇ ନାଲି କୋଠାର ଅଧିକାରିଣୀ । ମାଇ ଗଡ୍, ସେ ପରଦା ଟେକି ଘର ଭିତରକୁ ପଶି ଆସିଲେ ମୁଁ କ'ଣ କରିବିଟି ।

ଆପଣଙ୍କୁ କହିବାରେ ମୋର ଦ୍ୱିଧା ନାହିଁ ଯେ, ମୁଁ ଏପରି ନାରୀ ରୂପ କେବେ ହେଲେ ଦେଖିନାହିଁ । ସ୍ତବ୍ଧ ଚକିତ, ବିମୂଢ଼, ନିସ୍ତେଜ କରିଦେଲା ଭଳି ସୁନ୍ଦରୀ । ସୌନ୍ଦର୍ଯ୍ୟ କହିଲେ ଯେଉଁ ଲାବଣ୍ୟ ବୁଝାଏ ଏଇଟା ତାହା ନୁହେଁ – କ'ଣ କିଛି ଅପାର୍ଥିବ ଅନନ୍ୟତା ଥିଲା ସେ ରୂପରେ । ମୁହୂର୍ତ୍ତେ ମାତ୍ର ମୁଁ ଦେଖିଛି । ସେତିକି ବୋଧହୁଏ ଯଥେଷ୍ଟ, ଆଉ ଅଧିକ ଦେଖିଲେ ହୁଏତ, ଜଳିଯିବି ।

ଦିନସାରା ବିଜୁଳି – ଚମକିଲା ପରି ମନେପଡ଼ିଯାଉଥିଲା, କିନ୍ତୁ ମୋତେ ଆଦୌ ଉତ୍ତେଜିତ କରୁ ନଥିଲା । ଆଉ ଥରେ ଯାଇ ଦେଖିବାକୁ ଆକୃଷ୍ଟ ବି କରୁ ନଥିଲା ।

ମୁଁ ଭାବୁଥିଲି ଏଇତ ସେ ବିଶ୍ୱମୋହିନୀ ଯେ ଦେବାସୁର ସମସ୍ତଙ୍କୁ ବିମୂଢ଼ କରିଦେଇ ପାରେ । କାହାକୁ ଅମୃତ ଦେଇ ଅମର ଜରାହୀନ ଅନନ୍ତ ଯୌବନ ଦେଇ ଦେଇପାରେ, କାହାକୁ ଅମୃତର ସ୍ୱାଦ ଚଖେଇ ଦେଇ ମସ୍ତକ ଛେଦନ କରିଦେଇ ପାରେ । ଏଇତ ନାରୀର ଆଦିରୂପ, ମୋହିନୀ – ଯେ ମୁଗ୍ଧ କରେ, ବିମୂଢ଼ କରେ ।

ପୋଖରୀ ହୁଡ଼ାରେ ସିମେଣ୍ଟ ବେଞ୍ଚ ଉପରେ ବସିଥିଲା ବେଳେ ଥରେ ହେଲେ ମୁଁ ତା' କଥା ଭାବିନାହିଁ । ମୋର କୌଣସି ବିକ୍ରିୟା ନ ହେବା, ମୁଁ ଘାରି ନ ହେବା ହିଁ ଅତ୍ୟନ୍ତ ବିସ୍ମୟକର । ଏକ ପ୍ରକାର ଅସ୍ୱାଭାବିକ ନୁହେଁ କି ?

ବଳାଗଣ୍ଠିର ସାମାନ୍ୟ ଉପରକୁ ଦିଶୁଥିଲା । ସେ ପାଦଯୁଗଳ ଆଉ ସେ ଧଡ଼ି ନଥିବା ଇଷତ୍ ମନ୍ଦାର ରଙ୍ଗର ଶାଢ଼ି ଦେଖି ଦେଇ ମୁଁ ସ୍ତବ୍ଧ ହୋଇଯାଇଥିଲି ।

ମୁଁ ଚାହିଁ ରହିଥିବା ଭିତରେ ହିଁ ସେ ଦୃଶ୍ୟ ମିଳେଇଗଲା । ନାଁ ମୁଁ ଏଇଠି ଜୋର ଦେଇ କହିବାକୁ ଚାହେଁ ଯେ ସେ ଦୁଇଟି ପାଦ ପଛକୁ ଫେରିନାହିଁ ବା ଆଦୌ ସେଇଠୁ ଘୁଞ୍ଚିନାହିଁ । ସେଇଠି ହିଁ, ଧୂଆଁ ଅଦୃଶ୍ୟ ହେଲାପରି ଅଦୃଶ୍ୟ ହୋଇଗଲା । ବିଶ୍ୱାସ କରନ୍ତୁ, ମୁଁ ମଟମଟ ଚାହିଁଥିଲି । ମୋର ଚେତନା ଜାଗ୍ରତ ଥିଲା । ମୁଁ ତ ପୂର୍ଣ୍ଣ ସଚେତନ ଥାଇ ସେ ଦୃଶ୍ୟ ଓ ତା'ର ବିଲୁପ୍ତି ଦେଖିଲି ।

ମୁଁ କାଠ ହୋଇଯାଇଥିଲି । ସେଇଠୁ ଉଠିଯାଇ ପରଦା ଆଡେଇ ଦେବାକୁ ମୋର ହୁବ ପାଉ ନଥିଲା । ମୋର କେବଳ ଖରତର ନିଶ୍ୱାସ ବହୁଥିଲା । ବୁକୁ ଦାଉଁ ଦାଉଁ ପଡୁଥିଲା, ଉଠୁଥିଲା ।

କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ସ୍ଥିର ମନରେ ଭାବିଲି, ତାହା ନିଶ୍ଚୟ ମୋର ଭ୍ରମ । ସେ ଯେକେହି ହୁଅନ୍ତୁ ନା କାହିଁକି ସେ ମୋଟ ଉପରେ କାହିଁକି ଆସି ମୋ' ଦୁଆର ମୂହଁରେ ଠିଆହେବେ । ଯଦି ବା ସେ କୌଣସି କାରଣରୁ ଆସିଥିଲେ ତା'ହେଲେ ଖୋଲାଦ୍ୱାର ଦେଇ ସେ ସ୍ୱଚ୍ଛନ୍ଦରେ ଭିତରକୁ ଆସି ପାରିଥା'ନ୍ତେ । ଆସିଲେ ନାହିଁ କାହିଁକି ?

ମୁଁ କିନ୍ତୁ ମାନିବାକୁ ପ୍ରସ୍ତୁତ ନଥିଲି ଯେ ମୋତେ ଯାହା ଏତେ ସ୍ପଷ୍ଟ ଭାବରେ ଦେଖାଗଲା ତାହା କଦାପି ଭ୍ରମ ହୋଇପାରେ । ମୁଁ ଦେଖିଛି ଠିକ୍, ଚିହ୍ନିଛି ଠିକ୍ । ତେବେ ତାହା କାହିଁକି ଭ୍ରମ ବୋଲି ମାନି ନେବି । ଠିକ୍, ଯଦି ଭ୍ରମ ନୁହେଁ ତାହା ଅଦୃଶ୍ୟ ହୋଇଗଲା କେମିତି ? ଦେଖୁ ଦେଖୁ ପରା କ୍ରମଶଃ ଅସ୍ପଷ୍ଟ ହୋଇ ଆଉ ଦେଖାଗଲା ନାହିଁ ! ସେ ପୁଣି କ'ଣ ? ଭ୍ରମ ତ ମୁହୂର୍ତ୍ତକରେ ଆସେ ଏବଂ ପୁଣି ଏକ ମୁହୂର୍ତ୍ତକରେ ଉଭାନ ହୋଇଯାଏ ସପ୍ନପରି ।

ମୁଁ ଠିଆ ହୋଇ କିଛିକ୍ଷଣ ପଦଚାରଣ କଲି । ଦୁଆରମୁହଁ ଆଡକୁ କିନ୍ତୁ ଯାଉ ନଥିଲି । ଶେଷକୁ ସାହସ କରି ଗଲି ଏବଂ ପରଦା ଟେକି ଦେଲି କବାଟ ଉପରକୁ । ଅବଶ୍ୟ କେହି କୁଆଡେ ନଥିଲେ ।

କ'ଣ କରିବି ସ୍ଥିର କରିପାରୁ ନଥାଏ । ଏତେ ରାତିରେ ସେ ଘରଆଡେ ଯିବି ପଚାରିବାକୁ ସେ କାହିଁକି ମୋ' ଦୁଆର ପର୍ଯ୍ୟନ୍ତ ଆସିଥିଲେ ? ଯଦି ସେ ଆସି ନଥା'ନ୍ତି ! ଏବଂ ସେ ନିଶ୍ଚୟ ଆସି ନଥିଲେ ତେବେ କେତେ ବେକୁବ କାମ ହେବ ସେଇଟା ।

ପୁଣି ମନ ଭିତରେ ଅନ୍ୟ ପକ୍ଷରୁ ଯୁକ୍ତି ଆସୁଥାଏ । ମୁଁ କେମିତି ସ୍ଥିର ରୂପେ ଜାଣିଲି ଯେ ସେ ଆସି ନଥିଲେ ? ସେ ହୁଏତ ଆସିଥିଲେ, କ'ଣ କହିବେ ବୋଲି । ଏ ଅବେଳରେ ନ କହିବାକୁ ସ୍ଥିର କରି ଆସ୍ତେ ଅପସରି ଗଲେ । ସେଇ ଅସ୍ପଷ୍ଟ ହୋଇ ଦୃଶ୍ୟ ଲିଭିଯିବା ଅନୁଭବଟି ଭ୍ରମ ହୋଇପାରେ ।

ତାଙ୍କର ମୋ' ପାଖରେ କୌଣସି କାମ ଥିବାର ମୁଁ କଳ୍ପନା କରିପାରୁ ନଥିଲି । ସେ କିଏ ? ସେଇଠି କେତେଦିନ ହେଲା ଅଛନ୍ତି । କ'ଣ କରନ୍ତି ? ଘରେ ଆଉ ସବୁ କିଏ ଅଛନ୍ତି ନା, ନାହାନ୍ତି ? ମୁଁ କିଛି ଜାଣେନାହିଁ ।

କିନ୍ତୁ ତଥାପି ମୋର କ୍ରମଶଃ ପ୍ରଗାଢତର ଲୋଭ ହେଉଥିଲା ବିଶ୍ୱାସ କରିବାକୁ ଯେ ସେ ନିଶ୍ଚୟ କୌଣସି କରାଣରୁ ମୋ' ପାଖକୁ ଏ ଅସମୟରେ ଆସିଥିଲେ । ମୁଁ ତାଙ୍କୁ ଥରଟିଏ ଦେଖିଥାଇପାରେ କାରଣ ସେ ଅଧିକାଂଶ ସମୟରେ ଦୃଶ୍ୟମାନ ନୁହଁନ୍ତି । କିନ୍ତୁ ମୁଁ ତ ଦାଣ୍ଡଘାଟର ମଣିଷ । ମୋତେ ସେ ଚାହିଁଥିଲେ ବହୁବାର ଦେଖିଥିବେ । ହୁଏତ ମୁଁ ବିଶ୍ୱାସଭାଜନ ଦିଶିଥିବି । ହୁଏତ ଘରେ ଆଉ କେହି ନଥିବେ, ଏବଂ ସେ କୌଣସି ଜରୁରୀ ସାହାଯ୍ୟ ପାଇଁ ଆସିଥିବେ ।

ମୁଁ ସେ ନାଲି ରଙ୍ଗର ପୁରୁଣା କୋଠା ଆଗରେ ଯାଇ ଠିଆ ହେବାଯାଏଁ ଆଉ କିଛି ବୋଧେ ଭାବିପାରି ନଥିଲି । ମୁଁ ଦେଖିଲି ଫାଟକଟା ଆଉଜା ହୋଇଥିଲା । ହୁଏତ ଭୁଲି ଯାଇଥିଲେ କୋଲପ ପକାଇବାକୁ । ହୁଏତ ମୋତେ ଅପେକ୍ଷା କରିଥିଲେ ।

ଭିତରେ ପଶିବାକୁ ସାହସ ହେଉ ନଥାଏ । ଏତେ ରାତିରେ ଜଣଙ୍କ ଘରେ ଅଯାଚିତ ପଶିବା ଘୋର ଅଶିଷ୍ଟାଚାର । ମୁଁ ଖୁବ୍ ଦୁର୍ବଳ ବୋଧକଲି । ଅସୁସ୍ଥ ବୋଧକଲି । ପାଦଠାରୁ କୁକ୍ଷି ପର୍ଯ୍ୟନ୍ତ କେମିତି ଗୋଟାଏ କମ୍ପ ଅନୁଭବ କଲି । ନିଜ ଆଚରଣରେ ନିଜେ ଲଜ୍ଜିତ ହେଲି ଏବଂ ଅଗତ୍ୟା ପଛେଇ ଆସିଲି ରୋଡ୍‌ଯାଏଁ ।

ସେଇଠି ମୋତେ ଅଇ ଟେକିଲା ପରି ଲାଗିଲା, ଆଉ ମୁଁ ପୁଣି ଆଗଭଳି ହାଲୁକା ହୋଇଗଲି । ମୁଁ ହିଁ କବାଟ ଖୋଲି ଉପରକୁ ପହଁରିଗଲି ସପ୍ନାବିଷ୍ଟ ପରି । ମୋର ସେତେବେଳେ ଆଦୌ ଭଲମନ୍ଦ ବିଚାର ନଥିଲା । ଦାଣ୍ଡ ବଖରା ଠିଆମେଲା ଥିଲା । ମୁଁ ଜାଣିପାରିଲି ଯେ ସେ ମୋତେ ହିଁ ଅପେକ୍ଷା କରିଥିଲେ । କିନ୍ତୁ କାହିଁକି ?

ମୋର ହାଲୁକାପଣ କେବଳ ଶାରୀରିକ ନଥିଲା । ସେଇଟା ମନ ଓ ପ୍ରାଣ କେନ୍ଦ୍ରକୁ ମଧ

ସଂଚରି ଯାଇଥିଲା । ଫଳରେ, ମୋର ମନେପଡୁଛି, ମୁଁ ଆଦୌ ଶଙ୍କା, ସଂକୋଚ, ଦ୍ୱିଧା, ଦ୍ୱନ୍ଦ୍ୱରେ ନଥିଲି । ଉଶ୍ୱାସ ବୋଧ କରୁଥିଲି ଭିତରେ ଓ ବାହାରେ । ସେ ଅବସ୍ଥାକୁ ଏକପ୍ରକାର ଉଲ୍ଲାସ ମଧ କୁହାଯାଇ ପାରେ ।

ଏଣୁ ମୁଁ ତାଙ୍କୁ ମୋ' ସାମ୍ନାରେ ଦେଖି ବିସ୍ମିତ ହେଲି ନାହିଁ, ଚକିତ ବା ଶଙ୍କିତ ହେଲିନାହିଁ । ଖୁବ୍ ସ୍ୱାଭାବିକ ସହଜ ମନେହେଲା ତାଙ୍କର ଆବିର୍ଭାବ ।

ମୁଁ ନିଃସଙ୍କୋଚରେ ତାଙ୍କୁ ଚାହିଁ ରହିଲି । ଆପଣ ଜାଣନ୍ତି ସେଇଟା ମୋର ସଭାବ ନୁହେଁ । କିନ୍ତୁ ମୁଁ ସେତେବେଳେ ଏକରକମ ଅଣାୟତ୍ତ ଥିଲି, ମୂଢ଼, ନିର୍ବୋଧ ଭଳି ହୁଏତ ଆଚରଣ କରୁଥିଲି ।

ସେ ସନ୍ଧ୍ୟାଲୋକରେ ଅଲୌକିକ ଦେଖାଯାଉଥିଲେ । କିନ୍ତୁ ଅସ୍ପଷ୍ଟ । ସତେ ବା ବିଜୁଳିବତୀ ମଧ ସ୍ୱପ୍ନ ରାଜ୍ୟର ଆଲୋକ, ଅତ୍ୟନ୍ତ ନିରାସକ୍ତ ଭାବରେ ବିକୀରଣ କରୁଥିଲା । ମୁଁ ତାଙ୍କର ଅପରୂପ ଆକୃତି ଦେଖୁଥିଲି ସତ, କିନ୍ତୁ କୌଣସି ହାବଭାବ ଲକ୍ଷ୍ୟ କରିପାରୁ ନଥିଲି ।

ସେ ମୋତେ ସେ ସମୟରେ ସେହିପରି ତାଙ୍କ ଆଗରେ ଠିଆରହିବା ଦେଖି କ'ଣ ଭାବିଥିବେ କେଜାଣି । ତାଙ୍କ ଉପସ୍ଥିତିରେ ମୋର କୌଣସି ପ୍ରକାର ପ୍ରତିକ୍ରିୟା ନଦେଖି ସେ ହାତ ବଢ଼େଇ ଗୋଟିଏ ସ୍ୱିଚ୍ ଟିପିଦେଲେ ।

ଧପ୍ ଧପ୍ ହେଇ ଚାରିଟା ବାର୍ ଲାଇଟ୍ ଜଳିଉଠିଲା । ମୋ' ଆଖି ଝଲସି ଗଲା । ମୁଁ ପତା ପକାଇ ଆଖି ତଳକୁ କରିନେଲି । ଆଖି ଟେକି ଚାହିଁଲା ବେଳକୁ ସେ ନାହାଁନ୍ତି ।

କିଛି ନ କହି ସେ ଚାଲିଗଲେ କେମିତି ? କିଛି ନ ହେଲେ ତ ମୋତେ କୈଫିୟତ ମାଗି ପାରିଥା'ନ୍ତେ । କିଛି ବିରକ୍ତି କିଛି ଅସନ୍ତୋଷ ପ୍ରକାଶ କରିପାରିଥା'ନ୍ତେ । ମୁଁ ନିଜେ ସ୍ୱାଭାବିକ ଅବସ୍ଥାରେ ଥିଲେ ଏ ପରିସ୍ଥିତିରେ ନିଶ୍ଚୟ ଅସସ୍ତିବୋଧ କରିଥା'ନ୍ତି । କିନ୍ତୁ ମୁଁ ସେତେବେଳେ ସ୍ୱପ୍ନ ଓ ଜାଗରଣର ମଧବର୍ତ୍ତୀ କୌଣସି ଇଲାକାରେ ଝୁଲି ରହିଥିଲି । ଏଣୁ ମୋର କିଛି ହେଲେ ବିକ୍ରିୟା ନଥିଲା ।

ସେ ଘର ଭିତରୁ ଫେରିଆସିଲେ ।

ମୁଁ ଆଖିରେ ପଲକ ନ ପକାଇ ତାଙ୍କୁ ଚାହିଁ ରହିଲି । ଏଥର ସେ ଲୁଗା ବଦଳ କରି ଆସିଥିଲେ । ଈଷତ୍ ମନ୍ଦାର ରଙ୍ଗର ଶାଢ଼ି ଓ ବାଦାମୀ ରଙ୍ଗର ପାଣ୍ଡେଇ ଦେଖି ମୋର ଆଖି ଖୋସି ହୋଇଯାଇଥିଲା ।

ଏଇ ପୋଷାକରେ ସେ ଘରୁ ବାହାରନ୍ତି ନା କଣ । ଏତେ ରାତିରେ ସେ ପୁଣି ବାହାରକୁ କାହିଁକି ବାହାରିଲେ ? ମୋତେ କ'ଣ ତଦ୍ୱାରା ସେ ସୂଚନା ଦେଲେ ଯେ ମୁଁ ବି ବାହାରିଯିବା କଥା ? ମୁଁ କାହିଁକି ଆସିଥିଲି ଜାଣିବା ପୂର୍ବରୁ କ'ଣ ଚାଲିଯିବା ଉଚିତ ଥିଲା ? ସେ ବୋଧହୁଏ ମୋ' ସାଙ୍ଗରେ ମୋ' ବସା ପର୍ଯ୍ୟନ୍ତ ଯିବାକୁ ବାହାରିଥିଲେ !

ମୁଁ ଏସବୁ ଚିନ୍ତା କରୁଥାଏ ସତ, କିନ୍ତୁ ଆସ୍ତେ ପଶିଲା ପରି ମୁଁ ଯାଇ ତାଙ୍କ ସୋଫା ଉପରେ ବସିଗଲି ଏବଂ ସେ ବି ମୋ' ସାମ୍ନା ସୋଫାଟିରେ ବସି ମୋତେ ତାଙ୍କର ସେ ଅଦ୍ଭୁତ

ଆଖିରେ ଚାହିଁଲେ । ମୋର ମନେହେଲା ତାଙ୍କ ମୁହଁରେ କ୍ଷୀଣ ରେଖାଏ ମନ୍ଦହାସ ଲାଗି ରହିଥିଲା ।

ମୋର କିଛି କହିବାର କିମ୍ବା କରିବାର ନଥିଲା । ମୁଁ ତାଙ୍କର ଅଗାଧ ବ୍ୟକ୍ତିତ୍ୱରେ ମଜ୍ଜମାନ ମୀନଟିଏ ପରି ନିଶ୍ଚିନ୍ତ ପହଁରୁଥିଲି ।

ସେ ମୋତେ ଚାହିଁବା ଭିତରେ ତାଙ୍କ ଆଖି ଯୋଡିକ ତ୍ରିକୂଟରେ କେନ୍ଦ୍ରୀଭୂତ ହୋଇଗଲା ଏବଂ ସେ ଆଖି ବୁଜିଦେଲେ । ସବୁ ଅକସ୍ମାତ୍ ସ୍ତବ୍ଧ ହୋଇଗଲା । ବସ୍ତୁ ସବୁ ଆହୁରି ଘନୀଭୂତ ହୋଇଗଲେ । ମୋ' ଶ୍ୱାସକ୍ରିୟା ଅତ୍ୟନ୍ତ କ୍ଷୀଣ ହୋଇଗଲା । ମୋତେ ଲାଗିଲା ମୁଁ କ୍ରମଶଃ କୌଣସି ଗଭୀରତାକୁ ଶୋଷି ହୋଇ ଯାଉଛି । ମୋର ବି ଆଖିପତା ପଡିଗଲା ।

ମୋ ସଂଜ୍ଞା ଲୋପ ପାଇଗଲା ବୋଲି ମୁଁ କହିବି ନାହିଁ, କାରଣ ମୋତେ ସେତେବେଳେ କିଛି ଦୃଶ୍ୟ ଦେଖାଯାଉଥିଲା । କିଛି ବାକ୍ୟ ମଧ ଶୁଭୁଥିଲା ।

ଦିଶୁଥିଲା ବାରମ୍ବାର ଏକ ଅପରୂପା ନାରୀ ରୂପ । ମୁହୂର୍ତ୍ତେ ଦିଶି ମୁହୂର୍ତ୍ତେ ଲିଭି ଯାଉଥିଲା । ଢଳଢଳ ବିମ୍ବପରି ରୂପ ମଧ ବଦଳି ଯାଉଥିଲା । ମସୃଣ କାଚ କଣ୍ଢେଇ ପରି ଚମ୍ପକ ବରଣୀ ନଗ୍ନିକା-ନିରୂପମା ଦେବକନ୍ୟା !! ଅନୁଭବ ହେଉଥିଲା କନ୍ୟାମୟ ଜଗତ, ପିତାମୟ ପୁରୁଷ ! ଏ କନ୍ୟା ତ ମାନବୀ ନୁହେଁ । ଏ କ'ଣ ସର୍ବବ୍ୟାପିନୀ ଦେବୀ କୁମାରୀ ?

ଭିତରେ ବାହାରେ ଧ୍ୱନିତ ହେଉଥିଲା 'ଦେବୀ କୁମାରୀ', 'କନ୍ୟା କୁମାରୀ' । ମେଘମାଳାରେ ଚନ୍ଦ୍ର ପରି ସେ ନିଟୋଳ ଲାବଣ୍ୟ ଲିଭିଗଲା । ମୋ' ଦେହ ସାରା କୁସୁମ କହ୍ଲାର ଫୁଟି ଯାଉଥିଲା । ଗୋଟାଏ ପ୍ରକାର ଶୀତଳ ଶାନ୍ତ ଅନୁଭବ । ପ୍ରଶାନ୍ତ ସନ୍ତୋଷର ଅନୁଭବ ।

ତା'ପରେ ଦିଶିଲା ନାରୀ ରୂପର ଅସମ୍ଭବ ଆକର୍ଷଣର ଭଣ୍ଡାର । ରୂପ ଯୌବନ ସଂପନ୍ନା ମୋହିନୀ, ଅସାମାନ୍ୟ ସୁନ୍ଦରୀ । ସେତେବେଳେ ମୁଁ ଅଭିଭୂତ, ସ୍ତବ୍ଧ ଚକିତ ଅବସ୍ଥାରେ ସର୍ବାଙ୍ଗରେ ଶିହରଣ ଅନୁଭବ କଲି । ଉତ୍ତେଜିତ ଉତପ୍ତ ଅନୁଭବ କଲି । ସେ ଶୋଭା-ସମୁଦ୍ର ମୋତେ ଆଚ୍ଛନ୍ନ କଲା, ଉଚ୍ଛନ୍ନ କଲା । ମୋ' ଦେହସାରା କଣ୍ଟକିତ ହେଲା, ମୁଁ ତୃଷିତ ଏବଂ ପରିତୃପ୍ତ ବୋଧକଲି । ମୁଁ ଆପଣଙ୍କୁ ଭାଷାରେ କହିପାରୁନାହିଁ । ସେ ଘନ ନିମଗ୍ନ, ନିଃଶେଷ ହୋଇଯିବାର ଭାବ । ମୁଁ ମୋର ସର୍ବାଙ୍ଗରେ ଚାହିଁ ରହିଥିଲି ସେ ତ୍ରିପୁର ସୁନ୍ଦରୀକୁ ଏବଂ କ୍ରମଶଃ ବୁଡିଯାଉଥିଲି ଏ ବିଶ୍ୱସୃଷ୍ଟିର ଅନନ୍ତ ଅତଳ ଆନନ୍ଦରେ ।

ସେ ଅତଳାନ୍ତ ଗହୀର ଭିତରୁ ମୁଁ କିପରି ଭାସିଉଠିଲି କି ମୋତେ କିଏ ଟୋଳି ଆଣିଲା ମୁଁ କହିପାରିବି ନାହିଁ । ଚଳଚ୍ଚିତ୍ର ପରି ଦୃଶ୍ୟ ଜାରି ରହିଥିଲା । ବିବିଧ ବର୍ଣ୍ଣ, ବିବିଧ ରୂପ, ବିବିଧ ସ୍ପର୍ଶ ଭିତରେ ମୋତେ ଦିଶିଲା ଏକ ସ୍ଥିର ବିଶାଳ ମାତୃରୂପ । ତା' ହାତ ପାପୁଲି ଉପରେ ମୁଁ ସତେବା ସଦ୍ୟଜାତ ଶିଶୁ । ଆନତ ମେଘ ପରି ସେ ଆବୋରି ରହିଛି । ଫଳ ଭାରରେ ନଇଁ ଆସିଛି, ଜଳ ଭାରରେ ନଇଁ ଆସିଛି, ମୋତେ ସେ ଲାଳନ କରୁଛି, ପରିପୁଷ୍ଟ କରୁଛି । ବିଶ୍ୱ ମାତୃକାର ରୂପ, କମନୀୟ, ଆଶିଷମାୟା ମଙ୍ଗଳମୟ । ଶାବକକୁ ପାଳନ କରିବାକୁ ସେ ପୃଥିବୀକୁ ନୀଡମୟ କରିଦିଏ । ଅସହାୟ ଶିଶୁ ପକ୍ଷୀର ଡେଣା କଅଁଳେଇ ଦିଏ । ତା'ର ପ୍ରଥମ ଉଡାଣ ବେଳେ ସେ

ଉହିଁଗହେ । ତା' ଆଖିରୁ ସୁଧା ବର୍ଷୁଥାଏ ।

ଅନେକ ବିକ୍ଷିପ୍ତ, ବିକଟ ରୂପ, କରାଳ କଙ୍କାଳ ରୂପ, ଦିଶି ଲିଭି ଯାଉଥା'ନ୍ତି । ଘନ ଘୋର ରାତ୍ରି ପରି ଗୋଟିଏ ବିକଟାଳ ରୂପ ଦେଖାଗଲା । ସେ ବାହୁ ବିସ୍ତାର କରି, ମୁଖ ବିସ୍ତାର କରି ମାଡିଆସିଲା । ତା' ପାଟି ଭିତରେ ସଚରାଚର ପ୍ରବେଶ କରିଯାଇ ପାରେ । ସେ ରାତ୍ରିପରି କୃଷ୍ଣବର୍ଣ୍ଣା, ମୃତ୍ୟୁ ପରି ଶୀତଳ, କାଳ ପରି ଅପ୍ରତିହତା । ଏ ସଂହାରିଣୀ ରୂପ ଦେଖି ମୋର ଅବୟବ ଶିଥିଳ ହୋଇଗଲା । ମୁଁ ବୋଧହୁଏ ଚିତ୍କାର କରି ପକାଇଲି, ବା ସେଭଳି ଅନୁଭବ କଲି ।

ମୋର ଆଖି ଫିଟିଗଲା । ମୁଁ ସଂଯତ ହୋଇ ବସିବାକୁ ଚେଷ୍ଟାକଲି, ମୋର ବିହ୍ୱଳ ଭାବ କଟି ନଥାଏ । ସେ ମୋତେ ଉହିଁଥା'ନ୍ତି । ମୋର ସ୍ନାୟୁ ମଣ୍ଡଳକୁ ଶକ୍ତି ସଂଚାର ହେଲା । ମୁଁ ହାତଯୋଡି ନମସ୍କାର କଲି । ମୋର ସ୍ୱାଭାବିକ ଭାରସାମ୍ୟ ଆସିଯାଇଥିଲା । ଆସିଲା ବେଳୁ ମୁଁ ତାଙ୍କୁ ସମ୍ମାନ ଜଣାଇ ନଥିଲି । କେତେ ସମୟ ଧରି ମୁଁ ସେ ମୁହ୍ୟମାନ ଅବସ୍ଥାରେ ଥିଲି କହିପାରିବି ନାହିଁ । କିନ୍ତୁ ମୁଁ ସେଥିରୁ ସଂପୂର୍ଣ୍ଣ ପ୍ରଭାବମୁକ୍ତ ହୋଇ ନଥିଲି । ନମସ୍କାର କଲାବେଳେ ମୁଁ ସ୍ମରୁଥିଲି ଦୁର୍ଗା ଗାୟତ୍ରୀ ।

"ଓଁ କାତ୍ୟାୟନୈ ବିଦ୍‌ମହେ କନ୍ୟାକୁମାରୀମ୍ ଧୀମହି ତନ୍ନୋ ଦୁର୍ଗାଃ ପ୍ରଚୋଦୟାତ୍ ।"

ମୋର ମନେହେଲା, ସେ ମୋତେ, ମୋର ଭିତର ବାହାର ଶିରା ପ୍ରଶିରା ସବୁ ଦେଖିପାରୁଥିଲେ । ସେ ସେତେବେଳେ ମୋତେ ମହାଯୋଗିନୀ ଭୈରବୀ ପରି ଦେଖାଯାଉଥିଲେ ।

ସେ କିନ୍ତୁ ମୋତେ ପ୍ରକୃତିସ୍ଥ ହେବାର ଦେଖି ଅତ୍ୟନ୍ତ ସାଧାରଣ ସ୍ୱାଭାବିକ ଢଙ୍ଗରେ କହିଲେ – "ଆପଣ ଅସୁସ୍ଥ ଦେଖାଯାଉଛନ୍ତି । ଚାଲନ୍ତୁ ମୁଁ ବଳେଇ ଦେଇ ଆସିବି ।"

ମୋ ଆଖିରୁ ପ୍ରସ୍ତ ପ୍ରସ୍ତ ପରଳ ଓହ୍ଲେଇ ଗଲା । ତା'ହେଲେ ମୁଁ ଯାହା ଦେଖୁଥିଲି ବା ଅନୁଭବ କରୁଥିଲି ସେ ସବୁ କିଛି ନୁହେଁ, କେବଳ ଭ୍ରମମାତ୍ର ? ମୁଁ ସଂଯତ ହୋଇ ଉଠିବାର ଉଦ୍ୟମ କଲାବେଳେ ସେ ମୋ' ଚିନ୍ତାର ଉତ୍ତର ଦେଲାପରି ନୀରବ ହସିଦେଲେ । ସେତେବେଳେ ତାଙ୍କ ମୁହଁର ପଟାନ୍ତର ନଥିଲା ।

ସେ ମୋତେ କେବଳ ତାଙ୍କ ଗେଟ୍ ଯାଏଁ ବଳେଇ ଦେଇ ଠିଆହେଲେ । ମୁଁ ବୁଲିପଡି ନମସ୍କାର କଲି ଏବଂ ଅଗତ୍ୟା ଘରମୁହାଁ ଫେରିଲି । ମୁଁ ଆଦୌ ନିଶ୍ଚିତ ନଥିଲି ଯେ ମୁଁ ନିର୍ଦ୍ଦିଷ୍ଟ ମୋ' ବସା ଘରକୁ ଫେରିଆସିବି ।

ମୋର ବଦ୍ଧମୂଳ ଧାରଣା ଯେ ସେ ସାଧାରଣ ମାନବୀ ନୁହନ୍ତି । ସେ ନିଶ୍ଚୟ ଅପରାଜିତା ମନ୍ତ୍ରରେ ସିଦ୍ଧା ଯୋଗିନୀ । ତାଙ୍କର ଅଲୌକିକ ଶକ୍ତି ଅଛି, ନ ହେଲେ ମୋର ଏପରି ଅସ୍ୱାଭାବିକ ଅନୁଭବ ହେବାର କୌଣସି କାରଣ ନଥିଲା ।

ମୁଁ ଆପଣଙ୍କୁ ଜାଣେ । ଆପଣ ଏ ଚିଠି ପଢି ନିଶ୍ଚୟ ହସିବେ । ଭାବିବେ ଯେ ମୁଁ ମନଇଚ୍ଛା ଗୁଡାଏ କ'ଣ କଳ୍ପନା କରି ଆପଣଙ୍କ ପାଖକୁ ଲେଖୁଛି । ନତୁବା ମୋତେ କୌଣସି ମନୋବୈଜ୍ଞାନିକ ଡାକ୍ତରଙ୍କୁ ଦେଖା କରିବା ଉଚିତ୍ ।

ସେ ମହିଳା ତନ୍ତ୍ରମନ୍ତ୍ର କିଛି ଜାଣନ୍ତି ନାହିଁ । କିନ୍ତୁ ନିଶ୍ଚୟ ଜାଣନ୍ତି ଯେ ସେ ଅସାମାନ୍ୟ ସୁନ୍ଦରୀ । ରାସ୍ତା ଧାରରେ ଠିଆ ହୋଇଗଲେ ବହୁ ଦୁର୍ଘଟଣା ଘଟାଇ ଦେବାଭଳି ସୁନ୍ଦରୀ । ସେ ମୋ' ବୟସର ଜଣେ ପୁରୁଷକୁ ଏପରି ବିହ୍ୱଳ ହେବାର ଦେଖି ନିଶ୍ଚୟ ଆମୋଦିତ ହୋଇଥିଲେ, କିଛି ଗର୍ବ ଅନୁଭବ କରିଥିବେ ।

ସେ ଅବଶ୍ୟ ସେ ନାଲି ରଙ୍ଗର ପୁରୁଣା କୋଠାରେ କାହିଁକି ଏକୁଟିଆ ଅଛନ୍ତି ତାହା ଆଉ ଏକ ପ୍ରସଙ୍ଗ । ସେ କ'ଣ କରନ୍ତି ବା କରନ୍ତି ନାହିଁ ଜାଣିବା ମୋ' ଆୟତ୍ତରେ ନୁହେଁ ବୋଲି ଆପଣ ଭାବୁଥିବେ । ଯଥା ଆପଣ ହୋଇଥିଲେ ନିଶ୍ଚୟ ତାଙ୍କ ନାଁ ପଚାରିଥା'ନ୍ତେ । ସେ କେବେ ଆସିଲେ କାହିଁକି ଆସିଲେ, କ'ଣ କରୁଛନ୍ତି, ଜାଣିବାକୁ ଚାହିଁଥା'ନ୍ତେ ଏବଂ ଆପଣ ଆଉ ପାଦେ ଦୁଇପାଦ ନିଶ୍ଚୟ ଆଗେଇ ଯାଇଥା'ନ୍ତେ ଘନିଷ୍ଠତା ପାଇଁ ।

ମୁଁ ସିନା ଆପଣଙ୍କ ମତାମତ ଅନୁମାନ କରିଗଲି । ଆପଣ କିନ୍ତୁ ତାଙ୍କୁ ଦେଖିଲେ କ'ଣ କହିବେ ବା ଅନୁଭବ କରିବେ ସେଇଟା ଆପଣ ସୁଦ୍ଧା ଏବେ କହିପାରିବେ ନାହିଁ । ମୁଁ ଖାଲି ଅପେକ୍ଷା କଲି ଆପଣଙ୍କ ଆସିବାକୁ ।

ମୁଁ କିନ୍ତୁ ଯାହା ଲେଖୁଛି ସେଥିରେ ଅତିରଞ୍ଜନ କିଛି ନାହିଁ । ମୁଁ ତ ଆପଣଙ୍କ ସାନ୍ନିଧ୍ୟରୁ କିଛିହେଲେ ଶିଖିଛି ବୋଲି ଆପଣ ମାନିବେ । ମୁଁ ଖୁବ୍ ସତର୍କ ଅଛି, ସଚେତନ ଅଛି । ଯାହା ଘଟିଲା ବା ଘଟିଲା ବୋଲି ମୁଁ ବିଶ୍ୱାସ କରୁଛି, ତାକୁ ମାନସିକ ବିକାର ବୋଲି ଧରି ନେବାକୁ ମୁଁ ବି ରାଜି ଅଛି । କିନ୍ତୁ ଖୁବ୍ ରହସ୍ୟାବୃତ ଆଉ ଗୋଟିଏ ପ୍ରସ୍ତ ଅନୁଭବ ମୋତେ ବାଧ କରୁଛି ଆଉ ପ୍ରକାରେ ସମସ୍ତ ଘଟଣାକୁ ବୁଝିବାକୁ ।

ରାତି ପାହିଲେ କ'ଣ ହେବ, ମୁଁ ଜାଣେ ନାହିଁ । ମୁଁ ବୁଢ଼ିଆଣୀ ଜାଲରେ ପଡିଥିବା ମାଛିଟିଏ ପରି ଧରାପଡିଛି । ଭୈରବୀ ମନ୍ତ୍ରରେ ବନ୍ଧା ପଡିଲେ ସହଜରେ ମୁକୁଳିବା ସମ୍ଭବ ନୁହେଁ, କାରଣ ବନ୍ଧା ପଡିବାକୁ ମୁଁ ହିଁ ସାହାଯ୍ୟ କରୁଥାଇପାରେ । ମୁଁ ଜାଣିପାରୁନାହିଁ ସେ ମୋତେ ମୋ' ଅର୍ଜିତ ମାର୍ଗରେ ସାହାଯ୍ୟ କରିବ ନା ସେଥିରୁ ବିଚ୍ୟୁତ କରିବ । ସେ ଅସୀମ ଶକ୍ତିଶାଳିନୀ ତନ୍ତ୍ର ସାଧିକା ବୋଲି ମୋର ବିଶ୍ୱାସ ।

ଆପଣଙ୍କ ଭାଷାରେ ମୁଁ ମୋହିନୀର ପ୍ରେମରେ ପଡିଛି ତ ! ଏତେକାଳେ ଭଲ କରି ପାନେ ପାଇଛି ଏ ଖପରାଡିଆଁ ବ୍ରାହ୍ମଣ ବୋଲି ଆପଣ ଖୁସି ହେଉଥିବେ । ଠିକ୍ ଅଛି ! ମୁଁ ରାଣ ଖାଇ କହୁଛି ମୁଁ ଜମା ଆଉ ସେ ଆଡେ ଚାହିଁବି ନାହିଁ କି ସେ ଆଡେ ପାଦ ବଢେଇବି ନାହିଁ । ଯଦି ଆପଣଙ୍କ ଅନୁମାନ ଠିକ୍, ତା'ହେଲେ ସେ ମୋହ ଛିଣ୍ଡିବାକୁ କେତେ ଘଡି ?

କିନ୍ତୁ ମୁଁ ଜାଣେ, ସେ ମୋତେ ଅବଶ୍ୟ ପବନ ପରି ହାଲୁକା କରିଦେବ, ମୋ' ମଜ୍ଜ ଶୋଷି ନେବ । ମୁଁ ପୁଣି ନିଜ ଅଣାୟତ୍ତରେ ତା' ଦୁଆରେ ନିଜକୁ ଆବିଷ୍କାର କରିବି ।

ମୋ ନିଜ ଉପରୁ ମୋ' ବିଶ୍ୱାସ ଦୋହଲି ଯାଇଛି । ମୁଁ ସେଥିପାଇଁ ଅହରହ ଇଷ୍ଟ ମନ୍ତ୍ର ଜପୁଛି । ଏ ଚିଠି ଡାକବାକ୍ସରେ ପକେଇଲା ପରେ ଆସି ଶୋଇବାକୁ ଚେଷ୍ଟା କରିବି । କହିପାରୁନାହିଁ

କ'ଣ ହେବ ! ଆପଣ ଟିକିଏ ଚଞ୍ଚଳ ଫେରିପାରନ୍ତେ ନାହିଁ ? ଅନ୍ତତଃ ତାଙ୍କୁ ଦେଖିବାକୁ ଆପଣଙ୍କ ମନ ବଳୁନାହିଁ ?

ରହୁଛି ।

'ଇତି'

ଯୋଗେଶ

ପାଇବେ – ଅନିରୁଦ୍ଧ ଡାକୁଆ, ୭୧୭,

ନିଉକଲୋନି, ଇନ୍ଦୋର



# ଶୂନ୍ୟ ଠିକଣା

ରାତି ସେତେବେଳକୁ ଅନ୍ଦାଜ୍ ଏଗାରଟା ହେବ ନା' କ'ଣ ।

ଭଦ୍ରଲୋକ ଜଣକ ବତୀଖୁଣ୍ଟ ତଳେ ଠିଆହୋଇ ଚାରିଆଡକୁ ଅଚିହ୍ନା ଭଳି ଚାହୁଁଥା'ନ୍ତି । ଜଣାପଡୁଥାଏ ଯେମିତି ପାଖରେ ଥାନ ଟିକିଏ ପାଇଲେ ବସିପଡନ୍ତେ । ଖୁବ୍ କ୍ଳାନ୍ତ । ବୟସ ଅନ୍ଦାଜ୍ ଷାଠିଏ ।

ନୀଳାମ୍ବର ବାବୁ ଭାରି ବଢ଼ିଆ ଲୋକ । ସୁବିଧା ଅସୁବିଧାରେ ପାଖରେ ଆସି ଠିଆ ହୁଅନ୍ତି । ଗୁଳୁଗୁଳିରେ ଘର ଭିତରେ ଭାରି ଗରମ । ସାନପୁଅକୁ କାନ୍ଧରେ ପକେଇ ସେ ଲୁଙ୍ଗି ପିନ୍ଧି ବାହାରେ ଟହଲୁଥିଲେ । ପାଖେଇ ଆସି ପଚାରିଲେ : "କ'ଣ ମଉସା, କାହାକୁ ଖୋଜୁଛନ୍ତି କି ?"

ଓହଳିଥିବା ଭୁରୁଟଳୁ ସେ ଭଦ୍ରଲୋକ କେବଳ ନୀରବ ଚାହିଁଲେ ନୀଳାମ୍ବର ବାବୁଙ୍କୁ । ତାଙ୍କର ଥୁଲୁଥୁଲିଆ ମୁହଁରେ ଟୋପା ଟୋପା ଝାଳ ।

ନୀଳାମ୍ବର ବାବୁ ଅପେକ୍ଷା କଲେ । ବୁଢ଼ାବାବୁ ବୋଧେ ମନେପକଉଛନ୍ତି । ଲାଜେଇଲା ପରି ଭଦ୍ରଲୋକ ଅଳ୍ପ ହସିଲେ । କହିଲେ : "ଖୋଜୁଚି ତ । ବେଳ ବୁଡଠୁ ରାତି ଆସି ଏତେ ହେଲାଣି । କିନ୍ତୁ ବହୁତ ଚେଷ୍ଟା କରି ପାଉନାହିଁ । କ'ଣ କହିବି କାହାକୁ! ଲାଜ ମାଡୁଚି ।"

"କ'ଣ କହୁ ନାହାନ୍ତି ।" ଉତ୍ସାହିତ କଲେ ନୀଳାମ୍ବର ବାବୁ । ଭଦ୍ରଲୋକ ତଳକୁ ଚାହିଁ ମନକୁ ମନ ହସିଲେ ।

"ମୁଁ ମୋରି ଘରଟାକୁ ହିଁ ପାଉନାହିଁ । ଖୋଜି ଖୋଜି ନଧ୍ୟାନ୍ତ ହେଲିଣି ।" ନୀଳାମ୍ବର ବାବୁ ମଧ୍ୟ ଅଳ୍ପ ହସି କହିଲେ – "ଆଶ୍ଚର୍ଯ୍ୟ କଥା । ଆପଣ କେତେଦିନ ହେଲା ସେ ଘରେ ରହିଲେଣି ?"

"କ'ଣ ଆଉ କହିବି ଆପଣଙ୍କୁ । ନଦିଆ ପରା ସେ ଘରେ ଜନ୍ମ ହେଇଚି । ସେ ଚାକରୀ କରିବାର ଆସି ପାଞ୍ଚବର୍ଷ ହେଇଗଲା । ତା'ର ପୁଅ ଝିଅ ହେଲେଣି । ସେଇ ଘରେ ଆମେ ରହିଲୁଣି ଏଇ ଧରନ୍ତୁ ଗତ ତିରିଶି ବର୍ଷ ହେଲା ।"

"ଆଶ୍ଚର୍ଯ୍ୟ! ଆପଣ ବୋଧେ ଚାକିରି କଲାବେଳେ ସେ ଘରକୁ ଆସିଥିଲେ।"

"ହଁ, ସରକାରୀ ଘର। ଏବେ ନଦିଆ ନାଁରେ ସେ ଖଣ୍ଡ ଅଛି।"

"ତିରିଶି ବର୍ଷ ରହିଲା ପରେ ଆପଣ ତ' ଆଖିବୁଜି ସେ ଘର ବାଗିଦେଇ ପାରନ୍ତେ।"

"ତା' ବୋଧେ ଏଯାଏଁ କରି ଆସିଥିଲି। ଆଜି ତ' କାହିଁ ମୋଟେ ସେ ଘରଖଣ୍ଡ ମିଳୁନାହିଁ। ଏ ସାରା ଅଞ୍ଚଳ ମୋତେ ନୂଆ ନୂଆ ଲାଗୁଚି। ଏଇ ଧରନ୍ତୁ ଆପଣଙ୍କୁ ତ' ମୁଁ କେବେ ଦେଖିଚି ବୋଲି ମନେପକେଇ ପାରୁନାହିଁ!"

ନୀଳାମ୍ବର ବାବୁ ସବୁ ବୁଝିଗଲା ପରି ହସିଲେ।

"ଆଜ୍ଞା ଆଜ୍ଞା, ଆପଣ ପାଞ୍ଚ ମିନିଟ୍ ସମୟ ଦିଅନ୍ତୁ। ମୁଁ ଲୁଗା ବଦଳେଇ ଚାଲିଆସେ। ନଦିଆ ବାବୁ ବୋଧେ ଆପଣଙ୍କ ପୁଅ। ମୋର ଅନୁମାନ ସେ ମୋରି ବୟସର ହିଁ ହେବେ। ମୁଁ ଆପଣଙ୍କ ପୁଅ ଭଳି ଭାବନ୍ତୁ। ମୁଁ ଏଇ ସାଙ୍ଗେ ସାଙ୍ଗେ ଆସୁଚି।"

ନୀଳାମ୍ବର ବାବୁ ଫେରିଆସି ଦେଖିଲେ ଯେ ବୁଢାବାବୁ ଜଣକ ସେମିତି ତଳକୁ ଚାହିଁ ଠିଆ ରହିଛନ୍ତି। ଏ ବୟସରେ ଏମିତି ବାଉଳା ହେବା କଥା ନୁହେଁ ତ। କିନ୍ତୁ ହଜିଗଲା ପିଲାଟିଏ ପରି କେତେ ନିରୀହ, ଅସହାୟ ଏ ବିଚରା।

ଖୁବ୍ କାମିକା ଅଥଚ ଆତ୍ମୀୟ ଭଳି ଗଳାରେ ତାଙ୍କୁ ଗଭୀର ବିଶ୍ୱାସ ଦେଲାପରି ନୀଳାମ୍ବର ବାବୁ କହିଲେ –

"ଆସନ୍ତୁ ଆଜ୍ଞା, ଆସନ୍ତୁ। ମୁଁ ଆପଣଙ୍କୁ ଘର ଯାଏଁ ବଳେଇ ଦେଇ ଆସେ। କହିଲେ ଦେଖି, ଘର ନମ୍ବରଟା।"

ଭଦ୍ରଲୋକ ମୁହଁ ଟେକି ମୁଣ୍ଡ ଲାଡିଲେ।

"ଘର ନମ୍ବର? ସେଇଟା ହିଁ ତ' ମନେ ପକେଇ ପାରୁନାହିଁ। ଖୋଜି ଖୋଜି ଯେଉଁ ଶହେ ଘରେ ହାବୁଡିଲି ସେ ଗୁଡାକ ବରଂ କିଛି ମନେପଡୁଛି। କିନ୍ତୁ କେମିତି କେଜାଣି ମୋ' ନିଜ ଘର ଠିକଣାଟା ମନେପଡୁନାହିଁ। ବହୁତ ଚେଷ୍ଟା କଲିଣି। ପାରୁନାହିଁ। ମୁଁ ଦେଖୁଛି ବୁଢା ହେଇଗଲେ ଏମିତି ଅନେକ ଅଦ୍ଭୁତ କଥା ଘଟେ।"

ନୀଳାମ୍ବର ବାବୁ ଏଥର ଗଦ୍ ଗଦ୍ ହୋଇ ଖୁବ୍ ହସିଲେ।

"ଆଜ୍ଞା ଅଦ୍ଭୁତ ଲୋକ ତ' ଆପଣ। ତିରିଶ ବର୍ଷ ଯୋଉ ଘରଟାରେ ଆପଣ ରହିଛନ୍ତି, ତା' ନମ୍ବର ଭୁଲିବା ଯାହା ନିଜ ନାଁ ଭୁଲିଯିବା ସେଇଆ।"

ଭଦ୍ରଲୋକ ସେମିତି ଉଦ୍‌ବିଗ୍ନ, ସେମିତି ବିବ୍ରତ। ପରିହାସ ବୁଝିବା ଅବସ୍ଥାରେ ନାହାନ୍ତି ବୋଧେ!

"ଆପଣ ଠିକ୍ କହୁଛନ୍ତି। ମୋ' ନିଜ ନାଁ ଭୁଲିଯିବା କିଛି ବିଚିତ୍ର କଥା ନୁହେଁ। ପଚାଶ ପାଖେଇଲା ବେଳକୁ ଗୋଟାଏ ଭୁଲା ରୋଗ ଆରମ୍ଭ ହୋଇଯାଏ। ସେଇଟା ସେ ସମୟରେ ମୋର ଟିକିଏ ଅଧିକ ଥିଲା। ମନର କଅଁଳ ତାଳ ସବୁ ଝାଉଁଳି ଆସେତ'। ସେଇଠି ପବନ

ବାଜିଲେ ଆଉ ବାରି ହୁଏ ନାହିଁ । ଲୋକଙ୍କୁ ଦେଖିଦେଲେ ଚିହ୍ନି ହୁଏ କିନ୍ତୁ ନାଁ କଥା ଉଠିଲେ ଭାରି ହିନସ୍ତା । ମୋର ଥରେ ନଦିଆର ନାଁଟା ମନେପଡିଲା ନାହିଁ । ତା' ବୋଉ ନାଁ ବି ମନେପଡିଲା ନାଇଁ ଆଉଥରେ । ହଁ, ସେଇ ପେନ୍‌ସନ୍ ବେଳେ ତ । ଭାଗ୍ୟକୁ ନଦିଆ ପାଖରେ ଥିଲା ବୋଲି । କହିଲା, "ବୋଉ ନାଁ ପରା ତିଳୋତ୍ତମା !" ମୁଁ କହିଲି "ହେଇଥିବ ।" ସମସ୍ତେ ହସିଲେ ।"

ନୀଳାମ୍ବର ବାବୁ ବି ହସିଲେ । କିନ୍ତୁ ସେ ବିଚରା ଅନେକ ବିବ୍ରତ ଜଣାଯାଉଥା'ନ୍ତି । ଏ ବୁଢାଟିକୁ ନେଇ ଏତେ ରାତିରେ ସେ କରିବେ କଣ । ରାସ୍ତାଘାଟ ସେତେବେଳକୁ ଖାଲି ହୋଇ ସାରିଥାଏ । ସିନେମା ଦେଖାଳି ଫେରି ସାରିଥା'ନ୍ତି । ଏଠୁ ସେଠୁ କୁକୁର ଡାକ ଦୂରୁ ଶୁଭୁଥାଏ । କାହିଁ ଦୂରରେ, ବୋଧେ କାଳିବାଡି ଛକ ହବ ନା' କ'ଣ ନେପାଳୀ ଜଗୁଆଳିର ସିଟି ଶୁଭିଲା । ନୀଳାମ୍ବର ବାବୁ ଘଣ୍ଟା ଦେଖି ଭୂରୁ କୁଞ୍ଚେଇଲେ । ବାରଟାକୁ ପାଞ୍ଚ ମିନିଟ୍ !

ଠିକଣା ନ ଜାଣି ଉଭୟେ ବଡ ରାସ୍ତା ଉପରେ ଟହଲିଲା ଭଳି ଚାଲିଥା'ନ୍ତି । ଆକାଶରେ ତୁଳାଭିଣା ନିଷ୍ଚଳ ମେଘ । ତା' ପଛକୁ ସେମିତି ନିଷ୍ଚଳ ଫାଲେ ଫାକାସିଆ ଜହ୍ନ । ନୀଳାମ୍ବର ବାବୁଙ୍କୁ ଛଟେଇ ପଟେଇ ଲାଗୁଥାଏ । ଆଛା ଭାଲୁ ଲାଙ୍ଗୁଡିଆ କାମରେ ହାତ ଦେଇଦେଲେ । ଚଲ୍ ଚୁଲିଆ ଲୋକଙ୍କୁ ଏଇଆ ସାଜେ । ବେକୁବ୍ କାହାଁକା !

"ଆଚ୍ଛା, ଆଜ୍ଞା ଆମେ ଏମିତି ଗଲେ ତ ଆପଣଙ୍କ ଘରେ ପହଞ୍ଚି ପାରିବା ନାହିଁ । ଆପଣ ଘର ଚିହ୍ନିବାର କିଛି ଉପାୟ କହନ୍ତୁ ।"

"ଘର ପରା ଅଧମାଇଲ ଦୂରରୁ ଯେ ମନ ସେ ଚିହ୍ନିଦବ । ଏ ଖଣ୍ଡମଣ୍ଡଳରେ ଆଉ କାହାର କଇଁଠ ଗଛ ନାହିଁ । ସେ ବି ଅଦ୍ଭୁତ କଇଁଠ । ତା' ଚାରା ମୁଁ କାଶ୍ମୀରରୁ ମଗେଇଥିଲି । ସେ କାଶୀ କଇଁଠ ବାସ୍ନା ଆପଣ ଥରେ ଶୁଙ୍ଘିଲେ ଜୀବନସାରା ଭୁଲିପାରିବେ ନାହିଁ । ତାକୁ ଲାଗି ଗୋଟେ ଗଙ୍ଗଶିଉଳି । ସବୁଠୁ ବେଶି ଆଖିଦୃଶିଆ ସେଇ ଝାଙ୍କଲା ପିଜୁଳି ଗଛଟା । ତାରି ଛାଇରେ, ତାରି ଡାଳରେ ଜାଣ ନଦିଆ ବଢିଚି । ତା' ସାଙ୍ଗମାନେ ବଢିଛନ୍ତି । ଘର ଚିହ୍ନି ହବନାଇଁ କହୁଛନ୍ତି ? ଆପଣ ଟିକିଏ ଦମ୍ଭ ଧରନ୍ତୁ, ଘର ନିଶ୍ଚୟ ମିଳିଯିବ !"

ଏ ବୁଢାଟା ବାୟା ନ' କ'ଣ ? ନୀଳାମ୍ବର ବାବୁ କ'ଣ ଧୈର୍ଯ୍ୟ ଧରିବେ ? – କିଓ କାହିଁକି ? ଘର ନ ମିଳିଲେ ଏବେ ସେଥିରେ ତାଙ୍କର ଥାଏ କ'ଣ ? ମିଳିବ ତ' ନାହିଁ । କାଶୀ କଇଁଠ, ଗଙ୍ଗଶିଉଳି ଆଉ ପିଜୁଳି ଠିକଣାରେ କିଏ କେବେ ଘର ଖୋଜିଲାଣି । ଜାଣିଶୁଣି ହଟହଟାରେ ମଣିଷ ପଡିଗଲା । ସେ ତ' ଯାହା କରିବାର କରିଥାନ୍ତା, ଏବେ କ'ଣ ନା' ଆ' ବଳଦ ମତେ ବିନ୍ଧ୍ !

ନୀଳାମ୍ବର ବାବୁଙ୍କୁ ଛୁଞ୍ଚି ଫୋଡିଲା ପରି ଅଥୟ ଲାଗୁଥାଏ । ସେ ଠପ୍ କିନା ଠିଆ ହୋଇଗଲେ ।

"ନାଇଁ ଆଜ୍ଞା, ଏ ଆଡେ ଆଉ ଯିବାନାଇଁ ।" ନିଷ୍ପତ୍ତିର ସର ।

ଭଦ୍ରଲୋକ ବି ଠିଆ ହୋଇଗଲେ ଜହ୍ନ ଆଲୁଅରେ । ତୁଳାର କଣ୍ଢେଇଟିଏ ! ସେ ବି ଚାହୁଁ

ନଥିଲେ ସେଆଡେ ଯିବାପାଇଁ । କୌଣସି ଆଡେ ଯିବାପାଇଁ ସେ ଚାହୁଁ ନଥିଲେ ମୋଟ ଉପରେ । ସେ ଆସ୍ତେ ରାସ୍ତା କଡ ଘାସ ପଡିଆକୁ ଓହ୍ଲେଇଗଲେ ଏବଂ ନଥି କିନା ବସିପଡିଲେ । "ଓଃ !"

ଗୋଡ ଯୋଡିକ ଲମ୍ବେଇ ଦେଲେ । ହାତ ଉପରେ ଭରାଦେଇ ଉପରକୁ ଚାହିଁ ରହିଲେ, ବୋଧହୁଏ ଜହ୍ନକୁ ।

ଏ ବୁଢା ବୋଧେ ଏଇଠି ଆଜି ରାତି ପୁହାଇବ । ଖରାଦିନ ରାତି । ଆଉ ତିନି ଚାରିଘଣ୍ଟା କଥା । ଆଖି ବୁଜି ଫିଟେଇଲା ବେଳକୁ ଆଉ ନଥିବ । ଏଇ ମୌକାରେ ଖସିଗଲେ ହୁଏ । ସକାଳୁ ବରଂ ଆସି ବୁଢାକୁ ତା' ଘରେ ସମର୍ପି ଦେବେ ।

ନୀଳାମ୍ବର ବାବୁ ଚାହିଁଲେ ଚାରିଆଡକୁ । ଭାରି ନିରୋଳା, କାକର । ମେଘଗୁଡିକ ସୂତାପରି ସରୁ । ଜହ୍ନଟା ଭାରି ତୋଫା । ଫେରିଯିବାକୁ ହେଲେ ହେଇ ଉପର ମୋଡ ଠେଇଁ ତ ଘର । ଅତିବେଶି ହେଲେ ମାଇଲିଏ । ବୁଢାକୁ ସାଙ୍ଗରେ ନେଇଯିବା ଭଲ । ...କିନ୍ତୁ ସତର ଶହ ଷାଠିଏ ଗଜ । ...ପାଞ୍ଚ ହଜାର ଦୁଇଶହ ଅଶିଫୁଟ!! ଉଃ... ଭାରି ଅଳସ । କିଏ ଯାଏ ଏଇନେ ସେ ଗୁଳୁଗୁଳି ଗୁମ୍ପା ଭିତରକୁ ? ଘରଚାତ' ପଳେଇ ଯାଉନାହିଁ! ଏଇଠି କାକରରେ ଟିକିଏ ବସିଗଲେ କ୍ଷତି କ'ଣ ? ଏମିତି ବସି ବସି ନୀଳାମ୍ବର ବାବୁ ଯାତ୍ରା ଦେଖି ରାତି ବିତେଇ ଦେଇଛନ୍ତି ଅନେକ ଥର !...

ଆସ୍ତେ ପବନ ଟିକିଏ ଫୁଙ୍କି ଦେଲା । ସେ ଗୋଡ କାଢିଲେ ପଡିଆକୁ । ମନକୁ ମନ ପଚାରୁଥା'ନ୍ତି... ମାଇଲିକ କେତେ ଇଞ୍ଚ କେଜାଣି । ଇଞ୍ଚକେ ଗୋଟିଏ କରି ଗେଣ୍ଡା ଥୋଇ ନେଲେ ଷାଠିଏ ହଜାର ନା ବେଶି ରହିଯିବେ ନା' କ'ଣ ।

ଭଦ୍ରଲୋକ ସେମିତି ହାଁ କରି ଉପରକୁ ଅନେଇ ବସିଛନ୍ତି । ଅଣ୍ଟାରେ ହାତ ଦେଇ ନୀଳାମ୍ବର ବାବୁ କିଛି ସମୟ ଚାହିଁଲେ ।

"ଆଚ୍ଛା, ଆପଣ ବୋଧେ ହାଲିଆ ହୋଇ ଯାଇଛନ୍ତି । ଟିକିଏ ବିଶ୍ରାମ ନେଇ ଉଠିବା, ନା' କ'ଣ କହୁଛନ୍ତି ?"

ଗୋଡ ଲୋଟେଇ ଟଙ୍କା ପକେଇ ନେଲେ ଭଦ୍ରଲୋକ । ନୀଳାମ୍ବର ବାବୁଙ୍କୁ ଚାହିଁ ପଚାରିଲେ – "କାହିଁକି ?"

ନୀଳାମ୍ବର ବାବୁ ହସିଲେ । "ଆପଣ ଘରକୁ ଫେରିବେ ନାହିଁ କି ?"

ସେ ବି ହସିଲେ ।

– "ଆଜି ବୋଧହୁଏ ଏମିତି ମେଲାରେ ରାତି ବିତେଇବାର ଯୋଗ ଅଛି । କ'ଣ କରାଯାଏ । ...ମୁଁ ଆଜ୍ଞା ଏଇ ହାତରେ ଏ ଟାଉନ୍‌ର ନକ୍ସା କରିଛି । ସେତେବେଳେ ଗୋଟେ ସାଇବ ଯାର ପ୍ଲାନ୍ କରିଥିଲା । ...ଆପଣ ବସୁ ନାହାନ୍ତି !"

ନାଳାମ୍ବର ବାବୁଙ୍କ ଉପରୁ କିଏ ଟିପ ଟେକି ନେଲା ଯେମିତି ! ସେ ଟ୍ରେସିଂ କାଗଜ ପରି ଗୁଡେଇ ହୋଇଗଲେ ମନକୁ ମନ । ଘାସ ଉପରେ ଗୋଡ ଲମ୍ବେଇ ବସିଗଲେ ନ ଉଠିବା

ଭଙ୍ଗୀରେ ।

"ମୁଁ ଏବେ ମଧ କହିଦେବି, କେମିତି ମୁଣ୍ଡିଆକୁ ମୁଣ୍ଡିଆକୁ ସଳଖ ରାସ୍ତା ଟଣା ହୋଇଥିଲା । କେମିତି ତଳେ ଜାଗା ଥିଲା ହ୍ରଦ ପାଇଁ । ଉପରକୁ ଧାଡି ଧାଡି ହେଇ ବସ୍ତିମାନଙ୍କର ନମ୍ବର । ...ପୂର୍ବ ପଶ୍ଚିମ ପାଁଚ୍, ଉତ୍ତର ଦକ୍ଷିଣ ପାଁଚ୍ । ପଚିଶଟି ବସ୍ତି । ବସ୍ତିଗୁଡ଼ିକ ଚାରି ଚାରି ଭାଗ, ଭାଗକେ ଶହେ କରି ଘର । ଇଂରାଜୀର 'ଏ' ଠଉ 'ୱାଇଁ' ପର୍ଯ୍ୟନ୍ତ ବସ୍ତିଙ୍କ ଚିହ୍ନଟ । 'ଜେଡ୍' ଟା ମଶାଣି ।"

"ବାଃ, ବଢ଼ିଆ ପ୍ଲାନ୍ ତ !"

"ଖାଲି କ'ଣ ସେତିକି । ଏସବୁ ହେଲା ଚଉଛେ । ଯାକୁ ଲାଗି ଲୁଡୁ ପଟା ଢଙ୍ଗରେ ଆଉ ତିନି ଚଉଠ ହେଇଥାନ୍ତା । ସର୍ବମୋଟ ଚାଳିଶି ହଜାର ଘର ପାଇଁ ନକ୍ସା ହେଇଥିଲା । ତେଣିକି ଆଉ ବଢ଼ିଲେ ସେଇବାଗେ ବଢ଼ିଥାନ୍ତା । ଖାଲି ରାସ୍ତା ଗୁଡାକୁ ଲମ୍ବେଇ ନେଲେ ହେଲା । ...କ'ଣ ବୁଝି ପାରୁଚନ୍ତି ତ' !"

"ଇସ୍ କେତେ ବଢ଼ିଆ ହେଇଥାନ୍ତା ସତେ ! କିନ୍ତୁ ଆମେ ଯୋଉଠି ଅଛୁ ସେଇଟା ତ ସେମିତି ନୁହେଁ !"

"ହେଇଥାନ୍ତା ! ତାକୁ କ'ଣ ଏ ଛେଳି ଗୋଠ ରଖେଇ ଦେଲେ କି । ରାସ୍ତାକୁ ମୋଡ଼ିଲେ ଯାଡୁ, ତାଡ଼ିଲେ ସେଆଡୁ । ଦେଲେ ତାକୁ ଧ୍ୱଂସ କରି । ଫଳରେ ଏ ଟାଉନ୍ ମୋ' ପାଇଁ ଏକ ଗୋଲକ ଧନ୍ଦା ! ଯାର ସେମିତି ଗୋଟାଏ ବିଧିବଦ୍ଧ ଆକାର ପ୍ରକାର ନାହିଁ । – ମାନେ ନିହାତି ବଣୁଆ ଢଙ୍ଗ – ଯେ ଯେଉଁଠି ପାରିଲା ମାଟି ହାଣି ଘର ଟେକି ଦେଲା ପରି ଯାର ଅବସ୍ଥା । ସବୁ ଖୁନ୍ଦିଖାନ୍ଦି ଦେଇଚନ୍ତି ବିଗାଡ଼ି । ମୁଁ ଯେଉଁ ସରକାରୀ ଘରେ ରହିଆସିଛି, ତା' ନମ୍ବର ବି ପାଞ୍ଚଥର ବଦଳିଲାଣି । ଯୋଉଟା ମୋର ମନେ ପଡୁନାହିଁ ସେଇଟା ବି କୁଆଡେ ଆଉଥରେ ବଦଳୁଚି ବୋଲି ପୁଅ କହୁଥିଲା ।"

ମୁଣ୍ଡଲାଡ଼ି ଏ ବେକୁବ୍ ଦୁନିଆକୁ ସେ ହସିଲେ କିଛି ସମୟ ।

"ବଦଳୁ ଯେତେ ବଦଳୁଛି । ଆମେ କୋଉ ରହିଯାଉଛୁ ତମ ଲେଉଟ ଦୋଳିରେ । ତମେ ତମର ଘିରି ଘିରି ବୁଲୁଥାଅ । କିନ୍ତୁ ମୁଁ ବାବୁ କହି ଦଉଚି ଯୋଉ ଘର ଖଣ୍ଡ ଏବେ ନଦିଆକୁ ମିଳିଛି ସେଭଳି ଏ ଟାଉନ୍ ସାରା କୋଉଠି ନାଇଁ । ସେ ଟୋକା ସିନା ମାନିବ ନାହିଁ । ...ଦେଖନ୍ତୁ । ଯୋଉ ବର୍ଷ ସେ ଜନ୍ମ ହେଲା ବାଡିଆଡେ ଗୁହାଳଟାଏ ତୋଳାହେଲା, ଆଗରେ ଉଠିଲା ପିଜୁଳି ଆଉ କଇଠ ଗଛ । ଯେତେବେଳେ ସେ ପାଠ ପଢ଼ିଲା ବାରଣ୍ଡା ଉପରେ ଅଧାକାନ୍ଥ ଘେରି ତା' ଉପରକୁ ଜାଫ୍ରି ଦେଇ ଆଚ୍ଛା ଖାସା ବୈଠକ ଘରଟିଏ କରାଗଲା । ନିରୋଳାରେ ସେ ସେଇଠି ପଢ଼ିଲା । ଆଉ ଯେତେବେଳେ ସେ ବାହାହେଲା ସାରାଘର ରଙ୍ଗ ହେଲା । ଝରକା କବାଟ ସଜଡ଼ା ହେଲା । ରାସ୍ତାକୁ ଲଗେଇ ତାରବାଡ ଘେରା ହେଲା । ଗେଟ୍ ଲାଗିଲା । ଯେ ଦେଖିଲା ସେ ଅବାକ୍ ହେଇ ଠିଆ ହେଇଗଲା । ସରକାରୀ ଘରେ ସମସ୍ତେ ଏସବୁ କରିପାରିବେ ନାହିଁ । ମୋର ସେମିତି ଚିହ୍ନା ପରିଚୟ ଥିଲା ବୋଲି ସିନା ! ସାରା ଟାଉନ୍‌ରେ ଆଉ ପରା ନାହିଁ । ଆଲୁଅ

ପବନ ଯେମିତି, ଛକ ଉପରେ ଜାଗାଟା ବି ସେମିତି ।"

"ନଦିଆ ବାବୁ କ'ଣ ଆପଣଙ୍କ ଗୋଟିଏ ପୁଅ ?"

ହସିଲେ । "ଓଃ ଗୋଟିଏ ହେଲେ ତ' କାହିଁରେ କ'ଣ ! ସଂସାର ତାଙ୍କୁ ଘେରି ଏମିତି ବୁଣି ହେଇଯିବ ଯେ ଛନ୍ଦି ବାନ୍ଧିଦବ ଚରିଆଡୁ । ଆଉ ପୁଞ୍ଜାଏ କ'ଣ ହେବ ? ଗୋଟିଏ ପାଇଁ ଯାହା ଶ୍ରମ, ଯାହା ବେଠି, ଆପଣ ଘରଦ୍ୱାର କଲେଣି, ବଳେ ବୁଝିଯିବେ ନାଇଁକି ! ଆପଣଙ୍କର କେତୋଟି ?"

"ଆଜ୍ଞା ଚରି । ଦୁଇ ପୁଅ ଦୁଇ ଝିଅ ।"

ଭଦ୍ରଲୋକ । ଚୁପ୍ । ପାଖପଡିଶା ଗଛପରି ଚୁପ୍ ।

...ବୁଢା ବୋଧେ ସଂଖ୍ୟା ଶୁଣିଦେଇ ଛାନିଆ ହେଇଯାଇଚି । ମନକୁ ମନ ହସିଲେ ନୀଳାମ୍ବର ବାବୁ । କହିଲେ –

"କଥା ଆଜ୍ଞା ଠିକ୍ । ଯା'ର ଗୋଟିଏ ପୁଅ, ତା'ଠୁ ବଳି ସୁଖୀ ଆଉ କେହି ନାହିଁ ।"

ବୁଢା ଭଦ୍ରଲୋକ ପାଟି ନ ଫିଟାଇ ଅନେକ ବେଳ ଯାଏଁ ହସିଲେ । ନୀଳାମ୍ବର ବାବୁ ଶେଷକୁ ସନ୍ଦେହ କଲେ ଯେ ସେ ଯେମିତି କାନ୍ଦୁଛନ୍ତି ନା' କ'ଣ ! ସେ କିନ୍ତୁ ସେ ହସ ଭିତରେ କହିଲେ,

"ଆହେ ବାବୁ, ଏଠି ସୁଖ କ'ଣ ଦୁଃଖ କ'ଣ ? ସଂସାର ତା' ଢଙ୍ଗରେ ଚଲିଥାଏ । ବରଡା ଲଇଁ ଚଲିଥାଏ ତଳକୁ ତଳକୁ । ଯେତେବେଳେ ଯେମିତି ଲାଗିବା କଥା ଲାଗେ । ସୁଖ ଦୁଃଖ ଜଞ୍ଜାଳ ଏକା କଥା ।"

ନୀଳାମ୍ବର ବାବୁ ଟିକିଏ ଅସସ୍ତ ବୋଧକଲେ । କହିଲେ, "ଆଜ୍ଞା, ଏଥର ଉଠିବା କି ? – ଆପଣଙ୍କର ଘର ଠାବ କରିବା ।"

"ଆପତ୍ତି ନାହିଁ । କିନ୍ତୁ ଏବେ ଖୋଜି ଆଉ ଲାଭ ନାହିଁ । ସମସ୍ତେ ଶୋଇ ଯାଇଥିବେ । ତାଙ୍କୁ ଉଠାଇବା ଉଚିତ ମନେକରୁ ନାହିଁ ।"

"ନାଇଁ ଆଜ୍ଞା ! ସେମାନେ ବରଂ ଦାଣ୍ଡ ଦୁଆରେ ଜଗି ବସିଥିବେ । ଏତେ ରାତି ହେଲା ଆପଣ ନ ଫେରିବାରୁ ଅନେକ ଦୁଶ୍ଚିନ୍ତା ହେଉଥିବ ।"

ଗୋଟିଏ ଗଭୀର ଦୀର୍ଘଶ୍ୱାସ ଶୁଭିଲା କେବଳ । ତା'ପରେ ହସର ଚରିଣିଟିଏ !

"ବାୟା ହେଲେ ଆପଣ । ଦୁଶ୍ଚିନ୍ତା ହେଲେ କିଏ କ'ଣ ଦୁଆରେ ବସିରହେ ? ଏଇ ନଦିଆ ଥରେ ଫେରି ନଥିଲା ବୋଲି ପରା ଅନ୍ଧାର ରାତିରେ ବାଟ ନ ପାଇ ମୁଁ ପୋଖରୀରେ ପଶି ଯାଉଥିଲି । ତାକୁ ଆଉ ଦିନେ ରାତିରେ ଜର ହେଇଥିଲା । ବାଉଳୁ ଚଉଳୁ ହେଲାରୁ ଆମକୁ ଦଶଦିଗ ଆଉ ଦିଶିଲା ନାହିଁ । ମୁଁ ପାଞ୍ଚମାଇଲ ଧାଇଁ ଧାଇଁ ଯାଇ ଡାକ୍ତର ଦୁଆରେ ମୂର୍ଚ୍ଛା ହୋଇଯାଇଥିଲି । ମମତା ସିନା ଏଇମିତି ଘୋସାରେ । ଦାଣ୍ଡଦୁଆରେ ବସି ଗୋରୁକୁ ଅପେକ୍ଷା କରାଯାଏ ।"

ନୀଳାମ୍ବର ବାବୁ ସାମାନ୍ୟ ଦବିଗଲେ । ସତେ ତ, ଷାଠିଏ ବର୍ଷର ବୁଢା ରାତି ଅଧଯାଏଁ ଫେରିନାହାନ୍ତି, କେହି ହେଲେ କ'ଣ ଖୋଜିବାକୁ ଆସି ନଥା'ନ୍ତେ ? ସ୍ତ୍ରୀ ତ', ହାତଧରି ବିଭା ହେଇଛନ୍ତି । ଜୀବନସାରା ଏକା ସାଙ୍ଗେ ରହିଲେଣି, ସେ ତ' କିଛି ନ ହେଲେ... ।

ତାଙ୍କ ମନ କଥା ଜାଣିଲା ଭଳି ସେ କହିଲେ,

"ନାଇଁ ବାବୁ, ସେ ସବୁ କିଛି ନୁହେଁ । ମୁଁ ଢେର୍ ଦେଖିଲିଣି । ...ତଥାପି ଭାବୁଛି ନଦିଆ ଆସି ଘେରାଏ ବୁଲି ଯିବଣି । ତା' ପୁଅ ଦିହ ଏଇ କେତେଦିନ ହେବ ଭଲ ରହୁନାହିଁ । ଏଣୁ ତା' ମନ ବି ଭଲ ରହୁନାହିଁ । ବୋହୂ ମା'ଙ୍କର ବାପଘରୁ ମୋହ ଛାଡିନାହିଁ । ଆମେ ବୁଢାବୁଢି ଥିବା ପର୍ଯ୍ୟନ୍ତ ସେ ନଦିଆର ସଂସାରକୁ ଷୋଳ ଅଣା ନିଜର କରିବେ ନାହିଁ । ନଦିଆ ଏବେ ଆମ ଆଡେ ତାଙ୍କ ଆଡେ ଭାଗ ଭାଗ ହେଇ ହନ୍ତସନ୍ତ ହଉଚି । ତା' ମା' କିନ୍ତୁ ସ୍ଥିର କରିନେଇଚି ଯେ ପୁଅକୁ ଆଶ୍ରା ନ କଲେ ଆଉ ରକ୍ଷା ନାହିଁ । ଦିନକୁ ଦିନ ଆହୁରି ମେଘ ଅନ୍ଧାର ମାଡିଆସୁଚି, କିଏ ସମ୍ଭାଳିବ ? ଏ ବୁଢାଟା ତ' ନିଜକୁ ସମ୍ଭାଳିବା କଷ୍ଟ ।"

ନୀଳାମ୍ବର ବାବୁଙ୍କୁ ମଡେଇ ପଡିଲା ପରି ଲାଗିଲା । ସେ କିଛି ନ କହି ନିଃଶ୍ୱାସଟିଏ ଛାଡିଲେ । ବୁଢା ଟିକିଏ ଚେଙ୍ଗା ହେଇ ଠିଆ ହୋଇପଡିଲେ ।

"ଆଚ୍ଛା ଅନେକ ରାତି ହେଲାଣି । ଆପଣ ବଡ ଭଲଲୋକ । ଆପଣଙ୍କୁ ମୁଁ କଷ୍ଟ ଦେବାକୁ ଚାହୁଁନାହିଁ । ଚାଲନ୍ତୁ, ମୁଁ ଆପଣଙ୍କୁ ଘରେ ଛାଡିଦିଏଁ । ଆପଣଙ୍କ ପିଲାମାନେ ଉଦ୍‌ବିଗ୍ନ ହେବେଣି । ଖୋଜିବାକୁ ସାଇପଡିଶା ଡାକି ବାହାରି ଆସି ପାରନ୍ତି, ଉଠନ୍ତୁ ।"

ନୀଳାମ୍ବର ବାବୁ ଠିଆହୋଇ ହସିଲେ । "ଆଚ୍ଛା କଥା ହେଲା ଏବେ ! ମୁଁ ସିନା ବାହାରିଥିଲା ଆପଣଙ୍କୁ ସାହାଯ୍ୟ କରିବି ବୋଲି । ଏବେ ଦେଖାଗଲା ଯେ ମୋ' ପାଇଁ ଆପଣ ହଇରାଣ ହେବାକୁ ବସିଲେଣି । ସେଇଆଡେ ତ' ପୁଣି ଫେରିବାକୁ ହବ ! ଚାଲନ୍ତୁ, ମୁଁ ଘରେ ମୁହଁମାରି କହିଦେବି, ତା'ପରେ ଆପଣଙ୍କ ଘର ଖୋଜି ବାହାର କରିବା ।"

ଭଦ୍ରଲୋକ କିଛି ନକହି ରାସ୍ତାକୁ ଉଠିଲେ । ଦୁଇଜଣ ଯାକ ପ୍ରାୟ ନୀରବ ଚାଲିଥା'ନ୍ତି । ନୀଳାମ୍ବର ବାବୁ ଅନେକ କଥା ଉଖାରିଲେ ବୁଢା କେବଳ ପଦେ କହି ଛିଡେଇ ଦଉଥା'ନ୍ତି । ପାଦ ଖୁବ୍ ଭାରି ଭାରି ପଡୁଥାଏ । ନିଃଶ୍ୱାସ ତୋଳୁଥାଏ ଉଜାଣି । ନୀଳାମ୍ବର ବାବୁ ଧିମେଇ ଗଲେ ଜାଣିଶୁଣି ।

ବୁଢା ଅଳ୍ପ ହସି କହିଲେ, "ହାଲିଆ ହେଇଗଲେ କି ?"

ବତୀଖୁଣ୍ଟ ଆସିଲା । ନୀଳାମ୍ବର ବାବୁଙ୍କ ଅଞ୍ଚଳ ଶୁନ୍‌ଶାନ୍ । କେହି କୁଆଡେ ନାହିଁ । ପିଲେ ବୋଧହୁଏ ଶୋଇ ଯାଇଛନ୍ତି । ସେ କବାଟ ବାଡେଇଲେ, କହିଲେ –

"ଆପଣ ଟିକିଏ ଠିଆ ହେଇଥାନ୍ତୁ । ମୁଁ ଖାଲି କହିଦେଇ ଚାଲିଆସୁଚି ।"

ସେ କିଛି କହିଲେ ନାହିଁ । ସେମିତି ଠିଆ ହେଇ ରହିଲେ ବତୀଖୁଣ୍ଟ ତଳେ ।

ନୀଳାମ୍ବର ବାବୁ ଘରେ ପଶିଲେ । କଥାବାର୍ତ୍ତା ଶୁଭିଲା । ପିଲାକାନ୍ଦ ଶୁଭିଲା । କିଛି ସମୟ

ଗଲା । ସେ ପଦାକୁ ପୁଣି ବାହାରି ଆସିଲେ । ଘରର ତାଟି କବାଟ ଗାଜୁ ଗାଜୁ ହେଇ ତାଙ୍କ ପଛେ ପଛେ ଦୁଆରବନ୍ଧ ପର୍ଯ୍ୟନ୍ତ ବଳେଇ ଆସିଲା ।

ସେ ହଠାତ୍ ଦେଖିଲେ ଯେ ବତୀଖୁଣ୍ଟ ତଳେ କେହି ନାହାନ୍ତି । ସେ ଏଣେ ତେଣେ ଆଖି ପକେଇଲେ । ଆଶ୍ଚର୍ଯ୍ୟ । କୋଉଠି ଦିଶୁନାହାନ୍ତି । ସେ ରାସ୍ତା ଉପରେ ଏପଟେ ସେପଟେ କିଛିବାଟ ଗଲେ । କେହି କୋଉଠି ନଥିଲେ ।

'ଭଦ୍ରଲୋକ ବିଚରା । ମୋତେ ହଇରାଣ ନ କରିବାକୁ ଏକୁଟିଆ ଚାଲିଗଲେ କୁଆଡେ ।' – ସେ ନିଜ ଆଡୁ ତ କିଛି ତ୍ରୁଟି କରିନାହାନ୍ତି । ଛାଡ, ଆଉ ଖୋଜି ଲାଭନାହିଁ । ସେ ଘରକୁ ଫେରିଗଲେ । ଭିତରୁ କବାଟ କିଳା ହେଲା । ବାହାରେ ନିଛାଟିଆ ରାସ୍ତା । ନିଛାଟିଆ ଜହ୍ନ । ଭିତରେ ସଂସାର, ଘନିଷ୍ଠ, ନିବିଡ । ବାହାରେ ଦୁସ୍ତର ମେଲା ଆକାଶ ।

ନୀଳାମ୍ବର ବାବୁଙ୍କୁ ସକାଳୁ କେହି ଉଠାଇଦେଲା । ସେ ନିଦ ମଳମଳ ଆଖିରେ ଉଠି ଦେଖିଲେ, ପାଖରେ ସ୍ତ୍ରୀ ଆଉ ପୁଅ । ତାଙ୍କ ହାତରେ ଖଣ୍ଡେ ଚିଠି ।

"ଏ ଚିଠି ଆଉ ଏ ପୁଡିଆ ବାବୁଲି ପାଇଲା ଝରକା ଫାନ୍ଦରୁ । କିଏ ଖୋସି ଦେଇଚି ରାତିରେ ।"

ଚଉଁକିନା ନିଦ ଭାଙ୍ଗିଗଲା ।

"କାଇଁ, ଦେଖି ଦେଖି !"

ଥରିଲା ଥରିଲା ହାତର ବଡ ବଡ ଓଡିଆ ଅକ୍ଷରରେ ଲେଖା, "ତୁମେ ହିଁ ମୋର ନନ୍ଦିଆ । ତମ ପୁଅ ମୋ' ନାତି । ତା' ପାଇଁ ଏ ପୁଡିଆଟା ! – ମୁଁ ଆଉ ଘର ଖୋଜୁ ନାଇଁ । ମୁଁ ଜାଣେ ସେ ମିଳିବ ନାହିଁ । ଥରେ ହଜିଲେ ସେ ମିଳେନାହିଁ ।"

କାଗଜ ପୁଡିଆରୁ ଦୁଇଟି କାଢକରି ଚକ୍‌ଲେଟ ବାର୍ ପାପୁଲାରେ ଧରି ନୀଳାମ୍ବର ବାବୁ ଶୂନ୍ୟକୁ ଚାହିଁ ରହିଥା'ନ୍ତି ଅନେକ ବେଳ ଯାଏଁ ।



# ରୁନି ପାଇଁ ନୀରବ ପ୍ରାର୍ଥନା

ଆସନ୍ତୁ, ଆମେ ସମସ୍ତେ ସେଥିରେ ଯୋଗଦେବା । ଅନ୍ତତଃ ଗୋଟାଏ ଥର ଭାଷାର ବ୍ୟଭିଚାରରୁ ମୁକ୍ତ ହୋଇ, ଅଭିସନ୍ଧିର ଜାଲରୁ ମୁକୁଳି ଆସି ତଳକୁ ମୁହଁ ପୋତି ଠିଆହେବା ।

ଆଜି ଶନିବାର । ଆଜି ଦିନସାରା କୌଣସି ଅଘଟଣ ଘଟିନାହିଁ । କୌଣସି ଅସ୍ୱାଭାବିକତା ନାହିଁ ଏ ଛୋଟ ପୃଥିବୀର ପରିଧି ଭିତରେ । ଆଜି ବରଂ ସବୁ ଠିକ୍ ଚାଲିଛି । ସବୁ କେମିତି ସଜାଡି ହେଇଯାଇଛି । ଆଜି ପାଇପ୍‌ରେ ପାଣି ଆସିଛି ଦୁଇଥର । ବିଜୁଳି ଆଲୁଅ ସଞ୍ଜବେଳେ ଦୁଇଘଣ୍ଟା ଉଡି ଯାଇନାହିଁ । ବଜ୍ରପାତ ହୋଇନାହିଁ । ହେଲେ ବି ଏ ଅଞ୍ଚଳ ଲୋକେ କେବେ ପ୍ରତିବାଦ କରି ନଥା'ନ୍ତେ – ବଜ୍ରପାତରେ ନୁହେଁ କି ଆଲୁଅ ଲିଭିଗଲେ ନୁହେଁ । କାରଣ ଆମେ ତୁମେ ତ ସେଥିପାଇଁ ଦାୟୀ ନୋହୁ – ସେ ସବୁ ମାଲିକମାନଙ୍କର ଇଚ୍ଛା । ସେଥିରେ କ'ଣ ପ୍ରତିବାଦ କରାଯାଏ ?

କୃପା ମହାରଣାର ଦି'ବଖରିଆ ଭଡାଘରେ ବି ଆଲୁଅ ଜଳୁଛି । ମହାରଣାର ସ୍ତ୍ରୀ ଏବଂ ବଡଝିଅ ଚାରି-ପାଞ୍ଚ ଥର ଦାଣ୍ଡ ଦୁଆରେ ଦେଖିଦେଇ ଚାଲିଆସିଛନ୍ତି । ରାସ୍ତା ସେମୁଣ୍ଡ ଯାଏଁ ବି କିଛି ସମୟ ଚାହିଁଛନ୍ତି । ସେମାନେ ସେତେବେଳେ ବୁଝିପାରି ନାହାନ୍ତି ରୁନି ଏବଂ ତା' ସ୍ୱାମୀ କାହିଁକି ଏମିତି ଅସ୍ୱାଭାବିକ ବିଳମ୍ବ କରୁଥିଲେ । 'ଲୁନା'ରେ ଦୁହେଁ ପାଞ୍ଚଟା ପୂର୍ବରୁ ଚାଲିଆସିବା କଥା । ଆସୁ ଆସୁ ଆଗ ପଡିଶାରେ ରହୁଥିବା ମହାରଣା ମାଉସୀକୁ ହାତ ହଲେଇ ହସି ହସି ଗେଟ୍ ଫିଟେଇ ପଶିବା କଥା । ତାଙ୍କ ବଡ ଝିଅ ଲୁସିକୁ ହାତଠାରି ଡାକିବା କଥା । ଏସବୁ କିଛି ହେଲାନାହିଁ କାହିଁକି ? ଅଥଚ ଶନିବାର ସନ୍ଧ୍ୟାରେ ଅନ୍ୟ କିଛି ହେଲେ ଅସ୍ୱାଭାବିକ ନଥିଲା ।

'ରୁନି ସାହୁ'କୁ ଦେଖିଲେ ହିଁ ଯେ କେହି ମୁଗ୍ଧ ହେଇଯିବା ସ୍ୱାଭାବିକ । ସେ ଯେ ସେମିତି ଗୋଟାଏ ଅସାମାନ୍ୟା ସୁନ୍ଦରୀ ତା' ନୁହେଁ । ତା'ର ହସ ହିଁ ଅଲୌକିକ । ସତେ ବା ଧାରେ ହସରେ ସେ ସମଗ୍ର ପୃଥିବୀକୁ ସୁନ୍ଦର କରିଦେଉଥିଲା । ସେ ଯେଉଁଦିନ ସେ ଭଡାଘରକୁ ତା' ସାମାନପତ୍ର ନେଇ ଆସିଲା – ଫୋଲ୍‌ଡିଂ ଖଟ, ସୋଫା, ଟେବୁଲ ପଙ୍ଖା, ସିଲେଇ ମେସିନ୍, ଧଳାକଳା ଟିଭି – ଦୁଆର ମୁହଁରେ ଠିଆହୋଇ ପଡୋଶିନୀମାନେ ଚାହିଁ ରହିଥିଲେ । ରୁନି ସମସ୍ତଙ୍କୁ ଚାହିଁ ହସିଦେଉଥିଲା । ଫଳରେ ସେ ସାଇ ସାରା ଦୁଇପଟେ ମଲ୍ଲି ଗଜଦନ୍ତ ଫୁଟି ଯାଇଥିଲା ଧାଡି

ଧାଡି ହେଇ ।

ଲୁନାଟିକୁ ଗଡେଇ ଗଡେଇ ଯେଉଁ ଛୋଟକାଟର ମଣିଷଟି ତା' ସାଙ୍ଗରେ ଚାଲିଥିଲା, ସମ୍ବଲପୁରୀ ପରଦା ଡିଜାଇନ୍ ଥିବା କନାରେ ହାଲ୍‌କା ବୁସ୍ ସାର୍ଟଟିଏ ପିନ୍ଧିଥିଲା ତା' ଉପରେ ଖଇରିଆ ରଙ୍ଗର ପେଣ୍ଟ୍ । ଭାରି ମାନୁଥିଲା ତାକୁ । ସେ ବି ସମସ୍ତଙ୍କୁ ଚାହିଁ ସେମିତି ହସି ହସି ନୂଆ ଭଡାଘରେ ପଶିଥିଲା । ସେ ରୁନିର ସ୍ୱାମୀ । କି ଚମତ୍କାର ଯୋଡିଟିଏ ବିଧାତା ଖଞ୍ଜିଥିଲା ସତେ । ମଣିକାଞ୍ଚନ ପରି ମାନୁଥିଲେ ।

ସେମାନେ ସେମିତି ହସି ହସି ଜିନିଷ ସବୁ ଓହ୍ଲେଇ ଦେଇଥିଲେ – ପାଟିତୁଣ୍ଡ ନାହିଁ, ଘୋ ଘା' ନାହିଁ । ଅତି ଭଦ୍ର ମାର୍ଜିତ ରୁଚି ଦୁଇଜଣ ଯାକର । ବାଃ, ସାଇବାଲା ଖୁବ୍ ଖୁସି ।

ମହାରଣା ଘର ପିଲାଏ ତା' ଆରଦିନ କହୁଥିଲେ, "ଜମା ପାଟିତୁଣ୍ଡ ନାଇଁ । ଆଖିରେ ନ ଦେଖିଲେ ଜଣେ କହିପାରିବ ନାହିଁ ଯେ ସେ ବଖରାରେ ଜଣେ କେହି ଆସି ରହିଛନ୍ତି ।"

ସେଇ ଦିନ ତାଙ୍କ ବଡଝିଅ ରୁନିକୁ ଦେଖି ହାତଟେକି କହିଲା – "ଆସନ୍ତୁ ଆମ ଘରେ ଚା ଖାଇବେ ।"

ରୁନି ହାତଟେକି କେବଳ ହସିଦେଲା । କିଛି କହିଲା ନାହିଁ ।

ଆରେ ଭାରି ଗର୍ବୀ ତ ! ଡାକିଲେ 'ହଁ ନାଇଁ' କିଛି ଉତର ଦଉନାହିଁ । ଭାରି ଜଣେ ତ ! ଝିଅଟି ଟମ ଟମ ହେଇ ଯାଇ ତା' ମା'କୁ କହିଲା ।

ତା' ମା' ଆସି ପିଣ୍ଡାରେ ଠିଆହୋଇ ରୁନିକୁ କହିଲେ – "ଆସୁନାହାନ୍ତି । ଝିଅ ଆପଣଙ୍କୁ ଡାକିଲା, ଆପଣ ଶୁଣିପାରିଲେ ନାହିଁ ବୋଧହୁଏ ।"

ରୁନି ପୁଣି ତାଙ୍କୁ ଚାହିଁ କେବଳ ହସିଲା – ଉଁ କି ଚୁଁ କିଛି କଲାନାହିଁ ।

ତା'ହେଲେ ଝିଅ ଠକ୍ କହୁଥିଲା । ଏ ଗୋଟେ ମନମୋଟୀ କୋଉଠିକାର ।

ସେ ଖପା ହୋଇଯାଇ ମହାରଣା ପାଖରେ କଥା ପହଞ୍ଚେଇଲେ, 'କିଓ ତମକୁ କ'ଣ ଭଡାଟିଆ ମିଳୁ ନଥିଲେ ? ଏମିତି ଗୋଟାକୁ ଆଣିଛ ଯେ ଜମା କଥା କହୁନାଇଁ । ମୁଁ ଏମିତି ପଡିଶାକୁ ନେଇ ଚଳିପାରିବି ନାଇଁ ।'

"ଆରେ ନାଇଁ, ଏମାନେ ଭାରି ଭଲଲୋକ । ସକାଳ ହଉ, ଯାଇ ଘେରାଏ ବୁଲିଆସିବା, ସୁବିଧା ଅସୁବିଧା ବୁଝିଆସିବା ।"

"ତମେ ଯାଅ – ମୁଁ ଆଉ ଅପମାନ ସହିବାକୁ ଯାଇପାରିବି ନାଇଁ ।"

"ଆରେ ରହୁନା, ଦେଖିବା, ବୁଝିବା କଥା କ'ଣ ?"

ସକାଳ ସାତଟା ବେଳେ ଦୁହେଁ ଆସି ରୁନି ଦୁଆରେ ପହଞ୍ଚିଲେ । ଚମତ୍କାର ପରଦା ଝୁଲୁଥିଲା । ଭିତରକୁ ପଶିଗଲେ । ରାତିକ ଭିତରେ ସବୁ ଚକାଚକ ସଜା ହୋଇ ଯାଇଥିଲା । ସେମିତି କିଛି ଆଡମ୍ବର ନାଇଁ କିନ୍ତୁ ଦର୍ପଣ ପରି ସ୍ୱଚ୍ଛ ପରିଷ୍କାର । ରୁନି ଆସି ନମସ୍କାର କରି ସେମାନଙ୍କୁ ସୋଫା ଦେଖାଇଦେଲା ।

"ଧନ୍ୟବାଦ ମିସେସ୍ ସାହୁ । ଆମେ ଆପଣଙ୍କୁ ସ୍ୱାଗତ ଜଣାଇବାକୁ ଆସିଛୁ ।" କହିଲେ ମହାରଣା ବାବୁ । ତଥାପି ଗୁନି ସେମିତି ହାତଯୋଡି ରଖିଥାଏ । ସେମାନଙ୍କୁ ଚାହିଁ ସେମିତି ହସୁଥାଏ ।

"ଆମେ ତା'ହେଲେ ଆସୁଛୁ । ଆପଣ ତ ଆମ ସହିତ କଥା ହେବା ବେଇଜତି ବୋଲି ଭାବୁଛନ୍ତି... ଆମେ ଆସୁଛୁ ।" କହିଲେ ମିସେସ୍ ମହାରଣା ।

ଏତିକିବେଳେ ଗୁନି ଛପା ଅକ୍ଷରରେ କ'ଣ ଲେଖା ହେଇଥିବା ଗୋଟିଏ କାଚ ବନ୍ଧେଇ ଫ୍ରେମ୍ ଆଣି ଟିପଏ ଉପରେ ଥୋଇଦେଲା – ଚମତ୍କାର ଗୋଲ ଗୋଲ ଅକ୍ଷରରେ ସେଥିରେ ଲେଖାଥିଲା, 'ଆମର ନୀରବତା ପାଇଁ କ୍ଷମା ମାଗୁଛୁ । ଆମେ ଦୁହେଁ ମୂକ ଓ ବଧିର ।'

ମିଷ୍ଟର ମହାରଣା, ମିସେସ୍ ମହାରଣା ସତେବା ଟିକି ଟିକି ହେଇ ଭାଙ୍ଗିପଡୁଥିଲେ । ଏ ନିଷ୍ଠୁର ସତ୍ୟ ପାଖରେ ତାଙ୍କ ଭିତରର ଭାବହାଟରେ ହୁଲସ୍ଥୁଲ ପଡିଯାଇଥିଲା । ସେ ଉଭୟେ ନୀରବ । ଥମ ଥମ ହେଇ ଗୁନିକୁ ଚାହିଁ ରହିଲେ । ମିସେସ୍ ମହାରଣା ହଠାତ୍ ଉଠିପଡି ଗୁନିକୁ କୁଣ୍ଢେଇ ପକେଇଲେ । ତାଙ୍କ ଆଖିରୁ ବୋଧେ ନିର୍ମଳତମ ସ୍ନେହ ମୁକ୍ତା ବିନ୍ଦୁପରି ଥୋପି ପଡୁଥିଲା । ସେଥିପାଇଁ କ'ଣ ଭାଷା ଅଣ୍ଟିଥାନ୍ତା ?

କାହାରି କିନ୍ତୁ କିଛି ଅସୁବିଧା ହେଲାନାହିଁ । ଗୁନି ଏବଂ ସାନୁ – ତା' ସ୍ୱାମୀ – ଲୋକଙ୍କୁ ବୁଝିବାରେ ଏବଂ ନିଜକୁ ସେମାନଙ୍କ ପାଖରେ ବୁଝେଇ ଦେବାରେ କୌଣସି ଅସୁବିଧା ନଥିଲା । ଗୁନି ଗୋଟିଏ କର୍ପୋରେସନରେ ଚାକିରି କରୁଥିଲା । ଖୁବ୍ ଦାୟିତ୍ୱପୂର୍ଣ୍ଣ କାମ । ସକାଳ ଦଶଟାରୁ ସନ୍ଧ୍ୟା ପାଞ୍ଚଟା ଯାଏଁ ଖଟଣି । ସାନୁର ଗୋଟିଏ ଷ୍ଟୁଡିଓ ସେଇଠି ସେ ପୋଟ୍ରେଟ୍ ଆଙ୍କୁଥିଲା । ବର୍ଗଫୁଟକୁ ୪୦୦ ଟଙ୍କା ତୈଳ ଚିତ୍ର ପାଇଁ ଗରାଖ ଅନେକ କମିଗଲେଣି ଆଜିକାଲି । ଏବକୁ ତ' ଫଟୋଚିତ୍ର ଚାହିଁବ ସେମିତି ମିଳିପାରିବ, ତା' ପୁଣି ରଙ୍ଗିନ । ତେବେ କଦର କରି ଜାଣିବା ଲୋକେ ତୈଳଚିତ୍ର ପାଇଁ ଅର୍ଡର ଦିଅନ୍ତି । ଏବେ ଦି'ଟା ଅର୍ଡର ଉପରେ ସାନୁ କାମ କରୁଛି ।

ସେ ଚାରିଟାରୁ ବାହାରି ଗୁନିକୁ ନେଇ ପାଞ୍ଚଟା ସୁଦ୍ଧା ବସାରେ ପହଞ୍ଚିଯାଏ । ସେଇଠୁ ଚା ଟିକିଏ ଖାଇଦେଇ ସେମାନେ ଗାଧୋଇ ପାଧୋଇ ଚୌକି ପକେଇ ବରନ୍ଦାରେ ବସିଥା'ନ୍ତି । ସେମାନେ ସ୍ଥିର କରିଛନ୍ତି ରନ୍ଧାବଢା କରି ଗୁଡାଏ ସମୟ ଓ ଶକ୍ତି ଅପଚୟ କରିବାର ଅର୍ଥ କିଛି ନାହିଁ । ଏଣୁ ଶୁକ ରେଷ୍ଟୁରାଣ୍ଟରେ ଦୁଇଓଳି ପାଇଁ ଟିଫିନ୍ କେରିଅରରେ ଖାଇବା ବରଦା କରିଦେଇଛନ୍ତି । ସକାଳେ ଚା ବିସ୍କୁଟ୍ ଖାଇ ନଅଟା ପଇଁତାଳିଶି ସୁଦ୍ଧା ଭାତ ମିଲ୍ ଦୁଇଟି ସାରିଦେଇ ବାହାରିପଡନ୍ତି । ଦି'ପହରେ ଗୁନି ସେଇଠି ବରାପିଆଜି ଖାଇବାକୁ ପସନ୍ଦ କରେ । ସାନୁ ଖାଏ ଉପମା । ଅଲଗା ଅଲଗା ଖାଆନ୍ତି । ସେଥିପାଇଁ ସେମାନେ ପଇସା ହିସାବ କରି ରଖିଛନ୍ତି ।

ଏଣୁ ସନ୍ଧ୍ୟାବେଳେ ଖୁବ୍ ସମୟ ମିଳେ । ଗୁନି ସାମ୍ନା ପଡୋଶୀ ମିସେସ୍ ଜେନାଙ୍କ ଘରକୁ ଯାଏ । ତାଙ୍କ ପୁଅ ବି.ଏ. ପରୀକ୍ଷା ଦଉଚି ତ । ଗୁନି କିଛି ବହି ବଜାରରୁ ଆଣିଦିଏ । କିଛି ନୋଟ୍ ତିଆରି କରିଦିଏ । ମିସେସ୍ ଜେନାଙ୍କ ପାଠରେ ସେତେ ଜୋର୍ ନାଇଁ । ସେ ଗୁନିକୁ ଦେଖି

କିନ୍ତୁ ଖୁସିରେ କୁରୁଳନ୍ତି । ଝିଅଟାଏ! ଦେଖ ତା'ର ବୁଦ୍ଧି, ବିଦ୍ୟା, ପାରିଲାପଣ! ସେ କୋଉ ମରଦଠୁଁ ଊଣା, କୋଉ ଦିଗରେ ?

ସାଇପଡିଶା ଝିଅମାନଙ୍କୁ ଗୁନି ଅପା ଭଳି ଆଉ କେହି ଦିଶନ୍ତି ନାହିଁ । କଥା କଥାକେ ଗୁନିଅପା । ସେଇଠି ସିଲେଇ, ବୁଣେଇ, ଫ୍ରକ୍ ଜମା କଟେଇ ଶିଖିବାକୁ ଭିଡ ।

ପଦେ କଥା ଗୁନି କହିପାରେ ନାହିଁ । ଅଥଚ ତା' ଆଖିର କୁହୁକରେ ସମସ୍ତଙ୍କୁ ବଶୀଭୂତ କରି ରଖିଥାଏ । ତା' ନୀରବ ହସରେ ସମସ୍ତେ କିଣି ହୋଇଯାଇଥା'ନ୍ତି ।

ଦିନେ ମିସେସ୍ ମହାରଣା ତା' ପାଖକୁ ସନ୍ଧ୍ୟାବେଳେ ଆସିଥା'ନ୍ତି । ଝିଅଙ୍କ ଭିଡ ଭାଙ୍ଗିଯାଇଥାଏ । ଗୁନି ଝିଅମାନଙ୍କୁ ପୂର୍ବରୁ ବିଦା କରିଦିଏ । ତାଙ୍କୁ ଘଣ୍ଟା ଦେଖେଇ ବିଶି ଆଙ୍ଗୁଠି ଟେକି ଆଖିରେ ଓଠରେ ବଡ ଅପାର ଆଦେଶ ଓ ସ୍ନେହ ମିଶେଇ ସେ ସେମାନଙ୍କୁ ରାସ୍ତା ଦେଖେଇ ଦିଏ । ସେମାନେ ଠିକ୍ ବୁଝିଯାନ୍ତି । ଗୁନି ଦେରେ ଗୋଳେଇ ହେଲାପରି ବିଦାୟ ନିଅନ୍ତି ତା' ପରଦିନ ଆସିବାକୁ ।

ମିସେସ୍ ମହାରଣାଙ୍କୁ କପେ ଚା ଥୋଇଦେଇ ଗୁନି ପାଖ ସୋଫାରେ ବସିଲା । ଗୁନିର ଠାର ଅଙ୍କେ ବହୁତେ ସମସ୍ତେ ବୁଝି ଯାଇଥା'ନ୍ତି, କିନ୍ତୁ ବେଳେବେଳେ ତାକୁ ଲେଖି ଦେବାକୁ ହେଉଥାଏ ।

ମିସେସ୍ ମହାରଣା ହସି ହସି ପଚାରିଲେ– "ତୁମ ବିଭାଘର ତ ଚାରିବର୍ଷ ପୂରିଗଲା । କେବେ ଛୋଟ ଫୁଲଟିଏ ଫୁଟିବ ଏ ଘରେ ?" କିଛି ଠାର କିଛି ଭାବଭଙ୍ଗୀରୁ ଗୁନି ବିଷୟଟି ବୁଝିଗଲା । ତା' ମୁଁ ଉପରେ ପ୍ରସ୍ତ ପ୍ରସ୍ତ ଫଗୁ ବୁଣି ହୋଇଗଲା । ସେ କିନ୍ତୁ ଖୁବ୍ ଡରିଗଲା ପରି ଜଣାଗଲା । ଖୁବ୍ ଘାବରେଇ ଯାଇଥିଲା । ସେ ହାତ ହଲେଇ ମୁଣ୍ଡ ଲଡି 'ନାହିଁ ନାହିଁ' କଲା । ମିସେସ୍ ମହାରଣା ଜୋର୍ କରିବାରୁ ଲେଖିଦେଲା – "ନାଇଁ ମାଉସୀ, ଆଉ ଗୋଟିଏ ଅଭିଶପ୍ତ ମଣିଷ ଛୁଆକୁ ଏ ପୃଥିବୀକୁ ଆଣିବାକୁ ଚାହୁଁ ନାହୁଁ ।"

ମିସେସ୍ ମହାରଣା ଅନେକ ଭରସା ଉତ୍ସାହ ଦେଇ ତାକୁ ବୁଝେଇ ଥିଲେ ଯେ, ଏମିତି ବାପା ମା'ମାନଙ୍କର ଖୁବ୍ ସୁସ୍ଥ ପିଲା ବି ହଉଛନ୍ତି । ସେମାନେ ଆଦୌ ମୂକ ବଧିର ହେଉନାହାନ୍ତି । ସେଥିପାଇଁ ଡାକ୍ତରଙ୍କୁ ପଚାରି ଆଗତୁରା ଔଷଧ ଖାଇବା କଥା । ଗୁନି ତାଙ୍କ ହାତଯୋଡିକୁ ଧରି ତାଙ୍କ ମୁହଁକୁ ଚାହିଁଥିଲା । ତା' ଆଖି ଥମ୍ ଥମ୍ ହୋଇଯାଇଥିଲା ଲୁହରେ । ମିସେସ୍ ମହାରଣା ତାକୁ କୁଣ୍ଢେଇ ଧରି ପିଠି ଆଉଁସି ଦେଇଥିଲେ ।

ତାପରେ ଗୁନିର ହାବଭାବର ଅନେକ ପରିବର୍ତ୍ତନ ହୋଇଯାଇଥିଲା ।

କର୍ପୋରେସନରେ କାମ କରୁଥିବା ଟୋକାଦଳ ଖୁବ୍ ନିଘା ରଖିଥିଲେ ଗୁନି ଉପରେ । ଗୁନି ସେମାନଙ୍କୁ ଚାହିଁଦେଇ ତାଙ୍କ ମନ କଥା ବୁଝିଯାଉଥିଲା । ଅରଣା ଜନ୍ତୁଗୁଡିକୁ ସେ ତା'ର ସ୍ୱଚ୍ଛ ନିର୍ଲିପ୍ତ ଚାହାଣୀରେ ବଶୀଭୂତ କରିଦେଉଥିଲା । ତା'ର ସରଳ ନିର୍ମଳ ବ୍ୟବହାରରେ ସେମାନେ ଦିନବେଳେ ନିଶାଚର ପକ୍ଷୀପରି ଅସହାୟ ବୋଧ କରୁଥିଲେ । ତଥାପି ଜଣ ଜଣକର

କଟାସ ଆଖିରେ ସେ ଶଙ୍କି ଯାଉଥିଲା । ତାକୁ ଲାଗୁଥିଲା ସତେବା ସେ ଚର୍ବି ଲାଗିଥିବା, ଅଣ୍ଡା ଧରିଥିବା ଚିକ୍କଣ କୁକୁଡାଟିଏ । ପାଟିରୁ ଲାଳ ଗଡେଇ ସେମାନେ ଟାକି ବସିଛନ୍ତି, ସଜ ପାଇଲେ ଜାବିଦେବେ । ପର ଉଲାରି ତାକୁ ଭକ୍ଷିଯିବେ ଗୋଟାପଣେ । ସେ ସେମାନଙ୍କୁ ବୁଝିପାରୁଥିଲା; କିନ୍ତୁ କାହାକୁ କେମିତି ବା କ'ଣ କହିବ ?

ସେଦିନ କାଣ୍ଟିନ୍‌କୁ ପିଆଜି ବରାଦ କରି ସେ ଅପେକ୍ଷା କରିଥାଏ । ନବଘନ ମୁଦୁଲି ଆସି ତା' ସାମ୍ନାରେ ବସିଗଲା । ଗୁନି ତାକୁ ଚାହିଁ ଅଳ୍ପ ହସି ସ୍ୱାଗତ ଜଣେଇଲା । ପିଆଜି ଆଣିଥିବା ଟୋକାକୁ ଆଉ ଗୋଟିଏ ପ୍ଲେଟ୍ ଆଣିବାକୁ ଠାରିଦେଲା ।

ନବଘନ ନିଜକୁ ଗୋଟେଇ ପାଟେଇ କୌଣସି ପ୍ରକାରେ କହିଲା – "ଦେଖନ୍ତୁ, ଏଇଟା ଅନ୍ୟାୟ । ଆପଣ ମୋତେ ଖୁଆଇବା କଥା ନା ମୁଁ ଆପଣଙ୍କୁ ଖୁଆଇବା କଥା ? ମୁଁ ଆଜି ଉଭୟଙ୍କ ପଇସା ଦେଇ ଦଉଚି । ଆପଣ ନାହିଁ କଲେ ମୁଁ ଏଠୁ ଉଠିଯାଉଛି ।" ସେ ଉଠିବା ଉପକ୍ରମ କରିବାରୁ ଗୁନି ବ୍ୟସ୍ତ ହୋଇ ତାକୁ ବସିବାକୁ ଅନୁରୋଧ କଲା । ବସିବାରୁ ଖୁସି ହୋଇ ତାକୁ ଚାହିଁ ହସିଲା । ପିଆଜି ଖାଇସାରି ଘଣ୍ଟା ଦେଖି ଗୁନି ଚଞ୍ଚଳ ଚା ଖାଇନେଲା । ନବଘନ ଚା କପ୍ ଅଧାରେ ଛାଡିଦେଇ ଆଗ ଯାଇ କାଉଣ୍ଟରରେ ପଇସା ଦେଇ ପଳେଇଲା ।

ସେଦିନ ଦୁହେଁ ସାଙ୍ଗ ହେଇ ଅଫିସ୍‌କୁ ଆସିବାର ସମସ୍ତେ ଦେଖିଲେ, ନବଘନକୁ ଆଖି ଠାରି କେତେ ସାବାସି ଜଣେଇଲେ । ଜଣେ ତା' ଟେବୁଲ ଉପରେ ହାମୁଡି ପଡି ଫିସ୍ ଫିସ୍ କରି କହିଲା – କଙ୍ଗ୍ରାଚୁଲେସନ୍ । ଏତେ ଦିନ ପରେ ବନହରିଣୀ ତୋ' ଫାନ୍ଦରେ ପଡିଲା । ନବଘନ କହିଲା, "ଯାବେ ଶଳା, ବାଜେ କଥା ଯାକ କାହିଁ ବକୁଚୁ ?"

ଗୁନି ତା' ଆଖି କୁଣରେ ସବୁ ଦେଖି ସବୁ କଳି ନେଉଥାଏ, ତା' କାନମୁଣ୍ଡା ଗରମ ହେଇଯାଉଥାଏ । ସେ ସତେ କାହିଁକି ରାଜି ହେଲା ? ସେ କ'ଣ ନିଜ ପଇସାଟା ଦେଇପାରି ନଥାନ୍ତା; କିନ୍ତୁ ଏଇଟା ତ ସାଧାରଣ ଶିଷ୍ଟାଚାର । ସେ ଅପରିଚିତ ହେଇଥିଲେ ଭିନ୍ନ । ଗୋଟାଏ ଅଫିସ୍‌ରେ କାମ କରୁଚି । କେମିତି ହେଲେ ତାକୁ ଏତେଇ ଦେଇ ହେବ । ହୁଏତ ନିଜେ ଆଗରୁ ପୂରା ପଇସାଟା ଦେଇ ଦେଇଥିଲେ ହେଇଥାନ୍ତା । ସେଥିରେ ହୁଏତ ଆଉ ପ୍ରକାରେ କଥା ପଡିଥାନ୍ତା । ଅନେକ ଅର୍ଥ କରିଥା'ନ୍ତେ କଟାସମାନେ । କ'ଣ କରାଯାଇପାରେ ? ଗୁନି ଖୁବ୍ କ୍ଲାନ୍ତ ହୋଇପଡିଥିଲା । ତା'ର ଇଚ୍ଛା ହେଉଥିଲା କେମିତି ସମୟ ହେଇଯାଆନ୍ତା – ସେ ସେଇ ଜନ୍ତା ଭିତରୁ ମୁକୁଳି ଯାଆନ୍ତା ।

ଗୁନିର ଇତସ୍ତତଃ ଭାବ, କାହାକୁ ନ ଚାହିଁ ତଳକୁ ଅନେଇ ରହିବା ଖୁବ୍ ଅସ୍ୱାଭାବିକ୍ । କ'ଣ ଯେମିତି ଗୋଟାଏ କେଉଁଠୁ ଖସି ଆସିଛି ଏବଂ ଗୁନି ଜାଣିପାରୁନାହିଁ ତାକୁ ନେଇ କ'ଣ କରିବ ?

ସେ ହଠାତ୍ ଗୋଟାଏ ନିଷ୍ପତ୍ତିରେ ପହଞ୍ଚି ଖୁବ୍ ଖୁସି ହେଇଗଲା । ସେ ତା' ସ୍ୱାଭାବିକ୍ ଢଙ୍ଗରେ ସମସ୍ତଙ୍କୁ ଚାହିଁ ହସିଲା ଏବଂ ହାତଠାରି ଡାକିଲା । ଠେଲାପେଲା ହେଇ ସମସ୍ତେ

ମାଡିଆସିଲେ, ନବଘନ ପଛେଇ ଗଲା । ଖଣ୍ଡେ କାଗଜରେ କ'ଣ ଲେଖି ଗୁନି ସେମାନଙ୍କୁ ବଢେଇଦେଲା । ଜଣେ କିଏ ପଢିଲା, 'ଏ ରବିବାର ଦିନ ସକାଳବେଳା ଆପଣ ସମସ୍ତେ ମୋ' ଘରେ ଖାଇବେ ।' ଗୁନିର ନିଷ୍କପଟ ହସ ଓ ଚାହାଣୀରେ ସେମାନେ ଧୋଇଧାଇ ହେଇଗଲେ । ଆଉ କୌଣସି ଚୁପ୍‌ଚୁପ୍ କଥା ହେବା ପାଇଁ ଅବକାଶ ରହିଲା ନାହିଁ । ଗୁନିକୁ ମଧ୍ୟ ଖୁବ୍ ଉଶ୍ୱାସ ଲାଗିଲା । ଏଣିକି କାହା ସାଙ୍ଗରେ ବି ପିଆଜି ଖାଇଲେ ତା'ର ସଂକୋଚ କରିବାର କାରଣ କିଛି ନାହିଁ । ପଇସା ଯେ କେହି ଦେଲେ କିଛି ଯାଏ ଆସେ ନାହିଁ ।

ରବିବାର ଦିନ ଗୁନି ଘରେ ଭୋଜି ଖୁବ୍ ଜମିଥିଲା । ତା' ଉପର ଅଫିସର ବି ଆସିଥିଲେ । ଦୁଇଜଣ ସସ୍ତ୍ରୀକ ଆସିଥିଲେ । ନବଘନର ସ୍ତ୍ରୀ ଭାରି ବଢିଆ ମଣିଷ । ଗୁନି ତାଙ୍କର ବିଶେଷ ଯତ୍ନ ନେଉଥାଏ । କାରଣ ସେତେବେଳକୁ ତାଙ୍କର ଟଳମଳ ଗର୍ଭାବସ୍ଥା, ତଥାପି ସେ ଗୁନି ସାଙ୍ଗରେ ମିଶି କିଛି ବଢାବଢି କରିଦେଉଥିଲେ । କପାଳରୁ ଝାଳ ଥୋପି ଗୁନି ରୁମାଲରେ ପୋଛି ଦେଇଥିଲା । ଆଉ ଜଣେ ଅଫିସରଙ୍କ ସ୍ତ୍ରୀ । ସେ ବି ଉତ୍ତମ ମଣିଷ । ଗୁନି ସାଙ୍ଗରେ ମିଶିଗଲେ । ସାନୁ ଫିର ଫିର ସବୁ କାମ କରୁଥାଏ । ଆଖିରେ ଶୁଣୁଥାଏ । ଆଖିରେ କଥା କହୁଥାଏ । ଚଇଁ ଚଇଁ ଟୋକା । ମେସିନ୍ ଭଳି କାମ । ମୁହଁରେ ସବୁବେଳେ ହସ ।

ରବିବାର ଅପରାହ୍ଣରେ ଗୁନି ଆଉ ସାନୁ ମୁହାଁମୁହିଁ ବସି ପରସ୍ପରକୁ ଅନେକ ବେଳ ଚାହିଁଲେ । ହାତରେ ହାତ ରଖି ପରସ୍ପରକୁ ଅନୁଭବ କଲେ ।

ସାନୁ ନବଘନର ସ୍ତ୍ରୀର ପେଟ ଅବସ୍ଥା ଠାରି ଦେଖେଇଲା । ଦୁହେଁ ହସିଲେ । ସେ ଗୁନି ଆଡକୁ ଟିପ ଦେଖେଇବାରୁ ସେ ଆଖି ତରାଟି ଜିଭ କାମୁଡି ମୁଣ୍ଡ ହଲେଇଲା । ସତେ ବା ସେ ସେମିତି ଅଚଳ ହେବାକୁ ଚାହେଁ ନାହିଁ । ସତେ ବା ସେଭଳି ଫଳବତୀ ହେବା ପାଇଁ ସେ ମନେ ମନେ ସୁଖପାଏ, କିନ୍ତୁ ମାନିବାକୁ ଲାଜ କରେ ।

ସେଦିନ ରାତିରେ ଗୁନି ଆଗରେ ଆଞ୍ଜୁଳା ପାତି ସାନୁ କ'ଣ ଭିକ୍ଷା କଲା ଭଙ୍ଗୀରେ ତାକୁ ଚାହିଁ ରହିଲା । ସେଇଭଳି ଭଙ୍ଗୀରେ ଗୋଟିଏ ଅଦୃଶ୍ୟ ଶିଶୁକୁ ହାତରେ ଝୁଲେଇବାର ଅଭିନୟ କଲା ଏବଂ ଦୁହେଁ ଦୁହିଁଙ୍କୁ ବିଭୋର ହୋଇ ଚାହିଁ ରହିଲେ । ପରସ୍ପରକୁ ନିବିଡ ଭାବରେ ଭିଡି ଧରିଲେ ଅନେକ ବେଳଯାଏ ।

ସୋମବାର ଠଉଁ ଦପ୍ତର । ଗୁନି ନବଘନକୁ ଦେଖି ଦେଖି 'ଭାଉଜ'ଙ୍କ ଖବର ବୁଝିନେଲା । ଖୁବ୍ ଖୁସି ହେଲା ସେ ଭଲ ଅଛନ୍ତି ଜାଣି ।

ସୋମବାରଠଉଁ ସାନୁର ନୂଆଚିତ୍ର ଆରମ୍ଭ । ସେ ତା' ବଡ କାନ୍‌ଭାସରେ ମଦର୍ ଆଣ୍ଡ ଚାଇଲଡ୍ ଆଙ୍କିବାକୁ ଯୋଜନା କଲା । ଆଙ୍କିଲା, ରେମ୍ବ୍ରାଣ୍ଟଙ୍କ ଛାୟାରେ । ରଙ୍ଗ ସଜିଲ କଲା । ତୂଳି ଧୁଆଧୋଇ କରି ସଜିଲ କଲା । ସେ ଛନ୍ ଛନ୍ ଦେଖାଯାଉଥିଲା । ଖୁବ୍ ଖୁସି । ସତେବା ସେ ପୁନିଅ ଜହ୍ନଟାଏ ଦେଖି ପକେଇଛି । ବାସ୍ନାରେ ଭରପୁର ପବନ ତାକୁ ବହଲେଇ ଦଉଚି ।

ସୋମବାର ଫେରିବା ବାଟରେ ସେମାନେ ଗୋଟାଏ ବଡ ପାକେଟ୍ ଚକଲେଟ୍ କିଣି

ଆଣିଥିଲେ । ସାହି ସାରା ପିଲାମାନଙ୍କୁ ବାଣ୍ଟିଥିଲେ । ଏପରିକି ମିସେସ୍ ମହାରଣାଙ୍କୁ ଦୁଇଟି ଚକ୍‌ଲେଟ ବଢେଇଦେଇ ଗୁନି ତାଙ୍କୁ ଚାହିଁ ସତେବା କହିଥିଲା – 'ଆପଣ ସତେ ଭାରି ଭଲ ମଣିଷ ।'

ମିସେସ୍ ମହାରଣା ଗୁନିର ଓଠ ଟେକିଦେଇ ଚୁମା ଖାଇଥିଲେ । ଏଣିକି ସାବଧାନରେ ଚଳୁଥିବ । ବେଶୀ ପରିଶ୍ରମ କରିବ ନାହିଁ । ତୁମର ଚନ୍ଦ୍ରଉଦିଆ ପରି ପୁଅ ହେବ । ଭାରି ସୁନ୍ଦର ଗୀତ ଗାଇବ । ପୁଲକିତ ହୋଇଥିଲା ଗୁନି । ଲାଜରେ କିନ୍ତୁ ଡାହାଣ ହାତଟିକୁ ଛିଞ୍ଚାଡି ଠାରିଥିଲା – 'ଧେତ୍'!

ସେଇ ସପ୍ତାହର ଶନିବାର । ଘରୁ ବାହାରିଲା ବେଳକୁ ମିସେସ୍ ମହାରଣା ତାଙ୍କ ଦୁଆରେ ଠିଆ ହୋଇଥିଲେ । ପଛ ସିଟ୍‌ରୁ ଗୁନି ତାଙ୍କୁ ହାତଠାରି 'ଟା ଟା' କଲା । ଏପଟ ସେପଟ ସମସ୍ତଙ୍କୁ ଚାହିଁ ହସିଦେଲା ।

ସାନୁ ତାକୁ ତା' ଅଫିସ୍ ଗେଟ୍ ପାଖରେ ଓହ୍ଲେଇ ଚାଲିଗଲା – ଗୁନି ଦପ୍ତର ଭିତରେ ଆଖି ବୁଲେଇ ନେଲା । ଦେଖିଲା ନବଘନ ସିଟ୍‌ଟା ଖାଲି । ସେପାଖ ଲୋକକୁ ହାତଠାରି ପଚାରିଲା ତା'ର କ'ଣ ହେଲା ବୋଲି । ସେ ଯାହା କହିଲା, ସେଥିରୁ ସେ ବିଶେଷ କିଛି ବୁଝିପାରିଲା ନାହିଁ । ସେ ଆସି କାଗଜରେ ଲେଖିଦେଲା – Wife serious in hospital. He is on leave.

'Serious'? ନୀରବ ପ୍ରଶ୍ନ ।"

'ହଁ କାଲି ରାତିଠୁଁ କଷ୍ଟ ଆରମ୍ଭ ହେଲାଣି । ଆଜି ସେମାନେ କହିବାରୁ ନବଘନ ଛୁଟି ନେଇଛି । ସେ ଏଇନା ଡାକ୍ତରଖାନାରେ ହିଁ ଥିବ ।'

ଗୁନି ହଠାତ୍ ନିଜକୁ ଦେଖେଇ କହିଲା, 'ମୁଁ ବି ଛୁଟି ଦରଖାସ୍ତ କରି ଯାଉଛି । ଆପଣ କିଏ ଟିକିଏ ସାନୁକୁ ଡାକି ଆଣିପାରିବେ । ସେ ଗାନ୍ଧିଛକ ପାଖରେ ସୁବାସ ରୋଡ ଷ୍ଟୁଡିଓରେ ଥିବେ । ଆମେ ବି ଯିବୁ, କିନ୍ତୁ ଖାଇବା ଛୁଟି ଭିତରେ ! ଆପଣ ଆମ ସାଙ୍ଗରେ ଚାଲୁ ନାହାନ୍ତି ।'

'ନା ନା, ଆମେ ଦୁଇଜଣ ସେଠିକି ଯିବୁ ।' କେହି ଦପ୍ତର ଛାଡି ଯିବାକୁ ଚାହୁଁନଥିଲେ । ଗୁନି ତରତର ହୋଇ ଦରଖାସ୍ତ ଲେଖିଦେଲା । ଅଫିସରଙ୍କ ଟେବୁଲ ଉପରେ ଥୋଇ ବାହାରି ଗଲାବେଳେ ଦପ୍ତରକୁ ଚାହିଁଥିଲା । ତା' ଆଖିରେ କୌଣସି ଅଭିଯୋଗ ଆପତ୍ତି ନଥିଲା । ସମସ୍ତେ ତାକୁ ଚାହିଁ ରହିଥିଲେ ।

ବସ୍‌ରେ ଗୁନି ପହଞ୍ଚିଲା ସାନୁ ପାଖରେ । ସାଙ୍ଗେ ସାଙ୍ଗ ଉଭୟେ ବାହାରିଗଲେ ଡାକ୍ତରଖାନା । ତିନି ନମ୍ବର କେବିନ୍‌ରେ ନବଘନ ସ୍ତ୍ରୀ ଶୋଇଥିଲା । ଗୁନିକୁ ଦେଖିବା ମାତ୍ରେ ତା' ମୁହଁରେ ମୁଚମୁଚ୍ ଫୁଲ ଫୁଟିଗଲା । ଗୁନିକୁ ସେ କହିଲା ଯେ, ଅପରେସନ୍ ହବ । ସେଥିପାଇଁ ରକ୍ତ ଦରକାର । ନବଘନ ବୋଧହୁଏ ସେଥିପାଇଁ ଯାଇଥିଲା, କିନ୍ତୁ ସାଢେ ନ'ଠାରୁ କୁଆଡେ ଗଲା ? ସେତେବେଳେ ଏଗାରଟା ତିରିଶ ହେବାକୁ ଯାଉଥିଲା । ଡାକ୍ତର ଆସିଲେ । ନର୍ସ ଆସିଲେ ।

ରକ୍ତ ଅଧଘଣ୍ଟା ଭିତରେ ନ ଦେଲେ ଡେଲିଭରି ହେବା ଅସମ୍ଭବ, ସିଜେରିଆନ୍ କରିବା ମଧ ଅସମ୍ଭବ ।

ରୁନି ସେମାନଙ୍କୁ ନୀରବ ଚାହିଁଲା । ସେମାନେ ବି ତାକୁ ଆଶ୍ଚର୍ଯ୍ୟ ହେଇ ଚାହିଁଲେ । ରୁନି ଲେଖି ଜଣାଇ ଦେବାରୁ ସେମାନେ ସହଜବୋଧ କଲେ । ସେମାନେ ମଧ ଲେଖିଦେଲେ ।

ରକ୍ତ ସେଇଠି ମିଳୁଥିଲା – ତା'ହେଲେ ନବଘନ ଗଲା କୁଆଡେ ? ବୋଧହୁଏ ଟଙ୍କା ଯୋଗାଡ କରିବାକୁ ଗଲା । ତା'ର କ'ଣ କେହି ନାହାନ୍ତି ? ଦପ୍ତରରେ କ'ଣ ତା'ର କେହି ନଥିଲେ ?

ଠିକ୍ ଅଛି । ରୁନି ସାନୁକୁ ଠାରିଦେବାରୁ ସେ ସାଙ୍ଗେ ସାଙ୍ଗେ ନର୍ସକୁ ରକ୍ତ ଭଣ୍ଡାରକୁ ବାଟ ଦେଖେଇ ନେବାକୁ କହିଲା । ସେ କ'ଣ ଗୁଡାଏ ବକ୍‌ବକ୍ ହେଇ ଆଙ୍ଗୁଠି ଦେଖେଇ ଦେଲା । ସେ ଜଣେଇ ଦେବାକୁ ଚାହୁଁଥିଲା ଯେ ଯାହାର ଦରକାର ସେ ନିଜେ ଯାଇ ସେ କାମ କରୁ ।

ସାନୁ ରକ୍ତ ଆଣିଲା । ଇନ୍‌ଜେକ୍‌ସନ ଆଣିଲା । ଖାଇବା ଛୁଟିରେ ଦପ୍ତରରୁ କେହି ଆସିଲେ ନାହିଁ । "ଆହେ, ଗୋଟାଏ ଡେଲିଭରି କେସ୍‌ଟା । ଏଥିପାଇଁ ବେମତଲବ୍ ଏତେ ଧାଁ ଦଉଡ କାହିଁକି ? ପରେ ଘନିଆଠଉଁ ଭୋଜି ଆଦାୟ କରିବା ନାଇଁ ।"

ଏଣୁ କେହି ଆସିଲେ ନାହିଁ । ନବଘନ ବି ଆସିଲା ନାହିଁ । ରୁନି ମନକୁ ପାପ ଛୁଇଁଲା । ନବଘନର କିଛି ଅଘଟନ ହେଇଯାଇ ନାହିଁ ତ ? ସେ ହାତଯୋଡି ସାଙ୍ଗେ ସାଙ୍ଗେ ପ୍ରାର୍ଥନା କଲା, ମଙ୍ଗଳ ମନାସିଲା ।

ରକ୍ତ ଦିଆ ଚାଲିଥାଏ । ରୁନି ଖଟ ଉପରେ ବସି ନବଘନ ସ୍ତ୍ରୀ ମୁଣ୍ଡ ସାଉଁଳି ଆଣିଲା । ଚାହିଁ ହସିଲା । ସେ ରୁନିର ହାତ ପାପୁଲିକୁ ଚାପି ଧରି କାନ୍ଦ କାନ୍ଦ ହୋଇଗଲା । ରୁନି ଏମିତି ପଚାରିଦେଲା, "ମା' ଆସିଲେ ନାହିଁ ?" ସେ ଜାଣି ନଥିଲା ଯେ ଏ ପଦକ କଥାରେ ପୁରୁଣା ଘା' କଞ୍ଚା ହେଇଯିବ । ନବଘନର ସ୍ତ୍ରୀ ତୁହାକୁ ତୁହା କୋହ ଉଠା କାନ୍ଦରେ ବିଲୀନ ହୋଇଯିବ ସତେବା ! ବହୁ କଷ୍ଟରେ ରୁନି ତାକୁ ଆଉଁସା ସାଉଁଳା କରି ସାନ୍ତ୍ୱନା କଲା । ବୁଝିଲା ଯେ ତା'ର ମା' ନାହିଁ ।

ତା' ଭିତରେ ରହି ରହି ଭାବାନ୍ତର ଦେଖାଦେଲା । ଏଇଭଳି ଦିନେ ହୁଏତ ଏଇ ଖଟରେ ତାକୁ ଏକୁଟିଆ ରହିବାକୁ ହେବ । ଏମିତି ରକ୍ତ ବୋତଲ ଝୁଲୁଥିବ ତଳମୁହାଁ । ତା' ପାଖରେ କେହି ନଥିବେ । ସାନୁ ହୁଏତ ବ୍ୟସ୍ତ ହେଇ ସକାଳୁ ଯାଇଥିବ ଯେ ଦିନ ୨ଟା ଯାଏଁ ଆସି ନଥିବ । ତା'ର ତ ମା' ନାହିଁ ।

ଦୁଇଟା ତିରିଶରେ ସେମାନେ ଆସି ତାକୁ ଅପରେସନ୍ ପାଇଁ ନେଇଗଲେ । ନବଘନର ସ୍ତ୍ରୀ ରୁନି ହାତଟିକୁ ଧରି ଲୁହ ଗଡେଇଲା । ଆପେ ଆଖି ବୁଜିନେଲା । ରୁନି ସେଇଠି ଠିଆହେଇ ରହିଲା ସ୍ତବ୍‌ଧ ନିସ୍ପନ୍ଦ । ଇସ୍, ମଣିଷଟା କେତେ ଅସହାୟ ସତେ !

ସାନୁ ଆଉ ସେ ମିଶି ହସ୍‌ପିଟାଲ ବାହାରେ ଜଳଖିଆ ଖାଇଲେ । ରୁନି ଜାଣିଶୁଣି ଉପମା ପାଇଁ ବରାଦ କଲା । ସାନୁ ଉପମା ପ୍ଲେଟ୍ ଦେଖି ଅଳ୍ପ ଟିକିଏ ହସିଲା । ରୁନି ବି ବୁଝିଗଲା, ସାନୁକୁ

ଚାହିଁ ଆଖି ମୁଚ୍‌ମୁଚ୍ କଲା । ସେମାନେ ଜଳଖିଆ ସାରି ଫେରିଲେ । ସମୟ ତିନିଟା ତିରିଶ । ତେବେ ବି ନବଘନର ଦେଖାନାହିଁ । ହେଲା କ'ଣ ? ଗୁନିକୁ ବିବ୍ରତ ହେବାର ଦେଖି ସାନୁ ତା' ପିଠି ଆଉଁସି ଦେଲା । ପାଦେ ଆଗକୁ ରଖି ତା' ଚହାଣୀରେ ପଚାରିଲା – 'ଯିବିକି ତାଙ୍କୁ ଖୋଜିବାକୁ ?' ତା' ହାତ ଚାପି ଧରି ଗୁନି ମନାକଲା । ଶୂନ୍ୟକୁ ଚାହିଁ ରହିଲା ।

କିନ୍ତୁ ସେମାନେ କରିବେ କ'ଣ ? କେତେ ସମୟ ଅପେକ୍ଷା କରିବେ ? ଏଣେ ନବଘନର ସ୍ତ୍ରୀ ଅପରେସନ୍ ଟେବୁଲ ଉପରେ । ତାକୁ ଛାଡି ଯିବେ କୁଆଡେ ? ସାନୁ ବ୍ୟସ୍ତ ହେଇ ଘଣ୍ଟା ଦେଖି କହିଲା, ଏବେ ବି ପାଞ୍ଚ ମିନିଟ୍ ଅଛି ପାଞ୍ଚଟା ବାଜିବାକୁ । ଠାରି କହିଲା ଗୁନିର ଅଫିସ୍‌କୁ ଫୋନ୍ କରିବ କି ? ଗୁନି ଫାଳେ ହସରେ ଓଠ ଲେଉଟେଇ ମୁଣ୍ଡ ହଲେଇଲା । 'ସେମାନେ କେହି ନଥିବେ । ଥିଲେ ବି ଆସିବେ ନାହିଁ ।' ସାନୁ ପାଖ ବେଞ୍ଚରେ ବସିପଡିଲା । ହତାଶ ଭଙ୍ଗୀରେ ପଛକୁ ଚାହିଁ ରହିଲା ।

ଏତିକିବେଳେ ଖଣ୍ଡେ କାଗଜ ଧରି ଗୋଟିଏ ପୋଲିସ୍ କନେଷ୍ଟବଲ ଦୁଆରେ ଆସି ଠିଆହେଲା । କାବିନ୍ ନମ୍ବର ଦେଖିନେଲା । ପଚାରିଲା, "ଏଇଠି ନବଘନ ମୁଦିଲିଙ୍କ ସ୍ତ୍ରୀ ଅଛନ୍ତି ?"

ଗୁନି ସାନୁ ଉଭୟେ ହତବତେଇ ଯାଇଥିଲେ । କ'ଣ ନିଶ୍ଚୟ ଅଘଟଣ ଘଟିଗଲା – ନହେଲେ ପୋଲିସ୍ କାହିଁକି ଆସିଥାନ୍ତା ? ସେମାନେ ପରସ୍ପରକୁ ଚାହିଁଲେ, କେମିତି ଉତ୍ତର ଦେବେ ! ଏତିକିବେଳେ ନର୍ସଟିଏ ପାରି ହେଉଥିଲା । ସେଇ ନର୍ସ ଡାକ୍ତରଙ୍କ ସାଙ୍ଗରେ ଆସିଥିଲା । ସେ ଠିଆ ହୋଇ ପଚାରିଲା, 'କ'ଣ ଦରକାର ?'

କନେଷ୍ଟବଲ କହିଲା – "ନବଘନ ମୁଦୁଲିଙ୍କ ସ୍ତ୍ରୀ ଏଇଠି ଅଛନ୍ତି ? ସେ ରୋଡ୍ ଆକ୍ସିଡେଣ୍ଟରେ ବେହୋସ ହେଇ ବଡଡାକ୍ତରଖାନାରେ ପଡିଛନ୍ତି । ଏବେ ସେ ଉଠିପାରିବେ ନାହିଁ । ଏଠୁ ଯଦି ତାଙ୍କ ସ୍ତ୍ରୀ ଯାଇପାରିବେ ତାଙ୍କୁ ନେବାକୁ ପୋଲିସ ସାହେବ ମୋତେ ପଠାଇଛନ୍ତି ।"

ନର୍ସ କାଗଜରେ ଲେଖି ଗୁନିକୁ ଧରାଇ ଦେବାରୁ ତା' ଆଖି ତରାଟି ହେଇଗଲା । ସେ ଜିଭ କାମୁଡି ଭୟଭୀତ ହୋଇଗଲା । ଇସ୍ – ଏମିତି ବି କ'ଣ ହୁଏ ?

ସେ ନର୍ସକୁ ନମସ୍କାର କରି ଅନୁନୟ କଲା । ଲେଖିଦେଲା, "ଆପଣ ଦୟାକରି ଅଧଘଣ୍ଟାଏ ଏଠା କଥା ବୁଝିଲେ ଆମେ ତାଙ୍କୁ ଆଶ୍ୱସ୍ତ କରି ଚାଲିଆସନ୍ତୁ । ଆପଣ କିନ୍ତୁ ତାଙ୍କ ସ୍ତ୍ରୀକୁ ଆକ୍ସିଡେଣ୍ଟ କଥା କହିବେ ନାହିଁ । ଆମେ ଆସିଲେ ବୁଝିବୁ ।"

ନର୍ସ ପଚାରିଲା, "ଆପଣ ତାଙ୍କର କ'ଣ ହେବେ ?" ଗୁନି ସାମାନ୍ୟ ହସିଲା । ଲେଖିଦେଲା, 'ଆପଣ ଆମର କ'ଣ ହେବେ ?' ସେ ବୁଝିଗଲା । ଗୁନି କାନ୍ଧରେ ହାତ ରଖି ପ୍ରତିଶ୍ରୁତି ଦେଲା ଏଠା ଦାୟିତ୍ୱ ସେ ଆସିବା ଯାଏଁ ସମ୍ଭାଳିବା ପାଇଁ ।

ସାଙ୍ଗେ ସାଙ୍ଗେ ସାନୁ ଆଉ ଗୁନି ବାହାରିଲେ ବଡ ଡାକ୍ତରଖାନା । ସଞ୍ଜବେଳେ ବଜାର ଭିଡ । ଏଠି ସେଠି ଟ୍ରାଫିକ୍ ଅଟକ । କୌଣସି ପ୍ରକାରେ ପହଞ୍ଚ କାଜୁଏଲ୍‌ଟି ପାଖରେ ବୁଝିଲେ । ସେ ଇମର୍ଜେନ୍‌ସି ୱାର୍ଡକୁ ଦେଖାଇଦେଲେ ।

ଯାଇ ଦେଖିଲା ବେଳକୁ ମୁଣ୍ଡରେ ପଟି ଓ ଗୋଡରେ ପ୍ଲାଷ୍ଟର । ନବଘନ ମୁଦୁଲି ଏମାନଙ୍କୁ ଦେଖିବା ମାତ୍ରେ ଉଦ୍‌ବିଗ୍ନ ହୋଇଉଠିଲା । ଗୁନି ଯାଇ ତାକୁ ଶୋଇବାକୁ କହି ତାକୁ ଚାହିଁ ତା'ର ଅଲୌକିକ ହସରେ ତା' ମହିମଣ୍ଡଳକୁ ସ୍ଥିର କରିଦେଲା । ଅଳ୍ପ ଅଳ୍ପ ଲେଖି ତାକୁ ସବୁ କଥା ଦୁହେଁ ମିଶି ଠାରିଦେଲେ । ତାକୁ ସମ୍ପୂର୍ଣ୍ଣ ନିଶ୍ଚିନ୍ତ ରହିବାକୁ କହି ଗୁନି ଆଉ ସାନୁ ନିଜ ନିଜ ବୁକୁ ଉପରେ ହାତରଖି ନବଘନର ଦାୟିତ୍ୱ ବହନ କରିନେଲେ ।

ନବଘନ ଆଖିରୁ ଲୁହ ଗଡି କାନ ପାଖରେ ଠୁଳ ହେଇଗଲା । ସେ ଗୋଟାଏ ହାତରେ ତା' ପର୍ସ କାଢି ପଇସା ନେବାକୁ କହିବାରୁ ସେମାନେ ହାତଟେକି ବାରଣ କଲେ । ପରେ ଦେଖିବା କହି ତରତର ହେଇ ଚାଲିଗଲେ । ନବଘନ ପଛରୁ ସେ ଦୁଇଟି ଅଲୌକିକ ପ୍ରାଣୀକୁ ଚାହିଁ ରହିଲା ।

ସାନୁ ଭାରି ଅନ୍ୟମନସ୍କ ହୋଇ ଗାଡି ଚଳଉଥିଲା । ଟ୍ରକ୍ ପାଖରେ ଏମିତି ଘସି ହେଲାପରି ସୂତାଖିଏ ବ୍ୟବଧାନ ରଖି ସେମାନେ ପାରି ହେଇଗଲେ । ପଛରୁ ଗୁନି ତା' କାନ୍ଧ ଚିପି ତାକୁ ସଂଯତ ହେବାକୁ ଇସାରା କଲା ।

ଆଉ ଗୋଟେ ଜାଗାରେ ସେମିତି ସାନ ପିଲାଟିଏ ମାଡି ଆସିଲା ଗାଡି ଉପରକୁ । ଆଖି ବୁଜି ହୋଇଗଲା – କିନ୍ତୁ ସାନୁ ତାକୁ କଟେଇ ନେଇଗଲା ।

ସାନ ଡାକ୍ତରଖାନାରେ ପହଞ୍ଚି ସେମାନେ ଦୁହେଁ ତରବରରେ ତିନି ନମ୍ବର କ୍ୟାବିନ୍ ଆଡକୁ ଯାଉଥା'ନ୍ତି । ଜଣକ ଦେହରେ ଗୁନି ବାଡେଇ ହୋଇଗଲା ।

ତା'ପରେ ବାରଣ୍ଡା ବୁଲାଣି ପାଖରେ ତିନିଟା ପାହାଚ – ଗୁନି ଆଖିରେ ସେତେବେଳେ ନବଘନର ଶିଶୁ ସନ୍ତାନ, ତା'ର ମା', ସେମାନଙ୍କ ଭୋକଶୋଷର ଯନ୍ତ୍ରଣା, ସେମାନଙ୍କ ମୁଲାଏମ୍ ନବଜନ୍ମର ସ୍ୱର୍ଣ୍ଣ ବୋଝେଇ ହୋଇ ରହିଥିଲା । ସେଥିରେ ପାହାଚ ଦିଶିବ କୁଆଡୁ ?

ଗଛ କାଟିଲା ପରି ଗୁନି ପଡିଗଲା ମୁହଁ ମାଡି । ସାନୁ ଯାଇ ତାକୁ ସାଉଁଟି ଧରିଲା । ଗୁନି ନୀରବ ଯନ୍ତ୍ରଣାରେ ଛଟପଟ ହେଉଥାଏ । ଲୋକ ଜମିଗଲେ, ଡାକ୍ତର ଆସିଗଲେ । ଷ୍ଟ୍ରେଚର ମଗେଇ ଗୁନିକୁ ସେଥିରେ ଶୁଆଇ ନେଇଗଲେ । ସାନୁକୁ ପଛକୁ ଠେଲି ଦେଇ କୌତୂହଳୀ ମଣିଷମାନେ ଆଗକୁ ପଶିଗଲେ । ସାନୁ କୌଣସି ପ୍ରକାରେ ଭିତରକୁ ପଶି ଡାକ୍ତରଙ୍କୁ ଠାରି କହିଲା – ହାତ ପାପୁଲିରେ ଆଙ୍ଗୁଠିରେ ଲେଖିଲା 'My wife' । ଡାକ୍ତର କେବଳ ତାକୁ ରଖି ବାକି ସମସ୍ତଙ୍କୁ ବାହାର କରିଦେଲେ ।

ବାହାରେ ଅନ୍ଧାର ଘନୀଭୂତ ହୋଇ ଆସିଥିଲା । ଗୁନିର କପାଳରୁ ଝାଳ ଝରି ଯାଉଥିଲା । ସେ ଜୋର୍ ନିଶ୍ୱାସ ନେଉଥିଲା । ତା'ର ଚେତା ବୁଡି ଯାଇଥିଲା ।

ସାନୁ ଡବଡବ ଆଖିରେ ଚାହିଁ ରହିଲା । ଡାକ୍ତର ପରୀକ୍ଷା କରୁଥିଲେ । କ'ଣ ଇନ୍‌ଜେକ୍‌ସନ୍ ଦେଲେ ।

ତିନି ନମ୍ବର କ୍ୟାବିନ୍‌ର ନର୍ସ କୋଉଠୁ ଶୁଣି ଦୌଡି ଆସିଲା । ଗୁନିକୁ ଆଉଁସି ଦେଲା । ଡାକ୍ତରଙ୍କ ଇଙ୍ଗିତରେ ଗୁନିର ନାକ ପାଖରେ କ'ଣ ଖୋଲି ଧରିଲା । ଥଣ୍ଡା ପାଣି ମୁଣ୍ଡକୁ ମୁହଁକୁ

ଛିଞ୍ଚଲା ।

ଗୁନି ଆଖି ଫିଟେଇ ଚାହିଁଲା । ତା'ର ସେ ଆଲୌକିକ ଆଖିରେ କୌଣସି ଭାଷା ନଥିଲା । ଦୃଷ୍ଟି ନଥିଲା । ସାନୁ ପାଖରେ ଛିଡା ହୋଇ ତା' ଗାଲ ଉପରେ ହାତ ରଖିଲା । ତା' ପାପୁଲିର ଉଷୁମ ବାର୍ତ୍ତାର ଉତ୍ତରରେ ଆଖି ମଟକା ପକେଇ ଗୁନି ଚାହିଁଲା ।

ସାନୁକୁ ଦେଖି ଅଳ୍ପ ହସିଦେଲା । ନର୍ସକୁ ଚାହିଁ ଚିହ୍ନିଲା । ତା'ର ଭ୍ରୁଲୁ କୁଞ୍ଚେଇ ଯିବାର ପ୍ରଶ୍ନଟି ବୁଝି ନର୍ସ କହିଲା – 'ପୁଅ ହେଇଚି' ।

ଗୁନିର ମୁହଁରେ ଅଜସ୍ର ଫୁଲ ଫୁଟିଗଲା । ତା' ଆଖି ବୁଜି ହେଇଗଲା । ଲୁହ ଝରିଗଲା । ତା'ପରେ ପାଖୁଡା ବୁଝି ହେଇପରି ନିସ୍ତେଜ ହେଇଗଲା ମୁହଁଟି । ଡାକ୍ତର ଦେଖିଲେ – ପୁଣି ଚେତା ବୁଡିଗଲା ।

ସେ ସମସ୍ତଙ୍କୁ ଆଡ କରି ତାକୁ ଇଣ୍ଟେନ୍‌ସିଭ୍ କେୟାର ୟୁନିଟ୍‌କୁ ନେବା ପାଇଁ ପରାମର୍ଶ ଦେଲେ । ନର୍ସ ସାନୁ ଅଣ୍ଟାରେ ବାହୁ ବେଢେଇ ଅଖଣ୍ଡ ଭରସା ଦେଲାପରି ବାହାରକୁ ନେଇଗଲା । ସାନୁର ଆଖି ମୁହଁ ସର୍ବାଙ୍ଗରେ ଗୋଟିଏ ନୀରବ ପ୍ରଶ୍ନ ସେ ଶୁଣି ପାରୁଥିଲା – 'ଗୁନି ଭଲ ହେଇଯିବ ତ ?' ନର୍ସଟି ଯଥାସମ୍ଭବ ଆଶ୍ୱାସନା ଦେଲା ।

ରାତି ନଅଟା ବେଳେ ଗୁନିର ସାଇପଡିଶାଙ୍କୁ ସମସ୍ତେ ବାହାରି ଆସିଲେ । ପରାମର୍ଶ କଲେ । ଫୋନ୍‌ଫାନ୍ କଲେ । ସାରା ପୃଥିବୀରେ କେଉଁଠି ହେଲେ ଗୁନିକୁ ଠାବ କରିବାକୁ ସେମାନେ ଅଥୟ ହେଉଥିଲେ, କିନ୍ତୁ ଖବର ଆସିଲା ଯେ, ଗୁନି ହସ୍‌ପିଟାଲରେ ବୋହୋସ୍ ହୋଇ ପଡିଛି । ସମସ୍ତେ ବ୍ୟଗ୍ର । ସମସ୍ତେ କାନ୍ଦ କାନ୍ଦ । ସମସ୍ତେ ନୀରବ ।

ଅଧଘଣ୍ଟା ଭିତରେ ସମସ୍ତେ ଆସି ହସ୍‌ପିଟାଲ୍ ପିଣ୍ଡାରେ ଠିଆ ହେଇଗଲେ । କାହାରି ପାଦଶବ୍ଦ ଶୁଭୁ ନାହିଁ । ନିଶ୍ୱାସ ବି ଶୁଭୁ ନାହିଁ । ସାନୁକୁ ମୁଣ୍ଡଠଉଁ ସାଉଁଳିଦେଇ ମିସେସ୍ ମହାରଣା ଝରଝର କାନ୍ଦି ପକେଇଲେ ।

ଇଣ୍ଟେନ୍‌ସିଭ୍ କେଆର୍ ୟୁନିଟ୍‌ର କବାଟ ଭିତରୁ ବନ୍ଦ ରହିଛି । ଗୁନି – ଗୁନି ଗର୍ଭର ସ୍ୱପ୍ନ ଯେ ତା' ଜୀବନର ସମସ୍ତ ନୀରବତାକୁ ସଙ୍ଗୀତମୟ କରିବ ବୋଲି ତା'ର ବିଶ୍ୱାସ ଥିଲା । ଉଭୟେ ନୀରବ । ଅନ୍ଧାର ଭିତରେ କୂଳ ପାଉ ନାହାନ୍ତି ।

ନବଘନ ମୁଦୁଲିର ସ୍ତ୍ରୀ ସବୁ ଶୁଣି ଆଖି ବୁଜି ହାତଯୋଡି ପ୍ରାର୍ଥନା କଲେ । ସାଇ ପଡିଶାର ସମସ୍ତେ କରଯୋଡି ପ୍ରାର୍ଥନା କଲେ । ଗୁନି କାଲି ସକାଳୁ ଆଖି ମେଲି ନ ଚାହିଁଲେ କୌଣସି କଢ ଫୁଟି ପାରିବ ନାହିଁ । ସେ ହସି ନ ଦେଲେ ସୂର୍ଯ୍ୟ ଉଇଁପାରିବ ନାହିଁ ।

ସାହିର ଛୋଟ ଛୋଟ ଝିଅମାନେ କାନ୍ଥକୁ ଆଉଜି ଠିଆ ହୋଇଛନ୍ତି – ଯେ ଯେଉଁଠି ଅଛନ୍ତି ଚୁପ୍‌ଚାପ୍ ଠିଆ ହୋଇଛନ୍ତି । କାତର ଦରିଦ୍ର ଦୀନହୀନ ପୃଥିବୀର ମଣିଷମାନେ ସମସ୍ତେ । କାହା ତୁଣ୍ଡରେ ଭାଷା ନାହିଁ ।

ଆପଣ ଏ ନୀରବ ପ୍ରାର୍ଥନାରେ ଯୋଗ ଦେଇ ପାରିବେ ? □

# ରାଜସାକ୍ଷୀ

"ମୁଁ ନେତି ସିଂ, ବାପ ଫତେ ସିଂ ଶପଥ କରି କହୁଛି ଯେ ମୁଁ ମିଛ କହେ । ଏବେ ବି ମିଛ କହିବି । ସେଇଟା ମୋ' ସ୍ୱଭାବ । ମୋ' ଆଦତ୍ । ସେଇଥିପାଇଁ, ଧର୍ମାବତାର, ଆପଣମାନେ ଦାୟୀ । ମୋତେ ସତ କହିବାର ମୌକା କେବେହେଲେ ଦେଲେ ନାହିଁ । ମୁଁ ନିଶା ଖାଏ, କହେ ଖାଏ ନାହିଁ, ଜୁଆ ଖେଳେ, କହେ ଖେଳେ ନାହିଁ । ମୁଁ ମାଲା ବେହେରାଣି ପାଖକୁ ଯାଏ, କହେ ଯାଏ ନାହିଁ । ମୁଁ ଦି ପହର ବେଳା ଦେଖିଚି ବିଚ୍ ବଜାରରେ ସେମାନେ କ'ଣ ସବୁ କଲେ । ପଚାରିଲେ କହିବି ଦେଖି ନାହିଁ । ବାକି ଯାହା ସେଠି ହେଲା ମୁଁ ସେ ସବୁ ଦେଖିଛି । ହେଲେ କହିବି ଦେଖି ନାହିଁ ।"

"ତମେ ମାନୁଛ ଯେ ତମେ ସେସବୁ ଘଟଣା ଦେଖିଛ । ଯଦି ଏଠି କହିବ ଦେଖି ନାହିଁ ତା'ହେଲେ ସେଥିପାଇଁ ତମକୁ ଦଣ୍ଡ ଭୋଗିବାକୁ ପଡିପାରେ । ତମେ ସତ କହିଲେ ନ୍ୟାୟ ବିଚାର କରିବାକୁ ଅଦାଲତ ସମର୍ଥ ହେବେ । ତମେ ନ୍ୟାୟ ପକ୍ଷନେଲେ ପ୍ରଶଂସା ପାଇବ ।"

"ମୁଁ ସତ ଜାଣି ସୁଦ୍ଧା ସତ କହିବାକୁ ବାଧ ନୁହେଁ । ମିଛ କହିବା ଆଉ ସତ ନ କହିବା ଏକା କଥା ନୁହେଁ, ଧର୍ମାବତାର ! ମୁଁ ଯଦି ସତ କହୁନାହିଁ ଧର୍ମାବତାର, ମୁଁ ମିଛ ବି କହୁନାହିଁ । ମୁଁ କେବଳ ନୀରବ ରହିବାକୁ ଚାହୁଁଛି । ନୀରବ ରହିବା କ'ଣ ଅପରାଧ ? – ଯଦି ସେଥିପାଇଁ ଆପଣ ଦଣ୍ଡ ଦେବାକୁ ଚାହୁଁଛନ୍ତି ନିଶ୍ଚୟ ଦିଅନ୍ତୁ । କିନ୍ତୁ ଉପର ଅଦାଲତରେ ଆପଣ ଧରା ପଡିଯିବେ । ଧର୍ମାବତାର ! ନିରପରାଧକୁ ଦଣ୍ଡ ଦେବା ଅପରାଧ ।"

ମୋ ଓକିଲାତି ଜୀବନରେ ଏଭଳି ରାଜସାକ୍ଷୀ କେବେ ଦେଖି ନଥିଲି । ମୁଁ ତା' କଥା ଶୁଣି ମନେମନେ ଖୁସି ହେଉଥିଲି ଯେ ଯାହାହେଉ ମୂଳ ସାକ୍ଷୀ ଏମିତି ବିଗିଡି ଗଲେ ମୋର ମକ୍କିଲ ସବୁ ଖସିଯିବେ । ସେମାନଙ୍କୁ ଖସେଇ ଦେଲେ ମୋର ଜିତାପଟ । ଆରମ୍ଭଟା ମନ୍ଦ ନୁହେଁ । ଲଢିବା ପୂର୍ବରୁ ଯୁଦ୍ଧ ଜିଣିଥିବାର ସମ୍ଭାବନାରେ ମୁଁ ନିଶ୍ଚୟ ଖୁସି ହେଉଥିଲି, କିନ୍ତୁ ନେତି ସିଂର ହାବଭାବ, ତା'ର ଚାହାଣି ଆଉ ତା'ର ବଖାଣର ଢଙ୍ଗ ମୋତେ ଖୁବ୍ ପ୍ରଭାବିତ କରୁଥିଲା । ମୁଁ ବେଶ୍ ମନଦେଇ ତାକୁ ଶୁଣୁଥିଲି । ଜଣେ ଏମିତି ଖୋଲାଖୋଲି ମିଛ କହିବା ଏବଂ ସେଥିପାଇଁ ଶପଥ ନେବା ଅଦାଲତ ଇତିହାସରେ, ମୋ' ଜାଣିବାରେ ବୋଧହୁଏ ଏଇ ସର୍ବପ୍ରଥମ ଘଟଣା । ସେ ବେକୁବ୍ ଭଳି ନିଜକୁ ଓ ନିଜ ବୟାନକୁ ଅପ୍ରମାଣିତ କରୁଥିଲା, ସତ, କିନ୍ତୁ ସେ ଯେ ବେକୁବ୍ ନଥିଲା, ଏକଥା ସମସ୍ତେ

ବୁଝି ପାରୁଥିଲେ ।

ନେତି ସିଂର ବୟାନରେ ସରକାରୀ ଓକିଲ ବେଶ୍ ବିଚଳିତ ଜଣା ପଡୁଥିଲେ । ସେ ପାଖକୁ ଯାଇ ତାକୁ ବୁଝାଇବାକୁ ଚେଷ୍ଟା କଲେ ।

"ଦେଖ ନେତି ସିଂ ତମେ ଯଦି ଯାହା ଦେଖିଚ ନ କହିବ ତା'ହେଲେ ତମେ ଅପରାଧ ଆଉ ଅଭିଯୁକ୍ତ ଅପରାଧୀଙ୍କୁ ସମର୍ଥନ କରୁଛ ବୋଲି ଜଣାଯିବ । ମୁଁ ଅନୁଭବ କରୁଛି ଯେ ତମେ କଦାପି ତାହା କରିବାକୁ ଚାହଁ ନାହିଁ । ତମେ ନୀରବ ରହିଗଲେ, ସାକ୍ଷ୍ୟପ୍ରମାଣ ଅଭାବରୁ ଅଭିଯୁକ୍ତ ଖଲାସ ହୋଇଯିବେ । ସେମାନେ ଯାପରେ ପୁଣି ସେଭଳି ଅପରାଧ କରିବାକୁ ଉତ୍ସାହିତ ହେବେ । ଦୋଷୀକୁ ଦଣ୍ଡ ଦେବା ଅଦାଲତଙ୍କ କାମ । କିନ୍ତୁ ତମେ ସାହାଯ୍ୟ ନ କଲେ ଅଦାଲତ ଘଟଣା ବିଷୟରେ ନିଷ୍ପତ୍ତି ନେଇ ପାରିବେ ନାହିଁ । ସାକ୍ଷ୍ୟପ୍ରମାଣ ନ ମିଳିଲେ କାହାକୁ ଦୋଷୀ ସାବ୍ୟସ୍ତ କରାଯାଇ ପାରିବ ନାହିଁ । ଆଉ ଥରେ ଭାବି ଦେଖ, ଏବଂ ଏବେ ଦେଇଥିବା ବୟାନକୁ ବଦଳାଇବାକୁ ଚାହିଁଲେ ସେଥିପାଇଁ ଅଦାଲତଙ୍କ ଅନୁମତି ମାଗ । ମୋର ପୂର୍ଣ୍ଣ ବିଶ୍ୱାସ ଯେ ଅଦାଲତ ତମକୁ ଅନୁମତି ନ ଦେବାର କାରଣ ନାହିଁ ।"

ମୁଁ ଠିଆ ହୋଇ ପ୍ରତିବାଦ କରିଥିଲି ଯେ ସରକାରୀ ଓକିଲ ଶାହୀ ସାକ୍ଷୀକୁ ତାଙ୍କ ସାଧୀନ ମତ ଦେବାରେ ବାଧା ଦେଉଛନ୍ତି ଏବଂ ତାଙ୍କ ବୟାନ ବଦଳାଇବାକୁ ପ୍ରବର୍ତ୍ତାଉଛନ୍ତି । ଏହା ସଂପୂର୍ଣ୍ଣ ବେଆଇନ୍ କଥା । ଅଦାଲତ ମୋ' ପ୍ରତିବାଦକୁ ସମର୍ଥନ କରିଥିଲେ ।

କିନ୍ତୁ ନେତି ସିଂ ସମସ୍ତଙ୍କୁ ତାଜୁବ କରି କହିଥିଲା "ମୁଁ ସବୁ ଜାଣେ । ଅପରାଧ ଆଉ ଅପରାଧୀଙ୍କ ବିଷୟରେ ସବୁ କିଛି ଜାଣେ । ମୁଁ ଅଦାଲତକୁ ମଦତ୍ କରିବାକୁ ଚାହେଁ ନାହିଁ । ପ୍ରଶଂସା ଶୁଣିବାକୁ ମୋର ଆଗ୍ରହ ନାହିଁ । ନ୍ୟାୟ ବିଚାର ଉପରେ ମୋର ଆସ୍ଥା ନାହିଁ । ତଥାପି ମୁଁ ସବୁ କହିବାକୁ ହିଁ ଏଠିକି ଆସିଛି । ଟିକି ନିଖି ସବୁ ନ କହି ମୁଁ ଏଠୁ ଯିବି ନାହିଁ । ତା'ର କାରଣ ହେଲା ଏଠି କେହି ସତ କହୁ ନାହାନ୍ତି । ସତ କହିବାକୁ ସମସ୍ତେ ଡରୁଛନ୍ତି । ମୋର କାହାକୁ ଡରିବାର ନାହିଁ । ସେଥିପାଇଁ ସବୁ ସତସତ କହିଦେବି । ଖଚୁଆର ସତ ବୟାନ୍‌କୁ ସମସ୍ତେ ବିଶ୍ୱାସ କରିନେବ । ସତ ଗୁଡାକ, ଆଙ୍କା, ନଙ୍ଗଳା ପିଲାପରି । ସେ ଗୁଡାକୁ ଲୁଗା ନ ଘୋଡେଇ ଏଠି ଠିଆ କରିଦେଲେ କେମିତି ଲାଗିବ ମୁଁ ଥରେ ଦେଖିବାକୁ ଚାହେଁ । ସତ କହିବାକୁ ଯେତିକି ଦମ୍ଭ ଦର୍କାର, ଶୁଣିବାକୁ ବି ସେତିକି ଦମ୍ଭ ଦର୍କାର । ଆପଣ ସବୁ ଶୁଣି ପାରିବେ ତ ?"

ମୋର ମହକିଲ୍‌ମାନଙ୍କ ମୁହଁରୁ ରକ୍ତ ନିଗିଡି ଯିବାର ମୁଁ ଲକ୍ଷ୍ୟ କଲି । ଏପରି କି ସର୍କାରୀ ଓକିଲ ମଧ୍ୟ ଅସୁସ୍ଥ ବୋଧ କଲାଭଳି ଗଳା ଝାଡିବାର ଏବଂ ଖୋଦ୍ ଜଜ୍ ସାହେବ ଆଖି ତଳଖୁ କରି ନେବାର ମୁଁ ଦେଖି ପାରିଲି । ମୁଁ ବି କାହିଁକି କେଜାଣି ଘାବରେଇଲା ପରି ବୋଧ କଲି । ମୋ' ଭିତରେ ଅନ୍ତ ନାଡି ସାଙ୍କୁଡି ଯାଉଥିଲା ।

ନେତି ସିଂ ଜଣ ଜଣକରି ଆମମାନଙ୍କ ମୁହଁକୁ କଟମଟ କରି ଚାହୁଁଥିଲା । ଦୌଲତାବାଦ ଦୁର୍ଗର ଉପର ଥାକରୁ ଟକମକ ଫୁଟୁଥିବା ତେଲ କଡେଇକୁ ସେ ଆମମାନଙ୍କ ମୁଣ୍ଡରେ ଅଜାଡି

ଦେବାକୁ ହୁଏତ ସଜ ହେଉଥିଲା ।

କିନ୍ତୁ କ'ଣ ଏମିତି ସେ କହି ପକେଇବ କି ? – ମୁଁ ଓକିଲ । ଆମେ ତ କଂସାରି ଘର ପାରା । ଭୟାନକରୁ ଆହୁରି ଭୟାନକ କଥା ଦେଖି ଦେଖି ଶୁଣି ଶୁଣି ପାଚି ଗଲୁଣି । ସେ ଏମିତି କ'ଣ କହିଦେବ ଯେ ସେଥିପାଇଁ ଭାଳେଣି ପଡିଚି । କହୁ ସେ ଯାହା ମନ ତାହା । ଟାକୁ ତ ଗୋଟାଏ ଚୁଟ୍‌କିରେ ଉଡେଇ ଦେଇ ହେବ ମାତ୍ର ପଦେ କଥାରେ । ନେତି ସିଂ ମିଛ କହେ ବୋଲି ଖୋଦ ଅଦାଲତ ଉପରେ ଶପଥ ନେଇ କହି ସାରିଛି । ଏଣୁ ତା'ର ଏ ବୟାନ୍ ସତ ବୋଲି କାହିଁକି ଅଦାଲତ ବିଶ୍ୱାସ କରିବାକୁ ଯିବ ?... ମୁଁ ମନକୁ ମନ ଏମିତି ଦମ୍ଭ ଦେଇ ଅପେକ୍ଷା କଲି ସେ କ'ଣ କହୁଛି ଶୁଣିବାକୁ ।

ସର୍କାରୀ ଓକିଲ କୁଣ୍ଠିତ ସ୍ୱରରେ କହିବାର ଶୁଣାଗଲା, "ସାକ୍ଷୀକୁ ଯାହା ପଚରାଯିବ, କେବଳ ତା'ର ଜବାବ ଦେବାପାଇଁ ତାକୁ ଅନୁମତି ମିଳିବ । ପ୍ରୟୋଜନରୁ ଅଧିକ କହିବାର ଆବଶ୍ୟକତା କ'ଣ ଅଛି ? ଏଣୁ ତମେ ଯାହାସବୁ ଦେଖିଚ ବା ଜାଣିଚ ସେସବୁ ବୟାନ କରିବା ଦର୍କାର ନାହିଁ ।"

ନେତି ସିଂ ଆଉ କ'ଣ ହେଇଥିବ କେଜାଣି, କିନ୍ତୁ ବେଓଲାକ୍ କଦାପି ନୁହେଁ । ସେ ସର୍କାରୀ ଓକିଲଙ୍କୁ ଦୟାକଲା ପରି ମୁଚ୍‌କିମାରି ଚାହିଁଲା । ତାଚ୍ଛଲ୍ୟରେ କହିଲା, "ଓ, ତା'ହେଲେ ଆପଣ ସବୁଯାକ ସତ ଜାଣିବାକୁ ଚାହୁଁ ନାହାନ୍ତି । ବେଶ୍ କଥା, ମୁଁ ମୋର କହିଯିବି । ତେଣିକି ଆପଣ କ'ଣ ନେବେ କ'ଣ ଛାଡିବେ, ଆପଣଙ୍କ ମର୍ଜି ।"

ନେତି ସିଂ କିଛି ଅନ୍ୟାୟ କଥା କହୁନଥିଲା । କିନ୍ତୁ କେଜାଣି କାହିଁକି ସର୍କାରୀ ଓକିଲ ତାକୁ ଗ୍ରହଣ କରିପାରୁ ନଥିଲେ । ସତେବା ସବୁ କହିଦେଲେ ସେ ତାକୁ ସମ୍ଭାଳି ପାରିବେ ନାହିଁ । ତାଙ୍କ କେସ୍ ହୁଗୁଳି ଯିବ । ବା' ସେ ନିଜେ ଅଡୁଆରେ ପଡିଯିବେ । ଏଣୁ କହିଲେ –

"ଦେଖ ନେତି ସିଂ । ଆମେ ସେମିତି କାହିଁକି କହିବାକୁ ଯିବା ? ମାନନୀୟ ଅଦାଲତଙ୍କ ବହୁମୂଲ୍ୟ ସମୟ ନଷ୍ଟ ନ କରି କେବଳ ମୁଁ ଯେତିକି ପଚାରିବି ସେତିକି ମାତ୍ର କହିଦେଲେ ଚଳିଯିବ ।"

ନେତି ସିଂର କଟମଟ ନିଘାକୁ ସେ ଚାହିଁ ପାରୁ ନଥିଲେ ।

"ମୁଁ ଦେଖୁଛି, ହଜୁର ଧର୍ମାବତାର, ମୋତେ ଅନୁମତି ଆଉ ଅଭୟ ନ ଦେଲେ ମୁଁ ଯାହା ଜାଣିଛି ଏଠି କହି ପାରିବି ନାହିଁ । ଯଦି ହଜୁର ମଧ ଶୁଣିବାକୁ ଚାହୁଁ ନାହାନ୍ତି ତା'ହେଲେ ମୋତେ ଏ କାଠଘଡାରୁ ଓହ୍ଲେଇ ଯିବାକୁ ଆଦେଶ ଦିଅନ୍ତୁ । ନାହିଁ ଯଦି ଶୁଣିବେ ତା'ହେଲେ ସବୁ ଶୁଣିବାକୁ ରାଜି ହୋଇ ଯାଆନ୍ତୁ ।"

ଜଜ୍ ଭାରି ପୋଖତ ଲୋକ । ସେ ବି ଏଭଳି ଗୋଟିଏ ସାକ୍ଷୀ ହାବୁଡରେ କେବେ ପଡି ନଥିଲେ ପରି ଲାଗୁଥିଲା । ସେ ତାଙ୍କ ଢଙ୍ଗରେ କହିଲେ –

"ତମେ କ'ଣ ସବୁ ଦେଖିଛ ବା ଜାଣିଛ ସେ ସମସ୍ତ ଅଦାଲତ ପାଇଁ ପ୍ରୟୋଜନ ନ ହୋଇପାରେ । ଆଜିର ନିର୍ଦ୍ଦିଷ୍ଟ ଅଭିଯୋଗ ବିଚାର କରିବାକୁ ଅଦାଲତ ସାକ୍ଷ୍ୟପ୍ରମାଣ ଚାହୁଁଛି ।

ସେଥିପାଇଁ ସବୁ ବୟାନ କରିବାକୁ ତମକୁ ଅନୁମତି ଦେବା ଅଦାଲତ ଆବଶ୍ୟକ ମଣୁନାହିଁ। 'ସବୁ' କହିଲେ ସେ ସବୁର ବିସ୍ତାର କେତେ ତାହା ନ ଜାଣି ତମକୁ ସେଥିପାଇଁ ଅନୁମତି ଦେଇ ପାରିବି ନାହିଁ।"

"ହଜୁର ସର୍ବମୋଟ କୋଡିଏରୁ ପଚିଶ ମିନିଟ୍‌ର ବ୍ୟାପାର। ବଖାଣିଲେ ସେତିକି ସମୟ ବା ତା'ଠାରୁ କିଛି କମ୍ ବେଶି ଲାଗିପାରେ। ଆପଣ କ'ଣ ଏତିକି ସମୟ ଦେଇ ପାରିବେ ନାହିଁ? ମୁଁ ତ' ପାଟି ଆଁ କରି ଆପଣଙ୍କୁ ବିଶ୍ୱ ବ୍ରହ୍ମାଣ୍ଡ ଦେଖେଇ ପାରିବି ନାହିଁ। ଆପଣ ଏଥିପାଇଁ ଏତେ ପଛଉଛନ୍ତି କାହିଁକି? ମୁଁ ଏବେ ବି କହୁଛି ଯେ ମୋର ବୟାନ ଯଦି ଶୁଣିବେ ସବୁ ଶୁଣିବେ, ନ ହେଲେ କିଛି ଶୁଣିବେ ନାହିଁ। ଯଦି ଧର୍ମାବତାର ଭାବୁଥା'ନ୍ତି ଯେ ମୋର ବୟାନରେ ଆପଣଙ୍କ ନ୍ୟାୟବିଚାର ଅତୁଆ ତତୁଆ ହେଇଯିବ, ତେବେ ଛାଡନ୍ତୁ, ମୋତେ ଯିବାକୁ ଦିଅନ୍ତୁ।"

ଜଜ୍ କାଚ ଓଜନଟାକୁ ନେଇ ଅନ୍ୟମନସ୍କ ହେଲାପରି ଖେଳଉଥା'ନ୍ତି।

ସମଗ୍ର ଅଦାଲତରେ ଏକ ଅସ୍ୱସ୍ତିକର ନୀରବତା।

ଆଶ୍ଚର୍ଯ୍ୟ କଥା। ନେଟି ସିଂ, ଯେ କି ଖଚ କହେ ଏବଂ କହି ଆସିଛି, ସେ କାହିଁକି ଗୁଡାଏ ସତ କହି ପକେଇବାକୁ ଜିଦ୍ ଧରି ବସିଚି? ସେ ହୁଏତ କେବେ ସତ୍ୟର ସାମ୍ନା କରିନାହିଁ। ଜାଣି ଶୁଣି ଆଡେଇ ଦେଇଛି। କିନ୍ତୁ ଖୁବ୍ ଗହୀରରେ ଇଚ୍ଛାଟିଏ ରହିଛି ଚକ୍ ଚକ୍ ଚମକୁଥିବା ସତ୍ୟକୁ ଥରେ ଟିପମାରି ପରଖି ନେବାକୁ। ତା' ଉପରେ ବଢି ପାଣି ପାରି ହେଲାବେଳେ ସେ ନିଜ ନିରାପତ୍ତା ଦୃଷ୍ଟିରୁ ସତ କହି ପାରିନାହିଁ। ସେତେବେଳେ କେହି ବି ପାରିବେ ନାହିଁ। ଯେତେ ସତିଆ ହୋଇଥାନ୍ତୁ ପଛକେ। ନେଟି ସିଂ ତ ସହଜେ ଖଚୁଆ। ଖଚଟିଏ ବାଗେଇ ବୁଗେଇ କହିଦେଲା ବେଳେ ତାକୁ ବୋଧହୁଏ କବିକବି ଭଳି ଲାଗେ ସେଥିରେ ସେ ସମସ୍ତଙ୍କୁ ପରାସ୍ତ କରିଦିଏ କିଛି ସମୟ ପାଇଁ। ଅଣବାଟରେ ହାବୁଡେଇ ଦିଏ ସମଗ୍ର ଥାଟକୁ। ମନକୁ ମନ ଗୋଟାଏ କାମିକା ଖଚ ପାଇ ସେ ସାବସି ନିଏ। ...ସତ କିନ୍ତୁ ପାରି ହେଉଥାଏ ତା' ଜୀବନର ଦାଢ ଉପରେ। ସେ ହୁଏତ କେବେ ତାକୁ ଧରିବାକୁ ଚାହିଁ ନାହିଁ। ତାକୁ ଧରି ପକେଇଲେ ନେଇ ଆଣି ଥୋଇବା କାଠିକର ପାଠ। ସତଟିଏ ଅସମ୍ଭାଳ ହେଲେ ତାକୁ ଘୋଡେଇବାକୁ ଦ୍ୱିତୀୟ ସତ୍ୟ ନାହିଁ। ସତଟା ଥୁଣ୍ଟା ଭଳି ଗୋଟିକିଆ ହୋଇଥିବାରୁ ବୋଧହୁଏ ସାଂଘାତିକ। ମିଛ କିନ୍ତୁ ପ୍ରସ୍ତପ୍ରସ୍ତ ଘୋଡେଇ ହୋଇ ଚାଲିଥିବ। ଗୋଟାଏ ମିଛକୁ ଠିଆ କରିବାକୁ ଆଉ ପଚାଶ ମିଛ ଅନାୟାସରେ କହିଯିବା ଭାରି ସହଜ। ସେଇଆ ତ ଓକିଲାତି ଜୀବନରେ ମୁଁ ଏତେକାଳ ଦେଖି ଆସିଛି।

ସେଦିନ କିନ୍ତୁ ଅଦାଲତରେ କଥାଟା ଢେର ନିଆରା। ନେଟି ସିଂର ନିଜ ପାଇଁ ସତ ଅବା ମିଛି କହିବାର କୌଣସି ପ୍ରୟୋଜନ ନଥିଲା। ସେ କେବଳ ସାକ୍ଷୀ। ଦୂରରେ ଠିଆ ହୋଇ ଦୃଶ୍ୟ ଦେଖୁଥିବା ଅନ୍ୟ ଡାଳର ପକ୍ଷୀଟିଏ। ସେଥିପାଇଁ ତା' ମନରେ ଉଚ୍ଚାଟ ଦେଖା ଦେଇଥିଲା ସତ ବୟାନରେ ଆମୂଳଚୂଳ ସବୁ କହିଦେବା ପାଇଁ।

ସୁଯୋଗ ପାଇ ମୋର ଜଣେ ମହକିଲ ମୋ' କାନ ପାଖେ ପାଖେ ଘାବରେଇଲା ପରି

କହିଲା, "ଏଇଟା ଗୋଟାଏ ପାଗଳ । ଯା ପାଇଁ କାହିଁକି ଅଦାଲତର ସମୟ ନଷ୍ଟ କରଉଛନ୍ତି, ଆପଣ ଯାକୁ ଏଠୁ ବାହାର କରେଇ ଦଉନାହାନ୍ତି କାହିଁକି ।"

ମୋର ମହକିଲ ସବୁ ମାତଲର୍ ଲୋକ । ସବୁ ମିଶି ସତର ଜଣ, ଯେ କି ଏ ମାମଲାରେ ଧରା ପଡିଛନ୍ତି, ସମସ୍ତେ ନାମଜାଦା ପୋଖତ ଖେଳୁଆଡ । ଅପରାଧ ସେମାନଙ୍କ ଶ୍ୱାସ ପ୍ରଶ୍ୱାସରେ ଛନ୍ଦି ହୋଇ ରହିଛି । ସେମାନେ କାନୁନ୍ ଆଉ ଅଦାଲତକୁ ନେଇ ଜୁଆ ଖେଳି ଆସିଛନ୍ତି, ଖରିଦ୍ କରି ଆସିଛନ୍ତି । ଏଥର ବି ପ୍ରାୟ ସେଇଆ ହେବ ବୋଲି ଭାବିଛନ୍ତି । ବହୁବାର ମୁଁ ସେମାନଙ୍କ ହାତରୁ ରକ୍ତ ଦାଗ ଧୋଇଧାଇ, ସଦେଶୀ ଧଳା ପିନ୍ଧେଇ ତାଙ୍କ କୋଠାଘର ମାନଙ୍କରେ ଥଇଥାନ କରି ଆସିଛି । କାନୁନ୍‌କୁ ନେଇ ଯେତେପ୍ରକାର ଫିସାଦି କରିବା ବିଦ୍ୟା ମୋତେ ଜଣା । ସେଥିପାଇଁ ମୋର ଖ୍ୟାତି ରହିଛି । ଏଥର ମହକିଲ ମାନଙ୍କୁ ଖସେଇ ନେବା ସବୁଠୁ ସହଜ ଜଣା ପଡୁଛି; କାରଣ ତାଙ୍କୁ ବାନ୍ଧିବାକୁ ଅନ୍ୟ ପକ୍ଷ ଅକ୍ଷମ । ଅଭିଯୋଗ ସାବ୍ୟସ୍ତ କରିବାକୁ ତାଙ୍କ ପାଖରେ କୌଣସି ପ୍ରମାଣ ନାହିଁ । ଏଣୁ ମୋର ଚିନ୍ତା କରିବାର କୌଣସି କାରଣ ନାହିଁ ।

ତଥାପି ଏ ନେତି ସିଂ କଥାରେ ମୁଁ ଯେ ବିଚଳିତ ହେଉ ନଥିଲି ଏକଥା କହି ହେବ ନାହିଁ । ରାସ୍ତା ଉପରେ ଦ୍ୱିପ୍ରହର ବେଳେ ଦି ଚାରିଟା ହତ୍ୟା ହୋଇଯିବା କିଛି ନୂଆ କଥା ନୁହେଁ । ଆଉ ଯାହାସବୁ ବିଭିନ୍ନ ଦଫାରେ ପକେଇ ପୁଲିସ୍ କେସ୍ ତିଆରି କରିଛି ସେ ସବୁ ବି କିଛି ନୁହେଁ । ସବୁ ଦଫାକୁ ରଫା କରିବାର ବାଟ ରହିଛି ।

କିନ୍ତୁ ଏ ଅଜବ ସାକ୍ଷୀ ଆସି ଅଡୁଆରେ ପକେଇ ଦେଇଛି ସମସ୍ତଙ୍କୁ । ନ ହେଲେ ଅନ୍ୟଥର ଭଳି ସର୍କାରୀ ଓକିଲ ସାଙ୍ଗରେ ଗୋଟାଏ ଦରଦାମ କରି ଅଦାଲତ ଉପରେ ଲୋକ ଦେଖାଣିଆ ନାଟକ କରାଯାଇଥାନ୍ତା । ଲଢେଇ ହେଇଥାନ୍ତା । କୋଉଦିନ କିଏ ହାରିବ, କିଏ ଜିଣିବ ଆଗରୁ ଯୋଜନା ହୋଇଥାନ୍ତା । ଶେଷରେ ସରକାର ହିଁ ହାରିଥା'ନ୍ତେ ଯେମିତି ସର୍ବଦା ହାରନ୍ତି । ଏବଂ ସର୍କାରୀ ପକ୍ଷର ଧର୍ମକୁ ଆଖିଠାର ପାଇଁ କିଛି ମୂଲ୍ୟ ଦେବାକୁ ପଡିଥାନ୍ତା ।

ଏ ନେତି ସିଂଟ ଆସି ସବୁ ଗୋଳମାଳ କରିଦେଲା ।

କାଠଗଡାରେ ରାଜସାକ୍ଷୀ ଠିଆ ହୋଇଥିଲା । ଅନୁମତି ଚାହିଁଥିଲା ତା'ର ବୟାନ ଦେବାକୁ । ଅଦାଲତ ତାକୁ ନିଃସର୍ତ ଅନୁମତି ଦେଇ ପାରୁ ନଥିଲେ । କାହିଁକି କେଜାଣି ଜଜ୍ ସାହେବ ବି ସ୍ୱୟଂ ବିଚଳିତ ଜଣା ପଡୁଥିଲେ ।

ଅଦାଲତରେ ଦେଖଣାହାରୀ ଭର୍ତି ହୋଇଥା'ନ୍ତି । ଏଇଟା ଗୋଟାଏ ଭାରି ଚହଳ ପକାଇଥିବା ମାମଲା ଥିଲା ତ । ସମସ୍ତେ ଆସିଥିଲେ ଦେଖିବାକୁ କେମିତି ଧରାପଡିଥିବା ନିଶୁଆ, ବଳୁଆ ଲୋକସବୁ କେଉଁ କୌଶଳରେ ଫାଶ ହୁଗୁଳେଇ ଦେଉଛନ୍ତି । ହତ୍ୟା ଅପରାଧ ପ୍ରମାଣ ହେଲାପରେ ଫାଶି ହୁକୁମ୍ ଶୁଣେଇବା ଅଦାଲତକୁ ଏତେ ଲୋକ ଆସନ୍ତି ନାହିଁ । ସେଇଠି କ'ଣ ଅଛି ଶୁଣିବାକୁ ବା ଦେଖିବାକୁ । ସେଇଠି ତ' କଥା ସରିଯାଇଛି । କିନ୍ତୁ ଏ ମାମଲାରେ ଲୋକଙ୍କ ନାହିଁ ନଥିବା ଭିଡ ।

ତାଙ୍କରି ଭିତରେ ଶୁଣାଯାଇଥିଲା "କ'ଣ ସବୁ ଦେଖିଛି ବୋଲି କହୁଛି ଏ ହୁତୁମା ରାଜସାକ୍ଷୀ ? ସେଇ କଥା କ'ଣ ସେ ଅଞ୍ଚଳର ଆଖପାଖ ଲୋକେ ଦେଖି ନଥିବେ ? ସମସ୍ତେ ଦେଖିଛନ୍ତି, କିନ୍ତୁ କେହି ପାଟି ଫିଟେଇବାକୁ ହିମ୍ମତ କରୁ ନାହାନ୍ତି । ଆମଗି ଭିତରେ ଏଇଠି ସେମାନେ ହଜାର ଅଛନ୍ତି । ତାଙ୍କ ମନରେ ସନ୍ଦେହ ଏ ରାଜସାକ୍ଷୀ ସେସବୁ ଏଠି କହି ପାରିବ କି ନାହିଁ । ସେଥିରେ ଯେଉଁମାନେ ଭାଗିଦାର ଥିଲେ ସେ ସମସ୍ତଙ୍କୁ ଚିହ୍ନଟ କରିପାରିବ କି ନାହିଁ । ସେମାନେ ଭୟ ବି କରୁଛନ୍ତି କାଳେ ସେମାନଙ୍କ ନାଁ ଧରି ସେ କହି ନ ଦିଏ ଯେ ସେମାନେ ମଧ ସେ ଘଟଣା ଘଟିବାର ଦେଖିଛନ୍ତି ।"

ତା' ଭିତରେ କୌତୂହଳୀ ଲୋକ ଏଠି ସେଠି ନାକ ପୂରେଇ ଜାଣିବାକୁ ଚାହୁଁଥିଲେ କ'ଣ ଏଇଟା ଏକବାର ନିତିଦିନିଆ ଅପରାଧ ନା ଆଉକିଛି ତା' ଠାରୁ ଅଧିକ ଭୟାବହ, ଲୋକହର୍ଷଣକାରୀ! କୌଣସି ଉତ୍ତର ପାଉ ନଥିଲେ ।

କୌତୂହଳୀ ଲୋକଙ୍କ ମନରେ ଶଙ୍କା ହଉଥିଲା, ଉଦ୍‌ବେଗ ବଢୁଥିଲା କ'ଣ ସବୁ ପ୍ରଘଟ ହେଇଯିବ କେଜାଣି । ଏଇଆ ଭାବି ତାଙ୍କ କଲିଜା ହୁଏତ ତାଙ୍କ ପଞ୍ଜରାରେ ବାଡେଇ ହେଉଥିଲା ।

ସର୍କାରୀ ଓକିଲ ତଳକୁ ମୁହଁ ପୋତି କିଛି ସମୟ ଚିନ୍ତା କଲେ ଏବଂ ଶେଷକୁ ଅଦାଲତ ଆଗରେ ଅର୍ଜି କଲେ 'ୟୋର୍ ଅନର୍, ନାଲିଶ୍ କର୍ତ୍ତାଙ୍କ ତରଫରୁ ଏ ସାକ୍ଷୀକୁ ପ୍ରତ୍ୟାହାର କରି ନେବାକୁ ଅନୁମତି ଦିଆଯାଉ ଏବଂ ନୂଆ ସାକ୍ଷୀ ଆଣି ପେଶ୍ କରିବାକୁ ସମୟ ଦିଆଯାଉ ।'

କେଜାଣି କାହିଁକି ସାରା ଅଦାଲତରୁ ପ୍ରତିବାଦର ଗୁଞ୍ଜରଣ ଶୁଭିଲା । ସମସ୍ତେ ଚାହୁଁଥିଲେ ନେଡି ସିଂର ବୟାନ ଶୁଣିବାକୁ । ଏପରିକି ମୋର ମହକିଲ ମାନେ ମଧ ଚାହୁଁଥିଲେ ସେ ଯାହା କହିବା କଥା ବରଂ କହିଦେଉ । ଏମିତି ଗୁନ୍ଧି ହୋଇ ରହିବା ଅପେକ୍ଷା ବରଂ ଖଲାସ ହେଇଯାଉ ।

ମୁଁ ନିଜେ ମୋ' ଆଚରଣରେ ବିସ୍ମିତ ହୋଇଥିଲି । ସର୍କାରୀ ଓକିଲଙ୍କ ପ୍ରସ୍ତାବକୁ ମୁଁ ପ୍ରତିବାଦ କରି କହି ପକାଇଲି –

'ଏପରି କରିବାକୁ ସର୍କାରୀ ପକ୍ଷକୁ ଅନୁମତି ଦିଅ ନଯାଉ, ୟୋର ଅନର୍, କାରଣ ମିଥ୍ୟା ଆରୋପକୁ ପ୍ରମାଣ କରିବାକୁ ଉପଯୁକ୍ତ ତାଲିମପ୍ରାପ୍ତ ସାକ୍ଷୀକୁ ଅଦାଲତରେ ହାଜର୍ କରି ଶପଥ ପାଠ କରାଇଲା ପରେ ତାକୁ ଜେରା ନ କରି ତା'ର ବୟାନ ନ ଶୁଣି ଏଭଳି ପ୍ରତ୍ୟାହାର କରିନେବା ଅଦାଲତର ଦସ୍ତୁର ବିରୋଧୀ ହେବ । ଏଣୁ ମୁଁ ଅଦାଲତରେ ନିବେଦନ କରିବି ଯେ ଉପସ୍ଥିତ ସାକ୍ଷୀକୁ ତା'ର ବୟାନ ଦେବାକୁ ଅନୁମତି ଦିଆଯାଉ ।'

ପ୍ରାୟ ସମସ୍ତେ ଚକିତ ହୋଇଗଲେ ମୋ' ଯୁକ୍ତିରେ । ସବୁଠୁଁ ବେଶୀ ଆଶ୍ଚର୍ଯ୍ୟଚକିତ ହେଲେ ସର୍କାରୀ ଓକିଲ । ସେ ବିଶ୍ୱାସ ନ କଲା ପରି ମୋତେ ଚାହିଁ ରହି ମୋ' କଥା ଶୁଣୁଥିଲେ । ସେ ଭାବି ପାରୁ ନଥିଲେ ଯେ ମୁଁ ଏମିତି ବେକୁବ୍ କାମ କରିପାରେ ।

ଜଜ୍ ଚୌକି ଉପରେ ସଳଖି ବସିଲେ ଏବଂ କହିଲେ – "ଶପଥ ନେଇ ସାରିଥିବା ସାକ୍ଷୀକୁ ପ୍ରତ୍ୟାହାର କରାଯାଇ ପାରିବ ନାହିଁ । କିନ୍ତୁ ସେ କ'ଣ କହିବ ସେ ବିଷୟରେ ଅଦାଲତ ଆସନ୍ତା

କାଲି ନିଷ୍ପତ୍ତି ଶୁଣାଇବେ । କାଲି ପାଇଁ ଅଦାଲତ ମୁଲତବି କରାଗଲା ।"

ନେଟି ସିଂ ଦୁଇହାତ ଟେକି ପ୍ରାର୍ଥନା କଲା, "ହଜୁର, ଧର୍ମାବତାର । ମୋତେ କାଲି ଯାଏଁ ପୁଲିସ୍ ହିପାଜତ୍‌ରେ ରଖାଯାଉ, କାରଣ ମୋତେ ଚୁପ୍ କରିଦେବାକୁ ଗୋଟିଏ ରାତି ଯଥେଷ୍ଟ । କାଲି ମୋର ବୟାନ ଦେଇ ସାରିଲା ପରେ ମୋର କିଛି ଡରିବାର ନାହିଁ । କାରଣ ତେଣିକି ମୋତେ ମାରିଦେଲେ ବି ମୋ' ବୟାନକୁ କେହି ବଦଳାଇ ପାରିବେ ନାହିଁ ।"

ଜଜ୍ ମୁହୂର୍ତ୍ତେ ଚିନ୍ତା କରି ଆଦେଶ ଦେଲେ, "ତାହା ହିଁ ହେବ । ବର୍ତ୍ତମାନଠାରୁ କାଲି ଅଦାଲତରେ ହାଜର ହେବା ପର୍ଯ୍ୟନ୍ତ ଏ ସାକ୍ଷୀକୁ ପୁଲିସ୍ ନିଜ ହେପାଜତ୍‌ରେ ରଖିବେ ।"

କାଠଘଡା ଭିତରେ ନେଟି ସିଂ ଠିଆ ହୋଇ ରହିଲା । ଠେଲାପେଲା ହୋଇ ଲୋକ ତାକୁ ଘେରିଗଲେ । ବହୁ କ୍ୟାମେରା ଆଲୁଅ ତା' ଉପରେ ଚମକିଲା ।

ମୋତେ ଜଣାଗଲା, ଯେପରି ନେଟି ସିଂ ବେଶ୍ ଆମୋଦିତ ବୋଧ କରୁଥିଲା । ତାକୁ ପତ୍ରକାରମାନେ ପ୍ରଶ୍ନ କଲେ, ତା'ପର ଦିନ ସେ କ'ଣ କାହା ବିଷୟରେ କହିବାକୁ ଯାଉଛି । ସେ କୌଣସି ଜବାବ୍ ନ ଦେଇ କାଠଘଡା ଭିତରୁ ଓହ୍ଲେଇଗଲା । ପୁଲିସ ଘେର ଭିତରେ ତାକୁ ଅଦାଲତ ବାହାରକୁ ନେଇ ନିଆଗଲା । ଏବଂ ପୁଲିସ୍ ଜିପ୍ ଧୂଳି ଉଡେଇ ଚାଲିଗଲା ସହରର ରାଜରାସ୍ତା ଉପରକୁ ।

ମୋ ମହକିଲମାନେ ମଧ ନିର୍ବିବାଦ ଚାଲିଗଲେ ପୁଲିସ୍ ପହରା ଭିତରେ ।

ମୋର ମୂଳ ମହକିଲ ଦୁଇଜଣ ମୋତେ ଚାହିଁଲେ ଏକ ବିଶେଷ ଅର୍ଥପୂର୍ଣ୍ଣ ଭଂଗୀରେ । ଏ ଦୁଇଜଣ ହିଁ ସବୁ କରେଇଥିଲେ ଏବଂ ବାହାରେ ରହି କେସ୍ ଲଢୁଥିଲେ । ବାରଣ୍ଡାରେ ମୋତେ ନିରୋଳାରେ ପାଇ ଜଣେ ପଚାରିଲା –

"କ'ଣ କରାଯାଇ ପାରିବ ଏଥିପାଇଁ ? ତାକୁ କ'ଣ ବୟାନ ଦେବା ପାଇଁ ଆପଣ ଏମିତି ବାଟ ଛାଡିଦେବେ ?"

ମୁଁ ନିଶ୍ଚୟ ଅସୁସ୍ଥ ବୋଧ କରୁଥିଲି କିନ୍ତୁ ମୁହଁ ଜୋର୍‌ରେ କହିଲି –

"ଆପଣ କାହିଁକି ଏମିତି ବ୍ୟସ୍ତ ହେଉଛନ୍ତି ମୁଁ ବୁଝି ପାରୁନାହିଁ । ସେତ ନିଜକୁ ନିଜେ ହରେଇ ସାରିଲାଣି । ଖଚୁଆର ବୟାନ ଯାହାହେଲେ ସୁଦ୍ଧା କ'ଣ ସତ ହୋଇ ପାରିବ କି ?"

"ତଥାପି ଅଦାଲତ ତାକୁ ଯେ ଗୁରୁତ୍ୱ ଦେଉଛି ଏଥିରେ ତ ଆଉ ସନ୍ଦେହ ନାହିଁ । ତା'ର ବୟାନ ଶୁଣିବାକୁ ଆଜି ଯେଉଁ ବିଶେଷ ବନ୍ଦୋବସ୍ତ ହେଲା, ଯା'ପରେ କ'ଣ ଆପଣ ଭାବୁଛନ୍ତି ଯେ ତାକୁ ଆପଣ ଖଚୁଆ ବୋଲି କହିଦେଲେ ଅଦାଲତ ମାନିନେବ । 'ମୁଁ ଖଚୁଆ' ବୋଲି କହିଲା ବେଳେ ସେ ସତ କହୁଛି ନା ମିଛ କହୁଛି ? ଆପଣ ମାନୁଛନ୍ତି ଯେ ସତ କହୁଛି । ସେଥିପାଇଁ ମଧ ମାନୁଛନ୍ତି ଯେ ସେ ତା' ବୟାନରେ ମିଛି କହୁନାହିଁ ।"

ମୁଁ ସାମାନ୍ୟ ଗମ୍ଭୀର ହୋଇଗଲି । "ହୁଁ, ଏଇଟା ଗୋଟାଏ ପଏଣ୍ଟ ନିଶ୍ଚୟ । କିନ୍ତୁ ଦେଖିବା କାଲି କ'ଣ ହଉଚି । ଆପଣଙ୍କ ନିରାପତ୍ତା ସାଙ୍ଗକୁ ମୋର ମଧ ଇଜ୍ଜତ ଯା ସହିତ ଯୋଡି ହୋଇ

ରହିଛି । ମୁଁ ଏମିତି ହାରିଯିବି ନା କ'ଣ ? ଏବେ ଚାଲନ୍ତୁ ମୋ' ଚାମ୍ବରରେ ବସି ଆଲୋଚନା କରିନେବା । ମୋତେ ଆପଣ ସବୁ କଥା ଖୋଲାଖୋଲି କହିବେ, କାରଣ ତା'ର ବୟାନରେ ସେସବୁ ଆସିବାର ସମ୍ଭାବନା ଅଛି । ଆଗରୁ ଜାଣିଗଲେ ତା'ର ମୁକାବିଲା କରିବା ସହଜ ହୋଇପାରେ । କିଛି ଚିନ୍ତା କରନ୍ତୁ ନାହିଁ, ଚାଲନ୍ତୁ ।"

ଆମେ ଆସି ମୋ' ଚେମ୍ବରରେ ପହଞ୍ଚିଲୁ । ମୁଁ ଜୁନିୟାରମାନଙ୍କୁ ବିଦା କରିଦେଲି । କେବଳ ପିଅନ ଟି ଥାଏ । ଔପଚାରିକ ଚା ପାଣି ପାଇଁ କାହାରି ମନ ନଥିବାରୁ ତାକୁ ମଧ ବିଦା କରିଦେଲି । ମୁଁ ନିଜେ ଭିତରୁ କବାଟ ବନ୍ଦ କରିଦେଲି ମୋ' ଚୌକିରେ କାଗଜ ଧରି ବସିଗଲି ଟିପିନେବା ପାଇଁ ।

ସେ ଦୁହେଁ ପରସ୍ପରକୁ ଚାହିଁଲେ । ମୋତେ ଚାହିଁଲେ । କେହି କିଛି କହିଲେ ନାହିଁ । ମୁଁ କଥାଟାକୁ ହାଲ୍କା କରିବାକୁ କହିଲି –

"ପୁଲିସ୍ ତରଫରୁ ଯାହା ଅଭିଯୋଗ ହେଇଚି ସେ ସବୁ କ'ଣ ସତ ?"

ଜଣେ ସେଥିରୁ ଖେଁ ଖେଁ ହସି ପକେଇଲା । ଭାରି ନର୍ଭସ ଜଣା ଯାଉଥିଲା ।

ତା'ର ଅଚାନକ ହସରେ ମୁଁ ବି ଅପ୍ରସ୍ତୁତ ବୋଧ କରୁଥିଲି । ସେ କହିଲା –

"ଓକିଲ ସାହେବ, ଆପଣ ମଧ ପିଲାଙ୍କ ଭଳି ଏମିତି ପଚାରୁଛନ୍ତି । ସେ ଗୁଡାକ ସତ ନ ହେଇଥିଲେ ଆମେ ଆପଣଙ୍କ ହିଫାଜତ୍‌କୁ କାହିଁକି ଆସିଥାନ୍ତୁ ? ସେ ସବୁ ସତ... କିନ୍ତୁ"

ମୁଁ ତା' ଆଖିକୁ ଚାହିଁ ଅପେକ୍ଷା କଲି ।

ସେ ଆରଜଣକୁ ଚାହିଁଦେଇ ଖୁବ୍ କୁଣ୍ଠିତ ଭଙ୍ଗୀରେ କହିଲା –

"ସେଇଟା ଟଙ୍କାରେ ମାତ୍ର ପାଞ୍ଚ ପଇସା । ବାକି ପଞ୍ଚାନବେକୁ ଚପେଇ ଦବାପାଇଁ ସେ ପୁଲିସ୍ ଷ୍ଟେସନ୍‌ଟାକୁ ମୂଳରୁ ଚୂଳ ଯାଏଁ କିଣି ନେବାକୁ ପଡିଲା । ସବୁ ଚପାଇ ଦବାକୁ ସେମାନଙ୍କ ହୁବ ପାଇଲା ନାହିଁ । ତଳୁ ଉପର ଯାଏଁ ଚାରା ବାଣ୍ଟି ଦିଆଗଲା । ସମସ୍ତେ ଚାରା ଢୋକିଛନ୍ତି । କିନ୍ତୁ ଏତକ ଘୋଡେଇବାକୁ କେହି ସାହସ କରି ପାରିଲେ ନାହିଁ । ମୁହାଣ ମେଲା କରି ଦେଇଥିଲୁ । କିନ୍ତୁ ହେଲା ନାହିଁ ।"

ମୁଁ ମୋଟାମୋଟି ଭାବରେ ଏକଥା ଜାଣିଥିଲି । ତା' ଆଖି ଭିତରକୁ ଚାହିଁ କହିଲି – "ମୋତେ ବାକି ପଞ୍ଚାନବେ ପଇସା ଖୋଲି କହିବାକୁ ପଡିବ । ନ ହେଲେ କାଲି ହଇରାଣ ହେବାକୁ ପଡିପାରେ ।"

"ସେଇ କଥା ତ ଆମେ ବି ଭାବୁଛୁ । ହେଲେ ଅସୁବିଧା ହଉଚି ଯେ ଆମେ ବି ସବୁ ଜାଣିନାହୁଁ । ଘଟନା ତ ଗୋଟିଏ ଜାଗାରେ ଜଣକ ଆଖି ଆଗରେ ଘଟିନାହିଁ । ସତରଟା ମୁହଁରେ ଭୁଞ୍ଜିଲା ବେଳେ କୋଉଠି କ'ଣ ହେଇଛି କେମିତି ଜାଣିବା । ଆମେ ବାକି ସମସ୍ତଙ୍କୁ ପଚାରିବୁ । ସେଗୁଡା ସବୁ ପୋଖତ ଖେଳାଳି । ସେ ଆମକୁ ବି ବେଳ ପଡିଲେ ଚିତା କାଟିଦେଇ ପାରନ୍ତି । ସେମାନେ ଯେ ଯାହା ଗପ କହିଛନ୍ତି । କିନ୍ତୁ ସେଥିରେ କିଛି ଭରସା କରି ହଉ ନାହିଁ ।"

ମୁଁ ସାମାନ୍ୟ ଚିଡିଯାଇ କହିଲି, "ହଉ ତେବେ ଥାଉ ! କାଲି ଯାହା ହବାର ହବ । ମତେ

ଆଉ ତମେ ଦୋଷ ଦବ ନାହିଁ । ମୁଁ କାଲି ଅଦାଲତରେ ହାଜର ହେବା ବି ଦରକାର ହୋଇ ନପାରେ । ସାକ୍ଷୀର ବୟାନ ପରେ ଅଦାଲତ ଏକତରଫା ରାୟ ଦେଇ ପାରନ୍ତି । ସେଥିପାଇଁ ତୁମେ ପ୍ରସ୍ତୁତ ହୋଇଥାଅ ।"

"ଆରେ, ଆରେ, ଆପଣ ତ ଚିଡି ଯାଉଛନ୍ତି । ଆମେ ଯାହା ଜାଣିଛୁ କହିଦେବୁ । କିନ୍ତୁ ସେଥିରେ ସତ କେତେ ମିଛ କେତେ ଆମକୁ ଜଣା ନାହିଁ । ଆପଣ ନିଜେ ଶୁଣନ୍ତୁ ।"

ସେମାନେ ଦୁହେଁ ମିଶି ଯାହା ବଖାଣିଲେ ତାହା ଏଭଳି ଅରାଧରେ ସବୁବେଳେ ଘଟି ଆସୁଥିବା ପୁରୁଣା ଘସରା କାହାଣୀ । ସେଗୁଡାକୁ କେହି ପ୍ରମାଣ କରି ପାରିବେ ନାହିଁ । ଏଣୁ ସେଥିରୁ ମୁକୁଳିଯିବା ଅତି ସହଜ ।

ଅବଶ୍ୟ ପୁଲିସ୍ ଯାହା ଅଭିଯୋଗ କରିଛି, ତା' ଅପେକ୍ଷା ଅଧିକ ଘଟିଛି । ଏକଥା ସେମାନଙ୍କ ବିବରଣୀରୁ ଜଣାପଡି ଯାଉଥିଲା । ଏତକ ବି ଯଦି ନେତି ସିଂ ବଖାଣି ଦିଏ ଅଦାଲତରେ ଚହଳ ପଡିଯିବ । କିନ୍ତୁ ସେ କ'ଣ ସେତିକି ମାତ୍ର କହିବ କି ? ସେ ହୁଏତ ଏ ଦୁଇଜଣଙ୍କୁ ଜଣା ନଥିବା ଆହୁରି ଅନେକ ଭୟାନକ କଥା ସବୁ କହିଦେଇ ପାରେ ।

ଆମେ ତିନିହେଁ ଭାରି ଅସହାୟ ଏବଂ ଅସୁସ୍ଥ ବୋଧ କଲୁ । ମୋ' ମୁହଁରେ ବେକରେ ଝାଳ ଜକେଇ ଗଲା । ଆର ଜଣକ ପାଟି ଖୋଲି କହିଲା, "ସେ ସାକ୍ଷୀଟାକୁ 'ଖଲାସ' କରିଦେଲେ ଅଡୁଆ ତୁଟିଯାନ୍ତା ।"

ଆରଜଣକ ଓଠ ଲେଉଟାଇ ପ୍ରସ୍ତାବଟାକୁ ନାପସନ୍ଦ କରିଦେଲା, "ପୁଲିସ୍‌ର ସତନ୍ତ୍ର ହିଫାଜତ୍‌ରେ ଥିବା ସାକ୍ଷୀକୁ କେମିତି ବା ନିପାତ କରିଦେଇ ହେବ ?"

"ହେବ ଯେ କିଛି ଅଧିକ ମାଲ୍ ଦର୍କାର ପଡିପାରେ ।"

"ହେଇଯାଉ ଯାହା ଖର୍ଚ୍ଚ, ସେଥିକୁ ପରବାଏ ନାହିଁ । ତାକୁ ଖତମ୍ ନ କଲେ ଆଉ ଉପାୟ ନାହିଁ ।"

ମୋ ଟେଲିଫୋନ୍‌ରୁ ସେ ଦି' ଗରିଟା ଜାଗାକୁ ଲଗେଇଲା । ବିରକ୍ତ ହୋଇ କଚି ଦେଲା ରିସିଭରଟାକୁ, କହିଲା, "ଶଳେ ବକ୍ତ ବେଳେ କେହି ମିଳୁ ନାହାନ୍ତି ।"

"ଆବେ ସେ ଟୋକା ଓସ୍ତାଦ୍‌କୁ ଧରୁ ନାହୁଁ କାହିଁକି ? ସେଇଟା ତ' ତା' ଗୁମ୍ଫାରେ ସବୁବେଳେ ଥାଏ ।"

ପୁଣି ଫୋନ୍ ଲଗା ହେଲା । ସେଠୁ ବି କୌଣସି ଉତ୍ତର ଆସିଲା ନାହିଁ । ସେ ଦୁହେଁ ନିରସ୍ତ ହୋଇଗଲେ । ଅସ୍ଥିର ହେଲେ । କହିଲେ...

"ଓକିଲ ବାବୁ ! ଆପଣ କ'ଣ ହେଲେ ଉପାୟ ନକଲେ କଥାଟା ବେବାଗିଆ ହେଇଯିବ । ତେଣିକି ସମ୍ଭାଳି ହେବ ନାହିଁ ।"

ମୁଁ ନିଜେ ଜାଣି ପାରୁ ନଥିଲି କ'ଣ କରିବି । କିଛି ସମୟ ଏକୁଟିଆ ଚିନ୍ତା କରିବା ପାଇଁ ମୁଁ ସେମାନଙ୍କୁ ଆଶ୍ୱାସନା ଦେଇ ବିଦାୟ କରିଦେଲି । କହିଲି – "ଦେଖିବା । ସେ କ'ଣ କହୁଚି ଆଗ କହିଦେଉ । ତା'ପରେ ଉପାୟ ଚିନ୍ତା କରିବା । ଏବଠୁ ନଈ ନ ଦେଖି ଲଙ୍ଗଳା ହେବାର କିଛି ଅର୍ଥ

ନାହିଁ ।"

ଜଣେ ସେଥିରୁ କହିଲା, "ଠିକ୍ କହିଛନ୍ତି ଆପଣ! ଆବ୍‌ବେ ସେ ଶଳା ଖଚୁଆଟା କ'ଣ ଦେଖିଚି, କ'ଣ ଏମିତି ଟାଳି ପକେଇବ ? ସେ କହୁ ସେଇଠୁ ଦେଖିବା ନି !"

ସେ ଦୁହେଁ ଚାଲିଗଲେ । ଆପାତତଃ ତାଙ୍କ ମୁଣ୍ଡରୁ ଭୂତ ଓହ୍ଲେଇ ଯାଇଥିଲା ।

ମୁଁ ବି ସେଇ ମନୋଭାବ ନେଇ କଥାଟାକୁ ବିଚାର କଲି । ସାକ୍ଷୀଟାଏ ଏମିତି କ'ଣ କହି ପକେଇବ ଯେ ସେଥିପାଇଁ ଏତେ ଚିନ୍ତା ?

ସଂଧ୍ୟା ହେଲା । ମୁଁ ଛାତରେ ଖୁବ୍ ସମୟ ଯାଏ ବୁଲିଲି । ପ୍ରୟୋଜନରୁ ଅଧିକ ଦି କପ୍ ଚା ପିଇଲି । ମୋର ମାନସିକ ଅବସ୍ଥା ଅନୁମାନ କରି ଘରେ କେହି ମତେ କିଛି ପଚାରିଲେ ନାହିଁ ।

ରାତି ହେଲା । ମୁଁ ଟିଭି ମୂଳେ ବସି ସବୁଯାକ ଆବୁରୁ ଜାବୁରୁ ଦେଖିଲି । ଏଗାରଟାରେ ମୋର ଟେଲିଫୋନ୍ ବାଜିଲା । ମୁଁ ସେ ପଟର ସ୍ୱର ଶୁଣି ଚକିତ ହୋଇଗଲି ।

ସର୍କାରୀ ଓକିଲ କହୁଛନ୍ତି "ସୁବ୍ରତ ବାବୁ! ଭାରି ଅଡୁଆ ପରିସ୍ଥିତି ହେଇଗଲା । କ'ଣ କରିବା ? ଆପଣ ଜାଣନ୍ତି ବୋଧହୁଏ ଯେ ଆପଣଙ୍କ ମହକିଲ ମୋ' ପାଖକୁ ବି ଆସନ୍ତି । ଏଥର ଆପଣଙ୍କୁ ନ କହି ଆସିଛନ୍ତି । ଏଇ ମାତ୍ର ତାଙ୍କୁ ବିଦାୟ ଦେଲି । ମୋର ବାରଣ ସତ୍ତ୍ୱେ ସେମାନେ ଏଇଠି ଗୋଟିଏ ବ୍ୟାଗ୍ ରଖି ଦେଇ ଯାଇଛନ୍ତି । ମୁଁ ସେ ସାକ୍ଷୀଟାକୁ ନେଇ ଭାରି ବେକୁବ୍ କାମ କରିଛି । ସେ କ'ଣ କାଲି କହି ପକେଇବ, ସେଥିପାଇଁ ମୁଁ ଆଦୌ ପ୍ରସ୍ତୁତ ନୁହେଁ । ମୋତେ ଲାଗୁଛି ଯେ ସେ ଆମ ସମସ୍ତଙ୍କୁ କାଠଘଡାରେ ଠିଆ କରେଇ ଦେଲାଭଳି କ'ଣ ସବୁ କହିପାରେ । ଯାହା କରାଯିବ, ଏଇ ରାତି ଭିତରେ ହେଇଯିବା ଭଲ । ମୁଁ ଥାନାରୁ ବୁଝିଲି ଯେ ସେ ଦିବ୍ୟ ଭୋଜନ କି ହାଜତ୍ ଭିତରେ ଘୁଙ୍ଗୁଡି ମାରୁଛି । ତା'ର କିଛି ଚିନ୍ତା କରିବାର ନାହିଁ । ସେ ଯାହା କହିବ ସେଥିରୁ ଜଣାଯିବ ଯେ ସର୍କାରୀ ପକ୍ଷରୁ ଅପରାଧର ଶହେରେ ପଞ୍ଚାନବେ ଭାଗ ଲୁଚେଇ ଦିଆହୋଇଛି । କାହିଁକି ବୋଲି ଅଦାଲତ ପ୍ରଶ୍ନ କଲେ, ସେଥିପାଇଁ ଉତ୍ତର ନାହିଁ ।"

ମୁଁ ସର୍କାରୀ ଓକିଲଙ୍କୁ ଜାଣେ । ତାଙ୍କର ଦି ପାଖିଆ ଉପାର୍ଜନ କଥା ବି ଜାଣେ । ମୁଁ ହିଁ ତାଙ୍କୁ ସେଥିରେ ସାହାଯ୍ୟ କରିଥାଏ । କିନ୍ତୁ ଏ ମାମଲାରେ ସେ ବିଚରାଟିର ଅବସ୍ଥା ମୋଠୁଁ କିଛି ଭଲ ନୁହେଁ ।

ମୁଁ କିଛି ସମୟ ଚିନ୍ତା କରି କହିଲି, "ଆଚ୍ଛା ଜଜ୍ ସାହେବ ତ' ଆପଣଙ୍କ ଗାଁ ଲୋକ ।"

"ବୁଝିଲିଣି । କିନ୍ତୁ ସେ ରାସ୍ତା ବିଲ୍‌କୁଲ୍ ବନ୍ଦ ।"

"ଟିକିଏ ଜୋର୍ ଲଗେଇ ଦେଖୁ ନାହାନ୍ତି ।"

"ନା, ମୁଁ ଚେଷ୍ଟା କଲିଣି । ଆଉ ଆଗେଇଲେ ଓଲଟା ଫଳ ଦେଇ ପାରେ ।"

"ଆପଣ କ'ଣ ଫୋନ୍ ଲଗେଇଥିଲେ ?"

"ହଁ । ସେ ଚଞ୍ଚଳ ଶୋଇଯାନ୍ତି ବୋଲି ମୋର ଧାରଣା ଥିଲା । କିନ୍ତୁ ଫୋନ୍ ବାଜୁ ବାଜୁ ସେ ଉଠେଇଲେ । ମୁଁ ତାଙ୍କ ଦେହ କଥା, ଗାଁ କଥାରେ ବାଆଁରେଇ ଦେଲା ବେଳେ ସେ ତାଙ୍କ ଆଡୁ ଚଟ୍ କିନା କହିଲେ – "ସେ ସାକ୍ଷୀଟା ପୁଲିସ୍ ହିଫାଜତ୍‌ରେ ଠିକ୍ ଅଛି ତ ? କାଲି ତା'ର

ରେକର୍ଡ ବୟାନ ହବ ।" ମୁଁ ଆଉ ଆଗେଇବାକୁ ସାହସ କଲି ନାହିଁ । ଥାନାକୁ ଫୋନ୍ କଲି ଜଜ୍ ସାହେବଙ୍କ ହୁକୁମ ଅନୁସାରେ ନେଡି ସିଂ ବିଷୟ ଜାଣିବାକୁ । ଥାନା ବାବୁ ବି ଏ ଅନ୍ତେ ରାତିଯାଏ ଘରକୁ ଯାଇ ନାହିଁ । ସେ ହୁଏତ ରାତି ସାରା ଯିବ ନାହିଁ । ସେ କହୁଥିଲା "ଥାନା ହତା ବାହାରେ କ୍ୟାମେରା କାନ୍ଧେଇ ଦୁଇ ଚରିଟା ଖବର କାଗଜବାଲା ବୁଲୁଛନ୍ତି । ଗଛମୂଳେ ବସି ମଦ ପିଉଛନ୍ତି । ଛକି ରହିଛନ୍ତି କ'ଣ କାଳେ ଘଟିଯିବ ଜାଣିବାକୁ ।"

ପତ୍ରକାର ମାନଙ୍କ ଆଗ୍ରହ ସହଜରେ ବୁଝାପଡି ଯାଇଥିଲା । ସେମାନେ ଜାଣିଥିଲେ ମୋ' ମହକିଲଙ୍କ ଓଜନ କେତେ । ସେମାନଙ୍କ ଚେର କେତେ ଗହୀର । ସେମାନଙ୍କ ସାଙ୍ଗରେ ଗୁନ୍ଥି ହେଇ ରହିଥିବା ଅମଲା ଅଫିସର ମନ୍ତ୍ରୀ ସରକାରୀ ବେସରକାରୀ ନେତାଙ୍କ କଥା ବି ଜାଣିଥିଲେ । ଅପରାଧରେ କିଏ କେତେ ପରିମାଣରେ ଦାୟୀ ସେ ବିଷୟରେ ତର୍କ ଆଲୋଚନା ବି ହୁଏତ କରୁଥିଲେ । କାଲି ସେ ରାଜସାକ୍ଷୀର ବୟାନ ପରେ କ'ଣ ସତେ ହେବ କେଜାଣି ! ବିପକ୍ଷ ଦଳ ପକ୍ଷରୁ ବି ଲୋକେ ଛକି ରହିଯିବେଣି ଫାଇଦା ଉଠାଇବା ପାଇଁ ।

ପାଦତଳୁ ଭୂଇଁ ଧସି ଯିବ କି ? ଆକାଶ ଛିଣ୍ଡି ପଡିବ କି ? ସୃଷ୍ଟି ଆନ ଆନ ହେଇଯିବ କି ଆଉ ।

ବହଳିଆ ଦୁଃସ୍ୱପ୍ନର ରାତି କେମିତି ପାରିହେଲା ମୁଁ ଜାଣି ନାହିଁ । ପାହାନ୍ତିଆକୁ ଟେଲିଫୋନ୍ ଘଣ୍ଟି ବାଜିଲା ।

ସ୍ୱର କାହାର କେଜାଣି – ଲାଗୁଥିଲା ସତେବା ଘୋର କୋଳାହଳ ହେଉଥିଲା ସେପଟେ । କେହି ଜଣେ ଚେଷ୍ଟା କରୁଥିଲା କଥାଟା କହିବାକୁ –

"ସୁବ୍ରତ ବାବୁ, ଓକିଲ ବାବୁ ! ରାଜସାକ୍ଷୀ ମିଳୁ ନାହିଁ । କୁଆଡେ ଗଲା କେହି କହି ପାରୁ ନାହାନ୍ତି । ତନାଘନା ଖୋଜା ଚାଲିଛି ।"

ମୁଁ କିଛି ପଚାରିବା ପୂର୍ବରୁ ସେ ଫୋନ୍ ଛାଡିଦେଲା ।

ମୋ ବୁକୁ ଦାଉଁ ଦାଉଁ ହଉଥିଲା । ତୋଫାନ୍ ଭଳି ମୁଁ ବି ମନେ ମନେ ସନ୍ଧି ଖୋଜି ଯାଉଥିଲି । କେମିତି ପଥର କାନ୍ଥ ଫାଟିଗଲା ? ଲୁହା କବାଟ ତରଳି ଗଲା ? ପୁଲିସ୍ ହାଜତରୁ ସାକ୍ଷୀ କୁଆଡେ ଚାଲିଗଲା, ହରଣଚାଳ ହେଇଗଲା, ଉଭାନ୍ ହେଇଗଲା – କେମିତି, କେମିତି ?

ମୋତେ ସମସ୍ତଙ୍କ ମୁହଁ ଦିଶି ଯାଉଥିଲା । ସମସ୍ତେ କନକନ ହୋଇ ଲୁଚି ଯାଉଥିଲେ ଏପକ୍ଷ, ସେପକ୍ଷ, ନିଷ୍ପକ୍ଷ ସମସ୍ତେ ଚାହୁଁଥିଲୁ ସେ ତା'ର ବୟାନ ଦେଇ ଦେଉ । ଅଦାଲତ ଇତିହାସରେ ଥରେ ହେଲେ ସାରା ସତ୍ୟର ବୟାନ ହେଇଯାଉ । ସମସ୍ତେ ନିସ୍ତାର ପାଇଯାନ୍ତୁ ଦୁର୍ଦ୍ଧାନ୍ତ ସତ୍ୟରୁ ।

ନେଡି ସିଂ ଜାଣି ପାରିଥିଲା ତା'ର ଗୁରୁତ୍ୱ, ତା'ରି ବିପତ୍ତି । ସେ ପ୍ରସ୍ତୁତ ଥିଲା । କିନ୍ତୁ ଆମେ କେହି ପ୍ରସ୍ତୁତ ନଥିଲୁ ତା' ଆରଦିନର ସୂର୍ଯ୍ୟକୁ ସାମ୍ନା କରିବାକୁ ।

ଓଃ ! ଭଲ ହେଲା ନେଡି ସିଂ ଉଭେଇ ଗଲା ।

ଖଚୁଆ କାହାଁକା ।



# ବାହାର ଲୋକ

ବଙ୍ଗୋପସାଗରରେ ପ୍ରବଳ ଲଘୁଚାପ । ଝଙ୍କା ପବନ ଆଉ ବର୍ଷା ଏ ଅଞ୍ଚଳ ସାରା । ଗଛ କୋରଡରେ ଆଶ୍ରିତ ପକ୍ଷୀପରି ଘର ଭିତରେ ବସିରହି ଝିପିଝିପି ବର୍ଷାକୁ ଚାହିଁ ରହିବା ଛଡା ଆଉ କିଛି ସମ୍ଭବ ନୁହେଁ । ବଡ ବିଚିତ୍ର କଥା ଯେ ମେଘ ଆଦୌ ଡାକୁ ନଥାଏ କି ବିଜୁଳି ମାରୁ ନଥାଏ; ଅଥଚ ଅଜାଡି ଦେଉଥାଏ ଅଜସ୍ର ପାଣି । କେମିତି ଗୋଟାଏ ନିଛାଟିଆ ଲାଗୁଥାଏ ଚାରିଆଡ । କେହି ଜଣେ ପାଖରେ ବସି ରହିଲେ ହୁଏତ ଭଲ ଲାଗନ୍ତା । କିନ୍ତୁ ତା' ସହିତ ପାଟି ଫିଟେଇବାକୁ ପଡନ୍ତା ନାହିଁ । ନୀଡ ଭିତରେ ପକ୍ଷୀମାନେ ଲାଗି ଲାଗି ବସି ରହିବା ହିଁ ଯଥେଷ୍ଟ । ଏଭଳି ପାଗରେ ରବିବାର ଅର୍ଥ କ'ଣ ?

ସେଥିପାଇଁ ଭୋଳାନାଥବାବୁ ଖଣ୍ଡିଏ ଚଦର ଘୋଡେଇ ହୋଇ ଚୌକିରେ ବସିଥା'ନ୍ତି । ପାଖ ଟେବୁଲରେ ଖାଲି ଚା କପ୍‌ଟିଏ ଥୁଆ ହୋଇଥାଏ । ତାଙ୍କ ଚଷମା ଉପରେ ବାମ୍ଫ ମାଡି ଯାଇଥାଏ । ତା' ଭିତରୁ ତାଙ୍କୁ କ'ଣ ଦିଶୁଥାଏ କେଜାଣି – ସେ କିନ୍ତୁ ନିଶ୍ଚଳ ଚାହିଁ ରହିଥା'ନ୍ତି ବର୍ଷାକୁ ।

ପାଖ ବଖରାରୁ ରହି ରହି ହସ ଶୁଭୁଥାଏ । କଳରବ ଶୁଭୁଥାଏ ଅନ୍ୟ ତାଳରୁ । ସତେବା ଭୋଳାନାଥବାବୁ ସେ ହସର ଖିଅ ଫିଟେଇ ଗୋଟି ଗୋଟି କରି ସ୍ୱର ବାରି ପାରୁଥା'ନ୍ତି । ପରିବାର ସମସ୍ତଙ୍କ ସ୍ୱର ସହିତ ଢେର୍ ଦିନର ପରିଚୟ ତ । ସେମାନେ ଏମିତି ଖୁସିରେ ହସୁଥିବା ବେଳେ ତାଙ୍କୁ ମନେ ପକାନ୍ତି ନାହିଁ । କ'ଣ କୌତୁକ ହେଲା ବୋଲି ତାଙ୍କୁ ଜଣାଇବା ପ୍ରୟୋଜନ ମଣନ୍ତି ନାହିଁ । କେବେ କେମିତି ସେ ନିଜେ ଚାଲିଯାଇଛନ୍ତି କୌତୂହଳରେ । ଠପ୍ କିନା ସବୁ ବନ୍ଦ ହୋଇଯାଇଛି । କିଏ ଜିଭ କାମୁଡି ପକାଇଛି ତ ଆଉ କିଏ ସମ୍ଭାଳି ନ ପାରି ପାଟିରେ ଲୁଗାବିଣ୍ଡା ମାଡି ଉଠି ଚାଲିଯାଇଛି । ତାଙ୍କ ସ୍ତ୍ରୀ ହସ ଚାପିରଖି ପଚାରିଛନ୍ତି, "କ'ଣ ତୁମ ଚା ଖିଆ ବେଳ ହୋଇଗଲାଣି କି ?" ଭୋଳାନାଥବାବୁ ଅଗତ୍ୟା କହିଛନ୍ତି, "ନାଇଁ ଯେ, ହେଲେ କପେ ମିଳିଲେ

ମନ୍ଦ ହୁଅନ୍ତା ନାହିଁ।"

ସେଦିନ ସେଥିପାଇଁ ସେ ଆଉ ବଖରାକୁ ଜାଣିଶୁଣି ଗଲେ ନାହିଁ। ତାଙ୍କ ଆଗରେ ସେମାନେ ଏମିତି ହସିପାରିବେ ନା କ'ଣ ସେ ତାଙ୍କ କଥାରେ ମିଶି ପାରିବେ ?

ଭୋଳାନାଥବାବୁ ସେ ଘରେ ନିଶ୍ଚୟ ସବୁଠାରୁ ବୟସରେ ବଡ଼। ତାଙ୍କ ସ୍ତ୍ରୀଙ୍କଠାରୁ ଦଶବର୍ଷ ଏବଂ ସବା ବଡ଼ ପୁଅଠାରୁ ପଚିଶ ବର୍ଷ। ବାକିଗୁଡାକର ହିସାବ ନାହିଁ।

ତାଙ୍କ ମୁଣ୍ଡରୁ ଅଧେ ବାଳ ପାଚିଗଲାଣି। ଦୁଇଟା କଳଦାନ୍ତ ଝଡ଼ିଗଲାଣି। ରଙ୍ଗବେରଙ୍ଗ ପଟାଳିଆ ଜାମା ତାଙ୍କର ନାହିଁ। ପିନ୍ଧରେ ବେଡାମଲଗା ପେଣ୍ଟ ନାହିଁ। ସେ ମସଲା ତିଅଣ ଅପେକ୍ଷା ବେସର ବେଶି ପସନ୍ଦ କରନ୍ତି।

'ଗଜଲ୍' କିମ୍ବା କର୍ଣ୍ଣାଟକୀ ସଙ୍ଗୀତ ବାଜିଲେ ଏକୁଟିଆ ବସି ଶୁଣନ୍ତି। ପପ୍ ବାଜିଲେଇ ସେ ଚିଡିଯାଆନ୍ତି ଏବଂ କିଛି ନ କହି ଉଠି ଆସନ୍ତି। ସେତିକିବେଳେ କୋଉଠୁ ଉଣ୍ଡିଥାଆନ୍ତି ବାକି ସମସ୍ତେ ଆସି ଧାଡିବାନ୍ଧି ବସିଯାଆନ୍ତି ଟି.ଭି. ପାଖରେ।

ଭୋଳାନାଥବାବୁ ତ ବେକୁବ୍ ନୁହନ୍ତି। ସେ ଠିକ୍ ବୁଝିଛନ୍ତି ଯେ ନିଜେ ପଛେଇ ଯାଇଛନ୍ତି। ସମୟ ସାଙ୍ଗେ ବଦଳି ପାରି ନାହାନ୍ତି। ନ ହେଲେ ବା କ'ଣ ହେଇଥାନ୍ତା। ଚିନ୍ତାମଣି ତାଙ୍କ ସାଙ୍ଗ। ସେ ନଳିପେଣ୍ଟ ପିନ୍ଧିଲା। ବାଳରେ ରଙ୍ଗ ଲଗେଇଲା। କ୍ଲବ୍ ଗଲା। ଟୋକାଙ୍କ ସାଙ୍ଗେ ଟୋକା ହେବାକୁ ପ୍ରାଣାନ୍ତ ଚେଷ୍ଟାକଲା। ଏବେ ବି କରୁଚି। କିନ୍ତୁ ତା' ଗନ୍ଧ ସେମାନେ ବାରି ଦେଉଛନ୍ତି। କଉଛତା ଦେଇ କହୁଛନ୍ତି, 'ମଉସା, ଆପଣ ଏଇଠି ଥାଆନ୍ତୁ, ଆମେ ଟିକିଏ ଅନ୍ୟଆଡେ ଯାଉଛୁ। ଆପଣ ସେଠି ପାରିବେ ନାହିଁ।' ହାଃ, ହାଃ – ପାରିବେ ନାହିଁ।

ସତକୁ ସତ ଭୋଳାନାଥ ବାବୁ ସେ ବର୍ଷାପାଗରେ ଏକୁଟିଆ ବସି ମନକୁ ମନ ହସୁଥିଲେ। ...ଚିନ୍ତାମଣିଟା ସତେ କେତେ ଅଭିଲା। ଆରେ ତତେ ସୁଅ ନେଇ କୋଉଠି ଛାଡିଲାଣି। ତୁ ସେଇଠୁ କ'ଣ ଉହୁଙ୍କି ହଉଛୁ ଯାଙ୍କ ସାଙ୍ଗେ ମିଶିବା ପାଇଁ। ତୁ ଅଯଥା ଗୁଡାଏ ଅଭିମାନିଆ ବି କାହିଁକି ହଉଛୁ? ସେମାନେ ତତେ କ'ଣ ଅବଜ୍ଞା କରୁଛନ୍ତି ? ତତେ ବରଂ ସେମାନେ ବେଶ୍ ସମ୍ମାନ ଦିଅନ୍ତି। ତୁ ପାହାଚ ଚଢ଼ି ଆସିଲେ ଆଡେଇ ହୋଇ ଯାଆନ୍ତି। ତୋ' ଆଗରେ ସିଗ୍ରେଟ୍ ଟାଣନ୍ତି ନାହିଁ। ତତେ ଚୌକି ଛାଡି ଉଠି ପଡନ୍ତି। କଥାଟାକୁ ଟିକେ ବୁଝ। ଏମିତି କାଇଁକି ହଉଚୁ ?

ଭୋଳାନାଥ ବାବୁଙ୍କୁ ଲାଗେ ଯେ ଚିନ୍ତାମଣିଆଟା ପାହାଡ ଚଢ଼ି ପାରୁ ନାଇଁ। ତା' ଗୋଡ ଫଗକଟେଇ ହେଇ ଯାଉଚି, ଦମ୍ ଅଣ୍ଟୁ ନାଇଁ। ପବନ ଟୋଳୁଚି ଅଣଚଣ। ପାହାଡ ଶିଖରେ ଗଣ୍ଡେ ଟୋକା ତାଳିମାରି ହସୁଚନ୍ତି, ତାଙ୍କ ଭିତରେ ଥଟ୍ଟା ପରିହାସ ଚାଲିଚି। ଯାକୁ ସେମାନେ ଆଦୌ ନଜର ଦେଇ ନାହାନ୍ତି। ଏଇଟା ଖାଲି ହେମ୍ଚି ଧଇଁସଇଁ ହଉଚି ମିଶିଯିବା ପାଇଁ, ବେକୁବ୍।

ଆଉ ବଖରାରୁ ପୁଣି ଖଳଖଳ ହସ ଶୁଭିଲା। ଭୋଳାନାଥ ବାବୁ ସେମିତି ନିଶ୍ଚଳ ଚାହିଁ ରହିଲେ ବର୍ଷାକୁ, ପବନରେ ଲୋଟି ପଡୁଥିବା ଲମ୍ବଲମ୍ବ ଝାଉଁଗଛମାନଙ୍କୁ।

ତାଙ୍କ ସ୍ତ୍ରୀ ଗୋଟିଏ ବଡ ପ୍ଲେଟରେ କିଛି ଗରମ ପକୁଡି, କାଚ ଗିନାରେ କିଛି ଗରମଥିବା

ଘୁଗୁନି ଧରି ପହଞ୍ଚିଲେ । ଝିଅ ହାତରେ ପାଣି ଗ୍ଲାସ । ତାଙ୍କୁ ପକୁଡି ଘୁଗୁନି ନିଶ୍ଚୟ ଭଲଲାଗେ ସେକଥା – ଘରେ କିଏବା ନ ଜାଣିଛି ? ତାଙ୍କର ରୁଚି ଅରୁଚି ବିଷୟରେ ଟିକିନିଖି ସବୁକଥା ଟିପା ହୋଇ ରହିଛି । ସେଥିପାଇଁ ମଝିରେ ମଝିରେ ଘରେ ପାଟି ଶୁଭେ, ଆରେ ସେମିତି କରନା, ନନାଙ୍କୁ ସୁଖ ଲାଗିବ ନାହିଁ; ମହୁରରେ ଆଳୁ ପଡିଲେ ସେ ଯେମିତି ହେଇ ବାଗିଦେବେ । ଖାଇବେ ନାହିଁ । ତାଙ୍କ ପାଇଁ ଅଲଗା କରୁନାହଁ କାହିଁକି ? – ଆମ ପାଇଁ ଶୁଖୁଆ ମୁଣ୍ଡ ପକେଇ ଘାଣ୍ଟ କରିଦିଅ । ତାଙ୍କ ପାଇଁ କ'ଣ ଟିକିଏ ଅଲଗା ଭାଜିଦିଅ... ।

ବର୍ଷା ପାଗରେ ଗରମ ପକୁଡି – ବାଃ !

"କିଓ, ତମ ପାଇଁ ଆଣୁନା ।"

"ଆମର ସେଇଠି ଅଛି, ତମେ ଖାଅ !"

ଝିଅ କହିଲା, "ଆମେ ଚୂଡ଼ଭଜା, କଖାରୁ ମଞ୍ଜି ଆଉ ବୁଟ ଡାଲିରେ ଖରଡି ପାଗ କରିଛୁ ।"

ଭୋଳାନାଥ ବାବୁଙ୍କ ମୁହଁରେ କାହିଁ କାହିଁ କାଳର ଫୁଲମାନେ ଫୁଟି ଆସୁଥିଲେ ।

ସ୍ତ୍ରୀ ଘର ମହତ ପଦାରେ ପଡିଗଲା ବେଳେ ତରବର ଘୋଡେଇ ପକାଇବା ଢଙ୍ଗରେ କହିଲେ, "ସେଗୁଡାକ ନନାଙ୍କର କ'ଣ ହବ ! ତୁ ଚାଲ୍, ମୁଁ ଆସୁଛି ।"

ଅତି ଯତ୍ନରେ ଟେବୁଲ ଉପରେ ସବୁ ସଜାଡି ଦେଇ, ଟେବୁଲ୍‌କୁ ଭୋଳାନାଥବାବୁଙ୍କ ସାମ୍ନାରେ ରଖି ଦେଇ ସେ ଚାଲିଗଲେ । ଭୋଳାନାଥବାବୁ ଚାହିଁ ରହିଲେ ବାମ୍ଫଉଥିବା ଘୁଗୁନିକୁ, ପକୁଡିକୁ, କାଚ ଗିଲାସରେ ଛଳଛଳ ପାଣିକୁ । ତାଙ୍କୁ ତିଳେ ଘୁଞ୍ଚିବାକୁ ବା ଶ୍ରମ କରିବାକୁ ପଡିବ ନାହିଁ – ହାତ ପାଖରେ ସବୁ । ମାଲିକ ପଣରେ ଭୋଳାନାଥବାବୁ ପୁରୁଣା ଅଭ୍ୟାସରେ ମଣୋହିରେ ବସିଲେ; ହୁଏତ ଆଉ ଭାଡିଏ ପକୁଡି ଯଥାସମୟରେ ଆସି ପହଞ୍ଚିଯିବ – ମାଗିବାର ସୁଯୋଗ ତାଙ୍କୁ ଦିଆଯିବ ନାହିଁ ।

ଆଚ୍ଛା, ସେ ଚୂଡ଼ଭଜାରୁ କଳେ ଚୋବେଇଥିଲେ କେମିତି ଲାଗିଥାନ୍ତା । ଅନେକ କାଳ ପୂର୍ବେ ସେ ଖାଇଥିଲେ, ସ୍ୱାଦ ମନେଅଛି । ଭାତୁ ଭାତୁ ଚୋବେଇଦେଲେ ଦାନ୍ତଶୂଳ ମରିଯାଏ । ଦାନ୍ତ ସାମର୍ଥ୍ୟକୁ ନିଜ ସାମର୍ଥ୍ୟ ମନେ କରି ଜଗତ ଜିଣିବାକୁ ମନ ହୋଇଯାଏ । କିନ୍ତୁ ସେମାନେ ବୋଧହୁଏ ଦେବେ ନାହିଁ । ମାଗିଲେ ଦିଅନ୍ତେ... ତେବେ... ।

ଗୋଟାଏ ଥାଳିରେ ଚିନାବାଦାମ୍ ରଖି ସମସ୍ତେ ବେଢ଼ି ବସନ୍ତେ । ଭୋଳାନାଥବାବୁ ସମସ୍ତଙ୍କ ଭିତରେ ଜଣେ ହୋଇ ଚିନାବାଦାମ୍ ଖାଆନ୍ତେ । ୟା' ସାଙ୍ଗେ ତା' ସାଙ୍ଗେ ଥଟ୍ଟା ହୁଅନ୍ତେ । ପରସ୍ପରକୁ ସ୍ୱୀକାର କରି ଆତ୍ମାଗୁଡିକ ପକ୍ଷୀଭଳି କଳରବ କରିଉଠନ୍ତେ । ଘରଟି ଜଣାଯାନ୍ତା ନୀଡ ପରି ।

ଏ ବର୍ଷା ତ ନୂଆ ନୁହେଁ । ୟା' ଭିତରେ ତିରିଶଟି ବର୍ଷା ପାରି ହୋଇଗଲାଣି । ଭୋଳାନାଥବାବୁ ଚିନାବାଦାମ୍ ନେଇ ବ୍ୟୂହ ଭେଦିବାକୁ ଚେଷ୍ଟା ନ କରିଛନ୍ତି ନୁହେଁ; ହେଲେ କ'ଣ ହବ ? ବାଛି ବାଛି ଡନିମଞ୍ଜିଆ ଚିନାବାଦାମଗୁଡିଏ ନିର୍ମଳ ପ୍ଲେଟ୍‌ରେ ସଜାଡି ତାଙ୍କୁ ଅଲଗା

ଦିଆହୋଇଛି । ମଣ୍ଡି ଛଡେଇ ଧରେଇ ଦିଆଯାଉଛି । ଭୋଳାନାଥବାବୁ ହସି ଦେଇ ତାଙ୍କ ଏକାକୀ ସିଂହାସନରେ ସେ ମଣ୍ଡି ଗଣ୍ଡିକ ଘେରେଇଛନ୍ତି । ପିଆଜି, ଆଳୁଚପ୍, ଛେନାପୋଡ, ସନ୍ଦେଶରେ ମଧ ସେଇ ସତନ୍ତ୍ର ଠାଆ, ପିଢାପାଣିରେ ସନ୍ତୁଷ୍ଟ ରହି ଆସିଛନ୍ତି ।

ତାଙ୍କ ସାଙ୍ଗେ ବସି ଖାଇବାବେଳେ ସେମାନେ କେବଳ ଖାଆନ୍ତି ସିନା, କିନ୍ତୁ ସେମାନଙ୍କ ମୁହଁରେ ସହଜେ ପଦ୍ମ ଫୁଟେ ନାହିଁ । ଆଖି ଝଲସେ ନାହିଁ । ମୁଠାଏ ଖୁଦଭଜାକୁ ନେଇ ତାଙ୍କ ଭିତରେ ସେମାନେ ଯେମିତି ବିଭୋର ହୋଇପାରନ୍ତି, ଅମୃତ ଚାଖିଲା ପରି ହସି ହସି ଲୋଟିଯାଆନ୍ତି, ସେଇଟା ତାଙ୍କ ସାଙ୍ଗେ ଥିଲାବେଳେ କେବେ ହୁଏ ନାହିଁ । ସେମାନଙ୍କର ସେ ସହଜ ଭାବ କେଉଁଆଡେ ଉଭେଇଯାଏ । ସମସ୍ତେ ସଜାଡି ହୋଇଯାନ୍ତି, କଥାରେ, ଆଚରଣରେ । ନନା ଆସିଗଲେ ତାଙ୍କୁ ଲାଗେ ସତେବା ଖଟୁଲିରୁ ଦିଅଁଙ୍କ ନିଷ୍ଚଳ ପ୍ରତିମା ହାଣ୍ଡିଶାଳକୁ ଚାଲି ଆସିଲେ । – ଆରେ, ଆରେ, ତମେ ସେଇ ଖଟୁଲିରେ ହିଁ ବସିରହ । ତମ ପାଖେ ଧୂପ, ଦୀପ, ନୈବେଦ୍ୟ ପହଞ୍ଚିଯିବ ଠିକ୍ ସମୟରେ । ତମେ ଏମିତି ଆମ ଗହଣରେ ଚଲାବୁଲା କଲେ ଆମେ ସ୍ବଚ୍ଛନ୍ଦରେ ଚଳି ପାରିବୁ କେମିତି ?

"ପକୁଡି ଗଣ୍ଡାକ ଧରି ବସିଚ । ଘୁଗୁନି କାକର ହୋଇଗଲାଣି, ତମକୁ ଭଲ ଲାଗୁ ନାହିଁ କି ? ଘୁଗୁନିରେ ପରା ନଡିଆ କୋରା ପଡିଛି, ପକୁଡିରେ ପିଆଜ ପଡିଛି ! ଖାଉନ କାହିଁକି ?"

"ପିଲାଙ୍କୁ ଦେଲଣି କି ?"

"ପିଲାଙ୍କୁ ଏ ଗୁଡାକ ଭଲ ଲାଗୁନାହିଁ । ସେମାନେ ବାଇଗଣ ଭରତା ସାଙ୍ଗକୁ ମୁଢ଼ି ଧରି ବସିଛନ୍ତି । ଆଣିଦେବି କି ସେଥିରୁ ଗଣ୍ଡେ ?"

"ନା"

"କ'ଣ ଦେହ ବ୍ୟସ୍ତ ଲାଗୁଚି ?"

ପତ୍ନୀଙ୍କ ମୁହଁକୁ ଚାହିଁ ଭୋଳାନାଥବାବୁ ହସିଦେଲେ – ତୁମ ଭଳି ପତ୍ନୀ ଜଗିବସିଲେ ତ ଯମ ବି ପଶି ପାରିବ ନାହିଁ ମୋ' ପାଖରେ – ରୋଗ କଥା ଉଠୁଚି କାହୁଁ ? ଖୁଆଇ ପିଆଇ ପାଳି ରଖିଚ ଏତେବର୍ଷ ଧରି, ନିଜେ ନଖାଇ, ପିଲାଙ୍କୁ ନ ଦେଇ ମତେ ହିଁ ଅତିଥିସତ୍କାର କରି ଆସିଚ । ଦେଖୁନାହଁ କେମିତି ମୁଁ ଯେଉଁ ଜ୍ୱାଇଁପୁଅକୁ ସେଇ ଜ୍ୱାଇଁପୁଅ ହୋଇ ରହିଚି ।

"ହଅଅ,ତମର ଯୋଉ କଥା ।"

"ସେ ପକୁଡିଗୁଡିକ ଏଥିରେ ମିଶାଅ । ଆଉ ଘୁଗୁନି ଯଦି ଅଛି ଆଣ । ସବୁ ନେଇଚାଲ ପିଲାଙ୍କ ସାଙ୍ଗେ ବସି ଖାଇବା ।"

ସେ ଗହଳି ଭିତରେ ତୁମେ କାହିଁକି ପଡିବ କହିଲ ? ତମେ ତମର ଏଇଠି ବସି ଖାଉନ । ସେମାନେ ତ ତାଙ୍କର ବସି ଖାଉଛନ୍ତି, ସେମାନଙ୍କୁ କାହିଁକି ଅକାରଣ ହଇରାଣ କରିବ ।

ପକୁଡିତକ ପ୍ଲେଟ୍‌ରେ ଅଜାଡି ଦେଇ ସେ ବୁଲିପଡିଲେ । କହିଲେ, ମୁଢ଼ି ଆଉ ଭରତା ମୁଁ ଅଲଗାରେ ବାଢି ନେଇ ଆସୁଛି ।

ଭୋଳାନାଥ ବାବୁ ତାଙ୍କ ସ୍ତ୍ରୀଙ୍କ ପଛକୁ ଚାହିଁ ରହିଲେ । ତିରିଶ ବର୍ଷ ତଳେ ସେ ତାଙ୍କ ଶ୍ୱଶୁରଘରେ ପ୍ରଥମଥର କୁଣିଆ ହୋଇଥିଲେ । ସେଦିନ ତାଙ୍କୁ ଲାଗଥିଲା ଯେ ସାରା ସଂସାର ତାଙ୍କ ସେବାରେ ଖଟି ରହିଛି । ସେ ସମ୍ରାଟ ଭଳି ମଝିରେ ବସିଛନ୍ତି ରତ୍ନସିଂହାସନରେ । ଭୁଞ୍ଜିବା ହିଁ ତାଙ୍କର ଏକ ମାତ୍ର କର୍ତ୍ତବ୍ୟ । ତାଙ୍କୁ ଭୁଞ୍ଜେଇବା ସେମାନଙ୍କ ଦାୟିତ୍ୱ, ସେମାନଙ୍କ ଧର୍ମ ।

ଲସରପସର ହୋଇ ମୁଢି ଭରତା ଧରି ତାଙ୍କ ସ୍ତ୍ରୀ ପଶିଆସିଲେ ।

"ଆରେ ଆଉରି ଖାଇନ ? ଖାଇଦଉନ କାହିଁକି । କେତେ ଶ୍ରଦ୍ଧାରେ ପିଲେ ରାନ୍ଧିଛନ୍ତି । ପକୁଡି ଛାଣିଛନ୍ତି ତମେ ଖାଇବ ବୋଲି ।"

ତାଙ୍କ ଆଖିକୁ ଚାହିଁ ଭୋଳାନାଥ ବାବୁ କହିଲେ, "ତମେ ଏଥିରୁ ଯଦି ମୋ' ସାଙ୍ଗରେ ବସି ଖାଇବ, ତେବେ ମୁଁ ମଧ ଖାଇବି । ମୁଁ ଆଉ ଏକୁଟିଆ ଖାଇ ପାରିବି ନାହିଁ ।"

"ମତେ ଏଗୁଡାକ ଭଲ ଲାଗେ ନାଇଁ – ତମେ ତ ଜାଣିଚ ।"

ଭୋଳାନାଥ ବାବୁ ନିଶ୍ଚୟ ଜାଣିଛନ୍ତି ଯେ ତାଙ୍କୁ ସବୁ ଖୁଆଇବାକୁ ତାଙ୍କ ସ୍ତ୍ରୀ ସେମିତି ମିଛ କହିଦିଅନ୍ତି ।

"ହେଇ ମୁଁ ନଉଚି" – କହି ଦୁଇଟି ଟିପରେ ଧରି ସେ ତାଙ୍କୁ ଚାହିଁଲେ ।

"ଖାଇନିଅ । ମୁଁ ଆଉ କପେ ଚା ପଠେଇ ଦେଉଚି ।"

ଭୋଳାନାଥ ବାବୁ ଅଳ୍ପ ହସି ବର୍ଷାକୁ ଚାହିଁ ରହିଲେ । ଚିନ୍ତାମଣିଆ କ'ଣ କେବେ ମିଶିଯାଇ ପାରିବ ଏମାନଙ୍କ ସାଙ୍ଗରେ । ସେ ଯଦି ଏଇନା ଆସି ପହଞ୍ଚଯାନ୍ତା, ସାଙ୍ଗ ହୋଇ ଅନ୍ତତଃ ଏ ପକୁଡିକୁ ଖାଆନ୍ତେ । ଏକାଠି ବସିଲେ ଦି'ଜଣ କୁଣିଆ ମଧ କୁଟୁମ୍ବୀ ପରି ଲାଗନ୍ତେ ପରସ୍ପରକୁ । ସେ ଚଣ୍ଡାଳ କ'ଣ ଆସିବ ଏମିତି ପାଗରେ ? ସେ ତା' କୁକୁରକୁ ନେଇ ମାତିଥିବ । କଳା ମଚ ମଚ ଘୋଡାଛୁଆପରି ଏଡେବଡ ଆଲ୍‌ସେସିଆନ୍ । ତାକ ନାଁ ସିଜର! ତାକୁ ସେ ସାଙ୍ଗରେ ରଖିଥାଏ । କଥାବାର୍ତ୍ତା କରେ । ଖେଳେ । ତା' ପିଲାଏ ତ' ଥା'ନ୍ତି ମା' ପାଖରେ । ପାଠ ପଢି ଫେରନ୍ତି ସେଇ ମାଆ ପାଖକୁ । ଏ ଶଳା ବେକୁବ୍ ବାପ ଏକୁଟିଆ ଥାଏ କୁକୁରକୁ ନେଇ ।

ଆଛା, ଟମ୍ ବି ତ ଭଲ କୁକୁରଟା । ଏମିତି ଗୁଡାଏ ଅଭିଜାତ ହୁଏ ତ ନୁହେଁ । ତଥାପି ବେଶ୍ ବଢିଆ । ତାକୁ ଚେନ୍‌ରେ ବାନ୍ଧି ରଖା ହୋଇଥାଏ । ତାକୁ ଟାଙ୍କ ହାଡ, ହଳଦିଆ ଭାତ, ସାତଦିନକୁ ଦୁଇଟି ଅଣ୍ଡା, ରୁଟି, କ୍ଷୀର ଲାଗୁଆଣି ହୋଇ ରହିଛି । ତାକୁ ପାଳି ପୋଷି ରଖିବାରେ, ତା' ସେବା କରିବାରେ ଏତେ ଟିକେ ତ୍ରୁଟି ରହେନାହିଁ । କିନ୍ତୁ ସେ ବାଟଘରୁ ଫିଟି ଆସିଲେ ପୁଣି ତାକୁ ଥାପୁଡା ଥାପୁଡି କରି ଚେନ୍‌ରେ ବାନ୍ଧି ଦିଆହୁଏ । ସେ ପର୍ଯ୍ୟନ୍ତ କେହି ଆସସ୍ତ ବୋଧ କରନ୍ତି ନାହିଁ ।

ଛପ୍ ଛପ୍ କ'ଣ ଗୁଡାଏ ଛାଇ ଭୋଳାନାଥ ବାବୁଙ୍କ ମୁହଁ ଉପର ଦେଇ ପାରି ହୋଇଗଲା । ଏଇ ଟମ୍‌ର ବାପ ଭାଲୁଆ ବି ତାଙ୍କ ଘରେ ଆଠବର୍ଷ କାଳ ଥିଲା । ସେ ମରିବା ଦିନ ତାଙ୍କ ସ୍ତ୍ରୀ ପିଲାମାନେ ଖୁବ୍ କାନ୍ଦିଥିଲେ । ଓପାସ ରହିଥିଲେ, ତାକୁ ମନେପକାଇ ବାହୁନୁଥିଲେ ।

ଭୋଳାନାଥ ବାବୁଙ୍କର ଭାରି ଇଚ୍ଛା ହେଲା ଚିନ୍ତାମଣି ଭଳି ଟମ୍‌କୁ ନେଇ ସେ ଏଇ ବର୍ଷାପାଗଟା କାଟି ଦିଅନ୍ତେ । ଟମର ଜିଭ ଖୁବ୍ ନରମ ଆଉ ଉଷୁମ । ସେ ତାଙ୍କ ପାଖରେ ବସି ପାଦ ଚାଟିଛି ବହୁବାର । ଏବେ କିନ୍ତୁ ତାକୁ ସେ କୋଳକୁ ଉଠେଇ ନିଅନ୍ତେ । ଟମ୍ ବିଶ୍ୱାସ କରି ପାରନ୍ତା ନାହିଁ । ତା'ପରେ କିନ୍ତୁ ମାତିଯାନ୍ତା । ତାକୁ ଭୋଳାନାଥବାବୁ ନିଜ ହାତରେ ପକୁଡି ଖୁଆଇ ଦିଅନ୍ତେ । ତାକୁ ବାରମ୍ବାର କୁଣ୍ଢାନ୍ତେ । ମୁହଁରେ ମୁହଁ ଘଷନ୍ତେ । ତା' ପାଖରେ ତାରି ଢଙ୍ଗରେ ପେଟେଇ ପଡନ୍ତେ ଏବଂ ପ୍ଲେଟ୍‌କୁ ସାଙ୍ଗ ହୋଇ ମୁହଁ ଲଗେଇ ପକୁଡି ଖାଆନ୍ତେ ଦି'ଜଣ ।

ଟମ୍ ଖୁସିରେ ତାଙ୍କ ଦେହସାରା ଚଢିଯାନ୍ତା । ଘଟି ପକାନ୍ତା । ଗୋଟାଏ କ'ଣ ଅମୂଲ୍ୟ ସମ୍ପଦ ପାଇଲା ପରି ସେ ବିହ୍ୱଳ ହୋଇ ଭୁକୁଥାନ୍ତା । କମ୍ପୁଥାନ୍ତା ତା' ଦେହ । ତାତି ଯାଇଥାନ୍ତା । ଠକ୍ ଠକ୍ ଥରୁଥାନ୍ତା... ।

ଭୋଳାନାଥ ବାବୁଙ୍କ ସ୍ତ୍ରୀ ଏବଂ ପିଲାମାନେ ଆସି ଚିତ୍ର ପ୍ରତିମା ପରି ଠିଆ ହୋଇଯାନ୍ତେ କାହାରି ତୁଣ୍ଡରୁ କଥା ବାହାରନ୍ତା ନାହିଁ । ଗୋଟାଏ ବାହୁକୁ ଟମ୍ ବେକରେ ବେଢେଇ ଖଣ୍ଡିଏ ପକୁଡି ସେ ଦାନ୍ତେଇଲାବେଳେ ହୁଏତ ଟମ୍ ଅନ୍ୟମାନଙ୍କୁ ଘଉଡେଇବା ପାଇଁ ଡାକନ୍ତା, ଭୋଃ ଭୋଃ । ଭୋଳାନାଥ ବାବୁ ମଧ୍ୟ ଖୁସିରେ, ଦୋସ୍ତିରେ ଆପଣାପଣରେ, ଅନନ୍ତ ସାଧୀନତା, ସନ୍ତୋଷ ଏବଂ ବେଖାତିରରେ କହନ୍ତେ, ଭୋଃ... ଭୋଃ । ଯେ ଯାହା ସେଥିରୁ ବୁଝୁ ନବୁଝୁ କ'ଣ ଯାଏ ଆସେ ତାଙ୍କର ? ଟମ୍ ଏମିତି ଅଲଗା ଘରେ ମାଉଁସ ହାତ ସତନ୍ତ୍ର ଥାଳିଆରେ ଖାଇ ଖାଇ ଦିନେ ମରିଗଲେ ତ ସେମାନେ ପୁଣି ବାହୁନି କାନ୍ଦିବେ । ହୁଏତ ଓଳିଏ ଉପାସ ରହିବେ । କିଛିଦିନ ପାଇଁ ଅତିଥି ହୋଇ ଚାଲିଯିବା କଥାତ । ଟମ୍ ହେଉ ବା ସେ ହୁଅନ୍ତୁ କ'ଣ ତଫାତ୍ କହୁନ ?

"କଣ ହେଇଚି ଆଜି ତମର, ଆଖି ଛଳଛଳ କରି ବସିଚ । କିଛି ଖାଉନାହଁ । କାହିଁକି ଏମିତି ବର୍ଷାକୁ ଚାହିଁ ଗୁଡାଏ ଏଣୁତେଣୁ ଭାବନା କରୁଛ କହିଲ । ପିଲେ କେରମ୍ ଖେଳୁଛନ୍ତି । ତମକୁ ଡାକୁଛନ୍ତି, ଆସ ଖେଳିବ । ମୁଁ ପକୁଡି ନେଇ ଆସୁଚି ସେଠିକି ।"

ଭୋଳାନାଥ ବାବୁ ଅନୁଭବ କଲେ ତାଙ୍କ ବେକରେ ଚିକ୍‌କଣ ଭେଲ୍‌ଭେଟ୍‌ର ଫିତା ଲାଗିଚି । ସେଥିରେ ଲୁହା ଶିକୁଳି ଗଳେଇ ଭୋଳାନାଥ ବଳିଆର ସିଂହଙ୍କ ସ୍ତ୍ରୀ ଶ୍ରୀମତୀ ବଳିଆର ସିଂହ ଟାଣୁଛନ୍ତି ଆସ୍ତେ ଆସ୍ତେ । ଚୁଁ ଚୁଁ କରି ସିଟି ମାରି ପିଠି ଥାପୁଡେଇ ଭିଡୁଛନ୍ତି ।

ଭୋଳାନାଥ ବାବୁ ଉଠିଲେ ସତ, କିନ୍ତୁ ଜାଣି ପାରିଲେ ନାହିଁ କେଉଁ ଆଡକୁ ଯିବେ । ବାହାର ଘର ପକୁଡି ଗନ୍ଧ ବାରି କୁଁ କୁଁ ଡାକୁଥିବା ଟମ୍ ପାଖକୁ ଅଥବା ଘର ଭିତରେ ଗାଲିଚା ଉପରେ ସଜା ହୋଇଥିବା କେରମ୍ ପାଖକୁ । ସେ ଜାଣିପାରୁ ନଥିଲେ ତାଙ୍କର ଦୁର୍ବହ ଅତିଥି ପଣକୁ କେମିତି ଓହ୍ଲେଇବେ କାନ୍ଧରୁ; କେଉଁଠି ଓହ୍ଲେଇବେ । ଅସ୍ୱାଭାବିକ ଭାବରେ ତାଙ୍କୁ ସେଦିନ ବର୍ଷା ପାଗରେ କାନ୍ଦ ମାଡୁଥିଲା । ତାଙ୍କ ଆଖି ଉପରକୁ ନଇଁ ଆସୁଥିଲା ମେଘ । ନିଶ୍ୱାସରେ ଝଙ୍କା ପବନ ସାଇଁ ସାଇଁ ଡାକୁଥିଲା । କିନ୍ତୁ ବହୁ ଦୂରରେ କେଉଁ ଦୂରନ୍ତ ବଙ୍ଗୋପସାଗରରେ ଲଘୁଚାପ ସୃଷ୍ଟି ହୋଇଥିଲା ତାଙ୍କ ସ୍ତ୍ରୀ ବା ସେ ନିଜେ ଠଉରେଇ ପାରୁ ନଥିଲେ । □

# କନା କଣ୍ଢେଇ

ଏଇ ଅଶିଣ ମାସରେ ହିଁ ଅମର ହୋଇଯିବାକୁ ଇଚ୍ଛା ହୁଏ । ଏତେ ନିର୍ମଳ ସକାଳ ଏବଂ ଏତିକି ସ୍ୱଚ୍ଛ ସନ୍ଧ୍ୟା ଛାଡିଯିବାକୁ ଇଛା ହୁଏନାହିଁ – ସେଥିପାଇଁ ମୁଁ ପରମାୟୁ କହିଲେ ଏଇ ଅଶିଣର ସୁନା କଣ୍ଢିଗୁଡିକୁ ଗଣତି କରେ ଏବଂ ବର୍ଷର ବାକି ମାସଗୁଡିକୁ କେବଳ ସହିଯାଏ, ଏହାରି ଖାତିର୍‌ରେ !

ମୋର ଦୁଃଖ ଯେ, ଏକିରି ଖାତିର୍‌ରେ ବି ମୋତେ ପ୍ରବାସରେ ଏକୁଟିଆ ରହିବାକୁ ପଡେ; ଏବେ ଯେମିତି ରହିଛି । ପ୍ରତି ସପ୍ତାହରେ ଚିଠି ଲେଖୁଛି ଘରକୁ । ଶେଷ ଚିଠିଗୁଡିକ କେବଳ ନୀଡକୁ ଫେରିଯିବା ପାଇଁ ଉଦ୍‌ବିଗ୍ନ ପକ୍ଷୀର ଡାକ । ଆଜିଠୁ ଆଉ ମାତ୍ର ଚାରିଦିନ; ଯାତ୍ରା ପାଇଁ ବହୁ ପ୍ରସ୍ତୁତି ହୋଇଗଲାଣି । ମନରେ କେବଳ ଛନ ଛନ ଜହ୍ନରାତି । କେମିତି ଏଇଠୁ ଚଞ୍ଚଳ ଉଡିଯିବା । କଥାବାର୍ତ୍ତାରେ ସେଥିପାଇଁ ଆଦୌ ଆଗ୍ରହ ନାହିଁ । କାମ କଲାବେଳେ ଅନ୍ୟମନସ୍କ ହୋଇଯାଉଛି । ଅଶିଣ ବୋଧହୁଏ ଯୌବନକୁ ଉତ୍ତେଜିତ କରି ରଖେ, ମରଣକୁ ବାଟ ରୋଧି ଆସିବାକୁ ଦିଏନାହିଁ ।

ଏଠୁ ବିଦାୟ ନେଇଗଲେ ମୋର ମନେପଡିଲା ଭଳି ବୋଧହୁଏ କେହି ନାହାଁନ୍ତି । କେବଳ ସେ ରସିକ ବୁଢା ରାମି ମଉସା । ବିଶେଷକରି ଗତ ପଅର ଦିନର ଘଟଣା ଜମା ଭୁଲିବାର ନୁହେଁ । ରାମି ମଉସା ତ ଏମିତି ଭାରି ଏକୁଟିଆ ମଣିଷଟିଏ । କଣ୍ଢେଇ ଗଢି ବିକ୍ରି କରେ । କନା, ମାଟି, କାଠର ଜାତି ଜାତି କଣ୍ଢେଇ । ସୁନ୍ଦର କାଠ କଣ୍ଢେଇଟିଏ ମତେ ଦେଇଛି । ପଇସା ନବାକୁ ମନା କରିଦେଇଛି । ଅଜବ ମଣିଷ ! କିରେ ମୋ' ଝିଅ ଖେଳିଲେ ତୋର ସେଥିରେ କ'ଣ ପେଟ ପୁରିଯିବ ! ଅନେକ ସନ୍ଧ୍ୟା ମୋ' ସାଙ୍ଗରେ ସେ ବିତେଇଛି । କହୁଥିଲା, ସେ କୁଆଡେ ବେହେଲା
ଅନେକ ସନ୍ଧ୍ୟା ମୋ' ସାଙ୍ଗରେ ସେ ବିତେଇଛି । କହୁଥିଲା, ସେ କୁଆଡେ ବେହେଲା ବଜେଇବା ଶିଖିଛି; ପଇସା ନାହିଁ ବୋଲି କିଣି ପାରିନାହିଁ । ଆଉ କେବେ କିଣିବ ? ଗିର୍ଜାରେ ସନ୍ଧ୍ୟା ଘଣ୍ଟା ବାଜିଲେ ? ରାମି ମଉସା ପାଇଁ ବେଳେ ବେଳେ ମୋର ମନ ଘାଣ୍ଟି ହୁଏ ।

ହଁ ରାମି ମଉସା ଖ୍ରୀଷ୍ଟିଆନ । ଶିଶୁ କାଠର ଖୁବ୍ ପାତଳ କ୍ରୁଶଟିଏ ନିଜେ ତିଆରି କରି ବେକରେ ଝୁଲେଇଥାଏ । ପ୍ରାୟ ସବୁବେଳେ ପାଇଜାମା ପଞ୍ଜାବି ପିନ୍ଧିଥାଏ । ବାବୁରି ବାଳ, ଓହଳ ନିଶ, ନରମ ନୂଆଣିଆ ଭୂଲତା । ଖୁବ୍ ଅଳ୍ପ ହସେ, ହସାଏ ତା'ଠୁ ବେଶି । ସିଗ୍ରେଟ୍ ଟାଣେ । ବେଳ ପଡିଲେ ଟିକିଏ ନିଶା ଖାଏ । ପାନ ଜମା ଚୋବାଏ ନାହିଁ କି ଶାଗ ଖାଏ ନାହିଁ । କହେ, ସେଥିରେ କୁଆଡେ ତାକୁ ଗୋରୁଭଳି ଲାଗେ । ସେଥିପାଇଁ ସେ ପାନ ପାକୁଳି କରେନାହିଁ, କି ଘାସ ଭଳି ଶାଗ ଗୁଡାଏ ଶିଝାଇ ଖାଏନାହିଁ ।

କିନ୍ତୁ ମାଇକିନାଙ୍କ ପାଖ ପଶେ ନାହିଁ । ତାଙ୍କୁ ଦେଖିଲେ କେମିତି ଘାବରେଇଯାଏ । କଣ୍ଢେଇ ଦରଦାମ ଗୋଳମାଳ କରିପକାଏ । ସବୁ କଣ୍ଢେଇ ତଳେ ଦାମ ଆଗରୁ ଲେଖି ରଖିବାକୁ ମୁଁ କହିଥିଲି । ସେଇଟା ତାକୁ ସୁବିଧା ହୁଏ । ସେ ସ୍ତ୍ରୀଲୋକମାନଙ୍କୁ କଣ୍ଢେଇର ଚକିପାଖ ଟେକି ଦେଖାଇଦିଏ । ମହିଳା ଗରାଖମାନେ ରାମି ମଉସାକୁ କିନ୍ତୁ ଭଲପାଆନ୍ତି ବୋଲି ମୋର ଧାରଣା । ତା' ସହିତ ସେମାନେ ହୁଏତ ଖୁବ୍ ଗପିବାକୁ ଚାହାଁନ୍ତି; କିନ୍ତୁ ରାମି ମଉସା ଧରା ଦିଏନାହିଁ । ଖାଲି ଲାଜାଏ । ପଦକରେ ଛିଣ୍ଡେଇଦିଏ । ତଳକୁ ମୁହଁ ପୋତି ବସିଯାଏ ।

ରାମି ମଉସା କିନ୍ତୁ ଟୋକା ମନକୁ ରଙ୍ଗେଇଲା ଭଳି ଅନେକ ମଜା ମଜା ରସରସିଆ କଥା କହିପାରେ, ହେଲେ ସୁଦ୍ଧା ମୋତେ ଅନେକ ଦିନ କୁକୁଡା ରାନ୍ଧି ଖୁଆଏ ଏବଂ ଗପେ । ମୁଁ କାହିଁକି ପରିବାର ଆଣୁନାହିଁ ବୋଲି ମିଠା ମିଠା ଗାଳି ଶୁଣାଏ – 'ଆରେ ବେକୁବ୍, ଏତେ ବର୍ଷାଦିନ ଚାଲିଗଲା, ତୁ କେମିତି ଦିନ ବିତେଇଲୁ, କେମିତି ରାତି ବିତେଇଲୁ ଏ ପ୍ରବାସରେ ? ଛୁଟି ମାଗି ପଳେଇଲୁ ନାହିଁ ? ଇଡିଅଟ୍ ଆଉ କାହାକୁ କହନ୍ତି ?' ସେ ମୋତେ ଏଇ ଅଶିଣ ମାସ ଭଳି ଉତ୍ତେଜିତ କରିଛି, ଚିଠି ଲେଖେଇଛି, ସ୍ୱପ୍ନ ଦେଖେଇ ଉତଳା କରିଛି । ମୁଁ ଅନେକ ବାର ଚିଡେଇଲା ପରି କହିଛି, 'ଦେଖ ରାମି ମଉସା, ଯେ ଯେତିକି ସେ ସେତିକିରେ ରହିବା ଉଚିତ । ତମେ ତ ଏଯାଏଁ ବାଉଁଥ ରହିଲ । ତମେ କ'ଣ ବୁଝିବ ସ୍ତ୍ରୀ-ପୁରୁଷଙ୍କର ସେ ଗହନ କଥା ? ତମେ ତ ମାଇକିନିଆଁ ଦେଖିଲେ ଛାନିଆଁ । ଆମେ କ'ଣ ଜାଣିନୁ ତମ ମର୍ଦପଣ!'

ରାମି ମଉସାକୁ ଏମିତି ଗାଳି ଭଲ ଲାଗେ ନା କଣ! ସେ ଅଳ୍ପ ହସିଦିଏ । ଅନେକେ ମୋ' ଆଗରୁ ହୁଏତ ପଚାରିଥିଲେ, ମୁଁ ବି ଥରେ ପଚାରିଥିଲି, 'ଆଚ୍ଛା, ତମେ କ'ଣ ଟୋକା ବୟସରେ ନିଆଁକୁ ଆଙ୍ଗୁଠି ଦେଖେଇନ ? ତମର ଗୁମର ଫିଟାଇ କହୁନ କଥାଟା !'

ସେ ଜମା ସେ ବିଷୟରେ ପାଟି ଫିଟାଇ ନଥିଲା, ମୋତେ ବି କିଛି କହି ନଥିଲା । କିନ୍ତୁ ଗତ ପଅରଦିନ କଥା ।

ସଞ୍ଜବେଳେ ପବନଟା ବହୁଥାଏ ହୁ-ହୁ । କେମିତି ଗୋଟାଏ ବାତୁଳିଆ ଉନ୍ମତ୍ତିଆ ପବନ । ମନ ହେଉଥାଏ ପିଲାଙ୍କ ପରି ଧାଇଁବାକୁ । ମୁଁ ଦେଖିଲି ରାମି ମଉସା ଦୁଆର ସାମ୍ନାରେ କଳା ମଚ ମଚ ଗାଡିଟିଏ ଆସି ଠିଆହେଲା । ମୋର କୌତୁହଳ ହେଲା ଦେଖିବାକୁ, ସେ କିଏ ଏମିତି ଗାଡିରେ କଣ୍ଢେଇ କିଣିବାକୁ ଆସିଛି । ମୁଁ ଚାଲ୍ ଚାଲ୍ ହେଇ ସେଇଠି ପହଞ୍ଚିଲା ବେଳକୁ ଯାହା ଦେଖିଲି,

ବିଶ୍ୱାସ କରିପାରିଲି ନାହିଁ । ଖୁବ୍ ଦାମୀ ମୁଲାଏମ୍ ରଙ୍ଗର ଶାଢୀ ପିନ୍ଧି ଜଣେ ଭଦ୍ର ମହିଳା – ବୟସ ଅନ୍ଦାଜ ଚାଳିଶ – ଅନେକ ବେଶି ବି ହୋଇପାରେ – ଗାଡିରୁ ଓହ୍ଲେଇ ଠିଆ ହୋଇଥା'ନ୍ତି । ଏବେ ବି ତାଙ୍କୁ ସୁନ୍ଦରୀ ନ କହି ଉପାୟ ନାହିଁ । ଖୁବ୍ ଅସାମାନ୍ୟ । ତାଙ୍କ ପାଖରେ ସାଏବ୍ ଛୁଆପରି ଦୁଇଟି ପିଲା । ସେମାନଙ୍କ ପାଇଁ କଣ୍ଢେଇ କିଣିବାକୁ ବୋଧହୁଏ ସେ ଆସିଥାଆନ୍ତି । ହୋଇପାରେ ସେମାନେ ତାଙ୍କ ନାତିନାତୁଣୀ । ତାଙ୍କ ପୁଅଝିଅ କହିଲେ ବି କେହି ଜଣେ ବିଶ୍ୱାସ କରିଯିବ ।

ଗୋଟିଏ ମୁହୂର୍ତ୍ତ ପାଇଁ ଆମେ ସମସ୍ତେ କଣ୍ଢେଇ ହେଇଗଲୁ । ରାମି ମଉସା ଏବଂ ସେ ଭଦ୍ର ମହିଳା ସାମ୍ନାସାମ୍ନି ଠିଆହୋଇ ସତେ ବା ପଥର ପାଲଟିଗଲେ । କାହାରି ଆଖିରେ ପତା ପଡୁନଥାଏ – ଏମିତି ବଲବଲ ଚାହିଁଥା'ନ୍ତି । ମୁଁ ତାଜୁବ ହୋଇ ରାମି ମଉସାକୁ ଚାହିଁ ରହିଥାଏ । କେବେ ଏ ଲାଜକୁରା ବୁଢାର ସାହସ ହେଲା ଏତେ ସମୟ ଧରି ଜଣେ ସ୍ତ୍ରୀଲୋକ ମୁହଁକୁ ଚାହିଁ ରହିବାକୁ ? ମୋତେ ଲାଗିଲା, ସେମାନେ ବୋଧହୁଏ ଆଉ ପତା ପକେଇବେ ନାହିଁ । ମୁଁ ନିଜେ ମଟ ମଟ ଅନେଇ ରହିଥାଏ । ନିଶ୍ୱାସ ରୋଧି ରଖିଥାଏ, ପୁଷମାସିଆ ଝଡାପତ୍ର ଉଡେଇଲା ପରି ସେ ଅଲକ୍ଷଣିଆ ପବନ ଯଦି ହାଉକିନା ମାଡିଆସି ନଥାନ୍ତା ଆମେ ସେମିତି କେତେକାଳ ଠିଆ ରହିଥାନ୍ତୁ, କହିବା କଠିନ ।

ପିଲାଏ ଖୁସ୍ ଖୁସ୍ ହେଲେ ।

ଡ୍ରାଇଭର ଆସ୍ତେ ଆଡ ହୋଇଗଲା ।

ବିନା କାରଣରେ ମୁଁ ତଳକୁ ମୁହଁକରି ହସିଦେଲି

ସେ ଭଦ୍ର ମହିଳା ପ୍ରଥମେ ଖୁବ୍ ଇତସ୍ତତଃ କରି ମନକୁ ମନ ପ୍ରଶ୍ନ କଲାପରି କହିଲେ, 'ମୁଁ କୋଉଠି ତମକୁ ଦେଖିଛି ନା କ'ଣ!'

ରାମି ମଉସା ଚମକିଲା ପରି ମୁଣ୍ଡ ଝାଡିଲା । ଆଖିମଟକା ପକେଇ ଚାହିଁଲା । ଛେପ ଢୋକିଲା । ଖୁବ୍ ଘାବରେଇଲା ପରି ସାମାନ୍ୟ ହସ – ହସିଲେ ରାମି ମଉସା ଏତେ ବଢିଆ ଗଳ୍ପ ନାୟକଟିଏ ପରି ଦେଖାଯାଏ ବୋଲି ମୋର ଧାରଣା ନଥିଲା – କହିଲା 'ନା ତ!'

ତା'ପରେ ସେ ଆଚମ୍ବିତ ସ୍ତବ୍ଧ ମୁହୂର୍ତ୍ତଟି ଚନ୍ଦ୍ରବିମ୍ବ ପରି ଟହଲିଗଲା ।

ରାମି ମଉସା ତା' ଦୋକାନର ଏକମାତ୍ର କାଠ ଚଉକିଟିକୁ ବାରମ୍ବାର ପୋଛି ସେଇଠି ବସିବାକୁ ନୀରବ ନିମନ୍ତ୍ରଣ କରୁଥାଏ ସେ ମହାର୍ଘ ଗରାଖଟିକୁ ।

ସେ କିନ୍ତୁ ରାମି ମଉସାକୁ ଚାହିଁଥା'ନ୍ତି ।

ମୋତେ କେହିହେଲେ ନଜର ଦେଉନଥା'ନ୍ତି ।

ପିଲାଙ୍କ ବରାଦ ଉପରେ ରାମି ମଉସା ତା'ର ସବୁଯାକ କଣ୍ଢେଇ ଆଣି ରଖିଦେଉଥାଏ ।

ମୋତେ ଲାଗୁଥାଏ, ସେ ସପ୍ନରେ ଚାଲବୁଲ କଲାପରି । ସେ ଜମା ଆଖି ଟେକି ଚୌକିଆଡେ ଚାହୁଁ ନଥାଏ କି କୌଣସି କଥାର ଉତ୍ତର ଦେଉନଥାଏ । କେବଳ ଅଳ୍ପ ହସିଦେଇ ପିଲାଙ୍କ ସାମ୍ନାରେ କଣ୍ଢେଇ ପରେ କଣ୍ଢେଇ ଗଦେଇ ଦେଉଥାଏ ।

ଭଦ୍ର ମହିଳା ଜମା ତା' ଉପରୁ ଆଖି ଘୁଞ୍ଚଉ ନଥା'ନ୍ତି । ଏକ ଲୟରେ ଚାହିଁ ରହିଥା'ନ୍ତି ରାମି ମଉସାର ବସିବା, ଉଠିବା ଚାଲିବାକୁ । ମୋତେ ସେମିତି ଠିଆହୋଇ ରହିବାକୁ ଅସୁସ୍ଥ ଲାଗିଲା । ମୁଁ ଖେଳନା ପାଖରେ ବସିପଡି କହିଲି, 'ମଉସା, ମୁଁ ପିଲାଙ୍କୁ କଣ୍ଢେଇ ଦେଉଛି । ତମେ ତାଙ୍କ କଥା ବୁଝ ।'

ରାମି ମଉସା ଖୁବ୍ ଧୀରେ ଚୁପ୍‌ଚାପ୍ ଯାଇ ତାଙ୍କ ସାମ୍ନାରେ ଠିଆହେଲା ।

ଭଦ୍ର ମହିଳା ପୁଣି ପଚାରିଲେ, 'ତୁମେ ଠିକ୍ କହୁଛ, ମୁଁ ତୁମକୁ ଆଗରୁ ଦେଖିନାହିଁ ?'

ରାମି ମଉସା ନୀରବ ମୁଣ୍ଡ ଝାଡିଲା – ଆଖିରେ ଖୁବ୍ ମୁଲାଏମ ଚାହାଣି । ଓଠରେ ସୂକ୍ଷ୍ମ ରେଖାଏ ହସ । ସାନଝିଅଟି ମୋ' ହାତ ଟାଣି କହିଲା, 'ହେ, ଏ କନାର କଣ୍ଢେଇ କାହିଁ ଠିଆ ହେଉନାହିଁ ?' ମୁଁ ଚମକିଲା ପରି, କଣ୍ଢେଇଟାକୁ ଧରି କହିଲି, 'ଏ ପରା କନା କଣ୍ଢେଇ, ଏ ଠିଆ ହୋଇପାରିବ ନାହିଁ, ଯା'ର ବଳ ନାହିଁ । ଯା' ଭିତରେ ହାଡ ନାହିଁ ପରା... ।'

ଝିଅଟି ଖିଲି ଖିଲି ହସିପକେଇଲା । ତା' ଭାଇ ବି ହସିଲା କିରିକିରି । ଭଦ୍ର ମହିଳାଙ୍କର ଏ ଆଡକୁ ଜମା ଧ୍ୟାନ ନଥିଲା ।

ସେ ସେମିତି ଭୃରୁ କୁଞ୍ଚେଇ ଚାହିଁ ରହିଥା'ନ୍ତି ରାମି ମଉସାକୁ । 'ଆଶ୍ଚର୍ଯ୍ୟ, ତୁମେ କେବେହେଲେ ରାଉରକେଲାରେ ନଥିଲ, ଧର ଆଜିକୁ ପଚିଶ ବର୍ଷ ତଳେ ?...'

ରାମି ମଉସାର ଢଙ୍ଗରେ କିମ୍ବା ଉତ୍ତରରେ କୌଣସି ପରିବର୍ତ୍ତନ ନାହିଁ ।

'ମନେପକାଅ । ମୁଁ ମିସେସ୍ ଜାକବ୍ । ତୁମେ ସୁଧୀର ଗାଙ୍ଗୁଲି, ନୁହଁ ? ତୁମ ଘର ଉତ୍ତର ବାଲେଶ୍ୱର, ନୁହେଁ ? ତୁମେ ବେହେଲା ବଜାଅ ? ତୁମେ ଚିତ୍ର ଆଙ୍କ ନା ?'

ସେ ଉତ୍ତେଜନାରେ ଠିଆହୋଇ ପଡିଲେ ।

ରାମି ମଉସା ତଥାପି ସେମିତି ଚାହିଁ ରହି ଅଳ୍ପ ହସୁଥାଏ । କହିଲା, 'ନା' ତ !'

ମୁଁ ତଳେ ବିଧାଟାଏ ମାରି ପାଟିକରି ଦେଇଥା'ନ୍ତି – 'ରାମି ମଉସା ନିଶ୍ଚୟ ରାଉରକେଲାରେ ଥିଲା । ସେ ମୋତେ କହିଛି ଥିଲା ବୋଲି । ସେ ନିଶ୍ଚୟ ବେହେଲା ବଜେଇ ଜାଣେ । ସବୁ କଥାକୁ କେମିତି ନାହିଁ କରୁଛି ? ସେ ମିଛ କହୁଛି ।'

ପିଲାଏ ଆଠଟା କି ଦଶଟା କଣ୍ଢେଇ ନେଇ ଗାଡିରେ ଥୋଇ ସାରିଥିଲେ ।

ସେ ଭଦ୍ର ମହିଳା ଶହେଟଙ୍କିଆ ନୋଟ୍‌ଟିଏ ବଢେଇ ଦେଇଥିଲେ – ରାମି ମଉସାକୁ ନୁହେଁ, ମୋତେ । ସେ ମୁହଁ ଫେରାଇବା ପୂର୍ବରୁ କହୁଥା'ନ୍ତି ମନକୁ ମନ, 'ଆଶ୍ଚର୍ଯ୍ୟ, ଏ ସୁଧୀର ଗାଙ୍ଗୁଲି ନୁହେଁ । ସେ ନିଶ୍ଚୟ ମିଛ କହୁଛି । ଆଶ୍ଚର୍ଯ୍ୟ, ସେ ମିଛ କହୁଛି ।' ସେ ଗାଡିରେ ବସି ଚାଲିଗଲେ । ରାମି ମଉସା ଠିଆହୋଇ ରହିଲା କଣ୍ଢେଇଟିଏ ଭଳି । ମୁଁ ତା' ମୁହଁ ସାମ୍ନାରେ ଶହେଟଙ୍କିଆ ନୋଟ୍‌ଟିକୁ ହଲେଇଲି । ନାକ ଆଗରେ ଦୁଇଥର ସାଉଁଳେଇ ଆଣିଲି ।

ନିଶ୍ଚଳ ସଚ୍ଛ କାଚପରି ତା' ଆଖିକୁ ଦୃଷ୍ଟି ଫେରିଆସିଲା । ସେ ମଟମଟ ଚାହିଁଲା – ମୋତେ, ଦୋକାନକୁ, ଚାରିଆଡକୁ ।

ବଡ ବିଚିତ୍ର ଢଙ୍ଗରେ ହସିଲା ଏବଂ ସେଇ ହସଟିକୁ ସାଥୀକରି ନଥିକିନା ବସିପଡିଲା ଦୋକାନର ଏକମାତ୍ର କାଠ ଚୌକିଟି ଉପରେ ।

ମୁଁ ଅନୁଭବ କରୁଥାଏ ଯେ, ମୁଁ ଯାହା ଦେଖିଲି ବା ଶୁଣିଲି, ସେଇଟାର କୌଣସି ଅର୍ଥ ନାହିଁ । ସେ ସବୁ ପଛରେ କ'ଣ ସବୁ ପ୍ରସ୍ତ ପ୍ରସ୍ତ ରହସ୍ୟ, କୁହୁଡିରେ ପାହାଡ ପରି ଲୁଚି ରହିଛନ୍ତି ।

ମୋର କୌତୁହଳ ଗବ୍ ଗବ୍ ହେଉଥାଏ ଭିତରେ ।

'ଏ ଟଙ୍କା ରଖ, ଆଉ ମୋତେ କହ ଏସବୁ ଘଟଣା କ'ଣ ?' – ମୁଁ ସେ ନୋଟ୍‌ଟିକୁ ଦୁଇପୁର କରି ତା' ପକେଟ୍‌ରେ ଗୁଞ୍ଜିଦେଲି ।

ରାମି ମଉସା କିଛି କହୁ ନଥାଏ । ମୁହଁରେ ଆଖିରେ କିନ୍ତୁ ଜଣାଯାଉଥାଏ ସେ ଖୁବ୍ ବିଭୋର । ସେ ନୀରବରେ ସାଉଁ ସାଉଁ ହସିଲା । ହସୁ ହସୁ କାନ୍ଦି ପକାଇଲା । ମୁଁ ଜାଣିପାରୁନଥିଲି ସେ ହସୁଥିଲା କି କାନ୍ଦୁଥିଲା । ମୋତେ କିନ୍ତୁ ବେଶ୍ କିଛି ସମୟ ଅପେକ୍ଷା କରିବାକୁ ପଡିଲା ।

ମୁଁ ତାକୁ ବାଧା ଦେଲିନାହିଁ । ତଳେ ଘାଣ୍ଟିହେଇ ପଡିଥିବା କଣ୍ଢେଇଗୁଡିକୁ କାନ୍ଥ ଆଲମାରିରେ ସଜାଡି ଦେଲି ।

ରାମି ମଉସା ନିଜକୁ ନିଜେ ସମ୍ଭାଳି ନେଉଥିଲା । ତା' ପଞ୍ଜାବି ଟେକି ମୁହଁ ଘୋଡେଇ ସେ ଲୁହ ପୋଛୁଥିଲା । ଉହୁ ଉହୁ ହେଇ ତା' ଭିତରୁ ହାବୁକା ହାବୁକା ଉଠୁଥିଲା ହସ କି କାନ୍ଦ, ମୁଁ କହିପାରିବି ନାହିଁ ।

ତା' ପିଠିରେ ଆସ୍ତେ ହାତ ରଖି ଠିଆହେଲି । ମୋତେ କେଜାଣି କାହିଁକି ରାମି ମଉସା ଭାରି କରୁଣ ଦେଖାଯାଉଥିଲା ।

ସେ ଉଠି ଠିଆହେଲା । ନାକ ସଁ-ସଁ କଲା । ମୁହଁ ପୋଛି ମୋତେ ଚାହିଁଲା । ମେଘ ଆଡେଇ ପଞ୍ଚମୀ ଜହ୍ନପରି ତା'ର ସେ ଛୋଟ ନୀରବ ହସ ଦେଖି ମୁଁ ଖୁସି ହୋଇଗଲି । ତା' କାନ୍ଧ ଝୁଙ୍କିଦେଇ କହିଲି, 'ବଡ ବିଚିତ୍ର ମାଇକିନା । ତୁମକୁ କାହିଁକି ସେ ସୁଧୀର ଗାଙ୍ଗୁଲି ବୋଲି ଭାବିଲା !'

ପୁଣି ସେଇ ଲହରିଆ ହସ ଆଉ ଆଖିରୁ ଟପ୍ ଟପ୍ ଲୁହରେ ରାମି ମଉସାର ମୁହଁ ବତୁରିଗଲା । ସେ ବଡ କଷ୍ଟରେ କହିଲା, 'କେଜାଣି...'

'ଆଚ୍ଛା, ଏ ସୁଧୀର ଗାଙ୍ଗୁଲି ଶଳାଟି କିଏ ?'

'ମୋତେ ଲାଗୁଛି ସେ ମାଇକିନିଆଁର ସ୍ୱାମୀ ସାମାନ୍ୟ ଢିଲା ।'

ପୁଣି ସେମିତି ହସ ଏବଂ ମୋ' କାନ୍ଧରେ ଥପ୍‌କିନା ହାତ ରଖି ସେ କହିଲା 'କେଜାଣି !'

ରାମି ମଉସା ହଠାତ୍ ସ୍ଥିର ହେଇଗଲା । ମତେ ଚାହିଁ କହିଲା, 'ଉଁ ହୁଁ !'

ସେ ଚଟାପଟ୍ ଜିନିଷ ଆଡେଇ ରଖିଦେଲା । ମୋତେ ଆସ୍ତେ ବାହାରକୁ ଠେଲିଦେଇ କବାଟରେ ତାଲା ପକେଇଦେଲା । କହିଲା, 'ଚାଲ୍ କଫି ପିଇବା ।'

ରାସ୍ତାରେ ଚାଲିଗଲା ବେଳେ ମୁଁ ସମ୍ଭାଳି ନପାରି ପଚାରିଲି, 'ଏ ମିସେସ୍ ଜାକବ୍ କିଏ ? ତୁମେ ତାଙ୍କୁ ଚିହ୍ନିଛ ?'

ସେ ମୋ' ପିଠିରେ ପୋଲା ଚାପୁଡ଼ା ମାରି କହିଲା, 'ଆଜି ବାର କ'ଣ ?'

ମୋର ଉତ୍ତର ବଦଳରେ ଏ ପ୍ରଶ୍ନଟି ମୋତେ ଅସୁଖ ଲାଗିଲା... କହିଲି, 'ଶୁକ୍ରବାର, କାହିଁକି ?'

'ଠିକ୍ ଅଛି । କଫି ପିଇ ତୁ ବସାକୁ ଫେରିଯା । ତୁ ଆଉ କୁଆଡେ ଯିବୁନାହିଁ । ମୁଁ ଠିକ୍ ଦୁଇଘଣ୍ଟା ପରେ ତୋ' ପାଖକୁ ଆସିବି ।'

ମୁଁ ରାସ୍ତାରେ ଠିଆହୋଇ ତା' ମୁହଁକୁ ଚାହିଁଲି । ଅଳ୍ପ ହସିଲି, 'ତମେ ମହାରସିକ ବୁଢା... ଆଜି କ'ଣ ମାଲପାଣି କିଛି ପକେଇବ ? ମୁଣାରେ ଶହେଟଙ୍କିଆଟାଏ ପଡିଚି ଟ !'

ସେ ମୋତେ ପୁଣି ଚଲେଇ ନେଇ କହିଲା, 'ଆରେ, ତୁ ଟୋକା ସବୁବେଳେ ମତେ ସନ୍ଦେହ କରୁଛୁ । ମୁଁ ଗୋଟେ ଦୋସ୍ତ ପାଖକୁ ଯିବି !'

'ମିଛ କଥା !'

'ଆରେ, ମୁଁ କେବେ ମିଛ କହେ ?'... ରାମି ମଉସାର ଆଖି କୋଣରେ କୁଞ୍ଚ କୁଞ୍ଚ ଦୁଷ୍ଟାମି । ରାମି ମଉସା ପ୍ରଚୁର ମିଛ କହେ । କାହାର କିଛି ନକଲା ଭଳି ଖୁବ୍ ନିରୀହ କନା କଣ୍ଢେଇ ଭଳି ମିଛଗୁଡିକ ।...

ମୁଁ ପଚାରିଲି, 'କୋଉ ଦୋସ୍ତ ଏମିତି ମନେପଡିଲା ହଠାତ୍ !'

'କାଇଁ, ସୁଧୀର ଗାଙ୍ଗୁଲି !' ଏତକ କହିଦେଇ ସେ ପୁଣି ଲହରେଇ ଲହରେଇ ହସିଲା । ଆମେ କଫି ଦୋକାନରେ ପହଞ୍ଚି ସାରିଥିଲୁ... ।

ଅଳ୍ପ ସମୟ ଭିତରେ ଖୁବ୍ ଭଦ୍ର ଭାବରେ କଫି ପିଇସାରି ସେ ପଇସା ଦେବାକୁ ଯିବାରୁ ମୁଁ ତା' ହାତକୁ ରୋକିଦେଇ କହିଲି, 'ମୋ ପାଖରେ ଛୋଟିଆ ନୋଟ୍ ଅଛି ।'

ସେ ମୋ' ଆଖିକୁ ଚାହିଁ ମୁଚ୍‌କିନା ହସିଦେଲା ।...

ତା'ପରେ ସେ ଏକମୁହାଁ କୁଆଡେ ଗଲା, ମୁଁ ଜାଣେ ।

X X X X

ମୁଁ ବସାକୁ ଫେରିଆସିଲି । ମୋ' ଚାରିଆଡେ ଯାତ୍ରା ଦେଖାଳି ଉଦ୍‌ଗ୍ରୀବ ପିଲାଙ୍କ ପରି ବନ୍ଧାଛନ୍ଦା ହୋଇସାରିଥିବା ସାମାନପତ୍ର ଟିପ ଆଗରେ ଠିଆ ହୋଇଥାଆନ୍ତି କେତେବେଳେ ବାହାରିଯିବେ ଏ ଚାରି କାନ୍ଥ ସୀମା ଭିତରୁ ।

ମୁଁ ଆରାମ ଚୌକିଟିକୁ ବାହାର କରିନେଇ ବସିଗଲି । ଚାହିଁ ରହିଲି ରାସ୍ତାର ଆଲୁଅକୁ । ଅନ୍ଧାରକୁ ଯିବା ଆସିବା କରୁଥିବା ମଣିଷଙ୍କୁ । ଘର ମନେପଡିଲା । ମୁହଁମାନ ପାଖେଇ ଆସିଲେ । ଅତି ପ୍ରିୟଜନଙ୍କର ମୁହଁ ଆଖି ମିଟିକା ମାରିଦେଲେ ଲିଭିଯାଉଥିଲେ । ପୁଣି ସାମ୍ନା ଦିଶିଯାଉଥିଲା । ତା' ଭିତରେ ରାମି ମଉସାର ସେ ବିଚିତ୍ର ଗରାଖ ମନେପଡିଲା... କି ବିଶ୍ୱାସରେ ସେ ରାମି ମଉସାକୁ ସୁଧୀର ଗାଙ୍ଗୁଲି ବୋଲି ଭାବୁଥିଲା ।

ପଚିଶ ବର୍ଷ ତଳେ ସେ ନିଶ୍ଚୟ ଆହୁରି ଝଲମଲ ଦିଶୁଥିଲା, ରାମି ମଉସା ବି ମୋ'ଠୁ

ପାଞ୍ଚ-ସାତ ବର୍ଷ କମ୍ ବୟସର ଭେଣ୍ଡିଆଟିଏ ହୋଇଥିବ। ସେ କ'ଣ ସେତିକିବେଳେ ରାଉରକେଲାରେ ଥିଲା ? ସେ କିନ୍ତୁ ନିଶ୍ଚୟ ସୁଧୀର ଗାଙ୍ଗୁଲି ପରି ଦିଶୁଥିବ, ନହେଲେ ସେ ଭଦ୍ର ମହିଳା ଏମିତି ଅଭିଜାତ ଘରର ମାଇକିନା... କାହିଁକି ଦୋକାନଟା ଭିତରେ ଏଭଳି ଉତ୍ତେଜିତ ହୋଇ ବ୍ୟବହାର କରିଥାନ୍ତା। ...ଆଚ୍ଛା, ସୁଧୀର ଗାଙ୍ଗୁଲିକୁ ସେ କେମିତି ଜାଣିଲା... ତାକୁ ବୋଧେ ସେ ଖୋଜି ଚାଲିଥିଲା ଗତ ପଚିଶ ବର୍ଷ... କିନ୍ତୁ କାହିଁକି ? ସେ ତା'ର କ'ଣ କି ?...

ମୁଁ ଅନ୍ଧାରରେ ଅଳ୍ପ ହସିଲି। ରାମି ମଉସାକୁ ମିସେସ୍ ଜାକବ ପ୍ରେମ କରୁଥିବା କଥା ଭାବି ଆହୁରି ହସିଲି...

ମୁଁ ଖୁବ୍ ସହଳ ଖାଇପକାଏ। ଖାଁ ହୋଟେଲ୍‌ରେ ପଇସା ଟିକିଏ ବେଶି, କିନ୍ତୁ ମାଂସଟା ଭାରି ବଢିଆ। ମୁଁ ରାତିରେ ରୋଟି ମାଂସ ଖାଇବାକୁ ପସନ୍ଦ କରେ।

X X X X

ସେତେବେଳକୁ ବୋଧେ ରାତି ଦଶଟା।

କବାଟ ଉପରେ ଟକିଆ ମାରିଲା ପରି କଅଁଳ ପାପୁଲିର ଥପ୍ ଥପ୍ ଶବ୍ଦ ଶୁଣି ବୁଝିଲି ଯେ ରାମି ମଉସା ଡାକୁଛି।

ମୁଁ ପ୍ରାୟ ଜାଣିଥିଲି, ସେ ସେଇ ଅବସ୍ଥାରେ ଆସିବ! ପାଦ ସାମାନ୍ୟ ଟଳମଳ। ଟିକିଏ ବେପରୁଆ ଢଙ୍ଗ। ବାବୁରି ବାଳ ସାମାନ୍ୟ ଅଲରା କିନ୍ତୁ, କଥାରେ ଖୁବ୍ ଭଦ୍ର ଆଉ ସଂଯତ। ଆଦୌ ଜଣାପଡିବ ନାହିଁ ସେ ନିଶା ଖାଇ ଫେରିଛି ବୋଲି। ମୁଁ ରାମି ମଉସାକୁ ସେ ଅବସ୍ଥାରେ ଅନେକ ଥର ଦେଖିଛି। ସେତେବେଳେ ସେ ଖୁବ୍ ଗୋଟାଏ ଆପଣାପଣ ଦେଖାଏ। ପ୍ରାୟ ଗୋଟିଏ ବାକ୍ୟରୁ କଥା ଆରମ୍ଭ କରେ –

'ତୁ... ଭାରି ଭଲ ପିଲା... ଜମା ଏ ହାରାମି ଜିନିଷ ତୁଣ୍ଡରେ ଦେବୁନାହିଁ!' ଆରାମ ଚୌକିରେ ବସୁ ବସୁ ସେଇ ଉପଦେଶ ବାକ୍ୟଟି କହି ସେ ଉଶ୍ୱାସରେ ହାତଗୋଡ ମେଲେଇଦେଲା। ମୁଁ ଚୌକିରେ ବସି ଆମୋଦ କରିବା ଉଦ୍ଦେଶ୍ୟରେ କହିଲି, 'ଆଉ କ'ଣ... ଦୋସ୍ତ ସୁଧୀର ଗାଙ୍ଗୁଲି ସଙ୍ଗେ ବେଶ୍ ଜମିଲା ତ ?'

ସେ ଅଲାଜୁକ ପରି ଦାନ୍ତ କାଢି ହସିଲା। ମିଛ କହିବା ତା'ର ଗୋଟେ ସଉକ। ସେଥିପାଇଁ ତା'ର ଅବଶୋଷ ନଥାଏ, ବରଂ ସେ କହେ ଯେ ପ୍ରିୟଜନ ପାଖରେ ପ୍ରଚୁର ମିଛ କହି ନଜାଣିଲେ ପ୍ରେମ କରିପାରିବ ନାହିଁ।

କହିଲା, 'ଆରେ ସେଇ କଥା ତ ମୁଁ ତୋତେ କହିବାକୁ ଆସିଛି।'

'କ'ଣ ସୁଧୀର ଗାଙ୍ଗୁଲି କଥା ?' – ମୁଁ ଅବିଶ୍ୱାସରେ ପଚାରିଲି।

'ସୁଧୀର ଗାଙ୍ଗୁଲି !... ହି... ହି... ହି।'

'ସେମିତି ଗୋଟାଏ ଲୋକ ସତକୁ ସତ ଅଛି ନା' କ'ଣ ? ତମେ ତାହାହେଲେ ତାକୁ ଜାଣ ?'

'ମୁଁ ଜାଣିନାହିଁ ସେ ଶଳା ବେକୁବ୍‌କୁ, ତ ଆଉ କିଏ ଜାଣିଛି ?'

'ଆଚ୍ଛା, ତା'ହେଲେ ମିସେସ୍ ଜାକବ୍ ଯେଉଁ ସୁଧୀର ଗାଙ୍ଗୁଲି ବୋଲି ତୁମକୁ ଭାବିନେଲେ, ତୁମେ ତାକୁ ଜାଣିଛ ?'

'ଜରୁର ଜାଣିଛି । ମୁଁ ତା'ର ସବୁ ଗୁମର ଜାଣେ । ତାକୁ ମିସେସ୍ ଜାକବ୍ ଏମିତି କାହିଁକି ଭୂତ ଭେଟଣା ହେଲାଭଳି ସବୁଠି ଦେଖୁଛନ୍ତି, ସେ କଥା ବି ଜାଣେ ।'

ମୁଁ କିଛି ନ କହି ଅପେକ୍ଷା କଲି । ରାମି ମଉସା ନିଜେ କଥା ଉଖାରିଲେ ଏଣିକି ଗପିଯିବ, ମୁଁ ଏଇଠି ଥାଏ ବା ନଥାଏ । ଦିନେ ଏମିତି ଗପି ଗପି ବୁଢ଼ା ସେ ଚଉକିରେ ଶୋଇଯାଇଥିଲା । ଅନେକ ଆଗରୁ ମୋତେ ନିଜ ମାଡିବାରୁ ମୁଁ ଉଠି ଚାଲିଯାଇଥିଲି, ସେ ଜମା ଜାଣିପାରିନଥିଲା ।

'...ସୁଧୀର ଗାଙ୍ଗୁଲି ଘରେ ବଙ୍ଗଳା, ଦାଣ୍ଡରେ ଓଡିଆ କହୁଥିଲା । ପିନ୍ ପିନ୍ ଧୋତି ଆଉ ସିଲ୍‌କ ପଞ୍ଜାବି ପିନ୍ଧୁଥିଲା । ସକାଳ ଓଳିଯାକ ପାଣ୍ଡେଇ ଚମକଉଥିଲା, ନିଶ ବାଗଉଥିଲା... ଚୁଳ ସଜାଡୁଥିଲା ।... ଭାରି ଭଲ କାମ କରୁଥିଲା । ରାଉରକେଲାରେ... କମ୍ପାନୀ କାମ... ମୋଟା ଦରମା । ରାତିରେ ବେହେଲା ବଜଉଥିଲା । ରବିବାର ଦିନ ଚିତ୍ର ଆଙ୍କୁଥିଲା ।... ହେ... ହେ... ଶାଲା ବେକୁବ୍ !'

'ରାଉରକେଲାରେ ସେ ଯେଉଁ ଘରେ ରହୁଥିଲା, ତା'ର ଠିକ୍ ପଡିଶା ଏଇ ଜାକବ୍ । ନୂଆ ବିଭାହୋଇ ଆସିଥା'ନ୍ତି । ଆରେ, ବୁଝିପାରୁଛୁ ନା ନାହିଁ ? ଏମିତି ଯା'ଘର, ଆଉ ଏମିତି ଜାକବ୍ ଘର !'

'ଦି ହାତପାପୁଲିକୁ କରାଟେ ମାରିବା ଢଙ୍ଗରେ ଜଙ୍ଘ ଉପରେ ଥୋଇଲା । ମୁଁ ଟିକିଏ ହସିଦେଲି ।'

'ଆବେ ହସୁଛୁ କ'ଣ ? ତୁ' କ'ଣ ଭାବୁଛୁ ଏ ଶାଲା ବେକୁବ୍ ବୁଢା ନିଶା ଖାଇ ମାତଲାମି କାଟୁଛି ? ଆରେ ନାଇଁ, ମୁଁ କେବେ ମିଛ କହେନାହିଁ!... ବୁଝିଲୁ ।'

'ସୁଧୀର ଗାଙ୍ଗୁଲି ବେକୁବ୍ । ସେ ଜାଣିପାରିଲା ନାହିଁ । ମିସେସ୍ ଜାକବ୍ ତା' ସାଙ୍ଗେ ଖୋଲା ଖୋଲି ହସି କଥା କହିଲା । ସେମାନେ ସେମିତି କହନ୍ତି । ୟେ' ଭାବିଗଲା ବହୁତ ବେଶୀ ! ମାତ୍ର କ'ଣ କଲା ଜାଣିଛୁ ? ଲାଜେଇଲା କାହିଁରେ କ'ଣ ! ମିସେସ୍ ଜାକବ୍ ସାଙ୍ଗରେ ମୁହାଁମୁହିଁ ହେବାକୁ ଯୋଜନା କରି ଓହ୍ଲେଇଲା; କିନ୍ତୁ ଦେଖା ହେଉ ହେଉ ବାଟ କାଟି ଚାଲିଗଲା । ମିଷ୍ଟର ଜାକବ୍ ଥରେ ଦୁଇଥର ତାକୁ ଘରକୁ ଡାକିଲେ । ସେଇଠି ସେ ଖିଆପିଆ କଲା, କିନ୍ତୁ ସେ ମିସେସ୍ ଜାକବ୍‌ଙ୍କ ମୁହଁକୁ ମାତ୍ର ଦୁଇଥର କି ତିନିଥର ଚାହିଁପାରିଲା ।'

'କହୁନ ମଉସା ସେ ମିସେସ୍ ଜାକବ୍‌କୁ ମନେ ମନେ ପ୍ରେମ କରୁଥିଲା !'

'କଥାଟା... ମାନେ... ଧରିନେ ସେଇଭଳି... ହେ... ହେ । ଶାଲା ବେକୁବ୍ ! ମୁହଁ ଖୋଲି କେବେ କିଛି କହିପାରିଲା ନାହିଁ ।'

'ଅନେକ ସମୟରେ ମିଷ୍ଟର ଜାକବ୍ ନଥିଲାବେଳେ ବିନା କାରଣରେ ମିସେସ୍ ଜାକବ୍

ଅଗଣାକୁ ବାହାରି ଆସି ଯା' ନଜରରେ ପଡିଯାଉଥିଲେ । ଏ କିନ୍ତୁ ଖାଲି ଲାଜଉଥିଲା ।'

'ଏମିତି ଦିନେ ଦେଖିଲା ବେଳକୁ ଜଣେ ବାବୁ ଆସି ଦି' ପହରେ ରିକ୍ସାରୁ ଓହ୍ଲେଇଲେ । ତାଙ୍କ ନିଜ ଲୋକ ହୋଇଥିବେ । ସେ କିନ୍ତୁ ତିନିଟା ସାଢେ ତିନିଟାକୁ ବାହାରିଗଲେ । ସୁଧୀର ଲକ୍ଷ୍ୟକଲା ଯେ, ଦିନେ ଛଡା ଦିନେ ସେ ଏମିତି ଆସିଲେ । ଜାକବ୍‌ଙ୍କ ଦୁଆର ମୁହଁରେ ସେ ଚଟି ହଳକ ଦେଖି ସୁଧୀର ଜାଣିଯାଉଥିଲା ଯେ, ବାବୁଜଣକ ଘର ଭିତରେ ଅଛନ୍ତି । ସେ ତେଣିକି ପ୍ରତିଦିନ ଦେଢଟାରେ ଖାଇବା ଛୁଟିରେ ଘରକୁ ଫେରିଲା । ଅଗଣାକୁ ଯାଇ କାନ୍ଥ ପାଖରୁ କାନେଇଲା । ବାହାରେ ଥୁଆ ହୋଇଥିବା ଚଟି ହଳକୁ ବାରମ୍ବାର ଅନେଇଲା...

'ଦିନେ ଠିକ୍ ଦି'ପ୍ରହର ଦୁଇଟା ସମୟ ।'

'ସେ ଯିବାକୁ ବାହାରିଥାଏ, ଏତିକିବେଳେ ଜାଗବ୍‌ଙ୍କ କବାଟରେ କିଏ ଦୁମ୍ ଦୁମ୍ ବାଡେଇଲା ।'

'ଏ ଯାଇ ଦେଖେ ତ' ମିଷ୍ଟର ଜାକବ!

'ସର୍ବନାଶ!... କ'ଣ ହେବ ?...'

'ସାମାନ୍ୟ ବିଳମ୍ବ ହେଲା । ମିସେସ୍ ଜାକବ୍ କବାଟ ଫିଟେଇଲେ । ନିଦରୁ ଉଠିଆସିଲା ପରି ଦିଶୁଥା'ନ୍ତି ।'

'ତାଙ୍କୁ ଗୋଟାଏ ପଟକୁ ଠେଲିଦେଇ ମିଷ୍ଟର ଜାକବ୍ ଧସେଇ ପଶିଗଲା । ଘର ଭିତରଯାକ ତା' ପାଦ ଶବ୍ଦରେ ଦୁଲୁକିଲା ।'

'ସୁଧୀର ଗାଙ୍ଗୁଲି ଦୁଆର ମୁହଁରେ ଛିଡା ହୋଇଥାଏ । ଦେଖିଲା ଯେ, ମିସେସ୍ ଜାକବ୍ ଅତି ଭୟାର୍ତ୍ତ । ତାଙ୍କ ଆଖି ଯୋଡିକରେ ସତେ ବା ସେ ଯାକୁ କ'ଣ ପ୍ରାର୍ଥନା କରୁଛନ୍ତି ! ମିଷ୍ଟର ଜାକବ୍‌ଟା ରାଗରେ କମ୍ପୁଛି ଜନ୍ତୁ ଭଳି । ଇଂରାଜୀରେ ଗର୍ଜୁଛି, 'ବତା ତା'ହେଲେ ଏ ଚପଲ କାହାର ?' ସେ ପ୍ରାୟ ତାଙ୍କ ଚୁଟି ଧରିବାକୁ ଯାଉଛି, ସୁଧୀର ଗାଙ୍ଗୁଲି ସେଇଠି ଥାଇ ପାଟିକରି ପକେଇଲା... 'ସେ ଚପଲ ମୋର! ସେଇଟା ମୋର!!'

'ସେ ତା' ଜୋତାହଳକ ଫିଙ୍ଗିଦେଇ ଖାଲିପାଦରେ ତାଙ୍କ ଫାଟକ ବାଟେ ଧାଇଁଗଲା । ସେଇଠି ଠିଆହୋଇ ମିଷ୍ଟର ଜାକବ୍‌କୁ କହିଲା... ମୁଁ... ମାନେ ଆପଣଙ୍କ ଘରକୁ ଫୋନ୍ କରିବାକୁ ଆସିଥିଲି । ଭିତରକୁ ଯାଇଥା'ନ୍ତି, ମୋ' ଦୁଆରେ ପୋଷ୍ଟମ୍ୟାନ୍ ଡାକିବାରୁ ମୁଁ ବ୍ୟସ୍ତହୋଇ ଚାଲିଗଲି । ଚପଲ ଭୁଲିଗଲି ପିନ୍ଧିବା ପାଇଁ ।... ମୋର ଟିକିଏ ସେମିତି ଭୁଲା ପ୍ରକୃତି ।'

'ହେଃ... ହେଃ... ହେଃ... ସୁଧୀର ଗାଙ୍ଗୁଲି ଶାଳା ନିପଟ ଖଚୁଆ! ଏମିତି ଖଣ୍ଡିଦେଇ ମିଛି କହିଦେବ ଯେ, ତାକୁ ବିଶ୍ୱାସ ନକରି ଉପାୟ ନାହିଁ ।'

'ମିଷ୍ଟର ଜାକବ୍ ସୁଧୀର ଗାଙ୍ଗୁଲି ଆଡକୁ କ୍ଷେପି ଆସିଲା, 'ଗେଟ୍ ଆଉଟ୍, ଗେଟ୍ ଆଉଟ୍...!' ଇଂରାଜୀରେ ଗର୍ଜିଲା । ତଡିବା ପାଇଁ ଏତେ ପାଟି କରିବାର କ'ଣ ଦରକାର ? ସେ ବି ପୁରୁଣା ବେକୁବ୍!'

'ସୁଧୀର ଗାଙ୍ଗୁଲି ଲେଉଟି ଗହଁଲା !... ମିସେସ୍ ଜାକବ୍‌ଙ୍କ ଆଖି ଲୁହରେ ଟଳମଳ, ଓଠ ଥରଥର । ସେ ମିଷ୍ଟର ଜାକବ୍‌ଙ୍କ ଗାଳି ଗୁଲଜକୁ ଖାତିର ନକରି ଧୀରେ ଧୀରେ ବାହାରି ଆସିଲା । ସେ ଚପଲ ହଳକ ବି ତା' ପାଦକୁ ସାମାନ୍ୟ ଢିଲା ହେଉଥିଲା ।'

ରାମି ମଉସା କଥାଟାକୁ ଏଇଠି ରଖି ଗୁମ୍ ହୋଇଗଲା । ଆଖି ବୁଜିଦେଇ ବସିଗଲା । ମୁଁ ଦେଖିଲି, ତାକୁ ପୁଣି ଚମକେଇ ନଦେଲେ ସେ ଶୋଇଯିବ ।

ମୁଁ ଗଳା ସଫାକରି କହିଲି, 'ତମେ ରାମି ମଉସା କେମିତି ଏତେ କଥା ଜାଣିଲ ? ତମେ କୋଉଠି ଥିଲ ସେତେବେଳେ ?'

ସେ ଭୁସ୍‌କିନା ସଳଖି ବସିଲା । ତା' ମୁହଁରେ ସେଇ ଅଲାଜୁକ ହସ । ଆଖିକୁଣ କୁଞ୍ଚ କୁଞ୍ଚ । ବାବୁରି ବାଳଗଣ୍ଡାକ ଆଲରା ।

'ଆବେ ତୁ କ'ଣ ଭବିଛୁ ମୋତେ ! ମୁଁ ଆଇଜାକ୍ ରାମସାମୀ ପକ୍କା ଖ୍ରୀଷ୍ଟିଆନ୍ ! କଦାପି ମିଛ କହେନାହିଁ... ମତେ କ'ଣ ତୁ ସେ ଖଚୁଆ ବେକୁବ ସୁଧୀର ଗାଙ୍ଗୁଲି ଠଉରେଇଲୁ ? ତୁ ଜାଣୁ... ମୁଁ ଖ୍ରୀଷ୍ଟିଆନ ବନିଚି, ଶୋଚ୍ ସମଝକର ଖ୍ରୀଷ୍ଟିଆନ ହୋଇଛି ! କାଇଁ ବନିଚି, ତତେ କହିବି ନାହିଁ ! – କହିଲେ ବି, ତୁ ବେକୁବ୍ ବୁଝିପାରିବୁ ନାଇଁ !'

ମୁଁ କିନ୍ତୁ ବୁଝିଗଲି ଯେ ବୁଢାକୁ ନିଦ ଘାରି ଆସିଲାଣି । ତେଣିକି ହୁଏତ ସବୁ ବାଗଚଉଳିଆ ଧରିଯିବ । ମୁଁ ତାକୁ ସାଙ୍ଗରେ ନେଇ ତା' କଣ୍ଢେଇ ଦୋକାନ ଭିତରେ ଖଟରେ ଶୁଆଇ ଦେଇ ଚାଲିଆସିଲି । ସେ କନା କଣ୍ଢେଇଟିଏ ପରି ସାଙ୍ଗେ ସାଙ୍ଗେ ଶୋଇଯାଇଥିଲା ।

ମୁଁ ଏଠି ନଥିଲି ଏ ଦୁଇଦିନ । ମୋର ଧାରଣା ମିସେସ୍ ଜାକବ୍ ନିଶ୍ଚୟ ରାମି ମଉସା ଦୋକାନକୁ ପୁଣି ଆସିଥିବେ ।



# ପୁଅ

କ'ଣଟା ମିଳେ ନିଅାଁରୁ, ଧୂଅାଁରୁ ଅଥବା ସକ୍‌ସକ୍ କାନ୍ଦଣାରୁ ଯେ ନିର୍ମଳ ସାଆନ୍ତା ଗୋଟେଇ ରଖିଥାନ୍ତା ବାପର ସନ୍ତକ ବୋଲି ? ଆସ୍ତେ ଆସ୍ତେ କିନ୍ତୁ ଗୋଟିଏ ପରେ ଗୋଟିଏ ଆସ୍ତରଣ ଅପସରି ଗଲା । ନୀରବି ଆସିଲା ଶୁଦ୍ଧ ଶ୍ରାଦ୍ଧଘର । ବନ୍ଧୁ, ପରିଜନ, ଦୂର ନିକଟ ଆତ୍ମୀୟ ସ୍ୱଜନମାନେ କ'ଣ ସବୁ କହି କହି ଘୁଞ୍ଚିଗଲେ କେଜାଣି କୁଆଡେ ।

ଗୋଟାଏ ଥମ୍ ଥମ୍ ବିଶାଳ ସନ୍ଧ୍ୟା ନଇଁ ଆସିଲା ଅରଣ୍ୟ କୁହୁଡି ପରି ନୀରବ ବଗିଚାକୁ । ଘରଟାରେ ଏତେଗୁଡାଏ ଖାଲି ଜାଗା, ଏତେ ନିଶ୍ଚଳ ନୀରବତା ତାକୁ ଏମିତି ଆବୋରି ନେବ ବୋଲି ସେ ଭାବି ନଥିଲା ।

ବାପାଙ୍କ ପୁରୁଣା ଚୌକିରେ ବସି ସେ ଟେବୁଲ୍‌ରେ ହାତ ବୁଲେଇ ଆଣିଲା । ଝରକା ରେଲିଂ ଦେଇ ସୋରା ସୋରା ଆକାଶକୁ ଚାହିଁଲା । କେଜାଣି କେମିତି ତା' ବୁକୁ ଉଛୁଳେଇ, ଆଖି ଉଛୁଳେଇ ଶୋକର ଧାରା ଝରିଗଲା । ନୀରବରେ ପ୍ରଥମ ଥର ପାଇଁ ସେ ଅନୁଭବ କଲା ସେ ଅଗାଧ, ଅଥଳ ଶୂନ୍ୟତା...

'କିରେ କାନ୍ଦୁଚୁ କ'ଣ ମାଇଚିଆଟା ! ଏ ପରୀକ୍ଷାରେ ଭଲ ହେଲା ନାହିଁ ବୋଲି କ'ଣ ସବୁ ଅଶୁଦ୍ଧ ହୋଇଗଲା ? ଆଉଥରେ ଦବୁ । ଯା' – ବୋଉ ଚକୁଳି କରିଚି, ଖାଇପକା !'...

ଆଉ ପରୀକ୍ଷାରେ ନିର୍ମଳ ସତକୁ ସତ ଶହେରେ ଅଶୀ ନମ୍ବର ରଖି ମାଟ୍ରିକ୍ ପାସ୍ କରିଥିଲା । ତା' ଉତ୍ତାରୁ ସବୁ ପରୀକ୍ଷା ପରେ ବାପା ତା' ପିଠିରେ ହାତ ମାରିଦିଅନ୍ତି । ତାକୁ ଚାହିଁ ମୁଚ୍ ମୁଚ୍ ହସି ଦିଅନ୍ତି । ସେଇ ତାଙ୍କର 'ସାବାସ୍' କହିବା ଢଙ୍ଗ । ବାପାଙ୍କ ବଡପଣ ତାଙ୍କ କଥା କହିବା ଅପେକ୍ଷା ନୀରବ ରହିବା ଭଙ୍ଗୀରେ, ନିଶ୍ଚଳ ଠିଆହୋଇ ମୁକାବିଲା କରିବା ଢଙ୍ଗରେ – ବାଘକୁ ହେଉ ଅଥବା ବଜ୍ରକୁ – ଯେମିତି ସେ ଚୁପ୍‌ଚାପ୍ ପଥର ମୂର୍ତ୍ତି ପରି ଠିଆ ହୋଇଥିଲେ ମା' ଚାଲିଗଲା ବେଳେ ।

ସମସ୍ତେ ହାଉଯାଉ ହେଉଥା'ନ୍ତି । କିନ୍ତୁ ଦୁର୍ଲଭ ସାଆନ୍ତ । ସେମିତି ନିଶ୍ଚଳ ଚାହିଁ ରହିଥା'ନ୍ତି । ଆଖିରେ ପଲକ ପଡୁ ନଥାଏ ।

କେତେବେଳେ ମନ ହେବାରୁ ଆସ୍ତେ ମୁହଁ ବୁଲେଇ ତଳକୁ ମୁଣ୍ଡପୋତି ଚାଲିଗଲେ । ସେଇ ବୋଧେ ତାଙ୍କ କାନ୍ଦିବା ଢଙ୍ଗ !

ସେ ନ ହେଲେ ମାଇଚିଆ ପରି ଲୁହ ଗଡେଇ କାନ୍ଦିଥା'ନ୍ତେ ନା' କ'ଣ ! ନିର୍ମଳ ଖୁବ୍ ଅନୁରୋଧ କରିଥିଲା ତାଙ୍କୁ ନେଇ ପାଖରେ ରଖିବାକୁ । ବାପା କେବଳ ତା' କାନ୍ଧରେ ହାତ ଥୋଇ ମୁହଁକୁ ଚାହୁଁଥିଲେ । ଅଳ୍ପ ହସି ବାଁ' ହାତରେ ନିଶ ଟେକି ଦଉଥିଲେ ।

ତା'ର ଅର୍ଥ ଥିଲା, "ନୋ, ଥ୍ୟାଙ୍କସ୍ !"

ଗୋଟେଥର ନିର୍ମଳ ବାପାଙ୍କ ପାଇଁ ଚମତ୍କାର ଶାନ୍ତିପୁରୀ ଧୋତି ଆଉ ପଞ୍ଜାବୀ ଆଣିଥିଲା କଲିକତାରୁ ।

ବାପା ମଣିଷକୁ ଯେମିତି, ଲୁଗାକୁ ସେମିତି ଛୁଇଁଦେଇ ଭଲ ପାଇଯାଉଥିଲେ । ତାଙ୍କ ମୁହଁରୁ, ଆଖିରୁ ଜଣାଗଲା ଯେ ସେ ଲୁଗା ହଳକ ପସନ୍ଦ କରିଥିଲେ ।

ହଠାତ୍ କହିଲେ, 'ଆରେ ବୋହୂକୁ-ପଚାରି ଆଣିଚୁ ତ ?'

ନିର୍ମଳକୁ ଏ ବାକ୍ୟଟି ଶୁଣି ଭାରି ଅସୁସ୍ଥ ଲାଗିଥିଲା । ବାପା ବୋଧେ ମନେ ମନେ ଆଉ କ'ଣ ଭାବୁଥିଲେ । ବୋଧେ ରଞ୍ଜନା ତାଙ୍କୁ ଆପଣା ପଣରେ ବିଶ୍ୱାସ ଦେଇପାରୁ ନଥିଲା ।

ବାପା ବୋଧେ ସେଥିପାଇଁ ତା' ପାଖରେ ରହିବାକୁ ରାଜି ହେଉ ନଥିଲେ । କିନ୍ତୁ ବବ୍‌ଲୁକୁ ପ୍ରଗାଢ ସ୍ନେହ କରୁଥିଲେ ।

ସେ ଟୋକାର ସାହସ ଦେଖି ନିର୍ମଳ ତାଜୁବ୍ ହୋଇଯାଉଥିଲା । ସେ ସିଧାସଳଖ ବାପାଙ୍କ ନିଶ ଉପରେ ହାତ ମାରି ଦେଉଥିଲା ! ସେ ଲମ୍ବା ନାକଟାକୁ ଧରିବାକୁ ତାକୁ ବୋଧେ କୌତୁକ ଲାଗୁଥିଲା । – ଆରେ, ବାପ୍‌ରେ, ବାପା ଯଦି ଗର୍ଜି ଉଠନ୍ତି !!... ନିର୍ମଳର ରକ୍ତ ପାଣି ହୋଇଯାଉଥିଲା ।

କିନ୍ତୁ ବାପା ଆଦୌ ସେମିତି କିଛି କରୁନଥିଲେ । ବରଂ ଓଲଟି ବବ୍‌ଲୁର ନାକ ଧରି ଟାଣୁଥିଲେ । ସାଙ୍ଗରେ ତାରି ଭଳି କଥା ହେଉଥିଲେ । ତା' ନକଲ କରି ତାକୁ ଚିଡାଉଥିଲେ ।...

ଝରକା ସେପଟେ ଅନ୍ଧାର ଜମି ଯାଉଥିଲା ।

ନିର୍ମଳ ଅନୁଭବ କଲା ଯେ ତା' ପାଖରେ କେହି ଜଣେ ଠିଆ ହେଇଛି । ସେ ବୁଲି ଚାହିଁଲା ବେଳକୁ – ରଞ୍ଜନା !

ରଞ୍ଜନା ବି ଉଦାସ ଦେଖାଯାଉଥିଲା ।

"ଚା' ଖାଇବ ?"

"ଉହୁଁ !"

"ବବ୍‌ଲୁ ଅବେଳଟାରେ ଶୋଇଗଲା । କିଛି ଖାଇନାହିଁ । ଏ'ଠି ଦଶଦିନ କାଳ ଅଣହେପାଜତରେ ସେ କେତେ ଝଡିଗଲାଣି !"

ନିର୍ମଳ ଚାବୁକ୍ ଖାଇଲା ପରି ଚୌକିରୁ ଉଠିଗଲା । ଚାଲିଗଲା ବଗିଚାକୁ ଓ ଘନେଇ

ଆସୁଥିବା ନିର୍ଜନ ଅନ୍ଧାରକୁ ।

ସେ ବାଦାମ୍ ଗଛକୁ ଆଉଜି ଠିଆ ହେଲା । ଆଖି ବୁଜି ରହିଲା ଅନେକ ବେଳଯାଏଁ ।

– ଗଛରେ ଏ ବର୍ଷ ଫଳ ଲାଗିଛି । ବବ୍‌ଲୁ ଏଯାଏଁ ଗଛ ଚଢା ଜାଣି ନାହିଁ । ବାପା ଏ ଗଛ ଲଗେଇବା ଦିନ କହୁଥିଲେ, "ଆରେ ଏ ଗଛ ଫଳିଲା ବେଳକୁ ତୋ' ପୁଅ ବଡ ହୋଇ ଗଛଚଢା ଶିଖିଥିବ । ଏମିତି ଲାଜଉଚୁ କ'ଣ ? – ତୁ ବିଭା ହେବୁ ନାହିଁ କି ?" ନିର୍ମଳ ଗଛଟିକୁ ଆଉଁସି ଦେଇ ଆଡ ହୋଇଗଲା । ବଗିଚାର ସିମେଣ୍ଟ ବେଞ୍ଚ ଉପରେ ବସି ଆକାଶକୁ ଚାହିଁ ରହିଲା । ବିଛେଇ ହୋଇ ଫୁଟିଥିବା ଅସଂଖ୍ୟ ତାରା ଗହଣରେ କେଉଁ ଗୋଟାକ ତା'ର ମାନନୀୟ ଆଉ ଆତ୍ମୀୟ ?

ସେ ବଗିଚା ବାଟ ଦେଇ ଘରେ ପଶିଲା । ସେଇବାଟେ ହିଁ ବାପା ଯିବା ଆସିବା କରୁଥିଲେ । ଦାଣ୍ଡ ପାଖଟା ଏମିତି କିଏ ଗଲେ ଆସିଲେ ବ୍ୟବହାର ହେଉଥିଲା ।

ଓଃ, ଘରଟା ଏମିତି ନିସ୍ତବ୍ଧ ହୋଇଥିଲା ଯେ ନିର୍ମଳ ତା' ନିଃଶ୍ୱାସ ଶୁଣି ପାରୁଥିଲା ।

ଭିତର ବଖରାରେ ରଞ୍ଜନା ପୁଅ ପାଖରେ ଶୋଇ ଯାଇଥିଲା । ସେ ବି ଆଉ କ'ଣ କରିଥା'ନ୍ତା ? ତା'ର ଦାୟିତ୍ୱ ଆଉ ପରିଶ୍ରମ କିଛି କମ୍ ନ ଥିଲା ସେ ଦଶଦିନ ।

ନିର୍ମଳ ମନରୁ କିନ୍ତୁ ଅବଶୋଷ ଘୁଞ୍ଚି ପାରୁ ନଥିଲା । ସେ ଟେଲିଗ୍ରାମ୍ ପାଇ ଆସୁ ଆସୁ ଦୁଇଦିନ ଲାଗିଗଲା । ପହଞ୍ଚିଲା ବେଳକୁ ଜୁଇ ଲିଭି ସାରିଥିଲା । ଘରେ ଭିଡ ଜମି ଆସୁଥିଲା । ତା'ପରେ ଦିନରାତି ଟଣା ଓଟରା ଘୋ ଘା ଭିତରେ ଛିନ୍‌ଛତ୍ର ହୋଇ ଯାଇଥିଲା ନିର୍ମଳ । ବେଳ କାହିଁ ଚାହିଁବାକୁ ନିଜକୁ ବା ଅପରକୁ । ବେଳ କାହିଁ ହିସାବ କରିବାକୁ କ'ଣ ଗଲା, କ'ଣ ରହିଲା ?

ସେ ରଞ୍ଜନାକୁ ଉଠାଇଲା ନାହିଁ । ସେମିତି ଆସ୍ତେ ପହଁରିଲା ପରି ଚାଲିଗଲା ବାପାଙ୍କ ବୈଠକକୁ ।

ଦାଣ୍ଡ ଦୁଆର କବାଟ ଫାଳେ ଆଉଜେଇ ହୋଇଗଲା ନିଃଶବ୍ଦରେ । ଥମ୍ ହୋଇ ଠିଆ ହୋଇଗଲା ନିର୍ମଳ । ଚାହିଁ ରହିଲା ମେଲା ଫାଳକ ବାଟେ ଅନ୍ଧାର ବାରଣ୍ଡାକୁ ।

ସେ କେଜାଣି କାହିଁକି ଡାକିଦେଲା, "ବାପା" ।

ପବନଟା ପଶି ଆସିଲା ଘର ଭିତରକୁ । ଖୋଲା ଝରକା ପିଟିହେଲା ବାହାର କାନ୍ଥରେ । ନିର୍ମଳ ଛନ୍ ଛନ୍ ହୋଇ ଚାହୁଁଥାଏ ଏପାଖ ସେପାଖ ।

ସେ ଦେଖିଲା ଟେବୁଲ୍ ଉପରେ ବାପାଙ୍କ ବଡ ଫଟୋଟା ପୁଣି ଥୁଆ ହୋଇଛି । ଦୁଇଟି ମଲ୍ଲି ଫଟୋ ତଳେ ସଜଡା ହୋଇଛି । ଧୂପଦାନିରେ କଟେଜ୍ ଇଣ୍ଡଷ୍ଟ୍ରିଜ୍‌ର ତେର ନମ୍ବର କସ୍ତୁରୀ ଗନ୍ଧର ଧୂପକାଠିଟିଏ ଜଳି ଜଳି ପ୍ରାୟ ସରି ଆସିଲାଣି ।

ଏଇଟା କ'ଣ ରଞ୍ଜନା କରିଛି ? ସେ କ'ଣ ମୋତେ ଖୁସି କରିବାକୁ ଏମିତି ଦେଖେଇ ହେଉଛି, ନା ସେ ବାପାଙ୍କୁ ହୁଏତ ଯା' ଭିତରେ କିଛି ଭଲ ପାଇ ଯାଇଛି ? ତା' ବାହାରେ ବର୍ତ୍ତମାନ ଭଲ ପାଇବାରେ କ୍ଷତି କ'ଣ ? କିଛି ଦେବାକୁ ତ ପଡୁନାହିଁ । ନିର୍ମଳର ଦାନ୍ତ ଜାକି ହୋଇଗଲା । ଆଖି ସରୁ ସରୁ ହୋଇଗଲା । ନାକପୁଡା ଫୁଲି ଉଠିଲା ।

ତା'ର ମନେ ପଡିଗଲା ଟେଲିଗ୍ରାମ୍ କଥା । ସେ ଅଫିସ୍‌ରୁ ଆସି ଜଳଖିଆ ଖାଇ ଅନେକ ବେଳ ଗଲା ପରେ ପଚାରିଥିଲା, "କ'ଣ ଚିଠିପତ୍ର ଆସିଛି କି ?"

"ନାଇଁ! – ହଁ ସେଥିରୁ ଗୋଟେ ଟେଲିଗ୍ରାମ୍ ଆସିଛି ।"

"ଟେଲିଗ୍ରାମ୍ ଆସିଛି, ଅଥଚ ତମେ ମତେ କହିନାହଁ ।"

କୋଉ ନୂଆ କଥା ଯେ କହିବି ? ସେଇ ବାପାଙ୍କ ଦେହ ଖରାପ । ନିର୍ମଳ ଟେଲିଗ୍ରାମ୍ ପଢି ସାରିଥିଲା ।

"ବୁଢା ହେଲେ ତ ଏଇଆ ଚାଲିଥିବ । ଶୁଣ ଏଥର କାହା ହାତରେ ଟଙ୍କା-ପଇସା, ଶହେ ପଠେଇ ଦିଅ । ସେ ନ ନେଲେ ବି ଟାଙ୍କ ପାଖରେ ଥୋଇ ଦେଇ ଆସୁ । ନହେଲେ ତମ ଗାଁର ଯୋଉ ଲୋକ ନା, କହିବେ ପୁଅ ପଚାରିଲା ନାହିଁ ।"

ନିର୍ମଳ ମନେ ମନେ ରଞ୍ଜନାକୁ ରାଗରେ ଖଣ୍ଡ ଖଣ୍ଡ କରି ପକେଇଥିଲା । କିନ୍ତୁ ଯାହା କରିବାକୁ ସେ ଚାହିଁଥିଲା, ତାହା ହିଁ କଲା ।

ରଞ୍ଜନାକୁ ଲୁଚେଇ ଦୁଇଶହ ଟଙ୍କା ପଠେଇଥିଲା ନିର୍ମଳ । ଟଙ୍କା ଫେରି ଆସିଲା । ଚିଠି ଫେରି ଆସିଲା ।

ଖବର ପହଞ୍ଚିଲା ଯେ ବାପା ଚାଲିଗଲେ ।

ନିର୍ମଳ ନିଜକୁ ନିଜ କ୍ଷମା କରିପାରୁ ନଥାଏ । ବାପା ଶେଷ ମୁହୂର୍ତ୍ତ ଯାଏ ନିଶ୍ଚୟ ଚାହିଁଥିବେ ତାକୁ ଦେଖିବାକୁ; ବବ୍‌ଲୁକୁ ଦେଖିବାକୁ । ଅଥଚ ଚାରିଦିଗରେ ଅନ୍ୟ ମୁହଁମାନଙ୍କୁ ଦେଖି ଆଖି ବୁଜି ଦେଇଥିବେ ।

ନିର୍ମଳ ପୁଣି ବାପାଙ୍କ ଚୌକିରେ ବସି ତାଙ୍କ ଫଟୋକୁ ଚାହିଁଲା । ଟେବୁଲ୍ ପାଖକୁ ଲାଗି ତାଙ୍କ ବହି ଥାକ । ଗୁଡିଏ ଡାଏରୀ, କିଛି ଖାତା । କ'ଣ ସବୁ ଲେଖୁଥିଲେ କେଜାଣି ?

ତା'ର ହଠାତ୍ ମନେ ପଡିଗଲା ଯେ ରାତି ପାହିଲେ ସେ ନିଜେ ପ୍ରସ୍ତୁତ ହେବ କାନପୁର ଯିବାପାଇଁ । ରଞ୍ଜନା ବବ୍‌ଲୁକୁ ଧରି ଯିବ ତା' ବାପଘରକୁ । ଏ ଘରେ କୋଲପ ପଡିବ । ଫିଟିଲେ କେହି ଜଣେ ଭଡା ରହିବ ।

ତା' ମନ ବିଚଳିତ ହୋଇଗଲା । କାନପୁର... ଦେଶପାଣ୍ଡେ... କହୁଥିଲା ତା' ମା'କୁ ନେଇ ସେ ଦିଲ୍ଲୀରେ ଦେଖାଇବ । ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍‌ରେ । ୟା' ଭିତରେ ହୁଏତ ସେ ଦେଖାଇ ଆସି ସାରିଲାଣି । ଯୋଗ୍ୟ ପୁଅ, କାହିଁକି ନ କରିବ ?

ନିର୍ମଳ କ୍ଷୋଭରେ ଖଣ୍ଡ ଖଣ୍ଡ ହୋଇ ଯାଉଥାଏ ।

ରଞ୍ଜନା ପଛପଟୁ ପଚାରିଲା – "ରୁଟି ଖାଇବ ?"

ସେ ଚାଉଁକିନା ଚମକି ପଡିଲା । ପ୍ରୟୋଜନରୁ ଅଧିକ ଜୋର୍ ଦେଇ କହିଲା, "ନା" – ରଞ୍ଜନା ସାମ୍ନାକୁ ଆସି ଠିଆହେଲା ।

"ଏମିତି କାହିଁକି ହଉଚ ? ତୁମେ ଭୋକେ ଶୋଇଗଲେ ବାପା ଚାଲି ଆସିବେ ନା କ'ଣ ?

– ଚାଲ, ମୁହଁ ହାତ ଧୋଇ ପକାଅ । ମୁଁ ରୁଟି ସନ୍ତୁଳା ବାଢ଼ି ଦଉଚି । କ୍ଷୀର ଅଛି ସକାଳର, ଖାଇବ ଯଦି... ।"

"ତମେ ଖାଇ ନିଅ । ବବ୍‌ଲୁକୁ ଖୁଆଇ ଦିଅ । ମୋତେ ଭୋକ ନାହିଁ ।"

ବବ୍‌ଲୁ ଖାଇଲାଣି । ମୁଁ ତୁମକୁ ଅପେକ୍ଷା କରିଛି । ଯଦି ଖାଇବ ନାହିଁ, ତା'ହେଲେ ମୁଁ କାହିଁକି ଖାଇବି ?

ନିର୍ମଳ ରଞ୍ଜନାକୁ ଚାହିଁଲା । ତାକୁ ଲାଗିଲା ସେ ଖାଇପିଇ ସାରିଛି । ଅନେକ ଦିନ ଘରକୁ ଫେରିବାକୁ ତା'ର ବିଳମ୍ବ ହେଲେ ସେ ସେମିତି ଖାଇ ନିଏ । ନିର୍ମଳ ହିଁ ତାକୁ କହି ରଖିଛି ନ ଜଗିବାକୁ – କାରଣ ସୀତା ତ' ରାନ୍ଧୁଣୀ ନୁହେଁ ଯେ ସେ ସମସ୍ତଙ୍କୁ ଖୁଆଇ ସାରିଲା ପରେ ଯାହା ବଳିଲା ତାକୁ ଖାଇ ଏ ଘରେ ବଞ୍ଚିବ ।

ରଞ୍ଜନା ବୋଧେ ନିର୍ମଳର ଚାହାଁଣିରୁ ବୁଝିଗଲା ସେ କ'ଣ ଭାବୁଛି । କହିଲା, "ତମେ ଡେରିଲେ ଫେରିଲେ ସବୁବେଳେ ଏକା ବସି ଖାଇଛି । କିନ୍ତୁ ସେ'ଦିନ ଆଉ ଆଜିର ଏଦିନ କଥା ଅଲଗା । ଆଜି ଅନ୍ତତଃ ତୁମେ ଏକୁଟିଆ ଖାଇବସିବ ନାହିଁ ବୋଲି ମୁଁ ସ୍ଥିର କରିଛି । ମୁଁ ବସିବି ତୁମ ସାଙ୍ଗରେ । ତେଣିକି ତୁମ ଇଚ୍ଛା । ଯଦି ତୁମେ ଏତେଦିନ ପରେ ଆଜି ନିହାତି ଶୋକ ମନାଇବାକୁ ଚାହୁଁଥାଅ, ଠିକ୍ ଅଛି – ମୋର ସେଥିରେ କିଛି କହିବାର ନାହିଁ ।"

ନିର୍ମଳ କିଛି କହି ପାରିଲା ନାହିଁ ।

ରଞ୍ଜନା ସତେ ତା'ର ଏକୁଟିଆ ପଣକୁ କେତେ ବୁଝି ପାରିଥିଲା । କିନ୍ତୁ ବାପାଙ୍କୁ ବୁଝିବାରେ ତା'ର ଏତେ ଅସୁବିଧା କାହିଁକି ?

ରଞ୍ଜନା କିଛି ନକହି ଆସ୍ତେ ନିର୍ମଳର ହାତ ଧରି ବାଟ କଢ଼େଇ ନେଲା ଖାଇବା ପାଖକୁ । ସେମିତି ଚୁପ୍ ଚାପ୍ ପରଠା ଡବା ଖୋଲିଦେଲା । ସେ ଖୁବ୍ ଜାଣେ ଯେ ମଇଁଷି ଘିଅର ପରଠା ନିର୍ମଳକୁ କେତେ ଭଲ ଲାଗେ । ମୂଳା ସନ୍ତୁଳାରେ କାଙ୍କଡ ପଡିଲେ ସେ କେତେ ଭଲ ପାଏ ।

ନିର୍ମଳ ତଳକୁ ମୁହଁ ପୋତି ବସିଥାଏ ।

ରଞ୍ଜନା ପାଖରେ ଠିଆହୋଇ ତା' ପିଠିରେ ହାତ ରଖି କହିଲା, "ଖାଅ !"

ନିର୍ମଳ ବୁଝି ଯାଇଥିବା ଅଝଟ ପିଲାଟିଏ ପରି ଖାଇବା ଆରମ୍ଭ କଲା । ମୁଣ୍ଡ ସେମିତି ତଳକୁ । ଆଖି ଥମ୍ ଥମ୍, ମୁହଁ ଥମ୍ ଥମ୍ ।

ରଞ୍ଜନା ଆଉ ଗୋଟିଏ ଥାଳିଆରେ ସନ୍ତୁଳା ନେଇ ପାଖରେ ବସିଲା । ଖଣ୍ଡିଏ ପରଠା ନେଇ ଚୁପ୍ ଚାପ୍ ଖାଇଲା । ରାଗ, ରୋଷ ନାହିଁ । କଳି ତକରାଳ ନାହିଁ । ଅଥଚ କ'ଣଟାଏ ଦି'ଜଣଙ୍କ ମଝିରେ ସେମାନଙ୍କୁ ଆଚ୍ଛନ୍ନ କଲାପରି ଢଳଢଳ ହେଉଥିଲା । ସେମାନଙ୍କର ପାଟି ଫିଟୁ ନଥିଲା । ରଞ୍ଜନା ହିଁ ପ୍ରଥମେ ଉଠିଲା । ଆଉ ବେଳ ହୋଇଥିଲେ ନିର୍ମଳ ରୁଟିଡବା ତା' ଆଡକୁ ଘୁଞ୍ଚେଇ ଦେଇ କହିଥା'ନ୍ତା, "ଆଉ ଖଣ୍ଡେ ଖାଉନ !"

କିନ୍ତୁ ସେ କିଛି କହିଲା ନାହିଁ ।

ତାକୁ ପରଠା ବି ଲୁଣିଆ ଲାଗୁଥାଏ । ସନ୍ତୁଳା ଲାଗୁଥାଏ ସେଠୁଆ । ଢୋକିଲା ବେଳକୁ କୋଉଠି ଗୋଟା ଅଟକି ଯାଉଥାଏ ।

ସେ ଉଠିଲା ବେଳକୁ ରଞ୍ଜନା ବିଛଣା ପକେଇ ସାରିଥାଏ ।

"ତୁମେ ଶୋଇଯାଅ । ମୋତେ ସବୁ ବନ୍ଧାଛନ୍ଦା କରିବାକୁ ପଡିବ ।"

ନିର୍ମଳ ଡବ ଡବ ଆଖିରେ ରଞ୍ଜନାକୁ ଚାହିଁଲା ।

ରଞ୍ଜନା ବୁଝିଲା ପରି କହିଲା, ତମେ ବ୍ୟସ୍ତ ହୁଅନାହିଁ । ମୁଁ ବାପାଙ୍କ ଜିନିଷ ପାଇଁ ମଧ ବ୍ୟବସ୍ଥା କରିବି ।

ତା'ପରେ ନିର୍ମଳ ପିଠିରେ ହାତରଖି ବିଛଣା ପର୍ଯ୍ୟନ୍ତ ବଳେଇ ନେଇଗଲା ।

...ପାହାନ୍ତା ପହରକୁ ନିର୍ମଳର ନିଦ ଭାଙ୍ଗିଗଲା ।

ସେ ଦେଖିଲା ମା' ପୁଅ ଶୋଇଛନ୍ତି । ଦାଣ୍ଡ ବଖରାକୁ ସପ୍ନରେ ପହଁରିଲା ପରି ଚାଲିଗଲା । ବଖରାରେ ଆଲୁଅ ନଥିଲା । ପବନ ବି ନଥିଲା । ନିଦା ପଥରଟାଏ ପରି ରୁନ୍ଧି ହୋଇ ରହିଥିଲା ବଖରାଟା ।

ନିର୍ମଳ ତାକୁ ଭେଦି ଦାଣ୍ଡ ଦୁଆର କବାଟ ପାଖକୁ ଯାଇ ପାରିଲା ନାହିଁ । ସେଇଠି ଥିବା ଆଲୁଅର ସିଚ୍ ଚିପି ପାରିଲା ନାହିଁ ।

ତାକୁ ନିଶ୍ୱାସ ନେବା କଷ୍ଟ ହେଉଥିଲା । ସେଥିପାଇଁ ବୋଧହୁଏ ଭିଡିହେଲା ପରି ବାହାରି ଆସିଲା ବଖରାରୁ । ବାହାରେ ପାହାନ୍ତା ପହରର ଝାପ୍‌ସା ଆଲୁଅ, ହାଲୁକା ପବନ, ଆକାଶରେ ତଥାପି ବି ଅନେକ ତାର ।

ନିର୍ମଳ ଯେବେ ବି ସେ ପହରଟାରେ ଉଠିଛି, ବାପାଙ୍କୁ ଦେଖିଛି ବଗିଚାରେ, ତା'ର ବିଶ୍ୱାସ ହେଉଥିଲା ଯେ ସେତେବେଳେ ଗଛ ଗହଳରେ ସେ ନିଶ୍ଚୟ ବୁଲୁଥିବେ ନିଃଶବ୍ଦରେ । ନିର୍ମଳ ଅଗଣାକୁ ମୁହଁକରି ବାରଣ୍ଡାରେ ବସିଥାଏ । ଦୃଶ୍ୟ ପରେ ଦୃଶ୍ୟ ଫିଟି ଯାଉଥାଏ ତା' ଆଖି ଆଗରେ ।

ସେ ସାମ୍ନାରେ ବାପାଙ୍କୁ ଠିଆ ହେବାର ଦେଖି ଚମକି ପଡିଲା । ମଟମଟ ଚାହିଁ ଦେବାରୁ ଦେଖିଲା ବେଶ୍ ଆଲୁଅ ହୋଇ ଯାଇଥିଲା । ସେ କ'ଣ ତା'ହେଲେ ବାପାଙ୍କୁ ସପ୍ନ ଦେଖିଲା । ଏତେ ପରିଷ୍କାର ଆଉ ଜିଅନ୍ତା କ'ଣ କେହି ଦେଖାଯାଏ ସପ୍ନରେ ? ସେ ଆଖି ବୁଜିଦେଲା ଅଳ୍ପ ସମୟ ପାଇଁ ଏବଂ ଉଠିଲା । ଦାଣ୍ଡ ବଖରାରେ କବାଟ ଝରକା ଫିଟେଇ ଦେଲା ।

ବାକ୍ସପତ୍ର ସବୁ ବନ୍ଧାଛନ୍ଦା ହୋଇ ଥୁଆ ହୋଇଥିଲା । ବାପାଙ୍କ ଫଟୋ ତାଙ୍କ ଟେବୁଲ୍ ଉପରେ ନଥିଲା । ତାଙ୍କ ଆଲମାରିରେ ବହିପତ୍ର କଲମଦାନି ବଡ ଆଲ୍‌ବମ୍ ଆଦି କିଛି ନଥିଲା । ସେ ସବୁ ବୋଧେ ଗୋଟାଏ ଛୋଟ ବାକ୍ସରେ ରଞ୍ଜନା ସଜାଡି ରଖି ସାରିଥିଲା । ସାଙ୍ଗରେ ନେବା ବାକ୍ସ ମେଳରେ ବାପାଙ୍କ କାନପୁରୀ କୁମ୍ଭୀର ଚମଡାର ଚମତ୍କାର ସୁଟ୍‌କେସ୍‌ଟା ମଧ ଥିଲା । ସେଥିରେ ବୋଧେ ବାପାଙ୍କ ନିଜ ଜିନିଷଯାକ ରହିଥିଲା ।

ଆଉ ଗୋଟାଏ ଟାବଲ ବି ଥିଲା । ରଞ୍ଜନା ବୋଧେ ଆଳୁମାକୁ ଅଥଚ ବ୍ୟବହାରରେ

ଜିନିଷପତ୍ର ସେଥିରେ ଭର୍ତ୍ତିକରି ଦେଇଥିଲା । କେତେବେଳେ ସେ ଏତେ କାମ କଲା ? ସେ ରାତିସାରା ଶୋଇ ନାହିଁ ନା କ'ଣ ?

ଏଥର ସେ ଦିଲ୍ଲୀରୁ ଭିଆଇପିର ମ୍ୟାଗ୍ନମ୍ ବାକ୍ସ ଆଣି ଆସିଥିଲା । ସେଇଟା ଚକ ଉପରେ ଗଡିଯାଏ । ଭାରି ସୁନ୍ଦରଟାଏ । ସେଇଟାରେ ନିର୍ମଳର ଲୁଗାପଟା ସବୁ ରହି ଆହୁରି ଯାଗା ବଳକା ରହିଥିବ । ଏକାଠି କାନପୁର ଯାଉଥିଲେ ସମସ୍ତଙ୍କ ଜିନିଷ ସେଥିରେ ଆସି ଯାଇଥା'ନ୍ତା ।

ରଞ୍ଜନା ଶୁଦ୍ଧ ଶ୍ରାଦ୍ଧ ପରେ ବାପଘରକୁ ଯିବ ବୋଲି ଆଗରୁ କହି ଆସିଛି । ସେଥିପାଇଁ ଏ ଢାବଲରେ କ'ଣ ସବୁ ସଜିଲ କରି ରଖି ଥାଇପାରେ । ଆଉ ରହିଲା ସେ ବଡ ଟ୍ରଙ୍କଟା । ମନ୍ଦ ନୁହେଁ । ଯିବାଆସିବା, ଛେଚ଼କରା କରିବାକୁ ବେଶ୍ ହେଇଚି । ସେଇଟା ରଞ୍ଜନା ତା' ବାପ ଘରୁ ଆଣିଥିଲା । ସେଇ ନିଜେ ସବୁବେଳେ ତାକୁ ବାପଘର ଗଲାବେଳେ ନେଇଯାଏ । ଏବେ ସେଇଟା ଟିକେ ପୁରୁଣା ଘଷରା ହୋଇ ଗଲାଣି ।

ୟା'ପରେ ବେଡିଂ ଖଣ୍ଡ ସଜିଲ୍ କରିଦେଲେ ହେଲା । ଯାତ୍ରା ପାଇଁ ସବୁ ଠିକ୍ ଠାକ୍ ତା'ହେଲେ ହେଇଗଲା । ରଞ୍ଜନା ଯିବ ଦଶଟାରେ । ନିର୍ମଳର ଗାଡି ଟାଇମ୍ ଏଗାରଟା ପନ୍ଦର । ଏକା ସାଙ୍ଗେ ସବୁ ନେଇ ଷ୍ଟେସନ୍ ଚାଲିଗଲେ ସୁବିଧା ।

ବାପାଙ୍କ ଆଲମାରି, ଖଟ, ଚୌକି, ଟେବୁଲ୍ ସେ ସିଡି ପାଖ ଘରେ ପୂରେଇ ତାଲା ପକେଇ ଦେଲେ ବାକି ଭଡା ଲାଗିଯାଇ ପାରିବ ।

ଏଣିକି ଏଠିକି ରଞ୍ଜନା, ବବ୍‌ଲୁ ବୋଧହୁଏ ଆସିବେ ନାହିଁ । କାହିଁକି ଆସିବେ ? କେବଳ ନିର୍ମଳ ଆସି ଗୋଟାଏ ଘେରା ବୁଲି ଦେଇ ଯାଉଥିବ । ବଗିଚାର ଗଛମାନଙ୍କୁ ଚାହିଁ ଦେଉଥିବ । ଘର ବାହାରୁ ଏ ବଖରାମାନଙ୍କୁ ଚାହିଁ ଦେଉଥିବ । ଭଡା ଟଙ୍କା ନେଇ ରଞ୍ଜନା ହାତକୁ ବଢେଇ ଦେଉଥିବ ।

ସ୍ମୃତି ଆସ୍ତେ ପାତଳ ଧରିଯିବ । ଗତ କାଲି ରାତିଠୁ ଆଜି ସକାଳକୁ ତାକୁ କେତେ ହାଲୁକା ଲାଗିଲାଣି ।

ରଞ୍ଜନ ଧଡପଡ ହୋଇ ଉଠିପଡିଲା । ଦାଣ୍ଡ ବଖରାକୁ ଆସି ନିର୍ମଳକୁ ଚାହିଁ ଅଳ୍ପ ହସି କହିଲା, "ଏ ସବୁ ରାତିରେ ନ କରିଥିଲେ ଏବେ କୋଉଠୁ ସମୟ ମିଳିଥା'ନ୍ତା – ଚାଲ, ସବୁ କାମ ସହଜ ସାରି ସଜହେଲେ ସିନା ଯିବା । ମୁଁ ତମ ପାଇଁ ଚା କରି ଆଣୁଛି ।"

ନିର୍ମଳ ତେଣିକି ଖୁବ୍ ସହଜ ବୋଧ କଲା । ସ୍ୱାଭାବିକ ଭାବରେ ଚଳପ୍ରଚଳ କଥାବାର୍ତ୍ତା । ବବ୍‌ଲୁ ସାଙ୍ଗରେ ଗେଲ ଗୌରବ ହେଲା । ଗଳା ଖେଚେଡି ସାଙ୍ଗକୁ ସଜବହି ଆଣି ଖୋଇଦେଲା ରଞ୍ଜନା ଆଠଟା ବେଳକୁ । ସେ ଆଗରୁ ଯୋଜନା କରି ରଖିଥିଲା । ଦହି ବସେଇଥିଲା, ମୁଗଡାଲି ଚାଉଳ ସଜିଲ କରିଥିଲା ।

ରଞ୍ଜନା ଖୁବ୍ ହିସାବୀ । ନହେଲେ କ'ଣ ନିର୍ମଳର ସଂସାର ଚଳି ପାରନ୍ତା ? ସାଢେ ନଅଟାକୁ ଗାଡି ଆସି ପହଞ୍ଚିଲା । ଜିନିଷ ସବୁ ଚଢିଗଲା । ତା'ର ବଡ ଭିଆଇପ ଏବଂ ବାପାଙ୍କ କୁମ୍ଭୀର

ଚମଡା ସୁଟ୍‌କେସ୍‌କୁ ରଞ୍ଜନା ଡିକିରେ ନ ରଖି ପଛ ସିଟ୍‌ରେ ଠିଆକରି ରଖିଦେଲା । ବାକି ଜାଗାରେ ସେ ଆଉ ବବ୍‌ଲୁ ବସିଗଲେ । ଆଗ ସିଟ୍‌ରେ ନିର୍ମଳ ।

ନିର୍ମଳ କୃତକୃତ୍ୟ ବୋଧ କଲା ।

ଘରେ ତାଲା ପକେଇ ଆସିଲା ବେଳକୁ ଦୀର୍ଘଶ୍ୱାସଟାଏ ତା' ମନକୁ ବୁକୁ ଭିତରୁ ବାହାରିଗଲା । ନିର୍ମଳ କେବଳ ଘଣ୍ଟାକୁ ଦେଖି ଛାଟ ଖାଇଲା ପରି ଆସି ଗାଡିରେ ବସିଗଲା ।

ଦଶ ବାର ମିନିଟ୍‌ର ରାସ୍ତା । ତେବେ ଅଫିସ୍ ସମୟ । ଭାରି ଭିଡ । ବାଟଁକାଟି ଷ୍ଟେସନରେ ପହଞ୍ଚିଲା ବେଳକୁ ରଞ୍ଜନାର ଗାଡି ପାଇଁ ମାତ୍ର ପାଞ୍ଚମିନିଟ୍ ସମୟ ଥାଏ ।

ତେବେ ଧାଁ ଦଉଡ ଭିତରେ ନିର୍ମଳ ଶୁଣିଲା ଯେ, ଗାଡି ପନ୍ଦର ମିନିଟ୍ ଲେଟ୍‌ରେ ଆସିବ । ସେ ଟ୍ରଙ୍କ ଉପରେ ବସି ମୁହଁରୁ ଝାଳ ପୋଛିଲା । ରଞ୍ଜନା ବହି ଦୋକାନରୁ ଫିଲ୍ମ ଫେୟାର ଭଳି ଦି'ତିନି ଖଣ୍ଡ ଚିତ୍ର ମ୍ୟାଗାଜିନ୍ କିଣି ଆଣିଲା । ନିର୍ମଳକୁ ଖଣ୍ଡେ ଯାଚିଲା । ରଞ୍ଜନା ଡାବଲ ଉପରେ ବସି ପତ୍ର ଲେଉଟାଉଥାଏ । ଆଗରେ ନୂଆ ଭିଆଇପି ଓ କୁମ୍ଭୀର ଚମଡାର ସୁଟ୍‌କେସ୍ ପୋଛାପୋଛି ହୋଇ ଚକ୍‌ଚକ୍ କରୁଥାଏ ।

ବହୁଲୋକ ବାପାଙ୍କ ସେ ବାକ୍ସଟାକୁ ଚାହିଁ ଚାହିଁ ଯାଉଥା'ନ୍ତି ଦେଖି ନିର୍ମଳ ନିଜକୁ ବେଶ୍ ଦାମୀ ଦାମୀ ମନେ କରୁଥାଏ । ଲାଇନ୍ କ୍ଲିଅର ହୋଇ ଗାଡି ଆସିଗଲା । ନିର୍ମଳ ବବ୍‌ଲକୁ କାଖ କରି କୁଲିକୁ ଦେଖେଇ ଦେଲା ଟ୍ରଙ୍କ ଆଉ ଡାବଲ ।

ରଞ୍ଜନା ନିର୍ମଳ ଆଡେ ନ ଚାହିଁ କହିଲା –

"ନା, ନା ସେ ଭିଆଇପି ଆଉ ଚମଡା ସୁଟ୍‌କେସ୍ ଉଠା ।"

ନିର୍ମଳ ଆନମନା ହୋଇ କହିଲା, "ଆରେ ବାପାଙ୍କ ବାକ୍ସରେ ବାପାଙ୍କ ଜିନିଷପତ୍ର ଫଟୋ ଆଦି ତମେ ନେଇ କ'ଣ କରିବ ? ଆଉ ସେ ଭିଆଇପିରେ ମୋର ଜାମାପଟା ଅଛି ପରା ।"

ରଞ୍ଜନା ରେଳ ଡବା ଆଡେ ଚାହିଁ କହିଲା, ସେ ଚମଡା ସୁଟ୍‌କେସ୍‌ରେ ବବ୍‌ଲୁର ଜିନିଷ ଆଉ ଭିଆଇପିରେ ମୋର ଲୁଗାପଟା ଅଛି ।

ରେଳ ଉପରକୁ ଜିନିଷ ଉଠିଲା । ରଞ୍ଜନା ଉଠିଲା । ବବ୍‌ଲୁକୁ ନିର୍ମଳ ପାଖରୁ ନେଇ ସେ ଗୋଟିଏ ସାଇଡ୍ ସିଟ୍‌ରେ ବସିଗଲା । ନିର୍ମଳ ଉଠିଲା ବେଳକୁ କହିଲା, "ବାହାରେ ଜିନିଷ ଅଛି, ତୁମେ ଝରକା ପାଖକୁ ଚାଲିଆସ ।"

ନିର୍ମଳ ଉପରେ ସାରା ରେଳଟା ବୋଝ ମତେଇ ହୋଇ ଯାଉଥିଲା । ସେ ଝରକା ପାଖକୁ ଯାଇ ରଞ୍ଜନାକୁ ପଚାରିଲା, "ବାପାଙ୍କ ଜିନିଷ କୋଉଠି ରହିଲା ?"

"ସବୁ ସେ ଡାବଲ୍‌ରେ ରଖି ଦେଇଛି । ପୁରୁଣା ଜିନିଷ ତ, ଖୁବ୍ ଯତ୍ନରେ ଗୋଟାଏ ପାଖକୁ ସଜାଡି ରଖିଦେଇଛି ।"

ସେଥିରେ ଆଉ କ'ଣ ଅଛି ?

ସେମିତି କିଛି ଦାମୀ ଜିନିଷ ନାହିଁ । ତୁମର ଚପଲ, ବବ୍‌ଲୁର ଭଙ୍ଗା ଖେଳନା, ପୁରୁଣା

ଯୋଟା, ମୋର ହଳେ ଚପଲ, ଆଉ ଏମିତି ଆଲୁମାଲୁ ଲୁଗାପଟା ଅଛି ।"

ନିର୍ମଳ ବୋଧହୁଏ ବୋମା ଫୁଟିଲା ପରି ଗର୍ଜି ଉଠିଥାନ୍ତା । କିନ୍ତୁ ତା' ମୁହଁ ଫଣ ଫଣ ହୋଇ ଉଚ୍ଛୁରି ପଡିଲା । ଆଖି ଟରାଟି ହୋଇଗଲା । ସେ ରେଳ ଝରକାର ରେଲିଂକୁ ବୋଧେ ଉପାଡି ଆଣିଥାନ୍ତା । କିନ୍ତୁ ହାତ ମୁଠା ମୁଠା କରି ଦାନ୍ତ ଜାକିନେଲା ।

ରଞ୍ଜନା ଖୁବ୍ ଅବିଚଳିତ ଭାବେ କହିଲା, "ମୁଁ ଜାଣେ ତୁମେ ଭାରି ସେଣ୍ଟିମେଣ୍ଟାଲ । ସେଥିପାଇଁ ବାପାଙ୍କ ବଡ ଫଟୋଟା ତୁମ ମଠାଜାମା ଭିତରେ ଟ୍ରଙ୍କରେ ରଖିଦେଇଛି । ସେଇଟା ଢାବଲରେ ରଖି ଦେଲା ନାହିଁ ତ ! ଜାଗା ନଥିଲା ।"

ରେଳ ଘୁଞ୍ଚିବା ଆରମ୍ଭ ହେବା ଦେଖି କହିଲା, "କାନପୁରରେ ଦେହ ପା'କୁ ଜଗି ଚଳୁଥିବ । ଆଉ ଶୁଣ, ଏ ଯେଉଁ ପୁରୁଣା କମ୍ବୀର ଚମଡାର ସୁଟ୍‌କେସ୍‌ଟା ନୁହେଁ, ଏଇଟା ଏଇଠୁ ଦେଖି ବାପା ଆମ ଘରେ ଯାଇ କେତେଥର ପ୍ରଶଂସା କରିଛନ୍ତି । ମୁଁ ଏଇଟା ତାଙ୍କୁ ଦେଇଦେବି ଭାବିଛି । ତୁମେ କିଛି ଖରାପ ଭାବିବ ନାହିଁ ତ ! ବାପା ଭାରି ଖୁସି ହେବେ ।"

ନିର୍ମଳ ଆଖିର ନିଆଁରେ ବୋଧହୁଏ ରେଳଟା ସାରା ଜଳି ଯାଇଥାନ୍ତା । ନିର୍ମଳ ନିଜେ ନିଜକୁ ବୋଧେ ନିଆଁ ଲଗେଇ ଦେଇଥା'ନ୍ତା ।

କିନ୍ତୁ ଟ୍ରଙ୍କ ଉପରେ ସେ ମୁହଁ ଘୋଡେଇ କେବଳ ବସି ପଡିଲା । ଆଖିରୁ ନିଆଁ ନୁହେଁ ତ, ପାଣିଗୁଡା, ଡବ ଡବ ଝରିଗଲା ।

"ଆରେ କାନ୍ଦୁଚୁ କ'ଣ ? – ମାଇଚିଆଟା ।"



# ପିଣ୍ଡଦାନ

ମୁହଁସଞ୍ଜ ବେଳଟା ମାଡି ମାଡି ପଡୁଥିଲା । ରାସ୍ତାଘାଟ ନିକାଞ୍ଚନ । ଗଛ ଡାଳରେ ପକ୍ଷୀ ବି ଜବ୍‌ଦି ଯାଇଥିଲେ ।

ରିକ୍ସାବାଲା ଡରିଲା ଡରିଲା ପରି ଗାଡି ଚଳଉଥିଲା । କ'ଣଟାଏ ଭୟାନକ କବନ୍ଧ ପରି ସତେବା ଓହଳି ରହିଥିଲା ଆକଶରୁ ।

ସିଦ୍ଧନାଥ ସକାଳୁ ସକାଳୁ ଖବର ପାଇ କାଠ ପାଲଟିଗଲେ । ତୁଣ୍ଡରୁ କଥା ବାହାରିଲା ନାହିଁ । ଘରେ ସ୍ତ୍ରୀଙ୍କୁ କେବଳ କହିଲେ – "ଭାରି ଜରୁରୀ । ମୁଁ ଗାଁକୁ ଯାଉଛି । ପିଲାଙ୍କୁ ସମ୍ଭାଳି ରଖିଥିବ ।"

ଗାଁକୁ ଯିବାକଥା ସେ ହଠାତ୍ ବିଶ୍ୱାସ କରିପାରିଲେ ନାହିଁ । କିନ୍ତୁ ସିଦ୍ଧନାଥଙ୍କ ମୁହଁକୁ ଚାହିଁ କିଛି ପଚାରି ବି ପାରିଲେ ନାହିଁ ।

ସିଦ୍ଧନାଥ ଖଣ୍ଡେ ଝୋଲା କାନ୍ଧରେ ପକେଇ ବାହାରି ଆସିଲେ । ବସ୍‌ରେ ଆସୁଥିବା ବେଳେ ରହି ରହି ତାଙ୍କ ଦେହ ଥରି ଉଠୁଥିଲା । ସେ ବାରମ୍ବାର ଗୋଟିଏ ବିକଟାଳ ଦୃଶ୍ୟକୁ ତାଙ୍କ ଅନିଚ୍ଛା ସତ୍ତ୍ୱେ ମନେ ମନେ ଦୋହରାଉଥିଲେ ।

ଭୋବନୀ ଗନ୍ତାୟତ କିଛି ଏମ୍‌ତି ସେମ୍‌ତି ଲୋକ ନୁହନ୍ତି । ତାଙ୍କୁ ପୁଣି ଲୋକେ ଦିନବେଳଟାରେ ରାସ୍ତା ଉପରେ ହାଣି ପକେଇଲେ । ସେ କୁଆଡେ ବିକଳରେ ଧାଉଁଥିଲେ । ତାଙ୍କୁ ସେମାନେ ଗୋଡେଇ ଗୋଡେଇ ହାଣିଦେଇ ଯାଉଥିଲେ ।... ଶେଷକୁ ମୁଣ୍ଡ ଗଣ୍ଡି ଦି'ଗଡ କରିଦେଲେ !...

ଇସ୍ ! ସିଦ୍ଧନାଥ ପୁଣି ହାତ ମୁଠାମୁଠା କରି ଝାଳେଇଗଲେ ।

ରିକ୍ସା ବାଙ୍କ ମୋଡିଲା ।

ଛାଇ ଅନ୍ଧାରରେ ତାଙ୍କ ଘର ସାମ୍ନାରେ ବହୁଲୋକ ଠିଆ ହୋଇଥିବାର ଦେଖାଗଲା । ସେ ରିକ୍ସାକୁ ବିଦା କରିଦେଇ ପାଦ ବଢେଇ ପାରୁ ନଥା'ନ୍ତି । ତାଙ୍କ ଗୋଡଆଡୁ ଶୀତକଣ୍ଟା ମାରି

ଆସୁଥାଏ । ଜିଭ ଭିଡି ନେଉଥାଏ ଶୋଷରେ ।

ତାଙ୍କୁ ଓହ୍ଲେଇବାର ଦେଖି କେତେଜଣ ତାଙ୍କ ଆଡକୁ ଧାଇଁ ଆସିଲେ । ଦେଖୁ ଦେଖୁ ସମସ୍ତେ କୁହାକୁହି ହେଲେ – "ସିଦ୍ଧନାଥ ଗନ୍ତାୟତ ଆସିଗଲେ, ସିଦ୍ଧନାଥ ଆସିଗଲେ ।"

ସମସ୍ତଙ୍କ ଦୃଷ୍ଟି ତାଙ୍କ ଉପରେ ।

ଦୁଆର ମୁହଁରେ ଖଣ୍ଡେ ଚୌକିରେ ପୁଲିସ୍ ଇନିସ୍‌ପେକ୍ଟର । ଘର ଚାରିଆଡେ କନଷ୍ଟବଳ ପହରା । ସିଦ୍ଧନାଥ ପହଞ୍ଚିବାକୁ ଇନିସ୍‌ପେକ୍ଟର ଠିଆ ହୋଇପଡିଲେ ।

"ଆପଣ ସିଦ୍ଧନାଥ ଗନ୍ତାୟତ ?"

"ଆଜ୍ଞା !"

"ଆମେ ଆପଣଙ୍କୁ ଓ୍ୟାର୍‌ଲେସ୍ ପଠାଇଥିଲୁ ।"

"ହଁ, ସେଠାର ଥାନା ବାବୁ ମୋତେ ଖବରଦେଲେ ।"

ପଡିଶାରୁ କେହି ଜଣେ ବେତ ଚୌକିଟିଏ ଆଣି ଥୋଇଲା । କେହି ଜଣେ କହିଲା "ବସନ୍ତୁ" ।

ଇନିସ୍‌ପେକ୍ଟର କହିଲେ "ବସନ୍ତୁ" ।

"ଭୁବନେଶ୍ୱର ଗନ୍ତାୟତ ଓରଫ୍ ଭୋବନୀ ଗନ୍ତାୟତ ଆପଣଙ୍କ ବାପା !"

"ଆଜ୍ଞା !"

"ତାଙ୍କ ହତ୍ୟା ବିଷୟରେ ଆପଣ କ'ଣ କାହାକୁ ସନ୍ଦେହ କରୁଛନ୍ତି ?"

ସିଦ୍ଧନାଥ ନୀରବ ରହିଲେ ।

ଜଣେ ମୁରବୀ ସେ ଗହଳି ଭିତରୁ କହିଲେ, "ଆଜ୍ଞା, ସେ ତ ସାତବର୍ଷ ପରେ ଏଇମାତ୍ର ଆସି ପହଞ୍ଚିଛନ୍ତି । ସେ କ'ଣ କହିବେ ?"

"ମୁଁ ଆପଣଙ୍କୁ ପଚାରି ନାହିଁ । ଆପଣମାନେ ଦୟାକରି ନୀରବ ରହିବେ ।"

ସିଦ୍ଧନାଥ ସ୍ୱୀକାର କଲେ – "ନିଧିକକା ଯାହା କହିଛନ୍ତି ତା' ଠିକ୍ । ପାରିବାରିକ ଗଣ୍ଡଗୋଳ ହେତୁ ମୋତେ ଅଲଗା ରହିବାକୁ ପଡିଥିଲା ।"

"ତା'ହେଲେ ଏ ବିଷୟରେ ଆପଣଙ୍କର କିଛି କହିବାର ନାହିଁ ?"

"ଆଜ୍ଞା ନା ।"

"ଆପଣ ନ ଥିବା ଅବସ୍ଥାରେ ଆମେ ଏ ଘର ସିଲ୍ କରିଛୁ । ଆପଣ ଥାଇ ତଦନ୍ତ ହେବ । ବର୍ତ୍ତମାନ ଆପଣ ଆମ ସହିତ ଥାନାକୁ ଆସି ଯାହା କହିବା କଥା କହିବେ । ସେ ସବୁ ରେକର୍ଡ ହେବ । ଆମେ ଯେଉଁମାନଙ୍କୁ ଗିରଫ କରିଛୁ ସେମାନଙ୍କୁ ଆପଣ ଚିହ୍ନଟ କରିବେ ଯା ଭିତରେ ଡାକ୍ତରମାଇନା ସରି ଯାଇଥିଲେ ଆପଣ ଲାସ୍‌ର ଦାୟିତ୍ୱ ନେଇ ପାରନ୍ତି । ଏ ଘରେ ଆଉ କେହି ରହନ୍ତି କି ?"

"ନା ।"

"ତା'ହେଲେ ଆସନ୍ତୁ । ଆରେ ରାଉତ୍, ତମେ ଦିହେଁ ଏଇଠି ଡ୍ୟୁଟିରେ ଥାଅ । ବନମାଳୀକୁ କହ ଜିପ୍ ଆଣିବ । ଆସନ୍ତୁ ସିଦ୍ଧନାଥ ବାବୁ ।"

ବିଷୟଟା ତ ଏତେ ସହଜରେ ଛିଣ୍ଡିବା କଥା ନୁହେଁ । ତଥାପି ସିଦ୍ଧନାଥ ସେତେବେଳକୁ କାଲୁଆ ହୋଇ ଯାଇଥା'ନ୍ତି । ଯାହାହେଲେ ବି କିଛି ଆଉ ପ୍ରତିକ୍ରିୟା ନାହିଁ ।

ବାଟରେ ଇନିସ୍‌ପେକ୍ଟର କହିଲେ, "ମୁଁ ଜାଣେ ସିଦ୍ଧନାଥ ବାବୁ, ଆପଣଙ୍କ ପାଇଁ ଏଇଟା ଗୋଟାଏ ବିରାଟ ସକ୍ । ତା' ବାହାରେ ଆପଣଙ୍କ ଖାନ୍‌ଦାନ୍, ଭୋବନି ବାବୁଙ୍କ ଇଜ୍ଜତ୍ ଏସବୁ ତ ପୁଣି ଆମକୁ ବିଚାର କରିବାକୁ ପଡୁଛି । ଆପଣ ପୁଣି ତାଙ୍କର କ୍ରିୟା କର୍ମ କରିବେ । ମୁଁ କାଲି ସକାଳୁ ଆପଣଙ୍କ ଘରେ ପହଞ୍ଚିବି । ସବୁ ଠିକ୍ ଠାକ୍ କରିଦେବା । ଲାସ୍ ଦେହରୁ ମିଳିଥିବା ଚାବି ଆଉ ମୁଦି ମୁଁ ରିପୋର୍ଟରେ ଦେଖାଇ ନାହିଁ । ଆପଣ ସରକାରୀ ଅଫିସର୍ । ଆପଣ ଜାଣନ୍ତି ସେଇଟା ଆମ ହେପାଜତ୍‌କୁ ଆସିଗଲେ ଆପଣଙ୍କୁ ଏ କେସ୍ ଫଇସଲା ନ ହେବା ଯାଏ ମିଳିବ ନାହିଁ । କିନ୍ତୁ ଚାବି ନ ହେଲେ ଆପଣ କେମିତି କ'ଣ କରିବେ ? ସେଥିପାଇଁ ମୁଁ ଏବେ ଥାନାରୁ ଆପଣଙ୍କୁ ଦେଇଦେବି । ଆଉ କାଲି ବାକି ସବୁ ଠିକ୍ କରିଦେବା ।"

ସିଦ୍ଧନାଥ ସେ ଝଡ ବତାସି ଭିତରେ ବି ଇନ୍‌ସପେକ୍ଟରଙ୍କ ଇଙ୍ଗିତ କିଛି ବୁଝିଗଲେ । ମୁହୂର୍ତ୍ତ, ମୁହୂର୍ତ୍ତର ବୋଝ ଉଠେଇଲାବେଳେ କାଲି କଥା ତ କାହିଁ କେତେ ଦୂର । ସେତେବେଳେ ଦେଖିବା ।

ସିଦ୍ଧନାଥ କେବଳ ଇନ୍‌ସପେକ୍ଟରଙ୍କୁ ଚାହିଁଲେ । ଆଖିରେ ବୋଧେ ପ୍ରତିବାଦ ନଥିଲା ।

ସିଦ୍ଧନାଥ ଫେରିଲା ବେଳକୁ ଢେର୍ ରାତି ।

ଦୁଆର ମୁହଁ କୋଳପ ଫିଟେଇଲା ବେଳକୁ କଷ୍ଟ ହାତରେ ପଡୁ ନଥାଏ । ସିଲ୍ ଭାଙ୍ଗିବାରୁ କିଏ ଗୋଟାଏ କ'ଣ କାଗଜ ଦେଖାଇ ତାଙ୍କ ଦସ୍ତଖତ୍ ନେଇଗଲା ।

ପୁରୁଣା ଗୋବବସା ପଥର ପରି କବାଟ ରଟ୍‌ରଟ ଡାକି ଫିଟିଲା ।

ସିଦ୍ଧନାଥ ଭିତରକୁ ପାଦ ବଢେଇଲେ ।

ଗୋଟାଏ ପଟେ କଳରବ କରି ଫଡ୍‌ଫଡ୍ ଡେଣାଝାଡି ପଶି ଆସୁଥିବା ଗୁଡିଏ ଅବୋଧ ସ୍ମୃତି । ଆରପଟେ ଅଖା ଭିତରେ ଥଲ୍‌ଥଲ୍ କରୁଥିବା ନୀରବ କବନ୍ଧ, ଟଳମଳ କଟାମୁଣ୍ଡ !!

ଦି'ଖଣ୍ଡ ବାଉଁଶରେ ଦଉଡି ବନ୍ଧା ହୋଇଥିବା ସେ ମେଦପିଣ୍ଡ ସେଦିନ ସକାଳ ପର୍ଯ୍ୟନ୍ତ ଭୋବନି ଗନ୍ତାୟତ, ଜିଦ୍‌ଖୋର୍, ପ୍ରତାପୀ ଭୂମି ମାଲିକ – ଏ ଘରଦ୍ୱାର, ବାଡିବଗିଚାର ଏକଛତ୍ର ଅଧିପତି !

ଅଗଣାରେ ଶବାଧାର ଥୋଇଦେଇ ସେମାନେ ଚାଲିଗଲେ । ରାତି ଅଧରେ ଅନ୍ଧାର ଅଗଣା ଅପରିଚିତ ମନେ ହେଉଥିଲା ।

ସିଦ୍ଧନାଥ ବୁଲି ଚାହିଁଲା ବେଳକୁ ଲଣ୍ଠନ ହାତରେ ନିଧିକକା ଆଉ ତିନିଜଣ ସାଇଲୋକ ଗାମୁଛା ଘୋଡେଇ ହୋଇ ନିଃଶବ୍ଦ ପହରି ଆସୁଥିଲେ ।

ଅଗଣାରେ ଚାରିଟା କମଳା ଗଛରୁ ଆଉ ଗୋଟିଏ ବି ନଥିଲା । ଖାଁ ଖାଁ ଖୁଆଡ ଘରେ

କେହି କୁଆଡେ ନଥିଲେ । କମଳା ଗଛଟାଏ ଥିଲେ ବା କ'ଣ ଅଧିକ ହୋଇଥାନ୍ତା ।

"ବୁଝିଲୁ ପୁଅ ସିଦ୍ଧୁ..."

ଅନ୍ଧାର ହଠାତ୍ କଥା କହିଲେ ଭାରି ଭୟଙ୍କର ଶୁଭେ । ଆଉ ପୁରଗୁ ଶବ୍ଦ ଗୁମୁରି ଆସିଲା ପରି ଶୁଭେ ।

ପିଣ୍ଡାରେ ଗୋଟାଏ ଖୁଣ୍ଟକୁ ଆଉଜି ମୁଣ୍ଡରେ ଠେକା ଭିଡିଥିବା ନିଧିକକା ବସିଗଲେ । ତଳକୁ ଚାହିଁ କହିଲେ –

"ଭୋବନି କି ଧର୍ମ ଛାଡିଗଲା । ତମକୁ ଏ ଘରୁ ଅନ୍ତର କଲା ଦିନୁ ଏ ଘରର ଶ୍ରୀ ତୁଟିଗଲା । ସେ ଯାହା ଅନାଚାର କଲା ତତେ ଆଉ କ'ଣ କହିବି । ଲୋକଙ୍କ ଖାଇବା ଭାତରେ ଧୂଳି ପକେଇଲା । ଭିଟାମାଟି ଛଡେଇ ନେଲା । କାହା ନାଁରେ ମାଲି ମକଦ୍ଦମା ନ କରିଛି ନୁହେଁ । ଆମ ବାଡିରୁ ଖଣ୍ଡେ ବାଡ ପକେଇ ମାଡି ବସିଲା । ସବୁବେଳେ ଦଶ-ପଚିଶ ବାଉରୀ ଟୋକାଙ୍କୁ ଠେଙ୍ଗା କଟୁରି ଧରେଇ ପାଖରେ ରଖିଲା । ଶେଷକୁ ସେଇମାନେ ଏଇଆ କଲେ । ବନ୍ଧୁ ଲୋକଙ୍କ ନିଃଶ୍ୱାସ ପଡିଲା ।"

ସିଦ୍ଧନାଥ ଆରପାଖ ପିଣ୍ଡାରେ ଥକ୍କା ହୋଇ ବସିପଡିଲେ । ମୁଣ୍ଡକୁ ଦି'ହାତରେ ଚିପିଧରି ଆଖି ବୁଜିନେଲେ କିଛି ସମୟ । ଖୁବ୍ କ୍ଷୀଣ ସ୍ୱରରେ କହିଲେ –

"ଏବେ କ'ଣ କରିବା ନିଧିକକା, ତମେ କହ ।"

"ତୁ ନ ଆସିଥିଲେ କଥା ନିଆରା ହେଇଥାନ୍ତା । ଲୋକେ ଯେମିତି ଟାଟିକରି ଥିଲେ କେହି ଦୁଆର ମାଡି ନଥା'ନ୍ତେ । ଡାକ୍ତରଖାନାରୁ ଏ ଶବ ବି ଆସି ନଥାନ୍ତା ।... ହେଲେ ତୁ ଚିନ୍ତା କରନା । ଭୋବନି ମରିଗଲା ଉତ୍ତାରୁ ଆଉ ଅହନ୍ତା ଗୋଟାଏ କ'ଣ ? ତା' କ୍ରିୟାକର୍ମ କ'ଣ ନ ହେଇ ରହିଯିବ ? ତୁ କୋଲପ ଫିଟେଇ ଘର ଟିକେ ତଦାରଖ କରିପକା । ମୁଁ ଯାଉଛି ମାଲ୍‌ଭାଇ ଯୋଗାଡ କରିବାକୁ । ଆଜି ରାତିରେ ସତ୍କାର କରିଦେବା, ନ ହେଲେ ବାସିମଡା ହେଇଯିବ । କିଛି ପଇସା ଯୋଗାଡ କରିଥା, ଖର୍ଚ୍ଚ ହବ ।"

"ଠିକ୍ ଅଛି, ନିଧିକକା ତମେ ମତେ ଯେମିତି କହିବ, ସେମିତି ହବ ।"

ଏଣିକି ବୋଧେ ସିଦ୍ଧନାଥ କୌଣସି ଘଟଣାରେ ଆଉ ବିଚଳିତ ହେବାର ଅବସ୍ଥାରେ ନଥିଲେ ।

ଅଗଣାରେ ପଡିଥିବା ସେ ମେଦପିଣ୍ଡ ସତେବା ତାଙ୍କ ପାଇଁ ଏକ ଅପରିଚିତ ବସ୍ତୁ । ଘରେ, ବାହାରେ ଜମି ରହିଥିବା ଅନ୍ଧାର, ନିଜ ନିଃଶ୍ୱାସକୁ ଶୁଣିପାରୁଥିବା ସେ ନୀରବତା, ପଣ୍ଡା ଉପରେ ସାରା ଅତୀତର ଆକାଶକୁ ଦୀପ ଟେକିଥିବା ସେ ଲଣ୍ଠନ, ସିଦ୍ଧନାଥଙ୍କ ସତ୍ତା ସବୁ ଶୋଷି ନେଉଥିଲେ ଚାରିଆଡୁ । ସେତିକିବେଳେ ଯାହାକିଛି ଅଲୌକିକ ତାଙ୍କ ଆଖି ଆଗରେ ଘଟି ଯାଇଥିଲେ ସେ ତାକୁ ବିଶ୍ୱାସ କରିଥା'ନ୍ତେ ।

ସେ ଅମାପ ଗଭୀର ମୁହୂର୍ତ୍ତରେ କଟାମୁଣ୍ଡ ଯୋଡି ହୋଇ ଯାଇଥିଲେ ମଧ୍ୟ ସେ ଅଖା ଚିରି

ଭୋବନି ଗନ୍ତାୟତ ବାହାରି ଆସିଥିଲେ ସିଦ୍ଧନାଥ ମୂର୍ଚ୍ଛା ଯାଇ ନଥା'ନ୍ତେ ।

ସେପରି କିଛି ହେଲା ନାହିଁ ।

କିନ୍ତୁ ସିଦ୍ଧନାଥଙ୍କର ମନେହେଲା ଯେ ଘରିଆଡୁ ଆଗରୁ, ପଛରୁ, ତଳୁ, ଉପରୁ କ'ଣଟାଏ ତାଙ୍କୁ ନିଘଞ୍ଚ ଗୁନ୍ଧି ରଖିଥିଲା । କେହିଜଣେ ସେଇଠି ବିଚରଣ କରୁଥିଲା । ହୁଏତ ଆଖି ବୁଜି ହାତ ହଲେଇଲେ ତା' ଦେହରେ ବାଜିଯିବ । ହାତ ଆଞ୍ଜୁଳା କରିଦେଲେ ଓଳିପାଣି ପରି ତା' ରକ୍ତ ନିଗିଡି ଆସିବ, ଉଚ୍ଛୁଳିଯିବ ଆଞ୍ଜୁଳା ।

ସିଦ୍ଧନାଥ ଦେହସାରା ଝିଙ୍କକାଠି ପରି ଗୁମ ଟାଙ୍କୁରି ରହିଥାଏ । ଆଖିର ପଲକ ପଡୁ ନଥାଏ ।

ସତେ କ'ଣ ଭୋବନି ଗନ୍ତାୟତ ହାଣଖାଇ ସେଇଠି ଶୋଇଥିଲେ । ଯାହାଙ୍କଠାରୁ ଜୀବନସାରା ପଦେ ଆଦର କଥା ସିଦ୍ଧନାଥ ଶୁଣି ନାହାନ୍ତି, ଯେ ତାଙ୍କୁ ଦେଖିବାମାତ୍ରେ ବାଟ ଭାଙ୍ଗି ଘଲି ଯାଉଥିଲେ । କୁକୁରକୁ ଭାତ ଦେଲାପରି ସେ ସିଦ୍ଧନାଥଙ୍କ ପଢାଖର୍ଚ୍ଚ, ବାଟଖର୍ଚ୍ଚ, ତଳେ ଥୋଇଦେଇ ଘଲି ଯାଉଥିଲେ । କାନ୍ଥବାଡକୁ କହିଲା ପରି କହୁଥିଲେ – "ଶୁଣ୍ ସିଧିଆ, ତୁ ମୋ' ପାଖକୁ ଆସିବା ଦର୍କାର ନାହିଁ । ତୁ ପାରିଲେ ତୋ' ପରିବାର ପୋଷିବୁ । ତୁ ମୋ' ଘରେ ଜନ୍ମ ହେଇଛୁ, ସେଇ ଯଥେଷ୍ଟ । ଟଙ୍କା ଉଠେଇ ନେ । ଯା' କୁଆଡେ ଯାଉଛୁ ପାଠ ପଢିବାକୁ ।"

ସିଦ୍ଧନାଥଙ୍କ ହାତ ମୁଠା ମୁଠା ହେଇ ଯାଉଥାଏ । ଭିତରୁ ନିଆଁଟାଏ ଜଳି ଉଠୁଥାଏ ଆଖି ପର୍ଯ୍ୟନ୍ତ । ଦେହ ଝାଳେଇ ଯାଉଥାଏ ।

ସାତ ବର୍ଷର ମା' ଛେଉଣ୍ଡ ପିଲା ଏଭଳି ବାପ ପାଖରେ ବଞ୍ଚିଗଲା ଏଇ ଯଥେଷ୍ଟ । ମରି ଯାଇଥିଲେ ମଲା ଚଢେଇବାକୁ ଫୋପାଡିଲା ପରି ଭୋବନି ଗନ୍ତାୟତ ତାକୁ କାନ୍ଥ ଡିଆଁଇ ଦେଇଥା'ନ୍ତେ ।

କିନ୍ତୁ କାହିଁକି ? – ଏ ବିରାଟ ପ୍ରଶ୍ନର ସମାଧାନ ସିଦ୍ଧନାଥଙ୍କ ପାଇଁ ନଥିଲା । ଏଣିକି ପାଇବାର ଆଶା ମଧ ଆଉ ରହିଲା ନାହିଁ । ତଥାପି ଦେଶାଘରର କୁଳାଘର ତାଙ୍କ ଉପରେ ପଥର ବୋଝପରି ମଡେଇ ହୋଇ ପଡୁଥିଲା । ଯେଉଁ ମୁହଁକୁ ସେ ଥରେ ହେଲେ ଭଲରୂପେ ଘହିଁ ନଥିଲେ, ସେଥିରେ ମୁଖାଗ୍ନି ଦେବାର ମୁହୂର୍ତ୍ତ ନିକଟେଇ ଆସୁଥିଲା ।

ପିଣ୍ଡାରେ ବସିପଡି ସିଦ୍ଧନାଥ ନିଜକୁ ସାଇଁଟିବାକୁ ଯତ୍ନ କଲେ । ତାଙ୍କ ମନରୁ କେମିତି କେଜାଣି ସବୁ ଭୟ, ସବୁ କ୍ରୋଧ, ସବୁ ମାନ-ଅପମାନ, ଘୃଣା ଓହ୍ଲେଇଗଲା । ନିଧିକକା ଆସିଲେ । ରାଧୁ ଡିଆଡି ଆସିଲେ । ମାଲଭାଇ ଆସିଲେ । କୋକେଇ ଉଠିଲା । ଘଟ ଥାପନା ହେଲା । ଖଇ କଉଡି ବୁଣାହେଲା ।

ଚିତାରେ ନିଆଁ ଲଗେଇଲା ପରେ ସେଇ ଧାସରେ ଦିନରାତି ଠିଆହୋଇ ରହିଲେ ସିଦ୍ଧନାଥ ଏକାଦଶାହ ଯାଏ । ଝାଉଁଳିଗଲେ । ଲଣ୍ଡା ମୁଣ୍ଡରେ ଗୁମାଲଟିଏ ଭିଡି ଅପରିଚିତ ଦେଖାଗଲେ ।

ମଝିରେ ଗୋଟାଏ ଦିନ ପାହାନ୍ତା ପହରରୁ ଯାଇ ପ୍ରେତକର୍ମ କଲାବେଳେ ଗନ୍ଧାହାଣ୍ଡିରେ

ଦୀପଜାଳି ତାକୁ ପାଣିରେ ଭସାଇ ଦେଲେ । ଆଣ୍ଠୁଏ ପାଣିରେ ପଶି ପୋଡଖୁଣ୍ଟାରେ ସେ ହାଣ୍ଡିକୁ ବାଡେଇ ଭାଙ୍ଗିଦେଲେ । ମାଟିହାଣ୍ଡି ଖପରା ହୋଇ ବୁଡିଗଲା । ଦୀପ ଲିଭିଗଲା ମୁହୂର୍ତ୍ତକରେ ।

ମନେହେଲା ଏମିତି ସବୁ ଦୀପ ଲିଭିଯାଏ । ସବୁ ଘଟ ଏମିତି ଭାଙ୍ଗିଯାଏ ।

ବାରଦିନ ପରେ ଘର ଖାଲି ହେଇଗଲା । ଗହଳି ଭାଙ୍ଗିଗଲା । ଟାଙ୍କ ପରିବା ସପ୍ତାହେ ପୂର୍ବରୁ ଆସି ସାରିଥିଲେ । ପିଲାଙ୍କୁ ସେ ପ୍ରଶସ୍ତ ଘର ଆଉ ଅଗଣା ବୋଧେ ଖୁବ୍ ଭଲ ଲାଗିଗଲା । ରନ୍ଧାଘର, ଶୋଇବାଘର କୁଅମୂଳ ସ୍ତ୍ରୀଙ୍କ ମନକୁ ପାଇ ଯାଇଥିଲା ।

କେବଳ ସିଦ୍ଧନାଥ ଅସୁସ୍ଥ ବୋଧ କରୁଥିଲେ ।

ସକାଳ ପହର ହୋଇଥାଏ । ନିଧିକଳା ଆସି ପହଞ୍ଚିଲେ । ଚକୁଳି, ଚା ଖାଇଲେ । "ସିଧୁ, ଗୋଟେ କଥା କହିବାରୁ ଆସିଲି । କଥା କ'ଣ କି ତୁ ତ' ଚାକିରିଆ । ଏଠି ରହିପାରିବୁ ନାହିଁ । ବର୍ଷକୁ ବର୍ଷ ଶ୍ରାଦ୍ଧ ବି କରିପାରିବୁ ନାହିଁ । ସେଥିପାଇଁ ମାସ ନ ପୂରୁଣୁ ଗୟାରେ ପିଣ୍ଡ ପକେଇ ଦିଅନ୍ତୁ ଯଦି ପିତୃଋଣ ଶୁଝିଯାନ୍ତା । ତୋ' ମା'ର ଅସ୍ଥି ପଚିଶବର୍ଷ ହେଲା ସେମିତି ପଡିଚି । ମୁଁ ଭୋବନି ଭାଇନାକୁ କେତେ କହିଲି, ଶୁଣିଲା ନାହିଁ ।"

ସିଦ୍ଧନାଥଙ୍କୁ କିଛି କହିବାର ନଥିଲା ।

"ଟା' ବାହାରେ ଗୟାରେ ପିଣ୍ଡଦେଲେ ପିତୃପୁରୁଷ ତାକୁ ପ୍ରତ୍ୟକ୍ଷରେ ପାଆନ୍ତି । ମୁଁ ଶୁଣିଚି, ଦେଖିନାଇଁ, ସେମାନେ ବେଳେବେଳେ ପ୍ରକଟ ହେଇଯାନ୍ତି । ମୁଁ ମୋ' ନନାଙ୍କ ଅସ୍ଥି ଗଙ୍ଗାରେ ବିସର୍ଜନ କରିବାକୁ ଯାଇଥିଲି । ଭୋବନି ଭାଇନା ଦଦେଇଙ୍କ ଅସ୍ଥି ନେଇ ଯାଇଥିଲା ଯୋଉବର୍ଷ ଟା'ର ତିନିବର୍ଷ ଉତାରୁ । ବିସର୍ଜନ କଲି । ଗୟାରେ ପିଣ୍ଡ ଦେଲି, ମାତ୍ର କିଛି ସେପରି ଘଟିଲା ନାହିଁ । ବେଳେବେଳେ ସେପରି ହୁଏ । ତୁ ଯଦି ଯିବୁ ଚଞ୍ଚଳ ଯୋଗାଡ କର । କାମ ବଢେଇଦେଲେ ଆଗକୁ ଜଞ୍ଜାଳ ନଥିବ ।"

ସିଦ୍ଧନାଥ ହିସାବ କଲେ ସମୟ, ବାଟଖର୍ଚ୍ଚ, ସେଠିକା ଖର୍ଚ୍ଚ । ସ୍ଥିର ହେଲା ଯେ ମଙ୍ଗଳବାର ଦିନ ସକାଳୁ ବାହାରିଯିବେ ମା' ବାପ ଉଭୟଙ୍କ ଅସ୍ଥି ବେକରେ ଓହଳେଇ । ଗଙ୍ଗାରେ ବିସର୍ଜନ କରିବେ, ଗୟାରେ ପିଣ୍ଡଦେବେ । ପ୍ରଥା ଅଛି ତ' ବହୁକାଳରୁ, ମାନିନେଲେ କ୍ଷତି କ'ଣ ? ୟା'ପରେ ତ ଆଉ କିଛି କରିବାର ନାହିଁ । ଏଇଟା ହିଁ ଶେଷ କୃତ୍ୟ ।

ପ୍ରୟାଗରେ ହେଉ ଅବା ଗୟାରେ, ଲଣ୍ଡା ମୁଣ୍ଡିଆ ଛେଉଣ୍ଡକୁ ଠଉରେଇବା ପାଇଁ ସେମାନଙ୍କୁ ସମୟ ଲାଗେ ନାହିଁ । ନାନା ବାହାନାରେ ତାକୁ ଜାଲରେ ପକେଇବାକୁ ବି ସମୟ ଲାଗେ ନାହିଁ । ସେ ସେତେବେଳେ ପରାସ୍ତ ଦେଖାଯାଉଥାଏ, କାଲୁଆ ପଡି ଯାଇଥାଏ । କୌଣସି ଦୁଃଖକୁ ଦୁଃଖ ବା ସୁଖକୁ ସୁଖ ମଣିବା ଅବସ୍ଥାରେ ସେ ନଥାଏ । ସବୁ କଥାକୁ କେବଳ, ଯୋଡିଏ କ୍ଳାନ୍ତ ଆଖି ଟେକି ଅନାଏ, ବୁଝି ବୁଝେ ନାହିଁ ।

ଅସ୍ଥି ବିସର୍ଜନ କରି ସିଦ୍ଧନାଥ ଗୟା ଷ୍ଟେସନରେ ପହଞ୍ଚିଲା ବେଳକୁ ତାଙ୍କର ପ୍ରାୟ ସେଇ ଅବସ୍ଥା । ସେଇଠି ଯେଉଁ ପଣ୍ଡା ଗୁମାସ୍ତାମାନେ ଥୋପ ରଖି ଜଗିଥା'ନ୍ତି, ତାଙ୍କଠୁ ମୁକୁଳିବା ସହଜ

ନୁହେଁ ।

ଓଡିଶା ନାଁ ଠିକଣା ଶୁଣିଲା ପରେ ଜଣେ ତାଙ୍କ ଡେଣାଧରି ଆଉ ଜଣକୁ ସମର୍ପି ଦେଲା । ସେ ଜଣକ ଥିଲା ଗୁମାସ୍ତା । ପଣ୍ଡା ପୁରୋହିତ ଅଲଗା । ସେମାନେ ଏତେ ବାଟ ଷ୍ଟେସନ୍‌କୁ ଆସନ୍ତି ନାହିଁ । ହଁ, ସେମିତି ରାଜାରାଜୁଡା ଯଜମାନ ଆସିଥିଲେ ଆଗରୁ ତାଙ୍କ ପାଖକୁ ଖବର ଦିଆଯାଇଥାଏ । ସେମାନେ ପାଟଯୋଡ ପିନ୍ଧି ହାଜର ରହିଥା'ନ୍ତି ।

ଗୁମାସ୍ତା ତାଙ୍କୁ ଗୋଟିଏ ଘୋଡାଗାଡିରେ ବସେଇଲା । ଅପର୍ଚ୍ଛନିଆ ଗାଡି । ପୁର୍‌କୁଟିଆ ଗନ୍ଧ । ସେ ଯେଉଁଠି ଯାଇ ଓହ୍ଲେଇଲେ ସେଇଟା ଗୋଟାଏ ପୁରୁଣା ଦି'ତାଲା କୋଠା । ବଡବଡ ପଥର ଖୁଣ୍ଟି । ପଥର ଚଟାଣ । ଖୁବ୍ ପୁରୁଣା ଖାନ୍‌ଦାନ୍, ସେହିପରି ପୁରୁଣା ବ୍ୟବସାୟ । ବାଟଘରଟି ମୁସାଫିର୍ ଖାନା ପରି ଖଣ୍ଡିଏ ଚୌକି, ଗୋଟିଏ ତକ୍ତା, ଗୋଟିଏ ବେଞ୍ଚ । ସେ ଯୋଉଠି ବସିଗଲା ।

ଅଗଣା ଆଡୁ ମାଲିକଙ୍କ ପାଟି ଶୁଭିଲା –

"ଆରେ ଓ ମିଶରବା କଉନ୍ ମୁଲକ୍ କେ କହିନ୍ ରେ ?"

"ଉରିସା, ପଣ୍ଡିତ୍‌ଜୀ ଜଗଦୀଶ ଧାମ୍‌କା ।"

ସାଲୁକନାରେ ଗୁଡିଆ ହୋଇଥିବା ହଳଦିଆ କାଗଜର ପାଞ୍ଜିବିଡା । ମାରବାଟିଆ ଖାତା ପରି ଲମ୍ବା । ତାକୁ ଧରି ଅଧାଡିଆ ମଣିଷଟିଏ ଆସି ଠିଆ ହେଲେ । ସେଇ ବୋଧେ ପଣ୍ଡା । ଘିଅ ଖିଆ ଗୋଟାଳ ଚେହେରା । ପାନଖିଆ ପାଟି । ଚକା ମୁହଁ ।

ସିଦ୍ଧନାଥ ହାତଯୋଡି ଠିଆହେଲେ ।

ପଣ୍ଡିତ୍‌ଜୀ ଗୁମାସ୍ତାକୁ ଚାହିଁଲେ । ଉଭୟ ଚାହିଁଲେ ସିଦ୍ଧନାଥଙ୍କୁ ପାଦଠୁଁ ମୁଣ୍ଡଯାଏ । ଗୁମାସ୍ତା ବୁଝିଗଲା ପରି କହିଲେ – "ଆରେ ପଣ୍ଡିତ୍‌ଜୀ ଆହି ଗଇନ୍ । ପାଓଲାଗି ହୋ ବାବୁ ।"

ସିଦ୍ଧନାଥ ନଇଁପଡି ସେ ଦିଗରେ ହାତ ବଢେଇଲେ ।

ପ୍ରସନ୍ନ ମୁଦ୍ରାରେ ପଣ୍ଡିତ୍‌ଜୀ ତାଙ୍କ ମୁଣ୍ଡ ଉପରେ ହାତ ବୁଲେଇଦେଇ ପଟାଖଟ ଉପରେ ଚକାପକେଇ ପାଞ୍ଜି ଫିଟେଇଲେ ।

"ଆପ୍‌କେ ସ୍ୱର୍ଗବାସୀ ପିତାକା ନାମ କ୍ୟା ବତାୟା ?"

"ଭୁବନେଶ୍ୱର ଗନ୍ତାୟତ୍ ।"

"ଆଚ୍ଛା ।"

ପତ୍ର ପରେ ପତ୍ର ଲେଉଟିଲା । ଗୋଟାଏ ଚିହ୍ନଠୁ ପୁଣି ଫେରି ଆସିଲା ମୂଳକୁ । ସିଦ୍ଧନାଥଙ୍କ ଶଙ୍କା ହେଉଥିଲା ତାଙ୍କ ବାପାଙ୍କ ନାଁ ଧର ଯଦି ସେ ପାଞ୍ଜିରେ ନ ମିଳେ ? – ନ ମିଳୁ, ନୂଆକରି ନାଁ ଚଢିବାରେ ଅସୁବିଧା କ'ଣ ?

କିନ୍ତୁ ସିଦ୍ଧନାଥ ଶୁଣିଛନ୍ତି ତାଙ୍କ ପିଲାଦିନେ ଯେ ବାପା ମା' ଦି'ଜଣ ଆସିଥିଲେ ଗୟା । ଏଠି ପିତୃ ଶ୍ରାଦ୍ଧ କରି ଫେରିବା ପରେ ସିଦ୍ଧନାଥ ଜନ୍ମ ହେଇଥିଲେ ।

"ହାଁ, ୟେ ରହି – ଭୁବ୍‌ନେସର୍ ଗାଁତତ୍, ବାପ୍ ପୀତବାସ୍ ଗାଁତତ୍, ଗାଓଁ ଲଛିପୁର, ୟହି

ହେ ନ ?"

"ଜୀ ହାଁ ।"

ପରମ ସନ୍ତୋଷରେ ଟହଟହ ପାନଖିଆ ହସ ।

"ଅରେ, ଯେ ତୋ' ଚିତ୍ରଗୁପ୍ତ କି ପଞ୍ଜି ହୈ । ଇହାଁ ନ ମିଲ୍‌ବେ କଇସେ ?" ଅବ୍ ଆପ୍‌କା ନାମ୍ ଚଢୋଗା ଇକ୍‌ତିଶ୍ ସାଲ୍‌କେ ବାଦ୍ ।"

ଠିକ୍ କଥା । ସିଦ୍ଧନାଥଙ୍କୁ ବର୍ତ୍ତମାନ ତିରିଶ ଚାଲିଛି ।

"ଅବ୍ ଆଇଏ ଯଜ୍‌ମାନା । ଆପ୍‌କୋ କମ୍‌ରା ଦିଖା ଦେତେ ହେଁ । ଅରେ ମିଶରବା ଯେ ତୋ' ନୌକୀର କର୍‌ତେ ହେଁ ନ, ଅଫ୍‌ସର୍ ହେଁ । ଇନ୍‌କା ନଉ ନମ୍ବର୍ ମେ ରଖିନେ କା ବନ୍ଦୋବସ୍ତ କର୍ ଦୋ ।"

ନ' ନମ୍ବର ବଖରା । ଗୋଟିଏ ପଙ୍ଖା, ଗୋଟିଏ ଲାଇଟ୍, ଗୋଟିଏ ଖଟ । ଛୋଟିଆ ବଖରାଟିଏ । ଝଟାଝଟି ହେଇ ବେଶ୍ ପରିଷ୍କାର । ଗଦି, ଚାଦର, ତକିଆ ଜଣେ ଆଣି ଦେଲା । ବାଲ୍‌ଟି ଲୋଟା ଆଣିଦେଲା । ରାତିରେ କ'ଣ ଖାଇବେ ବୁଝି ଦେଇ ଗଲା । ବେଶ୍ ବଢିଆ ତ ! ମନ୍ଦ କ'ଣ ?

କବାଟ ବନ୍ଦ କରିଦେଲେ ନିବୁଜ୍ ହାଣ୍ଡି ପରି ସେ ବଖରା । ଆଶ୍ଚର୍ଯ୍ୟ କଥା, ଖଟରେ ପଡୁ ପଡୁ ସିଦ୍ଧନାଥ ଖୁବ୍ ନିଶ୍ଚିନ୍ତ ବୋଧକଲେ । କୋଉଠି ପାଟିତୁଣ୍ଡ ନାହିଁ । ପୁରୁଣା ପଙ୍ଖାର ଅଳ୍ପ ଟିକିଏ ଆବାଜ୍ ବିଶେଷ ଅସୁବିଧା କରୁ ନଥିଲା । ମନେହେଲା ସିଦ୍ଧନାଥ ମୁଣ୍ଡ ଉପରୁ ଖୁବ୍ ବଡ ବୋଝଟାଏ ଓହ୍ଲେଇଗଲା । ରାତି ପାହିଲେ ସବୁ ଅଡୁଆ ଛିଣ୍ଡିଯିବ ।

ଏଇଭଳି ତାଙ୍କ ବାପା ମା' ବୋଧେ ଆସିଥିବେ । ଏଇଠି କୋଉଠି ରହିଥିବେ ।... ଆଚ୍ଛା ସେମାନେ ଏଇ ନ ନମ୍ବର ବଖରାରେ ଥିଲେ କି ଆଉ ? – କେଜାଣି ! ସିଦ୍ଧନାଥଙ୍କ ମନପ୍ରାଣ ଶରୀର ସ୍ଥିର ଲାଗୁଥିଲା । ତାଙ୍କୁ ବହୁକାଳ ଅନ୍ତେ ସତେ ବା କିଏ ଲାଳନ କରୁଥିଲା । କଥା କଥାକେ କୋଳେଇ ନେଉଥିବା, ଆଦର କରୁଥିବା, ଲୁହରେ ଓଦା ସରସର ଦୁଃଖିନୀ ନାରୀ ମୂର୍ତ୍ତିଟିଏ ତାଙ୍କର ମନେ ପଡିଲା । ପୁଣିଥରେ ମା' ବୋଲି ଡାକିବାକୁ ଇଚ୍ଛା ହେଲା । କିନ୍ତୁ କଥା କଥାକେ ଜଳି ଉଠୁଥିବା, ଦେଖିବା ମାତ୍ରେ ବାଡଉଥିବା, ଗର୍ଜୁଥିବା, ଦୁମ୍‌ଦୁମ୍ ଚାଲୁଥିବା, ଗୋଟାଏ ଭୁଷୁଣ୍ଡା ମଣିଷ ମନେପଡିଲା । ମନେପଡିଲା ବାରମ୍ବାର ଅଖା ଭିତରେ ଟଳମଳ ହେଉଥିବା କବନ୍ଧ ଓ କଟାମୁଣ୍ଡ । ଅସୁସ୍ଥ ଲାଗିଲା, ଡର ମାଡିଲା । ଇଚ୍ଛା ହେଲା ନାହିଁ ବାପ ବୋଲି ସମ୍ବୋଧିବାକୁ ।

ଏମିତି ଏମିତି ନିଆଁରେ ପାଣିରେ କିଛି ସମୟ ପହଁରିଲା ପରେ ସିଦ୍ଧନାଥ ଶୋଇଗଲେ । ବୋଧହୁଏ ଦୁର୍ଘଟନାର ଖବର ପାଇଲା ପରେ ପ୍ରଥମଥର ପାଇଁ ସେ ଶୋଇଗଲେ । ଗଭୀର ଶାନ୍ତିର ନିଦ ।

ସକାଳୁ ଗଧାଧରଙ୍କୁ ସ୍ମରଣ କରି ଉଠିଲେ । ଗଦାଧର ଗୟାର କ୍ଷେତ୍ରାଧିପତି । ନିତ୍ୟକର୍ମ ସରିଲା । ସିଦ୍ଧନାଥ ଖୁବ୍ ହାଲୁକା, ଖୁବ୍ ପ୍ରସନ୍ନ ବୋଧ କରୁଥା'ନ୍ତି । ଗାଧୋଇ ସାରି ଧୋତି ପିନ୍ଧି

ମୁଣ୍ଡରେ ଓଦା ଗାମୁଛା ପକେଇ ସେ କୂଅ ମୂଳେ ପାଣି କାଢୁଥା'ନ୍ତି । ଗୁମାସ୍ତା ଆସି ତାଙ୍କ ପାଖରେ ଠକ୍‌କିନା ଠିଆ ରହିଗଲା । ତାଙ୍କୁ ଅନେଇ ରହିଲା କଟମଟ ।

ସିଦ୍ଧନାଥ ତାଙ୍କୁ ଚାହିଁ ଅଳ୍ପ ହସିଲେ । ସେ ଛାନିଆ ହେଲାପରି ତରବର ବୁଲିପଡି ଚାଲିଗଲା ।

ବଡ ବିଚିତ୍ର ଜୀବଗୁଡିଏ ଏମାନେ – ଭାବିଲେ ସିଦ୍ଧନାଥ । କିଛି ସମୟ ପରେ ଗୁମାସ୍ତା ଆଉଜଣଙ୍କୁ ସାଙ୍ଗରେ ନେଇଆସି ପହଞ୍ଚିଲା । ସେମାନେ ଦୁହେଁ ସିଦ୍ଧନାଥଙ୍କୁ ସେମିତି ଚାହିଁ ରହିଥା'ନ୍ତି । ତାଙ୍କ ଭିତରେ କ'ଣ କଥା ହେଉଥା'ନ୍ତି । ତାଙ୍କୁ ଭାରି କୌତୂହଳ ଲାଗିଲା ।

ପଚାରିଲେ – 'କ୍ୟା ବାତ୍ ହେ ?'

"ଅରେ, କୁଛ୍ ନହିଁ, କୁଛ ଭି ନହିଁ ! ହମ୍ ଦେଖ୍ ରହେଥେ ୟେ ଧୋତିମେ ଆପ୍ କିତ୍‌ନେ ଅଛେ ଲଗ୍‌ତେ ହେଁ ! ଆପ୍ ତୋ' ବଙ୍ଗାଲୀ ଜୈସା ପହନ୍‌ତେ ହେଁ । ହମ୍ ଜୈସେ ପହନେ ତୋ' ଔର୍ ଅଚ୍ଛେ ଲଗେଙ୍ଗେ ।"

"ତୋ ଫିର୍ ପହନାଇ ଦୋ ନା !"

ସିଦ୍ଧନାଥଙ୍କୁ ଗୁମାସ୍ତା ଡାହାଣ କଛା ମାରି ପିନ୍ଧିବା ବତେଇଦେଲା । ଦୁହେଁ ତାଙ୍କୁ କାବା ହେଲାପରି ଚାହିଁ ରହିଲେ । ତା'ପରେ କିଛି ନ କହି ସେଇଠୁ ତରବର ହେଇ ଚାଲିଗଲେ । ତାଙ୍କୁ କଥାଟା କେମିତି ଟିକିଏ ଅସ୍ୱାଭାବିକ ମନେ ହେଲା । ହେଲେ ବେଳ କାହିଁ ଭାବିବାକୁ ?

ସେମାନେ ସହଳ ବାହାରି ପଡିଲେ । ଯଜମାନ, ପୁରୋହିତ ଆଉ ଗୁମାସ୍ତା । ହଜାରେ ପ୍ରକାର ଜିନିଷର ତାଲିକା । ହଜାରେ ଆୟୋଜନ କିନ୍ତୁ ସବୁ ଖଞ୍ଜି ହୋଇ ରହିଥାଏ ଯେମିତି । କୋଉଠି କିଛି ଅଭାବ ନାହିଁ । ମନେ ହେଉଥାଏ ସେଦିନ ଗୁମାସ୍ତା ତାଙ୍କୁ ଟିକିଏ ଅଧିକ ଖାତିର୍ କରୁଥାଏ । ପଣ୍ଡିତ୍‌ଜୀଙ୍କ କଥା କଥାକେ ପିଠିରେ ହାତ ପକେଇ ଆପଣାପଣ ପ୍ରକାଶ କରୁଥା'ନ୍ତି । ଯେତେବେଳେ ଦେଖିଲେ ସେ ଦୁହେଁ ତାଙ୍କୁ ଅନେଇ ରହିଥା'ନ୍ତି ।

ଘାଟକୁ ଯିବା ଆଗରୁ ପଣ୍ଡିତ୍‌ଜୀ ସିଦ୍ଧନାଥଙ୍କ ଡେଣାଧରି ଭିତର ଆଡେ ମୁହାଁଇଲେ । ତାଙ୍କ ଖାସ୍ ବୈଠକଖାନାରେ ଗାଲିଚା ଗଦି ଖୁବ୍ ଦାମୀ । କାନ୍ଥରେ ତୈଳଚିତ୍ରଗୁଡିକ ଖୁବ୍ ଦାମୀ ।

"ଆପ୍ ଜରା ୟହିଁ ବିରାଜିଏ । ହମ୍ ଅଭି ଆଏ ।"

ସିଦ୍ଧନାଥଙ୍କ ସାମ୍ନାରେ ଯେଉଁ ତୈଳଚିତ୍ର ଥିଲା ଦେଖୁ ଦେଖୁ ତାଙ୍କୁ ଭଲ ଲାଗିଗଲା । ପ୍ରାୟ ଚାଳିଶ ପଇଁଚାଳିସ ବର୍ଷର ଜଣେ ଭାରି ତେଜିୟାନ୍ ପୁରୁଷ । ଚମତ୍କାର ଚେହେରା । ଚମତ୍କାର ବ୍ୟକ୍ତିତ୍ୱ ।

ପଣ୍ଡିତ ଜୀ ଆସି ସିଦ୍ଧନାଥଙ୍କୁ ବୁଝାଇବା ପାଇଁ କହିଲେ –

"ୟେ ହେଁ ହମାରେ ପିତୃଦେବ୍ । ୟେ ତସ୍‌ବିର୍ କରିବ୍ ତିଶ୍ ସାଲ୍ ପୁରାନା । ୱହ ହାଲ୍ ହି ମେ ଗୁଜର ଗୟେ ।... ତୋ' ପଧାରିୟେ ଯଜମାନ୍ ଅବ୍ ଚଲେଁ ।"

ସିଦ୍ଧନାଥ ବୈଠକଖାନା ଦୁଆର ମୁହଁରୁ ପୁଣିଥରେ ଲେଉଟି ସେ ଚିତ୍ରଆଡେ ଚାହିଁଦେଲେ ।

ସେ ଜାଣି ପାରିଲେ ନାହିଁ ଯେ ଗୁମାସ୍ତା ତାଙ୍କୁ ଲକ୍ଷ୍ୟ କରୁଥିଲା ।

ଘାଟ ଉପରେ ପଣ୍ଡିତ୍‌ଜୀ ପାଟଧୋତି ଦୋସତା, ଦୁଇସୋରା ବଡପଗଡ ରୁଦ୍ରାକ୍ଷ, କପାଳରେ ତ୍ରିପୁଣ୍ଡ୍ର ମାରି ଆସନରେ ବସିଗଲାରୁ ସିଦ୍ଧନାଥଙ୍କ ମନେହେଲା ଯାହାକୁ ପୂର୍ବଦିନ ପାଞ୍ଜି ଫିଟେଇଲାବେଳେ ଦେଖିଥିଲେ ସେ ଇଏ ନୁହନ୍ତି । ଯେ ଏଠି ଚକା ପକେଇ ଆସନରେ ବସିଛନ୍ତି ସେ ଆଦେଶ ଦେଲେ ପିତୃପୁରୁଷ ଓହ୍ଲେଇ ଆସିବେ, ଇନ୍ଦ୍ର, ଚନ୍ଦ୍ର ଓହ୍ଲେଇ ଆସିବେ । ତାଙ୍କ ପ୍ରତି ଶ୍ରଦ୍ଧାରେ ସିଦ୍ଧନାଥଙ୍କ ମୁଣ୍ଡ ନଇଁଗଲା ।

ପତ୍ରମାନଙ୍କରେ ଅଟା ଗୋଟାଳି ରଖା ହେଉଥାଏ । ପାତ୍ରିରେ ପାଣି ଟେକା ହେଉଥାଏ, ଚନ୍ଦନ ଫୁଲ ଛିଞ୍ଚା ହେଉଥାଏ । ଗଦ୍ ଗଦ୍ ମନ୍ତ୍ରପାଠ ହେଉଥାଏ । ଏ ସମସ୍ତ କୌଳିକ କର୍ମ ସେ ନାଦ-କମ୍ପନ ଭିତର ଅଲୌକିକ ମନେ ହେଉଥାଏ ।

ସେତେବେଳକୁ ବେଶ୍ ଖରା । ପଣ୍ଡିତ୍‌ଜୀଙ୍କ କପାଳ, ବେକ, ବୁକୁ, ଦ୍ୱସ୍ତରୁ ଝାଳ ନିଗିଡି ଯାଉଥାଏ । ସିଦ୍ଧନାଥଙ୍କ ଦୋସତା ଓଦା ହୋଇ ସାରିଥାଏ ।

କେଜାଣି କାହିଁକି ସିଦ୍ଧନାଥ ଖୁବ୍ କ୍ଳାନ୍ତ ବୋଧ କରୁଥା'ନ୍ତି । ତାଙ୍କୁ ଶୋଷ କରୁଥାଏ । ଦେହରୁ ସାର ଶୋଷିନେଲା ପରି ଲାଗୁଥାଏ ।

ପଣ୍ଡିତ ଜୀ କହିଲେ – "ଯଜମାନେ, ଅବ୍ ଆପ୍‌କେ ସର୍ଗବାସୀ ପିତୃଦେବ୍ କୋ ସ୍ମରଣ କର୍‌କେ ୟେ ଜଲ୍‌ତିଲ୍ ଉଠାଇଏ । ମେରେ ସାଥ୍ କହିୟେ – "ଶାଣ୍ଡିଲ୍ୟ ଗୋତ୍ରସ୍ୟ ଅସ୍ମତ୍ ପିତା ଭୁବ୍‌ନେସର୍ ଗଁତୟତ୍–"

ସିଦ୍ଧନାଥଙ୍କ ଓଠ କମ୍ପୁଥାଏ; ହାତ କମ୍ପୁଥାଏ । ତାଙ୍କୁ ସେ କବନ୍ଧ ଭର୍ତ୍ତି ହୋଇଥିବା ଅଖା ହିଁ ସ୍ମରଣ ହେଉଥାଏ । ତାଙ୍କ ଭିତରେ କେମିତି ଲେଉଟିଲା ପରି ଲାଗିଲା, ଅଇ ଟେକିଲା । ଅନ୍ଧାର ମାଡି ଆସିଲା ଆଖି ଉପରକୁ । ମୁହୂର୍ତ୍ତକର ସପ୍ନ ପରି ବୈଠକଖାନାର ସେ ତୈଳଚିତ୍ର ସାକାର ହୋଇଗଲା, ଝଲମଲ ଜୀବନ୍ତ !

ପଣ୍ଡିତ କହିଲେ – "ଜଲ୍‌ତିଲ୍ ଡାଲ୍ ଦିଜିଏ ।"

ତମ୍ବା ପାତ୍ରିରୁ ପାଣି ଢାଳିଲାବେଳେ ସିଦ୍ଧନାଥଙ୍କୁ ଅତ୍ୟନ୍ତ ଅବାଧ ଭାବରେ ସେ ତୈଳଚିତ୍ର ହିଁ ଆବିଷ୍ଟ କରି ରଖିଥାଏ ।

ପିଣ୍ଡଦାନ ବେଳେ ସିଦ୍ଧନାଥଙ୍କୁ ବାରମ୍ବାର ଏପରି କହିବାକୁ ପଡିଲା । କିନ୍ତୁ ତାଙ୍କ ମାନସ କଳ୍ପନାରେ ବାରମ୍ବାର ମଡେଇ ହୋଇ ପଡୁଥିଲା ସେ ଚିତ୍ର । ତାଙ୍କୁ ଦୁର୍ବଳ ଲାଗୁଥିଲା । ଆବିଷ୍ଟ ହେଲା ପରି ଲାଗୁଥିଲା । ଯନ୍ତ୍ରପରି ସେ ନିର୍ଦ୍ଦେଶ ମତେ କରି ଚାଲିଥିଲେ ।

ମା'ଙ୍କୁ ସ୍ମରଣ କରି ପୁଣି ପିଣ୍ଡଦାନ ଆରମ୍ଭ ହେଲା । ଅତ୍ୟନ୍ତ ପ୍ରାଞ୍ଜଳ, ଚଳପ୍ରଚଳ ହେଲା ପରି ମା' ମନେ ପଡି ଯାଉଥିଲେ । ସିଦ୍ଧନାଥଙ୍କ ରୋମ ଟାଙ୍କୁରି ଯାଉଥିଲା । ସେଇ କେତେ ସମୟ ମା' ତାଙ୍କୁ ଚାହିଁ ରହିଥିଲେ । ତାଙ୍କ ଆଖିରୁ ଲୁହ ଝରି ଯାଉଥିଲା । ସିଦ୍ଧନାଥ ପାତ୍ରିରେ ଜଳତିଳ ଟେକି ଦେଉଥିଲେ, ପିଣ୍ଡ ଟେକି ଦେଉଥିଲେ ।

"ଅବ୍ ଉଠିୟେ ଯଜ୍‌ମାନ । କର୍ମ ସମାପ୍ତ ହୁଆ ।"

ଗୁମାସ୍ତା ସେ ପାଖରେ ନଇଁପଡି ଖୁବ୍ ସନ୍ତର୍ପଣରେ କହିଲା – "ଦକ୍ଷିଣା ଦେକର୍ ପାଉଁ ଲାଗି ହୋଇଏ ।"

"ଅରେ ଇନ୍‌କୋ ୟେ ସବୁ କ୍ୟୁଁ ବତାତେ ହୋ ? ୟେ ତୋ' ହମାରେ ଅପ୍‌ନେ ହି ସମ୍‌ଝୋ ।"

ସିଦ୍ଧନାଥ ଚମକିଲା ପରି ଅଣ୍ଟାରୁ ପାଞ୍ଚଶହ ଟଙ୍କାର ନୋଟ୍‌ଟିଏ ପଣ୍ଡିତଙ୍କ ପାଦ ଉପରେ ରଖି ମୁଣ୍ଡିଆ ମାରିଲେ ।

ପଣ୍ଡିତ ତାଙ୍କ ମୁଣ୍ଡ ଉପରେ ହାତ ରଖି – "ଉଠୋ, ଯଜମାନ୍, ହମ୍ କୋ ଆପ୍‌ସେ କୁଛ୍ ଭି ନହିଁ ଲେନା ହେ । ଆଜ୍ ତୋ' ୟେ ଶ୍ରାଦ୍ଧମେ ହମାରେ ପିତୃ ପୁରୁଷ୍ ହିଁ ତୃପ୍ତ ନଜର୍ ଆତେ ହେଁ ।"

ଫେରିବା ରାସ୍ତାରେ ସିଦ୍ଧନାଥ ଏକାଟିଆ ଗୋଟିଏ ରିକ୍ସାରେ ବସିଥା'ନ୍ତି । ଆସ୍ତେ ତାଙ୍କ ଉପରୁ କୁହୁଡିଟିଏ ଘୁଞ୍ଚିଗଲା ପରି ଲାଗିଲା । ସେ ମୋହ ନିଦ୍ରାରୁ ଉଠିଲା ପରି ବୋଧ କଲେ । ଆଖି ମଟମଟ କରି ଚାହିଁଲେ । ସବୁ ମନେ ପଡିଗଲା । ତାଙ୍କ ବୁକୁ ଦାଉଁ ଦାଉଁ ପଡିଲା । ସକାଳୁ ସେତେବେଳଯାଏଁ ଯାହା ଘଟିଥିଲା ସବୁ ହଠାତ୍ ଯୋଡି ହୋଇଗଲା ।

ନିଧିକାଙ୍କ ସ୍ୱର ଶୁଭିଲା – "ଗୟାରେ ପିଣ୍ଡ ଦେଲେ ପିତୃପୁରୁଷ ତାଙ୍କୁ ପ୍ରତ୍ୟକ୍ଷରେ ପାଆନ୍ତି । ସେମାନେ ବେଳେବେଳେ ପ୍ରକଟ ହୋଇଥା'ନ୍ତି ।"

ସେ ତୈଳ ଚିତ୍ର ତେବେ କାହାର ? ?

ସିଦ୍ଧନାଥଙ୍କ ଭିତର କମ୍ପୁଥିଲା, ମନ୍ଥି ହେଉଥିଲା । ଆଖିରୁ ଧାର ଧାର ନିଆଁ ଝରି ଯାଉଥିଲା । ସେ ମୁହଁ ଘୋଡେଇ ତାଙ୍କ ଜୀବନର ଆଦି ପ୍ରଶ୍ନକୁ ଏଡାଇ ପାରୁ ନଥିଲେ । ଜୀବନର ଅସଂଖ୍ୟ ରହସ୍ୟମୟ ଘଟନା ଦୁର୍ଘଟନାର ଏତେ ସହଜ ସମାଧାନକୁ ମଧ ସାହାସରେ ଚାହିଁପାରୁ ନଥିଲେ ।

ଆକାଶରେ ମଧ୍ୟାହ୍ନ ସୂର୍ଯ୍ୟ ଜଳୁଥିଲା । ସିଦ୍ଧନାଥ ଅଗ୍ନିସ୍ନାନ କରୁଥିଲେ । ନୀରବ, ଅସହାୟ !



# ବୋଝ

ଦିନସାରା ମେଘ ଘୋଡେଇ ରଖିଲେ କୌଣସି ଫୁଲରେ ଚହଟି ରହେନାହିଁ । ଗଛଗୁଡିକ ବିରସ, ବିମର୍ଷ ଦେଖାଯା'ନ୍ତି । ଶୋକାଚ୍ଛନ୍ନ ଦେଖାଯାଏ ପୃଥିବୀ ଓ ଆକାଶ । ବିକାଶକୁ ଏମିତି କେତେ ବୟସ ହେବ କି ? – ହେଇ ବୋଧହୁଏ ତେତିଶ୍ ଚଉତିରିଶ୍ ଚାଲୁଥିବ । ଅନୁ ତା'ଠୁ ପାଞ୍ଚବର୍ଷ ସାନ । ବିଭା ହେଲା ବେଳେ କି ସୁନ୍ଦର ଦିଶୁଥିଲେ ଦି'ଜଣ ସାରା । ଗନ୍ଧର୍ବ ଦମ୍ପତି ପରି ଦେଖାଯାଉଥିଲେ । ଝିଅକୁ ଅଠରବର୍ଷ, ପୁଅକୁ ତେଇଶ୍ । ଯେତେସବୁ ବିଭାଘରକୁ ଆସିଥିଲେ ତାଙ୍କୁ ଚାହିଁ ଠିଆ ରହିଯାଉଥିଲେ ଘଡିଏ । ମନେହେଉଥିଲା ସତେବା ଏ ଅପୂର୍ବ ଯୋଡି ବିଧାତାର ଶ୍ରେଷ୍ଠ କୃତି ।

ଦୁଇଟି କ୍ଲାନ୍ତ ପକ୍ଷୀ ପରି ବାଲ୍‌କୋନିରେ ଆଲୁଅ ଲିଭେଇ ଦେଇ ସେମାନେ ସେଦିନ ବସିଥା'ନ୍ତି । ଦିନ ବେଳେ ଅନୁର ଦୁଇକେରା ଧଳାବାଳକୁ ବିକାଶ ଦେଖି ନ ଦେଖିଲା ପରି ଆଖି ଆଡ କରିନିଏ । ପତା ମଟମଟ କରି ଅନାଏ ବାହାରକୁ । ନ ହେଲେ କାଳେ ଅନୁ ଆଖିରେ ପଡିଯିବ । ବିକାଶ ବି କେତେ ମ୍ଳାନ ଦିଶିଲାଣି । ସାମ୍ନାରୁ ଦେଖିଲେ ତ ତାକୁ ହଠାତ୍ ଚିହ୍ନି ହେଉନାହିଁ ।

ସେମାନେ ପାଖାପାଖି ନୀରବ ବସିଥା'ନ୍ତି । ଅପେକ୍ଷା କରିଥା'ନ୍ତି କେତେବେଳେ ପକ୍ଷୀ ରାବ ପରି ଆତୁର ଡାକ ଶୁଭିବ ଘର ଭିତରୁ ଏବଂ ଆସ୍ତେ ଜଣକ ପଛରେ ଜଣେ ଉଠିଯିବେ ପାଷାମର ଗୁରୁଭାର ଟୋଳିବାକୁ ।

ଅନୁର ହାତକୁ ଉଶ୍ୱାସରେ ଆଉଁସି ଦେଇ ବିକାଶ କହିଲା ଢେର ଦିନ ହେଇଗଲା କୁଆଡେ ଟିକିଏ ବାହାରି ହେଲାନାହିଁ । କାଲି ରବିବାର । ଭାବୁଛି ଜୁବିଲି ପାର୍କ ଆଡେ ଗଲେ ହୁଅନ୍ତା । ଅନୁର ହାତଟି ସେମିତି ନିସ୍ତେଜ ପଡି ରହିଲା । ବିକାଶ ବି ତା'ପରେ ଚୁପ୍‌ଚାପ୍ ବସିରହିଲା ହାତ ଉପରେ ହାତ ରଖି । ଆଙ୍ଗୁଠି ସନ୍ଧାରେ ସମୟ ନିଗିଡି ଯାଉଥିଲା ।

ଅନୁର ଭଉଣୀ ବିନୁ । ଏ ହେଲା ଅନୁରାଧା, ସେ ବିନୋଦିନୀ । ବିନୁ ଏବେ ଚଣ୍ଡୀଗଡ ଚାଲିଆସିଲାଣି । ଅନୁର ବିଭା ବର୍ଷ ହିଁ ସେ ବିଭା ହେଲା । ତା'ର ପାଞ୍ଚ ବର୍ଷର ପୁଅ । ନାଁ ରାଜକୁମାର । ସତକୁ ସତ ରାଜକୁମାର । ତା'ର ଟିକ୍‌ଟିକ୍ ଆଖି, ଫୁଲ ଫୁଟିଲା ପରି ହସ, ଗୋରା ତକ୍‌ତକ୍ ମୁହଁକୁ ଅନୁ ଚାହିଁରହେ ନିଷ୍ପଲକ ଆଖିରେ । ସେ ପାଦ ଛୁଇଁ ପ୍ରଣାମ କଲାବେଳେ ତାକୁ ଟାଲୁ

ଉଠାଇ କୁଣ୍ଢାଇ ପକାଏ । ସମ୍ଭାଳି ପାରେ ନାହିଁ, କାନ୍ଦି ପକାଏ । ବିନୁ ଆଡେ ଚାହିଁ ଦେଲେ ତା' ପୁଅ ଦେହରୁ ହାତ କାଢିନିଏ । ମନେ ମନେ ହୁଏତ କହୁଥାଏ ତୋ' ପୁଅ ମୋର ସମସ୍ତ ଆୟୁଷ ନେଇ ବଞ୍ଚୁ । ନିଷ୍କଳଙ୍କ ଚନ୍ଦ୍ର ପରି ଉଜ୍ଜ୍ୱଳ କରୁଥାଉ ତୋ' ଘର !

ବିନୁ ଆଉ ଏବେ ସେତେ ଆସୁନାହିଁ କାହିଁକି କେଜାଣି ? ସେମାନେ ଏବେ କୁଲୁ ମେଲି ଯାଇଥିଲେ ବୁଲିବା ପାଇଁ ! ପୁଅର ସବୁ ଛୁଟି ବେଳକୁ ଅମ୍ବିକା ପ୍ରସାଦ ଆଠ ଦଶ ଦିନ କାମରୁ ଓହରି ଆସନ୍ତି, ବର୍ଷକୁ ତାକୁ ଛ'ଲକ୍ଷ ଟଙ୍କା ଦରମା ମିଳେ । ଆମେରିକାର ମାଲିକମାନେ ତାଙ୍କୁ ଖୁବ୍ ବିଶ୍ୱାସ କରିଯାଇଛନ୍ତି । ସେ ଚାରିଥର ଯାଇ ଫେରିଲେଣି ଆମେରିକାରୁ । ଏବର୍ଷ ଭାବିଛନ୍ତି, ବିନୁ ଆଉ ରାଜକୁମାରକୁ ନେଇଯିବେ । ତାଙ୍କ ବଗିଚାରେ ବର୍ଷ ସାରା ଫୁଲ ଫୁଟେ । ସେହିପରି ଫୁଟୁଥାଉ । ମହକୁଥାଉ ବିନୁର ଅଗଣା ।

କେବେ ବି ସେ ବିକାଶକୁ କହିପାରେ ନାହିଁ ଚଣ୍ଡୀଗଡ ଯିବାକୁ । ଆଗରୁ ସେମାନେ ମହୀଶୂରରେ ଥିଲେ । ଦିଲ୍ଲୀରୁ ଖୁବ୍ ଦୂର । ଏତେ ବାଟ ଅବା ସେମାନେ କେମିତି ଯାଇପାରିଥା'ନ୍ତେ ? ବିନୁ କ'ଣ ଜାଣିନାହିଁ, ତା' ନାନୀ କାହିଁକି ଘୁଞ୍ଚ ପାରୁନାହିଁ । ସେ ତା' ନାନୀକୁ ଖୁବ୍ ଭଲପାଏ ତ । ତା' କଥା ପଡିଲେ ତା' ଆଖି ଛଳଛଳ ହୋଇଯାଏ । ହେଲେ କେବେ ବି ତା' ନାନୀ ଆଗରେ ସେ ମୁହଁ ଶୁଖାଏ ନାହିଁ । ଛୋଟବେଳେ ଯେମିତି ଫାଜିଲାମି କରୁଥିଲା ସେମିତି କରେ । ନାନୀ ମୁହଁରେ ସାମାନ୍ୟ ଟିକିଏ ହସ ଦେଖିଲେ ଖୁସି ହୋଇଯାଏ । ଆହା, ଅନୁ ନାନୀ, ତୋ' ଭାଗ୍ୟରେ କ'ଣ ଏଇଆ ଲେଖାଥିଲା ?

ସତ କହିବାକୁ ଗଲେ ଅନୁର ସେମିତି କିଛି ଅସୁବିଧା ନାହିଁ । ବିକାଶ ଅମ୍ବିକା ପ୍ରସାଦ ଭଳି ଟଙ୍କା ପାଏ ନାହିଁ ସତ ତେବେ ମେହେରୋଲି ଅଞ୍ଚଳରେ ଭଲ ଘର ଖଣ୍ଡେ ନେଇଛି, ଗାଡି କରିଛି । ସେଥିରେ ସେ ଭିଭା ହୋଇ ଆସିଲା ପରେ ଅନୁକୁ ନେଇ କାହିଁକି କୁଆଡେ ନଯାଇଛି । ସେତେବେଳେ ସବୁ ରାତି ଜହ୍ନରାତି, ରେଶମୀ ବାଦଲ ପରି ଦେହରୁ ଖସି ପଡୁଥିବା ମହମହ ବାସୁଥିବା କୁମାରପୂର୍ଣ୍ଣମୀର ରାତି । ମାତ୍ର ବର୍ଷଟିଏ ପରେ ସବୁ ଆନ ଆନ ହେଇଗଲା । ତଥାପି ସେମାନେ ପାଞ୍ଚବର୍ଷ ଯାଏ ଆଶା ଛାଡି ନଥିଲେ । ଯେ ଯେଉଁଠିକି କହିଲା ଆତୁର ହୋଇ ସେମାନେ ସେଇଠି ପହଞ୍ଚୁଥିଲେ । ବିନା ଦ୍ୱିଧାରେ ମନ୍ଦିର ମସ୍‌ଜିଦ୍ ଗୀର୍ଜାରେ ଶରଣ ପଶୁଥିଲେ । ସବୁ ପ୍ରକାର ଉପଚାର ପାଇଁ କେରଳରୁ କାମରୂପ ଯାଏ ଯୋଉଠି ଶୁଣିଲେ କିଏ ଅଛି ସେଇଠି ପହଞ୍ଚିଥିଲେ । ସବୁବେଳେ ଆଶା କରି ଚାଲିଥିଲେ ଯେ ସକାଳୁ ଆଖି ଫିଟେଇ ଚାହିଁଲା ବେଳକୁ ଅଭିଶାପ ଘୁଞ୍ଚି ଯାଇଥିବ । କିନ୍ତୁ କ୍ରମଶଃ ସେମାନେ ନିରସ ହୋଇଗଲେ । ନୀରବ ହୋଇଗଲେ; ନିସ୍ତେଜ ହୋଇଗଲେ ।

ଦିନେ ଅନୁ ବିକାଶ ଆଗରେ ତରଳି ଯାଉଥିବା ମହମ କଣ୍ଢେଇଟିଏ ଭଳି ନିଶ୍ଚଳ ଠିଆ ରହିଗଲା । ଝରଝର ଝରି ଯାଉଥିଲା ଜୀବନର ସବୁ ସ୍ୱପ୍ନ । ଛାତ ମଡେଇ ହୋଇ ପଡୁଥିଲା । ବିକାଶ ଅନୁକୁ ବୁକୁ ଉପରକୁ ଆଉଜେଇ ନେଇ ପିଠି ଆଉଁସି ଦେଇଥିଲା । କହିଥିଲା, 'ଧୈର୍ଯ୍ୟ

ଧର ଅନୁ, ସହିବା ଛଡା ଆମର ଆଉ କ'ଣ ଉପାୟ ଅଛି ?' ଅନୁ ବିକାଶକୁ ବାହୁରେ ବେଢେଇ ଧରିଥିଲା । ଅନେକ ବେଳ ଯାଏଁ ସାରଙ୍ଗୀରେ କଇଁ କଇଁ ସୁର୍ ଭେଦିଯାଉଥିଲା ଘରର ଝରିକାକୁ, ପାରି ହୋଇଯାଉଥିଲା ଅଗଣା ପାଚେରୀ, ଓଦା ହୋଇଯାଉଥିଲା ଖଣ୍ଡ ମଣ୍ଡଳ, ବତୁରି ଯାଉଥିଲା କୁତବ୍ ମିନାରର ଶୀର୍ଷ ।

ସାହି ପଡିଶାରୁ, ବିକାଶର ବନ୍ଧୁ ମହଲରୁ ଯେ ଯେତେବେଳେ ତାଙ୍କ ଘରକୁ ବୁଲି ଆସୁଥିଲେ, ଅନୁ ସେମାନଙ୍କୁ ଅତିଥି ସତ୍କାରରେ ହେଳା କରୁ ନଥିଲା । କିନ୍ତୁ ମଝିରେ ମଝିରେ ଉଠିଯାଉଥିଲା ଭିତର ବଖରାକୁ । ସେମାନେ ଆଭାସ ପାଇଥା'ନ୍ତି ଯେ ବିକାଶର ଘରେ ଏକ ପାରିବାରିକ ଦୁଃଖ ଘୋଟି ରହିଛି । ସେମାନେ ହୁଏତ ଅନୁକୁ ପରଖି ବୁଝୁଥିଲେ । ସ୍ଥଳ ବିଶେଷରେ ଘନିଷ୍ଠତା ଅନୁପାତରେ ନିଜେ ଭିତର ବଖରାକୁ ଯାଇ ଆଖିରେ ଦେଖି ଆସୁଥିଲେ । ଗଲାବେଳେ ସମସ୍ତେ ବିରସ ଦେଖାଯାଉଥିଲେ । କେହି କେହି ଅନୁକୁ ଧରି କାନ୍ଦି ପକଉଥିଲେ । ସୁନିଲ୍ ଶର୍ମା କିନ୍ତୁ ନିଆରା । ସେ ବିକାଶକୁ ଖୁବ୍ ଖାତିର୍ କରେ । ସେ ଓ ତା' ସ୍ତ୍ରୀ ଏମାନଙ୍କର ଘନିଷ୍ଠ ବନ୍ଧୁ । ଛୁଟି ଦିନ ଦିପହର ଆସି ଅନେକ ଦିନ ଏକାଠି ବସି ଖାଆନ୍ତି ।

ସେହିଭଳି ଏକ ଛୁଟି ଦିନରେ ସେମାନଙ୍କ ସ୍ତ୍ରୀ ଦୁହେଁ କଥାବାର୍ତ୍ତା ହେଲାବେଳେ, ସୁନୀଲ ବିକାଶକୁ ଟିକିଏ ନିରୋଳାକୁ ନେଇଗଲା ।

"ୟାର, କୁଛ ତୋ' କର୍‌ନା ପଡେଗା । କହାଁ ତକ ତୁମ୍, ଐସେ ଟାଲତେ ରହୋଗେ । ଇଧର୍ ଏକ ଚିଲ୍‌ଡ୍ରେନ୍ସ ହୋମ୍ ହେ । ଅଚ୍ଛା ହେ, ଓ୍ୱହଲୋଗ ଐସେ ବଚ୍ଚୋ କି ଜିମ୍ମେଦାରି ଲେତେ ହେଁ । ପୈସେ ଖୁବ୍ ଲେତେ ହେଁ । ତବ୍ ଭି, ଇଟ୍ ଇଜ୍ ଓ୍ୱର୍ଥ ହ୍ୱାଇଲ୍ ଟ୍ରାଇଙ୍ଗ ! ମୈନେ ବାତ କୀ ହେ । ତୁମ୍ ରହୋ ତୋ' ଏକଠେ୍ ଯାକେ ଦେଖ୍ ଲେତେ ହେଁ ଏକବାର୍ ।"

ବିକାଶ ଆନମନା ରହିଁ ରହିଥାଏ ।

"ହମ୍‌ସେ ୟାର୍ ସହା ନହିଁ ଜାତା ! ତୁମ୍ ଦୋନୋ କି ଜିନ୍ଦଗୀ ଏକ ବୋଝ ବନଗୟା ଇସ୍‌କେଲିଏ ! ମାନ୍ ଜାଓ ମେରେ ଭାଇ ! ତୁମ୍‌କୋ ରିଲିଫ୍ ମିଲେଗା, ଔର ଉସ୍‌କୋ ସର୍ଭିସ୍, ଏଟେନ୍‌ସନ୍, ମେଡିକାଲ କେଆର୍ ।"

"ଠିକ୍ ହେ ଚଲୋ କଲ ହି ଦେଖ୍ ଲେତେ, ହେଁ ।" କହିଲା ବିକାଶ । "ୟହ୍ ହୁଇ ନା ବାତ୍ !" ସୁନୀଲ୍ ତାକୁ ଅଣ୍ଟାରେ ବାହୁ ବେଢେଇ ଘର ଭିତରକୁ ନେଇ ଆସିଲା ।

ଉଭୟଙ୍କୁ ଦେଖି ଅନୁର ଭୁରୁ କୁଞ୍ଚେଇଗଲା ସାମାନ୍ୟ । କିନ୍ତୁ ସେ ରହିଁ ରହିଲା କାରଣ ବିକାଶ ଖୁସି ଦେଖାଯାଉଥିଲା । ଓଃ, ଏତେ ଦିନ ପରେ... ଲାଗିଲା ରୁନ୍ଧା ଘରର ଗୋଟାଏ ପାଖ ଝର୍କା ଫାଙ୍କରେ ଝଲକାଏ ପବନ ପଶିଆସିଲା ।

ପରିବେଶ କିଛି ହାଲୁକା ଲାଗିଲା । ଉଭୟ ପରିବାର ସହଜ ବୋଧ କଲେ । ସାଧାରଣ କଥା ପଡିଲା । କେମିତି ମିସେସ୍ ଶର୍ମା ତିନି ପ୍ରକାର ବଡ ସେବତୀ ଫୁଲ ଫୁଟେଇଛନ୍ତି । ଅନୁ ରହିଁଲେ ସେ ରାଉରାଉ ହଳଦିଆ ରଙ୍ଗର ଫୁଲ ଗାମ୍‌ଲାଟି ତାଙ୍କ ଲୋକ ହାତରେ ପଠାଇ ଦେବେ ।

ଶର୍ମା ଓ ତାଙ୍କ ସ୍ତ୍ରୀ ହସ ଖୁସିରେ ବିଦାୟ ନେଲେ । ବିକାଶର ଇସାରା ପାଇ ସୁନୀଲ୍ ସେ ପ୍ରସଙ୍ଗ ଉଠାଇଲା ନାହିଁ । କିନ୍ତୁ ଆଖିର ଚାହାଣିରେ ଦୁଇ ବନ୍ଧୁଙ୍କର କଥାବାର୍ତ୍ତା ହୋଇଗଲା ।

ବିକାଶ ଅନୁ ଆଗପଛ ଆସି ସୋଫାରେ ସାମ୍ନା ସାମ୍ନି ବସିଲେ । ବିକାଶ ଯଥା ସମ୍ଭବ ସ୍ୱାଭାବିକ ଢଙ୍ଗରେ କଥା ଆରମ୍ଭ କଲା, ସୁନୀଲ୍ ଗୋଟେ ବଢ଼ିଆ ଖବର ଆଣିଛି । ଅନୁ ଆଖି ତଳକୁ କରିନେଲା । ଅଲକ୍ଷ୍ୟରେ ଦୀର୍ଘଶ୍ୱାସଟିଏ ଓହ୍ଲେଇଗଲା – 'ସେଇ ପୁରୁଣା କଥା – ଆଉ କିଏ ଅର୍ଥୋପେଡିକ୍ ନ୍ୟୁରୋସର୍ଜରୀ, ସାଇକିଆଟ୍ରି, ଏକ୍ସପାର୍ଟ ବୋଧେ ମିଳିଗଲେ । – କ'ଣ ମିଳିବ ସେମାନଙ୍କ ପାଖରୁ । କ'ଣ ମିଳିଛି ଏ ପାଞ୍ଚବର୍ଷ ଭିତରେ – କିଏ ଭଲା କ'ଣ କରିପାରିଛି । କେତେ ବାବା, ଫକୀର, ତାନ୍ତ୍ରିକ, କେତେ ଔଷଧ, କେତେ ପୂଜାପାଠ, ଡାକ୍ତର କବିରାଜ, ହୋମିଓ, ହାର୍ବଲ, ଚିକିତ୍ସାର ଉପଚାର ସରି ନଯାଇଛି । ଆମ ଭାଗ୍ୟରେ ଯେଉଁ ଅକର୍ମଶିଳା ମଡେଇ ହୋଇ ପଡିଛି – ତାକୁ ତ କେହି ହେଲେ ତିଳାର୍ଦ୍ଧେ ଘୁଞ୍ଚାଇ ପାରିଲେ ନାହିଁ ।...

ବିକାଶ ବୋଧେ ଅନୁର ମନ କଥା ଗୋଟି ଗୋଟି ସବୁ ଗଣି ପାରୁଥିଲା । ଏଣୁ କହିଲା, "ସେ ସବୁ ପୁରୁଣା କଥା ନୁହେଁ । ଏଇଟା ଆଉ ଗୋଟେ ପ୍ରସ୍ତାବ ।"

ଓଦା ଆଖି ପତାକୁ ମଟମଟ କରି ଅନୁ ବିକାଶକୁ ଚାହିଁଲା – "କଥା କ'ଣ କି ଏଠି ଗୋଟାଏ ଭଲ ଚିଲ୍ଡ୍ରେନ୍ସ କେଆର ଖୋଲିଛି । ସେଇଠି ସେମାନେ କେବଳ ଏଭଳି ପିଲାଙ୍କ ପାଇଁ ବ୍ୟବସ୍ଥା ରଖିଛନ୍ତି । ସେମାଙ୍କର ଯତ୍ନ ନେବାକୁ ଚବିଶ ଘଣ୍ଟା ଲୋକ ନିଯୁକ୍ତ ଅଛନ୍ତି । ଡାକ୍ତର ନର୍ସ ଅଛନ୍ତି । ତାଙ୍କର ଖେଳ, ହସ ଖୁସି ପାଇଁ, ଗୀତ ନାଚର ଭିଡିଓ, ସେମାନେ ମିଳିମିଶି ଚଳିବା ପାଇଁ ସୁଯୋଗ ସବୁ ଅଛି । ଦେହ ପା'କୁ ଡାକ୍ତର, ଖାଇବା ପିଇବା, ପୋଷାକପତ୍ର ପାଇଁ ବନ୍ଦୋବସ୍ତ ।... ମୁଁ ଯାହା ସୁନୀଲ୍ଠୁ ଶୁଣିଲି, ସେଥିରୁ ଅନୁମାନ କରୁଛି । ଭାବୁଚି କାଲି ଟିକିଏ ଦେଖି ଆସିବି । ତା'ପରେ ତୁମେ ଥରେ ବୁଲି ଆସିବ । ସେଇଠୁ ଭାବିବା କ'ଣ କଲେ ଠିକ୍ ହବ । – କ'ଣ କହୁଛ ?"

'ତୁମ ଇଚ୍ଛା !'

ସେମିତି କ'ଣ କଥା ଛିଣ୍ଡେଇ ଦଉଚ ? ମନ ଖୋଲି କଥାବାର୍ତ୍ତା କର । ଅନୁ ପୁଣି ଆଖି ତଳକୁ କରିନେଲା ।

ବିକାଶ ଅପେକ୍ଷା କରିଥାଏ ।

ଅନୁ କହିଲା, ତୁମେ ଦିନୁ ଦିନ କେତେ ଝଡିଗଲଣି; କେତେ କଳା ପଡିଗଲଣି । ତୁମକୁ କେତେ ବାଧୁଚି ମୁଁ ଜାଣିପାରୁଚି ! ସେଥିପାଇଁ ତ' ଲୋକ ରଖିଥିଲି ଦିନ ପାଇଁ ଦି'ଜଣ ରାତି ପାଇଁ ଦି'ଜଣ । କ'ଣ ହେଲା ନିଜେ ଦେଖିଲ । ସମସ୍ୟା ଆହୁରି ବଢିଗଲା । ବାସନ ମାଜିବା, ଲୁଗା କାଚିବା, ରୋଷେଇ କଲା ଭଳି ତ' ଏ କାମ ନୁହେଁ । ସେମାନେ ତା' ଠାର ବୁଝିପାରିଲେ ନାହିଁ । ସେମାନଙ୍କ ଟଣା ଓଟରା ସେ ସହିପାରିଲା ନାହିଁ । ବୋବାଳି ଛାଡିଲା । ମୋତେ ହିଁ ଚାହିଁ ରହିଲା, ଝୁରିଲା । –

ଠିକ୍ କଥା ଅନୁ । ଆମ ହାତର ଉଷ୍ମା କେହି ଦେଇପାରିବେ ନାହିଁ । କିନ୍ତୁ ସୁନୀଲ ଯେଉଁ କଥା କହୁଛି ସେଇଟା ଟିକିଏ ଅଲଗା । ସେମାନଙ୍କର ସବୁ ଷ୍ଟାଫ୍ ଟ୍ରେନିଂ ପାଇଛନ୍ତି । ଠାର ବୁଝି ଠାରରେ କଥା କହିବା ସେମାନେ ଶିଖିଛନ୍ତି । କେମିତି ଟେକ ପାଳ କରାଯିବ, ନିଆ ଅଣା କରାଯିବ, ସେଥିପାଇଁ ସେମାନଙ୍କର ଆଧୁନିକ ଟେକ୍‌ନିକ୍ ସହିତ ଲୋକ ବି ମହଜୁଦ୍ ଥିବେ । ଥରେ ଦେଖିଆସେ ତୁମେ ବି ଦେଖ, ତା'ପରେ କଥାବାର୍ତ୍ତା ହବା । ଦୁହେଁ ଚୁପ୍ ହୋଇଗଲେ କିଛି ସମୟ ।

"...ତା'ପରେ ଅନୁ, ତୁମେ ତାକୁ ଆଉ ସମ୍ଭାଳି ପାରିବ ନାହିଁ, ତାକୁ ତିନି ଉଦୁଙ୍କାରେ ଟେକି ପାରୁନାହଁ । ମୋତେ ଯିବାକୁ ହେଉଛି, ମୁଁ ନଥିଲା ବେଳେ ତୁମେ କ'ଣ କରୁଥିବ ସେ କଥା ଭାବି ମୁଁ କାମ କଲାବେଳେ ବି ହାତ ଅଟକି ଯାଉଛି ।"

ଟିକିଏ ରସିକତା କଲାଭଳି କହିଲା "ତୁମ ସ୍ନେହ ଆଦର ପାଇଲେ ତ ଶୁଖିଲା ଗଛ ବି କଅଁଳିଯିବ । ତା' ଓଜନ ପାଞ୍ଚବର୍ଷରେ ପଚିଶ୍ କେଜି କରିଦେଲଣି ।... ମୁଁ ବି ତ ଦଶ କେଜି ବଢ଼ିଯାଇଥିଲି । ଏବେ ଯାହାହଉ ଟିକିଏ ବାଟକୁ ଆସିଲିଣି ।" –

"ଧେତ୍ ପିଲାଟା ଉପରେ ଏମିତି ଆଖି ପକାଅ ନାହିଁ । ଶୁଖିଯିବ –"

"ହଉ, ତାକୁ ଷାଠିଏ ପଉଟି ଭୁଞ୍ଜାଉଥାଅ । ତୁମ ଜଗୁ ଶେଷକୁ ଜଗନ୍ନାଥ ପରି ଅଚଳ ମହାମେରୁ ହୋଇଯିବ, ଷୋଳଜଣ ସେବକ ଲାଗିଲେ ବି ଘୁଞ୍ଚିବ ନାହିଁ ।"

"ଆଚ୍ଛା ତା'ହେଲେ କ'ଣ କହୁଛ, 'ମୁଁ କାଲି ସୁନୀଲ ସାଙ୍ଗରେ ଯାଇ ଦେଖିଆସେ ।"

ଏଥର ସହଜ ହୋଇ ଅନୁ କହିଲା 'ଯାଅ ।'

'ଜଗୁ' ସେମାନଙ୍କର ପଙ୍ଗୁ ପୁଅ । ଗୋଡହାତ ଅକ୍ଷମ । କଥା କହିପାରେ ନାହିଁ । ପୋଷା ପକ୍ଷୀଟିଏ ପରି ବିଭିନ୍ନ ରାବ କରେ । ଶୁଣିବା ଦେଖିବା ବହୁ ଉପଚାର ପରେ ଟିକିଏ ବାଗେଇଛି । ମସ୍ତିଷ୍କ ଅପରିପକ୍ୱ । – ଡାକ୍ତରଖାନାରେ ଜନ୍ମହେଲା । ଡାକ୍ତର ନର୍ସ ଆଶା କରୁନଥିଲେ, ବୋଧହୁଏ ଚାହୁଁନଥିଲେ ସେ ବଞ୍ଚୁ ବୋଲି, କିନ୍ତୁ ସେ ବଞ୍ଚିଲା । ଅନୁ ତାକୁ ଜାକି ଧରିଲା ଅମୂଲ୍ୟ ଅଥଚ ଅଠିକଣା କଣ୍ଢେଇଟିଏ ପରି । ତାକୁ କ୍ଷୀର ଦେଲା । ତା' ମୁଣ୍ଡକୁ ଆଉଁସି ଦେଲା । ତା'ର ବଙ୍କାଟଙ୍କା କଅଁଳିଆ ହାତଗୋଡ ଗୁଡିକୁ ଫିଟେଇବାକୁ ଚାହିଁଲା । କାଟିବାରୁ ସେ ଛଟପଟ ହେଲା । ଅନୁ ଆଖିବୁଜି ତାକୁ କୋଳେଇ ନେଲା । ଲୁହଧାରରେ ତକିଆ ଓଦା ହୋଇଗଲା । ସେ ଧାର ଏବେବି ଶୁଖିନାହିଁ ।

ଚିଲ୍‌ଡ୍ରେନ୍‌ସ କେଆର୍‌ରେ ସବୁ ବୁଝାଶୁଝା କଲାପରେ ସେଠି ଦାୟିତ୍ୱରେ ଥିବା ସମସ୍ତଙ୍କ ସାଙ୍ଗରେ କଥାବାର୍ତ୍ତା ହେବାପରେ ଅନୁ ତଥାପି ଛାଡିବାକୁ ରାଜି ନଥାଏ । ମେନେଜରଙ୍କୁ କହିଲା, "ଆଚ୍ଛା ମୋତେ କିଛିଦିନ ଏଇଠି ରହିବାକୁ ଦେଉନାହାଁନ୍ତି ? ଏମାନେ ତା' କଥା ବୁଝିଗଲେ ମୁଁ ବରଂ ଚାଲିଯାନ୍ତି । ଆପଣ ତ' ସପ୍ତାହରେ ଥରେ ଆସିବାକୁ ନିୟମ କରିଛନ୍ତି । ମୁଁ କିନ୍ତୁ ତାକୁ ଛାଡି ରହିପାରିବି ନାହିଁ । ମୋର ତ' ସାରା ସମ୍ପତ୍ତି ସେଇ କେବଳ । ଦଶ ପନ୍ଦର ମିନିଟ୍ ପାଇଁ ହେଉ ପଛକେ, ମୁଁ ସବୁଦିନ ସଞ୍ଜବେଳେ ଥରେ ବୁଲିଦେଇ ଯାଉଥିବି । ଆପଣ ନାହିଁ କରନ୍ତୁ ନାହିଁ, ମୁଁ ଆପଣ ଚାହିଁଲେ ପିଲାଙ୍କ ଖେଳବେଳେ ରହି ସାହାଯ୍ୟ କରିପାରେ, ମୋର ଟ୍ରେନିଂ ନାହିଁ ସତ ।

କିନ୍ତୁ ସ୍ନେହ ଦେବା କ'ଣ ଟ୍ରେନିଂରେ ଶିଖିହୁଏ ? ମୁଁ ପିଲାଙ୍କୁ ଭାରି ଭଲପାଏ । ମୋର ଯଦି ଏ ଗୋଟିଏ ନ ହୋଇ ଆଉ ହୋଇଥା'ନ୍ତେ ମୁଁ ଖୁବ୍ ଖୁସି ହୋଇଥା'ନ୍ତି ।..."

ଡାକ୍ତର ବାବୁ ସାଇକିଆଟ୍ରିଷ୍ଟ । ସେ ଅନୁକୁ ନୀରବ ରହି ଶୁଣୁଥା'ନ୍ତି । ଅଳ୍ପ ହସି ସମର୍ଥନ କରୁଥା'ନ୍ତି । ସେ ସବୁ ଦୁଃଖ କହିସାରିଲା ପରେ ସେ ବିକାଶକୁ ଥରେ ଚାହିଁଦେଇ କହିଲେ –

"ମାଡାମ୍, ଆପଣ ଯାହା କହିଲେ ସେଥିରେ ମୁଁ ଆପଣଙ୍କ ସହିତ ହଣ୍ଡ୍ରେଡ୍ ପରସେଣ୍ଟ ଏକମତ । ସବୁଠିକ୍ । କିନ୍ତୁ ଆମେ ଚାହୁଁଛୁ ଏ ପିଲାଗୁଡିକୁ ଆସ୍ତେ ଆସ୍ତେ ସ୍ୱାବଲମ୍ବୀ କରିବାକୁ । ସେଥିପାଇଁ ବାପ ମା'ଙ୍କ ପାଖରୁ ଦୂରେଇ ନ ରଖିଲେ ସେମାନଙ୍କୁ ଟ୍ରେନିଂ ଦେଇ ହେବନାହିଁ । ସେଥିପାଇଁ ଖୁବ୍ ବୁଝିବିଚାରି ଆମେ କିଛି ନିୟମ କରିଛୁ । ଅନୁଷ୍ଠାନକୁ ବିଶ୍ୱାସ କରି, ଆପଣଙ୍କ ଜଗୁର ଭଲ ପାଇଁ ଆପଣ ଆମ ସହିତ ସହଯୋଗ କରିବେ ବୋଲି ମୁଁ ଅନୁରୋଧ କରୁଛି । ଆପଣ ପରୀକ୍ଷା କରି ଦେଖନ୍ତୁ । କ'ଣ, କେମିତି ହେଉଛି, ଥରେ ଆପଣ ବୁଝିଗଲେ ଆଉ ଏତେ ବ୍ୟସ୍ତ ଲାଗିବ ନାହିଁ । ଆମେ ଆପଣଙ୍କ ପିଲାର ସବୁ ପ୍ରକାର ଦାୟିତ୍ୱ ନେଲୁ । ଆପଣ ନିୟମିତ ଆସି ଦେଖି ଯାଉଥିବେ । କିଛି ଚିନ୍ତା କରିବେ ନାହିଁ ।"

ବିକାଶ କହିଲା, "ମୁଁ ଅନ୍ୟ ପାରେଣ୍ଟମାନଙ୍କୁ ଭେଟିଲିଣି । ସେମାନେ ସମସ୍ତେ ଖୁବ୍ ଖୁସି ଜଣାପଡୁଛନ୍ତି । ଏଣୁ ଜଗୁକୁ ଯେଉଁ ରୁମ୍ ସେମାନେ ଦେଉଛନ୍ତି ଚାଲ ଟିକିଏ ଦେଖି ନେଇଯିବା । କାଲି ତାକୁ ନେଇ ଆସିବା ।"

ଅନୁ ସେ ରୁମ୍ ଦେଖି କହିଲା, "ହସ୍ପିଟାଲ୍ କ୍ୟାବିନ୍ ଭଳି ହେଇଚି । ଏଠି ରୋଗୀ ଜଣେ ଚାଲିବୁଲି ପାରୁଥିବା ବଡ ମଣିଷ ସିନା ରହିବ । କିନ୍ତୁ ଜଗୁ କେମିତି ରହିବ ? ତା' ପାଖରେ କିଏ ଶୋଇବ ? ସେ ତ' ରାତିରେ କୋଡରେ ପଶିବାକୁ ଚାହିଁବ । ଭାରି ଭଦ୍ର ସଫା ସୁନ୍ଦର ଲୁଗା ପିନ୍ଧିଥିବା ଟିକିଏ ବୟସ୍କ ନର୍ସ କହିଲା: ମୁଁ ଜଗୁ ଦାୟିତ୍ୱରେ ଅଛି । ଆପଣ ଚିନ୍ତା କରିବେ ନାହିଁ, ମା' କୋଡରେ ଶୋଇଲା ଭଳି ବ୍ୟବସ୍ଥା ଆମେ କରିଦେବୁ । ସେ ଜମା ଜାଣିପାରିବ ନାହିଁ ।"

ଅନୁର ମନ ଆଦୌ ମାନୁ ନଥାଏ । ଜଗୁ ତ' ବିକାଶ ପାଖରୁ ଗଡିଗଲେ ଜାଣି ଦେଉଚି । ଏଠି କେମିତି ଚଳିବ ? –

"ଆଚ୍ଛା ସିଷ୍ଟର, ସକାଳୁ ଟଏଲେଟ୍ ଯିବାକୁ ସେ ଇସାରା କରିଦିଏ । ତୁଣ୍ଡରେ ଗୋଟାଏ ପ୍ରକାର ଶବ୍ଦ କରେ । ସେ ଭାରି ଭଦ୍ର । ବିଛଣା ଅସନା କରେନାହିଁ । ପାଣିରେ ଇଉଡି କଲୋନ୍ ଟିକିଏ ପଡିଲେ ସେ ଭଲପାଏ । ସଥିରେ, ସେ ଶୌଚ ହୁଏ । ସାଧାରଣ ବେବି ସୋପ୍‌ରେ ତା'ରି ଏଲର୍ଜି ହୁଏ । ତା'ର ଡ୍ରେସ୍‌ପଟା, ତା'ର ଟାଓ୍ୱେଲ୍ ସବୁଥିରେ ଟିକିଏ ପରଫ୍ୟୁମ୍ ଦରକାର । ନ ହେଲେ ସେ ଦେହରେ ଦେଇ ଦେବନାହିଁ । ରାଗିବ । ଗରଗର ହୋଇ ଶୁଧିବ ।"

ନର୍ସଟି ଦେଖିବାକୁ ଭାରି ନରମ, ସୁଶ୍ରୀ, ସଫା ସୁତୁରା, ଟିକିଏ ବୟସ୍କା । ସେ ଅଳ୍ପ ଅଳ୍ପ ହସି ଶୁଣୁଥାଏ । ଅନୁ ଚୁପ୍ ହେବାରୁ ସେ କହିଲା – ମାଡାମ୍, ଆପଣ ଏସବୁ କଥା ଲେଖିକରି ଦେଇଛନ୍ତି, ସେ ସବୁ ମୁଁ ଷ୍ଟଡି କରିସାରିଛି । ଜଗୁ ହଳଦିଆ ରଙ୍ଗ ପସନ୍ଦ କରେ । ମିଠା ବିଶେଷ

ଭଲପାଏ ନାହିଁ । ଛେନା ଖାଏ । ଗାଧୋଇ ସାରି ପାଉଡର ବୋଳି ହେବାକୁ ଚାହେଁ । ମ୍ୟୁଜିକ୍ ବାଜିଲେ ଝୁଲି ଝୁଲି ଖାଏ । ଶୋଇବା ପୂର୍ବରୁ ତା' ମୁଣ୍ଡରେ ଉଶ୍ୱାସରେ ଆଙ୍ଗୁଳି ସାଉଁଳି ଆଣିଲେ ସେ ଶୋଇଯାଏ । ପାଦରେ ସଲ ସଲ କଲେ ଖୁବ୍ ଖୁସି ହୁଏ । –

ଅନୁ ମୁଗ୍ଧ ହୋଇ ଶୁଣିଲା । ତା'ପରେ ତା' ହାତ ଧରି ପକେଇ କହିଲା, "ସିଷ୍ଟର୍ ତମେ ତା'ର ମା' ହେଲ, ତାକୁ ସମ୍ଭାଳି ରଖିବ । ମୁଁ ନିତି ଆସି ବୁଝି ଯାଉଥିବି ।"

ଜଗୁ ଚିଲ୍ଡ୍ରେନ୍ସ କେଆର୍‌ରେ ରହିଲା ପାଞ୍ଚବର୍ଷ । ତାରି ଭିତରେ ଅନୁ ଆଉ ବିକାଶ ପରସ୍ପରକୁ ପୁଣି ଆବିଷ୍କାର କଲେ । ପୁରୁଣା ବଦଳରେ ଖଣ୍ଡେ ନୂଆ ଗାଡି କିଣିଲେ । ନୂଆ ପରଦା ଚାଦର ଲାଗି ଘର ସୁନ୍ଦର ଦିଶିଲା । ବଗିଚା ସୁନ୍ଦର ଦିଶିଲା । ଜାତି ଜାତି ଫୁଲ ଫୁଟିଲା ଅନେକ । ବାଟହୁଡା ବସନ୍ତ ସତେ ବା ପୁଣି ଫେରିଆସିଲା ତାଙ୍କ ଉପବନକୁ ।

ନାନା ପ୍ରକାର ଔଷଧ ଦ୍ୱାରା ସେମାନେ ଜଗୁର ଦୁଇଟି ହାତକୁ କିଛି ପରିମାଣରେ ସଚଳ କରିଦେଲେ । ଫଳରେ ସେ ହାତରେ ଖାଇପାରିଲା । ହାତ ଉପରେ ଭରାଦେଇ ଘୁଞ୍ଚି ପାରିଲା ।

ତା' ଆଗରେ ନାଲି ବଲ୍ ଥୋଇ ଦେଇ ତାକୁ ଆଣିବା ପାଇଁ କହିଲେ, ସେ ଉହୁଙ୍କି ହୋଇ, ନାନା ପ୍ରକାର ଶବ୍ଦ କରି, ଥରେ ଦୁଇଥର ମୁହଁ ମାଡି ପଡିଲା ପରେ ବି ଶେଷରେ ଯେତେବେଳେ ସେ ବଲ୍‌ଟାକୁ ଧରି ନେଉଥିଲା ସେତେବେଳେ ଆକାଶରେ ଚିଲ କୁରୁରିଲା ପରି ଗୋଟାଏ ଶବ୍ଦ କରୁଥିଲା । ଅନୁ ଦେଖି ଆସି ବିକାଶ ଆଗରେ ଅନେକ ସମୟ ଧରି ବଖାଣିଥିଲା ବିହ୍ୱଳ ହୋଇ ।

ହଠାତ୍ ତା'ର ମନେ ହେଲା ଯେମିତି ବିକାଶ ଶୁଣୁନାହିଁ । ସେ ରହିଗଲା ।

ବିକାଶ ବି ଚମକିଲା ପରି କହିଲା, "ଆଚ୍ଛା, ସେଇଠୁ କ'ଣ ହେଲା ।" ଅନୁ ଜାଣିଲା ବିକାଶ ଅନ୍ୟମନସ୍କ ଥିଲା । କହିଲା, 'ତମେ ନିଜେ ଯାଇ କାଲି ଦେଖିଲେ ଜାଣିବ !' ବିକାଶର କୌଣସି ମନ୍ତବ୍ୟ ନଥିଲା, ଉତ୍ସାହ, ଉତ୍ସୁକତା ନଥିଲା । ସେଇଠୁ ଉଠିଗଲା ବେଳେ ପଛକରି କହିଲା, ଅନୁ, ଜଗୁକୁ ସେମାନେ ଆଉ ରଖିବେ ନାହିଁ । ତାକୁ ଆଣି ଏଠି ରଖିବାକୁ ପଡିବ । "ନା, ନା', ତା' କେମିତି ହେବ, ଆମେ ତାଙ୍କୁ ପଇସା ଦଉଚୁ । ମାସକୁ ଦଶ ହଜାର ନଉଛନ୍ତି । ରଖିବେ ନାହିଁ କାହିଁକି ? – ସେମାନେ ତ ମତେ କିଛି କହିଲେ ନାହିଁ ।"

"ମତେ ନୋଟିସ୍ ଦେଇଛନ୍ତି । ଏ ମାସ ଶେଷରେ ନେଇଆସିବାକୁ ହେବ ଆଉ ଚାରିଦିନ ରହିଲା ।"

ଅନୁ ଆସି ବିକାଶ ସାମ୍ନାରେ ଠିଆହେଲା । କହିଲା, ମୋ' ଆଖିକୁ ଚାହିଁ ଜବାବ୍ ଦିଅ । ତମେ ନିଜେ କିଛି କହି ନାହଁତ ? ମାସିକ ଫିଜ୍ ଆଉ ଚିକିତ୍ସା ଖର୍ଚ୍ଚ ଖୁବ୍ ବେଶୀ ନଉଛନ୍ତି ବୋଲି କହୁଥିଲ । ପାଞ୍ଚ ବର୍ଷରେ ସାତଲକ୍ଷ ସରିଲାଣି ବୋଲି ହିସାବ କରୁଥିଲ । ଆଉ କହୁଥିଲ, କ'ଣ ଲାଭ ଏମିତି ପାଣି ପରି ପଇସା ଫିଙ୍ଗିବାର, ଜଗୁ ତା' ଆଉ ମଣିଷ ପିଲା ପରି ଠିଆ ହୋଇ

ଖେଳିବୁଲି ପାରିବନାହିଁ । – ସତ କହ ବିକାଶ, ଜଗୁ ତମକୁ ବୋଝ ଭଳି ଲାଗୁ ନାହିଁ ତ । ସେ ବିକାଶର ଦୁଇ ଡେଣାକୁ ଧରି ଝାଙ୍କିଦେଲା । କହ ମତେ ସଫା ସଫା ।

ବିକାଶ ତଳକୁ ଆଖି କରିନେଲା । ଆଡେଇ ହୋଇ ଚାଲିଗଲା ବେଳେ କହିଲା, "ମୁଁ ତୁମକୁ ପରେ ଏ ବିଷୟରେ କହିବ !" ଅନୁ ଗୋଡେଇ ଯାଇ ବାଟ ଓଗାଳିଲା – ମତେ ଏଇନା କହ, ମତେ ତୁମେ କ'ଣ ନିଶ୍ଚୟ ଲୁଚଉଚ !

"ଆରେ ବଡ ଆଶ୍ଚର୍ଯ୍ୟ କଥା । ମୁଁ କ'ଣ କହିବି ତୁମକୁ ? ତୁମେ ତ କେବଳ କହିଚାଲିଚ ! ତା' ବାହାରେ ମତେ ବର୍ତ୍ତମାନ କିଛି ସମୟ ଏକା ବସିବାକୁ ଦିଅ । ପାରିବ ଯଦି କପେ ଚା ତିଆରି କର !"

ଅନୁର ହାତ ଯୋଡିକ ନିର୍ଜୀବ ଲଇ ଭଳି ଓହଳି ପଡିଲା । ସେ ଆସ୍ତେ ଘୁଞ୍ଚିଗଲା ସେଇଠୁ । ବୋଧହୁଏ ଚା କରିବାକୁ ନ ହେଲେ କାନ୍ଦିବାକୁ! ବିକାଶକୁ ଏମିତି କଥା କହିବାର ସେ ଶୁଣି ନଥିଲା, କ'ଣ ହେଲା ସତେ । ଜଗୁ ସେଇଠି ବଢିଆସୁଛି, ତା'ର ବୁଦ୍ଧି ହେଇଆସୁଛି । ନିଜେ ଚଳିପାରୁଛି । – ଆଉ ପାଞ୍ଚଟା ବର୍ଷକୁ କେତେ ବଦଳି ଯାଆନ୍ତା । କ'ଣ ନା, ପୁଣି ତାକୁ ଏଠିକି ନେଇ ଆସିବେ – କ'ଣ ଆମେ କରିପାରିବୁ ତା'ର । ଶୂନ୍ୟକୁ ଚାହିଁ ଅନୁ ଠିଆ ରହିଯାଇଛି । ତା' ମନ ଭିତରେ ତୁହାକୁ ତୁହା ଝଡ ଉଠୁଛି । ସେ ଆଖିରେ ପଲକ ନ ପକାଇ ଚୌକିଟି ଉପରେ ବସି ରହିଛି ନିଶ୍ଚଳ ପ୍ରତିମା ଭଳି । ସେପଟେ ବିକାଶ ବି ତା' ଷ୍ଟଡି ଟେବୁଲ ପାଖରେ ବସିଯାଇଛି । ପେପରୱେଟ୍‌ଟାକୁ ଅନ୍ୟମନସ୍କ ଏପଟ ସେପଟ କରୁଛି । ରାତି ଘନେଇ ଆସୁଛି । ମେଘ ଘୋଟି ରହିଛି । କେଜାଣି କ'ଣ ହେବ !

ଏମିତି ନୀରବରେ ବୋଧହୁଏ ସେମାନେ ପରସ୍ପରକୁ ବୁଝିଗଲେ ନା କ'ଣ । ସତରେ କ'ଣ ଚା ପାଇଁ ବେଳ ଥିଲା ନା ଇଚ୍ଛା ଥିଲା । ସେମାନେ ଡିନର ବି ଭୁଲିଗଲେ । ପଲଙ୍କର ଦୁଇଟି ଧାରରେ ଦି'ଜଣ ସେମିତି ଘାଲେଇ ପଡିରହିଲେ, ନିଦ ନାହିଁ, କଥାବାର୍ତ୍ତା ବି ନାହିଁ ।

"ଶୁଣୁଚ !" ରାତି ବୋଧହୁଏ ବାରଟା ।

ଚଟକ ପଡିଲା ପରି ସେ ଶବ୍ଦ, ୟାପରେ କ'ଣ ବୋଇଲେ କ'ଣ ବର୍ଷିଯିବ । ଅନୁ ବୁକୁ ଧଡଧଡ କମ୍ପିଲା । ସେ ଉଠି ବସିଲା । କିଛି କହିଲା ନାହିଁ ।

ଖୁବ୍ ଆସ୍ତେ ବିକାଶ ବି ବସିଲା । ଘୁଞ୍ଚି ଆସିଲା ଅନୁ ପାଖକୁ, ତାକୁ ବାହୁରେ ବେଢେଇ ନେଲା ବୁକୁ ଉପରକୁ । ପିଠି ଆଉଁସି ଦେଇ ଫିସ୍ ଫିସ୍ କହିଲା, "ଆମେ ଜଗୁକୁ ଫେରାଇ ଆଣିବାକୁ ହେବ । ଏଠିକି ନୁହେଁ ଏଇ ଆଇ ଏମ୍ ଏସ୍‌ରେ ଦାଖଲ କରିବାକୁ ହେବ ।"

ଅନୁ କାଠେଇ ଗଲା । "କାହିଁକି ?" ଆଶଙ୍କା ବୋଝରେ ନଇଁ ଯାଇଥିଲା ପ୍ରଶ୍ନଟି ।

"ବି ବ୍ରେଭ, ଅନୁ । ଆମର ଦୁର୍ଭାଗ୍ୟର ସୀମା ନାହିଁ । ଜଗୁକୁ ବୋନ୍ କ୍ୟାନସର୍ । ଫାଷ୍ଟ ଷ୍ଟେଜ୍‌ରେ ଅଛି । ଇଲାଜ୍ ଦରକାର – ଭଲ ହୋଇଯିବାର ବହୁତ ଚାନ୍ସ ।"

ଅନୁ କେବଳ ଲୁହରେ ଝରିଗଲା ନୀରବ । ରାତିସାରା । ବିକାଶର ଚିନ୍ତାର ସୀମା ନାହିଁ ।

– ସେ ବନ୍ଧା ପଡିଯାଇଥିବା ଶାର୍ଦ୍ଦୁଳ ପରି ଛଟପଟ ହେଉଥିଲା । ଭୟଙ୍କର କ୍ରୋଧରେ ନିଜ ହାତରେ ଘୁସି ମାରୁଥିଲା, ଅସହାୟତାରେ ସକ୍‌ସକ୍ କାନ୍ଦିପକାଉଥିଲା ।

"କାହିଁକି, କାହିଁକି ଆମକୁ ବଞ୍ଚିବାକୁ ଦିଆଯାଉ ନାହିଁ ? କାହିଁକି ଗୋଟାଏ ମାଦଳକୁ ଆମ ବେକରେ ଓହଳେଇ ଦେଇ ଅପତ୍ୟ ନାଁରେ ଛଟପଟ କରୁଛି ? ଏଭଳି ଆମେ ବଞ୍ଚିବାର ଅର୍ଥ କ'ଣ ? ଜଗୁ ବଞ୍ଚିବାର ଅର୍ଥ କ'ଣ । କ'ଣ ହବ ସେ ବଞ୍ଚି ରହିଲେ । ଆମର ପରମାୟୁ ତ' ଜଳିଯାଉଛି । ଏଭଳି ଆଉ କେତେ ଦିନ ? ବୋଧହୁଏ ପ୍ରଥମେ ମୁଁ ହିଁ ମରିଯିବି । ତା'ପରେ ଅନୁ କ'ଣ କରିବ, ସେ ଅଥର୍ବ ପିଣ୍ଡଟିକୁ ନେଇ ? ସେ ବି ହୁଏତ ସମ୍ଭାଳି ନପାରି ଦିନେ ଟଳିପଡିବ । ସେଇଠୁ । ସକାଳୁ ଜଗୁର ବୋବାଳି ଶୁଣିବାକୁ କେହି ନଥିବେ । ସେ କିଛି କଦର୍ଥନା ଭୋଗିଲା ପରେ ହୁଏତ ଅସନା ମସନା ଭିତରେ ଭୂଇଁରେ ପଡିରହିବ ନିର୍ଜୀବ ।" –

ଛାଟ ମାରିଲା ପରି ସେ ଉଠିପଡିଲା ଶେଯରୁ । ଝର୍କା ବାଟେ ବାହାରକୁ ଚାହିଁ ରହିଲା । ଓଦା ଓଦା ପବନ ତା' ମୁହଁ ଦେହରେ ବାଜି ବାମ୍ଫ ହୋଇଗଲା – କିଛି ଉତାପ କମିଗଲା ।

"ଡକ୍ଟର ମାଲହୋତ୍ରା ଖୁବ୍ ବୁଝିପାରେ । ଭଲ ନାଁ ଅଛି, ସେ ଯେଉଁ ନ୍ୟୁ ଜେନେରେସନ୍ ଡ୍ରଗ୍ କଥା କହୁଛି ସେଇଟା, କହିଲେ ସେ ମଗେଇ ଦେବ । ଗୋଟାଏ କୋର୍ସକୁ ଲକ୍ଷେ କୋଡିଏ । କେତେ କୋର୍ସ ଲାଗିବ ସେ କହିପାରିବ ନାହିଁ । – ସବୁ ଡିପୋଜିଟ୍ ସରି ଯାଇପାରେ – ସେ କହୁଛି ଯେ ଔଷଧ ନିଶ୍ଚୟ କାମ କରିବ । ନ କରି ବି ପାରେ । – ଯଦି ଧରାଯାଉ କାମ କଲା, କ'ଣ ହବ ? ଏବର ଅବସ୍ଥାଟା ହିଁ କାଏମ୍ ରହିବ । ୟା'ର ତ ଆଉ ପରିବର୍ତ୍ତନ ନାହିଁ କି ପ୍ରତିକାର ନାହିଁ ! କେନ୍‌ସର ଭଲ ହେଲେ ବି କ'ଣଟାଏ ଡାମେଜ୍ କରି ଦେଇଯିବ ହୁଏତ !"

ବିକାଶ ଭିତରେ କେତେ କ'ଣ ସବୁ ଓଲଟ ପାଲଟ ହୋଇଯାଉଥାଏ । ବିକାଶ କାନାଡା ଯିବାକୁ ସବୁ ସ୍ଥିର ହୋଇସାରିଥିଲା । ସେଇଠି ହୁଏତ ତା'ର ରହିଯିବାର ସୂଚନା ମିଳୁଥିଲା । ଅନେକ ସ୍ୱପ୍ନରେ ଉବୁଟୁବୁ ହେଉଥିଲା ବେଳେ ଛ'ମାସ ପରେ ଅନୁ ଆଉ ତା'ର ସନ୍ତାନକୁ ନେବା ପାଇଁ ଯୋଜନା କଲାବେଳେ, ହଠାତ୍ ସବୁ ଚୁରମାର ହୋଇଗଲା । ଗୋଟାଏ ଧୂମକେତୁ ପରି ଏ ପଙ୍ଗୁ ଆସି ସାରା ଆକାଶକୁ ସୋରା ସୋରା କରିଦେଲା । – କେବଳ ଅନୁର ସହଯୋଗୀ ହେବା ପାଇଁ ସିନା ବିକାଶ ସେ ଭାର ସମ୍ଭାଳୁଥିଲା, ନ ହେଲେ ସତ କହିବାକୁ ଗଲେ ଜଗୁକୁ ବହୁ ସମୟ ଧରି ଅନେଇ ରହିଲା ପରେ ତା' ବୁକୁ ଭିତରୁ ଗୋଟାଏ ଦୀର୍ଘଶ୍ୱାସ ବାହାରି ଆସିଛି । – ହୁଏତ' ସେ ଦୁଃଖ ମୁଣ୍ଡେଇ ଜନ୍ମିଥିବା ଅଥର୍ବଟି ପାଇଁ କିଛି ଦୟା, କିଛି ସହାନୁଭୂତି ଜନ୍ମିଛି, ସେମିତି ତ' ଅନ୍ୟ ଯେକୌଣସି ପଙ୍ଗୁଟିକୁ ଦେଖିଲେ ମଧ ହୋଇଥାନ୍ତା, ବଡଭାଗ କିନ୍ତୁ ସେ ଦୀର୍ଘଶ୍ୱାସରେ ରହୁଛି ବିମର୍ଷତା, ଅସହାୟତା, ଅଭିଶାପକୁ ବୋହିବାକୁ ବାଧ ହେଉଥିବାରୁ ପ୍ରଚଣ୍ଡ କ୍ରୋଧ ଓ ବିଦ୍ରୋହ । ତେବେ କେବେହେଲେ ସେ ଅନୁକୁ ଅନୁଭବ କରିବାକୁ ଦେଇନାହିଁ ଯେ ତା'ର ସନ୍ତାନ ପ୍ରତି ତା' ମନରେ ବିତୃଷ୍ଣା ବା ଏକପ୍ରକାର ବୈରଭାବ ଲୁଚି ରହିଛି । ଅନ୍ତରାଳରେ ଥାଇ ଅନୁର ଅଲକ୍ଷ୍ୟରେ ସେ ଉତ୍ପୀଡକର ଅନିଷ୍ଟ ଯେ ସେ କାମନା କରିନାହିଁ, ଏକଥା କହିହେବ ନାହିଁ । ଅନୁକୁ ନେି ସେ

ଟା'ର ଜୀବନ ଆରମ୍ଭ କଲାବେଳକୁ ହିଁ ଏ ଶତ୍ରୁ ଗ୍ରହ ଆସି ଗ୍ରାସିଗଲା । ସେମାନେ ସୁଖ କ'ଣ ଆଉ ଜାଣିଲେ ନାହିଁ । କେବଳ ଏଇଟା'ର ସେବା କରିବା, ତାକୁ ଟେକି ଟେକି କୂର୍ମ ହେବାରେ କ'ଣ ବାତ୍ସଲ୍ୟ ବା ଦାମ୍ପତ୍ୟର ସୁଖ ସମ୍ଭବ ? – ନା' – ଜୀବନ ସମ୍ଭବ ?

ଚିଲଡ୍ରେନ୍ସ କେଆରରେ ପାଞ୍ଚବର୍ଷ ତାକୁ ଛାଡି ଟିକିଏ ଖୁସିରେ ରହିଆସିଲା ବେଳକୁ, ଏ ନୂଆ ବିପତ୍ତି ଆସି ଗ୍ରାସିଗଲା । ବୋନ୍ କ୍ୟାନ୍ସରରେ ସେ କେତେଦିନ ଭୋଗିବ, କେତେଦିନ କ୍ୟାନ୍ସର ୱାର୍ଡରେ ପହରା ଦେବାକୁ ହେବ ଭାବି ବିକାଶ ଶଙ୍କି ଯାଉଥିଲା । କେତେ ସାଧାରଣ ସାମାନ୍ୟ ସୁଖ ସତେ ଅନୁକୁ ସାଙ୍ଗରେ ନେଇ ବଜାରକୁ, ପାର୍କକୁ, ବନ୍ଧୁମାନଙ୍କ ଘରକୁ ଯିବା । ରାତିରେ ମନ ହେଲେ ବାହାରେ ଡିନର କରି ଘରକୁ ଫେରବା, ପରସ୍ପରକୁ ନିର୍ବିରୋଧ ଘନିଷ୍ଠ ଭାବରେ ପାଇବା ! ଗୋଟିଏ ସମୟରେ ବିଭାହେଲା ପରେ କେତେ ଅଲଗା ହୋଇଗଲା ବିନୁ ଆଉ ଅନୁର ଜୀବନ – ମୂଳ ଦୁଃଖ ହେଲା, କାହିଁ ରାଜକୁମାର, କାହିଁ ଜଗୁ, କାହିଁ ବିନୁ ଆଉ ଅମ୍ବିକା ପ୍ରସାଦ, କାହିଁ ହତଭାଗ୍ୟ ଆମେ ! – ତଥାପି ଏ ପାଞ୍ଚବର୍ଷରେ ଯାହା ପାଇଛି ବିକାଶ ସେଥିରେ ସନ୍ତୁଷ୍ଟ । ଏତିକି ତ ଅନ୍ତତଃ ମିଳିଲା । କିନ୍ତୁ ଏବେ ତ' ବିପତ୍ତି ଆହୁରି ଭୟାନକ ରୂପରେ ଲେଉଟି ଆସୁଛି ! ଛାରଖାର କରିଦେବ ଜୀବନ, ତିନିଟା ପ୍ରାଣୀ ଏକତ୍ର ଭୋଗିବେ ଅମାପ ଦୁଃଖ । ଏମିତି କଷ୍ଟ ନପାଇ ତିନିହେଁ ଏକତ୍ର ମରିଗଲେ କେମିତି ହୁଅନ୍ତା ? ଜୀବନ ଯଦି ବଞ୍ଚିବାର ଯୋଗ୍ୟ ନୁହେଁ ମରିଗଲେ କ୍ଷତି କ'ଣ ? – ବିକାଶର ଉତ୍ତେଜିତ ମନ ମଞ୍ଚରେ ତିନିଜଣ ଏକତ୍ର ମରିବାର ଯାବତୀୟ ଚିତ୍ର ଦିଶିଗଲା ଓ ମରିବାର ଯାବତୀୟ ଉପାୟ ସବୁ ମଧ ଦେଖାଗଲା ।

ଏମିତି ଏମିତି ସେ ବିଭୀଷିକାମୟ ରାତିଟି ଠିଆରେ ପାହିଗଲା । ଅନୁ ବି ଶୋଇଚି କି ନାହିଁ କେଜାଣି । ସେ ପ୍ରଥମେ ଉଠି ବିକାଶକୁ ବାହାରକୁ ରହିଁ ଠିଆ ହେବାର ଦେଖିଲା । ଏତେ ସହଜ ଉଠିବା ବିକାଶର ଅଭ୍ୟାସ ନୁହେଁ । – ସେ ସତରେ କେତେ ଦୁଶ୍ଚିନ୍ତା ମୁଣ୍ଡରେ ଭରି କେତେ କଷ୍ଟ ପାଉଛି, ଅନୁ ପାଇଁ, ଜଗୁ ପାଇଁ । ଅନୁର ଆଖି ଭରିଗଲା । ନିଜେ ବିକାଶ ପିଠିରେ ହାତ ରଖି ଠିଆହେଲା । ବିକାଶ ଚମକିଲା ନାହିଁ, ଲେଉଟି ରହିଁଲା ନାହିଁ, ତାକୁ ସବୁଦିନ ଭଳି ବାହୁରେ ଜଡେଇ ଧରିଲା ନାହିଁ ।

"ରାତି ସାରା ଶୋଇନା' ତମେ ?"

କୌଣସି ଉତ୍ତର ନାହିଁ ।

"ଭାବିଲେ ଲାଭ କ'ଣ ? ଆମେ କ'ଣ ଆଉ କରିପାରିବା ? ଯଦି ତୁମେ ଯାହା କହୁଥିଲ ତା' କରିବାକୁ ପଡେ, ତା'ହେଲେ ଜଗୁକୁ ସେଇଠୁ ନେଇଆସିବା । ତେଣିକି ଆମ ଭାଗ୍ୟରେ ଯାହା ଥାଉ ।" ଅନୁ ଆଲୁଅ ଟିପି ଦେବାରୁ ବିକାଶ ବିରକ୍ତ ହେଲା ଭଳି, 'ହେଃ' କହି ବୁଲି ପଡିଲା ।

ଆଲୁଅରେ ବିକାଶର ମୁହଁକୁ ଦେଖି ଅନୁ ପ୍ରାୟ ଚମକି ପଡିଲା । କେଜାଣି କାହିଁକି ବିକାଶ ତାକୁ ଭାରି ଭୟଙ୍କର ଦିଶିଲା । ବିକାଶ ଦୁଃଖରେ ଭାଙ୍ଗିପଡିଲା ବେଳେ ଆଉ ପ୍ରକାରେ ଦିଶେ, ସେତେବେଳେ ଅନୁ ତାକୁ ବାକୁ ଉପରକୁ ଆଉଜେଇ ନେଇ ମୁଣ୍ଡ ଆଉଁସି ଦିଏ, କିନ୍ତୁ ସେଦିନ

ସେ ନିଜେ ଭୟରେ ଘୁଞ୍ଚିଗଲା ପଛକୁ । ଏମିତି କ'ଣ ଦିଶୁଛି ବିକାଶ ? ଆଖି ଜଳୁଚି ତନ୍ଦତନ୍ଦ । ଗାଲ ପଶିଯାଇଚି । ମୁହଁ ଟାଣି ଯାଇଚି ଇସ୍ପାତ୍ ଭଳି । ବିକାଶ, ଆଲୁଅଟା ଲିଭେଇ ଦେଲା । ପଛେଇ ଯାଇ ବିଛଣାରେ ଚରିକାତ ମେଲେଇ କୁଢେଇ ହୋଇପଡିଲା । ଡରିଲା ଡରିଲା ପରି ଅନୁ ଚାଲିଗଲା ବୈଠକ ଘରକୁ । ସେଇଠି ଚୌକିଟିରେ ବସି ଗାଲରେ ହାତ ରଖି ଆଖି ବୁଜିଦେଲା ।...

ବିକାଶ ସତେ ଆଉ କେତେକାଳ ଧୈର୍ଯ୍ୟ ଧରି ସମ୍ଭାଳିବ! ସେ ବର୍ଷକ ଭିତରେ ବାପ ହେବାକୁ ଚାହୁଁ ନଥିଲା । ଅନୁକୁ ଟର ସହୁ ନଥିଲା । ସେ ଚାହୁଁଥିଲା ଯେତେ ଚଞ୍ଚଳ ସମ୍ଭବ ବିକାଶକୁ ତା' ସ୍ନେହର ଉପହାର ଦେବା ପାଇଁ, ସେ କି ଜାଣିଥିଲା ସେମିତି ଭାଗ୍ୟର ବିଡମ୍ବନା ସହିବାକୁ ହେବ ବୋଲି । ତଥାପି ବିକାଶ ଅନୁକୁ ଅତ୍ୟନ୍ତ ଭଲ ପାଇ ଆସିଛି । ତା' ଖାତିର୍‌ରେ ସେ ଜଗୁ ପାଇଁ କ'ଣ ବା ନ କରିଛି । ସବୁବେଳେ ଅନୁକୁ ବଳ ଯୋଗେଇ ଆସିଛି । – 'ଚିଲ୍‌ଡ୍ରେନସ୍ କେଆର'ରେ ଦାଖଲ କଲାପରେ ଠିକ୍ ସମୟରେ ଖିଆପିଆ କରି ବିକାଶ ଜୀବନ ସହିତ ସାଲିସ୍ କରିଆସୁଥିଲା । ଏବେ ପୁଣି ଏ ନୂଆ ବିପରି ପାଇଁ ସେ ପ୍ରସ୍ତୁତ ନଥିଲା । ଅନୁ ଭିତରେ ଭିତରେ ସଢି ଯାଉଥିଲା, ବିକାଶକୁ ଗୋଟିଏ ଉପଯୁକ୍ତ ଦାୟାଦ ଦେଇ ନପାରି । 'ଜଗୁ' ତ' ଏମିତି ହୋଇ ଜନ୍ମିଲା, ତା' ବାହାରେ ଅନୁର ଆଉଥରେ ମା' ହେବାର ସମ୍ଭାବନା ଟିକକ ମଧ ପୋଛି ଦେଇ ଆସିଲା । –ୟାପରେ ବିକାଶ କେଉଁ ଯୁକ୍ତିରେ ଅନୁକୁ ଏପର୍ଯ୍ୟନ୍ତ ସମ୍ଭାଳି ଆସିଛି ସେ ହିଁ ଜାଣେ । ଅନୁ ବିକାଶର ମୁହଁକୁ ଦେଖିଲେ ହିଁ ତା' ଭିତର ସବୁ ଜଳଜଳ ଦେଖିପାରେ – ଆଜି ବିକାଶର ସେ ଭୟଙ୍କର ମୁହଁ ଦେଖି ଡରିଗଲା ସତ, କିନ୍ତୁ ସେଭଳି ନ ହୋଇ, ଆଉ କ'ଣ ସତେ ହୋଇଥାନ୍ତା, ଏତେ ଧୋକ୍କା, ଧକ୍କା ଖାଇଲା ପରେ ।

ଅନୁର ବୁକୁଭରା ଦୀର୍ଘଶ୍ୱାସ ବାହାରିଗଲା । ସେ ଆସ୍ତେ ଘୁଞ୍ଚିଗଲା, ସକାଳର ନିତ୍ୟକର୍ମ ପାଇଁ । କେତେବେଳେ ବିକାଶ ଚା କପେ ଚାହିଁବେ କିଏ ଜାଣେ ? –

ମଝିରେ ଦୁଇଦିନ ସେମାନେ ସାମ୍ନାସାମ୍ନି ହୋଇନାହାନ୍ତି । ହୁଏତ' ଚାହିଁ ନାହାନ୍ତି ହେବାପାଇଁ । ଯେ ଯାହା ଜଗତରେ ଆନମନା ବସିଥା'ନ୍ତି ଖୁବ୍ ଉଦ୍‌ବିଗ୍ନ ଟଟସ୍ଥ ହେଲାପରି । ବିକାଶ ଯାଇଛି କେନସର ୱାର୍ଡରେ ଏଡମିଶନ କଥା ବୁଝିବାକୁ । ଅନୁ ଯାଇଚି ହ୍ୱିଲ୍‌ଚେୟାର ଆଉ ସାମୟିକ ଭାବରେ ଦିନକୁ ଦୁଇଘଣ୍ଟା କରି ଜଗୁର ଦେଖଭାଳ କରିବାକୁ, ଗୋଟିଏ ଲୋକ ବୁଝିବାକୁ ସେଇ ଚିଲ୍‌ଡ୍ରେନ୍ସ କେଆର ସଂସ୍ଥାରୁ ।

X X X X

ରାତି ପାହିଲେ ଜଗୁକୁ ଆଣିବାକୁ ହେବ । ସେଥିପାଇଁ ତା' ପୁରୁଣା ବଖରାକୁ ଅନୁ ସଜାସଜି କରିଦେଇଛି । ଖାଇବା ଟେବୁଲ୍, ଟଏଲେଟ୍ କମୋଡ ଆଦି ତଦରଖ କରି ନେଇଛି । ଆସିଲେ ସେ କ'ଣ ଖାଇବ, କେମିତି ଖାଇବ ସେଥିପାଇଁ ବନ୍ଦୋବସ୍ତ ସରିଛି । ଇଉଡିକଲୋନ୍‌ରେ ଚାଦର, ଟାୱେଲ, ତକିଆ ଆଦି ସ୍ପ୍ରେ କରାହୋଇଛି ? ସବୁ ସତ୍ତ୍ୱେ, ପୁଅ ଘରକୁ ଆସିବ – ହଉପଛେ ରୋଗିଣା, ପଙ୍ଗୁ ତା' ମୁହଁକୁ ଦେଖିଲେ ହିଁ ଅନୁ ସବୁ ଦୁଃଖ ଭୁଲିଯାଏ । ତା'ର ପକ୍ଷୀ ଡାକ ପରି ଶବ୍ଦ ଶୁଣିଲେ ତା' ଭିତରେ ଅନେକ ତା'ର ବାଜିଉଠନ୍ତି ।

ହଁ, ରାତି ପାହିଲେ ହିଁ ବିପତ୍ତିର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେବ । ବିକାଶ ମନେ ମନେ ପ୍ରସ୍ତୁତ ହେଉଛି ତା'ର ମୁକାବିଲା କରିବାକୁ । ଏବେ ଜଗୁର ଓଜନ ପଇଁତ୍ରିଶ କେଜି । ତାକୁ ଚୌକିରୁ ଓହ୍ଲେଇବା ଓ ଟେକିବା ବେଳେ ବିକାଶକୁ ହିଁ ବ୍ୟାୟମ କରିବାକୁ ପଡିବ । କେନ୍‌ସର ୱାର୍ଡରେ ଭର୍ତ୍ତି ହେଲେ ଅସୁମାରି ପଇସା ଖର୍ଚ୍ଚ ହେବ । ସେଥିପାଇଁ ସେ ବ୍ୟାଙ୍କ ଡିପୋଜିଟ୍ ସବୁ ଶୂନ୍ କରିବାକୁ ପ୍ରସ୍ତୁତ ହେବାକୁ ପଡିବ । ଇଲାଜ୍ ପରେ କ'ଣ ହେବ କିଏ କହିବ ? ହୁଏତ' ବିକାଶକୁ ସର୍ବସ୍ୱାନ୍ତ କର୍ଚ୍ଚ କରିସାରି ସେ ଚାଲିଯାଇପାରେ କିମ୍ବା ସର୍ବସ୍ୱାନ୍ତ କଲାପରେ ବି ତା' ଉପରେ ଆଜୀବନ ଏଇଭଳି ସବାର ରହିପାରେ । ଅଥବା ଏମିତି ବି ହୋଇପାରେ ଯେ ଇଲାଜ ପରେ ଆଖି କାନ, ମସ୍ତିଷ୍କ ସବୁ ଡାମେଜ୍ ହୋଇଯାଇପାରେ । ତେଣିକି କେବଳ ମାଦଳଟିଏ ପରି ସେ ତା' ବେକରୁ ଓହଳି ରହିପାରେ । ଅନୁ ତ ନିଶ୍ଚୟ ରହିବ ନାହିଁ । କିନ୍ତୁ ଏଭଳି ବଞ୍ଚିବା ଅପେକ୍ଷା ସେ ଚାଲିଯିବା – ମାନେ... ଏଇ... ମରିଯିବା ଉଚିତ ନୁହେଁ କି ?... ଏବେ ତ ଏପରି ଟର୍ମିନାଲ ରୋଗମାନଙ୍କର ମର୍ସିକିଲିଂ ମଧ୍ୟ ସୁପାରିଶ୍ କରାଗଲାଣି । ଆମର ଏଠି କେହି ରାଜି ହେବେନାହିଁ । ପ୍ରାଣ ଦେବାର ଅଧିକାର ଯାହାର ନାହିଁ, ସେ ପ୍ରାଣ ନେଇପାରିବ ନାହିଁ । ଏଇ ହେଲା ସେମାନଙ୍କର ଯୁକ୍ତି କିନ୍ତୁ ରୋଗ କଷ୍ଟରୁ ଉଦ୍ଧାର କରିବା ଯାହାର କର୍ତ୍ତବ୍ୟ, ସେ କ'ଣ ଏଭଳି ରୋଗରୁ ଶେଷ ନିଷ୍କୃତି ଦେଇପାରିବ ନାହିଁ ? ମର୍ସି କିଲିଂ କାହିଁକି ନ ହେବ ଯେ ? ସେଥିରେ ଅସୁବିଧା କ'ଣ ? ଯଦି ସେଥିରେ ଘୋଷାରି ହୋଇ ମରନ୍ତା – କଷଣ ଜଣେ ପାଉଥାଏ, ତା' ସହିତ ଯଦି ଆଉ କେହି ସେହି ଜୀବନ୍ତ ମରଣର କଷ୍ଟ ଭୋଗ କରୁଥା'ନ୍ତି, ସମସ୍ତଙ୍କୁ ଏଥିରୁ ଅବ୍ୟାହତି ଦେବାକୁ କ'ଣ ନିଷ୍ପତ୍ତି ନିଆଯାଇ ପାରିବ ନାହିଁ ? – ଏ ତ ପୁଅ ନୁହେଁ, ଆଜୀବନ ସାଧିବାକୁ ଶତ୍ରୁ ଜନ୍ମିଛି – ସେ ଶତ୍ରୁ ! ଶତ୍ରୁଠୁ ଆହୁରି ଭୟଙ୍କର !

ସକାଳ ନ'ଟା ବେଳେ ଅନୁ ବିକାଶ ଯାଇ ଚିଲ୍‌ଡ୍ରେନ୍‌ସ କେଆରରେ ପହଞ୍ଚିଲେ । ଡାକ୍ତର ନର୍ସ ପ୍ରସ୍ତୁତ ଥିଲେ, ତାଙ୍କୁ ପାଛୋଟି ନେବାକୁ । କାଗଜପତ୍ର ପ୍ରସ୍ତୁତ ଥିଲା । ବିକାଶ ଲେଖାଲେଖି କଥା ବୁଝିବା ଭିତରେ ଅନୁ ଚାହିଁଲା ଜଗୁ ପାଖକୁ ଯିବାକୁ । ସେମାନେ ତାକୁ ସେଇଠି ଅପେକ୍ଷା କରିବାକୁ କହି ଭିତରକୁ ଗଲେ, ଗୋଟିଏ ହ୍ୱିଲ୍ ଚେୟାରରେ ଯାହାକୁ ଆଣିଲେ ତାକୁ ଦେଖି ଅନୁ ଅବାକ୍ ହୋଇଗଲା । ଗୋରା ଟକ୍‌ଟକ୍ ମୁହଁ, ବାଳ କଟା ହୋଇ ବ୍ରସ୍ କରିବାରୁ ଚମତ୍କାର ମାନୁଥାଏ । ଖଣ୍ଡିଏ ନେଭିବ୍ଲୁ ରଙ୍ଗର ବୁସ୍‌ସାର୍ଟ ସେ ପିନ୍ଧିଥାଏ । ଗୋଡ ଯୋଡିକ ବଙ୍କା ହେଲେ ବି ବଳିଲା ବଳିଲା ପରି ସୁନ୍ଦର ଦିଶୁଥାଏ, ଖୁବ୍ ସଫା ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ।

ଅନୁ ସମ୍ଭାଳି ନପାରି ଠିଆହୋଇପଡିଲା । ତାକୁ ଦେଖି ଜଗୁ ଉଚ୍ଛୁଳିଲା, କିନ୍ତୁ ଆଗପରି ସେମିତି ଆତୁର ହେଲା ନାହିଁ ମା' ପାଖକୁ ଆସିବାକୁ । ସେ ତା' ଦିଜତରେ ଚାଲିଥିବା, ନର୍ସ ହେଲପର୍‌କୁ ଚାହୁଁଥିଲା ବାରମ୍ବାର । ସେ କେମିତି ବୋଧେ ଜାଣିପାରୁଥିଲା ଯେ ସେମାନଙ୍କୁ ସେ ଛାଡି ଚାଲିଯାଉଛି । ବିକାଶ ଦସ୍ତଖତ କଲାବେଳେ ହାତ ଅଟକିଗଲା, ସେ ବି ଅବାକ୍ ହୋଇ ଚାହିଁରହିଲା, ହ୍ୱିଲ୍ ଚେଆର୍‌ରେ ବସିଥିବା ସେ ପିଲାଟିକୁ । ସେ ବି ଉଠିପଡିଲା । କିନ୍ତୁ ତା' ଉପରେ

ଆଖି ପଡିଲାମାତ୍ରେ ଜଗୁ ଆଖି ଡରାଟି ଥରଥର କମ୍ପିଲା । ନର୍ସଟି ତା' ବୁକୁ ଆଉଁସି ଦେଇ କହିଲା, 'କିଛି ନାହିଁ, ଜଗୁ, କିଛି ଡରିବାର ନାହିଁ! ଏଠି ଝିଟିପିଟି ନାହିଁ, ଅସର୍ପା ନାହିଁ । କିଛି ନାହିଁ । ଏଇ ମମି, ଏଇ ଡାଡି!!'

ଜଗୁ ବିକାଶକୁ ଚାହିଁଦେଇ ପୁଣି ଠକ୍‌ଠକ୍ ଥରିଲା, ହାତଗୋଡ ଜାକିଜୁକି ମୁଦା କରିନେଲା ।

ନର୍ସ ସଳଖି ଠିଆ ହୋଇ ବିକାଶକୁ ସାମ୍ନା କଲା ଭଳି ଭଙ୍ଗୀରେ କହିଲା "ସାର୍, ସେ ଆପଣଙ୍କୁ ଦେଖି ଏମିତି ଡରୁଛି । ମାଡାମ୍‌ଙ୍କ ଭଳି ଆପଣ ଆସି ତା' ସାଙ୍ଗେ ମିଶିଥିଲେ ଏମିତି ହୋଇ ନଥାନ୍ତା । ଜଗୁ ଇଜ୍ ଭେରି ଇଣ୍ଟେଲିଜେଣ୍ଟ! – ସେ ଆମକୁ ଦେଖୁ ଦେଖୁ ଆମ ମନ କଥା ଜାଣିଯାଏ । ଖୁଆଇ ଦେଲାବେଳେ ଟିକିଏ ଅନ୍ୟମନସ୍କ ହୋଇଗଲେ ସେ ମୁହଁ ଆଡେଇ ରୁଷେ । ପଛଆଡୁ ପିଠିରେ ହାତ ରଖିଦେଲେ ସେ ଜାଣିଯାଏ ମୁଁ ତାକୁ ଗେଲ କରୁଛି ନା ରାଗୁଛି । ଆପଣଙ୍କୁ ଦେଖି ସେ ଖୁବ୍ ଡରି ଯାଇଛି । ଆପଣ ଟିକିଏ ଆଡ ହୋଇଯାଆନ୍ତୁ । ମୋତେ ସମୟ ଲାଗିବ ତାକୁ ନର୍ମାଲ୍ କରିବାକୁ । ଦେଖନ୍ତୁ ତା'ର ଦେହସାରା ଓଦା ହୋଇଗଲାଣି ଝାଳରେ । –"

ଅନୁ ଆଶ୍ଚର୍ଯ୍ୟ ହୋଇ ନର୍ସକୁ ଚାହିଁଲା । ଲେଉଟି ପଡି ବିକାଶକୁ ଚାହିଁଲା । ବିକାଶର କପାଳରେ ଝାଳ ଚିକ୍ ଚିକ୍ କରୁଥିଲା, ସେ ତଳକୁ ଆଖି କରିନେଲା । ସେଇଠୁ ଉଠି ବାହାର ପିଣ୍ଡା ଆଡେ ଦୋଷୀଟିଏ ପରି ଆଡ ହୋଇଗଲା!

ଅନୁ ଆଉ ନର୍ସ ମିଶି ଜଗୁକୁ ସାନ୍ତ୍ୱନା କରୁଥା'ନ୍ତି । ଅନୁ ଭିତରେ ଭିତରେ ଭାଗ ଭାଗ ହୋଇଯାଉଥାଏ । ତା' ହାତ ଅଟକି ଯାଉଥାଏ । ନର୍ସ ଅଳ୍ପ ହସି ଦେଇ କହିଲା, "ମାଡାମ୍, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ଛିଡା ହୁଅନ୍ତୁ । ମୁଁ ଜଗୁ କଥା ବୁଝୁଛି । ଆମେ ତାକୁ ଟିକିଏ ଫୁଲ ବଗିଚା ଆଡେ ବୁଲେଇ ଆଣୁଛୁ । ସେ ବୁଝିଗଲେ ନେଇ ଆସିବୁ ।"

ଅନୁ ମହମ କଣ୍ଢେଇଟିଏ ପରି ଠିଆ ହୋଇଥାଏ । ତା'ର ଦି'ପାଖ ତରଳି ଯାଉଥାଏ ଉତ୍ତାପରେ । – କ'ଣ ଦିଶିଲା ଜଗୁକୁ । ସେ କ'ଣ ବିକାଶକୁ ଅଚିହ୍ନା ପାଇଲା । ନା' ତ' ବିକାଶ ବହୁବାର ଆସିଛି । ଜଗୁ ତା'ହେଲେ କାହିଁକି ଏମିତି ଡରିଗଲା । – ଅନୁର ହଠାତ୍ ମନେପଡିଗଲା, ପାହାନ୍ତା ପହରର ସେ ଦୃଶ୍ୟ । ବିକାଶର ସେ ବିକଟାଳ ମୁହଁ! ସେ ଆଖି, ଠାପୁଆଗାଲ, ରୁଢିଆ ଥୋଡି । ସତେବା ଆଉ କିଏ! ଖୁବ୍ ଅଚିହ୍ନା, ଭାରି ନୃଶଂସ, ଭୟାନକ! – କିନ୍ତୁ ବିକାଶ ତ' ଏବେ ବେଶ୍ ଦେଖାଯାଉଛି । – ତେବେ ଏବର ଏ ଚେହେରା ତଳେ ଆଉ ଚେହେରା କ'ଣ ଲୁଚି ରହିଛି । ଜଗୁ କ'ଣ ତାକୁ ଦେଖିପାରିଲା ଓ ଡରିଗଲା!

କ'ଣ କରିବ ଅନୁ? – କ'ଣ ସେ କରିପାରିବ ସତେ! ସେ ଉଭୟଙ୍କୁ ତା' ନରମ ପାପୁଲିରେ ଆଉଁସି ଦେବାକୁ ଚାହେଁ, ଦୁଇଫାଳ ହୋଇଯାଆନ୍ତା କି ସେ? ଦୁଇଟି ଅଗ୍ନିରେ ଝାସ ଦେଇ ତରଳି ଯାଆନ୍ତା! ନିଶ୍ଚିହ୍ନ ହୋଇଯାନ୍ତା । ସେ ନିରବ ଠିଆ ହୋଇ କେବଳ ବିଳପୁଥାଏ । ଆହା ମୋ' ଜଗୁ, ଆହା ମୋ' ବିକାଶ ।

ସଂକଟ ଭାରରେ ନଇଁ ପଡୁଥାଏ ସେ ଦିନର ପୂର୍ବାହ୍ନ!! □

# ଲଢେଇ

ଦୁମକାଣି ବର୍ଷା ହେଇ ଛାଡି ଯାଇଥାଏ । ଭୂଇଁରେ ଟାଲ ଟାଲ ପାଣି । ପବନ ଓଦା ଓଦା, ବାମ୍ଫୁଆ । ଚଳନ୍ତି ମେଘ ମଝିରେ ଦିପହରିଆ ଟାଣ ଖରା । ଗଛମାନଙ୍କରୁ ପାଣି ସାଙ୍ଗରେ ଟପ୍ ଟପ୍ ଝାଳ ନିଗିଡି ଯାଉଥାଏ । ଅସୁସ୍ଥ ଲାଗୁଥାଏ ସମସ୍ତଙ୍କୁ । ଏତେ ତାତିରେ ଅସରାଏ ପାଣି କୋଉଠିକି ଅଣ୍ଟିବ ? ତାତିଲା ତାୱାରେ ନଖ ଛିଞ୍ଚିତା ପାଣି ?

ଜଣକ ପଛକୁ ଜଣେ ସେମାନେ ଗୋଟିଏ ଧାଡିରେ ଠିଆ ହୋଇଥା'ନ୍ତି । ବର୍ଷା ବେଳେ ବି ସେମିତି ଠିଆ ରହି ତିନ୍ତିଥିଲେ । ଏବେ ଖରାରେ ସେମାନଙ୍କ ଦେହରୁ ବାମ୍ଫ ବାହାରୁଛି । କାହା କାହା ଦେହର ମସିଆ ଲୁଗାରୁ ଝାଳୁଆ ଫୁରୁକୁଟିଆ ଗନ୍ଧ ବାହାରୁଛି ।

ସବା ଆଗରେ ବୁଢା ଜଣକ ମୁହଁରେ କେତେ ଦିନର ପାଚିଲା ଗୁଡ । ଅଣଓସାର କପାଳରୁ, ଠାକୁଆ ଗାଲରୁ, ଗହୀର ଆଖି କୋଣରୁ ଝାଳ କି ଲୁହ କି ପାଣି ନିଗିଡି ଆସୁଚି, ଶିରାଳ ବେକ ଦେଇ ହାଡୁଆ ବୁକୁ ପର୍ଯ୍ୟନ୍ତ । ସେ ସେମିତି ସ୍ଥିର ହୋଇ ଠିଆ ରହିଛି, କେଜାଣି କାହିଁ ପରଶ ବର୍ଷ ହେଲା !

ତା' ପଛକୁ ନୁଖୁରା ମୁଣ୍ଡ, ମେଲା ଦିହ ଦେଖେଇ, ନାହିଁ ତଳକୁ ଖସି ଯାଇଥିବା ଅଧା ପେଣ୍ଟ ପିନ୍ଧା, ନିଶ ଉଠିନଥିବା ପିଲାଟାଏ । ବୟସ ଦଶରୁ ପନ୍ଦର କ'ଣ ହେଇଥିବ । ତା' ଆଖି ତଳେ ପୁଞ୍ଜି ପୁଞ୍ଜି ଝାଳ । ଓଠ ଶୁଖିଲା । ଡୋଳା ଯୋଡିକ ଡରିଲା ଡରିଲା ପରି ଢଳଢଳ । ଦାନ୍ତରେ ଚିରା କାନିଟାକୁ କାମୁଡି କନା ପିଣ୍ଡୁଳାଟିଏ କାଖେ ତେଙ୍ଗା ହାଡୋଇ ସେ ଯେଉଁ ମାଇକିନାଟା ଠିଆ ହେଇଛି, ତା' ଆଖି ଯୋଡିକ ତଳକୁ । ଚିରା ଶାଢୀର ରଙ୍ଗ କହି ହେବନି, ତା' ବୟସ ବି କହି ହେବନି । ସେ କାହିଁକି ମୁଣ୍ଡରେ ପଣତ ଦେଇ ଲୁଗା କାନି କାମୁଡି ଠିଆ ହେଇଛି, କାହିଁକି ଆଣ୍ଠୁଆଣି ଲୁଗା ତଳକୁ ସେମିତି ରହିଁ ରହିଛି କହି ହେବ ନାହିଁ । ଏମିତି ଏମିତି ତା' ପଛକୁ ତା' ପଛ ଜନ୍ଦା ପିମ୍ପୁଡି ପରି ଲମ୍ବି ଯାଇଛି, ଫୁଙ୍ଗୁଳା, ଧୋକଡା, ଭୋକିଲା ମଣିଷଙ୍କ ଧାଡି ।

କେହି କଥା କହୁ ନଥା'ନ୍ତି । କାହା ତୁଣ୍ଡରୁ କଥା ବାହାରୁ ନଥାଏ । କେହି ଘୁଞ୍ଚୁ ନଥା'ନ୍ତି କେହି ଟଳୁ ନଥା'ନ୍ତି କାଦୁଅ ସରସର ପାଣିରେ ବତୁରି ଯାଇଥିବା ପାଦରୁ ଚେର ମାଡି ଯାଇଥାଏ ଭୂଇଁ ଭେଦି ରସାତଳ ଯାଏ ।

କିନ୍ତୁ ଏ ସମସ୍ତଙ୍କର ନାଁ ଅଛି । ତାଙ୍କ ବାପ ମା' ତାଙ୍କୁ ନାଁ ଧରି ଡାକୁଥିଲେ । ତାଙ୍କର ଠିକଣା ବି ଲେଖାହୋଇ ରହିଛି । ମୁକାମ, ମୌଜା, ଥାନା, ଜିଲ୍ଲା । ଏମାନଙ୍କର ଜାତି ଅଛି, ବେଉସା ଅଛି, ବିଲବାଡି ଘର ବି ଅଛି । ସବୁ ସର୍କାରି ଖାତାରେ ।

ଗଦଗଦ ଖରାରେ ଗଛପତ୍ର ଶିଝି ଯାଉଥାଏ । ବର୍ଷା ପାଣି ଶୁଖି ଯାଉଥାଏ । ଏମାନେ ଠିଆ ହୋଇଥା'ନ୍ତି ମାଳେ ଥୁଣ୍ଟା ଗଛ । ତାଙ୍କ ବୁକୁ ଦୁକ୍ ଦୁକ୍ ହଉଥାଏ, ନିଶ୍ୱାସ ଚାଲୁଥାଏ, ଆଖିପତା ପଡୁଥାଏ ।

କେଯାଏ ସେ ଧାଡି ଲମିଥାଏ କିଏ କହିବ ? – ସେଇ ବ୍ଲକ୍ ବାବୁ କହିବ, ଯେ ଟିପ ମଡେଇବା କାଳି ଡବା ଆଉ ମାଳ ମାଳ ନାଁ ଗାଁ ଲେଖା ହୋଇଥିବା ଖାତା ବିଡା ଧରି ବସିଥାଏ ।

ଉପର ପିଣ୍ଡାରେ ଖାଲି ଚୌକି, ଚୌକି ଉପରେ ଟଉଲିଆ । ଆଗରେ ଟେବୁଲ । ଟେବୁଲ ଉପରେ ଫୁଲଦାନୀ ।

ବ୍ଲକ୍ ବାବୁ ଧଡପଡ ଠିଆ ହୋଇପଡିଲେ । ବସିଥିବା ବେଞ୍ଚ ଉପରୁ । ହେଇ ବୋଧେ ବିଜେ ହେଲେ ମଣିମା । ସେଇ ତ' ମାଲିକ । ସେଇ ସରକାର । ସେ ଚୌକି ଉପରୁ ଚାହିଁଲେ ଧାଡିବାନ୍ଧି ଠିଆ ହୋଇଥିବା ପ୍ରାର୍ଥୀମାନଙ୍କୁ ।

ଉଠିପଡି କହିଲେ "ଭାଇ ଓ ଭଉଣୀମାନେ" କେହି ଜଣେ କୋଉଠୁ କରତାଳିଟିଏ ଦେଲେ । ଏକୁଟିଆ ପାରାଟିଏ ଡେଣା ବାଡେଇ ଉଡିଗଲା କାହିଁ ଦୂରକୁ । ସେ ପୁଣି ଦୋହରାଇଲେ, "ଭାଇ ଓ ଭଉଣୀମାନେ । ତୁମମାନଙ୍କ ପାଇଁ ସରକାର ଭାରି ଚିନ୍ତିତ । ତିନିମାସ ତଳେ ବଢି ପାଣିରେ ତୁମ ଗାଁ ଗଣ୍ଡା ଭାସିଗଲା । ଆହୁରି ଗାଁ ଭାସିଯାଇଛି । ଆଉରି ଭାସିଯିବ ମାନେ ଯାଇଥାନ୍ତା ହେଲେ ବର୍ଷା ହେଲାନାହିଁ । ବର୍ଷା ହେଲେ ସିନା ବଢି ହେବ । ବଢି ହେଲେ ଗାଁ ଭାସିବ ଆଉ ତୁମମାନଙ୍କୁ ସରକାର ସାହାଯ୍ୟ କରିବ ! ହେଉ ଯେତିକି ହେଲା ସେତିକି । ଏଣିକି ମରୁଡିକୁ ସର୍କାର ଅପେକ୍ଷା କରିଛନ୍ତି । ପୁଣି ଆଉବାରେ ସାହାଯ୍ୟ ବଣ୍ଟାହେବ । ତୁମମାନଙ୍କୁ ଯାହା ସାହାଯ୍ୟ ମିଳିବ ସେଥିରୁ ଅଧେ ନେଇ ସରକାର ଗୋଟିଏ ଜାତି କଲ୍ୟାଣ ପାଣ୍ଠି ଗଢିବାକୁ ଚାହାନ୍ତି । ହେଇ ତମ ଭିତରୁ ଜଣେ, ସେ ପାଣ୍ଠି ସମ୍ଭାଳିବେ । ସରକାରଙ୍କ ଆଦେଶ ହେଲେ ଖର୍ଚ୍ଚ ହେବ ।"

ବାକି ଯେଉଁ ଅଧକ, ସେଥିପାଇଁ ମଧ ଆମେ ଏଇଠି ଚିନ୍ତା କରିଛୁ । ତୁମମାନଙ୍କ ପାଇଁ ବ୍ୟାଙ୍କ ଶାଖାଟିଏ ଖୋଲିଦିଆଯାଇଛି । ସେଇଠି ତୁମେ ତୁମ ଟଙ୍କା ଜମା ଦେଇଦେବ । ଯେତେବେଳେ ଚାହିଁବ ମିଳିଯିବ । ଚୋରି ଡକାୟତିକୁ ଡର ନାହିଁ । ବଦଖର୍ଚ୍ଚକୁ ଡର ନାହିଁ । ଧାଡି ମଝିରୁ ଶୁଭିଲା "ଆମକୁ କେତେ ମିଳିବ ମୁଣ୍ଡପିଛା ?"

"କିଏସ୍ ପଚାରୁଚି । ଏଠି କ'ଣ କେହି ତମ ପଇସା ଖାଇଯାଉଚି ? ତମକୁ ସରକାରୀ

ହିସାବରେ ଯାହା ମିଳିବା କଥା ମିଳିବ । କିଏ ପଚାରୁଚି, ଅଫିସକୁ ଆସ, ତମକୁ ବୁଝେଇ ଦିଆଯିବ ।"

"ମୁଁ ସପନି ଗୋଛେଇତ ଗାଁ ପାଟପୁର । ସେ ଗାଁଟା ଆଉ ନାଇଁ । ନଈ ଖାଇଗଲା । ଆମେ କେଇମୁଣ୍ଡ ବଞ୍ଚିଯାଇଚୁ । ଖାଲି ମୁଁ ଜାଣିବାକୁ ପଚାରୁନାଇଁ । ଏଇଠି ସମସ୍ତେ ଚାହୁଁଛନ୍ତି ଜାଣିବାକୁ । ଆପଣ ଆଜ୍ଞା ଏଇଠି କହିଦଉନାହାନ୍ତି ।"

ବାବୁ ପଛକୁ ଚାହିଁ ପଚାରିଲେ "ଏଇ ! କିଏ କିଓ ?" କାନକୁ କାନ ନଶୁଭିଲା ପରି କଥା । ସେମିତି ତଳକୁ ଚାହିଁ ଉତ୍ତର "ପାଠ ଶାଠ ପଢିଚି, କିଛି କାମ ଧନ୍ଦା ନାଇଁ, ବାତ୍ରାହୋଇ ବୁଲୁଚି ।"

"ଓ"

"ବୁଝିଲ ଗୋଛେଇତ ଏଠିତ ସଭା ସମିତି ଚାଲିନାହିଁ । ଏଇଟା ସରକାରୀ ଦପ୍ତର । ଏଠି ଯେ ଯାହା କଥା କହିବେ । ପାଞ୍ଚ ପଚିଶଙ୍କ କଥା କେହି ଜଣେ କହିବାକୁ ଏଠି ଠିକା ମିଳେନାହିଁ ।"

–

"ସମସ୍ତେ ଜାଣିବାକୁ ଚାହୁଁଛନ୍ତି ।"

"ତମେ କେମିତି ଜାଣିଲ ? ସେମାନେ ଯଦି ଚାହୁଁଛନ୍ତି, ସେମାନେ ତାଙ୍କ କଥା ନିଜେ କହିବେ । ତମର ତାଙ୍କ ପାଇଁ ନେତାଗିରି କରିବାର କିଛି ଲୋଡାନାହିଁ ।"

ସମସ୍ତେ ନିଶ୍ଚଳ ଠିଆ ରହିଗଲେ । କ'ଣ ହବଟି ।

ଧାଡି ଭାଙ୍ଗି ସପନି ଗୋଛେଇତ ବାହାରି ଆସିଲା । କେତେ ସାହସ ସତେ ସେ ଟୋକାଟାର !

ମଳିଛିଆ ପୁରାପେଣ୍ଟ ଗୋଛି ଉପରକୁ ମୋଡା ହେଇଚି । ଖାଲି ପାଦ ଉପରକୁ ଖଣ୍ଡେ ଜାମା, ଠାଏ ଠାଏ ଚିରା । ତା' ମୁହଁ ହାଡୁଆ, ଆଖି ଗହୀର । ନିଶ ଦାଢି ଅସଜଡା । ନିଆଁଗଡ ପରି ଚାହାଣି ।

ସେ ସବା ଆଗକୁ ଆସି ବୁଲିପଡିଲା । ପାଟି କରି ପଚାରିଲା, "ତେମେ ଭାଇ କ'ଣ ପାଇବ ବୋଲି ଏଠି ଆସି ଠିଆ ହେଇଚ ? ସରକାର ତମକୁ ବନ୍ୟା ସାହାଯ୍ୟ ଦେବାକୁ ପଇସା ପଠେଇଛି । କେତେ ପଇସା ନ ଜାଣିଲେ କେମିତି ହବ ?"

ସମସ୍ତେ ତାକୁ ଦେଖୁଥା'ନ୍ତି, ଶୁଣୁଥା'ନ୍ତି ହେଲେ କାହାରି ପାଟି ଫିଟୁନଥାଏ । କାହାରି ପାଦ ଚଳୁ ନଥାଏ ।

"କ'ଣ ମଉସା ତେମେ କେତେ ସାହାଯ୍ୟ ପାଇବ ଜାଣିଚ ? କିଏ ଜାଣିଚ ଭାଇ ମତେ ଟିକିଏ କହିଦିଅ । ସରକାରୀ ବାବୁ ତ' କହିବେ ନାଇଁ । ଏଠି ସବୁ ସତ ହିସାବ ଦେଲେ ପଇସା ମିଳିବା କଥା । ମୋ' ଘରେ ମତେ ଛାଡି ଆଉ ପାଞ୍ଚଜଣ । ସେ ସମସ୍ତେ ବନ୍ୟାରେ ଭାସିଗଲେ । ଘର ଭାସିଗଲା । ସରକାର କ'ଣ ଦେବେ ମୁଣ୍ଡପିଛା ? – ଘର ପିଛା ?"

କ'ଣ ହେଲା କେଜାଣି, ପୁଲିସ ଗାଡିଟାଏ ଆସି ପହଞ୍ଚିଗଲା । ତାଙ୍କ ହାକିମ ଜଣକ ସରକାରୀ ବାବୁ ସାଙ୍ଗେ କ'ଣ କଥା ହେଲେ । କିଛି ପଚରା ଉଚୁରା ନକରି ସପନିକୁ ସେମାନେ

ଘେନିଗଲେ ।

ଗଲାବେଳେ ସପନି ପାଟି ଶୁଣେଇ କହିଲା, "ମୁଣ୍ଡପିଛା ହଜାରେ, ଘର ପିଛା ପାଞ୍ଚହଜାର ଠିକଣା ହେଇଛି । କେହି ଛାଡିବ ନାହିଁ । ଆଉ ଏ ବାବୁ ପାଲରେ ପଡିବ ନାହିଁ । ପାଣ୍ଠି କଥା, ବ୍ୟାଙ୍କ କଥା ସବୁ ମିଛ । ତମକୁ ଭୁଟେଇବା ପାଇଁ ବସିଛନ୍ତି ଏମାନେ । ଜମା ଟିପ ଚିହ୍ନ ଦବନାଇଁ ସବୁ ପଇସା ଆଗ ହାତରେ ନ ପାଇବା ଯାକେ । ଦେଖ, ଭାଇମାନେ ତମକୁ ମୋ' ରାଣ ।" ସପନିକୁ ଗୋଇଠା ମାରି ସେମାନେ ଗାଡି ଭିତରେ ପୁରେଇ ଦେଲେ । ଗାଡି ଚାଲିଗଲା ପରେ ସେ ଶବ୍ଦଟା ମଲା ପର୍ଯ୍ୟନ୍ତ ସେମାନେ କାନେଇଥା'ନ୍ତି । ସେଇଠୁ ସବୁ ନୀରବ ହେଇଗଲା ।

ସତେବା କିଛି କୋଉଠି ଘଟିନାହିଁ ଏଇ ଢଙ୍ଗରେ ବାବୁ ଗଳା ଝାଡି କହିଲେ "ତା'ହେଲେ ସେଇଆ ହେଲା, ଅଧେ ଯିବ ପାଣ୍ଠିକୁ । ଆଉ ଅଧକ ବ୍ୟାଙ୍କକୁ । ତମରି ପାଇଁ ପରା ଆମକୁ ରାତିରେ ନିଦ ନାହିଁ ଦିବସରେ ଭୋକ ନାହିଁ । ଆସ ତା'ହେଲେ..."

"ଆମେ ଏବେ ଖାଇବୁ କ'ଣ ?"

ବାବୁ ଫଟ୍‌କିନା ବୁଲିପଡିଲେ "କିଏସ୍ ସେ ପାଟିକଲା ?"

ସ୍ୱରଟି ସରୁ ହେଲେବି ଭାରି ସ୍ପଷ୍ଟ । କାହିଁ କେତେଦୂର ଯାଏ ଶୁଭିଥିବ । ମନେହେଲା ସେ ପ୍ୟାଣ୍ଟ ପିନ୍ଧା ଟୋକାର ସ୍ୱର । ସେ ଦିଶୁଥିଲା ନିହାତି ଭୋକିଲା । ହୁଏତ କେତେଦିନ ହେଲା ତା' ପେଟରେ ଅନ୍ନ ପଡିନଥିଲା । ସେ ତା' ଡରିଲା ଡରିଲା ଆଖିରେ ସେମିତି ଢଳଢଳ ଚାହିଁ ରହିଲା । "କିଏ ସେ କହିଲା କ'ଣ ଖାଇବ ବୋଲି ? ସେଇଆ ତ ସମସ୍ତଙ୍କ ପ୍ରଶ୍ନ, ମୋର ମୋ' ଦପ୍ତରର ସରକାରଙ୍କର ତୁମ ସମସ୍ତଙ୍କର । ସେ ଠିକଣା କଥା ପଚାରିଚି ! କିଏ ସେ ?"

କ'ଣ ହେଲା କେଜାଣି, ପାଞ୍ଚ ଛ'ଜାଗାରୁ ଶୁଭିଲା ଆମେ ଏବେ ଖାଇବୁ କ'ଣ ?

"ସେଇ କଥା ତମେ ନ ପଚାରିଥିଲେ ମଧ ମୋ' ଆଡୁ ମୁଁ କହିଥା'ନ୍ତି । ମୁଁ ସରକାର ହାକିମମାନଙ୍କ ସହିତ କଥାବାର୍ତ୍ତା ହେଇଚି । ମନ୍ତ୍ରୀଙ୍କ କାନକୁ ନେଇଚି । ସବୁ ରାଜି ଅଛନ୍ତି, ବହୁତ ପ୍ରଶଂସା କରିଛନ୍ତି ।"

ଖରା ବାଧୁଥିଲା । ଅଥଚ ଅସୁସ୍ଥ ଲାଗୁଥିଲା । ଆରେ ସେ କହି ଦଉନାହିଁ କାହିଁକି ? ଭୋକିଲା ମଣିଷ ଆଗ ଶୁଣି ଦିଅନ୍ତୁ ସେମାନେ କ'ଣ ଖାଇବେ । ଖାଇବା ନ ଖାଇବା ପଛକଥା ।

"ଏବେ ଯୋଉଆଡେ ଦେଖ କିଛି କୋଉଠି ନାହିଁ । ବଢି ପାଣି ଘୁଞ୍ଚି ଯାଇଛି । ବାଲି କାଦୁଅ ମଟେଇ ହେଇ ଯାଇଚି ଅନାବନା ଶାଗ ବଣ ଉପରେ । ନହେଲେ ବା କ'ଣ ଉପାୟ ଦିଶିଥାନ୍ତା । ବାଲି କାଦୁଅ ଖାଇ ନଈ ପାଣି ପିଇଲେ ତ ପେଟ ପୂରିବ ନାଇଁ ।"

ବାବୁ ମୁହଁରେ ହସ ଉକୁଟି ଉଠିଲା । "ସେଥିପାଇଁ ଆଗ ସରକାରୀ ଚାଉଳ ଚୂଡା ଦୋକାନ ସବୁ ଦଶ କୋଡିଏଟା ଖୋଲି ଦିଆଯିବ । ସେଇଠି ନାହିଁ ନଥିବା ଶସ୍ତାରେ ଜିନିଷ ବିକାଯିବ ।"

"ପଇସା ?"

"ହଁ ପଇସା ମିଳିବ ! ତୁମକୁ ମୁଣ୍ଡ ପିଛା ଏଇନା ଦଶଟଙ୍କା ଦିଆଯିବ । ଆଜି ସନ୍ଧ୍ୟା ବେଳକୁ

ଚୂଡ଼ା ଚାଉଳ ଟ୍ରକ୍ ପହଞ୍ଚିଯିବ । ତମେ ସେଇଠୁ ଏମିତି ଶାନ୍ତିଶୃଙ୍ଖଳା ରକ୍ଷା ଯାହା ମିଳିବ କିଣିନବ ।"

"ଏ ପଇସା ତମକୁ ସହଜ ସୁଧରେ କରଜ ଦିଆଯିବ । ତମେ କାଲିଠୁ ଏ କାଦୁଅ ବାଲି ଗୋଡି ନେଇ ନଈ ବନ୍ଧ ବାନ୍ଧିବ । ହୁଡା ଟେକିବ । ସବୁଦିନ କାମ । ସବୁଦିନ ମଜୁରି । କରଜ ଶୁଝିଗଲେ ତମ ମଜୁରି ତମର । ଏ ବ୍ୟବସ୍ଥା ଚାଲିଲା, ତମର ନିଜ ବେଉସା ନ ଲାଗିବା ଯାଏ!"

ପୁଣି ହଳେ ହାତର କରତାଳି । ଡେଣା ପିଟି ଗୋଟିଏ ପାରା ବାଲିକାଦୁଅ ଆଉ ଗୋଳି ପାଣି ପାରି ହେଇଯିବାର ଶବ୍ଦ ।

"ରହିବ କୋଉଠି ? – ହାଲ୍‌କୁ, ଯୋଉ କେତେଟା ଗଛ ଦିଶୁଚି ତାରି ମୂଳେ ରହିଯିବ । ତମ୍ବୁ ପାଇଁ ବରାଦ କରାହଉଚି । ସରକାରଙ୍କ ବିଶ୍ୱାସ ଜିଣିଲା ଭଳି କେହି ଗୋଟାଏ ମାଟବର ଯୋଗାଣ ବେପାରୀ ଯୋଗାଡ କରାହଉଚି । କାଗଜପତ୍ର କାମ । ଏଇ ହପ୍ତାଏ ଭିତରେ ହେଇଯିବ ।"

ନଥିପତ୍ର ଧରିଥିବା ଲୋକଟା ତତ୍ପର ହେଇଗଲା । ଏଣିକି ଖୁଦମୁଣ୍ଡି ଗୋଟେଇବାକୁ ପିମ୍ପୁଡି ଧାର ମାଡିଆସିବ ।

ବାବୁ ସବା ଆଗରେ ଥିବା ବୁଢା ପିଠିରେ ହାତ ଦେଇ ଆଗେଇ ଦେବା ଢଙ୍ଗରେ କହିଲେ "ଚାଲ ମଉସା ଆଉ ବିଳମ୍ବ କାହିଁକି । ତମ ନାଁ କ'ଣ ?"

"ପିଣ୍ଡା ଉପରୁ ଶୁଭିଲା । ଇଏ ହଉଚି ଧନି ଓରଫ ଧନେଶ୍ୱର ସାମନ୍ତ । ପିତା – ବୀରଭଦ୍ର ସାମନ୍ତ । ମୁକାମେ ପାଟପୁର । ଥାନା..."

"ଆରେ ରହିଥା" ଗର୍ଜିଲେ ବାବୁ । "ତତେ କିଏ ପଚାରୁଚି । ହଁ ତା'ହେଲେ ଧନି ମଉସା ତମେ ଆରମ୍ଭ କରିଦେଲେ ଏମାନେ ସବୁ ତାଙ୍କ ଭାଡିଆ ଦଶଟଙ୍କା ନେବେ । ଚୂଡାଚାଉଳ କିଣିବେ । ପୁଣ୍ୟ କାର୍ଯ୍ୟରେ କାହିଁକି ଡେରି କରୁଛ ?"

"ବୁଢା କିନ୍ତୁ ଅମଙ୍ଗ । ସେ ବାବୁ ଆଖିକି ଚାହିଁ ଛେପ ଢୋକିଲା । କହିଲା ସେ ଯେଉଁ ଗୋଛେଇତ ଟୋକା କହୁଥିଲା ସେ କଥା କ'ଣ ? ଆମର ଥଇଥାନ ହବ ନା, ଆମେ ଖାଲି ମୂଲ ଖଟିବୁ ?" ଧାଡି ପଛରୁ କିଛି ମୁହଁ ଓହଟି ଚାହିଁଲେ । 'ଗୋଛଇତ', 'ଗୋଛେଇତ', 'ଗୋଛେଇତ', ଶବ୍ଦ ତୁଣ୍ଡରୁ ତୁଣ୍ଡକୁ ଶେଷଯାଏଁ ପହଞ୍ଚିଗଲା । ସମସ୍ତେ ପୁଣି ଟାଣେଇ ଗଲେ ।

ବାବୁ ଉପରକୁ ମୁହଁକରି ଠୋ ଠୋ ହସିଲେ । "ଆରେ ସେଇଟା ବାୟାଟାଏ । ସେ ବାତ୍ରା ଟୋକା କଥା କାହିଁ ଶୁଣୁଛ ମଉସା ? ସେ ଟୋକା ଏ ଦପ୍ତରକୁ ଆସି ତା' ହାତ ଖର୍ଚ୍ଚ ପାଇଁ ପଇସା ମାଗିଲା । ଏଠିତ ପାହା ପାହି ହିସାବ । କିଏ ତାକୁ ଦବ । କିଛି ନ ମିଳିବାରୁ ସେ ସେମିତି ଗୋଟେ ସୁଆଙ୍ଗ କଲା । ଏଇନା ପୁଲିସ୍ ତା' କଥା ବୁଝୁଚି । ତମେ ଚାଲୁନା ମଉସା । ଏତେ ଲୋକ ଭୋକ ଉପାସରେ ଠିଆ ହେଇଛନ୍ତି । ତମେ ନଗଲେ ଆଡ ହେଇଯାଅ ।"

ବୁଢାକୁ ଗୋଟାଏ ପାଖକୁ ପେଲିଦେଇ ପିଲାଟାକୁ ଦୃଷ୍ଟି ନଦେଇ ସେ ମାଇପି ଲୋକଟା ପାଖେ ପହଞ୍ଚିଲେ । ଚାହିଁଗଲେ ଗୋଡଠୁ ମୁଣ୍ଡ ଯାଏ ।

ପିଣ୍ଡାରୁ ଶୁଭିଲା "ସୁର ଓରଫ ସୁଲକ୍ଷଣା ବେହେରାଣି ସାମୀ..."

"ଆରେ ରଃ ! ବାଜୁ ବାଜୁ ହଉଚି – ଆଜ୍ଞା ସେ କାଗଜପତ୍ର ନେଇ ତୁ ଚାଲିଆ । ଆରଟାକୁ କହ ସେ ଟଙ୍କା ନେଇଆସିବ । ଏଇଠି ବାଣ୍ଟିଦବା ।"

ବାଁ ହାତ ବୁଢା ଆଙ୍ଗୁଠି ମାନ ନୀରବ କଳା ବୋଲି ହୋଇ କାଗଜ ଉପରେ ମଡେଇ ହେଇଗଲେ, ଡାହାଣ ହାତରେ ଦଶଟଙ୍କି ନୋଟ୍‌ଟିଏ ଲେଖା ଧରି ସେମାନେ ଘୁଞ୍ଚିଗଲେ ଧାଡିଭାଙ୍ଗି ।

ଅମଙ୍ଗ ହଉଥିବା ଦୋଦୋପାଞ୍ଚ ହଉଥିବା ମଣିଷ ସବୁ କିଛି ସମୟ ଉତାରୁ ଠେଲି ହେଲେ ଆଗକୁ । ନୂଆ ଦଶଟଙ୍କା ନୋଟ୍ କଡ କଡ ବାଜୁଥିଲା । ବାବୁର ଧଇର୍ଯ ମାନିବାକୁ ହେବ । ଶେଷଯାଏ ଦିଟା ବିଡା ନୋଟ୍ ବଣ୍ଟା ହେଇଗଲା ।

"ଆସ ଭାଇମାନେ ତୁମ ପାଇଁ ଟ୍ରକ୍ ଆସିଯାଇଚି, ଏ ଦପ୍ତର ପଛପଟେ ଲାଗିଚି । ସେଇଠି ଚାଉଳ କିଲୋ ଦୁଇଟଙ୍କା ଉଣା । ଚୁଡା ସେମିତି ଟଙ୍କାଏ ଉଣା ! ଆରେ ହେ ତୋଫାନି ଏମାନଙ୍କୁ ନେଇଯା । ଚୁଡା ଚାଉଳ କିଣେଇ ଦବୁ !"

କିଛି ଲୋକ ସେଇଆଡେ ମୋହିଁଗଲେ । ଆଉ କିଛି ଯୋଉଠି ସେଇଠି ବସିଗଲେ ଏକୁଟିଆ ପୁଞ୍ଜି ପୁଞ୍ଜି । ହାତରେ ସେମିତି ସମସ୍ତଙ୍କର ଦଶଟଙ୍କି ନୋଟ୍‌ଟିମାନ ଧରା ହୋଇଥାଏ । ଯୋଡାଏ ଟିପରେ ପିଲାଏ ପ୍ରଜାପତିର ଡେଣା ଧରିଲା ପରି ସେମାନେ ଧରିଥା'ନ୍ତି ।

ବାବୁ ପିଣ୍ଡା ଉପରକୁ ଉଠିଗଲେ । ପୁଣି କ'ଣ ମନ ହେଲା ଓହ୍ଲେଇ ଆସିଲେ । ଡାକ ପକେଇଲେ "ଆରେ ଡାକୁଆ ! ସେ ଶାଢୀ ଗଣ୍ଡିରାରୁ ଖଣ୍ଡେ ଭଲ ଶୀଘ୍ର ଆମ ସୁଲକୁ ଆଣିଦେଲୁ ।"

ପାଖ ଆଖରୁ ଦି ଚାରିଜଣ ସୁଲ ଆଡକୁ ପାଖେଇ ଆସିଲେ । ବାବୁଟା କ'ଣ ଶାଢୀ ପିନ୍ଧେଇଲାଣି ସୁରକୁ । ସେମାନଙ୍କ ଚାହାଣି ଆଉ ଠାରୁ ବାବୁ ଆଖିରେ ପଡିଗଲା ।

ଏଗୁଡାକୁ ମଳି ମୁଣ୍ଡିଆ କହିବ । ହେଲେ ଏ ଶଳାଙ୍କର ମଗଜରେ ମଳିଧୂଳି ନାଇଁ । ଏ ଶଳେ ସବୁ ବୁଝି ଯାଉଛନ୍ତି । ହେ ! – ମାର ବୋଲି । ଏଗୁଡାକୁ କିଏ ପଚାରେ...

ସୁଲ ଆଗରେ ଲୋଚକୋଚ ଗୋଟେ ଶାଢୀ ଧରି ଡାକୁଆ ଠିଆହେଲା ।

"ଆଲୋ ନେ, ବାବୁ ଦଉଚିନି ପରା ।"

ସୁର ସେମିତି ତଳକୁ ଚାହିଁ ମୁଣ୍ଡ ହଲେଇ ନାହିଁକଲା । ବାବୁ ଠାରି ଦବାରୁ ଡାକୁଆ ତା' ହାତରେ ଶାଢୀଟା ଗୁଞ୍ଜିଦେଲା । "ଯା ଆଡୁଆଳ ଦେଖି ପିନ୍ଧିପକା" କହି, ବାବୁ ଆଉଥରେ ତାକୁ ଗୋଡରୁ ମୁଣ୍ଡଯାଏ ଚାହିଁଦେଇ ପାହାଚ ଚଢିଗଲେ ।

ଶାଢୀଟା ସୁଲ ହାତରୁ ତଳେ ଖସିପଡିଲା । ସେ ଶୂନ୍ୟକୁ ଚାହିଁ ଠିଆ ହୋଇ ରହିଲା । ଲୁହରେ ବତୁରି ଗଲା ତା' ମୁହଁ ।

ଧନି ସାମନ୍ତ ତା' ପାଖକୁ ଆସି ଠିଆହେଲା । କେହି କାହାକୁ କିଛି କହିଲେ ନାହିଁ କିଛି ସମୟ ।

ଧନି କହିଲା "ତୁ ନିଜକୁ ନିଜେ ସମ୍ଭାଳି ରହିବୁ । ଶୁକ ବେହେରା ତ' ଆଉ ଆସିବ ନାହିଁ ।"

ସୁଲ କଇଁ କଇଁ ହେଇ କାନ୍ଦିଲା । "ମଉସା ମୁଁ ଆଉ କେବେ ନୂଆ ଶାଢୀ ପିନ୍ଧିବି ନାହିଁ ଲୁଗା ପୁଟୁଳାଟିକୁ ଦେଖେଇ କହିଲା, "ସେଇଦିନ ଯୋଉଦିନ ଘରଦ୍ୱାର ଉଜୁଡିଗଲା, ସେ ମୋ' ପାଇଁ ଏ କପ୍ତା ଖଣ୍ଡ ଆଣିଥିଲା । ମତେ କହିଲା ରାତିରେ ସେଇଟା ପିନ୍ଧିବାକୁ । ମୁଁ ତାକୁ ବୋଧେଇ ଦେଲି । କହିଲି ସତାରିଯା । ଦିନ ଆଲୁଆରେ ଗାଧେଇ ପାଧେଇ ପିନ୍ଧିବି । ତୁ ଦେଖିବୁ ।"

ସୁର ପୁଣି କାନ୍ଦିଲା । ତା' ଦିହସାରା ଲୁହ ଝରିଯାଉଥିଲା ।

"ସେ ରାତି ପାହିଲା ନାଇଁ ମଉସା । ମୁଁ ଆଉ ଏ କପ୍ତା ପିନ୍ଧି ପାରିଲି ନାହିଁ । ରାତି ଅଧରେ ବଢିପାଣି ମୋ' ସଂସାର ଭସେଇ ନେଇଗଲା ।"

ଲୁଗା ବିଣ୍ଡାଟିକୁ ମୁହଁ ଉପରେ ମଡେଇ କେତେବେଳ ଯାଏଁ ସୁଲ ଥରି ଥରି କାନ୍ଦୁଥିଲା ।

ଧନି ସାମନ୍ତ ପାଖକୁ ଡାକୁଆ ଆସି କହିଲା । "ବାବୁ ଡକେଇଛନ୍ତି ଉପରକୁ ଆସ ।" ଧନି ତାକୁ ଅନେଇଲା । କିଛି କହିଲା ନାହିଁ ।

"ଆରେ ଆସୁନା କାହିଁକି" ଡାକୁଆର ତେଜା ସରରେ ସରକାରୀ ତଲବ ଶୁଣାଗଲା । ଧନି ସେମିତି ତାକୁ ଅନେଇ କହିଲା – "ବାବୁଙ୍କୁ କହିଦିଅ ମୁଁ ଦଶଟଙ୍କା କରଜ ନେବି ନାହିଁ କି ଟିପଚିହ୍ନ ଦେବିନାହିଁ ।"

ପାଖରେ ଥିବା ଲୋକେ ଶଙ୍କିଗଲେ । ଧନି ମଉସା ସତେ ଭାରି ଟାଣ ମଞ୍ଜର ମଣିଷ । ଦେଖୁ ଦେଖୁ ଆଉ ଦଶ କୋଡିଏ ଆସି ଘେରିଗଲେ । କେହି କେହି କାନିରେ ଗଣ୍ଡିଏ ଲେଖା ଚୂଡା ବାନ୍ଧି ଆଣିଥିଲେ । କେତେ ପଇସା ଦେଇଥିଲେ କେଜାଣି !

ପାଖରେ ଜାମୁକୋଳି ଗଛମୂଳକୁ ସୁଲ ପହଁରିଲା ପରି ଚାଲିଗଲା । ଆଉସବୁ ବି ସେଇଆଡେ ମୁହାଁଇଲେ ।

ଧନି ସାମନ୍ତ ସବାଶେଷରେ ଘୁଞ୍ଚିଲା । ସୁଲକୁ ବାବୁ ଦେଇଥିବା ଶାଢୀ ଖଣ୍ଡ ପଡିରହିଲା । ଅଭାବି ଦରିଦ୍ର ମଣିଷଙ୍କ ଭିତରୁ କିଏ କେତେବେଳେ ସେ ଖଣ୍ଡ ଉଠେଇ ନେଇଗଲା ଜଣାପଡିଲା ନାହିଁ ।

ଜାମୁକୋଳି ଗଛମୂଳେ ଏଠି ସେଠି ସବୁ ବସିଗଲେ । ଦେଖୁ ଦେଖୁ ଖରା ମଉଳିଗଲା ସଞ୍ଜ ନଇଁ ଆସିଲା ନୀରବ ଛାଇ ଭଳି । କେହି କୁଆଡେ ଯିବାକୁ ବାଟ ନଥିଲା । ଗାଁଗଣ୍ଡା ଘରଦ୍ୱାର ହରାଇଥିବା ଉଦ୍‌ବାସ୍ତୁ ମଣିଷମାନେ ଯିବେ ବା କୁଆଡେ ?

ମାଛି ଅନ୍ଧାର ବେଳକୁ ଜଣେ କିଏ ଟାଉଟାଉ ସେଇଆଡକୁ ଆସିବାର ଦେଖାଗଲା । ସେ ଆସି ଖଣ୍ଡେ ଦୂରରେ ଗୋଡ ଫରକେଟେଇ ଠିଆହେଲା । "ଆଉ ସବୁ କୁଆଡେ ଗଲେ ?" ପଚାରିଲା ସେ । "ଯେ ଯାହା ଘରକୁ ପଳେଇଲେ ସେଇଠି ଚିରା ହେଁସ ମୁନ୍ଦୁରାରେ ରାତି ବିତେଇବାକୁ ।"

"ଏଠି ସବୁ ପାଟପୁରିଆ ମନ୍ଦା ପକେଇ ବସିଚ – ତମର ଗାଁ ଉଭାନ ହୋଇଯାଇଚି ତେମେ ଯିବ କୁଆଡେ ? – ମୋ' କଥା ଜମା କେହି ଶୁଣିଲ ନାହିଁ । ଟିପ ଚିହ୍ନ ମଡେଇ ଦେଲ କିଛି ନବୁଝି ନଶୁଝି । ଆମେ ଏଇଠି ଶୁଖି ଶୁଖି ମରିବା । ଆମକୁ ଏମାନେ ମଜୁରି ଦେବା ବାହାନାରେ

ଖଟରା ଚାଉଳ ଦେବେ । ତାକୁ ଶିଝେଇ ଦି ଦିନ ଖାଇଦେଲେ ତେଣିକି ଦି' ମୁହଁ ଫିଟିଯିବ । ଆମେ ଜାଣିଶୁଣି ଯଦି ମରିବାକୁ ଚାହିଁବା ଆମକୁ କିଏ ବଞ୍ଚେଇ ପାରିବ ? ମର, ମରିଯା ଶଳେ. ତମର ବଞ୍ଚିବାର ଅଧିକାର ନାହିଁ ।"

ସମସ୍ତେ ଜାଣିଲେ ଯେ ସପନି ଗୋଛେଇତ ସେମିତି ଝିଙ୍ଗାସୁଥିଲା । ନିଜକୁ ମିଶେଇ ସମସ୍ତଙ୍କୁ ।

ଧନି ସାମନ୍ତ ଆସ୍ତେ ଉଠି ଆସି ସପନି ପିଠିରେ ହାତ ରଖି ଠିଆହେଲା । "ତତେ ପୁଲିସ ବାଡିଆ ବାଡେଇ କଲା କିରେ ପୁଅ ?" ସପନି ରାଗରେ ଫଁ ଫଁ ହେଲା । "ପାଟି ଫିଟେଇଲେ ତ' ଶଳେ ବାଡେଇବେ । ସେଥିରେ ଆଉ ନୂଆ କଥା କ'ଣ ଅଛି ।"

ତଳେ ଲାତ ମାରି ଦାନ୍ତ ସନ୍ଧାରୁ ଖିଙ୍କାରି ହେଲା "ଏ ଶଳାଙ୍କ ଅଫିସ୍ ଅଦାଲତ ନିଆଁ ଲଗେଇ ପୋଡିଦେବି । ଏ ଲାଞ୍ଚୁଆ, ଖଚୁଆ, ବେଧୁଆ ମଣିଷମାରୁ ଗୁଡାକୁ ଜିଅନ୍ତା ଜାଳିଦେବି ।"

"ଥୟ ଧ ସପନି । ତୁ ଯେମିତି ହଉଚୁ, ମୁଁ ବି ସେମିତି ହଉଥିଲି । ସେତେବେଳେ କଥା ନିଆରା । ସେ ଲଢେଇ ନିଆରା । ଏବେ ଶୁଣ । ଏମାନେ ସମସ୍ତେ ଭୋକିଲା । ଭୋକ ବିକଳରେ ତାଙ୍କୁ ବୁଦ୍ଧି ଦିଶୁନାହିଁ । ଚୂଡା ଗଣ୍ଡେ ଲେଖାଁ ଧରିଛନ୍ତି । ପାଣିରେ ବତୁରିଲେ ଖାଇବେ । ଏଇଠୁ ନଈବାଙ୍କ ଆଡିକି ଅଳ୍ପବାଟ ଗୋଟେ ଡାକବଙ୍ଗଳା ଅଛି । ସେଇଠି ସେ କାଳର ଗୋଟେ କୂଅ ଅଛି । ଡାକବଙ୍ଗଳାରେ ନିଧି ନାହାକ ମୋର ଚିହ୍ନା । ଏ ସମସ୍ତଙ୍କୁ ସେଇଠିକି ନେଇଚାଲ । ସେମାନେ ଆଗ ସାଷ୍ଟାମ ହୁଅନ୍ତୁ । ତା'ପରେ କଥା ହବା । ମୁଁ କିଛି ନେଇନାଇଁ କି ଟିପଚିହ୍ନ ମାରିନାହିଁ ।"

କଣ ମନକୁ ପାଇଗଲା ସପନିର କେଜାଣି ସେ ବୁଲିପଡି ଚାହିଁଲା ଧନି ସାମନ୍ତକୁ "ତେମେ ଟିପ ଚିହ୍ନ ମାରିନ ମଉସା ? ଠିକ୍ ଅଛି ଚାଲ ସେଇ ଡାକବଙ୍ଗଳାକୁ ଯିବା ସେଇଠି ସେ ସାଇବ ଗଛମୂଳେ ବସି କଥାହବା ।"

ଧନି ସାମନ୍ତ କହିଲା "ଆରେ ସେ ସାଇବ ଗଛ ଯୋଉଦିନ ଲଗାହେଲା ମୁଁ ଥିଲି । ସେଠିକି ଚାଲ, ସେ କଥା କହିବି ।"

ଅନ୍ଧାର ଘନେଇ ଆସିଲା ବେଳକୁ ସେମାନେ ସମସ୍ତେ ଏକାମୁହାଁ ବାହାରିଲେ । ଏତିକିବେଳେ ସେ ଅଫିସ୍ ଭିତରୁ ଦୁଇଜଣ କିଏ ଆସିଲେ ତାଙ୍କଆଡେ । ଟାଉଟାଉ ଆସି ଚାହିଁଲେ ଚାରିଆଡକୁ । ଦବିଲା ସରରେ କହିଲେ, "ଏଠି ସୁଲ ବେଦେହରାଣି କିଏ ଅଛି – ବାବୁ ଡକେଇଛନ୍ତି ଚାଲ ।" ଛପ୍‌କିନା କ'ଣଟାଏ ପାରି ହୋଇଗଲା ସମସ୍ତଙ୍କ ଉପରେ । ଆଗମୁଣ୍ଡରୁ "କିଏସେ ବେସୁଲକୁ ଜାକୁଚି ରାତିରେ" କହି ଝପଟି ଆସିଲା ସପନି । ତା' ପଛକୁ ପଛ ଆଉ ଟୋକା ମେଣ୍ଟ ବାନ୍ଧିଗଲେ ।

ସେ ଦି'ଟା ପିଆଦା କନକନ ହେଲେ । ଜଣେ କହିଲା "କ'ଣ କାଗଜରେ ଟିପଚିହ୍ନ ମାରିବାକୁ ଅଛି । ତା' ଗେରସ୍ତ ମରିବା ବାବଦକୁ ତାକୁ ଟଙ୍କା ମିଳିବ ।"

ସପନି ଉହୁଙ୍କି ଆସୁଥିଲା । ତାକୁ ପଛ କରିଦେଇ ଧନି ସାମନ୍ତ ଆଗେଇ ଆସି କହିଲା

"ସୁଲ ଆମ ଗାଁ ଝିଅ, ଗାଁ ବୋହୂ! ସେ ରାତିରେ ଏକୁଟିଆ କୁଆଡେ ଯିବାନାହିଁ। ସେ ଆମ ପାଖରେ ରହିବ। ରାତି ପାହିଲେ ଦେଖିବା। ଯାଅ ସେଇଆ କହିଦେବ – ଚାଲରେ ପିଲେ।

"ଭାରି ବହପ ତ! ରହିଥାରେ ପୁଅ!" କହି ପିଆଦା ଫେରିଗଲେ। ବୁଢା ଧନି ସାମନ୍ତ ଗୋଟିଏ ଗୋଟିଏ ଆଗେଇଲା। ସୁଲକୁ ଘେରି ବାକି ସବୁ ଆଗେଇଲେ ଅନ୍ଧାରରେ ପାଣି ଖୋଜିବାକୁ।

ବତୁରା ଚୂଡାଗଣ୍ଡେ ଲେଖା ଖାଇ ସମସ୍ତେ ପଥର ଚଟାଣ ଉପରେ ମନ୍ଦେଇ ହେଇ ବସିଲେ। ଧନି ସାମନ୍ତ ଦି ଘଡି ଅନ୍ଧାର ପରେ ଉଇଁ ଆସିଥିବା ଜହ୍ନ ଆଡକୁ ଆଙ୍ଗୁଠି ଦେଖେଇ କହିଲା – ସେଇଠି ସେ ସାଇବ ଗଛ ଠିଆ ହୋଇଥିଲା। ଏବେ ତା' ଚେର ଦୋହଲି ଯିବାକୁ ଶୋଇଯାଇଛି। ସେ ଗଛଟା ନିଆରା...

ଏଇ ବଙ୍ଗଳାରେ ସାଇବମାନେ ରହୁଥିଲେ। ଆମେ ସବୁ ସେତେବେଳେ ଟୋକା। ସାଇବଙ୍କୁ ଦେଶରୁ ତଡିବାକୁ ଲଢେଇ ଚାଲିଥାଏ – ସେ ଲଢେଇ ବି ନିଆରା।...

ଶେଷକୁ ଗୋଟାଏ ରଙ୍ଗମୁହାଁ ସାଇବ ଏଠି ଥିଲା। ସେଇଟା ଟିକିଏ ଅଲଗା। ଆମକୁ ଚାହିଁ ହସୁଥିଲା, ପାଖକୁ ଡାକି ପିଜୁଳି ଦେଉଥିଲା। ଚାରିଆଡେ ଦିନେ ଗୋଳ ଶୁଭିଲା ଯେ ସାଇବ ଶାସନ ସରିଗଲା। ସେମାନେ ପଳେଇଲେ। ସେ ଦିନଟା ମୋର ମନେ ଅଛି। ସେ ରଙ୍ଗମୁହାଁ ସାଇବ ନିଜେ ମାଟି ହାଣି ଗଛଟାକୁ ପୋତିଲା। ଆମେ ନଈ ଆଡେ ଆସିଥିଲୁ। ଆମକୁ ଦେଖି ହାତ ଠାରି ଡାକିଲା। କ'ଣ ସବୁ ହିନ୍ଦୀରେ କହିଲା। ଆମ ସାଙ୍ଗରେ ଯାଇଥିଲା ଶୁରୁଯା, ଆମକୁ ବୁଝେଇ ଦେଲା – ସାଇବ ତା' ଦେଶକୁ ଚାଲିଯିବ। ଏ ଗଛଟା ଥିଲେ ତୁମେ ତାକୁ ମନେପକାଇବ। ଏହାର ଡାଳ ଜାକ ଲୁହଧାର ପରି ତଳକୁ ଗଡିଆସିବ। ଯା' ନା କାନ୍ଦୁରା ଓ୍ୱିଲୋ। ସାଇବ କହିଲା, ସେଦିନ ଅଗଷ୍ଟ ପନ୍ଦର ତାରିଖ। ଭାରତ ସ୍ୱାଧୀନ ହବା ଦିନ ସେ ଗଛଟି ଲଗେଇ ଚାଲିଗଲା।

ସୁକୁମାରିଆ ଗଛ ଏଠା ପାଣି ପବନରେ ସହଜେ ଉଧେଇ ପାରିନାହିଁ। ହେଲେ ତାକୁ ଦେଖିଲେ ଜଣାପଡେ ସେ କାନ୍ଦୁଚି। ଚାରିଦିନ ତଳେ ଯେଉଁ ଝଙ୍କା ପବନ ହେଲା ସେଥିରେ ଗଛଟା ଟଳିପଡିଚି। ମୋର ବଳ ଥିଲେ ମୁଁ ତାକୁ ଠିଆ କରିଦିଅନ୍ତି। ପାଣି ଦେଇ ବଞ୍ଚେଇ ରଖନ୍ତି।

ସମସ୍ତେ ନିଶ୍ଚଳ ହେଇ ଶୁଣୁଥା'ନ୍ତି। ଜହ୍ନ ଉଠି ଆସୁଥାଏ। ସପନି ଠିଆହୋଇ ପଡିଲା। କହିଲା "ମଉସା ଚାଲ ସମସ୍ତେ ମିଶି ଗଛଟାକୁ ଠିଆ କରିଦେବା। ଆମେ ଏତେ ଲୋକ ଅଛୁ ଉଠ, ଉଠ, ଉଠ, କହି ସମସ୍ତେ ଛିଡା ହେଇଗଲେ।"

ଯାଇ ଗଛଟିକି ବେଢି ଠିଆହେଲେ। ତା'ର ପତ୍ର ଗୁଡିକ ସରୁ ସରୁ। ଡାଳଗୁଡିକ ନହକା, ତଳମୁହାଁ।

ମନେହେଲା ଧନି ମଉସାର ଆତ୍ମୀୟ କିଏ ଅସହାୟ ସେମିତି ଟଳିପଡିଚି। ତାକୁ ଟେକି ଠିଆ କରିବା ତାଙ୍କ ଧର୍ମ।

କେହି କେହି ଯାଇ ତଳ ଆଡୁ ଟେକିଲେ। ସହଜ ନୁହେଁ ଗଛଟାକୁ ଟେକିବା। ସପନି

କହିଲା "ମଉସା ଗୋଟେ ମୋଟା ଦଉଡି ହେଲେ ଏଇଆଡୁ ଅଧେ ଭିତରେ ଆଉ ଅଧେ ତଳୁ ଟେକନ୍ତେ । ସେ ତେନ୍ତୁଳିଗଛ ସରିକି ଅଣ୍ଟିଲା ଭଳି ଦଉଡିଟା ହେଲେ ହୁଅନ୍ତା ।"

ଧନି କହିଲା "ରଇଥା, ମୁଁ ଦେଖେ ।"

ସେ ଡାକବଙ୍ଗଳା ଆଡେ ଯାଇ ଅଳ୍ପ ସମୟରେ ଫେରିଆସିଲା । କହିଲା "ଆସ ଏଇଠି ବିଜୁଳି ତା'ର ଆଉ ଖୁଣ୍ଟ କାମ ଚାଲିଚି । ମୋଟା ଦଉଡି ଦି ତିନିଟା ଅଛି । ନିଧି ନାହାକ ନୁଚେଇ କରି ଦବ । ଯାଇ ଗୋଟାଏ ନେଇଆସ । ଦିଜଣ ଯାଅ ନହେଲେ ଆଣିପାରିବ ନାହିଁ ।"

"ଇସ୍ କେତେ ବଡ ଦଉଡିଟାଏ ସତେ । ନ ହେଲେ କିଏ ଗଛ ଉଠି ଠିଆହବ ?"

ତେନ୍ତୁଳିଗଛ ଗଣ୍ଡିରେ ଗୋଟାଏ ଘେର ପକେଇ ପାଞ୍ଚଜଣ ଧରିଥା'ନ୍ତି । ସାଇବ ଗଛର ସବା ଉପର ଡାଳରେ ଫାଶ ପକେଇ କୋଡିଏ ଜଣ ତେନ୍ତୁଳି ଗଛ ଆଡିକି ଟାଣି ଧରିଥା'ନ୍ତି । ତଳପଟୁ ମୋଟ ମୋଟ ଡାଳ ତଳେ ବାକି ସବୁ କାନ୍ଧ ପତେଇ ରହିଥା'ନ୍ତି ।

ଗୋଟାଏ ଟୋକା ପାଇକଛା ଭିଡି ଆଗରେ ଠିଆହେଲା । "ମୁଁ ଏକାମ କରିଚି । ସମସ୍ତେ ଏକାଦମ୍‌ରେ ଜୋର ନ ଲଗେଇଲେ କିଛି ହବନାହିଁ । ମୁଁ ଏଇ ଦଉଡି ଆଗରେ ରହିଲି । ମୁଁ କହିବି ହେଁସା – ତମେ ସମସ୍ତେ ଏକାଥରକେ ହେଁସା କହି ବଳ ଖଟେଇବ ।"

ଜହ୍ନ ଆଲୁଅ ଦପ୍ ଦପ୍ ଦିଶୁଥାଏ । ଶବ୍ଦ ଶୁଭୁଥାଏ ହେଁସା, ହେଁସା ।

ଗଛ କମ୍ପୁଥାଏ ରହି ରହି ଘୁଞ୍ଚୁନଥାଏ ।

କେତେବେଳେ ଜଣାଗଲା ଯେ ମାଟି କାମୁଡି ପଡିଥିବା ସାଭିମାନୀ ଗଛଟା ମୁଣ୍ଡ ଟେକିଲା । ସବୁ କାନ୍ଧରୁ ସବୁ ବାହୁରୁ ହାତ ମୁଠାରୁ ଶକ୍ତି ନିଗିଡି ଯାଇ ତାକୁ ଆଉଥରେ ଠିଆହୋଇ ବଞ୍ଚିବାକୁ ହୁବ ଯୋଗେଇ ଦେଲା ।

ସେ ମୁଣ୍ଡ ଟେକିବାରୁ ସେମାନେ ସମସ୍ତେ ଆହୁରି ତେଜରେଜୋର ଲଗେଇ ଦେଲେ ।

ତେନ୍ତୁଳି ଗଛରେ ଦଉଡିର ଘେର ଘୁଞ୍ଚିଲା । ଗଛ ଉଠିଲା ଉପରକୁ । ଜହ୍ନ ମୁଣ୍ଡ ଉପରେ ଝଟକୁଥାଏ । ଗଛ ସଳଖିଗଲା । କାନ୍ଧ ପତେଇବା ଛାଡି ସମସ୍ତେ ଦଉଡିରେ ଗୁନ୍ଥିହେଇ ଲାଗି ଯାଇଥିଲେ ।

ଧନି ସାମନ୍ତ ଗଛ ଗଣ୍ଡିରୁ ବାଲି ମାଟି ଦି'ହାତରେ ପୋଛି ଦେଉଥିଲା ।

ଗଛକୁ ସେଇଠି ସମ୍ଭାଳିବା ପାଇଁ ତା' ମୂଳକୁ ଦମ୍ଭ କରିବାକୁ ହେବ । ଅଳ୍ପ କେତେଜଣ ଦଉଡି ଧରି ଠିଆ ହୋଇଥା'ନ୍ତି, ବାକି ସବୁ ମାଟି ଗଦେଇଲେ । ପୁଣି ଡାକବଙ୍ଗଳାରୁ କୋଡି କୋଦାଳ ଆଣିଲା ଧନି ସାମନ୍ତ । ଭଙ୍ଗା ପାଚେରୀକୁ ମାଙ୍କଡା ପଥର ଭୁଷୁଡି ପଡିଥିଲା । ତାକୁ ଆଣି ଗଛକୁ ବେଢେଇ ଚାରିପ୍ରସ୍ତ ପଥର ଚନ୍ଦନୀ ଥୋଇ ଦେଲେ ।

ଗଛ ଠିଆହେବ ସିନା, ପବନ ସମ୍ଭାଳି ପାରିବ ନାହିଁ । ଏ ପଥର ସବୁ ଯୋଡେଇ ଏକାଠି ନକଲେ ଗଛ ପୁଣି ଦୋହଲିଯିବ । ପୁଣି ଲୋଟିପଡିବ । କୋଡି କୋଦାଳ ଫେରେଇ ଦିଆଗଲା । ଦଉଡାଟା ସେମିତି ଗଛରୁ ଗଛକୁ ବନ୍ଧା ହେଇଥାଏ ।

ଜହ୍ନ ମଉଳଣ ଧରିଆସିଲା । ଆରପଟେ ସିନ୍ଦୁରା ଫାଟି ଆସିଲା । ଗୋଟାଏ ନୀରବ ଶ୍ରମ ରାତି ପାହି ଆସିଲା ।

ଏତିକିବେଳେ ଝଡଦିଗରୁ ଗାଡି ଆଲୁଅ ଦିଶିଲା । ଗାଡି ଆଲୁଅରେ ଧୂଳି ପଟଳ ଦିଶିଲା । ଅଚିହ୍ନା ଲୋକ ସବୁ ଓହ୍ଲେଇ ପଡିଲେ । ତାଙ୍କରି ଭିତରୁ ଲୁଙ୍ଗିପିନ୍ଧା ମଜବୁତ୍ ପହିଲମାନ ଚାରିଜଣ ଠେଙ୍ଗା ହାତରେ ଖେପି ଆସିଲେ ।

ଗୋଟାଏ ଧଡିଆ ମଣିଷ ତାଙ୍କୁ ବାଟ କଢେଇ ଆଣିଲା । ସେ ବୋଧେ ପିଆଦା ଯେ ସଂଜବେଳେ ସୁଲକୁ ଡାକି ଆସିଥିଲା ।

"ହେଇ ହେଇ ସେ ବୁଢା – ସେଇ ଲିଡର । ଧନି ସାମନ୍ତ ।"

ଗୁଣ୍ଡା ପହିଲିମାନ ବାଡି ବୁଲେଇ ପଶି ଆସିଲେ ।

କିଏ ଧକ୍କା ଖାଇ, କିଏ ମାଡଖାଇ କ'ଣ ହେଲା ବୋଲି କହୁ କହୁ ସପନି ଗୋଛେଇତ, ଧର ଧର କହୁ କହୁ ସେଥିରୁ ଗୋଟାଏ ଧନି ସାମନ୍ତ ମୁଣ୍ଡରେ ଠେଙ୍ଗା ପିଟି ଦେଇଥିଲା ।

ସମସ୍ତେ ହାଉଳି ଖାଇ ତାକୁ ସମ୍ଭାଳିଲା ବେଳକୁ ଆଉ ଦୁଇଜଣ ସୁଲ ଆଡକୁ କ୍ଷେପିଗଲେ । ସେତେବେଳକୁ ସମସ୍ତେ ଅଡିଗଲେଣି । ପହିଲମାନ ଗୁଣ୍ଡାଙ୍କୁ ସେମାନେ ବେଢିଗଲେ । ମାଡିବସିଲେ । ହାତରୁ ଠେଙ୍ଗା ଛଡେଇ ନେଲେ । ଧସ୍ତାଧସ୍ତି ହେଲା ଏବଂ ଜିପ୍ ଭିତରକୁ ସେମାନେ ଡେଇଁପଡି ଗାଡି ଛାଡିଦେଲେ । ଘୁଞ୍ଚି ଯାଉଥିବା ଗାଡି ଉପରକୁ ଟେକା ବୃଷ୍ଟି ହଉଥିଲା । ଧନି ସାମନ୍ତର ଲହୁଲୁହାଣ ଅବସ୍ଥା । ତା'ର ଆଖିପତା ପଡି ଆସୁଥାଏ । ଓଠ ଶୁଖି ଆସୁଥାଏ । ତାକୁ ପାଣି ଦିଢୋକ ପିଆଇ ମୁହଁଟାକୁ ଧୋଇ ଦେବାରୁ ସେ ଟିକିଏ ସାଷ୍ଟାମ ହେଲା ।

ତା' ମୁଣ୍ଡରେ ପୋତାକନା ମଡେଇ ପଟି ଭିଡା ହେଇଥାଏ । ସେ ହାତ ଠାରିବାରୁ ସପନି ପାଖେଇ ଆସିଲା । ସେ କ'ଣ କହିବାକୁ ଯାଉଥିଲା । ତାକୁ ବାରଣ କରି ଧନି କହିଲା –

"ଦେଖ ବାପା ଆମେ ଯାହା ଭୋଗିଥିଲୁ ତୁମେ ସେଇଆ ଭୋଗୁଛ ପଚାଶ ବର୍ଷ ପରେ । ସେଦିନର ଦୁଃଖ, କଷ୍ଟ, ଭୋକ, ଓପାସ ଅନ୍ୟାୟ, ଅନାଚାର ।"... ପବନ ଅଣ୍ଟିଲା ନାହିଁ । ଅଟକି ଗଲା ।

"ସେମାନେ ପୁଣି ଆସିବେ । ଆହୁରି ଅନ୍ୟାୟ ହେବ । ଏକାଠି ଲଢିବ । ଆଉ ଏତେ ଶ୍ରମ କରି ଏ ଶୋଇପଡିଥିବା ଗଛକୁ ଟେକି ଠିଆ କରିବ । ବଞ୍ଚେଇ ରଖିବ । ଭାରତ ସ୍ୱାଧୀନ ହେଲା ଦିନ ଏ ଗଛ ଲାଗିଥିଲା । ସେଇଦିନୁ ଏ ଭୂଇଁର ଗ୍ରାମକଥା ଏଇ ଗଛ କହୁଚି । କେହି ଶୁଣୁନାହିଁ । କାନ୍ଦୁଚି । ତା' ଡାଳକୁ ଅନା ! କାନ୍ଦୁଚି ଏ ଗଛ ।"

ଧନି ସାମନ୍ତର ସ୍ୱର ଧିମେଇ ଆସିଲା । କ'ଣ କେମିତି ଡାକ୍ତର ପାଖକୁ ତାକୁ ନିଆହବ କିଏ ଯିବ । କିଏ ପଇସା ଦବ । କେମିତି ଧନି ବଞ୍ଚିବ । ଭାଳେଣି ପଡିଥାଏ । ସୁଲ କହିଲା । "ମୋର ଏ କସ୍ତାଖଣ୍ଡ ଅର୍ଶନ୍ଦୁଆ । ଏଇଟା ବିକିଦିଅ ।"

ସେ ଧନି ସାମନ୍ତର ମୁଣ୍ଡକୁ ତା' କୋଳରେ ଥୋଇ ବସିଥାଏ । ସକାଳ ପାହିଗଲା ।

ତେନ୍ତୁଳି ଗଛରେ ଦଉଡା ବନ୍ଧା ହୋଇ ରହିଥାଏ । ସାଇବ ଗଛର ଡାଳ ଆସ୍ତେ ପବନରେ ଦୋହଲିଲା ।

ସପନି ଦି'ଜଣଙ୍କୁ ପଠେଇଲା ଗୋଟେ ଦଉଡିଆ ଖଟ ଯୋଗାଡ କରିବାକୁ । ସେଇଥିରେ ଧନି ସାମନ୍ତଙ୍କୁ ବୋହି ନେଇଯିବେ ଡାକ୍ତର ପାଖକୁ ।

ସୂର୍ଯ୍ୟ ଉଇଁ ଆସୁଥିଲା । ଜହ୍ନ ମଉଳି ଯାଇଥିଲା ।

ଆଉ ଖଣ୍ଡେ ଗାଡିରେ ସେମାନେ ଆସି ପହଞ୍ଚିଲେ । ପୁଲିସ୍ ଗାଡି, ସେଥିରେ ପଇସା ବଣ୍ଟା ବାବୁ ଆଉ ପୁଲିସ୍ ଥାଟ । ଖପ୍ ଖପ୍ ଡେଇଁ ପଡିଲେ । ମାଡିଆସିଲେ । ପୁଲିସ୍ ବାବୁ ଜଣକ ମୁହଁରେ ଚୁଙ୍ଗା ଲଗେଇ କହିଲେ, "ତୁମମାନଙ୍କୁ ଦଙ୍ଗା ଡକାଏତି, ସରକାରୀ ସମ୍ପତ୍ତି ନଷ୍ଟ ଅଭିଯୋଗରେ ଗିରଫ କରାଯାଉଛି ।"

ତୁମେ ଏ ସାଇବ ଗଛକୁ ତା' ଚେର କାଟି ତଳେ ପକେଇ ଦେଇଥିଲ । ତାକୁ ସରକାରୀ ଲୋକ ଦଉଡି ବାନ୍ଧି ଉଠେଇଲା ବେଳକୁ ତାଙ୍କୁ ଲାଠିରେ ଆକ୍ରମଣ କରିଥିଲ । ତମ ଲାଠି ମାଡିରେ ଧନି ସାମନ୍ତର ମୁଣ୍ଡ ଫାଟିଯାଇଛି । ତମେ ସ୍କୁଲ ବେହେରାଣିକୁ ବେଆଇନ୍ ଅଟକ କରି ରଖିଛ । ତାକୁ ସରକାରୀ ଦପ୍ତରକୁ ଯିବାକୁ ଦେଇନାହଁ ।

ତମେ କାଲି ସରକାରୀ କାମରେ ବାଧା ଦେଇଛ ।

ସପନି ଗୋଛେଇଚ ଗର୍ଜିଉଠିଲା । ମନେହେଲା ଷାଠିଏଟା ସିଂହ ଏକାଠି ଗର୍ଜି ଉଠିଲେ ସତ କହିବାକୁ ସାକ୍ଷୀ କେହି ନଥିଲେ ।

ଜହ୍ନ ଦେଖୁଛି ଆମୂଳ ଚୂଳ । ସେ ଦୁର୍ବଳ ନିଷ୍ପ୍ରଭ । ତା'ର ପାଟି ଫିଟିଲା ନାହିଁ । ସବୁ ହୁଏତ ବୁଝିଗଲା ସ୍ପଷ୍ଟ ଆଲୁଅରେ । କିନ୍ତୁ କହିପାରିଲା ନାହିଁ ଦେଖିଚି ବୋଲି । କହିଲା ସମ୍ଭାଳି ଯା ଦେଖିବା । ପଚାଶ ବର୍ଷର ମୁମୂର୍ଷୁ ଗଛ ଝାଉଁଳି ରହିଥିଲା । ତା'ର ଲୁହଧାର ପରି ଝରି ଆସୁଥିବା ଡାଳ ଆଗରେ ବଡ ବଡ ଥୋପା ଲୁହ ଟଳମଳ ହେଲାପରି ଦିଶୁଥିଲା କାନ୍ଦୁଥିଲା ସାଇବଗଛ ନୀରବରେ ।

ଥମ ଥମ ସକାଳ ଯୁଦ୍ଧ ପଡିଆ ପରି ଟାଣି ହେଇ ରହିଥିଲା ।

ଭୋକିଲା ହାଡୁଆ ଝାଳ ସରସର ସପନି ତହକୁଥିବା ଆଖିରେ ରହିଁ ରହିଥିଲା ସୂର୍ଯ୍ୟକୁ । ତା' ସିର ଟଣକି ରହିଥିଲା କପାଳରେ । ହାତ ମୁଠା କରୁଥିଲା, ଗୋଡଠୁ ମୁଣ୍ଡଯାଏ ସେ ତାରି ରହିଥିଲା ବିଜୁଳି ତା'ର ପରି ।

ପାଞ୍ଚ ସାତ ଜଣ ମାଙ୍କଡା ପଥରର ରନ୍ଦିନୀ ଉପରେ ଗଛ ଦେହରେ ବାହୁ ବେଢେଇ ଠିଆ ହେଇଥିଲେ । ତାଙ୍କ ହାତରେ ଲାଠି ଚମକୁ ଥିଲା । ଆଖିରେ ନିଆଁ ତହକୁ ଥିଲା ।

ଚନ୍ଦ୍ର ସୂର୍ଯ୍ୟ ମଝିରେ ଶୂନ୍ୟ ଆକାଶରେ ଧର୍ମ ଓହଳି ରହିଥିଲା ମୃତ ଅଜଗର ପରି ।

□

# ନିର୍ମାଣ

ଚତୁର୍ଦ୍ଦିଗରେ ଗୋଳିପାଣିର ସମୁଦ୍ର । ଆକାଶ ସାରା ପେଜୁଆ, ବର୍ଣ୍ଣହୀନ, ନିସ୍ପନ୍ଦ । ଖାଁ ଖାଁ ଶୂନ୍ୟତା, କେହି କୁଆଡେ ନଥିବାର ନିଛାଟିଆ ପଣ । ଖରା ନାହିଁ, ବର୍ଷା ନାହିଁ, ପବନ ନାହିଁ । ଭାରି ଗୁମୁସୁମିଆ ଧାନ ଉସେଇଲା ପରି ପାଗ ।

ଜଣେ ଯାତ୍ରୀ । ଜଣେ ନାଉରିଆ । ଉଭୟଙ୍କ ଦେହରୁ ଝାଳ ନିଗିଡି ପଡୁଛି । ଉଭୟେ ନୀରବ । ଉଭୟେ କ୍ଲାନ୍ତ । ନାଉରିଆର କାଳିଆ କସରା ଝାମ୍ପୁରା ବାଳ, ଟାଆଁସା ଗୁଡ, ଝାଳ ସରସର ରେଖାବହୁଳ କପାଳ । ଆଖିରେ କେଜାଣି କେତେ ଅସୁମାରି ଅନୁଭବ, ଅସୁମାରି ଦୁଃଖ ଓ ନରାବତା । ମେଲା ବୁକୁ ଶିରାଳ ବାହୁ ଫାରିକଛା ମରା ହୋଇଥିବା ମସିଆ ପୁରୁଣା ଲୁଗା । ବୟସ ଅନ୍ଦାଜ ପଚାଶ ଉପରକୁ, କେଜାଣି କେତେ । ସେ ଆହୁଲା ଥୋଇଦେଇ କାତ ଧରି ଠିଆ ହେଇଚି । କାତ ମାରୁନାହିଁ । ନାଆ ବି ବୋଧହୁଏ ଚଲୁନାହିଁ । ଚଳିବ ତ' କୁଆଡେ ଚଳିବ ? ଯୁଆଡେ ଗଲେ ଏକା କଥା ।

'ସେ ଯେଉଁ ଦୂରରେ ଧାଡିଏ ଗଛ ଦେଖାଯାଉଛି ସେଇଟା କ'ଣ ?'

"ଧାଡିଏ ନୁହେଁ ଦୁଇଧାଡି ଗଛ । ଏସବୁ କର୍ଯ୍ୟାଗଛ । ପଶ୍ଚିମ ହୁଡାରେ ପନ୍ଦରଟା ଗଛ କୋଉକାଳୁ ଠିଆ ହୋଇଛନ୍ତି । ଆଡୁଆ ଆଉ ଧାଡିଏ ଉତ୍ତର ହୁଡାରେ ଜାମୁଗଛ ।"

"ଯିବା କି ?"

"ନାଁ । କାତ ପାଇବ ନାହିଁ । ସେ ହୁଡା ମଝିରେ ପ୍ରତାପ ସାଗର, ଦେଢକୋଶ ଆକ୍ରାନ୍ତରେ ବିଶାଳ ପଦ୍ମପୋଖରୀ ।"

ଯାତ୍ରୀ ଜଣକ ଉଜ୍ଜ୍ୱଳ ତରୁଣ । ଗୋରା, ସୁନ୍ଦର ! ଚକ୍ ଚକ୍ ଆଖି । ଚକ୍ ଚକ୍ ଦାନ୍ତ । ଗହଳ କଳାବାଳ । ଗହଳ କଳା ନିଶ । ସେବତୀ ଫୁଲ ରଙ୍ଗର ସ୍ପୋର୍ଟିଂ ସାର୍ଟ ଆଉ ମାଡି ମକଚି ପିନ୍ଧା ହେଇଥିବା ଆକାଶୀ ରଙ୍ଗର ଜିନ୍‌ପ୍ୟାଣ୍ଟ । ହାତରେ କ୍ୟାମେରା । ସାଙ୍ଗରେ ବଡ ଧରଣର ଗୋଟିଏ ଚମଡା ମୁଣା ।

ଦୂରରୁ ଦିଶୁଥିବା କର୍ଯ୍ୟା ଗଛର ଧାଡିଟିକୁ ସେ ଦେଖୁଥା'ନ୍ତି, ନାଉରୀକୁ ନ ଚାହିଁ କଥା ହେଉଥା'ନ୍ତି । ଶେଷ ପ୍ରଶ୍ନର ଉତ୍ତର ଦେଲାବେଳେ ସେ ନାଉରୀର ମୁହଁକୁ ଦେଖି ଜାଣିଗଲେ ଯେ ସେ ଅକାତ କାତ ପାଣି ଉପରେ ଟଳମଳ ନାଆଟିଏ । ସେ ବୁଝିଗଲେ ।

"ଆସ ମଉସା କ'ଣ ଟିକିଏ ଖାଇନେବା । କାତ ଟେକି ଆଣ! ଆସ, ଏଇ ସାମ୍ନା ବାହୁଙ୍ଗାରେ ବସ ।"

ସେ ତାଙ୍କ ବ୍ୟାଗ୍ ଭିତରୁ ଦିଟା ପୁଡିଆ ବାହାର କଲେ । କିଛି ପରଠା, ଆଳୁଭଜା ଆଉ କଞ୍ଚା ପିଆଜ । ଗୋଟିଏ ବୋତଲ ପାଣି । "ତମେ ବାବୁ ଖାଇନିଅ । ମୋର ନ ହେଲେ ଚଳିଯିବ । ଏମିତି କେତେ ଦିନ ଚଳିଯାଇଛି ।"

"ନାଇଁ ନାଇଁ, ମୁଁ ଜାଣିକରି ଦି'ଜଣଙ୍କ ପାଇଁ ଆଣିଛି ପରା । ଆସ, ସାଙ୍ଗ ହୋଇ ଖାଇବା ।"

ଧୀର ପାଣିରେ ନାଆ ହଲୁ ନଥାଏ । ପବନ ଚାଲୁ ନଥାଏ କୋଉଆଡୁ । ନାଉରିଆ ବାଁ ପାପୁଲିରେ ପରଠା ଦିଖଣ୍ଡ ଧରି ଚାହିଁ ରହିଥାଏ ଦୂରରେ ଦିଶୁଥିବା ଦରବୁଢା କର୍ଯ୍ୟା ଗଛର ଧାଡିକୁ ।

ଆରଜଣକ ନୀରବରେ ଖାଉଥା'ନ୍ତି ଓ ଚାହୁଁଥା'ନ୍ତି, କେତେବେଳେ ଚିତ୍ର ଚହଲିବ, କଥା କହିବ ।

"ଧୋଇ ନିଅ ମଉସା । ତା' ଉତ୍ତାରୁ ତମେ ବହୁତ କଥା କହିବ । ମୁଁ ସବୁ ଶୁଣିବି । ସେଥିପାଇଁ ତ ମୁଁ ଏତେ ଦୂରରୁ ଆସିଛି ।"

ନୀରବରେ କଥା ମାନି ସେ ଅମଙ୍ଗ ହେଲାପରି ଅଳ୍ପ ଟିକିଏ ଚାଖିଲା । ତା'ପରେ ଭଲ ଲାଗିଲା ନା କ'ଣ, ଭିତରେ ଶୋଇ ରହିଥିବା ଅଗ୍ନି ତେଜିଉଠିଲା ନା କ'ଣ ସେ ଚାରି ଗ୍ରାସରେ ଦି'ଖଣ୍ଡ ପରଠା ଖାଇଦେଇ ହାତ ଝାଡିନେଲା । ବୋତଲ ପାଣି ପ୍ଲାଷ୍ଟିକ୍ ଗିଲାସରେ ଢାଳିଲା ବେଳଠୁ ଚାହିଁ ରହିଲା । ବଢେଇ ଦେଲାରୁ ଆତୁରିଆ ହୋଇ ପିଇଦେଲା । ଆଉଥରେ ଭରିଦେଲାରୁ ପାଟି ଭିତରକୁ ଛାଟିଲା ପରି ଗୋଟାଏ ଢୋକରେ ସାରିଦେଲା । ମୁହଁରେ ଦେହରେ ପାଣି ଛିଟିକି ଗଲା । ସେ ବାଁ ହାତରେ ଓଦା ବୁକୁକୁ ଆଉଁସି ଦେଇ ଚାହିଁଲା ।

"ପ୍ରତାପ ସାଗର ପାଣିଟା ଏମିତି ନିର୍ମଳ, ଆଣ୍ଠୁଏ ପାଣିରେ ଠିଆ ହେଲେ ପାଦ ଦିଶୁଥିଲା । ଆଞ୍ଜୁଳାଏ ପିଇଦେଲେ ଆତ୍ମା ସନ୍ତୋଷ ହେଇଯାଉଥିଲା । ସେ ପାଣିଟା ଟେବେ ଟିକିଏ ନିଆରା । ଖୁବ୍ କାକର । ଖରାଦିନେ ବି କାକର । ଆଉ ତା'ର ଗୋଟେ ବାସ୍ନା । ପଦ୍ମଫୁଲ ପରି । ତମେ ପିଇଲେ କହିବ ଯେ ପଙ୍କୁଆ ଲାଗିଲା । ସେଇଟା ବାରି ଜାଣିଲେ ପଦ୍ମନାଡ, ପଦ୍ମ ଫୁଲର ବାସ୍ନା ।"

"ସେଇ କର୍ଯ୍ୟା ଗଛ, ଜାମୁଗଛ ବୁଦା ଭିତରେ ପ୍ରତାପ ସାଗର ଥିଲା ନା' କ'ଣ ?"

"ଥିଲା କ'ଣ କହୁଛ ବାବୁ । ଏବେବି ଅଛି ନା । ଏ ଅସନା ପାଣି ଆଡେଇ ଦେଲେ ପରା ପଦ୍ମ ପୋଖରୀ । ସେଇ ଜାମୁ ଗଛ ଧାଡିଠୁ ଲମ୍ବି ଯାଉଛି ଯେ ଆର ଗୁଡାକୁ ଆଖି ପାଇବ ନାହିଁ ।"

ନାଉରିଆ ନୀରବିଗଲା । ସେ ହୁଏତ ଏ ଗୋଳିଆ ପାଣି ତଳେ ବୁଡା ମାରି ଖୋଜୁଥିଲା କାହାକୁ । ତା' ମୁହଁ ଉଜଳି ଉଠିଲା । ସର ଗହିରେଇ ଗଲା ।

"ମୋତେ କେହି ହେଲେ ଗୋବର୍ଦ୍ଧନ ବୋଲି ଡାକନ୍ତି ନାହିଁ । ମୁଁ ସମସ୍ତଙ୍କର ଗୋବରା । ସେ ବି ମୋତେ ସେଇଆ ଡାକୁଥିଲା... ।"

"କିଏ ?"

ଚମକିଲା ପରି ଗୋବରା ଆଖିମଟକା ପକେଇଲା । ଧରାପଡିଗଲା ପରି ଲାଜେଇଲା । କହିଲା "ଚାଲ ବାବୁ ଫେରିଯିବା । ବଡ ସଡକ ଦାଣ୍ଡରେ ପହଞ୍ଚିବାକୁ ଢେର୍ ବେଳ ଲାଗିଯିବ ।"

"ବୁଝିଲ, ଗୋବର୍ଦ୍ଧନ ମଉସା, ମୋ' ନାଁ ହେଲା ପିତାମ୍ବର । ମତେ ବି ସେ ଆମେରିକା ଦେଶରେ ଡାକନ୍ତି 'ପିଠାମ୍ ବେର୍', ଆଉ ମଙ୍ଗରାଜକୁ କହନ୍ତି 'ମେଙ୍ଗୋ ରାଜ୍' – ।" ଯାତ୍ରୀ ଆମୋଦିତ ହୋଇ ହସିଦେଲେ । ନାଉରିଆ ବି କିଛି ଠଉରେଇ ନେଇ ହସିଦେଲା ।

ପିତାମ୍ବର କହିଲେ – "ଶୁଣ ଗୋବର୍ଦ୍ଧନ, ମୁଁ ଫେରିବାକୁ ଚାହୁଁନାହିଁ । ମୁଁ ତୁମକୁ ଶୁଣିବାକୁ ଚାହୁଁଛି । ତୁମ କଥାରେ ସବୁ ଦେଖିବାକୁ ଚାହୁଁଛି ।" କୁହ, ତୁମର ସବୁ କଥା । ଏଇତ ଘଣ୍ଟାରେ ବାରଟା ବାଜି ନାହିଁ । ବହୁତ ସମୟ ଅଛି କହ । କିଏ ସେ ଯାହା କଥା କହିବାକୁ ଯାଇ ତମେ ରହିଗଲ ?"

"କ'ଣ ଆଉ କହିବି ବାବୁ । ଦେଖୁଚ ତ' ଏ ଗୋଳିପାଣିର ଅଲକ୍ଷଣା ସମୁଦ୍ର । କେହି କୁଆଡେ ନାହିଁ । ଗହଗହ ଡାକୁଥିବା ପକ୍ଷୀଟିଏ ବି ନାହିଁ । ମୋ' ଭିତରେ ବି ଏମିତି ସବୁ ବୁଡିଯାଇଛି । ଆଉ ଖୋଜି ଲାଭ କ'ଣ ? କେଜାଣି କେମିତି ପଦ୍ମପୋଖରୀ କଥା କହିଲା ବେଳକୁ ସେ କାଳ ସବୁ ମନେପଡିଗଲା ।... ପଦ୍ମ ପାଖୁଡାରେ କେବେ ଆସ୍ତେ ହାତ ମାରିଛ ନା' ବାବୁ । ଏ ସେମିତିଆ କଥା । ଭାରି ନରମ । ହେଲେ ତମେ ସମଝିଯିବ । ତମରି ବୟସର କଥା – ମୋର ନିଶଦାଢ଼ି ଉଠିବା ବେଳ କଥା !"

"କହ ମଉସା କହ ।"

"ଆମ ଗାଁଟା ହେ ସେଇ ତଳମୁଣ୍ଡରେ । ଆମେ ସବୁ ପଦ୍ମପୋଖରୀରେ ଗାଧଉ । ସେଇଠୁ ନେଇ ପାଣି ଖାଉ । ଗୋରୁଗାଈ ସୁଦ୍ଧା ସେଇ ପାଣି ପିଅନ୍ତି । ଆମେ ବି ପିଲା ବେଳେ ମୁହଁ ଲଗେଇ ଗାଈ ଭଳି ପାଣି ପିଇଛୁ । ଅମୃତ କୁଣ୍ଡରେ ମୁହଁ ବୁଡେଇଲା ପରି ଲାଗେ ।... ହଁ ସେଇ କଥା କହୁଚି ପରା । ତା' ନାଁ ଧୋବୀ... ସେ ସେମିତି ଧୋବ ଫରଫର ଗୋରା ବୋଲି ତାକୁ ସବୁ ଧୋବୀ ବୋଲି ଡାକୁଥିଲେ । ପିଲାଦିନ ଯାକ ଏକାଠି ଖେଳିଛୁ । ସେ ପଶ୍ଚିମ ହୁଡାରେ କଯାଁ ଗଛରୁ କଯାଁ ଖାଇଛୁ । ଜାମୁଡାଳକୁ ମୁଁ ଉପରେ ଚଢି ଝୁଙ୍କିଦେଲେ, ତଳେ ଟପ୍‌ଟାପ୍ କୋଳି ଝଡି ପଡୁଥିଲା । ଧୋବୀ ତା' କାନିରେ ଗୋଟେଇ ନଉଥିଲା । ଏକାଠି ବସି ଖାଉଥିଲୁ । କାନିରେ କସ ଲାଗିଯିବାରୁ ସେ ଘରେ ଗାଳି ଶୁଣୁଥିଲା । ଥରେ ମାଡ ଖାଇଥିଲା । ତା' ଆରଦିନ ଯାଏଁ ତା' ଗୋରା ପିଠିରେ ପାଞ୍ଚଆଙ୍ଗୁଳିଆ ନୋଳା ଫାଟି ରହିଥିଲା । ମୁଁ ତାକୁ ଆସ୍ତେ ଆଉଁସି ଦେଲାବେଳେ ସେ ସେମିତି ପିଠି ଦେଖେଇ ବସିଥାଏ ।"

"ମୁଁ ମାମୁ ଘରକୁ ପଳେଇଲି ବର୍ଷକ ପାଇଁ । ସେଇଠି ଗୋଟେ ଜଙ୍ଗଲ ସାଇବ ଘରେ

ପିଅନ କାମରେ ଲାଗିଗଲି । ଭାରି ଖଟଣି । ବାବୁଆଣିଟା ଭଲ ଲୋକ ନୁହେଁ । ସେ ମୋରି ହାତରେ ସବୁ କାମ କରେଇଲା । ସବୁ ନିକୁଛିଆ କାମ ବି କରେଇଲା । ମୁଁ ଦିନେ ପଳେଇ ଆସିଲି । ଆଉ ଗଲିନାହିଁ । ହାତରେ କିଛି ପଇସା ଧରି ମୁଁ ଗାଁକୁ ଫେରିଆସିଲି । ଗାଁଟା ଯେମିତି ଥିଲା ସେମିତି । ହେଲେ ଧୋବୀକୁ ଦେଖି ଚିହ୍ନିପାରିଲି ନାହିଁ । ତା'ର ଫଣଫଣ ମୁହଁ । ସାଇବାଣି ପରି ରଙ୍ଗ ଆଉ ଗଢ଼ଣ ଦେଖି ଥ' ହେଇ ଠିଆ ହୋଇଗଲି । ତା' ଆଡେ ବୋକାଙ୍କ ପରି ଅନେଇବାର ଦେଖି ଧୋବୀ ହସିଦେଲା । ତା' ଦାନ୍ତ ଓଠ ଏମିତି ସୁନ୍ଦର ବୋଲି ମୁଁ କେବେ ଜାଣିନଥିଲି ।..."

"ଆଗଭଳି ସେ ମୋ' ପାଖକୁ ଆସିଲା ନାହିଁ । ଲାଜ କଲା । ତା' ପାଇଁ ମୁଁ ସହରରୁ ହିମସାଗର ତେଲଟା ନେଇ ଯାଇଥିଲି । ଦେଇପାରିଲି ନାଇଁ । କେମିତି କେଜାଣି ହୃଦ କରିପାରିଲି ନାଇଁ ।..."

ଗୋବରା ଏଇଠି ଅଟକିଗଲା କିଛି ସମୟ । କିନ୍ତୁ ତା' ଆଖିରେ ସପ୍ନ ଟଳମଳ ହେଉଥିଲା । ସେ ଆସ୍ତେ ପୁଣି ଆରମ୍ଭ କଲା – "ସେଦିନ ସକାଳ ପହର ସୂର୍ଯ୍ୟ ଉଇଁବା ବେଳ । ମୁଁ ପଦ୍ମପୋଖରୀ ହୁଡ଼ାରେ ହୁଡ଼ାରେ ଆସିଲା ବେଳକୁ ମୋତ ପାଖରୁ ମାଇପିଙ୍କର ଗାଧୁଆ ତୁଠ ଉପରେ ଆଖି ପଡିଗଲା । ତୁଠ ପଥର ଉପରକୁ ଧୋବୀ ଓଦାସରସର ହୋଇ ଉଠିଯାଉଥିଲା । ତା' ଉପରେ ସୁନେଲି ଖରା ପଡୁଥିଲା । ତା' ଦେହରୁ ମୁଣ୍ଡରୁ ପାଣି ଝରିପଡୁଥିଲା । ପିନ୍ଧା ଲୁଗାଟା ଲାଖି ରହିଥିଲା ତା' ଦିହରେ । ସେ ସୁନାର ପିତୁଳା ପରି ଦିଶୁଥିଲା । ଦାଉ ଦାଉ କରୁଥିଲା ଅପ୍‌ସରା ପରି । ପାଣି ଝରି ପଡୁଥିଲା ପାଣି ଉପରେ, ମୋତେ ଲାଗୁଥିଲା ସୁନା ରୁପା ମୋତି ମାଣିକ୍ୟ ଅଜାଡି ହେଇ ପଡୁଥିଲା ତା' ଦେହରୁ ।"

ସେ ଆଉ ଆଗେଇ ପାରିଲା ନାହିଁ । ଆଗେଇବାର ପ୍ରୟୋଜନ ବା କ'ଣ ଥିଲା । ସବୁ ବୁଝାପଡି ଯାଉଥିଲା । ଏଇ ତ' ସେଇ ଅନନ୍ତ କାଳର ପଦ୍ମପୋଖରୀ କଥା । ସହସ୍ର ପଦ୍ମ ଏକାଠି ଫୁଟିବା, ଆଉ ଆକାଶ ସାରା ପବନ ସେଇ ମହକରେ ବୋଝେଇ ହୋଇଯିବା କଥା ।

ଗୋବରା ଦେହସାରା ଶୀତକଣ୍ଟା ମାରିଗଲା । ସେ କାହିଁକି କେଜାଣି ଟାଣେଇଗଲା । କହିଲା, "ଧୋବୀ ମୋତେ ଦେଖି ଚମକି ପଡିଲା । ଲୁଗାଟାକୁ ଏଣୁ ତେଣୁ ଟାଣି ସମ୍ଭାଳି ପାରିଲାନାହିଁ । ମୋତେ ଚହିଁ ପୁଣି ପାଣିରେ ପଶିଗଲା । ବେକ ଯାଏଁ ବୁଡି ରହିଥାଏ । ମୁହଁଟା ସଜଫୁଟା ଫୁଲ ପରି ମୋତେ ଚହିଁ ରହିଥାଏ ।... ମତେ ଏବେ ବି ଲାଗୁଚି, ଏ ଗୋଳିପାଣି ଆଡେଇ ଦେଲେ ପଦ୍ମ ପୋଖରୀରେ ସେ ମୁହଁ ସେମିତି ଫୁଟି ରହିଥିବ । ଚହିଁଥିବ, ମୁଁ କେବେ ଆସିବି ।"

ସେ ବ୍ୟସ୍ତ ହେଇ ଠିଆହେଇ ପଡିଲା । କାତ ଆଡିକି ହାତ ବଢେଇବାକୁ ଯାତ୍ରୀ ପୁଣି ତାକୁ ବାହୁଙ୍ଗା ଉପରେ ବସେଇ ଦେଲେ ।

"ତା'ପରେ କ'ଣ ହେଲା ?"

"ତେଣିକି ଆଉ କ'ଣ କହିବାର ଅଛି ବାବୁ । ଖରା ହେଲା, ବର୍ଷା ହେଲା ନାହିଁ । ଗଜା

ମଗୁଡିରେ ଫସଲ ଉଜୁଡିଗଲା । ଶୁଆ ଥଣ୍ଟରେ ଥଣ୍ଟେ ଧାନ ଫଳିଲା ନାହିଁ । ପଦ୍ମ ପୋଖରୀରୁ ହୁତାକାଟି ପାଣି ନିଗାଡି ନେଲେ । ମହାଜନର ଖେତରେ ଧାନ ଫଳିଲା । ତାକୁ ଭୋକିଲା ଲୋକେ କାଟି ନେଇଗଲେ । ସେ ପୁଲିସ୍ ଲଗେଇ ବନ୍ଧେଇ ଦେଲା । ସମସ୍ତେ ଘୋସରା ହେଇଗଲେ ଫାଣ୍ଡିକୁ । ମାଡ ଖାଇଲେ । ଧୋବୀର ବାପ ଭାଇକୁ ଜିହଲ ହେଇଗଲା... ଗୋଟେ କିଏ କୋଉ ଗାଁର ଆସି ଧୋବୀକୁ ତା' ମା' ପାଖରୁ କିଣି ନେଇଗଲା । ତା' ମା' କରଜ ଶୁଝିଲା ମହାଜନଙ୍କୁ । ଗାଁ ଛାଡି ଗ୍ଳଲିଗଲା ।"

"ଗାଁ ଛାଡି ସମସ୍ତେ ଗ୍ଳଲିଗଲେ । ମୋ' ଜୀବନ ବି କେରା କେରା ହେଇଗଲା । ବାଉଳା ହେଇଗଲି । ରେକ୍ସା ଟାଣିଲି । ବିନା ଦୋଷରେ ଦଣ୍ଡ ଭୋଗିଲି । ମିଛୁଆ ଖଚୁଆ ଲାମ୍ପୁଆ ମଦୁଆ, ଲଫଙ୍ଗାଙ୍କ ହାବୁଡରେ ପଡି ମୋ' ଅନ୍ତପିଉ ଦୁହିଁ ହେଇଗଲା । ମୁଁ ବି ଅସନା ମସନାରେ ପଶିଲି । ରୋଗବାଗ ହୋଇଗଲା । ମଲି ନାହିଁ । ସଂସାରରେ ଭଲ ଲୋକ ବି କାଁ ଭାଁ ଅଛନ୍ତି ବାବୁ । ଜଣେ ସେଥିରୁ ମୋତେ ଆଶ୍ରା ଦେଇ ରଖିଲେ । ମୁଁ ତାଙ୍କ ପାଇଁ ପ୍ରାଣ ଦେଇଥା'ନ୍ତି । ହେଲେ ତାଙ୍କ ଘରେ ଯମ ପଶିଗଲା । ତାଙ୍କ ଘରେ ବାସନ ମଜାଳି ମାଇକିନା ହାତରେ ବିଷ ଖୁଆଇ ବାପ, ମା' ଓ ଝିଅ ତିନିଜଣଙ୍କୁ ସେମାନେ ମରେଇ ଦେଲେ । ଏ ବାବୁ ଆଉ ଦିନଟେ ବଞ୍ଚିଥିଲେ ସେମାନେ ସବୁ ଧରା ପଡିଥା'ନ୍ତେ । ବାସନ ମଜାଳି ମାଇକିନା ଉଭାନ ହେଇଗଲା । ମତେ ଭିଡିନେଇ ସେମାନେ ବାଡିଆପିଟା କଲେ । ପକେଇ ରଖିଲେ ଭୋକ ଓପାସରେ, କ'ଣ ସବୁ କହି ମତେ ପାଞ୍ଚବର୍ଷ ଜେଲ୍ ଦେଇଦେଲେ । ସେ ଯମଦଣ୍ଡ କଥା କ'ଣ କହିବି । ମୁଁ ମନ୍ତ୍ରୀଙ୍କ ଉଆସରେ ମାଳୀ କାମ କରିଚି, ଅଫିସରଙ୍କ ଘରେ ବୋଲକରା କାମ କରିଚି । ଅଫିସ୍‌ରେ ଝାଡୁ ମାରିଚି । ଫେକ୍ଟରୀରେ ବୋଝ ବୋହିଚି । ମୁଁ ଜାଣେ ଏଠି ସବୁ କ'ଣ ହୁଏ । ମନ୍ଦିରରେ ରାତିଅଧରେ ଅଫିମଗୁଣ୍ଡ ବିକ୍ରିହୁଏ । ବୃକ୍ଷ ପାଖରେ ମାଇକିନା ମର୍ଦ୍ଦ ରାତି କାଟନ୍ତି । ଦିନକୁ ଦିନ ସମସ୍ତେ ଚୋର ହେଇଗଲେଣି । କିଏ ସାନଚୋର ତ' କିଏ ବଡ ଚୋର ।..."

"ବାରବର୍ଷ ପରେ ଫେରିଲି । ମୋ' ଗାଁକୁ ଖୋଜି ପାଇଲି ନାହିଁ । କ'ଣ ଫେକ୍ଟରି ହବ ବୋଲି ଏ ଖଣ୍ଡ ମଣ୍ଡଳ ସବୁ ଜମି କମ୍ପାନୀ କିଣି ନେଇଚି । ସବୁ ଅପନ୍ତରା ଭୂଇଁ ବୁଲିଲି । କାହାକୁ କୋଉଠି ଦେଖିଲି ନାହିଁ । ଏ କଯାଁ ଗଛ ଧାଡିକ ଆଉ ଜାମୁଗଛ ଦଶଟାରୁ ତିନିଟା କେମିତି କେଜାଣି ବଞ୍ଚି ଯାଇଛନ୍ତି । ମୁଁ ସେ କଯାଁ ଗଛକୁ ଆଉଜି ବସିଲି । ଗ୍ଳହିଁଲି ଆଗକୁ, ଯୋଉଠି ପଦ୍ମପୋଖରୀ ବିରାଜୁଥିଲା । ବେକାଏ କାଦୁଆ ମସିଆ ପାଣି ଏଠି ସେଠି । ମଝିରେ ସବୁ ଅନାବନା ଗଛ କେଡେ ଅଲକ୍ଷଣା ଅସୁନ୍ଦର ଦିଶୁଥିଲା ମୋର ସୁନ୍ଦର ପବିତ୍ର ପିଲାବେଳ, ମୋ' ଗାଁ, ମୋ' ଦେଶ !"

"ମୋ ଭିତରୁ କୋହ ଉଠିଲା । ବାପା, ବୋଉ, ଭାଇ ସବୁ ମନେପଡିଲେ । ଧୋବୀ ଝଲମଲ ହେଇ ଦିଶିଲା । ମୁଁ ମୁହଁ ଘୋଡେଇ ବହେ କାନ୍ଦିଲି । ସେଇଠୁ ଗଲି ବଡ ରାସ୍ତା ଉପରେ ଛକ ମୁଣ୍ଡରେ ସେ ନୂଆ ଦୋକାନକୁ । ସେ ଏଇ ଅଞ୍ଚଳର ଟୋକା । ସାହାସ ବାନ୍ଧିଚି ଆଗକୁ । ଏଇଠି

ପୁଣି ଗାଁଗଣ୍ଡା ହବ । ପ୍ରଳୟରୁ ଯେ ସବୁ ଉବୁରି ଆସିଛନ୍ତି, ସେ ସେମାନଙ୍କୁ ଏକାଠି କରୁଚି । ମତେ ଏ ନାଆ ଖଣ୍ଡ ଦେଇ ତମ ଭଳି ବଡବଡିଆଙ୍କ ସେବାରେ ଲଗେଇଚି । ମତେ ସେ ମୂଲ ଦିଏ । ତମେ ତାକୁ କ'ଣ ଦିଅ ମୁଁ ଜାଣେନାହିଁ । ମୁଁ ତା' ପାଖରେ ରହିଗଲିଣି । ଗୋଟେ ବତାସି ଆଉ ଗୋଟେ ବଢି ପାରି ହେଲିଣି । ଯାଇ ନାହିଁ । ସେ ବି ମତେ ଛାଡୁନାହିଁ । କାହିଁକି ଜାଣିଚ ?"

"ରାତି ଦଶଟା ହେଇଗଲେ ଦୋକାନପତ୍ର ବନ୍ଦ ହେଇଯାଏ । ସବୁ ଶୂନ୍‌ଶାନ ହେଇଯାଏ । ସେ ମତେ ପାଖରେ ବସେଇ ରଖେ । ମଝିରେ ମଝିରେ ଗୋଟିଏ କଥା ପଡେ । ସେ ବି ସେଇ ପଦ୍ମପୋଖରୀକୁ ଝୁରୁଛି । ସେ ବି ଏ ଗୋଳିଆପାଣିର ସମୁଦ୍ର ଦେଖି ଥକିଯାଇଚି । ହେଲେ ସେ ମୋଠୁ ଢେର୍ ବେଶି ଜାଣେ ।"

"ସେ କହୁଥିଲା କୁଆଡେ ଉପରମୁଣ୍ଡରୁ ଗୋଳିପାଣି ବନ୍ଧ ଯାଏଁ ବ୍ୟାପି ଯାଇଛି । କହୁଥିଲା ଦିଲ୍ଲୀରୁ ଭୁବନେଶ୍ୱର ସବୁ ଅସନା ଗୋଳିପାଣିର ଭଣ୍ଡାର । ସେଇଠୁ ଉଛୁଳି ଏ ସାରା ଦେଶ ଗୋଳିପାଣିରେ ବୁଡିଗଲାଣି । କହୁଥିଲା, ଆକାଶରୁ କେବେ ଗୋଳିପାଣି ବର୍ଷେ ନାହିଁ । ହେଲେ ସବୁ ନିର୍ମଳ ପାଣି ଏଇଠି ପଡି କାଦୁଆ ହେଇଯାଏ । ଆଇଁଷିଆ ପୋଚ଼ ଗନ୍ଧାଏ । 'ତା' କଥା ମୁଁ ଜମା ବୁଝିପାରେନାହିଁ । ତମେ ଅବା ବୁଝୁଥିବ । କହୁଥିଲା – ଏ ପାଣିରେ କୁଆଡେ ଖାଲି କଙ୍କଡା ପଲପଲ ହଉଛନ୍ତି । ତାଙ୍କୁ ଭାରି ସୁହାଉଚି ଗୋଳିପାଣି । ସେମାନେ ଛପି ରହିଥା'ନ୍ତି । ଦିଶନ୍ତି ନାହିଁ, ବେଳ ପଡିଲେ ଜାବି ଦିଅନ୍ତି ତାଙ୍କର ସେ ବୁଢା ଗୋଡରେ । କହୁଥିଲା, ତାଙ୍କୁ ଅନାୟାସରେ ଗେ଼ବେଇ ଯିବାକୁ ପଲେ କୁମ୍ଭୀର ପଶି ଆସନ୍ତେ କି ? ସଫା କରିଦିଅନ୍ତେ କଙ୍କଡାଙ୍କୁ । କିନ୍ତୁ କୁମ୍ଭୀରକୁ କିଏ ପୁଣି ନିପାତ କରିବ ?..."

"ଏମିତି ଖୁବ୍ କଥା ସେ କହେ । ହେଲେ ସବୁ କଥା ମୂଳରେ ସେଇ ପଦ୍ମପୋଖରୀ । ତମେ ବାବୁ କଥା ହେଲେ ତାକୁ ବୁଝିବ, ଆଉ ବୁଝେଇବ ।"

"ଶୁଣ ଗୋବର୍ଦ୍ଧନ ମଉସା ! ତୁମର ସେ ଦୋକାନୀଟି ଭାରି ବଢିଆ ଲୋକ, ମୁଁ ତା' ସାଙ୍ଗରେ କଥା ହେଇଚି । ଏସବୁ ଶୁଣିଚି । ବୁଝିଛି । ସେଇ ମୋତେ ତୁମ ସାଙ୍ଗରେ ଏଠିକି ପଠେଇଚି । ସେ ପଦ୍ମପୋଖରୀକୁ ଠାବ କରିବା ପାଇଁ । ତମକୁ ଶୁଣିବା ପାଇଁ, ଜାଣିବା ପାଇଁ ।"

"ତମେ ଜାଣିଚ ! ମୁଁ ଏ ପଦ୍ମପୋଖରୀ କଥା ଆମେରିକା ଦେଶରେ ଶୁଣିଚି । ମୋ' ବାପା ଏବେବି ସେଇ ପଦ୍ମପୋଖରୀକୁ ଝୁରି ହେଉଛନ୍ତି ତୁମପରି, ସେ ଦୋକାନୀ ପରି । ମୋ' ବାପା ଏ ଅଞ୍ଚଳରୁ ତିରିଶ ବର୍ଷ ତଳେ ସେ ରାଜ୍ୟକୁ ପଳେଇଲେ । ସେ ସେଇଠି ଏଇନା ବଡଲୋକ । ଯାହା ଚ଼ହିଁବେ କରିପାରିବେ । ମୋତେ ପଠେଇଛନ୍ତି ଦେଖିଯିବା ପାଇଁ । ମୁଁ ଇଞ୍ଜିନିୟର । ମୁଁ ସେଇଠି ବିଜ୍ଞାନ ପଢି ଢେର୍ କଥା ଶିଖିଛି । ମୁଁ ଆସିଛି ତୁମକୁ ତମ ପଦ୍ମପୋଖରୀ ପୁଣି ଫେରେଇ ଦେବାକୁ । ଏ ସାରା ପ୍ରତାପ ସାଗର କିଣା ହବ, ଯେ ବି ନେଇଥାଉ, ଗେ଼ର ନେଇଥିଲେ ବି ଗେ଼ରକୁ ଖରିଦ କରାହବ । ତା'ର ହୁଡାର ଘାଇ ପୋତା ହବ, ସୀମା ସରହଦ ବନ୍ଧା ହେବ । ଏମିତି କର୍ଯ୍ୟା ଗଛ, ଜାମୁଗଛ ଲାଗିବ । ତା' ଚେ଼ର ପାଣିକୁ ନିର୍ମଳ କରେ । ଏ ପାଣି ଘୁଞ୍ଚିଗଲେ କାମ ଆରମ୍ଭ ହେବ ।"

"ବଢ଼ିଆଣି ସିନା ଘୁଞ୍ଚିଯିବ, ବାବୁ, ଏ ଗୋଳିପାଣି ଯିବ କୁଆଡେ ? ତମେ ଏ ଗୋଳି ପାଣିକୁ ବନ୍ଧ ପକେଇ ଦେଲେ କ'ଣ ପଦ୍ମ ପୋଖରୀ ହୋଇଯିବ ? ପଦ୍ମ ପୋଖରୀ ପାଣି କାଚକେନ୍ଦୁ ପରି ନିର୍ମଳ । ତା' ସ୍ୱାଦ, ତା' ବାସ୍ନା ନିଆରା । ତାକୁ କେମିତି ଆଣିବ ?"

"ଦେଖ ମଉସା, ଉପରେ ମେଘ, ଭିତରେ ନିର୍ମଳ ପାଣି । ଭୂଇଁ ଗର୍ଭରେ ନିର୍ମଳ ପାଣି । ଏଇ ମଝିରେ ଖାଲି ଗୋଳି ପାଣିର ଉପଦ୍ରବ । ଆଗ ଘାଇ କାଟି ଏ ପାଣିଯାକ ନିଗାଡି ଦେବାକୁ ହବ । ତା' ଉତ୍ତାରୁ ଭୂଇଁ କାଟି ପାତାଳ ଗଙ୍ଗାକୁ ଆଣିବାକୁ ହବ ଉପରକୁ । ସାରା ପ୍ରତାପ ସାଗରକୁ ଖୋଳି ଝର ଫିଟେଇବାକୁ ପଡିବ । ସେଥିରେ ମିଶିବ ଆକାଶ ଗଙ୍ଗା । ନିର୍ମଳ ଜଳ ଭଣ୍ଡାରରେ ତଳେ ମାଟି କାମୁଡି ରହିବ ଶୈବାଳର ଅରଣ୍ୟ । ସେଥିରେ ଗୋଳି ପାଣିର ସବୁ ଗୋଳିଆ ଛାଣି ହୋଇଯିବ । ଗୋଳିପାଣିରେ ଉପଦ୍ରବ କରୁଥିବା ଜଙ୍କତାମାନେ ସେଇ ଅରଣ୍ୟର ଆଶ୍ରୟରେ ଲୁଚିଯିବେ । ସେମାନଙ୍କ ଚେହେରା ବଦଳିଯିବ । ସେମାନେ କାଦୁଆ ଧୂସୁରିଆ ନ ହୋଇ ନେଳିଆ ସାଗୁଆ ଦେଖାଯିବେ । ତାଙ୍କ ଚରିତ୍ର ବି ବଦଳିଯିବ । ତା'ପରେ ଆସିବେ ପଦ୍ମବୀଜମାନେ, ସୂର୍ଯ୍ୟାଲୋକରେ ପାଳିତ, ଧରିତ୍ରୀରେ ଲାଳିତ, ପଙ୍କରେ ସୁରଭିତ ଅଦ୍ଭୁତ ବାଳୁତମାନେ । ସେମାନେ ଅଧିକାର କରିବେ ପ୍ରତାପ ସାଗରକୁ । ଭେଦି ଆସିବ କାଦୁଅ ଓ ପାଣିର ଆସ୍ତରଣ । ପଦ୍ମପତ୍ର ପାଣିରେ ଢଳଢଳ ହେବେ, ଓଦା ହେବେ ନାହିଁ । ପଦ୍ମ ଫୁଟିବେ ସହସ୍ର ସହସ୍ର । ପଦ୍ମପୋଖରୀର ସଂସ୍ଥାପନ ହେବ । କାଚ କେନ୍ଦୁପରି ପାଣି ପଦ୍ମଗନ୍ଧରେ ମହକୁଥିବ ।" –

ଉଭୟ ନାଉରିଆ ଆଉ ଯାତ୍ରୀ, ଅତୀତ ଓ ଭବିଷ୍ୟତ ପରି ସାମ୍ନାସାମ୍ନି ସ୍ତବ୍ଧ ହୋଇ ବସି ରହିଛନ୍ତି । ନାଆ ସ୍ଥିର । ପବନ ସ୍ଥିର । ଚତୁର୍ଦ୍ଦିଗରେ ଗୋଳିପାଣିର ସମୁଦ୍ର ସ୍ଥିର । ଆଖୁଜାଏ ସପ୍ନରେ କେବଳ ଢଳଢଳ ପଦ୍ମପୋଖରୀ । ମୋଟେ ହଲନ୍ତୁ ନାହିଁ କି ନିଶ୍ୱାସ ମାରନ୍ତୁ ନାହିଁ । ସପ୍ନ ଚହଲିଯିବ । ବରଂ ଗୋଳି ପାଣିରେ ବେକ ଯାଏଁ ବୁଡି ରହି ପ୍ରାର୍ଥନା କରନ୍ତୁ । ଏ ସପ୍ନ ସାର୍ଥକ ହେଉ ।



# ଅବ୍ୟବହିତ

'ହଁ, ମୁଁ ଦେଖିଛି !'

– ଆରେ, ଯାଉନ୍ତୁ, ଏଇଟା କ'ଣ ଦେଖିଥିବ ? କେବେ ? କୋଉଠି ? ୟା'ର କ'ଣ ଠିକଣା ? ସେ କ'ଣ ଦେଖିଛି କେଜାଣି ! ଆମର କୋଉ କଥାକୁ ତା'ର କୋଉ କଥା ! ସେ ଆଗ ବଖାଣିସାରୁ । ତା' ଉତ୍ତାରୁ ତା' କଥା ବୁଝିବ ।

– ନାଇଁ ହେ ! ମତେ ଲାଗୁଚି, ଆମେ ଯାହା ଶୁଣୁଛୁ, ସେସବୁ ସେ ଦେଖିଛି । ତା' ଆଖିକୁ ଅନେଇଲ ! ଏମିତି ଆଖି ଆଉ କାହାର ଦେଖିଛ ! ଆଉ କାହା ମୁହଁରେ ଏମିତି ତେଜ ଦେଖିଛ ? ଆମ ସମସ୍ତଙ୍କଠୁ ସେ ସବୁମନ୍ତେ ବଡ ଜଣାପଡୁନାହିଁ ? – ଆମଠୁ ସେ ଢେର୍ ଅଧିକ ଦେଖିଛି, ଢେର୍ ଅଧିକ ଜାଣିଛି । ସେ ଯଦି କହୁଛି ଦେଖିଛି ବୋଲି ସେ ନିଶ୍ଚୟ ଦେଖିଛି ।

– ଏମିତି କ'ଣ ହଉଚ ସବୁ ? – ଦେଖିଚି, ଦେଖି ନାଇ; ଜାଣିଚି ଜାଣିନାଇଁ ! ତାକୁ ସିଧା ପଚାରୁନ – ସେ ନିଜେ କହୁ କ'ଣ ଦେଖିଛି । ଏଠି ତା' ବାରପ୍ରକାର କଥା, ଅନ୍ଧାରରେ ଯାହା ଆଲୁଅରେ ତାହା ନାହିଁ । ଆଗରେ ଯାହା ପଛରେ ତାହା ନାହିଁ । ପେଟରେ ଗୋଟେ କଥା ତ' ପାଟିରେ ଆଉଗୋଟେ କଥା । ଆମର ଏଠି ତ' ଥଳକୂଳ ନାହିଁ । କେହି ୟା'କୁ କଳିପାରିବେ ନାହିଁ । ଏ କ'ଣ ଫାଳେ ସୋରେ ଦେଖିଥିବ, ଅନ୍ଧାରରେ କି ଆଲୁଅରେ ତାକୁ କ'ଣ ଦୃଶ୍ୟ ହୋଇଥିବ, ସେ ଆଗ କହୁ । ସେ ଦେଖିଛି କହିଲେ କ'ଣ, ସବୁ ଦେଖିଛି ? ଏମୁଣ୍ଡରୁ ସେମୁଣ୍ଡ ଯାଏ ଏ ସମୁଦ୍ର, ପାଣି, କାଦୁଅ, ପବନ, ଆଲୁଅ, ଆକାଶ ସବୁ ? ପଚାର, ପଚାର ତାକୁ ସେ କ'ଣ ରାତିରେ ଏଠି ଥିଲା ? ଯାହାସବୁ ହେଲା, ଯାହା ରାତିମାନଙ୍କରେ ହୁଏ, ସେ କ'ଣ ଦେଖିଛି ? କୋଉଠି ଥାଇ ଦେଖିଛି ? ନିବୁଜ କବାଟ ପଛରେ ସେ ଲୁଚିଥିଲା ନା ବ୍ୟାପିଥିଲା ? ଏମିତି ସହସ୍ରେ କବାଟ, ସହସ୍ରେ ରାତି, ସହସ୍ରେ କଥା ? ସେ କୋଉ କଥା ଦେଖିଛି !

– ହଇ, ହଇ, ପଚାର ତାକୁ ସେ କ'ଣ ଦେଖିଛି, କେମିତି ଦେଖିଛି; କାହିଁକି ଦେଖିଛି, ସେ ଏସବୁ ଦେଖିବାକୁ କିଏ ? – ମୁହଁ ସଂଜବେଳେ ସେମାନେ ଘନ ସାମଲକୁ ଗାଡିରେ ଠେଲି

ବସେଇଲା ବେଳେ ତା' ପାଟି ଉପରେ ହାତ ମଡେଇ ରଖିଥିଲେ, ତୁଣ୍ଡିବନ୍ଧା ଛେଳିଟିଏ ପରି ସେ ଛାଟିପିଟି ହଉଥିଲା । ଆଖି ପିଛୁଳାକେ ତାକୁ ସେମାନେ ନେଇ ଅନ୍ଧାରରେ ଅନ୍ତର୍ଦ୍ଧାନ ହେଇଗଲେ । ଅଙ୍କାବଙ୍କା ଖାଲଢିପ ରାସ୍ତା ସେ ବାରିପାରୁଥିଲା । ଆଖି ଉପରେ ପଟି ଭିଡା ହୋଇଥିବାରୁ ସେ ଦେଖିପାରୁ ନଥିଲା । ସେ କିନ୍ତୁ ଜାଣିପାରୁଥିବା ଯେ ସେବାଟେ ଗାଡି ମଟର ଯିବା ଆସିବା କରୁ ନଥିଲା । – ଆଗରୁ ବା ପଛରୁ । ତାକୁ ସେମାନେ ସେଇଭଳି ନେଇଗଲେ ଗୋଟେ ଘର ଭିତରକୁ । ଚୌକିରେ ବସେଇ ପଛରୁ ହାତ ବାନ୍ଧି ପକେଇଲେ । ଆଖିରୁ ପଟି କାଢିନେଲେ । ସେ ଦେଖିଲା ଗୋଟାଏ ଗ୍ୟାସ୍ ଲାଇଟ ଆଲୁଅରେ ସେମାନେ ଠିଆ ହୋଇଥିଲେ । ସମସ୍ତଙ୍କ ମୁହଁ ଉପରେ କଳାଘୋଡଣି । ଜଣେ କହିଲା, 'ଘନ ସାମଲ ! ତମେ କୋଉଠିକି ଆସିଛି ଜାଣିବାକୁ ଚେଷ୍ଟା କରିବ ନାହିଁ । ଆମେ ତୁମକୁ ମୁଣ୍ଡ ଜାମିନ୍ ପାଇଁ ଆଣିନାହୁଁ । ମାରିବାକୁ ବି ଆଣିନାହୁଁ । ଆମେ ତମକୁ ଗୋଟାଏ ସୁଯୋଗ ଦବାକୁ ଆଣିଛୁ । ତମ ଠିକାଦାର ମାଲିକ ଆସନ୍ତା ୧୩ ତାରିଖରେ ମାନେ ପଅରଦିନ ମରିବ । ଆମେ ତାକୁ ମାରିବୁ । ତାକୁ ନୋଟିସ ଦିଆ ସରିଲାଣି । ଆମେ ଚାହୁଁଛୁ ତମେ ତାକୁ ଗୁଳି କରିବ । ତମକୁ ଆମେ ଗୁଳି ମାରିବା ଶିଖେଇ ଦବୁ । ତମ ତାକୁ ମାରିବା ବେଳେ ତମ ମୁହଁରେ ମୁଖା ନଥିବ । ସେ ତମକୁ ଚିହ୍ନିବ । ଆମେ ସେଇଆ ଚାହୁଁ । ମରିବା ପୂର୍ବରୁ ସେ ବୁଝିଯାଉ କ'ଣ ଦୋଷକରି ସେ ମୃତ୍ୟୁଦଣ୍ଡ ପାଇଲା । ମଲା ପୂର୍ବରୁ ସେ ଯାହା କହିବ, ତମ ନାଁ ଉହ୍ୟ ରଖି ଆମେ ଟେପ୍ କରିବୁ । – ଅନ୍ୟ ମୁଦାଲାଙ୍କୁ ଶୁଣେଇବା ପାଇଁ । – ଆମେ ତମ ଉପରେ ନିଘା ରଖିଥିଲୁ, ଏଣିକି ବି ରଖିବୁ । ତମେ ଶସ୍ତା କେବିନ୍‌ରେ ଚା ପିଇଲା ବେଳେ ତମ ସାଙ୍ଗରେ ସେଇଠି କାମକଲା ଲୋକକୁ ବୁଝଉଥିଲ ଯେ ଟିଙ୍କ ପରି ଯେଉଁମାନେ ଅନ୍ୟର ରକ୍ତ ପିଇ ଚିକ୍କଣ ହେଉଛନ୍ତି ସେମାନଙ୍କୁ ଟଣ୍ଟିଚିପି ମାରିଦେଲେ ପାପ ହେବନାହିଁ । ତୁମ ଆଖିରେ ନିଆଁ ଥିଲା । କଥାରେ ଖୁବ୍ ଜାନ୍ ଥିଲା । ଆମ ତାଲିକାରେ ତୁମ ମାଲିକଙ୍କ ସ୍ଥାନ ୧୩ ନମ୍ବର । ତାଙ୍କୁ ଆମେ ଚିହ୍ନଟ କରିସାରିଛୁ । ଏବେ ଚିନ୍ତା କଲୁ ଯେ ତାଙ୍କୁ ଆମେ ନ ମାରି ତୁମେ ମାରିବ । ଉଭୟଙ୍କୁ ନ୍ୟାୟ ଦେବାକୁ ଆମେ ଚାହୁଁ । ତମର ଡରିବାର କିଛି ନାହିଁ । ଖାଲି ଜୀଅନ୍ତା ମଣିଷଟାକୁ, ଯାହା ଆଖିକୁ ତମେ ଚାହିଁପାରୁ ନଥିଲ, ଯାହା ପାଖରେ ସଳଖି ହେବାକୁ ତମର ହିମ୍ମତ ନଥିଲା, ଯେ ତୁମକୁ, ତୁମ ରକ୍ତକୁ ଟିଙ୍କ ପରି ଶୋଷୁଥିଲା, ତାକୁ ଗୁଳି କରି ମାରିଦେବାକୁ ହାତ ଯିବନାହିଁ । ସେ ତୁମକୁ ଦେଖିବ, ଚିହ୍ନିବ, କିନ୍ତୁ କଥା କହିପାରିବ ନାହିଁ । ତା' ଆଖିରେ ଭୟ, ଅନୁନୟ, କାତର ପ୍ରାର୍ଥନା ତମକୁ ଦିଶିପାରେ । ତା' କପାଳରୁ ଝାଳ ନିଗିଡି ପଡୁଥିବ । ବନ୍ଧା ହାତଗୋଡ ଛଟପଟ ହେଉଥିବ । ଏସବୁ ତୁମକୁ ଦିଶିବ । ବୁକୁ ଧଡଧଡ ହେବ । ଦେହ ଥରିବ । କିନ୍ତୁ ଦୁଇଟା କଥା ମନେରଖ । ଯଦି ଇସାରା ଉପରେ ତୁମେ ଗୁଳି ନମାର, ଗୋଟିଏ ସେକେଣ୍ଡ ପରେ ଆଉ ଗୋଟାଏ ଗୁଳିରେ ତମ ମୁଣ୍ଡ ଛଟୁ ହୋଇଯିବ । ଦୁଇ ନମ୍ବର ହେଲା ତମେ ନିଜ ପାଇଁ ତାକୁ ମାରୁନାହଁ । ଅନ୍ୟମାନଙ୍କୁ ତା' କବଳରୁ ମୁକ୍ତ କରିବା ପାଇଁ, ମଣିଷକୁ ମଣିଷ ଭଳି ବଞ୍ଚିବାର ଅଧିକାର ଦେବାପାଇଁ ମାରୁଛ । ବିଚାର ଆମର । ନିଷ୍ପତ୍ତି ଆମର । ଦାୟିତ୍ୱ ଆମର । ଇସାରା ଆମର ।

ତମେ କେବଳ ଆଦେଶ ପାଳନ କରୁଛ ।

ସେ ଘଣ୍ଟା ଦେଖି କହିଲା, 'ବାଆସ୍ ଆଉ କିଛି କରିବାର ନାହିଁ କି ଶୁଣିବାର ନାହିଁ । ତମେ ଏ ଦୁଇଦିନ ଆମର ଅତିଥି ।'

ସେ ଇସାରା କରିବାରୁ ଘନ ସାମଲଙ୍କୁ ଆଉ ଗୋଟାଏ ବଖରାକୁ ସେମାନେ ନେଇଗଲେ । କବାଟ ବାହାରୁ ବନ୍ଦ ହୋଇଗଲା । ଦୁଇଦିନ କାଳ ଘନ ସାମଲ ନିଜେ ମୃତ୍ୟୁଦଣ୍ଡ ଭୋଗିଲା । ନିଜେ ନିଜକୁ ହତ୍ୟା କଲା ଶହେଥର । ଦିନରେ ଅନ୍ଧାର ବଖରାରେ ବନ୍ଦୀ । ରାତିରେ ନିଃଶବ୍ଦ ଗୁଳିରେ ହତ୍ୟା । ସେ ଶୋଇ ପାରିଲା ନାହିଁ କି ଖାଇପାରିଲା ନାହିଁ । ତାକୁ ଥଇ ଟେକିଲା । ମୁଣ୍ଡ ବୁଲେଇଲା । ଜର ହେଲା । କିନ୍ତୁ ଆଖିରୁ ନିଆଁଝୁଲ ଖସୁଥିଲା ବେଳେ, ମୁଣ୍ଡରୁ ଝାଳ ନିଗିଡି ଗଲାବେଳେ, କ'ଣ ଟାଏ, ସେଇଟା ମାଲିକ, କି ଠିକାଦାର, ବାଘ, କି ଠେକୁଆ, ଛାଇଟାଏ, ସପ୍ନଟାଏ, କି ମଣିଷଟାଏ ଦିଶୁଛି ଦିଶୁନାହିଁ, ଟଳମଳ ହଉଚି – ଏମିତି ବିଭ୍ରମ ହେଲାବେଳେ ତା' ପିଠିରେ ଆଙ୍ଗୁଠି ଗେଞ୍ଜି କିଏ ଠେଲିଦେଲା । ସେ ଘୋଡା ଟିପି ଦେଲା । ନିଜେ ଗୁଳି ଖାଇଲା ପରି ଅଚେତ ଟଳିପଡିଲା । ଘନ ସାମଲ ମଣିଷମାରୁ ହେଇଗଲା । ସିଏ ଯେ କହୁଛି ବୋଲି ତାକୁ ପଚାର ସେ କ'ଣ ଦେଖିଛି ।

– ତମେ ଆଗ କହ, ଏ ଯେଉଁ ସିନେମା ଆମକୁ ଦେଖେଇଲ ତମେ ନିଜେ ଦେଖିଛ, ନା ମନରୁ ଫାନ୍ଦି ଗଳ୍ପ କହିଗଲ ? ଯଦି ତମେ ଦେଖିଲ, ଏତେ କଥା ଦେଖିଲ କେମିତି ? କୋଉଠି ଥାଇ ଦେଖିଲ ? ତମେ ଏସବୁ ଜାଣିଲ କେମିତି ? – ଜାଣିବାକୁ ତମେ କିଏ ?

– 'ମୁଁ ଘନ ସାମଲ !'

ସବୁ ସ୍ତବ୍ଧ ହୋଇଗଲା କିଛି କାଳ ପାଇଁ । କ୍ରମଶଃ ମର୍ମରିତ ହେଲା ଆଉ ଗୋଟିଏ ସ୍ୱର ।

– ଖବରକାଗଜର ସାମ୍ନା ପୃଷ୍ଠାରେ ଚିତ୍ର ବିବରଣୀ ପଢି ରବୀନ୍ଦ୍ର ରୋହେଲା ହାଉଳି ଖାଇଗଲା । ରୋହେଲା କୋଠାରେ ନିଆଁ ଲାଗିଗଲା ପରି ରଡି ବୋବାଳି ଶୁଭିଲା । ତା'ରି ଭିତରେ ପୁଲିସ୍ ଗାଡି ଆସି ପହଞ୍ଚିଗଲା । କଡା ପହରା ସତ୍ତ୍ୱେ କେମିତି କିଶୋର ରୋହେଲାକୁ ସେଇ ୧୩ ତାରିଖରେ କିଏ କେଉଁଠୁ ଗାଏବ କରିନେଲେ କେହି ଜାଣି ପାରିଲେ ନାହିଁ । ସେ ପୁଲିସ୍‌ରେ ଏତଲା କରିଥିଲେ, କେମିତି କେହି ଜଣେ ଫୋନ୍‌ରେ କହିଥିଲା ଯେ ୧୩ ତାରିଖରେ ତାଙ୍କର ମୃତ୍ୟୁ ସୁନିଶ୍ଚିତ । ଇନ୍ସପେକ୍ଟର ଗୋଛେଇତ ତାଙ୍କ ଲୋକଙ୍କୁ ଜଗେଇ ରଖିଲେ । କିଛି କରିପାରିଲେ ନାହିଁ । ରୋହେଲାଙ୍କ ନିଜ ଗାଡିରେ ତାଙ୍କ ଶବକୁ ଆବିଷ୍କାର କରାଗଲା । ତାଙ୍କୁ ସାମ୍ନାରୁ ଖୁବ୍ ନିକଟରୁ ଗୁଳି କରା ହୋଇଥିଲା । ଶବ ପୋଷ୍ଟମର୍ଟମ୍‌କୁ ପଠଗଲା । ରିପୋର୍ଟ ଆସିଲା । ପୁଲିସ୍ କେଶ୍ । ରବୀନ୍ଦ୍ର ରୋହେଲାକୁ ଶବ ସତ୍କାର ପାଇଁ ଅନୁମତି ଦିଆଗଲା ଦାମ୍ ଉପରେ । ଶବ ଉଠିଲା ବେଳକୁ ବାଟ ଜଗିଲା ପରି ଦୁଇଜଣ ଠିଆ ହୋଇଗଲେ । କେହି ଜଣେ ରବିନ୍ଦ୍ର କାନରେ କହିଲା ଯେ ସେମାନେ ମଡଘର ଲୋକ, ବକ୍‌ସିସ୍ ଚାହୁଁଛନ୍ତି । ସେମିତି ମଶାଣି ଜଗୁଆଳି, ହାଣ୍ଡିପିଟା ବାହୁଣ, ରଇକାଠ ବିକାଳି, ମଡା ପୋଡାଳି, ସବୁ ମୋଟା ରକମ ଚାହିଁଛନ୍ତି । ପଇସାବାଲା ମଡ

ପାଗି ହେବାକୁ ସବୁ ଛକରେ ପଇସା ।... ରବୀନ୍ଦ୍ର ଲଣ୍ଡା ହୋଇଗଲା ସବୁମନ୍ତେ । ଗଛିଲା ଇନ୍‌ସ୍ୟୁରେନ୍ସ ପଇସା ଉଠାଇବାକୁ । ଡାକ୍ତର ମୃତ୍ୟୁ ସାର୍ଟିଫିକେଟ୍ ଦେଲାନାହିଁ । ଅଡି ବସିଲା ପଇସାର ଭାଗେ ନ ପାଇଲେ ଛାଡିବ ନାହିଁ । ଇନ୍‌ସ୍ୟୁରାନ୍ସ ବାଲାଏ ବକ୍ସିସ୍ ନାଁରେ ସବୁ ମୋଡ ଘାଟରେ ରବୀନ୍ଦ୍ରକୁ ଲଣ୍ଡା କରିଗଲେ । ପାଖ ଲୋକ, ଦୂରଲୋକ, ଚିହ୍ନା ଅଚିହ୍ନା ସମସ୍ତଙ୍କ କବଳରୁ ମୁକୁଳିଲା ବେଳକୁ ପୁଣି ଆସି ପୁଲିସ୍ ହାଜର । ହତ୍ୟା ମକଦମା । ତଦନ୍ତ ଚାଲିଛି । ହତ୍ୟାକାରୀ ଧରା ନ ପଡିବା ଯାଏଁ, ଜାଲ ଫିଙ୍ଗା ଚାଲିଥିବ । ମାଲ ପାଣି ଯୋଗେଇ ଚାଲିଥିବ ରବୀନ୍ଦ୍ର ଗୋହେଲା କିଏ ମାରିଛି ସିନା ଜଣାପଡି ନାହିଁ, ମରିଛି ତ ତା' ବାପ ! ଘରର ଡ୍ରାଇଭର, ନୌକର, ଘରକୁ ଯାଆସ କରୁଥିବା ପାଖପଡିଶା, ଥାକଥାକ ହେଇ ଭିତା ହେଇଗଲେ । ସନ୍ଦେହରେ । ତାଙ୍କୁ ମୁକୁଳେଇବାକୁ ମୁଣ୍ଡପିଛା ଖର୍ଚ୍ଚ । ସବୁଠୁ ଅଧିକ ଡ୍ରାଇଭରଟା ପାଇଁ । ନିର୍ଦ୍ଦୋଷଙ୍କୁ ଧରିବା ଓ ଛାଡିବାରେ ତଦନ୍ତ ଜାରି ରହିଲା । କାରଣ ଦୋଷୀକୁ ଧରିଲେ ରବୀନ୍ଦ୍ର ଖର୍ଚ୍ଚ କରିବ ନାହିଁ । କଥା କୁହୁଳି କୁହୁଳି କିନ୍ତୁ ଦିନେ ଜଣାପଡିଲା ଯେ ୧ ୧ ତାରିଖରେ ଆଉ ଜଣେ ହରଣଚାଳ ହୋଇଥିଲା, ସେ କୁଆଡେ ମରିନାହିଁ । ଫେରି ଆସିଛି । ପୁଲିସ ତାକୁ ଠାବ କରିନେଲା । ଘନ ସାମଲଙ୍କୁ ନିଭୃତ କୋଠରୀରେ ଜେରା କରାଗଲା । ସେ ଗୋଡହାତ ଧରି ନେହୁରା ହେଲା । ସେମାନେ ତାକୁ ମାରିଦେବେ ବୋଲି ବିକଳ ହେଲା । କହୁ କହୁ ସବୁ କହିଗଲା । ରାଣ ନିୟମ କରି କହିଲା ଯେ ସେ କାହାକୁ ମାରିନାହିଁ । ଆଖିବୁଜି ଘୋଡା ଟିପି ଦେଇଛି । 'ପଛରେ ମତେ ଗେବିଦେଲେ ସେମାନେ, ମୁଁ ଚମକି ପଡି ହାତମୁଠା ବୁଜିଦେଲି, କ'ଣ ହେଲା ଜାଣି ନାହିଁ କିଦେଖିନାହିଁ । ସେମାନେ ରାତାରାତି ମୋତେ ଆଣି ମୋ' ଘର ଆଗରେ ପକେଇ ଦେଇଗଲେ । ମୋତେ ମାରନ୍ତୁ କି ତାରନ୍ତୁ ।' କହି ବେହୋସ ହେଇଗଲା । ଘନ ସାମଲଙ୍କୁ ଜେଲ୍‌ରେ ରଖାହେଲା । ବର୍ଷେ ପରେ ଫଇସଲା ହେଲା ଯେ ଘନ ସାମଲ ନିର୍ଦ୍ଦୋଷ । ସେ ନିଜକୁ ବଞ୍ଚେଇବା ପାଇଁ ଅନ୍ୟର ଆଦେଶ ମାନିଥିଲା । ଆତ୍ମରକ୍ଷା କରିବା ଏକ ମୌଳିକ ଅଧିକାର । ସେ ମୂଳରୁ ନିର୍ଦ୍ଦୋଷ ହୋଇଥିଲେ ଜେଲ୍ ବାହାରେ ବଞ୍ଚିନଥାନ୍ତା । ସେମାନେ ତାକୁ ମାରି ଦେଇଥା'ନ୍ତେ । ସେମାନେ କିଏ, କୋଉଠି ଥାଆନ୍ତି, ଘନ ସାମଲ ଜାଣେ ନାହିଁ ବୋଲି କହିଛି, ତଥାପି ଘନ ସାମଲ ଅନେକ କିଛି ଜାଣେ ଯାହା ସେ କହିନାହିଁ କି କହିବ ନାହିଁ, ତା' ବାପା କଥା କି ଆଉ ଅନେକଙ୍କ କଥା ।...

'ମୋତେ ପଚାରିବା ପୂର୍ବରୁ ମୁଁ କହିଦେଉଛି, ମୁଁ ଇନ୍‌ସପେକ୍ଟର ଗୋଛେଇତ । ମୁଁ ଯାହା ଜାଣେ ସେଥିରୁ ଶହେଭାଗରୁ ଅନେଶତ ଭାଗ କହିହେବ ନାହିଁ । ନିଆଁ ଲାଗିଯିବ ! ଭାଗେ କହି ହୁଅନ୍ତା । ମୁଁ କହିନାହିଁ, କି କହିବି ନାହିଁ ।'...

– କିଏ ନାହିଁକଲା ଏଠି ଥିବା ସମସ୍ତେ ଢେର୍ କଥା ଜାଣିଛନ୍ତି ଅଥଚ କହିନାହାନ୍ତି କି କହିପାରୁ ନାହାନ୍ତି । କିନ୍ତୁ ସେମାନେ ସମସ୍ତେ ମିଶି କ'ଣ ବା ଜାଣିଛନ୍ତି, କେତେ ବା ଜାଣିଛନ୍ତି ? ଗୋଟାଏ ସର୍ବବ୍ୟାପୀ ଅନ୍ଧାର ଘେରି ରହିଛି ସମସ୍ତଙ୍କୁ ଦିନରାତି । କେହି କାହା କଥା ଜାଣନ୍ତି ନାହିଁ । ନିଜେ ନିଜ କଥା ବି ଜାଣନ୍ତି ନାହିଁ । ସେ ଯେ କହୁଛି ଦେଖିଛି ବୋଲି, ତାକୁ ପଚାରନ୍ତୁ ସେ

କ'ଣ ଦେଖିଛି !

କିଶୋର ରୋହେଲା ମରିଗଲା । ତାକୁ ତୁଣ୍ଡି ବାନ୍ଧି ମାରି ଦିଆଗଲା । ସେ କିଛି କହିପାରିଲା ନାହିଁ । ସେ କେବେ ବି କିଛି କହିପାରି ନାହିଁ । ତାକୁ ଯେତେବେଳେ ତିନିବର୍ଷ ଗଜୋରା ସେକ୍ଟରରେ ସୀମା ପାରହୋଇ ଭାରତକୁ ଆସୁଥିବାବେଳେ ସବୁ ଛାତି କାତର ଠିଆ ହୋଇଥିବା ପଞ୍ଜାବୀ ପରିବାରରେ ଆଚଙ୍କ ମଡେଇ ହୋଇପଡିଥିଲା । ଝିଅବୋହୂକୁ ନେଇ ଆସୁଥିବା ସୁରିନ୍ଦର କପୁର ପୁଅ ହରଜିତ୍ ସହିତ କଥା ହୋଇ ନିଷ୍ପତ୍ତି ନେଇଗଲା । ବିଳମ୍ବ କଲେ ସେମାନେ ତାଙ୍କ ସାମ୍ନାରେ ଇଜ୍ଜତ ଲୁଟିନେବେ । ସୁରିନ୍ଦର ଝିଅକୁ ଜାବୁଡିଧରି ପିଲାଙ୍କ ଭଳି କାନ୍ଦିଲା । ପୁଅ, ବୋହୂକୁ କୁଣ୍ଢେଇ କାନ୍ଦିଲା । ପାଟିତୁଣ୍ଡ ଚିତ୍କାର ପାଖେଇ ଆସୁଥିଲା । ସୁରିନ୍ଦର ତା' ଖଞ୍ଜର ଝିଅ ପିଠିରେ ଭୁସିଦେଲା । ଛଟପଟ, ଆଉ ଆର୍ତ୍ତନାଦକୁ ବାହୁ ଭିତରେ ଜାବୁଡି ଧରିଲା । ନିରବ ନିସ୍ପନ୍ଦ ସେ ଦୁର୍ବହ ଭାରକୁ ତଳେ ଶୁଆଇ ଦେଲାବେଳେ ସେ ଓଦାହୋଇ ଯାଇଥିଲା ଝିଅର ରକ୍ତରେ, ଲୁହରେ, କୋହରେ । ସେତିକିବେଳେ ବୋହୂ ବି ଶୋଇଯାଇଥିଲା ରକ୍ତ ଜୁଡୁବୁଡୁ ହୋଇ ଭୂଇଁ ଉପରେ । ଏତିକିବେଳେ ସେମାନେ ଝାମ୍ପିପଡିଲେ । ସମସ୍ତଙ୍କ ହାତରେ ହତିଆର୍ । ସମସ୍ତେ ରକ୍ତମୁଖା । ଦେଖୁ ଦେଖୁ ବୁଝିଗଲେ । ଗୋଟାଏ ଲଇଁପଡି ଝିଅ ଦେହରୁ କମିଜ ଚିରିଦେଲା – 'ହମ୍ ତୋ' ଇଜତ୍ ଲୁଟ୍‌କେ ହି ରହେଙ୍ଗେ – ଚହେ ଜିନ୍ଦା ୟା ମୁର୍ଦ୍ଦା ।' ସୁରିନ୍ଦର, ହରଜିତ୍ ଘାଇଲା ବାଘପରି ଲଢିଗଲେ । ନିଶାରେ ଟଳମଳ ସେଗୁଡାଙ୍କୁ କାଟି ଦବାକୁ ସେମାନଙ୍କୁ ସମୟ ଲାଗିଲା ନାହିଁ । ସୁରିନ୍ଦର ଝିଅର ଚିରା କାମିଜ୍‌ଟିକୁ ଗୁଡେଇ ଧରିଲା । ବୋହୂ ଝିଅଙ୍କୁ ପଶୁଙ୍କ କବଳରୁ ରକ୍ଷା କରିବାକୁ ଏକାଠି ନିଆଁ ଲଗେଇ ଦେଲେ । ଛାନିଆ ହୋଇ ଛିଟିକି ପଡିଥିବା ଝିଅର ପୁଅ ଆଉ ବୋହୂର ଦୁଇବର୍ଷର ଝିଅକୁ କାନ୍ଧରେ ପକେଇ ବାପ ପୁଅ ସେଇ ଅନ୍ଧାରରେ ପୂର୍ବ ଦିଗକୁ ଭାରତ ଭୂଇଁର ଆଶ୍ରା ଲୋଡିବାକୁ ଆଗେଇଗଲେ । ଦୁଃଖର ଭାରଭାର ପଥର କୋଇଲା ଉପରେ ଇଜତର ଧାରେ ନିଷ୍କଳଙ୍କ ହୀରା ଝଟକୁଥିଲା ତାଙ୍କ ନଇଁ ପଡୁଥିବା କାନ୍ଧ ଉପରେ ।

କିଶୋର ରୋହେଲାର ସବୁଠୁ ଗହୀର ସ୍ମୃତିରେ ଏଇ ପଥର ଓ ହୀରା ମଡେଇ ହୋଇ ରହିଲା ଜୀବନସାରା । ସେ କେବେ ଇଜ୍ଜତ୍ ହାରି ବଞ୍ଚିନାହିଁ । ଏବେ ବି ମରିଯିବାରେ ତା'ର ଆପତ୍ତି ନଥାନ୍ତା । ତାକୁ ବେଇମାନ୍ ଠିକାଦାର, ମୁନାଫାଖୋର ଲୁଟେରା କହି ମାରିବା ଲୋକେ କ'ଣ ଦେଖିଛନ୍ତି କ'ଣ ଜାଣିଛନ୍ତି, ମାତ୍ର ତିନିବର୍ଷ ତଳେ ଏଠିକି ଆସିଥିବା ସେ ଲୋକଟା ବିଷୟରେ ? ରବୀନ୍ଦର କ'ଣ ଜାଣିଛି ତା' ବାପକୁ ? ଯେଉଁମାନେ କିଶୋରକୁ ଆଢୁଆଳ କରି ରକ୍ତ ଶୋଷି ଲାଗିଥିଲେ ସେମାନଙ୍କୁ କିଏ ଦେଖିଛି ନା ଜାଣିଛି ? ସେମାନେ ତ' ସଫେଦ୍ ଗାଡିରେ ସଫେଦ୍ ଲୁଗା ପିନ୍ଧି ବୁଲୁଥିବା ମାଲିକ । କିଶୋର ଆସିଥିଲା ତା'ର ଭଉଣୀ ଭିଣେଇର ଠିକାଦାରି ସମ୍ଭାଳିବା ପାଇଁ । ସେ କି ଜାଣିଥିଲା ଏ ପାଣିରେ ଏତେ କୁମ୍ଭୀର ! – ରବୀନ୍ଦ୍ର ପିଲାଲୋକ । ସେ କି ଜାଣେ ତା' ଜାତି, ଦେଶ, ପରିବାର କଥା, ତା' ବାପା, ମା, ଅଜା କଥା !

ଏବେ ବି କିଶୋର ପାଖରେ ଗୋଟିଏ ଚନ୍ଦନ କାଠର ପେଡି ଭିତରେ ପୁରୁଣା ଶୁଖିଲା

ରକ୍ତ ଲାଗିଥିବା ହାଲ୍‌କା ଛିଟ୍‌ର ଚିରା କାମିଜଟିଏ ସାଇତା ହୋଇ ରହିଥିବ । ସେଇଟା କିଶୋରର ଅମୂଲ୍ୟ ସଂପଦ । ସେଇଟା ଇଜ୍‌ଜତ ଆଉ କୁର୍ବାନୀର ସନ୍ତକ । ଇଜ୍‌ଜତକୁ ଏତେ ସମ୍ମାନ ଦେଉଥିବା ଲୋକ କ'ଣ ଆଉ କାହାର ଇଜ୍‌ଜତରେ ବାଧା ଦେଇପାରେ ? ଏତେ ଦୁଃଖର ବୋଝ ମୁଣ୍ଡେଇ ବଞ୍ଚୁଥିବା ମଣିଷ କ'ଣ ଆଉ କାହାର ଦୁଃଖକୁ ଆଖି ବୁଜିଦେଇ ପାରେ ? ସେ ଏଠି ନୂଆ ଭାଷା, ଚଳଣି, ଢଙ୍ଗଢାଙ୍ଗ କିଛି ଜାଣି ନଥିଲା । ତା'ର ସୁଯୋଗ ନେଇଗଲେ କିଛି ମଝିମଝିଆ ଲୋକ । ସେମାନେ ଏପାରି ସେପାରି କରୁଥିଲେ କଥା । ଏପାରି ସେପାରି କରୁଥିଲେ ପଇସା ଓ ମୁନାଫା । ନମକ୍‌ହରାମ୍‌ମାନେ ସବୁବେଳେ ଏମିତି ବଳି ଚଢେଇ ଦିଅନ୍ତି । କିଶୋରକୁ ସେମାନେ ବଳି ଚଢେଇ ଦେଲେ । ସମସ୍ତଙ୍କୁ ନ୍ୟାୟ ଦେଉଛନ୍ତି ବୋଲି ଦାବି କରୁଥିବା ସେ ମୁଖାପିନ୍ଧା ଦଳ ବି ଧୋକା ଖାଇଗଲେ । ଘନ ସାମଲ ଧୋକା ଖାଇଗଲା । ତା' ଘରକୁ ବନ୍ଧକରୁ ମୁକୁଳେଇଥିବା, ତା' ବାପର ଅପରେସନ ଖର୍ଚ୍ଚ ଦେଇଥିବା ଖାଉନ୍ଦକୁ ସେ ଗୁଳି କରିଦେଲା । ମଝିଲୋକ ତାକୁ ସାହାଯ୍ୟ କରିଛନ୍ତି ବୋଲି ଧୋକା ଦେଇଦେଲେ ।

ଇନ୍ସପେକ୍ଟର ଗୋଛାୟତ ଧୋକା ଖାଇଗଲେ । ପ୍ରସ୍ତରକୁ ସତ ମଣିଗଲେ । ଯାହାକୁ ସେ ଦୈନିକ ସଲାମ୍ କରନ୍ତି ତାଙ୍କୁ ଚିହ୍ନି ପାରିଲେ ନାହିଁ । ଜାଣେ ଚିହ୍ନି ପକେଇବେ ବୋଲି ଆଖି ବୁଜିଦେଲେ । ରବୀନ୍ଦ୍ର ଭଳି ଆଉ ହଜାରେଙ୍କ ପାଖରୁ ଧରି ଛାଡିବା ପାଇଁ, ଛାଡି ଧରିବା ପାଇଁ ମାଲପାଣି ନେଲେ । ଦିନରେ ନେଲେ, ରାତିରେ ଦେଲେ । ସେ ଜାଣନ୍ତି, କହିଦେଲେ ନିଆଁ ଲାଗିଯିବ । ମୋଟେ ନୁହେଁ । କୋଉଠି ନିଆଁ ଲାଗିବ ନାହିଁ । କେବଳ ତାଙ୍କର ଆଗରେ ପଛରେ ହାବେଳି ଲାଛି ହୋଇଯିବ । ସେ ନିଜେ ଜଳି ଛାରଖାର ହୋଇଯିବେ ।

– ଆଚ୍ଛା ନାନୀ, ତମେ କିଏ ? – ତମେ ଭଲ କହୁଚ । ଓଡିଆରେ କହୁଚ । ହେଲେ ତମେ ଓଡିଆ ନୁହଁ । ତୁମ କଥାରେ ବାଙ୍କ ଅଛି ! ତୁମେ ଏତେକଥା ଜାଣିଲ କେମିତି ?

'ମୁଁ କିଶୋରର ମାମୁଁଝିଅ ଭଉଣୀ । ମୁଁ ଏଇଠି ପନ୍ଦର ବର୍ଷ ରହିଚି । ସମସ୍ତଙ୍କୁ ଜାଣିଚି । ଏଠି ପେଟରେ ଗୋଟାଏ କଥା । ମୁହଁରେ ଆଉ ଗୋଟାଏ କଥା । ଭାରି ଠକ କାମରେ, କଥାରେ । କିଶୋର ମୋ' ପାଇଁ ଏଠି ଆସି କୁର୍ବାନ ହେଇଗଲା । ମୁଁ ତାକୁ ସାବଧାନ ରହିବାକୁ କହିଥିଲି । ସେ ଜାଣି ପାରିଲା ନାହିଁ । ଲୋକଙ୍କୁ ବିଶ୍ୱାସ କରିଗଲା । ଧୋକା ଖାଇଗଲା ।'

ଅପରାହ୍ନ ବେଳେ କିଶୋର ସ୍ମୃତିସଭା ପାଇଁ କ୍ରମଶଃ ଲୋକଭିଡ ଜମି ଆସୁଥାଏ । ପ୍ରଥମ ପର୍ଯ୍ୟାୟରେ ଆସିଥିବା କେତେଜଣ ଗୋଟିଏ ଛୋଟ ଗୋଷ୍ଠୀ ଭିତରେ ଏସବୁ ବୟାନ ଶୁଣେଇଗଲେ, ସେମାନେ ଭରା ସଭାରେ ସେ କଥା କହିଥିଲେ ସମସ୍ତେ ଚମତ୍କୃତ ହୋଇଥା'ନ୍ତେ । କିନ୍ତୁ ସେ ବାରି ହୋଇ ପଡୁଥିବା ପ୍ରୌଢ ଜଣକ ତିନୋଟି ମାତ୍ର ଶବ୍ଦ ଉଚ୍ଚାରଣ କରି ଏପରି ଏକ ଉଚ୍ଚାଟ ସୃଷ୍ଟି କରିଦେଲେ ଯେ ଅନ୍ୟମାନେ ଉପରେ ପଡି ନିଜ ନିଜକୁ ଖୋଲିଦେଲେ ଅଣାୟତରେ । କହିଦେଲା ପରେ ସେମାନେ ଏକପ୍ରକାର ଅସହାୟ ଦେଖାଯାଉଥିଲେ । କିଛି ମାତ୍ରାରେ ବିଡମ୍ବିତ ଓ ଅନୁତପ୍ତ ବୋଧ କରୁଥିଲେ । ନହେଲେ ସେମାନେ ଲୋକଗହଳି ଭିତରେ ଲୁଚିଯିବାକୁ ଚେଷ୍ଟା

କରି ନଥା'ନ୍ତେ ।

ଆହୁରି ଆଶ୍ଚର୍ଯ୍ୟର କଥା ହେଲା ଯେ ସେମାନେ ପରସ୍ପରକୁ କୁହା କୁହି ହେଉଥିଲେ – 'ପଚାର ତାକୁ ସେ କ'ଣ ଦେଖୁଛି ।' କିନ୍ତୁ କେହି ଜଣେ ହେଲେ ତାଙ୍କ ସାମ୍ନାରେ ଠିଆହୋଇ ପଚାରିଲେ ନାହିଁ, 'ଆପଣ କ'ଣ ଦେଖୁଛନ୍ତି ?'

ବହୁପ୍ରକାର ଲୋକ ଆସି ଧାଡି ଧାଡି ସଜା ହୋଇଥିବା ଚୌକିମାନଙ୍କରେ ବସିଗଲେ । ପରସ୍ପରକୁ ଚାହିଁ ଚିହ୍ନିଲେ, ନ ଚିହ୍ନିଲେ, କଥା ହେଲେ, ନହେଲେ, କିନ୍ତୁ ନୀରବ ନିଶ୍ଚଳ ହୋଇଗଲେ । ରବୀନ୍ଦ୍ର ରୋହେଲା ଧଳା ପଞ୍ଜାବୀ ଚୁଡିଦାରରେ ଖୁବ୍ ପରିଚ୍ଛନ୍ନ ଦେଖାଯାଉଥିଲା । ମାନନୀୟ ଦେଖାଯାଉଥିବା ଲୋକଙ୍କୁ ସେ କରପତ୍ର ଯୋଡି ସଂଖୋଳି ଗଲା । ମଞ୍ଚସଜା ଟିକିଏ ତଦାରଖ କରିଦେଇ ଘଣ୍ଟା ଦେଖି ଚାଲିଗଲା ପ୍ରବେଶ ଦ୍ୱାର ପାଖକୁ । ସେଇଠୁ ମହାମାନ୍ୟ ପ୍ରଧାନ ଅତିଥିମାନଙ୍କୁ ପାଛୋଟି ଆଣିବାକୁ । –

ସେମାନେ ଆସିଲେ, ସମ୍ବର୍ଦ୍ଧିତ ହେଲେ, କିଶୋର ରୋହେଲା ଫଟ ଉପରେ ମାଲ୍ୟାର୍ପଣ କଲେ । ସେମାନଙ୍କର ଅଭ୍ୟସ୍ତ ଆଚରଣ, ଅଭ୍ୟାସରେ ପ୍ରାୟ ମୁଖସ୍ଥ ଭାଷଣ ବା ମଝିରେ କୌଣସି ଦିଗରେ ସାମାନ୍ୟ ନଇଁପଡି କିଛି ଜାଣିବା ଓ ଅଳ୍ପ ହସିବାରେ ଆଦୌ ବ୍ୟତିକ୍ରମ ହେଲାନାହିଁ । ସଭାଗୃହରୁ ମଝିରେ ମଝିରେ କିଛି କରତାଳି ମଧ୍ୟ ଯଥାବିଧି ଶୁଣାଗଲା ।

ରବୀନ୍ଦ୍ର ରୋହେଲା ଅଞ୍ଚଳର ଏ ମୁଣ୍ଡିଆଳ ବଡଲୋକଙ୍କୁ ପ୍ରାୟ ଅନ୍ୟମନସ୍କ ଦେଖୁଥାଏ ଓ ଶୁଣୁଥାଏ । ସେମାନେ ବାରମ୍ବାର ତା' ବାପାର ନାଁ ନେଇ କ'ଣ ସବୁ କହୁଥା'ନ୍ତି । ଭଲ ହିଁ କହୁଥିବେ, ସେ ମରିଗଲା ବୋଲି ଦୁଃଖ କରୁଥିବେ । ଜଣେ ସେ ଭିତରୁ କହିଲା ବେଳେ ଆଖି ପୋଛିବାର ମଧ୍ୟ ଦେଖାଗଲା । ତଥାପି ସେ କେଜାଣି କେମିତି ଅସୁସ୍ଥ ବୋଧ କରୁଥିଲା । ଏମାନଙ୍କ ଅଭିନୟ ଦେଖିବାକୁ ଆଦୌ ସୁଖ ପାଉନଥିଲା ।

ମଝିରେ ମଝିରେ ସେ ଚାହିଁ ଦେଉଥିଲା ଡାହାଣ ପାଖ ପଛଧାଡିର ଶେଷ ଚୌକିକୁ । ତିନୋଟି ମାତ୍ର ଶବ୍ଦରେ ସେ ଅଦ୍ଭୁତ ମନ୍ତ୍ର ଉଚ୍ଚାରଣ କରିଥିବା ସେ ଗମ୍ଭୀର ପ୍ରୌଢ ମଣିଷଟି ଉଠି ଚାଲିଯାଇ ନାହାନ୍ତି ତ' । କେଜାଣି କାହିଁକି ଏକାନ୍ତରେ ତାଙ୍କୁ ସେ ଢେର୍ କଥା ପଚାରିବାକୁ ଚାହୁଁଥିଲା । ତା'ର କ୍ରମଶଃ ବିଶ୍ୱାସ ହୋଇ ଚାଲିଥିଲା ଯେ ସେ ହିଁ ସବୁ ଜାଣିଚି । ଏ ଛପନ ବର୍ଷ ଭିତରେ ଏଡେ ବଡ ମୁଲକରେ ଛପନ ଲକ୍ଷ ଘଟଣା ଯାହା ଘଟିଛି ସେସବୁ ତାକୁ ଜଣା । ସେ ଚାହିଁଲେ ତା' ବୟାନରେ ସମଗ୍ର ଇତିହାସ ବଖାଣି ଦେଇପାରେ ।

ଯେଉଁ ପାଞ୍ଚଜଣ ସେ ଯାଦୁକର ପ୍ରଭାବରେ ମୁହଁ ଫିଟେଇ ନିଜ କଥା କହି ପକାଇଥିଲେ ଓ କହିଦେଲେ ବୋଲି ବିପନ୍ନ ବୋଧ କରୁଥିଲେ ସେମାନେ ବାରମ୍ବାର ସେ ପ୍ରୌଢଟିକୁ ଠାବ କରି ନେଉଥିଲେ । ସୁଯୋଗ ପାଇଲା ମାତ୍ରେ ତାକୁ ଘେରିଯାଇ ତା'ର ରହସ୍ୟ ଜାଣିବାକୁ ଚାହୁଁଥିଲେ । ସେ କିଏ ଓ କେତେ ମାତ୍ରାରେ ବିପଦ୍‌ଜନକ, ଠଉରାଇବାକୁ ଚାହୁଁଥିଲେ ।

ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ ସବୁ ଦେଖୁଥିବା ଓ ଜାଣିଥିବା ସେ ଭୟଙ୍କର ମଣିଷଟିକୁ

କେହି କେମିତି ଦେଖୁନଥିଲେ । ଇନ୍ସପେକ୍ଟର ଗୋଛେଇତ ଖୁବ୍ ଉଦ୍‌ବିଗ୍ନ ବୋଧ କରୁଛନ୍ତି । ଖଳିଦିଆ ପୋଷାକରେ ଘୋଡେଇ ହୋଇ ବସିଥିବା ମଞ୍ଚ ଉପରର ସମସ୍ତଙ୍କୁ ଉଣାଅଧିକ୍ ସେ ଚିହ୍ନନ୍ତି । ଶହେରେ ଅନେଶତଭାଗ ଲୁଚେଇଲାବେଳେ ସେ ଘୋଡଣି ତଳେ ଏମାନଙ୍କୁ ମଧ୍ୟ ସେ ସେଇଠି ଦେଖିଛନ୍ତି । କିନ୍ତୁ ସେ ବୁଢା ତାଙ୍କଠାରୁ ଢେର ଅଧିକ ଜାଣିଛି ବୋଲି ତାଙ୍କ ମନରେ ଶଙ୍କା ପଶି ଯାଇଛି । ସେ ସେଥିରୁ ମୁକୁଳି ପାରୁନାହାନ୍ତି । ଛଟପଟ ହେଉଛନ୍ତି କୌଣସି ପ୍ରକାରେ ସେ ବୁଢାର ପାଖ ଚୌକିରେ ତାକୁ ଜଗି ବସି ପାରିଲେ ସେ ଆଶ୍ୱସ୍ତ ହୁଅନ୍ତେ । କି ଡେଞ୍ଜରସ୍ ସେ ଲୋକଟା ସତେ । ତାକୁ କୌଣସି ପ୍ରକାରେ ଛାଡିବାକୁ ହେବନାହିଁ । ମହା ବିସ୍ଫୋରକ ବୋମା ଯଦି ଫାଟିପଡେ ଏ କାଠ ପିତୁଳିସବୁ ଜଳିଯିବେ । ଶୋଳବାଉଁଶର ଏ ସମଗ୍ର ଢାଞ୍ଚା ଛିନ୍ନଛତ୍ର ହେଇଯିବ । ସେଥିରେ ସୋରା ସୋରା ହୋଇଯିବେ ଗୋଛେଇତ ନିଜେ ।

ଘନ ସାମଲ କିନ୍ତୁ ଖୁବ୍ ଆଶ୍ୱସ୍ତ ବୋଧ କରୁଛି । ବିଧାତା ପୁରୁଷ ସତେବା ତା' ଆଗରେ ସେ ପ୍ରୌଢ ରୂପରେ ଉଭା ହୋଇ ଯାଇଛି ଯେ ସବୁ ଜାଣିଛି, ସବୁ ଦେଖିଛି । ଭିତର ବାହାର କିଛି ତାକୁ ଅଜଣା ନାହିଁ । ଯେତେ ମୁଖା ପିନ୍ଧି କଳା ଲୁଗା ଘୋଡେଇ ହେଲେ ବି ସେ ସମସ୍ତଙ୍କୁ ଚିହ୍ନିଛି । ସମସ୍ତଙ୍କ ମତଲବ ବୁଝିଛି । ସେ ଖାଲି ଦି'ଟା କଥା ବୁଝିପାରୁ ନାହିଁ । ପ୍ରଥମ ହେଲା ସେ ନିଜକୁ ଗୁପ୍ତ ରଖିଥିବା, ସମସ୍ତଙ୍କର ଗୁଇନ୍ଦାଗିରି କରୁଥିବା, ସମସ୍ତଙ୍କୁ ଦେଖୁଥିବା ଅଥଚ ନିଜେ ଦିଶୁ ନଥିବା ସେ ମୁଖାପିନ୍ଧା ଦଳ ଏ ବୁଢାଟିକୁ କେମିତି ଜାଣି ପାରୁନାହାନ୍ତି ? ଆଉ ଦ୍ୱିତୀୟ କଥା ହେଲା ଯେ, ଯଦି ସେ ବୁଢା ସତ କହୁଥାଏ, କେଜାଣି କାହିଁକି ଘନ ସାମଲର ସେଥିରେ ଆଦୌ ସନ୍ଦେହ ନାହିଁ ତା'ହେଲେ ସେ କେମିତି ସବୁ ଦେଖିଛି ଏବଂ କୋଉଠି ଥାଇ ଦେଖିଛି ? ଯଦି ସେ ଘନ ସାମଲକୁ ସତକୁ ସତ ଆମୂଳଚୂଳ ଦେଖିଥାଏ, ତା'ର ସତ ମିଛ ସବୁ ଜାଣିଥାଏ, ଆଉ ଯଦି ସେ ସବୁ ଖୋଲିଦିଏ ତା'ହେଲେ... ଘନ ସାମଲ ସାଙ୍କୁଡିଗଲା, ତାକୁ ଛାନିଆ ଲାଗିଲା, କିନ୍ତୁ ପୁଣି ସମ୍ଭାଳିଗଲା ନିଜକୁ । ଏ ସର୍ବଜାଣ ପୁରୁଷ କ'ଣ ଘନ ସାମଲର ଦୁଃଖ କଷ୍ଟ, ତା'ର ପରିବାରର ଅସହାୟ ଯାତନା ଦେଖି ନଥିବ ? ସେଥିରେ ସେ ଅପରାଧର ରାତିରେ ଘନ ସାମଲ ଯାହା ଲୁଚେଇ ଆସିଛି, ସେ ଯଦି ଦେଖିଥାଏ, ତେବେ କ'ଣ ଆଉ କରାଯାଏ ? ଖୁଣ୍ଟ ଉପରୁ ଝୁଲିଥିବା ଫାଶ ପୁଣି ଦୁଃସ୍ୱପ୍ନ ପରି ଦିଶି ଲିଭିଗଲା । ଘନ ସାମଲ ତଳକୁ ଆଖି ନୁଆଁଇନେଲା ।

ଶୋକସଭାର ଅନ୍ତିମ ପର୍ଯ୍ୟାୟରେ ରବୀନ୍ଦ୍ର ରୋହେଲା ସମସ୍ତଙ୍କୁ ଔପଚାରିକ ଧନ୍ୟବାଦ ଜଣାଇଲା ବେଳେ ଅନ୍ୟମନସ୍କ ଜଣାଯାଉଥିଲା । ସମସ୍ତେ ଧରି ନେଲେ ଯେ ସେଥିପାଇଁ ତା'ର ମାନସିକ ଅବସ୍ଥା ହିଁ ଦାୟୀ । ମଞ୍ଚ ଉପରେ ବସିଥିବା ବିଶିଷ୍ଟ ଅତିଥିମାନେ ସତନ୍ତ୍ର ସମ୍ମାନ ନ ପାଇ ମଳିନ ଦେଖାଗଲେ । ରବୀନ୍ଦ୍ର କେବଳ ଗୋଟାଏ ଆଡେ ରହିଁ କଥା କହୁଥିବାର ମଧ୍ୟ କେହି କେହି ଲକ୍ଷ୍ୟ କଲେ । କିନ୍ତୁ ଡାହାଣ ପାଖ ଶେଷ ଧାଡିରେ ସେପରି କିଛି ବିଶେଷ ଥିଲାପରି ସେମାନଙ୍କୁ ଦିଶିଲା ନାହିଁ ।

ସମସ୍ତେ ପ୍ରାୟ ନୀରବରେ ଉଠି ବାହାରିଗଲେ । ସେମାନଙ୍କୁ ବଳେଇ ଦେବାପାଇଁ ରବୀନ୍ଦ୍ର

ଗେଟ୍ ପର୍ଯ୍ୟନ୍ତ ଗଲାବେଳେ ଲକ୍ଷ୍ୟ କରୁଥିଲା ଯେ ଇନ୍ସପେକ୍ଟର ଗୋଛଇତ ଠିକଣା ଜାଗାରେ ବସିଛନ୍ତି । ତାଙ୍କ ପାଖରେ ଚୌକିରେ ସେ ଜଣକ କାହାରି ଦୃଷ୍ଟି ଆକର୍ଷଣ ନ କଲା ପରି, ଅଜଣା ଅଶୁଣା ସାଧାରଣ ଲୋକଟିଏ ପରି ବସିଛନ୍ତି । କିନ୍ତୁ ଜଣ ଜଣ ହୋଇ ବିଶିଷ୍ଟ ଅବିଶିଷ୍ଟ ଅତିଥିମାନେ ପାରି ହୋଇଗଲା ବେଳେ ନିରୀହ କୌତୂହଳୀ ପିଲାଟିଏ ପରି ଚାହିଁ ରହିଛନ୍ତି । ସେ ଆଖିରେ ହୁଏତ ସବୁ ଦୃଶ୍ୟ ଅଦୃଶ୍ୟ ଦିଶି ଯାଉଛି ।

ରବୀନ୍ଦ୍ର ଯଥାଶୀଘ୍ର ଫେରି ଆସି ଦେଖିଲା ଯେ ଯେଉଁ ପାଞ୍ଚଜଣ ପ୍ରଥମେ ଆସିଥିଲେ ସେଇମାନେ କେବଳ ଶେଷକୁ ରହି ଯାଇଛନ୍ତି । କିନ୍ତୁ ସେ ବୃଦ୍ଧ ଗଲେ କୁଆଡେ ? ଇନ୍ସପେକ୍ଟର ଛନ୍‌ଛନ୍ ଚାରିଆଡକୁ ଅନଉଛନ୍ତି । ତାଙ୍କ ପାଖ ଚୌକିରୁ କୁଆଡେ ସେ ମଞ୍ଚ ପଛପଟେ ଥିବା ଶୌଚାଳୟ ଆଡେ ଗଲେ, ଏମାନେ ଏତେ କାଳ ଅପେକ୍ଷା କଲାପରେ ମଧ୍ୟ ଫେରିଲେ ନାହିଁ । ଇନ୍ସପେକ୍ଟର ତରବର ହୋଇ ସେଇଆଡେ ତନଖି ଫେରି ଆସିଲେ । ପାଇଲେ ନାହିଁ ।

ସେ ଗଲେ କୁଆଡେ ? – ସେ କିଏ ? ନାଁ କ'ଣ ?

ତାଙ୍କ ଠିକଣା – ସାହି, ଘର, ଫୋନ୍ ନମ୍ବର ?

'ମୁଁ ସବୁ ଖୋଜି ବାହାର କରି ନେବି । ମୁଁ କିଛି ଖବର ନ ନେଇଛି ନୁହେଁ । କିନ୍ତୁ ଆମେ ସମସ୍ତେ କ'ଣ ତାଙ୍କ ପାଖରେ ଯାଇ ପହଞ୍ଚିବା, ନା ତାଙ୍କୁ ଆମ ପାଖକୁ ଆଣିବା ? ଏବଂ ଇନ୍ସପେକ୍ଟର ଅଳ୍ପ ରହି ପ୍ରଶ୍ନ କଲେ – 'କାହିଁକି ?'

'ସେ କ'ଣ ସତରେ ସବୁ ଦେଖିଛନ୍ତି – ଏ ସଭାର ଏତେ ଲୋକଙ୍କ କଥା, ଆମ କଥା, ତୁମ କଥା, ଆଗ କଥା, ପଛ କଥା ସବୁ ? ?'

'ଆମେ ଏବେ ଏଇଠି ଯାହା କରୁଛୁ ବା କହୁଛୁ ସେ କ'ଣ ଦେଖୁଛନ୍ତି ? – ସେତ ଏହି ନାହାଁନ୍ତି ! – ଆବସର୍ଡ ।'

'କାହିଁକି ଆବସର୍ଡ ? ମୋତେ ଲାଗୁଛି ସେ ଦେଖିଛନ୍ତି ।'

'ଓଃ ସଟ୍‌ଅପ୍ ! ଆମେ କ'ଣ ତାଙ୍କ କାହାଣୀର ଚରିତ୍ର ?'

'ହୋଇପାରେ !'

ଇନ୍ସପେକ୍ଟର ମନକୁ ମନ କହିବାର ଶୁଣାଗଲା 'ମୁଁ ଖବର ନେଇଛି – ସେ ଜଣେ ଅଦ୍ଭୁତ କଥାକାର !'



# ଅସମାପିକା

ଜେଜେ,

ତୁମେ ଆସବ ବୋଲି ମୁଁ ଛୋଟବେଳୁ ଶୁଣି ଆସୁଥିଲି । ତୁମ ଫଟୋ ଦେଖି ତୁମ ଚିଠି ପଢ଼ି ମୁଁ ତୁମକୁ ବହୁତ ଭଲ ପାଇଯାଇଛି । ତୁମେ ଆମ ଡାଡିଙ୍କ ଡାଡି ଶୁଣି ଭାରି କଉତୁକିଆ ଲାଗୁଛି । ଡାଡି ତ ଡାଡି, ତାଙ୍କର ପୁଣି ଡାଡି ଗୋଟାଏ କ'ଣ ? – ତା'ହେଲେ ତ ଜେଜେ ତମର ବି ଜଣେ ଡାଡି ଥିବେ । କାହିଁ ତାଙ୍କ କଥା ତ କେହି କହନ୍ତି ନାହିଁ! ତୁମେ ଆସିଲେ କହିବ ।

ତୁମେ ଆସି ଏଆର୍‌ପୋର୍ଟରେ ଓହ୍ଲେଇଲେ ତୁମକୁ ସମସ୍ତେ କାବା ହୋଇ ଅନେଇବେ । ତୁମର ସେ ଡ୍ରେସ୍‌ଟା ଏଠି କେହି ଦେଖିନାହାନ୍ତି । ଆଇ ମିନ୍ ତୁମର ଧୋତି । ସେଇଟା ହଠାତ୍ ଦେଖିଲେ ପାଇଜାମା ଭଳି ଦିଶେ । କିନ୍ତୁ ଡାଡି କହୁଥିଲେ ସେଇଟା ତ ସିଲେଇ ହେଇ ନଥାଏ । ବେଡ୍‌ସିଟ୍‌କୁ ଗୁଡେଇଦେଲେ ଯେମିତି ଅଜବ ଦିଶନ୍ତା ପ୍ରାୟ ସେମିତି । କିନ୍ତୁ ତୁମେ ସେଇ ଧୋତିଟାକୁ ବଢ଼ିଆ ଷ୍ଟାଇଲ୍‌ରେ ପିନ୍ଧିଥାଅ । ଆଗରେ ପଛରେ ଫୋଲ୍ଡ଼ ସବୁ ଝୁଲି ରହିଥାଏ । ପୁରାତନ ଗ୍ରୀକ୍‌ମାନଙ୍କ ପୋଷାକ ଭଳି । କିନ୍ତୁ ଜେଜେ ପବନ ହେଲେ ଗୋଟିଏ ଫଟରେ ତୁମ ଅବସ୍ଥା ଦେଖି ମୋତେ ହସମାଡେ, ଭାରି ଲାଜ ବି ମାଡେ । ସେ ଧୋତିଟା ଏଣେ ତେଣେ ଉଡିବା ଆରମ୍ଭ କରେ । ଆମର ଏଠି ଝିଅମାନଙ୍କର ସ୍କର୍ଟ ଉଡିଗଲେ ବି ଆମେ ହସୁ । କିନ୍ତୁ ଜେଜେ ତୁମ ଧୋତିରେ ତ' ବୋତାମ ନାହିଁ । ଜିପର ନାହିଁ । ତାକୁ ତୁମେ କେମିତି ପିନ୍ଧ ? ଆଉ ତୁମ ଅପର ଜାମା – ଆଇମିନ୍ ତୁମ 'ଫତେଇ' ସେଇଟା ବି ଭାରି ଇଣ୍ଟେରେଷ୍ଟିଂ । ତା'ର କଲର ନାହିଁ । ସେଥିରେ ତୁମେ ଟାଇ କେମିତି ବାନ୍ଧ ? – ନା ଆଦୌ ବାନ୍ଧ ନାହିଁ ? ଅଧା ହାତ ଆଉ ସାଇଡ୍ ପକେଟ୍ ପୁଣି ସାମ୍ନା ପକେଟ – ଭାରି ଇଣ୍ଟେରେଷ୍ଟିଂ ଲାଗେ । ତୁମର ଛୋଟ ଛୋଟ ଧଳାବାଳ, ଗୋଲ ଗୋଲ ଚଷମା, ଆଉ ଅଳ୍ପ ଅଳ୍ପ ଦାଢ଼ି ତୁମକୁ ଗୋଟିଏ ଅଜବ ପାରସୋନାଲିଟି ଦିଏ । ଆଉ ତୁମର ସେ ସାଣ୍ଡାଲ୍ ଉଡ୍ ପେଷ୍ଟର ଟୋପା – ଆଇମିନ୍ ଚନ୍ଦନ ଟୋପା ଦେଖିଲେ ସମସ୍ତଙ୍କର ଇଚ୍ଛାହେବ ଜାଣିବାକୁ ସେଇଟା କ'ଣ ? – ତୁମର ସାମ୍ନା ଦାନ୍ତଗୁଡାକ ଭାରି ବଢ଼ିଆ ଦେଖାଯାଏ ତୁମେ ହସିଲାବେଳେ କିନ୍ତୁ ପାଟି ଖୋଲିଲେ, ଅନେକ ଫାଙ୍କା ଦେଖାଯାଏ, ଭିତର ଦାନ୍ତଯାକ କୁଆଡେ ଗଲା ?

ତୁମ ଫଟୋ ସବୁ ଦେଖି ମୁଁ ତୁମ ବିଷୟରେ କେତେ କଥା ଜାଣିଛି ଦେଖ । ଡାଡି ମମି ମତେ ଘରେ ଏକୁଟିଆ ଛାଡି ଦେଇ ଯାଆନ୍ତି । ମୁଁ ଆଲବମ୍ କାଢ଼ି ଘଣ୍ଟା ଘଣ୍ଟା ତୁମ ଫଟୋଯାକ ଦେଖୁଥାଏ । ସେଥିପାଇଁ ତୁମ ସାଙ୍ଗରେ ମୋର ଦୋସ୍ତି ହୋଇ ଯାଇଛି । ତୁମେ ବି ମୋର ଫଟୋ

ଦେଖୁଥିବ । ମମି କହୁଛି, ମୁଁ ତୁମ ଭଳି ଦେଖାଯାଏ ବୋଲି, ଏଇଟା କ'ଣ ଠିକ୍ ? ତୁମେ କ'ଣ ଭାବୁଛ ? ଡାଡି କୁଆଡେ ତାଙ୍କ ମମି ଭଳି ଦେଖାଯାଆନ୍ତି, ମୁଁ କାହିଁକି ମୋ' ମମି ଭଳି ନ ହୋଇ ତୁମ ଭଳି ହେଲି ?

ଆଉ ଗୋଟେ କଥା କହିବି ? – ତୁମେ ଆସିଲେ କୁଆଡେ କ'ଣ ଅସୁବିଧା ହେବ ବୋଲି ମମି କହୁଛନ୍ତି । ପ୍ରଥମେ ତୁମେ ରହିବ କୋଉଠି ? ବେସ୍‌ମେଣ୍ଟରେ ଆମର ଗୋଟେ ଗେଷ୍ଟରୁମ୍ ଅଛି । ସେଇଠି କୁଆଡେ ତୁମେ ଚଳି ଜାଣିବ ନାହିଁ । ଗାଧୁଆ ଘର ଅସନା କରିଦେବ, ଗରିଆଡ ଓଦା ଅପରିଷ୍କାର କରିଦେବ । ତୁମକୁ ଡାଡି ସବୁ ଶିଖେଇ ଠିକ୍ ଠ୍‌କ ଟ୍ରେନିଂ ଦେବେ ବୋଲି ମମି କହୁଥିଲା । ମତେ ଶୁଣି ଲାଜ ମାଡିଲା । ତୁମେ କ'ଣ ଏ ସାଧାରଣ କଥା ସବୁ ଜାଣିନାହଁ ?

ତୁମେ କୁଆଡେ ଭାରି ବଢିଆ ଇଂରାଜୀ କହ, ବଡ ବଡ ସଭାରେ ତୁମକୁ ଲୋକ ଶୁଣି ତାଳି ମାରନ୍ତି । ତୁମେ ବହୁତ କଥା ଜାଣିଛ, ବହୁତ ବହି ପଢିଚ । ମୋତେ ବହୁତ ନୂଆ କଥା କହିବ ବୋଲି ଡାଡି କହୁଥିଲେ । ଆଉ କହୁଥିଲେ, ତୁମେ ଇଣ୍ଡିଆରେ ସବୁ ବଡ ବଡ ସହରରେ ଯାଇ ରହିଛ । ଟେବୁଲରେ ଖାଇବା, ବାଥରୁମ୍ ବ୍ୟବହାର କରିବା ଭଳି ଛୋଟ କଥା ସବୁ ତୁମକୁ ଏଠି ଆସି ଶିଖିବାକୁ ପଡିବ ନାହିଁ । ମମି ଖାଲି ସେମିତି ତୁଚ୍ଛାରେ କହୁଛି । ମୋର ବି ତୁମ ଉପରେ ପୂରା ବିଶ୍ୱାସ ଅଛି । ଧର ଯଦି କେତେବେଳେ କ'ଣ ଟିକିଏ ତୁମକୁ ନୂଆ ଲାଗିଲା, ମୋତେ ଧୀର୍ କିନା ଡାକିଦେଲେ ମୁଁ ସବୁ ବୁଝେଇଦେବି ।

ସତ କହିବି ଜେଜେ ? ମମି ତୁମ ଆସିବା ପସନ୍ଦ କରୁନାହିଁ । ତୁମେ କୁଆଡେ ଭାରି ମଫସଲି, ପୁରୁଣା କାଳିଆ । ତୁମେ କୁଆଡେ ଯାହା ଖାଇଲେ ବି ପାଟିରେ ପାଣି ପୂରେଇ ୱାସ୍ କର । ଘର ଭିତରେ ଖାଲି ପାଦରେ ଚାଲ । ଆର୍ଲି ମର୍ଣ୍ଣିରେ ଥଣ୍ଡାପାଣି ମୁଣ୍ଡରେ ଢାଳି ଦେହମୁଣ୍ଡ ଓଦା କର । ତଳେ କ୍ରସ ଲେଗ୍‌ଡ ବସି ସଂସ୍କ୍ରିତ୍‌ରେ ପାଟି କରି ପ୍ରେୟାର କର । ମୁଁ ତୁମକୁ ବତେଇ ଦେବି । ଏଠି ଭାରି ଥଣ୍ଡା । ଗରମ ପାଣିରେ ବାଥ୍ ଭାରି ଭଲ ଲାଗେ । ସବୁଦିନେ କ'ଣ ବାଥ୍ କରିବା ଦରକାର ? ଆଉ ବାଥ୍ ପରେ କାଜୁଆଲ୍ ଆଉ ଗାଉନ୍ ପିନ୍ଧି ଚୌକି ଉପରେ ବସି ପ୍ରେୟାର କରି ପାରିବ । ପାଟି କରି ଏଠି ପ୍ରେୟାର୍ କରାଯାଏ ନାହିଁ । ଧୀରେ ଧୀରେ କଲେ ଚଳିବ । ଗଡ୍ ବି ଶୁଣି ପାରିବେ । ତୁମେ ବି ଚିଠିରେ ଲେଖିଥିଲ ଯେ ଗଡ୍ ସବୁଠି ଅଛନ୍ତି, ସବୁକରି ପାରନ୍ତି । ୱାଣ୍ଡରଫୁଲ୍ । ତା'ହେଲେ ଆଉ କ'ଣ ଚିନ୍ତା ? ଆମେ ଯାହା ଖାଉଛୁ ।

ତୁମକୁ ସେଇଟା ଆଦୌ ଭଲ ଲାଗିବ ନାହିଁ ବୋଲି ମମି କହୁଥିଲା । ଆନିମଲ୍ ପ୍ରୋଟିନ୍ ତୁମର ଚଳିବ ନାହିଁ । ସେଇଟାକୁ ତୁମେ ଆମିଷ କହି ଖାଉନାହଁ । ଯାହା ଖାଇଲେ ଦେହ ଭଲ ରହିବ, ବେଶୀ କାମ କରିପାରିବ, ରୋଗିଣା ହେବ ନାହିଁ, ସେଇଟା କ'ଣ ଖାଇବା ଠିକ୍ ନୁହେଁ ? ତୁମର ସେଇଠି କ'ଣ କେହି ଆମିଷ ଖାଆନ୍ତି ନାହିଁ ? ଖାଇବାରେ କ'ଣ ପାପପୁଣ୍ୟ ଅଛି ? ଆଉ ମମି କହୁଥିଲା ଆମିଷର କୁଆଡେ ଗ୍ରେଡିଂ ରହିଛି । ଫିସ୍, ମାନେ ମାଛ କୁଆଡେ ସବୁଠୁ କମ ଅବ୍‌ଜେକସନେବଲ, ମିଟ୍ ମର୍ଟନ୍ ବି ଚଳିବ, କିନ୍ତୁ ଅଣ୍ଡା କୁକୁଡା – ଆରେ ବାପ୍‌ରେ ଆଦୌ

ନୁହେଁ, ଏଗ୍ ଆଉ ଚିକେନ୍ କାହିଁକି ଫିସ୍‌ଠାରୁ ଖରାପ ? ତା'ପରେ ବିଫ୍ ଆଉ ବେକନ୍ ନାଁ ଶୁଣିଲେ କୁଆଡେ ତୁମେ କାନରେ ହାତ ଦେଇଦିଅ । କିନ୍ତୁ ଜେଜେ, ଏ ଦେଶମାନଙ୍କରେ ବିଫ୍ ହେଉଛି ଅଧିକ ପ୍ରିୟ ଖାଦ୍ୟ । ସେଥିରେ ବହୁତ ବଢ଼ିଆ ଖାଇବା ଜିନିଷ ତିଆରି ହୁଏ । ମେଣ୍ଢା ଛେଳିରୁ ମଟନ୍ ହୁଏ, ଗାଈ ଘୁଷୁରୀରୁ ବିଫ୍ ଆଉ ବେକନ୍ । ଏଥିରେ ପୁଣି ଫରକ୍ କ'ଣ ? ଯେ ଯାହା ଖାଇଲା ଆଉଜଣେ ସେଥିରେ ବାଧାଦେବା ଠିକ୍ କଥା ହେବ କି ? ତୁମେ ଧର ମିଲ୍କ, ଫ୍ରୁଟସ୍ ଆଉ ଗ୍ରିନ୍ ଖାଇବାକୁ ଭଲପାଅ । ତୁମେ ଖାଇବ, ସେଥିରେ କାହାରି କିଛି କହିବାର ନାହିଁ । ଆମେ ଯଦି ଆମ ପସନ୍ଦ ଅନୁସାରେ କିଛି ଖାଉ ସେଥିରେ ତୁମେ କାହିଁ ବିରକ୍ତ ହେବ ? – ମୁଁ ପଢ଼ିଛି ଯେ କିଛି ଲୋକ କୁକୁର ମାଂସ ଭଲ ପାଆନ୍ତି, ମାଙ୍କଡ ବି କିଛି ଲୋକ ଖାଆନ୍ତି । ଗେଣ୍ଡା, ଶାମୁକା, ଝିଆ, ଅସର୍ପା, ମୂଷା, ଲିଜାର୍ଡ ବି ଖାଇବାକୁ ପସନ୍ଦ କରନ୍ତି । ଯାହାର ଯାହା ମନ ହେଉଛି ଯେ ଯେପରି ଖାଇ ଆସିଛି ସେ ସେଇଟା ନିଶ୍ଚୟ ଖାଉ, ଖାଇବା ବି ଉଚିତ୍ । ମନ ମୁତାବକ ଖାଇବା ଗୋଟାଏ ଖୁସିର କଥା । କାହିଁକି କାହା ଖୁସିରେ ଆଉ ଜଣେ ବାଧା ଦେବ ?

ମୁଁ ଏସବୁ କାହିଁକି କହୁଥିଲି କି ଜେଜେ, ତୁମେ ଥରେ ମୋ' ସାଥିରେ ନୂଆ ଜିନିଷ ଚାଖି ଦେଖନ୍ତ ଯଦି ମତେ ବହୁତ ଖୁସି ଲାଗନ୍ତା । 'ଆମିଷ' କଥା କହୁ ନାହିଁ । ଧର 'ପିଜା' ଆମମାନଙ୍କର ଭାରି ପ୍ରିୟ ଖାଦ୍ୟ । ଆମେ ତାକୁ ସକାଳେ ସଞ୍ଜରେ, ଯେତେବେଳେ ମନହେଲା ଖାଉ । ଏତେ ବଢ଼ିଆ ଲାଗେ ଯେ କହି ହେବ ନାହିଁ । ସେଥିରେ ତୁମେ ଚାହିଁଲେ ଚିଜ୍ ମାନେ ଛେନାକୁ ମିଶେଇ ତିଆରି କରି ହେବ । ନ ହେଲେ ତ' ଆମିଷ ଥିବା 'ପିଜା'ଟା ପ୍ରକୃତରେ ବେଷ୍ଟ, ମାନେ ସବୁଠୁ ବଢ଼ିଆ । ତୁମେ ଥରେ ଖାଇଲେ ଛାଡି ପାରିବ ନାହିଁ । – ତମର ସେଠି ପିଠା ହୁଏ ପରା । ପିଠା ଆଉ ପିଜା ଏକା କଥା । ଜେଜେ, ତୁମେ ଦେଖିବ, ଭାରି ସୁଆଦ ଲାଗିବ । ତା'ପରେ ଆଉ ବହୁତ କଥା ଆମେ ଏଠି ଖାଉ । ତୁମେ ଆସ୍ତେ ଆସ୍ତେ ସେ ସବୁ ଖାଇଲେ ତୁମର ଦେହ ଭଲ ରହିବ ତୁମେ ଫିଟ୍ ହେଇଯିବ । ତୁମକୁ କେହି ଆଉ ଓଲ୍ଡମେନ୍ ବୋଲି କହିବେ ନାହିଁ ।

ଆଉ ତୁମ ଡ୍ରେସ୍, ଏଠି ଭାରି ଶୀତ ହୁଏ । ତୁମେ କ'ଣ ସେଇ ଧୋତି ଆଉ ସେ ଚାରିଟା ମୁଣାଥିବା ପାତଳ ହାଫ୍‌ସାର୍ଟ ପିନ୍ଧି ଚଳିପାରିବ ? ପ୍ରଥମେ ତ ହାତମୋଜା ଗୋଡମୋଜା ନିହାତି ଦର୍କାର ପଡିବ । ଟୋପି ତୁମ ପାଇଁ ଜରୁରୀ । ମୁଁ ଗୋଟାଏ ବଢ଼ିଆ ଉଲି ଟୋପି ରଖିଛି । ଭାରି ସଫ୍ଟ ଆଉ ଉଷୁମ । ତୁମକୁ ଭାରି ବଢ଼ିଆ ଦିଶିବ । ଗରମ ଲୁଗା ନ ପିନ୍ଧି ତୁମେ ଚଳିପାରିବ ନାହିଁ । ଆମ ଘର ଭିତରେ ଆମେ ଥଣ୍ଡା ଉଷୁମ ଇଚ୍ଛା ଅନୁସାରେ କରି ଦେଇପାରିବୁ । ଘରୁ ବାହାରକୁ ଗଲେ ବି ଆମ ଗାଡି ଭିତରେ ବି ଥଣ୍ଡା ଉଷୁମ ଆମ ହାତକଥା । କିନ୍ତୁ ବାହାରକୁ ବୁଲିଗଲେ, ସେଇଭଳି ପୋଷାକ ଦରକାର । ଏଠି ବହୁତ ବଢ଼ିଆ ପାର୍କସବୁ ଅଛି । ମୁଁ ତୁମକୁ ସାଙ୍ଗରେ ସେଠିକି ବୁଲେଇ ନେବାକୁ ଚାହୁଁଛି । ଘାସପଡିଆ ସବୁ ଗାଲିଚା ଭଳି । ଗଛମୂଳେ ଆଦୌ ଗୋଟିଏ ହେଲେ ଶୁଖିଲା ପତ୍ର ପଡେ ନାହିଁ । ଫୁଲଗଛ ଭାରି ତାଜା ଆଉ ସୁନ୍ଦର । ଏଠି ଫୁଲ କେହି ତୋଳନ୍ତି ନାହିଁ । ବହୁ ପ୍ରକାରର ରଙ୍ଗୀନ୍ ଫୁଲ ଫୁଟେ । କିନ୍ତୁ ବାସ୍ନା ଫୁଲ ଖୁବ୍ କମ୍ । ପାର୍କରେ ବାସ୍ନା ଫୁଲ

ମୁଁ ଦେଖି ନାହିଁ । ରୋଜ୍ ସମସ୍ତଙ୍କର ଭାରି ପ୍ରିୟ । ରୋଜ୍ ବି ଜାତି ଜାତି କେତେ ପ୍ରକାର ଓ ରଙ୍ଗରଫୁଟେ । ମସ୍କରୋଜ୍‌ର ବାସ୍ନାଟା ମୋତେ ଭାରି ଭଲ ଲାଗେ – ଆମ ଘରେ ବି ବହୁତ ଫୁଲଗଛ ଅଛି । ଆମ ଦୁଆରେ ଲନ୍‌ଅଛି । ଡାଡି କାମରୁ ଫେରିଲେ ସେଇଠି ଆଉଘଣ୍ଟାଏ କାମ କରନ୍ତି । ଲୋକ ବି ମିଳନ୍ତି । ସପ୍ତାହରେ ଥରେ ଆସି ଅଧିକା କାମ କରି ଦେବାପାଇଁ ।

ମୁଁ ଜାଣି ପାରୁଛି ତୁମକୁ ଏସବୁ ଖୁବ୍ ଭଲ ଲାଗିବ । ଆଉ ଜେଜେ, ଆମର ଏଠି ସବୁ ଘରକାମ ଶନିବାର ରବିବାର ଦିନ ହୁଏ । ବାକି ପାଞ୍ଚଦିନ, କିଏ କୁଆଡେ ଯାଆନ୍ତି, କାହାରି ସାଙ୍ଗରେ କାହାରି ଦେଖାହୁଏ ନାହିଁ । ଶନି ରବିକୁ ଆମେ ଓ୍ୱିକ୍ ଏଣ୍ଡ କହୁ । ସମସ୍ତଙ୍କର ସେଇ ଓ୍ୱିକ୍ ଏଣ୍ଡ ଉପରେ ନଜର ଥାଏ । ଏ ସପ୍ତାହ ଆମ ଘରେ ତ ଆର ସପ୍ତାହ ଏଠୁ ଅଳ୍ପ ବାଟରେ ରହୁଥିବା ମାଲହୋତ୍ରା ଅଙ୍କଲଙ୍କ ଘରେ ସମସ୍ତେ ଏକାଠି ଭୋଜିଭାତ କରୁ । ଇଣ୍ଡିଆନ୍ ଗୀତ ବାଜେ, ଇଣ୍ଡିଆନ୍ ଡିସ୍ ସବୁ ତିଆରି ହୁଏ । ଥରେ ମମ୍ମି ଆମ ପଡିଶାର ଗୋଟାଏ ଜିନିଷ ତିଆରି କରି ସମସ୍ତଙ୍କୁ ତାଜୁବ୍ କରି ଦେଇଥିଲେ । ସେଇଟା ଗୋଟାଏ ପ୍ରକାର ପିଠା । ତା' ନାଁ ମଣ୍ଡା । ତା' ଭିତରେ କୋକୋନଟ୍‌ର ମିଠା ଜେଲି ଭର୍ତ୍ତି ହେଇଥିଲା । ମୁଁ ଖୁବ୍ ଖାଇଥିଲି । ମାଲହୋତ୍ରା ଆଣ୍ଟି ବି ଗୋଟାଏ ଗାଜର ହାଲଓ୍ୱା କରି ଖୁଆଇଥିଲେ । ଆମ ଲୋକ ସେଇଠି ଏତେ ବଢିଆ ଖାଆନ୍ତି, ତେବେ ତାଙ୍କୁ କାହିଁକି ଗରିବ, ଅନୁନ୍ନତ, ପଛୁଆ ବୋଲି ଏଠି କହନ୍ତି, ଏଇଟା ତମେ ଆସିଲେ ମତେ ବୁଝେଇ କହିବ ।

ଏଠି ଆମର ମେ ମାସ ବେଳକୁ ଆଠଟାରେ ସୂର୍ଯ୍ୟ ବୁଡିନଥାଏ । ରାତିଟା ଚଟକିନା ସରିଯାଏ । ସଂଧ୍ୟାବେଳେ ତୁମେ ମୋତେ ବିଷ୍ଣୁଶର୍ମା କାହାଣୀ ଶୁଣେଇବ । ଡାଡି ଏଥର କିଛି କାସେଟ୍ ଆଣିଛନ୍ତି । ତାକୁ ମୁଁ ଷ୍ଟେରିଓରେ ଶୁଣେ । କିଛି ବୁଝିପାରେ ନାହିଁ । ତେବେ ବି ଭାରି ଭଲ ଲାଗେ । ସେ ସବୁ ସଂସ୍କ୍ରିତ୍‌ରେ ଲେଖା ହେଇଚି ବୋଲି ଡାଡି କହୁଥିଲେ । ତୁମେ ଜେଜେ ଖୁବ୍ ସଂସ୍କ୍ରିତ୍ ଜାଣିଚ ନା । ମୋତେ ନିଶ୍ଚୟ ଶିଖେଇ ଦେବ । ମୋର ଭାରି ମନ ହେଉଛି ସଂସ୍କ୍ରିତ୍ ଶିଖିବାକୁ ।

ଶୋଇବାକୁ ତୁମ ପାଇଁ ବେସ୍‌ମେଣ୍ଟରେ ବ୍ୟବସ୍ଥା କରିବାକୁ ମମ୍ମି କହୁଥିଲେ । ସେଇଠି ତୁମକୁ ଭଲ ଲାଗିବ । ସେଇଠୁ କବାଟ ଫିଟେଇ ଦେଲେ ବ୍ୟାକ୍‌ୟାର୍ଡ୍ । – ସେଇଠି ଫଳଗଛ ସବୁ ଅଛି । ଖୋଲା ଘାସ ପଡିଆ । ତା' ପଛକୁ ବଡ ବଡ ପାଇନ୍ ଗଛ ।

ବେସ୍‌ମେଣ୍ଟରେ ଛୋଟ ଲାଇବ୍ରେରୀଟିଏ ଅଛି । ସେଇଠି ବସି ପଢାପଢି କରିପାରିବ । ଶୋଇବାଘରେ ସବୁ ସୁବିଧା ଅଛି । ଏଠି ସବୁବେଳେ ରେଜେଇ ଘୋଡି ହୋଇ ଶୋଇବାକୁ ହୁଏ । ମୁଁ ସେମିତି ଖୋଲାରେ ଶୋଇବାକୁ ଭଲ ପାଏ । ହେଲ ମମ୍ମି କେତେବେଳେ ଆସି ରେଜେଇ ଘୋଡେଇ ଦେଇ ଚାଲିଯାନ୍ତି । ସତରେ ଜେଜେ ମମ୍ମି ଭାରି ବଢିଆ । ମୋତେ ଖୁବ୍ ଭଲ ପାଆନ୍ତି । ତୁମକୁ ବି ଭଲ ପାଇଯିବେ । ତୁମେ ଆସିଗଲେ ସବୁ ଠିକ୍ ହେଇଯିବ । ତୁମେ କେବେ ଆସିବ ଜଣେଇଲେ, ମୁଁ ବି ଡାଡିଙ୍କ ସାଙ୍ଗରେ ଏୟାରପୋର୍ଟ ଯିବି । ତୁମକୁ ଦେଖୁଦେଖୁ ମୁଁ ଚିହ୍ନିଯିବି ।

କିଛି ଚିନ୍ତା କରିବାର ନାହିଁ । ଆରେ, ଡାଡି ତ ଥିବେ ! ମୁଁ କେତେ ବୋକାଙ୍କ ପରି ଭାବୁଚି ଯେ ମୋତେ ହିଁ ତୁମକୁ ଚିହ୍ନିବାକୁ ପଡିବ !

ତା'ହେଲେ ଜେଜେ ବାୟ ! ମୋତେ ତୁମେ ନାଁ ଦେଇଛ ବୋଲି ଡାଡି କହୁଥିଲେ । ଜେଜେ, ଭାରି ବଢିଆ ନାଁ । ମୁଁ ମୋ' ସାଙ୍ଗମାନଙ୍କୁ ଯେତେବେଳେ କହିଲି ଯେ ଦେବେଶ ମାନେ କିଙ୍ଗ୍ ଅଫ୍ ଗଡସ୍, ସେମାନେ କାବା ହୋଇଗଲେ ।

ଓକେ ଜେଜେ, ଟେକ୍ କେୟାର ।

ନୋଟ୍ ୧-ଦଶବର୍ଷ ତଳେ ଏ ଚିଠି ମୁଁ ଲେଖିଥିଲି । ପଠେଇ ପାରିଲି ନାହିଁ । କାରଣ ଏ ଚିଠି ଲେଖିବାର ଦୁଇଦିନ ପରେ ଖବର ଆସିଲା ଯେ ଜେଜେ ହଠାତ୍ ଚାଲିଗଲେ । ସଂଜବେଳେ ମେଡିଟେସନ୍ କରୁଥିଲେ । ସେତିକିବେଳେ ମ୍ୟାସିଭ୍ ହାର୍ଟ ଷ୍ଟ୍ରୋକ୍ ହୋଇଗଲା । ଜେଜେ, ଏ ଚିଠି ତୁମେ ପଢିଥିଲେ ମୁଁ କେତେ ଖୁସି ହୋଇଥା'ନ୍ତି । ମୁଁ ଇଂରାଜୀରେ ହିଁ ଲେଖିଥିଲି । ଏ ନୋଟ୍ ବି ଇଂରେଜୀରେ ଲେଖୁଛି । ମୋର ଇଚ୍ଛା ଏ ସବୁ ଓଡିଆରେ ଲେଖି ହୋଇ ଯାଆନ୍ତାକି ।

ଜେଜେ ତୁମକୁ ମୁଁ ଦେଖି ପାରିଲି ନାହିଁ । ଡାଡି ଖବର ପାଇ ମାସକ ସକାଶେ ଚାଲିଗଲେ ଏକୁଟିଆ । ମମ୍ମି ଯିବାକୁ ମନା କଲେ । ମୁଁ ବି ଯାଇ ପାରିଲି ନାହିଁ । ମମ୍ମି ଏକୁଟିଆ ହେବେ ବୋଲି ।

– ହେଲେ କ'ଣ ହେଲା କେଜାଣି ଡାଡି ସେଇଠି ତିନିମାସ ରହିଗଲେ । ମମ୍ମି ବି ଘରେ ବେଶୀ ସମୟ ରହିଲେ ନାହିଁ । ଜଣେ ଜାକବ୍ ଅଙ୍କଲ ସବୁଦିନେ ଘରକୁ ଆସୁଥିଲେ । ମମି ତାଙ୍କ ସାଙ୍ଗେ ଡ୍ରାଇଭ୍ କରି କୁଆଡେ ଚାଲି ଯାଉଥିଲେ । ଜାକବ୍ ଅଙ୍କଲଙ୍କର ଖୁବ୍ ବଡ ଲିମୋସିନ୍ । ମୋତେ ମମ୍ମି ନେଇ ହଷ୍ଟେଲରେ ରଖିଦେଲେ । ଡାଡି ଆସିଲା ବେଳକୁ ମୁଁ ହଷ୍ଟେଲରେ ଥାଏ । ସେ ମୋତେ ଘରକୁ ନେଇ ଆସିଲେ । ମମ୍ମି ଘରେ ନଥିଲେ । ସେଦିନ ରାତିରେ ଡାଡି ମୋତେ କୁଣ୍ଢେଇ ଧରି ଖୁବ୍ କାନ୍ଦିଲେ । ଡାଡି ଇଣ୍ଡିଆରୁ ଫେରିଲା ପରେ ତାଙ୍କ ମୁଣ୍ଡରେ ଅଳ୍ପ ଅଳ୍ପ ବାଳ ଉଠିଥାଏ । ସେ ପ୍ରାୟ ତୁମ ଫଟୋ ଭଳି ଦେଖା ଯାଉଥା'ନ୍ତି ।

– ସେ ଖାଇବା ଟେବୁଲ୍‌ରେ କିଛି କ୍ଷୀର ଆଉ ପାଉଁରୁଟି ରଖି ମୋ' ପାଖକୁ ଲାଗି ବସିଲେ । ମୋ' ପିଠି ଆଉଁଶି ଦେଇ କହିଲେ । 'ଆମେ ଏଥର ଏକାଠି ଚଳିବାକୁ ଶିଖିବା । ତୋ' ମମ୍ମି ଆଉ ଆସିବେ ନାହିଁ । ସେ ମିଷ୍ଟର ଜାକବ୍‌ଙ୍କ ସଙ୍ଗେ ରହିବେ ।

ମୁଁ ସେତେବେଳେ ଠିକ୍ ବୁଝି ପାରୁ ନଥିଲି । ତଥାପି କ୍ଷୀରରେ ପାଉଁରୁଟି ବୁଡେଇ ପାଟିରେ ନେଲାବେଳେ ଟିକିଏ ଲୁଣିଆ ଲାଗିଲା । ଆଖିକୁ ଝାପ୍‌ସା ଦେଖା ଯାଉଥିଲା । ମୁଁ ସହଜରେ ଢୋକି ପାରୁ ନଥିଲି । ଡାଡି ମୋ' ପିଠିରେ ହାତ ରଖି ସାଉଁଳି ଦେଉଥିଲେ ।

ଜେଜେ ମୋର ବିଶ୍ୱାସ ଯେ, ତୁମେ ଆସିଥିଲେ ଏସବୁ ହୋଇ ପାରି ନଥାନ୍ତା । ତୁମେ ତୁମ ସାଙ୍ଗରେ ସାରା ଭାରତର ସଂସ୍କାର, ଆଉ ଜ୍ଞାନ ନେଇ ଆସିଥାନ୍ତ । ମମ୍ମିର ସାହସ ହେଇ ନଥାନ୍ତା ତୁମର ସାମ୍ନା କରିବାକୁ । ମୋର ଗ୍ରାଜୁଏସନ୍ ସରିଲାଣି । ଡାଡି ସମସ୍ତଙ୍କୁ ଡାକି ଡିନର ଦେଇଥିଲେ । ମିଷ୍ଟର ଓ ମିସେସ୍ ଜାକବ୍ ଆସି ନଥିଲେ । ମୋ' ଅଜାଣତରେ ମୋ' ଆଖି ଓଦା

ହୋଇଯିବାରୁ ମୁଁ ଗୁମାଲ କାଢି ପୋଛିଲା ବେଳେ ଡାଡି ଦୂରରେ ଥାଇ ଦେଖିନେଲେ । ପାଖକୁ ଆସି ପିଠି ଆଉଁଶି ଦେଇ କାନ୍ଧକୁ ଥାପୁଡାଇ ଦେଲେ । ମୋ' ଆଖିକୁ ଚାହିଁ କହିଲେ 'ବି ବ୍ରେଭ୍' ସେତେବେଳେ ମୁଁ ତାଙ୍କୁ ଦେଖି ପ୍ରାୟ ଚମକି ପଡିଲି । ଡାଡି ଚଷମା ପିନ୍ଧି ଠିକ୍ ତୁମରି ଭଳି ଦିଶୁଥିଲେ । ସେ ବି ଏଇ କେତେବର୍ଷ ହେଲା ସକାଳୁ ପୂଜା କରୁଛନ୍ତି । ଚନ୍ଦନ ଟୋପା ଲଗାଉଛନ୍ତି । ଦୁଇ ତିନି ଦିନର ଗୁଢ ଉଠିଗଲେ ସେ ଠିକ୍ ତୁମପରି ଦେଖାଯାଉଛନ୍ତି –

ନୋଟ୍-୨

ପୁଣି ସାତ ବର୍ଷ ପରେ ଏ ଚିଠି ଆଖିରେ ପଡିଲା । ମୋର ମେଡିକାଲ ସାରି ମୁଁ ମୋର କ୍ଲିନିକ୍ କରି ସାରିଲିଣି । ସାବିତ୍ରୀ ସାଙ୍ଗରେ ଦେଖା ହେଲା ଗୋଟାଏ ଫଙ୍କସନ୍‌ରେ । ସେ ଓଡିଶୀ ନାଚିଥିଲା । ମୁଁ ଆବାକ୍ ହୋଇ ତାକୁ ଚାହିଁ ରହିଥିଲି । ସେ ମ୍ୟୁଜିକ୍, ଚମ୍ପୁ ଆଉ ତା'ର ନାଚ ମୋତେ ଅପାର୍ଥିବ ମନେ ହେଲା ମୁଁ ମୋ' ଆଡୁ ତାକୁ ଆଉ ତା' ଡାଡି ଡକ୍ଟର ସୁବୋଧ ସାମନ୍ତଙ୍କୁ ପରିଚୟ ଦେଇଥିଲି । ସେମାନେ ମୋତେ ଡିନରକୁ ଡାକିଲେ । ମୁଁ ପ୍ରଥମେ ସୁଯୋଗରେ ପ୍ରସ୍ତାବ ଦେଇଥିଲି ସାବିତ୍ରୀକୁ ବିବାହ କରିବାକୁ । ସେ ଇଣ୍ଡିଆନ୍ ଷ୍ଟାଇଲ୍‌ରେ ଶାଢି ପିନ୍ଧିଥିଲା । ବଢିଆ ଇଂରାଜୀ କହୁଥିଲା । ତା'ଠୁ ବଢିଆ ଓଡିଆ କହୁଥିଲା । ହସି ଦେଲେ ଗଡେସ୍‌ଭଳି ଦେଖା ଯାଉଥିଲା । ମୁଁ ଡାଡିଙ୍କୁ ସାଙ୍ଗେ ସାଙ୍ଗେ ଫୋନ୍ କରିଥିଲି । ସେ ସଂଧ୍ୟା ଫ୍ଲାଇଟ୍‌ରେ ଆସି ପହଞ୍ଚିଲେ । ବାହାଘର ଦଶଦିନ ପରେ ହୋଇଗଲା, ହିନ୍ଦୁ ଟେମ୍ପଲ୍‌ରେ । ସେଇଠି ଗଣପତି, ତିରୁପତିଙ୍କ ସଙ୍ଗେ ଜଗନ୍ନାଥ ବି ଅଛନ୍ତି । ଜେଜେ ତୁମକୁ ସେ ପଣ୍ଡିତମାନଙ୍କର ହୋମ ଆଉ ସଂସ୍କ୍ରିତ୍ ଖୁବ୍ ଭଲ ଲାଗିଥାନ୍ତା । କେମିତି କେଜାଣି ମୁଁ ସେ ଦିନସାରା ତୁମକୁ ମନେ ପକାଉଥିଲି । ମୋତେ ଲାଗୁଥିଲା ଯେ ତୁମେ ମୋତେ ଆଶୀର୍ବାଦ କରୁଚ । ଡାଡି ଆମ ଦୁଇ ଜଣଙ୍କୁ କୁଣ୍ଢେଇ ଧରିଲେ । ଆମେ ଗୋଟେ ନୂଆ ଘର ନେଇଛୁ । ଡାଡିଙ୍କ ପୁରୁଣା ଘର ଛାଡିଦେଲୁ । ଡାଡି ଆମ ସାଙ୍ଗେ ଅଛନ୍ତି । ସେ ଧୋତି ଆଉ ଫତେଇ ପିନ୍ଧୁଛନ୍ତି । ବଢିଆ ଦେଖା ଯାଉଛନ୍ତି ।

ସାବିତ୍ରୀ ତା'ର ଓଡିଶୀ ଡାନ୍ସ ସ୍କୁଲରେ ବ୍ୟସ୍ତ ରହୁଛି, ତଥାପି ଆମେ ଖୁବ୍ ଚାହୁଁଛୁ ଆମର ଗୋଟାଏ ପୁଅ ହେଉ ବୋଲି । ସେ ମୂଳରୁ ତା' ଜେଜେକୁ ପାଉ । ଆଉ ତାଙ୍କ କୋଳରେ ବଢୁ ବୋଲି ମୋର ଭାରି ଇଚ୍ଛା । ମୁଁ ତାକୁ ଖୁବ୍ ଈର୍ଷା କରିବି । ଦେଖାଯାଉ ସେ କେବେ ଆସୁଛି । ଜେଜେ ମୁଁ ପ୍ରମିଜ୍ କରୁଛି, ଆଉ ଥରେ ତୁମକୁ ଚିଠି ଲେଖିଲେ ଓଡିଆରେ ହିଁ ଲେଖିବି । ଏସବୁ ସାବିତ୍ରୀ ଓଡିଆ କରିଦେଲେ ମୁଁ ତାକୁ ଓଡିଶା ପଠେଇ ଦେବି ମ୍ୟାଗାଜିନ୍‌ରେ ଛାପିବା ପାଇଁ । ତୁମେ ଥିଲେ ଦେବେଶର ଅସମାପ୍ତ ଚିଠି ପଢି ଖୁସି ହୋଇଥାନ୍ତ ନା – ଜେଜେ ଆଇ ପ୍ରମିଜ୍ ମୁଁ ଏମିତି ଲେଖୁଥିବି । ଦିନେ ହୁଏତ ଏ ଚିଠି ସରିବ, ଆଉ ମୁଁ ଥାକକ ଯାକ ତୁମ ହାତକୁ ବଢେଇଦେବି । ସେତେବେଳେ ମୁଁ ହୁଏତ କ୍ଲୋଜ୍‌କ୍ରପ୍ କରିଥିବି, ଚଷମା ପିନ୍ଧୁଥିବି । ଚନ୍ଦନ ଟୋପା ଲଗାଉଥିବି, ଧୋତି ଫତେଇ ପିନ୍ଧୁଥିବି । ମୋ' ପୁଅର ପୁଅ ହୋଇଥିବ, ତାକୁ ମୁଁ ନାଁ ଦେଇଥିବି ତ୍ରିଦିବେଶ । ଓକେ, ଜେଜେ ତୁମ ସଙ୍ଗେ ଆଜି ଚୁକ୍ତିହେଲା । ମୁଁ ଏ ଚିଠି ଲେଖୁଥିବି; କେବେ ସାରିବି ନାହିଁ, ନିଜେ ନ ସରିବା ଯାଏଁ । □

## ସୂଚୀପତ୍ର

# ସନ୍ଧିକାଳ

"ଯା'ପରେ ଦେଖିବୁ ସୃଷ୍ଟି ଆନ ଆନ ହୋଇଯିବ । ସବୁ ଓଲଟପାଲଟ ହୋଇଯିବ । ତୁ ନିଜ ଆଖିରେ ଦେଖିବୁ ସେ ଚମତ୍କାର ସବୁ ।"

"ଯାଉନ, ଭାଇନା ! ତମର ସବୁବେଳେ ଏମିତି ଖାଲି ତହରା କଥା । କ'ଣଟା ହୋଇଯିବ କହିଲ ? ଏ ତଳ ଉପର ରହିବ ନା ନାହିଁ ? କଳାଧଳା ରହିବ ନା ନାହିଁ ? ବୋକ ଶୋଷ ରହିବ ନା ନାହିଁ – ହଁ ଖାଲି ବେଶ ବଦଳ ହୋଇପାରେ । ନାଟ ସୁଆଂଗ ଯାହା ଥିଲା, ଯେମିତି ଥିଲା, ସେମିତି ରହିବ ।"

"ତୁ ମାନିବୁ ନାହିଁ ମୁଁ ଜାଣେ । ଆଖିବୁଜି ବସିଥିବା ଲୋକକୁ କିଛି ଦିଶେନାହିଁ । ସତ କହିବାକୁ ଗଲେ ମୋ' କଥା ଶୁଣିଲେ ତତେ ଛାନିଆ ଲାଗୁଛି । ସବୁ ବଦଳିଗଲେ ତୋର ହାତଗୋଡ ବଦଳିଯିବ, ତୋର ଭିତର ବାହାର ବଦଳି ଯିବ; ତୁ ସୋରାସୋରା ହେଇଯିବୁ, ତୋ' ନିଜ ଧଂଦା ଉଜୁଡିଯିବ, ଏଇ ଭୟରେ ତୁ ମାନିବାକୁ ରହୁଁନାହୁଁ । ମାତ୍ର ହେଇ ଦେଖ୍ ମୁଁ କାନିରେ ଗଣ୍ଠି ପକେଇ କହୁଛି – ଏଥର ଏସବୁ ଯଦି କୁଢେଇ ହୋଇ ନ ପଡିଛି ମୋ' ନାଁ କାଳୁ ପ୍ରହରାଜ ନୁହେଁ ।"

ଟାଉନିଆ ଛୋଟ ଗାଁ ଟିକଲପୁର । ସିନେମାଘର ଅଛି । କଲେଜ ଅଛି । ବ୍ଲକ୍ ଅଫିସ୍ ଅଛି । ଧଳା ଆଉ ନାଲିପିଂଧା ଦି'ଟା ନେତା ଅଛନ୍ତି । ବସ୍ ଷ୍ଟାଣ୍ଡରେ ବେଳେ ବେଳେ ସଭା ହୁଏ । ଝିଅଙ୍କୁ ବାଟ ଚଲେଇ ଦିଅନ୍ତି ନାହିଁ । ଚଷୀ ନାହାନ୍ତି, ମୂଲିଆ ଅଛନ୍ତି । କମାର, କୁମ୍ଭାର, ତନ୍ତୀ, ବଢେଇ କେହି ନାହାନ୍ତି, ବୁଲାବିକାଳି, ଖୁଚୁରାବେପାରୀ ଭର୍ତ୍ତି ହୋଇଗଲେଣି ।

ଗାଁଟା ଆଉ ଗାଁ ନୁହେଁ, ଟାଉନ୍ ବି ନୁହେଁ ।

କାଳୁ ପ୍ରହରାଜ ତା' ଗାମୁଛା କାନିରେ ଗଣ୍ଠି ପକେଇ ବିମ୍ବା ପାନ ଦୋକାନୀ ଆଗରେ ଝାଡିହଉଥିଲା ।

ପାନ ଦୋକାନରେ ଫୁଙ୍ଗୁଳା ମୁହଁ ଦେହର ଚିତ୍ର – 'ଇସ୍' କହିଲା ଭଳି ଭଙ୍ଗି । ପାନଦୋକାନରେ ପାନ କମ୍, ସିଗାରେଟ୍ ବେଶି, ମାଳମାଳ ମସଲା ପୁଡିଆ ବେଶି । ଆଖିଠାର

ଉପରେ ଘେରା ଖୋପ ଭିତରୁ ମୁଠାରେ ଲୁଚେଇ ପାରିକରୁଥିବା ମାଲ ବେଶୀ । ସେଥିପାଇଁ ଗରାକ ଅଲଗା, ପଇସା ଅଲଗା । ବିମ୍ବା ନାଁକୁ ପାନ ଦୋକାନୀ, ତା'ର ବେପାର ଅଲଗା ।

କାଲୁ ପ୍ରହରାଜ ପୁରୁଣା ଅଭ୍ୟାସରେ ବିମ୍ବାକୁ ପାନ ମାଗେ । ଚୂନରେ ପାଣି ଶୁଖିଯାଇଥାଏ । ପାନପତ୍ର ପୋଗ୍ର ହୋଇଯାଇଥାଏ । ପୁଟ ଖଇର ନାହିଁ, ଗୋଟା ଗୁଆ ନାହିଁ । ଲବଂଗ, ଅଳେଇଚ, ଗୁଜୁରାତି, ଜାଇତ୍ରି କି ପଦାର୍ଥ ? କାଲୁ ଗାରୁ ଗାରୁ ହୋଇ ମେଂଗ୍ଟଏ ବାୟାଗୁଣ୍ଡି ପକେଇ ପାନ, ଚୂନ, ଟସୁଗୁଣ୍ଡ ଗୁଆ ଘେବେଇ ଅରମାନ ମେଣ୍ଟାଏ । ରାଗିଗଲେ ଏମିତି ପ୍ରଳୟ ଘୋଟିବା କଥା କହେ ।

ବିମ୍ବା ପାନ ଦୋକାନୀ ମନକୁ ମନ ହସିଲା । ଡାହାଣ କଟଟି ଉପରେ ହାତଘଣ୍ଟା ଆଉ ତିନିଟା ପଥରବସା ମୁଦିକୁ ଦେଖି ପୁନଶ୍ଚ ହସିଲା । 'ଶଳା ବୁଢାର ମୁଣ୍ଡ ଖରାବ ।' ଆବେ, ତୁ ଛାନିଆ ହଉଚୁ ନା ମୁଁ ? ଆମର ତ' କଚେପୁଅବାର । ଟିଫିନ୍ ଡବାରେ ଡବେ ନୋଟ୍ ଧରି ସବୁଦିନ ରାତିରେ ଘରୁ ଫେରୁଚି । ଜମି କୋଠାଘର, ଲୁନା ଗାଡି, ଦିନେ ଛାଡି ଦିନେ କୁକୁଡା ମାଉଁସ – ବର୍ଷକରେ ପାଞ୍ଚଲକ୍ଷ ହାତ ପଇଠ ହେଲେ ତୁ କାଲୁ ପ୍ରହରାଜ କ'ଣ ଏମିତି ରାମ୍ପୁଡି ବିଦାରି ହୁଅନ୍ତୁ ? ତୁ'ଟା ଏ ନୂଆ ହାଓ୍ୱାରେ ମିଶିପାରୁନାହୁଁ, ତତେ ସବୁ ଗନ୍ଧଉଚି ।

ସେ ଯେଉଁ ଘଟନା; ଯେଉଁଥିପାଇଁ କାଲୁ ପ୍ରହରାଜର 'ଜିଗର' ଦୋହଲିଯାଇଛି ସେଇଟା ତ ସହର ମୁଲକରେ ଦିନ ପ୍ରତିଦିନ ଘଟୁଛି । ଏଠି ଏତେ କଥା ହେଲାଣି, ସେଇଟା ହୁଅନ୍ତା ନାହିଁ ନା କ'ଣ ? ଜଙ୍ଗଲରେ ବାଘ ମାତିବା କୋଉ ନୂଆ କଥା, ସହରରେ ଅରଣା ଟୋକା ମାତିବା କୋଉ ନୂଆ କଥା ? ଭୋକ ଶୋଷ ମେଣ୍ଟେଇବାକୁ ବାଘ ହରିଣୀଟାକୁ ବିଦାରି ପକାଏ, ସେମିତି ପୁଞ୍ଜାଏ ଟୋକା ସେ ଟୋକୀଟାକୁ ଟେକିନେଲେ, ବିଦାରି ପକେଇଲେ । ସେ ମରିଗଲା । ଏମିତି ଆଉ ମରିବେ । ବଳେ କାଲୁ ପ୍ରହରାଜର ଦିହସୁହା ହୋଇଯିବ ନାହିଁ ? ଏମିତି ନହେଲେ ଭଲା ଏ ଶଳା ନିଲଠା ଗାଁଟା ସହର ହୋଇପାରିବ ?

ସେମାନେ ସବୁ ଷଣ୍ଢମାର୍କା ବଳୁଆ ଟୋକା, ହାତରେ କଙ୍କଣ, ଅଣ୍ଟାରେ ଛୁରି । ମଣ୍ଟୁବାବା ତାଙ୍କ ଲିଡର୍ । ସେ ନେତାଙ୍କ ଲୋକ, ନେତା ତାଙ୍କ ଲୋକ, ପୁଲିସ ଉଭୟଙ୍କ ଲୋକ । ମଣ୍ଟୁବାବା କଲେଜ ମାର୍କା, ସିନେମା ମାର୍କା, ନେତା ମାର୍କା, ଭୁଶୁଣ୍ଡା ଟୋକା । ସେ ଏକା ଭ୍ରମୁଥାଏ । ବେଳେବେଳେ ଚାରିପାଞ୍ଚ ଜଣ ତା' ସାଙ୍ଗରେ ଜୁଟିଯାଆନ୍ତି । ସେ ତାଙ୍କୁ ମାହାଳିଆ ଖୁଆଏ, ମାହାଳିଆ ପିଆଏ । ସେ ଯାହାକୁ ଯାହା କହିବ କେହି ନାହିଁ କରିପାରିବନାହିଁ । ମୁଣାରେ ମୁଠା ମୁଠା ନୋଟ ଧରି ସେ ଯାଏ । ଯୋଉଠି ଖାଏ, ସେଇଠୁ ଟଙ୍କା ନେଇଥାଏ । ଦୋକାନୀ ଦାନ୍ତ ନେଫେଡେଇ ନମସ୍କାର କରି ଆଡ ହେଇଯାଏ ।

ମଣ୍ଟୁବାବା ଆଉ ପାଞ୍ଚଜଣ ମିଶି ସେ ଟୋକୀଟାକୁ ଟେକିନେଲେ । ସମସ୍ତେ ଦେଖିଛନ୍ତି, ସମସ୍ତେ ଜାଣିଛନ୍ତି । ତାକୁ ସେମାନେ ବିଦାରି ପକେଇଲେ । ସେ ଛଟପଟ ହେଇ ମରିଗଲା ।

ଡାକ୍ତରମାଇନାରେ ଲେଖା ହେଲା, ସର ମହାକୁଡ, ପିତା – ଘନ ମହାକୁଡ, ଦେଉଳ

ସାହି, ଟିକଲପୁର, ଝୁଣ୍ଟିପଡି ମରିଗଲା । ପୁଲିସ କହିଲା – ଦୁର୍ଘଟଣାରେ ମୃତ୍ୟୁ । ଖବରକାଗଜ ଲେଖିଲା – ସର ମହାକୁତର ଶବ ସଂସ୍କାରପାଇଁ ମଣ୍ଟୁବାବୁ ଏକୋଇଶ ଟଙ୍କା ସାହାଯ୍ୟ କଲେ ।

ମଣ୍ଟୁବାବାକୁ ବିମ୍ବା ପାନ ଦୋକାନୀ ଘେରା ନିଶାପରୁ ମାଲ ଯୋଗାଇଦିଏ ମାହାଳିଆ । ତା' ପଇସା ଖୋପରେ ହାତ ପୂରାଇ ମଣ୍ଟୁବାବା ମୁଠାଭର୍ତ୍ତି ନୋଟ ତା' ମୁଣାରେ ଭର୍ତ୍ତିକରେ । ସେତେବେଳେ ଟଙ୍କିକିଆ, ଦି'ଟଙ୍କିଆ ଖୁଚୁରା ଗଳିପଡେ ରାସ୍ତାକୁ ।

ବିମ୍ବା କୃତକୃତ୍ୟ ହେଲା ପରି ହାତ ମନ୍ଥି ଚାହିଁଥାଏ । ଏଇତ ମାଲିକ ! ଏଣିକି ବିମ୍ବା ବାଘ ଅଇଁଠା, ତାକୁ ଆଉ କେହି ଛୁଇଁପାରିବେ ନାହିଁ । ମଣ୍ଟୁବାବାର ଉଦଣ୍ଡ ପ୍ରତାପ ନ ସହିଲେ ଏ ଗାଁଟା ସହର ହବ କେମିତି ?

କାଳୁ ପ୍ରହରାଜ ୟା ହାବୁଡେ ପଡିନାହିଁ । ପଡିଲେ କ'ଣ ହବ କେଜାଣି ? କାଳୁ ଯେମିତି ମୁଖରା, ଯଦି କେବେ ଏମାନଙ୍କ ଆଗରେ କହିଦିଏ, ସୃଷ୍ଟି ଆନ ଆନ ହେଇଯିବ । ଏମାନେ ସମସ୍ତେ ଉପରକୁ ଯିବେ ହୁଏତ ମଣ୍ଟୁବାବା ଚୁଇଂଗମ୍ ଚୋବେଇ ଚୋବେଇ ତାକୁ ଚାହିଁବ । କିଛି ହୁଏ ତ ବୁଝିବ ନାହିଁ । ନହେଲେ ବୁଢାର ଡାଇଲଗ୍ ଶୁଣି ଠୋ-ଠୋ ହସିବ । କହିବ, 'ଶାଲା ଜୋକର୍ କ'ଣ ବଡ୍ ବଡ୍ କରୁଚି' ।

ନାଇଁ ଯଦି ତା' ମିଜାଜ୍ ଗରମ ଥିବ ବୁଝୁନବୁଝୁ ତା' ଆଗରେ ମୁହଁ ଜୋର୍‌ରେ ହେମ୍ତି କ'ଣ ଏ ବୁଢା କହୁଚି ବୋଲି ବାଁ ହାତ ପଛପଟେ ତା' ଗାଲରେ ମାଛି ଓଡେଇଲା ପରି ଚଟକଣା ମାରିଦବ ।

ନହେଲେ ତା'ର ସେ ହାତେ ଉଞ୍ଚ ବୁଟ୍ ଜୋତାରେ କିକ୍ ମାରିଦବ ବୁଢାର ମର୍ମ ଉପରେ ।

ସେତିକିରେ କାଳୁ ପ୍ରହରାଜ, ଗାନ୍ଧିକି ଦେଖିଥିବା, ଇନ୍‌କିଲାବ୍ ଡାକିଥିବା ପଁଷଠି ବର୍ଷର ବୁଢା ଆଖି ଖୋସି ପାଟି ମେଲାଇ ଠିଆରେ ମରିଯିବ । ହାରିଗୁହାରି କେହି ଶୁଣିବେ ନାହିଁ । ଲୋକଙ୍କୁ ବୁଝେଇ ଦିଆଯିବ ଯେ ହାର୍‌ନିଆ ଟାଣିବାରୁ ବୁଢା ରାସ୍ତାରେ ପଡି ମରିଗଲା ।

ଆବ୍‌ବେ ବେକୁବ୍ ବୁଢା, ଏମିତି କାହିଁକି ଅଖିଡରେ ପ୍ରାଣ ଦବୁ ? ଯଦି ସୃଷ୍ଟି ଆନ ଆନ ହବ ବୋଲି ତତେ ଦୃଶ୍ୟ ହଉଚି ତୁନିପଡି ଅପେକ୍ଷା କରୁନୁ !

କାଳୁ ପ୍ରହରାଜ ବିମ୍ବା ଦୋକାନରୁ ବାୟାଗୁଣ୍ଡି ପାନ ଖାଇ ଯିବା ପରେ ବିମ୍ବା ମନକୁମନ ଏମିତି ଗୁଡାଏ ଭାବିଗଲା । କାଳୁ ପ୍ରହରାଜକୁ ସେ ଭାଇନା ବୋଲି ଡାକେ । ପିଲାବେଳୁ ତାକୁ ସେ ଦେଖିଆସିଛି, ଶୁଣିଆସିଛି । ଗାଁରେ ଜଣେ ମୁଖ୍ୟ ଲୋକ ଏଇ କାଳୁ ପ୍ରହରାଜ । ତାକୁ ସମସ୍ତେ ମାନନ୍ତି, ବିମ୍ବା ବି ମାନିଆସିଛି । ସେ ଯାହା କହେ ସତ କହେ । ହେଲେ ଏ ସମୟ ଅଲଗା – କିଏ ତାକୁ ଶୁଣୁଚି ।

ଏ ଯେଉଁ ମଣ୍ଟୁବାବା, ତା' ବାପ କ'ଣ କାଳୁ ପ୍ରହରାଜକୁ ଚିହ୍ନିନାହିଁ ? ଚିହ୍ନିଚି । ଜାଣିଚି, ହେଲେ ତାକୁ ଆଉ ସେ ଆଗଭଳି ମାନ୍ୟ କରୁନାହିଁ । ତା' ପାଖରେ ଏଇନା ଖୁବ୍ ପଇସା । ମଟରଗାଡି, ରାତିରାତି ସେ ଉଠିଆ ହେଇଗଲା । ଲକ୍ଷ ଲକ୍ଷ ଟଙ୍କା ଛାତବାଟେ ଅଜାଡିହେଲା ।

ଦି'ଟା ଯାକ ନେତା ତା' ବୈଠକରେ ଆସି ଜଳଖିଆ ପାନ ଖାଆନ୍ତି ।

ବିମ୍ବା ପାନ ଦୋକାନରୁ କାନିରେ ଗଣ୍ଠି ପକେଇ କାଳୁ ପ୍ରହରାଜ ତମତମ ହେଇ ଫେରିଲା । ତା' ଆଖି ଦି'ଟା ତହକୁ ଥିଲା । ଫିରିଙ୍ଗି ପଠାଣଙ୍କ ଜୁଲମ୍‌ଠାରୁ ଏ ଦୁରାଚାରୀଙ୍କ ଅତ୍ୟାଚାର ବଳେଇଗଲା । ଆଗଭଳି ହେଇଥିଲେ କାଳୁ ନିଜେ ବୁଝିଯାଇଥାନ୍ତା । ଯାହା ହବାର ହେଇଥାନ୍ତା, ସେଥିକୁ କାଳୁ ଖାତିର୍ କରିନଥାନ୍ତା ।

କିନ୍ତୁ ଏକଥା ନିଆରା । ତା' ହାତ ଜଳିଯାଉଛି ରାଗରେ । ସେ କିଛି କରିପାରୁ ନାହିଁ । ଏ ବିମ୍ବାଟା ପାଖରେ ଯେତେ ବଖାଣିଲେ ତା' ବରଡାରେ ନିଆଁ ଧରୁନାହିଁ । ଏଇଟା ନିଲଠାଟାଏ, ଦେଶଦ୍ରୋହୀ ।

ଗୋଟାଏ ଗଛମୂଳେ କାଳୁ ପ୍ରହରାଜ ଥମିଗଲା । 'ଦେଶଦ୍ରୋହୀ' ଶବ୍ଦଟାରେ ତା'ର ଦେହସାରା ଟାଣିଗଲା । ତା'ର ପୁରୁଣା କଥା ମନେପଡିଗଲା । ତାକୁ ସେ କାଳର ଧ୍ୱନିମାନ ଶୁଣାଗଲା । ସତେ ବା ଭୂଇଁକୁ ସେ ଧ୍ୱନି ଉଠୁଥିଲା, ଗଛପତ୍ରରୁ ଉଠୁଥିଲା । କାଳୁ ପ୍ରହରାଜ ତା' ଅଣାୟତରେ ପାଟି କରି ପକେଇଲା – "ବଂଦେ... ମାତରମ୍, ବନ୍ଦେ... ମାରତମ୍ ।"

ସେ ନିଛାଟିଆ ରାସ୍ତାରେ ତାକୁ କିଏ ଶୁଣିଲା କି ନ ଶୁଣିଲା କେଜାଣି, କାଳୁ କିନ୍ତୁ ଗଳାଫଟାଇ ଚିତ୍କାର କଲା । ହାତ ଛାଟିଲା ଶୂନ୍ୟକୁ । ଇସ୍ କାଳୁଟା ବାୟା ହେଇଗଲା ନା କ'ଣ ?

ନା, ସେ ବରଂ ଶାନ୍ତ ହେଇଗଲା । ସିଦ୍ଧ ମନ୍ତ୍ର ଜପିଲା ପରେ ଯାହା ହୁଏ ତାହା ହେଲା । ସେଇ ସମୟଟା ଭିତରେ, କାଳୁର ପିଣ୍ଡ ଥୟ ହେଇଗଲା । ଶୂନ୍ୟକୁ ଚାହିଁଲା ପରି ସେ ସ୍ଥିର ହେଇଗଲା । ତା'ପରେ ଦୀର୍ଘଶ୍ୱାସଟିଏ ବଳେ ବାହାରିଗଲା । କାଳୁ ଘରଆଡେ ମୁହେଁଇଲା । ତା' ଚାଲିରେ ଉଦ୍‌ବେଗ ନଥିଲା, ଢିଲାପଣ ବି ନଥିଲା ।

କାଳୁ ପ୍ରହରାଜର ସଂସାର କେବଳ ତା' ପୁଅ, ବୋହୂ ଆଉ ନାତି । ସ୍ତ୍ରୀ ମରିବାର ପନ୍ଦରବର୍ଷ ହେଇଗଲାଣି । ଉପାର୍ଜନ ଭିତରେ ଜମିରୁ କିଛି ଧାନ ଆସେ । ବର୍ଷକ ଖାଇବା ଚଳିଯାଏ । ପୁଅ ଖଣ୍ଡେ କ'ଣ ଚାକିରି କରେ, କିଛି ପଇସା ପାଏ ।

କାଳୁ ହାତରେ କିଛି ହେଲାନାହିଁ । ଚାଷ ହେଲାନାହିଁ । ବେପାର ଧନ୍ଦା ହେଲାନାହିଁ । ବାରବର୍ଷରେ ବାନର ସେନାରେ ମିଶି ଡେଇଁଲା । ସେଇଥିରେ ମାତିଗଲା ଯେ ମାତିରହିଲା ଜୀବନସାରା । କେମିତି ଗୋଟାଏ ଓସାରିଆ ହେଇଗଲା, ତା' ଜୀବନ; ଗହୀର ହେଲାନାହିଁ କି ଚେର ଧରିପାରିଲା ନାହିଁ । କାଳୁ ଏକପ୍ରକାର ଉପୁଡିପଡିଲା ।

ନେତାମାନେ ଶାସନ କଲେ, କାଳୁକୁ ନଚେଇଲେ ଗାଁ ସହରରେ । କାଳୁ ଖୁବ୍ ଡେରିରେ ବୁଝିଲା ଯେ, ସେ ଦେଶପାଇଁ କିଛି କରୁନାହିଁ, ଖଟୁଛି କେବଳ କେତେଗୁଡାଏ ଚାଲାକ୍ ଲୋକଙ୍କ ପଞ୍ଝାରେ ଦେଶକୁ ସମର୍ପି ଦେବାପାଇଁ । ସେ ସହରରେ ନେତାଙ୍କ ଚପରାସୀ ହେଲାନାହିଁ । ଗାଁକୁ ଫେରିଆସିଲା ।

ଏଇଠି 'ଦେଶ' 'ଦେଶ' ହେଲା । କେହି ବୁଝିଲେ ନାହିଁ । ଗାଁରେ ଗୁଡାଏ ଲୋକ ରାତାରାତି

ଧନୀ ହୋଇଗଲେ । ଧନୀଯାକ ଉଦଣ୍ଡା ହୋଇଗଲେ । ଘର ଉଜୁଡ଼ିଗଲା, ଜମି ହଡ଼ପ ହେଲା । ନେତା ବାହାରିଲେ । ମିଛ ଖଚ ବ୍ୟାପିଲା । ମାତ ତସ୍କରି ବଢ଼ିଲା ।

କାଲୁ ପାଟିକଲା । ଯୁଝିଲା । କାହାକୁ ଡାକ୍ତରଖାନା ନେଲା, କାହାକୁ କଚେରିରେ ଓକିଲ ପାଖକୁ ନେଲା । ଅଫିସ୍‌ର ବିରୋଧରେ ସାକ୍ଷ୍ୟ ଦେଲା, ନେତାକୁ ନଙ୍ଗଳା କଲା । ଗାଁରେ ଲୋକେ ମାନିଲେ । ବଡଲୋକଯାକ ଛକିଲେ । କେତେଥର କାଲୁକୁ ନେତାମାନେ ମଣେଇଲେ ତାଙ୍କୁ ମୁଣାରେ ପୂରେଇବାକୁ । କେତେଥର ଟ୍ରକ୍ ମଡେଇଦେବାକୁ ମସୁଧା କଲେ ।

କାଲୁର ବୟସ ବଢ଼ିଲା, ଦାୟିତ୍ୱ ବଢ଼ିଲା । ବଳ କମିଲା । ହେଲେ ସାହସ କମିଲା ନାହିଁ । କାଲୁ ଯାହା ଥିଲା ତାହା । ମୁହେଁ ମୁହେଁ କହିଦେବ – ସତଟା ସତ, ମିଛଟା ମିଛ । ଦେଖୁଦେଖୁ କାଲକୁ ପଁଷଠି ହେଇଗଲା ।

ସେଦିନ ସେ ଗଛମୂଳେ କାଲୁ ନିଷ୍ପତି ନେଇଗଲା ।

ଘରକୁ ଫେରି ଦାଣ୍ଡ ବଖରାରେ ବସି ପାଣି ଲୋଟାଏ ପିଇଲା । ପୁଅକୁ ଡାକ ପକେଇଲା ।

"କ'ଣ ହେଲା ବାପା" କାହିଁକି ଏମିତି ଡାକ ପକେଇଚ । ସାହି ପଡିଶା ଚମକୁଛି ।"

"ଆରେ ମୋ' ପୁଅକୁ ଯେମିତି ମନହେଲା ସେମିତି ଡାକିବି ! ବଡପାଟିରେ ଡାକିଲେ ତତେ ଲାଜମାଡୁଚି କି କହ ! ଏ ସାହି ପଡିଶା କ'ଣ ଚମକିବେ ? ଏଇଟା ପରା ମୁର୍ଦାର ସାହି । ଏ'ଠି ନିଆଁଚେଙ୍କ ଖାଇଲେ ବି କତ ଲେଉଟେଇ ଦେବେ, ଉଠିବେ ନାହିଁ । ମୁଁ ତାଙ୍କୁ ଚମକେଇବି !"

ତା'ପରେ କାଲୁ ସ୍ଥିର ହେଇଗଲା । କହିଲା, "ଦେଖ୍ ଗୋପ, ତତେ କାଲିଠୁ ସତର୍କ ରହିବାକୁ ହବ । ମତେ କାବୁ କରିବାକୁ ସେମାନେ ତତେ ଆଗୁଳି ଦେବେ । ହେଲେ ତୁ ଜମା ଧରା ଦବୁନାହିଁ ।"

"କୋଉଠି କ'ଣ ଗାଗି ମାଗି ଆସିଛ – କ'ଣ ସବୁ ସେମିତି କହୁଚ ? ତମକୁ କ'ଣ କାବୁ କରିବେ, ମତେ ଆଗୁଳିବେ ? ଚାଲ, ଗୋଡହାତ ଧୋଇ ଖାଇପକାଅ । କାଲି କଥା କାଲି ଦେଖିବା ।"

"ନା, ମୁଁ ବାହାରିଲି ମୋର ରାତି ସାରା କାମ ଅଛି । ତୁ କାଲି ବଳେ ବୁଝିଯିବୁ ।"

ଘର ଭିତରୁ କାଲୁ ନଖାଇ ବାହାରିଗଲା ।

ଗୋପ ପ୍ରହରାଜ ପାଇଁ ତା' ବାପର ଏମିତି ଆଚରଣ କିଛି ନୂଆ କଥା ନୁହେଁ । ହେଲେ ତାକୁ କାହିଁକି ସେ ସତର୍କ ରହିବାକୁ କହିଲା ସେକଥା ଗୋପ ବୁଝିପାରୁ ନଥିଲା ।

ତା' ଆରଦିନ ସକାଳ ଟିକଲପୁର ଲୋକଙ୍କୁ ଭାରି କଉତୁକିଆ ଲାଗିଲା । କାନ୍ଥ ବାଡ ରାସ୍ତାରେ ଏଠି ସେଠି କାଗଜ ପୋଷ୍ଟର ମରାହେଇଥିଲା । ସବୁଠି ଲେଖାହେଇଥିଲା 'ବନ୍ଦେ ମାତରମ୍'! ଅଧେ ଲୋକ ମୁରୁକି ହସିଲେ ଆଉ ଅଧେ ଭୃରୁ କୁଞ୍ଚେଇଲେ । ପୁରୁଣା ଲୋକେ ଛନଛନ ହେଇ ଏଣେତେଣେ ଚାହିଁଲେ – କ'ଣ କୋଉଠି ହେଲା କି ଦେଖିବାପାଇଁ ।

ଛୋଟ ପିଲେ ରାସ୍ତାରେ ଧାଇଁଲେ । ହେଇ ଦେଖ୍ – ରାସ୍ତାରେ, ଦେଖ୍ କାନ୍ଥରେ, ଦେଖ୍

ବାଡରେ – କହୁ କହୁ ରଚିଲେ 'ବନ୍ଦେ ମାଗରମ୍', 'ବନ୍ଦେ ମାତରମ୍' ।

ଲୋକ ପୁଞ୍ଜି ପୁଞ୍ଜି ହେଲେ । ପଚରାପଚରି ହେଲେ । "ଆଜି କାଣ କି ?" "ଏଇଟା କ'ଣ ସରକାରୀ ?" ଆଜି ପଡିଆରେ ପତାକା ଟେକାହେବ କି ? ମିଠେଇ ବଣ୍ଟାହେବ କି ? ମନ୍ତ୍ରୀ ଆସିବେ କି ? ସଭା ହବ କି ?

ଆଉ କେହି ପଚାରିଲେ, "ଆଜି କ'ଣ ଦୋକାନ ବଜାର ବନ୍ଦ ହବ କି ? ସ୍କୁଲ କଲେଜ ଛୁଟି ହେବ କି ? ଶୋଭାଯାତ୍ରା ହବ କି ? ସମସ୍ତେ ଝଣ୍ଡାଧରି ବାହରିବେ କି ?"

ଦେଖ ଦେଖ, ସବୁଠି ଖାଲି ଧଳାକାଗଜରେ ନାଲି ସ୍ୟାହିରେ ଲେଖାହେଇଛି, 'ବନ୍ଦେ ମାତରମ୍', 'ବନ୍ଦେ ମାତରମ୍' – କୋଉଠି କିଛି ଭୋଟ ଚିହ୍ନ ନାହିଁ ।

ଏଇଟା ସରକାରୀ ହେଇଥିବ ।

"ଯାଉନୁ । ସରକାରର କ'ଣ ପଡିଚି 'ବନ୍ଦେ ମାତରମ୍' ଲେଖି କାନ୍ଥ ବାଡରେ ମାରିବାକୁ ।"

"ସରକାର କ'ଣ ବୁଝେ ବନ୍ଦେ ମାତରମ୍ କହିଲେ ?"

ଏଇଟା ସରକାରୀ ନୁହେଁ । ହେଇଥିଲେ କାଗଜ ଛୋଟ ହେଇଥା'ନ୍ତା । ସ୍ୟାହି ପାଣିଚିଆ ହେଇଥାନ୍ତା । କୋଣକେ, ପା'କେ ଖଣ୍ଡେଲେଖା ମରାହେଇଥାନ୍ତା । ପାଣିଆ ଅଠା ଅଧେ ଲାଗିଥାନ୍ତା, ଅଧେ ଓହଳି ଯାଇଥାନ୍ତା ।

ସରକାରୀ ହୋଇଥିଲେ ଜିପ୍‌ଗାଡି ବୁଲିଥାନ୍ତା । ଘଷରା କଳଗାଉଣା ବାଜିଥାନ୍ତା । କିଛି ବୁଝାପଡୁ ନଥାନ୍ତା । କିଚିରିମିଚିରି ରଡି ଶୁଭୁଥାନ୍ତା ।

କିଏ ତା'ହେଲେ ଏସବୁ ଲେଖିଲା ? – 'ବନ୍ଦେ ମାତରମ୍', 'ବନ୍ଦେ ମାତରମ୍', 'ବନ୍ଦେ ମାତରମ୍' ! ଆଉ କିଛି ଲେଖିଲା ନାହିଁ । କ'ଣ ଗୋଟାଏ ମତଲବ୍ ନଥାଇ କ'ଣ ସେ ଏତେ କାଗଜ କାଳି ଖର୍ଚ୍ଚ କରିଛି ?

ବୁଢାମାନେ କହୁଛନ୍ତି, "ଆଗେ 'ବନ୍ଦେ ମାତରମ୍' କହିବା ମାତ୍ରେ ବାନ୍ଧି ନେଉଥିଲା ସରକାର । ଏଇଟା କୁଆଡେ ସବୁଠୁ ବଡ ସରକାର ବିରୋଧୀ ଧ୍ୱନି । ଏବେ କ'ଣ ସରକାର ଛାଡିବ କି ? ଦେଖିବ, ଆଉ କିଛି ସମୟ ଗଲେ ପୁଲିସ ପଲଟଣ ମାଡିଆସିବ । ଲାଠିବନ୍ଧୁକ ଧରି ବଡ ବଡ ଟ୍ରକ୍‌ରୁ ଡେଇଁପଡିବେ । ଖେଦିଯିବେ ଏ ରାସ୍ତାଯାକ । ଚୁଙ୍ଗା ଲଗେଇ କହିବେ ଚାଲିଯାଅ ସବୁ । ଦଙ୍ଗା ହେଇଯିବ । କେହି ପଦାକୁ ବାହାରିଲେ ବାନ୍ଧି ନିଆଯିବ ।"

'ବନ୍ଦେ ମାତରମ୍' ଶୁଣିଲେ ସରକାର କାହିଁକି ଘାବରଉଚି ? ଏଥିରେ ସରକାର ବିରୋଧରେ ତ' କିଛି ନାହିଁ ।

"ଘାବରେଇବ ନାହିଁ ? ଏଇଆ କହି କହି ପରା ସାରା ଦେଶରେ ନିଆଁ ଲାଗିଗଲା । କେତେବଡ ସରକାରକୁ ଏଠୁ ଏ 'ବନ୍ଦେ ମାତରମ୍' ବାଲା ତଡିଦେଲେ । ଏବେ ପୁଣି ଏ ଧ୍ୱନି ଉଠିଲେ ଏ ସରକାରଟାକୁ ଘଉଡି ଦେବାକୁ କେତେ ଘଡି ଲାଗିବ ? ସେଇ ଭୟ ।"

ରାସ୍ତାରେ, ଗଳିରେ, ବଜାରରେ, 'ବନ୍ଦେ ମାତରମ୍' ଗୁଞ୍ଜରିଲା । ଲୋକେ ପଚରା ପଚରି

ହେଲେ, "କିଏ ଲେଖିଚି ୟା'କୁ – କୋଉ ଦଳ, କୋଉ ଗୋଷ୍ଠୀ ? କିଏ ସେମାନେ ?"

ସକାଳ ପହରେ ସେମାନେ କାଉ କାଉ ହଉଥିଲେ । କେମିତି କ'ଣ ହେଲା କେଜାଣି, ସେମାନେ ମୁହୂର୍ତ୍ତେ ତୁନି ପଡିଗଲେ । ସମସ୍ତଙ୍କ କାନ ଡେରି ହେଇଗଲା । ଦୂରରୁ ବଜାର ଆଡୁ ଶୁଣାଯାଉଥିଲା 'ବନ୍ଦେ... ମାତରମ୍', 'ବନ୍ଦେ... ମାତରମ୍'!

ଏମାନଙ୍କ ଭଳି ସେ ଲାଜେଇଲା ପରି, ଲୁଚେଇଲା ପରି, ଅପରାଧ କଲା ପରି କହୁ ନଥିଲା ।

ସେ ଗର୍ଜୁଥିଲା । ଗଳା ଫଟେଇ ଚିତ୍କାର କରୁଥିଲା 'ବନ୍ଦେ... ମାତରମ୍' ।

ସାରା ବଜାର, ସାରା ରାସ୍ତା ସେ ଧ୍ୱନି ଶୁଣାଯାଉଥିଲା । ତାକୁ କେହି ଆଉ ଦୋହରାଉ ନଥିଲେ ।

ଲୋକଙ୍କ ମନେହେଲା, ଆଗ୍ରହ ହେଲା, ଦେଖିବାକୁ ସେ କିଏ । ବଳେ ସେମାନେ ଘୁଞ୍ଚିଲେ ସେଇଆଡେ । ଘୁଞ୍ଚି ଘୁଞ୍ଚି ଟାଉଟାଉ ଚାଲିଲେ । ସବୁ ପାଖଆଖ ଗଳିରୁ, ପାଞ୍ଚ ଦଶ ପନ୍ଦର ଜଣ, ଟୋକା ବୁଢା ପିଲା ସବୁ ସେଇଆଡେ ଚାଲିଲେ ।

ଖରା ପଡିଆସିଥିଲା । ଅଳ୍ପ ପବନରେ ଗୋଟାଏ ତ୍ରିରଙ୍ଗା ଝଣ୍ଡା ଦୋହଲୁଥିଲା । ଗୋଟାଏ ଡେଙ୍ଗା ନହକା ମଣିଷ ସେ ଝଣ୍ଡାଧରି ଚାଲିଥିଲା ଏକମୁହାଁ । ପ୍ରତି ତିନି ପାହୁଣ୍ଡରେ ଗର୍ଜୁଥିଲା 'ବନ୍ଦେ ମାତରମ୍' – ତା'ର ସ୍ୱର ଭିତରେ ତା' ପ୍ରାଣ ଫାଟିପଡୁଥିଲା । ତା' ମୁଣ୍ଡର ଧଳାବାଳ ଅଲରା ହେଇ ପବନରେ ଉଡୁଥିଲା ।

ତା' ମେଲା ବୁକୁରେ, ବେକରେ ଏଠିସେଠି ନାଲି ସ୍ୟାହି ଲାଗିଥିଲା । ଲୁଗାରେ ଛପା ଛପା ନାଲି । ମୁହଁରେ ଏଠି ସେଠି ନାଲି ।

ସେ ଯୁଦ୍ଧରୁ ଫେରିଥିବା କ୍ଷତବିକ୍ଷତ ପଦାତିକ ପରି ଦିଶୁଥିଲା ।

ତା' ପାପୁଲିରେ, ଆଙ୍ଗୁଠି ସନ୍ଧିରେ ଅଠା ଶୁଖିଯାଇଥିଲା । ଝଣ୍ଡା ବାଉଁଶରେ ହାତ ଲାଖିଯାଇଥିଲା ।

ଜଣେ କିଏ ଚିହ୍ନଟ କରି କହିଲା, "ଆରେ ଇଏତ କାଲୁ ପ୍ରହରାଜ !" ଓ' କାଲୁ ପ୍ରହରାଜ ! କାଲୁ ପ୍ରହରାଜ ! ହେ, ହେ, ହି... ହି ।

ଚାପା ହସ ସବୁ ଗୋଟାଏ ଗର୍ଜନରେ ହଜିଗଲେ । 'ବନ୍ଦେ... ମାତରମ୍ ।' ହସୁଥିବା ଲୋକଙ୍କର ପଞ୍ଜରା ଦୁରୁଦୁରୁ ହେଲା । ପୁଣି ତିନି ପାହୁଣ୍ଡରେ 'ବନ୍ଦେ... ମାତରମ୍', 'ବନ୍ଦେ... ମାତରମ୍' ।

କାଲୁ ପ୍ରହରାଜର ଆଖି ତହକୁ ଥିଲା । ନାକପୁଡା ଫୁଲିଯାଉଥିଲା । ଗଳା ଫୁଲି ଯାଉଥିଲା । ମୁହଁ ଉପରକୁ ରକ୍ତ ଉତୁରି ଆସୁଥିଲା ପ୍ରତି ଡାକରେ । ସତେବା ଆବିଷ୍ଟ ହୋଇ କାଲୁ ପ୍ରହରାଜ ଆଭିଚାରିକ ମନ୍ତ୍ର ପାଠ କରୁଥିଲା । ଆବାହନ କରୁଥିଲା ମହାକାଳୀକୁ ।

କାହାରି ସାହସ ହେଲାନାହିଁ ତା' ଆଗରେ ଠିଆହେବାକୁ । ସେ ଖାଲିପାଦରେ ଝଣ୍ଡାଧରି

ଏକୁଟିଆ ଆଗେଇଯାଉଥିଲା । ଗର୍ଜୁଥିଲା 'ବନ୍ଦେ... ମାତରମ୍' ।

ଟାଣିହେଲାପରି ଲୋକେ ତା' ପଛରେ ଚାଲିଥା'ନ୍ତି ।

କାଳୁ ବଜାର ସେପାରି ବିମଳା ମନ୍ଦିର ପାର୍ଶ୍ୱରେ ଯାଇ ଠିଆହେଲା । ମନ୍ଦିର ବେଢା ଭିତରେ କାନ୍ଥକୁ ଡେରି ଝଣ୍ଡାଟାକୁ ରଖିଦେଲା । ଲମ୍ବ ଦଣ୍ଡା ହୋଇ ସାଷ୍ଟାଙ୍ଗ ପ୍ରଣିପାତ ହେଲା ।

ଏତେ ଲୋକଙ୍କ ଭିଡ ଦେଖି ପୂଜକ କୋଉଠି ଥିଲା ଝପଟିଆସିଲା । ଲୋକେ କାଉ କାଉ ହେଲେ । ସେବକ ମାଳୀ ଜୁଟିଗଲେ । ମନ୍ଦାରମାଳ ଟେକି ଧରିଲେ । ନଡିଆ ଉଖୁଡା ଟେକି ଧରିଲେ ଗରାକଙ୍କ ପାଇଁ ।

କାଳୁ ପ୍ରହରାଜ ଭୂଇଁରୁ ଉଠି କାହାକୁ କିଛି କହିଲା ନାହିଁ ।

ପୂରା ଦମ୍ ଲଗେଇ ରଡିଲା 'ବନ୍ଦେ... ମାତରମ୍' ।

ସାଇଁକିନା ପାଲଗଦାରେ ନିଆଁ ଲାଗିଗଲା । ପାଞ୍ଚ ସାତ ଜଣ 'ବନ୍ଦେ... ମାତରମ୍' ପାଳି ଧରିଲେ ।

ଆଉଥରେ ଗର୍ଜିଲା କାଳୁ ପ୍ରହରାଜ 'ବନ୍ଦେ ମାତରମ୍' । ସାରାଲୋକ ମନ୍ଦିର ବେଢା ଭିତରେ ଚିତ୍କାର କଲେ 'ବନ୍ଦେ ମାତରମ୍' ।

ବାରବାର ଡାକଦେଲା କାଳୁ । ଡାକଦେଲା ମନ୍ଦିର, ପାଚେରି, ବେଢା । ଉତ୍ତରରୁ ସଂକୋଚ ଖସିପଡିଲା । ଭୟ ଉଭେଇଗଲା । ସମସ୍ତଙ୍କ ଛାତି ଉଭାରିଆସିଲା । ଆଖି ତହକିଲା । ମୁହଁକୁ ରକ୍ତ ଫଣଫଣେଇ ଆସିଲା । ସମସ୍ତଙ୍କ ମିଳିତ କଣ୍ଠରେ ଧ୍ୱନିତ ହେଲା ମହାମନ୍ତ୍ର – 'ବନ୍ଦେ ମାତରମ୍' । କାକର ଦେହସାର ଶୀତକଣ୍ଟା ମାରିଗଲା । ଆଖି ଛଳଛଳେଇଗଲା । ସ୍ୱର ଓଦା ଓଦା ଶୁଭିଲା । ସେ କାନ୍ଦିପକେଇବ କି ? ତା'ର ଅତୀତ ଜୀଇଁ ଉଠିଲା । ମାଟି, ପବନ, ଆକାଶ ପୁଣିଥରେ ଦୁରୁଦୁରୁ କରିବାର ସେ ଅନୁଭବ କଲା । ତା' ଦେହକୁ କାହୁଁ ଚଢିଆସିଲା ଅମାପ ବଳ । ସେ ଝଣ୍ଡାଧରି ରାସ୍ତାକୁ ମୁହାଁଇଲା ।

କ'ଣ ମନପାଇଲା କେଜାଣି ଦେବୀଙ୍କ ପୂଜକ ତାଙ୍କ ସିନ୍ଦୂର ଆଣି ଯେତେ ପାରିଲା ସମସ୍ତଙ୍କ କପାଳରେ ଶିରି କାଟିଦେଲା ।

କାଳୁର ଫେରନ୍ତା ଯାତ୍ରାର ରୂପ ବଦଳ ହେଇ ଯାଇଥିଲା । କାହାକୁ କିଛି କହିବା ପ୍ରୟୋଜନ ହେଲାନାହିଁ ।

କାହିଁକି ସେମାନେ ତା' ପଛରେ ରହି ସେମିତି ଧ୍ୱନି ଦେଉଥିଲେ ? କାହିଁକି ବେଳୁବେଳ ସେଥିରେ ଅଧିକରୁ ଅଧିକ ଗ୍ରାମ ଫାଟିପଡୁଥିଲା ?

ତାଙ୍କୁ ମତେଇ ଦେଇଥିଲା କିଏ ? ପବନ ଥରଥର ହେଉଥିଲା ଆବେଗରେ । ସେମାନେ ଗାଇ ଚାଲିଥିଲେ ଅମୋଘ ମନ୍ତ୍ର – 'ବନ୍ଦେ... ମାତରମ୍' ।

ଏଥର ସାରା ଚିକଲପୁର କମ୍ପିଲା । ସକାଳ ପହର ନିଦ ଭାଙ୍ଗିଗଲା । ଝରକା କବାଟ ଫିଟିଗଲା । ଘର ଭିତରେ ଫୁର୍‌କୁଟିଆ ଉଷୁମିଆ ଗନ୍ଧ ଉଡିଗଲା ଅଭିମନ୍ତ୍ରିତ ପବନରେ ।

ଆଉ କିଛି ଆସି ମିଶିଗଲେ । ଲୁଙ୍ଗିପିନ୍ଧା ମଳିମୁଣ୍ଡିଆ । ଘର ଦୁଆରେ ପୁଷ୍ଟା ପୁଷ୍ଟା ମାଇକିନା, ମରଦ ପିଲା, ବୁଢା ଏ ଶୋଭାଯାତ୍ରା ଦେଖିଲେ । ଭୋଟ ବେଳେ ଜିପ୍ ଭିତରେ ଧୂଳି ଉଡେଇ ଯାଉଥିବା ପାଟିତୁଣ୍ଡ ପରି ଏଇଟା ନଥିଲା ।

ଏଥିରେ ଭୋଟ ଚିହ୍ନ କୋଉଠି ନଥିଲା । ନିର୍ମଳ ତ୍ରିରଙ୍ଗା ଝଣ୍ଡା । ନିର୍ମଳ ମାତୃମନ୍ତ୍ର – 'ବନ୍ଦେ ମାତରମ୍' । କେହି କହୁନଥିଲା 'ଅମୁକ ବାକ୍ସରେ ଭୋଟ୍ ଦିଅ । ଅମୁକ ଚିହ୍ନରେ ମୋହର ମାରି ସମୁକ ଭାଇକୁ ଜିତାଇଦିଅ' ।

ଅତ୍ୟନ୍ତ ଅଶ୍ଳୀଳ ଶୁଭିଥାନ୍ତା ସେଦିନ ସକାଳେ ଏ ଘଷରା କଥା । କାଳୁ ବଜାର ଛକ ପାଖରେ ଯାଇ ଠିଆହେଲା ।

ବୁଲିପଡି ସମସ୍ତଙ୍କୁ ଚାହିଁ ତିନିଥର ଧ୍ୱନି ଦେଲା । ପ୍ରତିଥର ପତାକା ଉଠିଯାଉଥିଲା ଆକାଶକୁ ।

ତା'ପରେ ପଶ୍ଚିମ ଆକାଶକୁ ଚାହିଁ କାଳୁ ପ୍ରହରାଜ ଉଚ୍ଚାଟରେ ପ୍ରାର୍ଥନା କଲା – ମା, ଆଉ ଥରେ ମହିଷାସୁରକୁ ସଂହାର କର । ଆମକୁ ରକ୍ଷା କର ମା' ! ଦୁର୍ଜନ ଅସୁରମାନଙ୍କର ବିନାଶ ହେଉ । 'ବନ୍ଦେ ମାତରମ୍' । ଲମ୍ପଟ ଧର୍ମଷକାରୀର ମୃତ୍ୟୁ ହେଉ, ଦେଶର ଲହୁ ଲୁହ ଶୋଷୁଥିବା ଲାଭଖୋର, ଲାଞ୍ଚଖୋର, ଜୁଆଖୋରମାନଙ୍କର ମୃତ୍ୟୁ ହେଉ – 'ବନ୍ଦେ ମାତରମ୍' । ପାପୀ, ମିଛୁଆ, ଖଚୁଆମାନେ ଧ୍ୱଂସ ହୁଅନ୍ତୁ – 'ବନ୍ଦେ ମାତରମ୍' । ଦେଶକୁ ମୁକ୍ତି ଦେ ମା' ! ଆମକୁ ମୁକ୍ତି ଦେ ! ଦେଖିବାକୁ ଦୃଷ୍ଟି ଦେ । ବୁଝିବାକୁ ବୁଦ୍ଧି ଦେ ମା', ଆମକୁ ଶକ୍ତି ଦେ ! ବିଶ୍ୱାସ ଦେ !

କାଳୁ ପ୍ରହରାଜର ଲୁହସରସର କଣ୍ଠସ୍ୱର ଆଉ ଫିଟିଲା ନାହିଁ । ସେ ହାତଯୋଡି ପ୍ରଣାମ କଲା ।

ମୁହୂର୍ତ୍ତକରେ ମଥାଝାଙ୍କି ପୁଣି ଗର୍ଜିଲା । 'ବନ୍ଦେ ମାତରମ୍' ।

କାଲି ସକାଳୁ ପ୍ରତିଦିନ ପ୍ରଭାତଫେରି ହେବ । ଏ ଗାଁର ସମସ୍ତଙ୍କୁ 'ବନ୍ଦେ ମାତରମ୍' ମନ୍ତ୍ର ଶୁଣାଇବାକୁ ହେବ । ପୁଣିଥରେ ମୁକୁଳେଇବାକୁ ହେବ ମଣିଷମାନଙ୍କୁ । ଆଉ ଥରେ ସ୍ୱାଧୀନତାର ସଂଗ୍ରାମ ହେବ । ଏତିକିବେଳେ, ଏଇଠୁ ଆରମ୍ଭ ହେବ ପ୍ରଭାତଫେରି । ଦେବୀପୀଠ ପାଖରେ ପ୍ରଣାମ କରି ଏଠିକି ଫେରିଆସିବ । ଯୁଗ ବଦଳିବ । ଦୁଷ୍ଟ ସଂହାର ହେବ । ଭୋକ-ଶୋଷ ଦୂର ହେବ । ଉଚ୍ଚ-ନୀଚ ଦୂର ହେବ । 'ବନ୍ଦେ ମାତରମ୍' ।

'ବନ୍ଦେ... ମାତରମ୍... ବନ୍ଦେ ମାତରମ୍' – ଏତିକିବେଳେ ସତକୁ ସତ ଜିପ୍ ଗୋଟାଏ ଆସି ପହଞ୍ଚିଲା । ସେଥିରୁ ପୁଲିସ ଖପ୍‌ଖାପ୍ ଡେଇଁପଡିଲେ ।

କାଳୁ ପ୍ରହରାଜ ପାଖକୁ ପୁଲିସବାବୁ ଆସି ଗୋଡ ଫରକଟେଇ ଠିଆହେଲା । ଗୋଡଠଉ ମୁଣ୍ଡଯାଏଁ ଚାହିଁଲା ।

"ତମ ନାଁ କ'ଣ ?"

"କାଳୀ ପ୍ରସନ୍ନ ପ୍ରହରାଜ – ଓରଫ କାଳୁ ପ୍ରହରାଜ ।"

"ଏଠି କ'ଣ କରୁଛ ?"

"ଲୋକଙ୍କ ସାଙ୍ଗେ କଥାବାର୍ତ୍ତା କରୁଚି ।"

"ତମେ ଏମାନଙ୍କ ଉତ୍ତେଜିତ କରି ସହରର ଶାନ୍ତିଭଙ୍ଗ କରିଛ । ବିନା ଅନୁମତିରେ ଶୋଭାଯାତ୍ରା ବାହାର କରିଛ । ବିନା ଅନୁମତିରେ କାନ୍ଥବାଡରେ ପ୍ରଚାରପତ୍ର ମାରିଛ... ।"

ସେ ଆଉ କ'ଣ କହିଥାନ୍ତା ?

ହଠାତ୍ କାଳୁ ପ୍ରହରାଜ ଉପରକୁ ମୁହଁ କରି ଠୋ-ଠୋ ହସିଲା, ତା'ର ଧଳା ବାଳ ଫରଫର୍ ଉଡିଲା । ତା' ଶିରା ପ୍ରଶିରା ଟାଣିହେଲା । ପେଟ ଖାଙ୍କେଇ ଗଲା । ସେ ହସ ଠାଇ ଠାଇ ବାଡେଇହେଲା କୋଠା ଘରମାନଙ୍କରେ, ଗଛ ଶିଖରରେ, ଆକାଶରେ ।

..."ଦେଖ ଭାଇମାନେ, ଆମ ଆଇନରକ୍ଷକଙ୍କୁ । ଗୋରା ସର୍କାର ବେଳେ ଯାହା, କଳା ସର୍କାରବେଳେ ବି ତାହା ।"

ରାଷ୍ଟ୍ରୀୟ ପତାକାକୁ ପୂର୍ଣ୍ଣ ମର୍ଯ୍ୟାଦାରେ ଆକାଶକୁ ଟେକି ମୁଁ ସହରର ରାସ୍ତାରେ ଚାଲିଛି । ବୁକୁ ଉପରେ ତ୍ରିରଙ୍ଗା ଷ୍ଟାମ୍ପକୁ ପିନ୍ ମାରି ମୁଁ ନିଶା ବ୍ୟବସାୟ କରିନାହିଁ । ଚୋରା ଚାଲାଣ କରିନାହିଁ । ମଦ ଗ୍ଲାସ୍‌ରେ ରାଷ୍ଟ୍ରୀୟ ପତାକାର ଛାପା ମାରି ମାତାଲ୍ ହୋଇନାହିଁ । ଏ ବାବୁ କହୁଚନ୍ତି ମୁଁ ଅପରାଧ କରିଛି ।

ପୁଲିସବାବୁ ଉଡୁକି ଆସି କହିଲା, 'ଚୁପ୍‌କର, ମୁଁ ଯାହା ପଚାରୁଚି କହ ! ଆଜେବାଜେ କଥା କହନାହିଁ ।

"ସେ ଠିକ୍ କହୁଛନ୍ତି, ସେ କହିବେ ।"

"ସେ କହିବେ – ସେ କହିବେ"... କହିଲା ଜନତା ।

"ଭଡାଟିଆଙ୍କୁ ଗାଡିରେ ବୋହିଆଣି ଏଠି ଦିନସାରା ଖରାରେ ରାସ୍ତା ସାରା ବୁଲାଯାଏ । ସେମାନଙ୍କୁ ଭାଡିଆ ମିଳେ । ଡାକବାଜି ଯନ୍ତ୍ରରେ କୁହାଟ ଛାଡି କିଏ ସବୁ ଗର୍ଜନ୍ତି – ସେଥିରେ ଶାନ୍ତିଭଙ୍ଗ ହୁଏ ନାହିଁ । ସର୍କାର ତାକୁ ଅନୁମତି ଦିଅନ୍ତି । ମୁଁ ଏକୁଟିଆ ଏ ରାସ୍ତାରେ ଡାକିଡାକି ଗଲି । କାହାକୁ କହିନାହିଁ ମୋ' ସାଙ୍ଗରେ ମିଶିବାପାଇଁ । ଆମେ ଖାଲି ମନ୍ତ୍ର ଜପିବୁ, 'ବନ୍ଦେ ମାତରମ୍' ମନ୍ତ୍ର । 'ହରେ କୃଷ୍ଣ ରାମ' ଗାଇ ଖୋଳ କରତାଳ ବଜେଇ ଆମେ ଦ୍ୱାର ଦ୍ୱାର ବୁଲିନାହୁଁ । ଆମେ ଦେବୀ ମନ୍ଦିର ଯାଇ ଫେରୁଛୁ ।

ଆମେ କି ଅପରାଧ କରିଛୁ ? ଆମକୁ ବାନ୍ଧିନବ ? ନଉନ ! କିଏ ମନାକରୁଛି ।

ତୁମକୁ ଲାଜ ମାଡୁନାହିଁ ପୁଲିସବାବୁ ! ଏ ଦେଶ କ'ଣ ତମ ମା' ନୁହେଁ ? ଯା'କୁ ଯେ ମା' ବୋଲି ଡାକିଲା, ବନ୍ଦନା କଲା, ସେ ହେଲା ଅପରାଧୀ ?

ବୋଲ୍ ଭାଇମାନେ 'ବନ୍ଦେ ମାତରମ୍' ।

'ବନ୍ଦେ ମାତରମ୍' – ବାରମ୍ବାର ଦୋହରାଇଲେ ଅନ୍ୟମାନେ ।

"ଆମର ସକାଳ ପ୍ରଭାତଫେରି ସବୁଦିନ ଚାଲିବ । 'ବନ୍ଦେ ମାତରମ୍' ଶୁଣିଲେ ଏମାନଙ୍କୁ

ଛାନିଆ ଲାଗିବ । ଏମାନଙ୍କ ମାଲିକ, ପୋଷକ, ପାଳକମାନଙ୍କୁ ଛାନିଆ ଲାଗିବ । ଆମ ଭିତରେ ମୁଣ୍ଡପୋତି ତୁନିପଡି ସହିଯାଉଥିବା ମଣିଷର ପାଟି ଫିଟିବ । ବାହୁ ମୁକୁଳିବ ।"

"ଚୁପ୍ କର' ଗର୍ଜିଲା ପୁଲିସବାବୁ । ୟା'କୁ ଆରେଷ୍ଟ୍ କର ।"

"କରୁନା ପୋଲିସବାବୁ । ମାତ୍ର ମୋ' ଝଣ୍ଡାକୁ ଛୁଇଁବ ନାହିଁ । ଆସ ଭାଇମାନେ, କେହି ଜଣେ ଏ ଝଣ୍ଡା ମୋ' ହାତରୁ ନେଇଯାଅ !"

ଠେଲାପେଲା ହେଇ ପାଞ୍ଚଜଣ ବାହାରିଆସିଲେ । ଝଣ୍ଡାର ଦଣ୍ଡାକୁ ମୁଣ୍ଡରେ ଲଗାଇ କାଳୁ ପ୍ରହରାଜ ଜଣକୁ କୁଣ୍ଢେଇନେି ଦୁଇହାତ ଟେକି ପୁଲିସବାବୁକୁ କହିଲା, "ଲଗାଅ ବାବୁ ତମ ହାତକଡା ।"

ଲୋକଙ୍କ ଗହଳି ଭିତରୁ ଜଣେ ବାହାରିଆସିଲା । କହିଲା, "ମୁଁ ସଦାନନ୍ଦ ଗୋଛାଏତ, ଓକିଲ, ଆପଣଙ୍କ ପାଖରେ ଆରେଷ୍ଟ ୱାରେଣ୍ଟ ଅଛି ? ଆପଣ ୟା'କୁ ଆରେଷ୍ଟ କରିପାରିବେ ନାହିଁ । ସେ ମୋ' ମକ୍କେଲ ।"

ଜୟଧ୍ୱନି ଉଠିଲା ଲୋକଙ୍କ ଗହଳିରୁ, "ଓକିଲ ବାବୁକି ଜୟ", "କାଳୁ ପ୍ରହରାଜ କି ଜୟ ।"

କାଳୁ ଗର୍ଜିଲା – "ବନ୍ଦକର ଏ ମାଙ୍କଡାମି । କାହାରି ଜୟକାର ବୋଲାହେବ ନାହିଁ । ସେଇଆ କରି ଏ ଦେଶ ଆଉ ଜାତିର ଦୁର୍ଦ୍ଦଶା ଏଇଆ । କେବଳ 'ଭାରତ ମାତା କି ଜୟ' । ତା' ବି ଏମିତି ନୁହେଁ – ଏବେ କେବଳ 'ବନ୍ଦେ ମାତରମ୍'...

ଧ୍ୱନି ଉଠିଲା, 'ବନ୍ଦେ ମାତରମ୍', ଯେ ଝଣ୍ଡା ଧରିଥିଲା ସେ ପ୍ରତିଥର ପତାକାକୁ ଟେକୁଥିଲା ଆକାଶକୁ ।

"ଆପଣ ଯଦି ଓକିଲ ତା'ହେଲେ କାଗଜପତ୍ର ନେଇ ଆସନ୍ତୁ ଥାନାରୁ ୟା'ଙ୍କୁ ଜାମିନ୍‌ରେ ଆଣିବେ ।"

"ଆପଣ ଆରେଷ୍ଟ କରିବା ପୂର୍ବରୁ ୱାରେଣ୍ଟ୍ ଦେଖାନ୍ତୁ ।"

"ଆପଣ କ'ଣ ଓକିଲ ହୋଇଛନ୍ତି ? ରାସ୍ତାରୁ ଅସାମାଜିକଙ୍କୁ ଧରିନେବା ପାଇଁ ପୁଲିସର ଅଧିକାର ଅଛି । ଏତକ ଜାଣିନାହାନ୍ତି ?" ଆଉ ଲୋକେ ଘେରିଗଲେ ।

କାଳୁ ପ୍ରହରାଜକୁ ପୁଲିସ ଜିପ୍ ଭିତରେ ଭର୍ତ୍ତି କରାଗଲା । ସେ ଚାହୁଁଥିଲା ସମସ୍ତଙ୍କୁ । ତା' ଆଖି ତହଳୁ ଥିଲା – ଜିପ୍ ଭିତରୁ ସେ ଥରେ ମାତ୍ର ଡାକିଲା, 'ବନ୍ଦେ ମାତରମ୍' ।

ଜିପ୍ ଚାଲିଗଲା ପରେ ଲୋକେ ପୁଞ୍ଜି ପୁଞ୍ଜି ହୋଇ ଆଲୋଚନା କଲେ । ଉତେଜିତ ହୋଇ ପାଟିକଲେ । ସହରର ଗଳିକନ୍ଦି ଭିତରକୁ କଥା ବ୍ୟାପିଗଲା ।

ଦିନସାରା ଚାରିଆଡେ ସେଇ ଚର୍ଚ୍ଚା । ସେଇ ଗୁଞ୍ଜରଣ । ସନ୍ଧ୍ୟା ବେଳକୁ ନିଆଁହୁଲା ପରି ଏଠି ସେଠି 'ବନ୍ଦେ ମାତରମ୍' ଧ୍ୱନି । ଥାନା ସାମ୍ନାରେ କ୍ରମଶଃ ଲୋକଭିଡ !

କ'ଣ ହେଲା କେଜାଣି, କଳାକୋଟ୍ ପିନ୍ଧା ସଦାନନ୍ଦ ଗୋଛାଏତ, କାଳୁ ପ୍ରହରାଜଙ୍କୁ ନେଇ ଥାନା ଭିତରୁ ବାହାରି ଆସିଲା ।

କାହିଁଥିଲେ ଧୋବଧୋବଳିଆ ଚିକ୍କଣ ପେଟୁଆ ନେତା ଆବିର୍ଭୂତ ହେଲେ ।

ଲୋକଙ୍କ ହର୍ଷଧ୍ୱନି ମଝିରେ ନିଜ ସରକୁ ଶୁଣେଇଲା ଭଳି, ଉଚ୍ଚ ପିଣ୍ଡି ଉପରୁ ନିଜକୁ ଦେଖେଇଲାଭଳି ସେ କହିଲେ, "ମୁଁ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲି ଯେ 'ବନ୍ଦେ ମାତରମ୍' ବୋଲିବାରୁ କାଳୁ ପ୍ରହରାଜଙ୍କୁ ଗିରଫ୍ କରାଗଲା । ମୁଁ ସାଙ୍ଗେ ସାଙ୍ଗେ ତାକୁ ଖଲାସ କରିବାକୁ ଫୋନ୍ କଲି । 'ବନ୍ଦେ ମାତରମ୍' ଆମ ଧ୍ୱନି, ଆମ ଜାତୀୟ ଧ୍ୱନି । ମୁଁ ନିଜେ ଆସି ସକାଳେ ଆପଣମାନଙ୍କ ସହିତ ଯୋଗଦେବି, ନିଜେ ଝଣ୍ଡା ଧରିବି ।"

ଛପଛପ୍ ଅନ୍ଧାର ଭିତରୁ ଶୁଣାଗଲା, "ଇଏ କୁଆଡେ ?" ଶୁଣାଗଲା, "ଇଏ ପରା ଆରେଷ୍ଟ୍ କରାଇଲେ । ଇଏ ପରା ସକାଳେ ଶେଯ ଉପରୁ ଫୋନ୍ କରି ପୁଲିସ ପଠେଇଥିଲେ ।"

କେହି ଜଣେ ଈଶାନ୍ କୋଣରୁ ଚିତ୍କାର କଲା "ନା, ଏ ଆସିବେ ନାହିଁ", "ନା ! ନା ! ନା ! ପାଟିକଲା ଜଣେ ।"

କାଳୁ ପ୍ରହରାଜ ଆଉ ସଦାନନ୍ଦ ଗୋଛାଏଟ୍‌କୁ ନେଇ ଲୋକଭିଡ ଘୁଞ୍ଚିଗଲା ଥାନା ସାମ୍‌ନାରୁ । ନେତା ଦାନ୍ତ ଖୁଣ୍ଟିବାର ଦେଖାଗଲା । ଥାନାବାବୁ ତାଙ୍କ ପାଖରେ ନସରପସର ହେବାର ଦେଖାଗଲା ।

X X X X

ଘରେ ରୁଟି ସନ୍ତୁଳା ଖାଇଲାବେଳେ କାଳୁ ପ୍ରହରାଜ ସନ୍ତୁଷ୍ଟ ଦେଖାଯାଇଥିଲା । ଗୋପ କହୁଥିଲା, "ଆଜି ସେ ଅଫିସ୍‌ରେ କେହି କ'ଣ କାମ କରିଛି କି ? ଖାଲି ତମ କଥା । ମତେ କେବେ ନଚାହୁଁଥିବା ବାବୁମାନେ ପାଖକୁ ଡାକି ପଚାରିଲେ – ସେ କ'ଣ ତମ ବାପା ?"

ନାତି ଟୋକା ନିଦରୁ ଉଠିଆସି କାଳୁ ଜଙ୍ଘ ଉପରେ ବସିଲା । କାଳୁ ତାକୁ ବାହୁ ବେଢେଇ ନେଲା କୋଳକୁ । ବାହାରେ ମୋଟର ସାଇକେଲଟାଏ ରହିବାର ଶବ୍ଦ ହେଲା ।

କାଳୁ ଖାଇବାଠଉଁ ଚଟ୍‌କିନା ଉଠିପଡିଲା । ଆଖି ପିଛୁଳାକେ ଦୂରରୁ ଦୁମ୍‌ଦୁରୁ ପାଦଶବ୍ଦ ଶୁଭିଲା । ପାଖେଇ ଆସିଲା 'ବନ୍ଦେ ମାତରମ୍' ଡାକ ।

କାଳୁ ପ୍ରହରାଜ ରକ୍ତଜର୍ଜର ହୋଇ ତଳେ ପଡିଥିଲା । ଗୋପ ପଡିଥିଲା ତା' ପାଖରେ ।

ମଟର ସାଇକେଲ୍‌ବାଲାଏ ତରତର ହେଇ ତେଇଁ ବାହାରିଗଲା ବେଳକୁ ତାକୁ ଘେରି ଯାଇଥିଲେ ।

ବଣୁଆ ଘୁଷୁରିଙ୍କ ଗାଉଁ ଗାଉଁ ଶବ୍ଦ, ଧାଁଦଉଡ, ତା' ଭିତରେ ମନ୍ତ୍ରଧ୍ୱନି ।

ଅନ୍ୟମାନେ ଆସି ସାଙ୍ଗେ ସାଙ୍ଗେ କାଳୁ ଆଉ ଗୋପକୁ ସମ୍ଭାଳିଲେ । ଡାକ୍ତରଖାନା ଟେକିନେଲେ । ପଡିଶା ଘର ଲୋକ ଆସି କାଳୁ ଘରେ ବାହାରେ ପହରାଦେଲେ ।

ରାତି ଧପ୍‌ଧପ୍ ହଉଥିଲା ଅନ୍ଧାରରେ କଲିଜା ପରି । କ'ଣ ହେବ କେଜାଣି, ସହରରେ ରାତି ସାରା ପ୍ରଳୟକାଣ୍ଡ । ଏଇଆ ହେଉ ବୋଲି ନୀରବ ମୁଣ୍ଡପାତି ରହିଥିବା ଜନତା ଚାହୁଁଥିଲା ବହୁକାଳ । ସହସ୍ରବାହୁ ଚାହୁଁଥିଲା ବିଦ୍ରୋହ କରିବାକୁ । ଏଇ ବୋଧେ ଆରମ୍ଭ ହେଲା । ଶକ୍ତି ସଞ୍ଚାର

ହେଲା ।

'ସର ମହାକୁଡ' ଝୁଣ୍ଟିପଡି ମରିଗଲା ବୋଲି କହିଥିବା ଡାକ୍ତର ରାତିସାରା ଜଗି ରହିଥିଲା କାଳୁ ପ୍ରହରାଜ ପାଖରେ । ଡାକ୍ତରଖାନା ଭିତରେ ବାହାରେ ଯେଉଁମାନେ ଯିବା ଆସିବା କରୁଥିଲେ ସେମାନେ ଉତ୍ତେଜିତ ଜଣାପଡୁଥିଲେ । ସେମାନଙ୍କ ଆଖି ତହକୁ ଥିଲା । ଟଗାଟି ରହିଁଦେଲେ ନିଆଁ ଲାଗିଯିବ ।

ରାତିରେ ସହରର ଏଠି ସେଠି ନିଆଁ ଜଳିଲା । ପାଟିତୁଣ୍ଡ ଧାଁଦଉଡ ଶୁଭିଲା । ଅନେକ ଚିତ୍କାର ଶୁଭିଲା । ଗୁଳି ଛୁଟିଲା । ଗାଡି ସାଇଁ ସାଇଁ ଧାଇଁଲା ।

ପାହାନ୍ତା ପହରକୁ କାଳୁର ଚେତା ଆସିଗଲା । ତା' ମୁଣ୍ଡରେ, କାନ୍ଧରେ ପଟି । ଗୋପର ବାଁ ତେଣା ଉପରେ ପଟି । ସେ ଓଷୁଧ ଖାଇ ଶୋଇଯାଇଥିଲା । ଆଖିବୋଲି ରହିଲା ।

ଆଲୁଅ ହେଲାବେଳକୁ ସଦାନନ୍ଦ ଗୋଛାଏତ ଆଉ ମୁଖିଆ ମୁଖିଆ କେତେଜଣ ଡାକ୍ତରଖାନାକୁ ଆସିଲେ ।

କାଳୁକୁ ଘେରି ଠିଆହେଲେ, କାଳୁ ସେମାନଙ୍କୁ ରହିଁ ଅଳ୍ପ ହସିଦେଲା । "ଆଜି ଆମେ ପ୍ରଭାତଫେରି ପାଇଁ ଏକାଠି ହୋଇଥିଲୁ । ଘଣ୍ଟାଏ ଆଗରୁ ଏଇଠି କର୍ଫ୍ୟୁ ଜାରି ହୋଇଗଲା । ଘଣ୍ଟାଏ ରହିବ । ଏ ନିଆଁ ଲିଭିବ ନାହିଁ ।"

"କାଲି ରାତିରେ ପାଞ୍ଚଟା ଦପ୍ତରରେ ନିଆଁ ଲାଗିଛି । ସାତଟା ଗୋଦାମ ପୋଡି ପାଉଁଶ ହୋଇଯାଇଛି ।"

"ଜାଣିଛନା! ମଣ୍ଟୁବାବା ଆଉ ତା'ର ତିନିଟା ସାଙ୍ଗ ଏଇଠି ହାଣ ଖାଇ ଯାଇଛନ୍ତି । ମଣ୍ଟୁବାବାର ଅଧେ ନାଳ ଭିତରକୁ ପଶିଯାଇଛି । ତା' ମୁଣ୍ଡ ଛତୁ ହୋଇଯାଇଛି ।"

"ବିମ୍ବା ପାନ ଦୋକାନୀର କେବିନ୍ ପୋଡି ଛାରଖାର ହେଇଯାଇଛି । ଲଜ୍ ଭଙ୍ଗାରୁଜା ହୋଇଯାଇଛି । – କେତେ କ'ଣ ହେଇଚି ତା'ର ହିସାବ ଆଉ ମିଳିନାହିଁ ।"

ଅଳ୍ପ ଆବାଜରେ କାଳୁର ହାତକୁ ଚିପିଧରି କିଏ କହିଲା 'ବନ୍ଦେ ମାତରମ୍' । ଦେଉଳ ସାହିର ଘନ ମହାକୁଡ, ତା' ଆଖିରେ ଆଖିଏ କଥା । ତା' ଆଖିରେ ନିଆଁ ।

ଏତିକିବେଳେ କିଏ କହିଲା, 'ବାଟ ଛାଡ, ବାଟ ଛାଡ' ।

କାଳୁ ପ୍ରହରାଜର ବୋହୂ ଆଉ ନାତି ଆସି ଠିଆହେଲେ । ଘନ ମହାକୁଡର ପାଟିରୁ କଥା ଛଡେଇ ନାତିଟୋକା ତା' ଜେଜେକୁ ରହିଁ କହିଲା, 'ବନ୍ଦେ ମାତରମ୍' ।

କାଳୁ ଦେହ ଶୀତକଣ୍ଟା ମାରିଗଲା । ତା' ଆଖିରୁ ଲୁହ ଗଡିଗଲା । ଓଠ ଥରିଲା । ସେ ଉହୁଙ୍କି ହେଲା ଉଠିପଡିବା ପାଇଁ, ତା' ନାତିକୁ ବୁକୁ ଉପରକୁ ଟେକିନେଇ ବୋକ ଦେବାପାଇଁ । ସବୁ ତା' ଦେହରେ ହାତ ଥାପି ମନାକଲେ ।

ସେ କହିଲା, "ଆଉ ଚିନ୍ତା ନାହିଁ । ୟା'ରି ତୁଣ୍ଡରେ ଶୁଣିବି ବୋଲି ମୁଁ ଟାକି ରହିଥିଲି । ବାଆସ୍ ମୁଁ ନିଶ୍ଚିନ୍ତ । ଏ ଦେଶର ରକ୍ଷା ହେଇଗଲା ।"

ଆଖିରେ ପାଣି । ହେଲେ ଗୋଟେ ମୁହଁକୁ ଭୁରୁ କୁଞ୍ଚେଇ କାଲୁ ପ୍ରହରାଜ ଅନେଇଲା ।

"କିରେ ବିମ୍ବା ।"

"ହଁ ଭାଇନା, ମୁଁ! ମୋର କ୍ୟାବିନ୍ ଜଳିଗଲା – ସତକୁ ସତ ସୃଷ୍ଟି ଆନ ହେଇଗଲା । ଭାଇନା, ମୁଁ କି ଜାଣିଥିଲି ଏମିତି କହୁକହୁ ସବୁ ଘଟିଯିବ ବୋଲି । ଏଣିକି ମୋ' ମୂଳ ପାନ ଦୋକାନ କରିବି ।"

"ଗୋଟା ଗୁଆ, ଜାଇତ୍ରୀ, ଲବଙ୍ଗ, ରଖିବୁଟି ?"

"ରଖିବି ଭାଇନା, କଥା ଦେଲି । 'ବନ୍ଦେ ମାତରମ୍' – ଥରିଲା ଥରିଲା ଓଠରେ ସେଦିନ ସକାଳୁ କାଲୁ ପ୍ରହରାଜ ପ୍ରଥମ ଉଚ୍ଚାରଣ କଲା 'ବନ୍ଦେ ମାତରମ୍!"

ବାହାରେ କିଏ ସବୁ ଥିଲେ କେଜାଣି, ଇସାରା ପାଇ ହର୍ଷଧ୍ୱନି କଲେ, 'ବନ୍ଦେ ମାତରମ୍', 'ବନ୍ଦେ ମାତରମ୍' ।



# ଅଭାଜନ

ସେ ତା' ମନକୁ ଉଠିଥିଲା ଅନାବନା ଦୂବଘାସ ଗହଳରେ ।

ମୁଁ ଅଗଣାରେ ଅନ୍ୟମନସ୍କ ଟହଲୁଥିଲାବେଳେ ସକାଳ ଖରାରେ ମୁଣ୍ଡହାତ ହଲେଇ ସେ ଠାରୁଥିଲା ତା' ଆଡେ ଅନେଇବାକୁ । ତା' ନୀରବ ଭାଷା ଅଗଣା ସାରା ଲହଡି ମାରୁଥିଲା ।

ସଜନା ଗଛଟା ଏମିତି କିଛି ଦାମୀ ନାମଜାଦା ଉଦ୍ଭିଦ ନୁହେଁ । ଅଗଣାର ଗୋଟାଏ ପଟେ ଦଶେରି ଆମ୍ବଗଛ, ଆରପାଖେ କନକ ଚମ୍ପା । – ସେଭଳି ଫୁଲ ବା ଫଳ ସେ ନିଶ୍ଚୟ ଦେଇପାରିବ ନାହିଁ ।

ସଙ୍କର ଜାତିଆ ନୁହେଁ ବଡ ବଡ ଛୁଇଁ ଫଳିବାକୁ କି ବନ୍‌ସାଇ ବି ନୁହେଁ ତାଜୁବ୍ କରିଦେବାକୁ । ଏମିତି ସାଧାରଣ ଏଠେସେଠି ଅଯତ୍ନରେ ଜନ୍ମିଥିବା, ଅଲକ୍ଷ୍ୟରେ ବଢୁଥିବା ଅରଣ୍ୟକୁ ଡରୁଥିବା, ମଣିଷ ଛାଇକୁ ଆଦରୁଥିବା ଅସନା ମସନାରେ ଠିଆ ହେଇଥିବା ଶସ୍ତା ଗଛଟିଏ ।

ଶୀତ କାକରରେ ଅଳିଆ ଗଦାରୁ ପଲିଥିନ୍ ଗୋଟାଉଥିବା ନୁଖୁରାମୁଣ୍ଡି ପାତଳୀ ଫ୍ରକ୍‌ପିନ୍ଧା ଝିଅଟିଏ ।

ପବନଠୁ ହାଲୁକା ସରୁ ସରୁ ଗୋଡ, ମୁନିଆ ଥଣ୍ଟର ଧୂଳିରଙ୍ଗର ଘରଚଟିଆଟିଏ ।

ମୁଁ ତା' ପାଖରୁ ଅନାବନା ଉପାଡି ମନ୍ଦାଟିଏ କରିଦେଲି ।

ସେ ତା' ଶ୍ୟାମ ସବୁଜ ବର୍ଣ୍ଣର ସରୁ ଡେମ୍ଫ, ଓସାରମୁହାଁ ଶିଶୁପତ୍ର କେଇଟାରେ ଲୁହ ଜର ଜର ଦେଖାଗଲା । କହୁଥିଲା, ହୁଏତ ଏତେ ଆଦରଯତ୍ନ ପାଇଁ ମୁଁ କ'ଣ ଭାଜନ ? – ମୋତେ ସ୍ନେହରେ ଆଉଁସି ଦିଅ ନାହିଁ । ମୁଁ ସମ୍ଭାଳି ପାରିବି ନାହିଁ ।

ମୁଁ ସେଦିନ ତାକୁ ଜମା ଛୁଇଁ ନ ଥିଲି ।

ହଅଅ ! ସଜନା ଗଛଟା ସତ ! ବଢିବ ନାଇଁକି ତା' ମନକୁ ।

ନାଇଁମ ! ଏମିତି କଣସହଜ ହେଇଚି ଏଠି ବଞ୍ଚିବା ? – ବଞ୍ଚିବାକୁ କେତେ ଲଢିବ ସେ କାହା ସାଙ୍ଗରେ ? ମାଟି ଘେନ୍ହେଁ, ପବନ ଘେନ୍ହେଁ, ସୂର୍ଯ୍ୟ ଘେନ୍ହେଁ ସେ ବଞ୍ଚୁ । ସେ ବି ଡାଳ ଛାଟି

ନିଟୋଳ ପତ୍ର ପକେଇ ବଞ୍ଚିବାକୁ ଚାହେଁ । ହେଲେ କିଏ ତାକୁ କାହିଁକି ବଞ୍ଚିବାକୁ ଦେବ ? – ସେ ପରା ଶସ୍ତା ସଜନା ଗଛଟାଏ !

ପତ୍ନୀ କହିଲେ ସେ ବାଡମୂଳ ସଫା ହେଲେ ତାଙ୍କ ସହେଲି ଘରୁ କଲମି ଡାଳ ଆଣି ସେଇଠି କାମିନୀ ଗଛ ଲଗେଇବେ । ପେନ୍ଥା ପେନ୍ଥା ଫୁଲ । ମହମହ ବାସ୍ନା, ଚିକ୍କଣ ଝଟଝଟ ଗାଢ ସବୁଜ ରଙ୍ଗର ପତ୍ର । ଅଭିଜାତ ଗଛ । ଘରର ମର୍ଯ୍ୟାଦା । ଘରବାଲାଙ୍କ ଐଶ୍ୱର୍ଯ୍ୟ ।

ପିଲେ ଚାହାଁନ୍ତି ଆମ୍ବ ଆଉ ଚମ୍ପା ମଝିରେ ଛୋଟ କ୍ରିକେଟ୍ ପିଚ୍‌ଟିଏ ହଉ । ସବୁ ଚାଷ୍ଟି ସଫା କରିଦିଆଯାଉ । ଚମ୍ପା ଗଛ ଠଉଁ ବୋଲିଂ । ଆମ୍ବଗଛ ଷ୍ଟମ୍ପ୍ ।

ମାଳି କହୁଛି, ମାଡାମ୍ ରାଜି ହେଲେ କାନ୍ଥ କଡରେ ସେ ଧାଡିଏ ଗହଳ ସୁନା ବର୍ଣ୍ଣର କ୍ରୋଟନ୍ ଲଗେଇ ଦବ । ମଝିରେ ବିଦେଶୀ ଦୂବ ଲଗେଇ ଲନ୍‌ଟିଏ କରିଦବ । ସକାଳ ଆଠଟା ପରେ ଈଷତ୍ ଛାଇ ଓ ଖରାରେ ମିସେସ୍ ଚୌଧୁରୀଙ୍କ ସହିତ ଚା ପିଆଯାଇପାରେ ଗାର୍ଡେନ୍ ଚେୟାରରେ ବସି ।

ଏ ଭିଡ ଭିତରେ କ'ଣ ସେ ବିଚାରି ଛୁବ କରିପାରିବ ତିଷ୍ଠିବା ପାଇଁ ?

ସେ ପରା ମାତ୍ର ସଜନା ଗଛଟିଏ ।

ସେ କିନ୍ତୁ ବଞ୍ଚିଗଲା । ବଞ୍ଚି ରହିଲା ଅଯାଚିତ, ଅଚାନକ । ଭିଡ ଫିଟିଗଲା କେରା କେରା ହେଇ, ଆକାଶରେ ପବନ ମୁହାଁ ମେଘପରି ।

ପତ୍ନୀଙ୍କ କାମିନୀ ଗଛ ଆସିପାରିଲା ନାହିଁ । ସେ ଲାଗିଗଲେ ନୂଆ କୁକିଙ୍ଗ୍ କ୍ଲାସ୍‌ରେ । ଛତୁ କାଲିଆ, ପନିର୍ ଚଟପଟି, ଚିଲିଚିକେନ୍‌ରେ । ଫଳାଫଳ ପରୀକ୍ଷା ପାଇଁ ଜଣେ ଚାଖୁଣିଆ ମାଗଣାରେ ମିଳିଗଲା – ଯେ ସବୁବେଳେ 'ଚମତ୍କାର' କହିବାକୁ ଅଭ୍ୟାସ କରିନେଇଥିଲା ଅଗତ୍ୟା ।

ପିଲାଏ ପଡୋଶୀ ଘର ସାଙ୍ଗମାନଙ୍କୁ ନେଇ ରାସ୍ତା ଉପରକୁ ଚାଲିଗଲେ । ନିରୋଳା ଦେଖି କ୍ରିକେଟ୍ ଖେଳିବାକୁ । ଏପାଖେ ସେପାଖେ ଦୁଇଜଣ ଠିଆ ହୋଇ ରହୁଥିଲେ ଷ୍ଟମ୍ପ୍ ପରିବର୍ତ୍ତେ । ଗାଡି ଆସିଲେ ଷ୍ଟମ୍ପ୍ ଅକ୍ଳେଶରେ ଘୁଞ୍ଚିଯାଇ ପାରୁଥିଲା ।

ମାଳୀକୁ ବାଡିଆଡୁ ନେଇ ଆଗପଟ ଅଗଣାରେ ଲଗେଇ ଦିଆଗଲା । ସେଇଠି ତା'ର କରାମତି ସମସ୍ତଙ୍କ ଆଖିରେ ପଡିବା ଲୋଭରେ ସେ ଆଗ୍ରହରେ ରାଜି ହେଇଗଲା ।

ମୁଁ ନିରୋଳାରେ ଦିନେ ସଞ୍ଜବେଳେ ସଜନା ଗଛ ପାଖେ ଠିଆ ହେଇ ତା' ଚିକ୍କଣ ଦେହରେ ହାତମାରି ଆଶ୍ୱାସନା ଦେଇଥିଲି । ସେତେବେଳକୁ ସେ ପ୍ରାୟ ମୋର ବୁକୁ ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲା । ଅଯତ୍ନରେ କ'ଣ ଏ ଗଛଟା ଏମିତି ଫାଉଁ ଫାଉଁ ବଢିଯାଏ !

ମାଛି ଅନ୍ଧାରରେ ଉଶ୍ୱାସ ପବନରେ ଦୋହଲୁଥିଲା ତା'ର ସରୁ କଅଁଳ ପତ୍ର; ସବୁଜ ଅଙ୍ଗରେ ସୁନାର ଚହଟ ପରି ନୂଆ ପତ୍ରର ଗଜା ।

ପବନରେ ତା'ର ମଥା ଆଉଜିଗଲା ମୋ' ବେକ ବୁକୁ ଉପରେ । ସଲସଲ ଲାଗିଲା । ସଜନା କ'ଣ କହୁଥିଲା କି ? – ଦେଖ ଦେଖ ମୁଁ ତମ ପାଇଁ କେତେ ଡେଙ୍ଗା ହୋଇଗଲାଣି । ମୁଁ

କ'ଣ ଆଉ ସେମିତି ଅସନି ଆଲୁରିମୁଣ୍ଡି ଦିଶୁଚି ?

ମୁଁ କେରାଏ କଅଁଳ ଡାଳ ଉପରେ ମୁହଁ ଘଷିଦେଲି । ଶୁଙ୍ଘିଲି, କାଳେ ବାସୁଥିବ ବୋଲି ।

ଧୁତ୍! ସଜନା କ'ଣ କାମିନୀ ହେଇଚି ନା ଚମ୍ପା ? ନ ହେଲା ନାଇଁ – ସେ କ'ଣ ଖାଲି ମହକିବ । ଶୁଙ୍ଘିଦେଇ ଫୋପାଡିବା ପାଇଁ! ଦେଖିବନି, ସେ ତମ ପାଇଁ କେତେ କଥା ପାଞ୍ଚୁଛି ।

ଓ କ'ଣ ଆଉ ପାଞ୍ଚିବ ? ଦେଲେ ଶାଗ କେରାଏ ନ ହେଲେ ଛୁଇଁ ଗଣ୍ଡେ । ଏତିକି ତ! ଶସ୍ତା ଖାଦ୍ୟ । ଜାତି ଜାତି ସେଉ, ନାସ୍‌ପାତି, ଖୋର୍ମା ଗହଣରେ ଏଟା କେଉଁ ପାସଙ୍ଗରେ ପଡିବ ? – ଦରିଦ୍ର, ହୀନମାନିଆ ସଜନା !

ମୁଁ କିନ୍ତୁ ତା' ପାଖ ଛାଡିପାରୁ ନ ଥିଲି । ଭାରି ନରମା, ମଟକା, ଘରଚଟିଆ ଗୋଡ ପରି ହାଲୁକା ଚିକ୍କଣ ହାତଗୋଡ ଛାଟି, ନିଃସଙ୍କୋଚ ଠିଆ ହେଇଥିବା କିଶୋରୀଟିଏ । ତା' ନୂଆ ମୁକୁଟରେ ପାଟଳ ସୁନେଲି ସାବ୍‌ଜା ରଙ୍ଗ ଉପରେ ହାଲୁକା ନେଳି ରଙ୍ଗ ରଞ୍ଜି ହେଇଯାଇଥିଲା । ସୂର୍ଯ୍ୟ ଉଇଁ ଆସିଲାବେଳେ ସେଇଠି ପୃଥିବୀ ଆଉ ଆକାଶ ମିଶି ଯାଉଥିଲା କି କୌଣସି ମଧବର୍ତ୍ତୀ ଇଲାକାରେ !

ତା' କାନ୍ଧରେ ଉଶ୍ୱାସରେ ହାତ ପକେଇଲା ପରି ମୁଁ କାହିଁକି କେଜାଣି ମଜି ଯାଉଥିଲି । ହାତ ଖସେଇ ଆଣି ଅଳ୍ପ ହସି ମୁହଁ ପୋଛି ଆଣିଲି ।

"ଧୁତ୍ । ସଜନା ଗଛକୁ କ'ଣ ଥଟ୍ଟାରେ ସଜନୀ କୁହାଯାଇପାରେ ?"

ମୁଁ ବୁଲିପଡିଲାବେଳକୁ ପତ୍ନୀଙ୍କୁ ଠିଆ ହୋଇଥିବାର ଦେଖିଲି ।

ସେ ଗୋଇନ୍ଦାଗିରି କରୁଥିଲେ କି ? – ହେଃ, ମୁଁ କ'ଣ କରୁଥିଲି କି ଏମିତି !

ସେ ହସି ହସି କହିଲେ – "ଆରେ ଏଇଟା ଏମିତି ବଢିଗଲାଣି ଯା'ଭିତରେ ? ମୁଁ ନଜର ଦେଇ ନାହିଁ । ଆଚ୍ଛା ଆଚ୍ଛା – ଭଲ ପୁଆ ପକେଇଚି ତ ! ସକାଳୁ ଗଣ୍ଡେ ଶାଗ ତୋଳିଲେ ହୁଏ ! – ଚାଲ କାମରୁ ଆସି ଏଇଠି ଲାଖିଯାଇଚ ! ତେଣେ କଫି ହେଇସାରିଥିବ !"

ମୁଁ ଓକିଲାତି କରିବାକୁ ଚାହିଁଲି ନାହିଁ ଯେ, କଅଁଳ ଡାଳପତ୍ରର ବଢନ୍ତି ଗଛଟାକୁ ଏବଠୁ ଏମିତି ଖଣ୍ଡିଆ ଦଣ୍ଡିଆ କଲେ ସେ ଆଉ ଉଧେଇ ପାରିବ ନାହିଁ । – ଟିକିଏ ସବୁର୍ କରିଗଲେ ବଳେ ସେ ସବୁ ଅର୍ପିଦେବ ତା' ଖାଉନ୍ଦଙ୍କ ଭୋଗଭାଗ୍ୟ ପାଇଁ ।

ସବୁ କଅଁଳ ଡାଳ ମୋଡି ଦେଲା ପରେ ତା'ର ରିକ୍ତ ଭୟାର୍ତ୍ତ ଚେହେରାକୁ ମୁଁ ଚାହିଁ ବି ପାରି ନ ଥା'ନ୍ତି ।

ଅଚାନକ ଛୁରିକାବିଦ୍ଧ ହୋଇଥିବା ଲହୁଲୁହାଣ ମୂର୍ଚ୍ଛିତା କିଶୋରୀଟିକୁ କ'ଣ କହି ପ୍ରବୋଧ ଦେଇ ହୋଇଥାନ୍ତା ।

ସଜନା ଶାଗ ପ୍ରସଙ୍ଗ ପରଦିନ ସକାଳ ଯାଏଁ ଉଠେଇଲି ନାହିଁ ।

ସୁଦାମ ହାତରେ ପତ୍ନୀଙ୍କ ପ୍ରିୟ ମିଆଁ କଂସେଇ ପାଖରୁ ଚିକେନ୍ ମଗେଇଦେଲି ।

ଚିକେନ୍ ଆଗରେ, ତା' ପୁଣି ନୂଆକରି ରାନ୍ଧିଥିବା ଚିଲିଚିକେନ୍ ସାମ୍ନାରେ ଛାର୍ ସଜନା ଶାଗ !

ସେ ବଞ୍ଚିଗଲା ।

ମୁଁ ବର୍ତ୍ତିଗଲି । ଏକ ଆତଙ୍କିତ ଅପରାଧବୋଧରୁ ।

ପତ୍ନୀଙ୍କୁ ବୁଝେଇଦେଲି ଯେ, ସଜନା ଶାଗ ଅଜୀର୍ଣ୍ଣକାରକ ସାତଦିନ ଯାଏଁ ପେଟରେ ଜୀଇଁରହେ ।

ଏମିତି ସିନା ଗୋଟାଏ ବିପତ୍ତି ଟଳିଗଲା । କିନ୍ତୁ ତା'ର ସେ ଛନଛନିଆ ରୂପ ଦେଖି ସମସ୍ତଙ୍କ ପାଟି ଲାଳେଇଲା, ହାତ ଖଲ ଖଲ ହେଲା ତାକୁ ଓଟାରି ଆଣି ଦୁହିଁବାକୁ ।

ସୁଦାମ ନିଜେ ଦିନେ ସକାଳଓଳି ମୋ' ପାଖରେ ଠିଆ ହେଲା । କହିଲା – "ସାରେ, ଭାରି ବଢ଼ିଆ ଶାଗ ହେଇଛି ସାରେ । ଭାରି କଅଁଳ, ଭାରି ଟଟକା । ତାକୁ ଏତିକିବେଳେ ଖାଇଲେ ସିନା ସୁଆଦ ଜାଣିବେ । ଆଉ କ'ଣ ବୁଢ଼ା ହେଇଗଲେ ତା'ର ମର୍ଯ୍ୟାଦା ଥାଏ ? – ଆପଣ କହିଲେ ଏବେ ନେଇ ମୁଗଡାଲି ସାଙ୍ଗରେ ରସୁଣ ଛୁଙ୍କ ଦେଇ ଭୋଗ ପରଶି ଦିଅନ୍ତି ।"

ମୁଁ ତାକୁ କଟମଟ ଚାହିଁବାରୁ ସେ ବୁଝିଗଲା । "ଠିକ୍ ଅଛି ସାରେ, ଆଜି ନ ହେଲା ନାଇଁ । ସେ କ'ଣ ଏବେ ସହଜରେ ବୁଢ଼ା ହେଇଯାଉଛି ? ପରେ ଦେଖିବା ନାଇଁ ।"

କିଛିଦିନ ଉରାରୁ କୁଆଡେ ମିସେସ୍ ଚୌଧୁରୀ ଗଛଟାକୁ ଦେଖି କହିଲେ, "ବୁଝିଲେ ମିସେସ୍ ରଥ, ଆପଣଙ୍କ ଏ ସଜନା ଗଛଟା ଭାରି ଜାତିଆ ଜଣାପଡୁଚି । ଦେଖୁ ନାହାନ୍ତି ଯା'ର ପତ୍ରଗୁଡ଼ା କେମିତି ନୀଳ ଦେଖାଯାଉଛି; ଆଉ ଟିକିଏ ବଡ । ଖଣ୍ଡେ ଡାଳ ନେଇ ଆମ ବାଡିରେ ଲଗେଇଦେଲେ ହୁଏ ।"

କୃତକୃତ୍ୟ ହେଲା ପରି ଆମ ପତ୍ନୀ ଆଗଭର ହୋଇ ଅତି ଉଦାର ଭଙ୍ଗୀରେ କହିଲେ, "ଏଇଟା ଗୋଟାଏ କଥା ? କହୁନାହାନ୍ତି କୋଉ ଡାଳଟା ଆପଣ ଚାହୁଁଛନ୍ତି । ସୁଦାମ ଏଇନା ତାକୁ କାଟି ଆପଣଙ୍କ ଘରେ ନେଇ ଲଗେଇ ଦେଇ ଆସିବ ।"

ଦୈବାତ୍ ସେଯାଏଁ ଗଛରେ ଶାଖା ବାହାରି ନ ଥିଲା ।

ବିକଳ୍ପରେ ସମଗ୍ର ଗଛଟିକୁ ମୂଳରୁ ହାଣି ବା ଉପାଡି ଦିଆଯାଇ ପାରିଥାନ୍ତା । କିନ୍ତୁ ମିସେସ୍ ଚୌଧୁରୀ କୁଆଡେ ତାଙ୍କ ଆଡୁ ହିଁ ମନା କରିଦେଲେ ।

"ଏଇଟା ସଜନା ଗଛ, ଯା'ର ଶାଗ ସୁଆଦ । ଆର ପ୍ରକାରଟା ହେଉଛି ମୁନିଙ୍ଗା ତା'ର ଛୁଇଁ ବେଶ୍ ରସୁଆଳ ଆଉ ମିଠା ।"

"ତା'ହେଲେ ମୁଁ ଶାଗ ତୋଳେଇ ଦଉଚି ଆପଣ ନିଅନ୍ତୁ! – ଆରେ ସୁଦାମ" –

"ଆଜି ଥାଉ । ଆଜି ଆମର ହୋଟେଲ୍ ମହାର୍ଜାରେ ଡିନର୍ ଅଛି ।"

ମିସେସ୍ ଚୌଧୁରୀଙ୍କ ଗାଡି ଗଡିଗଲା ।

ସେ ଆଉଥରେ ଆସୁ ଆସୁ ଯାଏ କିଛିଦିନ ।

କିଏ ଜାଣେ ଯା'ରି ଭିତରେ ମିଷ୍ଟର ଚୌଧୁରୀଙ୍କର ବଦଳି ବି ହେଇଯାଇପାରେ ।

ସତକୁ ସତ ବଦଳି ଅର୍ଡର ବାହାରିଗଲା ତାପର ସପ୍ତାହରେ । ଏକାଥରେ ଆଜ୍‌ମିର୍!

ଯାଃ – ଖୁବ୍ ଧାଁ ଦଉଡ ଚାଲିଲା । ସେମାନଙ୍କୁ ଡିନର୍‌କୁ ମଧ୍ୟ ଆମେ ଡାକିଲୁ । ହେଲେ ସେଥିରେ କ'ଣ ସଜନା ଶାଗଟାଏ ଆଇଟମ୍ ହେଇ ପାରିଥାନ୍ତା । ଯଦିବା ହେଇଥାନ୍ତା, ମିସେସ୍ ରଥଙ୍କ ଆତିଥେୟତାକୁ ଶସ୍ତା ବୋଲି କାଳେ ବଦନାମ୍ ହୋଇଯିବ, ସେଥିପାଇଁ ସେଆଡକୁ ତାଙ୍କର ନଜର ଗଲା ନାହିଁ ।

ହଁ, ମିସେସ୍ ଚୌଧୁରୀଙ୍କ ଜିନିଷପତ୍ର ଗୋଟାଏ ସ୍ପେଶାଲ୍ କେରିଅର୍ ଟ୍ରକ୍‌ରେ ବୋଝେଇ ହୋଇଗଲା । ତିଳେମାତ୍ର ଜାଗା ବଳିଲା ନାହିଁ । ନ ହେଲେ ସଜନାଗଛଟିକୁ କାଟିକୁଟି ତାକୁ ଜନା ଗୁଡେଇ ମିସେସ୍ ରଥ ଦେଇପାରିଥା'ନ୍ତେ ।

ପୁନଶ୍ଚ ବର୍ତ୍ତିଗଲା ସେ ସୁକୁମାରୀ ସଜନା ।

ଯଦି ସତକୁ ସତ କଟୁରି ଧରି ସୁଦାମ ପହଞ୍ଚିଥାନ୍ତା ମାଲିକାଣୀଙ୍କ ସାଙ୍ଗରେ ତାକୁ କ'ଣ ଆଢୁଆଳ କରି ମୁଁ ଠିଆ ହୋଇପାରିଥା'ନ୍ତି ? କହି ପାରିଥା'ନ୍ତି, 'ନା ତାକୁ କେହି ଛୁଇଁପାରିବ ନାହିଁ, ମୁଁ ଥିବାଯାକେ ?'

ସେ କିନ୍ତୁ ଯେଉଁ ଢଙ୍ଗରେ ଅବୋଧ ଆଖିରେ ମୋତେ ଚାହିଁଲା ପରି ଲାଗୁଥିଲା, ମନେ ହେଉଥିଲା ସେ ମୋଠାରୁ ସେଇଭଳି ମୁରବିପଣିଆ ପାଇବ ବୋଲି ଭରସା ରଖିଥିଲା । ସତେବା ମୁଁ ଗୋଟାପଣେ ତାରି !

ଆଉଦିନେ ଦେଖିଲାବେଳକୁ ଦୁଇଟି କେରା କଢ ଓହଳିଛି ତା'ର ଉତ୍ତର ପାଖ ଡାଳରେ । କାନ୍ଥ ଆଡକୁ ଥିବାରୁ ହଠାତ୍ ଆଖିରେ ପଡୁନାହିଁ । ଦେଖିଦେଲେ ପବନରେ ଘୋଡେଇ ହେଇଯାଉଚି ସବୁଜପତ୍ରର ଆବରଣ । ସଜନାଟି ସତେବା ନିଜେ ଚକିତ ବିହ୍ୱଳିତ କେମିତି କେଜାଣି ଲାଜରେ ଜଡସଡ ଏ ଅଙ୍ଗନକ ପରିବର୍ତ୍ତନରେ । ମୁଁ ଆସ୍ତେ ବାଁ କାନ୍ଧରେ ହାତ ଦେଇ ଓଲଟି ଚାହିଁବାକୁ ମୁହଁ ଗଳେଇଲା ବେଳକୁ ମୋ' ମୁହଁ ଉପରେ ବିଛେଇ ହୋଇଗଲା କଅଁଳପତ୍ରର କେରା କେରା କେଶରାଶି । ମନେହେଲା ସଜନା କ'ଣ ଗୋଟାଏ ସମ୍ପଦ, କିଛି ବିସ୍ମୟ ଲୁଚେଇବାକୁ ଚାହେଁ, ନିଜେ ଲୁଚିଯିବାକୁ ଚାହେଁ । ମୋ' ହାତ ବାଜି ସତେବା ସେ ଆମୂଳଚୂଳ ଟାଙ୍କୁରି ଯାଉଛି । ଈଷତ୍ କମ୍ପି ଉଠୁଛି ତା'ର ଅପଘନ ।

ମୁଁ ବଳେଇଲି ନାହିଁ । ଥରେ ଦୂରରୁ ଦେଖି ଜାଣିଗଲା ପରେ ଆଉ ପାଖରୁ ଦେଖିବାକୁ ଚାହିଁଲି ନାହିଁ । ମାଛି ଅନ୍ଧାରରେ ହାତ ଅପସାରି ଆଣିଲି, ନିଜେ ଆସ୍ତେ ଅପସରି ଗଲି । ସେ ବୁଝିଲା କି ନାହିଁ କେଜାଣି, ମୁଁ କିନ୍ତୁ ତା'ର ସେ ସଲଜ୍ଜପଣକୁ ସମସ୍ତଙ୍କ ଦୃଷ୍ଟିରୁ ଆଡ କରିବାକୁ କଥା ଦେଉଥିଲି, ତା'ର ଗୋପନୀୟତାକୁ ଗୋପନୀୟ ରଖିବାକୁ ପ୍ରତିଶ୍ରୁତି ଦେଉଥିଲି ।

ମୁଁ କାହାକୁ କହିଲି ନାହିଁ ଯେ ସଜନା ଗଛରେ କଢ କାନ୍ଧେଇଚି ।

କିନ୍ତୁ କେତେ ଲୁଚେଇବ ସେ । ସବୁ ଅବୟବରେ ନୂତନ ବିସ୍ମୟ ଉକୁଟି ଉଠିଲେ କେମିତି କାହାକୁ ଘୋଡେଇବ ? ସବୁ ଡାଳ ଚିକ୍କଣ ସତେଜ ଦେଖାଗଲେ, ସବୁ ଚୂଳରେ କଢ ଉତୁରି ଆସିଲେ, ସେ କେମିତି କୋଉ ସବୁ ଅଣ୍ଟ ଫୁଲଚୁଇଁ ଚଢେଇକୁ ବାରଣ କରିବ ଏ ଡାଳରୁ ସେ

ତାଳକୁ ଡେଙ୍ଗିବାରେ, କଢକୁ ଗେଲ ଗଉରବ କରି ଉଚ୍ଚାଟିତ କରିବାରେ, ପାଖୁଡା ମେଲି ବାସ ଚହଟାଇବାରେ ।

ଅଗତ୍ୟା ପ୍ରଘଟ ହେଇଗଲା ଯେ ସଜନା ଗଛରେ ଫୁଲ କାନ୍ଧେଇଛି ।

ସୁଦାମ କହିଲା, "କଢ ଫୁଲକୁ ସାମାନ୍ୟ ନଡିଆକୋରା, ଟିକିଏ ଗଉଲଚୁନା ଦେଇ ଚେକି ଚେକି କରି ଭାଜିଦେଲେ, ଆପଣ ଥରେ ଚାଖି ଦେଖନ୍ତୁ, ଆପଣଙ୍କ ତୁଣ୍ଡରୁ ସୁଆଦ ଛାଡିବ ନାହିଁ, ଯେତେ ଖାଇଲେ ମନ ପୂରିବ ନାହିଁ ।"

ସୁଦାମ ସେ ଅନଭିଜ୍ଞା ସୁକୁମାରୀର ଡାଳ ଓଟାରି ଆଣି ପତ୍ର କଢ ଲୋଭ ଜର ଜର ହାତରେ ଉପ୍ପୁ ଆଣିବାର ଜାନ୍ତବ ଦୃଶ୍ୟ ମୋତେ ଦିଶିଗଲା । ମୁଁ ତାକୁ ଆଗଭଳି କଟମଟ ଚାହିଁଲି – "ବର୍ବର, ଅସଭ୍ୟ କାହାଁକା !" – ମୋ' ଆଖିରୁ ଛିଟିକି ପଡୁଥିଲା । ସେ ସାଙ୍କୁଡି ଗଲା । "ହଉ ସାରେ, ଆପଣ ଯେବେ କହିବେ । ବିଳମ୍ବ ହେଲେ ଆଉ ଏ ନୂଆ କଢର ସୁଆଦ ଚାଖି ପାରିବେ ନାହିଁ । ଛୁଇଁ ଓହଳି ଯିବ । ଫୁଲ ପାଖୁଡା ସବୁ ଝଡିଯିବ । ମଉଳିଯିବ ।"

ହୁଁଃ ! କ'ଣ ହେଇଗଲା ସେଇଠୁ । ମନକୁ ମନ କହି ମୁଁ ବୈଠକ ଘରକୁ ପଶିଗଲି ।

ମୋତେ କାହିଁକି କେଜାଣି ଭାରି ଅଥୟ ଲାଗୁଥାଏ । ମୁଁ ଜମା ବୁଝିପାରୁ ନ ଥାଏ । ଅନାବନା ଭିତରେ ଅଯତ୍ନରେ ବଢିଆସିଥିବା ଏ ସାଧାରଣ ଶସ୍ତା ସଜନା ଗଛଟା ପ୍ରତି ମୋର ଏମିତି ମୋହ କାହିଁକି ମୋତେ ଆଚ୍ଛନ୍ନ କରି ରଖିଥିଲା । ସତେବା ସେଇଟା ଗଛ ନୁହେଁ । ମନକୁ ମନ ଟିକିଏ ହସିଲି । ଗଛ ନୁହେଁ ତ ଆଉ କ'ଣ ? ଗଭାରେ ଦୀପଶିଖା ପରି ଚହଟୁଥିବା, ମହକୁଥିବା ଫୁଲ ଖୋସି, ଈଷତ୍ ଗୋଟିଏ ଅଭିଜାତ ଚମ୍ପାକୁ ତ ତୁ ଏମିତି ଦେଖିନାହୁଁ କି ଆଦରି ନାହୁଁ । ସ୍ୱର୍ଗ ଭୂମିରୁ ଅମୃତ ଫଳକୁ ନେଇ ନିରୂପଦ୍ରୁତ ଠିଆ ରହିଥିବା ସେ ଦଶେରିକୁ ତ ଏତେ ଆପଣାପଣ ଦେଇ ନାହୁଁ । କ'ଣ ହେଇଚି ତୋର ?

ରୋଷଘରୁ ପତ୍ନୀ ପକୁଡି ଥାଳିଆ ଧରି ପାହାଚ ଓହ୍ଲେଇ ଆସିଲେ । "ଆରେ ସୁଦାମ କଫି ଦି'ଟା ନେଇଆସିବୁ । ମୋ' ପାଇଁ ଛୋଟ କଳା କପ୍‌ରେ ଆଣିବୁ ।" କହି ସେଣ୍ଟର ଟେବୁଲ୍‌ରେ ପକୁଡି ଥୋଇ ପାଖ ସୋଫାରେ ବସିଲେ ।

"ଆଜି ନୂଆ ରକମ ପକୁଡି କରିଚି । ଚାଖି ମତେ କହ କ'ଣ ଏ ଜିନିଷ ?" ଠପ୍‌କିନା ମୋ' କଲିଜା, ଶ୍ୱାସପ୍ରଶ୍ୱାସ ମୁହୂର୍ତ୍ତକ ପାଇଁ ଥମିଗଲା । ଉନ୍ମୁଖ ଦରବୁଜା, ଦରଫୁଟା ଫୁଲକଢଗୁଡିକୁ ବେସନରେ ରୁନ୍ଧି ମାରିଦେଲା ପରେ ତାତିଲା ତେଲ କଡେଇରେ ଭାଜି ମୋତେ ପରସା ଯାଇ ନାହିଁ ତ !

ମୁଁ ବୋଧହୁଏ ଭୟାର୍ତ୍ତ ଦେଖାଯାଉଥିଲି । ମୋର ସାହସ ହେଉ ନ ଥିଲା ହାତ ବଢେଇବା ପାଇଁ । ଟିକିଏ ପ୍ରଶଂସା ଶୁଣିବାକୁ ଉଚ୍ଛନ୍ନ ହେଉଥିବା ପତ୍ନୀ ମୋ' ଆଖିକୁ ଚାହିଁ କହିଲେ, "କିଓ କ'ଣ ହେଇଚି ତମର ? ଖାଉ ନାହିଁ କାହିଁକି ?"

ମୁଁ କୌଣସି ପ୍ରକାରେ ନିଜକୁ ସଜାଡିନେଇ କହିଲି, "ଖୁବ୍ ତାତିଚି ନା କ'ଣ ?"

ପତ୍ନୀ ହସିଲେ । ମୋତେ ଭାରି ଅଶ୍ଳୀଳ ଶୁଭିଲା । "କିଓ ନ ଛୁଇଁ କେମିତି ଜାଣିଲ ତାତିଚି ବୋଲି ?" ତା'ପରେ ଗୋଟିଏ ପକୁଡ଼ି ତାଙ୍କର ନାଲି ଜରଜର ନଖମାନଙ୍କରେ ଧରି ଓଠ ପାଖରେ ଫୁଙ୍କିଲେ । ଭୂତ ଛଡାଇବାକୁ ଆସିଥିବା ଗୁଣିଆ ଫୁଲ ମନ୍ତୁରିଲା ପରି ।

ସେଇଟିକୁ ମୋ' ପାଟି ପାଖକୁ ଆଣିବାରୁ ବଳେ ମୋ' ଓଠ ଫିଟିଗଲା ଓ ମୋତେ ଖୁଆଇ ଦେଇ ସେ ଆତ୍ମସନ୍ତୋଷରେ ଆଉ ଗୋଟିଏ ଟେକି ଧରିଲେ । ଏଥର ବୋଧହୁଏ ନିଜ ପାଇଁ ।

ପକୁଡ଼ି ତାତି ନ ଥିଲା । ଶୀତଦିନିଆ ମଣିଷ ଦେହ ପରି ଉଷୁମ ଥିଲା କେବଳ ।

ପତ୍ନୀ ତାଙ୍କ ପକୁଡ଼ିଟି ଖାଇ ପରମ ତୃପ୍ତିରେ କ'ଣ ସବୁ କହିଲେ ମୁଁ ଶୁଣି ନାହିଁ ।

'କ'ଣ ଏ ଜିନିଷ କହ ?' ଶୁଣିଦେଲା ପରେ, ପକୁଡ଼ିଟି ଚୋବେଇ ହେଇଗଲା ଏବଂ ପ୍ରଥମ ପରଶରେ ହିଁ ମୁଁ ଜାଣିଗଲି ।

ମୋ ମୁହଁ ଉଜ୍ଜଳି ଉଠିଲା । ମୁଁ ଆଶ୍ୱସ୍ତ ଓ ସୁସ୍ଥ ଅନୁଭବ କଲି । ପକୁଡ଼ିଟିକୁ ଅତ୍ୟନ୍ତ ଆଗ୍ରହରେ ଚୋବେଇ ଆଉ ଗୋଟିଏ ଆଡକୁ ହାତ ବଢେଇ କହିଲି – "ଛତୁ !"

"ବିଲ୍‌କୁଲ୍ ସହି ଉତ୍ତର୍ ।" କହି ପତ୍ନୀ ସୋଫାକୁ ଆଉଜି ବହେ ହସିଲେ ।

ମୋତେ ପରମ ଉତ୍ସାହରେ ଚାହିଁ ପଚାରିଲେ, "ଭଲ ହେଇଚି ନା ନାହିଁ ।"

"ବଢ଼ିଆ ! ୱଣ୍ଡରଫୁଲ୍, ସୁପର୍ବ !"

ମୋତେ ଖୁସି ଲାଗୁଥିଲା । ଛତୁ ପକୁଡ଼ିର ସ୍ୱାଦ ପାଇଁ ନୁହେଁ; ବରଂ ଆଉ ଗୋଟିଏ ବିପଦ ଟଳିଗଲା ବୋଲି । ସଜନା ଗଛଟି ଆସନ୍ନ ଅତ୍ୟାଚାରରୁ ରକ୍ଷା ପାଇଗଲା ବୋଲି । ଛତୁ ନ ହୋଇ ସଜନା କଢ ଫୁଲର ପକୁଡ଼ି ହେବାକୁ କ'ଣ ମନା ଥିଲା କି ?

କିନ୍ତୁ କେତେକାଳ ସେ ନିର୍ବିଘ୍ନ ନିରାପଦରେ ବଞ୍ଚିପାରିବ ଏତେ ଲହଲହ ଜିଭ ଆଉ ଝଣ ଝଣ ଭିତରେ । ତାକୁ କିଏ କହିଲା ଏମିତି ଲୋଭନୀୟ ହେବା ପାଇଁ ? ଏମିତି କ୍ଷୁଧା ଜାଗ୍ରତ କରିବା ପାଇଁ ? ଏମିତି ହଲିଗଲେ, ଝୁଲିଗଲେ, ଲେଉଟି ଚାହିଁଦେଲେ, ସୃଷ୍ଟି ଟହଲେଇ ଦେବାପାଇଁ ?

ପତ୍ନୀ କଫି ପିଇବା ଭିତରେ କ'ଣ ସବୁ ଗପ କଲେ । ଫାଳେ ଚେତନାରେ ମୁଁ ଶୁଣୁଥିଲି, କଥା କହୁଥିଲି, ପ୍ରଶଂସା ଦୋହରାଉଥିଲି । ଛତୁ ପକୁଡ଼ି ପର୍ବ ସରିଲା ପରେ ସେ ଉଠିଗଲେ ଆର ବଖରାକୁ, ଟିଭି ପାଖକୁ ।

ମୁଁ ନିମଗ୍ନ ବସି ରହିଲି । ଅସହାୟ ବିପନ୍ନ ସଜନା ଗଛଟି ମୋତେ ବିହ୍ୱଳ କରୁଥିଲା । ମୁଁ ସ୍ୱୟଂ ଅସହାୟ ବୋଧ କରୁଥିଲି । ମୁଁ ବୋଧହୁଏ ଦୁର୍ଗଦ୍ୱାର ଜଗି ବେଶୀକାଳ ଠିଆ ରହିପାରିବି ନାହିଁ । ମୁଁ ସତେ କିଏ କି ? କାହିଁକି ମୁଁ ଜଗିଛି, କେଉଁ ଖାତିରରେ, କେଉଁ ଅଧିକାରରେ ?

କମାଣ ଗର୍ଜନରେ ଦୁର୍ଗ ପାଚେରି ଦୁରୁଦୁରୁ କରିବାର ମୁଁ ଅନୁଭବ କଲି । ବୋଧହୁଏ ସେଇ ରାତିର ଅନ୍ଧାରରେ ବାତ୍ୟା ମାଡିଆସିଲା । ଝର୍କା କବାଟ ବନ୍ଦ କରି ନିଜ ନିରାପତ୍ତା ପାଇଁ ଆଗ ବ୍ୟବସ୍ଥା କରିବାକୁ ହେଲା । ପାଚେରି ଆରପଟେ ପ୍ରଳୟ, ନିଷ୍ଠୁର ନିର୍ମମ ବର୍ବରତା ।

ରାତି ସାରା ମୋତେ ନିଦ ନାହିଁ । ଦୁରୁଦୁରୁ କମ୍ପୁଥାଏ ମେଦିନୀ । କୁହାଟୁଥାଏ ପବନ । ଲୋଟି ପଡୁଥା'ନ୍ତି ଦ୍ରୁମ । ଶିଳ ଶିଳପୋଆ ଗଗନେ ଉଡୁଥା'ନ୍ତି ।

ଘରଚଟିଆ ପକ୍ଷରା ପରି ମଟକା ସୁକୁମାର ଡାଳ ସେ ସଜନା ଗଛଟିର । ସେ କ'ଣ ସମ୍ଭାଳିବ ଏ ଦୁର୍ଦ୍ଦାନ୍ତ ଆକ୍ରମଣ ?

ସେ ପ୍ରଥମେ ବୁଝିପାରି ନ ଥିବ କିଛି । ଏଇ ପବନ ପରା ତାକୁ ଆଶ୍ୱାସୁଥିଲା । ଆଉଁସି ଦେଉଥିଲା । କେତେ ଭଦ୍ର, କେତେ କଅଁଳ, ସ୍ନିଗ୍ଧ ତା'ର ସ୍ପର୍ଶ । ସେ କ'ଣ ଏମିତି ଖିନ୍‌ଭିନ୍ କରି ପକଉଛି । ଛିନ୍‌ଛତ୍ର କରି ପକଉଛି । ଦୂରରୁ ଯେ ସଦାବେଳେ ଚାହିଁ ହସି ଦଉଥିଲା, ସେ ହସର ଉଷ୍ମାରେ ସେ ପଲ୍ଲବୁଥିଲା, ସେ ସୂର୍ଯ୍ୟ କେମିତି କୋଉଠି ଲୁଚିଗଲା ଏ ନୃଶଂସା ଅନ୍ଧାରରେ !

ସକାଳୁ ମୋର ସାହସ ହେଲା ନାହିଁ ଝରକା ଦେଇ ଅଗଣାରୁ ଚାହିଁ ଦେବାକୁ । ବେଶ୍ ସକାଳ ହୋଇଯାଇଥିଲା । ସୁଦାମ ଡାକିଲା, ଚା ଜଳଖିଆ ଖାଇବାକୁ ।

ମୁଁ ଟେବୁଲ୍ ପାଖରେ ବସିଲା ପରେ, ଭାରି ଉଦାସ ସ୍ୱର ଶୁଭିଲା ସୁଦାମର –

"କ୍ଷୀର ପାଇଁ ଯାଇଥିଲି । ଆମ ସାହି, ସେ ଶେଷ ଘର ପାଖରେ ଲୋକ ଗୁଣ୍ଡ ହୋଇଥିଲେ । କାଲି ରାତିର ବାତ୍ୟାବେଳେ ଅଘଟଣ ଘଟିଗଲା ବାବୁ, ଦେଖିଲେ ଦିହ ସହିବ ନାହିଁ । ବାର କି ଚୌଦ ବର୍ଷର ବାଳୁତି ମୁଣ୍ଡି ଝିଅଟିଏ ବାବୁ । ରକ୍ତ ଜୁଡୁବୁଡୁ ମରିପଡିଛି ଚିତ୍‌ମାତ୍ !"

ସେଇ ସେ ଆମ ସାଇରେ ରୋଜ୍ ପଲିଥିନ୍ ଗୋଟାଉଥିବା ହସ୍‌କୁରି ଝିଅଟି ! ମୋର କୋହ ଉଠିଲା । ବାବୁ ମୁଁ ଆଉ ଠିଆ ରହିପାରିଲା ନାହିଁ । ପଳେଇ ଆସିଲି ।

ମୋର ହାତଠି ହାତ ଗୋଡଠି ଗୋଡ ରହିଗଲା ।

ମୋ ଭିତରେ କ'ଣ ସବୁ ଓଲଟପାଲଟ ହୋଇଯାଉଥିଲା । ଭାଙ୍ଗିରୁଜି ହାହାକାର କରୁଥିଲା ଏକ ବିଧ୍ୱସ୍ତ ପୃଥିବୀ ।

ତାକୁ ସମ୍ଭାଳିବା ପାଇଁ ମୋତେ ସମୟ ଲାଗିଲା ।

ତା'ପରେ ମୁଁ ଆସ୍ତେ ଉଠିଗଲି । ବାହାରି ଆସିଲି ଅଗଣାକୁ ।

ଅଗଣାରେ କୁଢକୁଢ ଛିଣ୍ଡା ଡାଳ । କାତର, ରକ୍ତାକ୍ତ । ନୀରବ ଗଛ । ହତଶ୍ରୀ ଦିଶୁଥିବା ଚମ୍ପା ଆଉ ଆମ୍ବ ଗଛ ।

ସଜନା ଗଛଟି କିନ୍ତୁ ଦିଶୁ ନ ଥିଲା । କୁଆଡେ ଗଲା ସତେ ? କ'ଣ ହେଲା ତା'ର !

ମୁଁ ଓହ୍ଲେଇ ଗଲି ଅଗଣାକୁ ।

ଦେଖିଲି, ନିଃଶାଖ, ନିରିମାଖି ସବୁ ଅବୟବ, ସବୁ ପରିଚୟ ହରେଇଥିବା ଥୁଣ୍ଟାଟିଏ । ମୁଁ ତା' ଉପରେ ଆସ୍ତେ ହାତ ସାଉଁଳି ଆଣି ସ୍ତବ୍ଧ ହୋଇ ଯାଇଥିଲି କିଛିକାଳ ।

ମୋତେ ସକ୍‌ସକ୍ କାନ୍ଦଣା ଶୁଭିଲା ପରି ଲାଗିଲା । ଓଦା ଓଦା ସ୍ୱର ଶୁଭିଲା ପରି ଲାଗିଲା ।

"ମନ କଷ୍ଟ କରୁଛ କି ବାବୁ ! ଏଇ କଥା ନ ହୋଇ ଆଉ କ'ଣ ହୋଇଥାନ୍ତା ! ଏଇଆ ତ ଆମ ଭାଗ୍ୟ ! ଅନାବନା ଭିତରେ ଉପୁଜିଥିବା ଅଯତ୍ନରେ ବଢିଥିବା ଡାଳପତ୍ର ମେଲିଥିବା କଅଁଳ

କଢଫୁଲ ଗଜେଇଥିବା ସେ ବାଲୁଚିମୁଣ୍ଡିର ଆଉ କ'ଣ ହୋଇଥାନ୍ତା ? ତମେ ଜାଣିଛ କି, ସେ ତୁମକୁ କେମିତି ଅନେଇଁ ରହିଥାଏ। ତୁମେ ଗେଟ୍ ଫିଟେଇ ବାହାରିଲାବେଳେ ତା' ନିଶ୍ୱାସ ଥମିଯାଏ! ସେ ତୁମ ପାଇଁ ଶାଖା ମେଲିଥିଲା। ସବୁ ଶାଗ, କଢଫୁଲ ତୁମ ପାଇଁ ଟୋଳି ଧରିଥିଲା। ହେଲେ ରାତିକ ଭିତରେ ଛାରଖାର ହୋଇଗଲା। ତୁମକୁ ଅପେକ୍ଷା କରି କରି ତୁମ ପାଖରେ ପହଞ୍ଚ ନ ପାରି ସେ ଛିନ୍‌ଛତ୍ର ହେଇଗଲା।"

କିଏ ସେମିତି ଫିସ୍‌ଫିସ୍ କହୁଥିଲା ? କାହା କଥା କହୁଥିଲା ?

ସେ ପଲିଥିନ୍ ଗୋଟଉଥିବା ବାଲୁଚିମୁଣ୍ଡି ଝିଅ ? – ସେ ନେଳି ଜରଜର ସଜନା ଗଛ ?

ସେ ତ ଏମିତି ଅନାବନାରେ ଉପୁଜିଥିବା ଉଦ୍ଭବ। ସାଧାରଣ, ଶସ୍ତା।

ନା', ନା' ମୋର କାଇଁ କ'ଣ ହବ। ମୁଁ ଏଥିପାଇଁ କାନ୍ଦିବି ବା କ'ଣ। ଧୁତ୍!

ଧୁତ୍! ଧୁତ୍! ଧୁତ୍!

ମୁଁ ବୋଧହୁଏ ସେମିତି ଥପ୍‌ଥପ୍ ଝରି ଯାଉଥିଲି ଲୁହରେ, ରକ୍ତରେ।



# କଣ୍ଟାବଣ

ଭଦ୍ରମହିଳା ବେଶ ସମ୍ଭ୍ରାନ୍ତ ପରିବାରର ଝିଅ । ସେହିପରି କୁଳୀନ ବିଦ୍ୱାନ ପରିବାରର ବୋହୂ । ପରିପୂର୍ଣ୍ଣ ଦାମ୍ପତ୍ୟର ସାତବର୍ଷ ପରେ ସେ ସେଦିନ ସାମାନ୍ୟ ଏକ ଘଟଣାରେ କାହିଁକି ଏତେ ବିଚଳିତ ହୋଇଗଲେ, ତାହା ମୋତେ ବିସ୍ମିତ କରିଥିଲା ।

ତାଙ୍କ ସହିତ ଆମର ପାରିବାରିକ ସମ୍ପର୍କ ବହୁଦିନର ଓ ଘନିଷ୍ଠ । ସେମାନେ ଆମର ସବୁ ପର୍ବପର୍ବାଣୀ, ଅନୁଷ୍ଠାନ ଆଦିରେ ଅବାଧ ମିଳିମିଶି ରହିଛନ୍ତି । ତାଙ୍କ ଘରେ ଦୁର୍ଗାପୂଜାବେଳେ ଦଶଦିନ କାଳ ଆମ ଘରେ ଚୂଲୀ ଜଳେ ନାହିଁ । ସେଇଠି ଭୋଜିଭାତ ହୁଏ । ମୋର କେବେହେଲେ ଧାରଣା ହୋଇ ନାହିଁ ଯେ ସେମାନେ ଭଟ୍ଟାଚାର୍ଯ୍ୟ ବୋଲାଇବା ସତ୍ତ୍ୱେ ଅଣଓଡିଆ ହୋଇପାରନ୍ତି । ତାଙ୍କ ଘରେ ସମସ୍ତେ ଚମତ୍କାର ଓଡିଆ କହନ୍ତି । କେବଳ ମିସେସ୍ ଅନିନ୍ଦିତା ଭଟ୍ଟାଚାର୍ଯ୍ୟଙ୍କ କଥାରେ କିଛି କିଛି ହିନ୍ଦୀ ବଙ୍ଗଳା ମିଶିଯାଏ । କିନ୍ତୁ ଶୁଣିବାକୁ ବେଶ୍ ମିଠା ଲାଗେ । ମୁଁ ଅନେକ ଦିନ ଭଟ୍ଟାଚାର୍ଯ୍ୟବାବୁଙ୍କ ଅନୁରୋଧକ୍ରମେ ତାଙ୍କ ବୈଠକ ଘରେ କିଛି ତାତ୍ତ୍ୱିକ ଆଲୋଚନାରେ ଭାଗ ନିଏ । ମିସେସ୍ ଭଟ୍ଟାଚାର୍ଯ୍ୟ ମଧ ଆସି ବସନ୍ତି । ସେଦିନ ଆଲୋଚନା ପରେ ସମସ୍ତେ ଚାଲିଯିବା ଉତାରୁ ସେ ଆସି ମୋ' ସାମ୍ନାରେ ବସିଲେ । ସାମାନ୍ୟ ଅସ୍ୱାଭାବିକ ମନେ ହେଉଥିଲେ । କାହିଁକି ନା ସେ ବିବ୍ରତ ହୋଇ ମଝିରୁ ଉଠି ଯାଇଥିଲେ । ତା'ର କାରଣ ହେଲା ଯେ ସେଇଠି ଏକ ବିଚିତ୍ର ଘଟଣା ଘଟିଥିଲା ।

ମିଷ୍ଟର ଗନ୍ତାୟତ, ତାଙ୍କ ସ୍ତ୍ରୀ ଓ ସାନଝିଅକୁ ନେଇ ଆଲୋଚନା ଶୁଣିବାକୁ ଆସିଥିଲେ । ଝିଅଟିକୁ ତିନିବର୍ଷ ହୋଇଥିବ ବା ଅଳ୍ପ ବେଶି କିଛି ହୋଇପାରେ । କେଜାଣି କାହିଁକି ମିସେସ୍ ଭଟ୍ଟାଚାର୍ଯ୍ୟ ବୈଠକ ଘରକୁ ପ୍ରବେଶ କଲା ମାତ୍ରେ ସେ ତାଙ୍କୁ ଚାହିଁ ରହିଲା ଓ ଖୁବ୍ ମାତ୍ରାରେ ଡରିଯାଇ ତା' ମା'କୁ ଜାବୁଡି ଧରିଲା । ତା'ପରେ ସେ ଅସ୍ଥିର ହୋଇ ମୁହଁ ଫେରାଇ ନେଉଥିଲା । ପୁଣି ଚାହିଁ ଦେଇ ଡରି ଯାଉଥିଲା । ଶେଷରେ ସେ ବାପା ମା'ଙ୍କୁ ବସେଇ ଦେଲା ନାହିଁ । ଜିଦ୍ ଧରିଲା ଘରକୁ ଯିବା ପାଇଁ । ଏବଂ ଗନ୍ତାୟତ ଦମ୍ପତି ଅଗତ୍ୟା ସମସ୍ତଙ୍କୁ କ୍ଷମା ମାଗି ବୈଠକରୁ

ଉଠି ଚାଲିଯାଇଥିଲେ ।

ସମସ୍ତେ ଘଟଣାଟିକୁ ଲକ୍ଷ୍ୟ କଲେ, କିନ୍ତୁ କେହି କିଛି କହିଲେ ନାହିଁ । ମିସେସ୍ ଭଟ୍ଟାଚାର୍ଯ୍ୟ କିନ୍ତୁ ସେତିକିବେଳୁ ଖୁବ୍ ଗମ୍ଭୀର ଓ କିଛି ମାତ୍ରାରେ ବିବ୍ରତ ଜଣା ଯାଉଥିଲେ । ସେ ବି କିଛି ସମୟ ପରେ ଉଠିଯାଇଥିଲେ । ବୈଠକ ସରିଲା ପରେ ହିଁ ସେ ଆସି ମୋ' ସାମ୍ନାରେ ବସି ମୋତେ କିଛି ପଚାରିବା ଢଙ୍ଗରେ ଚାହିଁଲେ । ମିଷ୍ଟର ଭଟ୍ଟାଚାର୍ଯ୍ୟ ଅନ୍ୟମାନଙ୍କୁ ଗେଟ୍‌ଯାଏଁ ବଳେଇ ଦେବାକୁ ଯାଇଥା'ନ୍ତି । ମିସେସ୍ ଭଟ୍ଟାଚାର୍ଯ୍ୟ ହଠାତ୍ ପଚାରିଲେ, "ସେ ବଚ୍ଚି ମୋତେ ଦେଖି କେମିତି ଡରିଗଲା ? ଆମି ସେତେବେଳୁ ସ୍ଥିର ରହି ପାରୁ ନାହିଁ । ଆମାକେ ବିନା କାରଣେ କେମିତି ଗୋଟାଏ ଡର ମାଡୁଛି କ୍ୟାଁ ?" ମୁଁ କଥାଟାକୁ ହାଲୁକା କରିବାକୁ କହିଲି, "ଆରେ, ଏ ସାଧାରଣ ଘଟଣାରେ ଆପଣ ଏତେ ଗୁରୁତ୍ୱ ଦେଉଛନ୍ତି କାହିଁକି ? Just forget it – ଭୁଲି ଯାଆନ୍ତୁ । ତା' ବାହାରେ ଯେତେସବୁ ଘଟଣା ଅହରହ ଆମ ଚାରିଆଡେ ଘଟୁଛି ସେ ସବୁକୁ କ'ଣ ଆମେ ବୁଝିପାରୁ ନା' ବୁଝିବାକୁ ଚେଷ୍ଟା କରୁ ?" ଅନିନ୍ଦିତା ଭଟ୍ଟାଚାର୍ଯ୍ୟ କିନ୍ତୁ ଆଦୌ ପ୍ରସ୍ତୁତ ନ ଥିଲେ କଥାଟାକୁ ଏତେ ସହଜରେ ଏଡେଇ ଯିବା ପାଇଁ । "ଆପନି ସେ ଗନ୍ତାୟତ family କୋ ଜାଣନ୍ତି ?" "ହଁ, ଜାଣେ । ସେମାନେ ଏଇ କିଛିଦିନ ହେବ ଗ୍ୱାଲିଅରରୁ ଆସିଛନ୍ତି ।"

ହଠାତ୍ ମିସେସ୍ ଭଟ୍ଟାଚାର୍ଯ୍ୟ ଚମକିଲା ପରି କହିଲେ, "ଗ୍ୱାଲିଅର ? – କିଛି ସାଲ ପହିଲେ ଆମାର family ବି ଓଖାନେ ଥିଲା । ବାପା କଲେଜେ ପ୍ରଫେସର ଛିଲେନ । ଆମି ସେଇଠି କଲେଜ ଯାଏଁ ପାଠ ପଢିଥିଲି ।"

"ସେଇଟା ତ ଆଗ କଥା । ଗନ୍ତାୟତ କିନ୍ତୁ ଏଇ ମାତ୍ର ଚାରିବର୍ଷ ତଳେ ବଦଳି ହୋଇ ସେଇଠି ଜଏନ୍ କରିଥିଲେ । ସେଇଠି ହିଁ ତାଙ୍କର ଏ ଝିଅ ଜନ୍ମ ହୋଇଥିଲା । ଏମିତି ତ' ଅନେକ ଲୋକ ଗ୍ୱାଲିଅରକୁ ଯିବା ଆସିବା କରୁଛନ୍ତି । ସେଥିରେ କ'ଣ ଯାଏ ଆସେ ? ସେଇଠି ଆପଣ ଯେତେବେଳେ ଥିଲେ ସେଇଟା ବିଗତ ଶତାବ୍ଦୀର କଥା । ଆଉ ଗନ୍ତାୟତ ଏଇ ଶତାବ୍ଦୀ ଆରମ୍ଭ ବେଳକୁ ସେଇଠି ପହଞ୍ଚିଲେ । ଦୁଇଟିଯାକ ସତନ୍ତ୍ର ଘଟଣା । ଆପଣଙ୍କ ଗ୍ୱାଲିଅର କ'ଣ ତାଙ୍କ ଗ୍ୱାଲିଅର ?" ମିଷ୍ଟର ଭଟ୍ଟାଚାର୍ଯ୍ୟ ପଶି ଆସି କହିଲେ, "ଆରେ, ଆରେ କ'ଣ ସବୁ ଗମ୍ଭୀର ତତ୍ତ୍ୱ ଆଲୋଚନା ହୋଇଗଲା । ମୁଁ miss କରିଗଲି । ଶୁଣିପାରିଲି ନାହିଁ ।"

ମୁଁ ହସିଦେଇ କହିଲି, "ନାଇଁ, ସେମିତି କିଛି ନୁହେଁ । ଏଇ ସେ ଝିଅଟାର ଅସ୍ୱାଭାବିକ ଆଚରଣ କଥା ପଡିଥିଲା ।"

"ହଁ, ହଁ ! ସତେ ତ' ! ସେ ଝିଅଟି କାହିଁକି ସେମିତି ଡରିଯାଇଥିଲା ? – ମାନେ ଆମ ଦେବୀଙ୍କର ଚଣ୍ଡୀ ରୂପ ତାକୁ ଦିଶିଗଲା କି ? – ଯାହା ମୁଁ ଦେଖିବା ମାତ୍ରେ ଭୟରେ ଦଣ୍ଡ ପ୍ରଣାମ କରିଆସିଛି !"

ତାଙ୍କର ଏ ପରିହାସକୁ ମିସେସ୍ ଭଟ୍ଟାଚାର୍ଯ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ ।

"ତୁମି ତ' ବାଲେଶ୍ୱର ଛାଡି କଲିକତା ବି ଯାଇଛ କି ନା ସନ୍ଦେହ ! ତୁମି ଗ୍ୱାଲିଅର୍ କଥା

କ'ଣ ବୁଝିବ ? – ସେ ବଡ଼ି ଗ୍ୱାଲିଅରରୁ ଆସିଛି !"

ମିଷ୍ଟର ଭଟ୍ଟାଚାର୍ଯ ଅତ୍ୟନ୍ତ ରହସ୍ୟଜନକ ଭଙ୍ଗୀରେ କହିଲେ, "ଓ ! ମୁଁ କିନ୍ତୁ ଦିବ୍ୟଦୃଷ୍ଟିରେ ସବୁ ଦେଖିପାରେ, ସବୁ ଜାଣିପାରେ ! ଗ୍ୱାଲିଅର ଦୁର୍ଗର ଉତ୍ତର ପଟେ ବାସନ୍ତୀ କଲୋନୀ ! ସେଇଠି ମୁଖର୍ଜି ପରିବାର ! – ତାଙ୍କର ପୁଅ ବିଲୁ ଆଉ ଝିଅ ଅନୁ..."

ମିସେସ୍ ଭଟ୍ଟାଚାର୍ଯ୍ୟ ପ୍ରାୟ ଚିତ୍କାର କରି କହି ଉଠିଲେ, "କ'ଣ ଏମିତି ସବୁ ଦେଖିଲା ପରି ବକ୍‌ଚେ ହୋ ? ତୁମି କେମିତି ଜାଣିଲ ଏତେ କଥା ?"

ମୁଁ ମଧ୍ୟ ବିସ୍ମୟରେ ଚାହିଁ ରହିଥାଏ ମିଷ୍ଟର ଭଟ୍ଟାଚାର୍ଯଙ୍କୁ । ସତରେ କ'ଣ ସେ ଦିବ୍ୟଦୃଷ୍ଟିରେ ସବୁ ଦେଖି ପାରୁଛନ୍ତି ?

ଭଟ୍ଟାଚାର୍ଯ ମହାଶୟ ଗମ୍ଭୀର ବସିଥା'ନ୍ତି ନିଶ୍ଚୟ । କିନ୍ତୁ ତାଙ୍କ ଆଖି କୋଣରେ ଆଉ ଓଠରେ ଚାପି ରଖିଥିବା ପରିହାସର ଛଟା ମୁଁ ଦେଖିପାରୁଥିଲି । ଯାହା ହୁଏ ତ' ମିସେସ୍ ଭଟ୍ଟାଚାର୍ଯ ଉତ୍ତେଜିତ ଅବସ୍ଥାରେ ଥିବାରୁ ଲକ୍ଷ୍ୟ କରି ପାରୁ ନଥିଲେ ।

ମୁହୂର୍ତ୍ତକ ପରେ ମିଷ୍ଟର ଭଟ୍ଟାଚାର୍ଯ ସମ୍ଭାଳି ନ ପାରି 'ଫେଁ' କିନା ହସି ପକାଇଲେ ଏବଂ ଆଖି ମଟକାଇ କହିଲେ, "କେମନ ! ଚମକେଇ ଦେଲି ନା ନାହିଁ !" "ଥଟ୍ଟା ପରିହାସ ଛାଡ ! ସତ କହ ତୁମି ଗ୍ୱାଲିଅର କଥା କେମନ୍ ଜାନିଲେ ।"

"ଗୋଟାଏ ସର୍ତ୍ତରେ ମୁଁ ରାଜି ହୋଇପାରେ । ତିନି କପ୍ କଫି ନେଇଆସ । ପ୍ରଫେସର୍ ରଥଙ୍କୁ ଆଉ କିଛି ସମୟ ଏଠି ଅଟକେଇବାର ଫିଜ୍ ନ ଦେଲେ ହେବ ନାହିଁ ।"

ବାଧ୍ୟ ଶିଶୁଟିଏ ପରି ମିସେସ୍ ଭଟ୍ଟାଚାର୍ଯ ଉଠିଗଲେ କଫି ଆଣିବା ପାଇଁ । ଏ ରହସ୍ୟ ଜାଣିବାକୁ ତାଙ୍କର ଆଗ୍ରହ ଓ ଉଦ୍‌ବେଗ ମୁଁ ଅନୁମାନ କରିପାରୁଥିଲି । ସେଥିପାଇଁ ସେ ସବୁ ସର୍ତ୍ତ ବିନା ପ୍ରତିବାଦରେ ମାନି ନେବାକୁ ପ୍ରସ୍ତୁତ ଥିଲେ ।

"ହଁ, ରଥ ମହାଶୟ ! ସେ ଝିଅଟା ସତେ କାହିଁକି ସେମିତି ଡରିଗଲା କହିଲେ ?"

"ମୁଁ ବି ତ ଆପଣଙ୍କ ଭଳି ବିସ୍ମିତ । ମୁଁ ସିନା ମିସେସ୍ ଭଟ୍ଟାଚାର୍ଯଙ୍କୁ ବୁଝେଇବା ପାଇଁ ଏ ଘଟଣାକୁ ଭୁଲିଯିବାକୁ କହିଲି କିନ୍ତୁ ଏଇଟା ଯେ ନିଶ୍ଚୟ ଅସାଧାରଣ ଓ ଅସ୍ୱାଭାବିକ – ମନେହୁଏ ଏକ ପାରାସାଇକୋଲୋଜିକାଲ ଘଟଣା ସେଥିରେ ସନ୍ଦେହ ନାହିଁ । କିନ୍ତୁ ହଠାତ୍ ବୁଝି ହେଉନାହିଁ । ତା' ବାହାରେ ମୁଁ ସେ ଗନ୍ତାୟତ ପରିବାରକୁ ଜାଣେ । କୌଣସି ପ୍ରକାର ଆବନର୍ମାଲ କଥା ମୁଁ ଲକ୍ଷ୍ୟ କରିନାହିଁ । ସେ ଝିଅଟା ବି ଖୁବ୍ ବଢିଆ – ହଁ ଆଶ୍ଚର୍ଯ୍ୟ କଥା ହେଲା ଯେ ତା' ନାଁ ବି 'ଅନୁ' । ଆପଣ ଏବେ କହୁଥିଲେ ନା' ଗ୍ୱାଲିଅର ବାସନ୍ତୀ କଲୋନୀରେ ମୁଖର୍ଜି ବାବୁଙ୍କର ଝିଅ ନାଁ 'ଅନୁ' ?"

"ଆରେ, ସତେ ତ ! How strange" ଏତିକିବେଳେ ମିସେସ୍ ଭଟ୍ଟାଚାର୍ଯ କଫି ନେଇ ପହଞ୍ଚିଲେ ।

ତା'ପରେ 'ନିଅନ୍ତୁ', ଆପଣ ନିଅନ୍ତୁ' ଆଦି ଶିଷ୍ଟାଚାର ପର୍ବ । ସେଇଠୁ ନୀରବ କଫିର ପ୍ରଥମ ସ୍ୱାଦ ଚାଖିଲା ପରେ ମିସେସ୍ ଭଟ୍ଟାଚାର୍ଯ ଆଉ ଚୁପ୍ ରହିପାରିଲେ ନାହିଁ ।

"ତୁମି କେମିତେ ଗ୍ୱାଲିଅର କଥା ଜାନିଲେ ଆଗେ ଆମାକେ ବୋଲୋ । ମୁଁ ତୋମାକେ ହୁଏତ' ବାସନ୍ତୀ କଲୋନୀ କଥା କହିଥାଇପାରେ । ଆମାର କିନ୍ତୁ ମନେ ନାଇଁ ।"

"ଆଦୌ ନୁହେଁ । ମୁଁ ତୁମଠାରୁ ଶୁଣି ତୁମକୁ କହିବାର କିଛି ମାନେ ନାହିଁ । ମୁଁ କେବଳ ଏତିକି ଜାଣିଛି ଯେ ଶ୍ୱଶୁର ମହାଶୟ ପ୍ରଫେସର ଗାଙ୍ଗୁଲି ଏକଦା ଗ୍ୱାଲିଅରରେ ଚାକିରି କରୁଥିଲେ । ବାଆସ୍ !"

"ତା'ହେଲେ... ?"

"କହୁଛି । ଟିକିଏ ଧୈର୍ଯ୍ୟ ଧର । ତୁମେ ଜାଣିଛ ନା' ତୁମର ନୂଆ ମାଳି ବଢ଼ିଆ ହିନ୍ଦୀ କହେ । ବୁଢ଼ା ଲୋକ । ବଢ଼ିଆ କାମ ଜାଣେ..."

"ହଁ, ଏଇ ଚାର୍ ପାଞ୍ଚ ରୋଜ୍ ହେବ କାମରେ ଲାଗିଛି । ଆମି ତାକେ ଦେଖି ନାଇଁ କି କଥାବାର୍ତ୍ତା କରିନାଇଁ ।"

"ସେ ହିନ୍ଦୀ କହିଲେ ବି ହିନ୍ଦୁସ୍ତାନୀ ନୁହେଁ । ସେ ପକ୍କା ଓଡିଆ । ସେ ଏଇ ଘୁମୁସର ଅଞ୍ଚଳରୁ ଯାଇ ବହୁଦିନ ବାହାରେ ରହିଯାଇଥିଲେ । ତା' ନାଁ ଗଜେନ୍ଦ୍ର ଦୋରା ।"

"ଆମି ତୋମାକେ କି ପଚାରୁଛି, ତୁମି କୁଆଡେ କଥା ବାଆଁରେଇ ନେଉଛ ।"

"ଆଦୌ ନୁହେଁ । କହିବାକୁ ସୁଯୋଗ ଦେଲେ ସିନା କହିବି !"

"ଏ ମାଲି ଟାଲି କଥା ବନ୍ଦ କରୋ । ଆମାକୋ ବଲୋ ତୁମି କେମନ୍ ଗ୍ୱାଲିଅର୍ କଥା ଜାନିଲେ ।"

"ମାଳି କଥା ବାଦ୍ ଦେଲେ, ତୁମ ପ୍ରଶ୍ନର ଉତ୍ତର ମୋ' ପାଖରେ ନାହିଁ ।"

ଜାଣିଶୁଣି ମିଷ୍ଟର ଭଟ୍ଟାଚାର୍ଯ ଦୁଷ୍ଟାମୀ କଲା ପରି ନୀରବ ରହିଲେ, ଉତ୍କଣ୍ଠା ବଢ଼ାଇବାକୁ, ବର୍ଣ୍ଣନାକୁ ନାଟକୀୟ କରିବାକୁ ।

ହଠାତ୍ ରହସ୍ୟ ଖୋଲି ଦେଇ କହିଲେ, "ଏଇ ଗଜେନ୍ଦ୍ର ଦୋରା ଗ୍ୱାଲିଅରରେ ଥିଲା । ମୁଖର୍ଜି ପରିବାରରେ ବାସନ୍ତୀ କଲୋନୀରେ ! ସେଇକଥା ସେ ମୋତେ କହୁଥିଲା ।"

ମିସେସ୍ ଭଟ୍ଟାଚାର୍ଯ ହଠାତ୍ ଉଠିପଡି ଡାକିଲେ,

"ଆରେ ନୁରି ! ତୁମି ଟିକିଏ ସେ ବୁଢ଼ାମାଲିକୁ ଶୀଘ୍ର ଡାକି ଆନ । କହିବ, ଆମି ଡକାଇଛି ।"

ମୁଁ ଦେଖିଲି ଏହା କ୍ରମଶଃ ବ୍ୟକ୍ତିଗତ ଓ ପାରିବାରିକ ମୋଡ ନେବାକୁ ଯାଉଛି । ମୁଁ ଉଠିବାକୁ ଉଦ୍ୟମ କରିବାକୁ ଜାଣିପାରି ମିସେସ୍ ଭଟ୍ଟାଚାର୍ଯ ହାତ ଟେକି ବାରଣ କଲେ ।

"ନା', ପ୍ରଫେସର୍ ରଥ ଆପନ୍ ଦୟାକରେ ବସନ୍ତୁ ।"

ମିଷ୍ଟର ଭଟ୍ଟାଚାର୍ଯ ଖଣ୍ଡେ ମ୍ୟାଗାଜିନ୍ ଲେଉଟେଇବା ଆଳରେ ଅପେକ୍ଷା କଲେ । ମିସେସ୍ ଭଟ୍ଟାଚାର୍ଯ ଚାହିଁ ରହିଲେ ଦୁଆର ଆଡେ ।

ଗଜେନ୍ଦ୍ର ଦୋରା ଆସି ଛିଡାହେଲା । ଧଳାବାଳରେ ମାନନୀୟ ଚେହେରା । ଫତେଇ ଓ ହାଫ୍ ପ୍ୟାଣ୍ଟ ! କୌଣସି ଗୌରଚନ୍ଦ୍ରିକା ନ ଦେଇ ମିସେସ୍ ଭଟ୍ଟାଚାର୍ଯ ପଚାରିଲେ, "ଆଚ୍ଛା, ତୁମି

କେବେ ଗ୍ୱାଲିଅର ବାସନ୍ତୀ କଲୋନୀରେ ଥିଲେ ? କାହିଁକି, କିସ୍ ପରିସ୍ଥିତି ମେ ମୁଖର୍ଜି ପରିବାରମେ ଥିଲେ ?"

ଗଜେନ୍ଦ୍ର କିଛି କହିବା ପୂର୍ବରୁ ତରବର ହୋଇ ମିସେସ୍ ଭଟ୍ଟାଚାର୍ଯ୍ୟ ପଚାରିଗଲେ :

"ତାଙ୍କ ଘରେ ତାଙ୍କ ଲଡ଼କି ଅନୁ, ଅନୁରୋଧୀ କୋ ତୁମି ଜାନିଛ ?"

"ହଁ, ଜାଣିଛି । ମୋତେ ପ୍ରଥମେ ତାଙ୍କୁ ଇଂରାଜୀ ଆଉ ଗଣିତ ପଢ଼ାଇବା ପାଇଁ ରଖାଯାଇଥିଲା । ସଞ୍ଜବେଳେ ଗୁମାସ୍ତା କାମ କରୁଥିଲି । ହିସାବପତ୍ର ରସିଦ୍ ପାଉତି ଲେଖୁଥିଲି । – ଇଂରାଜୀରେ ।" ମିଷ୍ଟର ଭଟ୍ଟାଚାର୍ଯ୍ୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଆଚ୍ଛା, ତୁମେ ତା'ହେଲେ ପାଠଶାଠ ପଢ଼ିଛ ! କେଉ ଯାଏଁ ପାଠ ପଢ଼ିଛ ?"

ମିସେସ୍ ଭଟ୍ଟାଚାର୍ଯ୍ୟ ତା'ର ଉତ୍ତରକୁ ବାଧା ଦେଇ ପୁଣି ପଚାରିଲେ, "ଆଚ୍ଛା, ଅନୁରାଧାର ବିଷୟେ ଔର କ'ନ ଜାନ କହିପାରିବ ?"

"ଢେର କଥା ଜାଣେ ! ମୁଖର୍ଜି ପରିବାରର ସମସ୍ତଙ୍କ କଥା ଜାଣେ । ମୁଁ ସେଇଠି ଅନେକ ଦିନ ରହିଛି । ଢେର କଥା ଦେଖିଛି । ବହୁତ କଷ୍ଟ ଦେଖିଛି । ବହୁତ କଷ୍ଟ ସହିଛି । କିନ୍ତୁ ଛାଡ଼ି ପାରିନାହିଁ । ସେମାନେ ବି ମୋତେ ଛାଡ଼ି ପାରିନାହାନ୍ତି ।"

ଆମ ସମସ୍ତଙ୍କ ଆଗ୍ରହ ବଢ଼ିଯାଇଥିଲା, କେନ୍ଦ୍ରୀଭୂତ ହୋଇ ଯାଇଥିଲା ଗଜେନ୍ଦ୍ର ଉପରେ । ବୈଠକ ଘରେ ବସିବାକୁ କହିବାରୁ ସେ ଇତସ୍ତତଃ ନକରି ଧିରେ ଗାଲିଚା ଉପରେ ବସିଗଲା, ଠିକ୍ ନମାଜ ପଢ଼ିବା ଢଙ୍ଗରେ । ତା'ର ମୁହଁ, ତା'ର ଚହାଣି, ତା'ର ଢଙ୍ଗଢାଙ୍ଗ ମୋତେ ପ୍ରଭାବିତ କଲା । ମୋର ମନେ ହେଲା ଭଟ୍ଟାଚାର୍ଯ୍ୟ ଦମ୍ପତି ମଧ ମୋ' ଭଳି ତାଙ୍କୁ ଦେଖି ଅନୁଭବ କରିଥିବେ । ମନେ ହେଉଥିଲା ଗଜେନ୍ଦ୍ର ଦୋରା ଆମ ସମସ୍ତଙ୍କ ଅପେକ୍ଷା ଗରୀୟାନ୍, ଆମ ସମସ୍ତଙ୍କର ଜ୍ୟେଷ୍ଠ, ଢେର ଉପଲବ୍ଧି ଆଉ ବିସ୍ତାରର ମଣିଷ । ତା' ପ୍ରତି ଅନ୍ତତଃ ମୋର ସମ୍ମାନବୋଧ ଢେର୍ ବଢ଼ିଗଲା । ତା'ର କୌଣସି କଥାରେ ଇତସ୍ତତଃ ନ ଥିଲା । ଭାରି ସ୍ୱଚ୍ଛ, ନମ୍ର, ଭଦ୍ର ଓ ଦୃଢ଼ ମଣିଷଟାଏ ଗଜେନ୍ଦ୍ର ଦୋରା !

"ମୁଖର୍ଜି ପରିବାର ମୋ' ସକାଶେ ଏକ କଣ୍ଟାବଣ ! ମୁଁ ପଶିଗଲା ପରେ ବାହାରି ଆସି ପାରିଲି ନାହିଁ । କଣ୍ଟାଗଛଟା ପ୍ରତି ପିଲାଦିନୁ ମୋର ଗୋଟାଏ ଦୁର୍ବଳତା ରହି ଆସିଛି । ତାକୁ ଏକ ପ୍ରକାର ଭଲ ପାଇଯିବା, ତାକୁ ସଜାଡ଼ିଦେବାର ଅକାରଣ ଦୁର୍ବଳତା । ମୁଁ ଆମ ଗାଁରେ ଗୋଟାଏ ବବୁଲ୍ ଗଛକୁ ନିଜେ ବହୁବାର କଣ୍ଟାରେ ଫୋଡ଼ି ହୋଇ ଗୁଆ ଗଛ ପରି ଚିକ୍କଣ କରିଥିଲି । ସେଇ ଦୁର୍ବଳତା ମୋତେ ମୁଖର୍ଜି ପରିବାରରେ ବାନ୍ଧି ରଖିଥିଲା ।... ତାଙ୍କ ବଗିଚାରେ ସବୁ ଗୋଡ଼ି କାଢ଼ି ସେଇ ମାଟିରେ ମୁଁ ନାନା ଜାତି ଫୁଲ ଫୁଟାଇଥିଲି ।"

ସେ ମୁହୂର୍ତ୍ତେ ଆନମନା ହୋଇ ତଳକୁ ଚାହିଁ ରହିଲା । ତାକୁ ବାଧା ଦେବାକୁ ଆମର କାହାରି ମନ ହେଲା ନାହିଁ । ବୋଧହୁଏ ସାହସ ହେଲାନାହିଁ ।

"କାହା କଥା କହିବି ? – ମୁଖର୍ଜି ବାବା ! ମୁଁ ତାଙ୍କୁ ବାବା ଡାକୁଥିଲି । ବାଦଲ ମୁଖର୍ଜି । ସେ

ଗୋଟାଏ ବଡ 'ଏ' କ୍ଲାସ କଣ୍ଟ୍ରାକ୍ଟରର ମୁନିବ କାମ କରୁଥିଲେ । କଣ୍ଟ୍ରାକ୍ଟରକୁ ମିଛ ରସିଦ୍ ଯୋଗାଉଥିଲେ । ନିରକ୍ଷର ମୂଲିଆଙ୍କ ଟିପଚିହ୍ନ ନେଇ ପଇସା ଘରେ ଅଧିକ ଲେଖିବାକୁ ମୋତେ ତାଗିଦ୍ କରୁଥିଲେ । କଣ୍ଟ୍ରାକ୍ଟର ସରକାରକୁ ଠକୁଥିଲା । ବାବା କଣ୍ଟ୍ରାକ୍ଟରକୁ ଠକୁଥିଲେ – ଉଭୟେ ଢେର୍ ପଇସା ଠୁଳ କରୁଥିଲେ ।... ତାଙ୍କର ଦିନ ଅପେକ୍ଷା ରାତିରେ କାରବାର ବେଶି ଥିଲା । ସେ ଏକୁଟିଆ ସେଇ କାମ କରୁଥିଲେ ।"

"ଦିନେ ଏମିତି ସକାଳୁ ଖୁବ୍ ବିବ୍ରତ ହୋଇ ବାବା ପାଟିତୁଣ୍ଡ କଲେ । ଫୋନ୍ କରି ପୁଲିସ୍‌କୁ ଡକେଇଲେ । ମୋତେ ଦେଖେଇ କହିଲେ, "ଯହି ଶାଲା ଚୋର୍ ହେ । ଇସିନେ ମେରା ପୈସା ଚୁରାୟା ହେ ।"

"ପୁଲିସ୍ ମୋତେ ଟଣାଓଟରା କଲେ । ଏତିକିବେଳେ ପାଟିଶୁଣି ମା' ବାହାରି ଆସିଲେ । ମୁଁ ତାଙ୍କୁ ମା' ଡାକୁଥିଲି । ତନିମା ମୁଖର୍ଜି । ସେ ମୋର ଖୁବ୍ ଯତ୍ନ ନେଉଥିଲେ । ସେ ପଶୁ ପଶୁ ପାଟି ଶୁଣେଇଲେ, 'ଆରେ, ଉସେ କ୍ୟୁଁ ପକ୍‌ଡେ ହୋ ! ୱହ ଚୋର ନହିଁ ହୋ ସକତା ! ମୁଝେ ବତାଓ କ୍ୟା ବାତ୍ ହେ ।'

"ବାବା ଚିତ୍କାର କଲେ, 'ତୁମି ଚୁପ୍ କରୋ । ଆମାର ଏକ୍‌ଟା ନୋଟେର୍ ବଣ୍ଡିଲ୍ ଚୋରି ହୟେଛେ । ଏଖାନେ ତୋ' ବାଇରେର୍ ଲୋକ୍ ଆର୍ କେଉ ନେଇ ।' – ମା' ଘର ଭିତରକୁ ଯାଇ ସାଙ୍ଗେ ସାଙ୍ଗେ ବାହାରି ଆସିଲେ । ହାତରେ ଶ'ଟଙ୍କାର ନୋଟ୍ ବଣ୍ଡଲ୍ । 'ଏ ଟା କି ?' – ବାବା ଝାମ୍ପି ନେଇ କହିଲେ, ହେଁ, ହେଁ, କୋଥାଏ ଛିଲ ?"

ମା' କହିଲେ, 'ଆପ୍‌ନାର କୁଲଚନ୍ଦ୍ରମା ବିଲୁର୍ ବ୍ୟାଗେ ଛିଲ !'...

"ପୁଲିସ୍ ମୋତେ ଛାଡି 'ବିଲୁ' କିଏ ବୋଲି ପଚାରିବାକୁ ଆରମ୍ଭ କଲା । ବାବା ତାଙ୍କୁ ନାନା କଥା କହି ବାହାରକୁ ନେଇଗଲେ । କିଛି ଘୁସ୍ ଦେଇ ବିଦାକଲେ । ମୁଁ ଦେଖିଛି ।"

"ମୁଁ ଜାଣିଥିଲି ବିଲୁ ଚୋରି କରୁଥିଲା । ମା' ବି ଜାଣିଥିଲେ । ବାବା ଜାଣି ନ ଜାଣିଲା ପରି ରହୁଥିଲେ । – କାରଣ ବିଲୁ ଜାଣିଥିଲା ତା'ର ବାବା କ'ଣ କରୁଥିଲେ ।"

"ମା' ମୋର ହାତ ଧରି କହିଲେ, ବାବା, କିଛୁ ମନେ କରୋ ନା । ତୁମି ଭାରି ଭାଲୋ ଛେଲେ । କିନ୍ତୁ ବିଲୁ କେ ଏକ୍‌ଟୁ ନଜର ଦାଓ ।"

"ମୁଁ ସେ ଦାୟିତ୍ୱ ନେଇ ବିଲୁର ପିଛା କରିଥିଲି । ଟିଉସନ୍ ଯିବା ବାହାନାରେ ବିଲୁ ସଂଜବେଳୁ ବାହାରି ଯାଉଥିଲା । ତାକୁ ଛକରୁ ଅନ୍ୟମାନେ ନେଇ ଯାଉଥିଲେ । ବିଲୁକୁ ସେତେବେଳେ ମୋରି ବୟସ । ସେ ନିଶା ଖାଇବା ଶିଖି ସାରିଥିଲା । ପଇସା ଚୋରି କରିବା ଶିଖି ସାରିଥିଲା ।"

"ମୁଁ ତାକୁ ପିଛା କରି ସେ ଗୁଣ୍ଡାଙ୍କ ହାତରେ ଧରା ପଡିଥିଲି । ସେମାନେ ମୋତେ ଖୁବ୍ ମାରିଥିଲେ । ମୁଁ ଅଚେତ୍ ଅବସ୍ଥାରେ ହସ୍‌ପିଟାଲ ବୁହା ହୋଇ ଯାଇଥିଲି । ଚେତା ଫେରିବାକୁ ବିଲୁକୁ ମୋ' ସାମ୍ନାରେ ରଖି ପୁଲିସ୍ ଜେରା କରିଥିଲା । ବିଲୁ ଖୁବ୍ ଡରି ଯାଇଥିଲା । ମୁଁ ତାକୁ

ବଞ୍ଚେଇବାକୁ ମିଛ କହିଥିଲି । ମୁଣ୍ଡରେ ପଟି ଭିଡି କିଛିଦିନ ଘରେ କାମ କରିଥିଲି । ମା' କାନ୍ଦିଥିଲେ । ବିଲୁର ଗତିବିଧି ସାମାନ୍ୟ ବାଗେଇ ଯାଇଥିଲା କିଛିଦିନ ପାଇଁ ।"

"କିନ୍ତୁ ଦିନେ ବାବା ରାତିରେ ମୋ' ପାଖରେ ଧରାପଡିଗଲେ । ସେ ସମସ୍ତଙ୍କୁ ଠକୁଥିଲେ । ଏପରିକି ନିଜ ଘର ଲୋକଙ୍କୁ ବି । ବାବା ଚୋରା କାରବାର କରୁଥିଲେ । ଗୋଟାଏ ଅନ୍ଧାରିଆ ଗଳିରେ ପାଞ୍ଚମିନିଟ୍ ଭିତରେ କ'ଣ ଦେଇ କ'ଣ ନେଇ ଆସୁଥିଲେ । ମୁଁ ବିଲୁକୁ ଜଗିବା ଭିତରେ ବାବାଙ୍କୁ ଦେଖି ପକାଇଲି । ସେ ଘରକୁ ଆସି ଭୀଷଣ ବିଗିଡିଗଲେ । ତା'ପରେ ଡରିଗଲେ । ମୋତେ ମନ ଦେଇ କଥାବାର୍ତ୍ତା କଲେ । କ'ଣ ଭାବି ମୋତେ ଏକୁଟିଆ ଡାକି ବିଶ୍ୱାସରେ ସବୁ ବୁଝେଇଲେ । କେତେ କାନ୍ଦିଲେ । ମୁଁ ବି ଢେର କାନ୍ଦିଲି । କିନ୍ତୁ ତା'ପରେ ମୋ' ହାତରେ ଛୋଟ ପାର୍ଶଲଟିମାନ ସେଇ ଅନ୍ଧାରିଆ ଗଳିକୁ ପଠେଇଲେ । ମୁଁ ସେଇଠୁ ଆଉ ଗୋଟେ ବଡ ପାର୍ଶଲ ଆଣୁଥିଲି । କ'ଣ ନେଉଥିଲି ଜାଣେନା । କିନ୍ତୁ ଆଣୁଥିଲି ବୋଧହୁଏ ନୋଟ ବିଡା ! "ଗୋଟାଏ ରାତିରେ ଧରା ପଡିଲି । ଆର ଲୋକଟା ଉଭୟ ପାର୍ଶଲ ଧରି ଦୌଡି ଚାଲିଗଲା । ମୋତେ ଫାଣ୍ଡିରେ ଅଟକ ରଖିଲେ । ଖୁବ୍ ଜେରା, ମାଟପିଟ୍ କଲେ । ମୁଁ ସହିଗଲି । ଖାଉନ୍ଦଙ୍କ ନାଁ କହିଲି ନାହିଁ, କହିପାରିଲି ନାହିଁ । ବାବା ଓକିଲ ଓ ଦଲାଲ ଲଗେଇ ପୁଲିସ୍‌କୁ ଲାଞ୍ଚ ଦେଇ ମୋତେ ମୁକୁଳେଇଲେ ।... "ମା'ଙ୍କ ଉପରେ ମୋର ଅଗାଧ ବିଶ୍ୱାସ । ସେ ହିଁ ସମ୍ଭାଳିଥା'ନ୍ତି ସମସ୍ତଙ୍କୁ । କିନ୍ତୁ ଦିନେ ଦିନେ ଖାବାବେଳେ ଚୁପ୍‌ଚାପ୍ ଘୋଡାଗାଡିରେ ଏକୁଟିଆ କୁଆଡେ ଚାଲିଯାନ୍ତି । ଫେରନ୍ତି ଛାଇ ଲେଉଟାଣି ବେଳକୁ । ମୋତେ ତାଗିଦା କରିଥା'ନ୍ତି ଘର ଜଗି ରହିବାକୁ । ଘରେ ଆଉ କେହି ନ ଥା'ନ୍ତି ସେତେବେଳେ ।"

"ଦିନେ, ମା' ଯିବା ପରେ ଆଉ ଗୋଟେ ଘୋଡାଗାଡିରେ ଜଣେ ବାବୁ ଆସି ପହଞ୍ଚିଲେ । ମୋତେ ପଚାରିଲେ 'ଆରେ, ମାଲକିନ ହେଁ ? – ଉନ୍‌କୋ ଖବର୍ ଦୋ କି ହମ୍ ଆୟେ ହେଁ ।" "ମାଲ୍‌କିନ୍ ତୋ' ସା'ବ୍ ଆଧାଘଣ୍ଟା ପହଲେ ହି ଚଲିଗୟି – ଏକ ଇକ୍କାମେ ?"

"କହାଁ ଗୟି ?"

"ମାଲୁମ୍ ନହିଁ ସା'ବ୍ ।"

"ସେ ତରବରରେ ତାଙ୍କ ଗାଡିରେ ଫେରିଗଲେ । ମା' ସେଦିନ ମୋତେ ଅଲଗା ମିଠା ଖୁଆଇ ଖୁବ୍ ଜେରା କଲେ ସେ ବାବୁ ବିଷୟରେ । ସେ କ'ଣ କହିଲେ, ମୁଁ କ'ଣ କହିଲି ସେସବୁ ମୁଁ ଟିକ୍‌ନିଖି ବଖାଣିଲା ପରେ ମା' ଖୁବ୍ ଆଶ୍ୱସ୍ତ ହେଲେ । ଖୁସି ହୋଇଗଲେ । ଅବଶ୍ୟ ତାଗିଦ୍ କରି କହିଲେ ସେ ବିଷୟରେ କାହାରି ଆଗରେ ପାଟି ନ ଫିଟେଇବାକୁ ।"

ତା'ପରେ ଗଜେନ୍ଦ୍ର ପୁଣି ନୀରବରେ ତଳକୁ ଚାହିଁ ରହିଲା । ମୋର ମନେ ହେଲା ଏ ବୟାନର ଅଜସ୍ର କଣ୍ଟାରେ ବିଦ୍ଧ ହୋଇ ସେ ଯେପରି ଚୁପ୍‌ଚାପ୍ ରକ୍ତ ଝରଉଥିଲା । ଆମେ ଅପେକ୍ଷା କଲୁ ଗଭୀର ଉତ୍କଣ୍ଠାରେ । କାରଣ ଯା'ପରେ ମୁଖର୍ଜି ପରିବାରର ଆଉ ଜଣେ ବାକି ରହିଲା, ଅର୍ଥାତ୍ ଅନୁରାଧା, ତା' ବିଷୟରେ ସେ ହୁଏତ କହିପାରେ ।

ମିସେସ୍ ଭଟ୍ଟାଚାର୍ଯ୍ୟଙ୍କ ମୁହଁ ଥମ୍‌ଥମ୍ ଦେଖାଯାଉଥିଲା । କପାଳ ଜକେଇ ଯାଇଥିଲା ଝାଳରେ ।

ଗଜେନ୍ଦ୍ର ମନକୁ ମନ ବିଡ୍ ବିଡ୍ ହେଲା ପରି ଆରମ୍ଭ କଲା –

"ଏତେ ବର୍ଷର ଏତେ କଥା କ'ଣ ମୁଁ କହିପାରିବି ? ତା' ଭିତରେ ଅନେକ କଥା ଅକୁହା ରହିଯିବା ଭଲ ।... ମୁଁ ବି ସେ ସବୁ ଖୋଲି କହିପାରିବି ନାହିଁ ।... ବାବା ଦିନେ ପାହାନ୍ତା ପହରେ ବେଳକୁ ଛଟପଟ ହେଲେ । ନିଶ୍ୱାସ ନେଇପାରିଲେ ନାହିଁ । ତାଙ୍କୁ ଟାକ୍ସିରେ ହସ୍‌ପିଟାଲ ନେଇଗଲୁ ମା' ଓ ମୁଁ । ଅନୁ ଶୋଇଥିଲା । ହସ୍‌ପିଟାଲରେ ପହଞ୍ଚିବା ପୂର୍ବରୁ ବାବା ଚାଲି ଯାଇଥିଲେ ।"

"ଦଶ ବାର ଦିନେ ଯାଏଁ ସେ ବାବୁ ଜଣକ – ମିଷ୍ଟର ଗୋୟଲ – ଖୁବ୍ ସାହାଯ୍ୟ କଲେ । ସେ ପ୍ରାୟ ଘରେ ରହୁଥିଲେ ।"

"ସେତେବେଳକୁ ଦୁଇବର୍ଷ ହେବ ବିଲୁ ଲାପତା ହୋଇଯାଇଥିଲା । ବାବାଙ୍କ ଟ୍ରେଜେରୀରୁ ସବୁଯାକ ବନ୍ଧକ ସୁନା ଆଉ ଢେର ଟଙ୍କା ନେଇ ଚାଲି ଯାଇଥିଲା ।..."

"ମିଷ୍ଟର ଗୋୟେଲ ଗେଷ୍ଟ ରୁମ୍‌ରେ ରହିଲେ ।"

"ଅନୁ ସେତେବେଳେ କଲେଜରୁ ଆସି ସାରିଥାଏ । ମୋତେ ଡାକୁଥାଏ 'ଗଜ୍ ଦାଦା' । ଭାରି ସୁନ୍ଦର ଦିଶୁଥାଏ । ମା'ଙ୍କ କଥା ମାନି ମୁଁ ତାକୁ କିଛିଦିନ କଲେଜ ପର୍ଯ୍ୟନ୍ତ ଛାଡି ଯାଉଥିଲି । ସେ ନିଜେ ହିଁ ମନା କରିଦେଲା ।"

"ଦିନେ ଦିନେ ଅନୁ ଫେରିଲା ବେଳକୁ ରାତି ହୋଇଯାଉଥିଲା । ସେ କହୁଥିଲା ଯେ, ଗାର୍ଲସ, ହଷ୍ଟେଲ୍‌ରେ ତା' ସାଙ୍ଗ ପାଖରେ ଗପ୍‌ସପ୍ କରି ରହିଯାଉଥିଲା । କିନ୍ତୁ ମୁଁ ଜାଣି ପାରୁଥିଲି ଯେ ସେ ମିଛ କହୁଥିଲା । ମା' ବି ଜାଣୁଥିଲେ । କିନ୍ତୁ କିଛି କହୁ ନ ଥିଲେ । ମୁଁ ବି ଚୁପ୍ ରହୁଥିଲି । ମନେ ମନେ ଭୀଷଣ କଷ୍ଟ ପାଉଥିଲି । ମୋ' ଚାରିପଟେ କଣ୍ଟାବଣ ଉଠି ଯାଉଥିଲା । ମୁଁ କିଛି କରିପାରୁ ନ ଥିଲି । ଖାଲି ମୋ' ଦେହ ସାରା କଣ୍ଟାରେ ଫୋଡି ହୋଇ ରକ୍ତ ଝରେଇଲା ପରି ଲାଗୁଥିଲା ।"

ଅଳ୍ପ ସମୟ ଚୁପ୍ ରହିଲା । ବୋଧହୁଏ ଭିତରେ ଖଣ୍ଡ ଖଣ୍ଡ ହୋଇ ଯାଉଥିଲା । କ୍ଷତବିକ୍ଷତ ଅନ୍ତରାତ୍ମା ଲହୁଲୁହ ଝରଉଥିଲା ନୀରବରେ । ଗଜେନ୍ଦ୍ର ପାଟି ଫିଟେଇଲା –

"ଦିନେ ବାହାର ପିଣ୍ଡାରେ ବସି ମୁଁ ଫୁଲମଞ୍ଜି ବାଛୁଥିଲି । ଛୁଟି ଦିନ । ହଠାତ୍ ଅନୁର ପାଟି ଶୁଣି ଦୌଡିଗଲି । ମିଷ୍ଟର ଗୋୟେଲ ତାକୁ ଧରି ଟଣାଓଟରା କରୁଥିବାର ଦେଖି ମୁଁ ତାକୁ ଓଟାରି ଆଣିଲି । ସେ ମାତାଲ ଅବସ୍ଥାରେ ଥିଲେ ।"

"ଅନୁ ଲୁଗାପଟା ସଂଯତ କରୁଥିଲା । ମା' ଦୁଆର ମୁହଁରେ ଠିଆ ହୋଇ ଯାଇଥିଲେ । ଅତି ଭୟଙ୍କର ଦେଖାଯାଉଥିଲେ ।"

"ଗୋୟଲଙ୍କ ଦୁଇ ବାହୁକୁ ମୁଁ ପଛରେ ମୋଡି ଧରିଥାଏ । ସେ କିନ୍ତୁ କ'ଣ ସବୁ କହୁଥା'ନ୍ତି । ସେଥିରୁ ଜଣାଯାଉଥିଲା ଯେ ହୋଟେଲକୁ ଡକେଇଲେ ତ' ଅନୁ ଯାଉଛି, ତା'ର ସାଙ୍ଗସାଥୀ

ଯାଉଛନ୍ତି । ଏଠି କାହିଁକି ନାହିଁ କରୁଛି ? – ଆଉ ଜଣା ଯାଉଥିଲା ଯେ ସେ ତାଙ୍କ ସ୍ୱାମୀକୁ ଭୁଲି ଏଠିକି ଆସିଛନ୍ତି ତ' ଯାଙ୍କୁ ଭୁଲି ଆଉ କାହା ପାଖକୁ ମଧ୍ୟ ଯାଇପାରନ୍ତି ।... ଉଭୟ ମା' ଝିଅଙ୍କ ବିଷୟରେ ଏପରି ଶୁଣିଲା ପରେ ମୁଁ ସମ୍ଭାଳି ପାରିଲି ନାହିଁ । ମୁଁ ସେ ମିଷ୍ଟର ଗୋୟେଲକୁ ମାରିମାରି ତଳେ ପକେଇ ଦେଲି । ତାଙ୍କ ନାକରୁ ପାଟିରୁ ରକ୍ତ ବାହାରିଲା ।..."

"କିନ୍ତୁ ମା' ହିଁ ତୁଳାରେ ଔଷଧ ଲଗେଇଲେ । ପାଣି ଛିଟା ମାରି ତାଙ୍କୁ ହୋସ୍‌କୁ ଆଣିଲେ । ଅନୁ ସେଇଠୁ କୁଆଡେ ଚାଲିଗଲା ବାହାରକୁ । ମୋ' ଦେହସାରା ନିଆଁରେ ଜଳିଯାଉଥାଏ ।... ସେଦିନ ସନ୍ଧ୍ୟାରେ ଖୁବ୍ ଝଗଡା ହେଲା । ମିଷ୍ଟର ଗୋୟଲ୍ ଘର ଛାଡି ଚାଲିଗଲେ ।"

ଚଳଚ୍ଚିତ୍ର ପରି ମୁଖର୍ଜି ପରିବାରର ବିପର୍ଯ୍ୟୟ ଆମ ଆଗରେ ଫିଟି ଯାଉଥିଲା । ଗଜେନ୍ଦ୍ର ଦୋରା ଢେର୍ କଥା ଅକୁହା ରଖୁଥିଲା । ତଥାପି ଯାହା କହୁଥିଲା ତାହା ବଜ୍ର ବିଦ୍ୟୁତ୍ ସହ ଝଡ ବର୍ଷା ପରି ଆମ ଉପର ଦେଇ ପାରି ହୋଇଯାଉଥିଲା ।

"ଅନୁ ବାହା ହୋଇଗଲା । ଚାଲିଗଲା କାନପୁର । ମା' ଘରେ ଏକୁଟିଆ ଥାଆନ୍ତି । ଦିନେ ବଜାରରୁ ଫେରି ଦେଖିଲି ଘରେ ତାଲା ପଡିଛି । ମା' ଘର ଛାଡି ଚାଲି ଯାଇଛନ୍ତି । ଖୋଜଖବର ନେଇ ବୁଝିଲି ଯେ ସେ ସେଇ ମିଷ୍ଟର ଗୋୟଲଙ୍କ ନୂଆ ଫାର୍ମ ହାଉସ୍‌ରେ ରହୁଛନ୍ତି ।..."

"ଏଠି ସେଠି କିଛିଦିନ ବୁଲିଲି । ପ୍ରାୟ ପାଞ୍ଚବର୍ଷ । ଯେଉଁଆଡେ ଗଲି ମୋ' ଚାରିଆଡେ ସେଇ କଣ୍ଟାବଣ ହିଁ ମୋତେ କ୍ଷତବିକ୍ଷତ କଲା ।... ମୁଁ ଦିନେ ଶୁଣିଲି ଯେ ଅନୁ ଆତ୍ମହତ୍ୟା କରିଛି । ମୁଁ ପ୍ରାୟ ଭାଙ୍ଗି ପଡିଲି – ଗଲି କାନପୁରକୁ । ତା'ର ସାନଝିଅଟିକୁ ଦେଖିଲି । ଆଉଁସି ଦେଲି । ଗୁଆଗଛ ପରି ଚିକ୍କଣ ଲାଗିଲା ।"

ମନେ ମନେ ପ୍ରାର୍ଥନା କଲି, 'ଏମିତି ଯାଙ୍କୁ ଚିକ୍କଣ, ସୁନ୍ଦର କରି ରଖିଥାଅ ପ୍ରଭୁ ।' – ତା'ପରେ ଓଡିଶା ଚାଲିଆସିଲି ।"

"ଗାଁରେ ରହି ପାରିଲି ନାହିଁ । ସେମାନେ ମୋତେ ରଖେଇ ଦେଲେ ନାହିଁ । ମୋତେ ସବୁଆଡୁ ବେଦଖଲ କରିସାରିଥିଲେ । ଏଠି ଆପଣଙ୍କ ଆଶ୍ରାରେ ରହିଯାଇଛି । ଆପଣଙ୍କ ଇଚ୍ଛା ।"

ଅନୁ ଆତ୍ମହତ୍ୟା କରିବା ପାଖାପାଖି ବୋଧହୁଏ ଗନ୍ତାୟତଙ୍କ ଝିଅ ଜନ୍ମ ହୋଇଛି । ହୋଇପାରେ ସେ ଜାତସ୍ମର । ହୋଇପାରେ ତା'ର ଗ୍ୱାଲିଅରର ସ୍ମୃତି ଜାଗ୍ରତ ଅଛି ।

ହୋଇପାରେ ସେ ମିସେସ୍ ଭଟ୍ଟାଚାର୍ଯ୍ୟଙ୍କୁ ଜାଣିଥିଲା । ଏବେ ବି ଚିହ୍ନିପାରୁଛି ।

ତଳକୁ ମୁହଁ ପୋତି ବସିଥିବା ଗଜେନ୍ଦ୍ର ଦୋରା କହିବାକୁ ଆରମ୍ଭ କଲା –

"ଅନୁର ଜଣେ ଭାରି ଘନିଷ୍ଠ ବାନ୍ଧବୀ ଥିଲା । ତାଙ୍କ ନାଁ ଅନି ।"...

ହଠାତ୍ ଗୋଟାଏ ଅଶରୀରୀ ଆତ୍ମା ସେ ବୈଠକ ଘରକୁ ପଶି ଆସିଲା ପରି ଆମେ ଅସୁସ୍ଥ ବୋଧ କଲୁ ।

ଗଜେନ୍ଦ୍ର ମୁହଁ ଟେକି ଚାହିଁଲା । ଅନିନ୍ଦିତା ଭଟ୍ଟାଚାର୍ଯ୍ୟଙ୍କ ମୁହଁକୁ ଦେଖି ଆଖି ତଳକୁ କରିନେଲା । ଏବଂ ଆସ୍ତେ ଉଠି ସେଇଠୁ ବାହାରିଗଲା ନିଃଶବ୍ଦ ।

ମୋତେ ବୋଧହେଲା ଯେ ସେ ଦୁହେଁ ପରସ୍ପରକୁ ଖୁବ୍ ଚିହ୍ନିଛନ୍ତି ।

ଗଜେନ୍ଦ୍ରର ଭାଗ୍ୟରେ ହୁଏତ ଆଉ ଏକ ବବୁଲ ଗଛକୁ ଗୁଆଗଛ କରିବା ପ୍ରକ୍ରିୟାରେ ରକ୍ତାକ୍ତ ହେବାକୁ ଅଛି ।

ତା'ର ସତେ ବା ଏ ଜନ୍ମରେ କଣ୍ଟାବଣରୁ ଉଦ୍ଧାର ନାହିଁ ।

କାହାର ବା ସେଥିରୁ ଉଦ୍ଧାର ଅଛି ସତେ ।

**ସତ୍ୟକାମ**

"କିରେ ବବୁ ! ବାପା ଯାହା କହୁଛନ୍ତି ତା' କ'ଣ ସତ ? ତୁ ତାଙ୍କ ମୁଣାରୁ ବାରଶହ ଟଙ୍କା ଚୋରେଇବୁ ?"

"ହଁ, ଚୋରେଇଛି । କ'ଣ ହେଲା ସେଇଠୁ ?"

ବୈଠକଘରର କାନ୍ଥଗୁଡାକ ଖଜଣା ଗାରଦ ସନ୍ତ୍ରୀ ପରି ଠପ୍ କିନା ସଳଖି ହୋଇଗଲେ । ନିଃଶ୍ୱାସ ଚଳିଲା ନାହିଁ କିଛି ସମୟ !

"ନା, କିଛି ହେଲା ନାଇଁ ଯେ, କିନ୍ତୁ ହୋଇପାରନ୍ତା । ମୋ' ଘରେ ତ' ମୁଁ ଜଜ୍ ନୁହେଁ ! ମୁଁ କେବଳ ତୋ' ବାପାର 'ଦ୍ୱାରକା ଭାଇନା' । ଢେର୍ ଚୋରଙ୍କ ମୁହଁ ଟାଣ ଆଉ ଭୁରୁଡି ମୁଁ ଦେଖି ଆସିଛି ।" ନାକପୁଡା ଫୁଲେଇ ଆଖି ତରାଟି ଟିକିଏ ଚଢାଗଳାରେ ଦ୍ୱାରକାନାଥ ଚୌଧୁରୀ ମୁରବି ପଣିଆରେ ହାଙ୍କିଦେଲେ ।

"ଆପଣ ଦେଖି ଆସିଛନ୍ତି । ମୁଁ କିନ୍ତୁ ଦେଖୁଛି ।" କହିଲା ବବୁ । ଖୁବ୍ ଠୋକ୍‌ଠୋକ୍ ଜବାବ୍ ପଛଆଡେ ଗୋଟାଏ ଗହୀର ବନସ୍ତର ହେଣ୍ଟାଳ ଲୁଚି ରହିଥାଏ । ଦୃଢ଼ଭ୍ରୁରୁ, ଠିଆ ଠିଆ ନିଶ, ସୋଫା ଉପରୁ ଲମ୍ବିଆସିଥିବା ସଳଖ ଗୋଡ ଦୁଇଟାରେ ବେପରୁଆ ଠାଣି ।

ଦିହୁଡି ହୁଳା ଉପରେ ଝୁଣାଗୁଣ୍ଡ ବୁଣି ହୋଇଗଲା । ଫାଉଁ କିନା ଉଠି ଠିଆ ହୋଇପଡିଲେ ଦ୍ୱାରକାନାଥ । "କ'ଣ ହେଲା ! ଖୁବ୍ ମୁହଁବଢି କଥା କହିଯାଉଚୁ ତ' ! କିରେ ଅର୍ଜୁନି, ଏଇଟାକୁ ପୁଲିସ୍ ହାଜତ୍‌ରେ ପକେଇଦେଲୁ !! ତୋ' ପୁଅ ହେଇ ଏଇଟା କିଛି ଶିଖି ନାହିଁ ! ଯାକୁ କଥା କହିବା ଜଣା ନାହିଁ । ଭଦ୍ରତା ଜଣା ନାହିଁ । କେମିତି ଗୋଡ ଫରକଟେଇ ବସିଛି ଅଭଦ୍ରଙ୍କ ପରି । ଆମେ ଯୋଡାଏ ଏଠି ଅଛୁ । କିଛି ଟିକିଏ ଖାତିର୍ ନାହିଁ ! କ'ଣ ନା ଚୋରି କରିଛନ୍ତି ବୋଲି କୁଳଚନ୍ଦ୍ରମାଙ୍କର ଏମିତି ଗରଁ !"

ବବୁ କିଛି ନ କହି ମୁଣାରୁ ସିଗାରେଟ୍ ପ୍ୟାକେଟ୍ କାଢିଲା ।

ଦି'ହଳ ଆଖି ତରାଟି ହୋଇଗଲା । ପାଟି ମେଲା ହୋଇଗଲା ।

ସେ ଗୋଟିଏ ସିଗାରେଟ୍ ବାହାର କରି ସୋଫା ଦଣ୍ଡା ଉପରେ ଆସ୍ତେ ଠୁକେଇଲା । କୌଣସି ପ୍ରକାର ଇତସ୍ତତଃ ନକରି ଡାହାଣ ଓଠ କଡରେ ତାକୁ ଲଗେଇଦେଲା । ଦିଆସିଲିଟିକୁ ଥରେ ବଜେଇ ନେଇ କାଠି ବାହାର କଲା । ଛର୍‌କିନା ସିଗାରେଟ୍ ଲଗେଇ କଳେ ଧୂଆଁ ଛାଡି ଅନେଇଲା ସାମ୍ନାକୁ ।

ଦି'ହଳ ଆଖି ଛାନିଆ ହେଲା ପରି ଅନେଇଥା'ନ୍ତି । ତାଙ୍କ ଆଗରେ ହତ୍ୟା ଅପରାଧ ହେଇଗଲା । ନାରୀ ଧର୍ଷଣ ହେଇଗଲା । ସୂର୍ଯ୍ୟଚନ୍ଦ୍ର ଲେଉଟି ପଡିଲେ । ଏଇ ବୋଧେ ଯୁଗ ଲେଉଟିଗଲା !

ଗୁଳି ଫୁଟିଲା ପରି ଶୁଭିଲା, "ବେକୁବ୍, ନାଲାଏକ, ଇଡିଅଟ୍, ସୁଅର କା ବଚ୍ଚା ! ଅଭଦ୍ର କାହାଁକା, ଠିକଣାରେ ଗୋଡ ଲୋଚେଇ ବସ୍ ! ଫୋପାଡ ସେ ସିଗ୍ରେଟ୍ ! ନ ହେଲେ ବଜେଇବି ଚଟ୍‌କଣା ତୋ' ଗାଲ ଫଟେଇ ଦେବି ।" ହୁଏତ ବାପା ସେପରି ଗର୍ଜିଲେ, ହୁଏତ ମଉସା, ହୁଏତ ଉଭୟେ ମିଶି ସେମିତି ଦୁଲୁଦୁଲ୍ ହେଲେ !

ବବୁ ସାମାନ୍ୟ ହସିଲା କେବଳ ! "ଆପଣମାନଙ୍କ କଲିଜା ଖୁବ୍ ପୁରୁଣା ଆଉ ଦୁର୍ବଳ ! ଏମିତି ଅସଂଯତ ଚିତ୍କାର କଲେ ସେଗୁଡିକ ବନ୍ଦ ହୋଇଯିବେ କିମ୍ବା ଖସି ପଡିବେ ।"

"ଗେଟ୍ ବେ ଗେର, ସଇତାନ୍, ନିମକହାରାମ୍, ବାଷ୍ଟାର୍ଡ !"

ବବୁ ଭୁରୁକୁଞ୍ଚେଇ ପୁଣି ସିଗ୍ରେଟ୍ ଟାଣିଲା ।

"ତୋର ଏତିକି ସାହସ, ମୋ' ମୁହଁକୁ ଧୂଆଁ ଛାଡିବୁ !"

"ଧୂଆଁ ଛାଡିବାରେ ସାହସର କ'ଣ ପ୍ରୟୋଜନ ?" ଅଳ୍ପ ହସି କହିଲା ସେ ।

"ବସ୍, ଟ୍ରେନ୍, ବଜାରରେ ବହୁ ଆଜେବାଜେ ଲୋକଙ୍କ ଧୂଆଁ ଶୁଙ୍ଘିବାରେ ତ ଆପଣ ଆପତ୍ତି କରି ନାହାନ୍ତି ।"

କେଜାଣି କାହିଁକି ଦୁଇଟି ବୟସ୍କ ମଣିଷ-ସୋଫାକୁ ଭରାଦେଇ ଆଉଜିଗଲେ । ବବୁ ଖୁବ୍ ସହଜ ଭାବରେ ଗୋଡ ଲୋଚେଇ ସଳଖ ହୋଇ ବସିଲା, ହସିଲା ଏବଂ ଚାହିଁଲା ସେମାନଙ୍କ ମୁହଁକୁ ।

"ତୁ... ତୁ ଏମିତି କରି ପାରୁଚୁ ?"

"ମାନେ, ଏମିତି ଆମକୁ ମୁହେଁ ମୁହେଁ ଅପମାନ ଦେଇପାରୁଚୁ ?"

"ଅପମାନ୍ ! – ମୁଁ ତ' ଗୋଟିଏ ହେଲେ ଅପମାନସୂଚକ ଶବ୍ଦ ଉଚ୍ଚାରଣ କରି ନାହିଁ । ଅବଶ୍ୟ ଅପମାନିତ ବୋଧ କରିବା ଗୋଟିଏ ନିହାତି ବ୍ୟକ୍ତିଗତ ବ୍ୟାପାର ।"

"ତୁ ଏମିତି ଉତ୍ତର ଦେଉଚୁ ?"

"ଉତ୍ତର ଦେବା ଶିଷ୍ଟାଚାର ।"

"ତୁ ଆମ ଆଗରେ ଧୂଆଁ ଖାଉଚୁ ?"

"ଆପଣ ମଦ ପିଅନ୍ତି । ରୁଚି ଟିକିଏ ଅଲଗା ।"

"ତୁ କ'ଣ ଆମ ସମକକ୍ଷ ?"

"ସମକକ୍ଷ ତ' ନିଶ୍ଚୟ, କିନ୍ତୁ ସମ୍ଭାବନାରେ ମୁଁ ଢେର୍ ବଡ ! ଆପଣଙ୍କର ଆଉ କିଛି ନାହିଁ । ମୋର ସବୁ ଅଛି । ଆପଣ ପଚିଶ ବର୍ଷ ତଳେ ଯେତିକି ପାଠ ପଢିଥିଲେ ସେ ସବୁ ଭୁଲି ସାରିଲେଣି । ମୁଁ ଅନ୍ତତଃ ସେତିକି ପଢିଛି ଓ ମୋର ସବୁ ମନେ ଅଛି ।"

"ଆରେ ଚୁପ୍ କର୍, ତୋର ଅଭିଜ୍ଞତା କାହିଁ ? ତୁ କ'ଣ ଦେଖିଛୁ ଜୀବନରେ ?"

"ଅଭିଜ୍ଞତାର ଓସାର ଅପେକ୍ଷା ତା'ର ଗଭୀରତା ବେଶି ତାତ୍ପର୍ଯ୍ୟପୂର୍ଣ୍ଣ ! ଆପଣ ବଞ୍ଚିଛନ୍ତି କେବଳ । ମୁଁ କିନ୍ତୁ ଦେଖିଛି ଓ ବୁଝିଛି ।"

ଡବଡବ ଆଖିରେ ଚାହିଁ ରହିଥା'ନ୍ତି ଚୌଧୁରୀ ସାହେବ । ତାଙ୍କ ମାଂସଳ ପେଟ ଥଲ୍‌ଥଲ୍ ହୋଇ ଥରୁଥାଏ । ତାଙ୍କ ତଳିପେଟ, ପେଟ ଭିତରର ନାଡ, ହାତ, ପାଦ ସବୁ ବୋଧହୁଏ ଫଡଫଡ ହେଉଥାଏ । ସେ କେମିତି ଗୋଟାଏ ଘାବରେଇଲା ପରି ଦେଖା ଯାଉଥା'ନ୍ତି । ଛନ୍ ଛନ୍ ଅନଉଥା'ନ୍ତି ଏପାଖସେପାଖ ।

ଅର୍ଜୁନ ଛୁଆଳସିଂ ସାଙ୍କୁଡିଲା ପରି ବସିଥା'ନ୍ତି । ତାଙ୍କ ଆଖି ଛଳଛଳ । ଭୁତୁରାମୁଣ୍ଡିଆ, ଦରବୁଢା କାନ୍ଦୁରା ମଣିଷଟିଏ । ସେ ଏକଲୟରେ ଚାହିଁଥା'ନ୍ତି ସାମ୍ନା କାନ୍ଥକୁ, ବୋଧହୁଏ ଶୂନ୍ୟକୁ ।

ତା' ବୁଟ୍ ହଳଖୁ ଠପ୍ କିନା ଏକାଠି କରି ବବୁ କହିଲା, "ମୋତେ କାହିଁକି ଡାକିଥିଲେ ତ କହିଲେ ନାହିଁ । ତା'ହେଲେ ମୁଁ ମାସେ ।"

ବସିବାଠୁ ହଠାତ୍ ଛାଟିଲା ପରି ଠିଆ ହୋଇପଡିଲେ ଦ୍ୱାରକାନାଥ ।

"ନା' ନା' ତୁ ଖସି ଯାଇପାରିବୁ ନାହିଁ । ମୁଁ ସାଙ୍ଗେ ସାଙ୍ଗେ ଫୋନ୍ କରି ପୁଲିସ୍‌କୁ ଡକେଇ ଦେଉଚି ।"

"ଆଚ୍ଛା ? ? ?" ହସି ହସି କହିଲା ବବୁ, "କାହିଁକି !"

"ତୁ ଚୋର ! ବାରଶହ ଟଙ୍କା ଚୋରି କରିଥିବା ଅପରାଧ ତୁ ମୋ' ଆଗରେ, ଅର୍ଥାତ୍ ଜଜ୍ ଆଗରେ ମାନି ସାରିଛୁ । ପୁଲିସ ଆଗରେ ହୁଏତ ଅନ୍ୟପ୍ରକାର କହିପାରୁ ।"

ବବୁ ଖେଁ ଖେଁ ମାରି ହସି ପକେଇଲା । "ଗୋଟିଏ କଥାକୁ ବାର ପ୍ରକାର କହିବା ପିଲାଖେଳ ! ମୋର ସେ ଅଭ୍ୟାସ ନାହିଁ ।"

"ତା'ହେଲେ ତୁ ମାନୁଚୁ ଯେ ତୁ' ସେ ଟଙ୍କା ନେଇଚୁ ?"

"ଅବଶ୍ୟ !"

"ସାହସ ତ' କମ୍ ନୁହେଁ ଦେଖୁଚି । ତାଙ୍କ ଟଙ୍କା ତୁ ନେବାକୁ କିଏ ?"

"ମୁଁ ହୁଏତ' କେହି ନୁହେଁ । କିନ୍ତୁ ଟଙ୍କା କ'ଣ ତାଙ୍କର ?"

"ହେ ହେ ହେ" ନିଦରେ ବଳିବିଳେଇଲା ପରି କିଛି ଦରକଞ୍ଚା ହସ ଶୁଭିଲା ।

"ତାଙ୍କ ମୁଣାରେ ଥିବା ସେ ଟଙ୍କା ତାଙ୍କର ନ ହୋଇ ଆଉ କାହାର ହୋଇପାରେ ।"

"ମୁଣାରେ ଟଙ୍କା ରହିବା ଅଧିକାର ବା ଅର୍ଜନ ପ୍ରମାଣ କରେ ନାହିଁ । ଗୋଟାଏ ସରକାରୀ ଚାକିରିଆ ମାସ ଶେଷରେ ବେତନ ପାଏ । ପାଏ ଅଠର ଶହ । ସତର ତାରିଖରେ କାହା ପାଖରୁ ଧାର ନ ନେଇ, ବ୍ୟାଙ୍କ୍‌ରୁ ଟଙ୍କା ନ କାଢି ସେ କେମିତି ଏବଂ କାହାର ଟଙ୍କା ମୁଣାରେ ଧରି ବୁଲୁଥିଲେ ?"

"ମାନେ ?" ନ୍ୟାୟପତିଙ୍କ ଆଖିରେ ବିମୂଢ ବିସ୍ମୟ !

ଭୁତୁରାମୁଣ୍ଡିଆ ଦରବୁଢ଼ା ମଣିଷଙ୍କ ଆଖିରେ ନିଆଁରଡ ଦହକି ଉଠିଲା ।

"ମୋ ଉପରେ ଗୁଇନ୍ଦାପରି କରିବାକୁ ତୁ କିଏ ? ମୁଁ ଯୋଉଠୁ ଆଣିଲେ ତୁ କିଏ ପଚାରିବାକୁ ? ସେ ଟଙ୍କାର ମୋର ।"

ଠିଆ ହେଉ ହେଉ ସିଗ୍ରେଟ୍ ମୁଣ୍ଡି ଉପରେ ଗୋଇଠି ମଡେଇ ପେଣ୍ଟ୍ ସାମ୍ନା ମୁଣାରେ ଠିଆ ପାପୁଲି ଦୁଇଟି ଭର୍ତ୍ତି କରି ସେ ସାମାନ୍ୟ ତଳମୁହାଁ ଧୀରେ ଧୀରେ ଚାଲିଗଲା ଦୁଆର ଆଡକୁ ।

ସେଇଠି ଫଟକିନା ବୁଲିପଡି ଫଣା ଟେକିଲା ଭଙ୍ଗୀରେ ଚାହିଁ କହିଲା, ଏଇ ସାମ୍ନା ରାସ୍ତା ଉପରେ ଅଛି, ଆପଣ ଡକାନ୍ତୁ ପୁଲିସ୍ !

ପରଦା ପାଖରେ ମୁଣ୍ଡ ନୁଆଁଇ ସେ ବାହାରକୁ ଚାଲିଗଲା ।

ବବୁଟା ଛ'ଫୁଟ୍ ଉଚ୍ଚ ହେଇଗଲାଣି । ତା' କାନ୍ଧର ମାପ ବାଇଶ୍ ଇଞ୍ଚ !

ଚୌଧୁରୀ ସାହେବଙ୍କ ବବୁର୍ଚ୍ଚି ଚା ଆଣି ଚାରିଆଡକୁ ଚାହିଁଲା । ଚୁପ୍‌ଚାପ୍ ମିଠା ଆଉ ମିକ୍ସଚର୍ ପ୍ଲେଟ୍ ଥୋଇ ତିନିକପ୍ ଚା ସଜାଡି ଦେଲା । ତା' ସାଙ୍ଗରେ ପୋଷା ବିରାଡିଟି ନିଃଶବ୍ଦରେ ଲାଞ୍ଜ ଠିଆ କରି ଗୋଡ ସନ୍ଧାରେ ଗଳିଆସିଲା ଓ ଗଳିଗଲା । ଆଖପାଖ ରାସ୍ତା, ପଡିଆ, ସାଇପଡିଶାରୁ ଚୁଁ ଶବ୍ଦଟିଏ ମଧ ଶୁଭୁ ନ ଥାଏ । କାନମୁଣ୍ଡ ଛାତି ଧପ୍‌ଧପ୍ ହେବାର ଜଣାଯାଉଥାଏ ।

ଟେଲିଫୋନ୍ ଚକି ବୁଲିଲା ! ଚୌଧୁରୀ ସାହେବଙ୍କ ଭୁରୁ ଉପରେ ମହଣ ମହଣ ପଥର । ଚେହେରା ଫାଶି ହୁକୁମ୍ ଦେଲାଭଳି ଗମ୍ଭୀର !

"କିଏ ? – ବାହିନୀପତି କହୁଛନ୍ତି ଟି ! ମୁଁ ଦ୍ୱାରକାନାଥ ଚୌଧୁରୀ କହୁଛି ! ହଁ ନମସ୍କାର ! ଆଚ୍ଛା, ଶୁଣନ୍ତୁ, ଆପଣ ଟିକିଏ ପ୍ରସ୍ତୁତ ହୋଇ ଆସିବେ । ଗୋଟିଏ ଚୋରି କେସ୍ ! – ହଁ ପ୍ରମାଣ ସହ ସାକ୍ଷୀ ଏଇଠି ଅଛି ।"

ଆତଙ୍କିତ ହେଲାପରି ଅର୍ଜୁନ ଛୁଆଳସିଂହ କହିଲେ – "ଆଚ୍ଛା, କ'ଣ ହବ, ଏଇନେ ?"

"ତୁ ଚୁପ୍‌ଚାପ୍ ବସି ଚା ଖାଇପକା ! ମୁଁ ସବୁ ଠିକ୍ କରିଦେଉଛି !... ଲୁହା କଅଁଳ ହେଲେ ବିରାଡି କାମୁଡେ – ମୁଁ ଆଜି ପାଠ ଶିଖେଇ ଦଉଚି ରହିଥା !"

ସେ ଟପ୍‌ଟାପ୍ ଦୁଇଟା ସନ୍ଦେଶ ପାଟିକୁ ପକେଇଦେଲେ । ପ୍ଲେଟ ଟେକିଧରିଲେ ବନ୍ଧୁ ମୁହଁ ପାଖରେ । ଗହଳିଆ ଗୁଙ୍ଗାସ୍ୱରରେ କହିଲେ – "ଆବେ, ଖା ! ଖାଇଦେ ଲଢିବା ଆଗରୁ !"

ଆସ୍ତେ ଆସ୍ତେ ଆରମ୍ଭ ହେଉ ହେଉ ଖିଆ ଚାଲିଲା । ତୃତୀୟ କପ୍ ଚା'ଟାକୁ ଉଭୟେ ବାଣ୍ଟିନେଲେ ଅଧାପିଆ ଭିତରେ ।

"ବୁଝିଲୁ ଅର୍ଜୁନି ! କେମିତି ଯୁଗ ବଦଳି ଚାଲିଛି ଦେଖ୍ ! ସବୁ ନୀତିନିୟମ ଧୋଇଆରେ ଗଲାଣି । ସବୁ ଭୁସୁଡି ପଡୁଛି । ୟାର ମୁକାବିଲା ନ କଲେ ଆଉ ଏ ସମାଜ ରହିବ ନାହିଁ । ଏଇ କେତେଦିନ ହେଲା ଗୁଡାଏ ବେନାମି ଚିଠି ମିଳୁଚି । ସେଥିରେ ଗୁଡାଏ ଖଚମିଛ ଡରାଣ ଦେଖେଇ ସାବଧାନ କରାହେଉଛି । ଚୋରି ଧପ୍ପାବାଜି ଗୋପନହତ୍ୟା ଆଦି ଯାବତୀୟ ଅପରାଧ ପାଇଁ ପଦସ୍ଥ ଲୋକଙ୍କୁ ଦାୟୀ କରି ତାଙ୍କୁ କୌଣସି ଅଜ୍ଞାତ ଇଜ୍‌ଲାସ୍‌ରେ ହାଜର ହେବାକୁ ଧମକ

ଦିଆହେଉଛି । ଉଚିତ୍ ସମୟରେ ସେ ସମସ୍ତଙ୍କୁ ନିପାତ କରିବାର ଭବିଷ୍ୟବାଣୀ ମଧ୍ୟ ଶୁଣାଇ ଦିଆଯାଉଛି । ଜଣାଯାଉଛି ଏମାନେ ଗୋଟାଏ ଦଳ – ଖୁବ୍ ଚାଲାକ୍, ମଜବୁତ୍, ବହୁ ଦୂରକୁ ଚେର ମଡ଼େଇଥିବା ଗୋଟାଏ ଅପରାଧୀ ଗ୍ୟାଙ୍ଗ୍ । ସେମାନଙ୍କର ସବୁ ଚିଠି କଳାକାଗଜରେ ଧଳା ଅକ୍ଷର ଛପେଇ ଧାଡ଼ି ଧାଡ଼ି ହାଡମାଳ ପରି, ନିକୁଟି ହୋଇଥିବା ଭାଡ଼ିଭାଡ଼ି ଦାନ୍ତ ପରି !"

"କ'ଣ କହୁଚ ମ' ଭାଇନା ! ଶେଷକୁ ତୁମକୁ ବି ସେମାନେ ଧମକ ଦେଇଛନ୍ତି ନା କ'ଣ – ?"

"ମୋତେ ଚାରି ନମ୍ବର ଚିଠି ଦେଲେଣି । ମୂଳରୁ କହିଛନ୍ତି ସାତଟି ଖୁନ୍ ମାଫ୍ କଲାପରି ସାତଟି ଚିଠିରେ ସେମାନେ ସତର୍କ କରିବେ । ଯଦି ତଥାପି ତାଙ୍କ ବୋଲ ମାନି ନ ଯାଏ ତେବେ ଏକ ନିର୍ଦ୍ଦିଷ୍ଟ ତାରିଖରେ ସେମାନେ ମୋତେ ଶେଷ କରିଦେବେ ! ଭାରି ନିଧଡକ ବେବାକ୍ ବେପରୁଆ ଢଙ୍ଗ । ଅବିକଳ ଏଇ ବବୁପରି । ଗୋଇନ୍ଦା ବିଭାଗର ହାକିମମାନେ ବି ଏମିତି ଚିଠି ପାଉଛନ୍ତି । ସକାଳୁ ଶେଯରୁ ଉଠିଲା ବେଳକୁ ଶୋଇବା ଘରେ ଚିଠି ପଡ଼ିଥିବାର ଦେଖାଯାଉଛି । କେମିତି କୋଉ ବାଟେ ଆସୁଚି ଜଣା ପଡୁ ନାହିଁ ।"

ଅର୍ଜୁନ ଛୁଆଳସିଂହ ଯେ କୌଣସି ସାବ୍ୟସ୍ତ ଆସାମୀ ପରି କାଠଗଡାରୁ ଚାହିଁ ରହିଛନ୍ତି ସତେବା !

"କିରେ ଏମିତି କ'ଣ ଅନେଇଚୁ ? ତୁ ସେଭଳି ଚିଠି ପାଇଛୁ କି ?"

"ପାଞ୍ଚଟା ପାଇଲିଣି ।" ତାଙ୍କ ମୁହଁରୁ ରକ୍ତ ନିଗିଡ଼ି ଯାଇଛି ।

ଚୌଧୁରୀ ସାହେବ ଉତ୍ତେଜିତ ହୋଇ ସୋଫାରେ ଚିପେଇ ବସିଲେ ।

"ଆଚ୍ଛା, ତା'ହେଲେ ତ' କେହି ବାଦ୍ ଯାଇ ନାହାନ୍ତି । ବଜାର, ଦପ୍ତର ଘର ସବୁଠି ଗୋଟାଏ ପ୍ରକାର ଅସ୍ୱସ୍ତିକର ଭୟ । – ଆଶ୍ଚର୍ଯ୍ୟ ! ଏତେ ଚିଠି ବଣ୍ଟା ହେଉଛି, ଅଥଚ କେହି କିଛି ଜାଣି ପାରୁ ନାହାନ୍ତି !"

ସେ ଭୁସ୍‌କିନା ଠିଆ ହୋଇ ପଡ଼ିଲେ । ତାଙ୍କ ଆଖି ପାଚିଲା କରଣ୍ଡା କୋଳି ପରି ବୋଧହୁଏ ଖସି ପଡ଼ିବ । ବାଁ ହାତରେ ଗୋଟାଏ ଘୁସିମାରି ସେ ପୁଣି ତରବରରେ ବସିପଡ଼ି ଫିସ୍‌ଫିସ୍ କହିଲେ – "ଖବର ପାଇଛୁ ତ ? ପାଞ୍ଚଜଣ ଜଣାଶୁଣା ଲୋକ, ଗତ ସପ୍ତାହେ ଭିତରେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେଣି ।"

"କ'ଣ ତେବେ –" । ଦୁହେଁ ଦୁହିଁଙ୍କ ଅଲକ୍ଷ୍ୟରେ ଛେପ ଢୋକିଲେ ।

କେତେଗୁଡ଼ିଏ ଭାରି ପାଦ ଶବ୍ଦ ପାଖେଇ ଆସିଲା ।

ଚୌଧୁରୀ ସାହେବ ଯଥାସମ୍ଭବ ସ୍ୱାଭାବିକ ଓ ଗମ୍ଭୀର ଦେଖାଗଲେ । ପୁଲିସ୍ ତା'ହେଲେ ଆସିଗଲା !

ପରଦା ଟେକି କିନ୍ତୁ ପଶି ଆସିଲା ବବୁ ! – ତା' ପଛରେ ଆଉ ତିନିଜଣ ତା'ରି ଭଳି ତରୁଣ !

ଲମ୍ବା ସୋଫାଟିରେ ସେମାନେ ବସିଗଲେ । ଟେଲିଫୋନ୍ ପାଖରୁ ଚୌକି ଟେକିଆଣି ଚୌଧୁରୀ ସାହେବଙ୍କ ସାମ୍ନାସାମ୍ନି ବସିଗଲା ବବ୍ଲୁ ।

"କାହାନ୍ତି ଆପଣଙ୍କ ପୁଲିସ୍ ବାହିନୀ ?"

"ଯଥା ସମୟରେ ଆସିଯିବେ । ତୁମ ବାହିନୀ ତ' କିଛି କମ୍ ନୁହେଁ ।"

"ଆଚ୍ଛା, ଆଚ୍ଛା, ମୁଁ ଭାରି ଦୁଃଖିତ ଯେ ମୁଁ ଏମାନଙ୍କୁ ଚିହ୍ନେଇ ଦେଇନାହିଁ । ମୁଁ ଭାବିଲି ଆପଣଙ୍କ ସାହି ପିଲାଙ୍କୁ ଆପଣ ହୁଏତ ଜାଣିଥିଲେ । ଗାଡିରେ ଯିବା ଆସିବାବେଳେ ଏମାନଙ୍କୁ ଅନ୍ତତଃ ରାସ୍ତା ଉପରେ ଦେଖିଥିବେ ।"

"ହଁ, ଏ ଦୁହିଁଙ୍କୁ କିଛିଟା ଚିହ୍ନି ପାରିଚି । କିନ୍ତୁ –"

"ଆଜ୍ଞା, ଠିକ୍ କହିଛନ୍ତି । ୟା ନାଁ ଶକ୍ତି, ତା' ନା' ଯୋଗୀ, ଆଉ ଯାହାକୁ ଆପଣ ଚିହ୍ନି ପାରୁ ନାହାନ୍ତି, ତା' ନାଁ ଅବଧୂତ । ପାଞ୍ଚବର୍ଷ ତଳେ ତା' ବାପାକୁ ଆପଣ ଫାଶୀ ହୁକୁମ୍ କରିଥିଲେ ।"

ଚୌଧୁରୀ ସାହେବ ଚମକି ପଡିଲେ ନିଶ୍ଚୟ, କିନ୍ତୁ ସମ୍ଭାଳି ନେଲେ ।

ବବ୍ଲୁର ସ୍ୱର ଖୁବ୍ ସ୍ୱାଭାବିକ । ତା' ସାଙ୍ଗମାନେ ସେମିତି ସ୍ଥିର ।

"ଟିକିଏ ମନେ ପକାନ୍ତୁ । ପାହାନ୍ତିଆ ପହରରେ ଜଣକୁ ଫାଶୀ ପାଖକୁ ଭିଡି ନେଲାବେଳେ ସେ ଚିତ୍କାର କରି ଜେଲ୍ ହତା କମ୍ପେଇ ଦଉଥିଲା ଯେ ସେ ନିର୍ଦ୍ଦୋଷ, ତାକୁ ବିନା କାରଣ ଫାଶୀ ଦିଆ ହେଉଛି, ତା' ସ୍ତ୍ରୀକୁ ସେ ଖୁବ୍ ଭଲ ପାଏ । ତାକୁ ସେ କଦାପି ମାରି ନାହିଁ । ତାକୁ ଉଧମ୍ ସିଂ କଣ୍ଟ୍ରାକ୍ଟର, ଆଉ ତା' ପାଞ୍ଚଜଣ ସାଙ୍ଗ ଗୋଟାଏ ରାତି ଭିତରେ ମାରିଦେଲେ ! – ତାକୁ ତୁଣ୍ଡିବାନ୍ଧି ଫାଶି ଦିଆଗଲା !"

ଚୌଧୁରୀଙ୍କ ଇଚ୍ଛା ଏମାନଙ୍କୁ ଘଉଡେଇ ଦିଅନ୍ତେ । – ବା ନିଜେ ଉଠି ଚାଲିଯାଆନ୍ତେ ଏ ଅପମାନ ଭିତରୁ ? କିନ୍ତୁ ସେ କିଛି କହିପାରୁ ନଥା'ନ୍ତି, କିଛି କରିପାରୁ ନ ଥା'ନ୍ତି !

"ଉଧମ ସିଂକୁ ତ ଆପଣ ଚିହ୍ନିଥିବେ ! – ସେ ଯେଉଁ ବିଷ୍ଣୁ ନଗରରେ ଆପଣଙ୍କ କୋଠା ତିଆରି କରିଛି ମ !" – ଭାରି ଘରୋଇ ଶାନ୍ତ ସ୍ୱର ବବ୍ଲୁର !

ଚୌଧୁରୀଙ୍କ କପାଳ ଜକେଇଗଲା । ଛୁଆଳସିଂହ ଏକ ଚିତ୍ରପ୍ରତିମା । ଆଖିରେ ପଲକ ପଡୁନାହିଁ ।

"ଅବଧୂତ ଆସିଥିଲା ଖାସ୍ ଆପଣଙ୍କୁ ଦେଖିବ ବୋଲି । ତାକୁ ଜମା ପନ୍ଦରବର୍ଷ ! ସେ ଏଇନା ଟ୍ରେନ୍‌ରେ କଫି ବିକ୍ରି କରେ । ତାକୁ କିଏ କହିଲା ଆପଣ ଫିଆଟ୍‌ରେ ଯାଆନ୍ତି । ସେ ଜାଣିଛି । ଛ'ମାସ ହେଲା ଆପଣଙ୍କ ଏ ମର୍ସିଡିସ୍ ଆସିବା କଥା ବିଚରାକୁ ଜଣା ନାହିଁ । ବେନ୍ ଏଣ୍ଡ ବେନ୍ କମ୍ପାନୀ ଆପଣଙ୍କ ଝିଅ ଜ୍ୱାଇଁଙ୍କଠୁ ଆମେରିକାରୁ କ'ଣ ସବୁ ଉପହାର ଆଣିବ ଏ ମାସ ଶେଷ ସୁଦ୍ଧା, ସେ କଥା ଏ ବିଚରା ଅବଧୂତ କେମିତି ବା ଜାଣନ୍ତା... ?"

"ଷ୍ଟେପ୍ କର୍ !... ଅର୍ଜୁନ, ଏଇ ସେଇ ସର୍ଦ୍ଦାର । ଏଇ ସେ ସବୁ ଚିଠି କଥା ଜାଣେ । ସମସ୍ତଙ୍କର ସବୁ ଖବର ସେ ରଖିଛି । ଆଜି ସେ କଳା ଚିଠିର ରହସ୍ୟ ଖୋଲିଗଲା ।" – ହଠାତ୍

ପାଟି କରି ଉଠିଲେ, "ମୁଁ ସେମାନଙ୍କର କାଲ କାଟି ତାଙ୍କ ସର୍ଦ୍ଦାରର ମୁଖା ଖୋଲିଦେଲି । – କାହିଁ ସେ ବାହିନୀପତି ? ?"

କୌଣସି ଉତ୍ତେଜନା ପ୍ରକାଶ ନ କରି ବବ୍ଲୁ ସେମିତି ସ୍ଥିର ଭାବରେ କହିଲା –

"ଆରେ, ଆପଣ ସେ କଳା ଚିଠି ପାଉଛନ୍ତି ନା କ'ଣ ? ? – ଆଶ୍ଚର୍ଯ୍ୟରେ ତା' ସାଙ୍ଗମାନଙ୍କୁ ଚାହିଁ କହିଲା –"

"ମୁଁ କହୁଛି ପରା, କେହି ସେଥିରୁ ବାଦ୍ ଯିବେ ନାହିଁ । ଦେଖିଲୁ ନା ଅବଧୂତ । ସେ ଯେ ସହସ୍ରାକ୍ଷ ବୋଲି ଦସ୍ତଖତ ଦେଉଛି, ସେ ସତକୁ ସତ ସବୁ ଦେଖୁଛି, ସବୁ ଜାଣୁଛି, ସବୁ କରୁଛି ।"

ତା' କଥାର ଭଙ୍ଗୀରେ ଚୌଧୁରୀ ସାହେବଙ୍କ ସବୁ ଉତ୍ସାହ ମଉଳିଗଲା । ତା' ହେଲେ ଏ ସର୍ଦ୍ଦାର ନୁହେଁ! କିନ୍ତୁ ଏ ନିଶ୍ଚୟ ସେ ଦଳରେ ଅଛି । ଗୋଟାକୁ ଟାଣିଲେ ବାକି ସମସ୍ତେ ଉଠି ଆସିବେ । କାହିଁଗଲା ସେ ବାହିନୀପତି ? ସେ ଓହଟି ଓହଟି ଚାହୁଁଥା'ନ୍ତି ଦୁଆର ଆଡେ!

"ବାହିନୀପତିଙ୍କର ସାମାନ୍ୟ ବିଳମ୍ବ ହେବାର ସମ୍ଭାବନା । ସେ ଟିକିଏ ଅଡୁଆରେ ଏଇନା ପଡିଛନ୍ତି । ଆପଣଙ୍କ ଫୋନ୍ ହେଲା ବେଳକୁ ବୋଧହୁଏ ସାଢେ ଆଠଟା ସମୟ । ତାଙ୍କ ପାଖରେ ଟିକିଏ ଲୋକ ଗହଳି ଥାଇପାରେ । ଆମେ ଶୁଣୁଥିଲୁ ତାଙ୍କୁ ଦେଖା କରିବାକୁ କିଏ ସବୁ ଆସିଛନ୍ତି କୁଆଡୁ । ପଅରଦିନ ରାତିରେ ସିନେମା ଘରୁ ଯୋଡାଏ କୁକୁରିଆ ଟୋକାଙ୍କ ଦାଉରୁ ବଞ୍ଚିବାକୁ ଝିଅଟିଏ ଆସି ଥାନାରେ ଆଶ୍ରୟ ନେଇଥିଲା । ତାକୁ ସେ ଟୋକାମାନେ ବଳାତ୍କାର କଲେ ବୋଲି ଥାନାବାଲା ତା'ଠାରୁ ଲେଖେଇ ନେଲେ । ଡାକ୍ତରି ପରୀକ୍ଷାରେ ପ୍ରମାଣ ନ ମିଳିଲେ ମିଛ ଅଭିଯୋଗରେ ତାକୁ ଜେଲ୍ ହେଇଯିବ ବୋଲି ଡରେଇଲେ । ତା'ପରେ ଅଭିଯୋଗର ସତ୍ୟତା ଆଣିବାକୁ ଡାକ୍ତରଙ୍କ ଦେଖିବା ପାଇଁ ଯଥେଷ୍ଟ ପ୍ରମାଣ ତିଆରି କଲେ ରାତିସାରା । ଝିଅଟି ଡାକ୍ତରଖାନାରେ ଏବେ ବି ପଡିଛି । ଏମିତି ଅଡୁଆରେ ବାହିନୀପତିଙ୍କୁ ଆସିବାରେ ନିଶ୍ଚୟ ବିଳମ୍ବ ହୋଇଯିବ । ଅବଶ୍ୟ ବାହିନୀପତିଙ୍କୁ କେହି ଚିପ ଦେଇପାରିବେ ନାହିଁ । ସେ ଅନ୍ତତଃ ପୁଞ୍ଜାଏ ମନ୍ତ୍ରୀଙ୍କ ଶଳା!"

"ଦୁଇଟା ଡକେଇତ ଦଳ ଏକାଦିନରେ ଆସି ସହରରେ, ଗାଁ ଗହଳିରେ ଲୁଟ୍‌ତରାଜ କରୁଛନ୍ତି । ବାହିନୀପତି ଏଠି ନ ଥା'ନ୍ତି କି ସେଠି ନ ଥା'ନ୍ତି । ଉଭୟେ ଧରା ନପଡି ଖସି ଯାଆନ୍ତି । କିନ୍ତୁ ଉଭୟଙ୍କର ସର୍ଦ୍ଦାର ସଲାମୀ ତାଙ୍କ ଘରେ ପହଞ୍ଚିଯାଏ । ମୌକା ଦେଖି କିଛି ବିଦେଶୀ ମାଲ୍ ସେ ସର୍କାରଙ୍କ ବଡ ବଡ ହାକିମ, ନେତା, ମନ୍ତ୍ରୀଙ୍କୁ ବାଣ୍ଟି ଦିଅନ୍ତି । ଆପଣଙ୍କ ହେଇ ସେ ଯେଉଁ ଜାପାନୀ କାନ୍ଥଘଣ୍ଟା, ଅବିକଳ ମାଣିକରାମ୍ ଭଜନଲାଲ୍ ଘରୁ ଚୋରି ହୋଇଯାଇଥିବା ଘଣ୍ଟା ଭଳି । ଆପଣଙ୍କୁ ଏଇଟା ବାହିନୀପତି ନିଶ୍ଚୟ ଦେଇ ନାହାନ୍ତି, ନାଁ କ'ଣ ।"

ବବ୍ଲୁ ଘଣ୍ଟା ଦେଖି ଠିଆ ହେଲା ।

"ଆଚ୍ଛା, ଆମେ ତା'ହେଲେ ଆସୁଛୁ! ଦଶଟା ବାଜିବାକୁ ଯାଉଛି । ବାପା ବୋଧହୁଏ ଯୋଗାଣ ମନ୍ତ୍ରୀଙ୍କ ପାଖକୁ ଯିବେ । ସେଇଠି ଅନେକ ଆୟୋଜନ ପ୍ରୟୋଜନ ଅଛି । ଆଜି

ରତନଲାଲ କୁଲି ସର୍ଦାର ଆସିଥିବ । ହଜାରେ ଦାଦନ୍ ଶ୍ରମିକଙ୍କ ମାଲିକ । ଦିନକୁ ମୁଣ୍ଡପିଛା ପଞ୍ଚସ୍ତରୀ ଟଙ୍କା ବିଲ୍ କରେ । ଦିଏ ପଞ୍ଚତ୍ରିଶ ! ଆଜିକୁ ବାରବର୍ଷ ହେଲା ତା'ର ବ୍ୟବସାୟ ଚାଲିଛି । ବାପା, ସେ ଶ୍ରମ ଝାଳର କିଛି ହିସାବ ନିକାଶ କରିବେ । ମନ୍ତ୍ରୀଙ୍କ ପାନ ପାଣି ଖର୍ଚ୍ଚର ବ୍ୟବସ୍ଥା ହେବ । ଆସନ୍ତାକାଲି ଗସ୍ତବେଳେ ଡାକବଙ୍ଗଳାରେ ତାଙ୍କର ଖାଇବା, ପିଇବା, ଶୋଇବାର ବନ୍ଦୋବସ୍ତ ହେବ ।"

ସୋଫା ଉପରେ ଚିତ୍ର ପିତୁଳା ସେମିତି ମେଞ୍ଚାହୋଇ ଅନେଇଥାଏ ଆଗକୁ ଓ ଶୂନ୍ୟକୁ !

"ପୁଲିସ୍ ଆଜି ଆଉ ଆସିବ ନାହିଁ । କୌଣସି ପ୍ରୟୋଜନବେଳେ ସେ ଆସେ ନାହିଁ । ମୁଁ କିନ୍ତୁ ସବୁବେଳେ ଆପଣାଙ୍କ ପାଖେ ପାଖେ ଅଛି, ଡାକିଦେଲେ 'ଓ' କରିବାକୁ । ମୁଁ ତ ଚୋର । ବାପାଙ୍କ ମୁଣାରୁ ବାରଣ' ଟଙ୍କା ନେଇଛି । ସୁନାହାଟ ସାହିରେ ମୋର ଜଣେ ବିମାତା ଥାଆନ୍ତି । ତାଙ୍କ ନାଁ ଉଲୁପୀ, ଆମ ବାପାଙ୍କ ଉପପତ୍ନୀ ! ତାଙ୍କର ଦୁଇଟି ପିଲା । ମୁଁ ତାଙ୍କୁ ଟଙ୍କାତକ ଦେଇଛି । ତାଙ୍କ ପାଞ୍ଚବର୍ଷର ପୁଅଟା ଅବିକଳ ବାପାଙ୍କ ପରି । ମୋର କିନ୍ତୁ ସେ ସୌଭାଗ୍ୟ ନାହିଁ । କୌଣସି ସରକାରୀ ବାପାର ଚେହେରା ସହିତ କୌଣସି ପିଲାର ଚେହେରା ଏ ସହରରେ ମିଶେ ନାହିଁ । – ନାଁ କ'ଣ କହୁଛୁ ଶକ୍ତି ? – ମୁଁ କିନ୍ତୁ ମୋ' ଚେହେରାଟାକୁ ଖୋଜି ଦିନେ ନା ଦିନେ ବାହାର କରିନେବି । – ସେ ଯିବ କୁଆଡେ ?"

ଚାରିଜଣଯାକ ଆଗପଛ ହୋଇ ବାହାରିଗଲେ । ଚୌଧୁରୀ ସାହେବ ବିଡବିଡ୍ ହେଲେ – ଏଇ ସେଇ କଳାଚିଠିର ଦଳ !

"ସାଂଘାତିକ !"

ଅର୍ଜୁନ୍ ଛୁଆଳସିଂ ଭଡ ଭଡ କାନ୍ଦି ପକାଇଲେ ! ସେଇ କାନ୍ଦ ଭିତରେ ତାଙ୍କ ଦୁଇଟିଯାକ ହାତ ଆଶୀର୍ବାଦ ଦେବା ଭଙ୍ଗୀରେ ଟେକି ହୋଇଗଲା । ତାଙ୍କ ଚାହାଣିରେ ଭାଷା ଥିଲେ ବୋଧହୁଏ ଶୁଭିଥାନ୍ତା, "ମୋର ସବୁଯାକ ଆୟୁଷ ନେଇ ତୁ ବଞ୍ଚିବା । ପୁରୁଷ ପୁରୁଷ ଧରି ତା'ର ଆବିର୍ଭାବକୁ ଏ ପୃଥିବୀ ଅପେକ୍ଷା କରି ରହିଥିଲା । ତୁ ଆସିଲୁ । ଏ ପୃଥିବୀକୁ ଏଣିକି ଉଦ୍ଧାର କର ! ଆମକୁ ବିନାଶ କର ଅଥବା ପରିତ୍ରାଣ କର ତୋର ଇଚ୍ଛା ।"

ଚୌଧୁରୀ କ'ଣ ବୁଝିଲେ କେଜାଣି, ସେ ବେକୁବ୍ ଭଳି ଦିଶୁଥିବା ବାପଟିକୁ ଚାହିଁ ରହିଲେ କେବଳ !



# ଶ୍ରୀକାନ୍ତ

ସେ ମୋତ ଚାହିଁଲା । ଚିହ୍ନିଲା । କିଛି କହିଲା ନାହିଁ ।

ପଶ୍ଚିମରୁ ମେଘ ଟେକି ରଖିଥିଲା । କଳା ଘୁମର ଥମ୍ ଥମ୍ ମେଘ । ପାଣିରେ ଟଳମଳ । କୋଉ ମୁହୂର୍ତ୍ତରେ ଅଜାଡି ଦେଇଥାନ୍ତା । କିନ୍ତୁ ଦବି ରହିଗଲା । ଟୋପାଏ ବର୍ଷିଲା ନାହିଁ । ନିଶ ଦାଢି ତମ୍ବାଳିଆ ଅଲରା ବାଳରେ ସେ ସିଂହପରି ଦିଶୁଥିଲା । ମୁଁ ତାକୁ ଦେଖୁ ଦେଖୁ ଚିହ୍ନି ଦେଲି । କିନ୍ତୁ ଆଖି ଫେରେଇ ଆଣିଲି ମୁହୂର୍ତ୍ତକରେ । ମୁଁ ତାକୁ ଚିହ୍ନିଛି ବୋଲି କୌଣସି ଲକ୍ଷଣ ଦେଖାଇଲି ନାହିଁ ।

ତଥାପି ମୁଁ ବୋଧହୁଏ ଅନ୍ୟମନସ୍କ ହୋଇଗଲି କେଇ ମୁହୂର୍ତ୍ତ ପାଇଁ । ମୋ' ଅଣାୟତରେ ପୋଲିସ ଫାଣ୍ଡିର ସେ ଗମ୍ଭୀର ପରିବେଶ, ବାହାରେ ଉଠେଇ ଆସୁଥିବା ପ୍ରବଳ ମେଘର ଘନଘଟା ଉଭେଇଗଲା । ମୁଁ ବୁଡିଗଲି ଆଉ ଏକ ବାସ୍ତବତାକୁ ଯେଉଁଠି ପନ୍ଦର ବର୍ଷ ତଳେ ଦାଉ ଦାଉ ଝଟକୁଥିବା ଗୋଟାଏ ଟୋକା ସବୁଯାକ ଶ୍ରେଷ୍ଠ ପୁରସ୍କାର ଗୋଟେଇ ନେଇଗଲା କଲେଜର ବାର୍ଷିକ ଉତ୍ସବରେ । ସମଗ୍ର ସଭା ଠିଆ ହୋଇ ତାକୁ ସମ୍ବର୍ଦ୍ଧିତ କରୁଥିଲା । କରତାଳିରେ ଭାଙ୍ଗିପଡୁଥିବା ଆକାଶ । –

"କ'ଣ ଏମିତି ଭାବୁଛନ୍ତି ସାର୍ ?"

ମୁଁ ଚମକିଲା ପରି ଆଖି ମିଟିମିଟି କରି ଚାହିଁଲି ।

"ଗତକାଲି ମଦନପୁରରେ ଯେଉଁ ପୋଡାଜଳା ହେଲା ଛ'ଜଣ ଲୋକ ମରିଗଲେ, ସେଇଠି ଏମାନେ ଧରା ପଡିଛନ୍ତି । ଏମାନେ ହେଲେ କ୍ରିମିନାଲ୍ସ୍ । ପଡିଆରା ପାଇଁ କ'ଣ ନା, ଆତଙ୍କବାଦୀ । ମୋ' ହାବୁଡରେ ପଡିଛନ୍ତି, ମୁଁ ତାଙ୍କର ସବୁ ରଙ୍ଗ ଛଡେଇ ଦଉଚି ।... ମୁଁ ସାର୍, ଆପଣଙ୍କୁ ଡାକିବାର କାରଣ ହେଲା ଯେ ଆପଣ ଏ ଅଞ୍ଚଳର ସବୁଠୁ ପୁରୁଖା, ମାନ୍ୟଗଣ୍ୟ ଲୋକ । ଆପଣ ଏମାନଙ୍କ ଭିତରୁ କେତେଜଣଙ୍କୁ ଚିହ୍ନଟ କରି ପାରୁଛନ୍ତି କି ?"

ମୁଁ ଇତସ୍ତତଃ କରିବା ବୋଧହୁଏ ବାର ପଣ ଦିଶିଯାଉଥିଲା ।

ଥାନା ବାବୁ କହିଲା "ଠିକ୍ ଅଛି ସାର୍ କାହାକୁ ଚିହ୍ନଟ କରି ନ ପାରୁଛନ୍ତି ଯଦି ଥାଉ । ଆମେ ଆମ ଖୁପିଆ ଲଗେଇ ସବୁ ଖବର ନେଇନେବୁ ।"

ମୁଁ ନିରବ ଉଠିବାର ଉପକ୍ରମ କଲି ।

ଥାନାବାବୁ ମୋତେ ଆଢୁଆଳ କଲା ପରି କହିଲା "ଠିକ୍ ଅଛି ସାର୍ । ଚାଲନ୍ତୁ ମୁଁ ଆପଣଙ୍କୁ ଘରେ ପହଞ୍ଚାଇ ଦେବାର ବନ୍ଦୋବସ୍ତ କରି ଦଉଚି ।"

ଆମେ ଥାନା ବାହାରକୁ ଆସି ବଉଳ ଗଛ ମୂଳେ ଠିଆ ହେଲୁ ।

ଥାନାବାବୁ ମୋ' ଆଖିକୁ ସିଧା ଚାହିଁ ପଚାରିଲା – "ଆପଣ ମତେ ମନେ ପକାଇ ପାରୁଛନ୍ତି ସାର୍ ? ମୋ' ନାଁ ଶରତ, ଡାକ ନାଁ ମୁନ୍ନା ! ଫୁଟବଲ ଖେଳୁଥିଲି ! ପାଠ ଭଲ କରୁ ନ ଥିଲି ବୋଲି ଆପଣ ଢେର୍ ଗାଳି ଦେଇଛନ୍ତି । କେବେ ଫୁଟବଲରେ ଉତ୍ସାହିତ ବି କରିଛନ୍ତି । ମୁଁ ସାର୍ ଶେଷକୁ ପୁଲିସ୍‌ରେ ଭର୍ତ୍ତି ହେଲି ।"

ମୁଁ ତାକୁ ଭଲ କରି ନିଘା କରିବାରୁ ତା' ମୁହଁ ପଛରେ ଆଉ ଗୋଟାଏ ମୁହଁ ଦିଶିଗଲା । ମୁଁ ମୁନ୍ନାକୁ ଚିହ୍ନିଲି ।

ମୋ ଚାହାଣି ଆଉ ହସରୁ ସେ ଜାଣିଗଲା । କହିଲା – "ସତ କହନ୍ତୁ ସାର୍ ଆପଣ କ'ଣ ଶ୍ରୀକାନ୍ତକୁ ଚିହ୍ନି ନାହାନ୍ତି ? – ସେ ପରା ମୋ' ସଙ୍ଗେ ପଢୁଥିଲା । ସାରା କଲେଜର ଏକ ନମ୍ବର ପିଲା, ସବୁଥିରେ ଫାଷ୍ଟ ।"

ମୁଁ ଆଖି ତଳକୁ କରିନେଲି ।

"ମୁଁ ଜାଣିଚି ସାର୍ ଆପଣ ମିଛ କହି ପାରିବେ ନାହିଁ । ଆପଣ ତାକୁ ଦେଖୁ ଦେଖୁ ଚିହ୍ନିଛନ୍ତି । କିନ୍ତୁ ଚାହିଁ ନାହାନ୍ତି ଜଣାଇବା ପାଇଁ । ସେ ବି ଆପଣଙ୍କୁ ଦେଖି ଜାଣିଯାଇଚି । ହେଲେ ଆଖି ଫେରେଇ ନେଇଛି ! ମୁଁ ସାର୍ ପୁଲିସ୍‌ବାଲା । ମୋ' ଆଖିକୁ ଏସବୁ ଦିଶିଛି ।"

ମୁଁ ମୁହଁ ଟେକି କ'ଣ କହିବା ଆଗରୁ ସେ ହାତଯୋଡି କହିଲା –

"ନାଇଁ ସାର୍ ଆପଣ କିଛି କହିବା ଦରକାର ନାହିଁ । ମୋର ଖାଲି ଗୋଟେ ଛୋଟ ଅନୁରୋଧ ଅଛି । ଆପଣଙ୍କ ଭଳି ମୁଁ ବି ଶ୍ରୀକାନ୍ତକୁ ଏ ରୂପରେ ଦେଖି ବିଶ୍ୱାସ କରି ପାରୁ ନାହିଁ । ସେ ଚାହିଁଥିଲେ କାହିଁ କୋଉଠି ପହଞ୍ଚି ପାରିଥାନ୍ତା । ତା' ପାଖରେ ଯାହା ଟାଲେଣ୍ଟ, ସେ କାହିଁକି, କେମିତି ଏ ଜାଲରେ ପଡିଗଲା ମୁଁ ଜାଣିବାକୁ ଚାହୁଁଛି । ମୁଁ ପଚାରିଲେ ସେ କିଛି କହିବ ନାହିଁ । ମୁଁ ଚାହୁଁଛି ସାର୍ ଆପଣଙ୍କୁ ଆଉଥରେ ରାତିରେ ଡିଷ୍ଟର୍ବ କରିବି । ସାର୍ ଆପଣ ଆସିଲେ ଗୋଟେ ଅଲଗା ନିରୋଳା କୋଠରିରେ ଆପଣଙ୍କୁ ତା' ସାଥିରେ ଭେଟେଇ ଦେବି । ମୁଁ ବା ଆଉ କେହି ସେଇଠି ରହିବେ ନାହିଁ । ମୁଁ କିନ୍ତୁ ବାହାରୁ ସେ ବଖରାକୁ ତାଲା ପକେଇବି । ସେଇଟା ଥାନା ଭିତରର କାଇଦା । ଆମେ ସେ ରୁମ୍‌ଟାକୁ ନେତାଙ୍କ ପାଇଁ ରଖିଥାଉ । ଆପଣ ସାର୍ ତାକୁ ପଚାରିଲେ ମୁଁ ଭାବୁଛି ସେ ତା' କଥା କହିଦେଇ ପାରେ । ମୁଁ ଜାଣେ ସେ ଆପଣଙ୍କୁ ଖୁବ୍ ଖାତିର୍ କରେ । ମୁଁ ଆପଣଙ୍କୁ କଥା ଦଉଚି ସାର୍ ମୁଁ ତା'ର କୌଣସି କ୍ଷତି କରିବାକୁ ଚାହେଁନା । ଆଉ ଆପଣଙ୍କ

ସମ୍ମାନରେ ମଧ କୌଣସି ଆଞ୍ଚ୍ ଆଣିବାକୁ ଚାହେଁନା ।"

ମୁଁ କିଛି ନ କହି ନିରବ ଠିଆ ରହିଲି । ମୋ' ଭିତରର ଦ୍ୱନ୍ଦ୍ୱ ଏଣେ ଶ୍ରୀକାନ୍ତ ପାଇଁ ମୋର ମନର ପୀଡା, ମୋତେ ଅସ୍ଥିର କରୁଥିଲା ।

"ଆପଣ ଆଉ ଅନ୍ୟଥା ଭାବନ୍ତୁ ନାହିଁ ସାର୍ । ଶ୍ରୀକାନ୍ତକୁ ଏବେ ବି ଏ ଘେରରୁ ଓହରାଇ ଆଣି ପାରିଲେ, ମୁଁ ଖୁସି ହେବି । ମୋ' ପାରୁପର୍ଯ୍ୟନ୍ତ ମୁଁ ସେଥିପାଇଁ ନିଜ ଉପରେ ରିସ୍କ ନେଇ ଲଢିଯିବି । ଆପଣ ସାର୍ ରାଜି ହେଇ ଯାଆନ୍ତୁ ।"

X X X X

ରାତି ସେତେବେଳକୁ ଏଗାରଟା ତିରିଶ । ମୁଁ ଅନୁଭବ କଲି ଯେ ମୁନ୍ନା ମୋତେ ଖୁବ୍ ଗୋପନରେ ସେ ଭିତରକୁ ନେବା ପାଇଁ ଯତ୍ନ କରୁଥିଲା !

କବାଟ ଆଡକୁ ପଛ କରି ଚୌକିରେ ବସିଥିଲା ଶ୍ରୀକାନ୍ତ ।

ତା' ସାମ୍ନାରେ ଟେବୁଲ । ଟେବୁଲ୍ ସେପାଖ ଚୌକିରେ ମୁଁ ବସିବାଯାଏଁ ସେ ଆଖି ଟେକି ଚାହିଁ ନ ଥିଲା ।

ସେ ବୋଧେ ମୋତେ ପୁଣି ଦେଖିବାକୁ ପ୍ରସ୍ତୁତ ନ ଥିଲା । ସେ ବୋଧେ କୌଣସି ପୁଲିସ୍ ହାକିମ ବା କୌଣସି ଥାର୍ଡ ଡିଗ୍ରୀ ଜୁଲୁମ୍ ପାଇଁ ଟାଣେଇ ରହିଥିଲା । ସେଥିପାଇଁ ମୋତେ ଦେଖୁ ଦେଖୁ ସେ ହଡବଡେଇ ଯାଇଥିଲା । ମୁହୂର୍ତ୍ତକେ ସମ୍ଭାଳିଯାଇ ବିଜୁଳି ପରି ପଛକୁ ଚାହିଁ ଦେଲା, ଉପର ତଳ ଚାରିଆଡେ ଦେଖିନେଲା ପରେ ମୋତେ ନ ଚାହିଁ ସ୍ପଷ୍ଟ ଅଥଚ ଦବିଲା ସ୍ୱରରେ କହିଲା –

"ଆପଣ କାହିଁକି ଆସିଛନ୍ତି ?"

ମୁଁ କହିବାକୁ ଉପକ୍ରମ କରିବା ପୂର୍ବରୁ କହିଲା –

"ମୁଁ ବିଶ୍ୱାସ କରିପାରୁ ନାହିଁ ଯେ ଆପଣ ଶେଷକୁ ଏମାନଙ୍କ ହାତବାରେସି ଭଳି ଦଲାଲ୍ କାମ କରିବେ । – ଆପଣଙ୍କୁ ଯଦି ମୁନ୍ନା ବାଧ କରିଥାଏ ତା'ହେଲେ ମୁଁ ତା'ର ପ୍ରତିକାର କରିବାକୁ ପଛେଇବି ନାହିଁ ।"

"ନା' ଶ୍ରୀକାନ୍ତ ! ତୁ ଭଲ କରି ଜାଣୁ ଯେ ଜୀବନସାରା ମୁଁ କାହା ବୋଲରେ ପଡି କିଛି କରେ ନାହିଁ । ଏବେ ବି ନୁହେଁ । କିନ୍ତୁ ଧର ଯଦି ମୁଁ ତାହା କରିଥାଏ ତେବେ ତା' କ'ଣ ଶ୍ରୀକାନ୍ତ ଭଳିଆ ବ୍ରିଲିଏଣ୍ଟ ପିଲା ସନ୍ତ୍ରାସବାଦୀ ହେବାଠାରୁ ଅଧିକ ଆଶ୍ଚର୍ଯ୍ୟର କଥା ହବ ?"

ସେ ଚୁପ୍ ରହି ତଳକୁ ଚାହିଁଲା । ବୋଧହୁଏ ନିଷ୍ପତ୍ତି ନେଉଥିଲା ।

ଆଖି ଟେକି ମୋତେ ସିଧାସଳଖ ଚାହିଁ କହିଲା –

"ତା'ହେଲେ ଆପଣ ବି ଭାବୁଛନ୍ତି ଯେ ମୁଁ ସନ୍ତ୍ରାସବାଦୀ ?"

"ଯଦି ନୁହେଁ ତୁ ଏମାନଙ୍କ ସାଙ୍ଗରେ ରହିବା କ'ଣ ଜରୁରୀ । ତୋ' ବିଷୟରେ ମୁଁ ଏତିକି ଜାଣେ ଯେ ତୁ କଲେଜ ପରେ ଦିଲ୍ଲୀ ଯାଇଥିଲୁ । ସେଇଠି ଫାଷ୍ଟକ୍ଲାସ୍ ଫାଷ୍ଟ ହୋଇ ଗୋଲ୍ଡ

ମେଡାଲ ପାଇଲୁ । ଆମେରିକା ଯିବା ପାଇଁ ଫୁଲ ବ୍ରାଇଟ୍ ବି ମିଳିଥିଲା । ବାଆସ୍ ତା'ପରେ ମୋର ଧାରଣା ଥିଲା, ଯେ ତୁ ସେଇଠି ରହି ଦିନେ ବିଖ୍ୟାତ ହେଇ ବାହାରିବୁ । ନୋବେଲ ପୁରସ୍କାର ପାଇବୁ । ମୁଁ ବନ୍ଧୁ ଲୋକଙ୍କୁ ତୋ' ବିଷୟରେ ପଚାରିଚି । ହେଲେ କେହି କିଛି କହିଲେ ନାହିଁ । ଏ ପଞ୍ଚାନବେରୁ ଆସି ଦଶବର୍ଷ ହେଇଗଲା । ତୁ କୋଉଠି କ'ଣ କରୁଚୁ, ମତେ ଆଗ କହ !"

– "ମୁଁ ଜାଣେ ସାର୍ ଆପଣ ମୋତେ ଭାରି ଭଲ ପାଆନ୍ତି, ସେଥିପାଇଁ ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବିନାହିଁ । ଆପଣ ଶୁଣିଲେ ମନ କଷ୍ଟ କରିବେ ।"

– "ତା'ହେଲେ ତୁ ଏମାନଙ୍କ ସାଙ୍ଗରେ ରହି ଏଇଆ କରୁଚୁ ?"

ସେ ଖୁବ୍ ଅବିଚଳିତ ରହି ପଚାରିଲା – "ଏଇଆ ମାନେ କ'ଣ ?"

"ଏଇଆ ମାନେ ଆତଙ୍କବାଦ, ଏଇଆ ମାନେ ହିଂସା, ହତ୍ୟା ଲୁଣ୍ଠନ, ଏଇଆମାନେ ଦେଶଦ୍ରୋହ !" – ମୁଁ ଉପ୍ରୋଧ ନ ରଖି, ଅତ୍ୟନ୍ତ ଆହତ, ଉତ୍ତ୍ୟକ୍ତ ବିଚଳିତ, କ୍ରୁଦ୍ଧ ହୋଇ କହିଦେଲି ।

ସେ ମୋତେ ଚାହିଁ ଅଳ୍ପ ହସିଦେଲା କେବଳ । କିଛି କହିଲା ନାହିଁ ।

ମୁଁ ବି ଆଉ କିଛି କହିପାରିଲି ନାହିଁ ।

ସେ କିଛି ସମୟ ପରେ କହିଲା – "ଆପଣ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେଲେ ମୁଁ ତେଣିକି ନିଷ୍ପତ୍ତି ନେବି ଆପଣଙ୍କୁ କିଛି କହିବାର ପ୍ରୟୋଜନ ଅଛି କି ନାହିଁ ।"

"...ଏବଂ ସେ ପ୍ରଶ୍ନଟି ହେଲା ଜ୍ଞାନ ଉପଦେଶ ଦ୍ୱାରା ଦୁଷ୍କୃତମାନଙ୍କର ଚରିତ୍ର ସଂଶୋଧନ ନ କରି ତାଙ୍କୁ ହତ୍ୟା କରିବା ପାଇଁ କୃଷ୍ଣଙ୍କ ଦ୍ୱାରା ଯେଉଁ ନିଷ୍ପତ୍ତି ନିଆଗଲା ତାହା ଠିକ୍ ନା ଭୁଲ୍ ? ଯଦି ଠିକ୍ ତାହା ହେଲେ ଏବେ ମଧ ସେପରି ନିଷ୍ପତ୍ତି ନେବାରେ ଅସୁବିଧା କ'ଣ ? ଯଦି ଶ୍ରେଷ୍ଠ ପୁରୁଷମାନେ ଯାହା ଆଚରଣ କରନ୍ତି ତାହା ଇତରଜନଙ୍କ ପାଇଁ ଆଦର୍ଶ ରୂପେ ଗୃହୀତ ହୁଏ ସେଥିରେ ଅସୁବିଧା ଅଛି କି ?"

ମୁଁ ହଠାତ୍ ଥଣ୍ଡା ପଡିଗଲି । ଶ୍ରୀକାନ୍ତର ଗମ୍ଭୀର ପ୍ରଶ୍ନର ଇଙ୍ଗିତ ବୁଝିଗଲି ଏବଂ ମନେ ମନେ କେଜାଣି କାହିଁକି ଖୁସି ବି ହେଲି ଯେ ସେ ଶାସ୍ତ୍ର ପଢିଛି ଓ ବୁଝିଛି ।

କିଛି କହିଲି ନାହିଁ ।

"...ମୁଁ ବୁଝି ପାରୁଛି ସାର୍ ଆପଣ କାହିଁକି ନିରବ ରହିବା ଉଚିତ୍ ମନେ କଲେ । 'ହଁ' କରିବାକୁ ଯୁକ୍ତି ଦେବା ଏବଂ 'ନା' କରିବାକୁ ସାହସ କରିବା ଉଭୟ କଷ୍ଟକର । କିନ୍ତୁ ଆପଣ ବୋଧହୁଏ ନିଶ୍ଚୟ ଜାଣିବାକୁ ଚାହିଁବେ, ଦୁଷ୍କୃତମାନଙ୍କୁ ଚିହ୍ନଟ କରିବା ପଦ୍ଧତି ଓ ପ୍ରମାଣ କ'ଣ ଏବଂ ସେମାନଙ୍କୁ ଦଣ୍ଡ ଦେବାର ଅଧିକାର କାହାର ।"

ମୋ ମନ କଥା ପ୍ରାୟ ଠିକ୍ ଠଉରେଇ ନେଇଥିବାରୁ ମୁଁ ତାକୁ ତାରିଫ୍ ନ କରି ରହି ପାରିଲି ନାହିଁ । କିନ୍ତୁ ପୁଣି କିଛି ନ କହି ନିରବ ରହିଲି । ତେବେ ମୋ' ମୁହଁରେ ବୋଧହୁଏ ସନ୍ତୋଷର ଛାପ ପରିଷ୍କାର ବାରି ହୋଇ ଯାଉଥିଲା ।

ସେ ସେମିତି ମୋତେ ଚାହିଁ ଆସ୍ତେ ଅଥଚ ସ୍ପଷ୍ଟ ଭାଷାରେ କହିଲା –

"ଅପଶାସନ, ଅପସଂସ୍କୃତି, ଅନାଚାର, ଅତ୍ୟାଚାର ବିରୁଦ୍ଧରେ ଆମେ ଯୋଜନାବଦ୍ଧ ଭାବରେ ମୁକ୍ତି ସଂଗ୍ରାମ କରୁଛୁ । ସଶସ୍ତ୍ର । ଆମେ ଦେଶଦ୍ରୋହୀ ନା ଦେଶଭକ୍ତ, ବଣ ମୂଲକରେ ଥିବା ଅରକ୍ଷ ମଣିଷଙ୍କୁ ପଚାରନ୍ତୁ । ଆପଣଙ୍କ ଭଳି ନିରପେକ୍ଷ ବୁଦ୍ଧିଜୀବୀମାନଙ୍କୁ ପଚାରନ୍ତୁ । ସବୁ କ୍ଷେତ୍ରରେ ବ୍ୟାପିଥିବା ଦୁଷ୍କୃତମାନଙ୍କୁ ସଂହାର ନ କରି ଦେଶକୁ ରକ୍ଷା କରିବାର ଅନ୍ୟ ବିକଳ୍ପ ପନ୍ଥା ଅଛି କି ? ଆମର ମୁକ୍ତି ସଂଗ୍ରାମକୁ ସେମାନେ ସନ୍ତ୍ରାସବାଦ ଆଖ୍ୟା ଦେଇଛନ୍ତି । ଯେମିତି ବିଦେଶୀ ସରକାର ଅସହଯୋଗକୁ ବେଆଇନ, ଦେଶଦ୍ରୋହ କହୁଥିଲା ! ସେଥିରେ କ'ଣ ଯାଏ ଆସେ ? ମୋ' ଭଳି ଅନେକ ସାରା ଦେଶରେ ଏ ମୁକ୍ତି ସଂଗ୍ରାମରେ ଯୋଗ ଦେଇଛନ୍ତି । ଆମେ ଯୋଜନାବଦ୍ଧ ଭାବରେ କାମ କରୁ । ଏମିତି ଖାଲି ସଡକ୍‌ରେ ପୁଲିସ୍ ଫାଣ୍ଡି ପୋଡିବା ଆମ କାମ ନୁହେଁ । ବିନା ପ୍ରୟୋଜନରେ ହତିଆର କାର୍ତୁଜ ବା ତହବିଲ୍ ଲୁଟିନେବା ବି ଆମେ ଚାହୁଁନା । ଆମକୁ ଧରିବା ଆଳରେ ସରକାରୀ ସେନା କେମିତି ଗାଁ ଗଣ୍ଡାରେ ଘର ଦ୍ୱାର ଭାଙ୍ଗି ଅତ୍ୟାଚାର କରୁଛନ୍ତି, ତାହା ଆପଣମାନେ ଖବରକାଗଜରୁ ଜାଣି ପାରିବେ ନାହିଁ । – ମାନବାଧିକାର କମିଶନ ସେ ଅଗମ୍ୟ ଅଞ୍ଚଳକୁ ଯିବେ ନାହିଁ ! – ଏଣୁ ଦୋଷ ଆମ ମୁଣ୍ଡରେ ଯାଏ ।"

"କାଲି ମଦନପୁରରେ ଯେଉଁ ପୋଡାଜଳା ହେଲା ସେଥିପାଇଁ ଲୋକ ଆସିଥିଲେ । ତାଙ୍କୁ ପଠାଯାଇଥିଲା । ସେମାନେ ଚାଲିଗଲା ପରେ, ଯେଉଁମାନେ ନିଆଁ ଲିଭାଇଲେ, ସେମାନେ ଆମ ଲୋକ । ଅଥଚ ଡାକ୍ତର କାହାନ୍ତି ? ସେମାନଙ୍କୁ ଔଷଧ ଦେବା, ସେବା ଯତ୍ନ କରିବା ପାଇଁ ଆମେ ବ୍ୟସ୍ତ ଥିବାବେଳେ ସରକାରୀ ଗାଡିରେ ବନ୍ଧୁକ ନେଇ ପୁଲିସ୍ ପହଞ୍ଚିଗଲା । ସେମାନେ ଗାଁର ଏ ମୁଣ୍ଡ ସେମୁଣ୍ଡ ଲୋକଙ୍କୁ ଠେଙ୍ଗିଆ ମାରି ଦାଣ୍ଡକୁ ଭିଡିଆଣିଲେ । ଆମେ ପଳେଇ ପାରିଥାନ୍ତୁ । ମୁଁ ମନା କଲି । ଦେଖିବାକୁ ଚାହିଁଲି ସେମାନଙ୍କ ଜୁଲମ୍ । ଆମେ ଧରା ଦେଲୁ । ଶ୍ରୀକାନ୍ତ ପୁଣି ଚାରିଆଡକୁ ଚାହିଁ ଟନଖି କରିନେଲା ।"

"ଆପଣ ମୋ' ପାଇଁ ଚିନ୍ତା କରନ୍ତୁ ନାହିଁ ସାର୍ । ଖରା, ବର୍ଷା, ଶୀତ, ଜଙ୍ଗଲ ପାହାଡ ଦେହସୁହା ହେଇଗଲାଣି । ଆମେ ଖାଇବା ଶୋଇବା ଭୁଲିଯାଇଛୁ । ରୋଗ ବାଗରେ ଆମ ଭିତରେ ଡାକ୍ତର ଅଛନ୍ତି । ଔଷଧ ବି ରଖିଛୁ । ତମ୍ବୁ ଟେକି ଆମେ ଦୁର୍ଗମ ଅଞ୍ଚଳରେ ବୁଲୁଥାଉ । ଅଜ୍ଞାତବାସ କାଟୁଥାଉ । ଶକ୍ତି ସଞ୍ଚୟ କରୁଥାଉ । ଆମେ ବିଛେଇ ହୋଇ ରହିଛୁ । ସହର ବଜାର ଗାଁ ଗଣ୍ଡା ଚାରିଆଡେ । ଆମ ପାଖରେ ସବୁ ଖବର ଥାଏ । ନିହାତି ଉପରେ ନ ପଡିଲେ ଆମେ ଏବେ ଖୋଲା ମୁକାବିଲା କରିବାକୁ ଚାହୁଁ ନାହୁଁ ।"

ମୁଁ କ'ଣ କହିବାକୁ ଯାଉଥିଲି । ସେ ହାତ ଟେକି ବାରଣ କଲା ।

"ଆପଣ କିଛି କହନ୍ତୁ ନାହିଁ ସାର୍ । ଏ ଘରେ ଟେପ୍ ଖଞ୍ଜା ଯାଇଛି । କ୍ୟାମେରା ବି ଅଛି । ଆପଣ ଯାହା କହିବେ ଯାହା କରିବେ ସବୁ ରେକର୍ଡ ହେଇ ଯାଉଛି । ମୁଁ ଜାଣିଶୁଣି କିଛି କଥା ସେମାନଙ୍କୁ ଶୁଣେଇବା ପାଇଁ ହିଁ ଆପଣଙ୍କୁ କହୁଛି । ମୁଁ ରେକର୍ଡ କରିବାକୁ ଚାହେଁ ଯେ ଆପଣ ନିଜେ ଆସି ନାହାନ୍ତି । ଆପଣଙ୍କୁ ଏଠିକି ଅଣାଯାଇଛି । ଆପଣ ଆମ ଆନ୍ଦୋଳନ ସହିତ ଆଦୌ

କନେକ୍ଟେଡ ନୁହନ୍ତି ।"

"ମୁନ୍ନା ମୋତେ ଚିହ୍ନିଛି । ମୁଁ ବି ତାକୁ ତା'ଠୁ ଅଧିକ ଚିହ୍ନିଛି । ସେ ଆପଣଙ୍କ ଜରିଆରେ ମୋର କିଛି ଗୁମର ପାଇଗଲେ ଗୋଟାଏ ବଡଧରଣର ଚାଞ୍ଚଲ୍ୟକର ଖବର ପଠେଇ ଦେବ ତା' ମାଲିକଙ୍କ ପାଖରେ, କିଛି ବାହାବା ପାଇବ । ପୁଲିସ୍‌ବାଲାଏ ପତ୍ରିକାରେ ତାକୁ ନାଟକୀୟ ଢଙ୍ଗରେ ଛପେଇ ଆହୁରି ବାହାବା ନେବେ । ଏ କଥା ମୁଁ ଜାଣେ ।"

"ମୁଁ ଆହୁରି ଜାଣେ, – ମୁଁ ଏଇଟା ମୁନ୍ନା ପାଇଁ କହୁଛି, ଯେ ଏଇ ମୁହୂର୍ତ୍ତରେ ତା' ଫାଣ୍ଡି ଚାରିପଟେ ଆମଲୋକ ଘେରି ରହିଛନ୍ତି । ଏ ପୁଲିସ୍ ଷ୍ଟେସନ୍‌ଟିକୁ କବ୍‌ଜା କରିବାକୁ ପାଞ୍ଚ ମିନିଟ୍ ମାତ୍ର ସମୟ ଦରକାର ।"

"ପୁଣି କହି ରଖୁଛି, ଯେ ତା'ଠାରୁ ଖବର ପାଇ, ରାମପୁର ଗସ୍ତରେ ଥିବା ତା' ହାକିମ ଆଜି ରାତିରେ ଆସି ପହଞ୍ଚିବାକୁ ପ୍ରସ୍ତୁତ ହେଉଛନ୍ତି । ସେ ଏଠି ପହଞ୍ଚିବା ପୂର୍ବରୁ ଅନେକ ଘଟଣା ଘଟି ସାରିଥିବ ।"

"ଆଉ କହି ରଖିବାକୁ ଚାହେଁ ଯେ ଦୁଇମାସ ପୂର୍ବେ ସରକାରୀ ଭଡାଟିଆ ଆସି କାଟିଗୁଡାରେ ଲୁଟ୍ ତରାଜ୍ କରିଥିଲେ । ତାରା ମୁଦୁଲିର ବାପା ମା'ଙ୍କୁ ଘରେ ବାନ୍ଧି ପକେଇ ତାକୁ ବଳାତ୍କାର କରିଥିଲେ । ଘରେ ନିଆଁ ଲଗେଇ ଦେଇଥିଲେ । ତାରା ଥାନାକୁ ଯାଇଥିଲା ଏତଲା ଦେବାକୁ । ତାକୁ ଗୋଟାଏ ଦିନ ଗୋଟାଏ ରାତି ସେମାନ ପାଳିକରି ରକ୍ତାକ୍ତ କଲେ । ଦୈବାତ୍ ହାକିମ ଆସିଯିବାରୁ ସେ ତାଙ୍କ ଆଗରେ ଫେରାଦ୍ ହେଇଥିଲେ । ସାଇବ ତାକୁ ନ୍ୟାୟ ଦେବାକୁ ତିନିଦିନ ଗସ୍ତରେ ନେଇ ଗଲେ । ତା'ପରେ ତାକୁ ତା' ଗାଁ ମୁଣ୍ଡେ ଓହ୍ଲେଇ ଦେଇ କାହାକୁ କିଛି ନ କହିବାକୁ ହୁକୁମ୍ କଲେ ।"

"ଭଡାଟିଆଙ୍କ ପୋଡାଗାଡି ଆଉ ଲାସ୍ ପୁଲିସ୍ ପାଇ ସାରିଛି । ଥାନା ଲୁଟି ହୋଇ ଯାଇଛି । ତିନିଜଣ ମରିଛନ୍ତି । – ସେ ଝିଅ ଆମ ସାଙ୍ଗରେ ଅଛି । ତାକୁ ଶେଷ ନ୍ୟାୟ ଆଜି ରାତିରେ ମିଳିଯିବ ।"

"ମୁଁ ସଂଗ୍ରାମ କରୁଛି ସାର୍ । ମୁକ୍ତି ସଂଗ୍ରାମ । ଦୁଷ୍କୃତଙ୍କୁ ମାରିବା ହିଁ ଏକମାତ୍ର ପନ୍ଥା । ନ ହେଲେ ଏ ଦେଶକୁ ମୁକୁଳେଇ ହେବ ନାହିଁ । ଆଉ ବେଳ ନାହିଁ, ସାର୍, ଆପଣ ଏଇଠୁ ଚାଲିଯାନ୍ତୁ । କାରଣ ଏବେ ଯାହା ଘଟିବ ଆପଣ ଦେଖି ସମ୍ଭାଳି ପାରିବେ ନାହିଁ ।"

ସତକୁ ସତ ସେ ଉଠିଲାବେଳକୁ ହିଁ କବାଟ ଫିଟିଗଲା । ମୁନ୍ନା ତରବରରେ ପଶି ଆସି ମୋତେ ପ୍ରାୟ ଟାଣିଲା ପରି ନେଇଗଲା । –

ମୁଁ ପଛକୁ ଫେରି ଚାହିଁଲାବେଳକୁ ଶ୍ରୀକାନ୍ତ ନିଶ୍ଚଳ ଠିଆ ରହିଥାଏ ।

ଦିନକ ପରେ ଖବରକାଗଜରେ ପ୍ରଥମପୃଷ୍ଠାରେ ଛପା ହେଇଥିଲା 'ଆତଙ୍କବାଦୀଙ୍କ ଅଚାନକ ଆକ୍ରମଣ । ରାମପୁର ମଦନପୁର ରାସ୍ତାରେ, ଲାଣ୍ଡ୍‌ମାଇନ୍ ଫୁଟି ପୁଲିସ୍ ଗାଡି ଉଡିଗଲା । ବରିଷ୍ଠ ହାକିମଙ୍କ ସମେତ ଡ୍ରାଇଭର୍ ଆଉ ଚାରିଜଣ ଦେହରକ୍ଷୀଙ୍କ ମୃତ୍ୟୁ ।'

ପୁଣି ତା' ତଳକୁ ବାହାରିଚି ସେହି ରାତି ବାରଟା ପନ୍ଦର ମିନିଟ୍‌ରେ ମଦନପୁର ଥାନା ଉପରେ ଆତଙ୍କବାଦୀ ଚଢାଉ । ହାଜତରୁ ତିନିଜଣ ଉଗ୍ରବାଦୀ ଫେରାର । ଥାନାବାବୁ ଶରତ ରାଉଳ ଓରଫ ମୁନ୍ନାବାବୁ ଚେତାଶୂନ୍ୟ ଅବସ୍ଥାରେ ଥାନା ହାଜତରୁ ଉଦ୍ଧାର । କାଗଜପତ୍ର ଜଳାପୋଡା, ବନ୍ଧୁକ କାର୍ଟ୍ରୁଜ୍ ଲୁଟ୍ । ନ'ଜଣ ଯାକ ପୁଲିସ ବାହିନୀ ଗୁରୁତର ଆହତ ଅବସ୍ଥାରେ ଡାକ୍ତରଖାନାରେ ଭର୍ତ୍ତି ।

ମୁଁ ଖବରକାଗଜ ନୁଆଇଁ ଆଖିରୁ ଚଷମା କାଢିଦେଲି । ଆଖିବୁଜି ବସି ରହିଲି ଅନେକ ବେଳଯାଏଁ । ବେଲାଲସେନର କଟାମୁଣ୍ଡ ପରି ମୁଁ କେବଳ ଯୁଦ୍ଧଭୂମିକୁ ନିର୍ନିମେଷ ଚାହିଁ ରହିଲି ।



# ସେପାଖ ଲୋକ

ବାହୁ ପ୍ରସାରି ଦେଲେ ଯେତେ ବାଟ ଗଲା ତା' ବାହାରେ, ମଝି ଆଙ୍ଗୁଠି ଟିପ ସିର୍ ସିର୍ କରୁଥିବା ଅଥଚ ଛୁଇଁପାରୁ ନ ଥିବା ଆମ ପରିଧିର ନିକଟତମ ଅଥଚ ସୀମା ବହିର୍ଭୂତ ଭୂମିରେ ସେ ଜଣକ ରହି ଆସିଛନ୍ତି, ଆଜି ନୁହେଁ, କେଜାଣି କୋଉ କାଳରୁ ।

ଆମ ବାଲ୍‌କୋନିରୁ ତାଙ୍କ ଡେଙ୍ଗା ଡାହାଳିଆ ଆକୃତି କେବେ କେମିତି ଘୁଞ୍ଚି ଯାଉଥିବାବେଳେ ହୁଏତ ଦେଖିଛୁ, ସେମିତି ନିଘା କରି ନାହୁଁ । ଏଣୁ ଚେହେରା କେମିତି କହିପାରିବୁ ନାହିଁ ।

ଆମ ଏ' ବ୍ଳକରୁ ଡି' ବ୍ଳକ ଦିଶେ, କିନ୍ତୁ କେଜାଣି କେମିତି ଓ କାହିଁକି ଅପହଁଚ ରହିଯାଏ । ଆମେ ଏଠି ଆସି ରହିବାର ଆଜିକୁ ଅଠର ବର୍ଷ ହେଇଗଲା । ଆମ ଛାତ ଉପରୁ ତାଙ୍କ ଛାତକୁ କାଉ ଉଡିଯିବାର ଦେଖିଛୁ । ଭଣ୍ଡାର କୋଣରୁ ମେଘ ଉଠେଇଲାବେଳେ ତାଙ୍କ ବ୍ଳକ ଝଟ୍‌ଝଟ୍ ଦିଶେ । କାକର ପବନ ସେଇଆଡୁ ବହିଆସିଲେ କାଳେ ଓଦା ହୋଇଯିବୁ ଏଇ ଭୟରେ ଆମେ ଝର୍କା କବାଟ ବନ୍ଦ କରିଦେଉ । ଝର୍କା କାଚ ଉପରେ ଛୋଟ ଛୋଟ ପାପୁଲି ଥାପୁଡିଲା ପରି ଟେର୍ଛା ବର୍ଷା ଛେଚିହୁଏ । ଦୂର୍‌ଦୂର୍ କରେ ଖିଡ୍‌କି । ଆମେ ଟଳ ଉପର କିଳିଣି କସି ଦେଇଥାଉ । ଫିଟିବାର ପ୍ରଶ୍ନ ନାହିଁ । ଆମେ କ'ଣ ବେକୁବ୍ ହେଇଚୁ ବର୍ଷା ବତାସିକୁ ଡାକି ଆଣିବୁ ।

ଛାତରୁ ଛାତରୁ କାଉ ଉଡିଗଲା ପରି ଆମ ପିଲେ ବୋଧେ ପନ୍ଦର ବର୍ଷ ତଳେ ଡି' ବ୍ଳକ୍ ସାମ୍ନା ଖୋଲା ପଡିଆକୁ ଯାଉଥିଲେ । କାକର ପବନ ପରି ସେଇଠୁ ତାଙ୍କ ଖେଳ ସାଥିମାନେ ଏଠିକି ଆସୁଥିଲେ । ଟୁକୁନା, ମାମିନା, ବାବୁଲି, ଟୁବୁଲି ଭିତରୁ କେହି ହୁଏତ ତାଙ୍କ ପିଲା ହେଇଥିବେ । ସେମାନେ ହୁଏତ ଆମ କଥା ତାଙ୍କ ଘରେ କହିଥିବେ । ଆମ ପିଲେ ବି ତାଙ୍କ ଚେହେରା ଦେଖିଥିବେ । ଅଙ୍କଲ୍ ବୋଲି ଡାକିଥିବେ ।

କିନ୍ତୁ ଆମେ ଏ' ଆଉ ଡି' ବ୍ଳକର ଦୂରନ୍ତ ବ୍ୟବଧାନକୁ କେବେ ବି ଲଙ୍ଘିପାରି ନାହୁଁ । ଏଠୁ ସେଠିକି ଯିବାକୁ କଣ୍ଟାବାଡ ଡେଇଁବାକୁ ପଡି ନ ଥାନ୍ତା, ସବୁଦିନ ଯାଉଥିବା ପରିବା ଦୋକାନଠୁ

ବେଶି ବାଟ ଯିବାକୁ ବି ପଡି ନଥାନ୍ତା ।

ଆମେ ସତେବା ଗଛ ପରି ପୋତି ହୋଇଯାଇଛୁ । ଖାଲି ଶାଖା ବିସ୍ତାରିଛୁ ଯେତେବାଟ ଗଲା । ମଝି ଆଙ୍ଗୁଠି ଟିପ ସିର୍ ସିର୍ କରୁଥିବା ଅଥଚ ଛୁଇଁ ପାରୁ ନ ଥିବା ଅଞ୍ଚଳରେ ସେ ରହିଯାଇଥିଲେ ।

ଗତ ପନ୍ଦରିଦିନ ସନ୍ଧ୍ୟା ସାତଟାରେ ଡି' ବ୍ଲକ ଆଗରେ ଆମ୍ବୁଲାନ୍ସ ଆସି ଠିଆ ହୋଇଥିଲା । ମୁଁ ଅଫିସ୍‌ରୁ ଫେରି ଲୁଙ୍ଗି ବଦଳେଇ ଚା ପିଉଥିଲି । ସକାଳର ବାସି ଖବରକାଗଜର ବିଜ୍ଞାପନ ଚିତ୍ର ଦେଖୁଥିଲି । ମୋ' ସ୍ତ୍ରୀ ବାଲ୍‌କୋନିରୁ ପ୍ରଥମେ ଆମ୍ବୁଲାନ୍ସକୁ ଠାବ କଲେ । ସେଇଠି ପାଞ୍ଚ ଛ'ଜଣ ଆସି ଠିଆ ହୋଇ ଯାଇଥିଲେ ।

କେମିତି କେଜାଣି ଆମକୁ ଲାଗିଲା ଯେ ସେଇ ବୋଧହୁଏ ଆମ୍ବୁଲାନ୍ସରେ ଯିବେ ନା କ'ଣ ?

ଆମେ କେହି କାହାକୁ କିଛି କହି ନାହୁଁ । ପ୍ରୟୋଜନ ନ ଥିଲା । ମୁଁ ତରବରରେ ଲୁଗା ବଦଳ କରି, ମୋ' ସ୍ତ୍ରୀ ଗ୍ୟାସ୍ ଚୁଲି ଲିଭେଇ ବାହାରୁ ବାହାରୁ ଆମ୍ବୁଲାନ୍ସର ନେଳିବତୀ ଦିକ୍ ଦିକ୍ ଘୁଞ୍ଚି ଯାଉଥିଲା ବଡରାସ୍ତା ଉପରେ ଦକ୍ଷିଣମୁହାଁ ।

ମୁଁ ସେମିତି ବସିଗଲି । ବାକିଥିବା ଚା ଉଷୁମ୍ ହୋଇଯାଇଥିଲା । ସେ ବି ପାଖ ଚୌକିରେ ଚୁପ୍‌ଚାପ୍ ବସିଗଲେ ।

ସମୟ ମଡେଇ ହୋଇ ପଡୁଥିଲା ।

ମୋ ସ୍ତ୍ରୀ ପ୍ରଥମେ ପାଟି ଫିଟେଇଲେ । "ମନେ ପକାଅ । ଆମେ ସୌମିକ୍‌ର ବାହାଘର ନିମନ୍ତ୍ରଣ କାର୍ଡ ଦେବାକୁ ଯାଇଥିଲେ । ସେଇ ବ୍ଲକରେ ଜଣକ ଘରେ ତାଲା ପଡିଥିଲା । ଭିତରେ କିନ୍ତୁ ଆଲୁଅ ଜଳୁଥିଲା । ଆମେ ତାଙ୍କ 'ନେମ୍ ପ୍ଲେଟ୍' ଦେଖି ନିମନ୍ତ୍ରଣ ପତ୍ର ଉପରେ ତାଙ୍କ ନାଁ ଲେଖିଥିଲେ । କବାଟ ତଳ ଫାଙ୍କରେ ଗଳେଇ ଦେଇ ଆସିଥିଲେ ।"

ଘଟଣା ମନେପଡିଲା । ନାଁ ମନେପଡିଲା ନାହିଁ ।

"ଏଇ ସାମ୍ନାରେ ଆମେ ବାହାଘର ଭୋଜି ଦେଇଥିଲେ । ସୌମିକ୍‌ର ସାଙ୍ଗମାନେ ଆସିଥିଲେ । ଗେଟ୍ ସାମ୍ନା ବଡ ଆଲୁଅରେ ବାହାର ଅନ୍ଧାରକୁ ଆସ୍ତେ ଡି' ବ୍ଲକ ଆଡକୁ ମୋଡି ଯାଉଥିବା ସେ ଡେଙ୍ଗା ଡାହାଳିଆ ଆକୃତି ବୋଧହୁଏ ତାଙ୍କରି ।"

ମୁଁ ଦେଖି ନ ଥିଲି । ଆମେ ଉଭୟେ ତାଙ୍କ ଚେହେରା ଦେଖି ନ ଥିଲୁ । କେଜାଣି କେମିତି ।

ଅନୁ ସୌମିକ୍‌ଠୁ ପାଞ୍ଚବର୍ଷ ସାନ । ହେଲେ ସୌମିକ୍‌ର ବାହାଘର ପରେ ପରେ ସେ ଆମେରିକା ଯିବା ପୂର୍ବରୁ ଛ'ମାସ ଭିତରେ ଅନୁର ବାହାଘର ହେଇଗଲା । ହୋଟେଲରେ ହୋଇଥିଲା । ରାତିରେ ସମସ୍ତେ ଆସିଥିଲେ । ସୌମିକ୍ ତା' ସାଙ୍ଗକୁ ନେଇ ଗାଡିରେ ନିମନ୍ତ୍ରଣ ପତ୍ର ବାଣ୍ଟିଥିଲା । ସେ ଅଙ୍କଲଙ୍କୁ ନିଶ୍ଚୟ ଡାକିଥିବ ।

ସେ ଗହଳି ଭିତରେ କିଏ ଆଇଲା ବା ଗଲା କ'ଣ ଜାଣିହୁଏ । କିନ୍ତୁ ପାହାଚ

ଓହ୍ଲେଇଗଲାବେଳେ ପଛପଟୁ ଚନ୍ଦା ହୋଇ ଆସୁଥିବା ସେ ଜଣକ ବୋଧହୁଏ ସେ ।

ଘରେ ସ୍ତ୍ରୀ ଏକୁଟିଆ । ମୋର ବି ଚାକିରି ଆଉ ଦେଢବର୍ଷ । ଆମେ ସେମିତି ଅସାମାଜିକ, ଅଣମେଳାପି, ଏକଟିବାଗିହା ବି ନୋହୁ । ଆମେ ଯେଉଁମାନଙ୍କ ସାଙ୍ଗରେ ମିଶିଛୁ ତାଙ୍କ ଘରକୁ ଯିବା ଆସିବା କରିଛୁ, ଗୋଟାଏ ପରିବାର ପରି ଚଳିଛୁ । ତାଙ୍କୁ ବି ଆପଣେଇ ନେବାରେ ଆମର କ'ଣ ବା ଆପତ୍ତି ଥିଲା । କିନ୍ତୁ ହାତ ବଢେଇ ଆମେ ତାଙ୍କୁ ଟିପରେ ଛୁଇଁପାରିଲୁ ନାହିଁ । ସେ ବି ବୋଧହୁଏ ଆମକୁ ଛୁଇଁପାରିଲେ ନାହିଁ । ଆମେ ନିଜ ନିଜ ବେଢା ଭିତରେ ରହିଗଲୁ ।

ବର୍ଷକେ ଥରେ, ହୋରି ଖେଳ ହୁଏ । ବର୍ଷା ପାଣିରେ ଓଦା ହେଲା ପରି ସେଇ ଗୋଟାଏ ଦିନ ଅନ୍ତତଃ ରଙ୍ଗରେ ଗାଧୋଇ ସମସ୍ତେ ଏକାକାର ହୋଇଯିବା କଥା । କିନ୍ତୁ ଏଠି ସରକାରୀ ଖୋପମାନଙ୍କରେ ରହୁଥିବା ପାଞ୍ଚ ବଖୁରିଆଙ୍କ ସାଙ୍ଗରେ ଚାରିବଖୁରିଆ ମିଶନ୍ତି ନାହିଁ । ରଙ୍ଗ ବି ଖେଳନ୍ତି ନାହିଁ । ରଙ୍ଗ ଖେଳ ବି ଘଣ୍ଟା ଦେଖି ଦପ୍ତର ଗଲା ପରି ହୁଏ । ଭାତଖିଆ ଛୁଟି ପୂର୍ବରୁ ସରିଯାଏ । ରଙ୍ଗ ବୋଳା ହୁଏ ମୁହଁରେ, ମୁଣ୍ଡରେ । ଦେହସାରା ରଙ୍ଗରେ ସରବୁତ୍ ହେବା, ରଙ୍ଗ ଖେଳରେ ମାତିଯିବାର ଅନୁଭବ ଏଠି ନାହିଁ । ସେଥିପାଇଁ ଏ ବାବୁମାନଙ୍କୁ ସେତ ବା ସରକାରୀ ହୁକୁମ୍ ମିଳିନାହିଁ । ବିଧିରକ୍ଷା ପାଇଁ ରଙ୍ଗଖେଳ ହୁଏ । ଛୁଟି ମିଳିଛି, ଛୁଟିରେ କ'ଣ କରିବାକୁ ହେବ ସେଥିପାଇଁ ଅଲିଖିତ ଆଦେଶ ମିଳିଛି, ସେଥିପାଇଁ ଏ ସରକାରୀ ଖେଳ ।

ତରି ଭିତରେ ବି ରଙ୍ଗ ବୋଳାବୋଳିର ଚେହେରା ଲୁଚିଯାଏ । ଚିହ୍ନା ମୁହଁ ଦୋଦୋ ଚିହ୍ନା ଦିଶେ । ଅଚିହ୍ନା ମୁହଁ ଆଦୌ ଚିହ୍ନି ହୁଏନାହିଁ । ଏଠି ବ୍ଳକମାନଙ୍କ ସାମ୍ନାରେ ଥିବା ଗୁଲମୋହର ଗଛତଳେ ଏକାଠି ସମସ୍ତେ ରଙ୍ଗ ଖେଳନ୍ତି । କିଏ କୋଉ ବ୍ଳକରୁ ଆସିଛି ଜଣାପଡେ ନାହିଁ । ଖେଳରେ ହୋହଲ୍ଲା ନାହିଁ, ଧାଁ ଦଉଡ ନାହିଁ । ଉତ୍ସାହ ଆବେଗ ନାହିଁ । କାଳେ ନିୟମକାନୁନ୍ ଭାଙ୍ଗିଯିବ, ଏଇ ଭୟରେ ମନ୍ତ୍ରୀଙ୍କ ସଭାରେ ପଶିଲା ପରି ଆମେ ସବୁ ଦପ୍ତରୀ ବାବୁମାନେ ରଙ୍ଗଖେଳୁ । ବଦଖର୍ଚ୍ଚକୁ ଜଗି ଛୋଟ ପୁଡିଆମାନଙ୍କରେ ନାଲି, ହଳଦିଆ, ନେଳି ରଙ୍ଗ ଧରି ବାହାରୁ ସେଲୁନ୍‌ରେ ଦାଢି କାଟିବାକୁ ମୁହଁ ଦେଖେଇଲା ପରି ମୁହଁଟିମାନ ସ୍ଥିର ରହିଥାଏ ରଙ୍ଗ ବୋଳିଲା ବେଳେ । ହଲିଗଲେ କାଳେ ଖୁର ବାଜିଯିବ ଅଖଡରେ ।

ରଙ୍ଗରେ ଚେହେରା ସିନା ଲୁଚିଯାଏ, କିନ୍ତୁ ଆକୃତି ଲୁଚେ ନାହିଁ । ଲମ୍ବାରେ ଟକେ ଛୋଟ ପୁରୁଣା ପାଇଜାମା, କାଖ ପାଖରେ ଅଳ୍ପ ଫଟା ଫତେଇ ପିନ୍ଧି ରଙ୍ଗ ଖେଳକୁ ଆସିଥିବା ସେ ଡେଙ୍ଗା ଡାହାଳିଆ ମଣିଷଟି ବୋଧହୁଏ ସେଇ ହେଇଥିବ । ସେଇଠି କେହି କାହା ନାଁ ପରିଚୟ ପଚାରିବା ଅଶିଷ୍ଟାଚାର । ସମସ୍ତେ ସମସ୍ତଙ୍କୁ ଜାଣିଛନ୍ତି ବା ଜାଣିବା ଉଚିତ ବୋଲି ଧରି ନିଆଯାଇଥାଏ ।

ସେଥିପାଇଁ ସେ ମୋ' ପରିଧି ବାହାରେ ସତର ଥର ହୋଲି ଖେଳ ସତ୍ତ୍ୱେ ରହିଗଲେ, ଅଚିହ୍ନା ଅପରିଚିତ । ମୁଁ ତାଙ୍କ ଚେହେରା ଦେଖି ପାରିଲି ନାହିଁ । ସତର ବର୍ଷ ବିତିଗଲା ।

ମୋର ଛାଁ ଛାଁ ମନେପଡୁଛି ଦିନକର କଥା । ସନ୍ଧ୍ୟାବେଳେ ବିଜୁଳି ଆଲୁଅ ଚାଲିଯିବା

କିଛି ନୂଆକଥା ନୁହେଁ । ସେଦିନ ବି ଚାଲି ଯାଇଥିଲା । ମୁଁ ସେଦିନ ନିଜ ଗାଡି ନେଇ ନଥିଲି । ସରକାରୀ ଜିପ୍‌ରେ ଦୁଇ ତିନିଜଣ ଫେରିଥିଲୁ । ପ୍ରଥମେ ଆମ ଅଞ୍ଚଳ ସାମ୍ନାରେ ବଡ ରାସ୍ତାରେ ରହିଲ । ଟିକିଏ ବୁଲି ଆସିଥିଲେ ମୋତେ ଦୁଆର ମୁହଁରେ ଓହ୍ଲେଇ ଦେଇ ପାରିଥାନ୍ତା । ବିଳମ୍ବ ହେଉଥିବାରୁ ମୁଁ ହିଁ ବଡରାସ୍ତା ଉପରେ ଗାଡି ରଖି ଓହ୍ଲେଇଗଲି । ଜିପ୍‌ର ଆଗ ଲାଇଟ୍‌ରେ ମୁଁ ରାସ୍ତା ଜଡକୁ ଆସୁ ଆସୁ ଗାଡି ଆଗେଇ ଯାଇଥିଲା ।

ତାରା ଆଲୁଅରେ ଯାହା ଟିକିଏ ଦିଶିଥାନ୍ତା । ହଠାତ୍ ଆଲୁଅରୁ ଅନ୍ଧାରକୁ ପଶି ଆସିବାରେ ଆଖିକୁ କିଛି ଦିଶିଲା ନାହିଁ । ଭୁସ୍ କିନା ମୋ' ବାଁ ଗୋଡଟା ଖାଲରେ ପଡିଗଲା । ମୁଁ ବୋଧେ ମୁହଁ ମାଡି ପଡିଯାଇଥା'ନ୍ତି ।

'ଆରେଆରେ ରଥବାବୁ', କହି କେହି ଜଣେ ମୋ' ଡେଣା ଧରି ସମ୍ଭାଳିନେଲେ । ଖାଲରୁ ଉଠି ଆରପଟେ ଗୋଡ ଥାପିବାକୁ ସାହାଯ୍ୟ କଲେ । ଅନ୍ଧାରରେ ମୁଁ କାହାକୁ ଦେଖିନାହିଁ, କେବଳ ଶିଷ୍ଟାଚାରରେ 'ଥ୍ୟାଙ୍କସ୍' କହି କିଛି ଘଟି ନ ଥିବା ଭଙ୍ଗୀରେ ଆଗେଇ ଗଲି ।

ତା'ପରେ ଆଲୁଅ ଆସିଗଲା । ମୁଁ ଦେଖିଲି ମୁଁ ଡି' ବ୍ଲକ ସାମ୍ନାରେ ହିଁ ଓହ୍ଲେଇ ଯାଇଥିଲି । ମୋ' ଆଡକୁ ପଛ କରି ଦୁଇ ତିନିଜଣ ଆଗପଛ ହୋଇ ସେଇ ବ୍ଲକ ଆଡକୁ ଆଗେଇ ଯାଉଥିଲେ । ସେଥିରୁ ଜଣେ ବେଶ୍ ଡେଙ୍ଗା ମଣିଷ ।

ସେ କ'ଣ ସେଇ ଯାହାଙ୍କୁ ଆମେ ଦେଖି ଦେଖିନାହୁଁ, ଜାଣି ଜାଣିନାହୁଁ ? ସେ କ'ଣ ତା'ହେଲେ ମୋତେ ଚିହ୍ନିଛନ୍ତି, ମୋ' ନାଁ ବି ଜାଣିଛନ୍ତି ? କିନ୍ତୁ ସେ କ'ଣ କରୁଥିଲେ ସେ ଅନ୍ଧାରରେ ? ସେ କ'ଣ ମୋ' ପଛେ ପଛେ ଆସୁଥିଲେ ? ସେ କ'ଣ ମୁଁ ଜିପ୍‌ର ଆଗ ସିଟ୍‌ରେ ବସିଲାବେଳେ ପଛପଟ ଅନ୍ଧାରରେ ବସି ମୋ' ସାଥୀରେ ଆସିଥିଲେ ଓ ମୁଁ ଓହ୍ଲେଇଗଲାବେଳେ ଓହ୍ଲେଇଥିଲେ ? ସେ କ'ଣ ଆଗରୁ ଡ୍ରାଇଭରକୁ କହିରଖିଥିଲେ ଡି' ବ୍ଲକ୍ ଆଗରେ ଗାଡି ରଖିବାକୁ ?

ସେ ସବୁ ପ୍ରଶ୍ନର ଉତ୍ତର ନାହିଁ । କିନ୍ତୁ 'ଆରେ ଆରେ ରଥବାବୁ' କହି ଅନ୍ଧାରରେ ମୋ' ଡେଣାଧରି ଟେକି ଆଣିବାର ଅନୁଭବ ଭୁଲିବାର ନୁହେଁ । ଯଦି ସେ ହିଁ ଏତେ ନିକଟକୁ ଆସି ସୁଦ୍ଧା ମୁଁ ତାଙ୍କୁ ଚିହ୍ନିଲି ନାହିଁ, ଜାଣିଲି ନହିଁ... ସତର ଅଠର ବର୍ଷ ବିତିଗଲା... ଇସ୍ କ'ଣ ହେଲା ସତେ ।

ମୁଁ ଚୌକିରୁ ଉଠି ୟାଙ୍କୁ ଡାକିଲି । ସେତେବେଳକୁ ସେ ରନ୍ଧା ଘରକୁ ଉଠି ଯାଇଥିଲେ ।

"ମୁଁ ଟିକିଏ ବଡ ଡାକ୍ତରଖାନାକୁ ଯାଉଛି, ତମେ ଯାଇଥାନ୍ତ କି ?"

ସେ ବୁଝିଗଲେ ଏବଂ କହିଲେ, "ତମେ ଗାଡି କାଢୁ କାଢୁ ମୁଁ ଘରେ ତାଲା ଦେଇ ବାହାରୁଛି ।"

ଡାକ୍ତରଖାନା ହତା ଭିତରେ ଗାଡି ରଖି ଆମେ 'ଇମର୍ଜେନ୍ସି'ରେ ବୁଝିବା ପାଇଁ ପାହାଚ ଚଢୁ ଚଢୁ ଦୁଇଜଣ ଡାକ୍ତର ଆଉ ନର୍ସ ଯେ ସେଇଠି ଥିଲେ ଆସି ନମସ୍କାର କଲେ । ମୁଁ ବିସ୍ମିତ ହେଲି ନାହିଁ କାରଣ ମୁଁ ସେତେବେଳେ ସ୍ୱାସ୍ଥ୍ୟବିଭାଗ ଦାୟିତ୍ୱରେ ଥିଲି । ଦୁଇଦିନ ଆଗରୁ

ସରଜମିନ୍ ତଦନ୍ତରେ ଆସି ଡାକ୍ତରଖାନା ବୁଲି ଦେଖିଥିଲି ।

ଆଜି ଫାଇଭ୍ ଆର ଡି ବ୍ଲକରୁ ଆମ୍ବୁଲାନ୍ସରେ କେହି ଆସିଛନ୍ତି କି ? କ'ଣ ହେଇଛି ଆମେ ଦେଖିବାକୁ ଆସିଛୁ ।

ଟୋକା ଡାକ୍ତର ଦୁଇଜଣ ବେକରେ ଷ୍ଟେଥୋସ୍କୋପ୍ ଓହଳେଇ ତଳକୁ ଚାହିଁ ଠିଆହେଲା । ଇମରଜେନ୍ସିରୁ ଖଣ୍ଡ ଭୂଇଁ ଫାଟିଗଲା ପରି କାନ୍ଦଣା ଶୁଭୁଥିଲା । ଜଣେ କହିଲେ, "ଏଠି ପହଞ୍ଚିବା ଆଗରୁ ସେ ଚାଲି ଯାଇଥିଲେ ।"

ଆମେ ଥ' ହୋଇ ଠିଆ ହୋଇ ରହିଗଲୁ । ଏତିକିବେଳେ ଟରବର ଧାଁ ଦଉଡ କିଛି ହେଇଗଲା । ଆମକୁ ସେମାନେ ଇମର୍ଜେନ୍ସିକୁ ନେଇଗଲେ ।

ଷ୍ଟ୍ରେଚର ଉପରେ ଜଣେ ଡେଙ୍ଗା ମଣିଷକୁ ପାଦ ଠାରୁ ମୁଣ୍ଡଯାଏଁ ଧଳା ଚାଦରଟିଏ ଘୋଡେଇ ଦିଆଯାଇଥିଲା । ଯେ କାନ୍ଦୁଥିଲେ ସେ କାନିରେ ମୁହଁ ଘୋଡେଇ ଷ୍ଟ୍ରେଚର ପାଖରେ ତଳେ ବସିଥିଲେ । ତାଙ୍କର ଝାଳ ସରସର, ଲୁହ ସରସର ଦେହସାରା ଅସହାୟ ଭୁଶୁଡି ପଡୁଥିଲା ।

ମୋ ସ୍ତ୍ରୀ ତାଙ୍କ ପିଠିରେ ହାତରଖି ସେଇଠି ବସି ପଡିଥିଲେ । ମୁଁ ମୁହଁ ଫେରେଇ ବାହାରକୁ ଚାଲିଆସିଥିଲି । ମୋ' ଆଖି ଜକେଇ ଯାଇଥିଲା । ନାକପୁଡା ଜଳୁଥିଲା । କୋହ ଉଠି ଆସୁଥିଲା ପେଟରୁ ।

ମୁଁ ଯାହାକୁ ଏତେବର୍ଷ କାଳ ଦେଖି ନ ଥିଲି, କେମିତି ଚେହେରା ଜାଣି ନ ଥିଲି, ସେ ମଲାପରେ ବି ସତେ ବା ଅଭିମାନରେ ମୁହଁ ଘୋଡେଇ ଦେଇଥିଲା । "ଆରେ, ଆରେ, ରଥବାବୁ ଯଦି ଦେଖିନାହିଁ, ଏବେ ଦେଖିଲେ ଆଉ କ'ଣ ହେବ । ଦଶ ପାଦ ଏ ଅନ୍ଧାରରୁ ଆଗେଇ ଗଲେ ଆଲୁଅ ଆସିଯିବ ।"

ଆମ୍ବୁଲାନ୍ସରେ ତାଙ୍କୁ ପୁଣି ଡି' ବ୍ଲକକୁ ନେଇ ଷ୍ଟ୍ରେଚରରୁ ତାଙ୍କ ବିଛଣାରେ ଶୁଆଇ ଦିଆଗଲା । ରାତାରାତି ଖବର ପଠାଗଲା । ଗହଳି ବଢିଲା । ତାଙ୍କ ପିଲାଝିଲା, ଜ୍ଞାତିକୁଟୁମ୍ବ ଆସିଲେ । ଲଣ୍ଡାମୁଣ୍ଡରେ ଗାମୁଛାଟିଏ ପକେଇ ଏକାଦଶାହରେ ତାଙ୍କ ପୁଅ ଆମ ସମସ୍ତଙ୍କୁ କଦଳୀ ପତ୍ରରେ ପ୍ରସାଦ ପରଷୁଥିଲା, ତଦାରଖ କରୁଥିଲା । ସୌମିକ୍‌ର ସାଙ୍ଗ । ବୋଧହୁଏ ତା' ସହିତ ଖେଳୁଥିଲା । ଆମ ଘରକୁ ଆସୁଥିଲା ।

ହଠାତ୍ ମୋ' ସାମ୍ନାରେ ନଇଁପଡି କହିଲା, "ଅଙ୍କଲ୍, ଆଉ କ'ଣ ଆଣିବି କି ? ଟିକିଏ ଆଉ କ୍ଷୀରୀ ନିଅନ୍ତୁ ଅଙ୍କଲ ।"

ସୌମିକ୍ ବି ବୋଧେ ଏମିତି ତାଙ୍କୁ 'ଅଙ୍କଲ୍' କହି କ୍ଷୀରୀ ଯାଚିଥାନ୍ତା । ଲଣ୍ଡାମୁଣ୍ଡରେ ଗାମୁଛା ଘୋଡେଇଥାନ୍ତା । ମୁଁ ଅସୁସ୍ଥ ବୋଧକଲି । କିଛି ଢୋକି ପାରିଲି ନାହିଁ । ପାଣି ମନ୍ଦେ ପିଇ ଉଠିପଡିଲି । ଆର ଧାଡିରୁ ମୋ' ସ୍ତ୍ରୀ ବି ଉଠି ପଡିଥିଲେ । ଆମେ ତାଙ୍କ ପିଲାଙ୍କୁ ତାଙ୍କ ସ୍ତ୍ରୀଙ୍କୁ କିଛି କହିପାରିଲୁ ନାହିଁ । ଥନ ଥନ ଆଖିରେ କେବଳ ପିଠି ଆଉଁଶି ଦେଇ ଚାଲି ଆସିଲୁ ।

ଏ ବ୍ଲକ୍ ଆଉ ଡି' ବ୍ଲକ ମଝିର ବ୍ୟବଧାନକୁ ଲଙ୍ଘି ଆସୁଥିଲୁ ଦ୍ୱିତୀୟ କି ତୃତୀୟ ଥର

ପାଇଁ । ମଝିରେ ଛାପ୍ ଛାପୁଆ ଆଲୁଅରେ ପାରି ହେଲାବେଳେ କେତେବେଳେ ସେ ତ' କେତେବେଳେ ମୁଁ ପଛକୁ ଫେରି ଚାହୁଁଥିଲୁ । ଆମକୁ ଲାଗୁଥିଲା ଯେ, ପଛରେ ହୁଏତ କେହି ଜଣେ ଆସୁଥିଲା, ଆମକୁ ଘରଯାଏଁ ବଳେଇ ଦେବାପାଇଁ ।

ପାହାଚ ଚଢ଼ି ଆମ ଫ୍ଲାଟ୍ ଆଡେ ମୁହାଁଇଲାବେଳେ ଛପ୍‌କିନା ଅଟକିଗଲୁ ଦୁଇଜଣ ଯାକ । ଆମ କବାଟ ଉପରେ ଲମ୍ବା ଛାଇଟାଏ ପଡିଥିଲା । ସାମ୍ନା ଘର ଆଲୁଅ ପାଇଁ ହୁଏତ ସବୁବେଳେ ମୋର ହିଁ ଛାଇ ପଡୁଥିଲା କବାଟ ଉପରେ । କିନ୍ତୁ କେଜାଣି କାହିଁକି ସେଦିନ ଲମ୍ବା ମଣିଷଟାଏ ଦେହମୁହଁ ଘୋଡେଇ ଠିଆ ହେଲାପରି ଲାଗିଲା ।

ଘର ଭିତରଟା ଛପ୍ ଛପ୍ ଲାଗୁଥାଏ । ଖିଆପିଆ ତ ନ ଥାଏ । କେବଳ ଲାଇଟ୍ ଲିଭେଇ ଶୋଇଯିବା କଥା । କିନ୍ତୁ ଆମେ ଶୋଇଲୁ ନାହିଁ । ଢେର୍ ରାତିଯାଏ ଟିଭି ପାଖରେ ବସିଲୁ । ଢୋଳ ଆସିବାରୁ ମଝି ବଖରା ଆଲୁଅକୁ ହାଉ ହାଉ ଜାଳି ଶୋବା ଘର କବାଟ ଖୋଲା ରଖି କେଜାଣି କାହିଁକି ଡରିଲା ଡରିଲା ପରି ଶୋଇଗଲୁ ।

ନିଦ ହେଉ ନ ଥାଏ । ଛଟପଟ ଲାଗୁଥାଏ । ବାରମ୍ବାର କଡ ଲେଉଟାଇ କେତେବେଳେ ମୋତେ ଟିକିଏ ନିଦ ହେଇଗଲା । ପ୍ରସ୍ତ ପ୍ରସ୍ତ ଅନ୍ଧାର ମଡେଇ ହୋଇ ପଡୁଥାଏ ପୁଣି ଆଡେଇ ହେଇଯାଉଥାଏ । ଏଣୁ ତେଣୁ କେତେ କ'ଣ ଦିଶି ଲିଭି ଯାଉଥାଏ । ଗହୀରରୁ ଗହୀରକୁ ମୁଁ ଟାଣି ହେଇଯାଉଥାଏ । ହଠାତ୍ ହସ୍‌ପିଟାଲ ଦୃଶ୍ୟଟା ଅତି ସ୍ପଷ୍ଟ ହୋଇ ଦେଖାଗଲା । ଡାକ୍ତର ନର୍ସ ସବୁ ଲମ୍ବା ଲମ୍ବା ଦେଖାଗଲେ । ମୋ' ଆଡୁ ଅଳ୍ପ ହସିଦେଇ ମୁହଁ ଫେରେଇ ନେଲେ ।

ଇମର୍ଜେନ୍ସିରେ ଷ୍ଟ୍ରେଚର ଉପରେ ଶୋଇଥିବା ସେ ଲମ୍ବା ମଣିଷଟା ମୁହଁରୁ ହଠାତ୍ ଚାଦର ଆଡେଇ ହେଇଗଲା । ସେ ମୋତେ ଆଖି ମଟ ମଟ କରି ଚାହିଁଲା । ଦାନ୍ତ କାଢି ହସିଦେଲା । ମୁଁ ବିଳିବିଳେଇ ଉଠିଲି । ମୋ' ସ୍ତ୍ରୀ ଚମକି ପଡି ମୋ' ବୁକୁରେ ହାତ ପକେଇ ଦେବାକୁ ମୁଁ ଚିତ୍କାର କରି ପକେଇଲି । ମୋତେ ଲାଗିଲା ଦାନ୍ତ କାଢି ହସୁଥିବା ସେ ମଣିଷଟା ତା' ହାତ ବଢେଇ ମୋତେ ବୁକୁ ପାଖରୁ ଧରିନେଲା ।

ମୋ ସ୍ତ୍ରୀ ବି ଚିତ୍କାର କରିବାରୁ ମୁଁ ଆଖି ଫିଟେଇ ଦେଲି । ପାଣି ପିଇ ସାଷ୍ଟମ ହେବାକୁ ସମୟ ଲାଗିଲା ।

"କ'ଣ ହେଲା ? କ'ଣ ଡରାଣିଆ ସପ୍ନ ଦେଖିଲ କି ?"

ମୁଁ ସପ୍ନ କଥା କହିବାରୁ ସେ ଉଠିଯାଇ ଫୁଲ ଗାମ୍‌ଲାରୁ ଦୁବଟାଏ ଉପାଡି ପକେଇଲେ । ଠାକୁରଙ୍କ ଛଡା ଫୁଲ ପାଣି ମୋ' ଦେହସାରା ଆଉଲାଇ ଦେଲେ । କାନରେ ଖୋସି ଦେଇ କହିଲେ, "ମୋତେ ତ ଜମା ନିଦ ନାହିଁ । ମୁଁ ଚାହିଁ ପଡିଛି ଖଟରେ । ଖୁବ୍ ଛାନିଆ ଛାନିଆ ଲାଗୁଛି । କାଲି ସୋମବାର । କାଲି ସକାଳୁ ଟିକିଏ ଶିବଦର୍ଶନକୁ ଯିବା । ଏଇନା ସୌମିକ୍ ଘରେ ଥିବ ।" ମିତାଲିକୁ ଫୋନ୍ କରିବା କି ? କଥା ହୋଇଗଲେ ଭଲ ଲାଗିବ । ତାଙ୍କର ସେଇଠି ଦି'ପହର ବେଳା । ଏବେ ସୌମିକ୍ ଘରକୁ ଖାଇବାକୁ ଆସିବଣି ହୁଏତ । ଦୁଇଜଣଙ୍କୁ ଟିକିଏ ପଚାରି ଦବା

ସେମାନେ କେମିତି ଅଛନ୍ତି ।

ମୁଁ ମନା କରିଦେଲି ।

ମୋ ଭିତର ଆଉଟି ହଉଥିଲା । ତୁହାଇ ତୁହାଇ ମୋ' ପିଲାଦିନ କଥା ମନେ ପଡୁଥିଲା । ଆମେ ତିନି ଭାଇ । ମୋଠୁ ବଡ ଲୋକନାଥ, ମୋ' ତଳ କାଶିନାଥ – ଦୁଇଜଣ ଯାକ ଚାଲିଗଲେଣି । ମୁଁ ବିଶ୍ୱନାଥ । ସେ ଦୁହିଁଙ୍କୁ ଦେଖିପାରି ନ ଥିଲି । ଦଶାହ ଦିନ ଯାଇ ପହଞ୍ଚିଥିଲି ।

ସାନଭାଇ କାଶିନାଥ ଆଖିରେ ଆଖିରେ ଦିଶୁଥାଏ । ହଠାତ୍ ମୋ' ଦେହ ସାରା ଶୀତକଣ୍ଟା ମାଲିଗଲା । ଚାଦର ତଳୁ ଦାନ୍ତ କାଢି ହସୁଥିବା ଚେହେରାଟା ଅବିକଳ ମୋ' ସାନଭାଇ କାଶିନାଥର ଚେହେରା – ସେ ମୋଠୁ ଲମ୍ବା – ତା' ହସ ଠିକ୍ ଏମିତି । ଆଉ ନା କାନ ଠିକ୍ ଏମିତି ।

ମୁଁ ଜୋର୍‌ରେ ନିଃଶ୍ୱାସ ନେଉଥିବା ଦେଖି ମୋ' ସ୍ତ୍ରୀ ଘାବରେଇ ଗଲେ । ପୁଣି ପାଣି ଆଣି ଦୁଇ ଢୋକ ପିଆଇ ବୁକୁ ଆଉଁଶିଲେ ।

ମୁଁ ତାଙ୍କୁ ସବୁ କହିଗଲି । ସେ ମୋତେ ଦମ୍ଭ ଦେବାକୁ କହିଲେ, "ବେଶି ସେ ବିଷୟରେ ଆଉ ଚିନ୍ତା କର ନାହିଁ ।"

ମୁଁ କେଜାଣି କାହିଁକି ହାତଯୋଡି ପ୍ରାର୍ଥନା କଲି – "କ୍ଷମା କର, ତୁମେ ଏତେ ପାଖରେ ଥାଇ ବି ମୁଁ ତୁମକୁ ଚିହ୍ନିଲି ନାହିଁ । ସେଥିପାଇଁ ସପ୍ନରେ ତୁମେ ମୋ' ଭାଇ ଭଳି ଦେଖାଦେଲ । ମୁଁ ତୁମ ଚେହେରା ଶେଷ ଯାଏଁ ଦେଖିପାରିଲି ନାହିଁ । ସେମିତି କହିଲେ ମୁଁ କ'ଣ ଈଶ୍ୱରଙ୍କ ଚେହେରା କେବେ ଦେଖିଛି ? ସେ ମୋ' ପାଖରେ ଅଛନ୍ତି, ବୋଧହୁଏ ଏଇ ବୁକରେ, ବା ଗୋଟାଏ ଗଳି ପାର୍ ହୋଇଗଲେ ସେ ଲମ୍ବା ଦେଉଳିଆ ଘରେ ।"

ଡ୍ରଇଂ ରୁମ୍‌କୁ ଯାଇ ପଙ୍ଖା ତଳେ ଉଭୟେ ବସିଲୁ । ମୁଁ ମୋ' ପୁରୁଣା ଡାଇରି ଖୋଲି ପତ୍ର ଲେଉଟାଇଲି । ଯାହା ଖୋଜୁଥିଲି ପାଇଲି ନାହିଁ । ବୋଧହୁଏ ସବୁ ଜାଲଜାଲୁଆ ଦେଖାଯାଉଥିଲା ।

ମୋ ସ୍ତ୍ରୀ ଖୁବ୍ ଆସ୍ତେ କେବଳ ମୁଁ ଶୁଣିଲା ପରି କହିଲେ, "ମୋର ମନେଅଛି । ଏଇ ଅଗଷ୍ଟ ମାସ ପାଞ୍ଚ ତାରିଖରେ କାଶିନାଥ ଚାଲିଯାଇଥିଲେ । ଅଗଷ୍ଟ ପନ୍ଦର ଏକାଦଶାହକୁ ଆମେ ଗାଁରେ ଥିଲେ ।"

ମୁଁ ଶଙ୍କିଗଲି । ଅଗଷ୍ଟ ପନ୍ଦର ପାହାଡ ପରି ମଡେଇ ହୋଇ ପଡୁଥିଲା ମୋ' ଉପରେ ।

"ଶୁଣ ସାବିତ୍ରୀ ! ମୋର କାହିଁ ମନେହେଉଛି ଏଇ ଅଗଷ୍ଟ ପନ୍ଦରରେ ହିଁ ଦିନେ ହୁଏତ ଏ ସୃଷ୍ଟି ଓଲଟପାଲଟ ହେଇଯିବ । ଦେଖୁନ କେଡେ ଓସାର, କେଡେ ଗହୀର ଓ ଦିନଟା ।"

□

# ନ ହନ୍ୟତେ

ଛାପଛାପୁଆ ଜହ୍ନଆଲୁଅରେ ରାତି କେତେ ହେଲା ଜଣାପଡେ ନାହିଁ ।

ନୀରବତା କିନ୍ତୁ ଘେରି ଆସୁଥିଲା । ପବନ ବି ଅଳସେଇ ଯାଇଥିଲା । ସତେବା ଶଙ୍କି ଯାଉଥିଲା କୌଣସି କାରଣରୁ ।

ଆମେ ଦୁହେଁ ଚୁପ୍‌ଚାପ୍ ବସିଥିଲୁ ଆମ ଛାତରେ – ମୁଁ ଆଉ ଶେଖର । ବହୁଦିନ ପରେ ସେ ଖବର ନ ଦେଇ ହଠାତ୍ ପହଞ୍ଚି ଯାଇଥିଲା । ମୁଁ ତ ଖୁସି ହେଲି ନିଶ୍ଚୟ, କିନ୍ତୁ ସେ ପ୍ରାୟ ଗମ୍ଭୀର ରହିଗଲା । ମୁଁ ଅନୁଭବ କଲି ଯେ ଶେଖର କୌଣସି ଗୁରୁତର ସମସ୍ୟା ନେଇ ଆସିଛି ଏବଂ ସେଥିପାଇଁ ତାକୁ ସୁଯୋଗ ଦେବାକୁ ମୁଁ ତାକୁ ଖୁଆପିଆ ପରେ ଛାତକୁ ନେଇ ଚାଲିଆସିଥିଲି । ଆମେ ବସିଛୁ କି ନାହିଁ ସେ ଆରମ୍ଭ କରିଦେଲା, ଯେମିତି ସେ ଅପେକ୍ଷା କରି ରହିଥିଲା ସେ ସମୟଟାକୁ ।

ମୁଁ ମୋର ଗୋଡ ଲମ୍ବେଇ ଚୌକି ଉପରେ ଅପସରି ବସିଗଲି କୌଣସି ଏକ ଦୀର୍ଘ ବୟାନ ଶୁଣିବାକୁ ।

ଶେଖର ଆରମ୍ଭ କଲା, 'ଶୁଣ ଅମର ! (ମୋ ନାଁ ଅମରେନ୍ଦ୍ର ରାୟ) ମୁଁ ତତେ କୌଣସି କାହାଣୀ କହିବାକୁ ଆସିନାହିଁ । ମୁଁ ବରଂ ତୋର ପରାମର୍ଶ ଲୋଡିବାକୁ ଆସିଛି ବୋଲି କହିପାରୁ । ଇଟ୍ ଇଜ୍ ଅଲ୍ ଭେରି ଷ୍ଟ୍ରେଞ୍ଜ । ମୋ' ପାଇଁ ଖୁବ୍ ଅସସ୍ତିକର ଏକ ବିଚିତ୍ର ପରିସ୍ଥିତି ।'

ଏତିକି ଶୁଣିଲା ପରେ ମୁଁ ଗୋଡ ଲୋଟେଇ ଚୌକିରେ ସଳଖ ହୋଇ ବସିଗଲି ।

ସେ ହଠାତ୍ ଆରମ୍ଭ କଲା, 'ଝିଅଟିଏ । ମୋ' ଅନ୍ଦାଜ୍‌ରେ କୋଡିଏରୁ ପଚିଶ ଭିତରେ ବୟସ ହେବ । ନାଁ ଅରୁନ୍ଧତୀ । ପାଠଶାଠ ପଢିଛି । ବେଶ୍ ଶିକ୍ଷିତ ଝିଅ । ମୋ' ରହିବା ଅଞ୍ଚଳରେ ମୁଁ ତାକୁ କେବେ କେମିତି ଭେଟିଛି । କିନ୍ତୁ କୌଣସି ଗୁରୁତ୍ୱ ଦେଇନହିଁ ।'

ଅରୁନ୍ଧତୀକୁ ସୁନ୍ଦରୀ କହିହେବ ନାହିଁ । ରୂପରେ ବର୍ଣ୍ଣରେ ନିରସା କାଟର ସାଧାରଣ ଝିଅଟିଏ । ଗହଳି ଭିତରେ ବାରି ହେଲାପରି କୌଣସି ଲକ୍ଷଣ ତା'ର ନାହିଁ ।

ସେଇ ଝିଅଟି ଦିନେ ହଠାତ୍ ମୋ' ପାଖରେ ପହଞ୍ଚିଲା । ମୁଁ ସେତେବେଳେ ତରତର ହୋଇ ବାହାରୁଥିଲି ଗୋଟେ ସଭାକୁ । ସମୟ ଏଇ ପାଞ୍ଚଟା ତିରିଶ ପାଖାପାଖି । ସଂଧ୍ୟାରେ ସଭା ।

ସେ ଏକୁଟିଆ ଆସିଥିଲା । ସେ ବି ନିଶ୍ଚୟ ଜାଣିଥିଲା ଯେ ମୁଁ ସେ ଘରେ ଏକୁଟିଆ ରହେ । ଆଉ ସେ ସମୟଟା ବି ଠିକ୍ ନଥିଲା । ତା'ପରେ ରାତି ଆସିଯିବ ତ' ।

ମୁଁ କୌଣସି ଉତ୍ସାହ ବା ଆଗ୍ରହ ନ ଦେଖାଇ ତରତର ଜୋତା ଫିତା ବାନ୍ଧି କବାଟ ଆଉଜେଇ ଆଣିଲି । ଚେଣିକି ତାଲା ପକେଇବାକୁ ପକେଟ୍‌ରୁ ଚାବି କାଢୁଚି... ମୋ' ପଛରୁ ଶୁଭିଲା – ଆଇ ଆମ୍ ରିଅଲି ସରି । ଏମିତି ଆପଣଙ୍କୁ ହଠାତ୍ ଡିଷ୍ଟର୍ବ କଲି । ପ୍ରକୃତରେ ମୋର ଆଉ କୌଣସି ରାସ୍ତା ନଥିଲା । କାହିଁକି କେଜାଣି ମୋର ବିଶ୍ୱାସ ହୋଇଯାଇଛି ଯେ ଆପଣ ହିଁ ମୋତେ ରକ୍ଷା କରିପାରିବେ ।

ମୁଁ ସେମିତି କବାଟ ଆଡେ ମୁହଁ କରି କହିଲି, 'କାହିଁକି ? ମୁଁ ଆପଣଙ୍କୁ ଜାଣେନା ! ଆପଣ ଭୁଲ୍ କରୁଛନ୍ତି । ମୁଁ ଆପଣଙ୍କୁ କୌଣସି ସାହାଯ୍ୟ କରି ପାରିବି ନାହିଁ । ସରି ।'

ମୁଁ ତାଲା ବନ୍ଦ କରି ପକେଟରେ ଚାବି ରଖିନେଲି । ମୁଁ ବୁଲିପଡି ଓହ୍ଲେଇଲା ବେଳକୁ ପାହାଚତଳେ ସେ ଝିଅଟି ତଳକୁ ଚାହିଁ ଠିଆ ରହିଥିଲା । ମୋତ ପାଖରୁ କୌଣସି ରିକ୍ସା ଟଣ୍‌ଟଣ୍ ଅବାଜ୍‌କରି ପାରି ହୋଇଗଲା । ଅଞ୍ଚଳଟା ଟିକିଏ ନିରୋଳା । ବିଶେଷ ଚଳପ୍ରଚଳ ନଥାଏ । ମୁଁ ତଳ ମହଲାରେ ଭଡାରେ ରହେ । ଉପର ମହଲାରେ ଗୋଟିଏ ତେଲୁଗୁ ପରିବାର । ତାଙ୍କର ଦି'ଟି ପିଲା । ମିଷ୍ଟର ରାମାୟା କୋଉଠି ଗୋଟେ କ'ଣ ଚାକିରି କରନ୍ତି । ମୋର ତାଙ୍କ ସାଙ୍ଗରେ ବି ଏମିତି କିଛି ସଂପର୍କ ନାହିଁ । କେବଳ ମୌଖିକ ଶିଷ୍ଟାଚାରରେ 'ହଲୋ' କରିବା ବ୍ୟତୀତ ଆଉ କିଛି ନାହିଁ ।

ଏ ଝିଅଟି ସେ ମୋଟ ତଳକୁ ବୋଧେ ରହେ । ମୁଁ ସେଇବାଟେ ଗଲା ଆସିଲାବେଳେ ତାକୁ ଦେଖିଛି – ମାନେ ଏଇ ଅଫିସ୍ ଗଲାବେଳେ କିମ୍ବା ସେଇଠୁ ଫେରିଲାବେଳେ । ହୁଏତ ସେ ବି କୋଉଠି କାମ କରୁଥାଇ ପାରେ । ହୁଏତ ସେ ବି ଭଡାଘରେ ରହୁଥାଇ ପାରେ । ହୁଏତ ପରିବାର ଥାଇପାରେ । ହୁଏତ ଏକୁଟିଆ । ଛାଡ୍... ସେଥିରେ ମୋର କ'ଣ ଥାଏ ?

ମୁଁ ତାକୁ ଆଡ ହୋଇ ରାସ୍ତାକୁ ଓହ୍ଲେଇ ଗଲି ।

'ଆପଣ କଲ୍ୟାଣୀକୁ ଜାଣନ୍ତି ବୋଲି ସେ ମୋତେ କହିଛି । କଲ୍ୟାଣୀ ଛୋଟରାୟ । ମହେନ୍ଦ୍ର ରଣସିଂଙ୍କ ସ୍ତ୍ରୀ ।'

ମୁଁ ଅଗତ୍ୟା ଠିଆ ରହିଗଲି । କାରଣ ସେତେବେଳକୁ କଲ୍ୟାଣୀ ମରିବାର ଛ'ମାସ ପାଖାପାଖି ହୋଇ ସାରିଥିଲା । ମୋର ତାଳୁରୁ ତଳିପା ଯାଏ ଗୋଟାଏ ନିଆଁହୁଲା ଖସିଗଲା ।

ମୁଁ ସେମିତି ଆଗକୁ ଚାହିଁ ପଚାରିଲି, 'ଆପଣ କେମିତି କଲ୍ୟାଣୀକୁ ଜାଣିଲେ ?'

'ସେ ମୋର କ୍ଲାସ୍‌ମେଟ୍ । ଆମେ ଏକାଠି ସାଇ କଲେଜରେ ବି.ଏ. ପଢୁଥିଲୁ । ମୁଁ ତା'ପରେ

ଚାକିରି କରିଗଲି, କାରଣ... ଛାଡନ୍ତୁ କାରଣ ଯାହାହେଉ – ମୁଁ ଆଉ ତା' ସହିତ ଯୋଗାଯୋଗ ରଖି ପାରିଲି ନାହିଁ । ସେ ଆଉ ଦି'ବର୍ଷ ପଢିଲା ପରେ ଚାକିରି କଲା । ବିଗତ ବର୍ଷ ତା' ବିଭାଘର ନିମନ୍ତ୍ରଣ କାର୍ଡ ପଠାଇଥିଲା । ମୁଁ ଯାଇପାରି ନଥିଲି । ଏବେ ଛ'ମାସ ତଳେ ଦୁର୍ଘଟଣାରେ ସେ ମରିଗଲା । ଛାଡନ୍ତୁ, ଏସବୁ ଡିଟେଲ୍ସର କିଛି ଅର୍ଥ ନାହିଁ । କିନ୍ତୁ ସେ ମୋ' ପିଛା ଛାଡୁନାହିଁ । ପ୍ରତ୍ୟେକ ଦିନ ରାତି ସାଢେ ବାରଟାରେ ମୁଁ ଏକ ଅର୍ଦ୍ଧଚେତନ ଅବସ୍ଥାରେ ଏକ ଭୟଙ୍କର ସପ୍ନ ଦେଖୁଛି । ମୁଁ ଗୋଟାଏ ଅତଡା ଦାଢରେ ଟଳମଳ ହେବା ଅବସ୍ଥାରେ କଲ୍ୟାଣୀ ମୋତେ କେତେ କ'ଣ କହୁଛି । କାନ୍ଦୁଛି, ହସୁଛି, ପ୍ରଳାପ କରୁଛି, ଭୟଙ୍କର ହିଂସ୍ର ଜଣାପଡୁଛି । ବାରଂବାର କହୁଛି – ମୋତେ ସେ ଅତଡା ଦାଢରୁ ଭିଡିନେବ ରସାତଳକୁ । ଏଇ କେତେଦିନ ହେଲା ସେ ଆପଣଙ୍କ କଥା କହୁଛି । ଆପଣଙ୍କ ନାଁ ଶେଖର ଶର୍ମା ବୋଲି ସେ ମୋତେ କହିଛି । ଏଇ ମୋଡ ପାଖରେ ଆପଣ ଭଡାଘରେ ରହୁଛନ୍ତି ବୋଲି ମଧ କହିଛି । ଆପଣ ତା' ସ୍ୱାମୀ ମହେନ୍ଦ୍ର ରଣ ସିଂ ଆଉ ତାକୁ ଭଲ ରୂପେ ଜାଣିଛନ୍ତି । ଆପଣଙ୍କ ପାଖକୁ ସେ ଆସି ପାରୁନାହିଁ, କାରଣ ତା' କହିବା ଅନୁସାରେ ଆପଣ କାଳେ ଜଣେ ତନ୍ତ୍ରସାଧକ । ଆପଣଙ୍କ ରକ୍ଷା ବଳୟକୁ ସେ ଭେଦି ପାରୁନାହିଁ । ସେ ମୋତେ ହିଁ ମାଧମ କରିଚି । ଆପଣଙ୍କୁ ତା' କଥା କହିଦେଇ ପାରିଲେ ସେ ମୋତେ ଛାଡିଦେବ, ନହେଲେ ମୋର ମୃତ୍ୟୁ ଅନିବାର୍ଯ୍ୟ । ଏଣିକି ଆପଣଙ୍କ ଇଚ୍ଛା ।'

ସଂଧ୍ୟା ନଇଁ ଆସୁଥିଲା । ମୋତେ ଲାଗିଲା, କେହି ମୋତେ ଗୋଟାଏ ଜାବ ଭିତରେ ଧରିନେଲା । କାହିଁକି କେଜାଣି ମୋ' ଖଣ୍ଡା ଦୋହଲିଗଲା ପରି ଲାଗିଲା । ତୁ ଜାଣୁ, ମୁଁ ସହଜରେ ଡରେ ନାହିଁ, କିନ୍ତୁ ସେ ଝିଅକୁ ଶୁଣିଲା ପରେ ମୁଁ ମାନୁଛି ଯେ ମୁଁ ଦୁର୍ବଳ ଅନୁଭବ କଲି । ମୋତେ ଚକିତ କଲା ପରି ସେ ଝିଅ ଏତେ କଥା କହିଗଲା । ସେ ନିଶ୍ଚୟ ମିଛ କହୁ ନଥିଲା । ସେ ମୋ' ସାଇନ୍‌ବୋର୍ଡରୁ ମୋ' ନାଁ ହୁଏତ ଜାଣିଥିଲା । କିନ୍ତୁ ମହେନ୍ଦ୍ରକୁ ଜାଣିବା କଥା, କଲ୍ୟାଣୀକୁ ଜାଣିବା କଥା ସେ କେମିତି ଜାଣିଲା ? ମୁଁ ସବୁଠୁ ବେଶି ଆଶ୍ଚର୍ଯ୍ୟ ହେଲି, ଯେତେବେଳେ ସେ କଲ୍ୟାଣୀ ନାଁରେ କହିଲା ଯେ ମୁଁ କୁଆଡେ ତନ୍ତ୍ରସାଧକ । ଅଶରୀରୀ ଆତ୍ମାଟିଏ ମୋର ରକ୍ଷାବଳୟ ଭେଦି ମୋତେ ସ୍ପର୍ଶ କରିପାରୁନାହିଁ ।'

ମୁଁ ଅଗତ୍ୟା ମୁହଁ ବୁଲେଇ ସେ ଝିଅଟିକୁ ପଚାରିଲି, 'ଆଚ୍ଛା, ଆପଣଙ୍କ ନାଁ କ'ଣ ? ଆପଣ କ'ଣ କରନ୍ତି ? ଆଉ କିଏ ସବୁ ଆପଣଙ୍କ ପାଖରେ ଅଛନ୍ତି ?'

ସେ ନୀରବ ରହିଗଲା । ଏକରକମ କାଠେଇ ଗଲା । ମୁହଁ ଟେକି ମତେ କଟମଟ ଚାହିଁଲା । ତା'ପରେ ଅସ୍ୱାଭାବିକ ଭାବରେ ହସିବାକୁ ଆରମ୍ଭ କଲା ।

ମୋ ଦେହସାରା ସେ ହସରେ ଶୀତକଣ୍ଟା ମାରିଗଲା । ମୁଁ ନା କିଛି କହିପାରିଲି ନା କରିପାରିଲି ।

'ମୋ ନାଁ ? ହା-ହା-ହା-ହା, ମୋ' ନାଁ ତମେ କ'ଣ ପଚାରୁଛ ମ ଶେଖର ସାଆନ୍ତେ ? ମୁଁ ପରା କଲ୍ୟାଣୀ... କଲ୍ୟାଣୀ ଛୋଟରାୟ !' ତା'ପରେ ଚିତ୍କାର କଲା, 'ମୁଁ କଲ୍ୟାଣୀ

ଛୋଟରାୟ...'

ଏତିକିବେଳେ ତରବର ହୋଇ ଦୁଇଜଣ ପୁରୁଷ ଓ ଜଣେ ସ୍ତ୍ରୀ ଲୋକ ସେଇଠି ଆସି ତାକୁ ଧରିନେଲେ ।

ମୋତେ ଚାହିଁ ଜଣେ ଖୁବ୍ ବ୍ୟସ୍ତହୋଇ କହିଲେ, 'କିଛି ମନେ କରିବେ ନାହିଁ, ସେ ତା' ନିଜ ଆୟତ୍ତରେ ନାହିଁ ।'

ସେମାନେ ତାକୁ ନେଇ ଚାଲିଗଲେ । ବୋଧହୁଏ ତା'ର ବାପା ମା', ଭାଇ ହୋଇଥିବେ ।

ମୁଁ ସେ ସଂଧ୍ୟାରେ ଆଉ ମିଟିଂକୁ ଯାଇପାରିଲି ନାହିଁ ।

କିଛି ସମୟ ସେଇ ରାସ୍ତାରେ ଠିଆ ହେବା ପରେ ଆସ୍ତେ ପାହାଚ ଚଢ଼ି ଫେରି ଆସିଲି ।

ଆଲୁଅ ଜାଳି ସୋଫାରେ ବସିରହିଲି । ମହେନ୍ଦ୍ର ରଣସିଂ ଆଉ କଲ୍ୟାଣୀ ଛୋଟରାୟଙ୍କ କଥା ତୁହାଇ ତୁହାଇ ମନେ ପଡିଲା । ସେମାନେ ପରସ୍ପରକୁ ଭଲ ପାଇ ବାହା ହେଇଥିଲେ । ମୋର ସେଥିରେ କିଛି କହିବାର ନଥିଲା । କିନ୍ତୁ ମୁଁ ଦେଖୁଦେଖୁ ଅନୁଭବ କରିଥିଲି ଯେ କଲ୍ୟାଣୀ ପାଖରେ ମହେନ୍ଦ୍ର ରଣ ସିଂ ଖୁବ୍ ନ୍ୟୂନ ଜଣା ପଡୁଥିଲା । କେମିତି ସେ ଅଭିଜାତ ଚେହେରାର ଝିଅ ତାକୁ ଭଲ ପାଇଗଲା ମୁଁ ବୁଝିପାରି ନଥିଲି । ମୁଁ କଲ୍ୟାଣୀକୁ ମୋ' ବାହାଘରବେଳେ ଦେଖିଥିଲି । ଖୁବ୍ ଦୂର ସଂପର୍କରେ ଶାଳୀ ଲେଖା ହେବ । ସେତେବେଳେ ସେ ଫ୍ରକ୍ ପିନ୍ଧା ପାତଳୀ ଗୋରୀ ଝିଅଟିଏ । କିଶୋରୀ ଏବଂ ସୁନ୍ଦରୀ । ମୋ' ସାଙ୍ଗରେ ଥଟ୍ଟା ଟାପରା ଲାଗିଥିଲା । ମୋର ଟିକିଏ ଗମ୍ଭୀର ପ୍ରକୃତି ଓ ଚେହେରାରେ ହୁଏତ ବିଶେଷ ଉତ୍ସାହିତ ହୋଇ ନଥିଲା ।

ମିତା କାନରେ କହିଥିଲା ମୋତେ ଶୁଣାଗଲା ପରି, 'ତୋ ବର ଗୋଟେ ହେଡ୍‌ମାଷ୍ଟ୍ର ଭଳି କାହିଁ ବସିଛି ? ତୁ ଏ ଶୁଖିଲା କାଠ ଗରିଣ୍ଡାଟାକୁ ନେଇ କେମିତି ଚଳିବୁ ?'

ତା' ବୟସର ସବୁ ଶାଳୀମାନ୍ୟା ଝିଅମାନେ ହସିଥିଲେ । ମିତା ବି ।

ତା'ପରେ ଶୁଣିଲି, କଲ୍ୟାଣୀର ବାହାଘର ଠିକ୍ ହେଇଗଲା । ମୁଁ ସେ କେତେବର୍ଷ ତାକୁ ଆଦୌ ଦେଖି ନଥିଲି । ସୁଯୋଗ ନ ଥିଲା ।

ଆମେ ସ୍ଥିର କଲୁ ବିଭାଘରକୁ ଯିବୁ । ସେଇଠି କଲ୍ୟାଣୀକୁ ଦେଖି ମୁଁ ମୋ' ଆଖିକୁ ବିଶ୍ୱାସ କରିପାରିଲି ନାହିଁ ।

ମୋ ଅଣାୟତ୍ତରେ ବୋଧେ ମୁଁ ତାକୁ 'ହାଁ' କରି ଚାହିଁ ରହିଲି ।

ହସ ଶୁଭିଲା । କଲ୍ୟାଣୀ କହୁଛି, 'କ'ଣ ମ' ଶେଖର ସାଆନ୍ତେ ଏମିତି ଅନେଇଛ ? ତମେ ତ' ମିତା ଅପାକୁ ଭଲ ପାଇ ଖଣ୍ଡାୟତ ଘରେ ବିଭା ହୋଇ ପଡିଲ ! ଆଉ ଅନ୍ୟ ଝିଅଙ୍କୁ ଦେଖି ଏବେ ଛଟପଟ ହେଲେ କ'ଣ ହେବ ?

ମହେନ୍ଦ୍ର ରଣ ସିଂକୁ ପରିହାସଟା ନିଶ୍ଚୟ ଭଲ ଲାଗି ନଥିବ ।

ତା'ପରେ ପ୍ରାୟ ଦୁଇବର୍ଷ କାଳ ଯୋଗାଯୋଗ ରହିଲା ନାହିଁ । ଶୁଣିଲି, ସେମାନେ ମାଲ୍‌କାନ୍‌ଗିରିରେ ଥିଲାବେଳେ ଗୋଟେ ପ୍ରପାତକୁ ଉପରମୁଣ୍ଡାରେ ଦେଖୁଥିଲା ବେଳେ ଅତଡାରୁ

ଖସିପଡି କଲ୍ୟାଣୀର ମୃତ୍ୟୁ ହୋଇଗଲା ।

ମୋତେ କାହିଁକି କେଜାଣି ଅନୁଭବ ହେଲା ଯେ କଲ୍ୟାଣୀ ଦୁର୍ଘଟଣାରେ ମରିନାହିଁ ।

ତା'ପରେ ମହେନ୍ଦ୍ର ସାଙ୍ଗରେ କୌଣସି ସଂପର୍କ ନାହିଁ । ନ ରହିବା ସ୍ୱାଭାବିକ ।

ଶେଖର କିଛି ସମୟ ଗୋଟାଏ ଆଡକୁ ଚାହିଁ ରହିଗଲା । ଗହୀର ପାଣିରୁ ଉଠି ଆସି କହିଲା, 'ଅମର ଏଇଟା ହେଲା ଏ ବ୍ୟାପାରଟାର ପୃଷ୍ଠଭୂମି । ଏବେ ଶୁଣ୍ ।'

ସେଇଦିନ ରାତି ପ୍ରାୟ ସାଢେ ନ'ଟା । କବାଟ ଠକ୍ ଠକ୍ ଶୁଭିଲା । ମୁଁ ଭାବିଲି ହୋଟେଲରୁ ଖାଇବା ବୋଧେ ଆସିଗଲା । କିନ୍ତୁ କବାଟ ଖୋଲି ଦେଖେତ' ସେ ଝିଅକୁ ଆସି ନେଇଥିବା ଦୁଇଜଣ ପୁରୁଷଙ୍କ ଭିତରୁ ଜଣେ ଠିଆହୋଇଛି । ବୋଧହୁଏ ତା'ର ଭାଇ ।

'ଏତେ ରାତିରେ ଆପଣଙ୍କୁ ହଇରାଣ କରିବାର ନିହାତି ପ୍ରୟୋଜନ ନଥିଲେ ମୁଁ ଆପଣଙ୍କୁ ଡିଷ୍ଟର୍ବ କରି ନଥା'ନ୍ତି ।'

ମୁଁ ନୀରବ ଅପେକ୍ଷା କଲି ।

ଅରୁନ୍ଧତୀ ଘରେ ପହଞ୍ଚିବାର ଅଳ୍ପ ସମୟ ପରେ ତା'ର ସ୍ୱାଭାବିକ ଅବସ୍ଥାକୁ ଫେରିଆସିଲା । କିନ୍ତୁ ସେତେବେଳୁ ସେ ଆପଣଙ୍କୁ ଦେଖା କରିବାକୁ ଜିଦ୍ ଧରିଛି । ବେଳୁବେଳ ସେ ଅଣାୟତ୍ତ ହେଇଯାଉଛି । ସେ ବୋଧହୁଏ ଆପଣଙ୍କୁ କ'ଣ କହିବାକୁ ଚାହେଁ । ମାନେ, ସେ ହେଉ ବା ତାକୁ ମାଡିବସିଥିବା ସେ ପ୍ରେତାତ୍ମା ହେଉ, ସେ ଚାହେଁ ଆପଣଙ୍କୁ କ'ଣ ଜଣେଇବାକୁ । ଆମେ ଏ ଅଂଚଳର ଖୁବ୍ ଜଣାଶୁଣା ତାନ୍ତ୍ରିକ ନରହରି ନନ୍ଦକୁ ଡାକିଛୁ । ସେ ତାଙ୍କ କ'ଣ ସବୁ ପୂଜା ପାଠ କରିଛନ୍ତି । ସେ ବି କହୁଛନ୍ତି, ଆପଣଙ୍କୁ କିଛି ସମୟ ପାଇଁ ଆମ ଘରକୁ ଆସିବାକୁ । ଆପଣଙ୍କର କୌଣସି ବିପଦ ଆପଦକୁ ସେ ବାରଣ କରି ରଖିବେ ବୋଲି କହିଛନ୍ତି । ଅବଶ୍ୟ ଆପଣଙ୍କୁ ଏପରି ଅନୁରୋଧ କରିବାର ଅଧିକାର ଆମର ନାହିଁ । ତେବେ ଅରୁନ୍ଧତୀକୁ ବଞ୍ଚାଇବାକୁ ପ୍ରାର୍ଥନା କରୁଛୁ । ଆପଣଙ୍କ ଇଚ୍ଛା ।

ସେ ତେତେବେଳ ପର୍ଯ୍ୟନ୍ତ ଠିଆ ରହିଥିଲେ । ତଳକୁ ଚାହିଁ କାନ୍ଦୁଥିଲେ ଓ ସେହିଭଳି ତଳକୁ ଚାହିଁ ଅପେକ୍ଷା କରିଥିଲେ ।

ମୋ' ଭିତର ଆଉଟି ହେଲା ପରି ଲାଗିଲା । କେଜାଣି କାହିଁକି ମୁଁ ଅଥୟ ବୋଧକଲି । ମୋ' ଦେହସାରା ଝିମ୍‌ଝିମ୍ ହେଲା । ଝିଜ୍‌ଝିଜ୍ ଝାଳ ଜକେଇଗଲା ।

ଛାଟ ମାରିଲା ପରି ମୁଁ ଠିଆ ହୋଇ ପଡିଲି । କହିଲି, 'ଚାଲନ୍ତୁ ।'

ଘରେ ତାଲା ପକେଇ ଆମେ ବାହାରିଲୁ ।

ଶେଖର ଅଟକିଗଲା ।

ମୁଁ ବି ଉଦ୍‌ବେଗରେ ନିଶ୍ୱାସ ରୋଧି ଅପେକ୍ଷା କଲି । ୟା'ପରେ କୌଣସି ଅଘଟଣ ଘଟିବାର ଆଶଙ୍କା ମୋତେ ଅଥୟ କରୁଥିଲା । ଭାରି ମନ ହେଉଥିଲା କହିବାକୁ, 'ବେକୁବ୍ କାହାଁକା ! କାହିଁକି ଜାଣିଶୁଣି ତୁ ସେ ଭିତରେ ପଶିଗଲୁ ?'

କିଛି ନ କହି ମୁଁ ନୀରବ ଅପେକ୍ଷା କଲି । ଘନେଇ ଆସୁଥିବା ରାତି ଆମକୁ ଘେରି ରହିଥିଲା । କାନ୍ଥ ବାଡ ପାଚେରୀ ସବୁ କାନେଇ ରହିଥିଲେ । ଶେଖର ହଠାତ୍ ଠିଆହୋଇ ପଡିଲା । ପେଣ୍ଟ ମୁଣାରେ ହାତ ରଖି ଏପାଖ ସେପାଖ ଟିକିଏ ଟହଲିଲା । ତା'ପରେ ନିଷ୍ପତି ନେଲା ଭଳି ମୋ' ସାମ୍ନା ଚୌକିରେ ବସିପଡିଲା ।

'ମୁଁ ଜାଣେ ଅମର୍, ତୁ ଭାବୁଥିବୁ ମୁଁ କାହିଁକି ଏ ବେକୁବ୍ କାମ କରୁଥିଲି, କିନ୍ତୁ ବିଶ୍ୱାସ କର ମୋର ଅନ୍ୟ ଉପାୟ ନଥିଲା । ମୁଁ ଏକ ପ୍ରକାର ଅସୁସ୍ଥ ଅନୁଭବ କରୁଥିଲି । ଗୋଟେ ଅଦୃଶ୍ୟ ଅଠାଳିଆ ଲଇ ମୋତେ ଦେହସାରା ଗୁଡେଇ ହେଲାପରି ଲାଗୁଥିଲା । ତଣ୍ଟି ପାଖରେ ଗୁଳାଟାଏ ଅଟକି ରହିଥିଲା । ଢୋକି ହେଉ ନଥିଲା । ଅଧାଡିଆ ଦୁର୍ବଳ ନିଃଶ୍ୱାସ ରହିରହି ଚାଲୁଥିଲା । ମୁଁ ଜମା କୌଣସି କଥା ଠିକ୍ ଠିକ୍ ଚିନ୍ତା କରି ପାରୁନଥିଲି । ସାମାନ୍ୟ ଛୁଇଁ ଦେଲେ ମୁଁ ଚମକି ପଡିବା ଅବସ୍ଥାରେ ଥିଲି ।'

'ମୁଁ ଯାହା ଅନୁମାନ କରିଥିଲି, ତାହା ଠିକ୍ । ମୋଡ ବୁଲିଗଲେ ସେମାନଙ୍କ ଘର । ଅନେକ ପୁରୁଣା ସେ ଏକତାଲା ଘର ସାମ୍ନାରେ ଦି'ଟା ବଡ ଝଙ୍କାଳିଆ ଗଛ, ଦୁଆର ବନ୍ଧ ଉପରେ ଗୋଟିଏ ବଲ୍‌ବ । ବାଟ ଦେଖେଇଲା ପରି, ଅନ୍ଧାରରେ ବୁଡିଗଲା ପରି ଝାପ୍‌ସା ଆଲୁଅ ।...'

ଅଭ୍ୟାସରେ ଦୁଆର ମୁହଁରେ ଜୋତା ଖୋଲିଲାବେଳକୁ ସେ ହାତ ହଲେଇ ବାରଣ କଲେ । କବାଟ ଖୋଲି ଭିତରକୁ ପାଛୋଟି ନେଲେ । ସମ୍ଭ୍ରମରେ, ସଂକୋଚରେ ଭଦ୍ରଲୋକ କଥା କହିପାରୁ ନଥିଲେ ।

ବାରଣ୍ଡାରେ କାଠ ବେଞ୍ଚ ଉପରେ ମୁଁ ବସିଲି । ମୋତେ ଅବଶ ଲାଗୁଥିଲା ଘୁମେଇ ପଡିଲା ଭଳି । କିନ୍ତୁ ମୁଁ ସଚେତ ଥିଲି । ବୋଧହୁଏ ପ୍ରୟୋଜନରୁ ଅଧିକ ସଚେତ ଥିଲି, ହାତଗୋଡ ନାକ କାନ ପେଟ ପିଠି ସବୁଠି ଅସମ୍ଭବ ଭାବରେ ଜାଗି ରହିଥିଲି ।

ଆଉଜା କବାଟ ସେପଟେ ବୋଧେ ବାଟ ବଖରା । ସେଇଠୁ କିଛି ବି ଶବ୍ଦ ଶୁଭୁ ନଥିଲା । କେବଳ ଗୋଟେ ପ୍ରକାର ଗୁଗ୍ଗୁଳ ମିଶା ଧୂପ ଗନ୍ଧ ବାହାରୁଥିଲା । ଗୁଗ୍ଗୁଳ ସାଙ୍ଗରେ ଗୋଟାଏ ପୋଡା ଗନ୍ଧ ବି ମିଶିଥିଲା ଯେମିତି ।...

ମୁଁ ଜୋତା ଭିତରେ ଗୋଡ ଆଙ୍ଗୁଠି ବାରମ୍ବାର ଲୋଚ୍ଚ କରୁଥାଏ । ବେଞ୍ଚର ଦାଢକୁ ଦୁଇ ହାତରେ ଜୋର୍‌ରେ ଚିପି ଧରୁଥାଏ ।...

ନିଃଶବ୍ଦରେ ଫାଳେ କବାଟ ଫିଟିଲା । ମୁଁ ଧଡ୍ କିନା ଠିଆ ହୋଇ ପଡିଲି । ଦୁଇଜଣ ବାହାରି ଆସିଲେ । କବାଟ ପୁମି ଆଉଜେଇ ଦେଲେ । ଘର ଭିତରେ ବୋଧେ ଦୀପଟାଏ ଜଳୁଥିଲା । ଅସ୍ପଷ୍ଟ ଆଲୁଅରେ ବିଶେଷ କିଛି ଦିଶିଲା ନାହିଁ । ମୁଁ ଦେଖିବା ଅବସ୍ଥାରେ ବି ନଥିଲି ।

ଅପରିଚିତ ଜଣକ ବୋଧେ ସେଇ ତାନ୍ତ୍ରିକ । ନରହରି ନନ୍ଦ । ସେ ସେମିତି କିଛି ବିକଟାଳ ଦିଶୁନଥିଲେ । ତେବେ ବି ମୁଁ ତାଙ୍କୁ ସ୍ୱାଭାବିକ ଭାବରେ ଗ୍ରହଣ କରିପାରି ନଥିଲି । ଲଣ୍ଡା ମୁଣ୍ଡ । ଖୋଲା ଦେହ । ବେକରେ ଦୁଇ ତିନି ଘେରା ଲମ୍ବା ମାଳି । ଆଖିରେ ଚଷମା ।

ସେ ଗୋପନ ପରାମର୍ଶ ଦେଲା ଭଳି ଧିମା ସ୍ୱରରେ କହିଲେ, 'ଆପଣ ଆସିଲେ, ଭଲ କଲେ । ଆପଣ ଆଦୌ ଭୟ କରିବେ ନାହିଁ । ମୁଁ ଅଛି । ଆପଣଙ୍କର କିଛି ହେବନାହିଁ । ମୁଁ ଚାହିଁଲେ ତାକୁ ତେନ୍ତୁଳି ଛାଟରେ ମାରି ଚଡି ଦେଇ ପାରିବି । କିନ୍ତୁ ସେ ସେମିତି କିଛି ବ୍ୟାଘାତ କରୁନାହିଁ । ଭଲରେ ଭଲରେ ଯଦି ସେ ଚାଲିଯିବ ତା'ହେଲେ ମୁଁ ଏ ଝିଅ ଦେହଟାକୁ, ଏ ଘରଟାକୁ ଚରିଆଡୁ କିଳି ଦେବି । ସେ ଆଉ ପଶିପାରିବ ନାହିଁ ।... ଆପଣ ଚାଲନ୍ତୁ ଚୌକିରେ ବସିବେ । ସେ କ'ଣ କହୁଛି ଆଗ କହିଦେଉ । ଆମେ ସମସ୍ତେ ଥିବୁ । କୌଣସି ପ୍ରକାର ଉଗ୍ରଭାବ ଦେଖିଲେ ମୁଁ ତା'ର ଉପଚାର କରିଦେବି । ଆପଣ ସାହାଯ୍ୟ କଲେ ଝିଅଟା ମୁକୁଳି ଆସିବ, ବଂଚିଯିବ ।... ଆପଣ ତା'ହେଲେ ଜୋତା ଖୋଲି ଆମ ସାଙ୍ଗରେ ଆସନ୍ତୁ ।'

'ମୁଁ ଜୋତା ଖୋଲିଲା ବେଳେ ମୋ' ହାତ ଥରୁଥିଲା । ବୋଧହୁଏ ସାରା ଦେହମୁଣ୍ଡ ଥରୁଥିଲା । ମୋ' ବୁକୁ ଦାଉଁ ଦାଉଁ ହଉଥିଲା । ମୁଁ କାହିଁକି ଓ କେମିତି ସେ ତନ୍ତ୍ରବଳୟକୁ ପଶି ଯାଇଥିଲି କହି ପାରିବି ନାହିଁ । କିନ୍ତୁ ସତ କହୁଛି ଅମର, ମୁଁ ମୋ' ଅଣାୟତ୍ତରେ ଟାଣି ହୋଇ ଯାଉଥିଲି ।'

ଭିତର ପରିବେଶ ଖୁବ୍ ଗମ୍ଭୀର । ଭୂଇଁରେ କ'ଣ ସବୁ ମୁରୁଜରେ ଯନ୍ତ୍ର କଟା ଯାଇଥିଲା । ଉପର ମୁଣ୍ଡାରେ ଗୋଟେ ଦୀପ ଜଳୁଥିଲା । ଡାହାଣ ପାଖେ ମାଟି ଧୂପଦାନିରୁ ଧୂଆଁ ବାହାରୁଥିଲା । ବାଁ ପାଖେ ଆଉଗୋଟେ ମାଟିଦାନିରୁ ଆଉ ଗୋଟାଏ ଧୂଆଁ । ବଖରା ସାରା ପାତଳ କୁହୁଡି ଛାଇଗଲା ପରି ଦିଶୁଥିଲା । ଯନ୍ତ୍ର ଉପରେ ମନ୍ଦାର ଫୁଲ ଉପରମୁହାଁ ପଡିଥିଲା ।

ନରହରି ନନ୍ଦଙ୍କ ବାଁ ପାଖରେ ଚୌକି ଉପରେ ମୁଁ ବସିଲି । ସେ ଗୋଟେ ଆସନ ଉପରେ ତଳେ ଚକା ପକେଇ ବସିଲେ ।

'ଶର୍ମା ବାବୁ ଆପଣ ବ୍ରାହ୍ମଣ । ପଢାପଢି କରିଛନ୍ତି । ଆପଣ ଯାହା ଦେଖିବେ ସେଥିରେ କୌଣସି ଚକ୍ଷୁ ବନ୍ଧନ ବା ଇନ୍ଦ୍ରଜାଲ ନାହିଁ । ଏଇଟା ଏକ ବିଦ୍ୟା... ଗାଁଗଣ୍ଡାରେ ଯାକୁ ଗୁଣିଗାରେଡି କହନ୍ତି । କିନ୍ତୁ ଏଇଟା ଆଗମ ଶାସ୍ତ୍ର । ତନ୍ତ୍ର ବିଦ୍ୟା ଭାରି ଗହନ । ସେଥିରେ ଯନ୍ତ୍ରମନ୍ତ୍ର ଅଭିଚାରିକରେ ଦେବଦେବୀଙ୍କୁ ବଶୀଭୂତ କରାଯାଏ । ଐହିକ ପାରତ୍ରିକ ସାମର୍ଥ୍ୟ ମିଳେ । ପ୍ରେତାତ୍ମାମାନଙ୍କୁ ଆୟତ୍ତ କରାଯାଏ । ଶତ୍ରୁକୁ ବିନାଶ କରାଯାଏ । ବାରାହୀ ତନ୍ତ୍ରରେ ସ୍ତମ୍ଭନ, ବଶୀକରଣ, ଉଚ୍ଚାଟନ, ମାରଣ ଆଦି ଷଟ୍ କର୍ମ ବିଧି ରହିଛି । ଏ ଗୁପ୍ତ ବିଦ୍ୟା ଗୁରୁଶିଷ୍ୟ ଭିତରେ ଗୋପନୀୟ । – ଏହା ଲୋପ ପାଇବାକୁ ବସିଲାଣି । କିଛି ସାହେବ ମୋ' ସନ୍ଧାନ ପାଇ ଆସିଥିଲେ । ଲୋଭ ଦେଖେଇଲେ । ମୁଁ ମ୍ଳେଚ୍ଛଙ୍କୁ ଦେଖା ଦେବାକୁ ମନା କରିଦେଲି । ମୁଁ ଜାଣିଛି, ମୁଁ ଡାକିଲେ ଦେବୀ 'ଓ' କରିବ । ଛାଟ ଉଞ୍ଚେଇଲେ ଭୂତପ୍ରେତ ପିଶାଚ ଛାଡି ପଳେଇବେ । ମୁଁ ଶବାରୂଢ ହୋଇ ମଶାଣି ଚଣ୍ଡୀ ସାଧିଛି । ଗୁରୁ ଆଜ୍ଞାରେ ମୋର କାହାକୁ ଭୟ ନାହିଁ । ମୁଁ ଆପଣଙ୍କୁ ଏସବୁ କହିବାର ଅର୍ଥ ହେଲା, ଆପଣ ବୁଝିବେ, ଆପଣ ଆଦୌ ଡରିବେ ନାହିଁ । ବିଦ୍ୟାକୁ ହତାଦର କରିବେ ନାହିଁ ।

ସତକୁସତ ମୋ' ଭିତରେ ମୁଁ ଦମ୍ଭ ଅନୁଭବ କଲି । ଭାବିଲି, ଦେଖାଯାଉ କ'ଣ ହଉଚି ।

ଏତେବୋଟ ଆସିଲା ପରେ ଆଉ ତ' ଫେରିବାର ପ୍ରଶ୍ନ ନାହିଁ । ତା' ବାହାରେ ଏ ଲୋକଟା ତ' ଅଛି । ଯାକୁ ବିଦ୍ୟା ଜଣାଅଛି । ଯା କଥାରେ ନିର୍ଭର କରାଯାଇପାରେ ।

ମୁଁ ସହଜ ଅନୁଭବ କଲି । କିନ୍ତୁ ମନରୁ ଶଙ୍କା ଯାଉ ନଥାଏ, କେତେବେଳେ କ'ଣ ହୋଇଯାଇପାରେ !

ତା'ପରେ ଗୋଟିଏ ଚିତ୍କାରରେ ଚମକି ମୁଁ ଚୌକିରେ ଚକେ ଉଠିଗଲି । ସେ ଗୁଣିଆ ହିଁ ସେମିତି ପାଟିଟାଏ କଲେ । ହାତରେ ଚଉଳ ଧରିଥିଲେ ନା କ'ଣ ଯନ୍ତ୍ର ଉପରେ ଥିବା ସେ ମନ୍ଦାରଫୁଲ ଉପରକୁ ଛାଟିଲା ଭଳି ଫୋପାଡିଲେ । ଆଉ କ'ଣ ସବୁ ଉଚ୍ଚାରଣ କଲେ ମୋତେ ବୁଝାଗଲା ନାହିଁ । ସେ ବୋଧେ ଅଭିଚରିକ ପାଠ କରୁଥିଲେ ।

ସେ ଆଉ ପ୍ରକାରେ ଦିଶୁଥିଲେ । ତାଙ୍କ ଅଣ୍ଟା ପାଖରୁ ଉପରକୁ ଫଣା ଟୋଳିଥିବା ନାଗ ସାପ ପରି ସେ ଦୋହଲୁଥିଲେ । ନିଆଁ ଗତ ଉପରକୁ ଝୁଣାଗୁଣ୍ଡ ଛାଟିବାରୁ ଦାଉଁ କିନା ଜଳି ଉଠିଲା । ସେ ପୁଣି ସେ ମନ୍ଦାର ଫୁଲକୁ ଆଦେଶ ଦେଲାପରି ଚଉଳ ପକେଇଲେ । 'ଯା, ଯା ତୋ' ପିଞ୍ଜରାକୁ! ଯା...'

ମୁଁ ଦେଖିଲି, ଫୁଲଟା ହଠାତ୍ ଜିଇଁ ଉଠିଲା । ତା' ପାଖୁଡା ଓସାରି ହେଇଗଲା ଏବଂ ଫୁଲଟା ଘୁଞ୍ଚିଲା । ତା'ପରେ ଖପ୍ କିନା ଡେଇଁ ଯନ୍ତ୍ରରେ କଟା ହେଇଥିବା ପାଖ ଘରା ଭିତରେ ପଡିଲା ।

'ବାଆସ୍, ସେଇଠି ରହ । ଘୁଞ୍ଚିବୁ ନାହିଁ ।' କହିଲେ ନରହରି ନନ୍ଦ । ଆଦେଶ ନିଶ୍ଚୟ, କିନ୍ତୁ ବାପ ଝିଅକୁ ଜାଗିଦ୍ କଲା ପରି ସ୍ୱର । ଅରୁନ୍ଧତୀକୁ ଆଣ । କହିଲେ ନରହରି ନନ୍ଦ । ମୁଁ ଯା ଆଗରୁ ଶୁଣିଥିଲି ସେ ଝିଅ ନାଁ ଅରୁନ୍ଧତୀ ବୋଲି ।'

ତାକୁ ସେମାନେ ଧରିସମ୍ଭାଳି ଆଣିଲେ । ସେ ନିଦରେ ଅଚେତ ଥିଲା ପରି ଜଣା ପଡୁଥିଲା । କାଦୁଅ ମେଣ୍ଟା ପରି ତାକୁ ବସେଇଲେ ସେ ଲେସେଡି ଯାଉଥାଏ । ତା'ର ବାଳ ମୁକୁଳା, ପିନ୍ଧାଲୁଗା ଅଠିକଣା । ମୁହଁ ବେକ ଓଦା ସରସର । ବୋଧେ ଚେତା ଆଣିବାକୁ ସେମାନେ ତା' ମୁହଁକୁ ପାଣି ଛାଟିଥିଲେ ।

ନରହରି ନନ୍ଦେ ପୁଣି ଚମକେଇଲା ପରି ଚିତ୍କାର କଲେ । କ'ଣ ସବୁ ଗାରେଡି ବୋଲିଲେ ।

'ତାକୁ ଏବେ ଛାଡିଦିଅ ।'

ମନ୍ଦାର ଫୁଲର ପାଖୁଡା ନିସ୍ତେଜ ଦେଖାଗଲା । ତା' ଭିତରୁ ପ୍ରାଣ ନିଗିଡି ଗଲା ଯେମିତି ।

ଅରୁନ୍ଧତୀ ସଳଖି ବସିଲା । ମଟମଟ ଚହିଁଲା । ନରହରି ନନ୍ଦେ ସେମିତି କଡା ଅଥଚ ଝିଅକୁ ହୁକୁମ ଦେଲା ଭଳି କହିଲେ –

'ତୁ କିଏ ? କାହିଁକି ଆସିଲୁ ମତେ କହ । ନ ହେଲେ ଦେଖିଥା, ତେନ୍ତୁଳି ଛାଟ । ତୋ' ପିଠିରୁ ଚମ ଉତାରି ଦେବି ।'

ସେ ସାଙ୍କୁଡି ଗଲା । ଡରିଲା ଆଖିରେ ଶୂନ୍ୟକୁ ଚହିଁଲା ଭଳି କହିଲାବେଳେ ତା' ପାଟି

ଖନି ମାରୁଥିଲା । ସେ ସ୍ପଷ୍ଟ କରିପାରୁ ନଥିଲା । ନନ୍ଦେ ଅପେକ୍ଷା କଲେ । ଆମେ ସମସ୍ତେ ଅପେକ୍ଷା କଲୁ ।

'ମୁଁ... ପରା... କଲ... ଲାନୀ... ମୁଁ... କଲଲ୍ୟାନୀ ଛୋଟରାୟ !' ସେ ନୀରବ ହେଇଗଲା ।

ନନ୍ଦେ ପାଟିକଲେ – 'ହେ, ଉଠ୍, ଶୋଉଚୁ କ'ଣ ଉଠ୍ ।' କହି ଟାଙ୍କର ସେ ଟେନ୍ସୁଲି ଛାଟକୁ ତଳେ ଚଟାଲ୍ କିନା ବାଡେଇ ଦେଲେ । ଆମେ ସମସ୍ତେ ଚମକି ପଡିଲୁ । ସେ ବି ମାତ ଖାଇଲା ପରି ଚମକି ଉଠି ବିଳବିଳେଇଲା... 'ଆଃ'...'

ତା'ପରେ ଘରିଆଡକୁ ଟରାଟିଲା ପରି ଚାହିଁଲା । ମୋତେ ଚୌକି ଉପରେ ବସିଥିବାର ଦେଖି କଟମଟ ଅନେଇଲା । ତା' ଚେହେରା ବଦଳିଗଲା । ସେ ହସିଲା ଅଳ୍ପ । ତା'ପରେ କିର୍‌କିର୍ ହେଇ ହସିଲା । ସେ ହସରେ ମୋ' ଦେହ ଶୀତେଇ ଗଲା ।

'ଆରେ ଶେଖର ସାଆନ୍ତେ ! – ହା...ହା...ହା...ହା !' ସେଇଠୁ ହଠାତ୍ କଇଁ କଇଁ ହେଇ କାନ୍ଦିଲା । ଦୁଇ ହାତରେ ଅଣ୍ଡାଳି ହେଲା ।

ନନ୍ଦେ ମତେ ଆଉ ସମସ୍ତଙ୍କୁ ଚୁପ୍ ରହିବାକୁ ଇସାରା ଦେଲେ ।

ସେ ସେଇ କାନ୍ଦ ଭିତରେ କହିଲା, 'ଏ ଅରୁ ମୋ' ସାଙ୍ଗ । ମୁଁ ତାକୁ ପାଇ ଚାଲି ଆସିଲି । ଆସିଲି ବଲି ତ' ତମକୁ ପାଇଲି ।' ମୁଣି ତୁହାଏ କାନ୍ଦ ।

'ମୁଁ ଭାରି ଝୁରିଛି ତମକୁ । ମୁଁ ତମ ବାହାଘର ଦିନ ତମକୁ ଦେଖିଥିଲି । ତମେ ମୋ' ବାହାଘର ଦିନ ମତେ ଦେଖିଲ ! ମୁଁ ତମକୁ ଜମା ଭୁଲି ନାହିଁ । ତମେ ଭୁଲିଗଲ ।' ସକ୍‌ସକ୍ କାନ୍ଦ ହଠାତ୍ ରହିଗଲା । ସେ ଆଖି ଟରାଟି ଅନାଇଲା । ନାକପୁଡା ଫୁଲେଇ ଫଁ ଫଁ ହେଲା, ଦାନ୍ତ କଡମଡ କଲା ।

ମୁଁ ଶଙ୍କିଗଲି । ତା'ପରେ ହୁଏତ ସେ ମୋ' ଉପରକୁ ଝାମ୍ପି ପଡିବ । ନନ୍ଦେ ମୋତେ ହାତ ଟେକି ଥୟ ଧରିବାକୁ ନିର୍ଦ୍ଦେଶ ଦେଲେ ।

'ସେଇଟା ଗୋଟେ ପଶୁ, ଗୋଟେ ଜାନୁଆର । ମୁଁ କେମିତି ତା' ଜାଲରେ ପଡିଗଲି । ସେ କଣ୍ଟ୍ରାକ୍ଟର । ଭାରି ପଇସାବାଲା । ମୋତେ ଲୋଭ ଦେଖେଇଲା । ଚାକିରି ଛଡେଇ ଦେଲା । ବାହାହେବା ଯାଏ ଲଇଁ ପଶୁଥିଲା । ବାହାଘର ପରେ ତା' ରୂପ ବଦଳିଗଲା । ସେମତେ ନେଇ ଖୁବ୍ ଖେଳିଲା । ହୀରା ନୀଳା ମୋତିରେ ମଣ୍ଡିଲା । ବାରଆଡେ ବୁଲେଇଲା । ବାରଜାତି ଜିନିଷ ଖୁଆଇଲା । ଦାମୀ ନିଶା ଖାଇଲା । ମତେବି ଖୁଆଇଲା । ହେଲେ ମୋର ନାରୀ ଜୀବନ ଛାରଖାର ହୋଇଗଲା । ମୁଁ ଜାଣିଗଲି ଯେ ସେଇଟା ଅସମର୍ଥଟାଏ । ଅଣ୍ଡିରାପଣ ଦେଖେଇବାକୁ ସେ ମୋତେ ଓଲଟି ଦୋଷଦେବା ଆରମ୍ଭ କଲା । ସବୁବେଳେ ତମକୁ ଉଲୁଗୁଣା ଦେଲା । ଅସଭ୍ୟ ଭାଷାରେ ତମ ସାଙ୍ଗେ ମୋତେ ଯୋଡିଲା ।'

ସେ ପୁଣି ଟାଣି ହେଇ ଗର୍ଜିଲା । ରାଗରେ ତମ୍ପସାପ ପରି ଫଁ ଫଁ ହେଲା । ହାତ ମୁଠାମୁଠା କରି ତଳେ ଛେଚିଲା । ତା' ବାଳ ଫିଟି କେରା କେରା ହୋଇଗଲା ।

'ଜାନୁଆର କାହାଁକା, କଣ୍ଟ୍ରାକ୍ଟରି ପାଇବାକୁ ମତେ ବାଜି ଲଗେଇ ଦେଲା । ନିଶା ଖୁଆଇ ଡାକବଙ୍ଗଳାରେ ଛାଡି ଆସିଲା ଆଉ ଜଣକ ପାଖରେ । ତାକୁ ଛାଡି ମୁଁ ପଳେଇ ଆସିଲି । ପୁଣି ଚାକିରି ପାଇଁ ଚାରିଆଡେ ଖୋଜିଲି । ସେ ଖୋସାମତ କଲା । ଡରେଇଲା । ଗୁଣ୍ଡା ଲଗେଇ ଟେକି ନେବାକୁ ଧମକ ଦେଲା । ସେଥିରେ ମୋ' ଜିଦ୍ ବଢିଗଲା । ମୁଁ କାଗଜପତ୍ର ଠିକ୍ କଲି ତାକୁ ଡାଇଭର୍ସ କରିବାକୁ ।'

ମୋ ଜୀବନ ପୋଡିଜାଳି ଗଲାବେଳେ ମୁଁ ତମକୁ ସଦାବେଳେ ମନେପକେଇଛି । ଶେଖର ସାଆନ୍ତେ ! ତମେ ମତେ ଗାଳିମନ୍ଦ ଦିଅନ୍ତ, ଦି'ଚାପୁଡା ମାରିଦିଅନ୍ତ, ମତେ ଖୁସି ଲାଗନ୍ତା । ତମେ ଛୁଇଁଦେଲେ ମୁଁ କୃତାର୍ଥ ହେଇଯାଆନ୍ତି । ସେ ହିଁ ମତେ ତମ କଥା କହି ଚଟେଇଚି । ଦିନେ ମୁଁ ରାଗରୋଷରେ କହି ପକେଇଲି, 'ହଁ ବେ ଭାରୁଦା କାହାଁକା, ମୁଁ ଶେଖର ବାବୁଙ୍କୁ ସମ୍ଭୋଗ କରିବି ତୋ' ସାମ୍ନାରେ । ତୁ ଦେଖିବୁ । ହିଁ ହିଁ ହିଁ... ସେ ହାଁ କରି ଆଖି ଖୋସି ଅନେଇଲା, ତା'ର ହୋସ୍ ଉଡିଗଲା ।'

ତା'ପରେ କାନ୍ଦ, ହସ ତୁହାକୁ ତୁହା ଉଠିଲା ।

'ଜୟପୁରକୁ ଆମେ ଡୁଡୁମା ଦେଖିବାକୁ ବାହାରିଲୁ । ଉପରମୁଣ୍ଡାରୁ । ସେ ଛାଇପରି ମୋ' ପଛରେ ଲାଗିଗଲା । ସେ ବି ସେଇଠି ପହଞ୍ଚି ଯାଇଥିଲା... ।'

ଘୁ ଘୁ ଭିତରେ ସେ ପଛରୁ ପାଟିକଲା ସମସ୍ତେ ଜାଣିବାକୁ, 'ଆରେ ଆରେ ପଡିଯିବୁ, ପଡିଯିବୁ । ମୋତେ ଚମକେଇ ଦେଇ ମୋ' ପିଠିରେ ହାତ ରଖିଦେଲା । ମୁଁ ଟଳମଳ ହେଲାବେଳକୁ ନଜାଣିଲା ପରି ପେଲିଦେଲା । ସଫେଇ ଦେଇ ଖସିଗଲା । ମୁଁ ଖସିଲାବେଳେ ମୋ' କାନରେ ପଡିଲା, ଯାଃ ଶାଳୀ ଶେଖରକୁ ରମିବୁ ପରା' – ମତେ ସେ ମାରିଦେଲା । ମୁଁ ପଡିଗଲି । ସେଇ ମତେ ଠେଲିଦେଲା ।

'ତା'ପରେ ଜାନୁଆରକୁ ଖତମ୍ କରିଦେବି । ଅଂଧାର କୂଅ ଭିତରକୁ ଠେଲିଦେଲି ।' ହାଉ ହାଉ ହେଇ ସେ କ୍ଲାନ୍ତ ହେଇଗଲା । ପୁଣି ହଠାତ୍ ସକ୍ ସକ୍ ହେଲା । ମୁହଁ ଘୋଡେଇ କାନ୍ଦିଲା ।

ଆମେ ସମସ୍ତେ ଅପେକ୍ଷା କଲୁ । ମୋ' ବିଷୟରେ ସେ ଯାହା କହିଲା, ସେଥିରେ ମୁଁ ତଳକୁ ମୁହଁ କରିନେଲି । ଲଜ୍ଜା ସଂକୋଚ ଉପରେ ମଡେଇ ହୋଇପଡୁଥିଲା । ବାପା, ମା', ଭାଇ, ଅଭିଆଡୀ ଝିଅ, ଆଉ ଜଣେ ବୟସ୍କଙ୍କ ଆଗରେ ସେ ଏମିତି କଥା ନିଃସଙ୍କୋଚରେ କହିଦେଇ ମୋତେ ଅଡୁଆରେ ପକେଇଦେଲା । ମୋତେ ସେତେବେଳେ କଲ୍ୟାଣୀ ଦୃଶ୍ୟ ହେଲା ପରି ଲାଗିଲା । ମୁହୂର୍ତ୍ତକ ପାଇଁ ତା' ମୁହଁ, ତା' ହସ... କଲ୍ୟାଣୀ ସତରେ ଖୁବ୍ ସୁନ୍ଦରୀ ।

ଶେଖର କିଛି ସମୟ ଆନମନା ହୋଇଯିବାର ମୁଁ ଲକ୍ଷ୍ୟକଲି ।

ରାତି ଆହୁରି ଗଭୀର, ଆହୁରି ନିସ୍ତବ୍ଧ ହୋଇଯାଇଥିଲା । ଶେଖର ଚୌକିରୁ ଉଠି ଅଣ୍ଟା ସଳଖିଲାପରି ଆକାଶକୁ ଚାହିଁଲା । ତଳକୁ ମୁହଁ ପୋତି ଦି'ଚାରି ପାହୁଣ୍ଡ ଏପାଖ ସେପାଖ ହେଲା ପରେ ଚୌକି ଉପରେ ପ୍ରାୟ ଅଜାଡି ହେଲା ପରି ବସିପଡିଲା । ଉପରକୁ ମୁହଁ କରି ଫୁ କରି

ପବନ ଛାଡିଲା । ମନେହେଲା, ସେ ଘରିକାତ ଛାଡି ଦେବାକୁ ନିଷ୍ପତ୍ତି ନେଇଗଲା । ମୁଁ ତା'ର ବୃତାନ୍ତ ବୟାନ ପାଇଁ ଛେପ ଢୋକି ଅପେକ୍ଷା କଲି ।

ଶେଖର ଆସ୍ତେ ଆରମ୍ଭକଲା, 'ଅରୁନ୍ଧତୀ ତଳେ ଦୁଇ ହାତ ଥାପି ବସିଥିଲା, ଚାଳକୁ ମୁହଁ କଲା । ତା' ମୁକୁଳାବାଳ ସାମ୍ନାରୁ ଘୋଡେଇ ହୋଇ ଯାଇଥିଲା ।'

'କ'ଣ ଇଙ୍ଗିତ ଦେବାକୁ ନରହରି ନନ୍ଦେ ମୋ' ଡାହାଣ ହାତ ଆଙ୍ଗୁଠି ଗୁଡିକୁ ଚିପି ଧରିଲେ । ସେ ବୋଧେ ଜାଣିଗଲେ କ'ଣ ଘଟିବାକୁ ଯାଉଛି । ଆଉ ହାତ ଟେକି ପରିବାରର ଅନ୍ୟମାନଙ୍କୁ ଆଶ୍ୱାସନା ଦେଲାପରି ସ୍ଥିର ରହିବାକୁ ଇସାରା ଦେଲେ ।'

ସେଇଠୁ ଅରୁନ୍ଧତୀ ଝୁଲିଲା । ପବନକୁ ଶୋଷିଲା ପରି ଶୁଭିଲା । ବାଳ ପଛକୁ ଛାଟିଦେଇ ହିସ୍ ହିସ୍ ଶବ୍ଦ କରି ସାପ ପରି ହଠାତ୍ ଠିଆ ହେଇଗଲା । ମୁଁ ବି ଚମକିପଡି ଠିଆହେଇଗଲି ।

ସେ ହାତ ବିସ୍ତାରି ମତେ ଜଡେଇ ଧରିଲା । ଲାଖିଗଲା ମୋ' ଦେହରେ । ଓଃ, ତା' ଦେହ ସାରା କମ୍ପୁଥାଏ । ଗୋଟାଏ ବାଂଫ ବାହାରୁଥାଏ ଦେହରୁ । ବୁକୁ ବାଡେଇ ହେଉଥାଏ ଦାଉଁଦାଉଁ । ମୋ' ଦେହସାରା ଶୀତକଣ୍ଟାମାରି ଯାଉଥାଏ । ଅଇ ଟେକିଲା ପରି ଲାଗୁଥାଏ । ମୁଁ ତାକୁ ଜୋର୍ କରି ଛାଟି ଦେଇଥାଆନ୍ତି । ନରହରି ନନ୍ଦେ ମୋ' ଡାହାଣ ହାତ ପାପୁଲିଟାକୁ ଚିପି ଧରିଥାଆନ୍ତି । କେଜାଣି କେମିତି ମୋ' ଆଖିପତା ଘୋଡେଇ ହୋଇ ଆସିଲା । ହୁତା ହୁତା ଅଂଧାର ଭିତରେ କ'ଣ ସବୁ ଆକୃତି ଦିଶିଯାଉଥିଲା । ମୋ' ଆଖିରୁ ଆଲୁଅ ଲିଭିଗଲା ପରି, ମୋର ସବୁ ଗ୍ରନ୍ଥି ହୁଗୁଳି ଗଲାପରି, ନିଶ୍ୱାସରେ ପ୍ରାଣ ନିଗିଡି ଗଲା ପରି ଲାଗୁଥିଲା । ମୁଁ ବୋଧେ ସେ ଚାପ, ସେ ବାମ୍ଫୁଆ ଝାଳ ସରସର ଦେହକୁ ସମ୍ଭାଳି ଠିଆ ହୋଇପାରି ନଥା'ନ୍ତି । ଅଜାଡିହୋଇ ପଡିଥା'ନ୍ତି... ଅବଶ, ନିଷ୍ପେତ, ନିଃଶେଷ ଜଡପିଣ୍ଡ ପରି ।... ଓଃ...

'...ଏତିକିବେଳେ ସେ ବରଡାପତ୍ର ପରି ଥରି ଉଠିଲା ତାଳୁରୁ ତଳିପା ଯାଏ ବାରଂବାର ତା' ଜାବ ହୁଗୁଳିଗଲା । ଓଦା ଲୁଗାଟି ପରି ସେ ଖସି ପଡିଲା ମୋ' ଦେହରୁ ।'

ନରହରି ନନ୍ଦେ ଆସ୍ତେ ମୋ' ହାତଧରି ଚୌକିରେ ବସେଇ ଦେଲେ । ପାପୁଲି ଛାଡିଲାବେଳେ ମୋ' ଆଙ୍ଗୁଠିରେ ଥିବା ମୁଦିକୁ ବୁଢା ଆଙ୍ଗୁଠିରେ ବାରି ଦେଇ ହାତ ଅପସାରି ନେଲେ ।

ଅରୁନ୍ଧତୀ ଚିତ୍ ହେଇ ପଡି ଯାଇଥିଲା । ତା' ଆଖି ବୁଜି ହେଇ ଆସୁଥିଲା । କିନ୍ତୁ ତା' ମୁହଁରେ କେମିତି ଗୋଟାଏ ତୃପ୍ତିର ହସ ଲାଗିଗଲା ପରି ମୋତେ ଦେଖାଗଲା । ...ସେତେବେଳେ ମୋ' ଆଖିବି ବୁଜି ହେଇ ଆସୁଥିଲା ।

ମୁଁ ଦେଖିଲି, ନରହରି ନନ୍ଦେ ଠିଆହୋଇ ମୋ' ମୁଣ୍ଡରୁ ପାଦଯାଏ ଫୁଲଟାଏ ନେଇ ଝାଡି ଦେଉଛନ୍ତି... ମୋତେ ଅସ୍ପଷ୍ଟ ଶୁଣା ଯାଉଥିଲା... 'ଓଁ ଐଂ ହ୍ରୀଂ କ୍ଲୀଂ ଚାମୁଣ୍ଡାୟୈ ବିଚ୍ଚେ ।'

ମୋ ଆଖି ବୁଜି ହେଇଗଲା । ମୁଁ ଜାଣେ ନା ତା'ପରେ କ'ଣ ହେଲା ।

ମୋ ଆଖି ଫିଟିଲା ବେଳକୁ ଅରୁନ୍ଧତୀକୁ ସେମାନେ ଘରକୁ ନେଇ ଯାଇଥିଲେ । ନରହରି

ନନ୍ଦେ ଗାରେଡି ଜପୁଥିଲେ । ମୁରୁଜ, ଧୂପ, ଫୁଲ, ଚଉଳ ଝାଡୁରେ ଓଳେଇ ଗୋଟାଏ କୁଲାରେ ରଖୁଥିଲେ ।

ମୋତେ ଚହିଁ କହିଲେ, 'ଏ କ୍ଷୀର ପିଇ ଦିଅନ୍ତୁ ।' ଅରୁନ୍ଧତୀର ମାଆ କ୍ଷୀର ଗ୍ଲାସ୍‌ଟି ଧରି ମୋ' ଆଗରେ ଠିଆ ହେଇଥିଲେ ।

'ଆପଣ ଏବେ ପ୍ରେତ ପ୍ରଭାବରୁ ମୁକ୍ତ । ସେ ଝିଅ ମଧ ମୁକ୍ତ । ସେ ଏ ଘରକୁ ପଶି ପାରିବ ନାହିଁ । ଝିଅ ଦେହରେ ପଶି ପାରିବ ନାହିଁ ।... ଆପଣଙ୍କ ପାଇଁ ଚିନ୍ତା ନାହିଁ । ଆପଣ ଯେଉଁ ମୁଦି ପିନ୍ଧିଛନ୍ତି ସେଇଟା ଏକ ପ୍ରସିଦ୍ଧ ଦେବୀ ଯନ୍ତ୍ର । ସେ ଆପଣଙ୍କ ସୁରକ୍ଷା କଲା । ନହେଲେ ଆଜି ଅଘଟଣ ଘଟିବାର ଭୟ ଥିଲା । ମୁଁ ଜାଗ୍ରତ ଥିଲି ଯେ, ହେଲେ ଆଜି ଯାହା ଦେଖିଲି ଯା ପୂର୍ବରୁ ମୋ' ଦିହକରେ କେବେ ଦେଖି ନଥିଲି ! ...ଅଦ୍ଭୁତ କଥା ହେଲା । ମୁଁ କେବଳ ଶୁଣିଥିଲି ପ୍ରେତ ସଙ୍ଗମ କଥା ।' ସେ ହାତରେ ଦୀପଟା ଧରି କୁଲାରେ ବାକି ସମସ୍ତ ସାମଗ୍ରୀ ସହିତ ସେ ଫରୁଆକୁ ରଖି ଗାରେଡି ଜପ କରି କରି ଏକମୁହାଁ ଘରୁ ବାହାରିଗଲେ ।

ଶେଖର କ୍ଲାନ୍ତ ହୋଇ ଯାଇଥିଲା ନା କ'ଣ ! ତୁନି ପଡି ବସି ରହିଲା କିଛି ସମୟ । ତା'ପରେ ମୋ' ହାତ ଧରି ଆସ୍ତେ କହିଲା, 'ଭାଇ ଅମର, ମୁଁ ସେ ଘରୁ ବାହାରି ଆସିଲି, କିନ୍ତୁ ସେ ପ୍ରଭାବରୁ ମୁକୁଳି ପାରିଲି ନାହିଁ । ଦୁଇ ତିନିଦିନ ଧରି ଅରୁନ୍ଧତୀର ପରିବାର, ଅରୁନ୍ଧତୀ ନିଜେ ମୋର ସବୁ କଥା ବୁଝାସୁଝା କଲେ । ଖୁବ୍ ଯତ୍ନ ନେଲେ । କିନ୍ତୁ ମୁଁ ଆହୁରି ଅଧିକ ଅସୁସ୍ଥ ଅନୁଭବ କଲି । ମେଡିକାଲ୍ ଗ୍ରାଉଣ୍ଡରେ ଛୁଟିନେଇ ଘରକୁ ଚଲି ଆସିଛି... । ଘରର ସମସ୍ତଙ୍କୁ ବସେଇ ସବୁକଥା କହିଛି ।...କିନ୍ତୁ...'

'କିନ୍ତୁ ଏ ପର୍ଯ୍ୟନ୍ତ ମୁଁ ବୁଝିପାରୁ ନାହିଁ ମିତା କାହିଁକି ମଝିରୁ ଉଠି ଚଲିଗଲା, ଆଉ ମତେ ଅସ୍ୱାଭାବିକ ଢଙ୍ଗରେ ଚହିଁ ଅଳ୍ପ ହସି ଦେଇ ଗଲା ! ସେ କ'ଣ ଭାବୁଥିଲା ଯେ ମୁଁ ଅରୁନ୍ଧତୀକୁ ପ୍ରଶ୍ରୟ ଦେଇଛି ? ସେ ବିଚରୀର ଚେହେରା କାହିଁ, ତାକୁ କିଏ ଦେଖି ଭଲ ପାଇଯିବ ? କଲ୍ୟାଣୀ କଥା ଅଲଗା । ତାକୁ ନେଇ ତ ସନ୍ଦେହ କରିବାର ଅବକାଶ ନାହିଁ ।'

ତେବେ ଆଉ ଗୋଟେ କଥା ମୋତେ ବିବ୍ରତ କରୁଛି । ମିତା ହସିଲେ ମତେ ଆଉ କିଏ ହସିଲା ପରି କାହିଁକି ଶୁଣାଯାଉଛି । ସେ ପଛକରି ଯାଉ ଯାଉ ମୁହଁ ଫେରେଇ ମତେ ଚହିଁଦେଲେ ମୁଁ କାହିଁକି ଚମକି ପଡୁଛି !...

ଏକାନ୍ତରେ ମତେ ସେ କେବେ କୁଣ୍ଢେଇ ପକେଇବାର ମୁଁ ଜାଣି ନଥିଲି । ଏବେ ସେ ପ୍ରାୟ ମୋ' ଦେହରେ ଲାଖି ଯାଉଛି । ଯେମିତି ଅରୁନ୍ଧତୀ ଲାଖି ଯାଇଥିଲା । ସେତେବେଳେ ମୋ' ଦେହସାରା ଥରିଯାଉଛି । ଦେହରୁ ରକ୍ତ ନିଗିଡି ଗଲା ପରି ଦୁର୍ବଳ ଲାଗୁଛି । ମୁଁ ଘରକୁ ଯିବାକୁ ଡରୁଛି ।...

କ୍ୱଚିତ୍ କେମିତି, ଗଛ ଉହାଡରେ ମୋତେ କଲ୍ୟାଣୀ ଦିଶିଯାଉଛି । ଆଖି ମଟକା ମାରି ଚହିଁଲେ ସେ ଆଉ କିଏ ଆମ ସାହିର ସ୍ତ୍ରୀ ଲୋକ ।

'ମୋର ଏମିତି କାହିଁକି ମତି ଭ୍ରମ ହେଉଛି ମୁଁ ଜାଣି ପାରୁନାହିଁ । ଏକଥା ମୁଁ ମିତାକୁ ବି କହିପାରୁନାହିଁ । ମୁଁ ତାକୁ ଡରିଲିଣି । ମତେ ବେଳେବେଳେ ଲାଗିଲାଣି ଯେ ମିତା ଆଉ କଲ୍ୟାଣୀ ବାରି ହୋଇପାରୁ ନାହାନ୍ତି ।...'

'ଭାଇ ଅମର, ମୋତେ ନିଦ ହେଉନାହିଁ, ଭୋକ ଶୋଷ ମରିଯାଉଛି । ଦେହରେ ଜ୍ୱର ଥିଲା ପରି କସ୍ କସ୍ ଲାଗୁଛି । ଡାକ୍ତର ପାଖକୁ ଗଲେ ସେ ଖୋଳିତାଡି କ'ଣ ସବୁ ପଚାରିବ ବୋଲି ଡର ମାଡୁଚି ।... ମୁଁ ଆଉ ଉପାୟ ନ ପାଇ ତୋ' ପାଖକୁ ଚାଲି ଆସିଲି । ମୁଁ କ'ଣ କରିବି, କ'ଣ କରିପାରିବି ମତେ କହ ।'

ଖୁବ୍ ଅସହାୟ କାନ୍ଦୁରା ସ୍ୱର ଶେଖରର । ମୁଁ ଏମିତି ତାକୁ କେବେ ଦେଖି ନ ଥିଲି । ସେଥିପାଇଁ ଭାରି ବ୍ୟସ୍ତ ଲାଗିଲା । ମୁଁ ବିଚଳିତ ବୋଧକଲି । କିଛିମାତ୍ରାରେ ଡରିଗଲି ନା' କ'ଣ ।

ମୁହଁ ଜୋରରେ କହିଲି, 'ହଉ ଦେଖିବା! ତୁ ଚିନ୍ତା କରନା । ରାତି ଢେର ହେଲାଣି । ଏବେ ଚାଲ୍, କାଲି ସକାଳୁ ଯାହା ହେଲେ ଗୋଟେ କ'ଣ କରିବା ।'

ସେ ଡରକୁଳା ପିଲାଟିଏ ପରି ଉଠି ଆସିଲା । ମୁଁ ବି ଠିଆ ହେଲି । କିନ୍ତୁ ଚାଲିଲାବେଳେ ମୋ' ଗୋଡ ଠିକଣାରେ ପଡୁ ନଥିଲା ।

ସକାଳୁ ମୁଁ ଖବରକାଗଜ ଲେଉଟାଇଲା ବେଳକୁ ଆଖିରେ ପଡିଲା, 'ଦୁର୍ଘଟଣାରେ କଣ୍ଟ୍ରାକ୍ଟରଙ୍କ ସଲିଳ ସମାଧି' । ତଳକୁ ଲେଖାଥିଲା, 'ନଦୀ ବନ୍ଧର ସ୍ଲୁଇସ୍ ଗେଟ୍ ଉପରୁ କାମ ତଦାରଖ କଲାବେଳେ 'ଏ' କ୍ଲାସ୍ କଣ୍ଟ୍ରାକ୍ଟର ମହେନ୍ଦ୍ର ରଣ ସିଂ ଖସି ପଡିଲେ । ଏପର୍ଯ୍ୟନ୍ତ ଶବ ମିଳି ନାହିଁ ।

ମୁଁ ଖବରକାଗଜ ଲେଉଟାଇ ଥୋଇ ଦେଲାବେଳେ ବୁକୁରେ ଚାପିହୋଇ ରହିଥିବା ଦୀର୍ଘଶ୍ୱାସଟାଏ ବାହାରିଗଲା ।

ଦେଖିଲି ଶେଖର ଆସି ଠିଆ ହେଇଚି ।

'ବାଃ ତୁ ନିଦ ହଉନାହିଁ କ'ଣ କହୁଥିଲୁ ? ଆଠ ଘଣ୍ଟା ନିର୍ଘାତ ନିଦରେ ଶୋଇ ପଡିଥିଲୁ କେମିତି ! ଏବେ ତା'ର ସବୁ ସମସ୍ୟା ସମାଧାନ ହୋଇଯିବ ତା' ମନକୁ । ଆ' ବସ୍ । ମୁଁ ଚାହା ମଗଉଚି ।'

ମୁଁ ତାକୁ ଖବରକାଗଜ ଦେଖେଇଲି ନାହିଁ । କେବଳ କହିଲି, 'ଆଚ୍ଛା ! ଚାଲ୍ ତୋ' ଘରକୁ ସାଙ୍ଗ ହୋଇଯିବା । ନରହରି ନନ୍ଦଙ୍କୁ ଟିକିଏ ଡକେଇଦେଲେ ମୁଁ ତାଙ୍କ ସହିତ କଥାବାର୍ତ୍ତା କରନ୍ତି । ସେ ଆସିପାରିବେ ?'

ଶେଖର କିଛି ନକହି କାହିଁକି କେଜାଣି ନୀରବ ରହିଲା ।



# କାହ୍ନା

ଚାରିବର୍ଷର ଟଗ୍ରୁ, ପୁଅ ହେଲେ ବି ଝିଅଟିଏ ପରି ଦେଖାଯାଏ । ଲହୁଣୀ ରଙ୍ଗ । ଲହୁଣୀ ପରି ଚିକ୍କଣ ଆଉ ନରମ । ହସିଦେଲେ ଗାଲ ଟୋଲା ହୋଇଯାଏ । ନାଲି ଓଠ ଫିଟିଗଲେ ଦାନ୍ତ ଚିକ୍‌ଚିକ୍ କରେ ।

ଟଗ୍ରୁକୁ ସମସ୍ତେ ଜାକିଧରି ଗେଲ କରନ୍ତି । ଗାଲ ଚିପି ଦିଅନ୍ତି । ଗାଁରୁ ଆସିଛନ୍ତି ସାମମାମୁ । ସେ ଟଗ୍ରୁକୁ ଜମା କୋଳରୁ ଓହ୍ଲାଇବାକୁ ଦିଅନ୍ତି ନାହିଁ । ଘରେ ସମସ୍ତଙ୍କୁ ଶୁଣେଇଲା ଭଳି ପଚାରନ୍ତି – "କହିଲୁ କହିଲୁ ଟଗ୍ରୁ ତୁ କାହାକୁ ବିଭା ହବୁ ?"

ଟଗ୍ରୁ କହେ "ଭାଇନାକୁ" ସମସ୍ତେ ହୋ ହୋ ହସନ୍ତି । ସେ ବି କିଛି ନ ବୁଝି ଦାନ୍ତ ନିକୁଟିଦିଏ ।

ଚିକ୍କଣ ନାଲି ରଙ୍ଗର ଛୋଟ ପ୍ୟାଣ୍ଟଟିଏ ପିନ୍ଧି ସେ ଦାଣ୍ଡକୁ ବାହାରିଲେ ଶତ୍ରୁ ବି ତାକୁ ଘଡିଏ ଚାହିଁରହେ । ସେ ଖେଳେ ପୁଅଙ୍କ ସାଙ୍ଗରେ, ଝିଅଙ୍କ ସାଙ୍ଗରେ ବେଶୀ ।

ଛୁର୍ ଛୁର୍‌କି ଛୁର୍‌କି
ଲିଆଖିଆ ଭୁର୍‌କି
ଅଣ୍ଟାରେ ହାତଦେଇ ଝିଅଙ୍କ ସାଙ୍ଗରେ ଗୋଡ ଯୋଖି ଆଗକୁ ପଛକୁ ଡିଏଁ ।
ଛିଲୋ ଲାଇ
ଆ ଖେଲ୍‌ମା ଭାଇ

ତଳେ ଟେକି ହୋଇ ବସି ହାତ ଓସାରି ବାଁ ଡାହାଣକୁ ସେମାନେ ବୁଲନ୍ତି । ଧୂଳି ଉଡିଯାଏ । ଟଗ୍ରୁ ଦେଖେ, ଖେଳି ପାରେ ନାହିଁ । ସେମାନେ ହାଲିଆ ହୋଇ ଠିଆ ହୋଇପଡନ୍ତି । ହୋ ହୋ ହସନ୍ତି । ମୁହଁରୁ ଝାଳ ପୋଛନ୍ତି । ଟଗ୍ରୁକୁ କୁଣ୍ଢେଇ ଗେଲ କରନ୍ତି, ମୁହଁ ଯାକ ଚୋକ ଦିଅନ୍ତି ।

ସଞ୍ଜ ହେଲେ ଖେଳ ଭାଙ୍ଗିଯିବ ପୂର୍ବରୁ ପକ୍ଷୀ ଡେଣାମେଲିଲା ପରି ବାହୁ ମେଲେଇ ସେମାନେ ଖେଳନ୍ତି –

ଚକା ଚକା ଭଉଁରି
ମାମୁଘର ଚଉଁରି

ସେଥିରେ ଟଗ୍ରୁ ସାମିଲ୍ ହୁଏ । ତାକୁ କଉତୁକ ଲାଗେ । ସମସ୍ତେ ତା' ଚାରିଆଡେ ବୁଲିଲା ପରି ଦିଶନ୍ତି । ସେ ଟଳମଳ ଠିଆ ହୋଇ କିଛି ସମୟ ବୁଲୁଥିବା ଭୂଇଁକୁ ଅନାଏଁ । ତା'ପରେ କିର୍

କିର୍ ହେଇ ହସେ ।

ସେଇଠୁ ସେମାନେ ତାକୁ ନେଇ ହାତ ଧରାଧରି ହେଇ ଘେର କରି ବୁଲନ୍ତି । ଗାଆନ୍ତି –

ଘୋ ଘୋ ରାଣୀ

ଅଣ୍ଟେ ଅଣ୍ଟେ ପାଣି ।

ପାଣି ଘେର କାଟି ଉପରକୁ ଉଠିଆସେ । ସେମାନେ ବୁଲୁଥା'ନ୍ତି, ଗାଉଥା'ନ୍ତି –

ବୁକେ ବୁକେ ପାଣି – ମୁଣ୍ଡେ ମୁଣ୍ଡେ ପାଣି ।

ପାଣିରେ ବୁଡିଗଲେ ଆଉ ଘୁଞ୍ଚିବାର ନାହିଁ କି ଖେଳିବାର ନାହିଁ ।

ଖେଳ ଭାଙ୍ଗି ଯେ ଯାହା ଘରକୁ ଦୌଡିଯାଆନ୍ତି । ଗଲାବେଳେ କିଏ ତରୁର ଗାଲ ଚିପିଦିଏ, କି ପିଠି ଆଉଁଶିଦିଏ । କିଏ ଓଠଧରି କହେ, କାଲିକି ଆସିବୁ –

ପାଞ୍ଚବର୍ଷ । ଛ'ବର୍ଷ । ସାତ ବର୍ଷ ।

ତରୁ ସ୍କୁଲକୁ ଯାଏ । ପାଠ ପଢେ । ତା' ହାତରେ ରୂପା ବଳା, ନାକରେ ସୁନାଗୁଣା – । ତା' ସାଙ୍ଗରେ ବଡପିଲା ବି ସ୍କୁଲକୁ ଯାଆନ୍ତି । ଭାରି ଟାଣୁଆ, କାଳିଆ ଟୋକାମାନେ ତାକୁ ଥଟ୍ଟା କରନ୍ତି, ଗେଲ ବି କରନ୍ତି । ହେଲେ ଆଉ ପ୍ରକାରେ ଗେଲକଲା ପରି ତାକୁ ଲାଗେ । ଗୋଟାଏ ସେଥିରୁ ତରୁକୁ ଧରି ଗୀତ ଗାଏ ।

ସୁରୁ ସୁରୁ ପାଟ୍ ପନିଆ

ନାକ୍‌ଫୁଡି ମୋର୍ କନିଆ ।

ସେମାନେ ତାଳିମାରି ହୋ ହୋ ହସନ୍ତି । ତାକୁ ଟଣା ଓଟରା କରନ୍ତି । ତାକୁ ଅପମାନିଆ ଲାଗେ । ସେ ଛାଟିପିଟି ହୋଇ ଛଡେଇ ହୁଏ । ରାଗରେ କାନ୍ଦି ପକାଏ । କାମୁଡି ପକାଏ ।

ଦିନେ ଦି'ପହର ବେଳା ସେ ଟିଉସନକୁ ଯାଉଥାଏ ନିଛାଟିଆ ରାସ୍ତାରେ । ଗୋଟେ କାଳିଆ ଭୁର୍କୁଣ୍ଡା ଲୋକ ଚାରିଆଡକୁ ଚାହିଁ ତା' ଆଗରେ ଟିପେଇ ବସିଲା । ତରୁର ଗୋଟିଏ ହାତକୁ ଧରି କହିଲା ।

"ତୋର ମା' ମତେ ପଠେଇଚି । ଏ ବଳା ମୁଁ ନେଇ ତୋ' ପାଇଁ ବଡ ବଡ ବଳା ତିଆରି ଦେବି । ମତେ ଏ ବଳା ଦି'ଟା ଦେ ।"

କହୁ କହୁ ସେ ଯୋଡିକଯାକ ରୂପାବଳା ତା' କଅଁଳ ହାତରୁ ଖସେଇ ନେଇଗଲା । ତରୁ ଟିଉସନ୍ ପଢି ଫେରିଲାପରେ ତା' ମା' ପଚାରିଲା, "କିରେ ତୁର, ତୋ' ହାତର ବଳା କାହିଁ ?" – ତରୁ ସବୁ ବଖାଣି ଗଲା । ସବୁ ଶୁଣି ମା' ତରୁକୁ କୋଳକରି ମୁଣ୍ଡରେ ହାତ ବୁଲେଇଲେ । ବାପାଙ୍କୁ ପରେ କହିଲେ, "ଆମ ଭାଗ୍ୟ ଭଲ । ସେ ନିଛାଟିଆ ଜାଗାରେ ସେ କ'ଣ ବୋଇଲେ କ'ଣ କରିପାରିଥାନ୍ତା । ଚୋର କି ଖଣ୍ଡ କି ମଦୁଆ – ସେ ବଳା ଯୋଡିକ କାଢିନେଇ ଚାଲିଗଲା । ଆମ ଭାଗ୍ୟ ଭଲ । ତରୁର କିଛି ହେଇନାଇଁ ।"

ନାକର ସୁନାଗୁଣାଟାକୁ ନିଜେ ତରୁ ମା'ଙ୍କୁ କହି କାଢିଦେଲା । ସ୍କୁଲରେ ତାକୁ ଆଉ

କେହି ଛିଗୁଲେଇ ହେଇପାରିବେ ନାହିଁ । ତରୁ ପୁଅଙ୍କ ସାଙ୍ଗରେ ମିଶିପାରିବ । 'ଡୁଡୁ' ଖେଳିପାରିବ । ଆହୁରି ଟାଣୁଆ ମଜଭୁତ୍ ହବ । ମୁକାବିଲା କରିବ –

– "ତରୁ ଯା ଭିତରେ କେତେ ଉଷ୍ଣ ହେଇଗଲାଣି ଦେଖୁଚ ?"...

– "ଗଣ୍ଡି ଛାଡ଼ିବା ବୟସର ପିଲେ ଦେଖୁ ଦେଖୁ ଉଷ୍ଣ ହେଇଯାଆନ୍ତି ।"

ମେଲା ଦେହରେ ତରୁ ଗାଧୋଇ ସାରି ଠିଆ ହୋଇଥିଲାବେଳେ ବାପ ମା' କଥା ହୁଅନ୍ତି ।

– "ବଡ ହେଲେ ତରୁ ତମରି ଭଳି ଡେଙ୍ଗା ହବ ।"

– "ଆଉ ତମ ଭଳି ଗୋରା ଆଉ ସୁନ୍ଦର ହବ" –

– "ଠାକୁରେ ଚାହିଁଲେ ସବୁ ହବ ।"

ତରୁ ସାହିପିଲାଙ୍କ ସାଙ୍ଗରେ ନାନା ପ୍ରକାର ଖେଳ ଖେଳେ ।

କଙ୍କି ଧରିବା ତା'ର ଗୋଟେ ସଉକ । ମା' ମନା କରିଛନ୍ତି, "କଙ୍କି ଧରଣ, ମା' ମରଣ ।" ହେଲେ ଛପି ଛପି ଯାଇ କଙ୍କିଟିକୁ ଧରି ନେବାରେ ସେ ଯେତେ ଖୁସି ହୁଏ, ଆଉ କେଉଁଥିରେ ହୁଏ ନାହିଁ । ସାଙ୍ଗମାନଙ୍କୁ ସେ ବୁଝାଏ ।

– "ଏ କଙ୍କିକୁ ଗୋଟାଏ ଛୋଟ ଘର କରି ରଖିବା । ମାଟିରେ ଚିକ୍କଣ ଖୋପଟିଏ କରି ତାକୁ ସେଇଠି ରଖିବା । ଉପରୁ ପାତଳ ଢାଙ୍କୁଣୀଟିଏ, ସେଇ ମାଟିରେ ଘୋଡେଇ ଦେବା – ଦେଖିବ ସକାଳୁ ତା' ଭିତରୁ କଙ୍କି ଉଭେଇ ଯାଇଥିବ । ତା' ଜାଗାରେ ଥିବ, ଗୋଟିଏ କଉଡି ।"

କହିଲାବେଳେ ତରୁର ଆଖି ଚମକୁଥାଏ । ତାକୁ ସବୁ ଦୃଶ୍ୟ ହେଉଥାଏ । ତା' କଥା କହିବା ଢଙ୍ଗ, ଗଛରୁ ଫଳ ତୋଳି ଆଣିଲା ପରି । ଶୁଣିଲା ଲୋକର ପ୍ରତେ ହୋଇଯିବ, ସେ କଥାରେ । ତରୁ କଙ୍କଟିକୁ କବର ଦେଲାବେଳେ ସେମାନେ ବିଶ୍ୱାସ କରିଯାନ୍ତି ଯେ ସକାଳ ପାହିଲେ, କଙ୍କି ନିଷ୍ଚେ କଉଡି ହେଇ ଯାଇଥିବ ।

ଧାନକଟା ପରେ କ୍ଷେତରୁ ପାଣି ଶୁଖି ଯାଇଥାଏ । ତରୁ ତା' ସାଙ୍ଗମାନଙ୍କୁ ନେଇ ସେ ଭିତରେ ବୁଲେ । ଗୋରୁଗୋଠ ନଡା ଚରୁଥା'ନ୍ତି । କଜଳପାତି ଗୋରୁଙ୍କ ଦିହରୁ ଟିଙ୍କ ଖୁମ୍ପୁଥାଏ । ଏଠି ସେଠି ଘାସଫୁଲ ଫୁଟିଥାଏ । ତରୁ କ୍ଷେତ ହୁଡା ପାଖରେ ଥମ୍ ହେଇ ଠିଆ ରହିଯାଏ । ଚାହିଁ ରହେ ଏକା ଲୟରେ । ତା' ଆଖି ଚମକେ । ସେ ସେଇଆଡକୁ ଚାହିଁ ରହି ଆଙ୍ଗୁଠି ଟିପରେ ଦେଖାଏ । ସମସ୍ତଙ୍କୁ ଦିଶେ କଙ୍କଡା ଗାତ ଚାରିପାଖରେ ଶୁଖିଲା ପଙ୍କ । ପାଣି ନଥାଏ କି କଙ୍କଡା ନଥାଏ । ତରୁକୁ ଦେଖାଯାଏ ଆଉ ପ୍ରକାରେ ।

– "ଦେଖ, ଦେଖ, ଏ ହେଉଚନ୍ତି ଦେବତା । ହେଇ ମୁକୁଟ, ହେଇ ମୁଣ୍ଡ, ଚାରିହାତ, ବୁକୁ, ପେଟ, ଗୋଡ, ଯା'ଙ୍କୁ ଚାଲ ପୂଜା କରିବା ।"

ତରୁ ଦେଖାଇ ଦେବା ପରେ ତାଙ୍କୁ ବି ସେଇ ଆକୃତି ଦେଖାଯାଏ । ସେମାନେ କହନ୍ତି – "ହଇ ହଇ, ଦେବତା ଦିଶୁଚନ୍ତି । ଯା'ଙ୍କ ନାଁ କ'ଣ ? ଇଏ କି ଦେବତା ?"

ଆଖିରେ ପଲକ ନ ପକାଇ ତରୁ ସେଇ ଆକୃତିକୁ ଚାହିଁ କହେ, "ଏ ହେଉଛନ୍ତି

ମାଟିଦେବତା । ଆମେ ଘଲ ମନ୍ଦିର ଗଢ଼ିବା, ଫୁଲ ଚଢ଼େଇବା । ପୂଜା କରିବା ।"

ସେମାନେ ପୁରୁଣା ବାଉଁଶ, ବତା, ଡାଙ୍ଗ ଗୋଟେଇ ଆଣନ୍ତି । ତରୁ ଗୋଡି ଥୋଇ ବତାଗୁଡିକୁ ସମାନ ସମାନ ଭାଙ୍ଗି ସଜାଡି ଦିଏ । ମୁହଁ ଦିଶୁଥାଏ, ବାକି ଘୋଡେଇ ହୋଇଯାଏ । ବାରଜାତି ଫୁଲ ଆସେ । ତରୁକୁ ନକଲ କରି ସେମାନେ ଆଖିବୁଜି ଗୁଣୁ ଗୁଣୁ ହୁଅନ୍ତି । ଆସ୍ତେ ଫୁଲଗୁଡିକୁ ଥୋଇ ଦିଅନ୍ତି ଦେବତାଙ୍କ ମୁଣ୍ଡ ପାଖରେ, ଦିଶୁ ନଥିବା ପାଦ ପାଖରେ । ମନ୍ଦିର ସାରା ମଣ୍ଡି ଦିଅନ୍ତି ଫୁଲରେ ।

ଥୁଣ୍ଟା ନଡା ଉପାଡି ତା' ଭିତରୁ ପୋଲା ନଳି ସେମାନେ ବାହାର କରନ୍ତି । ଫାଳକେ ଗଣ୍ଠି, ଆରଫାଳକ ମେଲା । ଗଣ୍ଠି ପାଖରେ ନଳିକୁ କଣ୍ଟାରେ ଚିରି ଦେଇ ସୋରା ସୋରା କରି ଦିଆଯାଏ । ସେଇ ମୁଣ୍ଡ ନଳିକୁ ପାଟିରେ ପୂରେଇ ଫୁଙ୍କିଲେ ବାଜେ । ତରୁ ବତେଇ ଦିଏ । ହେଲେ ତା' ଭଳି କେହି ବଜାଇ ପାରନ୍ତି ନାହିଁ । ସମସ୍ତେ ମାଟି ଦେବତାଙ୍କୁ ଘେରି ନଡାତୁରୀ ବଜାନ୍ତି । ବିଭୋର ହୋଇଯାନ୍ତି । ଖାଇବାବେଳେ ଗଡିଯାଏ । ଘରେ ଖୋଜା ପଡିଲେ ବାହୁଡି ଯାନ୍ତି । ତରୁକୁ ଛାଡି ଯିବାକୁ ତାଙ୍କ ମନ ନଥାଏ । ତରୁ ପୁଣି ଆସିବାକୁ କହି ଆଶ୍ୱସ୍ତ କରିଦିଏ । ସେଦିନ ପାଇଁ ଖେଳ ସରିଯାଏ ।

ଆକାଶମଲ୍ଲୀ ଗଛରୁ ବୋଝବୋଝ ଫୁଲ ତଳେ କୁଢେଇ ହୋଇଯାଏ । ସଜଫୁଲଟାଏ ନେଇ ତରୁ ତା' ଡେମ୍ଫ ଆଡୁ ଫୁଙ୍କେ । ସେଥିରୁ ମହୁରିଆ ମଧୁରିଆ ସ୍ୱର ବାହାରେ । ଆଉ ପିଲାଏ ସେଇଆ କରିବାକୁ ଫୁଲ ଗୋଟାନ୍ତି । ନ ବାଜିଲେ ଫୋପାଡି ଦେଇ ଆଉ ଗୋଟାଏ ଲେଖା ଗୋଟାନ୍ତି । ବାଜିଲେ ଖୁସିରେ କୁରୁଳନ୍ତି । ଖରାବେଳେ ନିରୋଳା ଗଛମୂଳେ ବସି ସେଇ 'ପିପି ଫୁଲ'କୁ ଫୁଙ୍କନ୍ତି । ନେଳି ଆକାଶରେ ମାଟିଚିଲ ସିଟି ମାରିଲା ପରି ଡାକେ । ତରୁ ହସି ଦିଏ । କହେ –

– "ଶୁଣ, ଚିଲ କେମିତି ଆମ ପିପି ଫୁଲର ସ୍ୱରକୁ ନକଲ କରୁଚି । ଆମ ସାଙ୍ଗରେ ସେ କଥା ହବାକୁ ଚାହୁଁଚି, ସାଙ୍ଗ ହବାକୁ, ଖେଳିବାକୁ ଚାହୁଁଚି ।"

– "କି ବଢ଼ିଆ ! ଚିଲ ସାଙ୍ଗରେ ଦୋସ୍ତି ହେଲେ ସେ ଆମକୁ ଆକାଶରେ ଉଡାଇ ତା' ଘରକୁ ଡାକିନେଇପାରେ । ଆମର ବି ଡେଣା କଅଁଳିଗଲେ, ଆମେ ସେ ନେଳି ଆକାଶରେ ବୁଲି ପାରିବା । ଚିଲ ପରି କୁରୁଳିବା ।"

ଗଛମୂଳରୁ ଉଠି ସେମାନେ ହଳଦିଆ ଜନିଅର ପାଖରେ ପହଞ୍ଚନ୍ତି । ଫୁଟିଲା ଫୁଲ ମହମହ ବାସେ । ସେମାନେ ତରୁକୁ ଦେଖନ୍ତି । ତରୁ ବାସ୍ନାକୁ ଶୁଙ୍ଘେ । ତା'ପରେ ତା' ଡେମ୍ଫକୁ ଶୋଷି ମହୁ ଖାଏ । ସମସ୍ତଙ୍କୁ ମହୁ ଚଖାଇ ଦିଏ । ତାଙ୍କ ସାଙ୍ଗରେ ଫୁଲ ଚୁଇଁ ଚଢେଇ ତା' ଲମ୍ବା ଥଣ୍ଟ ଫୁଲ ଭିତରେ ପୂରେଇ ମହୁ ଖାଏ । ଜାତି ଜାତି ପ୍ରଜାପତି, ମହୁଭରା ଫୁଲ ଉପରେ ବସି ତାଙ୍କ ଶୁଣ୍ଢରେ ଶୋଷନ୍ତି । ଫୁର୍‌ଫୁର୍ ଫୁଲରୁ ଫୁଲକୁ ଉଡିଯାନ୍ତି ।

ଜହ୍ନପକ୍ଷ ଶୀତୁଆ ସନ୍ଧ୍ୟାରେ ତରୁ ଝିଅଙ୍କ ମେଳରେ ଖେଳିବାକୁ ଭଲପାଏ । ଝିଅମାନେ

ବି ଟଗୁକୁ ଦେଖିଲେ ଖୁସି ହୋଇଯାନ୍ତି । ଯେ ଯେତେବେଳେ ସୁବିଧା ପାଇଲା ଟଗୁ କାନ୍ଧରେ ବାହୁ ବେଢେଇ ସାଙ୍ଗ ହୋଇଯାଏ । ବଡ ଝିଅମାନେ ତାକୁ କୋଳେଇବାକୁ ଭଲ ପାଆନ୍ତି । ଗାଲରେ ଗାଲ ଲଗେଇ ଗେଲ କରନ୍ତି । ଟଗୁକୁ କଉତୁକିଆ ଲାଗେ । ଏ ଝିଅମାନଙ୍କର ଗୋଟାଏ ପ୍ରକାର ବାସ୍ନା ସେ ବାରିପାରେ ।

ସେମାନଙ୍କ ମେଳରେ ଟଗୁ ବେଶୀ ଗପିପାରେ ନାହିଁ । ସେମାନେ ଗପନ୍ତି । ସୁନ୍ଦର ଅସୁନ୍ଦର କଥା ବେଶୀ ପଡେ । ମୋଟ ଉପରେ ଅଣ୍ଡିରାଗୁଡାକ ଭାରି ଅସୁନ୍ଦର, ଦାଢିଆ, ଗୁଢିଆ, ହାଡୁଆ ରାହୁଆଗୁଡାକ । କିଏ ସେଥିରୁ ଟେରେଇ ରହେଁ, କିଏ ବଙ୍କେଇ ରଲେ, କହି ସେମାନେ ହସି ହସି ଗଡିଯାନ୍ତି । ସେମାନଙ୍କର ନିଶଦାଢି ଗୁମ ସାଲୁବାଲୁ ମୁହଁ କାହିଁକି ହୁଏ କେଜାଣି । ଜଣେ ଟଗୁର ଦୁଇ ଗାଲ ଉପରେ ତା' ନରମ ପାପୁଲି ରଖି କହେ, "ଆମ ଟଗୁର ମୁହଁ ଜମା ସେମିତି ଅସନା ହବ ନାହିଁ । ତା'ର ଏତେ ସୁନ୍ଦର ମୁହଁଟା କାହିଁକି ଅସୁନ୍ଦର ହବ ?"

କୋଳି କଥା ପଡିଲେ ଝିଅମାନେ କୁରୁଳି ଉଠନ୍ତି । ପାଟି ସୁଆଦ କରନ୍ତି । ବରକୋଳି, ବଉଳକୋଳି, କରଣ୍ଡା କୋଳିର ସାଦ ରଖିଲା ପରି କଲର କଲର କରନ୍ତି । ମଝିରେ ଟଗୁ କହେ, "ତମେ କିଏ ଗର କୋଳି ଖାଇଚ, ନରକୋଳି, କ୍ଷୀରକୋଳି ? ?"

– "ହଁ, ହଁ, ମୁଁ ଖାଇଚି, ଗରକୋଳି । ତା' ମଞ୍ଜିକୁ ଫଟେଇଲେ ଭିତରୁ ଭାରି ମିଠା ବାଦାମଟାଏ ବାହାରେ ।"

– "ନରକୋଳିଟା କଞ୍ଚାରେ କଷାଳିଆ । ପାଚିଲେ ଭାରି ମଧୁରିଆ ଖଟା ।"

– "କ୍ଷୀରକୋଳିଟା କ'ଣ ?"

"ମୁଁ ଯାଇଥିଲି ସୁରଙ୍ଗି ପାଟଣା । ସେଇଠି ଦେଖିଥିଲି ସରୁ ଖଜୁରି କୋଳି ପରି ହଳଦିଆ ରଙ୍ଗର କ୍ଷୀରକୋଳି । ତା' ଭିତରେ ମହୁପରି ମିଠା କ୍ଷୀରରସ । ଆଉ ଗୋଟେ କୋଳି, ତା' ନାଁ ତୁତ୍‌କୋଳି । ଗୁମ୍‌ଗୁମିଆ ହୋଇ ବାଇଗଣୀ, ଗୋଲାପି ରଙ୍ଗର କୋଳି, ତା'ର ଚୋପା ନାହିଁ କି ମଞ୍ଜି ନାହିଁ ।"

ସବୁ ଝିଅ ଟଗୁକୁ ଘେରି ବସିଯାନ୍ତି । ସେମାନଙ୍କ କୋଳିଖିଆ ମୁହଁ ଜହ୍ନ ଆଲୁଅରେ ସୁନ୍ଦର ଦିଶେ ।

– "ଆଉ ଜାଣିଚ ନା, ଏଇ ପାଖ ବଣରେ ଗୋଟେ ନୂଆ କୋଳି ଆମେ ସେଦିନ ଖାଇଲୁ । ତା' ନାଁ ସୁନାରଗଡା ।" ତିନିକୋଲିଆ ପାଟ ରଙ୍ଗର ବୁଦା କୋଳି । ଭାରି ସୁଆଦ ।"

ଜଣେ ଟଗୁକୁ କୁଣ୍ଢେଇ ଧରି କହିଲା, "ତୁ ନିଜେ କେତେ ସୁଆଦିଆ; ତୋଠୁ ବଳି କ'ଣ ସେ କୋଳିଟା ସୁଆଦିଆ ହବ ?"

ଟଗୁର ଗାଲରେ ଝିଅର ବେଶୀ ବାଜି କୁଣ୍ଢେଇ ହୁଏ । ସେ ଗାଲ ଘସି ଦେଇ କହେ – "ସେଇଠି କଣ୍ଢେଇ କୋଳି ଭର୍ତ୍ତି । କଳା ଜାମୁକୋଳିଆ ପାଚିଲା କଣ୍ଢେଇ କୋଳି ଆମେ ଖାଇଚୁ ।"

"ହେ, ହେ, ଟଗୁ ଆମକୁ କଣ୍ଢେଇକୋଳି ଖୁଆଇବୁ ନାଇଁ ?" –

ବଡଝିଅଟା ତା' ଗାଲ ଟୋଡିଦେଇ କହେ, "କେତେ କଥା ଜାଣିଚି ଏଇ ବଳଟେ ଟୋକା ! କାଲି ରବିବାର ଉପରଓଳି ଆସ, ସମସ୍ତେ ଟଗରୁକୁ ନେଇ ବଣକୁ ଯିବା । କଣ୍ଟେଇକୋଳି ଖାଇବା । ସୁନାରଗଡା କ'ଣ ରଖିବା ।"

– "ଘରେ କ'ଣ ଛାଡିବେ ?"

– "ଯାଉନୁ । ଏତେ ନିଉଟୁରି କାହିଁ ହଉଚୁ ? ମିଛ କହି ଖସି ଆସିବୁ । ଟଗରୁ କେମିତି ଆସିବ ?"

"ସେ ତ ରଜାପିଲା । ତା' ମା' ତାକୁ ପ୍ରାଣଠୁ ଅଧିକ ଭଲପାଏ । ସେ ଯାହାକଲେ ଦୋଷ ଧରେ ନାହିଁ । ସେ ଚାଲିଆସିବ ।... ନ ହେଲେ ଆମ ପରି ମିଛ କହି ଖସି ଆସିବ ।"

ସମସ୍ତେ ହସନ୍ତି । ଜହ୍ନ ଉଠି ଆସିଥାଏ । ଉପରକୁ । ଯେ ଯାହା ଘରକୁ ଚାଲିଯାନ୍ତି ।

କଣ୍ଟେଇକୋଳି ଗଛରେ କଣ୍ଟା ଭାଗଟା ବେଶୀ । ଲୁଗାରେ ଲାଗିଯାଏ । ହାତ ରାମ୍ପୁଡି ନିଏ । ଟଗରୁ ସେମାନଙ୍କ ପାଇଁ ତୋଳିଦିଏ ।

– "ତୁ ଏତେ କଥା କେବେ ଶିଖିଲୁ, କେମିତି ଶିଖିଲୁ ?"

ଟଗରୁ ଦାନ୍ତ ଦେଖେଇ ହସିଦିଏ । ତା' ଗାଲ ଠୋଲା ହୋଇଯାଏ ।

ଜଣେ କହେ, "ସେ ପରା ତା' ମା'ର ସେରେନ୍ତା ପୁଅ । ପାଠ ପଢିଗଲା ବାଟରେ ବଣ ଭିତରେ ପଶିଯାଏ । ଗୁଡାଏ ବାତରା ଟୋକା ତା' ସାଙ୍ଗ । ସେମାନେ ପାଠଶାଠ ପଢନ୍ତି ନାଇଁ, ଏମିତି ଦିନ ସାରା ଟିର୍କି ଟିର୍କି ବୁଲନ୍ତି ।"

ଟଗରୁ କପାଳରେ ଝାଳ ଜକେଇ ଯାଇଥାଏ । ସେ ଝାଳ ପୋଛି ଆଣିଲାବେଳେ କହେ – "ଟଗରୁ କ'ଣ ଆଗ ଟଗରୁ ହେଇ ଅଛି ନା କଣ । ସେ ପରା ପଞ୍ଚମ ପାଶ୍ କଲାଣି । ତାକୁ ଏଇ ଶୀତକୁ ଦଶ ପୂରି ଏଗାର ଚାଲିବ ।"

"ସତେ ନା ? ସତେ ନା ?" କହି ଝିଅ ସବୁ ପାଖେଇ ଆସନ୍ତି । ଟଗରୁକୁ ନିଠେଇ ଚାହାଁନ୍ତି ଗୋଡଠୁ ମୁଣ୍ଡଯାଏଁ ।

ଜଣେ କହେ, "ସତ ସତ ! ହେଇ ଦେଖ ତା' ନାକତଳ ଗହଳିଆ ଦିଶୁଛି । ଗାଲ ଉପରେ କର୍ଅଁଳିଆ କୁଣ୍ଡା ରୁମ । ଟଗରୁକୁ ଭାରି ମାନୁଚି । ତା' ଆଖି, ତା' ଭୂଲତା ସାଙ୍ଗକୁ ଏ ରୁମରୁମିଆ ଗାଲ ବିରାଜି ଦିଶୁଚି ।"

ଟଗରୁ ସେ ଘେର ଭିତରୁ ବାହାରି ଆସେ । "ଆରେ କଣ୍ଟେଇକୋଳି ଖାଇବ ପରା ?"

ସେମାନେ ଗଛରୁ ଗଛକୁ ଯାଇ କଣ୍ଟା ଭିତରେ ପଶି କୋଳି ତୋଳନ୍ତି । ଗୋଟାଏ ଖାଇଲେ ଦି'ଟା ମୁଠା ଭିତରେ ଧରନ୍ତି । –

ବେଳ ଗଡିଯାଏ । କୋଳି ତୋଳାରେ ହାଲିଆ ଝିଅମାନେ ଏକାଠି ହେଇ ଚରିଆଡକୁ ଅନାନ୍ତି ।

"ଆରେ ଟଗରୁ କାହିଁ ? – ସେ କ'ଣ ଗହନ ବଣରେ ପଶିଗଲା ? – କୋଳି କ'ଣ ଏଇଠି

ନଥିଲା ?" –

"ସେ ଏକୁଟିଆ ଯାଇଚି ନା ଆଉ କିଏ ତା' ସାଙ୍ଗରେ ଯାଇଚି ।"

– "ରେଖା ତ ଦିଶୁନାହିଁ । – ରେଖା ତରୁକୁ ବହଲେଇ ନେଇଚି କୁଆଡେ ।"

– "ସେ ସବୁଠୁ ବେଶୀ ଚତୁରୀ । ସବୁବେଳେ ତରୁକୁ ଘେରି ରହିଥାଏ ।"

ସେମାନେ ଡାକ ଛାଡନ୍ତି "ତରୁ... । ତରୁ... ।"

"ରେଖା...! ରେଖା...!"

ବୁଦୁବୁଦୁକିଆ ବଣରେ ଝିଅଙ୍କ ଡାକ ପାଟଳ ତୀର ପରି ଭେଦିଯାଏ । ବଣ କାନାଏ । ପକ୍ଷୀ ଶବ୍ଦ ଲିଭିଯାଏ । ଗଛ ଅଗମାନଙ୍କରେ କଅଁଳିଆ ନୂଆ ପତ୍ର ଥରଥର ହୁଏ ।

ସେମାନେ ଶଙ୍କିଯାଆନ୍ତି । ଥାନ ଛାଡି ଘରମୁହାଁ ଯାଇପାରନ୍ତି ନାହିଁ । ସାଙ୍ଗରେ ତରୁ ନାହିଁ କି ରେଖା ନାହିଁ, କେମିତି ଯିବେ ?

ଖୋଜିବାକୁ ଘୁଞ୍ଚ ପାରନ୍ତି ନାହିଁ । ଅଜଣା ଅଗମ୍ୟ ବଣ ! ତରମାତେ । ପଶ୍ଚିମରୁ ଜହ୍ନ ଉଇଁଲା ପରି ଉଠି ଆସନ୍ତି ତରୁ ଆଉ ରେଖା । ସମସ୍ତେ ଦଉଡିଯାଇ ସେମାନଙ୍କୁ ଘେରିଯାଆନ୍ତି ।

– "କେତେବାଟ ଯାଇଥିଲେ ସେମାନେ ? କ'ଣ କୋଳି ଖାଇବାକୁ ଯାଇଥିଲେ ?" –

ସମସ୍ତେ ଏକାଠି କଲରକଲର ହୋଇ କେତେ କ'ଣ ପଚାରନ୍ତି । ଦି'ଜଣକୁ ଆଉଁଶି ପକାନ୍ତି, କୁଣ୍ଡେଇ ପକାନ୍ତି ।

ସେମାନେ କିଛି କହନ୍ତି ନାହିଁ । ସେମାନଙ୍କର କପାଳରେ ଆଖିତଳେ ବେକରେ ପୁଞ୍ଜିପୁଞ୍ଜି ଝାଳ । ସେମାନେ ହାଲିଆ ଦେଖାଯାନ୍ତି ।

ରେଖା, ତରୁକୁ ଚାହିଁ, ଦୁଷ୍ଟାମୀ କଲା ପରି କହେ – "କହିଦେବି ନା' ତୁ କୁଆଡେ ମତେ ନେଇଥିଲୁ ?" ବିଶି ଆଙ୍ଗୁଠି ଟିପରେ ତରୁର ଗାଲକୁ ଚିପି ଦିଏ ।

ସମସ୍ତେ କହନ୍ତି – "କହ, କହ ।" ସତେ ବା ସବୁ ଝିଅ ଏକାଠି ହୋଇଯାନ୍ତି ତରୁକୁ କାଇଲ୍ କରିବାକୁ ।

ରେଖା ମିଛରେ ରାଗିଲା ପରି କହେ, ତରୁ କାନ୍ଧରେ ବାହୁ ବେଢେଇ କହେ – "ମତେ ସୁନାରଗଡା ଖୁଆଇବାକୁ ନେଇଥିଲା । କଣ୍ଟାବଣ ଯାକ ବୁଲେଇଲା ହେଲେ ସୁନାରଗଡା ଖୁଆଇଲା ନାହିଁ ।" – ଏତକ କହିଦେଇ ତରୁ ନାକକୁ ଚିପି ଦିଏ ।

ତରୁ ପ୍ରତିବାଦ ନ କରି କହେ, "ବହୁତ ଖୋଜିଲି, ପାଇଲି ନାହିଁ ।"

– "ହଉ, ହେଲା ହେଲା ! ଚାଲ ଫେରିବା ! ସୁନାରଗଡା ଆରଥରକୁ ରଖିଦବା ।" ବଣରୁ ଫେରିଯାନ୍ତି କିଶୋରୀମାନେ । କିଛି ନ ପାଇ ସୁଦ୍ଧା ଢେର କ'ଣ ପାଇଲା ପରି ଉସତ ଦିଶନ୍ତି । ହାଲିଆ ଦିଶନ୍ତି । ତରୁ ସେମିତି ଜଣାପଡେ ନାହିଁ । ଖେଳୁଆଡ ପିଲାଟା ତ !

ଫେରିଲା ବେଳକୁ ସାହି ସାରା ରାଗରେ ତମତମ । ବେଳବୁଡ ସମୟ ନାଲି ଜର ଜର । ବାଟ ଜଗି ଠିଆ ହୁଅନ୍ତି ନିଶୁଆ, ଦାଢିଆ, ରାହୁଆ ଭେଣ୍ଡିଆମାନେ । ରେ' ରେ' କାର । ତୁ'କାର ।

ଛି'କାର ଶୁଭୁଛି ସାହି ସାରା । ଟୋକୀଗୁଡାକ କ'ଣ ବଣ ବୁଲିବେ ? – ସେଇ ଟୋକା ତାଙ୍କୁ ବାଟ କଢେଇ ନେଇଚି । ସେ ଗଲା କୁଆଡେ ? କୋଉଠି ଲୁଚିଚି ? ଆଜି ତା'ର ଦିନେ କି ଆମର ଦିନେ ।

ଗୋଳ ଶୁଣି ମା'ମାନେ ବାହାରି ଆସନ୍ତି । ଜଣେ ତରୁକୁ ଡାହାଣ କାନି ଘୋଡେଇ ଠିଆ ହୁଅନ୍ତି ଅଭୟ ଦେଲା ଠାଣିରେ । "କ'ଣ ହେଲା ? କାହିଁକି ସବୁ ଗୋଳ କରୁଚ ? ଏଥିରେ ତରୁର କ'ଣ ଦୋଷ ? – ଏ ଛତରୀଯାକ କଣ୍ଢେଇ କୋଳି ଖାଇବାକୁ ହମହମ ନ ହେଉଥିଲେ ତରୁ କ'ଣ ତାଙ୍କୁ ଭିଡି ନେଇଥାନ୍ତା ? – ବଣରେ କୋଳି ଖୁଆଇ ବାଟ କଢେଇ ସେମାନଙ୍କୁ ନେଇ ଆସିଲା ବୋଲି ତରୁ ଦୋଷ କରି ପକେଇଲା ? ଏଗୁଡାକୁ ଆଗ ଆକଟ କର ! ତରୁ କ'ଣ ବଣବୁଲା ବାତ୍ରା ପିଲା ହେଇଚି । ତା'ର ବିଦ୍ୟା କ'ଣ, ବୁଦ୍ଧି କ'ଣ ! କି ବିଚକ୍ଷଣ ପିଲା ସିଏ । କ'ଣ ନା ବାଡିଆଡ ନଈକୂଳକୁ ଲାଗିଚି, ଏଇ ଗୋରୁଚରା ବଣକୁ ଗଲା ବୋଲି କାଇଲ୍ ହେଇଗଲା ?"

ସବୁ ଥମ୍ ହେଇଯାଏ । କିଏ ସେ ମା' କେଜାଣି ? ସବୁ ମା' ତ ତରୁ ପାଇଁ ଏକାପରି ସେନେହି । ବାଛୁରିକୁ ଜିଭ ଲଗେଇ ଚାଟିଲା ପରି ସେମାନେ ତରୁକୁ ଆଉଁଶନ୍ତି । ଘରେ ବସେଇ ସୁଆଦ ସୁଖୁମ ଖୁଆନ୍ତି । ତା' ଦିହରେ ମାଛି ବସିଲେ ସହିପାରନ୍ତି ନାହିଁ ।

କାହିଁକି ଏମିତି ସେମାନେ ହୁଅନ୍ତି କେଜାଣି ? ନିଜ ପୁଅଠୁ ବଳି କ'ଣ ତରୁଠି ଏମିତି ଅଛି, ଯାହା ତାଙ୍କୁ ତରଳେଇ ଦିଏ !

ତରୁ ନିଜେ ବି ବୁଝିପାରେ ନାହିଁ, କି ବୁଝେ କେଜାଣି ! ସେ ସମସ୍ତଙ୍କର ସ୍ନେହରେ ଗାଧାଏ, ସ୍ନେହ ଭୁଞ୍ଜେ ।

ନୂଆ ଭୁଆଶୁଣୀ ରାଇ । ମୁହଁବାଟେ ବୟସ ଉତୁରି ପଡୁଚି । ସେ ଅଞ୍ଚଳରେ ସେ ହେଉଚି ହୀରା । ଏମିତି ସୁନ୍ଦରୀ ଯେ ନାହିଁ ନ ଥିଲା ନୋହିବ । ବାହା ହେଇଚି ଯାହାକୁ, ସେଇଟା ଗୋଟାଏ ହୁଣ୍ଡା । ଭଲମନ୍ଦ କିଛି ବୁଝେ ନାହିଁ । ବଳଦ ପରି ଖଟେ । ନିର୍ଘାତ୍ ଖାଏ ଆଉ ଶୁଏ । ରାଇକୁ ବିଭୋର ହୋଇ ଚାହେଁ, ତା'ପରେ ଶୋଇଯାଏ । ରାଇକୁ ନିଦ ହୁଏ ନାହିଁ । ସେ ଶୋଇବା ଖଟରୁ ଉଠି ଝର୍କା ପାଖରେ ଠିଆ ହୁଏ । କାକର ପବନ ଦେହରେ ମୁହଁରେ ବାଜିଲେ ଭଲ ଲାଗେ । ଆକାଶରେ ନିର୍ମଳ ଜହ୍ନ ଦେଖିଲେ ଭଲ ଲାଗେ । କିନ୍ତୁ କାହିଁକି କେଜାଣି ତାଙ୍କୁ ଛଟପଟ ଲାଗେ । କୋଉଠି ଗୋଟେ ଭୋକକଲା ପରି, ଶୋଷ କଲା ପରି ଲାଗେ । ଅଥଚ ଖାଇଲେ ପିଇଲେ ମେଣ୍ଟେ ନାହିଁ । ସେ ମନ ମାରି ବସିରହେ । ଶାଶୁ-ନଣନ୍ଦ ପଚାରିଲେ କିଛି କହେ ନାହିଁ ।

ଦିନେ ରାଇ ଝର୍କାବାଟେ ଚାହିଁ ରହିଥାଏ । ବେଳବୁଡ ସମୟ । ଟୋକୀ ନଣନ୍ଦ ତା' ପଛରେ ଠିଆ ହୋଇ ଓହଟି ଚାହେଁ । ଦାଣ୍ଡ ସେମୁଣ୍ଡରୁ ଜଣକୁ ଆସୁଥିବା ଦେଖି ଖୁସି ହୋଇଯାଏ ।

– "ଦେଖିଲ ଭାଉଜ ସେ କିଏ ଆସୁଚି ?"

– "ମୁଁ କି ଜାଣେ ସେ କିଏ ଆସୁଚି ? କାଇଁ, କୋଉଠି ?"

– "ଦାଣ୍ଡକୁ ଚାହିଁଲେ ତ' ସେଇ ଦିଶୁଚି । ସେ ଟୋକାର ଠାଣି, ତା'ର ଚାଲି, ତା' ହସ,

ତା' ଚେହେରା ସବୁ ନିଆରା ।"

ରାଈ ତା' ନଣନ୍ଦ ମୁହଁକୁ ଚାହିଁ ଅଳ୍ପ ହସିଦିଏ । କହେ, "କାଇଁ, କିଏ, କୋଉଠି ଆସୁଚି ?"

– "ଏମିତି ଦେଖି ନ ଦେଖିଲା ପରି କ'ଣ ହଉଚ ମ! ହେଇ ପରା ସେ ଆସୁଚି । ଶାଳ ଗଜା ପରି ସେ ସୁନ୍ଦରିଆ ଟୋକା । ଆମକୁ କଣ୍ଟେଇ କୋଳି ଖୁଆଇବାକୁ ବଣକୁ ନେଇଥିଲା । ମୁଁ ତା' ସାଙ୍ଗେ କେତେ ଖେଳିଚି । ଭାରି ବଢ଼ିଆ ଟୋକା । ତା' ନାଁ ତରୁ!"

କେହି କିଛି ନ କହି ନୀରବ ଚାହିଁ ରହନ୍ତି । ସେ ପାଖେଇ ଆସୁଥାଏ । ଏମାନଙ୍କ ଆଖିରୁ ପଲକ ଲିଭିଯାଉଥାଏ ।

ନଣନ୍ଦ ବୁଲିପଡି ଟରବର ଧାଇଁଯାଏ ।

"ମୁଁ ଯାଉଚି ତାକୁ ଡାକିବି ଆମ ଘରକୁ ।"

ରାଈ ହାତ ଗୋଡରେ ଅବଶ ବୋଧ କରେ । "ଏ ଅଭିଲା ଝିଅ କାହିଁକି ଘରକୁ ଡାକୁଚି ତାକୁ ?"

ତରୁ ଆସି ଲାଜଲାଜ ହୋଇ ଠିଆହୁଏ । ରାଈକୁ ଚାହିଁ ଦେଇ ଆଖି ତଳକୁ କରିଦିଏ । ପୁଣି ଅନାଏ ।

– "ଦେଖୁନୁ ନା' ତରୁ ମୋ' ଭାଉଜ କେତେ ସୁନ୍ଦର! ଖାସ୍ ତାକୁ ଦେଖେଇବାକୁ ମୁଁ ତତେ ଡାକିଲି । – ଆଉ ଭାଉଜ ତମେ ଦେଖ ମୋ' ସାଙ୍ଗ କେତେ ବଢ଼ିଆ । ସେ ଆମକୁ ନୂଆ କୋଳି ଖୁଆଇବ କହି ଖୁଆଇନାହିଁ । କେଜାଣି ତମେ ସାଙ୍ଗରେ ଗଲେ 'ସୁନାରଗଡା' ଖୁଆନ୍ତା !" – ଛତରୀ ଟୋକୀ ଟାପରା କରି ହିଁ ହିଁ ହେଇ ହସେ ।

ତରୁ ଦୋଷୀଟିଏ ପରି ଦାନ୍ତ ନିକୁଟି ଠିଆ ହୁଏ । ରାଈକୁ କାକୁସ୍ଥ ହେଇ ଚାହିଁ ରହେ । ତା'ର ସେ ଫଟିକ ପରି ଅପୂର୍ବ ଛଳଛଳ ଆଖିରେ ।

ରାଈ ସତେ କେତେ ନିଆରା । ଏମିତି ତ ଆଉ କେହି ନୁହନ୍ତି । ଝିଅମାନେ ବଡହେଲେ କ'ଣ ଏମିତି କେବେ ଦିଶନ୍ତି ?...

ଅଧା ଜାମା, ଅଧା ପେଣ୍ଟରେ ତରୁର ହାତ ଗୋଡ କେତେ ସଳଖ, ସୁନ୍ଦର, ଲହୁଣୀ ରଙ୍ଗରେ କେତେ ଚିକ୍କଣ । କି ଆଖି ଆଉ ମୁହଁ ଏ ଟୋକାର !...

କ'ଣ ହୁଏ କେଜାଣି ଚାଲିଗଲା ବାଟରେ ତରୁ ରାଈ ଘରେ ପଶିଯିବାର ଲୋକେ ଦେଖନ୍ତି । ବେଳ ଅବେଳରେ ତା' ଘରୁ ବାହାରି ଆସିବାର ବି ଦେଖନ୍ତି । ଆଖି ଠରାଠରି ହୁଅନ୍ତି । ଚୁପ୍‌ଚାପ୍ ହୁଅନ୍ତି ।

– "ତରୁ ସେଠି ପାଠ ପଢ଼ିବାକୁ ଯାଉଥିବ । ରାଈ ଦଶମ ପଢ଼ିଛି । ତରୁଠୁ ବେଶୀ ଜାଣେ ।"

– "ତରୁ ତା' ବୟସକୁ କେତେ କଥା ଜାଣିଲାଣି । ସେ କେତେ ସୁନ୍ଦର କହିପାରେ । ସେ ରାଈକୁ ତା' କଥାରେ ମୋହି ଦଉଥିବ । ଫୁଲ ଡେମ୍ଫରୁ ମହୁ ଶୋଷିବା, ନଡା ଡାଙ୍ଗରେ ତୁରୀ ବଜେଇବା ସବୁ ତ ରାଈ ପାଇଁ ଅପୂର୍ବ ନା!"

ତରୁ ଆଉ ସାଙ୍ଗମାନଙ୍କୁ ଧରି ବଣ ପାହାଡ ବୁଲୁନାହିଁ । ଝିଅଙ୍କ ସାଙ୍ଗରେ ପୁଚି ଖେଳୁନାହିଁ । ପୁଅମାନେ ଥଟ୍ଟା କରନ୍ତି, "କିରେ ତରୁ ତୁଟା ମାଇକିନିଆ ମେଳରେ କ'ଣ ରହୁଚୁ ? ମାଇଚିଆଟା !"

ଝିଅ ଟାପରା କରନ୍ତି – "ଆରେ ତରୁ, ଆମକୁ ତ ସୁନାରଗଡା ଖୁଆଇଲୁ ନାହିଁ, ଲୁଚେଇ ଲୁଚେଇ ଆଉ କାହାକୁ ଦଉଚୁ କି ?"

ସେ ଅଞ୍ଚଳ ସାରା ତରୁର ଚର୍ଚ୍ଚା ହୁଏ । ସପକ୍ଷରେ । ବିପକ୍ଷରେ । କିନ୍ତୁ ଉଭୟ ଖୁବ୍ ଆପଣାପଣରେ ।

ଦିନେ ରାଷ୍ଟ୍ର ହୋଇଯାଏ ଯେ ତରୁ ଗାଁ ଛାଡି ଚାଲିଯିବ, ନଈ ଆରପାରି ରାଜଧାନୀକୁ । ପାଠ ପଢିବାକୁ । ବଡ ପାଠ । ଉଚ୍ଚ ପାଠ । ଅପହଞ୍ଚ ପାଠ ।

"କାହିଁକି ଯିବ ! ଏଠି କ'ଣ ସେ ପାଠ ନାହିଁ ?"

ତା ମା' ତ ତାକୁ ଛାଡିବାକୁ ଚାହୁଁ ନାହାନ୍ତି । ଝିଅ ପୁଅ କେହି ଚାହୁଁ ନାହାନ୍ତି । ସାନ ବଡ କେହି ଚାହୁଁ ନାହାନ୍ତି । ତରୁ ନିଜେ ବି ଚାହୁଁନାହିଁ । ପଚାରିଲେ କିଛି କହୁନାହିଁ ।

ଆଜି ହେଲା ଶନିବାର । ଆର ଶନିବାରକୁ ତରୁ ଏଠି ନଥିବ ।

ସାଙ୍ଗ ସୁଖ ସବୁ ତରୁକୁ ବେଢି ଯାଆନ୍ତି । ବଣଭୋଜିକୁ ଡାକି ନିଅନ୍ତି । ତରୁ ବଣଭୋଜିରେ ମଜିଯାଏ । ସମସ୍ତେ ମଜି ଯାଆନ୍ତି । ଖେଳରେ ହାଲିଆ ହୋଇ ଭୋକବେଳେ ଯେ ଯାହାଘରୁ ଆଣିଥିବା ପୁଟୁଳା ଫିଟାନ୍ତି । ବଡ ଝିଅମାନେ ପୁଅଙ୍କ ସାଙ୍ଗରେ ମିଶନ୍ତି ନାହିଁ । ହେଲେ ଆଜି କଥା ନିଆରା । ତରୁ କ'ଣ ଆଉଥରେ ବଣଭୋଜିକୁ ଆସିବ କି ?

ଗାଈର ନଣନ୍ଦ ତା' ପୁଟୁଳା ଫିଟେଇ କହେ: ଯା ଭିତରେ ସାନ ପୁଟୁଳାଟି ଖାସ୍ ତରୁ ପାଇଁ । ବାକି ଯାହା ଅଛି ସେଇଟା ବଣଭୋଜିରେ ସାମିଲ ହେବ ।

ତରୁ ଫିଟେଇ ଦେଖେ । ଅନ୍ୟମାନେ ଓହଟି ଦେଖନ୍ତି । ତା' ଭିତରେ ସଜଛେନା, କସି ନଡିଆ କୋରା ଆଉ ଚିନି । ଛୁଇଁଲେ ନରମ । ଖାଇଲେ ମିଠା । ତରୁର ଭାରି ପ୍ରିୟ ।

ତରୁ ପ୍ରଶ୍ନ ପଚାରିବା ଆଖିରେ ସେ ଝିଅକୁ ଚାହେଁ । ସେ କହେ "ଭାଉଜ ପଠେଇଚି" ।

ରବିବାର । ସୋମବାର ।

ମଙ୍ଗଳବାର ଦିନ ଅଚାନକ ମେଘ ଘୋଟିଆସେ । ବେଳ ଦୁଇଘଡିକୁ ସୁଦ୍ଧା ରାତି ଥିଲା ପରି ଲାଗେ । ରହି ରହି ବର୍ଷା ହୁଏ । କେମିତି ଗୋଟାଏ କାଉଁଳିଆ ଉତରା ପବନ ଉଲାରି ପକାଏ ଗଛର ତାଳପତ୍ର, ନୁଆଁଣିଆ ଚାଳଘରର ନଡା ଛାତ । କେହି ପଦାକୁ ବାହାରି ପାରନ୍ତି ନାହିଁ ।

ଘର ଭିତରେ ଗୁନ୍ଧି ହେଇ ବସି ରହିବା ତରୁର ଅଭ୍ୟାସ ନୁହେଁ । ସେ ଖଜ୍‌ବଜ୍ ହଉଥାଏ । କେମିତି ଟିକିଏ ଦାଣର ଏମୁଣ୍ଡ ସେମୁଣ୍ଡ ଘେରାଏ ବୁଲିଆସନ୍ତା । ବର୍ଷା ପାଣି କୋଉଠି ଟାଲ ହୋଇ ଜମିଛି ଆଉ ନଈପାଣି କୋଉଯାଏ ଉଠିଲାଣି ଥରେ ଦେଖିଆସନ୍ତା ।

ଟିକିଏ ଛାଟରା ଦେଖି ସେ ଘରୁ ଖସିଆସେ । ମେଘ ତଥାପି କୁଣ୍ଡା ଝାଡୁଥାଏ ।

– "ଆରେ ଏ ପାଗରେ କୁଆଡେ ଯାଉଚୁ ?" ପଚାରନ୍ତି ମା' ।

– "ଟିକେ ଘେରାଏ ବୁଲି ଆସିବି । ବସି ବସି ଗୋଡହାତ ବାନ୍ଧି ହେଲା ପରି ଲାଗୁଚି ।"

– "ବେଗି ଆସିବୁ । ଖଣ୍ଡକ୍ଷୀର ସାଙ୍ଗରେ ସରୁଚକୁଳି ସଜିଲ୍ କରୁଚି, ଆସିଲେ ଖାଇବୁ ।" ହରିଣ ଛୁଆ ପରି ତରୁ ପାଣି ଚକ୍‌କା ସବୁ ଡେଇଁ ଡେଇଁ ଯାଉଥାଏ । ସେମୁଣ୍ଡ ବାଟମଙ୍ଗଳା ଯାଏଁ ପହଞ୍ଚ ଆଉ ଆଗକୁ ଯାଇପାରେ ନାହିଁ । ଆଉ ଅସରାଏ ମେଘ ନଈଆଡୁ ପାହାଡରୁ ମାଡିଆସେ ।

ଯେତେ ଧାଇଁଲେ ବି ତରୁ ମେଘକୁ ଟପି ପାରେନାହିଁ । ପାଖ ପିଣ୍ଡା ଦେଖି ଚଢିଯାଏ । ତା'ପରେ ପଛେ ଟପ୍‌ଟପ୍ ମେଘ ଅଜାଡିଦିଏ । ଦେଖିଲା ବେଳକୁ ସେ ରାଇର ଦୁଆର ମୁହଁରେ ଆଶ୍ରା ନେଇ ଠିଆ ରହିଥାଏ ।

– "ଆରେ ତରୁ! ଏଠି କାହିଁ ଠିଆ ହେଇଚୁ? ଭିତରକୁ ଆ' ?"

– "ଓଦା ହେଇ ଯାଇନାହୁଁ ତ ?"

– "ଭିତରକୁ ଆସ !"

ତିନୋଟି ନାରୀ ସ୍ୱରରେ ତାକୁ ସେମାନେ ଡାକନ୍ତି । ଅଗତ୍ୟା ତରୁ ଘରେ ପଶି ସେମାନଙ୍କ ବୋଲ ମାନି ଖଟ ଉପରେ ଗୋଡ ଲମ୍ବେଇ ବସେ । ନଣନ୍ଦ ଭାଉଜ ଦି'କଡରେ ତାକୁ ଲାଗି ବସିଯାନ୍ତି ।

– ଏଇ ଶନିବାର ତ ତରୁ ଚାଲିଯିବ । ହେଲେ ପୂଜାଛୁଟିକୁ ଆସିବ ନା! – ମଝିରେ ତିନିଟା ମାସ । ସେ କଥା ଦେଇଚି ନିଶ୍ଚେ ଆସିବ!

ଅସରା ପରେ ଅସରା ଦୁମୁକାଣି ବର୍ଷା । ମେଘ ଅନ୍ଧାର । କ'ଣ କରିପାରିବ ତରୁ ? – ଏଥିରେ କ'ଣ ଦାଣ୍ଡକୁ ବାହାରି ପାରିବ ? – ଆକାଶ ସାରା ମେଘ । ଚାରିଆଡ ଓଦା ସରସର । ତରୁ ରାଇ ଘରେ ସେ ନିଘଞ୍ଚ ପହରଟା ନ ବିତେଇ ଚାରା କ'ଣ ?

ରେଖା ପାଖ ପଡିଶାରୁ ଆସି ତରୁ ଘରେ ଲାଖିଯାଇଚି । ବର୍ଷାରେ ବାହାରି ପାରୁନାହିଁ । ତରୁର ମା' ଚାହିଁ ରହିଛନ୍ତି । କୁଆଡେ ଯାଇଚି ସେ ଟୋକା ଏ ପାଗରେ ?

– "ମୁଁ ଜାଣିଚି ସେ କୋଉଠି ଲାଖିଥିବ!" କହୁଚି ରେଖା ।

– "ବର୍ଷା ବିଜୁଳି, ମେଘ ଅନ୍ଧାର! କେମିତି ଆସିବ ଟି ମୋ' ତରୁ!"

– "ଟିକିଏ ସତାରି ଯାଅ! ମେଘ ଥମି ଗଲେ ମୁଁ ଝପଟିଯିବି, ସେ ରାଈ ଭାଉଜ ଘରକୁ । ତରୁକୁ ବଳେଇ ଆଣିବି ତମ ପାଖକୁ ।"

X X X X

ସତକୁ ସତ ଶନିବାର ଦିନ ତରୁ ସେ ଦାଣ୍ଡ ଘାଟରୁ ଅଦୃଶ୍ୟ ହୋଇଯାଏ । ଖାଁ ଖାଁ କରେ ସେ ଖଣ୍ଡମଣ୍ଡଳ, ସେ ସାରା ରାଜ୍ୟ! ସାନ ବଡ ସମସ୍ତେ ଥମଥମ । ଗଛପତ୍ର ନିଶ୍ଚଳ ଠିଆ ରହିଯାନ୍ତି । ଆକାଶରେ ଭାରି ଭାରି ମେଘ । ପବନ ନାହିଁ କି ବର୍ଷା ନାହିଁ । ଖାଲି ଫେଣ ଗଜଗଜ ନଈଟା କୂଳ ଭାଙ୍ଗୁଚି । ତା'ର ପୁରୁଣା କଳକଳ ଭିତରେ ଶୁଭୁଚି "ଯାଉଚି ମିତ, ସଇ ସଙ୍ଗୀତ, ଲେଉଟ ଫେରିବି ନାଇଁ ।"

ଯେ ଯାଏ, ସେ ସତେ କ'ଣ ଆଉ ଫେରେ କି! □

# ଜୋକର୍ସ

ମୌସୁମୀ ଅଧିବେଶନର ସମୟ ।

ଘମାଘୋଟ ମେଘ । ଯେକୌଣସି ସମୟରେ ଅଜାଡି ହୋଇପାରେ । କିନ୍ତୁ ହାଲ୍‌କୁ ରାସ୍ତାଘାଟ ଶୁଖିଲା । ପବନ ଭାରି ଭାରି ।

ଖୋଦ୍ ସରକାରଙ୍କ ମୁଖ୍ୟ ଫାଟକ ସାମ୍ନା ସେପଟେ ଗଛ ମୂଳେ ସେ ପରିବାରଟା କେତେବେଳେ ଆସି ବସିଯାଇଥିଲା କେହି ନିଘା କରିପାରିନଥିଲେ । ସନ୍ତ୍ରୀମାନେ କେବଳ ଫାଟକ ଜଗୁଆଳି । ରାଜରାସ୍ତା ଆରପଟେ କ'ଣ ହେଲା ନ ହେଲା ସେ ବିଚରାମାନେ କେମିତି କହିପାରିଥା'ନ୍ତେ ।

ବାଲିବସ୍ତା ଆଢୁଆଳରୁ ଦୁଇଜଣ ବନ୍ଧୁକ ଧରି ଜଗିଥା'ନ୍ତି କାଳେ ସେ ଶୂନ୍ୟ ରାସ୍ତାରେ ହଠାତ୍ ଶତ୍ରୁ ଆସିଯାଇପାରନ୍ତି । ରାତି ପାହାନ୍ତା ବେଳକୁ ପହରା ବଦଳି କରି ସେମାନେ ଠିଆ ହୋଇଯାଇଥିବେ । ବେଳ ପାଇନଥିବେ ମୁହଁ ଧୋଇବାକୁ । କାକର ପବନ ବାଜି ଯଦି ଆଖି ଘୋଡେଇ ହୋଇଗଲା ସେଥିରେ ତାଙ୍କର ଅବା ଦୋଷ କ'ଣ ?

ସେ ରାସ୍ତାରେ ବେଳା ଅନୁସାରେ ଗହଳି ହୁଏ ପୁଣି ବେଳା ଅନୁସାରେ ଖାଲି ହୋଇଯାଏ ।

ପାଗ ହେତୁରୁ ବେଳ ଜଣାପଡୁ ନଥାଏ । କିନ୍ତୁ ଚଳପ୍ରଚଳ ସେଇଠି ଅଟକି ଗଲା । ଥରେ ହାତଘଣ୍ଟାକୁ ଚାହିଁଦେଇ ତରତର ହୋଇ ସେ ଜଣକ ଓହ୍ଲେଇପଡି ପୁରୁଣା ଅଭ୍ୟାସରେ କାନ୍ଧରୁ କ୍ୟାମେରା ଖସେଇ ଆଣି ଗଛମୂଳେ ବସିଥିବା ସେ ପରିବାରର ଫଟୋଟାଏ ଆଗ ଉଠେଇ ନେଲା ।

ପାଖେଇ ଯାଇ ପଚାରିଲା,

କୋଉଠୁ ଆସିଛ ? କାହିଁକି ଆସିଛ ? ନାଁ କ'ଣ ?

କୌଣସି ପ୍ରଶ୍ନର କିଛି ଉତ୍ତର ନ ପାଇ କ୍ୟାମେରା ତଳକୁ କରି କହିଲା, "କିଓ କହୁନାହଁ କାହିଁକି ? ମୁଁ ପ୍ରେସ୍‌ବାଲା, ମୁଁ ତମ ଉପରେ ଗୋଟେ ଷ୍ଟୋରି କରି ଫଟୋ ସହିତ ଛାପିଦେବି ।" – ତା'ପରେ ସ୍ୱର ଦବେଇ ସାକୁଲାଇଲା – "କହ, ଯାହା ହେଲେ ଗୋଟେ କ'ଣ କହ, ତମ ନିଜ ଭାଷାରେ କହ, ମୁଁ ବୁଝିଯିବି ।"

ଆହୁରି ଚପା ସ୍ୱରରେ ବାଁ ଆଙ୍ଗୁଠିରେ ଟଙ୍କା ବଜେଇବାର ଇଙ୍ଗିତ କରି କହିଲା, "କିଛି ପଇସା ମିଳିବ, ଯଦି ମୁଁ କହିବା ଅନୁସାରେ କହିପାରିବ । କ'ଣ ବୁଝୁଛ ନା ନାହିଁ ? ଟଙ୍କା, ଟଙ୍କା!!"

କୌଣସି ଉତ୍ତର ନାହିଁ ।

ପୁରୁଷ ଲୋକଟି ମଇଳା ଧୋତି ଆଉ ହାତବାଲା ଗଞ୍ଜିଟିଏ ପିନ୍ଧିଛି । ମୁଣ୍ଡ ବାଳ ଅଲଗା । ଦାଢ଼ି । ଲୋକଟା ଖୁବ୍ ଦବିଯାଇଛି, ହାଲିଆ ହେଇଯାଇଛି । କିନ୍ତୁ ସେ କାଙ୍ଗାଳ ନୁହେଁ, ଭିକମଗା ନୁହେଁ ।

ସ୍ତ୍ରୀ ଲୋକଟି ସେଇଭଳି ମଇଳା ରଙ୍ଗଛଡା ଶାଢ଼ିଟିଏ ପିନ୍ଧିଛି । ଉଦାସ ଦେଖା ଯାଉଛି । ବୟସ ଅତି ବେଶି ହେଲେ ତିରିଶ । ଗଢଣ ଅଛି ସ୍ୱାସ୍ଥ୍ୟ ଅଛି, ଚେହେରା ବି ମନ୍ଦ ନୁହେଁ ।

ପିଲାଟା ଏମାନଙ୍କୁ ଚାହିଁଲେ ବେଶୀ କାଇଲା ଦିଶୁଚି –

ଏମାନେ କନା ପୁଟୁଳିଟିଏ ନେଇ ବସିଛନ୍ତି । ନିଃସ୍ୱ, ଅସହାୟ, କିନ୍ତୁ...

କିନ୍ତୁ କଦାପି ଦାଣ୍ଡର ଭିକାରୀ ନୁହଁନ୍ତି ।

ତା'ହେଲେ... ସାମ୍ବାଦିକଙ୍କ ଆଖି ଉଜ୍ଜ୍ୱଳ ଦିଶିଲା । ସେ କଣଟାଏ ପାଇଗଲା ଭଳି ହଠାତ୍ ବଡ ପାଟିରେ ଘୋଷଣା କଲେ –

"ତୁମେ ନିଶ୍ଚୟ ବିସ୍ଥାପିତ ପରିବାର !"

ଏତିକିରେ କ'ଣ ହେଲା କେଜାଣି – ଫାଟକ ଆଡକୁ ମୁହାଁଉଥିବା କିଛି ଲୋକ ଏଇ ଆଡକୁ ବୁଲିପଡିଲେ ।

ବିସ୍ଥାପିତ, ବିସ୍ଥାପିତ, ବିସ୍ଥାପିତ ପ୍ରତିଧ୍ୱନି ସେ ପରିବାରଟିକୁ ଘେରିଗଲା ।

ଫଟୋ ଉଠିଲା ଚାରିଆଡୁ । ଗହଳି ଭିତରୁ ଦୁଇ ଜଣ ସେମାନଙ୍କ ଆଗରେ ଆଣ୍ଠେଇ ପଡିଲେ । ଲୋକଟିର ମୁହଁ ପାଖରେ ମାଇକ୍ ଲଗେଇ – "ହାଁ... ରୋଲିଂ... କହନ୍ତୁ ଆପଣଙ୍କ କଥା କୋଉଠୁ କେମିତି କିଏ ଆପଣଙ୍କୁ ବିସ୍ଥାପିତ କଲା ?"

ତା' ସହଯୋଗୀ ମୁଭି କ୍ୟାମେରାର ଆଖି ଖଞ୍ଜି ଅପେକ୍ଷା କଲା ।

"କହନ୍ତୁ, କୌଣସି ଭୟ କରିବାର ନାହିଁ – ଆମେ ଅଛୁ । ଆପଣଙ୍କ ଷ୍ଟୋରିକୁ ପ୍ରଥମ ପୃଷ୍ଠାରେ ଛାପି ହୁଲସ୍ଥୁଲ୍ କରିଦବୁ ।"

ସମ୍ପୂର୍ଣ୍ଣ ନୀରବ ନିସ୍ପନ୍ଦ ସେ ଲୋକଟି କେବଳ ସ୍ଥିର ଦୃଷ୍ଟିରେ ତଳକୁ ଚାହିଁ ରହିଲା ।

ମାଇକ୍‌ବାଲା ସେ ସ୍ତ୍ରୀ ଲୋକଟି ଆଡକୁ ମାଇକ୍ ନେଇଗଲା । କ୍ୟାମେରା ବାଗେଇଗଲା ସେଇଆଡେ । କିଛି ସମୟ ତାକୁ ଚାହିଁ ରହିଲା ପରେ ଶୁଭିଲା – "ଆପଣ କହନ୍ତୁ – ଆପଣଙ୍କ ସହିତ କେମିତି ସେମାନେ ବ୍ୟବହାର କଲେ, କିଏ କେମିତି ଟଣାଓଟରା କଲା – ସବୁ ଖୋଲି କହନ୍ତୁ । ଡରନ୍ତୁ ନାହିଁ । କହନ୍ତୁ ।"

ସେ ବି ନୀରବ । କେବଳ ସେ କନା ପୁଟୁଳିଟିକୁ ଆସ୍ତେ ପାଖକୁ ଘୁଞ୍ଚାଇ ନେଇ ତା' ଦୁଇ ହାତ ଥାପି ସେ ସେମିତି ତଳକୁ ଚାହିଁ ବସି ରହିଲା ।

ଗହଳି ପଛରୁ ଗୋଟା କଡା ଆବାଜ୍ ଶୁଭିଲା –

"ଆରେ ବନ୍ଦ କର ଏ ପ୍ରହସନ । ତୁମେ କ'ଣ ବୁଝିବ ଏମାନଙ୍କ ଦୁଃଖ ? ଏମାନେ

ଉତ୍‌ପୀଡିତ, ଅତ୍ୟାଚାରିତ ହୋଇ ମୂକ ପାଲଟି ଯାଇଛନ୍ତି ।"

ମୁଁ ଏମାନଙ୍କୁ ଜାଣେ । ଏମାନେ ମୋ' ଲୋକ । ମୁଁ ଏମାନଙ୍କ ଲୋକ ।

ମୁଁ ଦେଖିଚି କେମିତି ଏମାନଙ୍କୁ ଭିଟାମାଟିରୁ ଓଟାରି ନିଆଗଲା, ବୁଲ୍‌ଡୋଜର ଲଗେଇ ତାଙ୍କ ବସା ଭାଙ୍ଗିଦିଆଗଲା ।

ବକ୍ତାଙ୍କୁ କ୍ୟାମେରା ଘେରିଗଲେ ।

"ଆପଣ କହନ୍ତୁ, ଏମାନେ କିଏ! ଘର କୋଉଠି! ନାଁ କ'ଣ ?"

"ମୁଁ ଜାଣେ ବିସ୍ଥାପିତ ହେବାର ଦୁଃଖ, ସେମାନେ ଲୁହ ନ କାନ୍ଦି ରକ୍ତ କାନ୍ଦୁଛନ୍ତି ।"

"ଆଜ୍ଞା ସେମାନଙ୍କ ନାଁ କ'ଣ ? କହନ୍ତୁ, କୋଉଠୁ ସେମାନେ ଆସିଛନ୍ତି । କାହିଁକି ଏଠିକି ଆସିଛନ୍ତି, କେମିତି ଆସିଛନ୍ତି ନା କିଏ ତାଙ୍କୁ ଆଣିଛି ?"

"ମୁଁ ଜାଣେ ତୁମେ ଖାଲି ନାଁ ଗାଁ ଶୁଣିବାରେ ଆଗ୍ରହୀ । ଆରେ ସେଥିରେ କ'ଣ ଥାଏ ? ଅସଲ କଥା ହେଲା ସମସ୍ୟା, ସଂକଟ । ଏମାନଙ୍କ ଘର ନାହିଁ, ଏମାନେ ରହିବେ କୋଉଠି । ଖାଇବେ କ'ଣ ? ପିନ୍ଧିବେ କ'ଣ ? କ'ଣ ହେବ ଏମାନଙ୍କ ଭବିଷ୍ୟତ ?"

"ଆପଣ ତା'ହେଲେ ସେମାନଙ୍କୁ ଜାଣନ୍ତି ନାହିଁ ?"

ସେ କିଛି କହିବା ପୂର୍ବରୁ ଆଉ ଜଣେ ତାଙ୍କ ସ୍ୱର ଶୁଣେଇଲେ –

"ସେ ତାଙ୍କୁ ଜାଣନ୍ତି ନାହିଁ ବୋଲି କ'ଣ ଜଣାପଡିଯାଉ ନାହିଁ ଯେ ତାଙ୍କୁ ପଚାରୁଛ ? ସେ ସେମିତି ଉପରେ ଉପରେ ଭାଷଣ ମାରନ୍ତି । ମୁଁ କହୁଛି ଶୁଣ ସେ କିଏ ?"

ସବୁ ତାଙ୍କୁ ଘେରିଗଲେ ।

"ସେମାନେ ଆଦୌ ବିସ୍ଥାପିତ ନୁହନ୍ତି । ବିସ୍ଥାପନର ଇତିହାସ ମୁଁ ଜାଣେ । ପ୍ରକୃତରେ ବିଛିନ୍ନାଞ୍ଚଳ ଲୋକେ ହିଁ ପ୍ରଥମ ବିସ୍ଥାପିତ । ତାଙ୍କର ସମାଧାନ ହେଇନାହିଁ । ହେବନାହିଁ । ହୀରାକୁଦ, ରାଉରକେଲା, ଦାମନଯୋଡିର ବିସ୍ଥାପିତ ଏ ଯାଏଁ ଅନେଇ ବସିଛନ୍ତି ତାଙ୍କ କଥା କିଏ ବୁଝିବ ବୋଲି । ବାପ ମରି ପୁଅ ବୁଢା ହେଲାଣି । ନୀତି ଅମଳରେ ଯଦି ନ୍ୟାୟ ମିଳିପାରେ ଆମେ ହିଁ ତାହା ଦେବୁ ।"

"ଆପଣ ଏ ପରିବାର କଥା କହନ୍ତୁ, ଯଦି ଜାଣିଛନ୍ତି... ଏଣ୍ଡୁତେଣ୍ଡୁ କାହିଁକି ବାଆଁରଉଛନ୍ତି ।"

"ସେଇ କଥା କହୁଛି ପରା । ଏମାନେ ବିସ୍ଥାପିତ ନୁହଁନ୍ତି, କାରଣ ବିସ୍ଥାପନ କ୍ରିୟା ହିଁ ଆରମ୍ଭ ହୋଇନାହିଁ । ଜମିଦଖଲ ଚାଲିଛି, କ୍ଷତିପୂରଣ ଚାଲିଛି । ସବାଶେଷରେ ଦେଖାଯିବ କିଏ ବିସ୍ଥାପିତ କି ନୁହେଁ ।"

"ଆରେ ସରକାରୀ ଶୁଆ ଯେତିକି ଶିଖିଛନ୍ତି ସେତିକି ବୋଲୁଛନ୍ତି । ଛାଡନ୍ତୁ ଆଜ୍ଞା ଏମାନଙ୍କୁ ଆପଣ ଜାଣନ୍ତି କି ?"

"ଏମାନେ ପରା ସନ୍ତ୍ରାସବାଦୀଙ୍କ ଶିକାର । ତାଙ୍କ ଗାଁରେ ନିଆଁ ଲାଗିଛି । ଲୋକ ମରିଛନ୍ତି । ଅନାଥ ହେଇଛନ୍ତି । ସନ୍ତ୍ରାସବାଦ ମାନବ ଜାତିର ଶତ୍ରୁ । ମାନବ ସଭ୍ୟତା, ବିକାଶର ଶତ୍ରୁ ।"

"ଆହେ ବନ୍ଦ କର ଭାଷଣ! ଭାଷଣ ମାରି ମାରି ଦେଶଟାକୁ ମାରିସାରିଲାଣି । ସବୁ ଫାଇଦା ମାରିସାରିଲାଣି । ସବୁ ସମ୍ପତ୍ତି ମାରି ସାରିଲାଣି । କ'ଣ ଅଛି ଆଉ ମାରିବାକୁ ? ତମେ ସବୁ ମାରୁ, ସାରୁ ଭିତରେ ମାରୁ, କଖାରୁ ଭିତରେ ବି ମାରୁ, ଫାଇଲ୍ ତହବିଲ୍‌ରେ ମାରୁ, ବାଲି ସିମେଣ୍ଟ୍‌ରେ ମାରୁ, ଭାଙ୍ଗିବାରେ ମାରୁ, ଗଢିବାରେ ମାରୁ, ଆମଦାନିରେ ମାରୁ, ରପ୍ତାନିରେ ମାରୁ, ଦେବାରେ ମାରୁ, ନେବାରେ ମାରୁ । ମାରୁ ସର୍କାର, ମୁର୍ଦ୍ଧାବାଦ, ମୁର୍ଦ୍ଧାବାଦ!!"

"ହଁ, ହଁ, ତମେ ନିଜେ ତ ଭାଷଣ ମାରିବା ଆଗେ ବନ୍ଦ କର! ଏ ପରିବାର କଥା କ'ଣ ଜାଣିଛ ଯଦି କହ ନ ହେଲେ ଚୁନିପଡ ।"

"ଆରେ ଭାଇ ଚୁନି ପଡିବୁ କେମିତି ? ସେମାନେ ତ ସବୁ ମାରି ଚାଲିଛନ୍ତି – ଆମକୁ କିଛି ନ ହେଲେ ଭାଷଣଟା ତ ମାରିବାକୁ ଦିଅ!"

ପରିହାସ ସମସ୍ତଙ୍କର ଉପଭୋଗ୍ୟ ହେଲା । ସେତେବେଳକୁ ଫାଟକ କଡରେ କିଛି ଗାଡି ଠିଆ ହୋଇସାରିଥିଲା । ସେଥିରୁ ସୃଷ୍ଟି ଟାଳିବା ପରି, ପୃଥ୍ୱୀ ଆନ ଆନ କରିଦେବା ପରି ଭଙ୍ଗୀରେ ଯୋଦ୍ଧାମାନେ ଓହ୍ଲେଇପଡି ଏ ଆଡକୁ ପଳାସି ଆସିଲେ । ଟ୍ରାଫିକ୍ ପୁଲିସ୍ ପରିସ୍ଥିତିର ଗୁରୁତ୍ୱ ଅନୁଭବ କରି ରାସ୍ତା ଦୁଇମୁଣ୍ଡ ଅବରୋଧ କରିଦେଲେ ।

ଜଣେ ସେଥିରୁ ପାଖେଇ ଆସି କହିଲେ –

"କାହିଁକି ହରତାଳ ଚାଲିଛି ? ବିଷୟ କ'ଣ ? – କୋଉ ଦଳ ? ନେତା କିଏ ?"

ତାଙ୍କ ଫଟୋ ଖଚଖଚ୍ ଉଠା ଚାଲିଥିଲା ।

କେହି ଜଣେ ତାଙ୍କ ପ୍ରଶ୍ନଯାକ ବୁଝିଗଲା ।

"ଏଇଟା ଆଜ୍ଞା କୌଣସି ହରତାଳ ନୁହେଁ ।"

"ତା'ହେଲେ ଏ ଗହଳି କାହିଁକି ? ମାଙ୍କୁଡିଆ ନ ସାପୁଆକେଳା ଖେଳ ଦେଖେଇବ ?"

କେହି ସେ କୌତୁକ ବୁଝିଲେ ନାହିଁ ।

"ଏଇଟା ହରତାଳ ନୁହେଁ, କିନ୍ତୁ ୟାକୁ ନେଇ ଯେକୌଣସି ଦଳ ହରତାଳ କରିପାରେ ?"

ଏତିକିରେ ଦ୍ୱିତୀୟ ମାତବ୍ବର ଠେଲି ପଶିଲେ –

"କଣ ହେଇଚି ମତେ କହ! – ହରତାଳ ଯାଏଁ କାହିଁକି କଥା ଯିବ ? ତା'ର ସମାଧାନ ଏଇଠି ହେଇଯିବ । ଆମେ ସମାଧାନ କରିଦେବା ।"

"ଆଜ୍ଞା ଏଇ ପରିବାର..."

"ଓ, ମୁଁ ଜାଣେ ଏ ପରିବାରକୁ ନେଇ ଆମର ଯେତେସବୁ ସମସ୍ୟା! ଶହେରେ ମାତ୍ର ଏକ ଦଶମିକ ସାତ ଭାଗ ପରିବାର ଜନ୍ମ ନିୟନ୍ତ୍ରଣ କଲେ ଯାହା ହୁଏ..."

"ନାଇଁ ସାର୍, ଏ ପରିବାରର ମାତ୍ର ଗୋଟିଏ ପିଲା!"

"ସାବାସ୍ । ତା'ହେଲେ ସମସ୍ୟା କୋଉଠି! କାହିଁକି ହରତାଳ ହେଲା ?"

"ହରତାଳ ହେଲାଣି କୋଉଠି ? ହେଇପାରେ । ଆପଣ ଘଟଣାଟା ପୂରା ଶୁଣିଲେ ସିନା

ତେଣିକି ଯୋଉ କଥା ।"

ତୃତୀୟ ପ୍ରଶସ୍ତ ମେଦମୂର୍ତ୍ତି ପଶି ଆସିଲେ, "ମତେ କହ, ମୁଁ ଶୁଣିବି ।"

"ସବୁ ଦୁର୍ନୀତି, ଦୁରାଚାର, ଭ୍ରଷ୍ଟାଚାର, ଲାଞ୍ଚ, ଗିସ୍‌ପତ୍, ଠକେଇ, ଜୁଆ, ଚୋରି, ଧର୍ଷଣ, ଡକାୟତି, ରାହାଜାନି, ଯାବତୀୟ ଅପରାଧ ସବୁ ମୋ' ବିଭାଗ ।"

ଚାପା ହସର ଗୁଞ୍ଜରଣ ଭିତରେ ପଛରୁ ଶୁଣାଗଲା, "ସତ୍ ସତ୍!"

ଜଣେ ବୟସ୍କ ଟିପାଖାତାବାଲା ପାଖେଇ ଆସିଲେ ।

"କଥା କ'ଣ କି ସାର୍, ଗୋଟିଏ ଉଦ୍‌ବାସ୍ତୁ ପରିବାର କାହୁଁ ଆସି ଏ ଗଛ ମୂଳେ ଆଶ୍ରା ନେଇଛନ୍ତି । ସେମାନଙ୍କୁ ଚିହ୍ନଟ କରାଯାଇ ପାରୁନାହିଁ । ସେମାନେ ବି କିଛି କହୁନାହାନ୍ତି । ଅନୁମାନ କରାଯାଉଛି... ସେମାନେ ବିସ୍ଥାପିତ ପରିବାର ହୋଇପାରନ୍ତି, କିମ୍ବା ସନ୍ତ୍ରାସବାଦୀଙ୍କ ଅତ୍ୟାଚାରରେ ସର୍ବହରା ବି ହୋଇପାରନ୍ତି ।"

"ମୋଟ ଉପରେ ତା'ହେଲେ କିଛି ସମସ୍ୟା ନାହିଁ । ପୁଲିସ୍ ଲଗେଇଦେଲେ ସେମାନେ ଶୁଙ୍ଘି ଠଉରେଇ ଦେବେ ଏମାନେ କିଏ ! କିଏ ଜାଣିଛ ତନଖି ପରେ କ'ଣ ବାହାରିବ ।"

"ମାନେ ଆପଣ କ'ଣ କହିବାକୁ ଚାହୁଁଛନ୍ତି ?"

ସବୁ କ୍ୟାମେରା, କଲମ, କାଗଜ ତାଙ୍କୁ ଘେରିଯାଇଥିଲେ –

"ମାନେ; ସେମିତି କିଛି ନୁହେଁ, ତଥାପି କହିହେବ ନାହିଁ । ଏମାନେ ଖୋଦ୍ ସନ୍ତ୍ରାସବାଦୀ ନ ହେଇଥିବେ କାହିଁକି ? ହେଇପାରେ ଏଥିରୁ ଜଣେ ମଣିଷ ବୋମା ! ହେଇପାରେ ଏମାନେ ଗୁପ୍ତଚର ?"

"ସେମିତି କାହିଁକି ଆପଣ ଭାବୁଛନ୍ତି ?"

"ହେଇପାରେ ଦୁଇ ବର୍ଷ ଯାଏଁ ବେତନ ପାଇନଥିବା ଏକ ଦୁଃସ୍ଥ ପ୍ରାଇମେରୀ ଶିକ୍ଷକ ପରିବାର ?"

"ଛଟେଇ ନୀତିରେ ଚାକିରି ହରେଇଥିବା ତଳିଆ କର୍ମଚାରୀ ।"

"ସଂରକ୍ଷଣ ଘେର ଭିତରେ ପଶିପାରିନଥିବା ମେଧାବୀ ଶିକ୍ଷିତ ବେକାର ।"

"ବନ୍ୟାରେ ସର୍ବହରା ନିଃସ୍ୱ ପରିବାର ।"

"ମହାବାତ୍ୟାରେ ଏଯାଏଁ ଥଇଥାନ ହେଇନଥିବା ପରିବାର ।"

ଗୋଟାଏ ଗୋଳ ଉଠିଲା । ଉଦ୍‌ବାସ୍ତୁ ପରିବାରର ଏ ଅବସ୍ଥା ପାଇଁ ଦାୟୀ ସମସ୍ତ ପରିସ୍ଥିତି, ସମସ୍ତ ବ୍ୟବସ୍ଥା, ଅନୁଷ୍ଠାନ, ସରକାରୀ, ବେସରକାରୀ କଳ, କାରଖାନା, ଦପ୍ତର, ଦପ୍ତରୀର ଉଲ୍ଲେଖ ଓ ତାଙ୍କ ବିରୋଧରେ ଅଭିଯୋଗ ଶୁଣାଗଲା ।

କଥା କ୍ରମଶଃ ଗରମାଗରମି ହେବ । ସେମାନେ ସପକ୍ଷ ପରପକ୍ଷରେ ଭାଗ ଭାଗ ହେଲା ପରି ଜଣାଗଲା । ସଂଗ୍ରାମ ରେଖା ଚିହ୍ନିତ ହୋଇଗଲା ପରି ଦୁଇ ମୁଖିଆ ଯୋଦ୍ଧା ନେତୃତ୍ୱ ନେଇଗଲେ । ପତ୍ରକାର ଫଟୋଗ୍ରାଫର୍ କେବେ ଏ ପାଖ ତ କେବେ ସେପାଖ ଭିତରେ ଚନ୍ତୀକଣ୍ଡା

ପରି ଲସର ପସର ହେଲେ ।

"ଇଏ କୋଉ ନୂଆ କଥା ? ନିର୍ଦ୍ଦୋଷଙ୍କ ମୁଣ୍ଡରେ ଅଠା ବୋଳି ନିଜେ ଖସିଯିବା ଯାଙ୍କର ପୁରୁଣା ଅଭ୍ୟାସ । ଏ ଦରିଦ୍ର ପରିବାରଟି ତାଙ୍କୁ ଗୁପ୍ତଚର ପରି ମଣିଷ ବୋମା ପରି ଦିଶିବା ସ୍ୱାଭାବିକ । ଯାଙ୍କ ମନ ଭିତରେ ଚୋର । ନିଜର ଦୁଇ ଆଖିକୁ ସାକ୍ଷୀ ରଖି ଯାହା ସବୁ କରିଛନ୍ତି ସେଥିରୁ ସେ ମୁକୁଳି ପାରୁନାହାନ୍ତି । ସ୍କାମ୍ ସ୍କାଣ୍ଡାଲ୍‌ର ଭୂତ ତାଙ୍କୁ ଗୋଡେଇଚି । କୁମ୍ଭୀର ପାଣି ଭିତରେ ଥିବା ଯାଏଁ, ଦିଶୁଚି ଦିଶୁନାହିଁର ସୁଯୋଗ ନେଇ ଗାଲୁ ପେଲି ହେବ । କିନ୍ତୁ ସେ କାଦୁଅ ସାଲୁବାଲୁ ଜନ୍ତୁଟା କୂଳରୁ ଉଠିଆସିଲେ ତାକୁ ଘୋଡେଇବାର ଉପାୟ ନାହିଁ । ଏଇଥିପାଇଁ ତାଙ୍କ ଭିତରୁ ଭୟ ଓହ୍ଲଉ ନାହିଁ । ତାଙ୍କ ଆଗରେ ପଛରେ ଷ୍ଟେନ୍‌ଗନ୍ ଧରି ଜଗୁଆଳି ପହରା ଦଉଛନ୍ତି । ତଥାପି ଗୋଟାଏ ନିରୀହ ପରିବାର ଭିତରେ ତାଙ୍କୁ ମଣିଷ ବୋମା ଦିଶୁଚି । ଜନତାକୁ ଏତେ ଡରୁଥିବା ଲୋକ କେମିତି ଜନନେତା ବୋଲାଉଚନ୍ତି କେଜାଣି ?"

"ସରିଲା ତ ତମର ମୁଖସ୍ଥ ଶୁଆ ଡାକ ! ଏଇ କଥା ଶୁଣି ଶୁଣି କାନ ବଧିରା ହେଇଗଲାଣି । ମୁଁ ନିଜେ ଏ ଭାଷଣ ଶହେ ଛପନ ଥର ଶୁଣିଛି ଯାଙ୍କଠୁ ! ଏଇମାନେ ଯଦି ସଚ୍ଚା ଜନନେତା, ଯାଙ୍କର କାହାକୁ ଡରଭୟ ନାହିଁ, ଏମାନେ କାହିଁକି ନକ୍ସଲ ଅଞ୍ଚଳକୁ ଯାଇପାରୁ ନାହାନ୍ତି ? ସେଇ ଲୋକଙ୍କ ଥଇଥାନ ପାଇଁ ସେଇଠି କୌଣସି ପ୍ରକଳ୍ପ କଥା ଉଠିଲେ, କାହିଁକି ନାରାବାଜି, ହରତାଳ କରିବାକୁ ଆଗଭର ହେଉଛନ୍ତି ? ଏମାନଙ୍କ ଭୁରୁଡି ସବୁ ବୁଝିଗଲେଣି – ଯାଙ୍କ ପାରିଲାପଣ ହେଲା ନିଜେ କିଛି କରିବେ ନାହିଁ । କାହାକୁ କରିବାକୁ ଦେବେ ନାହିଁ । ଏମାନଙ୍କ ଏକମାତ୍ର ଭରସା ଯେ ଲୋକେ ମନେ ରଖିପାରନ୍ତି ନାହିଁ । ଘା'ରେ ବଳକା ବାନ୍ଧିଗଲେ ହାଣଖିଆ କଷ୍ଟ ଭୁଲିଯାନ୍ତି, ହାଣିବା କଟୁରୀକୁ ବି ଚିହ୍ନି ପାରନ୍ତି ନାହିଁ । ଏମାନଙ୍କ କୀର୍ତ୍ତି କହିଲେ ସରିବ ନାହିଁ, ପେଡି ଫିଟେଇଲେ ଇଏ ଏଇଠି ରହିପାରିବେ ନାହିଁ ।"

ମଝିରେ ଆଉ ଜଣେ ପଶିଆସି ଦୁଇ ଆଡକୁ ହାତ ଟେକି ବାରଣ କଲା ଭଙ୍ଗୀରେ ପାଟି କଲେ –

"ରହ ସାଉକାରେ, ରହିଯାଅ ମାରିକେ ! ଆମକୁ ଏ ସଲାହ କୁସ୍ତି ଆଉ ଦେଖାଅ ନାହିଁ । ଏଇଠୁ ଓହ୍ଲେଇଗଲେ ସେ ଫାଟକ ପାଖରୁ କାନ୍ଧରେ ହାତ ପକାପକି ହେଇ ଭିତରେ ପଶିବ । ଆମକୁ ଆଉ ଥରେ ବେକୁବ୍ ବନେଇଲ ବୋଲି ଏକୁଆରେକ ବଧେଇ ଜଣେଇବ । ଏ ବାଦିପାଲା ହିଁ ଏକମାତ୍ର ଘଟଣା ଏ ଦେଶରେ । ଏ ଖବରକାଗଜବାଲାଏ ଏଇଆକୁ ଲୋକଙ୍କୁ ଚଟେଇବେ । ଏଥିରେ କାହାରି ପେଟ ପୂରେ ନାହିଁ । ଦୁଃଖ ଯୋଉଠି ସେଇଠି !"

କିଛି ସମୟ ପାଇଁ ସବୁ ଥମିଗଲା ।

ମୌକା ଦେଖି ସେ ପାଣି ମଡେଇନେଲେ, "ଏଇ ଦେଖନ୍ତୁ ସେ ଦୁଃଖୀ ପରିବାର ସେଇ ଗଛମୂଳେ ବସିଛି । ପେଟରେ ଦାନା ନାହିଁ । ପିଠିରେ କନା ନାହିଁ । କିଏ ବୁଝୁଛି ତାଙ୍କ କଥା । ଏଠି ଚାଲିଚି ବାଦିପାଲା ।"

'ହଇ, ହଇ' ଶୁଭିଲା ଗହଳି ଭିତରୁ ।

ନେତା ଭିତରୁ ଜଣେ କହିଲେ, "ଯେ ବାବୁ ହେଲେ ସମାଜସେବୀ । ଯାହା ଯେତେବେଳେ ଆସିଲା ସବୁ ପାଣି ଛଡେଇ ପ୍ରସାଦ ସେବା କରିଆସିଛନ୍ତି । ଆମଠୁ ନେଇଛନ୍ତି ତାଙ୍କୁ ଦେବା ପାଇଁ । ହେଲେ କିଛି ସେଇଠି ପହଞ୍ଚି ନାହିଁ । ନାଳ ପାଣି ନାଳରେ ଶୁଖିଯାଇଛି ।"

"ତେମେ ମାଲିକେ ନାଳକୁ ପାଣି ଛାଡିବାକୁ ଛାତି କାହିଁ? ତେମେ ପରା ନଈ ସାରା ବୁହାଇନେଲେ ତମ ଦରିଆ ପେଟ ପୂରିବ! ତମ ଚୂଡା ଗୁଡ ପୁଡିଆଯାକ ପିମ୍ପୁଡି – ତମରି ପିମ୍ପୁଡି! ତୁମ ଚଉଳ ଫିମ୍ପିମରା ଖତରା, ତୁମ ଲୁଗାଯାକ ଦେହସାରା ଫଟା । କଦଳୀ ଖାଇବ ତେମେ, ଚୋପାଯାକ ଡିଆଇଁଦେବ ଏଇଆଡେ, ନଡିଆଯାକ ତମର, କତା ସଢେଇ ଏଇଆଡେ । ତେମେ ଆଉ ଦବା କଥା କହନାଇଁ ମାଲିକେ ନବା କଥା କହ । ନେଇ ଜାଣିଛ, ନେଇ ଆସିଛ ବୋଲି ସିନା ନେତା!"

ଅନେକ କରତାଳି ଶୁଭିଲା ଚାରିଆଡୁ । ନେତା ଟିକିଏ କନ୍‌କନ ହେଲେ, ତା'ପରେ ଦାନ୍ତ ନେଫେଡି ସେମାନେ ବି ତାଳି ମାରିଲେ । ନେତା ପାଟି ଶୁଣେଇ କହିଲେ, "ଏ ପରିବାରଟିକୁ ଦେଖିଲା ବେଳୁ ମୁଁ ତାଙ୍କ ପାଇଁ ବ୍ୟବସ୍ଥା କରିସାରିଛି । ସରକାର କିଛି କରିବାର ପ୍ରୟୋଜନ ନାହିଁ । ମୁଁ କରିବି । ମୋର ତ ପୁଣି ଗୋଟାଏ ନୈତିକ ଦାୟିତ୍ୱ ଅଛି! ମୁଁ ବୁକୁ ଉପରେ ହାତ ରଖି କହୁଛି ମୁଁ ଏକଥା ସମ୍ଭାଳିବି । ସେ ସ୍ତ୍ରୀ ଲୋକଟି ମୋ' ସରକାରୀ ଘରେ ଝିଅ ଝିଆରୀ ପରି ରହିବ । ମୋ' ପରିବାର ଏଠି ନାହାନ୍ତି । ଏ ହେଲା ଯୁଦ୍ଧଭୂମି । ଏଇଠି ପରିବାର କ'ଣ କରିବେ! ଏଇ ଜାଣ ମୋର ପରିବାର । ସେ ମୋର ସବୁକଥା ବୁଝିବ । ଘର ସମ୍ଭାଳିବ ।"

"ବାଆସ, ସାଉକାରେ । ରହିଯାଅ । ତମର ସବୁ କଥା ସେ ବୁଝିବ! କୋଉ କଥା? ତେମେ ବାବୁ ପରିବାରର ଜଣକୁ ବାଛି ନଉଚ ।"

ଆର ନେତା ସଜ ଦେଖି ଉହୁଁକି ଉଠିଲେ, "ଆମ୍ଭେ ୟାଙ୍କୁ ଜାଣୁ । କ୍ଷୀରରୁ ସରଟାକୁ ଉଷ୍ଟି ଖାଇବାର ଅଭ୍ୟାସ ୟାଙ୍କର କୋଉ କାଳୁ ଅଛି । ତାଙ୍କର ପରିବାର କ'ଣ ହବ? ଯୋଦ୍ଧା ଲୋକ! କେମିତି ହେଉ ଖୁଚୁରା ପରିବାର, କାମଚଳା ପରିବାରରେ ସେ ଚଳିଯାନ୍ତି ।"

"ସବୁବେଳେ ଭାଙ୍ଗୁଣିଆ କଥା କହି ଭଣ୍ଡୁର କରିବା ହେଲା ୟାଙ୍କ କାମ । ସଜ ମାଛରେ ଇଏ ପୋକ ପକେଇଦେବେ । ମୁଁ କହୁଛି କ'ଣ ଏ ବୁଝୁଛନ୍ତି କ'ଣ? ଗୋଟାଏ ଜନହିତକର କାମ କଥା ମୁଁ କହୁଥିଲି । ମୁଁ କ'ଣ ସେ ଝିଅଟିକୁ ନେଲେ, ତା' ଗେରସ୍ତ ଆଉ ପିଲାଙ୍କୁ ଛାଡିଯାଇଥା'ନ୍ତି । ସେ ମାଳି କାମ କରିବ । ଆଉ ସେ ଟୋକୀ ବୋଲହାକ କରିବ । ଚାପାଣି ଯୋଗେଇବ । ସମସ୍ତଙ୍କ ଥଇଥାନ ହେଇଯିବ । କ'ଣ ମନ୍ଦ କଥା କହି ଦେଲି ଯେ ୟାଙ୍କୁ ଚନ୍ଧେଇଲା?"

"ତେମେ ମାଲିକେ ଯାହା କହିବ ସବୁ ସୁନ୍ଦର, ସବୁ ବାସ୍ନା । ହେଲେ ସାଉକାରେ ତେମେ ଡାଳେ ଡାଳେ ଗଲେ ଆମେ ପତ୍ରେ ପତ୍ରେ ଯିବା ଲୋକ । ଆମେ ତମ ଲଙ୍କା ଖାଇ ଖାଇ ପରା ଦିହଯାକ ଦାଗ । ତମକୁ ଚିହ୍ନିବାକୁ କ'ଣ ବାକି ଅଛି? ତେମେ ଆପଣେ ସେ ଝିଅଟିକୁ କାହିଁକି

ଆଖେଇଚ, ଆମେ କ'ଣ ଏତିକି ବୁଝିପାରୁ ନାହୁଁ ?... ହେଇ ଗହଳି ମୁହାଁଇଲାଣି ଫାଟକ ଆଡେ । ଆପଣ ଯାଆନ୍ତୁ ସେଠି ସଲାହକୁସ୍ତି କରିବେ । ଏ ସମସ୍ୟା ତ ଏଇ ଗଛ ମୂଳେ ରହିଲା । ଆପଣ ସେଇଠୁ ହାଲିଆ ହେଇ ଫେରିବା ଯାଏଁ କିମ୍ବା ପଛପଟେ କାନ୍ଥ ଆଉଜା ଦେଇ ଘୁମ ଭାଙ୍ଗି ଉଠିବାଯାଏଁ ଆମେ ଅଛୁ । ଆଗେ ସେ ଭୋକିଲା ପରିବାରକୁ ସୁସ୍ଥ କରି ତାଙ୍କ କଥା ବୁଝି ଯାହା ହେଲେ କରିବୁ ।"

"କରିବ ଆଉ କ'ଣ ? ଅନାଥ ଅନାଥିନୀମାନଙ୍କ ପାଇଁ ଯେଉଁ ଆଶ୍ରମ ଧନ୍ଦାଟି ଚଳେଇଚ ସେଥିରୁ ଉଭୟ ସରକାରୀ ବେସରକାରୀ ଲାଭ ଉଠାଇ ଚାଲିଛ । ସେଇଆ ଆଉ ଟିକିଏ ଜୋର୍‌ସୋର୍ ଚାଲିବ ଏ ନୂଆ ମାଲ୍‌କୁ ନେଇ । ସେତେବେଳେ ଆମ ପାଖକୁ ଆସିଲେ ଆମେ ବୁଝିବା ନାଇଁ !"

କେହି ବଡବଡିଆ ପାଗ ଭିଡା ନେତାଙ୍କ ଗାଡି ଆସି ଫାଟକ ଭିତରକୁ ଚାଲିଗଲା । ଆଗରେ ପଛରେ ଆଉ ଅନେକ ।

ଏମାନେ ସବୁ ସେଇଆଡକୁ ମୁହାଁଇଲେ । ଜଣକ ପାଖରେ ଗୋଡାଣିଆ ବଚସ୍ୱରକୁ ଦେଖି ସେ ପଚାରିଲେ, "ଏ କାଗଜରେ ସବୁ ଜୋର୍‌ଦାର୍ କଥାଯାକ ଲେଖିଦେଇଛ ତ ।"

"ହଁ ସାର୍, ସବୁ ଅଛି, ଆପଣ ଖାଲି ପଢିଦବା କଥା । ଖାଲି 'ମରୁଡି' ଜାଗାରେ 'ବନ୍ୟା' ବୋଲି ପଢିବେ ସାର୍ । ତରବରରେ ସଂଶୋଧନ କରି ପାରିନାହିଁ । ସାର୍‌ଙ୍କୁ ସେତକ କ'ଣ କଳେଇ ଯିବ !"

"ଏଇଆଡ 'ମରୁଡି' ଜାଗାରେ 'ବନ୍ୟା' ଆଉ 'ବନ୍ୟା' ଜାଗାରେ 'ମରୁଡି' ପଢିବାକୁ ହବ । ଠିକ୍ ଅଛି ।" କହୁ କହୁ ସେ ତରବର ହୋଇ ପଶିଗଲେ ଫାଟକ ମୁହାଁ ତାଙ୍କ ଗାଡି ଭିତରେ ।

ପାଞ୍ଚ ମିନିଟ୍ ଭିତରେ ମଇଦାନ ଖାଲି । ନେତା, ଉପନେତା, ସାମ୍ବାଦିକ, ଖବର ଗୋଟାଳି, ଫଟ ଉଠାଳିସବୁ ପଶିଗଲେ ଫାଟକର ଆଁ ଭିତରେ । ସନ୍ତ୍ରୀ ଉଶ୍ୱାସରେ ଠିଆ ହେଲେ । ହାଇ ମାରିଲେ ।

ଗଛମୂଳ ସମସ୍ୟା ଗଛମୂଳେ ବସିରହିଲା ।

ସମାଜସେବୀ ଦେଖିଲେ ସେଇଠି ତିନ୍ ଥିଲେ, ଏବେ ଚାରି । ସେ ପାଖେଇଗଲେ ।

"ଆରେ ଅରୁଣା ଦେବୀ ! ତମେ ଆସି ୟାଙ୍କ ସାଙ୍ଗରେ କାହିଁକି ବସିଛ ? ତମର ଏଠି କିଛି କାମ ନାହିଁ । ତମେ ନିଜେ ଦେଖିଛ ମୁଁ କେମିତି ଖୋଦ୍ ବାଘ ମୁହଁରୁ ଏମାନଙ୍କୁ ଖସେଇ ଆଣିଛି ? ଏ ମାଲ୍ ମୋର, ତମେ ଏଇଠୁ ଖସିବା ବ୍ୟବସ୍ଥା କର ।"

"ଆଚ୍ଛା ମଉସା ସତ କହ, ମୁଁ ତ ଚାଲିଯିବି । ତମ ଧନ୍ଦାରେ ମୋର କିଛି ଆଗ୍ରହ ନାହିଁ, ତମେ ଜାଣିଛ । ତଥାପି ମୁଁ ଏମିତି ଖାଲି ଜାଣିବାକୁ ପଚାରୁଚି । କେତେ ନମ୍ବର କୋଠିକୁ ଏମାନଙ୍କୁ ନବ ? ଏ ନମ୍ବରରେ କିଛିଦିନ ରଖିଲେ ଭଲ ସଉଦା ହବ । ମାଲ୍ ପୁରୁଣା ହେଲେ ଦୁଇ, ତିନିକୁ ଖସି ଖସି ପୁଣି ଯେଉଁ ରାସ୍ତାରୁ ଯାଇଥିଲେ ସେଇ ରାସ୍ତାକୁ ଆସିଯିବେ । ଏଇଆ ନ ଆଉ କ'ଣ ?...

କିଛି ନାହିଁ ଯେ ମୁଁ ଏମାନଙ୍କୁ ନେଇ ଗୋଟେ ଫିଚର୍ କରିବାକୁ ଭାବିଛି – ସବୁ ଯା ଭିତରେ ଠିକ୍ କରିସାରିଲିଣି । ତୁମ କୋଠିମାନଙ୍କର ଫଟୋ ତ ମୋ' ପାଖରେ ଅଛି ।"

"ଆରେ, ଆରେ ଅରୁଣା ଦେବୀ! ୟେ ପୁଣି କଣ! ତୁମର ଏ ଖୋଇ ଗଲା ନାହିଁ । ଯା'ହେଲେ ଗୋଟେ ମୂଳଚାଲ କଥା କହୁନ । ଏମିତି ଫିଚର୍ ଭିତର କାହିଁକି ହଉଚ ?"

ଅରୁଣା ଦେବୀ ଅଳ୍ପ ଅଳ୍ପ ହସି ସେ ସ୍ତ୍ରୀ ଲୋକ ଆଡକୁ ଚାହିଁବାରୁ ସେ ବି ହସିଦେଲା ଏବଂ ସମାଜସେବୀ ଚମକି ପଡିଲେ ଯେତେବେଳେ ସେ କହିଲା –

"ୱେଲ୍, ଥ୍ୟାଙ୍କ୍ସ ଫର୍ ଦି କୋ-ଅପରେସନ୍ ।" ଅରୁଣା ଦେବୀ ହାତ ବଢାଇ ତା' ସହିତ କରମର୍ଦ୍ଦନ କରି କହିଲେ, "ୱେଲ୍‌କମ୍ ।"

"ଆଚ୍ଛା ବିନୋଦ ମଉସା, ଆମେ ବାହାରିଲୁ, ଏମାନଙ୍କର ଫ୍ଲାଇଟ୍ ଟାଇମ୍ ହେଇଗଲା । ଏମାନେ ଡ୍ରେସ୍ ବଦଳ କରି ବାହାରିବେ । ଯେଉଁ ଲକ୍ଷେ ଟଙ୍କାର ପ୍ରଶ୍ନ ଏଯାଏଁ ପଚରା ଚାଲିଥିଲା, ତା'ର ଉତ୍ତର ମୁଁ ତୁମକୁ ଦଉଚି । ଏମାନେ ଆଉ ଏକ ତେହେଲ୍‌କା ସଂସ୍ଥାର ସଦସ୍ୟ । ଏଠି ସମସ୍ତଙ୍କର ଫଟୋ ଆଉ କଥା, ଏ ପୁଟୁଳି ଭିତରେ ନେଇ ଏମାନେ ଯିବେ । କାଲି ସୁଦ୍ଧା ସାରା ଦେଶରେ ଏ ରାଜଧାନୀର ଅସଲି ପରିଚୟ ସମସ୍ତେ ପାଇଯିବେ । କ'ଣ ଟଣ୍ଡନ୍ ସାହାବ ?"

ସେ ପୁରୁଣ ଲୋକଟି ଠିଆ ହୋଇ ଅଣ୍ଡା ସଳଖି ଅଳ୍ପ ହସିଦେଲା ।

"ଇଟ୍ ୱାଜ୍ ଡାମ୍ ଡିଫିକଲ୍ଟ ବଟ୍ ଭେରି ସକ୍‌ସେସ୍‌ଫୁଲ୍-ଏକ୍ଟିଂ ତୋ' ବଡା ହି ମୁସ୍କିଲ୍ ଥା । ମଗର ଯୋ ମିଲା ୱହ କାଫି ଇଣ୍ଟେରେଷ୍ଟିଂ ହୋଗା ।"

ବିନୋଦ ମହାରଣାଙ୍କ ଆଖିର ପତା ପଡୁନାହିଁ କି ଓହଳି ରହିଥିବା ତଳ ପାଟି ବୁଜି ହେଉନାହିଁ । ହାତ ଗୋଡ ଅଚଳପ୍ରାୟ ସେ ଠିଆ ରହିଯାଇଛନ୍ତି ।

"ଟଣ୍ଡନ୍ ଜି, ୟେ ବଚ୍ଚା ନେ ତୋ' ଆଜ୍ କମାଲ୍ କରଦିଖାୟା । ବହୁତ୍ ବହୁତ୍ ବଧାଇ ହୋ ବଣ୍ଟି ।"

"ଥ୍ୟାଙ୍କ୍ ୟୁ ଆଣ୍ଟି ।"

"ପାଣ୍ଡୋରାସ୍ ବକ୍ସ ସିରିଜ' ମେ କିସ ଟାଇଟଲ୍ ମେଁ ୟେ ସାରି ବାତ୍ ଆପ୍ ନିକାଲେଙ୍ଗେ ।"

"ଶୋଚ୍‌ଲେଙ୍ଗେ ରାସ୍ତେ ମେଁ ।"

"ବଣ୍ଟି ବେଟା, ୟେ ସବ୍ ତୁମ୍‌କୋ କୈସେ ଲଗେ ?"

ବଣ୍ଟି ଦାନ୍ତ କାଢି କହିଲା, "ଜୋକର୍ସ ।"

ତିନି ଜଣ ତାଳିମାରି ଖୁସି ହେଇଗଲେ ।

ଟଣ୍ଡନ କହିଲେ, "ୟହ ଠିକ୍ ରହେଗା ଟାଇଟଲ୍ କେ ଲିଏ ।"

ସେମାନେ ଟରଟର ଚାଲିଗଲେ ।

ଗଛମୂଳେ ତଥାପି ସମସ୍ୟାଟିଏ ଠିଆ ହୋଇ ରହିଲା । ବିନୋଦ ମହାରଣାଙ୍କ ଧନ୍ଦା, ଅପରାଧ, ଲଜ୍ଜା, ଏ ସମସ୍ତଙ୍କର ଇଜତ ଏ ରାଜ୍ୟଟାର ଇଜତ୍!! □

# ଅଶ୍ୱାରୋହୀ

ଅସାଧ ସାଧିବାକୁ ସେ ଜଣେ ମାତ୍ର ଜନ୍ମିଛି ବୋଲି ଆମ ସମସ୍ତଙ୍କର ବିଶ୍ୱାସ ହୋଇସାରିଥାଏ । ଶୁଣାଶୁଣି ନୁହେଁ, ଆଖିରେ ଦେଖିବା କଥା । ଖଣ୍ଡେ ଲାଙ୍ଗୁଡ ଥିଲେ ସେ ଯେ କୌଣସି ଲଙ୍କାରେ ନିଆଁ ଲଗେଇଦେବାକୁ ସମର୍ଥ ଥିଲା । ସବୁ ଶିଖକୁ ସେ ହୁବ କରିପାରୁଥିଲା । ଅତଳାନ୍ତ ଗହୀରରୁ କାଦୁଅ କୋରି ଆଣି ଦେଖେଇଦେଇ ପାରୁଥିଲା । ତା'ର ସାପକୁ ଭୟ ନଥିଲା ନା ବାଘକୁ; ନିଆଁକୁ ଭୟ ନଥିଲା କି ପାଣିକୁ । ସେ ବାଉଁଶ ଖେଞ୍ଚଣାରେ ବିରୁଡି ବସା ଭାଙ୍ଗୁଥିଲା । ଷଣ୍ଢ ଦେଖିଲେ ହୁରୁଡଉ ଥିଲା । କୁକୁର ଲାଙ୍ଗୁଡରେ ଟିଣ ବାନ୍ଧୁଥିଲା । ଦି'ପହରବେଳା ନଈ ପହଁରୁଥିଲା । ରାତି ଅଧରେ କଂସାରି ଘର ତଟୁ ଘୋଡା ଚଢି ପଡିଆ ସାରା ଦୁମ୍ ଦୁମ୍ ଦଉଡୁଥିଲା । ମହା ଉଦଣ୍ଡା, ଅଖାଣ୍ଡୁଆ, ଅରଣା, ଭେରେଣ୍ଡା ଭଳି ଖରି ଦଉଡି କଟା ବରଜା । ନିଶ ଗଜୁରି ନଥିବା ଗଜା ଟୋକାଙ୍କ ରଜା । ରାଜ୍ୟ ନଥାଇ ମଉଡମଣି । ସବୁ ବିଦ୍ୟାରେ ପାରଙ୍ଗମ !

ସେଦିନ 'ବରଜା'କୁ ଆମେ ହିଁ ଡରକେଇ ଦେଲୁ । ନୂଆ ରଜା ଗାଦିରେ ବସିବା ଦିନ ବିରାଟ ପଟୁଆର ଚାଲିଥାଏ । ରାଜା ରାଇଜ କଥା – ଦୁଲୁ ଦୁଲୁ କମ୍ପୁଥାଏ ପୃଥ୍ୱୀ । ବାଜା, ବଇରଖି, ତୋପ, ତାମଜାନର କେତେ ରଂଗ, କେତେ ଶବ୍ଦ । ଭଳି ଭଳି ନାଟୁଆ, ଭଳି ଭଳି ବଜନ୍ତ୍ରୀ, ପାଗଭିଡା ଥାକ ଥାକ ପଲଟଣ ! ଘଣ୍ଟି, ଘାଗୁଡି, ଝରା, ଝୁମ୍ପା, ହାଉଦା, ଛତ୍ରି ମଣ୍ଡଣି ହୋଇଥିବା ଦଶଘର ହାତୀ । ତା' ପଛକୁ ନାଗ ସାପ ପରି ଫଣା ତୋଳି ପହିଜ କାଟି ଆସୁଥିବା ଚୂଳ ମାଳ ଛାଉଣୀ ହୋଇଥିବା ପିଞ୍ଜିଲା ପରି ଟପ୍ ଟପ୍ ଘୋଡା ସବାର । ଆମେ ସମସ୍ତେ ଏକାଠି ଠିଆ ହୋଇ ଦେଖୁଥାଉ ପଟୁଆର । ଏଇଠି ସମସ୍ତଙ୍କ ଆଖି ଖୋସି ହୋଇଗଲା ।

ପାଟ ଘୋଡା ଉପରେ ସବାର ନଥାଏ । ପାଟ ଗଦିଟା ଚକ୍ ଚକ୍ କରୁଥାଏ । ଲଗାମରେ ସୁନାକଣ୍ଠି ଦାଉ ଦାଉ କରୁଥାଏ । ବେକର ପଦକ ଚମକୁଥାଏ ସୋରା ଘାଗୁଡି ହାର ଭିତରେ । ଏ ସବୁ କଥାକୁ ଲଥା ସିନା; କିନ୍ତୁ ସେ ଘୋଡା ! ମୋ' ବାବାରେ !! ରୂପା ବର୍ଣ୍ଣର ପର୍ବତଟାଏ । କ୍ଷୀରୋଦ୍ର ପାଟ ପରି ତା' ଦେହର ରେଶମୀ ଧପ୍ ଧପ୍ ଧଳା ରଂଗରେ ସଞ୍ଜବେଳ ଖରାପଡି ଚମକୁଥାଏ । କି ଠାଣି, କି କଦମି, କି ଖୁରା-ଟେକା ସେ ଘୋଡାର !! ରାଜଦାଣ୍ଡ ମଣ୍ଡି ହେଇଯାଉଥାଏ । ସମସ୍ତଙ୍କ ଆଖି ସେ ଅଦ୍ଭୁତ ଘୋଡା ଉପରେ । ଯେତେ ମଣିଷ ହେଲେ ସୁଦ୍ଧା ସେ ଘୋଡାର ପେଟ ପାଖକୁ ଲୁଚି ଯାଉଥାଏ । ତା' ଦେହଯାକରେ ବିଜୁଳି ବାନ୍ଧିହୋଇ ରହିଥାଏ । ଝଡଟାଏ ସଂଯତ ହୋଇ ଝପ୍ ଝପ୍ ଚାଲିଥାଏ, ଖେଳୁଆଡ ସିଂହପରି । କେଜାଣି କେମିତି ସମସ୍ତଙ୍କର

ମନେ ହେଲା ଯେ ଘୋଡା ଜାତିରେ ସେ ରଜା । ସେ ହିଁ ରଜା – କି ପରାକ୍ରମ, କି ସୁଠାମ ଗଢଣ, କି ଚେହେରା !

ଆମକୁ କହୁଣେଇ ସବା ଆଗ ଧାଡିରେ ଅଣ୍ଟାରେ ହାତଦେଇ ଗୋଡ ଫରକଟେଇ ଠିଆହେଲା ବରଜା । ତା' ଆଖିରେ ମଧ ପଲକ ନାହିଁ । ପାଟଘୋଡାର ଟାପୁଗୁଡାକ ହାତି ଖୋଜ ପରି । ବେକ ନ ଭାଙ୍ଗିଲେ ଘୋଡାର ଚୂଳ ଦେଖି ହେଉନାହିଁ... ଇସ୍ !

'ହବେ ବରଜା, ତୁ ଯାକୁ ଚଢିପାରୁବୁ ? ତହଗା ସିନା ରାତିରେ ଫେରେଇ ଆଣି କଂସାରି ଘରର ଛେଳିପରି ଟଟୁଟାକୁ ଘୋଷରୁଚୁ, ଯା' ଦେହରେ ଟିପ ଦେଇ ପାରିବୁ ?' ଖିଲି ଖିଲି ହସ । ଆରେ ଯା' ବା । ଏଇଟା ପାଟଘୋଡାଟି ! ରାଜା ପାଇଁ ଏ ଘୋଡା – ଯାକୁ ଆଉ କିଏ ଚଢିଲେ ତା' ମୁଣ୍ଡ ଗଣ୍ଡି ଦି'ଖଣ୍ଡ ହୋଇଯିବ ନାହିଁ ?'

ବରଜା ହୁଗୁଡା ଷଣ୍ଢପରି ଫଁ ଫଁ ହେଉଥାଏ । ଏକାଲୟରେ ଚାହିଁଥାଏ ଘୋଡାକୁ; ଘୋଡାର ଲଗାମ୍ ଧରି ଚାଲିଥିବା ସଇସକୁ । ତା' ପାଖରେ ଥିବା ପିଲାଏ ଦେଖିଲେ ଯେ ତା' ବେକମୁଣ୍ଡା ବାଳ ଠିଆ ଠିଆ ହୋଇଗଲା । ଦେହ କମ୍ପିଲା । ସେ ମାଇଲା ଗୋଟାଏ କୁଦା ଶୂନ୍ୟକୁ । ହାଁ ହାଁ କରୁ କରୁ ସେ ଆଖିପିଛୁଳାକେ ସଇସ ହାତରୁ ଲଗାମ୍ ଛଡେଇ ନେଇ ପା'ରଖାରେ ପାଦ ଗଳେଇଦେଲା । ଉହୁଁକି ହେଲା ଚଢି ଯିବାକୁ । ଛଟେଇ ପଟେଇ ହେଲା । କାଲୁରୁ ବାଲୁର ହୋଇ ପାଟ ଗଦି ଉପରକୁ ଚଢିଗଲା । ଘୋଡା ଚମକିଲା । ସଇସ ହାଉଳି ଖାଇ ପାଟିକଲା । ସାରା ରାଜରାସ୍ତା ମନ୍ଥି ହୋଇଗଲା । ବରଜା ଗୁରୁଣ୍ଡିଲା ପରି ଆଣ୍ଠୁ ଟେକିନେଇ ଠେକୁଆ ଢଙ୍ଗରେ ବସିଥାଏ... ସେତେ ବଡ ପ୍ରତାପୀ ଜନ୍ତୁ ଏ ସବାରକୁ କି ଖାତିର୍ କରିବ ? ଛାଟିଦେବ ଶୂନ୍ୟକୁ ! ଫୋପାଡି ଦେବ କାହିଁ କୁଆଡେ ! ଛିଟିକି ପଡି ଛିନ୍‌ଛତ୍ର ହେଇଯିବ ନିଆଁଗିଳା ବରଜା ! କିନ୍ତୁ ଆଖିପିଛୁଳାକେ ଆଉ ପ୍ରକାରେ ଘଟିଗଲା । ପୋଲା ଥାପୁଡିଏ ମାରି ବରଜା କି ମନ୍ତ୍ର ପଢିଲା କେଜାଣି ସମୁଦ୍ର ଉଲୁସିଲା ପରି ଘୋଡାର ଉଜାଣି ଟେକିଲା । ସେ ଧସେଇ ଗଲା ଆଗକୁ । ଛିନ୍‌ଛତ୍ର ହୋଇଗଲା ତେତେବଡ ପଟୁଆର । ସମସ୍ତଙ୍କ ଉପରେ ଉଭାରି ଦିଶୁଥାଏ ରଜାଘୋଡା । ଗହଳି ପାରି ହୋଇ ଖୋଲା ରାସ୍ତାରେ ଝପଟିଗଲା ଗୋଟାଏ ଅତିକାୟ ଖୁରୁଙ୍ଗ ପରି ସେ ଧପ୍ ଧପ୍ ଧଳା ଘୋଡା । ପକ୍ଷୀରାଜ ନିମେଷକରେ ଉଭାନ୍ ହୋଇଗଲା । ତା' ଟାପୁ ଶବ୍ଦ ଲିଭିଗଲା ଶୂନ୍ୟରେ ।

ସେଦିନ ଶ୍ରାବଣ ପୂର୍ଣ୍ଣିମା । ରାତିସାରା ବର୍ଷା । ସେ ଅନ୍ଧାର ବିଜୁଳି ଘଡଘଡି ଭିତରେ ଆମ ପରି ନାବାଳକ ସହରଟି କାନେଇ ରହିଥାଏ । ଘୋଡା ଟାପୁ ଶୁଭୁଥାଏ ଚାରିଆଡେ ଏବଂ ଅଜସ୍ର । ଭୂଇଁ ଦୁଲୁକୁଥାଏ ରହି ରହି । ଆକାଶରେ ଚମକି ଯାଉଥାଏ ଧଳା ଘୋଡା ଏବଂ ତା' ଉପେର ଠେକୁଆ ପାରି ଲାଖି ରହିଥିବା ସେ ଅସାଧ ଅଶ୍ୱାରୋହୀ ।

ତା'ପରେ ଆମେ ଆଉ ତାକୁ ଦେଖିନାହୁଁ ।

ଶୁଣିଛୁ କିନ୍ତୁ ଢେର କଥା । ରାଜା ଉଆସର ଉତ୍ତର-ପଶ୍ଚିମ କୋଣରେ ଗୋଟାଏ ଅମୁହାଁ

ଗମ୍ଭୀରା ଅଛି । ସେଇଠି ଗୋଟାଏ ଗହୀର ଶୁଖିଲା କୂଅ । ମୁହଁରେ ଚୁଣ୍ଡି ବାନ୍ଧି ବରଜାକୁ ମାଡ ମାରି ଚେତା ବୁଡିଗଲା ପରେ ତା' ଭିତରକୁ ପେଲି ଦିଆଗଲା । ନୂଆ ଧରାହୋଇ ଆସିଥିବା ବାଘର ଯନ୍ତା ଭିତରକୁ ତାକୁ ପିଣ୍ଡୁଳା କରି ଗଡେଇ ଦିଆଗଲା... ପାଳବିଣ୍ଡା ଭିତରେ ଟଷ୍ଟୁ ସାଙ୍ଗରେ ବରଜାକୁ ପୂରେଇ ନିଆଁ ଲଗେଇଦେଲେ ।

ରଜା ମୁଲକ କଥା । ଯେମିତି ଖୁସି, ସେମିତି ମଣିଷଟାକୁ ମାରିଦେଲେ କେହି କିଛି କହିବାର ନାହିଁ । ବରଜା ଅଗୁଁଆର ପଣ କରିଛି; ପାଟଘୋଡା ଉପରେ ଇତର ଜନ ବସିପଡିବାର ଅପରାଧ କରିଛି । ରଜା କାନରେ କଥା ପଡିବାରୁ ସେ କୁଆଡେ ନିଆଁବାଣ ହୋଇଗଲେ । ଦାନ୍ତ କଡମଡ କରି ବରଜାକୁ କଞ୍ଚା ଚୋବେଇ ଯିବାକୁ ମନକଲେ । ଗାଦିରେ ବସିବାର ଶୁଭଦିନ ପାଇଁ ଆଉ ପଚାଶ ପ୍ରକାର ମାଉଁସ ଆଣି ମିଆଁ ବବୁର୍ଚିମାନ ଛାମୁରେ ପରଷି ଦେବାରୁ କଥା ଆଉ ପ୍ରକାରେ ହୋଇଗଲା । ରଜା ଗୋଜା, ଘଡି ଘଡିକେ ଆନ । ଯେଉଁଆଡେ ମୁହଁ, ସେଇଆଡେ ଦାଢ । ବରଜା ଉପରେ ଦୟାକରି ସାଧାରଣ ମୃତ୍ୟୁଦଣ୍ଡ ହୁକୁମ ହୋଇଗଲା ।

ରଜା ଯେ, ରାହୁ ସେ । ଗ୍ରାସିଯିବ । ରଜା ହେଲା ରକ୍ତମୁଖା ବାଘ । ହାବୁଡିଗଲେ ଭିଣି ଖାଇଯିବ । ତା' ନିଶ ଅଗରେ ମୋତି ଖଞ୍ଜା ହୋଇଛି । ତା' ଯୋତାରେ ହୀରାମଣି । ସୁନା ପିକଦାନିରେ ଜାତି ଜାତି ମଣି-ମାଣିକ୍ୟ । ତା' ଉଆସ ଆଡେ ଟିପ ଦେଖେଇ ଦେଲେ ନଳୀଧାରୀ ପିଆଦା ଗୁଳିମାରି ଉଡେଇ ଦେବେ ।... ବରଜା ସେଇଠି ଦ୍ରୋହ କଲା... ସେ କି ଆଉ ବଞ୍ଚିଥାନ୍ତା ?

'ଆରେ, ଯାଉନୁ । ସେ ଥନ୍ତଲ-ପେଟିଆ ମଦୁଆର ଦେହଯାକ କାଛୁ । ଶଳାର ଚାଲିବାକୁ ବଳ ନାହିଁ ବୋଲି ବୁହାହୋଇ ଯାଉଥାଏ!... ଖାଲି ନିଶା ଖାଇ ଗର୍ଜିଲେ କ'ଣ ଅଣ୍ଡିରାପଣିଆ ହୋଇଗଲା!... ପାଟଘୋଡାକୁ ପାଞ୍ଚଟା ସଇସ ସମ୍ଭାଳି ଧରିଥା'ନ୍ତି । ରଜା ନିଶୁଣି ଚଢିଲା ପରି ବାଁ ଖାପରେ ଡାହାଣ ପାଦ ଦେଇ ବହୁ କଷ୍ଟରେ ଘୁଷୁରିଗଲା ଘୋଡା ପିଠି ଉପରକୁ । ଦେଖିଲାବେଳକୁ ମୁହଁ ହୋଇଛି ଘୋଡାର ପଛଆଡେ । ଲାଜରେ ଓହ୍ଲେଇ ପଡିଲା । ଗାରୁଗାରୁ ହେଇ ପଶିଗଲା ଉଆସରେ । ତେବେ ବଡ ଘୋଡାକୁ ଗୁଳି ମରେଇ ଦେଇଥାନ୍ତା । ପଞ୍ଚାବିଣୀ ପାଟରାଣୀର ଯଉତୁକ ବୋଲି ଓହରିଗଲା । ପାଞ୍ଚଟାଯାକ ସଇସଙ୍କୁ ଲଙ୍ଗଳା କରି ମାଡ ମରାଇଲା କାହିଁରେ କ'ଣ ।'

'...ଆରେ ଯାଉନୁ, ଯ୍ୟାର ଯୁ' କାହିଁ ବରଜାକୁ ଧରିବ! ଏ ଭାତୁଆ କଟୁଆଳଯାକ ସେ ବର୍ଷା ରାତିରେ ଓଦା ମୂଷାପରି ଗଛମୂଳେ ତିନ୍ତୁଥା'ନ୍ତି । ଘଡଘଡି ବିଜୁଳି କାଟୁଥାଏ । ଯିବେ କୁଆଡେ ? ଖୋଜିବେ କେଉଁଠି ? ପାହାନ୍ତିଆରେ ଦେଖିଲା ବେଳକୁ ସିଂହଦ୍ୱାର ଲୁହା କବାଟ ଦେହରେ ବନ୍ଧା ହୋଇଛି ପାଟଘୋଡା – ଚୋରର ପତ୍ତା ନାହିଁ । କାଟୁଆଳ କୁରୁଳିରେ । ତେଜ କାଢିଲେ । ଘୋଡାକୁ ସଇସ ସମ୍ଭାଳିଲା ଉତ୍ତାରୁ ତାକୁ ମାଡ ମାରିଲେ କାହିଁରେ କ'ଣ!

ବରଜା କିନ୍ତୁ ସେଇଦିନୁ ଉଭାନ୍ ହୋଇଗଲା । ଶ୍ରାବଣ ପୂର୍ଣ୍ଣିମା ଆସିଲା ଏବଂ ଗଲା । ରଜା ବର୍ଷକୁ ଦୁଇଥର ଅଭିଷେକ ହେଲାବେଳେ ଅନୁଗତ ପ୍ରଜାମାନେ ଦାନ୍ତରେ ତିରଣ ଧରି

ନିଉଛାଳି ହେଲେ । ମସିଆ କରିଆ ପିନ୍ଧା ବ୍ରାହ୍ମଣମାନେ ଶାମଦଶମୀକୁ ଶାମଦଶମୀ ବୁଢ଼ା ରଜାର ଶ୍ରାଦ୍ଧ ଦିନ ଭୋଜନ ଖାଇଲେ । ବୈଶାଖ ମାସରେ ରାଜମାତାଙ୍କ ପୁଣ୍ୟ ପାଇଁ ତହ ତହ ପୋଡ଼ି ଖରାରେ ଆମ୍ବ ଆଉ ପଣା ଭୋଜନ କରି ଖଣ୍ଡେ ଲେଖାଁ ପାଣିଗାମୁଛା, ଗୋଟିଏ ଲେଖା ଛତା, ଆଉ ବିଞ୍ଚଣାଟିଏ ଲେଖାଁ ହାତରେ ଧରି ପାନ ଚୋବାଇ ଫେରିଲେ । ରଜା ମୂଳକର ଗଛପରି ପ୍ରଜାମାନେ ଜନ୍ମିଲେ, ପୁଅ ମେଲେଇ ବଢ଼ିଲେ ଏବଂ ମଲେ ।... ବରଜାକୁ ଆସ୍ତେ ଆସ୍ତେ ଭୁଲି ଆସିଲେ ସମସ୍ତେ ।

ଦଶହରା ଦିନ, ଲାଖବିନ୍ଧା ପଡ଼ିଆକୁ ପଟୁଆର ବାହାରିଲା । ରଂଗ ବେରଙ୍ଗ ପଟୁଆର । ସମସ୍ତଙ୍କ ଆଖି ପାଟଘୋଡ଼ା ଉପରେ । ଆସିଲାଦିନୁ ତା' ଉପରେ କେହି ଚଢ଼ି ନାହାଁନ୍ତି । କେବଳ ବରଜା ହୁବ କରିଥିଲା ଦଶବର୍ଷ ତଳେ । ରଜାଘୋଡ଼ା ସେମିତି ପିଛୁଳି ପଡ଼ୁଥାଏ । ଟାଣିହୋଇ ରହିଥାଏ ତା'ର କ୍ଷୀରୋଦ୍ର ପାଟ ପରି ଝଲମଲ ଦେହ । ସଇସଟି ସେମିତ ତା' ଲାଗାମ ଧରି ତାକୁ ଚଲେଇ ଚଲେଇ ନେଉଥାଏ । ଘୋଡ଼ା ମୁଣ୍ଡରେ ଚୂଳ, ପିଠିରେ ପାଟ ଗଦି, ବେକରେ କଣ୍ଠିମାଳ । କଜଳ ରେଖିଲା ପରି ଆଖି । ଏଇ ଜାଣ ରଜା । ଏଇ ଶାସନ କରନ୍ତା କି ମୂଲକ! ଯା' ଖୁରାକୁ ଅନୁଗତ ଭକ୍ତମାନେ ଜିଭ ଲଗେଇ ଚଟନ୍ତେ । ସଇସ ଖାଲି ରବେଇ ଖିବେଇ ହେଉଥାଏ । ଏତେବଡ ଲକ୍ଷଣମନ୍ତ ଘୋଡ଼ା । ପ୍ରାଣପଣେ ତାକୁ ସେ ଶିଖେଇଚି ନାନା ବିଦ୍ୟା । କେହି ଜଣେ ତା' ଲାଖି ସବାର ହୁଅନ୍ତା କି! ଆକ୍ରୋଶି ବସନ୍ତା ଏ ବଳବନ୍ତ ଘୋଡ଼ା ଉପରେ । ବିଜୁଳି ପରି ଉଡ଼ିଯାନ୍ତା ଶୂନ୍ୟକୁ । ଟାପୁ ଶବ୍ଦ ଶୁଭନ୍ତା ପାଞ୍ଚକୋଶ ଦୂରରୁ! ସଇସ କୃତାର୍ଥ ହୋଇଯାନ୍ତା, ସାର୍ଥକ ହୋଇଯାନ୍ତା ତା' ଜନ୍ମ । ସାର୍ଥକ ହୁଅନ୍ତା ତା' ଆଖି ।

ସେଦିନ କେହି ଆଉ ଲାଖ ବିନ୍ଧି ପାରିଲେ ନାହିଁ । ଶେଷକୁ ରଜା ନଳୀଧରି ଠିଆହେଲେ । ମାଇକିନିଆମାନେ ହୁଳହୁଳି ଦେଲେ । ଶଙ୍ଖ ଫୁଙ୍କା ହେଲା । ଟଳମଳ ହାତରେ ରଜା ବେଖାତିର ସେଇ ଲାଖ ଆଡେ ମୋଟାମୋଟି ନଳୀ ଫୁଟେଇଦେଲେ । ଲାଖ ନଡ଼ିଆ ଛିନ୍ନଛତ୍ର ହୋଇଗଲା; କିନ୍ତୁ ସମସ୍ତେ ଶୁଣିଲେ ଦୁଇଥର ବନ୍ଧୁକ ଡାକିଲା । ଲାଖ ତଳେ ମାଟିଖୋପ ତଳୁ ଗୁଳି ଫୁଟିଲା ପରି ଶୁଭିଲା । ନଡ଼ିଆଟା ବାଣପରି ଛିଟିକିଗଲା ଉପରକୁ । ରଜା ଏକା ପାରିବାର – ସେ ଥରେ ଘୋଡ଼ା ଟିପିଲେ ଦୁଇଥର ଗୁଳି ଫୁଟାପେର! ସେ ଯୁଆଡେ ମନ ସେଆଡେ ଲାଛିଲେ ମଧ ଲାଖ ନଡ଼ିଆ ନଫାଟିବାର ଉପାୟ ନାହିଁ । ସେଇ କେବଳ ଲାଖ ବିନ୍ଧିପାରିବେ । ଧନ୍ୟ ଧନ୍ୟ ବୀରବର ମର୍ଦ୍ଦରାଜ ପାଲଟସିଂହ ମହାର୍ଜା!

ସଞ୍ଜ ରତ ରତ । ପଟୁଆର ଫେରୁଥାଏ । ରଜା ଫେରୁଥା'ନ୍ତି ପାଲିଙ୍କିରେ । ତାଙ୍କ ଉପରେ ଫୁଲ ବର୍ଷା ହେଉଥାଏ । ଦର୍ଶନପାଇଁ ପ୍ରଜାମାନେ ଠେଲାପେଲା ଦେଉଥା'ନ୍ତି । ପାଟଘୋଡ଼ା ପାଖରେ ମଧ ସେଭଳି ଭିଡ । ସେ ସୁଦର୍ଶନ ଧଳା ଘୋଡ଼ାକୁ ଯେତେ ଦେଖିଲେ ମଧ କାହାରି ମନ ମାନୁନଥାଏ ।

ମାଛି ଅନ୍ଧାରକୁ ରଜାଙ୍କ ପାଲିଙ୍କି ବିମଳା ଛକ ପାରି ହୋଇଯାଇଥାଏ । ଲୋକଙ୍କ ଭିଡ

ଭିତରୁ ଗୋଟାଏ ବୃଷାଳ ମଣିଷ କାହୁଁ ବାହାରି ଆସିଲା – ତା'ର ମୁଣ୍ଡଠଉଁ ଗୋଡ ଯାଏଁ ଧଳା ଝଲମଲ ପୋଷାକ । ଧଳା ପଗଡି । ପାଞ୍ଚହାତ ମଣିଷ । ସେ ଝପଟିଗଲା ପାଟଘୋଡା ପାଖକୁ । ସଇସ ହାତରୁ ଉଞ୍ଚି ନେଲା ଲଗାମ । ଅନାୟାସରେ ଶୂନ୍ୟକୁ ଗୋଡ ଫିଙ୍ଗି ବସିଗଲା ଘୋଡା ଉପରେ । ପର୍ବତ ପରି ଘୋଡା ଉପରେ ପର୍ବତ ପରି ଆଶ୍ୱରୋହୀ ! ଧଳାଘୋଡା ଉଲୁସିଲା । ଶହ ଶହ ଦେଖଣାହାରି ଆନନ୍ଦରେ ରୋଳ କଲେ । ସଇସ ହାତ ମନ୍ଥି କାନ୍ଦି ପକେଇଲା । ଶିତେଇଗଲା ତା' ଦେହ । ଧଳାଘୋଡା ଶିତେଇଲା । ଡେଇଁଲା ଶୂନ୍ୟକୁ । ସେଇ ମାଛି ଅନ୍ଧାରରେ ଝପଟିଗଲା ପାଟଘୋଡା ଉଜାଣି ସମୁଦ୍ରପରି । ପାଟଘୋଡାର ବହୁ ଦିନର ଓରମାନ ମେଣ୍ଟିଲା । ଉଧୁଳିଲା ବଳବନ୍ତ ଲକ୍ଷଣମନ୍ତ ଧପ୍‌ଧପ୍ ଧଳାଘୋଡା – ଆନନ୍ଦରେ ଡେଇଁଲେ ଦେଖଣାହାରି । ଘୋଡା ଟାପୁ ମିଳେଇଗଲା । ଅଗନାଅଗ୍ନି ବନସ୍ତ ଆଡେ ।

କିଏ ସେ ଧଳା ପାଗଭିଡା ପାଞ୍ଚହାତିଆ ବିଶାଳ ଅଶ୍ୱାରୋହୀ ?... ତା'ର ଦି'ହାତ ଓସାର ବୁକୁ । ଖମ୍ବପରି ଡେଣା । କିଏ କହୁଥିଲା ତା'ର କଳା ମଚମଚ ଦାଢି । ଦାଉ ଦାଉ ଦହକିଲା ଆଖି ।

ସେ କ'ଣ ସେ ଖଣ୍ଡମଣ୍ଡଳରେ ସମସ୍ତଙ୍କ ପିଳେହି ପାଣି କରିଦେଉଥିବା ରାଣା ଡକେଇତ ? ସେ ମଣିଷଟାକୁ ବାଁ ହାତରେ ଶୂନ୍ୟକୁ ଫୋପାଡି ଦିଏ, ଖସିଲାବେଳକୁ ଦି'ଗଡ କରିଦିଏ ଫାର୍ଶାରେ... ରାଜା ରାଜୁଡାଙ୍କ ଯମ ? ଠକ ବେପାରୀଙ୍କ କାଳଦଣ୍ଡ ?

ଲାଖବିନ୍ଧା ପଡିଆରୁ ଫେରନ୍ତି ବାଟରେ ଅଳ୍ପ ଅଳ୍ପ ଅନ୍ଧାରରେ କେତେ କେତେ ଗୁଜବ ଶୁଣାଗଲା – 'ଆହେ ଶୁଣିଲଣି, ଜହ୍ନପକ୍ଷ ରାତିରେ ଅବିକଳ ଏମିତି ଧୋବ ଫରଫର ପାଞ୍ଚହାତ ଉଞ୍ଚ ଛାଇଟାଏ ରାଣୀ ମହଲରେ ପହଁରୁ ଥିବାର ଜଗୁଆଳି ଦେଖିଛି । ସେ କୁଆଡେ ଦେଖିଛି ପାଟରାଣୀଙ୍କ ପହୁଡଘର କବାଟ ନିଃଶବ୍ଦରେ ଫିଟିଗଲା, ଆଉ ଏ ଛାଇ ସେଇଠି ଅନ୍ତର୍ଦ୍ଧାନ ହୋଇଗଲା ।'

'ହେ ତୁନି ତୁନି କହ, କିଏ କ'ଣ ବୁଝିଯିବ ! କିଏ କ'ଣ ଯାଇ ଫୋଡିଦେବ ! ତା' ଉତ୍ତାରୁ କାନ୍ଧ ଉପରୁ ଏ ମୁଣ୍ଡଖଣ୍ଡ ଝଡିପଡିବାକୁ କେତେ ଘଡି ? ମନେଅଛି ନା ସେ ବଗୁଲିଆ ଟୋକା ବରଜା କଥା – କୁଆଡେ ତାକୁ ଟିକି ଟିକି କରି ଫୋପାଡି ଦେଲେ ଏଇ ପାଟଘୋଡା ଉପରେ ଚଢିଥିଲା ବୋଲି ! ସେଦିନ ଯାହା ସେ ବରଜା ଚଢିଥିଲା ! ଆଜି ଯେ ଚଢିଲା ସେ କିଏ ?' ସେଇ ଅନ୍ଧାରରେ କିଏ ବଡପାଟିରେ କହିଲା, 'ଆହେ, ଏଇଟା ମଧ ସେଇ ବରଜା ନୁହେଁ ତ ? ସେଇ ଉଦ୍‌ବିର୍ଯା ଟୋକା କେବଳ ଏମିତି ଅସାଧ ସାଧିପାରେ ! ଟରକିଥାଅ, ଦେଖିବ, ଏଇ ଶେଷକୁ ବରଜା ବୋଲି ଜଣାପଡିବ ।'

ଗୋଳ ଉଠିଲା । ପିଆଦାମାନେ ଖେଦିଗଲେ ଦିଗବିଦିଗ । ଯେଉଁ ଦିଗରେ କିନ୍ତୁ ଘୋଡାକୁ ସେ ଉଡେଇ ନେଇଥିଲା ସେ ଆଡକୁ କେହି ମୁହାଁଉ ନଥା'ନ୍ତି । ସମସ୍ତଙ୍କ ଭୟ କାଳେ ରାଣା ଡକେଇତ ହାବୁଡେ ପଡିଯିବେ ।

ପିଆଦାଙ୍କୁ ପଠେଇଦେଇ ଅମଲା, ଅଫିସର, ମନ୍ତ୍ରୀ, ଉଆସର କଚେରି ଘରେ ମନମାରି ବସିଥା'ନ୍ତି । ରାଜା ଗର୍ଜୁଥା'ନ୍ତି ଭୋକିଲା ବାଘପରି । ଘୋଡା ଚୋରକୁ ଧରି ନପାରିଲେ ସମସ୍ତଙ୍କ ମୁଣ୍ଡକାଟ ହେବ । ଧରିପାରିଲେ ତାକୁ ଜୀଅନ୍ତା ବେକ ପର୍ଯ୍ୟନ୍ତ ପୋତିଦେଇ ତା' ମୁଣ୍ଡଟାକୁ ରାଜା ସହସ୍ତରେ ଶିକାରୀ କୁକୁର ଲଗେଇ ଖୁଆଇବେ । ଏମିତି ତୁହାଇ ତୁହାଇ ଗର୍ଜିବାରୁ ରଜାଙ୍କୁ ଶୋଷକଲା । ସୁଯୋଗ ପାଇ ବବର୍ଚ୍ଚି ଭଲ ମାଲ୍ ଦେଖି ଟେଣ୍ଡେଇ ଦେଲା । ରଜା ବିଳିବିଳେଇଲେ । ମଝିରେ କିଛି ସମୟ କାନ୍ଦିଲେ । ତା'ପରେ ଚେତାହାରି ଶୋଇଗଲେ । ରଜା ଏମିତି ଗର୍ଜନ୍ତି, ଶୋଷ କଲେ ପିଅନ୍ତି ଏବଂ ପିଇସାରି ଶୁଅନ୍ତି । ଏମିତି ଚାଲିଆସିଛି-ଚାଲିଥିବ, ଏମିତି ଏ ରାଜୁତି-କେତେକାଳ କେଜାଣି ।

ଶ୍ରୀହରି ପଟ୍ଟନାୟକ ଭାରି ସିଆଣିଆ ଲୋକ । ତାଙ୍କ ଘରକୁ ସବୁଦିନ ଖବରକାଗଜ ଆସୁଥିଲା । ସେ ଯୁଦ୍ଧ କଥା କହୁଥିଲେ ବଡପାଟିରେ । କିନ୍ତୁ ଲୋକ ଜାଣି ଫୁସ୍‌ଫୁସ୍ କରି କାନରେ କହୁଥିଲେ ଯେ, ରାଜ୍ୟ ବାହରେ ଢେର୍ କଥା ହେଲାଣି; ଏସବୁ ରହିବ ନାହିଁ, ଭୁଷୁଡି ପଡିବ । ପାଟଘୋଡା ରଜା ଆୟତ୍ତରେ ନାହିଁ । ପାଟରାଣୀ ମଧ ଆୟତ୍ତରେ ନାହିଁ । ଏଥର ଯେ ଘୋଡା ଯାଇଛି, ସେ ଆଉ ଫେରିବ ନାହିଁ । ଏ ରାଜ୍ୟରେ ଇଜ୍ଜତ, ମାନସମ୍ମାନ, ଲକ୍ଷ୍ମୀ – ସବୁ ଗଲା ।

କିନ୍ତୁ ଆଶ୍ଚର୍ଯ୍ୟ କଥା... ପୁଣି ସେଇ ସକାଳ ପହରେ ଦେଖିଲାବେଳକୁ ସିଂହଦ୍ୱାର ଲୁହା କବାଟରେ ପାଟଘୋଡା ବନ୍ଧା ହୋଇଛି – ଖୁବ୍ ହାଲିଆ ହୋଇଯାଇଛି । ରାତିଯାକ କେତେ ଅରଣ୍ୟ ବୁଲିଛି କେଜାଣି ? କିନ୍ତୁ ଖୁବ୍ ଖୁସି ହେଲାପରି ଛନ୍ ଛନ୍ ହେଉଚି । ନିଶା ଖାଇଲା ପରି ଭୂଇଁ ଖୁରଉଚି । ପାଟଘୋଡାର କ୍ଷୀରୋଦ୍ର ପାଟ ଦେହରେ ଅସଂଖ ସାର୍ଥକ ଫୁଲର ପାଖୁଡା । ଏଠି ସେଠି ସରୁ ସରୁ କଣ୍ଟା ଆମ୍ବୁଡାର ଦାଗ ।

ଯେ ସମସ୍ତଙ୍କ ଆଗରେ ବଳାତ୍କାର ପାଟଘୋଡାକୁ ନେଇଯାଇ ପାରିଲା, ସେ କାହିଁକି ଆଣି ପୁଣି ଫେରାଇଦେଇ ଗଲା ! ସେଇ ପ୍ରବଳ ଅଶ୍ୱାରୋହୀ ହିଁ ଯା ପାଇଁ ଯୋଗ୍ୟ ସବାର । ସେ ହିଁ ରଜା । ସେ ଚାହିଁଥିଲେ ତା' ଉଆସକୁ ଏ ଲକ୍ଷ୍ମୀବନ୍ତ ଘୋଡାକୁ ନେଇଯାଇ ପାରିଥାନ୍ତା । ନେଲା ନାହିଁ କାହିଁକି ? କିଏ ସେ ଅଶ୍ୱାରୋହୀ ? ଏଡେ ବଡ ମଣିଷ ତ ଏ ରାଜ୍ୟରେ ନାହିଁ – ସେ କ'ଣ ଆଉ କୋଉ ରାଜ୍ୟରୁ ଆସିଥିଲା ? ସେ ମଣିଷ ନା ଆଉ କିଏ ?... ଏ କ'ଣ ସେଇ ବୃଷାଳ ଧଳା ଛାଇ ଯେ ଜହ୍ନରାତିରେ ପାଟରାଣୀର ପଦ୍ମଡ଼ କବାଟ ପାଖରେ ଉଭାନ୍ ଉଭାନ୍ ହୋଇଯାଏ ?

ପାଟଘୋଡା ପୁଣି ଫେରିଆସିଛି । ସମସ୍ତେ ଖୁସି । ସବୁଠୁ ବେଶି ଖୁସି ତା'ର ସଇସ । ଘୋଡା ରଖିଥିବ ପାଶିପୋଷି । ଦେହରୁ ମାଛି ଖସିପଡୁଥିବ । ଟିପ ବାଜିଗଲେ ଗଗନେ ଉଡିଯିବ ପକ୍ଷୀରାଜ । କିନ୍ତୁ ତା' ପିଠିରେ ପାଟ ଗଦିଟା କାକର ହେଇ ପଡିଥିବ ସବୁକାଳେ ! ଛି... ଛି... ଛି... ଏଣୁ ସମସ୍ତେ ଖୁସି ଯେ, ପାଟଘୋଡାକୁ ସେଭଳି ଅଶ୍ୱାରୋହୀ ଗୋଟାଏ କାହୁଁ ଆସି ନିଜ ବିକ୍ରମରେ ମର୍ଦ୍ଦିଗଲା ।

ଆଚ୍ଛା, ସେ ଧଳା ପାଗଭିଡା ପାଞ୍ଚହାତିଆ, ସାହସିଆ ପୁରୁଷ କ'ଣ ବରଜା ?

ଶେଷକୁ ଶ୍ରୀହରି ପଟ୍ଟନାୟକ ଯାହା କହୁଥିଲେ ତାହାହିଁ ହେଲା । ରାଜ୍ୟ ବାହାରୁ ନୂଆ ନୂଆ ମଣିଷମାନେ ଆସିଲେ । ଚତୁର କୁହାଳିଆ ଧଳା ଧଳା ଖଦିପିନ୍ଧା ମଣିଷ । ନୂଆକଥା କହିଲେ । ସଭାସମିତି କଲେ । ବିଚ୍ ବଜାର ଉପରେ ରଜାଘର ଗୋଇ ଖୋଳା ହେଲା । ଟୋକା, ବୁଢ଼ା ସମସ୍ତେ ମିଶି ହାତରେ ଝଣ୍ଡାଧରି ଧାଡି ଧାଡି ହୋଇ ଚାଲିଲେ । ଏକାସାଙ୍ଗରେ କ'ଣସବୁ ପାଟିକଲେ । ସମସ୍ତେ ସୂତା କାଟିଲେ । ସମସ୍ତେ ଦେଖିଲେ ଖବରକାଗଜ... ଦିନେ ପାଟିତୁଣ୍ଡ ଗୁଳି ଗର୍ଜନ ଭିତରେ ଗୋଳ ଉଠିଲା ଯେ ରଜା ନାହିଁ କି ରାଜ୍ୟ ବି ନାହିଁ । ବାଡ ଭାଙ୍ଗିଗଲା । ଭୁଷୁଡି ପଡିଲା ଅନେକ କଳା କଳା ପୁରୁଣା କାନୁ ।

ଏଣିକି ସବୁ ସର୍କାର କଥା । ଉଆସ କୋର୍କ୍ ହେବ, ଜିନିଷ ନିଲାମ ହେବ । ନେତାମାନେ ଉଆସ ଦଖଲ କରିବେ । ଫାଳକରେ ଗୋଦାମ ହେବ; ଆଉ ଫାଳକରେ ସେମାନେ ରହିବେ । ରଜାର ପଲଙ୍କ ଉପରେ ଗଦି ବିଛେଇ ଶୋଇବେ ।

ପାଟଘୋଡାର ସଇସ ବଡ ଆଶା କରି ସେ ଖରୁମୁସିଆ ମଣିଷମାନଙ୍କୁ ଚାହିଁଲା । ସମସ୍ତେ କେବଳ ଦୂରରୁ ସେ ଘୋଡାକୁ ଦେଖୁଥା'ନ୍ତି । କ'ଣ ସବୁ କାଲୁରୁ କାଲୁରୁ କହୁଥା'ନ୍ତି । ଧେତ୍, ଏଗୁଡାକ କେହିହେଲେ ମାଲିକପଣିଆକୁ ଭାଜନ ନୁହଁନ୍ତି – ଭାବିଲା ସଇସ । ସେ ପାଟଘୋଡାର ବେକ ଆଉଁସି ଦେଉଥାଏ । ତାକୁ ଶୁଭିଲା କିଏ ବଡପାଟିରେ ଡାକୁଛି, 'ଆବେ, ସେଠି କାହିଁକି ଅଛୁ ? ଆଡ ହେଇଯା, ଏ ଘୋଡା ନିଲାମ ଡକା ହେବ !' ସଇସ ଟିକିଏ ସେଆଡେ ଚାହିଁ ପୁଣି ଘୋଡା ଉପରେ ହାତ ମାରିଲା । ମନକୁ ମନ କହିଲା, 'ଡାକୁନ ଯାହା ଡାକିବାର ! ତମ ହାତରେ ଆଉ କ'ଣ ହେବ କି ! ଆସିଲ ଦେଖି, କେହି ଯଦି ଅଛ ସେମିତି ବାପର ପୁଅ ! ଏ ଘୋଡା ପିଠିରେ ଥରେ ବସିଯାଅ ।'

ସମସ୍ତେ ରଡିଛାଡି ଡାକିଲେ । ଏଣିକି ଏ ସମସ୍ତେ ତା' ମାଲିକ । ଇସ୍, ଏତେ ମାଲିକ ତା'ର, ଆଉ ତେ ମାଲିକ ଏ ଘୋଡାର ? ସେ ଟିକିଏ ଘୁଞ୍ଚିଗଲା । ତାକୁ ଧରିପକେଇ ସେମାନେ ଖୁବ୍ ବାଡେଇଲେ । ଧକିଆମାରି ଭିଡି ନେଇଗଲେ । ନାଗଫଣା ଟୋଳିଲା ପରି ରଜାଘୋଡା ତାକୁ ଚାହିଁଥାଏ ଉଛରୁ । ଫୁ ଫୁ କାର କରୁଥାଏ । ଭିଡି ହେଉଥାଏ...

ସେଦିନ ସଞ୍ଜବେଳେ ଶୁଣାଗଲା ଯେ ଯୋଗୀ ପୋହଳାବାଲା ସେ ଘୋଡାକୁ ଚାଳିଶ ଟଙ୍କାରେ କିଣିନେଲା । ବାକି ସମସ୍ତେ ଓହରିଗଲେ ଭୟରେ । ସେତେବେଡ ଜନ୍ତୁକୁ ପୋଷିବାର କାହାରି ସାହସ ହେଲା ନାହିଁ । ଯୋଗିଆ ବେପାରୀ । ପୁରୁଣା ଅଖା, କାଚ ମାଳି, ମୁଦି, ତେଲ, ସାବୁନ, ଦର୍ପଣ, ପାନିଆ ସାଙ୍ଗକୁ କିଛି ରସ-ବାସନ ନେଇ ହାଟରୁ ହାଟକୁ ସେ ଯାଏ । ତା'ର ଦୋମିଶା ଗଧତ ଘୋଡା ବୁଢାହୋଇ ଦୁଇଦିନ ହେବ ମରିଯାଇଥାଏ । ସେ କିଣିଲା ପାଟଘୋଡା । ଖୁବ୍ ମଜ୍‌ଭୁତ ଜାନୁଆର୍‌ଟାଏ ପାଇଲା । ଏଣିକି ଢେର୍ ମାଲ୍ ଲଦିପାରିବ ।

ସରକାର ବି ଖୁସି ହେଇଗଲେ । ଗୋଟାଏ ଦାୟ ଗଲା ! ଏତେବଡ ଘୋଡାଟାଏ ଥାଇ କ'ଣ ହେଇଥାନ୍ତା ? ରଜା – ରାଜୁଡାର ଚିହ୍ନ ଗଲା – ଭଲ ହେଲା ! ସେହିଭଳି ହାତୀ ଛତି

ନିଲାମ କରି ଟଙ୍କା ଜମା କରିଦେଲେ । ନିଲାମ ଭଳି ଏତେ ସହଜ ଆଉ ନିର୍ଦ୍ଦୋଷ ଉପାୟ ନଥିଲେ କ'ଣ କରିଥା'ନ୍ତେ ସର୍କାର ସତେ! – କହୁଥିଲେ ଶ୍ରୀହରି ପଟ୍ଟନାୟକ ।

ସହରର ରାଜରାସ୍ତା କଡରୁ ଗଛସବୁ ପ୍ରାୟ ହଣା ହୋଇଗଲା । ରାଣୀ ବଗିଚାରେ ଗାଈ, ଘୁଷିରି ଗୋଠ ପଶିଗଲେ । ପଥର ମୂର୍ତ୍ତି ସବୁ ସେ ଭିତରୁ କୁଆଡେ ଉଭେଇଗଲେ । ପଦ୍ମପୋଖରୀ ପାଣି ଶୋଷି ହୋଇଗଲା । ହାଟରେ ବାଟରେ ନୂଆଲୋକ, ନୂଆ ଡାକ, ନୂଆ ମୁହଁ... ସବୁ କେମିତି ଘାଇଁ ଘାଇଁ ବଦଳିଗଲା । ଦିନ ଦି'ପହରଟାରେ କାଉଁ କାଉଁଆ ଖରାବେଳେ ନିଶାରେ ଟଳି ଟଳି ପହରାବାଲା ବଜାର ଉପରେ ରଡି ଛାଡିଲା, "ବସ୍ତିବାଲେ... ହୁସିଆର... ହୁସିଆର !"

ଛପରଲି ଛୋଟ ଛୋଟ ଧାଡିବନ୍ଧା ଘରଗୁଡିକ ବଙ୍କାବଙ୍କା ହୋଇ ନଇଁଗଲେ, ଲେପଟି ଗଲେ ବୁଢୀଗାଈ ପରି । ନିରିମାଖି ମଣିଷଗୁଡାକ ସେମିତି ବାଲୁ ବାଲୁ ଚାହିଁଥିଲେ ମେଲାମୁହାଁଣିଆ ଅଗଣାମାନଙ୍କୁ । ସେଇଠୁ ଘୁମୁରୁଥିବା ଗୁଡିଏ ପରିଚିତ ପାରା ହୁସ୍‌କିନା ଉଡିଗଲେ କାହିଁ କୁଆଡେ । ପର୍ବପର୍ବାଣୀ, ଯାନିଯାତ୍ରା ସବୁ ଉଠିଗଲେ ! କୁଆଡେ ଗଲେ ସତେ ?

କୁଆଡେ ଗଲା ସେ ଅଷାଣ୍ଡୁଆ ବରଜା ? ଅନେକଙ୍କର ବିଶ୍ୱାସ ଯେ, ସେ ହିଁ ଏ ବୋହିଗଲା ସୁଅକୁ ରୋକି ପାରନ୍ତା । ପାଟଘୋଡାର ସେ ଅଶ୍ୱାରୋହୀ ପାଇଁ କିଛି ଅସାଧ ନାହିଁ । ସେ ଧଳା ପାଗଭିଡା ବୃଷାଳିଆ ମର୍ଦ୍ଦ ଚାହିଁଲେ କାଣି ଆଙ୍ଗୁଠିରେ ପର୍ବତ ଟୋକି ଧରିପାରେ । କାହିଁ ବରଜା... କାହିଁ ବରଜନାଥ ? ସେ କ'ଣ ଆଉ ଏ ରାଜ୍ୟକୁ ମନେପକାଉ ନାହିଁ ? ପାଟଘୋଡାକୁ ମନେପକାଉ ନାହିଁ ? ପାଟଘୋଡା ବା ଆଉ କାହିଁ ?

କିଏ କହୁଥିଲା ଯେ, ଯୋଗୀ ପୋହଳାବାଲା ପାଟଘୋଡାକୁ ମଣ କରିବାକୁ ତିନିଦିନ କାଳ ତାକୁ ଖାଇବାକୁ ଦେଲାନାହିଁ । ନିମ୍ବ ଗଛରେ ବାନ୍ଧି ଖାଲି ବାଡେଇଲା । କ୍ଷୀରୋଦ୍ର ପାଟପରି ଝଲମଲ ସେ ଦେହଯାକରେ ବାଉଁଶ ଡେଙ୍ଗାର ଦାଗ । ଠାଏ ଠାଏ ନୋଳା-ଫଟା ରକ୍ତ ।

ପାଟଘୋଡା ଉଧୁଳିଲା । ନଡିଆକତାର ଦଉଡି ତା' ବେକରେ ରକ୍ତ ଜୁଡୁବୁଡୁ ହୋଇ ଗହୀରକୁ ଗହୀର ଘା' କାଟିଗଲା । ଯୋଗିଆ ଦୂରରୁ ଫାନ୍ଦ ଫିଙ୍ଗି ଘୋଡାର ଗୋଡକୁ ବାନ୍ଧିଦେଲା । ଚାରି ଖୁରାକୁ ଏକାଠି କରିଦେଲା ।

ଚାରିଦିନ ଉପାସରେ ପାଟଘୋଡା କୁଢେଇ ହୋଇ ପଡିଲା କାଦୁଅରେ । ଗଜଦନ୍ତ ଚାମର ପରି ତା'ର ଲାଞ୍ଜ ବୁଡିଗଲା କାଦୁଅରେ ।

...ଯା'ପରେ ହାଡୁଆ, ଡଣାଖିଆ, ନହକିଆ, ଉଚ୍ଚ ଘୋଡାଟିଏ ତା' ପିଠି ଉପରେ ପୁରୁଣା ଅଖାର ବିରାଟ ବୋଝ ବୋହି ରେଗୀଣା କୁକୁର ପରି ଗୋହୀରି ଦାଣ୍ଡରେ ଝପର ଝପର ଧାଇଁଲା ହାଟରୁ ହାଟକୁ । ତା' ବେକରେ, ଫଡିଆରେ ଲସା ରକ୍ତ ଝରାଉଥିଲା ଘା' । ତା' ବର୍ଣ୍ଣ କାଦୁଆ, କଷୁଟିଆ । ତା' ଲାଙ୍ଗୁଡ ମୁଣ୍ଡି ଛାଞ୍ଚୁଣୀପରି ଥୁଣ୍ଟା । ତା' ବାଲୁରା ମୁଣ୍ଡ ସବୁବେଳେ ତଳକୁ ।

ଯୋଗିଆ ଦିନବେଳେ ହାଟକୁ ଯାଏ, ଫେରିଆସେ ସଞ୍ଜବେଳେ । ଘୋଡାର ଆଗଗୋଡ ଯୋଡାକୁ ଏକାଠି ବାନ୍ଧି ତାକୁ ଛାଡିଦିଏ ତା' ଘର ସାମ୍ନା ସନ୍ତସନ୍ତିଆ କ୍ଷେତରେ । ସେଇଠି ରାତିଯାକ

ଅନ୍ଧାରରେ ଘୋଡା ଘାସ ଚରେ । ତିନି ଗୋଡରେ କାଦୁଅରେ ଢପ ଢପ, ଚବର ଚବର ଚାଲୁଥିବା ଶବ୍ଦଟାଏ ସାଇପଡିଶା ଶୁଣନ୍ତି ।

ପାଟଘୋଡାର ସଇସ ତା' ଘର ବିକିଦେଇ ଯୋଗିଆଠାରୁ ରଜାକୁ କିଣି ନେଇଥାନ୍ତା । ଯୋଗିଆ କିନ୍ତୁ ବେପାରୀ... ମାଗିଲା ଚାରିଶହ ଟଙ୍କା । ସଇସ କାନ୍ଦିପକାଇଲା । କହିଲା, ସେ ଯୋଗିଆ ପାଖରେ ଚାକର ହୋଇ ମାହାଳିଆ ଖଟିବ, ପାଳିବ ତା' ପାଟଘୋଡାକୁ । ଯୋଗିଆ କିଛି ନଶୁଣି ତାକୁ ତଡିଦେଲା । ସଇସ ଯୋଗିଆର ତୋଟିକୁ ଧରି ଦୁହିଁ ଦେଇଥାନ୍ତା । ତାକୁ ପିଆଦା ଭିଡିନେଲେ । ତାକୁ ଘୋଷାରି ନେଲାବେଳେ ସେ ପାଟିକରି କହୁଥାଏ, ତା' ଘୋଡାକୁ, "ରହିଥା ରାଜା, ତୋ' ମାଲିକ ନିଶ୍ଚେ ଆସିବ । ସେ ବାଘ ଏ ସମସ୍ତଙ୍କୁ ରାେବେଇ ଖାଇଯିବ । ତୋତେ ନିଶ୍ଚେ ମୁକୁଳେଇ ନେବ । ସେ ତୋତେ ଭଲପାଏ । ମୋ'ଠୁ ବି ବେଶି ଭଲପାଏ ।"

ଏବେ କେତେଦିନ ହେଲା ରାତି ଅଧ ହେଲେ ଗୋଟାଏ ଘୋଡା ଧାଇଁବାର ଶବ୍ଦ ଶୁଭୁଛି । ହୁରି ପଡିଯାଇଛି ଯେ, ରାଣା ଡକେଇତ ତା' ପାରିଧିରେ ବାହାରିଛି । ସାରା ସହର ନାବାଳକ ପରି କାନଡେରି ଛେପ ଢୋକୁଛି, ନିଃଶ୍ୱାସ ସୁଦ୍ଧା ମାରୁନାହିଁ । ରାଜରାସ୍ତାରେ ମାଲିକପଣିଆର ଓଜନିଆ ଟାପୁଶବ୍ଦ... ଟପ୍, ଟପ୍ ଟପ୍, ଟପ୍ । ସେ ବି ବେଶି ବେଳ ନୁହେଁ । ଘେରାଏ ବୁଲିଦେଇ କିଏ ଯେମିତି କ'ଣ ଖୋଜୁଛି – ପାଉନାହିଁ ବୋଲି ଫେରିଯାଉଛି । ରାତି ପରେ ରାତି ସେଇକଥା ।

କାଲି ଗଲା ଶ୍ରାବଣ-ପୂର୍ଣ୍ଣିମା । କାଲି ରାତିରେ ଘୋଡାଟାପୁ ଘାଉରେଇ ହେଲା ଯୋଗୀ ପୋହଳାବାଲାର ଘର ପାଖରେ । ଭୁସ୍ ଭାସ୍ ଶବ୍ଦ ହେଲା । କ'ଣ ଗୁଡାଏ କୁଢେଇ ହେଇଗଲା, ଭୁଷୁଡି ପଡିଲା, ଛିନ୍‌ଛତ୍ର ହେଇ ଚୁଣି ହେଇଗଲା । ଘୋଡାଟାପୁ ଅପସରି ଗଲା ଦଶାହରା ପଡିଆଠାରୁ ଅଗନାଗ୍ନି ବନସ୍ତ ଭିତରକୁ ।

ସକାଳୁ ଝପ୍ ଝପ୍ ବର୍ଷା । ପାଣି କାଦୁଅରେ ହାମୁଡି ପଡି ବେକ ଲମ୍ୱେଇ ଦେଇଛି – ଯୋଗିଆର ଘୋଡା... ବୁଢା ହଡା ପରି ଅସନା ଜନ୍ତୁଟାଏ ।

ଯୋଗିଆର ଘର ଖ୍ୱିନ୍ ଭିନ୍ । ତା'ର କାନ୍ଥ ନାହିଁ, ଛାତ ନାହିଁ । ଚାରିଆଡେ ଚୁଣି ହୋଇଯାଇଛି ମୁଦି, ମାଳି, ଦର୍ପଣ । ବଣୁଆ ହାତୀଟିଏ ପଶି ମର୍ଦ୍ଦିଦେଇ ଯାଇଛି ଯୋଗିଆର ଅଯୋଗ୍ୟପଣକୁ । ପ୍ରଚଣ୍ଡ ଖଣ୍ଡିଆ-ଭୂତଟାଏ ମନ୍ଥି ଦେଇଛି ସେ ଖଣ୍ଡମଣ୍ଡଳକୁ ।

ମଲା ଘୋଡା ପିଠିରେ ମଲା ମଣିଷଟାଏ । ତାକୁ କୁଣ୍ଢେଇଲା ପରି ଚାରିକାତ ମେଲି ପଡିଛି । ତା' କାନ୍ଧରେ ମୁଣ୍ଡ ନାହିଁ ! ଛୋଟିଆ ଖୁରୁମୁସିଆ, ମସିଆ ପିନ୍ଧା ଅଯୋଗ୍ୟ ଯୋଗିଆଟାଏ ।

ଶ୍ରାବଣ-ପୂର୍ଣ୍ଣିମାର ଅଧରାତିରେ ବର୍ଷା ଛେଚିଲା ବେଳେ କିଏ ସେ ସେମିତି ସିଂହପରି ଗର୍ଜୁଥିଲା ? ପଡିଶାଘରର କବାଟ ଫାଙ୍କରୁ ଦିଶୁଥିବା ଧପ୍ ଧପ୍ ଭୂତଟାଏ ଭଳି କିଏ ସେ ଅର୍ଘା ପାଞ୍ଚହାତିଆ ମଣିଷ ?... କିଏସେ ଉନ୍ମତ୍ତ ଅଶ୍ୱାରୋହୀ !

ଆମର ଏବେ ମଧ ବିଶ୍ୱାସ ଯେ ଏଭଳି ଅସାଧ ସାଧିବାକୁ ସେଇ ମାତ୍ର ଗୋଟାଏ ପୁଅ ଜନ୍ମ ହୋଇଚି ଏ ରାଜ୍ୟରେ । ସେ ହିଁ ଆଢୁଆଳରେ ଛପିଛି । ସେ ହିଁ ପାଟଘୋଡାର ସୁଯୋଗ୍ୟ ପ୍ରେମିକ ଅଶ୍ୱାରୋହୀ !



# ଯଯାତି

ରାୟଗୁରୁ ପରିବାରରେ ଏମିତି କାହିଁକି ଗଙ୍ଗଶିଉଳି ଫୁଲ ପରି ସମସ୍ତେ ଫୁଟୁ ଫୁଟୁ ଝଡି ପଡନ୍ତି, ଆଜିକୁ ସାତପୁରୁଷ ହେଲା, କେହି ଜାଣନ୍ତି ନାହିଁ । ଅଭିଶପ୍ତ ଦେବତା, ଗନ୍ଧର୍ବ ପରି ସେମାନଙ୍କ ରୂପ । ଢଳଢଳ ପଦ୍ମପାଖୁଡାପରି ସେମାନଙ୍କ ଆଖି । ଶାଣିତ ସୁବର୍ଣ୍ଣପରି ରଙ୍ଗ । ଅଥଚ ସବୁଗିଡକ ଅଳ୍ପାୟୁଷ । ଅଚଳାଚଳ ସଂପତ୍ତି, ଯଶ, ମାନ, ବିଦ୍ୟାରେ ଝଟକୁଛନ୍ତି ଏ ଖଣ୍ଡମଣ୍ଡଳ; ଅଥଚ ସେସବୁ ଭୋଗିବାକୁ ସେମାନଙ୍କର ବେଳ ନାହିଁ । ଲୋକେ ସେଥିପାଇଁ ସେ ପରିବାରଟାକୁ ଯେତିକି ଖାତିର କରନ୍ତି, ତା' ଅପେକ୍ଷା ଅଧିକ ତ୍ରସ୍ତ ହୋଇ ଅନେଇଁ ରହନ୍ତି ଦୂରରୁ – ଚାଳିଶି ବର୍ଷ ଘାଟୀ ଉପରେ କେମିତି ବଜ୍ର ପରି ଛିଡିପଡୁଛି କାଳଚକ୍ର ସେମାନଙ୍କ ମୁଣ୍ଡରେ । ସେଥିରୁ କେହି ହେଲେ ନିସ୍ତାର ପାଉନାହାନ୍ତି । ବହୁବିଧ ତନ୍ତ୍ର, ମନ୍ତ୍ର, ପ୍ରୟୋଗ, ଯାଗଯଜ୍ଞ, ଅନ୍ନଛତ୍ର, ଜଳାଶୟ, ମନ୍ଦିର ପ୍ରତିଷ୍ଠା, ଅପରାଜିତା, ରୁଦ୍ର ଅଭିଷେକ, ଲକ୍ଷ ଲକ୍ଷ ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପରେ ସୁଦ୍ଧା କୌଣସି ଫଳ ଲାଭ ହେଲାନାହିଁ । ନିଷ୍ଠୁର ଦେବୀ-ଖର୍ପର ପରି ଦାନ୍ତ ଟେକିହୋଇ ରହିଛି ଚାଳିଶ ବର୍ଷ ପାଖରେ । ତାକୁ ଡେଇଁଯିବ ଏପରି ସାଧ କାହାର ? – ଓଃ, କି ଅଭିଶାପ ଗ୍ରାସି ରହିଛି ଏ ପ୍ରତିଭାବନ୍ତ ପରିବାରଟାକୁ !

ଏବେ ତିନିପୁରୁଷ ହେବ ସେମାନେ ଏ ଭାଗ୍ୟଲିପିକୁ ମାନିନେଇଛନ୍ତି । ସ୍ଥିର କରିଛନ୍ତି ଯେ କେବଳ ସବୁଠାରୁ ବଡପୁଅ ହିଁ ବିଭାହେବ; ବାକି ସମସ୍ତେ ବାଡୁଅ ରହିବେ । କ'ଣ ପ୍ରୟୋଜନ ଅଛି ଗୁଡାଏ ଅଳ୍ପାୟୁଷଙ୍କ ସଂଖ୍ୟା ବଢାଇବାରେ ? କିନ୍ତୁ ବଂଶରକ୍ଷା ହେଉଥାଉ ! ଯଦି କେବେ ଏ ଦୁର୍ଲଙ୍ଘ୍ୟ ଗାର ଘୁଞ୍ଚିଯାଇପାରେ ! ସେ ପରିବାରରେ ତ ସୁବିଜ୍ଞ ପଣ୍ଡିତଙ୍କର ଅଭାବ ନାହିଁ । ଅନେକ ଲୋକ ଦୂରଦୂରାନ୍ତରୁ ତାଙ୍କ ପାଖକୁ ଆସନ୍ତି କୌତୂହଳ ଏବଂ ଅବିଶ୍ୱାସ ନେଇ । ଆଲୋଚନା କରନ୍ତି । ଅଭିଶାପ ଖଣ୍ଡନ ପାଇଁ ରୁଦ୍ରଯାମଳ ସ୍ତୋତ୍ର ପାଠ କରିବାକୁ କହନ୍ତି; କିନ୍ତୁ ରାୟଗୁରୁ କିଛି ନକହି ହସି ଦିଅନ୍ତି; ବରଂ ବେଳେବେଳେ ପରିହାସ କରି କହନ୍ତି; "ରାୟଗୁରୁ ପରିବାର ଏକପ୍ରକାର ଦେବତା ପରିବାର, କାରଣ ଏଠି କେହି ଜରାଗ୍ରସ୍ତ ହୁଅନ୍ତି ନାହିଁ । ଆଉ ସମସ୍ତଙ୍କ ପାଇଁ ସିନା

ମୃତ୍ୟୁ ଏକ ଅଜ୍ଞାତ ଭୟ, କେଉଁଠି ଲୁଚିରହିଛି ଜଣା ପଡୁନାହିଁ – କିନ୍ତୁ ଆମ ପାଇଁ ତ ସେ ଅତି ସ୍ଥିର ପ୍ରାଞ୍ଜଳ – ଅଗ୍ନିରେଖାଟିଏ! ସେଥିପାଇଁ ଆମର ସଂକ୍ଷିପ୍ତ ଜୀବନକୁ ଆମେ ସଂଯତ, ନିୟନ୍ତ୍ରିତ କରିପାରୁଛୁ। ପ୍ରସ୍ତୁତ ହୋଇ ପାରୁଛୁ ବିନା ଦ୍ୱିଧା ସଂକୋଚରେ ପାରିହୋଇଯିବା ପାଇଁ।" – ଆସିଥିବା ଲୋକେ ଏ ପରିହାସକୁ ଆଉ ପ୍ରକାରେ ବୁଝନ୍ତି। ଏତେ ଅସହାୟତା ଦେଖି ସେମାନେ ତଳକୁ ମୁହଁପୋତି ଚାଲିଯାନ୍ତି। ତାଙ୍କୁ ବିକଳ ଲାଗେ। ଆଖି ଛଳ ଛଳ ହୋଇଯାଏ।

ଏବେ କିନ୍ତୁ ଦୁଇ-ତିନି ବର୍ଷ ତଳେ ଗୋଟିଏ ଅଦ୍ଭୁତ ଘଟନା ଘଟିଛି। ବିଶ୍ୱନାଥ ରାୟଗୁରୁ ସପ୍ତମ ପୁରୁଷର ବଡପୁଅ। ତାଙ୍କର ଛ'ଭାଇ ସମସ୍ତେ ଅବିବାହିତ। କିଏ କେଉଁଠି ସବୁ ଭାରତସାରା ବିଭିନ୍ନ ମୁଲକରେ ବୁଲୁଛନ୍ତି। ସେମାନେ କିନ୍ତୁ ସମସ୍ତେ ଯଥାସମୟରେ ଘରବାହୁଡା ଫେରିଆସିବେ। ଯେମିତି ଦୁଇ ଦୁଇ ବର୍ଷ ଅନ୍ତରରେ ସେମାନେ ସଂସାରକୁ ଆସିଥିଲେ, ସେଇ କ୍ରମରେ ପ୍ରାୟ ସେମାନେ ବିଦାୟ ନେଇଯିବେ। ବିଶ୍ୱନାଥ ରାୟଗୁରୁଙ୍କୁ ଅଣଚାଳିଶ ପୂରିଆସିଲାଣି। ଆଉ ବର୍ଷକ ପରେ ଆରମ୍ଭ ହୋଇଯିବ ସପ୍ତମ ପୁରୁଷର ମହାପ୍ରୟାଣ ପର୍ବ। ସେଥିପାଇଁ ସମସ୍ତେ ପ୍ରସ୍ତୁତ। ସେ କିନ୍ତୁ କ'ଣ ଗୋଟାଏ ଆଶା ରଖି ତାଙ୍କ ସବା ସାନପୁଅର ନାଁ ରଖିଛନ୍ତି ମୃତ୍ୟୁଞ୍ଜୟ। ପିଲାଟିକୁ ଏଇଲାଗେ ନଅ ବର୍ଷ; କିନ୍ତୁ ତିନି ବର୍ଷ ତଳେ ହଠାତ୍ ଦେଖାଗଲା ଯେ ତା'ର ମୁଣ୍ଡବାଳ ପାଚିଯାଉଚି। ସେ ଦୁର୍ବଳ ହୋଇ ଯାଉଛି। ଅନେକ ଡାକ୍ତର, କବିରାଜ, ହାକିମ ଆସି ପରୀକ୍ଷା ନିରୀକ୍ଷା କଲେ। ନାନାପ୍ରକାର ଚିକିତ୍ସା ସତ୍ତ୍ୱେ ପିଲାଟି ଶୀର୍ଣ୍ଣ ହୋଇଗଲା। ତା'ର ଥୋଡି ଉପରେ ଋଢ ଉଠି ପାଚିଗଲା। କାନମୁଣ୍ଡା ଉପରୁ ମାଉଁସ ଝୁଣିହୋଇ ଖପୁରିହାଡ ବାରିହେଲା। ସାରା ଦେହ ଶିରାଳ ହାଡୁଆ ଦିଶିଲା। ରାୟଗୁରୁ ପରିବାରର ସେ ଅଦ୍ଭୁତ ଆଖି ଯୋଡିକ ପଶିଗଲେ କୋଟରରେ। ଧୁଡୁଧୁଡୁ ହୋଇ ହାଡରୁ ଚମ ଓହଳି ପଡିଲା। ସମସ୍ତେ ବିମୂଢ ହୋଇ କେବଳ ଚାହିଁ ରହିଲେ, କେମିତ ବର୍ଷ ଚାରିଟାରେ ତାଙ୍କ ଆଗରେ ସାଢେ ତିନିଫୁଟ ଉଚ୍ଚ ପାକଳ ବୁଢାଟିଏ ତାଙ୍କୁ ମିଟିମିଟି ଅନେଇଛି। ଆଶ୍ଚର୍ଯ୍ୟ! ଯେଉଁ ପରିବାରରେ ବୁଢା ହେବାର ଅନୁଭୂତି ନାହିଁ, ତା' ପାଇଁ ସୁଯୋଗ ମଧ ନାହିଁ, ସେଇଠି ପୁଣି ଏମିତି ଅକାଳ ବୃଦ୍ଧଟିଏ ଜନ୍ମିବ – ଏହା ସମସ୍ତଙ୍କୁ ବିସ୍ମିତ କଲା। ସାତପୁରୁଷର ସଞ୍ଚିତ ଜରା ବୋଧହୁଏ ରୂପ-ପରିଗ୍ରହ କଲା। ଅକାଳମୃତ୍ୟୁ ତାକୁ ଏ ପରିବାରରେ ପଶିବାକୁ ଦେଉନଥିଲା – ଏବେ ସେ ମୃତ୍ୟୁକୁ ଲଙ୍ଘି ଆସିଲା। ବିଶ୍ୱନାଥ ରାୟଗୁରୁ ଜାଣି ନଥିଲେ ଯେ ତାଙ୍କ ସାନପୁଅ ମାଧମରେ ତାଙ୍କୁ ଏମିତି ପରିହାସ ସହିବାକୁ ହେବ।

ବଡ ବଡ ଡାକ୍ତର ମତ ଦେଲେ ଯେ ତାହା ଏକ ଅତି ଅସାଧାରଣ ଉଦ୍ଭଟ ରୋଗ। ରୋଗର ନାଁ ବାର୍ଦ୍ଧକ୍ୟ। ସେ ଥରେ ଗ୍ରାସ କଲେ ପ୍ରଖର ବେଗରେ ଜରା ମଡେଇ ହୋଇପଡେ। ବର୍ଷକରେ ସେ ଦଶବର୍ଷ ଗ୍ରାସ କରିଯାଏ। ଏଣୁ ମୃତ୍ୟୁଞ୍ଜୟର ପରମାୟୁ ଆଉ ବର୍ଷକରୁ ଅଧିକ ନୁହେଁ।... କିନ୍ତୁ ଏସବୁ ସତ୍ତ୍ୱେ, ବଡ ଆଶ୍ଚର୍ଯ୍ୟର କଥା ଯେ ଶରୀର ଜୀର୍ଣ୍ଣ ବିବର୍ଣ୍ଣ ହୋଇଯାଉଥିଲେ ମଧ ମନରେ ସେ ସେଇ ନଅ ବର୍ଷର ବାଳକଟିଏ। ସେମିତି ଖୁଜୁବୁଜିଆ; ଖେଳପ୍ରିୟ, ଅଝଟ ସାନପୁଅ। ସେ ତା' ଚାରିଆଡେ ସବୁଦିନେ ଏତେ ଜନଗହଳି ଦେଖି ଟିକିଏ ଦବିଯାଇଛି।

ବୁଝିପାରୁନାହିଁ ତା'ର କାରଣ । କେମିତି ଗୋଟାଏ ଆତଙ୍କରେ ସେ ମା' ପାଖକୁ ଲେସି ହୋଇ ବସିରହୁଛି ।... ମା' ସବୁବେଳେ କାନ୍ଦୁଥିବା ସେ ଦେଖୁଛି, ବୁଝିପାରୁନାହିଁ । ଖେଳିବାକୁ ହଠାତ୍ ଉଠିପଡିଲାବେଳେ ଆଣ୍ଠୁ ଲାଖିଯାଉଛି । ସେ ବିକଳ ହୋଇ କାନ୍ଦିପକଉଛି । ସମସ୍ତେ ଚାଲିଗଲା ପରେ କେବଳ ମଳିନବସନା ମା'ଟିଏ ତାକୁ କୋଡରେ ପୂରେଇ ବସିରହନ୍ତି । ତା'ର ଧଳା ଟାଆଁସା ବାଳକୁ ଆଉଁଷି ଦେଇ, ବିହ୍ୱଳ ହୋଇ ଗୁଡାଏ ବାହୁନି ବାହୁନି କାନ୍ଦନ୍ତି । ପୁଅ ତାଙ୍କ ଆଖିରୁ ଲୁହ ପୋଛି ନିଜେ କାନ୍ଦି କାନ୍ଦି ଅଳି କରେ, "କାନ୍ଦନା ମା', କାନ୍ଦନା ।" ଆଖିବୁଜି ସେ ଅନୁଭବ କରନ୍ତି ଯେ ପିଲାଦିନେ ତାଙ୍କ ଜେଜେବାପା ପିଣ୍ଡା ଉପରୁ ତାଙ୍କୁ ପ୍ରବୋଧ କରୁଛନ୍ତି – ଅବିକଳ ସେମିତି ସ୍ୱର !! ସେ ମଟମଟ ଚାହିଁଦିଅନ୍ତି । ଭୟଙ୍କର ଦୁଃସ୍ୱପ୍ନ ପରି ସେ ଅନ୍ୟ ସତ୍ୟଟାକୁ ସହଜରେ ମାନି ନେଇପାରନ୍ତି ନାହିଁ । କେତେବେଳେ ଉତାରୁ ଖେଳନା, ଚିତ୍ରବହି, ରଙ୍ଗ ତୂଳୀ ନେଇ ପୁଅକୁ ଖେଳାନ୍ତି । ସେ ହାତରେ ତୂଳୀଟାକୁ ସ୍ଥିର କରି ଧରିପାରେ ନାହିଁ । ତା' ହାତ ଥରେ । ତା' ମୁହଁ ଥରେ । ମା' ବିକଳରେ କାନ୍ଦିପକାନ୍ତି । ତା' ହାତ ଧରି ଚିତ୍ର କରି ଦିଅନ୍ତି । ସେ କାଶିଲା ପରି ହସିଦିଏ । ତା'ର ସେ ରେଖାବହୁଳ ବୁଢା ମୁହଁରେ ଛୋଟ ପାକୁଆ ପାଟିଟିକୁ ଦେଖି ତାଙ୍କ ଅନ୍ତରାତ୍ମା ଦୋହଲିଯାଏ । ସେ ଶିହରି ଉଠନ୍ତି ।

ବିଶ୍ୱନାଥ ରାୟଗୁରୁଙ୍କ ପୂର୍ବରୁ କେହି ପୁତ୍ରକଷ୍ଟ ଭୋଗି ନଥିଲେ । ତାଙ୍କୁ ସେଥିପାଇଁ ଆଉରି ଗୋଟାଏ ଚୋଟ ଖାଇବାକୁ ପଡୁଛି । ତାଙ୍କ ତଳ ଭାଇ ଗୁଜରାଟରୁ ଫେରିଆସିଲେଣି । ଏଇ ନୂଆ ବିପତ୍ତି କଥା ଶୁଣି ସେ ଚାଲି ଆସିଛନ୍ତି । ମୃତ୍ୟୁଞ୍ଜୟକୁ ପ୍ରଥମେ ଦେଖିଦେଇ ସେ ସ୍ତମ୍ଭିତ ହୋଇଗଲେ । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ଭାଇନାଙ୍କ ପାଖରେ ମୂକ ହୋଇ ବସିରହିଲେ କିଛି ସମୟ । ବିଶ୍ୱନାଥ ରାୟଗୁରୁ ଭାଇକୁ ଦେଖି ବୁଝିଗଲେ । ବୀରେନ୍ଦ୍ର ସତକୁ ସତ ଇନ୍ଦ୍ରପରି ଦେଖିବାକୁ । ତାଙ୍କଠାରୁ ଆଉରି ଟିକେ ଉଞ୍ଚ । ଓସାର ବୁକୁ । ଲମ୍ବା ଲମ୍ବା ଗୋଟାଳ ବାହୁ । ସେ ହୀରା ମୁଦିଟା ତା' ହାତକୁ କେମିତି ମାନୁଚି ସତେ ! ଆଖି ଝଟକୁଚି ହୀରାପରି । ଚାହିଁଥିଲେ ଚାହିଁରହିବାକୁ ମନ ହେବ । ସେ ଆସିଛି, ତା' ପାଳି ବେଳକୁ ମୁଣ୍ଡ ପତେଇଦେବା ପାଇଁ ।... ତାଙ୍କ ଭିତର ଗୁରାଣ୍ଡି ହୋଇଗଲା । ବିଦ୍ରୋହ କରିଉଠିଲା ଅନ୍ତରାତ୍ମା । ସେ ନିଜେ ବରଂ ପାଞ୍ଚଥର ଜନ୍ମି ଏମିତି ମରିଯାନ୍ତେ – ବୀରେନ୍ଦ୍ର ଏ ରୂପ, ଏଇ ବିକ୍ରମ ନେଇ ବଞ୍ଚିଯାଆନ୍ତା ଭଲା !

ମାମୁଁ ଆସି ପହଞ୍ଚିଲେ । ତାଙ୍କ ବୟସ ଷାଠିଏ ଉପରକୁ । ବିଶ୍ୱନାଥ ରାୟଗୁରୁଙ୍କ ମା' ବହୁଦିନୁ ତଳ ଖୁଆଡରେ ଦିଅଁଘର ପାଖେ ରହୁଛନ୍ତି । କାନ୍ଦି କାନ୍ଦି ଆଖିକୁ ଭଲ ଦିଶୁନାହିଁ । ସେ ବିଧବା ହୋଇ କୋଡିଏ ବର୍ଷ ଧୈର୍ଯ୍ୟ ଧରି ରହିଛନ୍ତି । ଏତେ ବଡ ଘରର ଯାବତୀୟ ଦାୟିତ୍ୱ ତୁଲାଉଛନ୍ତି । ବିଶ୍ୱନାଥ ତାଙ୍କୁ ନପଚାରି କିଛି କରନ୍ତି ନାହିଁ ।

ମାମୁଙ୍କୁ ନେଇ ସେ ତଳ ଖୁଆଡକୁ ଗଲେ । ସେଇଠି ମା', ଗୋସେଇଁମା'ଙ୍କ ପାଖେ, ଦିଅଁଙ୍କ ପିଣ୍ଡାରେ ବସିଲେ । ସାଙ୍ଗରେ ବୀରେନ୍ଦ୍ର ମଧ ଥାଆନ୍ତି । ଦୁଇ ପୁଅଙ୍କ ଆଡକୁ ଥରଟିଏ ଚାହିଁଦେଇ ଭାଇନାଙ୍କୁ ଓଳଗି ହେଲେ । କହିଲେ ବସିବାକୁ । ମନରେ ହରଷ ନାହିଁ । ଖୁବ୍ ଉଦାସ

ଘର ।

ବିଶ୍ୱନାଥ ତାଙ୍କ ଗୁରୁଜନମାନଙ୍କୁ ଦେଖି କେମିତି ଟିକିଏ ଦମ୍ଭ ପାଇଲା ପରି ଅନୁଭବ କଲେ । ଏ ପ୍ରାଚୀନ ମଣିଷମାନେ କୋଡ଼ି କୋଡ଼ି ବର୍ଷ ରାୟଗୁରୁ ପରିବାରକୁ ତା'ର ସମ୍ପତ୍ତି, ଉଦୟ-ଅସ୍ତ ଭିତରେ ଧାରଣ କରି ଆସିଛନ୍ତି । ବିପତ୍ତିର ମେଘ ପୁଣି ଘୋଟିଆସୁଥିବାର ସେମାନେ ଅନୁଭବ କଲେଣି । ସେମାନଙ୍କର ପୁରୁଣା ଅଣ୍ଟା ନଇଁଗଲାଣି । ଆଉ ବୋଧହୁଏ ମାଡ ସହିବାକୁ ସେମାନେ ସମର୍ଥ ନୁହନ୍ତି । – ତଥାପି ଏମାନେ ତ ସେଇ ପିତୃକୁଳ, ମାତୃକୁଳ, ଯେଉଁମାନେ ଅନ୍ୟ ସମସ୍ତଙ୍କ ଅପେକ୍ଷା ବେଶି ଉଦ୍‌ବିଗ୍ନ । ବିଶ୍ୱନାଥ ରାୟଗୁରୁ କେମିତି ଗୋଟାଏ ଭରସାରେ ଚାହିଁଲେ ସେ ତିନିଜଣଙ୍କୁ । ବେଶି କରୁଣ, ଏକପ୍ରକାର ଅକୁଳାନ ସର୍ବଂହରା ପରି ଦେଖାଗଲେ ଗୋସେଇଁମା' । ସେ ତିନିପୁରୁଷର ଅବସାନ ଦେଖିଛନ୍ତି । ଶ୍ୱଶୁର, ସ୍ୱାମୀ ଏବଂ ପୁଅ । ବିଧବା ହେଲାପରେ କିପରି ସେ ପାଣ୍ଡପୁଅର ମରଣ ଦେଖି ସମ୍ଭାଳିଲେ, କେମିତି ତାଙ୍କ ଆତ୍ମାପୁରୁଷ ବୁକୁ ବାଦାରି ବାହାରିଗଲା ନାହିଁ, ଏହା ହିଁ ଆଶ୍ଚର୍ଯ୍ୟ । ସେ କାନ୍ଦିବାପାଇଁ କେବେ ହୁଏତ ଇଚ୍ଛା କରିନାହାନ୍ତି । ଶୋକାଛନ୍ନ ଅବସ୍ଥାରେ କେବଳ ରକ୍ତ ପାଣି ହୋଇ ଝରିଯାଇଛି । ମହାଭାରତ ଯୁଦ୍ଧର ରକ୍ତସ୍ନାନ ପରେ ଦ୍ୱାପର ଯୁଗର ଏ ଅବଶିଷ୍ଟ ଜନନୀଟି କାରୁଣ୍ୟକୁ ଶିଶୁଟିଏ ପରି ଲାଳନ କରୁଛି କେବଳ । ନିଜେ ଦିଶୁଛି ଧୂସର ଧରିତ୍ରୀ ପରି ।

ମାମୁ ତଳକୁ ଚାହିଁ ବସିଥିଲେ । ଦୀର୍ଘ ନିଃଶ୍ୱାସଟିଏ ତା' ମନକୁ ବାହାରିଗଲା ତାଙ୍କ ବୁକୁ ଭିତରୁ । କହିଲେ, "ବୁଝିଲ ବାପା ବିଶ୍ୱନାଥ ! ତୁମେ ତ ଆମ କୁଳଗୌରବ । ସବୁ ବିଦ୍ୟାରେ ପାରଙ୍ଗମ । ଅଳ୍ପ ବୟସରେ ଅଗାଧ ସାଗର ଲଙ୍ଘିଛ । ସବୁ ଆଗତ, ଅନାଗତ କଥା ବୁଝିସାରିଛ । ମୁଁ ଖାଲି ଗୋଟିଏ କଥା କହିବାକୁ ଆସିଲି । ସାନପୁଅ ମୃତ୍ୟୁଞ୍ଜୟ ବିଷୟ ଏ ଖଣ୍ଡମଣ୍ଡଳରେ ସମସ୍ତଙ୍କ ପ୍ରାଣ ଗୁରାଣ୍ଡି ଦଉଚି । ସେ ଦିବାରାତ୍ର ମୋ' ଆଖିରେ ନାଚୁଥିଲା ତ । କାଲି ରାତିରେ ମୁଁ ତାକୁ ସ୍ୱପ୍ନ ଦେଖିଲି । ସେଇ ସ୍ୱପ୍ନ କଥା ବଡ ଅଲୌକିକ । ମନେ ପଡିଲେ ମୋ' ଦେହ ଶୀତକଣ୍ଟା ମାରିଯାଉଛି । ସେଇ କଥା ତୁମକୁ କହିଦେବି ବୋଲି ଆସିଚି । ତୁମେସବୁ ଜାଣିବା ଶୁଣିବା ପିଲା । ତୁମେ ତେଣିକି ସେଥିରୁ କ'ଣ ବୁଝିବା କଥା ବୁଝିବ ।"

ମାମୁଙ୍କ କଥାରେ ସମସ୍ତଙ୍କର ମନ ଠୁଳ ହୋଇଗଲା । କ'ଣ ସ୍ୱପ୍ନ ହୋଇପାରେ ? ତାଙ୍କ ପରିବାରରେ ତ ଜୀବନ-ମରଣ ଅଲୌକିକ ବ୍ୟାପାର । ସେଥିରେ ସ୍ୱପ୍ନ କ'ଣ, ସତ୍ୟ କ'ଣ ? ସବୁ ସେମାନେ ଏକାପରି ଦେଖି ଶିଖିଲେଣି । ସମସ୍ତେ ମାମୁଙ୍କ ଆଡେ ଚାହିଁ ଅପେକ୍ଷା କଲେ । ମାମୁଙ୍କ ମୁଣ୍ଡରେ ଏବେ ସୁଦ୍ଧା କେରାଏ କଳାବାଳ ଗାର କାଟିଲା ପରି ପଡିଛି । ମାମୁ କସ୍ତୁରୀ ଟୋପା ଉପରେ ଦେବୀ ସିନ୍ଦୂର ଲଗାନ୍ତି । ସବୁଦିନ ବଗଳା ଗୁଣନ୍ତି । ତାଙ୍କ ଆଖିପତା ଓହଳିଲା ପରି । ଘୁମେଇଲା ପରି ଚେହେରା ।

ସେ ଆଖି ଟେକି ସମସ୍ତଙ୍କୁ ଚାହିଁଲେ । କହିଲେ, "ସେତେବେଳକୁ ପହିଲି କୁକୁଡା ଡାକି ନଥାଏ । ମୋ' ନିଦ କାହିଁକି କେଜାଣି ଭାଙ୍ଗିଗଲା । ଥରେ ଭାଙ୍ଗିଲେ ତ ଆଉ ନିଦ ହଉ ନାହିଁ ।

ମୋ' ଆଖି ମେଲା ଥାଏ । ମୁଁ ଜାଣ ଚାହିଁ ରହିଥାଏ । ଏତିକିବେଳେ ମୋତେ ଦିଶିଲା ଯେ ମୃତ୍ୟୁଞ୍ଜୟ ବାଡ଼ିଟିଏ ଧରି ଘର ଭିତରକୁ ପଶିଆସିଲା । ମୋ' ଆଗରେ ଠିଆହୋଇ ମୋ' ଆଖିକୁ ଚାହିଁଲା । କେମିତି ଗୋଟାଏ ଠାଇ ଠାଇ ଗଳାରେ କହିଲା, 'ଏଇଥର ରାୟଗୁରୁ ବଂଶ ମୁକୁଳିଯିବ । ମୁଁ ଆସିଛି ମୁକୁଳେଇବାକୁ । ମୁଁ ହିଁ ସେମାନଙ୍କ ଆୟୁ ପାନ କରିଥିଲି । ସେମାନେ ଅଳ୍ପାୟୁଷ ହୋଇଗଲେ ସାତପୁରୁଷ । ମୁଁ ନିଜେ ଜନ୍ମିଛି ସବୁଠାରୁ ଅଳ୍ପାୟୁ ହୋଇ । ରୋଗ, ଜରା, ମରଣ ମୁଁ ଭୋଗିବି ସମସ୍ତଙ୍କ ପାଇଁ ତା'ପରେ ସେମାନେ ମୁକ୍ତ ହୋଇଯିବେ । ମୋତେ ସେମାନେ ଚିହ୍ନିପାରୁ ନାହାନ୍ତି । ମୁଁ ସେମାନଙ୍କ ପୂର୍ବପୁରୁଷ । ମୁଁ ପ୍ରଥମ ରାୟଗୁରୁ । ମୋ' ନାଁ ପର୍ଶୁରାମ ନନ୍ଦ !"

ସମସ୍ତେ ଚମକିଉଠିଲେ ସେ ନାଁ ଶୁଣି । ରାୟଗୁରୁ ପରିବାର ସେ ପ୍ରଚଣ୍ଡ ପିତୃପୁରୁଷଙ୍କୁ ଚିହ୍ନନ୍ତି । ସେ ଥିଲେ ତନ୍ତ୍ର-ସିଦ୍ଧ ।

ମାମୁ କହିଲେ, "ମୁଁ ସେଇ ସପ୍ନରେ ତାଙ୍କୁ ନମସ୍କାର କଲି । ସେ ମୋତେ କେବଳ ଚାହିଁଲେ କିଛି ସମୟ । ତା'ପରେ କହିଲେ, 'ମୋ କଥା ସେମାନଙ୍କୁ ଜଣାଇଦେବୁ ।' – ଆସ୍ତେ ମଉଳିଗଲା ରୂପ । ସେ ଉଭେଇଗଲେ । ସେଇଠୁ ମୋତେ ଦେଖାଗଲା ନାନା ବର୍ଣ୍ଣର ଆଲୁଅ । କେତେ ପ୍ରକାର ମଣ୍ଡଳ, ଯନ୍ତ୍ର, ଫୁଲ, ହୋମଧୂଆଁ । ନାନାପ୍ରକାର ଶବ୍ଦ ଶୁଭିଲା । ମୋତେ ଡର ମାଡ଼ିବାରୁ ଆଖି ଫିଟିଗଲା । ମୁଁ ଆଖି ବୁଜିଥିଲି ବୋଲି ଜାଣି ନଥିଲି । ମୋ' ବୁକୁ ଦାଉଁ ଦାଉଁ ହେଉଥାଏ । ରାତି ତଥାପି ଥାଏ । ପହିଲି କୁକୁଡ଼ା ଡାକିଦେବାରୁ ମୁଁ ଶେଯ ଛାଡ଼ି ଉଠିପଡ଼ିଲି । ହାତ ଗୋଡ଼ ଧୋଇ ମାଳେ ଗାୟତ୍ରୀ ଜପିଲି ପିଣ୍ଡ ଥୟ କରିବାକୁ । ମୋର ମନେହେଉଛି ପୁଅ, ଏଇ କଥା ହିଁ ସତ । ସେଇ ପର୍ଶୁରାମ ରାୟଗୁରୁ ଆସି ତୁମମାନଙ୍କୁ ମହାକାଳଦଣ୍ଡରୁ ମୁକୁଳାଉଛନ୍ତି । ସେ ଚାଲିଗଲେ ତୁମେ ମୁକ୍ତ ହୋଇଯିବ ।"

ବାରମ୍ବାର ବିଡ଼ମ୍ବିତ ହେଲା ପରେ ରାୟଗୁରୁମାନେ ଆଉ ସହଜରେ କୌଣସି ନୂତନ ଆଶାକୁ ନେଇ ହୋରି ଖେଳନ୍ତି ନାହିଁ । ଏସବୁ ସତ ହୋଇପାରେ; କିନ୍ତୁ ଚାଳିଶ ବର୍ଷର କାଳଦଣ୍ଡ ଏହାଠାରୁ ଆହୁରି ସତ୍ୟ । ଦୁଇଭାଇ ସେଥିପାଇଁ ବିଶେଷ ବିଚଳିତ ଜଣାଗଲେ ନାହିଁ । ମା' କିନ୍ତୁ ସମ୍ଭାଳି ପାରିଲେ ନାହିଁ । ଭାଇନାକୁ କହିଲେ, 'ଏଡେକ କଥା କ'ଣ କେବେ ସତ ହବ ? ଏ ଅଭିଶାପ କ'ଣ କେବେ ଖଣ୍ଡନ ହବ ? କେଜାଣି ! ତୁମକୁ ସିନା ପ୍ରତେ ହେଉଛି ଭାଇନା ! ହେଲେ, ମୁଁ ଏ ଚର୍ମ ଆଖିରେ ନ ଦେଖିଲାଯାଏଁ ବିଶ୍ୱାସ କରିପାରିବି ନାହିଁ ।'

"ଶୁଣ୍, ସୁଲକ୍ଷଣା ! ମୁଁ ଯାହା କହୁଛି ଅକ୍ଷରେ ଅକ୍ଷରେ ସତ ! କାଲିର ସପ୍ନ ସପ୍ନ ନୁହେଁ । ମୁଁ ଆଜି ମନେପକାଉଚି ପର୍ଶୁରାମ ରାୟଗୁରୁଙ୍କ ବିଷୟ, ଯାହା ପିଲାଦିନେ ଶୁଣିଥିଲି । ସେ କଥା ସାଙ୍ଗରେ ଏ କଥା ଯୋଡ଼ିଲେ ଜଣାପଡୁଛି ସତ ବୋଲି ! ତୁ ଜାଣିଚୁ କେମିତି ପର୍ଶୁରାମ ରାୟଗୁରୁ ପ୍ରଥମେ ଏ ରାଜ୍ୟକୁ ଆସିଥିଲେ ? ସେ ଆସିଥିଲେ ଚକୁଳିଆ ପଣ୍ଡା ରୂପରେ, ଅତି ହୀନ ଭିକ୍ଷାଣୀ ବ୍ରାହ୍ମଣ ହୋଇ । ସାଙ୍ଗରେ ପାଞ୍ଚ ପୁଅ ଆଉ ସ୍ତ୍ରୀ – ଖାଇବାକୁ କିଛି ନଥିଲା । ଏମିତି ଗାଁରୁ ବୁଲି ଭିକ୍ଷାକରି ଚଳୁଥା'ନ୍ତି । ଏଇଠି ଏଇ ନଈର ପର୍ଶୁରାମଘାଟ ଯାଙ୍କରି ସମୟରୁ ନାଁ ହେଲା । ପ୍ରଥମ

ଦିନ ଗଛମୂଳେ ରାତି ପାହିଗଲା । ସେଇଠି ମାଟି-ଝାଟିର କୁଡିଆ ଘର କୁଟୁମ୍ବ ସମ୍ଭାଳିବା ପାଇଁ ପର୍ଶୁରାମ ଅକ୍ଲାନ୍ତ ଶ୍ରମ କରୁଥା'ନ୍ତି । ସେଦିନ ଅମାବାସ୍ୟା, ମଙ୍ଗଳବାର । ସକାଳୁ କାହା ପେଟରେ ଦାନା ପଡିନଥାଏ । ପିଲାମାନେ ଅନାବନା ଶାଗ ତୋଳି ଆଣିଥା'ନ୍ତି । ଶୁଖିଲା କାଠ ଗୋଟେଇ ଆଣିଥା'ନ୍ତି । ଖୁଦ ଗଣ୍ଡେ ହେଲେ ସିଝେଇବାକୁ ଅପେକ୍ଷା ଥାଏ । ପର୍ଶୁରାମ ନନ୍ଦେ ସଞ୍ଜବେଳକୁ ସେଦିନ ରୋଜଗାର ଭିତରୁ ରକ୍ତଚନ୍ଦନ, ସିନ୍ଦୂର, ଗୁଗ୍‌ଗୁଳ, ଜଡାତେଲ, ମାଟିଦୀପ, ମନ୍ଦାର ଫୁଲ ଆଦି ପୂଜାସାମଗ୍ରୀ ଗାମୁଛାରେ ବାନ୍ଧି ଆସି ପହଞ୍ଚିଲେ । ଖାଇବାକୁ ଚାଉଳ ନପାଇ ସ୍ତ୍ରୀଙ୍କର କ୍ରୋଧ ବ୍ରହ୍ମରେ ଚଢିଗଲା । ସେ ଶୋଧିଦେଇଗଲେ ଯାହା ତୁଣ୍ଡରେ ଆସିଲା – 'କୋଉ ମା' ଆସି ତୁମକୁ ପେଜ ମୁନ୍ଦାଏ ଭଲା ଦେଲାଣି ? ପିଠିକୁ କନା ଅଣ୍ଟୁନାହିଁ । ବାରଜାତିଆ ଶାଗ ଗଣ୍ଡେ ଖାଇବାକୁ ଖୁଦ ଅଣ୍ଟୁନାହିଁ । ଧିକ୍ ତୁମ ଅଲାଜୁକ ସାଧକପଣିଆ ! ଧିକ୍ ତୁମ ଲଙ୍ଗୁଳୀ ମଶାଣିଚଣ୍ଡୀକୁ ! ଏଥିରୁ ଗୁଟେ ମନ୍ତ୍ର ଜପି ଜପି ଦିହକ ବିତିଗଲା । କତାକର କାମ ନାହିଁ ! ଫୋପାଡ ସେ ଚୁଲି ପୋଥିକୁ ନଈରେ । ଶାଗପଟାଳିଟିଏ କଲେ ଆଉରି ମୋ' ପିଲେ ପୋଷି ହୁଅନ୍ତେ । ଫିଙ୍ଗ ସେ ପୂଜା ପଟିଆରା; ଏ ହେଲେ ମୁଁ ସେଥିରେ ନିଆଁ ଲଗେଇଦେବି ।" – ପର୍ଶୁରାମ ନନ୍ଦେ ପୂଜା ଚାଉଳରୁ ଅଧେ ଜାଉ ଘାଣ୍ଟିବାକୁ ଦେଇଦେଲେ । କ୍ରୋଧରେ ଆଖି ଫାଟିପଡୁଥାଏ । ବସିଲେ ପୂଜାରେ । ସେ ଖାଲି ଏଡେ ପାଟିରେ ଗର୍ଜୁଥା'ନ୍ତି । ବଜ୍ରବାଟୁଳି ପରି ମନ୍ତ୍ରମାନ ଛିଟିକି ପଡୁଥା'ନ୍ତି ଶୁଖିଲା ନଈବାଲି ଉପରେ । ସେ ଖଣ୍ଡମଣ୍ଡଳ ଥରଥର ହୋଇ କମ୍ପୁଥାଏ । ଗାଁ ସାରା ସେଦିନ ସେ ଗର୍ଜନ ଶୁଣିଛନ୍ତି । କୁଡିଆ ଭିତରେ ପାଞ୍ଚ ପୁଅ, ସ୍ତ୍ରୀ ମେଣ୍ଟା ହୋଇ ଘାଲେଇ ଶୋଇଥା'ନ୍ତି । ପର୍ଶୁରାମ ବୋଲୁଥା'ନ୍ତି ଦେବୀ-ସ୍ତୋତ୍ର । ସେ ଆଭିଚାରିକ ମନ୍ତ୍ରପାଠ ଶୁଣିଲେ ଯାହାର ହେରେ ନାଭିକମଳ ଠକ୍ ଠକ୍ ଡେଇଁବ । ଝାଳ ବୋହିଯିବ ମଝିଶିରା ହାତ ଉପରୁ । ମୁଁ ଜାଣେ ସେ ଜିନିଷ କ'ଣ ! – ମନ୍ତ୍ରବଳରେ ସେ ଦେବୀଙ୍କୁ ଘନ ଘନ ଆବାହାନ କରୁଥା'ନ୍ତି । ଏମିତି ଅଦ୍ଭୁତ ମନ୍ତ୍ରପାଠ ତାଙ୍କ ସ୍ତ୍ରୀ ସୁନା କେବେ ଶୁଣିନଥିଲେ । ସେ ଭୟରେ ଜଡସଡ ହୋଇ ଘରର ଅନ୍ଧାର ପିଣ୍ଡା ଉପରୁ ଚାହିଁଲେ ନଈତୁଠ ମଶାଣିକୁ । ଝୁଣାଗୁଣ୍ଡରେ ନିଆଁ ଲାଗିଲାପରି ଫାଉଁକିନା ଜଳିଉଠିଲା ଅଗ୍ନିକୁଣ୍ଡ । ପୁଣି ମୁଠାଏ କ'ଣ ତା' ଉପରକୁ ପର୍ଶୁରାମ ଛାଟିଦେଲେ । ଆଗ ଅପେକ୍ଷା ଆହୁରି ତେଜରେ ଲୋହିତବର୍ଣ୍ଣ ନିଆଁ ଜଳିଉଠିଲା ।... 'ହେ ଉଗ୍ର ଚଣ୍ଡିକେ ! – ହେ, ତ୍ର୍ୟମ୍ବକେ !' ହେ, ଧୂମ୍ରାକ୍ଷି ! ହେ କାଳଭୁଜଙ୍ଗମାଳିନୀ, ଜ୍ୱାଳାମୁଖୀ, ଯୋଗିନୀ, ଯୋଗମାୟା ! ଆବିର୍ଭୂତା ହୁଅ ! ଦାରିଦ୍ର୍ୟ ଦୁଃଖ ଦହନ କରିବାକୁ ହେ ଭ୍ରମରମାଳିନୀ, ତ୍ରିପୁରବିଜୟିନୀ, ପରମେଶ୍ୱରୀ, ସନ୍ତୁଷ୍ଟ ହୁଅ ! ବିମୋଚନ କର ଏ ଦୁଃସହ ଭାଗ୍ୟ-ସଂକଟ !

"ତାଙ୍କ ସ୍ତ୍ରୀ ପିଲାମାନେ ଲୁଚି ଲୁଚି ଶୁଣୁଥା'ନ୍ତି । ବାରମ୍ବାର ଚମକିଉଠୁଥିବା ଅଗ୍ନିଶିଖା ସ୍ଥିରହୋଇ ଜଳିଲା । ଲପଲପ ଶିଖାରୁ ସ୍ଫୁଲିଙ୍ଗ ଆକାଶକୁ ଚହଟି ତାରାମାନଙ୍କ ସହିତ ବିଲୀନ ହୋଇଗଲା । ସେ ଆହୁରି ଗହଗହ ନାଦରେ ଦେବୀଙ୍କୁ ଆବାହନ କରୁଥା'ନ୍ତି । ଆଣ୍ଠୁ ଉପରେ ଭରାଦେଇ ସେ ବସିଥା'ନ୍ତି । ଆଞ୍ଜୁଳାରେ କ'ଣ ପାନକଲା ପରି ଦେଖାଯାଉଥା'ନ୍ତି । କିଛି ସମୟ

ପରେ ସେ ସେଇଠୁ ଉଠିଲେ । ଗୋଟାଏ ହାତରେ ଶ୍ରୁବ । ସେଥିରେ ସେ ଆହୁତି ଟେକି ଧରିଥା'ନ୍ତି । ଅନ୍ୟ ହାତରେ ଜଡାତେଲର ଦୀପ । ପିଣ୍ଡାକୁ ଆସି ସେ ଠିଆହେଲେ । ତାଙ୍କ ଆଖି ଡହଳୁଥାଏ ନିଆଁରଡ ପରି । ଦେହରୁ ଫୁଟି ବାହାରୁଥାଏ ଗୋଟାଏ ତାତିଲା ଟହଟହ ହିଙ୍ଗୁଳ ବର୍ଣ୍ଣ । ତାଙ୍କ ସ୍ତ୍ରୀପିଲାମାନେ ଶଙ୍କିଗଲେ ।"

"ସେ ଡାକପକେଇଲେ, "ଆସ ଦରିଦ୍ର, ଅକିଞ୍ଚନ, ଅପଦାର୍ଥ – ଏ କୁଡିଆରେ କିଏ ଅଛ ! ଆଜି ମା'ର କରୁଣା ବର୍ଷା ହେଉଛି । ପିଇଯାଅ ! ଧନଧାନ୍ୟ, ଗୋପଲକ୍ଷ୍ମୀ, ବିଦ୍ୟା, ବୁଦ୍ଧି, କ୍ଷମତା, ଯଶ ସବୁ ଆଖିପିଛୁଡାକେ ମା' ଦାନ କରିବେ ।"

"ନିଦରୁ ଉଠିଆସି ଫୁଙ୍ଗୁଳା ଦେହରେ ଜାକିଜୁକି ହୋଇ ସେମାନେ ଧାଡିବାନ୍ଧି ବସିଗଲେ । ପର୍ଶୁରାମ ତାଙ୍କୁ ହବିର୍ଭାଗ ଖାଇବାକୁ ଦେଲେ । 'ଯାଅ, ଆଜିଠାରୁ ଏ ପରିବାରକୁ ଦାରିଦ୍ର୍ୟ ସ୍ପର୍ଶ କରିପାରିବ ନାହିଁ ।"

"ପର୍ଶୁରାମ ପୁଣି ଫେରିଗଲେ ଶ୍ମଶାନକୁ । ପାହାନ୍ତା ପହରକୁ ଆସି ଗାଧୁଆପାଧୁଆ ସାରି ସକାଳ ଖରାରେ ନିଆଁ ପରି ଝଟକୁଥା'ନ୍ତି । ରଜାଘର ପିଆଦା ଆସି ଡାକିନେଇଗଲା । ସେଇଦିନ ସେ ହେଲେ ପର୍ଶୁରାମ ରାୟଗୁରୁ । ଅଯାଚିତ ଅଜାଡି ହେଲା ଧନ-ଦୌଲତ, ସମ୍ମାନ, ମର୍ଯ୍ୟାଦା, ଭୋଗବିଳାସର ସବୁ ପ୍ରକାର ଉପାଦାନ ।"

"ପଚିଶଟା ବର୍ଷ ଉତ୍ତାରୁ ବଡପୁଅ ଠୋ-କିନା ମରିଗଲା । ତା' ପଛକୁ ତା' ପଛ ପାଞ୍ଚଟିଯାକ ପୁଅ ମରିଗଲେ । ବୁଢା ରାୟଗୁରୁ ବ୍ୟଥିତ ହେଲେ । ଅନେକ ପୂଜା ପ୍ରତିକାର କଲେ; କିନ୍ତୁ ଯାହା ସେ ନିଜେ ଯାଚନା କରି ଦେବୀ-ପ୍ରସାଦ ରୂପେ ଲାଭ କରିଥିଲେ, ତାକୁ ଅନ୍ୟଥା କରିବାପାଇଁ ତାଙ୍କ ସାମର୍ଥ୍ୟ ଅଣ୍ଟିଲା ନାହିଁ । ଦେବୀ-ଖର୍ପରକୁ ନିବାରଣ କରିବାକୁ ସାଧ କାହାର ? ସେ ସ୍ୱୟଂ ସପ୍ତପୁରୁଷଙ୍କ ଆୟୁପାନ କରି ଦେବୀକୁ ପାରଣା ବାଢିଥିଲେ । ତାଙ୍କୁ ପ୍ରତିଗ୍ରହ କରିବାକୁ ବଳ କାହିଁ ? ପଦମର୍ଯ୍ୟାଦା, ରାଜସମ୍ମାନ, ଭୋଗଐଶ୍ୱର୍ଯ୍ୟରେ ଥାଇ ସୁଦ୍ଧା ପର୍ଶୁରାମ ରାୟଗୁରୁ ମନଦୁଃଖରେ ଦିନ କାଟିଛନ୍ତି । ତାଙ୍କ ଦେହାନ୍ତ ବେଳକୁ ବଡ ନାତିକୁ ଚଳିଶି ପାଖେଇ ଆସୁଥାଏ । ଚଉଆଡେ ତା'ର ଯଶ କୀର୍ତ୍ତି ବ୍ୟାପିଯାଇଥାଏ । ତା' ପୁଅସବୁ ରାଜପୁତ୍ର ପରି ବଢିଆସୁଥା'ନ୍ତି । ବୁଢାଙ୍କର ସାହସ ହେଲା ନାହିଁ, ନିଜ ଆଖିରେ ନାତିମାନଙ୍କର ବିଲୟ ଦେଖିବାକୁ । ସେ ଜାଣିଶୁଣି ଦେହ ଛାଡିଦେଲେ । ନାତିକୁ ପାଖକୁ ଡାକି କହିଲେ, 'ରାୟଗୁରୁ ପରିବାର ଉପରେ ଦେବୀ କୃପା ବୃଷ୍ଟି ହେଉଛି । ମାତ୍ର ଭୋଗିବାକୁ ବେଳ ଅଣ୍ଟୁନାହିଁ । ସବୁ ମୋରି ଦୋଷ । ମୁଁ ତା'ର ପ୍ରାୟଶ୍ଚିତ୍ତ କରିବି । ନିଜେ ଆସି ଆୟୁ ପାଲଟ କରିଦେଇଯିବି । ତୁମେ, ବାପା ଇଷ୍ଟଦେବୀଙ୍କୁ ସନ୍ତୁଷ୍ଟ ରଖିଥିବ । ପୂଜା ଆରାଧନାରେ ତ୍ରୁଟି କରିବ ନାହିଁ । ମୁଁ ଆସିବି, ଅବଶ୍ୟ ଆସିବି ।' ଏମିତି ଡାକିହାକି, ହୁକୁମ ଦେଲା ପରି ପର୍ଶୁରାମ ରାୟଗୁରୁ ଯାଇଛନ୍ତି । ସାତପୁରୁଷ ପୂରିଗଲା ଉତ୍ତାରୁ ସେ ଏଇ ରୂପରେ ଜନ୍ମିବା କଥା ଆମେ କାହିଁକି ଅବିଶ୍ୱାସ କରିବା । ଏଇ ମୃତ୍ୟୁଞ୍ଜୟ ତୁମର ସେଇ ବଡବଡିଆ ପୂର୍ବପୁରୁଷ । ବୁଢା ନିଜେ ଆସିଛି ଆୟୁପାଲଟ କରିବାପାଇଁ । ତୁମର ରିଷ୍ଟ ଖଣ୍ଡନ ହେଲା ବୋଲି

ଜାଣି ।"

ଏତିକିବେଳେ କବାଟ ଫିଟେଇ ଅଗଣାକୁ ପଶିଆସିଲେ ବିଶ୍ୱନାଥଙ୍କ ସ୍ତ୍ରୀ । ଯା'ଭିତରେ ସେ କଙ୍କାଳ ହୋଇଗଲେଣି । କେତେ ଉଜ୍ଜ୍ୱଳ ମଣିଷ, କଳା ପଡିଗଲେଣି ! ମୁଣ୍ଡ ନୁଖୁରା । ପିନ୍ଧା ଲୁଗାଖଣ୍ଡ କୋଚରା ହୋଇଯାଇଛି । ସେ ମୃତ୍ୟୁଞ୍ଜୟର ହାତ ଧରି ଟଲେଇ ଆଣୁଛନ୍ତି । ସେ ଖଣ୍ଡେ ଧୋତି ବାହୁଣିଆ ଢଙ୍ଗରେ ପିନ୍ଧିଛି । ଖଣ୍ଡେ ଗାମୁଛା ବେକରେ ପକେଇଛି । ରକ୍ତଚନ୍ଦନ କପାଳରେ ଲଗେଇଚି । ଖଣ୍ଡେ ବଙ୍କା ବାଡି ଧରି ଦେଖାଯାଉଚି ଅଶିଏ ବର୍ଷର ପାରୁ ବୁଢାଟିଏ ପରି ।

ମା' ସମସ୍ତଙ୍କୁ ଏକାଠି ଦେଖି କହିଲେ, "ଏକା ଲିଙ୍ଗା ଲଗେଇଲା ପରା ଯେ ଗୋସେଇଁବାପା ହେଇ ଖେଳିବ । ଏମିତି ହେବାକୁ ଜିଦ୍ ଲଗେଇଲା ।"

ଅଭିନୟ କରିବା ଠାଣିରେ ମୃତ୍ୟୁଞ୍ଜୟ ଗମ୍ଭୀର ହୋଇ ସମସ୍ତଙ୍କୁ କହିଲା – "ମୁଁ ବଡ ଜେଜେ !" ବାଡିଟିକୁ ତଳେ ଠୁକେଇଦେଇ ଚାହିଁଲା ସମସ୍ତଙ୍କୁ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାକୁ ଆବାକାବା ଅନେଇଥିବାର ଦେଖି ସେ ତରବର ହୋଇ ମା' କାନିରେ ମୁହଁ ଘୋଡେଇ ପକେଇଲା । ଲାଜେଇଗଲା ପିଲାଟା ।"

କିନ୍ତୁ ଯନ୍ତ୍ରଭଳି ମାମୁ, ବିଶ୍ୱନାଥ, ବୀରେନ୍ଦ୍ର, ସୁଲକ୍ଷଣା ଆସି ତା' ଚରିପଟେ ଆଣ୍ଠେଇ ପଡିଲେ । ତା'ର ସେ ହାତ ଗୁଜୁଗୁଜୁ ଚଡେଇ ବୁକୁ, ଗୁଡିଆ ଥୋଡ, ଧୋବଫରଫର ମୁଣ୍ଡବାଳ ଦେଖି ତାଙ୍କର ପ୍ରତ୍ୟୟ ହୋଇଗଲା ଯେ ସେ ହିଁ ପର୍ଶୁରାମ ରାୟଗୁରୁ ।

ମାମୁ ହାତ ଯୋଡି କହିଲେ, "କିଏ ନାହିଁକଲା ତମେ ବଡଜେଜେ ବୋଲି ? ତୁମେ ସିନା ଛଦ୍ମ କରିଚ – ଆମେ ଏବେ ଜାଣିଗଲୁଣି ତୁମେ ଆମପାଇଁ ଏତେବଡ ଭାରା ବୋହିଛ ! ତୁମେ ଜାଣିଶୁଣି ତୁମ ବଂଶକୁ ବଞ୍ଚେଇବାକୁ ଆସିଛ ।"

କାନି ଭିତରୁ ମୁହଁ କାଢି ମୃତ୍ୟୁଞ୍ଜୟ ଅନେଇଲା । ଏମାନଙ୍କୁ । କିର୍‌କିର୍ ହେଇ ହସିଲା । କାଶ ଉଠିବାରୁ କାଶ ହସ ଏକାକାର ହୋଇଗଲା ।

ମା' ପିଠି ଆଉଁଷି ଦେଇ କହିଲେ, "ହଉ ବାପା, ଖେଳ ସେତିକି ଥାଉ । ହାଲିଆ ହେଇଯିବୁ । ଚାଲ୍ ଆମେ ଫେରିଯିବା । କଳାଘୋଡା ଉପରେ ରଙ୍ଗମୁହାଁ କଣ୍ଢେଇ ଝୁଲୁଥିବ । ତୁ ବସିଲେ ସିନା ଘୋଡା ଚାଲିବ ।"

ଏମିତି କ'ଣ ସେ କଥା କହୁଛନ୍ତି ? – କାହାକୁ ସେମିତି କହୁଛନ୍ତି ? ଏଠି ତ ଖେଳିବା ପିଲା କେହି ନାହିଁ !!

"ଶୁଣ୍ ଝିଅ !" କହିଲେ ମାମୁ; "ତୁ ଯାହାକୁ ପୁଅ ବୋଲି ଭାବିଛୁ, ସେ ପ୍ରକୃତରେ ରାୟଗୁରୁବଂଶର ଆଦିପୁରୁଷ । ସେ ନିଜେ ପର୍ଶୁରାମ ରାୟଗୁରୁ । ସେ ଆସିଛନ୍ତି ସମସ୍ତଙ୍କ ଉପରୁ କାଳଦଣ୍ଡ ଘୁଞ୍ଚେଇଦେବାକୁ । ସେଥିପାଇଁ ସେ ନିଜେ ଏମିତି ବୁଢା ହେଇ ରୋଗଦୁଃଖ ଭୋଗୁଛନ୍ତି । ସେ ଚଞ୍ଚଳ ଚାଲିଯିବେ ।"

ପୁଅକୁ କୋଳ ଭିତରକୁ ସାଉଁଟି ନେଇ ସେ କାନ୍ଦ ଭିତରେ ଝିଙ୍କାସିଲେ, "ଆପଣ କାହିଁକି

ଏତିକି ଅଲକ୍ଷଣିଆ କଥା ତୁଣ୍ଡରେ ଧରୁଚନ୍ତି ! ମୋ' ପିଲା ଆଉ କାହାକୁ ଭାର ହେଉଚି ? ତାକୁ ଡାକିନୀ ପିଶାଚୁଣୀ କିଏ ଗୋଟାଏ ପଶି ରକ୍ତ ଶୋଷିଦେବାରୁ ସିନା ସେ ଶୁଖି ଶୁଖି ହାଡଖଣ୍ଡେ ରହିଲାଣି । ବଇଦ, ଗୁଣିଆ କଲେ ସେ କ'ଣ ଭଲ ହେଇଯିବ ନାଇଁ ? ତମେ ସବୁ କାହିଁକି ଅଶୁଭ ମନାସୁଚ ? ରଖିଲାବାଲା ତାକୁ ରଖିବାକୁ ଚାହିଁଲେ ତୁମେ ଲକ୍ଷେ କହିଲେ ତା'ର କ'ଣ ହେଇଯିବ ?"

ସେ ପାଟିକରି କହୁଥା'ନ୍ତି । କାନ୍ଦି କାନ୍ଦି ଭାଙ୍ଗି ପଡୁଥା'ନ୍ତି – "ମୁଁ ସମସ୍ତଙ୍କୁ ଜାଣେ । ସମସ୍ତେ ଆଡ ହୋଇ ରହିଛ । କାହା ପ୍ରାଣକୁ ବାଧୁନାହିଁ । ମୋର ଦଶ ବର୍ଷର ଅଲିଅଳ ପୁଅ କାହିଁକି ଏମିତି ବିରୂପ ହେଇଯାଉଚି ? ତୁମ ସୁଖ ତୁମର । ତୁମେ ତ କେବେ ଭାବିନାହିଁ କାହିଁକି ଫୁଟିବା ଆଗରୁ କଢଟିଏ ଏମିତି ମଉଳିଯାଉଚି । ମୁଁ ଗର୍ଭରେ ଧରି ଜନ୍ମ ଦେଇଛି । ମୋ' ଦୁଃଖ ମୋର । ମୁଁ ମୁଣ୍ଡେଇଚି ପାଷାଣ ବୋଝ । ସେଥିରେ ତୁମର କ'ଣ ଗଲା ? ତୁମେ କାହିଁକି ମନାସିବ ମୋ' ପୁଅର ଅମଙ୍ଗଳ ? ଏ କୁଳରେ ଅକାଳମରଣ ଦେଖି ଦେଖି କ'ଣ ଆଉରି ମନ ପୂରିନାହିଁ ଯେ କୋଡପିଲାଟିକୁ ବଳି ଦେଇଦେବାକୁ ମସୁଧା କରୁଚ ?"

ଏ ଉଜାଣିରେ ସମସ୍ତେ ଉବେଇ-ଟୁବେଇ ହେଲେ । ମା'ର ପେଟ ଭିତରୁ ଗୁରାଣ୍ଡି ହୋଇ ଉଠୁଥିବା ସେ ନିଆଁ ଧୂଆଁ ପାଣିରେ ସମସ୍ତଙ୍କୁ ରୁନ୍ଧିହେଲାପରି ଲାଗିଲା । ସୁଲକ୍ଷଣା କିଛି ନକହି ଠିଆହେଲେ । ତଳକୁ ମୁହଁପୋତି ଫେରିଗଲା ବେଳେ କହିଲେ, "ସେଇଆ !! – କୋଉ ସପନ କେବେ ସତ ହେଲାଣି ଭଲା ! ଏ କାହିଁକି ପର୍ଶୁରାମ ରାୟଗୁରୁ ହେବେ ? ସେ ବା କାହିଁକି ଆମକୁ ବିପତିରୁ ଉଦ୍ଧାର କରିବେ ? କେହି ତ ଆମ ଗୁହାରି ଶୁଣିନାହାନ୍ତି । – 'ବିଶୁ'କୁ ଚାରିମାସ ହେବ ଅଣଚାଳିଶ ପୂରିଗଲା ! କିଏ ସେ ଦେବୀ, ମତେ ଭଲା ଖାଇଯାନ୍ତା – ତା' ପେଟ ପୂରିଯାନ୍ତା, ମୋ' ଦିହକ ସରିଯାନ୍ତା – ମୁଁ ଆଉ କଲବଲ ସହନ୍ତି ନାହିଁ ।"

ସେ ସେମିତି କ'ଣ ବାହୁନି ବାହୁନି ପିଣ୍ଡାକୁ ଉଠିଗଲେ । ଏ ଦୁଇଭାଇ ଉଠିଲେ । ବିଶ୍ୱନାଥ ମୃତ୍ୟୁଞ୍ଜୟର ମୁଣ୍ଡ ଆଉଁଷି ଦେଇ ହାତ ଧରି ଦୁଆରଆଡେ ବଳେଇନେଲେ ବୀରେନ୍ଦ୍ର ପଛେ ପଛେ ଚାଲିଲେ ମୁଣ୍ଡ ପୋତିଦେଇ । ବାପ ପୁଅଙ୍କୁ ଚାହିଁ ରହିଲେ ବିଶ୍ୱନାଥଙ୍କ ସ୍ତ୍ରୀ । ଚାହିଁ ରହିଲେ ମାମୁ । ବିଶ୍ୱନାଥ କହୁଥା'ନ୍ତି – 'ସତ କଥା ! ବାପଟାଏ ବଞ୍ଚି କ'ଣ କରିବ ? ପୁଅ ସିନା ବଞ୍ଚିବ ତା'ର ସବୁ ଆୟୁଷ ନେଇ ।' ବିଶ୍ୱନାଥ ସେ ଛୋଟ ଧଳାମୁଣ୍ଡଟି ଉପରେ ହାତମାରି ସବୁ ଆୟୁଷ ଦାନ କରିଦେଲା ପରି ଦିଶୁଥା'ନ୍ତି । ଦେଖୁଥିବା ଆଖି ସବୁ ଛଳଛଳ ହୋଇଗଲେ । ସେ କଥା କାନରେ ଶୁଣିଦେଇ ଥରିଉଠିଲେ ଆତ୍ମୀୟ-ପରିଜନ ।

ସେଦିନ ବିଶ୍ୱନାଥ ଅନେକ ସମୟ ପୁଅ ପାଖରେ ରହିଲେ । ଗୋଡରେ ବସେଇ ମା' ତାକୁ ଭାତ ଖୁଆଇ ଦେଲାବେଳେ ସେ ନିଜ ଆଖିକୁ ବିଶ୍ୱାସ କରିପାରୁ ନଥା'ନ୍ତି । ତାଙ୍କୁ ବାରମ୍ବାର ସେ ଅପରିଚିତ ବୁଢାଟିକୁ ନିଜର ପୁଅ ବୋଲି ଯୁକ୍ତି କରିବାକୁ ପଡୁଥାଏ । ମନକୁ ବୁଝାଇବାକୁ ପଡୁଥାଏ ଯେ ବାର୍ଦ୍ଧକ୍ୟ ଗୋଟାଏ ରୋଗ – ଅତି ସାଂଘାତିକ ରୋଗ – ସେ ଆଉ ବେଶି କାଳ

ବଞ୍ଚେଇବ ନାହିଁ ।

ତା' ମା' ଆଖିରୁ ଲୁହ ନିଗିଡିଯାଉଥାଏ ଧାର ଧାର । ସେ ମୁହଁ ଟେକି ସ୍ୱାମୀଙ୍କୁ ଚାହିଁପାରୁନଥା'ନ୍ତି । ଦେବପୁରୁଷ ପରି ଦିଶୁଥା'ନ୍ତି ବିଶ୍ୱନାଥ ରାୟଗୁରୁ । ଚାରିମାସ ହେବ ତାଙ୍କୁ ପୂରିଗଲାଣି ଅଣଚାଳିଛ ବର୍ଷ । ସେ କ'ଣ ନିଜେ ଅହିୟଲକ୍ଷଣ ନେଇ ପୁଅ ଘଇତା ବସେଇ ମରିଯାଆନ୍ତେ ନାଇଁ ? କିଏ ସେ ଭାଗ୍ୟବିଧାତା କେଉଁଠି ବସିଚି – ଏତିକି ନିଷ୍ଠୁର ସେ । ଏକାଥରକେ ତାଙ୍କ କୋଳ ଶୂନ୍ୟ କରିଦେବ ! ମଥାରୁ ସିନ୍ଦୂର ପୋଛିଦେବ !! କ'ଣ ପାଇବ ଭାଲା ତାଙ୍କୁ ସେମିତି ସନ୍ତାପିବାରେ ? ସେ ତାଙ୍କ ବାପଘର କଥା ତା'ରି ଭିତରେ ସୁମରୁଥା'ନ୍ତି । ମନେପଡିଯାଉଥାଏ ତାଙ୍କ କୁମାରୀ ଜୀବନ – ରଜାରାଣୀ ଖେଳ !!

ମୃତ୍ୟୁଞ୍ଜୟ ଖାଉ ଖାଉ ଶୋଇଗଲା – ବୁଢାମାନେ ଯେମିତି ଶୁଅନ୍ତି । ବିଶ୍ୱନାଥ ପତ୍ନୀଙ୍କୁ ହାତ ଧରି ଆଣି ବସେଇଲେ । ଏଇ କେତେବର୍ଷ ହେଲା ସ୍ୱାମୀସୋହାଗ କ'ଣ ସେ ଭୁଲିଯାଇଥିଲେ । ଦୁଃଖରେ, ଅଭିମାନରେ, ବିଚିତ୍ର ସୁଖଦୁଃଖର ବ୍ୟଥାରେ ସେ କେବଳ ତୁହାକୁ ତୁହା କାନ୍ଦିଲେ । ଆସ୍ତେ ତାଙ୍କୁ ଉଷୁମ ନୀଡଟିଏ ପରି ଆବୋରି ରଖିଲେ ବିଶ୍ୱନାଥ । ସେଇ ତ ତାଙ୍କର ବାପ, ମା', ଭାଇ, ବନ୍ଧୁ, ସଖା ସବୁ ! ସେଇ ତାଙ୍କର ଇହକାଳ ପରକାଳର ସମ୍ପଦ ।

ହଠାତ୍ ତାଙ୍କ ଘୁମ ଭାଙ୍ଗିଗଲା । ତାଙ୍କ ବୁକୁ ଧଡପଡ ହୋଇ କମ୍ପିଲା । ବିଶ୍ୱନାଥ କାହିଁକି ନୀରବ ରହି ତାଙ୍କୁ ଆଜି ଏତେ ଆଦର-ଗୌରବରେ ମଣ୍ଡି ଦେଉଛନ୍ତି ? ସେ କ'ଣ ତାଙ୍କଠାରୁ ବିଦାୟ ନେଉଛନ୍ତି କି ? ସେ କ'ଣ ପ୍ରସ୍ତୁତ ହେଉଛନ୍ତି ସେଇ ଶେଷ କଥା ପାଇଁ ? ସେ ମୁହଁ ଟେକି ଡବଡବ ଆଖିରେ ତାଙ୍କୁ ଚାହିଁଲେ । ବିଶ୍ୱନାଥଙ୍କ ଆଖିରେ ଲୁହ । ସେ ବୁଝିଗଲେ ଏବଂ ତାଙ୍କୁ ଜାବୁଡି ଧରି ପିଲାଙ୍କ ପରି କଇଁକଇଁ କାନ୍ଦିଉଠିଲେ – "ନା ! ନା ! ତା' କଦାପି ହୋଇପାରେନା !"

ଅନେକ କନ୍ଦାକଟା ଭିତରେ ବିଶ୍ୱନାଥ ଶୂନ୍ୟକୁ ଚାହିଁରହିଥା'ନ୍ତି । ତାଙ୍କ ଗାଲରେ ଲୁହ ଶୁଖିଯାଇଥାଏ । ପୁଅ ଶୋଇଥାଏ ଅଠାଅଶୀ ବର୍ଷର ବୁଢାଟିଏ ପରି । ସେ ଆସ୍ତେ ଉଠିଲେ । ପତ୍ନୀଙ୍କ ଚିବୁକକୁ ଟେକିଦେଇ ତାଙ୍କୁ ଚାହିଁ ଅଳ୍ପ ହସିଦେଲେ । କହିଲେ, "ମୁଁ ତା'ହେଲେ ଯାଉଛି ।" ସେ ଚାଲିଗଲେ । ପଛରୁ ସେ ଦେଖାଯାଉଥିଲେ ଦେବପୁରୁଷ ପରି – ସଜଫୁଟା ପଦ୍ମଟିଏ ପରି ।

ସେତେବେଳକୁ ଅନେକ ରାତି । ଅସରା ଅସରା ଲୁହରେ ଆକାଶ ଆଉ ପୃଥ୍ୱୀ ଜୁବୁବୁବୁ । ଘରେ ଆଉ କେହି ନାହାନ୍ତି । ଖଟରେ ସେ ଯେଉଁ ବୁଢାଟି ବାଁ କଡ ମାଡି ଶୋଇଚି, ସେ କିଏ ସତେ ! ତା' ବେକ ଦୁହିଁ ହୋଇଯାଇଚି । ପିଠିର ପଖାହାଡ ଟେକିହେଇ ରହିଚି । ମଝିଶିରା ହାତର ପଗ ଗଣିହେଉଚି ମାଳି ପଗଡ ପରି । ଇଏ କ'ଣ ମୋର ଦଶବର୍ଷର ପୁଅ ? ମୋ' ପୁଅ କାହିଁ – ଯେ ଚମ୍ପାଫୁଲ ପରି ଗୋରା ଟକଟକ ଦିଶୁଥିଲା ? ଆଖି ଦିଶୁଥିଲା ଡାଉଡାଉ ତରା ପରି ! ପେଣ୍ଡ ପିନ୍ଧି ଡେଇଁ ଡେଇଁ, ହସି ହସି ଲୋଟିଯାଉଥିଲା ! – ସେ କାହିଁ ? ମୋ' ସବା ସାନପୁଅ, ମୋ' ଗଣ୍ଠିଧନ, ମୋର ସବୁଠୁ ସୁନ୍ଦର ଅଲିଅଳ ପୁଅ କାହିଁ ?

– ସେ ବାତୁଳ ପରି ହାତରେ ବତିଟିଏ ଧରି ଘରସାରା ବୁଲୁଥା'ନ୍ତି । ବାରମ୍ବାର

ଫେରିଆସୁଥା'ନ୍ତି ଖଟ୍‌ପାଖକୁ! – 'ନା, ଏ ତ ମୋ' ପୁଅ ନୁହେଁ! – ମୋ' ପୁଅ ନାହିଁ!! ମୋ' ପୁଅ ମରିଯାଇଚି। ସେଇ ଇଷ୍ଟଦେବୀ ତାକୁ ଖାଇଗଲା। ମୋ' ସାନପୁଅକୁ ସେଇ ଖାଇଗଲା! ବୁଢା ରାୟଗୁରୁ ତାକୁ ବଳି ଦେଇଦେଲା। ସେ ଭୂଇଁରେ ଲୋଟିପଡିଲେ କେତେବେଳେ, ଜାଣିପାରିଲେ ନାହିଁ।'

ତା' ପରଦିନ ଡାକ୍ତର ଆସି କହିଲେ ଯେ ଅତିଶୟ ବାର୍ଦ୍ଧକ୍ୟ ହେତୁରୁ ମୃତ୍ୟୁଞ୍ଜୟର ସମସ୍ତ କ୍ରିୟା ଲୋପ ପାଇଗଲା। ତା'ର ମୃତ୍ୟୁ ଅତି ସ୍ୱାଭାବିକ ଏବଂ ପରିଣତ ବୁଢାଟିଏର ସାଧାରଣ ମୃତ୍ୟୁ।

X X X X

ବିଶ୍ୱନାଥଙ୍କୁ ଏବେ ପଇଁଚାଳିଶି ବର୍ଷ ଚାଲିଛି। ମାମୁ କହୁଥିଲେ ଯେ ପର୍ଶୁରାମ ରାୟଗୁରୁ ନିଜେ ଆସି ନିବାରଣ କରିନଥିଲେ, ମହାକାଳ ଦଣ୍ଡ ଘୁଞ୍ଚେଇବାକୁ କାହାରି ସାଧ ନଥିଲା।

ମୃତ୍ୟୁଞ୍ଜୟ ଶ୍ରାଦ୍ଧ ପ୍ରତିବର୍ଷ ଆଶ୍ୱିନ ମାସରେ ଦେବୀପୂଜାବେଳକୁ ପଡେ। ରାୟଗୁରୁ ପରିବାରରେ ତାକୁ ପିତୃପୁରୁଷ ରୂପେ ସେମାନେ ଗ୍ରହଣ କରିସାରିଲେଣି। ସେଇଭଳି ବିଶ୍ୱନାଥ ତାକୁ ପିଣ୍ଡଦାନ କରନ୍ତି। ଏ ଅଞ୍ଚଳରେ ସମସ୍ତଙ୍କ ଘରେ ଏ କଥା କୁହାକୁହି ହୁଅନ୍ତି। ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗେ!!



# କୁର୍ବାନ ଖାଁ ?

ଶେଷ ପର୍ଯ୍ୟନ୍ତ ଫକୀର ବାବା ଓରଫ୍ କୁର୍ବାନ୍ ଖାଁକୁ ଅକ୍ଷର ଲେଖିବା ଶିଖେଇ ହେଲାନାହିଁ । ସେ ଯେମିତି ଥିଲା ସେମିତି ନିରକ୍ଷର ହିଁ ରହିଗଲା ।

ଅଥଚ ସେ ଆମ ସାଙ୍ଗେ ଲାଗି ଲାଗି ଗାଁଟା ସାରା ପିଲା, ବୁଢା, ମାଇପି, ମର୍ଦ ସମସ୍ତଙ୍କୁ ଅକ୍ଷର ଶିଖେଇଲା । ସ୍କୁଲ ବସେଇଲା । ମହିଳା ସମିତି ଗଢେଇଲା । କିଛି ପିଲାଙ୍କୁ ସହରରେ ଯାଇ ପାଠ ପଢିବାକୁ ବୃତ୍ତି ଖଞ୍ଜିଦେଲା । ଅଥଚ ସେ ନିଜେ ନିରକ୍ଷର ରହିଗଲା – ସ୍ୱେଚ୍ଛାରେ, ଆମର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ।

ଗାଁ' ସାରା ତାକୁ ନ ପଚାରି କିଛି କରନ୍ତି ନାହିଁ । ସେ ଯାହା କହିଦେବ ସେଇଟା ତାଙ୍କ ପାଇଁ ବେଦର ଗାର । ତାକୁ ଲଙ୍ଘିଯିବା ଅପରାଧ । ନ୍ୟାୟ ନିଶାପରେ ଫକୀର ବାବା, ରୋଗ ବଇରାଗରେ ଫକୀର ବାବା, ବିପଦ ଆପଦ, ପର୍ବପର୍ବାଣି, ମେଳାମଉଛବ ସବୁଠି ସେ ସମସ୍ତଙ୍କ ପାଖଲୋକ, ସଖା, ସୋଦର, ବନ୍ଧୁ!

ଲୋକଙ୍କ ବିଶ୍ୱାସ ଫକୀର ବାବା ସବୁ ପୁରାଣ ଶାସ୍ତ୍ର କଥା ଜାଣେ । ଆଗତ ଭବିଷ୍ୟତ ଜାଣେ । ଦେଖିଦେଲେ ମନକଥା କହିଦିଏ । ସେ ବାହାରେ ସିଆଡେ କୁଆଡେ ଥିଲା । ଏବେ ଚାଳିଶ ବର୍ଷ ହେବ ଗାଁ'ମୁଣ୍ଡେ ଫଳବଗିଚା ମଝିରେ ଦି'ବଖରା ନଡା ଘରେ ରହେ । ଏକୁଟିଆ । ଫକୀରବାବାର ପରିବାର ନାହିଁ ।

ସେ ଗାଁ ସାରା ଲୋକଙ୍କୁ ନିଜର କରିନେଇଛି । ତା' ବଗିଚାର ଫଳ ସମସ୍ତଙ୍କ ପାଇଁ । ସେ କେଜାଣି କେମିତି ଜମା ବୁଢା ହଉ ନାହିଁ । ଯେମିତି ଥିଲା ସେମିତି ରହିଛି । କାନ ପାଖେ ଯୋଉ ଦି'କେରା ବାଳ ପାଚିଥିଲା ଏବେ ବି ସେତିକି । ତା' ଆଗରେ କେହି କେହି ବୁଢା ହୋଇଯାଉଥିବା ଲୋକେ କହୁଛନ୍ତି ଯେ ଫକୀର ବାବାକୁ ଦେଡ ଶ' ବର୍ଷ – ସେ ଆଉ ଦେଢ ଶ' ବର୍ଷ ଯାଏ ଏମିତି ରହିଥିବ!!

ସେ ଏଠିକି ଆସିବା ଆଗରୁ କ'ଣ ସବୁ ସାଧିଛି । ସେ କହେ ତା' ନାଁ କୁର୍ବାନ୍ ଖାଁ । କିନ୍ତୁ ସେ କେବେ ମସ୍‌ଜିଦ୍ ଯାଏ ନାହିଁ କି ନମାଜ କରେ ନାହିଁ । ମିଆଁ ଭଳି ଦାଢି ରଖେ ନାହିଁ କି ଫାଲ୍ଟା ମାରେ ନାହିଁ । ସାତ ହାତି ଧୋତି ଆଉ ଅଧହାତ ଫତେଇ ପିନ୍ଧେ । ତା'ର ଛତା ନାହିଁ କି ଜୋତା ନାହିଁ । ଟୋପି ନାହିଁ କି ଚଷମା ନାହିଁ । କୌଣସି ଜାତି ଧର୍ମ ପତିଆରା ବି ନାହିଁ ।

ଅଥଚ ସେ କହେ ତା' ନାଁ କୁର୍ବାନ୍ ଖାଁ!!

ସେ ଅଳ୍ପ କହେ । ଗହନ କଥା କହେ । ଲୋକେ କହନ୍ତି ସେ ସବୁ ଗୁପ୍ତ ତତ୍ତ୍ୱ ଜାଣେ – ଅଥଚ ସେ ନିରକ୍ଷର । ସେ ତା' ବାଁ ହାତ ବୁଢା ଆଙ୍ଗୁଳିରେ କାଳି ଲଗେଇ ଏବେ ବି କାଗଜରେ ମତାଏ ।

ଗାଁରେ ଆମ ରହଣି ଭିତରେ ଯେତେଥର ଫକୀର ବାବା ସହିତ ଦେଖାହେଇଛି ଆମେ ସମ୍ଭ୍ରମରେ କଥା କହିଛୁ । ସେ ବି ଖୁବ୍ ଆପଣାପଣ ଦେଖେଇଛି । କିନ୍ତୁ ଆମେ ତା'ର ସେ ଫଳବଗିଚାକୁ ଆଦୌ ଯାଇ ପାରିନାହୁଁ । କେବଳ ଥରକ ପାଇଁ ଆମ ତମ୍ବୁ ଟେକିବା ପୂର୍ବରୁ ଅନ୍ୟମାନଙ୍କ ଅନୁରୋଧ କ୍ରମେ ମୁଁ ଯାଇଥିଲି । ଆଗରୁ ନ ଜଣାଇ ହଠାତ୍ ଏକୁଟିଆ ଯାଇ ପହଞ୍ଚିଗଲି ।

ଅବଶ୍ୟ ଫଳବଗିଚାର ଚାରିଆଡେ ଖୋଲା ପଡିଆ । ଏଣୁ ସେଠିକି ଯୋଉ ଦିଗରୁ ଯେ ବି ଯାଉ ଖଣ୍ଡେ ଦୂରରୁ ଦେଖାଯିବ । ମୁଁ ପହଞ୍ଚିବା ମାତ୍ରେ ଗେଟ୍ ପାଖରେ ଫକୀର ବାବା ଆତ୍ମୀୟତାର ପ୍ରତିମୂର୍ତ୍ତି ।

"ଆସନ୍ତୁ, ଆସନ୍ତୁ ରଥ ବାବୁ । ବିଶ୍ୱାସ କରନ୍ତୁ ମୁଁ ଆପଣମାନଙ୍କୁ ଏ ବଗିଚା ଆଡେ ଥରେ ବୁଲିଯିବାକୁ ଡାକିଥା'ନ୍ତି । ଯାହାହେଉ, ଆପଣ ଆସିଗଲେ । ଆସନ୍ତୁ, ଆସନ୍ତୁ ।"

ଗହଳ ଗଛ ଛାଇରେ ଖଣ୍ଡେ ପରିଷ୍କାର ଚିକ୍କଣ ପଟା ଖଟ ଉପରକୁ ଉଠିଯାଇ ମୋତେ ଫକୀର ବାବା ଡାକିଲା ବସିବା ପାଇଁ । ମୁଁ ବସୁ ବସୁ ସେ ଓହ୍ଲେଇଗଲା କଣ୍ଢେଇଟିଏ ପରି । ମୁଁ ଭାବିଲି ଯଦି ସତକୁ ସତ ଏହାକୁ ଦେଢ ଶ' ବର୍ଷ ହୋଇଥାଏ – ତାହାଲେ ତ' ଏତେ ଫିଟ୍‌ଫାଟ୍ ରହି ପାରନ୍ତାନି ।

ଫକୀର ବାବା ମୋ' ପାଇଁ ପାଚିଲା ଅମୃତଭଣ୍ଡାକୁ ଚେକି ଚେକି କରି କାଟି ଗୋଟିଏ ପ୍ଲେଟ୍‌ରେ ଆଣି ଥୋଇଲା ।

"ଆପଣ ପାଚିଲା ପପିତା ଭଲ ପାଆନ୍ତି । ପିଜୁଳି ତୋଳି ରଖିଚି ପୁଅ ପାଣ ନେଇଯିବେ । ଏଇଟା କିନ୍ତୁ ସିଜିନ୍ ନୁହେଁ, ନହେଲେ ମିସେସ୍ ରଥଙ୍କ ପାଇଁ କିଛି ଲିଚୁ ପଠାଇଥା'ନ୍ତି ।"

ଆମ ଘରେ କିଏ କେଉଁ ଫଳ ଭଲପାଏ କେହି ପ୍ରାୟ ଜାଣନ୍ତି ନାହିଁ, କେବଳ ଜଣେ ଦି'ଜଣ ନିହାତି ପାଖ ଲୋକଙ୍କୁ ଛାଡିଦେଲେ । କିନ୍ତୁ ଫକୀର ବାବା ଯଦିବା ଅନୁମାନ କରିଥାଏ, ଏତେ ନିର୍ଭୁଲ ଅନୁମାନ କରିବା ସହଜ ନୁହେଁ । ମୁଁ ନିଶ୍ଚୟ ବିସ୍ମିତ ହେଲି, କିନ୍ତୁ ମୁହଁ ଖୋଲି କିଛି କହିଲି ନାହିଁ ।

ପଟା ଖଟ ଉପରେ ମୋ' ଆଡକୁ ମୁହଁ କରି ସେ ପଚାରିଲା, "କହନ୍ତୁ, ରଥବାବୁ ମୁଁ ଆପଣଙ୍କ କ'ଣ ସେବାରେ ଲାଗିପାରେ ।"

ମୁଁ ବିନା ଗୌରଚନ୍ଦ୍ରିକାରେ ଆରମ୍ଭ କଲି –

"ଆପଣ ଜାଣନ୍ତି ଆମେ କାହିଁକି ଏ ଗାଁକୁ ଆସିଛୁ । ଆପଣଙ୍କ ସାହାଯ୍ୟ ସହଯୋଗରେ ଗାଁ'ର ପ୍ରାୟ ସମସ୍ତଙ୍କୁ ଆମେ ଅକ୍ଷର ଶିଖେଇଦେଲୁ । ଏଣିକି ସମସ୍ତେ ଅନ୍ତତଃ ନିଜ ନିଜ ନାଁ

ଓଡ଼ିଆରେ ଲେଖିପାରିବେ । କିନ୍ତୁ ଆମେ ଏ ପର୍ଯ୍ୟନ୍ତ ବିଶ୍ୱାସ କରି ପାରୁ ନାହୁଁ ଯେ ଆପଣ ନିଜେ ନିରକ୍ଷର । ଆପଣ ଖବରକାଗଜ ନ ପଢ଼ି ଏତେ ଖବର ଜାଣନ୍ତି କେମିତି ? ଅକ୍ଷର ନ ଚିହ୍ନି ଗୀତା ଭାଗବତ ଆଉ ଶାସ୍ତ୍ର ପୁରାଣ ତତ୍ତ୍ୱ କେମିତି କହିପାରନ୍ତି ? ଯେଉଁ କାରଣରୁ ଗାଁର ସମସ୍ତଙ୍କୁ ଅକ୍ଷର ଶିଖିବାକୁ ଆପଣ ବାଧ କରିଛନ୍ତି ସେଇ କାରଣରୁ ନିଜେ କାହିଁକି ଶିଶୁ ନାହାନ୍ତି ?"

"ଆରେ, ଆରେ, ରଥବାବୁ ଆପଣ ଏକାଥରେ ଏତେ ଜୋର୍‌ରେ ସୱାଲ ପଚାରିଦେଲେ ମୁଁ କ'ଣ ଜବାବ୍ ଦେଇପାରିବି ? ମୁଁ ହେଲି ଗୋଟେ ସାଧାରଣ ଗାଉଁଲିଆ ବୁଢ଼ାଲୋକ । ମୋ' ବାବଦରେ ଏତେ କଥା ଆପଣ କାହିଁକି ଜାଣିବାକୁ ଚାହୁଁଛନ୍ତି ?" – ସେ ହସି ହସି କଥା ଏଡେଇଦେବାର ବାହାନା କରୁଥିବାର ଦେଖି ମୁଁ ପୁଣି ଦୋହରାଇଲି –

"ମୁଁ ପଚାରିଲି ବୋଲି ଆପଣ କିଛି ନ କହିବେ ନାହିଁ, କିନ୍ତୁ କାଲି ଏ ଗାଁର ପିଲା ପାଠ ପଢ଼ି ଆପଣଙ୍କୁ ଏଇକଥା ପଚାରିଲେ ଆପଣ କ'ଣ କହିବେ ?"

ସେ ପୁଣି ଟିକିଏ ହସିଦେଇ ଆଖି ତଳକୁ କରିଦେଲା । କହିଲା –

"ଆପଣ ଭାରି ଚାଲାକ ଲୋକ । କିନ୍ତୁ ଆପଣ ଯାହା ପଚାରିଛନ୍ତି ସେମିତି କିଛି ରହସ୍ୟ ନୁହେଁ । ଖବର ଜାଣିବାକୁ ମୋ' ପାଖରେ କୋଡ଼ିଏ ବର୍ଷ ହେବ ଗୋଟିଏ ଛୋଟ ରେଡିଓ ଅଛି । ବ୍ୟାଟେରିରେ ଚାଲେ । ସେଥିରୁ ଯାହା ଶୁଣେ ସେ ସବୁ ଖବରକାଗଜରେ ବାହାରେ । ଆଉ ଶାସ୍ତ୍ର ପୁରାଣ କଥା ଗାଁର କାହାକୁ ଜଣା ନାହିଁ ? ସେ କଥା ସବୁ ଏ ମାଟି ପାଣି ପରି ପୁରୁଣା । ଆଉ ରହିଲା ଅକ୍ଷର ଶିଖିବା କଥା –

ଆଖିଟେକି ମୋତେ ଚାହିଁ ଅଳ୍ପ ହସି କହିଲା, "ଶିଖିନାହିଁ ତ ଶିଖି ନାହିଁ, ଏବେ ଆଉ କ'ଣ ଶିଖିବି ? ସହି କରିବାକୁ ହେଲେ ମୋ' ପାଖରେ କାଳିବାକ୍ସ ଅଛି, ସେଥିରେ ଟିପ ମାରି ମଡେଇଦିଏ । କାମ ଚଳିଯାଏ ।"

"କାଗଜରେ କ'ଣ ଲେଖାଅଛି ନ ପଢ଼ି ଆପଣ ଟିପ ମଡେଇ ଦିଅନ୍ତି ?"

"ମତେ ପଢ଼ି ଶୁଣେଇଦେଲା ଉତ୍ତାରୁ ଆଉ କ'ଣ ଅସୁବିଧା ଅଛି ?"

"ପଢ଼ିବା ଲୋକ ଯଦି ଓଲଟା କଥା ଶୁଣେଇଦିଏ –"

"ମୁଁ ଜାଣିଦିଏ କାରଣ ତା' ଆଖି ତ' ସତ ଦେଖୁଚି । ତା' ଦିଲ୍ ସତ ବୁଝୁଚି । ସେ ଯଦି ତୁଣ୍ଡରେ ଝୁଟ୍ କହିବ ତେବେ ଧରାପଡିଯିବ ।"

ମୁଁ ସାଙ୍ଗେ ସାଙ୍ଗେ ସେ ଦିନର ଖବରକାଗଜ ଫିଟେଇ ପଢ଼ିଲି "ଦିନ ଦି'ପହରେ ଡକାୟତି । କଟକ । ଆଜି ଦିନ ଦେଢ଼ଟା ସମୟରେ ତିନିଜଣ ଅଚିହ୍ନା ଯୁବକ ହିରୋହୋଣ୍ଡା ମୋଟରସାଇକେଲରେ ଆସି ମହାନଦୀ ବିହାର ଛକ ଉପରେ ବନ୍ଧୁକ ଦେଖାଇ ବ୍ୟବସାୟୀ ଜଗୁଲୁ ପାତ୍ର ପାଖରୁ ତିନିଲକ୍ଷ ପଚାଶ ହଜାର ଟଙ୍କା ଲୁଟିନେଲେ ।"

ଫକୀର ବାବା ହାତ ଟେକି ଆଉ ଆଗକୁ ପଢ଼ିବାକୁ ବାରଣ କଲା । ଆଖି ମିଟି ମିଟି କରି କହିଲା – "ମୋତେ ପରୀକ୍ଷା କରିବାକୁ ଏତେ ଲୁଚେଇଲେ କ'ଣ ଚଳିବ ? ଆପଣଙ୍କ ଆଖି

ଦେଖୁଚି ଯାହା ତୁଣ୍ଡ ତାହା କହୁ ନାହିଁ । ଆପଣଙ୍କ ଭିତରେ ସାକ୍ଷୀ ପୁରୁଷ ଉଭୟଙ୍କୁ ଦେଖୁଚି ।"

ମୁଁ କୌତୂହଳ ରଖି ନ ପାରି କହିଲି, "କହୁନାହାନ୍ତି ମୁଁ କ'ଣ ସବୁ ଭୁଲ୍ ପଢ଼ି ଶୁଣେଇଲି !"

"ପ୍ରଥମେ ତ' କଟକ ଠିକ୍ ନୁହେଁ । ମହାନଦୀ ବିହାର ଠିକ୍ ନୁହେଁ । ତିନିଲକ୍ଷ ପଚାଶ ହଜାର ଠିକ୍ ନୁହେଁ । ତିନିଜଣ ଯୁବକ ଠିକ୍ ନୁହେଁ ।"

କେଜାଣି କାହିଁକି ମୋ' ଦେହସାରା ଶୀତେଇଗଲା । ମୁଁ ସତକୁସତ ଭୁବନେଶ୍ୱରକୁ କଟକ ପଢ଼ିଥିଲି । ଆଚାର୍ଯ୍ୟବିହାରକୁ ମହାନଦୀ ବିହାର, ଦୁଇଜଣଙ୍କୁ ତିନିଜଣ ଓ ଏକଲକ୍ଷକୁ ତିନିଲକ୍ଷ କରି ପଢ଼ିଥିଲି ।

ସେ ମୋତେ ଚାହିଁ ମୁଚ୍‌ମୁଚ୍ ହସୁଥିଲା । "ଦେଖିଲେ ନା ରଥ ବାବୁ, ମିଛ କହିଲେ କେମିତି ଧରାପଡିଯାଏ ? ସେଥିପାଇଁ ମୁଁ କହୁଥିଲି ଯେ କାଗଜରେ କ'ଣ ଲେଖାଅଛି ଥରେ ଶୁଣିଦେଲେ ମୁଁ ଜାଣିଯାଏ, ଟିପଚିହ୍ନ ଦେବି ନା ନାହିଁ । ଟିକିଏ ଛାଡି ଦୁଇଥର ପଢ଼ିବାକୁ କହିଲେ ସବୁ ଧରାପଡିଯାଏ । ଏ ପର୍ଯ୍ୟନ୍ତ ଏ ବାବଦରେ ମୁଁ ଧୋକା ଖାଇ ନାହିଁ ।"

ମୁଁ ତାକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥାଏ ।

କହିଲା, "ମୁଁ ଆପଣଙ୍କ ପାଇଁ କ୍ଷୀର କପେ ଆଣିଦିଏ । ଆପଣ ତ' ଚାହା ପିଇବେ ନାହିଁ ।"

ମୋ ଭିତରେ ଘାଣ୍ଟି ହୋଇ ତଣ୍ଟି ପାଖକୁ ଗୁଳାଟାଏ ଉଠି ଆସିଲା । କାନ୍ଦି ପକେଇବି କି ଆଉ ! – କିଏ ଏ ଅଦ୍ଭୁତ ମଣିଷ ? ସେ ତ ମୋତେ ଗୋଟାଏ ଖୋଲା ବହି ପରି ପଢ଼ି ଦେଇ ପାରୁଛି । ମୁଁ ଚାହା ନ ପିଇବା ଖବର ସେ ପାଇଲା କୋଉଠୁ ?

ଆମ ମେସ୍‌ରେ ଯେଉଁ ରୋଷେୟା ଟୋକା ଲାଗିଥିଲା ସେ ହୁଏତ ପ୍ରଘଟ କରିଥିବ ଯେ ରଥ ବାବୁ ବୋଲି ଜଣେ ସେଥିରୁ ତାହା ଖାଏ ନାହିଁ । କିନ୍ତୁ ଗାଁ ଲୋକ ତ ଗାଁରେ । ଫକୀର ବାବା ଏଇଠି ତା' ଫଳ ବଗିଚାରେ । କେମିତି କ'ଣ କାହାଠାରୁ ଶୁଣିଲା ? – ମୋ' ସ୍ତ୍ରୀ ଲିଚୁ ଭଲପାଆନ୍ତି, ଏ ଖବର ତ' କେହି ଜାଣନ୍ତି ନାହିଁ । ସେ ଜାଣିଲା କେମିତି ? – ନା, ନା ଏ ଲୋକ ନିଶ୍ଚୟ ଅସାଧାରଣ ।

"ଏଇ ନିଅନ୍ତୁ ରଥ ବାବୁ । ମୁଁ ଜାଣି କରି ଚିନି କମ୍ ଦେଇଚି ।"

ଇସ୍ ଫକୀର ବାବା କହିଦଉନ୍ତୁ ମୋତେ ଆଉ ମୋ' ସତେଇଶ ପୁରୁଷକୁ ତାଳପତ୍ର ଖେଦା ଭଳି ହାତରେ ଧରିଛୁ । ସମସ୍ତଙ୍କୁ ଗୋଟି ଗୋଟି କରି ଫିଟେଇ ପଢ଼ି ଦେଇ ପାରିବୁ ।

ଖାଣ୍ଟି ଗାଈ କ୍ଷୀରରେ ସାମାନ୍ୟ ମିଠା ପଡିଲେ ମୋତେ ଅମୃତ ପରି ଲାଗେ । ମୁଁ ଦୁଇ ଢୋକ ପିଇ ତା'ର ଆସ୍ୱାଦ ନେଉଥାଏ । ନୀରବରେ ଚାହିଁରହିଥାଏ ସମ୍ମୋହିତ ପରି ।

"ଆପଣ ପାଠ ପଢୁଆ ଲୋକ । ଆପଣ ଠିକ୍ ବୁଝିବେ ମୁଁ ଆଉ କାହାକୁ ଏ କଥା କହିପାରେ ନାହିଁ । ମୁଁ ଟିପଚିହ୍ନ ଦିଏ ଏଇଥିପାଇଁ ଯେ ମୋ' ଟିପଚିହ୍ନ କେବଳ ମୋର । ସେଭଳି ସଇ ଆଉ କେହି ଦେଇପାରିବ ନାହିଁ ସାରା ଦୁନିଆରେ । ଆପଣ ଶିଖାଇଥିବା ଅକ୍ଷରରେ ମୋ' ନାଁ ମୁଁ ଯେମିତି ଲେଖିବି ଆଉ ପାଞ୍ଚଜଣ ବି ସେମିତି ଲେଖିଦେଇ ପାରିବେ । – ନାଁ ଟା କ'ଣ ମୁଁ? –

ପାର୍ଶ୍ୱରେ ଯେମିତି ଗାର ପକେଇ ମୋ' ନାଁ ଲେଖିବି, ଓଡ଼ିଆରେ କି ଇଂରାଜୀରେ କ'ଣ ସେମିତି ଲେଖିବି ? ଏ ଗାର ଗୁଡ଼ାକ ଠାର । କଥାକୁହା ମଣିଷ ପାଇଁ, ଯା କଥା ତା' ପାଖରେ ପହଞ୍ଚେଇବା ପାଇଁ ଗୋଟାଏ ତରିକା । ପାଞ୍ଚକଥା ଜାଣିବା ପାଇଁ, କ'ଣ କଥା କହିବା, ଶୁଣିବା କି ଅକ୍ଷରରେ ଠାରିବା ନିହାତି ଜରୁରୀ ?"

ମୁଁ କାବା ହୋଇ ଶୁଣୁଥାଏ । କ'ଣ କହୁଛି ଫକୀର ବାବା ! ଏ ତ ଭାଷାତତ୍ତ୍ୱର ମୂଳ କଥାଯାକ ବଖାଣି ଯାଉଛି ତା' ଢଙ୍ଗରେ !!

"ଆଉ ରଥ ବାବୁ କଥାରେ କ'ଣ ମଣିଷଟାକୁ ଚିହ୍ନିହେବ ନା ଜାଣିହେବ ? କଥାଟା କ'ଣ ମଣିଷ ? କଥାର ଖୋଳ ପିନ୍ଧିବା ଆଗରୁ ତା'ର ଦିଲ୍ ଆଉ ଦିମାଗ୍‌ରେ ଯୋଉ ହଲ୍‌ଚଲ୍ ହୁଏ ତାକୁ ଜାଣିଗଲେ ଆଉ କଥା କହିବାର କି ଶୁଣିବାର ଦରକାର ନାହିଁ ।"

ଅଳ୍ପ ହସି କହିଲା, "ଏଇ ଯେ ଦେଖୁଛନ୍ତି ନା ରଥ ବାବୁ, ମୋର ବାଁ ହାତର ବୁଢ଼ା ଆଙ୍ଗୁଠିଟା – ଏଇଟା ମୁଁ ନିଜେ । ଏଥିରେ ଯେଉଁ ଲକିର୍ ରହିଛି ସେଇଟା ଆଉ କୋଉଠି ନାହିଁ । ମୋ' ଚେହେରା ମୋ' ଚିହ୍ନଟ । ମୋ' ଆଙ୍ଗୁଠି ମୋ' ଚିହ୍ନଟ, ଅକ୍ଷରରେ ସଇ କଲେ କ'ଣ ଅଧିକା ହେଇପାରିବ ଯାଠୁ ?"

ସେତିକିବେଳେ ମୁଁ ଫକୀର ବାବାର ଯୁକ୍ତି ପାଇଁ ପ୍ରତିଯୁକ୍ତି ଖୋଜି ପାଇପାରୁ ନଥିଲି । ସେ କିନ୍ତୁ ମୋ' ମନକଥା ଜାଣିଲା ପରି କହିଲା –

"ମୁଁ ବୁଝିପାରୁଛି ଗାଁ ଲୋକ ମୋତେ ମାନିଯାଇଛନ୍ତି ବୋଲି ମୁଁ ଯାହା କରୁନାହିଁ ସେ କାମ ସେମାନଙ୍କୁ କରିବାକୁ କହୁଛି । ମୁଁ ଟିପଚିହ୍ନ ଦିଏ ବୋଲି ସମସ୍ତେ ଜାଣନ୍ତି । ଆଉ ବି ଜାଣନ୍ତି ଯେ ଲେଖିବା ପଢ଼ିବା ମୋ' ପାଇଁ ସେତେ ଜରୁରୀ ନୁହେଁ । ଏଇ ଯେମିତି ଆପଣ କିଛି ନ କହି ମୋ' ସାମ୍ନାରେ ଚୁପ୍‌ଚାପ୍ ବସିଛନ୍ତି । କିନ୍ତୁ ଆପଣ କ'ଣ କହିବାକୁ ଚାହୁଁଛନ୍ତି ମୁଁ ଜାଣିପାରୁଛି । ଆପଣ ଭାବୁଛନ୍ତି ଯେ ମୁଁ ଗୋଟାଏ ଅଜବ ଲୋକ । କ'ଣ ଗୋଟେ ଇଲମ୍ ହାସଲ କରିନେଇଛି । ମୁଁ ସମସ୍ତଙ୍କ କଥା ଜାଣିପାରୁଛି ହେଲେ ଆଉ କାହାକୁ ମୋ' ବିଷୟରେ ଜାଣିବାକୁ ହେଉ ନାହିଁ । – ନା କ'ଣ ? ଆପଣ ଏଇଆ ସବୁ ଚିନ୍ତା କରୁ ନାହାନ୍ତି ?"

ସେତେବେଳକୁ ମୋର ଫଣା ନଇଁ ଯାଇଥାଏ । ସ୍ୱର ଦୁର୍ବଳ ହୋଇଯାଇଥାଏ । ମୁଁ କିଛି ଉତ୍ତର ନ ଦେଇ କେବଳ ଫକୀର ବାବାକୁ ଚାହିଁ ରହିଲି – ବିସ୍ମୟରେ ସମ୍ଭ୍ରମରେ ।

ସେ ଟିକିଏ ହସିଦେଇ କହିଲା, "ବିଲ୍‌କୁଲ୍ ଠିକ୍ କଥା । ଆପଣ ଆଉ କେତେ କଥା ପଚାରି ଜାଣିବାକୁ ଚାହୁଁଛନ୍ତି । – ମୁଁ ସତକୁ ସତ କୁର୍ବାନ୍ ଖାଁ ନା ନୁହେଁ – ମୋ' ନିଜ ଘର କୋଉଠି – ବାପ ମା' କିଏ – ମୋ' ବୟସ କେତେ – ମୁଁ ଚଳେ କେମିତି । ଆପଣ ଗାଁରେ ଶୁଣିଛନ୍ତି ଯେ ମଝିରେ ମଝିରେ ମୁଁ ମାସେ ଦି'ମାସ ପାଇଁ କୁଆଡେ ଚାଲିଯାଏ କେହି ଜାଣନ୍ତି ନାହିଁ । ଆପଣ କିନ୍ତୁ ତା' ବି ଜାଣିବାକୁ ଚାହୁଁଛନ୍ତି ।"

ଟିକିଏ ରହିଯାଇ କହିଲା, "ଆପଣ ତାକୁ ଯୋଡନ୍ତୁ ନାହିଁ । ଆପଣ ଭାବୁଛନ୍ତି ମୁଁ କୌଣସି

ଗୁପ୍ତଚର ନୁହେଁ ତ! ମଝିରେ ମଝିରେ ମୋ' ଖାଉନ୍ଦମାନଙ୍କ ପାଖକୁ ଚାଲିଯାଏ। ସେମାନେ ମୋ' ଭରା ଦେଇ ପୁଣି ପଠେଇଦିଅନ୍ତି ଲୋକଙ୍କ ବିଶ୍ୱାସ ଅର୍ଜନ କରିବା ପାଇଁ। କେହି ଯେମିତି କେବେହେଲେ ମୋତେ ସନ୍ଦେହ ନ କରୁ ଏମିତି ଆଚରଣ ପାଇଁ।"

ମୁଁ ଲାଜରେ ତଳକୁ ମୁହଁ କରିନେଲି।

"ଆପଣଙ୍କର କିଛି ଦୋଷ ନାହିଁ। ମଣିଷର ଦିମାଗ୍‌ଟା ତ' ଏମିତି! ତାକୁ ବି ଦୋଷ ଦେଇ ଲାଭ ନାହିଁ। କିନ୍ତୁ ଆପଣ ଯାହାସବୁ ଜାଣିବାକୁ ଚାହୁଁଛନ୍ତି ସେଥିରେ ଆପଣଙ୍କର ଲାଭ କ'ଣ? ଖାଲି ଗୋଟେ ସଉକ୍ ଗୋଟେ ଖିଆଲ୍‌ରେ ଜେରା କରି କିଛି ଖବର ନେଇଗଲେ ଅନ୍ୟମାନଙ୍କୁ ବାଣ୍ଟିବେ ତାଙ୍କୁ ତାଜୁବ୍ କରିବେ – ଏଇଆ ନା? – ହୁଏତ ଆଉ ପାଞ୍ଚ କଥା ମନରୁ ଯୋଡି ପାଞ୍ଚଲୋକଙ୍କ ଆଗରେ ବଖାଣିବେ। ସତରେ ଯଦି ଜାଣିବାକୁ ଚାହାନ୍ତି ତା'ହେଲେ କିଛି ନ ପଚାରି ମୋ' ପାଖରେ ରହିଗଲେ ବଳେ ଜାଣିଯିବେ। ରହିପାରିବେ?"

ମୁଁ ଆଖିଟେକି ଚାହିଁଲି।

"ମୁଁ ଜାଣେ ଆପଣ ପାରିବେ ନାହିଁ। କାରଣ ଏସବୁ ଜାଣିବା ସତରେ ଆପଣଙ୍କ ପାଇଁ ଜରୁରୀ ନୁହେଁ। ଏମିତି ଖାଲି ବେମତଲବ ପଚାରିବାକୁ ଚାହୁଁଛନ୍ତି। ଜାଣିଗଲେ ଭଲ ନ ଜାଣିଲେ ବି କିଛି ଯାଏ ଆସେ ନାହିଁ।"

ମୁଁ ପ୍ରତିବାଦ କଲା ପରି କହିଲି – "ସବୁବେଳେ କ'ଣ ମତଲବ ରଖି କେହି କିଛି ଜାଣିବାକୁ ଚାହେଁ? କିଛି ଅସାଧାରଣ ଲାଗିଲେ ତା'ର କାରଣ ଜାଣିବାକୁ ଯେ କେହି ଇଚ୍ଛା କରିବ। ଆପଣ ଅତି ସହଜରେ କିଛି ଚମତ୍କାର କରୁଛନ୍ତି। ସେଥିପାଇଁ ମୋର କୌତୂହଳ ହୋଇଛି। ମୁଁ କଥାରେ କହିବା ପୂର୍ବରୁ ଆପଣ ତାକୁ ଠିକ୍ ଧରିନେଇଛନ୍ତି। ଏଇଟା ହିଁ ତ ଏକ ଆଶ୍ଚର୍ଯ୍ୟ। ଆପଣ କେମିତି ଏସବୁ ସାଧିଲେ? ସହଜରେ ପାଇଗଲେ ନା' ଗୁରୁଙ୍କଠାରୁ? ଆପଣ ଯେ କିଛିଦିନ କୁଆଡେ ଚାଲିଯାଆନ୍ତି, କାହିଁକି ଯାଆନ୍ତି? ଆପଣଙ୍କ ଫଳବଗିଚାରେ ତ ଆପଣ ବେଶ୍ ଅଛନ୍ତି। ତା'ହେଲେ କାହା ପାଖକୁ ଯାଆନ୍ତି? – ହଁ ମୁଁ ମାନୁଛି ଯେ ମୁହୂର୍ତ୍ତକ ପାଇଁ ମୋତେ ଲାଗିଛି ଯେ ଆପଣ ଗୁପ୍ତଚର ନୁହନ୍ତି ତ। ତା'ର କାରଣ ହେଲା ଆପଣଙ୍କ ନାଁ ଏବଂ ଆମ ପଡୋଶୀ ରାଜ୍ୟର ଗୁପ୍ତଚର ଏଠି ରହି କାମ କରୁଥିବାର ବହୁ ଦୃଷ୍ଟାନ୍ତ। କିନ୍ତୁ ମୋର ସେଭଳି ଧାରଣା ଆଉ ନାହିଁ। କୌଣସି ଗୁପ୍ତଚର ଖୁବ୍ ଚାଲାକ ହୋଇପାରେ କିନ୍ତୁ ଏମିତି ଅନ୍ୟର ମନ ଭିତରେ ପଶି ସବୁ ଜାଣି ପକାଇବାର ଅଲୌକିକ ସିଦ୍ଧି ତା' ପାଇଁ ସମ୍ଭବ ନୁହେଁ। ଯଦି ସମ୍ଭବ ସେ ଗୁପ୍ତଚର ହୋଇପାରିବ ନାହିଁ। ଆପଣ ନିଶ୍ଚୟ ଜଣେ ସାଧକ ହୁଏତ ଗୁରୁ କରିଛନ୍ତି କୌଣସି ଯୋଗୀ ବା ସିଦ୍ଧ ପୁରୁଷଙ୍କୁ।"

ସେ ଆଖିବୁଜି ହାତ ଟେକି ମୋତେ ବାରଣ କଲା, "ବାଆସ୍ ରଥ ବାବୁ ଆଉ ଆଗକୁ ଯାଆନ୍ତୁ ନାହିଁ, କାରଣ ତା' ଆଗକୁ ଆପଣ ଯାହା ଅନୁମାନ କଲେ ବି ଭୁଲ୍ ହେଇଯିବ। ହେଲା, ଯଦି ଆପଣ ଭାବୁଥା'ନ୍ତି ଯେ ମୋର ଜଣେ ଗୁରୁ ଅଛନ୍ତି ଆଉ ମୁଁ ମଝିରେ ମଝିରେ ତାଙ୍କ ପାଖକୁ ଯାଏ ଠିକ୍ ଅଛି। ଆପଣଙ୍କ ମନ ମାନିବାକୁ ଗୋଟାଏ କୈଫିୟତ୍ ତ' ମିଳିଗଲା। ଆପଣ

ସେତିକିରେ ଖୁସ୍ ରହନ୍ତୁ । ଆଉ ଆଗକୁ ଜାଣି ଲାଭ କ'ଣ ?"

– "ଆଉ କହନ୍ତୁ, ଆପଣଙ୍କ ରହଣି କେମିତି ଲାଗିଲା ? ଗାଁ ଲୋକେ ଆପଣଙ୍କର ସୁବିଧା ବୁଝିଲେ କି ନାହିଁ ? ଏ ଗାଁର ଲୋକେ ଦୁଇବର୍ଷ ଭିତରେ ଖୁବ୍ ବଦଳିଯିବେ । ଏଇଠୁ ପିଲା ବାହାରି ଆଉ ଦଶବର୍ଷକୁ ଅମଲା ଅଫିସର ହେବେ । କାହାର ପିଲା କ'ଣ ହେବ ସେଇଟା ତ' ଆଗ କଥା । ଏବେ ଆପଣ ଆସି ତାଙ୍କୁ ଅକ୍ଷର ଶିଖେଇଲେ । ଏଇଠୁ ଆରମ୍ଭ ହବ ନା ! – ଆପଣମାନେ ତ' ସେମାନଙ୍କ ଗୁରୁ !"

– "ଆଚ୍ଛା ରଥ ବାବୁ, ଆପଣ ତା'ହେଲେ ଆଜି ବାହାରୁଛନ୍ତି । ଆପଣ ଏ ଓଳି ଚାଲି ଯାଉ ନାହାନ୍ତି । କାକର କାକର ପାଗ । ଆପଣ ଘରେ ଚଞ୍ଚଳ ପହଞ୍ଚିବା ଦରକାର । ପିଲାଟା ଦେହ ଟିକିଏ ବ୍ୟସ୍ତ ଅଛି ତ !"

ମୁଁ ଚମକି ପଡିଲି ।

"ଆରେ କିଛି ଚିନ୍ତା କରିବାର ନାହିଁ । ସେ ଠିକ୍ ହୋଇଯିବ । ସେ ତ' ଭାରି ବଡ ହାକିମଟାଏ ହବ ।"

ମୁଁ ଧଡପଡ ଉଠି ପଡିଲି । "ଆଚ୍ଛା ଫକୀର ବାବା । ମୁଁ ପୁଣି ଆସିବି । ଆପଣଙ୍କ ସବୁକଥା ଜାଣିବି ।"

ହସିଦେଇ ଫକୀର ବାବା କହିଲା, "ଉହୁଁ, ଆପଣ ଆଉ ଆସି ପାରିବେ ନାହିଁ ।"

ମୁଁ ବୋଧେ ଜଞ୍ଜାଳରେ ଫାନ୍ଦିହୋଇ ରହିଯିବି ଓ ମୁକୁଳି ପାରିବି ନାହିଁ ଭାବି ସେ ସେମିତି କହିଲା ନା' କ'ଣ ! କହିଲି – "ଦେଖିବେ, ମୁଁ ନିଶ୍ଚେ ଦିନେ ଆସିବି ।"

ଫକୀରବାବା ଚୁପ୍‌ଚାପ୍ ମୋତେ ଚାହିଁ ମୁଚ୍‌ମୁଚ୍ ହସୁଥିଲା ।

X X X X

ମୁଁ ସେଇଠୁ ଆସିବାର ଆଜିକୁ ପନ୍ଦରବର୍ଷ ହେଇଗଲା । ମୋ' ପୁଅ ସତକୁ ସତ ରେଲୱେରେ ଖୁବ୍ ବଡ ପାହ୍ୟାରେ କାମ ପାଇଲା । ସବୁ ଠିକ୍ ଠିକ୍ ହେଇଯାଉଥିଲା । ମୁଁ କିନ୍ତୁ ସେ ଗାଁକୁ ସତକୁସତ ଯାଇପାରିଲି ନାହିଁ ।

ଯିବାର ବି ଆଉ ପ୍ରୟୋଜନ ନାହିଁ ।

ଆଜି ମନେ ପଡିଲା ବୋଲି ଖବର ନେଲି । ଫକୀର ବାବା ଆମେ ଆସିବାର ଦି'ମାସ ପରେ ବାହାରିଗଲା – ଆଜିଯାଏଁ ଫେରିନାହିଁ । କୁଆଡେ ଗଲା କେହି ଜାଣନ୍ତି ନାହିଁ । ଫଳବଗିଚାକୁ ଗାଁର କୋଠ ସମ୍ପତ୍ତି କରି କବଲା କରି ରଖିଦେଇଗଲା । ସେଥିରେ ବି ଟିପଚିହ୍ନ ମରା ହେଇଥିଲା ।

ଫକୀର ବାବା କିଏ କେଜାଣି ! ମୁଁ ତା'ର ଫଟୋଟିଏ ସଂଗ୍ରହ କରିଛି । କାଚବନ୍ଧେଇ କରି ଦିଅଁଘରେ ରଖିଛି ।

ସେ ଗାଉଁଲି ନିରକ୍ଷର ହେଲେ କ'ଣ ହେଲା ? ଭଗବାନ ରାମକୃଷ୍ଣ ତ' ପୁଣି ନିରକ୍ଷର ଥିଲେ ।



# ରାତିକ ପାଇଁ ରାଜପଦ

ମୋର ପ୍ରଚଣ୍ଡ ବିଜିଗୀଷା ସେତେବେଳେ । ନାଗଫଣା ପରି ମଥା ଟେକି ରଖିଥାଏ । ହାରିବା ସହିପାରେ ନାହିଁ । ପ୍ରାଣପଣ ଲଢ଼ିଯାଏ । ହାରିଗଲେ ପୁଣି ତାକୁ ଲେଉଟାଇ ନ ଜିଣିବାଯାଏଁ ମୋତେ ନିଦ ହୁଏ ନାହିଁ ।

ସେଥିପାଇଁ ସେ ସମୟଟାରେ ମୁଁ ଡହଡହ ତାତି ରହିଥିଲି । ଅଗ୍ନି ବର୍ଷୁଥିଲି । ଧରାକୁ ସରା ମଣୁଥିଲି । ଚାହୁଁଥିଲି ସମ୍ରାଟ୍ ଭଙ୍ଗୀରେ ।

ସେତେବେଳେ ମୋତେ ତିରିଶ ପୂରି ଏକତିରିଶ ଚାଲୁଥାଏ । ମୁଁ ପହଞ୍ଚିଲି ଗୋଟେ ପାହାଡଘେରା ସହରରେ । ଛୋଟ ସହର । ଛୋଟ ବଜାର । ଲୋକବାକ କମ୍ । ମୁଁ କାହାରି ପରିଚିତ ନୁହେଁ । ମୋର କେହି ପରିଚିତ ନୁହଁନ୍ତି । ଅଥଚ ବାଟରେ ଚାଲିଗଲା ଲୋକ ମୋତେ ଚିହ୍ନିଲା ପରି ଚାହିଁଲେ । ଆପଣାର ଭାବି ଉଷତ ହେଲାପରି ଦିଶିଲେ । ମୁଁ କିନ୍ତୁ ମୁକାବିଲା ଲୋଡୁଥାଏ । ଖୁରି ଖାଉଥାଏ ଲଢ଼ିଯିବାକୁ । ତା' ଭିତରୁ ଜଣେ ପାଖେଇଆସିଲା । ମୋ' ଆଖିକୁ ଚାହିଁ ମୁହଁ କୁଞ୍ଚେଇ ଅଳ୍ପ ହସିଲା ।

– "ଆପଣ କିଏ ?"

– "ମୁଁ ଯେ କେହି ହେଲେ ଆପଣଙ୍କର କ'ଣ ଅଛି ସେଥିରେ ?"

– "ଆରେ, ମୁଁ ଆପଣଙ୍କୁ ଭଲରେ ପଚାରୁଚି, ଆପଣ ହେମ୍‌ତି ଚଟିଯାଉଛନ୍ତି କେନେ ?"

– "ଚଟାଚଟି କଥା ନାହିଁ । ମୁଁ ଆପଣଙ୍କୁ ଜାଣେ ନାହିଁ । ଆପଣ ବି ମୋତେ ଜାଣିବା ଦରକାର ନାହିଁ ।" ମୁଁ ମୁହଁ ଫେରେଇ ବଡ ରାସ୍ତା ଆଡକୁ ମୁହାଁଇଲି । ଭାବିଲି ଲୋକଟା ସେତିକିରେ ଥଣ୍ଡା ହୋଇଯାଇଥିବ ।

ସେ କିନ୍ତୁ ମୋ' ପିଛା ଧରିଛି ବୋଲି ମୁଁ ଜାଣି ନାହିଁ । ସେ ମୋ' ପାଖକୁ ମିଶି ଆସିଲା । ତା' ପାନଖିଆ ଦାନ୍ତ ଦେଖେଇ ଆଦୌ ଆହତ କିମ୍ବା ଚକିତ ନ ହେବା ଭଙ୍ଗୀରେ କହିଲା – "ବଡ ଅଜବ୍ ନୁକ ତ ଆପଣ !"

ମୋଠୁ ଛ ଇଞ୍ଚ ସାନ ମଣିଷଙ୍କୁ ଉପରୁ ଚାହିଁ କହିଲି, "ଅଜବ ମୁଁ ନା ତମେ ?"

– "ଏଇ ଯେ କଥା ଜମିଲା । ତମେ ବାବୁ ଭାରି ବଢ଼ିଆ ନୁକ । ବଡ ନୁକ କିଏ ଆସିଛ । ତମର ଆଖି ଦୁ'ଟା କେମିତିକି ତମକୁ ଚିହ୍ନା ପକେଇଦଉଚି । ରଜାଛୁଆନେଖେ ଦିଶୁଚ । ଏଇଟା ବାବୁ ରଜା ମୁଲକ । ରଜା ରାଇଜ ଗଲା । ରଜାମାନେ ଗଲେ । ଆମେ ରଜାଟେ ଖୁଜୁଚୁଁ ।"

ମତେ ସତକୁ ସତ ହସମାଡିଲା । ପରାସ୍ତ ବ୍ୟକ୍ତିର ସ୍ତବଗାନ ପରି ତା'ର କଥା ମତେ ଶୁଣାଗଲା । ଶୁଣିବାକୁ ଭଲ ଲାଗିଲା ।

– "ତମେ କେନେ ଆସିଛ କହନି ?"

ଇଚ୍ଛା ହେଲା ନାହିଁ ସତ କହିବାକୁ ତା' ସପ୍ନ ଭାଙ୍ଗିଯିବ ଏଇ ଭୟରେ । ବହୁ ଲୋକଙ୍କ ବହୁ ସପ୍ନ ମୁଁ ଭାଙ୍ଗିସାରିଥାଏ । ଦିଗ୍‌ବିଜୟବେଳେ ଯାହା ହାବୁଡେ ପଡିଗଲା ଚୁରି ହୋଇଯାଉଥାଏ । କିନ୍ତୁ ଛୋଟକୋଟର ମଣିଷଟି ମୋତେ ଭାରି ସରଳ, ନିଷ୍କପଟ, ସାମାନ୍ୟ ନିର୍ବୋଧ ଜଣାଗଲା । ଏଣୁ ଧରାଯାଉ, ଦୟାକରି ମୁଁ ତାକୁ ଛାଡିଦେଲି । ମୁଁ ରଜାଫଜା କେହି ନୁହେଁ କହିଦେଲେ ତା' ମୁହଁଟି ଶୁଖିଯିବ । ସେ ହୁଏତ କାନ୍ଦିପକେଇବ । ସେଥିପାଇଁ କିଛି ଜବାବ ଦେଲି ନାହିଁ ।

ଆମେ ରାସ୍ତାକଡକୁ ଘୁଞ୍ଚିଯାଇଥିଲୁ । କେଜାଣି କାହିଁକି, ତା'ରି ଭଳି ଆଉ ଚାରିପାଞ୍ଚଜଣ ଆସି କେମିତି ଗୋଟାଏ କୃତକୃତ୍ୟ ହେଲାପରି, ଶରଣ ପଶିଲା ପରି ଠିଆ ହୋଇଗଲେ ।

ଭାବିଲି ଛୋଟ ସହରର ଏଇ ବୋଧେ ଢଙ୍ଗ । ସେ ଲୋକଟି କରଯୋଡି ପ୍ରାର୍ଥନା ଭଙ୍ଗୀରେ କ'ଣ ସବୁ କହିଲା, କ'ଣ ସବୁ ପଚାରିଲା, ମୁଁ ଶୁଣିନାହିଁ । ମୁଁ କେବଳ ସନ୍ତୁଷ୍ଟ ମୁଦ୍ରାରେ ଚାହିଁ ରହିଥାଏ ।

ଏତିକିବେଳେ ଖଣ୍ଡେ ଜିପ୍ ଗାଡି ଆସି ରହିଲା । ସେଥିରୁ ଜଣେ ମୋଟାଳିଆ ବାଙ୍ଗରା ଲୋକ ବାହାରି ଆସି ନମସ୍କାର କଲା ।

– "ଆପଣ ସାର୍ ଏଠି ?"

– "ହଁ, ସେଥିରେ ଅସୁବିଧା କ'ଣ ?"

– "ଆସନ୍ତୁ ସାର୍, ରାଜବାଟି ଆଡେ ଯିବା । ସେଇଠି କଥା ହବା ।"

ମୁଁ ରାଜି ହୋଇଯିବା ଉଚିତ ମନେକଲି ।

ସେ ପର୍ଯ୍ୟନ୍ତ କିନ୍ତୁ ତା'ର ପରିଚୟ ମୋ' ପାଖରେ ନ ଥିଲା । ଏଇଟା ଅବଶ୍ୟ ଅନୁମାନ କରିହେଉଥିଲା ଯେ, ସେ ମତେ ଭଲଭାବରେ ଜାଣିଥିଲା । କୌଣସି କାରଣରୁ ଖୁବ୍ ଇଜ୍ଜତ୍ ବି କରୁଥିଲା ।

ମନେହେଉଥିଲା, ସେ ଜଣେ କେହି ଆଞ୍ଚଳିକ ଅଫିସର ହୋଇଥିବ ।

ରଜା ଖୋଜୁଥିବା ସେ ଲୋକଗୁଡିକୁ ମୁଁ ଚାହିଁଲି । ଅଳ୍ପ ହସିଦେଇ ଜିପ୍ ଆଡକୁ ଆଗେଇ ଗଲି ।

ସେମାନେ ଭାରି କୃତାର୍ଥ ହେଲାପରି ଚାହିଁ ରହିଥିଲେ ।

– "ମୋ ନାଁ ସାର୍ ଅମିୟ । ମୁଁ ଏଠି ଆଡିସନ୍‌ନାଲ୍ ତହସିଲଦାର ହୋଇ ଚାରିମାସ ହେବ ଜଏନ୍ କରିଛି ।"

ମୋର କୌଣସି ବିଶେଷ ପ୍ରତିକ୍ରିୟା ଲକ୍ଷ୍ୟ କରି ନ ପାରି ପୁଣି କହିଲା, "ସାର୍, ମୁଁ ଆପଣଙ୍କ ଛାତ୍ର ଥିଲି ବ୍ରହ୍ମପୁରରେ । ମୋ' ନାଁ ଅମିୟ ଚାଟାର୍ଜି ସାର୍! ଫୁଟବଲ ଖେଳୁଥିଲି ସାର୍, ଦିଲ୍ଲୀପ, ମାନୁ ହେରିକା ସାଙ୍ଗରେ ।"

– "ଓ ଆଛା ଆଛା, ତମେ ରାଇଟ୍ ଓ୍ୱିଙ୍ଗର୍ ଥିଲ ।"

– "ହଁ ସାର୍!" ଭାରି ଖୁସି ହେଇଗଲା ଅମୀୟ କାରଣ ମୁଁ ତାକୁ ଚିହ୍ନିଲି ଆଉ ମନେ ପକେଇ ପାରିଲି ।

– "ଆପଣ କେବେ ଆସିଲେ ସାର୍ ?"

– "ଏଇ ଦୁଇଦିନ ହେବ ।"

– "କୋଉଠି ରହୁଚନ୍ତି ?"

– "ମତେ ଏଇ ରାଜବାଟିରେ ଗୋଟେ ବଖରା ଦେଇଛନ୍ତି ଘର ନ ପାଇବା ଯାଏଁ ।"

– "ଏଇ ରାଜବାଟିକୁ ତ କଲେଜ୍‌ଟା ଉଠିଆସିଛି ସାର୍"

– "ମୁଁ ଜାଣେ ।"

– "ଏଇ ତ ରାଜବାଟି ଆସିଗଲା । ଆପଣ କୋଉଠି ରହୁଛନ୍ତି ସାର୍ ?"

– "ଧରାଯାଉ ସମଗ୍ର ରାଜବାଟିରେ ।"

କଥା ହଉ ହଉ ଆମେ ମୁଖ୍ୟ ଅଗଣାରୁ ପ୍ରଶସ୍ତ ପାହାଚ ଦେଇ ଦୋ'ମହଲାକୁ ଉଠୁଥିଲା ।

ଅମିୟ କହିଲା, "ଇଏଟା ଦରବାର ହଲ୍ । ଏଇଟା ପ୍ୟାଣ୍ଟ୍ରି । ଯା ତଳକୁ ରାଜାଙ୍କ ସିମିଂ ପୁଲ୍ । ଆପଣ ଯାଇ ଦେଖିଲେଣି ସାର୍ ?"

– "ନା ।"

– "ଆପଣ ସେ ଶେଷ ରୁମ୍‌ଟାରେ ରହୁଛନ୍ତି ନା ? ସେଇଟା ତ ରାଜାଙ୍କ ଖାସ୍ ପହୁଡ ଘର ।"

ଆମେ ତାଲା ଖୋଲି ଭିତରେ ପଶିଲୁ । ଅମିୟ ଆବାକାବା ହେଇ ଅନଉଥାଏ । ଭିତରେ ସଞ୍ଜ ଅନ୍ଧାର ଘନୀଭୂତ ହେଉଥାଏ । ଖୁବ୍ ନିର୍ଜନ ନିସ୍ତବ୍ଧ ଲାଗୁଥାଏ । ମୁଁ ଦିଆସିଲି ମାରିଲି ଲ୍ୟାମ୍ପ ଜାଳିବା ପାଇଁ । ସେଇ ଶବ୍ଦଟା କିଛି ସମୟ ପାଇଁ ଗୁମୁରିଲା ସେଇ ନିସ୍ତବ୍ଧତା ଭିତରେ । ଲ୍ୟାମ୍ପ ଆଲୁଅରେ ମାର୍ବଲ ଚଟାଣ, କାରୁକାର୍ଯ୍ୟ ହୋଇଥିବା ଛାତ, ଆଉ କାନ୍ଥ ଦେଖାଗଲା ।

କଲେଜ ପାଇଁ ତିଆରି ହୋଇ ରହିଥିବା ଦୁଇଟି ବେଞ୍ଚ୍ ଯୋଡି ମୁଁ ମୋର ବିଛଣା ପକେଇଥାଏ । ଆଉ ଗୋଟିଏ ବେଞ୍ଚରେ ମୋର ବାକ୍ସ, ବହିପତ୍ର ଆଉ ଗୋଟିଏ ପାଣି ସୁରେଇ । ବାକି ସମଗ୍ର ବଖରା ଖାଲି ।

– "ଏଇଟା ତ ବାଥ୍‌ରୁମ୍ – ଆଉ ଏ କବାଟଟା କୁଆଡେ ଫିଟିଛି ?"

– "ଜନ୍ମା ଫିଟି ନାହିଁ । କଣ୍ଟା ମରାଯାଇଛି । ଏଠି ଜଗୁଆଳି ଗୋପାଳ କହୁଥିଲା, ଏଇଟା ଅନ୍ତଃପୁର ଆଉ ରାଣୀ ମହଲକୁ ବାଟ । ମୋର ରାଣୀ ମହଲ ସାଙ୍ଗେ କ'ଣ ସମ୍ପର୍କ । ମୁଁ ତ ରଜା ନୁହେଁ ।"

ଅମିୟ ପରିହାସ ବୁଝିଲା; କିନ୍ତୁ ଉପଭୋଗ କରିପାରିଲା ନାହିଁ । ତା'ର ବିମୂଢ ଅବସ୍ଥାରେ ପାଟି ନେସେଡି ହସିବାର ଚେଷ୍ଟା କଲାବେଳେ ଏବଂ ପରମୁହୂର୍ତ୍ତରେ ସେମିତି ଛାନିଆ ହେଲାପରି ଚାହିଁଲା ଚାରିଆଡକୁ ।

ବାଥ୍‌ରୁମ୍ ପାଖରେ ଆଉ ଗୋଟେ କବାଟକୁ ଦେଖେଇ ପଚାରିଲା, "ଏଇଟା କୁଆଡକୁ ଯାଇଛି ସାର୍ ।"

– "ମୁଁ ଜାଣିନାହିଁ । ସେଇଟା ବି କଣ୍ଟା ମରା ହେଇଛି । ଗୋପାଳ କହୁଥିଲା, ସେଇଟା ଗୋଟାଏ ଭଉଁରି ପାହାଚ ଦେଇ ତଳକୁ ଯାଇଚି ସେଇଠୁ ରାଜବାଟିରେ ପଶ୍ଚିମ ଦ୍ୱାରକୁ ବାଟ ଅଛି । ସେଇଟା ଚୋରା ଦ୍ୱାର ।"

– "ମାନେ ?" ଅମିୟ ଡବଡବ ଆଖି କରି ଚାହିଁଲା ।

– "ମାନେ ଆଉ କ'ଣ ? ସେଇବାଟେ ରାହିଁଲେ ସମସ୍ତଙ୍କ ଅଲକ୍ଷ୍ୟରେ ରାତିଅଧରେ ଛଦ୍ମବେଶରେ ରାଜା ସହର ପରିକ୍ରମାକୁ ଯାଉଥିଲେ । ମନହେଲେ ସେଇବାଟେ ଗୋପନ ପ୍ରଣୟ ପାଇଁ ଅଭିସାରିକା ଆସୁଥିଲେ ରାଜାଙ୍କ ଶୟନକକ୍ଷକୁ । ପ୍ରଥମ ଅପେକ୍ଷା ଦ୍ୱିତୀୟ କର୍ମ ପାଇଁ ଏଇ ଦ୍ୱାରଟି ବେଶି ବ୍ୟବହାର ହେଉଥିଲା ।"

ଅମିୟ ତଥାପି ଆମୋଦିତ ବୋଧକଲା ନାହିଁ ।

ମୁଁ ବିଛଣାରେ ବସି ଜୋତା ମୋଜା ଖୋଲିଲି । ମୋର ଆଉ ଯିବାର ନ ଥିଲା କୁଆଡେ । ଗୋପାଳ ରାତି ନ'ଟାବେଳେ ହୋଟେଲରୁ ଖାଇବା ନେଇ ଆସିବ । କିଛି ସମୟ ଗପିଲା ପରେ ଚାଲିଯିବ ସିଂହଦ୍ୱାର ବାହାରକୁ, ସନ୍ତ୍ରୀ ଘରକୁ ।

ଅମିୟକୁ ହାତଠାରି ପାଖରେ ବସିବାକୁ କହିଲି । ସେ ଟିକିଏ ଇତସ୍ତତଃ କରି ବସିଲା । ମୋ' ଆଡକୁ ଏକାଲୟରେ ଚାହିଁ କହିଲା, "ସାର୍, ଆପଣ ଏତେବଡ ରାଜା ମହଲରେ ଏକୁଟିଆ ରାତିରେ ରହୁଛନ୍ତି । ଆପଣଙ୍କୁ ଡର ମାଡୁ ନାହିଁ ?"

– "କାହିଁ, ନାଇଁ ତ ! ମୁଁ କ'ଣ ପିଲା ହେଇଚି ନା' କ'ଣ ? ତମେ ମୋଠୁ ଏଇ ଦୁଇ-ତିନିବର୍ଷ ସାନ ହେବ ବୟସରେ । ତମକୁ କ'ଣ ଡର ମାଡିବ ଏଠି ରହିବାକୁ ?"

"ନା' ନା' ନା' ସାର୍, ମତେ ହଜାରେ ଟଙ୍କା ଦେଲେ ସୁଦ୍ଧା ମୁଁ ଏ ଘରେ ଏକୁଟିଆ ରାତିରେ କଦାପି ରହିବି ନାହିଁ । ମୋ' ବାବା, ଏଠି ରାତିରେ ରହିଲେ କଲିଜା ପାଣି ହେଇଯିବ ।"

ମୋତେ ତା'ର ଆତଙ୍କିତ ମୁହଁ ଦେଖି ଭାରି ହସ ମାଡିଲା – "ହେ, ଅମିୟ କ'ଣ ହେଇଚି ତମର ? ଏମିତି ଡରକୁଳା ହେଇ କେମିତି ଅଫିସର୍ କାମ ଚଳଉଚ ?"

ମୁଁ ତା' ପିଠିରେ ପ୍ରୟୋଜନରୁ ଅଧିକ ଜୋର୍‌ରେ ଥାପୁଡି ମାରିବାରୁ ତାକୁ ବୋଧେ

କାଟିଲା । କହିଲା, "ଆଃ!" କିନ୍ତୁ ସେଇ ଭୟମିଶା ଚାହାଣି ଆଉ ସରରେ ।

– "ଆପଣ ଦିନ ରାତି ଏଠି ଶୋଇଲେଣି ସାର୍? ଆପଣଙ୍କୁ କିଛି ସେମିତି ଅନୁଭବ ହେଉନାଇଁ! ମାନେ..."

– "ମୁଁ ବୁଝିଲି – ଭୂତପ୍ରେତ କଥା କହୁଚ ତ? – ଚାହିଁଲେ ଦେଖିଥା'ନ୍ତି, ନ ଚାହିଁଲେ ନାହିଁ । ସେଗୁଡା ସବୁ ଦୁର୍ବଳ ମନର କିମିଆଁ ।" ଅମିୟ ଶଙ୍କିଯାଇଥିଲା ।

ମୋର ଭାରି ଇଚ୍ଛା ହେଲା ତା' ସହିତ ପରିହାସ କରିବାକୁ, କିଛି ମିଛ କହି ତାକୁ ଡରେଇବାକୁ ।

– "ମୁଁ କିଛି ଏ ଯାଏଁ ଦେଖିନାହିଁ ଯେ... ହେଲେ..."

ମୁଁ ଗମ୍ଭୀର ହୋଇଗଲି ।

ଅମିୟର କଲିଜା ପଞ୍ଜରାରେ ବାଡେଇ ହେଉଥିବା ମୁଁ ଶୁଣିପାରୁଥିଲି ।

"ହେଲେ କ'ଣ ସାର୍?"

– "ହେଲେ, କାଲି ରାତି ପ୍ରାୟ ଦଶଟାବେଳେ ମୁଁ ଲ୍ୟାମ୍ପ୍ ଜାଳି ପଢୁଥାଏ । ମତେ ଲାଗିଲା..."

ଅମିୟ ମୋ' ଆଡକୁ ଟିକେ ଚାହିଁ ଘୁଞ୍ଚିଆସିଲା । ତାକୁ ଛପ୍‌କିନା ଧରିଦେଇଥିଲେ ସେ ମୂର୍ଚ୍ଛା ହୋଇଯାଇଥାନ୍ତା – ଏଭଳି ଟଳମଳ ଅବସ୍ଥା ।

– "ମତେ ଲାଗିଲା, ଏ ଘର ସାରା ଗମ୍ ଗମ୍ ବାସିଲା – ଖୁବ୍ ଦାମି ଅତର । ଏଠିକାର ନୁହେଁ, ବିଦେଶୀ ଫରଫ୍ୟୁମ୍..."

– "ସତେ ସାର୍ । ସେଇଠୁ, ଆପଣ କ'ଣ କଲେ ?"

– "କିଛି ନାଇଁ, ବାସୁଚି ତ ବାସୁଥାଉ – ମୋର କ'ଣ ଥାଏ । ମୁଁ ମୋର ପଢିଚାଲିଥାଏ ।"

– "ଧନ୍ୟ ଆପଣ; ଆଉ କିଏ ତ ଅତର୍କରେ ଧାଇଁ ପଳାଇଥାନ୍ତା ।"

– "ମୁଁ କିନ୍ତୁ ଗଲି ନାହିଁ । ବରଂ ଲ୍ୟାମ୍ପ୍‌ଟାକୁ ଦବେଇ ଦେଇ ଆଖି ବନ୍ଦ କରି ଶୋଇଗଲି । ଅପେକ୍ଷା କଲି..."

– "ସାର୍, ଆପଣ କେମିତି ସାହସ କଲେ ? ମାନେ – ମୁଁ ବିଶ୍ୱାସ କରି ପାରୁନାହିଁ ।"

– "କିନ୍ତୁ ଅମିୟ, ତା'ପରେ ଆଉ କିଛି ଘଟିଲା ନାହିଁ ।" ଏଭଳି କଥାଟାକୁ ଛିଣ୍ଡାଇଦେବାରେ ମୁଁ ତାକୁ କିଛି ପରିମାଣରେ ନିରାଶ କଲି । କିନ୍ତୁ ନିଜକୁ ସେ ଜାଲରୁ ମୁକୁଳେଇନେଲି । ନଚେତ୍ ଅନେକ ମନଗଢା କଥା କହିପକେଇଥା'ନ୍ତି । ସେ କିଛି ଆଶ୍ୱସ୍ତ ହେଲା ଏବଂ ବିଦାୟ ନେବାକୁ ଠିଆହେଲା । ମୁଁ ତାକୁ ବଳେଇଦେବାକୁ ଚପଲ ପିନ୍ଧି ବାହାରିଲି ।

"ଆପଣ ଥାଆନ୍ତୁ ସାର୍!" ସେ କହିଲା ସିନା, କିନ୍ତୁ ମୁଁ ଜାଣିପାରୁଥିଲି, ସେ ଚାହୁଁଥିଲା ମୁଁ ତାକୁ ଅଗଣାଯାଏ ଛାଡିଦେଇ ଆସେ ।

ମୁଁ ତା' ପିଠିରେ ହାତ ରଖି ଟର୍ଚ୍ଚ ମାରି ବାଟ ଦେଖାଇନେଲି । ସାମାନ୍ୟ ଶବ୍ଦରେ ସେ

ଚମକି ପଡୁଥିଲା । ତା' କଲିଜା ବାଡେଇହଉଥିଲା ମୋ' ପାପୁଲିରେ । ସେ ତା'ର ଜିପ୍ ନେଇ ଚାଲିଗଲା । ମୁଁ ମୋର ଧୀରେ ସୁସ୍ଥେ ପାହାଚ ଉଠିଆସି ମୋ' ବଖରାରେ ପହଞ୍ଚିଲି । ପଶିବା ମାତ୍ରେ ମୋ' ଦେହସାରା ରୋମ ଟାଙ୍କୁରିଗଲା । ଘର ସାରା ମହମହ ବାସୁଥିଲା ।

ମୁଁ ତାକୁ ହସି ଉଡାଇଦେବାକୁ ଚେଷ୍ଟା କଲି । ଟର୍ଚ୍ଚ ମାରିଲି ଚାରିଆଡକୁ ।

"ଧେତ୍‌ତେରି ।" ନିଜ ଉପରେ ଖୁବ୍ ଚିଡିଯାଇ ଜୋର୍‌ରେ ପାଦ ବାଡେଇଲି ଚଟାଣରେ । ବିଛଣା ଉପରେ ଚକା ପକେଇ ବସିଲି ଧ୍ୟାନ କରିବା ଭଙ୍ଗୀରେ । ହାତ ପାଦ ଦେହ ଟାଣି ରଖିଥାଏ । ଦାନ୍ତକୁ ଦାନ୍ତ ଜାକି ରଖିଥାଏ – 'କିଏ ଆସିବ ଆସୁ, ତା'ର ଦିନେକୁ ମୋର ଦିନେ ।' ମୋତେ ବହୁଦୂରରୁ କିଏ କାହାକୁ ଡାକିବାର ଶୁଣାଗଲା । ପାଖ ବସ୍ତିରୁ ଶବ୍ଦ ଆସିଥିବ । ପାଖେଇଆସୁଥିବା ପାଦଶବ୍ଦ ଶୁଣାଗଲା । ପୁଣି ମୋ' ଅଣାୟତରରେ ଦେହ ରୁମ ଟାଙ୍କୁରିଗଲା । ମୁଁ ମୁକାବିଲା କରିବାକୁ ଠିଆ ହୋଇପଡିଲି ।

ଦୁଆରମୁହଁରେ ଗୋପାଳ ଛିଡା ହୋଇଗଲା । ମୋର ସବୁ ରକ୍ତ ଫେରିଲା ହୃତ୍‌ପିଣ୍ଡକୁ । ହାତପାଦ ହଠାତ୍ ଢିଲା ହେଇଗଲା । ମୁଁ ବିଛଣା ଉପରେ କୁଢେଇ ହେଲାପରି ବସିଗଲି । ଗୋଡ ହଲେଇଲି । ହସିବାକୁ ଚାହିଁଲି ।

କିନ୍ତୁ ହଠାତ୍ ସଳଖ ହେଇ ବସିଗଲି । ଗନ୍ଧ ବାରି କହିଲି – "ହେ ଗୋପାଳ, ତୁ ଗୋଟେ ବାସ୍ନା ବାରିପାରୁଛୁ ?"

– "ସେଇ କଥା ତ ସାର୍ ! ମୁଁ ଏ ଦୁଆରମୁହଁରୁ ଜାଣିଦେଲି । ଏଇଟା ତ ଚିହ୍ନା ବାସ୍ନା-ଟା । କେମ୍‌ତିନି ଫେର୍ ସେ ବାସ୍ନାଟା ଆସିଲା । ଆପଣ ସାର୍ ଏ ଅତରଟା ଆଣିଚନ୍ତି ନା ।"

– "ଆରେ ବେକୁବ୍, ଅତର କିଏ ମୁଁ କିଏ ? ମୁଁ ବାସ୍ନାତେଲ ବି ଲଗାଏ ନାହିଁ । ମୋ' ସାବୁନ୍‌ରୁ ଡାକ୍ତରଖାନା ଗନ୍ଧ ବାହାରେ – ଲାଇଫ୍‌ବୟ ସାବୁନ୍ ।"

– "ତେବେ ସାର୍ ଏ ବାସ୍ନାଟା ?"

ସେ ମୋତେ ଡବଡବ ଆଖିରେ ଚାହିଁଲା । ସେ ଚଟାଣ ଉପରେ ବସି ଯାଇଥିଲା, ତା' ଢଙ୍ଗରେ । ସେ ଆଣ୍ଠୁଦୁଇଟା ଉପରେ ଥୋଡି ରଖି ବସିଥିଲା । ଦୁଇ ହାତରେ ଚଟାଣକୁ ସାଉଁଳୁଥିଲା । ମାର୍ବଲ ଚଟାଣ ତାକୁ ଚିକ୍କଣ ଲାଗୁଥିଲା ହୁଏତ । ସେ ଭଲ ପାଉଥିଲା ସେଥିରେ ହାତ ମାରିବାକୁ ।

– "ଏଇନା ବାସ୍ନାଟା ବଦଳିଗଲାଣି । କିନ୍ତୁ ମୁଁ ସେ ତହସିଲଦାର ବାବୁକୁ ଛାଡି ଉପରକୁ ଆସିଲାବେଳେ ମହ ମହ ବାସିଯାଉଥିଲା ।"

ଗୋପାଳ ମୁରୁକି ମୁରୁକି ହସୁଥିଲା । ଲାଜ ଲାଜ ହେଇ କହିଲା, "ଗୁଟେ କଥା କହିବି ସାର୍ ଆପଣ ରାଗିବେନ ନାଇଁ । ପଅରଦିନ ମୁଁ ଆପଣଙ୍କୁ ଦେଖିଲାମାତ୍ରେ ଚମକିପଡିଲି । ଆପଣ ଗୁଟାପଣେ ରାଜାସାହେବ ନେଖେ ଦିଶୁଚନ୍ । ଏମ୍‌ତିନି ଚେହେରା – ନାକ, ଆଖି, ହସ । ଇ ବାସ୍ନାଟା ଏବେ ମିଶିଗଲା । ମତେ ହଜୁର ଥଟ୍ଟା କରୁଛନ୍ ନେଖେ ଲାଗୁଛି । ଇ ବାସ୍ନାଟା ତ ହଜୁରଙ୍କର ଦିହରୁ ବାହାରୁଚି ।"

– "ସ୍ଟେପ୍ । ବକ୍‌ବାଜି ବନ୍ଦ କର୍ । ମତେ କହ ଯାହା ଜାଣିଚୁ । ତୁ ଏ ବାସ୍ନାକୁ ଚିହ୍ନିଚୁ ?"

– "ହଜୁର୍, ଏଇଟା ଥରେ ନାକରେ ବାଜିଥିଲେ କି ଆଉ ଭୁଲିହବ ? ରାଜା ସାହେବ ଇ ବାସ୍ନାଟାକୁ ବଡ ପସନ୍ଦ କରୁଥିଲେ । ବାହାରୁ ମଗଉଥିଲେ । କେତେ ନାଇଁ କେତେ ପଇସା ପଡୁଥିଲା ।"

– "ଆଚ୍ଛା, ତୁ ଆଜି ଏତେ ଚଞ୍ଚଳ ରୁଟି ନେଇ ଆସିଲୁ, ଥଣ୍ଡା ହେଇଯିବ ଯେ ! ମୁଁ ତ ଏଇନା ଖାଇବି ନାଇଁ ।"

– "ନାଇଁ ସାର୍, ଇଗ୍‌ ଖାଲି ଡବାଟା । ମୁଁ ଯିବି ଆଣିତେ । ଗୁଟେ ପଠାଣ ବବର୍ଚି ଅଛି ସାର୍ । ହୁଟଲ କରିଚି । ସେ ସମୟକାର ନୂକ । ବଢିଆ ପରଠା ମାଉଁସ ତର୍କାରି କରେ । ଆପଣ ହୁକୁମ କଲେ ଆଣିଦେବି । ମାଂସରେ କେଶର ପେସ୍ତାବାଦାମ ପକାଏ । ରଜାଘରେ କାମ କରୁଥିଲା ।"

କ'ଣ ମନେ ହେଲା, ମୁଁ ହଁ କରିଦେଲି । ସାର୍ଟ ପକେଟରୁ ପଇସା କାଢିବାରୁ ଗୋପାଳ ମନା କଲା, "ମୁଁ ଆଣେ ସାର୍ – ଆପଣ ଖାଉନ୍ ଆଗ । ପଇସା ଦବା ପରେ ।"

ସେ ପୁଣି ଥରେ ଚଟାଣଟାକୁ ଅଣ୍ଡାଳି ଦେଇ ଉଠିଲା, ହାତରେ ଷ୍ଟିଲ୍ ଟିଫିନ୍ କେରିଅର୍ ।

ଗୋପାଳ ଚାଲିଗଲା ପରେ ମୁଁ ଖୁବ୍ ସ୍ଥିର ଏବଂ ସୁସ୍ଥ ବୋଧକଲି । ବାଥ୍‌ରୁମ୍‌ରେ ହାତ ଗୋଡ ଧୋଇ ଆସିଲି । କୌତୂହଳରେ ନିଜ ଡେଣାକୁ ନାକ ଲଗେଇ ଶୁଙ୍ଘିଲି । ହସିଲି ମନକୁମନ – 'ରଜା ନା ଫଜା ।'

ବିଛଣା ଉପରେ ଲ୍ୟାମ୍ପ ରଖି ଲାଇବନିଜ୍ ପଢିବା ଆରମ୍ଭ କଲି, ତା' ଆରଦିନ ପାଇଁ ପ୍ରସ୍ତୁତ ହେବା ସକାଶେ । କଲେଜ ଦିଶିଲା । ପିଲାମାନେ ଦିଶିଲେ । ସେ ଭିତରୁ ଗୋଟାଏ ଟୋଲାକ ମୁହଁ ଉଜଳ ଆଖି ଝଲସି ଉଠିଲା । ବାଃ, ସେଇ ଗୋଟାଏ ଟୋକା ପାଇଁ ସବୁ ପରିଶ୍ରମ ସାର୍ଥକ ମନେହେଲା ।

ପାଠପଢାରୁ ହଠାତ୍ ଧ୍ୟାନଭଙ୍ଗ ହେଲା । ପୁଣି ସେ ପାଖେଇ ଆସୁଥିବା ପାଦଶବ୍ଦ । ଦେହ ଶୀତେଇ ଆସୁ ଆସୁ ରହିଗଲା । ଗୋପାଳ ବୋଧେ ଆସିଗଲା ।

ସତକୁ ସତ ଗୋପାଳହିଁ ଆସିଲା । ବିଛଣା ପାଖରେ ଟେବୁଲ୍ ରଖିଲା, ପାଣି ଗ୍ଲାସ୍ ଥୋଇଲା । ପ୍ଲେଟ୍ ପୋଛି ରଖିଲା ଏବଂ ଟିଫିନ୍ କେରିଅର୍‌ର ଡବାଯାକ ଖୋଲିଲା ।

ମୁଁ ଉଠିବସିଲି ଖାନାର ଅଦ୍ଭୁତ ବାସ୍ନାରେ । "ଏ ତ ବଢିଆ ହେଇଚି ଗୋପାଳ । ଯେମିତି ବାସୁଚି ସେମିତି ସୁଆଦ ଲାଗିବ ତ ?"

ଗୋପାଳ ହାତ ମନ୍ଥି ଠିଆହେଇଥାଏ । ଏକ ଅଦ୍ଭୁତ ସନ୍ତୁଷ୍ଟ ମୁଦ୍ରାରେ ମୁଚ୍‌ମୁଚ୍ ହସୁଥାଏ । ମୁଁ ପରଠାକୁ ଶୁଙ୍ଘିଲି । ଲସ୍ ବଢିଆ ଘିଅରେ ତିଆରି । ମାଂସ ତର୍କାରି ତା'ଠୁ ବଢିଆ ବାସ୍ନା । ମୋ' ପାଟିକୁ ପାଣି ଆସିଗଲା । ମୁଁ ଖାଇବା ଆରମ୍ଭ କରିଦେଲି । ମୁହଁ ଟେକି ଚାହିଁଲାବେଳକୁ ଗୋପାଳ ନ ଥିଲା । ମୁଁ ଅବାକ୍ ହେଇ ଚାରିଆଡକୁ ଚାହିଁଲି ।

ସେ ଦୁଆର ସେପଟୁ ମୁହଁ କାଠି କହିଲା, "ମୁଁ ଅଛି ସାର୍ । ଆପଣ ସାରନ୍ତୁ ।"

ଓ... ରାଜାଡି କାଇଦା ଦେଖେଇଦେଲା । ହେଲେ ଏତେ ଚଞ୍ଚଳ କେମିତି ବାହାରକୁ ଚାଲିଗଲା ।

ହଅଅ । ଗଲା ତ ଗଲା – ଆଗ ଏ ଖାନାଟାକୁ ଖିଆଯାଉ ।

ମୁଁ କିଛି ସମୟ ଖାଇବାରେ ମଜ୍ଜିଗଲି । ଖାଇଲାବେଳେ ସତକୁ ସତ ମତେ ରଜା ରଜା ଲାଗୁଥିଲା । ରଜା ହେବାଟା ଗୋଟାଏ ମିଜାଜ୍ । ଖାନ୍‌ଦାନ୍, ଆବୁ କ୍ଷମତା ସେମିତି କିଛି ଜରୁରି ନୁହେଁ ।

ଖାଇସାରି ମୁଁ ବୋଧେ ସେଇ ଭଙ୍ଗୀରେ ଉଠିଲି । ଧୋତି ସାମାନ୍ୟ ଟେକି ହୋଇଯାଇଥିଲା । ପାହୁଣ୍ଡ ଟିକିଏ ପ୍ରୟୋଜନରୁ ଲମ୍ବା ପଡୁଥିଲା । ସେତିକିବେଳେ ପରିଚାରିକାମାନେ ସେବାରେ ଖଟିଥିଲେ ମୁଁ ଆପତ୍ତି କରି ନ ଥା'ନ୍ତି ।

ହାତ ଧୋଇ ବାଥ୍‌ରୁମ୍‌ରୁ ବାହାରିଲାବେଳକୁ ଗୋପାଳ ଟାଓ୍ୱେଲଟିକୁ ଦୁଇ ହାତରେ ପ୍ରସାଦ ଥାଳି ଟେକିଲା ପରି ଧରିଥିଲା । ମୁହଁ ତାହା ଅସ୍ୱାଭାବିକ ବୋଲି ଅନୁଭବ କରିପାରିଲି ନାହିଁ । ସେ ଟେବୁଲ୍ କାଢି ନେଇ ସାରିଥିଲା । ବିଛଣା ଉପରେ ହାତମାରି ସଜାଡି ସାରିଥିଲା ନିଃଶବ୍ଦରେ ପଲକ ପଡିଲା ଭିତରେ ।

ମୁଁ ଯାଇ ବିଛଣାରେ ସିଂହାସନରେ ବସିବା ଠାଣିରେ ବସିଗଲି । ଗୋଟାଏ ଗୋଡ ଭାଙ୍ଗି ଖଟ ଉପରେ ରଖିଥାଏ । ବାଁ ହାତରେ ଭରାଦେଇ ଆଉଜି ବସିଥାଏ । ଡାହାଣ ହାତ ନିଶ ଉପରେ ସାଉଁଳି ଆଣିଥିଲେ ଭୂମିକା ସମ୍ପୂର୍ଣ୍ଣ ହୋଇଯାଇଥାନ୍ତା ।

ମୁଁ କେବଳ ନିଜ ଜଙ୍ଘ ଉପରେ ଥାପୁଡି ମାରି କହିଲି, "ଗୋପାଳ ! କି ଖାନା ଖୁଆଇଲୁ ଆଜି ! ମିଜାଜ୍ ଖୁସ୍ ହେଇଗଲା ! ମୋ' ଉପର ପକେଟ୍‌ରେ ପର୍ସଟା ଅଛି, ଆଣ, ଯେତେ କହିବ ସେ ବବର୍ଚ୍ଚି ତାକୁ ଦେଇଦବୁ ।"

ଗୋପାଳ ବିନୟରେ ମୁଣ୍ଡ କୁଣ୍ଡେଇ ଠିଆ ରହିଲା ।

– "ହଜୁର..."

– "ଆରେ, ହଜୁର୍ ହଜୁର୍ କ'ଣ ହଉଚୁ ?"

– "ନାଇଁ ସାର୍, ତୁଣ୍ଡରୁ ବଳେ ବାହାରିଆସୁଚି । ଆପଣଙ୍କୁ ଦେଖିଲେ ହଜୁର୍ ଡାକିତେ ମନ କରୁଚି ।"

– "ହେଃ, ରଖ୍ ତୋ' ଗଡଜାତିଆ ଖୋସାମଦିଆ କଥା – କେତେ ନବ ସେ ବବର୍ଚ୍ଚି ?"

– "ସେ ମନାକରିଚି କିଛି ନେଇତେ । ସେ ହଜୁରଙ୍କୁ... ସାର୍, ଆପଣଙ୍କୁ ଦେଖି ଦେଇଚି ! ମତେ ରାସ୍ତାରୁ ଡାକିନେଇ ପଚାରିଲା – "ଆବେ ଗୁପାଲ୍ ! ରାଜାସାହେବ ଆୟେ ଗଇନ୍‌ରେ । ତୁନେ ଦେଖା ନହୀଁ କ୍ୟା ?"

– "ମୁଁ ତାକୁ ସବୁ କଥା କହିଲି । ସେ ଜମା ମାନିଲା ନାଇଁ, କହିଲା, ଆରେ ତୁ କୁଛ ନହୀ

ଜାନ୍‌ତାରେ – ତୁ ଆଜ୍ ଖାନା ଲେକର୍ ଯା । ବଡ ଶ୍ରଦ୍ଧାରେ ସେ ଖାନା ନିଜେ ବନେଇଚି । ସେ ପଇସା ନବନାଇଁ ହଜୁର... ସାର୍!"

ଖାସା ଅଡୁଆରେ ମୁଁ ପଡିଗଲି । କ'ଣ କରାଯାଏ, ଉପାୟ ନ ଥିଲା ।

– "ଆଚ୍ଛା, ତୁ ମତେ ସେ ବବର୍ଚ୍ଚି ପାଖକୁ କାଲି ନେଇଯିବୁ । ମୁଁ ସେ କଥା ବୁଝିବି – ଏବେ ତୁ ଯା, ଆଉ କିଛି କାମ ନାହିଁ ।"

ଗୋପାଳ ଠିଆ ରହିଥାଏ ।

– "କ'ଣ ହେଲା ? ଠିଆ ରହିଲୁ କାହିଁକି ? କ'ଣ କହିବାକୁ ଚାହୁଁଚୁ ?"

– "ହଜୁର... ସାର୍, ଯଦି ରାଜି ହେବେ ମୁଁ ଏଇ ଦୁଆରମୁହଁରେ ଶୋଇଯିବି । ରାତିରେ ଦରକାର ପଡିଲେ ମତେ ଡାକିଦେବେ ସାର୍ ।"

– "ଆରେ, ମୁଁ ଦୁଇରାତି ଏଠି ଶୋଇସାରିଲିଣି । ଶୋଇଗଲେ ମୁଁ ସକାଳୁ ଉଠେ । ମୋର କିଛି ଦରକାର ହେବନାହିଁ । ତୁ ଯା ।"

ସେ ହାତ ମନ୍ଥି ମତେ ଚାହିଁଲା କେବଳ । ମୋର ରାଜାଡି ମିଜାଜ୍ ହଠାତ୍ ଫେରିଆସିଲା ।

– "ଆଚ୍ଛା ଠିକ୍ ଅଛି, ଗୋପାଲ୍ ! ହଜୁର ତମକୁ ଅନୁମତି ଦଉଛନ୍ତି ଏଇଠି ଶୋଇବାକୁ... ହାଃ ହାଃ ହାଃ ।"

ଗୋପାଳର ମୁହଁ ଲ୍ୟାମ୍ପ ଆଲୁଅରେ ଉଜ୍ଜ୍ୱଳ ଦେଖାଗଲା ।

– "ଏଠି ନାଇଁ ହଜୁର, ମୁଁ ଦୁଆର ମୁହଁରେ ବାରଣ୍ଡାରେ ଶୋଇବି । ଶୋଇବି କ'ଣ ସାର୍ ପହରା ଦେବି ।"

– "ଆଚ୍ଛା ! ଆଚ୍ଛା !"

– "ସେ ପଛେଇଲା ପରି ବାହାରିଗଲା । ମୁଁ ଆମୋଦିତ ବୋଧ କରୁଥିଲି । ମୋ' ହାତରୁ ଗୁଆଘିଅ ଆଉ ମାଂସ ତର୍କାରି ବାସ୍ନା ବାହାରୁଥିଲା । ଖୁସିରେ ଖୁସିରେ ମୁଁ କିଛି ସମୟ ସେଇଠି ଟହଲିଲି । ଘଣ୍ଟା ଦେଖିଲି, ମାତ୍ର ସାଢେ ଆଠ ! ବସିଲି ପଢିବାକୁ । ମନ ହେଲାନାହିଁ । କେମିତି କେଜାଣି ଉଶ୍ୱାସ ଲାଗୁଥିଲା । ପବନରେ ପହଁରିଲା ପରି ଖୁସି ଖୁସି ଲାଗୁଥିଲା ।"

ଅଗଷ୍ଟ ମାସରେ ଅଶିଣ ଅଶିଣ ଲାଗୁଥିଲା । ମନେହେଉଥିଲା, ଛାତକୁ ଗଲେ ଜହ୍ନ ଦେହରେ ଘଷିହେଇଯିବ । ପବନ ବାସୁଥିବ ଅଜ୍ଞାତ ଅରଣ୍ୟ ପରି । କିନ୍ତୁ ଛାତ କାହିଁ ସେଠି ?

ଠିକ୍ ଅଛି । ବିଛଣାରେ ବସି ପୁଣି ଲାଇବନିଜ୍ ଖୋଲିଲି । ମନ କିନ୍ତୁ ହୁଗୁଳିଯାଉଥାଏ । ମାଡିଯାଉଥାଏ ଅବାଟରେ "ଆଚ୍ଛା, ସେ ପଠାଣ ବବର୍ଚ୍ଚି ମାଂସରେ ନିଶାଫିଶା ମିଶେଇଥିଲା କି ? କିଛି ସୁସ୍ୱାଦ ସୁବାସିତ ମଦିରା ? ମନକୁ ମନ ଅଳ୍ପ ହସିଦେଇ ବାହିକୁ ଚାହିଁଲି । ଅଣାୟର ପବନ ପରି ମନ ପହଁରିଗଲା । ଅନ୍ୟଆଡେ । ମତେ ଦିଶିଲା ଆମ ଗାଁ ବର୍ଷାଦିନର ସେ କାଦୁଆ ରାସ୍ତା । ଆମ ସାହିର ଛପରଲି ଘର ।"

ସାହି ଆଗରେ ରଜାଘର ଖେତ । ଆମ ପଡିଶା ଘର ରୁକୁଣା ଭାଉଜ । ଗୋରା ଟକ୍‌ଟକ୍

ଧାର ମୁହଁ, ନୁଆଣିଆ ଆଖି । ମୋ' ବୋଉକୁ ଖୁଡୀ ଡାକୁଥିଲା ।

– "ଖୁଡି, ତମେ ଦେଖିବ ତମର ଏ ପୁଅଟା ଦିନେ ରଜା ହବ ।"

– "ହଅଥ! ଏମିତି ତା' ଭାଗ୍ୟ ନେଇ ଦୁଃଖେ ସୁଖେ ଚଳୁ । ଠାକୁର ଖାଲି ଆୟୁଷ ଦେଇଥାନ୍ତୁ ।"

ବୋଉ କିଛି ଦେଖିଲା ନାହିଁ କି ଗୁକୁଣା ଭାଉଜ ଦେଖିଲା ନାହିଁ । ମୁଁ ବି ରଜା ହେଲି ନାହିଁ ।

ପୁଣି ସେଇ ପରଠା ମାଉଁସ ତର୍କାରି ବାସିଲା । ଗୋପାଳ ପୁଣି ଥରେ ତବା ଫିଟେଇଦେଲା ପରି ଲାଗିଲା । ମୁଁ ପୁଣି ନିସ୍ତବ୍ଧ ଗଳିପଡିଲି ପିଲାଦିନକୁ । ମୋ' ପିଉସୀ ନାନୀ ମୋ' ପିଠିରେ ହାତମାରି କହୁଚି, "ଖୁଦ ଖାଇଥା ମୋ' ଧନ, ସର ଖାଇ ଖିର ଆଞ୍ଚେଇବୁ । ମୁଣା ମୁଣା ଟଙ୍କା ଅର୍ଜିବୁ । ରଜାନଅର ଭୋଗ କରିବୁ ।" ମୁଁ ପିଢାରେ ବସି ଗୁଇଁପଖାଳ ଭାତ, କଖାରୁ ଶାଗ ଖାଉଥାଏ ତରତର । ସ୍କୁଲବେଳେ ହେଇଯାଉଥାଏ ।

ପିଉସୀ ରହିଲା ନାହିଁ ଦେଖିବାକୁ । ମୁଁ ବି ସର ଖାଇଲି ନାହିଁ କି ଖିର ଆଞ୍ଚେଇଲି ନାହିଁ । କିନ୍ତୁ ହଉ ପଛେ ଦିନକ ପାଇଁ, ମତେ ରଜା ନଅର ଭୋଗହେବାର ଥିଲା, ହେଇଗଲା !

ମତେ ହସମାଡିଲା । ମୁଁ ଉଠିଆସିଲି ଗହୀର ପାଣି ଭିତରୁ ଉପରର ଢେଉ-ଢେଉକା ଉଜ୍ଜ୍ୱଳ ବାସ୍ତବତାକୁ । ଘଣ୍ଟା ଦେଖିଲି – ସାଢେ ନ'ଟା ।

ୟା ଭିତରେ ଘଣ୍ଟାଏ ପାରି ହୋଇଯାଇଥିଲା । ମୁଁ ବହିଟାକୁ ବନ୍ଦକରି ବିଛଣାରେ ଗୁରିକାତ ମେଲି ଉପରକୁ ଗୁହିଁ ପଡିଗଲି । ଲ୍ୟାମ୍ପ୍ ଆଲୁଅରେ ଛାତର କାରୁକାର୍ଯ୍ୟ ଦିଶିଲା । କାନ୍ଥର କୁଟିକମ ଦିଶିଲା ।

ଆଖି ପଡି ପଡି ଆସୁଥିଲା । ପୁଣି ଦେଖାଗଲା ଆମ ପୁରୁଣା ଦାଣ୍ଡଘର । ରଙ୍ଗମାଟି ଲିପା ଝାଟି କାନ୍ଥ । ସେଇ କାନ୍ଥରେ ବଳିତା ଖଡିରେ ଚିତ୍ର କରିଥିଲି – ରାଜା ରାମଚନ୍ଦ୍ର – ମୁକୁଟ ପିନ୍ଧିଛନ୍ତି, ଧନୁ ଧରିଛନ୍ତି – ହରି ଭାଇନା ଦେଖି ଖୁସି ହେଉଛନ୍ତି ।

– "ଆରେ, ତାଙ୍କୁ ସିଂହାସନରେ ବସେଇଲୁ ନାଇଁ ? ତାଙ୍କ ବାଁ ପଟେ ସୀତା ବସିଥା'ନ୍ତେ, ପଛରେ ଲକ୍ଷ୍ମଣ ଠିଆହୋଇଥା'ନ୍ତେ ।"

ମୁଁ ମଝିରେ ବାଧା ଦେଇ କହିଥିଲି, "ସିଂହାସନ କ'ଣ ମୁଁ ଦେଖିଛି ?" ସେ ହେଁ ହେଁ ହସିଥିଲେ, କେଜାଣି କାହିଁକି ? ମୋ' ଆଖି ବୁଜି ହୋଇ ଯାଇଥିଲା । ମୁଁ ବୋଧହୁଏ ଶୋଇଯାଉଥିଲି । କିଛି ସମୟ ଶୋଇଗଲି ନା କ'ଣ !

ହଠାତ୍ ମଟମଟ ଗୁହିଁଦେଲି । ଜାଲୁଜାଲୁଆ ଦେଖାଗଲା । ଲ୍ୟାମ୍ପ ଆଲୁଅ ଦବିଯାଇଥିଲା । ବୋଧେ ଗୋପାଳ ଆସି ଦବାଇଦେଇଥିଲା । ମୁଁ ବାରିପାରିଲି ସେ ମହକ । ଗମ୍‌ଗମ୍ ବାସୁଥିଲା ମୋ' ଗୁରିପାଖ ।

ମୋ ଦେହସାରା ଶୀତକଣ୍ଟା ମାରିଗଲା । ନିଦର ଚଢେଇ ଉଡିଗଲେ କାହିଁ କୁଆଡେ । ମୁଁ

କିନ୍ତୁ ସେସବୁକୁ ମିଶ୍ଚେଇଲି । ଶୀତକଣ୍ଟାକୁ ଦିହରୁ ପୋଛିଦେଲି । ବାସ୍ନାକୁ ସ୍ୱାଭାବିକ ନିଶ୍ୱାସରେ ନେଲି ଓ ଛାଡ଼ିଲି ।

ସେମିତି ଚିତ୍‌ମାତ୍ ଶୋଇରହି ଆଖି ବୁଲେଇଲି ଘରିଆଡ଼େ । ଦୁଆରମୁହଁଟା ଅନ୍ଧାର ଦିଶୁଥିଲା । ସେଇଠି ଛାଇଟାଏ ସ୍ପଷ୍ଟ ଦେଖାଗଲା । ମୋ' ତଣ୍ଟି ପାଖରେ ପବନ ରହିଗଲା । ମୁଁ ଡାକିଦେଲି, "ଗୋପାଳ ।"

– "ହଁ ସାର୍," ଛାଇ ଉତ୍ତର ଦେଲା ।

ଗୋପାଳହିଁ ଠିଆହୋଇଥିଲା ଦୁଆରବନ୍ଧ ପାଖରେ । ମୁଁ ଦମ୍ଭରେ କହିଲି, "ପୁଣି ସେଇ ବାସ୍ନା ବାରିପାରୁଛୁ ?"

– "ହଁ ହଜୁର ! ସେଇଟା କିଛି ନାଇଁ, ଆପଣ ଶୁଇ ଯାଉନ୍ ।"

ମୁଁ ଗୋପାଳ କଥାରେ ଆଶ୍ୱସ୍ତ ବୋଧକଲି ।

ବାସ୍ନାକୁ ସହଜ ସ୍ୱାଭାବିକ ଢଙ୍ଗରେ ସ୍ୱୀକାର କରିନେଲି । ମହମହ ମହକୁଥିବା ଦୋଳି ଉପରେ ଆଖି ବୁଜିଦେଲି । ଆଶ୍ଚର୍ଯ୍ୟ କଥା, ନିଦ ବି ହେଇଗଲା ।

ଖୁବ୍ ଆଦରରେ ଖୁବ୍ ଆସ୍ତେ କହନ ନିଦ ଭିତରୁ କିଏ ଯେମିତି ମତେ ପୁଣି ତୋଳିଆଣିଲା । ମୁଁ ଆଖି ନ ଫିଟେଇ ଅନୁଭବ କଲି ମୋର ପରିବେଶକୁ । ଏଥର ଅତ୍ୟନ୍ତ ପାତଳା ମୁଲାୟମ ବାସ୍ନାଟିଏ ମୁଁ ବାରିପାରିଲି । ବେଶ୍ ନାରୀ ଗନ୍ଧ ।

ଭୃଙ୍ଗରାଜ ବା କାନ୍ଥାରଡିନ୍ ଭଳି ଆଦୌ ନୁହଁ । କିନ୍ତୁ ରେଶମ ପରି କୋମଳ, ମେଘ ପରି ହାଲୁକା କୌଣସି କବରୀର ଗନ୍ଧ । ନାରୀ ପ୍ରସାଧନର ଭୁରୁଭୁରୁ ଗନ୍ଧ, ନାରୀ ଦେହ ଓ ସ୍ୱେଦର ଅପୂର୍ବ ମହକ ।

ମୁଁ ଆଖିବୁଜି ପଡ଼ିଥାଏ । ପଟା କମ୍ପୁଥାଏ । ଭିତରେ ତୋଳା ବୁଲୁଥାଏ । ନିଶ୍ୱାସ ଦବିଯାଇଥାଏ, ହାତଗୋଡ଼ କେମିତି ଟାଣିଯାଉଥାଏ – କିନ୍ତୁ ମୁଁ ଆଖି ଖୋଲି ନଥାଏ ।

ମନେ ହେଲା ମୋର ଗୋଟାଏ ପାଖ ସାମାନ୍ୟ ଉଷୁମ ଲାଗୁଛି । ପୁଷ୍ପଭାର ଦେହବଲ୍ଲୀଟିଏ ଶୋଇରହିଛି କି ଖୁବ୍ ସଂଯତ, ଖୁବ୍ ସନ୍ନିକଟ ? ମୋ' ଦେହସାରା ପୁଣି ଶୀତେଇଗଲା । ଆଉ ଗୋଟିଏ କୋମଳ ହୃତ୍‌ପିଣ୍ଡ ସ୍ପନ୍ଦିତ ହେଉଥିଲା କି ମୋ' ପାଖରେ ? ମୋର ପତ୍ନୀ, ରାଜକନ୍ୟା ପରି ରୂପବତୀ, ଆଚରଣରେ ସେହିପରି ଲଜ୍ଜାଶୀଳା, ମାନନୀୟା । କିନ୍ତୁ ସେ ତ ଏ ନୁହେଁ ! ଏ ବାସ୍ନା ବି ସେ ବାସ୍ନା ନୁହେଁ ?

ମୋର କଲିଜା ଦମ୍‌ଦମ୍ ହଉଥାଏ । ମୁହଁ ତାତିଯାଉଥାଏ । ମୁଁ ହାରିବି ନାହିଁ – ଯାହା ହେଲେ ହଉ ପଛେ । ମୁଁ ଫଟ୍‌କିନା ଉଠିପଡ଼ିଲି ।

ପେଜୁଆ ପେଜୁଆ ଆଖିରେ କେତେ ଦିଶି ନ ଦିଶିଲା ପରି ମିଳେଇଗଲା ଅନ୍ଧାର ଭିତରକୁ । ତଥାପି ସେ ତରୁଣୀ ବାସ୍ନା ରହିଥାଏ ପବନରେ । ମୁଁ ମୋ' ବିଛଣାର ଖାଲିପାଖରେ ମୁହଁ ରଖିଲି । କାକର ଲାଗିଲା ପରି ମୁଲାୟମ ଲାଗିଲା – କିନ୍ତୁ ବାସ୍ନା ନ ଥିଲା ।

ଆଉ କି ନିଦ ହୁଏ ? ଘଣ୍ଟା ଦେଖିଲି, ରାତି ଅଢ଼େଇଟା । ମୋର ଇଚ୍ଛା ହେଲା ଦୁଆରମୁହଁକୁ ଯାଇ ଗୋପାଳକୁ ଦେଖିବି ସେ କେମିତି ଶୋଇଚି । କିନ୍ତୁ ଚପଲ ପିନ୍ଧି ପିନ୍ଧି ବାଥ୍‌ରୁମ୍‌କୁ ହିଁ ଗଲି । ସେଇଠି ସେଇ ବାସ୍ନା । ସେଇଠି ବି ଅନ୍ଧାର । ମୁଁ ଖୁବ୍ ଦୁର୍ବଳ ଅନୁଭବ କଲି । ପାଟି କରିଦେବାକୁ ଇଚ୍ଛା ହେଲା ।

କିନ୍ତୁ ପେନ୍ଥା ପେନ୍ଥା ଗଭାଫୁଲ, ବାସ୍ନାର ଜାତି ଜାତି ଆଲଟ ଚାମର ମତେ ବିସ୍ମ ଶୀତଳ କରିଦେଲେ । ମୋର ପାଦଠଉଁ ମୁଣ୍ଡଯାଏ ରୁମ ଟାଙ୍କୁରି ରହିଥାଏ । ଅଦୃଶ୍ୟ ମୁକ୍ତ ଚିକୁରଦାମ ମୋତେ ଛୁଇଁଯାଉଥାଏ ସତେବା ! ମୁଁ ସେଇ ବାଥ୍‌ରୁମ୍ କାନ୍ଥକୁ ଆଉଜି ଆଖି ବୁଜି ଠିଆ ରହିଲି ।

ନିଃଶ୍ୱାସର ଛନ୍ଦ ଫେରିଲା ଅନେକ ସମୟ ପରେ । ଆଉ ବାସ୍ନା ନ ଥିଲା । ରୋମାଞ୍ଚ ନ ଥିଲା । ଆବେଗ କାଟିବାକୁ ମୁହଁକୁ ପାଣି ମାରି ବେଙ୍ଗା ହେଇଗଲି । କିନ୍ତୁ ଖୁବ୍ କ୍ଳାନ୍ତ ଲାଗୁଥାଏ । ସତେବା ମୋର ରକ୍ତ ନିଗିଡିଯାଇଥାଏ ଦେହରୁ ।

ଟଳିଲା ପରି ଆସି ବିଛଣା ଉପରେ ବସିଲି । ବସି ବସି ଘୁମେଇଲି ସିନା, ଆଉ ଶୋଇଲି ନାହିଁ । କେତେବେଳକୁ ମୁଣ୍ଡ ଝାଙ୍କିଦେବାରୁ ଆଖି ଫିଟାଇ ଚାହିଁଲି । ଫର୍ଚ୍ଚା ହେଇ ଯାଇଥିଲା । ପୁରୁଣା ପରିଚିତ ପାହନ୍ତା ପବନ ପଶିଆସୁଥିଲା – ନିର୍ମଳ, ପାତଳ, ନିର୍ଗନ୍ଧ । ବାଃ-ମୋର ବୁଲିଯିବା ବେଳ । ଘଣ୍ଟାରେ ପାଞ୍ଚଟା ।

ବାଥ୍‌ରୁମ୍‌ରୁ ଆସି କେଡ୍ସ ପିନ୍ଧି ବାହାରିପଡିଲି । ପିଣ୍ଡାରେ ଗୋପାଳ ନଥିଲା । ଚାଲିଯାଇଥିଲା । କିନ୍ତୁ ନ କହି କେମିତି ଚାଲିଗଲା ?

ବେଶ୍ ଓସାରିଆ ନିର୍ଜନ ରାସ୍ତା – ତା' ପୂର୍ବଦିନ କିଛି ବାଟ ଧାଇଁଥିଲି । କିନ୍ତୁ ସେଦିନ ଅଳସ ଛାଡୁ ନ ଥାଏ ଦେହରୁ – କିନ୍ତୁ ବଢ଼ିଆ ଲାଗୁଥାଏ ।

ଫେରିଲାବେଳକୁ ଆଲୁଅ ହୋଇଯାଇଥାଏ । ରାଜବାଟି ଫାଟକ ପାଖରେ ଜଣେ ଜୁହାର ହେଲା ।

– "ତମେ କିଏ ?"

– "ମୁଁ ସାର୍ ରାଜବାଟିର ଜଗୁଆଳି ।"

ମୋ ଦେହରୁ ନିଆଁ ହୁଳାଟିଏ ଖସିଗଲା । ବାଙ୍ଗରା ଛୋଟକାଟର ମଣିଷ । ସଂପୂର୍ଣ୍ଣ ଅପରିଚିତ ।

– "ଗୋପାଳ କାହିଁ ?"

– "ଗୋପାଳ ? ଗୋପାଳ ସାର୍ କିସ ? ଏଠି ଗୋପାଳ ତ କେହି ନାହାନ୍ତି ସାର୍ ।"

– "ଅର୍ଥାତ୍..."

ମୋ ମେରୁଦଣ୍ଡ କମ୍ପିଲା ଠକ୍‌ଠକ୍ ହୋଇ । ମୁଁ ବୋଧହୁଏ ପଡିଯାଇଥା'ନ୍ତି । ସେ ଲୋକଟା ବିଡିବିଡି ହେଉଥାଏ । ଆପଣ ସାର୍ ପାହାନ୍ତାରୁ ଜୋତା ପିନ୍ଧି ବୁଲି ବାହାରିଲେ । ମତେ ନାଗିଲା ରାଜା ସାହେବ ବାହାରିଛନ୍ ।

ମୁଁ ଚିତ୍କାର କରିଥା'ନ୍ତି – "ଷ୍ଟେପ୍ ।"

ମୋ ତଣ୍ଟି ଶୁଖିଯାଇଥାଏ । ଏତିକିବେଳେ ସେ ସନ୍ଧ୍ୟାଘରୁ ଜଣେ ବାହାରି ଆସି ପୁଣି ପଶିଯାଉଥିଲା ।

ମୁଁ ଉତ୍ତେଜିତ ହେଇ ସେଇଆଡେ ହାତ ଟେକି କହିଲି, "ସେଟା କିଏ ? ଡାକ ତାକୁ !"

ସେ ଡରି ଡରି ଆସି ଠିଆହେଲା । ତାକୁ ଚିହ୍ନିବାରେ ମୋର ଆଦୌ ଭୁଲ ହେବା ସମ୍ଭାବନା ନଥିଲା ।

"ଆଚ୍ଛା ଗୋପାଲ୍ !"

ମୁଁ ବା ସେ କିଛି କହିବା ଆଗରୁ ଆଗ ଲୋକଟା ପାଟି କରି କହିଲା – "ଏଟା ଗୋପାଲ୍ ନୁହେଁ ସାର୍ ! ଏଟାର ନାମ ନକୁଳ ।"

ମୁଁ ତା' କାନ୍ଧକୁ ଜୋର୍‌ରେ ଧରି ଝାଙ୍କିଦେଲି । ଅନର୍ଗଳ କହିଚାଲିଲି, "ତୁ ଯଦି ଗୋପାଲ ନୁହେଁ, ସେ କଥା କହିଲୁ ନାଇଁ କାହିଁକି ? ତୁ କାହିଁକି ମିଛ କହିଲୁ ? ତୁ କାଲି ରାତିରେ ମୁଁ ଶୋଇବା ଘର ସାମ୍ନାରେ ଥିଲୁ ନା ନାହିଁ ? ତୁ ପଠାଣ ବବର୍ଚି ପାଖରୁ ପରଠା ମାଂସ ତର୍କାରି ଆଣିଦେଇଥିଲୁ ନା ନାହିଁ ? କାଲି ରାତିରେ ଯାହା ସବୁ ହେଲା ତୁ ଜାଣିଚୁ ନା ନାହିଁ ?"

ସେ ବାଙ୍ଗୁରା ଲୋକଟି ହସିଲା, "ତୁଚ୍ଛାଟାରେ ରାଗୁଚନ୍ ସାର୍ ! ଏଟା ନକୁଳ । ଗୋପାଳ ତ' ସାର୍ ରାଜା ସାହେବ ପାଖରେ ଥିଲା, କୋଉ କାଳୁ ମଲାଣି ସାର୍ ! ନକୁଳ କିସ କହିବ ସାର୍ !"

ମୋ ହାତ ଖସିପଡିଲା ତା' କାନ୍ଧ ଉପରୁ । ସେ ଡବଡବ ଆଖିରେ ମତେ ଚାହିଁରହିଥିଲା । ମୁଁ ପ୍ରଥମ ଥର ପାଇଁ ପରାସ୍ତ ବୋଧ କରୁଥିଲି । ବିହ୍ୱଳ ହତବାକ୍ ଠିଆହୋଇ ଚାହିଁଥିଲି ଗୋପାଳ ଓରଫ ନକୁଳକୁ । ସକାଳ ସୂର୍ଯ୍ୟାଲୋକରେ ବି ମତେ କିଛି ସ୍ୱଷ୍ଟ ଦେଖାଯାଉନଥିଲା ।



# ଛାୟା ପ୍ରବେଶ

ସୋମୁ ଓରଫ୍ ସୌମିତ୍ର ଦଣ୍ଡସେନା ହଠାତ୍ ନିଖୋଜ ହୋଇଯିବା ପରେ ନାନାପ୍ରକାର ଗୁଜବ ଶୁଣିବାକୁ ମିଳିଲା । ମୁଣଆରେ ପୂରେଇ ପେଶାଦାର ପିଲାଚୋର ତାକୁ ହରଣଚାଳ କରିନେବ, ସେ ସେମିତି ନାବାଳକ ନୁହେଁ । ସେ ପାଖ ଲଣ୍ଡା ପାହାଡ ଉପରୁ ସୂର୍ଯ୍ୟାସ୍ତ ଦେଖୁଥିଲାବେଳେ କେହି ଜଣେ ତାକୁ ଏକୁଟିଆ ପାଇ ହତ୍ୟା କରିଦେବ ଏବଂ କଥା ଲୁଚେଇବାକୁ ତା' ଅଣ୍ଟାରେ ପଥର ବାନ୍ଧି ତାକୁ ପାଣିରେ ପକାଇଦେବ ଏମିତି ବି ନୁହେଁ । ଆମେ ଜାଣିବାରେ ସୋମୁ ଭଳି ସୌମ୍ୟଦର୍ଶନ, ଭଦ୍ର, ଶାନ୍ତ ପିଲାର କେହି ଶତ୍ରୁ ହେବା ସମ୍ଭବ ନୁହେଁ । ସେ ଘରଦ୍ୱାର, ବନ୍ଧୁ ପରିବାର ଛାଡି ନିଜେ କୁଆଡେ ଏମିତି ବାହାରି ଚାଲିଯିବ ତା'ବି ନୁହେଁ । ସେ ସବୁ ଛାଡିଦେଇ ପାରେ କିନ୍ତୁ ତା'ର ଚିତ୍ରଗୁଡିକୁ ସେ ପ୍ରାଣଠୁ ବଳି ଭଲପାଏ । ତା' ତୂଳୀ, ରଙ୍ଗ, ନୂଆ ତିଆରି କାନ୍‌ଭାସ ଛାଡି ସେ ସନ୍ନ୍ୟାସ ନେଇପାରିବ ନାହିଁ ।

କିନ୍ତୁ ସୋମୁ ଯେ ମଙ୍ଗଳବାର ଦିନ ସଂଧ୍ୟାରୁ କୁଆଡେ ଉଭେଇଗଲା ଏଥିରେ କାହାରି ସନ୍ଦେହ କରିବାର କିଛି ନାହିଁ । ଘରୁ ଗଲାବେଳେ ସେ ହଳେ ଚପଲ, ତା'ର ପ୍ରିୟ ଛକି ଛକି ହାଫ୍ ସାର୍ଟ, ଆଉ ଆକାଶୀ ରଙ୍ଗର ଜିନ୍ ପିନ୍ଧିଥିଲା । ସମସ୍ତେ ଦେଖିଛନ୍ତି । ସେତେବେଳେ ସାଢେ ଚାରିଟା ସମୟ । ତା'ର ବୁଲିଯିବା ସମୟ ।

ସୋମୁର ଆମେ ଦୁଇଜଣ ଘନିଷ୍ଠ ବନ୍ଧୁ – ମୁଁ ଆଉ ଦିନୁ ପୂଜାଛୁଟିରେ ଆସିଥାଉ । ପ୍ରତିଦିନ ସକାଳେ ଉପରଓଳି ସୋମୁ ତାବାରେ ଦେଖାହୁଏ । ମଙ୍ଗଳବାର ସକାଳ ନ'ଟାବେଳେ ଆମେ ଦୁହେଁ ସୋମୁ ଘରେ ପହଞ୍ଚିଥିଲୁ । ତା' ଅଗଣା ଗଛରୁ ପିଜୁଳି ତୋଳି ଖାଇଥିଲୁ । ସୋମୁ ଗଛମୂଳେ ତା' ନୂଆ କାନ୍‌ଭାସ୍ ଉପରେ ଛବି କରୁଥିଲା । ବୋଧହୁଏ ଖୁବ୍ ସକାଳୁ ସେଥିରେ ସେ ଲାଗିଥିଲା । ତା' ଆଖି ମୁହଁ ସବୁ ସପ୍ନଜର୍ଜର ଦିଶୁଥିଲା । ଚାରି ପାଞ୍ଚଟା ତୂଳୀ ରଙ୍ଗ ଜୁବୁବୁବୁ ହୋଇ ଥୁଆହୋଇଥିଲା । ସୋମୁ ସେ ଅଢେଇ ଫୁଟରେ ସାଢେ ଚାରିଫୁଟ ଲମ୍ବାଳିଆ କାନ୍‌ଭାସ୍‌ରେ ସତେ ବା ନିମଗ୍ନ ହୋଇଯାଇଥିଲା ।

ସେ ଆମ ଆସିବା କଥା, ଗଛରୁ ପିଜୁଳି ତୋଳିବା କଥା ଆଦୌ ଜାଣିପାରିନଥିଲା । ସେ ତା'ର ଆଙ୍କୁଥିବା ଘନ ଅରଣ୍ୟ ଭିତରେ ବୋଧହୁଏ ସେଇ ଚଲା ରାସ୍ତା ବାଟେ ଦୂର ପର୍ବତ ଆଡକୁ ଏକୁଟିଆ ଚାଲିଯାଉଥିଲା । ଚଲାବାଟରେ ଲମ୍ବା ଗୋଡିଆ ଗଛଗୁଡାକୁ ଚାହିଁ ଦଉଥିଲା । ତା' ଦୃଷ୍ଟିରୁ ଝରିଯାଉଥିଲା ଗାଢ ସବୁଜ, ନୀଳ ଘନକୃଷ୍ଣ ରଙ୍ଗ । ଠେଲାପେଲା ହୋଇ ସୁଦୀର୍ଘ ବିଶାଳ ପାଇନଗଛ ସବୁ ଠିଆହୋଇଯାଉଥିଲେ ରଙ୍ଗର ଆଶୀର୍ବାଦ ପାଇଁ, ସ୍ରଷ୍ଟାର ତୂଳି ସ୍ପର୍ଶରେ ଜୀବନ୍ୟାସ ପାଇବାପାଇଁ ।

ନିର୍ଜନ ନିସ୍ତବ୍ଧ ଅରଣ୍ୟ ଗ୍ରାସିଯାଉଥିଲା ସରୁ ଚଲାରାସ୍ତାଟିକୁ । ସେ ଇଲାକାରେ କଥା କହିବାକୁ ପାଟି ଫିଟିବ ନାହିଁ । ସବା ଉପରେ ଦୂରରୁ ମୌନ ପାହାଡ । ପାହାଡ ଶୀର୍ଷରେ ଟଳମଳ ବିଶାଳ ଖଣ୍ଡଶିଳା । ଓଃ, ଖସିପଡିବ କି ଆଉ ! ଆକାଶ ବି ମେଘାଚ୍ଛନ୍ନ ।

ମୁଁ ଆଉ ଦିନ ସ୍ତବ୍ଧ ହୋଇ ରହିଗଲୁ । ଆମକୁ ଚାରିଆଡୁ ସେ ଘନକୃଷ୍ଣ ଅରଣ୍ୟ ଘେରିଗଲା । ସେ ବିଶାଳ ନୀରବତା ନଇଁଆସିଲା ଆକାଶରୁ ପାହାଡର ଶୀର୍ଷକୁ, ପାଇନ ଅରଣ୍ୟର ଶୀର୍ଷରୁ ଦୁଇଶହ ଫୁଟ ତଳେ ଥିବା ରାସ୍ତା ଉପରକୁ, ନିରନ୍ଧ୍ର ଶୀତଳ ନୀରବତା ।

ସେଇଠି ହୁଏତ ଛୋଟରୁ ଛୋଟ ହୋଇ ଜଣେ ବିଲୀନ ହୋଇଯିବ କିମ୍ବା ବିଶାଳରୁ ବିଶାଳତର ହୋଇ ପରିବ୍ୟାପ୍ତ ହୋଇଯିବ । ଘୋଟିଯିବ ଚଉଦିଗ । ମୂହ୍ୟମାନ ହୋଇଯିବ । ଆମେ ଦୁହେଁ ସୋମୁ ପଛରେ ଚୁପ୍‌ଚାପ୍ ବସିରହିଥିଲୁ । କେତେବେଳେ ସେ ନିବିଡ ଅରଣ୍ୟରେ ପାଇନ୍ ଗଛମୂଳେ ମୋ' ଆଖି ବୁଜି ହୋଇ ଯାଇଥିଲା ମୁଁ କିଛି କହିପାରିବି ନାହିଁ ।

କୌଣସି ଡାଳରେ ସରୁ ଚଞ୍ଚୁ ଖୋଲି ଚଢେଇଟି ହୁଏତ ଡାକିଦେଲା – ଚା' ଚା' ।

ମୋ' ଆଗରେ ଚା ପିଆଲା ଧରି ଠିଆହୋଇଥିଲା ରେଖା । – ସୋମୁର ସାନ-ଭଉଣୀ । ପାଇନ୍ ଅରଣ୍ୟର ବାଟବଣା ହରିଣୀ ପରି ସ୍ତବ୍ଧ ଠିଆହୋଇ ଯାଇଥିଲା । ଲମ୍ବା ଲମ୍ବା ଗୋଡହାତର ସେ ଫ୍ରକ୍‌ପିନ୍ଧା ଗୋରୀ ଝିଅଟି ସେ ଅରଣ୍ୟରେ ଅପ୍ରତିଭ ହେଲା ପରି ଉଭା ହୋଇ ହଠାତ୍ ଉଭାନ ହୋଇଗଲା ।

ତଥାପି ଅରଣ୍ୟରେ ପ୍ରତିଧ୍ୱନି ହେଉଥିଲା ପକ୍ଷୀଡାକ – ଚା' ଚା' !

ସୋମୁର ତୂଳୀ ବୋଧହୁଏ ଘୁମେଇ ପଡୁଥିଲା । ବୋଧହୁଏ ଏକାକୀ ବାଟୋଇର ଗୋଡ ଯୋଡିକ ଆଉ ଆଗେଇ ପାରୁ ନଥିଲେ । ସେ ଚଲା ରାସ୍ତାରେ ଠିଆରହି ସୁଦୀର୍ଘ ପାଇନ୍-ଗଛର ଶୀର୍ଷକୁ, ଦୂରସ୍ଥ ପାହାଡକୁ ଚାହୁଁଥିଲା ।

ସୋମୁ ତା' ରାଜ୍ୟରୁ ବାହାରିଆସି ମୁହଁ ଫେରେଇ ଆମକୁ ଚାହିଁଲା । କିଛି ସମୟ ପାଇଁ ମନେହେଲା, ସତେ ବା ସେ ପାହାଡ ଚାହିଁଛି, ସେ ଅରଣ୍ୟ ଚାହିଁଛି ଆମକୁ ।

ସୋମୁ ହସିଦେଲା । ଉଠିଆସି ଆମକୁ ନେଇଗଲା ପିଣ୍ଡା ଉପରକୁ । ଖରା ଚଢି ଆସିଥିଲା । ପ୍ରାୟ ଏଗାରଟା ହୋଇଥିବ ନା' କ'ଣ । ଆମେ ବି ଜାଣିପାରିନଥିଲୁ କେତେବେଳେ ସୂର୍ଯ୍ୟ ଏତେ ଉପରକୁ ଉଠିଆସିଥିଲା ।

ସୋମୁ ପାଖରେ ପ୍ରାୟ ଏମିତି ହୁଏ । ଆମେ ଚୁପ୍‌ଚାପ୍ ବସିଥିବା ଭିତରେ କିଛି ଗରମ ପକୁଡି ସାଙ୍ଗକୁ ପୋଦନାପତ୍ର ଚଟଣି ନେଇ ସୋମୁର ମା' ଆସି ପହଞ୍ଚିଲେ ।

ତା'ପରେ ଗପ ଜମିଗଲା । ଆମ ଭିତରେ ଦିନୁଟା ସବୁଠୁ ବେଶୀ ଗପୁଡି । ସୋମୁ କେବଳ ଶୁଣେ । ଖୁସି ହେଲେ ହସିଦିଏ । ତା' ଆଖି ଚିକ୍ ଚିକ୍ କରେ । ଦାନ୍ତ ଝଲସିଯାଏ । ମୁଁ ଆଉ ଦିନୁ କଥା କଟାକଟି ହୋଇ କୋଳାହଳ କରୁ । ସୋମୁ ଆମର ଶ୍ରୋତା । ସୋମୁ ସାକ୍ଷୀ, ସୋମୁ ବିଚାରକ ।

ସେଦିନ କିନ୍ତୁ ସୋମୁ, କ'ଣ କହିବ କହିବ ହୋଇ ଆମକୁ ଚାହିଁଲା । ଦିନୁର ସେ ଆଡକୁ ଆଦୌ ଲକ୍ଷ୍ୟ ନାହିଁ । ସେ କ'ଣଟାଏ ଗପିବାକୁ ଯାଉଥିଲା । ମୁଁ ତାକୁ ଅଟକାଇ ଦେଇ କହିଲି, "ଆବେ ଚୁପ୍ । ସୋମୁ କ'ଣ କହିବ ଶୁଣ ।"

ସୋମୁ ପ୍ରଥମେ ଥଙ୍ଗେଇଲା ପରି ହେଲା । ତଳକୁ ଚାହିଁ ଅନ୍ୟମନସ୍କ ହେଲାପରି ନିଜକୁ ନିଜେ ଶୁଣେଇଲା ପରି କହିଲା –

"ଆମେ ପାଞ୍ଚଜଣ ଜେ.ଜେ. ସ୍କୁଲରୁ ଏଥର ନୈନିତାଲ କ୍ୟାମ୍ପକୁ ଯାଇଥିଲୁ । ପୁରୁଣା ଦିଲ୍ଲୀ ଷ୍ଟେସନ୍‌ରୁ ରାନିଖେତ୍ ଏକ୍ସପ୍ରେସ୍ ଯୋଗେ ସକାଳେ ଯାଇ ପହଞ୍ଚିଲୁ କାଠଗୋଦାମ ଷ୍ଟେସନ୍‌ରେ । ତା' ଆଗକୁ ଆଉ ଟ୍ରେନ୍ ନାହିଁ । 'ରାଖେତ୍ ଏକ୍ସପ୍ରେସ୍‌ଟା ତ' ରାନିଖେତ୍ ଯାଉଥିବ ।" କହିଲା ଦିନୁ, ସୋମୁ ଟିକିଏ ଥମିଗଲା । ବୋଧହୁଏ ସେ ବୁଝିଗଲା ଯେ ତାକୁ ଆମେ ଦୁହେଁ ଶୁଣୁଛୁ ।

"ନା ! ନାଁଟା ସିନା ସେମିତି, କିନ୍ତୁ ସେ ଟ୍ରେନ୍ ରାନିଖେତ୍ ଯାଏନାହିଁ ।"... ଦିନୁକୁ ଚାହିଁ ଅଳ୍ପ ହସିଦେଲା । ପୁଣି ଆସ୍ତେ ଆଖିକୁ ତଳକୁ କରି ଆଗଭଳି କହିବା ଆରମ୍ଭ କଲା ।

ମୋର ମନେହେଉଥିଲା ଯେ ସୋମୁ ହୁଏତ କିଛି ଅସାଧାରଣ କଥା କହିବାକୁ ଯାଉଥିଲା । ଖୁବ୍ ଗଭୀର ଅନୁଭବର କଥା, ଅସ୍ୱାଭାବିକ କଥା, ନହେଲେ ତ' ସେ ପାଟି ଫିଟେଇବା ପିଲା ନୁହେଁ । ମୁଁ ଆସ୍ତେ ଦିନୁ ଜଂଘରେ ଚିପମାରି ଇସାରା କରିଦେଲି ଚୁପ୍ ରହିବାକୁ ।

ସୋମୁ ପକୁଡି ଖାଇବାକୁ ଭୁଲିଗଲା । କହିଲା, "ମୁଁ ଏବେ ବି ବିଶ୍ୱାସ କରିପାରୁ ନାହିଁ । ଭାରି ଅଜବ ଘଟନା ! ଅମରେଶ ଟଣ୍ଡନ୍ ଭାରି ବଢ଼ିଆ ପିଲା । ଘଡଓ୍ୱାଲି ପିଲା । କିନ୍ତୁ ଚିତ୍ରକଲେ ସେ ତା' ଭିତରେ 'ଜାନ୍' ଦେଇ ଦଉଥିଲା । କହୁଥିଲା ଯେ, ଚିତ୍ରଟା ଯଦି ଜିଇଁ ନଗଲା, ହଲଚଲ ନହେଲା, ତା'ହେଲେ ରଙ୍ଗ ବୋଳି ଲାଭ କ'ଣ ! ଭାରି ମେଳାପି ଜିନ୍ଦାଦିଲର ପିଲା ଅମେରଶ । ମୋତେ ସେ ଭାରି ଭଲ ପାଇଯାଇଥିଲା । କାଠଗୋଦାମରୁ ବସ୍ ଛାଡିବା ପୂର୍ବରୁ ଆମ ହାତରେ ଚାରିଘଣ୍ଟା ସମୟ ଥିଲା ।"

ଅମରେଶ ମୋ' କାନ୍ଧରେ ହାତରଖି କହିଲା, "ସୋମୁ, ଚଲ୍ ଜରା ଘୁମ୍ କର ଆ ଜାତେହେଁ ।" ଆମେ ବାହାରିବା ଦେଖି ସୁରେଶ ରସ୍ତୋଗି ପାଟିକଲା, ଦେଖୋ "ଦୋନୋ ଡ୍ରିମର୍ ସାଥ୍ ଯା ରହେହୋ । କହିଁ ଖୋ ମତ୍ ଜାନା !" ସେ ଆମକୁ ଜାଣିଥିଲା । ସେ ଆମ ଟିମ୍ ମେନେଜର ।

ଆମେ ଗହଳି କାଟି ନିରୋଳା ରାସ୍ତା ଧରିଲୁ । ବିରାଟ ବିରାଟ ଗଛ, ଦୂରରେ ପାହାଡ, ଅମରେଶ ବିଭୋର ହୋଇ ଚାରିଆଡକୁ ଚାହୁଁଥାଏ ।

ଚଢାଣି ରାସ୍ତାରେ ଆମେ କିଛି ବାଟ ଉଠିଗଲୁ । ବାଁ ପାଖେ ଗୋଟିଏ ବିରାଟ ଧଳା ଇଉକାଲିପଟାସ୍ ଗଛ ପଡିଲା । ଗଛଟା କିଛି ନହେଲେ ଦୁଇଶ' ବର୍ଷ ପୁରୁଣା ହୋଇଥିବ । ତା'ର ଶିଖ କାହିଁ କେଉଁ ଆକାଶରେ ହଜିଯାଇଥାଏ ।

ସେଇ ଗଛମୂଳେ ଘଟନାଟା ଘଟିଲା ।

ସୋମୁ ଆଖିରେ ପଲକ ନ ପକାଇ ଶୂନ୍ୟକୁ ଚାହିଁ ରହିଲା । ଆମେ ନିଃଶ୍ୱାସ ରୋଧି ଅପେକ୍ଷା କଲୁ ।

ଦଶବାରବର୍ଷର ପିଲାଟିଏ ଖଣ୍ଡିଏ ଚଦର ବିଛେଇ କିଛି ତିବ୍ବତୀୟ ଜିନିଷ ବିକ୍ରି କରୁଥିଲା । ସେଥିରେ ଅଜବ ଯନ୍ତ୍ର ସବୁ ଥିଲା । ରୁଦ୍ରାକ୍ଷମାଳୀ, ଚକ୍ରି, ଘଣ୍ଟି, ନାନା କିସମର ଜପାମାଳି ।

କିନ୍ତୁ ଗଛଗଣ୍ଡି ଉପରକୁ ଆଉଜାଇ ଦୁଇ ତିନିଟା ଚିତ୍ର ବି ଥିଲା । ଆମେ ଏମିତି କୌତୂହଳରେ ସେଇଠି ବସି ସେ ପିଲାଟା ସାଙ୍ଗରେ ଆଳାପ ଆରମ୍ଭ କରିଦେଲୁ । ତା' ସରୁ ସରୁ ଆଖି, ଗୋରା ମୁହଁ, ମୋଟା ମୋଟା ଚେହେରା, ତା'ର ପିନ୍ଧାର ଢଙ୍ଗ, କଥା କହିବା, ହସିବାର ଭଙ୍ଗୀ ଭାରି ବଢିଆ ଲାଗିଲା । ଏତିକିବେଳେ ଅମରେଶର ଆଖି ଗୋଟାଏ ଚିତ୍ର ଉପରେ ପଡିଗଲା । ସେ ହଠାତ୍ ତା' ପାଖକୁ ଯାଇ ନିଘେଇକରି ଦେଖିଲା ।

ମୁଁ ଦେଖିଲି ଯେ ସେଇଟା ସେମିତି କିଛି ଦେଖିଲାଭଳି ଚିତ୍ର ନୁହେଁ । ତା' ବାହାରେ ଅମରେଶ ପାଇଁ ତ ଆଦୌ ନୁହେଁ ।

ଚିତ୍ରଟାରେ ତିନିଭାଗରୁ ଦୁଇଭାଗ ଆକାଶ । ଆକାଶରେ ନିଘଞ୍ଚ ମେଘ । ମେଘ ତଳେ ବୁଡିରହିଥିବା ପାହାଡମାନଙ୍କର ଭିଡ । ଶୀତଦିନେ ଗୋଟାଏ କମ୍ବଳ ଘୋଡିହୋଇ ପଙ୍କକରି ଠିଆହୋଇଥିବା ଚାରି ପାଞ୍ଚଜଣଙ୍କର ଫୁଙ୍ଗୁଳା ଗୋଡଭଳି, ପାହାଡମାନଙ୍କର ଧୂଆଁଳିଆ ଧାଡି ତଳୁ ଦେଖୁଥିବା ଆଖିପାଇଁ କେମିତି ଗୋଟାଏ ଥଣ୍ଡାଳିଆ, ବିସ୍ତୀର୍ଣ୍ଣ ଢାଲୁ ପଡିଆ । ସତେବା ସେଇଟା ପଡିଆ ନୁହେଁ – ଇନ୍ଦ୍ରଜାଲ ବିଛେଇ ହୋଇ ରହିଥିବା ଆଖିବାଟେ ଆତ୍ମାକୁ ଟାଣିନେଉଥିବା, ଗୋଟାଏ ସପ୍ନର ଇଲାକା । ସତେବା ସେ ବହଳ ଗହଳ ଘାସକୁ ଛୁଇଁହେବ । ସେ ପାଣିମିଶା ପବନକୁ ନିଃଶ୍ୱାସ ମାରିଦେବ! ସେଥିପାଇଁ ହୁଏତ ଅମରେଶର ଆଖି ସେଥିରେ ଲାଖିରହିଗଲା ।

କିନ୍ତୁ ସେଥିରେ ଚିତ୍ର ବାଁପଟେ ଢାଲୁ ପଡିଆର ଉପର ମୁଣ୍ଡରେ ଗୋଟାରେ ଖଚର ଠିଆହୋଇଥିବାର ଚିତ୍ର । ତା' ପାଖରେ ତା'ର ଲଗାମ ଧରି ଠିଆହୋଇଥିବା ମଣିଷର ଚିତ୍ର । ଏତେବଡ ପୃଷ୍ଠଭୂମିରେ ଏ ମଣିଷ ଆଉ ପାହାଡି ଘୋଡା ଏତେ ଛୋଟ, ଅଥଚ ଏତେ ସ୍ୱଷ୍ଟ – କେମିତି ଅସସ୍ତିକର ମନେହେଉଥିଲା, ଯେମିତି ସେ ଦି'ଟାକୁ ସେଇଠୁ ଘଷେଇ ଦବାକୁ, କ'ଣଟାଏ ଯେମିତି ତାକୁ ସେଇଠି ବାନ୍ଧି ରଖିଥିଲା । ତାଙ୍କୁ ମୁକୁଳେଇ ଦେବାକୁ ମନରେ ଭାବି ହେଉଥିଲା ।

ଅମରେଶ କିଛି ସମୟ ନିଶ୍ଚଳ ଚାହିଁରହିଲା ସେ ଚିତ୍ରଟାକୁ । ତା'ପରେ ହଠାତ୍ କହିଲା,

"ହମ୍ ଇସେ ଖରିଦନା ଚହତେହେଁ।" ସେ ତିବ୍ବତ ଟୋକା ତା'ର ମୁଗପରି ଦାନ୍ତ ଦେଖେଇ ନିରବ ହସି, ମୁଣ୍ଡହଲେଇ କହିଲା – "ନହିଁ, ସାବ୍ ବେଚନେକୋ ତ ନହିଁ ହେ।" ଅମରେଶ ଯୋଉ ଟୋକା, ସେ ଅଡିବସିଲା ନିଶ୍ଚୟ ତାକୁ ନବ। ଚିତ୍ରଟାକୁ ଧରି ଠିଆ ହେଲା। କହିଲା – ବତାଓ କ୍ୟା ପୈସା ଲେଗା।" ସେ ପିଲା ସେମିତି ଉତ୍ତର ଦେଲା, "କହା ନ ଓ ବେଚନେକୋ ନହିଁ ହେ।"

"ତୋ ହମ୍ ଐସେ ହି ଲେ ଜାତେ ହେଁ।"

"ଲେ ଲୋ, ମଗର ସଁଭାଲ୍ କେ ରଖନା।"

ଅମରେଶ ସତକୁ ସତ ଚିତ୍ରଟାକୁ ଧରି ବାହାରକୁ ଆସିଲା। "–ଦେଖୋ ସୋମୁ ତୁମ୍‌କୋ ୟକିନ୍ ହୋ ୟା ନ ହୋ। ୟହି ହେ, ଓହ ଜିନ୍ଦା ପେଣ୍ଟିଙ୍ଗ୍ ଜୋ ହମ୍ ଜିନ୍ଦଗିଭର ଢୁଁଡ୍ ରହେଥେ।" ମୁଁ ବୁଝିପାରିଲି ନାହିଁ, କହିଲି, "ଦେଖୋ ଅମରେଶ, ଐସେ ବିନା ପୈସେ ଉଠା ଲେ ଆନା ଆଛା ନହିଁ ହୁଆ।"

ଅମରେଶ ଥମ୍‌ହେଇ ଠିଆ ହୋଇଗଲା। ଟାଉଟାଉ ଫେରିଗଲା ପଛକୁ। ମୁଁ ଚାହିଁଥାଏ। ସେ ଗଛମୂଳେ ତିବ୍ବତି ଟୋକା କୁଆଡେ ଘୁଞ୍ଚିଯାଇଥିଲା। ଅମେରେଶ ଖଣ୍ଡେ ଶହେଟଙ୍କିଆ ନୋଟ୍ ଥୋଇଦେଇ ତା' ଉପରେ ଚକ୍ରିଘଣ୍ଟିଟାଏ ମଡେଇଦେଲା।

ଆମେ ସେହିଦିନ ହିଁ ନୈନିତାଲ୍ ବାହାରିଗଲୁ। ପହଞ୍ଚିଲା ବେଳକୁ ସେଇଠି ଢେର୍ ରାତି, ଢେର୍ ଶୀତ। ଲଜ୍‌ରେ ଥଣ୍ଡା ଥଣ୍ଡା କ'ଣ ଖାଇବାକୁ ଦେଲା ମନେ ନାହିଁ। ମୋ' ସାଙ୍ଗରେ ଅମରେଶ ରହିଲା ଗୋଟାଏ ରୁମ୍‌ରେ। ମୁଁ ଖଟରେ ପଡୁ ପଡୁ କମ୍ବଳ ଘୋଡିହୋଇ ଶୋଇଗଲି।

ସକାଳୁ ଉଠି ଦେଖିଲି ଅମରେଶ ଖଟ ଉପରେ ଥୁଣ୍ଟା ପରି ବସିଛି। ତା' ଆଗରେ ସେ ଚିତ୍ରଟାକୁ ଏକା ଲୟରେ ସେ ଚାହିଁ ରହିଛି।

"ଆବେ ଅମରେଶ୍, ପାଗଲ ହୋଗୟେ କ୍ୟା ? କ୍ୟା ହେ, ଓ୍ୱହ ପେଣ୍ଟିଂ ମେ ଯୋ କଲ୍‌ସେ ତୁମ୍ ଦେଖ୍ ରହେ ହୋ।"

ଅମରେଶ ସେମିତି ଚିତ୍ରକୁ ଚାହିଁରହି ମୋତେ ଜବାବ ଦେଲା, "ୟାହାଁ ମେରେ ପାସ୍ ଆଓ, ହମ୍ ଦିଖାୟେଙ୍ଗେ, ଏକ୍ ତାଜୁବ୍ କି ବାତ୍।" ମୁଁ ବି କୌତୂହଳରେ ଉଠି ତା' ପଛରେ ଠିଆହେଲି। ତା' କାନ୍ଧ ଉପରୁ ଅନେଇଲି ସେ ଚିତ୍ରଟାକୁ।

ସତକୁ ସତ ସେ ଚିତ୍ରଟା ସାମାନ୍ୟ ଅଲଗା ଦିଶୁଥିଲା। ହୋଇପାରେ ଆଲୁଅ ଯଥେଷ୍ଟ ନଥିଲା ବୋଲି ସେମିତି ଦିଶୁଥିଲା। କିନ୍ତୁ ତା' ପୂର୍ବଦିନ ତ ଆକାଶରେ ଏମିତି ଘୁମର ପାଣି ମେଘ ନଥିଲା!

ଅମରେଶ ସେ ଘୋଡା ଆଉ ସଇସ ଆଡକୁ ଟିପ ଦେଖେଇ କହିଲା, "ଏ ଦୋନୋ ଜିନ୍ଦା ହେଁ। ୟେ ତୋ' ଚଲ୍‌ତେ ହେଁ।" ମୁଁ ଖେଁ ଖେଁ ହସିଲି। "ଦେଖୋ ଅମରେଶ୍ ପାଗଲପନ୍‌କା ଏକ ହଦ୍ ହୋତିହେ।"

ସେ କିଛି ନ କହି ଅପେକ୍ଷା କଲା । ସେମିତି ସେ ଚିତ୍ରକୁ ଚାହିଁ କହିଲା, "ଦେଖୋ ସୋମୁ, କଲ୍‌ସେ ଆଜତକ ଏ ଦୋନୋ ଏକ୍ ସେଣ୍ଟିମିଟର ଡାହିନେ କି ଔର ଚଲେ ଆୟେ ହେଁ ।"

ମୋର ବି ସେମିତି ମନେହେଲା । କିନ୍ତୁ ମୁଁ ତାକୁ ଆଦୌ ଗୁରୁତ୍ୱ ନଦେଇ କହିଲି, "ଆଚ୍ଛା ରଖ୍ ଦୋ ଅଭି । ଅଗର ଚଲତେ ହି ତୋ' ଏ ଚାର୍ ଦିନ୍‌ମେ ଦୁସ୍‌ରେ କିନାରେ ତକ୍ ତୋ' ପହୁଁଚ୍ ଯାଏଙ୍ଗେ । ଅବ୍ ଉଠୋ, ଅବ୍ ପାହାଡ କେ ଉପର ଆଉଟ୍‌ଡୋର୍ ପେଣ୍ଟିଂ କେ ଲିଏ ଜାନା ହେ । କାନ୍‌ଭାସ୍ ଓ୍ୱଗେରା ଲେକେ ଦଶ ବଜେତକ୍ ନିକଲ୍ ଜାଏଁଗେ । ସାଥ୍ ମେ ଲଞ୍ଚ୍ ପ୍ୟାକେଟ୍ । ଚଲୋ, ଉଠୋ ।"

ଅମରେଶ ମୋତେ ନେହୁରା ହେଲାପରି ଚାହିଁଲା । କହିଲା, "ଭାଇ ଦେଖୋ, ମେରି ମଦଦ୍ କରୋ । ହମ୍ ତୋ' ଅବ୍ କହି ନହିଁ ଜା' ପାଏଁଗେ । ହମେ ତୋ' ୟହ ପେଣ୍ଟିଂ ଜକଡ ଲିଆହେ । କିସିକୋ କୁଛ୍ ମତ୍ କହନା । ବୋଲଦେନା କି ମେରି ତବିୟତ୍ ଠିକ୍ ନହିଁ ହେ ।"

ସୋମୁ ଧିମେଇଗଲା । ଆମର କୌତୂହଳ ବଢିଚାଲିଥାଏ । ଦିନୁ ସଂଭାଳି ନପାରି ପଚାରିଦେଲା, "ଆଚ୍ଛା ସୋମୁ, ସେ ଚିତ୍ର କ'ଣ ସତକୁସତ ଜିଅନ୍ତା ଭଳି ଘୁଞ୍ଚୁଥିଲା ? ସେ ଘୋଡା ଆଉ ସଇସ ଚିତ୍ର ଭିତରେ ଚାଲୁଥିଲେ ?"

ସୋମୁ ଆଖିଟେକି ଚାହିଁଲା । କିଛି ନ କହି ଭାରି ଗମ୍ଭୀର ଢଙ୍ଗରେ ମୁଣ୍ଡ ଟୁଙ୍ଗାରି 'ହଁ' ବୋଲି ଜଣାଇଦେଲା ।

ଦିନୁ ଆଉ କଥା ଲମ୍ବେଇ ଥାଆନ୍ତା, ମୁଁ ତାକୁ ଇସାରା ଦେଲି ଚୁପ୍ ରହିବାକୁ ।

ସୋମୁ କିଛି ସମୟ ପରେ କହିଲା, 'ଆମେ ସେଇଠି ଚାରିଦିନ ଥିଲୁ' । ଚତୁର୍ଥ ଦିନ ସମସ୍ତେ ମୋ' ସାଙ୍ଗେ ଜିଦ୍ ଲଗେଇଲେ ସେ ଚିତ୍ର ବିଷୟରେ ଜାଣିବାକୁ । ଅମରେଶ ତିନିଦିନ ନିଶଦାଢ଼ି କାଟି ନଥିଲା । ତା' ଆଖି ଚାରିପଟେ କଳାଦାଗ ପଡିଯାଇଥିଲା । ସେ କେବଳ ସମସ୍ତଙ୍କୁ ବଲ ବଲ ଚାହୁଁଥିଲା । ଲାଗୁଥିଲା ସତେ ବା ଏତେ ଚଞ୍ଚଳିଆ, ହସଖୁସିର ପିଲାଟା ମାନ୍ଦା ପଡିଯାଇଛି । ଭୂତାବିଷ୍ଟ ହେଲା ପରି ଦିଶୁଥିଲା ।

ସମସ୍ତଙ୍କୁ ଦିଶୁଥିଲା ଚିତ୍ରଟା ଅତି ସାଧାରଣ । ମୁଁ କିନ୍ତୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥିଲି, ସେ ଘୋଡା ଆଉ ସଇସ କାନ୍‌ଭାସ୍‌ର ମଝିକୁ ସତକୁ ସତ ଘୁଞ୍ଚି ଆସିଥିଲେ । ମୁଁ ସେମାନଙ୍କୁ ସେଇଆ କହିଲି । ସେମାନେ ହୋ ହୋ ହୋଇ ହସିଦେଲେ । ଅମରେଶ କିଛି ନକହି ଚିତ୍ରକୁ ଚାହିଁ ବସିରହିଲା ।

ସୁରେଶ ରସ୍ତୋଗି, ଆମ ମେନେଜର କହିଲା, "ଆରେ ଅମରେଶ ପାଗଲ୍ ହେ । ୱୈସେ ଉସ୍‌କେ ତୋ' ବହୁତ ସାରେ ପେଣ୍ଟିଂ ହେଁ । ଉସେ କୋଇ ଫରକ ନହିଁ ପଡେଗା ଚଲୋ ଚଲ୍‌ତେହେଁ । ଓ୍ୱାହାଁ ବମ୍ବେଇ ମେ ଇସ୍‌କୋ ଇଲାଜ୍ କରୱାୟେଙ୍ଗେ ।"

ଆମେ ସମସ୍ତେ ଲଜ୍‌କୁ ଫେରୁ ଫେରୁ ସଂଜ ହୋଇଯାଇଥିଲା । ଲଜ୍‌ର ମ୍ୟାନେଜର ଆଉସବୁ କର୍ମଚାରୀ ଦୁଆର ମୁହଁରେ ଠିଆହୋଇଥିବା ଦେଖି ଅସ୍ୱାଭାବିକ ଲାଗିଲା । ସେମାନେ ପ୍ରକୃତରେ ଆମକୁହିଁ ଅପେକ୍ଷା କରି ରହିଥିଲେ ।

ସୁରେଶ ରସ୍ତୋଗି ମ୍ୟାନେଜରକୁ ପଚାରିଲା, "ବାତ୍ କ୍ୟା ହେ ?" ମ୍ୟାନେଜର ଦୋଦୋପାଞ୍ଚ ହେଲାପରି ଜଣାଗଲା । ତା'ପରେ କହିଲା – "ଆପକା ପାଞ୍ଚ ନମ୍ବର ୱାଲା ଦୁସରା ଆଦମି ଦିନ୍‌କୋ ଦୋ ବଜେ ବାହାର ଚଲାଗୟା । ଚାବି ଦେନେକେ ଟାଇମ୍ ମେ କହା, ହମ୍ ଜେରା ବାହାର ଜା' ରହେ ହେ ।"

ସମସ୍ତେ ମୋତେ ଚାହିଁଲେ । ମୁଁ ଭାବିଲି, ଅମରେଶ ତ ଏମିତି ଯିବା କଥା ନୁହେଁ । ଠିକ୍ ଅଛି – ବାହାରକୁ ଗଲା ତ ଗଲା, ହୁଏତ ଚାଲିଆସିବ । ଏଥିରେ ଏମିତି ଅସାଧାରଣ କ'ଣ ଅଛି ?

ମ୍ୟାନେଜର କହିଲା – ଅଭିଅଭି ବିଶ୍ ମିନିଟ୍ ପହିଲେ ଏକ୍ ଲାମା ଆୟା । ମୋଟା ସା ଆଦ୍‌ମି, ଲଗ୍‌ତାଥା ପୁରାନା ଜମାନେକା । ପାଞ୍ଚ ନମ୍ବର କା ଚାବି ମାଙ୍ଗା... ହମ୍‌ନେ ମାନା କରଦିଆ । ଓ ୟହାଁ ଖଡା ହୋକର ଗୁସ୍‌ସେମେ କାଁପନେ ଲଗା । ଶେର୍ ଜେସା ଗରଜନେ ଲଗା । ଲପକ୍‌କେ ଚାବି ଛିନ୍‌ଲିଆ । ପାଞ୍ଚ ନମ୍ବର କେ ଔର ଛଲାଂ ଲଗାତେ ହୁଏ ଚଲା ଗୟା । ଉସ୍‌କୋ ହମାରେ ଷ୍ଟାଫ୍ ରୋକ୍‌ନେ ହି ହିମ୍ମତ୍ ନହିଁ କି । ରୁମ୍‌ସେ ଘୁସ୍ କର ଏକ ମିନିଟ୍ ମେ ନିକଲ୍ ଆୟା । ଶାୟଦ୍ ଏକ ପେଣ୍ଟିଂ କୋ ଅପନେ ବାହୋ ମେ ଲପେଟ୍‌କର ସିଧା ଚଲାଗିଆ । ହମାରେ ଷ୍ଟାଫ୍ ରାସ୍ତେ ମେ କୁଛ୍ ଦୂରତକ ଗୟେ, ମଗର ଉସ୍‌କା କୋଇ ଟେର୍ ନହିଁ ମିଲା ।

ଆମେ ବୁଝିଗଲୁ ! ମୁଁ ବୁଝିଗଲି ଯେ ଅମରେଶର ସେଇ ପେଣ୍ଟିଂଟା ବୋଧେ ସେ ଲାମା ନେଇଗଲା । ମୋର ମନେପଡିଗଲା, ସେ ତିବ୍ବତି ଟୋକା କହିଥିଲା – ନଉଚ ସିନା ସମ୍ଭାଳି ପାରିବ ନାହିଁ ।

ରହସ୍ୟ ଭାରି ଘନୀଭୂତ ହୋଇଗଲା । ଆମେ ସେ ଲାମା ଆଉ ପେଣ୍ଟିଂ କଥା ଆଡ କରିଦେଇ ଅମରେଶ କଥାହିଁ ଚିନ୍ତା କଲୁ । ସେଇଠି ଦୁଆର ମୁହଁରେ ସମସ୍ତେ ପ୍ରାୟ ଘଣ୍ଟାଏ ଅପେକ୍ଷା କଲୁ । ସେଇଠି ଅନ୍ଧକାର ଘାଉଁ କିନା ମାଡିଆସେ । ହଠାତ୍ ରାତି ହୋଇଯାଏ ।

ଆମେ ଆସି ରସ୍ତୋଗି ରୁମ୍‌ରେ ଅପେକ୍ଷା କରି ବସିରହିଲୁ । ପାଞ୍ଚନମ୍ବର ରୁମ୍‌ରେ ଯାଇ ଦେଖିଲୁ ଯେ, ଅମରେଶର ଲୁଗାପଟା ଏଠି ସେଠି ଅଲରା ହୋଇ ପଡିଥିଲା । ତା'ର ବାକ୍ସପତ୍ର ସବୁ ଠିକ୍ ଥିଲା । ପେଣ୍ଟ୍ ଆଉ ସବୁଜ ରଙ୍ଗର ଜରକିନ୍‌ଟା ନ ଥିଲା । ସେ ସେଇଆ ପିନ୍ଧି ବାହାରକୁ ଯାଇଥିଲା ।

କଥା ପ୍ରସଙ୍ଗରେ ସେ ପେଣ୍ଟିଂ ବିଷୟ ସମସ୍ତେ ଜାଣିବାକୁ ଚାହିଁଲେ । ମୁଁ ମୂଳରୁ ସବୁ ବଖାଣିଗଲି । ରସ୍ତୋଗିର ଭୂରୁ କୁଞ୍ଚେଇଗଲା – "ୟେ ଲାମା ଲୋକ ଅଜବ୍ ହୋତେ ହେଁ । ମୁଝେ ତୋ' ଡର୍ ଲଗତା ହେ । କହିଁ ଅମରେଶ କୋ ୱହ ଲାମାନେ ପକଡ୍ ନ ଲିଆ ହୋ !"

ଆମେ ରାତିରେ ଖାଇବାକୁ ଗଲୁ । ମନ ଲାଗୁନଥାଏ । ସମସ୍ତେ ଚୁପ୍‌ଚାପ୍ ବସିଥାଉ । ଘଣ୍ଟା ଦେଖୁଥାଉ । ଦୁଆର ମୁହଁକୁ ଅନଉଥାଉ । ରାତି ଏଗାରଟା ହେଇଗଲା ।

ଆମେ ମ୍ୟାନେଜର ପାଖକୁ ଯାଇ ପରାମର୍ଶ କଲୁ । ସେ ପୁଲିସ୍ ଷ୍ଟେସନ୍‌ରେ ରିପୋର୍ଟ କରିଦେଲା ।

ଅଧଘଣ୍ଟା ଭିତରେ ପୁଲିସ୍ ଜିପ୍ ଠିଆହେଲା । ପଚରାଉଚରା ଲେଖାପଢ଼ି ପରେ ସେମାନେ ଯାଉଯାଉ ରାତି ଦୁଇଟା । ଗଲାବେଳେ ଅଫିସର୍ ଜଣକ ମୋତେ ପଚାରିଲା – ମୁଁ ସେ ଲାମାକୁ ଦେଖିଛି, କି, ମୁଁ ନାହିଁକଲି । ସେମିତି ପୁରୁଣାକାଳିଆ ଟୋପି, ଫତେଇ ଆଉ ଜୋତା ଆଜିକାଲି କେହି ବ୍ୟବହାର କରୁନାହାନ୍ତି ବୋଲି ସେ କହିଲା ।

ମ୍ୟାନେଜରକୁ ପଚାରିଲା, ଅନ୍ୟ ଷ୍ଟାଫ୍‌କୁ ପଚାରିଲା । ସେମାନେ କହିଲେ, ତାକୁ ସେମାନେ ଦେଖୁଦେଖୁ ଚିହ୍ନିଦେବେ ।

ଖୁବ୍ ଉଦ୍‌ବେଗରେ ଦୁଃସ୍ୱପ୍ନର ରାତି ପାହିଗଲା ।

ତା ଆରଦିନ ସକାଳ ବୋଝ ପରି ମଡେଇ ହୋଇ ପଡିଲା ଆମ ଉପରେ । ଆମର ଫେରିବା ଆୟୋଜନ ମଧ କରିବା କଥା । ଅମରେଶର ସଂଧାନ ନକରି କେମିତି ଫେରିବୁ ଜାଣିପାରୁନଥିଲୁ । ଲଜ୍ ଆଗରେ ପୁଲିସ୍ ଜିପ୍ ଆସି ରହିବାରୁ ଆମେ ଭାବିଲୁ ବୋଧହୁଏ ଅମରେଶ ମିଳିଗଲା ।

କିନ୍ତୁ ନା ! ପୁଲିସ ଅଫିସର କହିଲେ ଯେ, କାଠଗୋଦାମରେ ସେ ତାଙ୍କ ଲୋକ ଜଗେଇ ରଖିଛନ୍ତି – କାଳେ ସେ ଲାମା ଯଦି ଦେଖାଦିଏ ତେବେ ସେମାନେ ତାକୁ ଗିରଫ କରିବେ ।

ସେ ଚାହିଁଲେ ଯେ, ଆମ ଭିତରୁ ଦୁଇଜଣ କାଠଗୋଦାମ ପୁଲିସ ଗାଡିରେ ଯାଇ ସେ ଗଛମୂଳ ପସରା ଆଉ ସେ ବିକାଳିକୁ ଚିହ୍ନଟ କରିବୁ । ଅଗତ୍ୟା ମୋତେ ବାହାରିବାକୁ ହେଲା । ମୋ' ସାଙ୍ଗରେ ବାହାରିଲା ରସ୍ତୋଗି । ଦୁଇଘଣ୍ଟାରେ ଆମେ କାଠଗୋଦାମକୁ ଓହ୍ଲେଇଗଲୁ । ପୁଲିସବାବୁ ମଧ ଆମ ସାଙ୍ଗରେ ଥିଲେ ।

ପୁରୁଣା ଇଉକାଲିପଟ୍‌ସ ଗଛମୂଳେ ସେ ତିବ୍ବତି ଟୋକା ବସିଥିଲା । ଗାଡି ରହିବାରୁ କୌତୂହଳରେ ଚାହିଁଲା । ତା'ପରେ ମୋତେ ଓହ୍ଲେଇବାର ଦେଖି ଖୁସି ହୋଇଗଲା । ତା'ର ସେ ମୁଗ ପରି ଦାନ୍ତ ଦେଖାଇ ହସିଦେଲା ।

ପୁଲିସବାବୁ ମୋତେ ଯାହା ପଚାରିଲେ ମୁଁ ତା'ର ଜବାବ ଦେଲି । କିନ୍ତୁ ସେ ପେଣ୍ଟିଂ ସେଇଠି ନଥିଲା ।

ମୁଁ ସେ ଟୋକାକୁ ପଚାରିଲି "–ଓ୍ୱହ ପେଣ୍ଟିଂ ତୁମ୍‌କୋ ମିଲ୍‌ଗୟା ?" ସେ ଆଖି ମିଟ୍‌ମିଟ୍ କରି ଅଳ୍ପ ମୁଣ୍ଡଟୁଙ୍ଗାରି ହିଁ କଲା । ମୁଁ ଅଥୟ ହୋଇ ତାକୁ ପେଣ୍ଟିଂ ଦେଖାଇବାକୁ କହିଲି ।

ସେ ସେମିତି ହସି ହସି ବସି ରହିଲା । ମୁଁ ଚିଡିଲା ପରି କହିଲି, 'ଆରେ ଉଠୋ, ଲାକେ ସାବ୍ କୋ ଦିଖାଓ !'

ସେ ତା'ର ଛୋଟ ହାତଟି ବଢେଇ ଗଛମୂଳକୁ ଓହଟି ପଡିଲା – 'ଇଧର ତୋ' ହେ' ।

ଗୋଟିଏ ଚିତ୍ର ପଛପଟେ ଗଛଆଡକୁ ମୁହଁକରି ସେ ତାକୁ ରଖିଥିଲା । କାଢି ଆଣିଲାବେଳେ ମୋତେ ଲାଗିଲା, ସତେ ବା ପଞ୍ଜୁରି ଭିତରୁ ଜିଅନ୍ତା ପକ୍ଷୀଟାକୁ ସେ କାଢି ଆଣୁଥିଲା ।

ରସ୍ତୋଗି ଆଉ ପୁଲିସବାବୁ ତାକୁ ନେଇ ଦେଖୁଥିଲେ । ରସ୍ତୋଗିର ଭୃରୁ କୁଞ୍ଚେଇ ଗଲା ।

ତା' ମୁହଁରୁ ରକ୍ତ ନିଗିଡିଗଲା । ସେ ଆଗରୁ ସେ ପେଣ୍ଟିଂଟା ଦେଖିଥିଲା ତ !

"ମୁଁ ଓହଟିପଡି ଚିତ୍ରଟାକୁ ଅନେଇଦେବା ମାତ୍ରେ ଚମକିପଡିଲି ।" ସୋମୁ ଏଇଠି ଅଟକିଗଲା । ତା' ଆଖି ସ୍ଥିର ରହିଗଲା । ନାକପୁଡା ଫୁଲିଗଲା । ସେ ପୁଣିଥରେ ସେ ବିସ୍ମୟକୁ ଦେଖୁଥିଲା ହୁଏତ । ଏଣେ ଦିନରୁ ଅବସ୍ଥା ଅସମ୍ଭାଳ । ସେ ସୋମୁ ଟଣ୍ଡି ପାଖରୁ ଅକୁହା କଥାଯାକ ହାତ ପୂରେଇ କାଢିଆଣିବାକୁ ଖଲଖଲ ହଉଥିଲା । ମୁଁ ତାକୁ କୌଣସି ମତେ ସମ୍ଭାଳି ରଖିଲି ।

ସୋମୁର ଆଖିପତା ପଡିଲା । ନିଶ୍ୱାସ ଚଳିଲା ସ୍ୱାଭାବିକ ଭାବରେ । ସେ କହିଲା – ସେ ଚିତ୍ର ପୂରା ବଦଳିଯାଇଥିଲା । ସେ ପାହାଡି ଘୋଡା ଚିତ୍ରର ଡାହାଣ ପାଖକୁ ଘୁଞ୍ଚିଆସିଥିଲା । ଘୋଡାର ମୁହଁ ଓଲଟା ପଟକୁ ହୋଇଯାଇଥିଲା । କିନ୍ତୁ ସେ ସଇସ ନଥିଲା । ଘୋଡାପିଠିରେ ଆଉ ଜଣେ ବସିଥିଲା । ଜିନ୍ ପ୍ୟାଣ୍ଟ୍ ସବୁଜ ରଙ୍ଗର ଜର୍କିନ୍ । ତା' ମୁହଁରେ ତିନି ଚାରିଦିନର ଦାଢି । ତାକୁ ଦେଖୁ ଦେଖୁ ଚିହ୍ନିବାରେ ମୋତେ ବା ରସ୍ତୋଗିକୁ ଆଦୌ ଅସୁବିଧା ନଥିଲା । ଅମରେଶ ଟଣ୍ଡନର ଅବିକଳ ଚିତ୍ର ଆମକୁ ଚାହିଁରହିଥିଲା ।

ଆମ ଭିତରୁ କେହି ଜଣେ ଚିତ୍କାର କରିଉଠିଲା – ବୋଧହୁଏ ମୁଁ – ହୋଇପାରେ ରସ୍ତୋଗି ।

ପୁଲିସବାବୁ କାରଣ ପଚାରିବାରୁ ରସ୍ତୋଗି ଆଙ୍ଗୁଠି ଦେଖେଇ କହିଲା, "ୟହି ହମାରା ଖୋୟାହୁଆ ଦୋସ୍ତ, ଅମରେଶ ଟଣ୍ଡନ !"

"କ୍ୟା ମତଲବ୍ ! ଓ୍ୱହ କ୍ୟା ଅପନେ କୋ ୟହାଁ ପେଣ୍ଟିଂ କିୟା ହେ ?... କ୍ୟା ଓ୍ୱହ ମୋଟା ଲାମା ଉସ୍‌କା ପେଣ୍ଟିଂ କିୟା ହେ ?"

"ୟହ ପେଣ୍ଟିଂ ନହିଁ ହେ, ଅବ୍ ୟହ ଜିନ୍ଦା ହେ । ୟହ ଘୋଡା ଚଲତା ହେ । ବାଏଁ ତରଫ୍ ସେ ଇଧର ଆୟା ହେ, ଅବ ଦୁସରା ସବାରି ଲେକେ ଉଲଟା ଚଲ ରହା ହେ ।"

"କ୍ୟା ବକ୍‌ବାସ୍ କରତେ ହେ ଆପ୍ ଲୋଗ୍ ? ୟହ ତୋ' କାନ୍‌ଭାସ୍ କେ ଉପର ଏକ ପେଣ୍ଟିଂ ମାତ୍ର ହେ । ଅଗର ଏ ସବାରିକା ଚେହେରା ଆପ୍‌କେ ଦୋସ୍ତକା ଚେହେରେ ସେ ମିଲ୍‌ତା ହେ, ତୋ' ଇତ୍‌ଫାକ୍ ହେ ।"

ପୋଲିସ୍‌ବାବୁ ଅଧିକ କହିବାର ପ୍ରୟୋଜନ ନଥିଲା, କାରଣ ସେ ଆଉ ଅଧିକ କିଛି ବୁଝିବା ସମ୍ଭବ ନଥିଲା ।

ମୁଁ ସେ ଚିତ୍ରଟି ଉପରେ ହାତ ବୁଲେଇଆଣି ଘୋଡା ସବାର ଉପରେ ଆଖି ରଖି ଆଖି ବୁଜିଦେଲି । ମୋ' ଆଖିରୁ ଲୁହ ଝରିଗଲା ।

ମୋ ଭିତରୁ ମୁଁ କେବଳ ବାହୁନି ହେଉଥିଲି, 'ଅମରେଶ' 'ଅମରେଶ' । ହଠାତ୍ ମୋ' ଦେହସାରା ଶୀତକଣ୍ଟା ମାରିଗଲା । ମୁଁ ଥରିଉଠିଲି । ମୋ' ପାପୁଲି ଭିତରେ ସେ ଚିତ୍ର ଡାହାଣକୁ ବାଁକୁ ଆସ୍ତେ ଘୁଞ୍ଚିଗଲା । ଘୁଞ୍ଚିବା ମୁଁ ପରିଷ୍କାର ବାରିପାରୁଥିଲି ।

ମୋ ଦେହ ଝିମ୍ ଝିମ୍ ଲାଗିଲା । ଦିନୁ କାଠ ହେଇଯାଇଥିଲା । ଏତିକିବେଳେ ପୁଣି ସେ ଚଡେଇ ରାବିଲା, "ଚ୍ୟ' ଚ୍ୟ' ଚ୍ୟ' । ମୋତେ ସେମିତି ଶୁଭିଲା । ପ୍ରକୃତରେ ରେଖା, ସୋମୁର

ସାନଭଉଣୀ କହୁଥିଲା – ଆଉ ପକୁଡି ଆଣିବି କି ?"

ସମସ୍ତଙ୍କର ସହିତ୍ ଫେରିଆସିଲା ବାସ୍ତବତାକୁ । ସୋମୁର ଅଗଣା ଦିଶିଲା, ଦ୍ୱିପ୍ରହର ଖରା ଦିଶିଲା ।

ସୋମୁ ଆଖିପତା ମଟମଟ କରି ଆମକୁ ଅନେଇଲା । ରେଖାକୁ ଚାହିଁ ଅଳ୍ପ ହସିଲା । ଦିନୁହିଁ ପାଟି ଫିଟେଇଲା । "ନାଇଁ ଆଉ ପକୁଡି ଦରକାର ନାହିଁ । ହେଇପରା ସବୁ ଥୁଆ ହେଇଚି !"

ମୋତେ ଲାଗିଲା ସେ ଚାହୁଁଥିଲା ରେଖା ସେଇଠୁ ଘୁଞ୍ଚିଯାଉ । ସେ ସୋମୁକୁ ହଜାରେ କଥା ପଚାରିବାକୁ ଖଲଖଲ ହଉଥିଲା ।

ସେଇଆହିଁ ହେଲା । ରେଖା ପଛ କରୁ କରୁ ଦିନୁ ଘୁଞ୍ଚିଗଲା ସୋମୁ ପାଖକୁ । ତା' ଆଖିକୁ ଚାହିଁ ପଚାରିଲା ।

"ଆଚ୍ଛା ସେ ମୋଟା ଲାମା ମିଳିଲା ନା ନାହିଁ ?"

"ନା ! ସେ ଟୋକା ସବୁ ଶୁଣି କହିଲା, ସେ କୁଆଡେ ତା' ଗୋସେଇଁବାପର ଗୋସେଇଁବାପ । କୋଉକାଳୁ ସେ ମଲାଣି । ହେଲେ, ଏମିତି ସେ ଦେଖାଦେବା କଥା ସେ ଶୁଣିଛି ।... ଆଉ ସେ ଚିତ୍ର କଥା ପଚାରିବାରୁ ସେ କିଛି ଖୋଲି କହିଲା ନାହିଁ । ଗୋଳିଆମିଶା କଲା । କିଛି ସମୟ ପରେ ସୋମୁ କହିଲା – ମୁଁ ତାକୁ ଏକେଲା ଦେଖି ପଚାରିଲି – ଆଚ୍ଛା ବତାଓ ଓ୍ୱହ ପୁରାନା ସଇସ୍ କାହାଁ ଗୟା ? ନୟା କୋ ତୋ' ତୁମ୍ ଜାନ୍‌ତେ ହୋ ।"

ସେ ମୋ' ଆଖିକୁ ବିଚିତ୍ର ଢଙ୍ଗରେ ଚାହିଁଲା, ତା' ଆଖିର କଳା କଳା ତୋଳା ଲିଭିଗଲା । ତା' ମୁହଁ ଖୁବ୍ ଭାରି ଆଉ ବୟସ୍କ ଜଣାଗଲା । "ଓ୍ୱହ ଛୁଟ୍ ଗୟା, ଯଦି ଭି ଛୁଟ୍ ଯାଏଗେ ଅଗର ତିସ୍‌ରା କୋଇ ସମଝଦାର ଆଗୟା ତୋ" –

ମଙ୍ଗଳବାରଦିନ ସୋମୁକୁ ଖୋଜାପଡିଥିବାବେଳେ ରାତି ଦଶଟାରେ ଆମେ ଦୁଇବନ୍ଧୁ ନିରୋଳା ଅନ୍ଧାରରେ ଠିଆହୋଇଥିଲୁ । ଦିନୁ ହଠାତ୍ ମୋ' କାନ୍ଧରେ ହାତରଖି ଫିସ୍ ଫିସ୍ କହିଲା –

"ମାଇଁ ଗଡ୍ ! ସୋମୁ କାଠଗୋଦାମ ଚାଲିଯାଇନି ତ ? ସେ ଅମରେଶକୁ ମୁକୁଳେଇବାକୁ ନିଜେ ସେ ପଞ୍ଜୁରିରେ ପଶିଯାଇନି ତ ?"

ମୁଁ ଦିନୁ ଅଣ୍ଟାରେ ବାହୁ ବେଢେଇ କିଛି ବାଟ ଚଲେଇନେଲି । କହିଲି – ଦେଖ୍ ଦିନୁ, ମାଡ୍ରାସରୁ ଟ୍ରେନ୍‌ରେ ଫେରିବା ବାଟରେ ମୁଁ ଏ ଲାମା ଉପାଖ୍ୟାନ ଆଉଜଣକ ପାଖରୁ ଶୁଣିଥିଲି ! ମୋଟ ଉପରେ କଥାଟା ପ୍ରାୟ ଏଇଆ । କିନ୍ତୁ ସୋମୁପାଇଁ ସେଇଟା ଏପରି ବାସ୍ତବ ରୂପ ନେଇଯିବ, ମୁଁ କଦାପି ଭାବିପାରିନଥିଲି । କିନ୍ତୁ ସୋମୁ କାଠଗୋଦାମ ଯିବା କ'ଣ ଦରକାର ? ସେ ଲାମା କ'ଣ ଏଠିକି ଆସିପାରିବ ନାହିଁ ? ତା' ବାହାରେ କେବଳ ଖଣ୍ଡିଏ ଚିତ୍ରରେ କ'ଣ ଜୀବନ୍ୟାସ ହୋଇପାରିବ ଅନ୍ୟ ଚିତ୍ରରେ ନୁହେଁ ?

ଦିନୁ ଚଟ୍‌କିନି ମୋ' ବାହୁଘେରରୁ ମୁକୁଳିଆସି ମୋ' ସାମ୍ନା କଲା । କହିଲା – "ତୁ କ'ଣ

କହିବାକୁ ଚାହୁଁଛୁ ? ଏବେ ଯେଉଁ ପେଣ୍ଟିଂଟା ସୋମୁ କରିଛି, ସେଇଟା ମୋତେ ପ୍ରକୃତରେ ଜୀବନ୍ତ ଲାଗୁଛି । ସେ ଦୂର ପାହାଡ ସେ ପାଇନ୍ ଅରଣ୍ୟ, ସେ ସରୁ ଚଲା ରାସ୍ତା..."

ମୁଁ ତା'ର ଦ୍ୱିଧା ଦୂରକରିବାକୁ ଯୋଡିଦେଲି, "ଆଉ ସେ ଏକୁଟିଆ ବାଟୋଇ ! ଟିକିଏ ମନେପକା – ତା'ର ପଛପଟ ଚିହ୍ନା ଚିହ୍ନା ଲାଗୁନାହିଁ !"

"ଦିନୁ ଚମକିଲା ପରି ମୋ' ହାତଟାକୁ ଜୋର୍‌ରେ ଧରିନେଲା... ମାନେ... ତୁ... କହିବାକୁ ଚାହୁଁଛୁ..."

ମୁଁ ସେଇ ଅନ୍ଧାରରେ ନୀରବରେ ମୁଣ୍ଡ ଟୁଙ୍ଗାରିଲି, ମୋତେ ଅସ୍ୱସ୍ତ ଲାଗୁଥିଲା । ହତାଶ, ଅସହାୟ ଲାଗୁଥିଲା । ମୋ' ଭିତରେ ଅସଂଖ୍ୟ ଅସମାହିତ ପ୍ରଶ୍ନ ! ସ୍ରଷ୍ଟା ତା' ସୃଷ୍ଟିରେ ଅନୁପ୍ରବିଷ୍ଟ ହେଲେ କ'ଣ ସେଇଠୁ ବାହାରି ଆସିପାରିବ ନାହିଁ ? ସେ ଚିତ୍ରଟାରେ ପ୍ରାଣ ପ୍ରତିଷ୍ଠା କରିବାକୁ ନିଜେହିଁ ତା' ଭିତରେ ଝାସ ଦେବା କ'ଣ ଅନିବାର୍ଯ୍ୟ ?

ଦିନୁ କହୁଥିଲା, "ସେ ଚିତ୍ରର ପଥିକ ବୋଧେ ପାହାଡ ଶିଖରଯାଏ ସେମିତି ଚଢ଼ି ଚଢ଼ି ଯିବ, ହୁଏତ ସେ ଝୁଲନ୍ତ ଶିଳାଖଣ୍ଡ ଉପରେ ବସିବ, ତା'ପରେ କିନ୍ତୁ ସେ ନିଶ୍ଚୟ ଓହ୍ଲେଇ ଆସିବ ସାମ୍ନାକୁ ମୁହଁକରି ଏବଂ ଭିତରୁ ମୁକୁଳି ବାହାରି ଆସିବ ! ଆମକୁ ସେ ଚିତ୍ରଟାକୁ ଅତି ଯତ୍ନରେ ଜଗିବାକୁ ହବ । ସେଇତ ଏଇନା ଆମର ସୋମୁ !"



# ମଲାବାଘ

ଖରାବେଳେ ତା'ର ସବୁ ଗୁରୁଜନ ଭାତ ନିଦରେ ଘୁଙ୍ଘୁଡି ମାରୁଥିଲାବେଳେ ସେ ଆସ୍ତେ ଟିପେଇ ସମସ୍ତଙ୍କୁ ଡେଇଁ କବାଟ ଫିଟେଇ ଚାଲିଆସିଥିଲା । ଧରା ପଡିଲେ ସେମାନେ ମାଡିବସିଥା'ନ୍ତେ । ତା' ଆଖିରେ ହୁତାଶନ ଜଳୁଥିଲାବେଳେ ସେମାନେ ତାକୁ ଶୋଇବାକୁ ବାଧ କରିଥା'ନ୍ତେ । ସେ ଏକଡ ସେକଡ ହୋଇ ଭୂଇଁକୁ ବିଧା ମାରିଥାନ୍ତା, ଦୁମ୍‌ଦୁମ୍ ଗୋଡ ଛେଚିଥାନ୍ତା । ସେଥିରୁ ସେ ମୁକୁଳି ଆସି ଦାଣ ଗୋଟାକଯାକ ମହାବିକ୍ରମରେ ଡେଉଁଥିଲା । ସେଇଟା ତା'ର ଦିଗ୍‌ବିଜୟ ବେଳା । ସେ ଗେଣ୍ଡିପିନ୍ଧା ଲଙ୍ଗଳା ଟୋକା, ତା' ଅଣ୍ଟାରେ ଗୋଟାଏ ଗନ୍ଧୁଆ ଦଉଡି ବାନ୍ଧି ପଛଆଡକୁ ବେଶ୍ ତିନି ଚାରିହାତ ଓହଳାଇ ରଖିଥିଲା । ସେ ଦଉଡିରେ ଟିକିଏ ହାତ ମାରିଦେଇ ଡେଇଁ ପଡୁଥିଲା ଶୂନ୍ୟକୁ । ତାକୁ ଅନୁଭବ ହେଉଥିଲା ଯେ ସେ ହନୁମାନ ।

ଅତି ପ୍ରାଞ୍ଜଳ ଭାବେ ମନେ ଅଛି ଯେ ମତେ ସେତେବେଳେ ପାଞ୍ଚବର୍ଷ । ଖରାଛୁଟିରେ ଭାଇନାଙ୍କ ପାଖରେ ଆମେ ଗୋଟାଏ ମଫସଲୀ ପିଲୋସ୍ ଲାଇନ୍‌ରେ ରହୁଥାଉ । ନନା, ବୋଉ, ପିଉସୀନାନୀ ସମସ୍ତେ ଖାଇସାରି ଶୋଇଥା'ନ୍ତି । ମୁଁ କେବଳ ଅଣ୍ଟାରେ ଗନ୍ଧୁଆ ଦଉଡି ବାନ୍ଧ ଡେଉଁଥିଲି ଦାଣରେ । ମଝିରେ ମଝିର ହୁଂକାରୁଥିଲି, ଡେଣା କହଲଉଥିଲି । ଭାରୀ ଭାରୀ ପାଦ ପକଉଥିଲି ତାତିଲା ବାଲି ଉପରେ ।

ଦାଣ ସେ ପାଖେ ପାଞ୍ଚସାତଟା ଶିରୀଷ ଗଛମୂଳେ ବିସ୍ତୃତ ଛାଇ । ତା'ରି ପାଖକୁ ଲାଗି ଥାନା ଘର । ଏ ଆଡକୁ ହାଜିରା ମଣ୍ଡପ । ସେଇଟା ଗୋଟାଏ ଉଚ୍ଚ ବେଦି ପରି । ଚାରି କୁଣରେ ଚାରିଟା ଇଟା ଖୁଣ୍ଟି । ଉପରେ ଗୋଜିଆ ଛାତ । ଟାଇଲ୍ ଛପର । ସେଇଠି ପାଳି ଅନୁସାରେ ଗାଁ ଚଉକିଆମାନେ ଆସି ପହଞ୍ଚୁଥିଲେ । ତାଙ୍କର ସେଇଠି ହାଜିରା ପଡେ । ସେମାନଙ୍କ ଭିତରେ ଝାମ୍ପୁରାମୁଣ୍ଡିଆ ଭେଣ୍ଡିଆ ଟୋକାମାନେ ଆସିଥା'ନ୍ତି ବାପ ପାଇଁ ହାଜିରା ଦବାକୁ । ସେମାନଙ୍କୁ କାଠ ହାଣିବାକୁ, ଗାତ ଖୋଳିବାକୁ, ବଗିଚା କାମ କରିବାକୁ ଲଗାଯାଏ । ମୁଁ ଦୂରରୁ ସେମାନଙ୍କୁ ଦେଖେ । ସେମାନଙ୍କର ଝାଳ ସରସର ଗୁଲାଗୁଲା ଦେହ ପାଖକୁ ଯିବାକୁ ଡରମାଡେ । କେହି

କେହି ଆସି ମୋତେ ଗେଲ କରନ୍ତି; କାମୁଡନ୍ତି ନାହିଁ କି ରାମ୍ପୁଡନ୍ତି ନାହିଁ – ଅବିକଳ ମୋ' ବୋଉ ଗେଲ କଲା ପରି କରନ୍ତି । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗେ ।

ସେଦିନ ଦୁଆର ମୁହଁ ସରୁ ଦାଣ୍ଡରେ ବୁହେ ଡେଇଁଲା ପରେ ମୁଁ ଖେପାମାରି ସେ ହାଜିରା ମଣ୍ଡପ ପାଖକୁ ଚାଲିଗଲି । ସେଠି କେହି ନଥିଲେ । ଶିରୀଷ ଗଛରୁ ଝିଂକାରି ଡାକୁଥିଲା । ମୋ' କାନ ମୂଳ ଝାଇଁ ଝାଇଁ ଲାଗୁଥିଲା । ମୁଣ୍ଡ ଉପରୁ ଖରା କିଛି ଛିଡି ପଡୁଥିଲା । ମୁଁ ଛାଇରୁ ଛାଇକୁ ନିଃଶବ୍ଦ ଚାଲିଲାବେଳେ ମୋ' ଲାଙ୍ଗୁଡଟି ସତକୁ ସତ ନିର୍ଜୀବ ଦଉଡିଟିଏ ପରି ମୋ' ପଛେ ପଛେ ଘୁଷୁରୁଥିଲା । ଗୋଟାଏ ଶୁଖିଲା ପତ୍ର ଉପରେ ସର୍‌ସର୍ ଚାଲିବାରୁ ମୁଁ ଡିଆଁଟାଏ ମାରି ଘୁଞ୍ଚିଗଲି । ମୋତେ ଲାଗିଲା ଯେ ଗୋଟାଏ ସାପ ବୋଧେ ଦଂଶିବାକୁ ମୋ' ପଛରେ ଲାଗିଯାଇଛି ।

କେହି କୁଆଡେ ନଥା'ନ୍ତି । ମୁଁ ସେ ବେଦି ଉପରେ ବସି ଦୁଇ ପାପୁଲିକୁ ଘଷିଲି । ପାଦ ଛେଚିଲି ଭୂଇଁରେ । ମନକୁ ମନ ମୋ' ଭିତରୁ ଗୋଟାଏ ରଡି କୁରୁଳିଉଠିଲ । ସେଇଟା ପଶୁ, ପକ୍ଷୀ, ମଣିଷ କାହାର ବି ସର ହୋଇପାରେ । ଖୁବ୍ ଗୋଟାଏ ଦଶଦିଗକୁ ଭେଦିଗଲା ଭଳି ଶବ୍ଦ । ସେଥିରେ ଝଂକାର ଶୁଣାଗଲା ନାହିଁ । ସେଇଟା ଆସ୍ତେ ସମୁଦ୍ରଟାଏ ଭଳି ନଇଁ ଆସିଲା । ମୋତେ ଲାଗିଲା ମୋର ଶବ୍ଦ ଏ ଗାଁ ଗଣ୍ଡା, ନଦୀ ନାଳ ପାରି ହୋଇଯାଉଛି, ସରୁ ଶୁଆ ରଙ୍ଗର ପକ୍ଷୀଟିଏ ପରି ।

ମୋର ତା'ପରେ ମନେହେଲା ମୁଁ ରାଜା କାରଣ ମୁଁ ଯୁଆଡେ ଇଚ୍ଛା ସେଆଡେ ଧାଇଁ ପାରେ । ଧୂଳିରେ ଗଡିପାରେ । ଗଛରେ ଚଢିପାରେ । ପଦ୍ମପୋଖରୀରେ ମୁହଁ ଲଗେଇ ପାଣି ଶୋଷିପାରେ । ମୁଣ୍ଡ ଝାଙ୍କି, ଯେମିତି ମନ ସେମିତି ପାଟି କରିପାରେ । କେହି ମତେ ପଦେ କହିଦେବାକୁ ନାହିଁ । କେହି ବୋଇଲେ କେହି ନାଇଁ! ସେଇ ଆବେଶରେ ମୁଁ ଗୁଡାଏ ଧାଇଁଲି । ଚିଲ ଚକ୍‌କର କାଟିଲା ପରି ଡେଣା ମେଲେଇ ଧାଇଁଲି । ହାଲିଆ ହେଇ ସେଇ ବେଦୀ ଉପରେ ଚିତ୍‌ମାତ୍ ଶୋଇଗଲି । ତା' ଛାତକୁ ଚାହିଁଲି, ଅନେକ ଦିନର ଅଳନ୍ଧୁ ନୋଳ ଓହଳିଥିଲା – ଓହଳିଥାଉ । ମୁଁ ଆଖି ଫେରେଇବାକୁ ଚାହିଁଲି । ହେଇ ସେ ଶିରୀଷ ଗଛ ପଛକୁ ବାଉଁଶଟାଟି ଘେରା ବଗିଚା । ଭିତରେ କଦଳୀ ଗଛ । ସେଇ ବାଡରେ ଉହୁଙ୍କି ପଡି ଥରେ ମୁଁ ଗୋଟାଏ କଦଳୀଭଣ୍ଡାକୁ ମୂଳରୁ ଭାଙ୍ଗି ଦେଇଥିଲି । ମାଳୀ ଗୋଡେଇଥିଲା ଠେଙ୍ଗା ଧରି । ମୁଁ ବାଟରେ ଫୁଲଟାକୁ ଫିଙ୍ଗିଦେଇ ପ୍ରାଣମୂର୍ଚ୍ଛା ଧାଇଁଥିଲି । ବହୁ ସମୟ ଲୁଚି ଲୁଚି ବୁଲି ।ପରେ ମାଛିଅନ୍ଧାରକୁ ଫେରିଲି । ସେତେବେଳକୁ ସେ ବଜାତ୍ ମାଳୀ ନନାଙ୍କ ପାଖେ ଫରିଆଦ୍ ହେଇ ସାରା କଦଳୀ କାନ୍ଦିଟାର ପଇସା ଆଦାୟ କରିସାରିଥିଲା । ମୋ' ହାତକୁ ଗୁଣ୍ଡ କରି ପଲସ୍ତରା କରିଦେବାକୁ ନନା, ଭାଇନା ଜଗି ବସିଥା'ନ୍ତି । ମୁଁ ଦୈବାତ୍ ବୋଉ ଆଢୁଆଳରେ ବର୍ତ୍ତିଗଲି । ଦି'ଚାରି ପାହାର ଯାହା ଖାଇଥିଲି ସେଇତକ ସବୁଦିନ ପାଇଁ କଦଳୀଭଣ୍ଡା ଉପରୁ ମୋର ସବୁ ମୋହ ତୁଟେଇ ଦେଇଥିଲା । ଏବେ ମଧ୍ୟ ସେଇଟା ମୋତେ ଗୋଟାଏ ବୋମା ପରି ଦେଖାଯାଏ । ବାଡ ଉପରୁ ଚାରିଟା କାନ୍ଦି ଓହଳିଥିଲା । ମୁଁ ମୁହଁ ଫେରେଇ ଆଣିଲି ଆରପାଖକୁ ।

ଓଃ-ସେପାଖେ ସେଇଟା ସେ ଦୋରା ମାଷ୍ଟ୍ରର ଟୁଙ୍ଗି ନୁହେଁ କି ? ସେ ହାରାମିଖୋରକୁ ମୁଁ ଜମା ସୁଖି ପାଉ ନଥିଲି । ଅଙ୍କ ଦେଖିଲେ ଯଦି ଅଦ୍ୟାବଧି ମୁଁ ଚମକୁଥାଏ, ଏ ଆତଙ୍କ ପାଇଁ ସେଇ ମଙ୍ଗୁଳି ଦୋରା ହିଁ ଦାୟୀ । ସେ ଜମା କିଛି ଶୁଣୁନଥିଲା । ପଚାରିଦେଇ ସେ ଜାଣିଯାଉଥିଲା ଯେ ଏ ଗଧାକା ବଚ୍ଚା ଜମା କହିପାରିବ ନାହିଁ । ଏଣୁ ସେ ତା' ବେକମୁଣ୍ଡାକୁ ଖପାଙ୍ଗ୍ କିନା ଧରି ମାଡିବସୁଥିଲା । ତା'ପରେ ପିଠି ଉପରେ କମାରଶାଳ ହାତୁଡି ମାଡରେ ନିଆଁଝୁଲ ଛିଟିକିପଡୁଥିଲା । ପ୍ରକୃତରେ କିନ୍ତୁ ଦଶଟାରୁ ନଅଟା ପ୍ରଶ୍ନ ମୁଁ ଉତ୍ତର ଦେଇପାରିଥା'ନ୍ତି – ହେଲେ କହିବାକୁ ସେ ରାକ୍ଷସ ମୋତେ ତର ଦେଲେ ସିନା । ମୋ' ନାଁ ସହର ସ୍କୁଲରେ ଲେଖାସରିଥାଏ । ମୁଁ ଯାଇଥାଏ ଖାଲି ଛୁଟି କାଟିବାକୁ । ଦୋରା, ନା ଫୋରା ! ପୁତ...ପୁର୍‌ର୍‌ର୍ !... ମୁଁ ଶୋଇ ଶୋଇ ତାକୁ ସେମିତି ଖତେଇ ହେଲି । ମନକୁ ମନ ହସି ହସି ଗଡିଗଲି । ଶୀତଦିନେ ନିଆଁ ଜାଳିଦେଇ 'ଦୋରା' ମାଷ୍ଟ୍ର ଗୋଡ ଓସାରି ଠିଆ ହେଉଥିଲା । ତା' ଦେହସାରା ଲୁମ ।... ପବନ ହଠାତ୍ ପିଟିଦେଲା ସାମ୍ନାରୁ । ନିଆଁ ଚହଟିଗଲା ଦୋରା ଉପରକୁ । ଏକା ଥରକେ ତା' ଲୁମଯାକ ପୋଡିଗଲା । ଫୁର୍‌କୁଟିଆ ବାଳ ପୋଡି ଗନ୍ଧ ଛୁରିଆଡେ । ଶାଲାକୁ ଠିକ୍ ହେଇଚି ।

ମୁଁ ଚଟାପଟ୍ ଉଠିପଡିଲି । ଦୋରା ଟୁଙ୍ଗି ଆଡେ ମୁହଁ କରି ମୁତିଲି ଏବଂ ଡେଇଁ ଆସିଲି ପୁଣି ସେଇ ଗଛଛାଇକୁ । କେହି ବୋଇଲେ କେହି କୁଆଡେ ନଥିଲେ । ପୋଡି ଖରାବେଳେ । ପକ୍ଷୀଯାକ ଆଲଜିଆ ହେଇ ଆଉଜିଯାଇଥିଲେ । ଗୋବରାବଣି ବେଳେ ବେଳେ କୋଉଠି କିଚିରି ମିଚିରି କରୁଥିଲେ । ମୋତେ ଅଟର୍କା ଲାଗିଲା । ମୁଁ ଡରିଗଲି । – ଧର, ଯଦି ବୋଉର ପିତେଇ ଭାଇନା ଭୂତ ହେଇ ଆସିଯିବ ? ସେ କୁଆଡେ ସବୁ ରାତିରେ ଏଗାରଟା ପରେ ଆସି ପିଣ୍ଡାରେ କୁନ୍ଥାଏ । କବାଟ ଫିଟେଇଦେଲେ ଉଭାନ୍ ହେଇଯାଏ । କାହାଣୀ ଶୁଣି ଶୁଣି ମୋର ମନହୋଇଥିଲା ତାକୁ ଦେଖିବାକୁ । ବୋଉ କହିବାରେ ସେ ପାଞ୍ଚହାତ ମଣିଷ । ପାଚିଲା ଆମ୍ବ ପରି ଦିହର ବର୍ଣ୍ଣ । ହସିଦେଲେ ମୁକ୍ତା ପରି ଦାନ୍ତ । ମୋର ବିଶ୍ୱାସ ଥିଲା, ମୁଁ ଦେଖିଲାମାତ୍ରେ ତାକୁ ଚିହ୍ନିଦେବି । ଯଦି ଭୂଇଁରୁ ଚଖଣ୍ଡେ ଛାଡି ଥିବ ତେବେ ସେ ମଣିଷ ନୁହେଁ, ଭୂତ ।

ମୋତେ ଗୋଡ ଆଡୁ ଦୁର୍ବଳ ମାଡିଗଲା । ଏକାଥରେ ଝାଡାପରିସ୍ରା ମାଡିଲା । ଦେହ ଶୀତେଇଲା । ମୁଁ ଚାରିଆଡକୁ କନକନ ହେଇ ଅନେଇଲି । ହଳେ ପାରା ଫଡଫଡ ଉଠି ଆସି ଓରା ଉପରେ ବସିଲେ । ତାଙ୍କ ଡେଣା ପବନରେ ପୁରୁଣା ଅଳନ୍ଧୁ ଦୋଳା ସବୁ ଦୋହଲିଲା । ମୁଁ ସେ ପାରାଙ୍କ ଖେଳ ଦେଖି ଥରି ଠିଆ ହେଇଗଲି । ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । କାହିଁକି ସେଥିରୁ ଗୋଟାଏ ତୋଟି ଫୁଲେଇ ସେମିତି ଗାରୁ ଗାରୁ ଘୁମୁରୁଥିଲା ? ଆଉଟି କାହିଁକି ପେଟେଇପଡି ମିଟି ମିଟି ଅନଉଥିଲା ? ଘୁମୁରୁଥିବା ପାରାଟା ବୋଧେ ବେଶି ବଳୁଆ । ପାରାଙ୍କ ଭିତରେ ହନୁମାନ୍ । ସେଥିପାଇଁ ଦୁର୍ବଳ ପାରାଟିକୁ ସେ ବାରମ୍ବାର ମାଡିବସୁଥିଲା । କିଛି ସମୟ ପରେ ସେମାନେ ତାଙ୍କ କଳି ଭୁଲିଗଲେ । ପାଖକୁ ପାଖ ଲାଗି ବସିଲେ । ଝାଡିଝୁଡି ହେଲେ । ଥଣ୍ଟରେ ବୁକୁ କୁଣ୍ଡେଇ ହେଲେ । ଛନ୍‌ଛନ୍ ହେଇ ମତେ ଚାହିଁଲେ । ଫଡ୍ ଫଡ୍ ଉଠିଗଲେ କାହିଁ କୁଆଡେ ।

ମୁଁ ଫାଣ୍ଡି ସାମ୍ନା ଫୁଲ ବଗିଚାରେ ପଶିଲି । ଶୂନ୍‌ଶାନ୍ ପିଣ୍ଡା, ରାସ୍ତା, କୃଷ୍ଣଚୂଡ଼ା ଗଛ । ଦିପହର ଖରା ଠିଆରେ ଜଳୁଥିଲା । ଫାଣ୍ଡି ଫୁଲକୁ ଛୁଇଁବା ମନା – ଦୂରରୁ ଖାଲି ଦେଖିବା କଥା । ଆଙ୍ଗୁଠି ଟେକିଲେ ବାନ୍ଧି ନେଇଯିବେ । ମୁଁ ଗଛରୁ ଗଛକୁ ଘୁଞ୍ଚିଲି, ଫୁଲମାନଙ୍କୁ ସାଉଁଳିଲି । ସାପ ଲାଙ୍ଗୁଡ ସାଉଁଳିଲା ପରି ଲାଗିଲା । ତୋଳିଦବାକୁ ହୁବ ଅଣ୍ଟିଲା ନାହିଁ । ସେ ଧଳା ମୁରୁମ ରାସ୍ତା ଉପରେ ଦୁମ୍ ଦୁମ୍ ଘେରାଏ ଧାଇଁଗଲି । ତା'ପରେ ସାତଟାଯାକ ପାହାଚ ଚଢି ପିଣ୍ଡାକୁ ଉଠିଗଲି । ସେଠି ଡାହାଣ ପାଖ ଟେବୁଲ ଚୌକି ମୋ' ଭାଇନାର । ଖାଲି ପଡିଥାଏ । ସେ ପାଖ ବଡ ବଖରାରେ ପରଦା ଲାଗିଥାଏ, ସେଇଠି ବସନ୍ତର ବାପା ବସନ୍ତି । ମଝିରେ ଗୋଟାଏ ବେଞ୍ଚ ଉପରେ 'ପେଚି' ବାପା ବୋଧେ ବସୁ ବସୁ ଶୋଇଯାଇଥିଲା । ସେ ସବୁଠୁ ମୋଟା ପୁଲିସି । ତା' ମୁହଁ ହାଣ୍ଡିପରି । ପେଟ ଡୋଲି ପରି । ସେ ସେଇଠି ଚରିକାତ ମେଲିଦେଇ ପଡିଥାଏ । ଘୁଙ୍ଗୁଡିରେ କମ୍ପୁଥାଏ ଥାନାଘର । ମୁଁ ତା' ପାଖେ ଯାଇ ଠିଆହେଲି । ଗୁଣ୍ଡୁଚିମୂଷା ଲାଙ୍ଗୁଡ ପରି ମୋଟା କଟରା ନିଶ ଘୁଙ୍ଗୁଡି ସାଙ୍ଗରେ ଡେଉଁଥାଏ । ମୋ' ଭିତର ଗବ୍‌ଗବ୍ ହେଲା, ମୁଁ ହସିପକେଇଲି । ବହୁଦିନୁ ଗୁଣ୍ଡୁଚିର ଲାଙ୍ଗୁଡକୁ ଛୁଇଁବାର ଇଚ୍ଛା ଥିଲା, କଙ୍କି ଲାଙ୍ଗୁଡ ଧରିଲା ପରି । ମୁଁ ଆସ୍ତେ ବାଁ ପାଖ ନିଶ ଅଗରେ ଆଙ୍ଗୁଠି ରଖିଲି । ଫରର୍‌କରି ଘୁଙ୍ଗୁଡି ବାହାରିଲାବେଳେ ଧଳା କଳା ମିଶା ନିଶ ମୋ' ଟିପରେ ବାଜି ସଲସଲ ଲାଗିଲା । ମୁଁ ପୁଣି ହସିପକେଇଲି । ମାଛିଟାଏ ମେଲାପାଟି କୁଣରେ ବସୁଥାଏ, ଭୂମିକଂପରେ ପୁଣି ଉଡିଯାଉଥାଏ । ମୁଁ ସେଇଟାକୁ ଉଡେଇଦେଲି, କାହିଁକି ନା ସେ ମତେ ଆଉ ପେଚିକି ପାଖରେ ବସେଇ ଜଲେବି ଖୁଆଇଥିଲା ।

ଧଳାକଳା ନିଶ ନନାଙ୍କର ବି ଥିଲା । କିନ୍ତୁ ନିଶଦାଢି ମିଶାମିଶି ସେ ଗୁମମାନ ବବୁଲ କଣ୍ଟା ପରି ଠିଆ ଠିଆ ହେଇ ରହିଥିଲା । ସେ ନିଶ ରାଗରେ ଫୁଲିଉଠୁଥିଲା । ତା' ତଳୁ ରଡି ଶୁଭୁଥିଲା, ଦାନ୍ତ କଡମଡ ଶୁଭୁଥିଲା । ତାକୁ ଦେଖିଲେ ମୋ' ପିଳେହି ପାଣି ହୋଇ ଯାଉଥିଲା । ଦିନେ ଦିନେ ସେ କ୍ଷୌର ହୋଇ ଫେରୁଥିଲେ । ତାଙ୍କ ମୁହଁ ସେତେବେଳେ ବୋଉ ମୁହଁପରି ନରମ ଦେଖାଯାଉଥିଲା । ସେ ସମୟରେ ନନା ଆଦୌ ମୋ' ଉପରେ ଚିଡୁ ନଥିଲେ ।

ମୁଁ ଚଲଚଲ ହେଇ ବାରଣ୍ଡା ସାରା ବୁଲିଲି । ପିଣ୍ଡାରେ ବାଁ ପାଖ ଗଛ ଛାଇରେ ଖୁବ୍ କାକର ଜଣାଗଲା । ସେଇଠି ସିମେଣ୍ଟ ପିଣ୍ଡା ଉପରେ ଗୋଡ ଲମେଇ ବସିଲି । ତା'ପରେ କେତେବେଳେ ମୋତେ ନିଦ ହୋଇଗଲା ମୁଁ ଜାଣେ ନାହିଁ!

ଗୋଟାଏ କ'ଣ ପାଟିତୁଣ୍ଡରେ ମୋ' ନିଦ ଭାଙ୍ଗିଗଲା । ଚରିଆଡକୁ ଚହିଁଲି । ସେ ଅଞ୍ଚଳ ତେବେ ସୁଦ୍ଧା ଭାରି ନିଛାଟିଆ ଜଣାଯାଉଥିଲା । ମୁଁ ଆଉ ପାହାଚ ବାଟେ ନ' ଆସି ସେଇଠୁ ତଳକୁ ଓହ୍ଲେଇଗଲି । ହାଜିରା ମଣ୍ଡପ ଆଡୁ ଗୋଳ ଶୁଭୁଥାଏ । ମୁଁ ସେଇଠି ଯାଇ ସାଂଗେ ସାଂଗେ ପହଞ୍ଚିଗଲି । ସେଇଠି ସବୁଲୋକ କୁଢେଇ ହେଇଥା'ନ୍ତି । ସାତପ୍ରସ୍ତ ଦେଖଣାହାରିଙ୍କ ଗୋଡ ଫାଙ୍କବାଟେ ଦେଖି ମୁଁ ଜାଣିପାରିଲି ଯେ ମଣ୍ଡପ ଉପରେ କ'ଣଟାଏ ଥୁଆ ହୋଇଚ, ଯାହାକୁ ଦେଖିବାକୁ ଏଭଳି ଲୋକଭିଡ ।

ସେଇଟା କ'ଣଟାଏ କେଜାଣି ।

ଏତିକିବେଳେ ଘରିଆଡୁ ଆଉରି ଲୋକ ଦୌଡି ଆସିଲେ । ପ୍ରଶ୍ନ ଶୁଭିଲା – "କ'ଣ ? କାହିଁ ? କୋଉଠି ।" ଜଣେ କହିଲା, "ମହାବଳ । ଜଙ୍ଗଲର ରାଜା । ମହାବଳ ବାଘ, ପଟାଳିଆ ଅଣ୍ଡିରା । ହେଣ୍ଟାଳିଦେଲେ ପୃଥିବୀ ଦୁଲୁକିଯିବ । ମୋ' ବାବାଲୋ, କେତେ ଜନ୍ତୁ ସେ ହେଇଚି ।"

"ବାଘ... ? ହଁ ବାଘ । ମୋ' ବାପଲୋ, ବାଘ !!" ଡରିଲା ଡରିଲା ସ୍ୱରରେ ସମସ୍ତେ ସେ ନାଁ ଉଚ୍ଚାରୁଥା'ନ୍ତି । କାଳେ ରଜା ଉଠିପଡିବେ ବୋଲି ସେମାନଙ୍କର ପ୍ରାଣେ ଭୟ । ସେ କିନ୍ତୁ ଚୁପ୍‌ଚାପ୍ ଶୋଇଥାଏ । ତା' ଗୋଡରେ ଦଉଡି ବାନ୍ଧି ତାକୁ କୁଆଡେ ଆଠଜଣ ମଣିଷ କାଠ ଦଣ୍ଡାରେ ଝୁଲେଇ ଆଣିଥିଲେ । ତାକୁ ଏଠି ଆଣି ଶୁଆଇଦେଲା ପରେ ତା' ଗୋଡରୁ ଦଉଡି କାଟିଦେଇଥା'ନ୍ତି ।

ମତେ ତା' ଲାଙ୍ଗୁଡ ଆଉ ପଛଗୋଡ ଦି'ଟାର ପାହୁଲ ଦିଶୁଥାଏ । ଦେହଟା କେତେ ଚିକ୍‌କଣ ସତେ । କେତେ ନରମ ହୋଇଥିବ ନା କ'ଣ, ପୁଷି ବିଲେଇ ଭଳି ! ସେମାନେ କହୁଥା'ନ୍ତି ଯେ, ଶୀତ ପଡିଲେ ବାଘ ଚମଡାରେ ନୂଆ ଲୁମ ଉଠି ଆହୁରି ସୁନ୍ଦର ଦିଶେ । ସେ ସେତିକିବେଳେ ମାଚେ... ହୋଇଥିବ... । ତା' ଭିତରୁ କିନ୍ତୁ କେହି କେହି ଠିସ୍ ଠିସ୍ ହସିଥିଲେ ସେ କଥାରେ ।

ମୋର ପ୍ରବଳ ଇଚ୍ଛା ତା' ମୁହଁଟାକୁ ଦେଖିଦବାକୁ । ଅନେକ ସନ୍ଧାରୁ ଗଳିପଶି ଅନେଇଲି । ଶେଷକୁ ଗୋଟାଏ ଫାଙ୍କରେ ବାଘମୁହଁଟା ଘାଉଁକିନା ଦିଶିଗଲା । ଏମିତି ଦୁଇହାତ ଦୂରରେ ବାଘ । ଖରାରେ କାଚବାଟି ପରି ତା' ଆଖିରୁ ଆଲୁଅ ବାହାରୁଥାଏ ତା'ର ଓସାର ନାକ ତଳକୁ ସାମାନ୍ୟ ମେଲା ହୋଇଥାଏ ପାଟି । ମୋ' ନଜର ତା' ନିଶ ଉପରେ । ଧଳା ଠିଆ ଠିଆ ନିଶ, ମଝିରେ ମଝିରେ ଛୋଟ ଛୋଟ କଳା ନିଶ । ମୋଟା ଛୁଞ୍ଚପରି ଗୋଟାଏ ଗୋଟାଏ ବାଳ । ବାବାରେ !

ତା' ଗୋଡ ସଲସଲ ଲାଗିବାରୁ ମୋ' ଉପରେ ଫରକଟେଇ ଠିଆହୋଇଥିବା ଲୋକଟା ଉଧୁଳିଲା । ପାଖ ଲୋକେ ଦଳାଚକଟା ହେଲେ । ମୁଁ ଗଡିପଡିଲି । ସେଇଠି ଝାଡିଝୁଡି ହେଇ ସବା ଆଗରେ ବସି ଚାହିଁ ରହିଲି ବାଘ ଆଉ ନିଶକୁ । ଇସ୍ କି ବଢିଆ !

ଆସ୍ତେ ଆସ୍ତେ ବାଘଟା ଖୁବ୍ ଆତ୍ମୀୟ ମନେହେଲା । ମୁଁ ଖୁବ୍ ଧୀରେ ହାତ ନେଇ ତା' ପାହୁଲକୁ ଚଟ୍‌କିନା ଛୁଇଁଦେଲି । କିଛି କଲା ନାଇଁ । ବୁକୁ ଦାଉଁଦାଉଁ ସମ୍ଭାଳି ତା' ପାହୁଲ ଉପରେ ହାତ ରଖିଲି । ଆସ୍ତେ ତା' ଥୋତ ଉପରେ ଦାଢିରେ ହାତ ମାରିଦେଲି । ମୋ' ଦେହସାରା ଶୀତେଇଗଲା । କିଏ ଗୋଟାଏ ଚମକେଇଲା ପରି ପାଟି କଲା, "ହଟ, ଟୋକା..." ମୋର ମଣିଷ କୁହାଟକୁ ଖାତିର୍ ନଥାଏ । ଖୋଦ୍ ବାଘ ଆଗରେ ବସି ମଣିଷଟାକୁ କିଏ ପଚାରେ ?

ମୁଁ ସେଇଠି ଅନେକ ସମୟ ବସିରହିଥିବି । ଅନ୍ୟମାନେ କିଏ କୁଆଡେ ଗଲେ... ମୁଁ କିନ୍ତୁ ଚାହିଁ ରହିଥାଏ ତା' ଆଖିକୁ । ସେ ଆସ୍ତେ ଆସ୍ତେ ମୋ' ନନାଙ୍କ ପରି ଦେଖାଗଲା । ଆଖିମିଟିକା ମାରିଦେଲେ ପୁଣି ବାଘ ହୋଇଯାଉଥିଲା । ହି, ହି ହି... ମୁଁ ମନକୁ ମନ ହସିଲି । ତା'ପରେ ତା' ନିଶରେ ହାତ ମାରିଦେଲି ଦୁଇଥର । ତୃତୀୟ ଥର ବାଁ ପାଖ ଯୋଡିଏ ଟାଣ ଟାଆଁଶା ମୋଟା ଛୁଞ୍ଚ

ଭଳି ନିଶକୁ ଚିପରେ ଧରି ଭିଡିଲି । ତା' ଉପର ଓଠ ଉଠିଗଲା । ଏତେ ବଡ ବଡ ଦାନ୍ତ ଦେଖାଗଲା । ଏତିକିବେଳେ ଘାଉଁକିନା ଗଡି ଛାଡି ସେ ମୋ' କାନକୁ କାମୁଡିଦେଲା ।

ଚମକି ପଡିବାରୁ ନିଶରୁ ହାତ ଛାଡିଗଲା । ମୁଁ ଥରିଥରି ଭିଡି ହେଇ ଠିଆହେଲି । ମୋ' କାନକୁ ଧରି ନନା ଓଟାରୁଥିଲେ ଏବଂ "କିରେ ଛୋକାର ଟୋକା ।" ବୋଲି ବାଘ ଭଳି ଗର୍ଜିଉଠିଥିଲେ ।

ସେମିତି ମୋ' କାନକୁ ବାଘ ଓଟାରୁଥିବା ଅବସ୍ଥାରେ ମୁଁ ପାତିମାଙ୍କଡଟିଏ ଭଳି ଘର ପର୍ଯ୍ୟନ୍ତ ଆଣ୍ଠୁ ନୁଆଁଇ ଟୁପୁରୁ ଟୁପୁରୁ ଚାଲିଯାଇଥିଲି । ମୋ' ଅଣ୍ଟାରୁ ପାଞ୍ଚହାତ ଲମ୍ବ ହନୁମନ୍ତ ଲାଙ୍ଗୁଡ ଧୂଳିରେ ଘୋଷାରି ହେଇଯାଉଥିଲା ।

"ନେ ସମ୍ଭାଳ୍ ତୋ' ବାଳୁଙ୍ଗା ପୁଅକୁ । ଦି'ପହର ସାରା ଚିର୍କି ଚିର୍କି ବୁଲି କେମିତି କଳାକାଠ ପଡିଯାଇଚି ଦେଖ୍! ଚାଲିବା ଶଗଡରେ ହାତ ଦବ ଏ ହାରାମି ! ଆଣିଲୁ ସେ କଟୁରି, ମୁଁ ତା' ହାତ ଯୋଡାକ ଛିଣ୍ଡାଇଦିଏ ।"

ବୋଉ ମୋ' ଲାଙ୍ଗୁଡ ସମେତ ମୋତେ ଗୋଟେଇନେଲା । ତା' ଆଢୁଆଳରେ ମୁଁ ସମ୍ପୂର୍ଣ୍ଣ ଲୁଚିଗଲି – ଯାହା ଦିଶୁଥିଲା ତାହା କେବଳ ହାତେ ଦିହାତ ଲମ୍ବର ଗନ୍ଧୁଆ ଦଉଡି ।

ସଞ୍ଜବେଳକୁ ମୋଡିଭିଡି ହେଇ ମତେ ଜର ହେଲା । ବୋଉ ଗୋଟାଏ କନ୍ଥା ଘୋଡେଇଦେଇ ଶୁଆଇଦେଲା । ମୁଣ୍ଡରେ ହାତ ମାରି ସାଉଁଳିଦେଲା । ମୁଁ କିଛି ସମୟ ପରେ ଚମକି ପଡିଲି ଏବଂ ହାତ ଦି'ଟାକୁ ଲୁଚେଇ ଦେଲି କନ୍ଥା ଭିତରେ । ମୋତେ ଲାଗିଲା ଯେ, ମୋ' ପାପୁଲି ଦି'ଟା ପଞ୍ଝା ହୋଇଯାଇଚି । ବାଘ ପଞ୍ଝା ! ସେଥିରେ ମୁନିଆ ନଖ ବୁଡିରହିଚି ମଖମଲି ଖୋଳ ଭିତରେ । ମୁଁ ଆଖିବୁଜି ପାଦ ହଲେଇଲି । ମୋତେ ଲାଗିଲା ଯେ ସେ ଦି'ଟା ବି ପାହୁଲ ହେଇଯାଇଚି । ସନ୍ତର୍ପଣରେ ସବୁ ନଖ ଲୁଚେଇ ବାଁ ହାତକୁ ଅଣ୍ଟା ପାଖକୁ ନେଇ ଦରାଣ୍ଡିଲି । ଏତେ ମୋଟା ଲାଙ୍ଗୁଡଟାଏ ଧରିଲା ପରି ଲାଗିଲା । ମୁଁ ହାତ କୁଞ୍ଚେଇଆଣି ନିଃଶ୍ୱାସ ରୋଧି ଚିନ୍ତାକଲି । ମୋ' କାନ ମୁଣ୍ଡା ଭାଁ ଭାଁ ଡାକିଲା । ବୁକୁ ଧଡପଡ ହେଲା... "ତା'ହେଲେ ମୁଁ ଆସ୍ତେ ବାଘ ହୋଇଯାଇଚି" । ପଞ୍ଝା, ଲାଙ୍ଗୁଡ ହେଲା ପରେ ମୁଁ ସମ୍ପୂର୍ଣ୍ଣ ବାଘ ହୋଇଯିବି । ମଲାବାଘ ନୁହେଁ । ଜିଅନ୍ତା । ପ୍ରଥମେ ଖୁବ୍ ଗୋଟାଏ ଗର୍ଜନ ଦେବା ଠିକ୍ ହେବ । ସେମାନେ ମୋ' ନାଁ ଧରି ବହୁତ କଥା ପଚାରିବେ । ମୁଁ ତାକୁ ମଣିଷ ଭଳି କଥା କହିବି ନା ନାହିଁ ? ନା, ବୋଧେ ଗର୍ଜିବା ଠିକ୍ ହବ । ବାଘ କି କଥା କହେ ?"

ମୋ ଦେହସାରା ଝାଳରେ ବୁଡିଯାଉଥିଲା । ମୁଁ କିନ୍ତୁ ଆଖିପତା ଭିଡି ଧରିଥିଲି । ହାତ ଜୋର୍‌ରେ ମୁଠା କରି ରଖିଥିଲି । ଗୋଡ ଆଙ୍ଗୁଠିଗୁଡାକ ବଙ୍କେଇ ରଖିଥିଲି । ଫଁ ଫଁ ହେଉଥିଲି ଜର କୋପରେ କି ବାଘକୋପରେ କହିପାରିବି ନାହିଁ ।

ମଝିରେ ବୋଉ ଆସି ମୋ' କପାଳରେ ହାତ ମାରିଦେଲା । ମୁଁ ଚମକିପଡିଲି । ଧର ଯଦି ମୁହଁଟା ବାଘ ହେଇସାରିଥାଏ ? ଧର ଯଦି ମୋ' ଟାଆଁଶା ନିଶରେ ତା' ହାତ ପଡିଯାଏ ? ମୁଁ

ମଲାବାଘ ପରି ପଡିରହିପାରିଲି ନାହିଁ – ଘାଉଁକିନା ହେଣ୍ଟାଳି ପକାଇଲି । ସେମିତି କିଛି ରାଗକରି ନୁହେଁ, ହେଇ ମୋ' ନିଶକୁ ଛୁଁ ନା, କହିବାକୁ ଉଶ୍ୱାସରେ ଘାଉଁ କରିଦେଲି ।

ଗୋଟାଏ ବିକଟାଳ ଚିତ୍କାର ଶୁଣି ସମସ୍ତେ ଧାଇଁଆସିଲେ । କିଏ କେତେ ପ୍ରକାର ପାଟିକଲା । ସେ ଗହଳି ଭିତରେ ନନାଙ୍କ ପାଟି ବୋଧେ ବାରି ପାରିଲି ଆଉ ଗୋଟାଏ ହେଣ୍ଟାଳ ଭଳି । ସେ ଗର୍ଜିଲେ, "ଆଣିବୁଟ ସେ କଟୁରିଟା !!"

ମୋ ଉପରୁ କନ୍ଥା କାଢିଦିଆଗଲା । ବୋଉ ମୋ' ଦେହସାରା ଝାଳ ପୋଛିଦେଲା । ମୁହଁକୁ ପାଣିମାରି ମୋତେ ସାଷ୍ଟାମ କଲା । ନାନା ଭାଇନା ମିଶି ମୋ' ମୁଠାର ଜାବ ଫିଟାଇ ଦେଲେ । ମୁଁ ଜଗୁଆ ଆଖି ଫିଟେଇ ସେମାନଙ୍କୁ ଚାହିଁଲି ।

ନନା କ'ଣ ସବୁ ବିଡିବିଡି ହୋଇ ମୋ' ଅଣ୍ଟାରୁ ସେ ଦଉଡିଟାକୁ ଫିଟାଉଥା'ନ୍ତି । "ଏଥିରୁ ଗୋଟାଏ କାହିଁକି ବାନ୍ଧିଛି ?"

କିଏ ଜଣେ କହିଲା, "ସେଇ ଖଣ୍ଡ ବାନ୍ଧିଲେ ସେ ଡେଇଁବା ଆରମ୍ଭ କରିଦିଏ – କହେ ଯେ ସେ ହନୁମାନ୍ ।"

ସମସ୍ତେ ହସିଲେ । ମତେ ଲାଗିଲା ଯେ ସେଇ ମଲାବାଘ ବି ହସୁଚି । ମୁଁ ଆଖି ମଟମଟ କରି ଚାହିଁଲି ।

ଟେବୁଲ ଉପରେ ଲେମ୍ପ୍ ଜଳୁଥିଲା । ମୋ' ତକିଆ ପାଖକୁ ବୋଉ, ଆଣ୍ଠୁପାଖରେ ନନା, ଗୋଡ ଆଡକୁ ଭାଇନା, ଆଉ ଆଉ କେତେ ସବୁ ବେଢି ରହିଥାଆନ୍ତି । ସବୁ ତା'ପରେ ଲେସି ହୋଇଗଲା । ରୂପ ରଙ୍ଗ ସବୁ ପଟାଳିଆ ହେଇଗଲା । ଲାମ୍ପଟା ଦିଶିଲା ଖରାରେ ଚମକୁଥିବା କାଚ ବାଟି ପରି, ନିର୍ଜୀବ ବାଘ ଆଖିପରି ।

ମୁଁ କୁଆଡେ ବାଉଳୁଚାଉଳୁ ହେଲି ରାତିସାରା । ମୋ' ମୁଣ୍ଡରେ ପାଣିପଟି ଦିଆଯାଉଥିଲା । ବୋଉ ସକସକ କାନ୍ଦୁଥିଲା । ନନା ତୁନି ପଡିଯାଇଥିଲେ । ଶୋଇ ପାରୁ ନଥିଲେ । ମୁଁ କୁଆଡେ ମଝିରେ ମଝିରେ କହୁଥିଲି, "ସେ ନିଶ ଦି'ଟା ଉପାଡିଦିଅ । ମତେ ଦିଅ । ମତେ ନିଶ ଦିଅ ।"

ନନା କୁଆଡେ କହୁଥିଲେ, "ଏଇନା ଶୋଇପଡ । ମୁଁ ସକାଳ ପାହିଲେ ତତେ ବାଘନିଶ ଆଣିଦେବି ।" ଭାଇନା ବି କହୁଥିଲା, "ଆଣିଦେବି" ବୋଉ କହୁଥିଲା, "ଆଣିଦେବି" । ମଝିରେ ମଝିରେ ମୋତେ ଶୁଭୁଥିଲା; ଖୁସି ଲାଗୁଥିଲା । କିନ୍ତୁ ମୁଁ କେମିତି କେଜାଣି ଜାଣିପାରୁଥିଲି ଯେ ସେମାନେ ମିଛ କହୁଥିଲେ । ସେମାନେ କଦାପି ସେ ନିଶ ଉପାଡି ପାରିବେ ନାହିଁ । ଉପାଡିଲେ ତା' ଓଠ ଟେକି ହେଇଯିବ । ଦାନ୍ତ ଦିଶିବ । କତକତ କରିବ ଏବଂ ଖପ୍‌କିନା ସେ କାନକୁ କାମୁଡିଦବ ।

ଆଃ ! ମତେ ବାଘ କାମୁଡାର ଯନ୍ତ୍ରଣା ଅନୁଭବ ହେଉଥିଲା ।

ମୁଁ ପୁଣି ବାଘ ହେବା ଆରମ୍ଭ ହୋଇଗଲା । ପୁଣି ପଞ୍ଝା ଉପରେ ପଟାଳିଆ ରୁମ ଅଙ୍କୁରିଗଲା । କିନ୍ତୁ ପୂରା ବାଘ ହେବାକୁ କ'ଣ ଏମାନେ ଛାଡିବେ ? ନନା ପରା କଟୁରି ଟେକି

ରଖିଛନ୍ତି – ପଞ୍ଝା ଦେଖିବାମାତ୍ରେ ଖଚ୍ କିନା ହାଣିଦେବେ । ମୁଁ ବହୁ ଯତ୍ନରେ ହାତକୁ ନେଇ କୋତସନ୍ଧାରେ ଲୁଚଉଥିଲି । ବୋଉ ଭିଡିଆଣି ଜାବ ଫିଟେଇ ଦଉଥିଲା । ନନା କଚଟିଠଉଁ ହାଣିଦଉଥିଲେ ।

ରାତିସାରା ମୁଁ ତୁହାକୁ ତୁହା ଝାଳ ସରସର ହୋଇ ଗାଧୋଇଚି । ତୁହାକୁ ତୁହା ହାଣ ଖାଇଚି । କେତେବେଳେ ମୁଁ ସମ୍ପୂର୍ଣ୍ଣ ବାଘ ହେଇ ପାରିନି । ମୋ' ମୁହଁ ବାଘମୁହଁ ହେଇନି କି ସେମିତି ଟାଆଁଶା ନିଶ ନାକତଳେ ବାହାରିନି । ଏଣେ ମଲାବାଘର ନିଶ ବି ଉପାଡି ପାରିନାହିଁ । ସବୁଥର ଘାଉଁକିନା ସେ ମୋ' କାନକୁ କାମୁଡିଧରିଛି ।

ରାତି ପାହିଲା । ମୁଁ ବୋଉର ବୁକୁ ଉପରକୁ ଆଉଜି ବସିଥାଏ । ଭାରି ଦୁର୍ବଳ ଲାଗୁଥାଏ । ଆଖି ମଡେଇ ହୋଇ ପଡୁଥାଏ । ସବୁ ଦିଶୁଥାଏ ଢଳଢଳ, ଅସ୍ଥିର । ମୋ' ବୁକୁ ଫଡ ଫଡ କମ୍ପୁଥାଏ ।

ନନା ଆସି କପାଳରେ ହାତ ରଖି କହିଲେ, "ନା, ଆଉ ଜର ନାହିଁ । କେମିତି ଗୋଟେ ହାଇସା ଜର ହେଇଗଲା । ପାହାନ୍ତିଆକୁ ଅଣ୍ଟା ପାଣି ହେଇ ବଗଳା ମନ୍ତ୍ରରେ ଝାଡିବାରୁ ଯାଇ ସେ ଜର ଓହ୍ଳେଇଲା ।"

ମୁଁ ନନାଙ୍କ ମୁହଁକୁ ମିଟିମିଟି ଅନେଇଲି । ଟିପରେ ଆସ୍ତେ ବୋଉର ଲୁଗାକୁ ଚିମୁଟିଲି । ତେବେ ସୁଦ୍ଧା ମୋତେ ସେ ବାଘମୁହଁ ଝଲମଲ ଦିଶିଯାଉଥାଏ ।

ଅନ୍ୟମାନେ ଆସିଲେ । ମୋତେ ବେଢ଼ି ବସିଲେ । ମୋ' ମୁହଁ ଧୋଇଦେଇ ବୋଉ ଉଷୁମ କ୍ଷୀର ଗିନା ଟେକି ଧରି କହିଲା, "ନେ ଏତକ ପିଇଦେ, ଦମ୍ଭ ଲାଗିବ । ଯୋଉ ଅଲକ୍ଷଣା ଜର, ରାତିସାରା ଯୋଉ ବାଉଳୁଚଉଲୁ ?"

ଚନ୍ଦମାଉସୀ ହାଁ ହେଇ ଅନେଇଥାଏ । ଯେ ଯାହା କହିଲା ପିଇଯାଉଥାଏ । ମଝିରେ ମଝିରେ କ'ଣ ଶୁଣିଦେଇ ଏତେ ପାଟିରେ କହିଲା, "ଆରେ, ଯଦି ସେ ବାଘନିଶ ମାଗୁଥିଲା ଆଣି ତା' ବେକରେ ବାନ୍ଧିଦିଅ । ବାଘନିଶ ପାଖରେ ରଖିଲେ ପରା ସବୁଠି ଜୟ ! ଆଉ ଯୋଡିଏ ନିଶ ଅଧିକ ଆଣିଥିବୁ – ମୁଁ ମୋ' ମଦନାକୁ ଦେବି ।" ଭଆଇନା କହିଲା, "ଆଚ୍ଛା ମାଉସୀ, ସତେ କ'ଣ ବାଘନିଶର ଏତେ ମହିମା ଅଛି ?" "ଆଉ... ନ ହେଲେ କ'ଣ ମୁଁ ମିଛ କହୁଛି ? ସେଇଟା ପରା ବୀର କେଶ ! ତା' ପାଖକୁ ଶତ୍ରୁ ପଶି ପାରିବେ ନାହିଁ । ତାକୁ ଠାକୁରାଣୀ ଠେଇଁ ଛୁଆଁଇ ଆଣିଲେ ତ ଭୂତ, ପ୍ରେତ, ଡାଆଣୀ କେହି ଛୁଇଁ ପାରିବେ ନାଇଁ ।"

ନନା ଭାଇନା କେତେବେଳେ ଉଠିଯାଇଥିଲେ ମୁଁ ଜାଣିନାହିଁ । କେତେବେଳକୁ ତକିଆକୁ ଆଉଜି ମୁଁ ଖଟରେ ବସିଥାଏ । ବୋଉ ଆଣି ଥାଳିଆଏ ପାଣି ସନ୍ତୁଳା ରଖିଥାଏ । ସେଥିରୁ ହାଉ ବାହାରୁଥାଏ ।

ଭାଇନା ପଶିଆସି କହିଲା, "ଏଠି ପରା ଶଳେ ମହା ବିକଳିଆ । ଗଲାବେଳକୁ ଆଉ ଅଛି କି ? ନଖପାଇଁ ବାଘର ଚାରିଟାଯାକ ପଞ୍ଝା ହାଣି ନେଇଛନ୍ତି । ଦଶହଳ ନଖରୁ ଦଶଟା ବାଘନଖ କରି ପିନ୍ଧି ପକେଇବେ । ଆଉ ନିଶ ରଖନ୍ତେ ? ବାଘର ଥୋମଣା ଅଧେ କାଟି ନେଇଚନ୍ତି,

ନାଲାଏକ !"

ମୋର ହଠାତ୍ କୋହ ଉଠିଲା । ଆଖିରୁ ଡବଡବ ପାଣି ନିଗିଡିଗଲା । ବାଘଟା ଜିଇଁଥିଲା ମୁଁ ନିଶ ଉପାଡିବା ପାଇଁ – ଏଇମାନେ ତାକୁ ମାରିଦେଲେ । ତା' ପଞ୍ଝାଟା ହାଣି ଦେଲେ କଟୁରିରେ ।

ନନା ଆସିଲେ... "ସେ ବାଘଟାର ଚମଡା କାଢି ଶୁଖେଇଦେଲେଣି । ଥାନା ବଡବାବୁ କୁଆଡେ ତାଙ୍କ ବୈଠକଘରେ ଗାଲିଚାରେ ବିଛେଇବେ ।"

ବଘଟାଏ କନା ଭଳି ଏମିତି ବିଛେଇହେଇ ପଡିଥିବ; ତା' ଉପରେ ସାନ ବଡ ଚାଲିଯାଉଥିବେ, ତାଙ୍କ ପୋଷା କୁକୁର ତା' ଉପରେ ବସିବ ଶୋଇବ । ବାଘର ପଞ୍ଝା ନାହିଁ । ତା'ର ନିଶ ନାହିଁ, ଥୋଣା ନାହିଁ ମଲାବାଘ, ଆଉ ଥରେ ମରିଗଲା, କନା ଖଣ୍ଡେ ହୋଇଗଲା । ଇସ୍...

ମୋ ଭାଗ୍ୟରେ ଆଉ ବାଘନିଶ ମିଳିଲା ନାହିଁ ।

କିନ୍ତୁ ମୁଁ ମଝିରେ ମଝିରେ ସେମିତି ହାଇସା ଜର ଭୋଗିଲି । ସବୁଥର ସେ ମଲାବାଘ ଆସି ମୋ' ଚାରିଆଡେ ବିଛେଇ ହେଇଥାଏ । ମୁଁ ତା' ନିଶ ଉପାଡିଲା ବେଳେ ମୋ' କାନକୁ କାମୁଡିଦିଏ । ଅନେକ ବଇଦ ଗୁଣିଆ ହେଲା – କିଛି ହେଲା ନାହିଁ । ମୋର ଦିହସୁହା ହେଇଗଲା । ଅନ୍ୟ ସମସ୍ତେ ଜାଣିଲେ ଯେ ରାତିରେ ଜର ଭୋଗି ମୁଁ ତା' ଆରଦିନ ସକାଳୁ ପୁଣି ଚେଙ୍ଗା ହୋଇଯିବି ।

ମୋ ରୋଗିଣା ଧଡିଆ ଚେହେରା ଦେଖି ଅନେକ କଥା କହିଲେ । ବୋଉ ମୋ' ପାଇଁ କ୍ଷୀର ଖର୍ଚ୍ଚ ବଢେଇ ଚାଲିଲା – କିନ୍ତୁ ବିଶେଷ ଫଳ ହେଲାନାହିଁ ।

ମୋର ମେଟ୍ରିକ୍ ପଢା ବେଳକୁ ନନାଙ୍କ କାଳ ହେଇଗଲା । ଉପରବେଳା ସମୟକୁ ତାଙ୍କୁ ସେମାନେ ନେଇ ନଈବାଲି ଉପରେ ଶୁଆଇ ଦେଇଥିଲେ । ମୁଁ ତାଟକା ହେଲାଭଳି ତାଙ୍କୁ ଚାହିଁ ରହିଥିଲି; ତାଙ୍କ ଗୁଡିଆ ମୁହଁକୁ ଚାହିଁଥିଲି । ସେ ମୋତେ ସେତେବେଳେ ଅସମ୍ଭବ ଆପଣାର ବୋଧ ହେଉଥା'ନ୍ତି । ମୋ' ଭିତରେ କ'ଣ ସବୁ ଓଲଟ ପାଲଟ ହେଇ ଯାଉଥାଏ । ମୁଁ ଘରକୁ କେମିତି ଫେରିଲି ଜାଣିନାହିଁ । କନ୍ଦାକଟା ପାଟିତୁଣ୍ଡ ଭିତରେ ମୋତେ କେହି ଦୃଷ୍ଟି ଦେଇ ନଥିଲେ । ମୁଁ ମୋର ଛୋଟ ବଖୁରି ଭିତରେ ପ୍ରବଳ ଜର ତା'ପରେ କମ୍ପୁଥିଲି ।

ସେ ରାତିସାରା ମୋ' ପାଇଁ ବାଘମୟ । ମୁଁ କେରାକେରା ନିଶ ଉପାଡିଲେ ମଧ ବାଘ ମୋ' କାନକୁ କାମୁଡିଲା ନାହିଁ । ମୋ' ପାଦ, ପାପୁଲିରେ ପଟାଳିଆ ପଞ୍ଝା ମଡେଇହେଇ ଆସିଲା । କହୁଣିଯାଏ ବାଘ । ବାହା, ବେକ, ତଳିପେଟ ବାଘ । କେହି ଆଉ ମୋ' କଟଟିଠଉଁ କଟୁରିରେ ହାଣିଲା ନାହିଁ । ମୁଁ ଗୋଟାପଣେ ବାଘ ହେଇ ହେଣ୍ଟାଳିଲି । ମୋର ମୋଟା ଲାଙ୍ଗୁଡକୁ ଦେହସାରା ରୁମ, ମୁହଁର ନିଶ, ଭୂଲତାକୁ ଟାଙ୍କୁରାଇଲି ।

ରାତି ପାହିଲା ବେଳକୁ ଜର ଛାଡିଯାଇଥିଲା । ମୁଁ ଏଯାଏ ଆଉ ସେ ଜର କେବେ ଭୋଗିନାହିଁ । □

# ବୃକ୍ଷଜାତକ

କାହିଁ କେତେ କାଳ ହେଲାଣି...

କୁଆଡେ ଜଣେ ମହାପୁରୁଷ ଏ ଗାଁକୁ ଆସିଥିଲେ ।

ସେ ଦକ୍ଷିଣ ଦିଶାକୁ ଚାହିଁଦେବାରୁ ଏ ମରୁଡିଆ ମୁଲକରେ କାହୁଁ ଆସି ମେଘ ଘୋଟିଗଲା । ଝାଙ୍କିଲା ଝଡିବର୍ଷା ଯେ ତିନିଦିନ ତିନିରାତି । ବିଲବାଡି ସବୁ ପାଣିରେ ଉଚ୍ଛୁଳିଲା । ଗାଁର ଭାଗୁଡିଆ ହୁଡା ସବୁ ବୁଡିଗଲା ପାଣିରେ । ଯୁଆଡେ ଚାହିଁବ ଚିଲିକାମୟ ! ସମସ୍ତଙ୍କ ଶୋଷ ମେଣ୍ଟିଗଲା – ଗଛପତ୍ର, ଗାଈ ଗୋରୁ, ପଶୁ ପକ୍ଷୀ, ମାଟି ଗୋଡି, ମଣିଷ – ସମସ୍ତଙ୍କର ।

ଓଦା ଭୂଇଁରୁ ବହୁକାଳର ଶୁଖିଲା ମଞ୍ଜି ସବୁ ଗଜାମାରି ଉଠିଆସିଲେ । ଓଦା ଓଦା ମଣିଷ, ଓଦା ଓଦା ମନ ଉପରେ କଅଁଳ ବିଶ୍ୱାସ ଘୋଡେଇ ହୋଇଗଲା । ଗାଁର ବୁଢା ବୁଢା ଆସି, ଝିପିଝିପି ବର୍ଷାରେ ରୁଣ୍ଡ ହେଲେ ଗାଁ ମୁଣ୍ଡାଳି ଛାମୁଣ୍ଡିଆ ପାଖରେ । ଛୋଟ ହସଟିଏ ପରି ସେ ଛୋଟକାଟର ମହାପୁରୁଷଟି । ଫୁଙ୍ଗୁଳା ହାଡୁଆ ଦେହ । ସରୁ ସରୁ ହାତ ଗୋଡ । ଲଣ୍ଡା ମୁଣ୍ଡ । ବୟସ କୁଆଡେ ଅସୁମାରି । ସେ ସମସ୍ତଙ୍କ ମୁହଁକୁ ଚାହିଁ ହସିଲେ । ଦୁଃଖିଶ୍ୟାମ ବାବା ଅନ୍ତର୍ଯ୍ୟାମୀ ପୁରୁଷ । ସେ ସମସ୍ତଙ୍କ ମନୋବାଞ୍ଛା ପୂର୍ଣ୍ଣ କରିଦେଲେ । କେତେ କ'ଣ ଉପଦେଶ ଦେଲେ । ଦୁଷ୍ଟଙ୍କୁ ଶାସିଲେ । ଶିଷ୍ଟଙ୍କୁ ପାଳିଲେ । ଦୁଃଖୀ ରଙ୍କି ରୋଗୀଙ୍କୁ ଆଉଁସିଦେଲେ । ତିନୋଟିଦିନ ରହି ତିନୋଟି ତୁଳସୀପତ୍ର ଆଉ ତିନି ଚଳା ବର୍ଷାପାଣି ପିଇ ଚାଲିଗଲେ । ସେ ଦେବାକୁ ଆସିଥିଲେ, ଦେଇଗଲେ – କିଛି ନେଲେନାହିଁ ।

ଏ କଥାଟିକୁ ମୁଖସ୍ଥ ପାଠପରି ଆଉଡାଇଗଲାବେଳେ ଗନ୍ଧର୍ବ ଗୋଛେଇତକୁ ଗାଁର ଗଜାଟୋକା କେହିହେଲେ ସତ ମଣନ୍ତି ନାହିଁ । ଜଣେ ଜଣକୁ ଆଖି ଠାରି ମୁଚୁକି ମାରନ୍ତି । କଳରେ ଜିଭ ଜାକି ଟାହୁଲ ହୁଅନ୍ତି । ଭାବନ୍ତି ଗୋଛେଇତ ବୁଢାଟା ପୁରୁଣା ବାହାପିଆ । ତା' ପିଲାବେଳେ କଣଟାଏ ଦେଖିଦେଇ ଏବେ କହୁଛି ବାଣ୍ଡିଆ ମହାପୁରୁଷ ଆଇଥିଲେ !

ସେଇ ଗୋଟାଏ ଖଚ ଜୀବନସାରା କହି କହି ବୁଢାକୁ ସେଇଟା ସତ ପରି ଲାଗିଗଲାଣି । ଏଣିକି ତାକୁ ସତକୁସତ ଗୋଟାଏ ବାଣ୍ଡିଆ ଛାଇ ସେଇ ଦିଗରେ ଦିଶିଯାଉଛି । ତଥାପି ତା' ତୁଣ୍ଡରୁ ସେମାନେ ବାରମ୍ବାର ସେଇକଥା ଶୁଣିବାକୁ ସୁଖ ପାଆନ୍ତି ।

"କହୁନା, ବୁଢାଅଜା, କେମିତି ତୁମ ମହାପୁରୁଷ ଆମ୍ବ ଫଳାଇଲେ ?"

"ଆରେ ବଗୁଲିଆ ଛୋକାର ! ତତେ ପ୍ରତେ ନ ହେଲେ ତୋ' ବୋପାକୁ ପଚାରିବୁ ଯା' । ସେଇଟା ବି କ'ଣ ଦେଖିଛି କି ? ସେ ତ ମୋ' ଆଗରେ କାଲିକା ପିଲା ।"

ତା'ପରେ କିଛି ସମୟ ପାଚିଲା ଭୂରୁ, ପାଚିଲା ଦରବୁଜା ଆଖିପତା ଭିତରୁ କିଛି ସମୟ ଶୂନ୍ୟକୁ ଚାହିଁ ମନକୁ ମନ କହିଲାଭଳି ଗନ୍ଧର୍ବ ବୁଢ଼ା କହେ –

"ମୁଁ ସିନା ପିଲା ଥିଲି... ଆଉ ସମସ୍ତେ କ'ଣ ଜାଣିପାରିଲେ ନାହିଁ! ଦୁଃଖିଶ୍ୟାମବାବା ମୋରି ବୟସର ପିଲାଟିଏ ପରି ଦିଶୁଥା'ନ୍ତି । ଫୁଙ୍ଗୁଳା ଦିହ । ମାଠିଲା ପରି ମୁହଁ । ଚିକ୍‌କଣ ଲଣ୍ଡାମୁଣ୍ଡ । ସମସ୍ତେ ଦେଖୁଥା'ନ୍ତି କାହୁଁ ଗୋଟାଏ ଛୋଟ କଖାରୁ ପରିକା ଆମ୍ବ ଦୁଇହାତରେ ଟେକି ଦେଖାଇଲେ । କୋଉଠୁ କାଢ଼ିଲେ ମୁଁ କହିପାରିବି ନାହିଁ କି କେହି କହିପାରିବେ ନାହିଁ । ସେଇଟା କ'ଣ ତାଙ୍କ ପାଇଁ ବଡ଼କଥା ? ସେ ଚାହିଁଲେ କୃପା କରିବାକୁ – କଲେ ।"

ସେଇଠି ଓଦାମାଟିକୁ ଆଡେଇଦେଲେ । ଗୋଟା ଆମ୍ବଟାକୁ ଉପର ଡେମ୍ଫ କରି ପୋତିଦେଲେ । କିଛି କହିଲେ ନାହିଁ । ଛୋଟ ଛୋଟ ହାତ ପାପୁଲିରୁ କାଦୁଅ ଛିଞ୍ଚାଡି ଉଠି ଠିଆହେଲେ – ବର୍ଷା ପାଣିରେ ହାତ ଧୋଇ ଧୋଇ ସମସ୍ତଙ୍କୁ ଚାହିଁ ହସୁଥା'ନ୍ତି ।

ସମସ୍ତେ ଚାହିଁରହିଥା'ନ୍ତି । କିଏ କ'ଣ କେତେ ପଚାରୁଥା'ନ୍ତି । ଦୁଃଖିଶ୍ୟାମ ବାବା ଭୂଇଁକୁ ଥରେ ଆକାଶକୁ ଥରେ ଆଙ୍ଗୁଠି ଦେଖେଇଦେଲେ । ଟିକିଏ ହସିଦେଇ ମୁହଁ ଫେରେଇ ଚାଲିଗଲେ । ତାଙ୍କ ପଛେ ପଛେ କିଏ ସବୁ ଯିବାକୁ ବାହାରିବାରୁ ହାତଟିଏ ପଛକୁ ଟେକି ବାରଣ କରିଦେଲେ । ଚାଲିଗଲେ ସେଇ ବାଙ୍କଚୂଳ ମାଧବ ଆଡିକି – ଗୋହିରି ପାରିହେଇ ।

ଲିଭି ଆସୁଥିବା ସପ୍ନଟିଏ ! କିନ୍ତୁ ସେ ଗାଁ ମୁଣ୍ଡେ ସେ ବିରାଟ ଆମ୍ବ ଗଛଟା ତ ସପ୍ନ ନୁହେଁ! ତା' ମୂଳେ କେଜାଣି କେବେ ଗୋଟେ ମାଙ୍କଡା ପଥରର ଚାନ୍ଦିନୀ ହେଇସାରିଛି । ସେଇଠି ପିଲାଏ ଖେଳନ୍ତି । ଟୋକାଏ ବାଗୁଡି, ବୁଢ଼ାଏ ପଶା ପିଟନ୍ତି, ଯେ ଯାହା ଖେଳେ । ଆମ୍ବଗଛଠୁ ଗାଁର ସବୁ ଗଛଯାକ ସାନ । ସବୁ ଘର ସାନ । ଖାଲି ଗନ୍ଧର୍ବ ବୁଢ଼ା ତା'ଠୁ ଆହୁରି ସାତବର୍ଷ ବଡ଼ । ବେଶି ଫଳନ୍ତି ଆମ୍ବଗଛ ସେ ନୁହେଁ, ଦୋ' ବରଷା ଫଳ ଧରେ । ଏତେ ବଡ଼ ଗଛରେ ଦି'କୋଡି ଆମ୍ବ ହେଇଗଲେ ଢେର୍ । ମାତ୍ର ଆମ୍ବ ଗୋଟାଏ ଲେଖା କଖାରୁ ପରି । ଆଙ୍ଗୁଠି ମୋଟ ଡେମ୍ଫ, ଦେହଯାକ ଗୁଦୁଗୁଦିଆ ମାଉଁସିଆ ଚିକ୍‌କଣିଆ । ସେଥିରେ କେହି ହାତ ମାରନ୍ତି ନାହିଁ । ପାକଳ ହେଲେ ଦିନେ ସମସ୍ତେ ଗୁଣ୍ଡହେଇ ଖୁଣ୍ଟୁଣିରେ ଆମ୍ବ ତୋଳା ହୁଏ । ତଳେ ଗୋଟାଏ ହେଲେ ପଡେ ନାହିଁ । ଲସା ଝରଉଥିବା ବେଡୁଲି ପରି ପାଉଁଶିଆ ପାକଳ ଆମ୍ବମାନ ଗୋଟାଏ ଧୂଆ ଲୁଗା ଉପରେ ଗଦାହୁଏ । ସମସ୍ତେ ସମସ୍ତଙ୍କୁ ଜଗିଥା'ନ୍ତି । କେହିହେଲେ ସେଥିରେ ଟିପ ମାରନ୍ତି ନାହିଁ । ଦିଅଁଙ୍କ ଗଛର ଆମ୍ବ – ଅମୁହଁଣିଆ । ପାଖଆଖ ପଚିଶଖଣ୍ଡ ଗାଁର ସବୁ ଦେବଦେବୀଙ୍କ ପାଖକୁ ଗୋଟିଏ ଲେଖା ପଠାଯାଏ । ସବୁ ଗାଁରେ ଆଶା ଏଇ ଆମ୍ବକୁ ପ୍ରସାଦ କରି ପାଇବାକୁ । ବାକି ସବୁ ବାଙ୍କଚୂଳ ମାଧବଙ୍କୁ ଭୋଗ ହୁଏ । ସେଦିନ ସାରା ଗାଁରେ କୀର୍ତ୍ତନ ମଉଛବ! ସାବିତ୍ରୀ ବେଳକୁ ଏ ଉତ୍ସବ ହୁଏ ।

ଚାଲିଶି ଆମ୍ବକୁ ଚାଲିଶି ଟାକୁଆ । ତିନିପୁରୁଷ ହେବ ସମସ୍ତେ ତାକୁ ଲଗେଇବାକୁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କଲେଣି । ମାତ୍ର କୋଉଠି ହେଲେ ସେ ଆମ୍ବ ଜନ୍ମା ଗଜଉ ନାହିଁ । ଦିଅଁଙ୍କ ଗଛ

ବୁଢ଼ା ହେଇ ଆସିଲାଣି । ଗଣ୍ଡି ଭିତରକୁ ମାଟି ଖାଇ ଆସିଲାଣି । ଡାଳ ଗୁଡ଼ିଆ ହେଇଗଲାଣି । ଫଳ ଆଉ ସେତେ ବଡ ହଉ ନାହିଁ । କିନ୍ତୁ କ'ଣ ଅଭିଶାପ ପଡିଛି କେଜାଣି, ସେ ଗଛର ବଂଶ ରହୁ ନାହିଁ ଜମା ! ନିଜେ ଗନ୍ଧର୍ବ ଗୋଛେଇଡ ଡା' ଦିହକଯାକ ଚେଷ୍ଟା କରି କରି ହାରିଗଲାଣି । ଶୁଣାଯାଏ ସେ ପାଞ୍ଚଥର ମହାଦେବଙ୍କୁ ଜଳଶାୟୀ କରି, ମାସ ମାସ ହବିଷ୍ୟ କରି, ବ୍ରାହ୍ମଣଙ୍କ ହାତରେ ପୁତ୍ରେଷ୍ଟି କରି କରି ହାରିଯାଇଛି – କୌଣସି ଟାକୁଆରୁ ଗଜାଟିଏ ବାହାରିବାର ଏଯାଏ କେହି ଦେଖି ନାହାନ୍ତି ।

ନୂଆ ଆସୁଥିବା ବାବୁମାନେ ଏକଥା ଶୁଣି ଠୋ ଠୋ ହସିଲେ । ଜଣେ କେତେ ଟାଣପଣ କରି କହିଲା ଯେ, ସେ ଶୁଖିଲା ଗଛକୁ ଜୀଅାଁଇଦେବା ବିଦ୍ୟା ଜାଣେ ! ସେ ଗୋଟାଏ ପାଞ୍ଚହାତ ଆକ୍ରାନ୍ତ ଖାତ ଖୋଳେଇଲା । କେତେ ପ୍ରକାର କ'ଣ ଖତ ମିଶେଇଲା । ଫିତାରେ ମାପି ଟାକୁଆକୁ ପୋତିଲା । ପାଣି ନିଜ ହାତରେ ଘଣ୍ଟା ଦେଖି ଗଣି ଗଣି ଡବାରେ ଢାଳିଲା । ମାସେ ଗଲା ଉତ୍ତାରୁ ନିରାଶ ହେଇ ରାଗିମାଗି, ମାଟି ଆଡେଇ ଟାକୁଆକୁ କାଢିଦେଲା । କଳା ଶୁକୁଟା ମଲା ଟାକୁଆଟାଏ ! ଡା' ଭିତରେ କୋଇଲି କଳା କଟକଟ ହେଇ ଫିମ୍ପି ମାରିଯାଇଥାଏ ।

ତା'ହେଲେ ଏ ଆମ୍ବ ଆଉ ହବ ନାହିଁ ! ସମସ୍ତଙ୍କର ମନରେ ଆଶଙ୍କା ଯେ, ଗଛ ମରିଆସିଲାଣି । ଏଣିକି ଆଉ ଫଳ ବି ହେବ ନାହିଁ । ଦିଅଁଙ୍କ ଆମ୍ବ ତିନିପୁରୁଷ ପର୍ଯ୍ୟନ୍ତ ଯାହା ଏ ଗାଁର ସମ୍ପଦ ହେଇ ଆସିଥିଲା ସେ ଖାଲି ସ୍ୱପ୍ନ ହେଇ ରହିଯିବ । ଏବର ପିଲା ଭିତରୁ କେହି ଆଜିକୁ ଆଉ ଚାରିକୋଡି ବର୍ଷ ପରେ ତା' ଅଣନାତିମାନଙ୍କୁ ଖାଲି କାହାଣୀ କହିବାକୁ ରହିଯିବ ।

ଚନ୍ଦିନୀ ଉପରେ ଏଭଳି କଥା ହେଉଥିଲାବେଳେ ଦରବୁଢ଼ାମାନେ ଥରେ ଦେଖିଲେ, ଗନ୍ଧର୍ବ ଅଜା କୁଆଡୁ ଠୁକୁରୁଠୁକୁରୁ ଚାଲି ଚାଲି ଆସୁଛି । ତା'ଠୁ ସାତ ସାନ ସବୁ ବାଡିଧରି ଲଇଁଗଲେଣି । ସନେଇ ମା' ଡା' ଝିଅପରି ହବ । ଡା' ନାକ ଘୁଷୁରିଲାଣି ତଳେ । ମାତ୍ର ଗନ୍ଧର୍ବଅଜା ସେମିତି କାଠିପରି ସଳଖ ରହିଛି । ପାଚିଲା ବୁଢ଼ାଟିଏ–ଅସୁମାରି ବୟସ । ଦିଅଁଙ୍କ ଆମ୍ବଗଛଠୁ ଆଉରି ସାତବର୍ଷ ବଡ ।

ସେମିତି ଠୁକୁଠୁକୁ ହେଇ ସେ ଚାଲିଯାଉଥାଏ । ୟାଙ୍କ ଭିତରୁ ଜଣେ କହିଲା, "ବୁଝିଲ ଭାଇ, ଏଇ ବୁଢ଼ାଟି ଜାଣ ଆମ ଗାଁର ଶିରୀ ! ତା'ରି ଯୋଗୁ ଆମର ସବୁ ବଡତି । କେବେ ଅପାଳକ ନାହିଁ । କେବେ ଧୋଇଆ ନାହିଁ । କାହାରି ଅମାର ଖାଲି ନାହିଁ । ଏଇ ଜାଣ ଚାରି ଧର୍ମକୁ ଜଗି ରହିଛି – ଏ ଦିଅଁଙ୍କ ଆମ୍ବଗଛ ପରି, ନଇଲେ ଏବର ଉଦ୍‌ବାର୍ଯ୍ୟା ଟୋକା ଯାହା ହେଲେଣି ଏ ଗାଁର ଆଉ ଭଲ ଗତି ନାହିଁ ।"

"ଆଉ ମନେ ରଖିଥା – ମୁଁ କହିଦେଉଛି, ଯୋଉଦିନ ଏ ବୁଢ଼ା ଆଖି ବୁଜିଦେବ, ସେଦିନ ଶିରୀ ତୁଟିଯିବ ଗାଁର । ସେଇଦିନ ଏ ସତ୍ୟ ଆମ୍ବ ମଧ ମରିଯିବ ।"

କେମିତି ଗୋଟାଏ ଶିରିଶିରିଆ ସ୍ୱରରେ ସେ ଏଇ କଥାଟା କହିଲା କେଜାଣି, ଆମ୍ବଗଛ ମୂଳେ ସମସ୍ତେ ଶୀତେଇଗଲେ । ଡାଙ୍କୁ ଲାଗିଲା, ଗଛ ଶୀତେଇ ଗଲା । ମାଙ୍କଡାପଥରର ଦେହ

ସାରା କଣ୍ଠା କଣ୍ଠା ମାରିଗଲା ।

ଇସ୍, ସତେ ତ ! ଗନ୍ଧର୍ବ ଅଜା ନିଶ୍ଚେ ଚାଲିଯିବ । ବୁଢାର ବି ବଂଶରେ କେହି ନାହିଁ । ତିରିଶିକୋଶ ଦୂରରେ ଗୋଟିଏ ବୋଲି ଝିଅ ନିଅଁଶୀ ହେଇ ମରିଗଲା । ଏ ଗଛ ଯେମିତି, ଗନ୍ଧର୍ବ ସେମିତି ! ଏ ଖାଲି ମହାପୁରୁଷ ଆଜ୍ଞା ପାଳି ଫଳଗଣ୍ଡେ ଦଉଚି ସିନା, ଯା'ର ବି ଏଠି ଚେର ମଡେଇବାକୁ ମନ ନାହିଁ । ଦି'ଜଣଙ୍କର ଗୋଟାଏ ଆତ୍ମା ହେଇଥିବ ପରା !

ପାଞ୍ଚ ସାତଜଣ ଖସିଲା ବଅସର ଦରବୁଢା ଝିମି ଖାଇଗଲା ପରି ବସିଥା'ନ୍ତି । ତାଙ୍କୁ ଲାଗୁଥାଏ ସତେ ବା ବିପତ୍ତି ପଡିଯିବ ! ଏତିକିବେଳେ ଭଗିଆର ବଡପୁଅ ବାଙ୍କ ଆସି ପହଞ୍ଚିଲା ତା' ବାପକୁ ଡାକିବାକୁ । ତା' ଝିଅ ଘରକୁ ନୂଆ ହେଇ ସାବିତ୍ରୀ ବେଭାର ସଜଡା ହେବ । ବାପକୁ ନ ଦେଖେଇଲେ କେମିତି ହେବ ! ପଣସ, ଆମ୍ବ, ତାଳସଜ, ମୁଗ, ଖଜୁରି, କେନ୍ଦୁ – ସବୁ ସଜ ହେଇଚି । କାଚ, ସିନ୍ଦୂର, ଶାଢୀ, ଚୂଡୀ – ଖାଲି ବୁଢା ଟିକିଏ ଦେଖି ଦେଇ ହସିଦେଇ ହଁ କରିଦେଲେ ହେଲା ।

ଏ ବୁଢାଗୁଡିକୁ ଏମିତି ଏଇ ଗଛମୂଳେ ଦେଖିଲେ ବାଙ୍କ, ଦାମିଆ, କାଳିଆମାନଙ୍କୁ ଭାରି ଦମ୍ଭ ଲାଗେ । ସେମାନେ ସବୁ ଗୋଛା ଗୋଛା ପୁଅଝିଅଙ୍କର ବାପ । ତଥାପି ପୁରୁଣା ତାଳପତ୍ର ଛତା ପରି ସେମାନଙ୍କୁ ଖରା ବର୍ଷାରୁ ଘୋଡେଇ ରଖିଚନ୍ତି ଏଇ ବୁଢାବାପାଗୁଡାକ । ସେମାନଙ୍କର କେତେଜଣଙ୍କର ପୁଅ କଲେଜରେ ପଢିଲେଣି । ସେଗୁଡାକ ବାଳୁଙ୍ଗା । ଧାନବିକା ଟଙ୍କାରେ ହରରଙ୍ଗିଆ ଟାଉନିଆ ଜାମା ପିନ୍ଧି ଆସୁଛନ୍ତି । ତାଙ୍କ ଚେହେରା, ଢଙ୍ଗଢାଙ୍ଗ, କଥାବାର୍ତ୍ତା ଦେଖି ଏମାନେ ସିନା ଦି'ପଦ ଗାଳିଦେବେ, ମାତ୍ର ସେ ବୁଢାମାନେ ତାଙ୍କୁ ସାଉଁଳିବେ । ତାଙ୍କ ନୁଖୁରା ଝୁମ୍ପୁରା ମୁଣ୍ଡକୁ ଆଉଁସିବେ । ଅଜା ନାତି ରହସ୍ୟରେ ଯା'ଙ୍କୁ ଆଉ କିଛି ବୁଝାପଡେ ନାହିଁ । ଏମାନେ ଖାଲି ଅଭିମାନରେ ବେଳେବେଳେ କହନ୍ତି, "ବୁଝିଲ ବାପା, ଏଗୁଡାକୁ ତେମେ ଏମିତି ମୁହଁ ବଢେଇ ଦଉଚ ! ଏମାନେ ଫେର୍ ଏ ଗାଁକୁ ସମ୍ଭାଳିବେଟି !" ସେଥିରୁ ବୁଢା ବାପଟାଏ କହିବ, "ଆରେ ଯାଉନୁ, ତୁ କୋଉ କାଳେ ଏମିତି ଜାଣିବାର ହେଇଗଲୁ ବା ? ମୁଁ ତୋତେ ଦେଖିନାଇଁ ! ଆରେ ବେଳ ପଡିଲେ ସବୁ ହେଇଯିବ ।" ନାତି ଟୋକା ସବୁ ଭିତରେ ଉଲୁସି ଉଠନ୍ତି ।

ସେଇ ବୁଢା ମେଳରେ ବାଙ୍କ ଯାଇ ତା' ବାପ ଭଗିଆକୁ ଘରକୁ ଡାକିଲା । କେହି ଉତ୍ତର ଦେଲେ ନାହିଁ । ଭଗିଆ ମଧ୍ୟ ନିଜ ଆଣ୍ଠୁ ଉପରେ ଥୋଡି ଥୋଇ ଚିନ୍ତିତ ହେଲାପରି ବସିଥାଏ ।

ଜଣଏ କହିଲା, "ଆରେ ବାଙ୍କ, ଏ ଦିଅଁଙ୍କ ଆମ୍ବଗଛଟା ମରି ଆସୁଛି, ତୋତେ ଦିଶୁଛି ନା ନାହିଁ !"

"ଅସୁମାରି କାଳର ଗଛ ! ସେ କ'ଣ ଆଉ ସଦାବେଳେ ଭେଣ୍ଡିଆ ହେଇ ରହିଥାନ୍ତା ନା କ'ଣ ?"

"ଆରେ ସେ କଥା ନୁହେଁ – ଏ ପାଞ୍ଚପୁରୁଷୀ ଗଛ ଗଲେ ତୋ' ଗାଁରେ ଆଉ ଲକ୍ଷ୍ମୀ ରହିବେଟି ?"

ବାଙ୍କ ବୁଝିଲା । କହିଲା, "କ'ଣ ଆଉ କରିବା କକା ! ଯୋଉ ମହାପୁରୁଷ ଯାକୁ ଦେଇଥିଲେ, ତାଙ୍କ ଇଚ୍ଛା ତ ସେଇଆ ! ଆମେ କ'ଣ ଉଣା ପରିଶ୍ରମ କଲେଣି ? ହେଇଥିଲେ ଏ ପଚିଶ ଖଣ୍ଡ ଗାଁରେ ଏଇ ଆମ୍ବର ବଣ ହେଇ ସାରନ୍ତାଣି ! ମାତ୍ର ଯାର ଜମା ଜୀଅନ୍ତା ମଞ୍ଜି ନାହିଁ । କ'ଣ କରିବା... ଏ ଅଣପୁରୁଷିଆ ଗଛ, ଯାର ପିଲା ହେବେ ନାହିଁ ।"

ସମସ୍ତେ ତୁନିପଡିଗଲେ । ଭାଇ ସେ ମେଳରୁ ନିଃଶବ୍ଦରେ ଉଠିଗଲା, ତା' ନାତୁଣୀର ସାବିତ୍ରୀ ଭାର ସଜଡା ଦେଖିବାକୁ । ଏ ବାଙ୍କର କ'ଣ ବୁଦ୍ଧି ହେଲାଣି ଯେ ସବୁ ବୁଝି ବିଗରି କରିବାକୁ ! କ'ଣଟାଏ ଏପାଖ ସେପାଖ କରିଦେଇଥିବ ନିଶ୍ଚେ !

ଗନ୍ଧର୍ବ ବୁଢାକୁ ସେଦିନ ଭାତ ପଠେଇବା ପାଳି ଭାଇଗର । ବୁଢାକୁ କୋଡିଏ ବର୍ଷ କାଳ ଗାଁବାଲା ପାଳିକରି ପୋଷିଛନ୍ତି । ତା' ଘରେ ଚୂଲି ଲାଗେ ନାହିଁ । ତା'ର ଆଉ କେହି ନାହାନ୍ତି । ହେଲେ ଗାଁରେ ମୁଣ୍ଡ ଧରନ୍ତା ପଣିଗୋସେଇଁ ବାପ ସେ ସମସ୍ତଙ୍କର । ଜଣ ପିଛା ବକତେ ତାକୁ ଖାଇବାକୁ ଦେଲେ ଏବେ ତିନିମାସରେ ଥରେ ପାଳି ପଡେ । ସମସ୍ତଙ୍କୁ ଭାରି ଖୁସି ଲାଗେ ବୁଢା ପାଇଁ ହଳ ଲେଉଟାଣି ଖାଇବାକୁ ପଠାଇ ଦେବା ପାଇଁ । ସେଦିନ ସେ ଘରେ ଗୋଟାଏ ଉତ୍ସବ ପରି ଲାଗେ । ଭୋଗଥାଳି ନେଲା ପରି କଦଳୀପତ୍ର ଘୋଡେଇ ଭାତ, ଡାଲମା, ଭଜା, ବେସର ନିଆହୁଏ । ବୁଢା ଢେର୍‌ଦିନ ହେଲା ଆଇଁଷ ଛାଡି ସାରିଲାଣି । ଆଗ କୁଆଡେ ଶୁଖୁଆ ନ ହେଲେ ଭାତ ମୂଳେ ବସୁ ନଥିଲା ।

ସେଦିନ ସକାଳୁ ଭେଣ୍ଡିଆ ଟୋକା ପୁଞ୍ଜାଏ ମିଶି ବୁଢାର ଏକବଖୁରି କୁଡିଆଘର ନଡା ବଦଳ କରିଦେଇଥା'ନ୍ତି । ଭିତର ଝଡାଝଡି କରି ସଫା କରିଦେଇଥା'ନ୍ତି । ଗନ୍ଧର୍ବ ଗୋଛେଇତଙ୍କ ଆଖିରେ ସମସ୍ତେ ପିଲା – ତା' ନିଜର ପଣନାତି ଅଣନାତି । ସେ ନିଜେ ତାଳଗଛଠୁ ଆହୁରି ଉଚ୍ଚରୁ ଡାଳ ମେଲେଇ ଠିଆ ହେଇଚି । ଏମାନେ ସମସ୍ତେ ତା' ଛାଇରେ ଆଶ୍ରା ନେଇ ବଢୁଛନ୍ତି ।

କେହି ଗାଁକୁ ପଶିଗଲେ ଆଗ ବୁଢା ପାଖରେ ପହଞ୍ଚେ । ସେଇଠୁ ସାଉକାର ନ ମିଳିଲେ ନଈବନ୍ଧ ପଡିପାରେ ନାହିଁ । ଧାନ ବିଲରେ ଓଷୁଅ ଛିଞ୍ଚା ଯାଇପାରେ ନାହିଁ, ଗୋବର କୁଣ୍ଡରୁ ନଳଚୂଲି ଜଳାଯାଇ ପାରେନାହିଁ ।

ବୁଢା ଦେଖିବାରେ ଗାଁର ପନ୍ଦରଘର ଶାଖା ମେଲି ଏବେ ଦେଢଶ' ଘର ବସ୍ତି ହେଲାଣି । ତା'ର ନିଜର ଯେଉଁ ବଖୁରିଏ ଘରକୁ ସେଇ ବଖୁରିଏ ଘର, ଆଉ କିଛି ନାହିଁ । ସେ ତା' କଇଠମୂଳ କିଆରି ଖଣ୍ଡ ମଧ କୋଡିଏବର୍ଷ ତଳେ ବାଙ୍କଚୂଳ ମାଧବଙ୍କୁ ଲେଖିଦେଲା । ସେଇବର୍ଷ ବୁଢୀର କାଳ ! ତା'ର ଅସ୍ଥି ବିସର୍ଜି ଆସିଲା ଉତାରୁ ସବୁ ବିସର୍ଜି ଦେଲା । ଗାଁବାଲା ତାକୁ ଆଜଯାଏ ରଖିଛନ୍ତି ବୋଲି ନ ହେଲେ ଯୁଆଡେ ମନ ସେଆଡେ ସେ ବୋହିଯାଆନ୍ତାଣି । ହେଲେ ଗାଁଟାକୁ ଆପଣାର ବୋଲି, ଆଉ କେହି ତା'ଭଳି ମମତା ଦେଇ ଭାବି ନାହିଁ । ଆମ୍ବଗଛଟାକୁ ମହାପୁରୁଷ ସାଙ୍ଗରେ ଯୋଡି ଆଉ କେହି ତା'ଭଳି ଅନୁଭବି ପାରି ନାହିଁ ।

ଭାଇଗ ଘରୁ ଗନ୍ଧର୍ବ ବୁଢାର ପଡିଅନ୍ନ ଆସିଲାବେଳକୁ ଦି'ପହର ଗଡିଯାଇଥାଏ । ଆମ୍ବଗଛ

ମୂଳରୁ ବାକି ବୁଢାଯାକ ଯାଇ ପହଞ୍ଚିଲେ । ମନ – କ'ଣ ଟିକିଏ ସେ ପୁରାତନ ମଣିଷଟିର ସେବା କରିଦିଅନ୍ତେ । ମାତ୍ର ଗନ୍ଧର୍ବ ଗୋଛେଇଟ ସମସ୍ତଙ୍କଠୁ ବେଶି ଚେଙ୍ଗା । ଖିଆପିଆ ସାରି, ହରିତା ଖଣ୍ଡେ ପାଟିରେ ପକେଇ ସେ ପାଟିଲାପଟା ଟେକି ଏମାନଙ୍କୁ ଚାହିଁ ମୁରୁକି ମାରିଲା ।

"କିରେ ପିଲେ, କୁଆଡେ ଟିକିଏ ବାହାରି ଆସିଲ ?" – ଏତିକିରେ ପାକୁଆପାଟିଆ ପାକଲାମୁଣ୍ଡିଆ ବୁଢାଯାକ ସତକୁ ସତ ପିଲାଙ୍କ ପରି ଗୋଳେଇ ପୋଳେଇ ହେଲେ – ବୁଢାର ଖଟ ପାଖରେ ପାଣ୍ଡିଆ ପକେଇ ବସିଗଲେ । ସେଥିରୁ ଗୋଟାଏ ଗନ୍ଧର୍ବର ସରୁ ସରୁ କାଠପରି ଗୋଡ ଯୋଡିକୁ ଟିକିଏ ମୁଠା ମୁଠା କରିଦେଲା ।

"ଆଚ୍ଛା ମଉସା, ଏ ବର୍ଷ ଦିଅଁଙ୍କ ଗଛରେ ଜମା ଅଠେଇଶଟା ଆମ୍ବ ହେଇଚି । ସେତେ ବଡ ବଡ ହେଇ ନାଇଁ । ଏଥର କ'ଣ ବାଙ୍କଚୂଳଙ୍କୁ ସବୁତକ ପୂଜା କରିଦେଲେ ହୁଅନ୍ତା ନାହିଁ ?"

"କିରେ, କିରେ, ଏମିତି କ'ଣ କହୁଚୁ ? ଦେଖୁଚୁ କ'ଣ, କହୁଚୁ କ'ଣ ? ସେ ପରା ଧର୍ମକୁ ଜଗି ଫଳୁଛି । ପଚିଶିଖଣ୍ଡ ଗାଁର ଦେବଦେବୀଙ୍କୁ ଦେଇଦେଲେ ତିନୋଟି ଆମ୍ବ ବାଙ୍କଚୂଳଙ୍କ ପାଇଁ ରହୁଛି । ଆମର ଧର୍ମ ଏ ବର୍ଷ ସେତିକି ଆଉ ଅଧିକ ଲୋଭ କର ନାହିଁ – ଲୋଭ କଲେ ବିପତି ପଡିଯିବଟି ।"

"ହେଲେ ମଉସା, ଏମିତି ଏମିତି ହେଇତ ଏ ଗଛ ମରିଯିବ । ମରି ଆସିଲାଣି । ଐଶାନ୍ୟ କଓର ସେ ଡାଳଟା କେମିତି ଶୁଖିଗଲାଣି ଦେଖିଥିବ ।"

"ବୁଢାଗଛ, ଏଣିକି ତା' ଅଙ୍ଗ ଅଙ୍ଗ ସବୁ ମରିଆସିବ । ଶିଖଆଡୁ ମଉଳି ଆସିବ । ଆକାଶଆଡୁ ଅପସରି ଆସିବ । ହେଲେ ମାଟି ଭିତର ଚେର ନିର୍ଜୀବ ହେବାଯାଏଁ ପ୍ରାଣ ଛାଡିବ ନାହିଁ । ମୋର ହେଇ ଦେଖୁନ, ହାତଗୋଡ ଗୁମ ସବୁ ସାଙ୍କୁଡି ଗଲାଣି, ମରିଆସିଲାଣି; ମାତ୍ର ଏ ଭିତର ନାଡରୁ ଜୀଅ ଛାଡିନାହିଁ । ସେଇଟା ହେଇଗଲେ ଏ ଗଛ ମଧ ଲୋଟିପଡିବ ।"

"ଜାଇଁଲ ମଉସା, ଏଥିରୁ ଗୁଡେ ଅଲକ୍ଷଣିଆ କଥା କାହିଁକି ତୁଣ୍ଡରେ ଧରୁଛ କହିଲ! ତେମେ ଚଳନ୍ତି ପ୍ରତିମା । ଏ ଗାଁ ଦାଣ୍ଡରେ ଚଳପ୍ରଚଳ ହଉଚ ବୋଲି ଚାରି ଧର୍ମକୁ ଜଗି ଇନ୍ଦ୍ର ପାଳକ କରୁଛି । ନ ହେଲେ କେତେ ଗାଁ ଉଜୁଡିଗଲାଣି, ଏଇଟା କ'ଣ ଥାଆନ୍ତା ? କ'ଣଟାଏ ଆମକୁ ଆଡବାଡ ହେଇ ସାହାପକ୍ଷ ଅଛି ବୋଲି ନା !"

"ସେଇରେ ବାପ, ସେଇ ଯେଉଁ ମହାପୁରୁଷ ଆସିଥିଲେ, ସେଇ ଜଗିଛନ୍ତି । ସେଇ ଏଇ ଗଛ ଉପରେ ଜଗିଛନ୍ତି । ସନ୍ନ୍ୟାସୀ ଗଛ । ଯାର ପିଲା କୁଟୁମ୍ବ କେମିତି ଆଉ ରହନ୍ତେ ? ଆଉରି ଜଣେ ସେମିତି ଏକାକୀ ସନ୍ନ୍ୟାସୀର ଆଶ୍ରା ପାଇଲେ ପୁଣି ଗୋଟେ ଗଛ ହୁଅନ୍ତା । ମୁଁ କେତେଦିନ ହେଲା ହେଜୁଚି..."

ବୁଢାର ସର ନରମିଗଲା । ଆଖି ବୁଜି ହେଇ ଆସିଲା । ଏମାନେ କାନେଇଲେ ।

"ହେଜିଚି... ଗଛରୁ ଫଳ ହବ, ଅଥଚ ଫଳରୁ ଗଛ ହେବ ନାହିଁ, ଏ କେମିତି ସୃଷ୍ଟିଛଡା କଥା !... ହବ, ଗଛଟାଏ ହବ ଯେ, ସେଥିପାଇଁ ମଣିଷଟାଏ ଯିବାକୁ ହବ..."

କିଛି ସମୟ ନୀରବ ରହିବା ପରେ ବୁଢ଼ା ଘୁଙ୍ଗୁଡ଼ି ମାରି ଶୋଇଗଲା – ଏମାନେ ଆସ୍ତେ ଉଠି ଚାଲିଗଲେ ।

ସାବିତ୍ରୀ ଆଉ ସପ୍ତାଏ ରହିଲା । ଆଜି ଭଲ ଦିନ । ଆମ୍ବ ତୋଳା ହବ । ପାଳ ମଡେଇ ରଖିଦେଲେ ସାତଦିନ ଭିତରେ ପାଚି ମହମହ ବାସିବ । ଅପୂର୍ବ ନାହିଁ-ନଥିବା ଆମ୍ବ ! ଦୁଇକିଲୋ ଅଢ଼େଇକିଲୋ ଲେଖାଁ ଓଜନ । ଆଗ କୁଆଡେ ଆହୁରି ବଡ ହଉଥିଲା – ସେସବୁ ଗଛର ଭେଣ୍ଡିଆ ସମୟ କଥା – ଗନ୍ଧର୍ବ ବୁଢ଼ାର ଭେଣ୍ଡିଆ ସମୟ କଥା ।

କଥା ବ୍ୟାପିଗଲା । ଓପରଓଳି ସୂର୍ଯ୍ୟ ମହଳ ପଡିଆସିଲାବେଳକୁ ଗାଁର ସମସ୍ତେ ଆସି ଚାନ୍ଦିନୀକୁ ଘେରିଗଲେ । ଗନ୍ଧର୍ବ ବୁଢ଼ା ଗୋଟିଏ କୋମରେ ଗୋଡ ଓହଳେଇ ବସି ସମସ୍ତଙ୍କୁ ଚାହିଁଥାଏ । ମୃଦୁମୃଦୁ ହସୁଥାଏ । ମନେହେଉଥାଏ ଏ ଚାନ୍ଦିନୀ ତା'ର – ଏ ଫଳ ତାର । ଏ ଗଛ ସେ ନିଜେ । ଏ ଗାଁ, ଏଠି ହୋଇଥିବା ପିଲା ବୁଢ଼ା ମାଇପୀ ମରଦ ସମସ୍ତେ ତା' ଫଳର ଚାରା । ବଢ଼ୁଛନ୍ତି, ଫଳୁଛନ୍ତି – ଲଇଁଯାଉଛନ୍ତି ।

ତିନିଚାରିଜଣ ଭେଣ୍ଡିଆ ଲୁଗା ପାଇକଚ୍ଛା ମାରି ଉଠିଲେ । ସରୁ ସରୁ ବାଉଁଶ ଅଗରେ ଛୋଟ ବାଙ୍କୁଲି ଦା' ଚୌରସ ଛଣ ଦୌଡିରେ ବନ୍ଧା ହେଇଥାଏ । ତା' ତଳକୁ ଓସାରମୁହାଁ ଚାଉଳିଆ ଖଡିକାରେ ବୁଣା ହୋଇଥିବା ନୂଆ ବେତୁଲି ଶିକା ଓହଳିଲା ପରି ଓହଳିଥାଏ । ଦା'ରେ ଆମ୍ବ ମୁଣ୍ଡି ଛିଣ୍ଡିଗଲେ ଆମ୍ବ ବେତୁଲିରେ ଖସି ରହିଯିବ ।

ଚାରିଜଣଯାକ ଆମ୍ବଗଛକୁ ତିନିଥର ଲେଖା ଛୁଇଁ ମୁଣ୍ଡରେ ମାରିଲେ । ଅତି ଆପଣାର ମଣିଷ ପରି ତାକୁ କୁଣ୍ଢେଇ ଧରି ଉହୁଙ୍କି ହେଲେ ଉପରକୁ । ଚାହୁଁ ଚାହୁଁ ଚାରିଜଣଯାକ ଶାଖାରୁ ଶାଖାକୁ ଖେପିଗଲେ ।

ତଳେ ପିଲାଏ କାଲୁରୁକାଲୁରୁ ହଉଥା'ନ୍ତି । ସମସ୍ତଙ୍କ ଆଖି ଗଛ ଉପରେ, ଆମ୍ବ ଉପରେ, ଖୁଣ୍ଟୁଣି ତାଙ୍କ ଉପରେ ।

ଗନ୍ଧର୍ବ ବେକ ଭାଙ୍ଗି ଚାହିଁଥାଏ ଉପରକୁ । କହିଲା, "ହଁ ସେଇଟାରୁ ଆରମ୍ଭ କର । ସେଇଟା ସବୁଠୁ ବଡ – ତାକୁ ଆଗ ତୋ'ଳ ।"

ସେଇ ଡାଳରେ ଚଢ଼ିଥାଚେ ସିନ୍ଧୁରା-ପୁଅ ଭରତ । ଭାରି ଖେଳୁଆଡ ଟୋକା । ସେ ଶିଖ ଡାଳରେ ହାତଛାଡି ଠିଆ ହେଇଯିବାରୁ ତଳେ ଥାଇ ସମସ୍ତଙ୍କ ପାଦତଳିପା ଶିର୍ ଶିର୍ ହେଇଗଲା । କିଏ ଜଣେ ମୁରବୀପଣରେ ତିଆରିଲା, "ଆରେ ଟୋକା, ହେମିତି ନିଆଶ୍ରା ଠିଆହନା । ଧରିପକା ଡାଳଟାକୁ ।"

ଭରତ ଶୁଣି ନ ଶୁଣିଲା ପରି ଖୁଣ୍ଟୁଣି ବଢ଼େଇଲା ଆମ୍ବ ଆଡକୁ । ନ ଅଣ୍ଟିଲାରୁ ଓହଟିହେଲା । ଆମ୍ବ ଛୁଇଁ ହେଉଥାଏ – ଘୁଞ୍ଚିଯାଉଥାଏ । ମଝିରେ ସରୁ ଡାଳଟାଏ ଆସି ବାଟ ରୋଧିଦେଉଥାଏ । ବହୁତ ଖେଳିଲା ସେ ଆମ୍ବ । କାହାରି ନିଃଶ୍ୱାସ ଆଉ ସଳଖ ଚାଲୁ ନ ଥାଏ । ଖୁଣ୍ଟୁଣି ମୋଡି ହେଲାବେଳକୁ ତଳେ ଠିଆ ହୋଇ କେତେଜଣ ସେଇମିତି ମୋଡି ହେଇଯାଉଥା'ନ୍ତି । ନିସ୍ତବ୍ଧ

ହେଇ ରହିଥାଏ ସବୁ । ଆଉ ତିନିଜଣ ଖୁଣ୍ଟୁଣୀ ଧରି ଅନ୍ୟ ଡାଳରୁ ରହିଁ ରହିଥା'ନ୍ତି । ଭରତ ଆକୁଡ଼ି ଲମ୍ବେଇ ରହିଥାଏ ସବୁଠାରୁ ବଡ ଆମ୍ବଟିକୁ । ଟିଖ ଡାଳ ଉପରେ ଟିପେଇ ଠିଆ ହୋଇଥାଏ ଖେଳୁଆଡ ଭେଣ୍ଡିଆ । ଅଣାୟତରେ ଲୋକେ କହିପକଉଥା'ନ୍ତି – ଆଉ ଟିକିଏ ରହିଲା । ବାଁକୁ – ଡାହାଣକୁ – ହଁ – ଆଉ, ଆଉ ଟିକିଏ । ଭରତ ଆଖିରେ ଆମ୍ବ ଦୋହଲୁଥାଏ । ସେ ଠିଆହେବା ଡାଳ ଦୋହଲୁଥାଏ ପବନରେ । ହେଇ ବୋଧେ ଲାଗିଗଲା ଆକୁଡ଼ି !

ତଳୁ ଗନ୍ଧର୍ବ ଡାକପକେଇଲା, "ରହିଯା ଭରତ ! ସମ୍ଭାଳିଯା !" ସମସ୍ତେ ଦେଖିଲେ ଭରତ ଟଳମଳ ହେଇ ବସିପଡ଼ିଲା ଡାଳ ଉପରେ । ସମ୍ଭାଳିଗଲା । ସମସ୍ତଙ୍କ ଆଖି ଆମ୍ବରେ । ବୁଢା ଗନ୍ଧର୍ବର ଆଖି ଭରତ ଉପରେ । "ଥାଉ ପୁଅ, ସେ ଖୁଣ୍ଟୁଣୀ ଅଣ୍ଟିବ ନାହିଁ । ତାକୁ ପକେଇଦେ, ଆଉ ଲମ୍ବା ଖଣ୍ଡେ ଧଅ । ଉପରେ ଉପରେ ଖୁଣ୍ଟୁଣୀ ବଦଳ ହେଇଗଲା । ଭରତ ତାକୁ ଧରି ଠିଆ ହେଉ ହେଉ ଆମ୍ବର ଡେମ୍ଫରେ ଦା' ଲଗେଇଦେଲା । ଖସିପଡ଼ିଲା ଆମ୍ବ ବେତୁଳି ଭିତରେ । ନଇଁଗଲା ଖୁଣ୍ଟୁଣୀ, ଓଟାରି ହେଇଗଲା ଭରତ । ବାଁ ହାତରେ ଡାଳ ଧରି ସମ୍ଭାଳିଗଲା ।"

ହୁରିପଡ଼ିଲା ତଳେ । ସମସ୍ତେ ଖୁସି । ଏ ବର୍ଷର ପ୍ରଥମ ଆମ୍ବ ତୋଳାହେଲା । ତଳ ଡାଳକୁ ଓହ୍ଲେଇଆସି ଖୁଣ୍ଟୁଣୀ ବଢେଇଦେଲା ଭରତ । ଆମ୍ବଟାକୁ ବାଙ୍କ ଟୋକେଇରୁ ଦୁଇହାତରେ କାଢି ଦେଖାଇଲା ସମସ୍ତଙ୍କୁ । ଇସ୍ ତଳକୁ ଆସିଲାରୁ ତା' ଆକାର ଜଣାଗଲା । କେଡେ ବଡ ମୂର୍ତ୍ତି ସେ ହେଇଚି ! ବାଙ୍କ ଆମ୍ବଟାକୁ ଆଣି ଗନ୍ଧର୍ବ ହାତକୁ ଦେଇଦେଲା । ବୁଢା ତାକୁ କଅଁଳା ପିଲାଟିଏ ପରି ଧରି ଚନ୍ଦିନୀ ଉପରେ ଠିଆହେଇଥାଏ । ତା'ପରେ ତାକୁ ଅଲଗା ରଖି ଆମ୍ବତୋଳା ଚାଲିଲା । ଅଠେଇଶଟା ଆମ୍ବ ଗଦା ହେଇଗଲା ଚରିବୋଝ ଆମ୍ବପରି । ସବୁଯାକ ଏକାପରି ପାକଳ । ଦେହସାରା ଗିବିଗିବି, ପାଉଁଶ ଗୋଳେଇଲାପରି । ସବୁଗୁଡ଼ିକ ଗୋଟିଏ ଗୋଟିଏ ଛୋଟ ଆକାରର ମୋଟାରୋଟା ସନ୍ନ୍ୟାସୀ ପାଉଁଶ ବୋଳିହୋଇ ବସିଛନ୍ତି ଯେମିତି ।

X X X X

ସାବିତ୍ରୀ-ବ୍ରତଦିନ ସକାଳୁ ଅଦିନିଆ ମେଘ ଢେକିଥାଏ । ବର୍ଷିବ ପରା ! ପବନ ଜମା ବୋହୁ ନ ଥାଏ । ଖରା ତାପ ସେତେ ନାହିଁ, ହେଲେ ଝାଳ ଛିଡ଼ିପଡୁଥାଏ ସମସ୍ତଙ୍କ ଦିହରୁ ।

ଏ ବର୍ଷ ଗାଁ ଭାଗରେ ଜମା ତିନୋଟି ଆମ୍ବ; କିନ୍ତୁ ଉପାୟ କ'ଣ ? ଯାକୁ ତ ଆଉ ବଢେଇ ହେବ ନାହିଁ ! ଗଛର ଦୟା – ଯାହା ହେଲା ଧର୍ମକୁ ରହିଁ । ତଥାପି ସମସ୍ତଙ୍କ ମନ ଟିକିଏ ଉଣା – ଗାଁ ଗଛର ଫଳ ଗାଁରେ ରହିଥିଲେ ସମସ୍ତଙ୍କୁ ଅଣ୍ଟିଥାନ୍ତା – ସେଥିକୁ ବି ଉପାୟ ନାହିଁ । ଗନ୍ଧର୍ବ ବୁଢାକୁ ଅମାନ୍ୟ କରିବାକୁ ସାଧ ନାହିଁ । ପୁରୁଖାଲୋକେ ବିଶ୍ୱାସ କରନ୍ତି ଯେ, ବୁଢା ଯଦି ଗଛକୁ କହିଦେବ 'ଫଳ ଦେ'ନା' ଗଛ ଠପ୍‌କିନା ଫଳ ଦବା ବନ୍ଦ କରିଦବ । ଗନ୍ଧର୍ବ ବୁଢାର ଆତ୍ମା ସେ ଭିତରକୁ ପଶିଯାଇଛି । ତିନୋଟି ଆମ୍ବ ଦେଢଶ ଘର ବଣ୍ଟାହେବ – କ'ଣ ହବ !

ଆହୁରି ଗୋଟାଏ କଥା ଲୁଚି ଲୁଚି ଗାଁରେ ପ୍ରସରିଯାଇଛି । ତୋଳାହେବା ଦିନ ପଚିଶଖଣ୍ଡ ଗାଁକୁ ପଠେଇ ଦେବା ପରେ ସବା ବଡ ଆମ୍ବଟିକୁ ନିଜେ ଗନ୍ଧର୍ବ ବୁଢା ପଚେଇବାକୁ ତା' ସାଙ୍ଗରେ ଘରକୁ ନେଇଗଲା । ବଳକା ଯୋଡ଼ିଏ କେବଳ ବାଙ୍କଚୁଳ ମାଧବଙ୍କ ରୋଷଶାଳାରେ ଅଛି । ବୁଢା

କୁଆଡେ ତା' ଗାମୁଛାରେ ପାଳର ମାଣ୍ଡିଟାଏ କରି ତା' ଭିତରେ ଆମ୍ବଟାକୁ ପୂରେଇଛି । ଯେତେବେଳେ ଦେଖ, ମାଈକୁକୁଡ଼ା ଡିମ୍ବ ଉଷୁମେଇଲା ପରି ତାକୁ ପାଖରେ ଜାକି ଧରି ବସିଛି । ରାତିରେ କୋଡ଼ରେ ଧରି ଶୋଉଛି ।

ଗଜା ଟୋକାଏ କହିଲେ – ବୁଢ଼ାର ଲୋଭ ହେଇଛି – ସେ ଏକା ସେଇ ବଡ଼ ଆମ୍ବଟାକୁ ପାଚିଲେ ଖାଇବାକୁ । ତା'ର ଏତେ ଦିନର ଅରମାନ ମେଣ୍ଟାଇବାକୁ ସେ ଲୁଚେଇ କରି ସେଇଟା ଖାଇଯିବ । ସେଇଟା ତା'ଠୁ ଛଡ଼େଇ ଆଣିଲେ ହୁଅନ୍ତା ନାହିଁ!

ଆରେ, ନାଇଁ, ନାଇଁ! ଯଦି ସେକଥା ହେଇଥାଏ ବୁଢ଼ାକୁ ପ୍ରକୃତି ଛାଡ଼ିଲାଣି! ସେ ନିଜ ହାତରେ ଶହ ଶହ ଆମ୍ବ ବାଣ୍ଟିଚି । ଏଇ ଗଛକୁ ସେ ପୋଷି ଆସିଚି – କେବେ ଲୋଭ କରିନାହିଁ ନିଜ ପାଇଁ । ଯେବେ ଖାଇବ କହୁଚି – ଖାଉ । ଏତିକି ତା'ର ଶେଷ କଥା । ତାକୁ କିଛି କହ ନାହିଁ । ତା'ଠୁ ଛଡ଼େଇଲେ ନିଃଶ୍ୱାସ ପଡ଼ିଯିବ ।

ସବୁଠୁ ବୁଢ଼ାମାନେ କହିଲେ, "କଥା ଆଉ ବାଗେ ଜଣାପଡୁଛି । ଗନ୍ଧର୍ବ ବୁଢ଼ାକୁ ଆମେ ଜାଣିନାହୁଁ ? ସେ ସେଇ ଆମ୍ବଟାକୁ ଜୀବନ୍ୟାସ ଦେଉଚି – ତା' ଭିତରେ ନିଜେ ପଶୁଚି – ସେଇଟାକୁ ସେ ଶେଷକୁ ବାଙ୍କଚୁଳିଆକୁ ସମର୍ପି ଦେବ । ସେ କ'ଣ ଏମିତି ନଜାଣିବାର ହେଇଚି, ବୁଝିପାରୁ ନାହିଁ ଯେ ସେ ଆମ୍ବ ଅମୁହୁଣିଆ ପଦାର୍ଥ! ସାକ୍ଷାତ୍ ସାପ ଗରଳ! ତାକୁ କେଉଁ ହୁବରେ ସେ ଖାଇଦେବ ।"

ସାବିତ୍ରୀ-ବ୍ରତ ଦିନ ମେଘ ଟେକି ରଖିଥାଏ । ଗୁମ୍‌ଗୁମିଆ ପାଗରେ କଲବଲ ହେଉଥା'ନ୍ତି ସମସ୍ତେ । ହଠାତ୍ ହୁରିପଡ଼ିଗଲା ଯେ, ଗନ୍ଧର୍ବ ବୁଢ଼ା ନାହିଁ, କୁଆଡେ ଯିବାର କେହି ଦେଖି ନାହିଁ । ସମସ୍ତେ ଧାଇଁଲେ ତା' ଘରଆଡେ । ବାହାରୁ ଶିକୁଳି ଫିଟେଇ ଘରେ ପଶିଗଲେ । ସବୁ ସେମିତି ରହିଚି । ବୁଢ଼ା ବୋଧେ ରାତିରେ ଖଟ ଉପରେ ଶୋଇ ନାହିଁ । ଗୋଟାଏ କୋଣକୁ ପାଳ ଭର୍ତ୍ତି ହେଇଥିବା ଗାମୁଛାଟା ପଡ଼ିଛି । ତା' ଭିତରେ କିନ୍ତୁ ଆମ୍ବ ନାହିଁ ।

ତା'ହେଲେ ବୁଢ଼ା ନାହିଁ କି ଆମ୍ବ ନାହିଁ? ହୁରି ପଡ଼ିଗଲା । ଟୋକାପଣ୍ଟା ଖେଦିଗଲେ ଚତୁର୍ଦ୍ଦିଗରେ । କୁଆଡେ ଗଲା ଠାପୁଆ ବୁଢ଼ା ? କୁଆଡେ ଗଲା ସେ ବାଙ୍ଗୁରା, ଅସୁମାରି ବୟସର ଆମ୍ବଚୋର! ତାକୁ ପାଇଲେ ସେମାନେ ଲଙ୍ଗଳା କରି ପକେଇବେ । ତା' ମୁହଁରେ, ବୁକୁରେ, ଆଙ୍ଗୁଠି ସନ୍ଧାରେ ଆମ୍ବ ଦୋରୁଅ ଲାଗିଥିବା ଅବସ୍ଥାରେ ତାକୁ ସେମାନେ ଏଇ ଚନ୍ଦିନୀ ଉପରେ ବସେଇ ଗାଁବାଲାଙ୍କୁ ଦେଖେଇଦେବେ । ଜାଦୁଅ ଛିଞ୍ଚାଡ଼ିଲା ପରି ସେ ହାତ ଛିଞ୍ଚାଡୁଥିବ । ମହମହ ବାସୁଥିବା ସେ ଅପୂର୍ବ ଆମ୍ବ ଦୋରୁଅ ଖସୁ ନଥିବ ଜମା!

ଘରକଲା ମଣିଷମାନେ ଗାଁର ଏପାଖ ସେପାଖ ଖାଲି ବୁଲିଲେ । ସେଇ ସେଇ କଥା ବାରମ୍ବାର କହିଲେ – କେମିତି ବୁଢ଼ା ଉଭାନ୍ ହେଇଗଲା – ଶେଷ ଆମ୍ବଟିକୁ ଧରି ଚାଲିଗଲା କୁଆଡେ ?

ବୁଢ଼ାମାନେ ନୀରବ, ଚାହିଁଲେ ବଲବଲ ଶୂନ୍ୟକୁ । କ'ଣ ହେଇଗଲା, ସେମାନେ ଜମା ବୁଝିପାରୁ ନଥିଲେ । ଗନ୍ଧର୍ବ ବୁଢ଼ାଟା ଏମିତି କୁଆଡେ ଅନ୍ତର୍ଦ୍ଧାନ ହେଇଗଲା! ସେ ପରା ସେଦିନ

ବିଳିବିଳେଇଲା ପରି କହୁଥିଲା ଯେ, ଟାକୁଆଟାରୁ ଗଛ ନିଶ୍ଚେ ହେବ – ସେଥିପାଇଁ ମଣିଷଟାଏ ଯିବାକୁ ପଡିବ ! ଏବେ ମଣିଷଟାଏ ତ ଗଲା – ଟାକୁଆ କାହିଁ – ଗଛ କାହିଁ ?

ମାଇପେ ଝୁରିହେଲେ ବୁଢାଟିକୁ – ଆହା... ଏମିତି ଶ୍ରୀମନ୍ତ ବୁଢା ଗାଁରୁ ଚାଲିଗଲେ ! କାହିଁ କୋଉ କାଳର ବୁଢା – ଦେଖିଲେ ଆଉ ଗୋଟାଏ ଯୁଗକୁ ଦେଖିଲା ପରି ଲାଗୁଥିଲା । ସେ ଆମ୍ବ ଗଲେ ଯାଉ – ଗଛ ଥିଲେ ଆମ୍ବଟାଏ କ'ଣ ଆଉ ଫଳନ୍ତା ନାହିଁ ! ମାତ୍ର ବୁଢାଟି ଫେରିଆସନ୍ତା କି ? ସବୁ କଥାରେ କି ସୁନ୍ଦର ହସ, କି ସୁନ୍ଦର କଥା ! ସମସ୍ତଙ୍କୁ କେତେ ସ୍ନେହ କେତେ ଆପଣାର କରିନେଇଥିଲେ ସେ ଅନନ୍ତକାଳର ବୁଢା !

ଗତକାଲି ରାତିରୁ ବୁଢା କୁଆଡେ ବାହାରିଗଲା । ଗତକାଲି ରାତିରେ ସତ୍ୟବାନ୍‌କୁ ବେକରେ ଫାଶ ପକେଇ ଓଟାରି ନେଇଯାଇଥିଲା ମଇଁଷିରେ ଚଢିଥିବା ଯମରାଜ । ତାକୁ ଆରପୁରରୁ ଫେରେଇ ଆଣିଲେ ସାବିତ୍ରୀ । ମଲା ମଣିଷକୁ ଜୀଆଇଁବାରେ ସେ ଉଆଁସୀ ରାତ୍ରି – ସେହି ରାତିରେ ଜୀବନ୍ୟାସ ଦିଆହୁଏ, ଆଶୀର୍ବାଦ ଦିଆହୁଏ । ଚୂଡାନ୍ତ ପରାଜୟରୁ ଚୂଡାନ୍ତ ବିଜୟ ମିଳେ । ମୃତ୍ୟୁକୁ ଆଡେଇଦେଇ ତା' ଗର୍ଭରୁ ଜୀବନ ଗଜୁରିଆସେ ।

ଗାଁ ସାରା ହଜେଇଲା ପକେଇଲା ପରି ହେଉଥା'ନ୍ତି । ବାଙ୍କଚୁଳ ମାଧବଙ୍କ ବେଢାରେ ସମସ୍ତେ ହାଉହାଉ ହଉଥା'ନ୍ତି ସେଦିନ ଉପରଓଳି । ଲାଗୁଥାଏ ସେମାନେ ଯେମିତି କାହାକୁ ଖୋଜୁଛନ୍ତି – ପାଉନାହାନ୍ତି ମେରୁ ଖୁଣ୍ଟିଟାକୁ; ଯାହା ଚାରିଆଡେ ପୁଣି ଘେରା ଘେରା ହୋଇ ସ୍ୱାଭାବିକ ଜୀବନ ବେଙ୍ଗଳା କାଟନ୍ତା !

X X X X

ମାଳୀ ବଗିଚ୍ଚ କୂଅରୁ ପାଣି ଆଣିବାରେ ବିଳମ୍ବ ହେଉଥାଏ । ଏଣେ ସମସ୍ତେ ଜଗି ରହିଥା'ନ୍ତି । ସେ ଧାଇଁ ଧାଇଁ ଆସି ଆଖି ଟରାଟି କଣଟାଏ କାହାକୁ କହିଲା । ସେ ତିନି ଚାରିଜଣ ଧାଇଁଗଲେ ବଗିଚ୍ଚଆଡେ । ଆଉ ସମସ୍ତେ କିଛି ନ ବୁଝି ଧସିହେଇ ଠେଲାପେଲା ହେଇ ସେଇଆଡେ ଧାଇଁଲେ ।

ଦେଖାଗଲା ଗୋଟିଏ ଛୋଟିଆ ନୂଆ ଗାତ ଖୋଳାହୋଇ ମାଟି ମଡେଇ ଦିଆହେଇଚି ବଗିଚ୍ଚର ଖାଲି ଜାଗାଟାଏ । ସେଇଠି ଛୋଟ ସରୁ ଶାବଳଟିଏ ମାଟି ଲାଗି ପଡିଛି – ଆଉ କିଛି ନାହିଁ ।

ଏଇ ଗନ୍ଧର୍ବ ବୁଢାର ଶାବଳ – ସମସ୍ତେ ଚିହ୍ନିଲେ । ସମସ୍ତେ ହଁ ହଁ କଲେ । ତେଣିକି ଫାଉଁକିନା ସବୁ ବୁଝିଗଲେ ଯେ, ସେଇ ଖାତରେ ଜୀବନ୍ୟାସ ଦିଆହେଇଥିବା ଆମ୍ବ ଉପରକୁ ଡେମ୍ଫ କରି ମହାପୁରୁଷ ପୋତିଦେଇଛନ୍ତି । ଛୋଟକାଟର ସେ ଅସୁମାରି ବୟସର ମଣିଷକୁ କେହି କିଛି ପଚାରିଲେ ଉତର ମିଳିବ ନାହିଁ । ସେ ଆମ୍ବଟିକୁ ପୋତିଦେଇ ହାତ ଛିଞ୍ଚାଡି ଛିଞ୍ଚାଡି ଗୋହିରୀଆଡେ ଚାଲିଯାଇଥିବେ କେଜାଣି କୁଆଡେ । ଏ ଆମ୍ବ ନିଶ୍ଚେ ଗଛ ହେବ । ମହାପୁରୁଷ ଆମ୍ବ ଅଫଳନ୍ତି ରହେ ନାହିଁ । ଛୋଟ ବଡ ଚାରିପୁରୁଷ ନିସ୍ତବ୍ଧ ଅନେଇଁ ରହିଥା'ନ୍ତି ମାଟି ପିଣ୍ଡ ଭିତରେ ଦୁକୁଦୁକୁ ହେଉଥିବା ଦାୟିତ୍ୱକୁ ! ସେଇ ବଡ ଆଶୀର୍ବାଦ ଭାରରେ ଲଇଁପଡିଥା'ନ୍ତି ସମସ୍ତେ ।

# କୁବୁଜା

ରାୟସାହେବଙ୍କ ଉଆସରେ ସେଦିନ ସକାଳ ପହରୁ ଗହଳ ଚହଳ ଲାଗିଥାଏ । କ'ଣ ଉତ୍ସବ ହୋଇଥିବ ପରା! ଅନେକ କାଳର ପଥର ଉଆସ । ପରେ ପାଚେରି । ପୁରୁଣା ପୁରୁଣା ଅସୁମାରି ଅଗଣା । ଖୁଆଡ ଖୁଆଡ ଘର । ଦୁଇ ସାହାଲା ରୋଷଶାଳ । ଗୋଟାକରେ ମଣୋହି ରନ୍ଧାହୁଏ । ରାଧାମାଧବଙ୍କୁ ଭୋଗ ଲାଗି ହୁଏ ଘିଅ ଖେଚେଡି । ସେଇଠି ବଗଡା ହାଣ୍ଡି ମଧ ବସେ । ଘାଣ୍ଟତିଅଣ ହୁଏ । ଡାଲମା ହୁଏ । ତାକୁ ଚାକର, ନୌକର, ଡ୍ରାଇଭର, ଖାନସାମା ଖାଇଯାନ୍ତି । ଆର ରୋଷଘରେ ପଠାଣ ରୋଷେଇଆ ବାର ପ୍ରକାର ମାଉଁସ ରାନ୍ଧନ୍ତି । ବାସ୍ନା ଚହଟିଯାଏ ଯେ କାହିଁରେ କ'ଣ! ଲମ୍ବା ପଗଡିଆ ବବୁର୍ଚିମାନେ ତାକୁ ସବୁ ଉପର ମହଲାକୁ ବୁହାଇନିଅନ୍ତି ।

ଉପର ମହଲା ବା ଘଗୁମ୍ଫା । ସେଇଠି ରାତିଅଧରେ ବାଜଣା ଶୁଭେ । ଦୁମୁଦୁମୁ ହୁଏ ଉଆସ ସାରା । ଅଣ୍ଡିରା ଗର୍ଜନ ଶୁଭେ । ମାଇକିନିଆ କାନ୍ଦଣା ଶୁଭେ । ଛୋଟ ଛୋଟ ମଣିଷପିଲା ଚିର୍‌ଚିରେଇ ରଡି ଛାଡନ୍ତି । ଏମିତି କ'ଣ ସବୁ ସେ ଉପରେ ହୁଏ । ତାକୁ ତଳର ସେବାକାରୀ ଭୃତ୍ୟମାନେ ବୁଝିପାରନ୍ତି ନାହିଁ । ଯେଉଁମାନେ ଉପରକୁ ଯାଆନ୍ତି ଖଟଣି ପାଇଁ ସେମାନେ ଓହ୍ଲେଇ ଆସନ୍ତି ନିଃଶବ୍ଦରେ । ଚିତ୍ରପଟ ପରି ସେମାନେ ଚଢନ୍ତି ଏବଂ ଚିତ୍ରପଟ ପରି ଓହ୍ଲାନ୍ତି । ତାଙ୍କୁ ପଦେ ପଚାରିଦେବାକୁ କାହାରି ଯୁ' ନାହିଁ । ସେମାନେ ପଦେ କହିଦେବାକୁ ବି ତାଙ୍କର ଯୁ' ନାହିଁ ।

ତଥାପି ସେଦିନ ଜଣାପଡିଗଲା ଯେ ବହୁକାଳୁ ଆସି ନ ଥିବା ରାୟସାହେବଙ୍କର ଜଣେ କୁଟୁମ୍ବୀ କିଏ ଆସୁଛନ୍ତି – ସେଥିପାଇଁ ରାୟସାହେବ ଉତ୍ସବ କରୁଛନ୍ତି । ଆଜି ରନ୍ଧାବଢା ଦୁଇଗୁଣ । ଘରଦ୍ୱାର ସଫେଇ । ସଜବାଜ ଦୁଇଗୁଣ । ସେ ଅନୁସାରେ ସମସ୍ତଙ୍କ ପାଇଁ ରାଜମଣୋହି ମଞ୍ଜୁର ହେଇସାରିଛି । ଦିଅଁଙ୍କ ପାଇଁ ଘିଅ ଖେଚେଡି ଗଣ୍ଡେ ଓହ୍ଲେଇଦେଇ ସମସ୍ତେ ଲାଗିଯାଇଛନ୍ତି ଆର ରୋଷଶାଳାରେ । ସମସ୍ତଙ୍କ ମୁହଁରେ ହସ । ମନଖୋଲା କଥାବାର୍ତ୍ତା । କାମବେଳେ ଗୁଣୁଗୁଣୁ ଗାନ । ଚାରିଆଡେ ବାସ୍ନା । ଛନଛନ ନିର୍ମଳ ସାରା ଉଆସ ।

ତା' ନାଁ ଚତୁରୀ । ହେତୁ ହେଲା ଦିନଠାରୁ ସେ ସେଇ ଅଗଣାମାନଙ୍କରେ ବଢ଼ିଆସିଛି । ରୋଷଶାଳାରେ ବୋଲହାକ କାମ କରିଆସିଛି । ତା' ବାପ କଥା ସେ ଜାଣି ନାହିଁ । କିଏ କହୁଥିଲା ଯେ ବନ୍ଧୁକାଳୁ ସେ କୁଆଡେ ସିପାହୀ କାମରେ ଗଲା – ଆଉ ଫେରିଲା ନାହିଁ । ତା' ମା' ମଧ୍ୟ ମଲାଣି କୋଉ କାଳୁ । ସେଇ ଉଆସରେ କାମ କରି କରି ସେ ମରିଗଲା । ଚତୁରୀ ସେଇଦିନୁ ମା'ଖିଆ ବାଛୁରୀ ପରି ୟା' ଗୋଡରେ ତା' ଗୋଡରେ ଛନ୍ଦିହୁଏ । ଓଳନାଳ ହୁଏ । ରୋଷ ପିଣ୍ଡାରେ ଖାଏ, ସେଇଠି ଶୁଏ ।

ଦିନେ ନିଶୁଆ ବକ୍‌ସି ତଦାରଖ କରିବାକୁ ଆସିଥିଲେ । ପର୍ବତ ପରି ମଣିଷ । ପାନକଷା ରକ୍ତ ଦାନ୍ତ । ନିଶାଖିଆ ରଙ୍ଗ ଆଖି । ସେ ଚତୁରୀକୁ ଚାହିଁ ଗର୍ଜିଲେ । ମନେହେଲା ତାକୁ ଉଆସରୁ ତଡିଦେବେ । କିଏ ସବୁ ତା' ପକ୍ଷରୁ ଗୁହାରିଲେ – ହାଲେ, ହଜୁର, ସେ ମଣିମାଙ୍କ ଚାକର ପିଲା । ତା' ମା' ଏଇ ଖଞ୍ଜାରେ ଖଟି ଖଟି ମରିଗଲା । ୟା'ର ବାପ ନାହିଁ ହଜୁର । ସେ ଆଉ କୁଆଡେ ଯିବ ? ବକ୍ସିଙ୍କ ମନକୁ ପାଇଗଲା । ସେ ତା' ପାଇଁ କାମ ଖଞ୍ଜିଦେଲେ । ପଡି ଖଞ୍ଜି ଦେଲେ । ତା' ଉରାରୁ ସେ କେବେ ଆସନ୍ତି ଅଥବା ଯାଆନ୍ତି ଚତୁରୀ ଜାଣେ ନାହିଁ । ସେଇଦିନୁ ଚତୁରୀ ଗୋଟାଏ ବଡ ମୁଗୁନିପଥର ଶିଳା ପାଖରେ ବସି ମସଲା ପେଷୁଥାଏ । ଜିରା, ଧନିଆ, ଲଙ୍କା, ରସୁଣ, ଅଦା, ଡାଲିଚିନି, ଲବଙ୍ଗ, ଜାଇପତ୍ରି ଦୁଇଓଳି ପେଷା ଚାଲିଥାଏ ପିଣ୍ଡୁଳା । ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଚତୁରୀ ପଥର ଉପରେ ପଥର ଘଷୁଥାଏ । ଖୁଆ ପଞ୍ଜରା ବଥେଇଲେ ଅଳ୍ପ ରହିଯାଏ, ବାହୁ ଲଗେଇ କପାଳରୁ ଝାଳ ଲେସି ଆଣେ, ପୁଣି ପେଷେ । ଶିଳ ଶିଳୁପା ହିଁ ତା'ର ବାପ ମା' । ସେମିତି ପେଷିହୋଇ ସେମାନେ ତାକୁ ନିତି ଦିନ ଜନ୍ମ ଦିଅନ୍ତି । ନିତି ଦିନ ତା'ର ପତି ଅର୍ଜନ କରନ୍ତି । ସେମାନଙ୍କୁ ଧୁଆଧୋଇ କରି ଚିକ୍‌କଣ କରି ମାଜିଦେଲାବେଳେ ଚତୁରୀ ସେମାନଙ୍କ ପାଇଁ ମମତାଚ୍ଛନ୍ନ ହୋଇଯାଏ । କାହାର ଓଦା ମୁହଁ ଯତ୍ନରେ ପୋଛିନେଲା ପରି ନିତିଦିନ ତା' ଛୋଟ କାନିରେ ଶିଳାର କଳା ମଚମଚ ବୁକୁ ଶିଳପୁଆର ସର୍ବାଙ୍ଗ ରଗଡି ପୋଛିଦିଏ । ତା' ବିଣ୍ଡି ପଡିଥିବା ହାତରେ ଆସ୍ତେ ସାଉଁଳି ଆଣେ । ତା' ଆଖି ବୁଜିହୋଇଆସେ ।

ସବୁଦିନ ଶିଳ ପାଖରୁ ଉଠିଲାବେଳକୁ ସେ ତା' ଅଣ୍ଟା ସଳଖିପାରେ ନାହିଁ, ଲଇଁଲା ପରି ଚାଲେ । ପାଦଯୋଡିକ ଝିମ୍‌ଝିମ୍ ହୋଇ ଠିକଣାରେ ପଡନ୍ତି ନାହିଁ । କେତେବେଳକୁ ଯାଇ ପାଣି ମୁନ୍ଦେ ପିଇ କାନ୍ଥକୁ ଆଉଜି ବସିଗଲେ ସେ ସାଷ୍ଟମ ହୁଏ । ଏଣିକି ଏସବୁ ତା'ର ଅଭ୍ୟାସରେ ପଡିଗଲାଣି । ବୟସ ସାଙ୍ଗକୁ ବଳ ଚଢିଆସିଲାଣି । ଶିଳଶିଳପୁଆ ତାକୁ କେମିତି ଟିକିଏ ଛୋଟ ଛୋଟ ଦିଶିଲେଣି । ଏବେ ଆଉ ସେ ଛେଲିଥୋଡିଆ, ଧୋକତା ବଡ଼ଛିମିଆଁ ଧନିଆଁ ବଟାକୁ ଟିପରେ ପରଖ କରିଦେଇ ଆଉ ଥରେ ଚିକଣେଇବାକୁ କହୁ ନାହିଁ । ଏବେ ଏକାଥରକେ ଶୁଖିଲା ଲଙ୍କାକୁ ରଗଡିଦେଲେ ଛିଡିଯାଉଚି । ଚତୁରୀ ମସଲା ବାଟିଲାବେଳେ ମୁହଁ ଟେକି ୟାକୁ ତାକୁ ଚାହିଁ କଥା ହୋଇ ପାରୁଚି । କିଏ କେମିତି ଏବେ ତା' ସାଙ୍ଗେ ଟାପରା ହେଲେ ସେ ତାକୁ ରଡଭଡ ଦି'ପଦ ବକିଦେଇ ପାରୁଚି । ସେତିକିବେଳେ ରଡଭଡ ବାଟିଦେଉଚି ଯାହାଥାଉ ଶିଳରେ । ତଥାପି ଏବେ

ମଧ ତା' କପାଳରୁ ବେକରୁ ଝାଳ ଦୁଇଓଳି ନିଗିଡିଯାଏ । ଦୁଇଓଳି ପରିଶ୍ରମ କରି ଉଠିଲାବେଳକୁ ସେ ଅଣ୍ଟା ସଳଖି ଠିଆ ହୋଇପାରେ ନାହିଁ ।

ଏ ବର୍ଷ ସେ ମୂଲକରେ ନାହିଁ ନ ଥିବା ବର୍ଷା ହେଇଥିଲା । ଦିନରାତି ଅଜାଡିଲା ବର୍ଷା । ଉପରମହଲା ଉପରେ କଳାମଚମଚ ଚିକ୍କଣ ମେଘ ହୁତାହୁତା ହୋଇ ଗୁମୁରିଲା । ଚତୁରୀକୁ କାହିଁକି କେଜାଣି ଭାରି ଡର ମାଡିଲା । ସେ ରାତିରେ ଶୋଇ ପାରିଲା ନାହିଁ ନିଧଡକ । ବିଜୁଳି ଚମକିଲେ ମେଘ ଘୁମୁଘୁମୁ ଗର୍ଜିଦିଏ । ସେତେବେଳେ ଚତୁରୀ କାନ୍ଥ କଡରେ ଆଉରି ଲେସି ହୋଇ ଯାଉଥିଲା । ରାତିସାରା ଅନ୍ଧାରରେ ମେଘଡାକ । ରାତିସାରା ଓଦା ଓଦା । ଝପ୍ ଝପ୍ ବର୍ଷା । ଚତୁରୀ ଅନୁଭବ କଲା ଯେ, ବର୍ଷେ ପୁରୁଣା ସେ ଛୋଟ କନ୍ଥା ଖଣ୍ଡିକରେ ସେ ଆଉ ତା' ଦେହ ଘୋଡେଇ ପାରୁ ନାହିଁ । କାନ୍ଥ ସନ୍ଧାରେ ଯେତେ ଲାଗି ଶୋଇଲେ ସୁଦ୍ଧା ତା' ମନରୁ ଭୟ ଓହ୍ଲଉନାହିଁ । ଭିତର କେମିତି ଦୁର୍‌ଦୁର୍ କମ୍ପୁଛି ।

ବର୍ଷା ଆସ୍ତେ ଛାଡିଗଲା । ରାଉ ରାଉ ଖରା ପଡିଗଲା ଅଗଣାରେ । ଚତୁରୀର ମନ ଭିତରୁ ତା' ସର୍ବାଙ୍ଗରୁ ଓହ୍ଲେଇଗଲା ଅନ୍ଧାର । ମୁହଁରୁ ଅପସରିଗଲା ମେଘ । ଏଣିକି ଶିଳପାଖରୁ ମୁହଁ ଟେକିଲେ ଖାନ୍‌ସାମା, ବବର୍ଚି, ମିସ୍ତ୍ରୀ ତା' ଆଗରେ ଠିଆହୋଇ ରହିବାର ସେ ଦେଖିଲା । ସେମାନଙ୍କୁ ଏମିତି ମୁହଁଟେକି କେତେବେଳେ ଚାହିଁଦେଲେ ସେମାନେ ହସିଲେ ଚତୁରୀ ମଧ କିଛି ନ ବୁଝି ହସିଲା । ତାକୁ ଫୁର୍‌ଫୁର୍ ଉଡିଯାଉଥିବା ପକ୍ଷୀ ପରି ସବୁ ଉଶ୍ୱାସ ଲାଗିଲା । ଗଛକୁ ଚାହିଁଲେ ଗଛ ହସିଲା । ତା' ଚୂଳରେ ପେନ୍ଥା ପେନ୍ଥା ଫୁଲ ଦୋହଲାଇ ଚତୁରୀକୁ ହାତ ଠାରି ଡାକିଲା ପରି ଲାଗିଲା । ଦିନେ ଦେଖିଲାବେଳକୁ ଛେଳିଥୋଡିଆ ମିଆଁ ମସଲାକୁ ଶିଳରେ ପକେଇ ଗୋଟେ ପୁର ବାଟିସାରିଲାଣି । ଚତୁରୀକୁ ଦେଖି ଦାନ୍ତ କାଢି ହସିଲା । ଚତୁରୀ ତା' ପିଠିରେ ପକେଇଲା ଗୋଟାଏ ବିଧା । ମିଆଁ ଗୋଟାଏ କୁହାଟ ମାରି ତା' ଆଡକୁ ଚମକି ଆସିଲା । ଚତୁରୀକୁ ବୋଧେ ଜାବୁଡି ଧରିପକେଇଥାନ୍ତା – ଚତୁରୀ ତାକୁ ଶିଳପୁଆ ଠେଲିଲା ପରି ଅନାୟାସରେ ଠେଲିଦେଲା ଦୂରକୁ । କଚି ହେଇ ପଡିଲା ମିଆଁ ପୁଅ ଯାଇ ଅଗଣାରେ । ଚାରିଆଡୁ ହୋ ହୋ ହସ ଶୁଭିଲା । ଚତୁରୀ ଦେଖିଲାବେଳକୁ ତଳମହଲାର ସମସ୍ତ ସେବାକାରୀ ତାଳି ମାରି ହସୁଚନ୍ତି । ସେ ଲାଜରେ ରାଗରେ କମ୍ପିଲା । ତା'ର ମନହେଲା ମିଆଁ ବୁକୁରେ ଦୁଇ ଚାରି ଲାତ ବସେଇଦେବାକୁ ।

ଏତିକିବେଳେ ମିଆଁ ଉଠିପଡି ଚିହିଁକିଲା, "ଶାଲୀ ବେଢଙ୍ଗୀ, କୁଜୀ ଶାଲୀ, ମୁଁ ତୋତେ ସାଦି କରିବି ନାହିଁ! ଶାଲୀକୁ ଚକୁରେ କତଲ କରିଦେବି – ଶାଲୀ ।" ସେ ରାଗରେ ଫଁ ଫଁ ହେଉଥାଏ ।

ଚତୁରୀ ଖପ୍‌କିନା ଶିଳୁପୁଆ ଟେକି ତା' ଆଡକୁ ଖେପିଗଲା – "ହଇରେ ରଇଜଳା, ପୋଡଖୁଣ୍ଟାମୁହାଁ, ତୁ କ'ଣ ମୋତେ ଶାଦି କରିବୁ ? ତୋ' ନାକଦଣ୍ଡା ଛେଚିଦେବି ଯେ ମନେରଖିଥିବୁ ଚତୁରୀକୁ । କହିଲା କ'ଣ ନା କୁଜୀ ! ନିଲଠା ବେହିଆ, ମୋ' ପାଖକୁ ଆସିବୁ ଯଦି ଦେଖିବକୁ ତେଣିକି !"

ସମସ୍ତେ ଆହୁରି ହସିଲେ । ମିଆଁ ଗାଜୁମାଜୁ ହୋଇ ବାହାର ଅଗଣା ଆଡିକି ଝୁଲି ଝୁଲି ଚାଲିଗଲା । ସେ ସେମିତି ଚାଲେ ! ନହକା, ପିଣିପିଣିଆର ଅଣ୍ଟାରେ ବଳ ନାହିଁ । ଦେହରେ ମାଉଁସ ନାହିଁ । ସବୁଦିନ କୁକୁଡା କାଟି କାଟି, ମାଉଁସ ଖାଇ ଖାଇ କେମିତି ଉକୁଟିଲା ପରି ହୋଇଯାଇଛି । ତା' ଦେହ ଜଳିଆ ଝିଣ୍ଟିରି ଯାଇଚି ସେଇ ଧାସରେ ।

ଲୁଗା କାନି ଅଣ୍ଟାରେ ଗୁଡେଇ ଚତୁରୀ ତା' କାମରେ ମନ ଦେଲା । ରଜ୍ ରଜ୍ ମସଲା ବାଟୁଥାଏ । ରାଗରେ ଅଭିମାନରେ କେମିତି କେଜାଣି ଗୋଟାଏ ଅବୁଝା ଆନନ୍ଦରେ ତା' ଭୁରୁ କୁଞ୍ଚେଇ ଯାଉଥାଏ । ଏମାନେ ତ କେହି ଜଣେ ହେଲେ ତା' ଛାଇ ମାଡୁ ନ ଥିଲେ – ଏବେ କାହିଁକି ତା' ପାଖେ ପାଖେ କାମ ଥାଉ ନ ଥାଉ ଭଉଁରି କାଟୁଚନ୍ତି – କାହିଁକି ସେ ଗଲାଅଇଲା ବାଟକୁ ଉଣ୍ଡୁଛନ୍ତି ? ତା' ଭିତର ବାହାର କ'ଣ ଯେମିତି ଓଲଟପାଲଟ ହେଇଯାଇଛି । ତା' ଆକାଶରେ କୋଉଠି ଗୋଟାଏ କଳା ଘୁମର ମେଘ ଟେକିଛି । କାକର ପବନ ଲହରୀ ମାରୁଛି ସେଇ ଦିଗରୁ । ତା' ଦେହ ବାରମ୍ବାର ଶୀତକଣ୍ଟା ମାରିଯାଉଛି । ଚତୁରୀ ଲାଲୁଆ ଡାଲ୍‌ଚିନି ବଟାଟାକୁ ଏକାଠି କଲାବେଳକୁ ଆଙ୍ଗୁଠି ସନ୍ଧା ରୁଗ୍‌ରୁଗ୍ ହେଇ ଜଳୁଥାଏ । ତା' ଭୁରୁ ପୁଣି କୁଞ୍ଚେଇଗଲା – ସେ ପୋତପାତ ମିଆଁ ରଇଜଳା, ତାକୁ କାହିଁକି କୁଜୀ ବୋଲି କହିଲା ? ସେ କ'ଣ ସତକୁସତ ଆଉ ସଳଖି ଚାଲିପାରୁ ନାହିଁ ? ଏମିତି ବର୍ଷ ବର୍ଷ ମସଲା ପେଷି ପେଷି ତା' ଅଣ୍ଟା କ'ଣ ସତେ ବଙ୍କା ହେଇଗଲାଣି ? କେଜାଣି !... କିନ୍ତୁ ଉପାୟ କ'ଣ ? ସେ କାହିଁକି ସତେ କୁଜୀ ହୋଇଗଲା ? ସେ କାହିଁକି ଏମିତି ପଥରରେ ପଥର ଘୋରିବାକୁ ଜନ୍ମ ହେଇଥିଲା ? – ତା' କପାଳର ଝାଳକୁ ବାହା ଲଗେଇ ଚତୁରୀ ପୋଛିପକେଇଲା । କାହାକୁ ଚାହିଁଲା ନାହିଁ । କିଛି କହିଲା ନାହିଁ । ତା' ଆଖିପତା ଓଦା ଓଦା ହେଇଗଲା । ଲୁହ ଝରିଗଲା ଝାଳ ସାଙ୍ଗରେ । କେହି ଦେଖି ନାହାନ୍ତି, ଦେଖିଥିଲେ ମଧ ସେଇଟା କୋଉ ନୂଆ କଥା ଅବା ?

ଉଆସରେ ଏ ଉତ୍ସବ ବେଳକୁ ଶୀତ ଛାଡି ଆସିଥାଏ ! ମସଲା ବାଟିଲାବେଳେ ଚତୁରୀ ତା' ହାତ ଯୋଡିକୁ ଦେଖି ବେଳେବେଳେ ଏବେ ରହିଯାଏ । ବଳିଲା ବଳିଲା ଗୋରା ହାତ ଯୋଡିଏ । କଳା କାଚ ଦି'ମୁଠାରେ ସୁଦ୍ଧା ଭାରି ସୁନ୍ଦର ଦିଶିଯାଏ ତା' ଆଖିକୁ । ସେ ତା'ର ଗୋଟାଳ ଆଙ୍ଗୁଠି ଗୁଡିକୁ ଅନାଏ । ପୁଣି ଚମକିଲା ପରି ବାଟିବାରେ ମନ ଦିଏ । ବଗିଚାରେ ନାଲି ନାଲି ଫୁଲରେ ଗଛ ଭାଜିପଡୁଥାଏ । ପବନ ଖୁବ୍ ମିଠା ମିଠା ବାସୁଥାଏ । ଚଢେଇ ଡାକିଲେ ତା' ସର ପିଇଯିବାକୁ ମନ ହେଉଥାଏ । ସେଦିନ ସକାଳୁ ଚତୁରୀ ମଧ ଉଲ୍ଲାସରେ କ'ଣ ଗୋଟାଏ ଗୁଣୁଗୁଣୁ ହେଉଥାଏ ମନକୁମନ ।

ଉପର ମହଲାରୁ ହୁକୁମ ନେଇ କିଏ ଜଣେ ଧାଇଁଆସିଲା । ବଗିଚାର ସବୁ ବାସ୍ନା ଫୁଲରେ ମାଳ ଗୁନ୍ଥା ହେବ । ଅଗୁରୁ ଚନ୍ଦନ ବୋଳାହେବ । କସ୍ତୁରୀ ଘୋରା ହେବ । କିଏ କରିବ ଏ କାମ ? ଯେ ଯାହା କାମରେ ଲାଗିଛନ୍ତି । ଉଆସ ସଜା ଚାଲିଛି । ମଣ୍ଡପ ସଜା ହେଉଛି । ତୋରଣ ବସା ହେଉଛି । କିଏ ଜଣେ କହିଲା – ଏ ଚନ୍ଦନ ଘୋରା କାମ ଚତୁରୀ କରିପାରିବ । ତାକୁ ଭଲ

ଆସେ । ତାକୁ ଅଗୁରୁ କସ୍ତୁରୀ ଦେଇଦିଅ, ସେ ମନଦେଇ କରିବ ।

ପାହାନ୍ତିଆରୁ ବେଳ ଦୁଇଘଡିଯାଏଁ ମସଲା ପେଷି ପେଷି ଚତୁରୀ ରୋଷଘରେ ଥୋଇଦେଇ ଅଗଣାକୁ ଆସିଥାଏ । କିଏ ଜଣେ ତା' ଆଗରେ ଭୁସ୍‌କିନା ଗୋଟାଏ ଚନ୍ଦନପେଡି ଥୋଇଦେଲା । ଆଉ ଜଣେ ରଖିଦେଲା ଝରି । ଚନ୍ଦନ କାଠ, ବଡ ବଡ ରୂପା ଗିନା । ଏସବୁ ଘୋରା ହୋଇ ସଜଡାହେବ । ଯଦି ସେଭଳି ହୁକୁମ ଆସିଛି ସଜଡା ହେବ, ଘୋରା ହେବ – ଚତୁରୀର ସେଥିପାଇଁ କ'ଣ ଆୟତ୍ତ ଅଛି ! ତା' ବାହାରେ ଚତୁରୀକୁ ଏ କାମ କ'ଣ ବଳେଇଯିବ ? କି ବାସ୍ନା ସତେ ଏ ଚନ୍ଦନର ! କି ବାସ୍ନା ଏ ଅତରମଖା ରୂପାଗିନାଗୁଡିକର ! ତା' ପେଟ ପୂରିଗଲା । ସେ ଖୁସିରେ ପାଟିକରି ପକେଇଥାନ୍ତା ! ସେ କୁରୁଳିଲା ଆନନ୍ଦରେ । ଗୋଟାଏ ଚମ୍ପା ଗଛ ମୂଳ ଛାଇରେ ବସିଗଲା ଚନ୍ଦନପେଡିଟାକୁ ଥୋଇଦେଇ । ଇସ୍, ସବୁଦିନେ ତାକୁ ଏଇ କାମ ମିଳନ୍ତା କି ?

ତା' କେମିତି ହେବ ? ସବୁଦିନେ କ'ଣ ଏମିତି ଉତ୍ସବ ହେଉଛି ନା ଏଭଳି ଅପୂର୍ବ ଅତିଥି ଆସୁଛନ୍ତି ?

ଚତୁରୀ ଡଗଡଗ ଚାଲିଗଲା ତା' ଛୋଟ ବଖୁରିଟିକୁ । ତା' ମନକୁ ପାଇଲା ଭଳି ପୁଣି ମାଠିମୁଠି ଓଳେଇ ପକେଇଲା । ତା'ର ଖଣ୍ଡିଏ ବୋଲି ଭଲ ଲୁଗା କାଢି ପିନ୍ଧିପକେଇଲା । ଖୋସାରେ ଖୋସିଦେଲା ଚମ୍ପାଫୁଲଟିଏ । ପିଣ୍ଡା ତଳକୁ ଓହ୍ଲେଇ ତରୁଣ ତମାଳଟିକୁ ଟିକିଏ ଗେଲ କରିପକେଇଲା । ହଳେ ଡେଣା ଲାଗିଲା ଭଳି ଚତୁରୀ କାହିଁକି ସେମିତି ଛନଛନ ହେଉଥିଲା । ସତେ ଯେମିତି ତା'ର ନିଜର କେହି ପୁରୁଣା ବନ୍ଧୁ ମନେ ପକେଇ ଆସୁଛି ! ବୁଢା ଖାନ୍‌ସାମା ତା'ର ଆଚରଣ ଦେଖିଥିଲେ ତାକୁ କହିଥାନ୍ତା 'ଓଲୀ' ।

ସେ ଚମ୍ପାଗଛ ମୂଳକୁ ଫେରିଆସି ଚନ୍ଦନ ଘୋରିଲା । ବାସ ଚହଟିଲା ସେ ଅଗଣା ସାରା । ଯେ ସେ ବାଟେ ଧାଇଁଗଲା ବାସ୍ନାରେ ଝୁଣ୍ଟି ପଡିଲା ପରି ଥରେ ଲେଉଟି ଚାହିଁଦେଉଥିଲା । ଚତୁରୀର ପ୍ରତି ନିଶ୍ୱାସରେ ଚନ୍ଦନ ତା' ଭିତର ସାରା ଲେପିହେଇଯାଉଥାଏ । ଚମ୍ପା ପବନରେ ତା' ବାସ୍ନା ମିଶି ଚତୁରୀର ମୁହଁ ଦେହକୁ ବୁଡେଇ ଦେଉଥାଏ । ଚତୁରୀ ବିଭୋର ହେଇ ଘୋରୁଥାଏ ଚନ୍ଦନ । ନିଟୋଳ ରୂପାଗିନା ଗୁଡିକରେ ସାଇତି ରଖୁଥାଏ ଥୋଲା ଥୋଲା ଶୀତଳ ବାସ୍ନା ।

ଆଚ୍ଛା, କିଏ ସତେ ସେଦିନ ଆସୁଥା'ନ୍ତି ଯାହାଙ୍କ ପାଇଁ ଏତେ ଆଡମ୍ବରରେ ଆୟୋଜନ ଚାଲିଥାଏ ? ସେ କ'ଣ ହୁଅନ୍ତି ରାୟସାହେବଙ୍କର ? ତାଙ୍କ ବୟସ କେତେ ? ସେ ଦେଖିବାକୁ କେମିତି ? ଚନ୍ଦନପେଡି ଉପରେ ହାତ ରହିଯାଏ । ଚତୁରୀକୁ ସେଇଠି ଦିଶିଯାଏ କେତେଗୁଡିଏ ମୁହଁ, ତା' ସାରା ଜୀବନରୁ ଛଣା ହେଇ ଆସିଥିବା ସୁନ୍ଦର ହସ, ଆଖି ନାକ ଭ୍ରୁରୁ ମିଶାମିଶି କେତେ ଚିତ୍ର । ସେ ଯେ ଆସୁଛନ୍ତି, ସେ କ'ଣ ଏଇଭଳି, ଏମିତି ଆପଣାର ଖୁବ୍ ଚିହ୍ନା ? ସେ ଚଟ୍‌କିନା ବାଲିଘରକୁ ବାଲିରେ ମିଶେଇଦେଇ ଚନ୍ଦନ ଘୋରାରେ ମନ ଦିଏ । ଫଣଫଣ ମୁହଁରୁ ଓହ୍ଲାଇଯାଏ ସବୁଯାକ ଫଗୁରଙ୍ଗ । ଆରେ, ଯେ ଆସୁଛନ୍ତି ସେ ପରା ଉପରମହଲା ମାଲିକ ! ବାଘଗୁମ୍ଫାର ଅତିଥି ! ତୁ'ଟା ରୋଷଘର ପରିଚାରିକା ! ତୁ'ଟା କୁଜୀ ! ଅପର୍ଚ୍ଛନୀ ! ତୋର କି ହୁବ

ଏମିତି ଉପରକୁ ଚାହିଁବାକୁ ? – ତା' ଆଖି ଛଳଛଳ ହେଇଯାଏ ଅଣାୟତରେ ।

ସିଂହଦୁଆରେ ଗାଡି ଆସି ରହିବା ଶବ୍ଦ । ଲୋକଙ୍କ ଗୋଳ ପାଟିତୁଣ୍ଡକୁ କାନଡେରିଲା ଚତୁରୀ । ତା' ବୁକୁ ଧଡଧଡ ହେଲା । ଦେହ ଝାଳେଇଗଲା । ସେମାନେ ତା'ହେଲେ ଆସିଗଲେ । କିନ୍ତୁ ତୁ'ଟା ଏମିତି କାହିଁକି ହେଉଚୁ ? ସେ ଧଡପଡ ଉଠି ଧାଇଁଲା । ଅଗଣା ପାରିହେଇ ଭିତର କନ୍ଦିବାଟେ ଉଠି ବୁଲାଣି ମୋଡ ପାରିହେଇ ଧଇଁସଇଁ ଯାଇ ଓଲଟି ଚାହିଁଲା ଛାତିଏ ଉଞ୍ଚ ପାଚେରି ଏ ପାଖୁ । ପାହାଚ ଚଢି ଉଠିଆସୁଥିବା ଅତିଥିମାନଙ୍କୁ ଚାହିଁ ତା' ଆଖିରେ ପଲକ ପଡିଲା ନାହିଁ । ଲୋକେ ଚୁପ୍‌ଚାପ୍ କଥାବାର୍ତ୍ତା ହେବାର ତା' କାନରେ ପଡୁଥାଏ – ଏଇ ଯେ ଧଳା ସିଲ୍‌କ ଉପରେ ସୁନାହାର ପିନ୍ଧିଛନ୍ତି ସେ ଆମ ରାୟସାହେବଙ୍କ ଭିଣୋଇ । ନେଳି ପାଟ ପିନ୍ଧି ହୀରା କାନଫୁଲରେ ଯେ ଝଟକୁଛନ୍ତି ସେ ହେଉଛନ୍ତି ରାୟସାହେବଙ୍କ ଭଉଣୀ । ଆଉ ସେ ଯେ ଡେରିଲା ପରି ସୁନ୍ଦର ବୁକୁ, ଠିଆ ଠିଆ ଭୁରୁ, ବଡ ବଡ ଆଖି, ଥୋଲା ଥୋଲା ବାଳ – ଧନ୍ୟ ସେ ମା, ଏମିତି ସୁନ୍ଦର ପୁଅ ଗର୍ଭରେ ଧରିଥିଲା – ସେ ହେଉଛନ୍ତି ଭଣଜା । କାହିଁ କୋଉ କାଳୁ ସେ ଆସି ନ ଥିଲେ । ଜନ୍ମ ହେଲା ଦିନୁ ମାମୁଘରକୁ ଆସି ନ ଥିଲେ – ସେଥିପାଇଁ ଏ ଉତ୍ସବ ପରା !

ପାଣି ଭିତରୁ କୂଳକୁ ଡେଇପଡିଥିବା ମାଛଟିଏ ପରି ଚତୁରୀ ପାଟି ମେଲେଇ ଧକଉଥାଏ । ଛାତିଏ ଉଞ୍ଚ ପାଚେରିକୁ ଆଉଜି ସେ ଛାତିଏ ଉଞ୍ଚର ପଥର ପାଲଟି ଯାଇଥାଏ । ସେ ସଳଖି ଯାଇଥାଏ । ଓଲଟି ଚାହିଁ ରହିଥାଏ । ଏଇ ପୁରୁଣା ଆକାଶଟା ଏତେ ନେଳି ବୋଲି ତ ସେ ଜାଣି ନଥିଲା । ପବନ ଏମିତି ଚନ୍ଦନ ଭଳି ଶୀତଳ, ଏମିତି ମହମହ ବାସେ ବୋଲି ସେ ଜାଣି ନ ଥିଲା । ସେ ବିଶ୍ୱାସ କରିପାରୁ ନ ଥାଏ ଯେ ପାହାଚ ଚଢି ଗଲାବେଳେ ସେ ଥରେ ମୁହଁ ବୁଲେଇ ତାକୁ ଚାହିଁ ହସିଦେଲେ କି ? – ଶରବିନ୍ଧା ହରିଣୀଟିଏ ପରି ଚତୁରୀ ଛଟପଟ ହେଉଥାଏ । ପଥରକାନ୍ଥ ଉପରେ ଚମ୍ପାକଢି ପରି ଆଙ୍ଗୁଠିଗୁଡିକ ଲାଖି ରହିଥା'ନ୍ତି ।

ସ୍ୱପ୍ନରେ ପହଁରିଲା ପରି ଚତୁରୀ ଟଳମଳ ହେଉଥାଏ । ଫେରିଆସି ତା' ପୁରୁଣା ଅଗଣାରେ ଏଠିସେଠି ଠିଆ ହୋଇ ରହୁଥାଏ । ଚାହୁଁଥାଏ ଶୂନ୍ୟକୁ । ତା' ଆଗରେ ଚାଲିଯାଉଥିବା ମଣିଷଗୁଡିକୁ ସେ ଚିହ୍ନିପାରୁ ନଥାଏ । ତା' ଘୋରା ଚନ୍ଦନ କଥା କାହାରି ମନେ ନାହିଁ । ତାକୁ କେହି ମାଗିଲେ ନାହିଁ – ଭୁଲିଗଲେ ପରା ! ଚତୁରୀ ଚମ୍ପାଗଛ ମୂଳରୁ ସବୁ ଗୋଠେଇନେଇ ତା' ବଖରାରେ ସାଇତି ରଖିଦେଲା । ସେ ଭିତରେ ବସିରହିଲା ଆଖିବୁଜି ଅନେକ ବେଳଯାଏଁ । ତା' ଭୋକଶୋଷ ମରିଯାଇଥିଲା । ଏତେ ବଡ ଭୋଜିରେ କେହି ତାକୁ ମନେ ପକେଇଲେ ନାହିଁ । ସେ ମିଆଁ ଟୋକା ବି ରାଗରେ ତାକୁ ଡାକିଲା ନାହିଁ । ତା' ପାଇଁ କିନ୍ତୁ ବାଛି ବାଛି ଭଲ ଜିନିଷ ରଖିଦେଇଥାଏ । କାହା ହାତରେ ଚତୁରୀ ପାଖକୁ ପଠେଇଦେବାକୁ ତା' ମନ ଗୋଳେଇ ପୋଳେଇ ହେଉଥାଏ । ଭିତରକୁ ବାହାରକୁ ହେଉଥାଏ । ତମାଳ ଗଛ ଆଡେ ଲୁଚେଇ ଲୁଚେଇ ଚାହିଁଦେଉଥାଏ ।

ଏମିତି ଏମିତି ସନ୍ଧ୍ୟା ହେଇଗଲା । ରାତିରେ ରୋଷେଇ କାମ ଅନେକ ଉଣା ଅଳ୍ପକେ ସରିଗଲା । ସମସ୍ତେ ରାଜୁରୁମାଜୁରୁ ହେଇ ହେଇ ଯେ ଯାହା ଥାନ ଆବୋରିଗଲେ ।

ଉପରମହଲାରେ ଗହଳଚହଳ ମଧ୍ୟ ନିସ୍ତବ୍ଧ ହୋଇଆସିଲା ।

ଚତୁରୀକୁ ନିଦ ନାହିଁ । ରୂପାଗିନା ଯୋଡିକରେ ବ୍ୟର୍ଥ ଚନ୍ଦନଗୁଡିଏ ମହକୁଥାଏ – ଚତୁରୀ ମହକୁଥାଏ ମଉଳା ଚମ୍ପାଟିଏ ପରି । କେଉଁ ଅପୂର୍ବ ଆଶାରେ ସେ ତା' ଆଖି ଦୁଇଟିକୁ ଦରଆଉଜା କରି ରଖିଥାଏ । କେଜାଣି ? ଆଖି ବୁଜି ଆସୁଥାଏ ସପ୍ନରେ । ପୁଣି ଫିଟିଯାଉଥାଏ ସେଇ ସପ୍ନରେ । ଚତୁରୀ ଚମକୁଥାଏ ବାରମ୍ବାର । ବାରମ୍ବାର ତାକୁ ଦିଶୁଥାଏ ସେଇ ଆଖି, ସେଇ ଓଠ, ସେ ଓସାର ବୁକୁ । ସେ ମଟମଟ ଚାହିଁଦେଇ ପୁଣି ଘାଲେଇଯାଉଥାଏ ସପ୍ନକୁ ।

ଦରଆଉଜା କବାଟ ଫିଟେଇ କିଏ ସେ ପଶିଆସିଲା । ଆଖି ବୁଜି ଅନୁଭବ କରୁଥାଏ ଚତୁରୀ । ଆଖି ଫିଟେଇଦେବାକୁ ତା'ର ଇଚ୍ଛା ହେଉ ନ ଥାଏ, ସାହସ ବି ହେଉ ନ ଥାଏ । କାହାର ସ୍ପର୍ଶରେ ତା'ର ଭିତର ବାହାର ଉଲୁସି ଉଠିଲା । ସେ ସେମିତି ଆଖି ବୁଜି ତାକୁ ବାହୁ ବଢେଇ ଟାଣିନେଲା ବୁକୁ ଉପରକୁ । ତା' ଦେହସାରା ଲେପିଦେଲା ଚନ୍ଦନ । ଚତୁରୀର ସପ୍ନ ଭୂମିରେ ପୁଲକ ହିଁ ପୁଲକ । ଚନ୍ଦନବନର ମତୁଆଲା ପବନରେ ମନ୍ଥିହେଉଥାଏ ତା'ର ପଦ୍ମବନ । କେତେକାଳ ଚତୁରୀ ସେ ସପ୍ନ ପୁରୁଷକୁ ଅଶିଥିଳ ବାହୁବନ୍ଧନରେ ଯେ ଭୋଗିଛି; ଆଖି ବୁଜି ସେ ଅପୂର୍ବ ରୂପକୁ ପ୍ରାଣ ଭରି ପିଇଛି ସେ ଜାଣେ ନାହିଁ !

ମୂର୍ଚ୍ଛିତା ଚତୁରୀ ଚେତା ପାଇ ଉଠିଲା ବେଳକୁ ଖରା ପଡିଗଲାଣି । ତା' ଦୁଆର ସେମିତି ଦରଆଉଜା ହୋଇ ରହିଛି । ସେମିତି ତା' ବଖରା ବାସୁଛି ମହମହ ଚନ୍ଦନରେ; କିନ୍ତୁ ରୂପାଗିନା ଯୋଡିକ ଅଣେଇ ହୋଇ ପଡିଛନ୍ତି । ଭୂଇଁଯାକ ମେଞ୍ଚା ମେଞ୍ଚା ଚନ୍ଦନ – ତା' ନିଜ ବାହୁରେ ବୁକୁରେ ଚନ୍ଦନ । ତା' ଦେହାରା ଅବଶ । ଏଠି ସେଠି ସଂଗ୍ରାମର କ୍ଷତଚିହ୍ନ । ସେ ବିସ୍ମିତ ବିହ୍ୱଳ ହୋଇ ଚାହିଁଲା । ଭ୍ରୁରୁ କୁଞ୍ଚେଇ ମନେପକାଇଲା । ଅଳ୍ପ ହସିଦେଇ ସଜାଡିନେଲା ନିଜକୁ ଏବଂ ତା'ର ମୁକୁଳା ବାଳ ପରି ବିପର୍ଯ୍ୟସ୍ତ ସେ ଛୋଟ ପରିବେଶଟିକୁ !

ଗିନା ଯୋଡିକରେ ଶୁଖିଲା ବାସି ଚନ୍ଦନ କିଛି ଲାଖିରହିଥାଏ । ସେ ବଇଠି ନ ଥିବା ଚିକ୍କଣ ସଢେଇ ଫାଳପରି ଗିନା ଯୋଡିକୁ ପାଖରେ ପାଖରେ ଉବୁଡେଇ ରଖିଦେଲା । ଦୁଇଟିଯାକୁ ଦୁଇ ହାତରେ ଆଉଁସି ଆଣିଲା । ଉଠିପଡିଲା ଖରା ଦେଖି । ଚଟ୍‌ପଟ୍ ଗାଧୋଇସାରି ସେ ଖାନ୍‌ସାମା ପାଖରେ ପହଞ୍ଚିଲା । ଶୁଣିଲା ଆଜି ବଣଭୋଜି – ସମସ୍ତେ ବାହାରିଗଲେଣି – ସେ ବି ବାହାରିଯିବ କିଛି ସମୟ ପରେ । ଉଆସ ଜଗୁଆଳ ଆଉ ଭିତର ମହଲକୁ ଛାଡି ସମସ୍ତେ ଗଲେଣି । ଏତିକିବେଳେ ଭିତର ମାଳୀ ଆଉ ମିସ୍ତ୍ରୀ ତରବର ହୋଇ ଆସି ପହଞ୍ଚିଲେ । ମନକୁ ମନ କ'ଣ କଥା କହି କହି ହସୁଥା'ନ୍ତି ।

"ଆହେ ଭାଇ, ସାନ ମିଆଁ କାହିଁ ?" – ତା'ପରେ ହସି ହସି ଲୋଟିଗଲେ । ବୁଢା ଖାନ୍‌ସାମା ମଧ୍ୟ ତା' କାଇଦାରେ ହସୁଥାଏ ।

"ତାକୁ ସେ ବେଶରେ ଦେଖିଚ ନା ନାଇଁମ ? ହେ – ହେ, ତା' ଦେହସାରା ପିଠି ପେଟ ବୁକୁ ଖାଲି ଛାପା ଛାପା ଚନ୍ଦନ ଶୁଖି ଲାଗିରହିଥାଏ । ପଚାରିଲାରୁ କହିଲା କ'ଣ ନା ସେ –

ସପନରେ ଗୋଟାଏ ଅପ୍‌ସରୀ ତାକୁ ସେମିତି କୋଳକରି ରାତିସାରା ଭୋଗିଲା । ଶଳା ବେହିଆ, ଜମା କହୁ ନାହିଁ କୋଉଠିକି ଯାଇଥିଲା ।"

ସେ ଚନ୍ଦନଯାକ କିନ୍ତୁ ଚତୁରୀ ବସି ବସି ଘୋରୁଥିଲା । ତା' ପାଖକୁ ଗଲେ ତ ମିଆଁ ଆଉ ଜୀଅନ୍ତା ଫେରିବ ନାହିଁ – ତେବେ ପାଇଲା କୋଉଠୁ ? ହଉ ଚାଲ, ଆଜି ଫେରିଆସିଲେ ଏ ରହସ୍ୟ ବୁଝିବା ।

ଚତୁରୀ ଏ ଆଡକୁ ପଛକରି ସାନ ରୋଷେଇ ପିଣ୍ଡାରୁ ସବୁ ଶୁଣୁଥାଏ । ତା' ଜିଭ ଭିଡି ନେଲା ପରି ଲାଗିଲା । କ'ଣ ହେଲା – ସେଇ ଛେଳିଥୋଡିଆ ପୋଡାଖୁଣ୍ଟା – ମୁହାଁ ମିଆଁ ! ଚତୁରୀର ଗୋଟାଏ ଝାଳ ଫିଟିଗଲା ମୁଣ୍ଡରୁ ଗୋଡଯାଏ ! ମାଇକିନିଆ ଜନ୍ମ ! ମାଟିହାଣ୍ଡି ଛୁଇଁଦେଲେ ମାରା । ଏବେ ସେ କରେ କ'ଣ ? ସେ ବୋଧହୁଏ ଠିଆରେ ଛେଚି ହୋଇ ପଡିଯାଇଥାନ୍ତା ! ସେତେବେଳକୁ ସେମାନେ ବାହାରି ଯାଉଥିଲେ । ବୁଢା ଖାନ୍‌ସାମା କହୁଥିଲା, "ହେ ଚତୁରୀ, ସବୁ କଥାକୁ ସାବଧାନ ଥିବୁ ! ଏ ରୋଷ ଅଗଣାରେ ଆଉ କେହି ନାହିଁ !"

ଚତୁରୀ ମୁହଁ ଘୋଡେଇ କାନ୍ଦିପକେଇଲା । ତା'ର ମନ ହେଲା କୂଅକୁ ଡେଇଁପଡିବାକୁ । ସେ ସେଇଠୁ ଯୋଡି ଛାଡି ତା' ବଖରାରେ ମୁହଁମାଡି ପଡି କେତେବେଳଯାଏଁ କାନ୍ଦିଲା । ତା' ଆତ୍ମା କରଟି ହୋଇଯାଉଥାଏ । ପିଣ୍ଡ ଛିଡିପଡୁଥାଏ ।

କେତେବେଳକେ ସାଷ୍ଟମ ହେଲା । ତା' ଆଖି ଫୁଲିଯାଇଥାଏ । ମୁହଁ ଫଣଫଣ । ସେ କ'ଣ ଭାବିଲା କେଜାଣି – ରାତିର ଦରଶୁଖିଲା ଲୁଗାଟାକୁ ପୁଣି ପିନ୍ଧିପକେଇଲା । ଦୁଇଟିଯାକ ଚନ୍ଦନ ଗିନା ଧରି ଆସ୍ତେ ବାହାରିଆସିଲା ।

କୁଆଡେ ଯାଉଥିଲା ଚତୁରୀ ? କୂଅକୁ ? ପୋଖରୀକୁ ? ଉଆସ ବାହାରେ ସଦର ରାସ୍ତା ଉପରକୁ ?

ସେ ଆନମନା । ଚମ୍ପାଗଛ ମୂଳକୁ ଧୀରେ ଯାଇ ଠିଆହେଲା । ଉଦାସ ଆଖିରେ ଚାହିଁରହିଲା ଗଛର ଗୋରା ଚିକ୍‌କଣ ଡାଳକୁ । "ଛି, ଛି, ଚତୁରୀ କ'ଣ କଲୁ ତୁ ! କେଡେ ହୁବ କରିଗଲୁ ? ବାମନ ହୋଇ ଚନ୍ଦ୍ରକୁ ହାତ ବଢେଇଦେଲୁ ! ତା' ଫଳ ତୁ ଭୋଗିବୁ ନାହିଁ ତ କିଏ ଭୋଗିବ ? ଭୋଗ ଆଗେ ବାଢି ଥୋଇଦେଲେ କ'ଣ ଦିଅଁ ଆସି ଖାଆନ୍ତି – ତା' ଅଗରୁ କାଉ ଥଣ୍ଟ ମାରି ଅଇଁଠା କରିଦିଏ ପରା ! ସେ ପୁଣି ଦରଦର କାନ୍ଦିପକେଇଲା ।"

କାହାର ପାଦଶବ୍ଦ ପାଖେଇ ଆସୁଥିବାର ସେ ଶୁଣିଲା । କିଏ ହୋଇଥିବ ପରା, ବଳେ ପାରିହୋଇଯିବ ଯେ – ତା'ର ସେଥିରେ ଥାଏ କ'ଣ ? ତା'ର ଏ ସଂସାରରେ ଆଉ ଥାଏ କ'ଣ ?

ପାଦଶବ୍ଦ କିନ୍ତୁ ଆସି ସେଇଠି ଅଟକିଗଲା । ତା' ଭୁରୁ କୁଞ୍ଚେଇଗଲା । କିଏ ସେ ଆସି ତାକୁ ପଛରୁ ଚାହିଁ ରହିଛି କି ? ସେ ଆନମନା ବୁଲି ଚାହିଁଦେଲା – ତା' ହାତ ଯୋଡିକ ଓହଳି ରହିଗଲା । ସେ ଚିତ୍ର ପ୍ରତିମାଟିଏ ପରି ସ୍ତବ୍ଧ ହୋଇ ଚାହିଁରହିଲା ।

ସେ ତ ସ୍ୱପ୍ନ ଦେଖୁନାହିଁ ! ସେଇ ଭୁରୁ, ବଡ ବଡ ଆଖି, ସେଇ ଓଠ – ସେଇ ଅପୂର୍ବ

ସୁନ୍ଦର ରାଜକୁମାର ! ସେ କେମିତି ଏଠିକି ଆସିଲେ ? କାହିଁକି ଆସିଲେ ? ସେ କ'ଣ ସତେ ତାକୁ କାଲିଠୁ ଦେଖି ମନେରଖିଛନ୍ତି ? ସେ କ'ଣ ତାକୁ ଖୋଜି ଖୋଜି ଆସିଛନ୍ତି ? ତା' ପାଖକୁ କ'ଣ ଆଶା କରି ଆସିଛନ୍ତି ? କ'ଣ ଅଛି ଆଉ ଚତୁରୀ ପାଖରେ ! ପ୍ରଭୁ, ସେ କେମିତି ଆଉ କାହାକୁ ଖୋଜୁଥାନ୍ତୁ ! ବସୁଧା, ତୁ ଆଉଥରେ ଦୁଇଫାଳ ହେଇଯା – ହତଭାଗିନୀ ଚତୁରୀ ଲୁଚିଯାଉ ତା' ଗର୍ଭରେ !

ସେ ଦୁଇ ପାହୁଣ୍ଡ ଆଗେ ଆସିଲେ । ଚତୁରୀ ଥରିଲା ବରଡାପତ୍ର ପରି । ତା' ଓଠକୁ ଆସ୍ତେ ଧରି ଟେକିଦେଲେ । ଚତୁରୀର ସର୍ବାଙ୍ଗ ଫୁଟିଲା କଦମ୍ବ ପରି କଣ୍ଟାମାରିଗଲା । ସେ ଚାହିଁରହିଲେ ତା'ର ଦରବୁଜା ଆଖି ଯୋଡିକୁ । ଚତୁରୀର ଅବଶ ହାତରେ ଚନ୍ଦନ ଗିନାରୁ ଚନ୍ଦନ ନିଗିଡିଯାଇଛି । ଅସନା ଖଣ୍ଡିଚିତ୍ରିଆ ଅଇଁଠା ଗିନା ଯୋଡିଏ –

କ'ଣ କହିବ ଚତୁରୀ ? କ'ଣ କହିପାରିବ ସେ ? ସେ କ'ଣ ତାଙ୍କୁ କହିପାରିବ ଯେ, ରୋଷ ଅଗଣାରେ ଆଉ କେହି ନାହାଁନ୍ତି ଏବଂ ହେଇ ତା' ବଖରା ଆଗରେ ତମାଳ ଚିହ୍ନ ? – ସେ ଗିନା ଯୋଡିକୁ ଆଉଥରେ ଚନ୍ଦନରେ ଭରିବାକୁ ଆଉରି ଗୋଟିଏ ଜନ୍ମ ପାଇଁ ତାଙ୍କୁ ଅପେକ୍ଷା କରିବାକୁ କହିପାରିବ ?

ସେ ସେମିତି ନିରୋଳା ଚମ୍ପାଗଛ ଛାଇରେ ତା' ସାମ୍ନାରେ ଠିଆ ହୋଇଥା'ନ୍ତି । ଚତୁରୀର ଜୀବନ ଏବଂ ମରଣ ଝୁଲୁଥାଏ ସରୁ ସୂତାଖିଅଟିରେ ।



# ଯାତ୍ରୀ

ବୟସ ହୋଇଗଲେ ବୋଧହୁଏ ସବୁ ବୁଢ଼ାବୁଢ଼ୀ ଆଉ ପ୍ରକାରେ କଥା କହନ୍ତି । ଆଉ ଗୋଟିଏ ରାଜ୍ୟର ଅପରିଚିତ ଗହୀର ଭାଷା, କେମିତି ଗୋଟାଏ ଛାଡଛାଡ ଭାବ ତାଙ୍କ କଥାରେ କାହୁଁ ଆସି ସଞ୍ଚରିଯାଏ । ଦେହ ଘୋଡାଇବାକୁ ଆଉ ଯେମିତି ଆଗ୍ରହ ନ ଥାଏ; କଥା ଘୋଡେଇବାକୁ ସେମିତି ପ୍ରୟାସ ନ ଥାଏ ସେମାନଙ୍କର । ସବୁ ଖୋଲାଖୋଲି, ନିଃସଙ୍କୋଚ, ନିଷ୍କପଟ, ସରଳ ହୋଇଯାଏ । ସୂର୍ଯ୍ୟ ବୁଡିଗଲାବେଳେ ପାଚିଲା ବଟପତ୍ର ଉପରେ ନିଷ୍କଳ ଖରା ପଡୁଥାଏ । ପତ୍ରଟି କମ୍ ହଲେ, କମ୍ କହେ; କିନ୍ତୁ କେଡେ ପ୍ରାଞ୍ଜଳ ଭାବରେ କହିଦିଏ ସବୁ କଥା !

ମୁଁ ସେଥିପାଇଁ ବେକୁବ ଭଳି ଦାଣ୍ଡପିଣ୍ଡାରେ ଠିଆ ହୋଇଥାଏ । ବାହାରେ ଅନ୍ଧାର । ଝିପିଝିପି ବର୍ଷା । ରାତି ବାରଟା ଗାଡିରେ ଅପିନାନୀ ଫେରିଯିବାକୁ ଅଡିବସିଛି । ଆମେ ସମସ୍ତେ ଜାଣିଛୁ ଯେ ସେ ଆଉ ବଞ୍ଚିବ ନାହିଁ; କିନ୍ତୁ ମରିବା କଥାଟାକୁ ଆମେ ଜମା ବୁଝିପାରୁ ନାହୁଁ; ବିଶ୍ୱାସ କରିପାରୁ ନାହୁଁ । ଅନ୍ଧାରରେ ପହଁରି ପହଁରି ବୁଲୁଥିବା ଦୋ' ଦୋ' ଚିହ୍ନା ଜନ୍ତୁଟାଏ ଭଳି ଟାକୁ କେବଳ ଆମେ ଭୟ କରୁଛୁ; ପାରୁ ପର୍ଯ୍ୟନ୍ତ ଅସ୍ୱୀକାର କରୁଛୁ !

ଦାଣ୍ଡଘରେ ନନା କଥା ହେଉଥା'ନ୍ତି ଅପିନାନୀ ସାଙ୍ଗରେ । ବୋଉ ମଧ ବସିଥାଏ ସେଇଠି । ପଦେ ପଦେ କଥା ଶୁଣି ମୋତେ ଆଫା ଆଫା ଲାଗୁଥାଏ । ମୁଁ ଶୀତେଇ ଯାଉଥାଏ । ବିଶ୍ୱାସ କରିପାରୁ ନ ଥାଏ, ମୋ' ଘରର ସବୁଠାରୁ ପୁରାତନ ଗୁରୁଜନଙ୍କ କଥା । ବୁଝିପାରୁ ନ ଥାଏ । ସେମିତି ବେକୁବ୍ ଭଳି ଠିଆ ରହିଥାଏ ଅନ୍ଧାରରେ । ଠିକ୍ କରିପାରୁ ନ ଥାଏ – ବର୍ଷାରେ ଯାଇ ବାଟ ପାଇଁ ଔଷଧ କିଣିଆଣିବି ନା ନାହିଁ !

ମୁଁ କ'ଣ କେବେହେଲେ ସେମାନଙ୍କ କଥା ବୁଝିଛି ? ଯେତେବେଳେ ଦେଖିଲେ ନନା ଦିଶନ୍ତି ଦିଗନ୍ତରେ ପହଁରୁଥିବା ମେଘଖଣ୍ଡ ପରି । ଖୁବ୍ ଦୀର୍ଘ । ଆକାଶଠଉଁ ବି ବଡ । ତାଙ୍କ ପାଖକୁ ଅପିନାନୀ ଆଉ ବୋଉ । ବର୍ଷେ ବର୍ଷେ ସାନ ବଡ; କିନ୍ତୁ ନନାଙ୍କଠୁ ସାତ ଆଠ ମାସ ଲେଖାଁ ସାନ, ବାଙ୍ଗୁରି ବାଙ୍ଗୁରି ପୁରୁଣା ମେଘଟିମାନ । ସମସ୍ତେ ଦିଗନ୍ତର ଚିତ୍ରପଟ ପରି ଠିଆ ହୋଇଛନ୍ତି ।

ତାଙ୍କବେଳେ ସେମାନେ ମୋ' ଆକାଶ ସାରା ଆବୋରି ରଖିଥିଲେ । ସବୁ ରସ ନିଗାଡି ଦେଇ ବର୍ଷିଥିଲେ । କେତେ ଲାଳନ କରିଥିଲେ । ଏବେ ତାଙ୍କୁ ଦେଖିଲେ କିଏ କହିବ ଭଲା ସେମାନେ ଏକଦା ବର୍ଷିଥିଲେ ବୋଲି ? – ଧଳା ଧଳା ନିର୍ଜଳ ପୁରାତନ ମେଘଗୁଡିଏ । ଖୁବ୍ ନୀରବ, ନିଶ୍ଚଳ, ପଶ୍ଚିମ ଦିଗନ୍ତର ପାକଳ ହଳଦିଆ ଧଳା ମେଘପଟଳ !! ତାଙ୍କ କଥା ବୁଝିବାକୁ ହେଲେ ମୋତେ ତାଙ୍କରି ପରି ହେବାପାଇଁ ଅପେକ୍ଷା କରିବାକୁ ହେବ । ଆଜିଠୁ ଚାଳିଶ ବର୍ଷ ପରେ ତାଙ୍କୁ ବୁଝିଲେ କ'ଣ ଅବା ହେବ ? – ସେ ତ' ଆଉ ଏ ଆକାଶ କଥା ନୁହେଁ !

ନନା କହୁଥା'ନ୍ତି – "ଆଲୋ, ତୁ କ'ଣ ଏଇନେ ଯାଉ ଯାଉ ମରିବୁ ?" ସତେ ବା ସେ ପଚାରୁଥିଲେ, 'ତୁ' କ'ଣ ଏଇନେ ଲୁଗା ବଦଳ କରିବୁ ? କଡ ଲେଉଟେଇବୁ ? ବାଁ ଗୋଡକୁ ଡାହାଣ ଗୋଡ ଉପରେ ଥୋଇବୁ ?"

ସରଳ, ଦ୍ୱିଧାହୀନ, ନିର୍ମମ ପ୍ରଶ୍ନଟିଏ । ମୋତେ ଶୁଭୁଥାଏ ଭୟଙ୍କର ।

'ଆଲୋ, ତୁ' କ'ଣ ଏଇନେ ଯାଉ ଯାଉ ମରିବୁ ?'

ଅପିନାନୀ ବୋଧହୁଏ ହସିଲା । ସେ ସେମିତି ସାଉଁ ସାଉଁ ହସେ । ତାକୁ ଗଲା କାର୍ତ୍ତିକକୁ ସତୁରି ପୂରିଗଲା । ଛ'ମାସ ହେବ ବାଧିକା ପଡି ପଡି ସ୍ୱର ନିସ୍ତେଜ ହୋଇଆସିଥିଲା । ତଥାପି ବାରିହେଉଥିଲା ତା' ହସ । ଆଶ୍ଚର୍ଯ୍ୟ ! କ'ଣ ଥିଲା ସେଭଳି ପ୍ରଶ୍ନରେ ଆମୋଦିତ ହେବା ପାଇଁ ?

"ମରିବି ବୋଲି କହିଲି ପରା । ତତେ କ'ଣ ପ୍ରତେ ହେଉ ନାହିଁ ? – ଦିନ ସାତଟା ସମ୍ଭାଳି ଯା' ଭାଇନା, ଦେଖିବୁ ସତ ନା ମିଛ !"

"ହଅଅ ! କୋଉ ମରୁ ନଥିଲୁ ? ଏ ଚତୁର୍ମାସ୍ୟାରେ ମୋତେ ଯାହା ଦହଗଞ୍ଜ କରି ମାରିବାକୁ ତୋ' ମନ ! ତୁ ତ ପଚାଶ ବର୍ଷ କାଳ ମରିବୁ ମରିବୁ କହୁଚୁ – କେତେଥର ମଲୁଣି ଭଲା କହିଲୁ ! ଏଠି ପୁଅ ପାଖରେ ଥିଲେ ଟେକପାଳ ହୋଇଥାନ୍ତୁ । ସନମାନରେ ସତ୍କାର ହେଇଥାନ୍ତୁ । ସେଇଠି କୋକେଇ ବାନ୍ଧିବାକୁ ଦି'ଖଣ୍ଡ ବାଉଁଶ ମିଳିବା କଷ୍ଟ । ସାଇପଡିଶା ଯୋଉ ଶଳେ ଅଛନ୍ତି, ମୁଁ କ'ଣ ତାଙ୍କୁ ଚିହ୍ନିନାହିଁ ? ବିପତିବେଳେ ସବୁ ଆଡେଇ ହେଇଯିବେ । ସୁକୁଟ ଦେଖିବେ । ମୁଁ ଜନ୍ମା ସେ ଜଞ୍ଜାଳକୁ ପାରିବି ନାହିଁ କହୁଚି । ଶେଷକୁ ବାସିମଡା ହେଇ ପଡିଥିବୁ । ହାଡି ଆସି ଘୋଷାରିବେ ।"

ପୁଣି ସେଇ ସାଉଁ ସାଉଁ ହସ । – "ତୋ ଅତର୍ଚ୍ଛାପଣ କ'ଣ ମୁଁ ଜାଣି ନାହିଁ ? ସେଥିପାଇଁ ପରା ମୁଁ ସବୁ ଯୋଗାଡ କରି ଆସିଛି । ଢେଙ୍କିଶାଳେ ବାଉଁଶ, ଦଉଡି ସବୁ ସଜିଲ୍ କରି ରଖିଦେଇଛି । ଚାରିଖଣ୍ଡ ଗଡି ବାଉଁଶରେ ଖାପ ମରାହେଇଛି । ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ବାନ୍ଧିଦେଲେ ମଧ କୋକେଇ ହେଇଯିବ । ଶଗଡେ ଶୁଖିଲା ଶାଳଗଣ୍ଡି ବାଡିଆଡ କୁଣକୁ ଗଦେଇ ଦେଇଚି – ରଇ କାଠ ହବ ! – ଟିମା ପୁଅ ମକରା ଇଟା ଶଗଡ ବୁହାଉଚି – ତାକୁ କହିଚି, ଯେତେବେଳେ ଡାକିଦେଲେ ସେ କାଠଟକ ମଶାଣିକୁ ନେଇଯିବ । ସେଠିକି ସେ ନଈବାଲି ବୋହିବାକୁ ସବୁଦିନ ଯାଏ ।... ଆଉ ଶୁଣ୍ ! ସାଇରେ ତ ବୁଢା ହେଇ ସେଇ ଜଣେ – କେଦାର ତିଆଡି ! – ଆଉ ସବୁ ପିଲା- ଅନନ୍ତ, ଯୋଗିଆ, ଶିବୁ, ବିଶିଆ ଆଉ ସେ ଶଙ୍କର ଭାଇନା ପୁଅ – କ'ଣ ତା' ନାଁଟି – କୁନା ! ଏ

ସମସ୍ତଙ୍କୁ ଆସିଲାବେଳେ କହିଚି, ଜାଇଁଲ ପୁଅ, ମରିପଡି ଯାଉଚି ! ଖାଲି ବାଇଧରକୁ ଥରଟେ ଦେଖି ପଳେଇଆସିବି । କ'ଣ ଅଫିସର ହେଇଚି ! ଭାରି ବଡ କାମ କରୁଚି । ସେ ଜନ୍ମା ଘୁଞ୍ଚ ଆସିପାରୁନାହିଁ ସେଇଠୁ । କେତେ ଦୁଃଖର ପୁଅ । କେତେ ଗେଲବସରରେ ବଢେଇଚି । ଥରେ ଦେଖିଦେଇ ପଳେଇଆସିବି । ଅରମାନ ମେଣ୍ଟିଯିବ । ତେଣିକି ଏଇ ମାଟି ତ ମୁଁ କିଣିଚି – ଆଉ କୋଉଠି ମୋ' ମରଣ ହବନାଇଁ । ଏଇଠିକି ଆସି ମୁଁ ମରିବି । ଭାଇନାକୁ ସବୁ ମିଶି ସାହାପକ୍ଷ ହେବ । ତମ କାନ୍ଧରେ ଗଲେ ମୋର ସଦ୍‌ଗତି ହେଇଯିବ ।"

"ଯାଉନୁ ! ମୁଁ ସେ ଉହରା ଟୋକାଙ୍କୁ ଜାଣିନି ? ତୋ' ଆଗରେ ହଁ କରିଦେଇ ଶେଷକୁ ନ ଆସିଲେ ମୁଁ କ'ଣ କରିବି କହିଲୁ ? ତୁ ଏଇଠି ରହିଯା ! ବାଇଧର ଚାହିଁଲେ କୋଡିଏ ଲୋକ ଆସି ଠିଆ ହେଇଯିବେ । ଚାହିଁଲେ କୋକେଇ । ଚାହିଁଲେ କାଠ । ତୁ ମୋ' ବୋଲ ମାନି ରହିଯା । ଏଇଠି ମଲେ ସମସ୍ତେ ପାଣିମୁନ୍ଦେ ଲେଖାଁ ଦେବେ । ସେଇଠି କ'ଣଟା ପାଇବୁ ?"

ବୋଉ ପାଟି ଫିଟେଇ କହିଲା, "ତମର ଏ ଭଉଣୀ ଖଣ୍ଡ କ'ଣ ଶୁଣିବା ଜନ୍ତୁ ? ମୁଁ ପରା ଆଜି ଦିନସାରା ବୁଝେଇ ବୁଝେଇ ହାରିଗଲିଣି । ତା'ର ଏକ ଲିଙ୍ଘା ଲାଗିଚି, ସେ ସେଇ ଗାଡକୁ ଫେରିଯିବ । ସେଇଠି ତା' ବଡ ଘଇତା ଘର ! ମଲୁ ନାଇଁ ଲୋ ରାଣ୍ଡ !" ନଣନ୍ଦ ଭାଉଜଙ୍କର ସବୁଦିନିଆ ଟାପରା !

ସାଉଁ ସାଉଁ ହସ ଭିତରେ ପୁଣି ଶୁଭିଲା, "ସେଇ ଘଇତାଘରକୁ ପରା ଯାଉଚି ! ଏଥର ଯିବି ଯେ ଆଉ ଫେରିବି ନାଇଁ । ବାପଘରେ କୋଳି ଖାଇ ମଞ୍ଜି ପୋତିଚି ବୋଲି ଆଉ ତୁ ଉଲୁଗୁମା ଦେଇପାରିବୁ ନାହିଁ ।... ମୋର କେତେ ଅଳି-ଅର୍ଦଳି ଦିହକଯାକ ସହିଚୁ ମ' ଦେଠେଇ, ମୋର ସହି, ସଙ୍ଗାତ ସବୁ ! ଶୁଣ ! ମୁଁ କହିଲେ, ଭାଇନା ସିନା ବୁଝିବ ନାଇଁ ତୁ ତ ବୁଝିଯିବୁ ! – ବାଇଧରକୁ କେମିତି ପାଣିରୁ ଛାଣିଲାପରି ବଢେଇଚୁ କ'ଣ ମନେ ନାହିଁ ? ସେ ଏବେ ସୁଖରେ ଘରଦ୍ୱାର କଲା; ପୁଅ ମାଇପ ଧରି ଆନନ୍ଦରେ ରହିଲା – ତାକୁ ଏ ବୟସରେ କାହିଁକି ଚିନ୍ତା ମୁଣ୍ଡେଇଦେବା କହିଲୁ ? ମୋ' ପିଲା ମୋ' ପାଇଁ କାହିଁକି ଘାଣ୍ଟି ହେବ ? ସେ କାହିଁକି ତା' ଫଳନ୍ତି ସମୟରେ ରଇ ଜଳିବା ଦେଖିବ ? – ପଦ୍ମବନ ପରି ତା' ସଂସାରରେ ମୁଁ କାହିଁକି କଣ୍ଟାପରି ରହିବି ?... ଆଉ ଆର କଥା ହେଲା ଯେ ସେଇ ନଈବାରିଲେ ଆମ ସାତପୁରୁଷ ହାଡ ମିଶି ରହିଚି – ସେଇଠି ଦାହ ହେଇଗଲେ ଭଲ । ସେମାନେ ଆସି ପାଛୋଟି ନେବେ । ଗଲା କଥା ଯୋଉଠି ଆରମ୍ଭ ହେଇଥିଲା, ସେଇଠି ସରିଯିବ । ଯା, କ'ଣ ଗଣ୍ଡେ ଖାଇଦେଇ ବାହାରିପଡିଲୁ, ରେଳ ସମୟ ହେଇଗଲା । ତୁ ଟିକିଏ ବଳ ଦେଲେ ଭାଇନା ସାହସ କରିବ । କିଛି ଚିନ୍ତା କରନା । ମୁଁ ସବୁ ବତେଇଦେବି । ଜ୍ଞାନ ଥାଉ ଥାଉ ସବୁ ବତେଇଦେବି । କିଛି ଅସୁବିଧା ହେବନାହିଁ ।"

ଅନ୍ଧାର ପିଣ୍ଡାରେ ମୁଁ ସେମିତି ଠିଆହୋଇଥାଏ । ବାହାରେ ଝିପିଝିପି ବର୍ଷା । ଏଥିରେ ଅପିନାନୀ ବସିଥାଏ ରେଳରେ ଫେରିଯିବ । କେମିତି ଆଗ ଷ୍ଟେସନ ଯାଏଁ ଯିବ ସେ ବର୍ଷାରେ ? ରୋଗିଣା ମଣିଷ । ଓଦା ହୋଇଯିବ ନାହିଁ ? ତା' ଆଖିରେ ସିନା ମୁଁ ଅଫିସର । ମୁଁ କି ଅଫିସର

ତା' କ'ଣ ମୁଁ ଜାଣିନାହିଁ ? ଅପିନାନୀ ମ'... ତୁ କି ବୁଝିବୁ ମୋ' ଦୁଃଖ । ମୋର ଥାଆନ୍ତା କି ଗାଡି, ଘୋଡା, ନୌକର, ଚାକର, ଧନବଳ, ଜନବଳ – ମୁଁ କ'ଣ ଲୁଚି ଲୁଚି ଏମିତି ତୋ' କଥା ଏଠି ଶୁଣୁଥା'ନ୍ତି ? ତୁ ଏମିତି ଡାକିହାକି ମରିବାକୁ ଯାଉଥାନ୍ତୁ, ଆଉ ମୁଁ ଟଟେ ଛାଡିଦେଇଥା'ନ୍ତି ?

ଅପିନାନୀ ବୋଧହୁଏ ଚାଲିଯାଉଥିଲା ଆଉ ଗୋଟିଏ କାରଣରୁ । ମୁଁ ତ ତା'ର ଜନ୍ମିତ ପୁଅ ନୁହେଁ – ହେଲେ ମଧ କୋଉ ଊଣା ସେଥିରୁ ? ବୋଉ ସିନା ଆମର ପାଞ୍ଚଟା ଭାଇଭଉଣୀଙ୍କୁ ଜନ୍ମକରିଛି – କିନ୍ତୁ ସମସ୍ତଙ୍କୁ ପାଳିଛି ଏଇ ଅପିନାନୀ । ଜନ୍ମ ହେଲାବେଳେ ଶୂଳ ଧରିଛି । ଇଚ୍ଛାରିଛି । ନାହି କାଟିଛି । ଏନ୍ତୁଡି ମୁଣ୍ଡା ଜାଳି ଆମକୁ ସେକିଛି ।... ବୋଉ ଥରେ ଥଟ୍ଟା କରି କହୁଥିଲା, 'ସେଇଟା ଭଉଣୀ ହେଇଗଲା ବୋଲି ସିନା, ନହେଲେ ଆମ ରାଜାଙ୍କର ଦୁଇ ରାଣୀ; ମୋ' ପିଲାଙ୍କର ଦୁଇ ମା' ।... ମୁଁ କୁଆଡେ ଭାରି କାନ୍ଦୁରା ଥିଲି । ଅପିନାନୀ ମୋ' ତୁଣ୍ଡରେ ତା' ଶୁଖିଲା ଦୁଧଭୁଣ୍ଡି ଗୁଞ୍ଜିଦେଇ ମୋତେ ଆୟତ୍ତ କରୁଥିଲା ! ସବୁବେଳେ ମୋତେ କୋଡରେ ପୂରେଇ ଶୋଉଥିଲା । ମୋର ମନେଅଛି... ମୁଁ ଶୋଇଚି ବୋଲି ଭାବି ବେଳେବେଳେ ମୋତେ କୁଣ୍ଢେଇଧରି ଖୁବ୍ କାନ୍ଦୁଥିଲା । ମୁଁ ଆଖି ବୁଜି ତା' କାନ୍ଦଣା ଶୁଣୁଥିଲି । ମୋତେ ଡରମାଡୁଥିଲା ଚାହିଁଦେବାକୁ । ମୁଁ ଜମା ବୁଝିପାରୁନଥିଲି ଅପିନାନୀକୁ, ଆଉ ତା' କାନ୍ଦଣାକୁ । ଏବେ ବି କୋଉ ବୁଝିଛି ?'

ସେ ବୋଧହୁଏ ଚାହିଁଥିଲା ଆମ ଭିତରୁ କେହି ଜଣେ ତାକୁ ବୋଉ ବୋଲି ଡାକୁ । ସେଥିପାଇଁ ମୋତେ ପୋଷ୍ୟପୁତ୍ର କରିବାକୁ କୁଆଡେ ଥରେ କହିଥିଲା । ସେଥିପାଇଁ ଘରେ ଘୋର କଳି । ବୋଉ ଆମର ରାଗିଗଲେ ଚଣ୍ଡୀ । ଉପ୍ରୋଧ ନ ରଖି ରକବକ କରି ଶୋଧି ଦେଇଯାଏ । ହେତୁ ହେଲାଦିନୁ ଏଇଟା ଆମର ଦେହଘଷା ହୋଇଯାଇଥାଏ । ନଣନ୍ଦ ଭାଉଜ କଳି ଦିନଓଳିଏ କଥା ନୁହେଁ – ପଚାଶ ବର୍ଷର ପର୍ବ । ଅପିନାନୀର ସେଥିରେ ସବୁବେଳେ ଊଣା ପକ୍ଷ; ଅସହାୟ ପକ୍ଷ । ନନା ସବୁବେଳେ ବୋଉପଟିଆ ହୋଇ ଦି'ପଦ ଶୋଧିଦିଅନ୍ତି । ଅପିନାନୀ ମଧ ପାଟିକରି କ'ଣ ସବୁ କହେ । ନନାଙ୍କୁ ମାଇଗୁଲିଆ, ମାଇପିବୋଲା, ଅଧମ ବୋଲି ଗାଳିଦିଏ; କିନ୍ତୁ ବଡ ଭାଗ ସମୟ ଖାଲି ହାଉଁ ହାଉଁ ହେଇ ପିଲାଙ୍କ ପରି ବୋବାଳି ଛାଡି କାନ୍ଦେ । ସାଇପଡିଶାକୁ ଶୁଭେ । ସମସ୍ତେ ଜାଣନ୍ତି । ତାଙ୍କର ବି ଦେହସହା ହୋଇଗଲାଣି । ଗାଁ ଝିଅ । ଶାଶୁଘରକୁ ଯାଇଚି ନା ନାହିଁ ବିଧବା ହୋଇଗଲା । ସେହିଦିନୁ ବାପଘର ଆଶ୍ରାରେ ରହିଗଲା ଦିହକଯାକ । ଭାଇ ସିନା; ଏକା ନାହି ଦି'ଖଣ୍ଡ । ଭାଉଜ ତ' ପରଘର ଝିଅ । ସବୁବେଳେ ଅହଙ୍କା । ସବୁବେଳେ ଝିଙ୍ଗାସ ସହି ସହି ସେ ମାଟି କାମୁଡି ପଡିରହିଛି । କେବେହେଲେ ସେଇ ପିଣ୍ଡାତଳେ ପଡି ମରିଯିବ ।

ତା' ଭାଇନା ତ ପଞ୍ଚପ୍ରାଣ । ସବୁବେଳେ ଅପିନାନୀ ଜଗି ଆସିଛି ରକ୍ତନଳୀକୁ ଜଗିଲା ପରି । ମାଛ ବଢାହେଲାବେଳେ, ପିଠାପଣା ଖାଇବାବେଳେ, ଭାଇନା ପାଇଁ ବଡ ଟେକା ପେଟମାଛ ଦି'ଖଣ୍ଡ, ଭଲ ଭଲ ଦେଖି ପିଠା ଦି'ପୁଞ୍ଜା ବାଢିଦେଇଛି । ସେଥିପାଇଁ ଝଡାବାଡିଆ କଳି । ବୋଉ ରାଗି-ରାଗି କେତେଥର ତାକୁ ଶୋଧିଛି, "ଆଲୋ ନିଅଂଶୀ ରାଣ୍ଡ, କାହିଁକି ସେ ଭାଇନାଟିକୁ ସେମିତି ଆବୁଡି ବସିଚୁ ? – ମନ ହଉଚି ଯଦି ବିଭା ହେଇପଡୁନୁ ? – ତୋ'ରି ସେ ଭାଇ – ଆଉ

କାହାରି କିଛି ନୁହଁ ? ଆମେ ସବୁ କ'ଣ ପର ? ତୁ'ଇ ଉପରେ ପଡି ବାଡି ନଦେଲେ, ଆମେ ସବୁ ଶତ୍ରୁ ହେଇଚୁ, ତୋ' ଭାଇକୁ ଓପାସେ ରଖିଦେବୁ ? – ନନା ବି ମାଛଥାଳିଆ ଫିଙ୍ଗି ଦେଇ ତାକୁ ତୁହାଏ ଶୋଧି ଦିଅନ୍ତି । ସେ କିନ୍ତୁ ସେଇଆ । ମରିଯିବ ସିନା – ଭାଇନାକୁ ତିଳେହେଲେ ତଳେ ଥୋଇଦେବ ନାହିଁ । ସେଥିପାଇଁ ଗୋଟାଏ ଅଣ୍ଡିରାଠୁ ବଳି ସେ କାମ କରେ । ଘରେ ଗୁହାଳ ଗୋବର, ପାଣିବୁହା, ରନ୍ଧାବଢା ସବୁ କରେ । ଏଡେବଡ ଘରକୁ ଗୁରୁବାରକୁ ଗୁରୁବାର ଲିପାପୋଛା କରି ନିର୍ମଳ କରେ । ଅମଳଦିନେ ଖଳାରେ ବସି ଧାନଯାକ ପୁଡା ବନ୍ଧେଇ ନେଇଆସେ । ଗୁଆ ବେଉଷଣକୁ ଯାଏ ହିଡମୁଣ୍ଡାରେ ବସି ତଦାରଖ କରିବାକୁ । ନନାଙ୍କର କିମ୍ବା ବୋଉର ଭାଇ ନାହାନ୍ତି । ଅପିନାନୀ ଆମର ପିଉସୀ ଖାଲି ନୁହେଁ; ସେ ଆମ କକେଇ, ଦଦେଇ, ମାମୁ, ଦେଠେଇ, ଖୁଡୀ ଆଦି ଗୋଛାଏ ଆପଣାର ମଣିଷ । ସେ ଆମ ଘରର ମେରୁଖୁଣ୍ଟ । ସେ ଆମ ମୁରବି; କିନ୍ତୁ ହୀନକପାଳୀ ନିର୍ମାଖୀଟିଏ ! – ମଙ୍ଗ ଭିତରେ ନିହାତି ଏକୁଟିଆ ନିଆଶ୍ରା ଆତ୍ମାଟିଏ ।"

ନନା ପୁଣି କହିଲେ, "ମୁଁ କହୁଚି ଅପି, ତୁ ଏଇନେ ମରୁନୁ ! ତୋ' ଦିହ କେତେ ବାଟକୁ ଆସିଗଲାଣି । ପୁଅ ଯାହାଠଉ ଓଷୁଅ ଆଣୁଚି ସେ ଅମୃତହସ୍ତା । ସେ କ'ଣ କାଳି ରାୟଗୁରୁ ହେଇଚି କି – ଛୁଇଁଦେଲେ ବର୍ଷକ ଆୟୁ ଦିନକେ ତୁଟିଯିବ ? ତାକୁ କହି ପୁଣି ଭଲ ଉଷୁଅ ଆଣିବା । ଆଉ ଦଶ ପାଞ୍ଚ ବର୍ଷ, ଯାହା ତୋର ଥିବ, ସେତକ ଥାକିଯିବୁ !"

ବୋଉ କହିଲା, "ମୁଁ ପରା ସେଇଆ କହୁଚି । ତା' ମୁହଁଟା କେମିତି ତୋଫା ଦିଶୁଚି, ଦେଖୁନ ! ରାଉରାଉ ଜଳୁଛି ଦର୍ପଣ ପରି !"

ଅପିନାନୀ ଶୁଣି ନଶୁଣିଲା ପରି ରହିଗଲା କିଛି ସମୟ । ତା' ଆଖି ବୋଧହୁଏ ଟିକିଏ ପଡିଗଲା । ଏମିତି କେତେଦିନ ହେବ ତାକୁ ଶୁନ୍ ମାରିନେଉଛି । ଏମିତି ବୋଧହୁଏ ଦିନେ ମାରିନେବ – କେଜାଣି !

"ମୋର ଏଇଠୁ ଘୁଞ୍ଚିବାକୁ ତିଳେ ମନ ନାହିଁ । ଏଥିରୁ ଗୋଟେ ଗଳଗ୍ରହ ମୋ' ବେକରେ ଓହଳିଚି ! ସେ ଯେମିତି କହୁଛି, ଯଦି ସତକୁ ସତ ସେମିତି ମରିଯାଏ, ମୁଁ ନିଜେ ନିଜଞ୍ଜାଳି ହେଇ ମରନ୍ତି ।"

"ତୁମ ଭାଇଭଉଣୀ ଦିହିଁଙ୍କୁ କାହିଁକି ଖାଲି ମରଣ-ବାଆ ଗୋଡେଇଚି କେଜାଣି ! କିଏ ମରିବ ନାହିଁ ଯେ ଏମିତି କୋକ ଦେଖେଇ ଡରଉଛ ? – ଦେଖିବ ରହିଥାଅ, ତୁମେ ଯୋଡାକଯାକ ବୁଢାକାଙ୍କ ପରି ବସିଥିବ – ମୁଁ ଖସିଯିବି ମଝିରୁ ।"

ଅପିନାନୀ ଚମକିଲା ପରି କହିଲା, "କ'ଣ ବେଳ ହେଇଗଲା ? ଯିବା ପରା ! ମୋ' ଅଣାୟତରେ ମୋତେ ଏମିତି ଥରକୁ ଥର ଗହୀରକୁ ଭିଡିନେଉଛି । ସପନ ପରି କ'ଣ ଗୁଡାଏ ଦିଶିଯାଉଛି । ଏଇଲାଗେ ଗୋଟାଏ ପାଞ୍ଚହତା ମଣିଷ ଦିଶିଲା । ଦୁଧ ପିଠଉ ପରି ଗୋରା । ଏଡେ ଚନ୍ଦନ ଟୋପା ।"

ବୋଉ ହସି ହସି କହିଲା, "ଆଉ ଗୁଡାଏ ଚଟରେଇ ହଅନା, ବୁଝିଲୁ ! ମଲାଗଲାବେଳକୁ

ତତେ ଖାଲି ସେଇ ଗୋବିନ୍ଦ ଦାସ ଦିଶୁଚି । ଏତେ ତତେ ଦେଖି ପାରୁଥିଲା ଯଦି ଅଲପେଇଷ ମରୁଥିଲା କାହିଁକି ? ତୋ' କାଚ ସିନ୍ଦୂର ଛଡେଇ ନେଲା ପିଲାଦିନୁ । ମତେ ହୀନିମାନ କରାଇଲା ଜୀବନସାରା !"

ମୁଁ ଶୁଣିବା କଥା – ଗୋବିନ୍ଦ ଦାସ ପରି ସୁନ୍ଦର ମଣିଷ ଆଖପାଖ କୋଡିଏ ଖଣ୍ଡ ଗାଁରେ ନଥିଲେ କି ଅପିନାନୀ ପରି ଟକଟକ ଚମ୍ପାଫୁଲିଆ ଗୋରୀ ଝିଅ ଖଣ୍ଡମଣ୍ଡଳରେ ନଥିଲେ । ବିଭାବେଦିରେ କୁଆଡେ ଅପିନାନୀକୁ ଚାହିଁବା ଲୋକେ ଜଳକା ହୋଇଯାଇଥିଲେ । ଗୋଟିଏ ବୋଲି ଝିଅକୁ ଶଙ୍ଖରେ ପାଣି ପୂରେଇ ଟେକିଦେଲାବେଳେ କୁଆଡେ ଶିକା ଉପରୁ ପାଣିକଖାରୁଟାଏ ଖସିପଡି ଦୁଲ୍‌କିନା ଫାଟିଯାଇଥିଲା । ସମସ୍ତଙ୍କ ମନକୁ ପାପ ଛୁଇଁଥିଲା । ସତକୁ ସତ ମାସ ଯୋଡାକ ଭିତରେ ବିପତ୍ତି ପଡିଗଲା । ଗୋବିନ୍ଦ ଦାସ, ଗୋରା ଟକଟକ ପଞ୍ଚହତା ମଣିଷ, ଯାହାଙ୍କ କପାଳରେ ଚନ୍ଦନ ଟୋପା ଚନ୍ଦ୍ରଉଦିଆ ପରି ଦିଶୁଥିଲା, ଅପିନାନୀର ବର, ଆମ ପିଉସା, ଗୋଟାଏ ଦିନ ଜରରେ ଚାଲିଗଲେ ।

ଖରାଦିନ ଦି'ପହରବେଳା, ହେଞ୍ଜେଡ ଟୋକାଙ୍କ ସାଙ୍ଗରେ ଖରାରେ ବାବନାଭୂତ ପରି ମୋର ବୁଲିବାର ଅଭ୍ୟାସକୁ ଭାଙ୍ଗିବା ସକାଶେ ଅପିନାନୀ ମୋତେ କୋଡରେ ପୂରେଇ ଗପ କହେ – ଗାଁ କଥା, ଗୋବିନ୍ଦ ଦାସ କଥା, ଶଙ୍ଖଚିଲ କଥା, ବଉଳି ଗାଈ କଥା । ଗୋବିନ୍ଦ ଦାସ କଥା କହିଲାବେଳେ, ଥରକୁ ପ୍ରକାରେ କରି କହୁଥାଏ । କହେ... ଗୋବିନ୍ଦ ଦାସ ସାଇବ ପରି ଗୋରା ।... ତା' ବୁକୁ ଦି'ହାତ ଓସାର ।... ତା' ଦାନ୍ତ ମଲ୍ଲୀକଢ ପରି । ତା' କାଖମୂଳ ଚନ୍ଦନପରି ବାସେ । ଆଉ ବେଳେ କହେ – ଅଲପେଇଷାର କଟାସ ପରି ଆଖି । ବୃଢ ସାଲୁବାଲୁ ମୁହଁ । ଦିହସାରା ଭାଲୁପରି କଳା । ଖମ୍ବପରି ଗୋଟାଏ ଜଙ୍ଘ ମଡେଇଦେଲେ ଅପିନାନୀର କୁଆଡେ ନିଃଶ୍ୱାସ ରୁନ୍ଧି ହୋଇ ଯାଉଥିଲା । ଏ ସବୁ କହିଲାବେଳେ ମନକୁ ମନ ଅପିନାନୀ ଗୁଡାଏ ସାଉଁ ସାଉଁ କରି ହସୁଥାଏ । ମୋତେ ଜମା ସୁଖ ଲାଗେ ନାହିଁ । ମୋ' ଉପରେ ଅପିନାନୀ ଜଙ୍ଘ ମଡେଇ ଦେଇଥାଏ । ମୋତେ ତା' କୋଡ ଭିତରେ ରୁନ୍ଧି ଦେଇଥାଏ । ଆଉରି ଆଉରି ଭିଡି ନେଉଥାଏ ।... ଏମିତି ଦିନେ ଖରାବେଳେ ମୁଁ ଆକ୍ରାମାକ୍ରା ହୋଇ ଉଧୁଳିଲି । ଚିଙ୍ଗୁଡି ପରି ହାତଗୋଡ ଛାଟି ଛଟକିଲି । ଅସଂଖ୍ୟ ବିଧା ଗୋଇଠା ମାରି ତା' ଝାଳ ସରସର ପେଟତଳୁ ଭିଡିହୋଇ ବାହାରିଆସିଲି । ମୋତେ ତା' ଦେହ ଆଇଁଷିଆ ଗନ୍ଧେଇଲା । ବିଷପରି ଲାଗିଲା ତା' କଥା । ମୋତେ ସେତେବେଳକୁ ପାଞ୍ଚବର୍ଷ ବୟସ । ସେଇଦିନୁ ଅପିନାନୀକୁ ଦେଖିଲେ ଡେଇଁଲି । ସେ ଗେଲ କରିବାକୁ ଡାକିଲେ ହାତ ଛିଞ୍ଚାଡି ପଳେଇଲି । ସେ କେତେ ସାକୁଲେଇ ହେଲା, କେତେ କାନ୍ଦିଲା – ମୁଁ କିନ୍ତୁ ଆଉ ତା' ପାଖ ପଶିଲି ନାହିଁ । ଏବେ ମଧ ଅପିନାନୀ ଦେହ ମୋତେ ଆଇଁଷିଆ ଗନ୍ଧାଏ । ମୋତେ ନପାଇ ଅପିନାନୀ ମୋ' ସାନଭଉଣୀକୁ ଆଦରିଗଲା । ତାକୁ କୋଡରେ ପୂରେଇ ଶୋଇଲା । ଆଉ କିନ୍ତୁ ଗୋବିନ୍ଦ ଦାସ କଥା କହିଲା ନାହିଁ; ବରଂ କହିଲା ଯେ ତା'ର ଗୋଟେ ଝିଅ ହୋଇଥିଲା । ମୋ' ଭଉଣୀ ପରି । ପୁଅଟାଏ ହୋଇଥିଲା ମୋ'ରି ପରି ।

ଯୋତାକଯାକ ଇନ୍ତୁଡିଶାଳରେ ମରିଗଲେ ।... ବୋଉ ଏକଥା ଶୁଣି ହସିଲା । କହିଲା, ସେ ଛୋପରି ସେମିତି କହେ – ସେଗୁଡାକ ସବୁ କଣ୍ଠା ମିଛ ।...

ମୁଁ ସେଇ ଅନ୍ଧାରରେ ଦାଣ୍ଡପିଣ୍ଡାର ଅଧାକାନ୍ଥ ଉପରେ ବସିଥାଏ । ଅନ୍ଧାର ଟୋପା ଟୋପା ଖସୁଥାଏ ଆକାଶରୁ । ସାମ୍ନା ଝାଉଁଗଛରେ ପବନ ସାଉଁ ସାଉଁ ହେଉଥାଏ । ରାତି ଅର୍ଜନ ହୋଇଆସୁଥାଏ ।

ପୁଅକୁ ନେଇ ମୋ' ସ୍ତ୍ରୀ ଯାଇଥା'ନ୍ତି ବାପଘରକୁ । ରାନ୍ଧୁଣିଆ ଟୋକା ବୋଧହୁଏ ଗୋଷଘରେ ଢୁଳାଉଥାଏ । ବତିଗୁଡିକ ନିଶ୍ଚଳ ଜଳୁଥା'ନ୍ତି । ଦାଣ୍ଡଘରେ ଅତୀତ ସ୍ପଷ୍ଟ ହୋଇ କାନେଇଥାଏ । ପବନକୁ, ବର୍ଷାକୁ । ବର୍ଷା-ଅନ୍ଧାର ଭିତରେ କେହି ଜଣେ ଓଦା ସରସର ହୋଇ ଅପେକ୍ଷା କରିଥାଏ ଖୁବ୍ ନିକଟରେ, ଖୁବ୍ ନୀରବରେ !

ଅପିନନୀ ବୋଉ କଥାକୁ କାନ ଦେଲାନାହିଁ ବୋଧହୁଏ । କହିଲା, "ତତେ ବଳେଇବାକୁ ମୋର ମନ ନାହିଁ । ବୁଝିଲୁ ଭାଇନା, ମୁଁ ସବୁ ଜାଣିସାରିଲାଣି । ତତେ ଟିକିନିଖି ସବୁ କହିଦେବି । ଆଜି ହେଲା ଶନିବାର । ଆସିଲା ଶନିବାରକୁ ତୁ ଝାଡିଝୁଡି ହେଇ, ନିଜଖାଳ ହେଇ ବସିଥିବୁ । ସବୁ ସରିଯାଇଥିବ ।"

"ହଅଅ ! ଜନ୍ମ ମରଣ କଥା ତ' କେହି କହିପାରିବେ ନାହିଁ । ତତେ ଖାଲି ଜଳଜଳ ଏମିତି ଦିଶିଯାଉଛି ? ତୋର ଆଉରି ହଟହଟା ଯୋଗ କ'ଣ ସରିଲାଣି ? ମହାପାତକୀ ତୁ ! – ବୁଝିଲୁ, ଜୀବନଯାକ ଦୁଃଖରେ ଘାଣ୍ଟି ହେଇ ହେଇ ଆସିଚୁ । ତତେ ଶେଷ ବେଳକୁ ନ ଘୋଷାରିଲେ ସେ କ'ଣ ଏମିତି ସହଜରେ ଛିଣ୍ଡେଇଦେବ ?"

"ହଁ, ଦବ ! ଏଥର ନିଶ୍ଚେ ଠୋ-କିନା ଛିଣ୍ଡେଇଦେବ ! ମୁଁ କ'ଣ ନାହିଁ କରୁଚି ମୁଁ ପାତକୀ ବୋଲି; ମାତ୍ର କିଏ ମତେ ଏ ମାୟାରେ ଫାନ୍ଦିଥିଲା ? ଏଇ ତମେ ଦୁଇଜଣ । ମୋ' ପ୍ରାଣପଞ୍ଜୁରି ଭିତରେ ତମେ ଲକ୍ଷ୍ମୀନାରାୟଣ । ତମ ପିଲାଏ ମତେ ମାୟା ଲଗେଇ ରଖିଥିଲେ । ଲକ୍ଷେ ଥର ଡାକିଥିବି, ମରଣ ହେଇଯାଉ ବୋଲି । ହେଲେ, ପୋଡିଯାଉ କିନା ମୋ' ଜନ୍ମ, ତମରିମାନଙ୍କ ପାଇଁ ମୁଁ କ'ଣ ସତେ ଋହିଁଥିଲି ମରିଯିବାକୁ ? ନାଁ, ମତେ ତ ଲୋଭ ଗ୍ରାସିଥିଲା, ଏଇ ଗୁହମୂତରେ ଘାଣ୍ଟି ହେଇ ଗାଳି-ଝିଙ୍ଗାସରେ ପଡିରହିବାକୁ ମନ ହଉଥିଲା । ଏଥର ଆଉ ସେ ସବୁ ନାଇଁ । ଋରିଆଡୁ ବନ୍ଧନ ଛିଣ୍ଡି ଗଲାଣି । ଏଥର ଏଇ ମଙ୍ଗଳବାରକୁ କଣ୍ଟ । ସେଇଦିନ ନ ମଲେ ମତେ କହିବୁ ।"

"ଜାଣିଶୁଣି ଯେବେ ମୁରୁଚୁ, ଆଉ ଦିନେ ଗଡେଇ ଦଉନୁ । ବୁଧବାରେ ମଲେ ଏକାଦଶୀ ପାଇବୁ । ଏଇଟା ନିର୍ମଳା ଏକାଦଶୀ – ଭାଗ୍ୟରେ ଥିଲେ ମିଳେ ।"

ବୋଉ ହସିଲା: "ଅଭିଲା ଆଉ କାହାକୁ କୁହନ୍ତି ? ଭଉଣୀକୁ ଭାଇ, କେହି କାହାକୁ ଉଣା ନୁହନ୍ତି । ହଇ ହେ, ତମ ଭଉଣୀ କ'ଣ ଘଇତାଘର ଯିବେ କି ? ଏମିତି ଦିନ, ବାର, ବେଳା ବୁଝି ଖଡଖଡି ସଜିଲ ହବ, ରାଣୀ ବିଜେହେବେ ?"

ଅପିନାନୀ ହସିଲା ନାହିଁ । ସେମିତି ପରିଷ୍କାର କ୍ଷୀଣସ୍ୱରରେ କହିଲା, "ସେଇ ତ' ବଡ ଘଇତାଘର ! ତୋ' ବେଳାରେ ତୁ' କ'ଣ ନଯିବୁ କି ?... ହଉ, ଭାଇନା; ତୁ ଯେମିତି କହିଲୁ ସେମିତି ହେବ । ମୁଁ ବୁଧବାର ଚାଲିଯିବି । ଏ ସବୁ ତିଥି ବାର ମାନିଲେ ଭଲ; ନହେଲେ ସେଥିରେ କିଛି ନାହିଁ ।... ଆଖି ବୁଜିଦେଲେ ତ ସୋମଦ୍ର – ସେଠି ତିଥି ନା ବାର ? ମୁଁ ସବୁ ଜାଣିଚି ! ମୁଁ କ'ଣ ମରିନାଇଁ କି ? କେତେ ଥର ମରିଚି ! ଏଇନେ ତ ମରୁଚି ! ମୋର ଗୋଡ ଦି'ଟା ଅଣ୍ଟାଠଉଁ ମରିଗଲେଣି ।... ସେଇଠୁ ଏ ମାଦଳା ଖଣ୍ଡ ନହେଲା ଆଉ ଦିନେ ଅଧେ ସୁକୁସୁକୁ ହବ ! ହେଲା, ସେଇ ବୁଧବାର ସ୍ଥିର ହେଲା !"

ସବୁ କେମିତି ସ୍ତବ୍ଧ ହୋଇଗଲା । ବାହାରେ ବର୍ଷା ପବନ ମଧ୍ୟ ରୋଧି ହୋଇଗଲା । ମୁଁ ଅସୁସ୍ଥ ବୋଧକଲି । ସେଇଠୁ ଉଠିବାକୁ ଇଚ୍ଛାହେଲା ନାହିଁ । କୁଆଡେ ଯିବାକୁ, କ'ଣ କାମ କରିବାକୁ ମନ ବଳିଲା ନାହିଁ । କ'ଣ ହବ ଔଷଧ ଅପିନାନୀର ? ଯାତ୍ରା ପାଇଁ କ'ଣ ଅବା ପ୍ରସ୍ତୁତ ହେବାର ଅର୍ଥ ?

..."ମଙ୍ଗଳବାର ରାତିରେ ତ ପ୍ରଳୟ ! ତୁ, ଭାଇନା ଜନ୍ମା ଅନିଦ୍ରା ରହିବୁ ନାଇଁ । ତୋ' ଦିହ ଦିହପରି ନୁହେଁ । ମତେ ସେ ଢେଙ୍କିଶାଳ ପାଖ ବଖରାରେ କବାଟ ଆଉଜେଇଦେବୁ ।... ସେଇ ରାତିରେ ସମସ୍ତେ ଏକାଠି ଆସିବେ !... ବୋଉ ଆସିବ – ନାକ କାନ୍ଦୁରି, ସକସକି – ଏତେ ସିନ୍ଦୂର ମୁଣ୍ଡୁଳା, ଏତେ ନୋଥ, ଚିତାକୁଟା ବୁକୁ ! ସେ କେତେ ଥର ଆସିଲାଣି !... ନନା ଆସିବେ । ଚାହିଁଦେଇ ଆଉ ପଳେଇଯିବେ ନାଇଁ ! କାନ୍ଧରେ ପାକଲା ଗାମୁଛା ପକେଇ, ଥନ୍ତଲପେଟ ଦେଖେ ନିର୍ମାୟା ପୁରୁଷ ଠିଆହେବେ । ମତେ ନିଶ୍ଚଳ ଚାହିଁ ଠିଆହେବେ ! ବିଧବା ହେଲାଦିନୁ ଝିଅର ଫୁଙ୍ଗୁଳା ହାତଗୋଡକୁ, ତା' ମେଲା କପାଳଖୁ ସେ ଚାହିଁ ପାରୁ ନଥିଲେ ତ – ସେଦିନ ଚାହିଁବେ ! ନିଶ୍ଚଳ ଠିଆ ହେବେ !... ଗୋବିନ୍ଦ ଦାସେ ଆସିବେ । ଲାଜ ଲାଜ ହେଇ ଚାହିଁବେ ! ତୋ' ବଡପୁଅ ଆସିବ । ଯେ ମତେ ଆଦରିଯାଇଥିଲା । ଏ ଅଲକ୍ଷଣୀ, ଆଣ୍ଠୁକୁଡୀ ଧାସରେ ଝାଉଁଳିଗଲା । ସେ ଆସି ଠିଆହବ ପାଟି ପାକୁ ପାକୁ କରିବ କଥା କହିବାକୁ ।"

ବୋଉ ସୁକ୍‌ସୁକ୍ କାନ୍ଦି ପକେଇଲା । ନନା ସେମିତି ଥୋତରେ ହାତ ରଖି ନୀରବ ରହିଲେ ।

"ନାଇମ' ଭାଇନା ! ଆଉ ପୂର୍ବ ଭଳି ଅଛି କି ? ମୁଁ ଯାଇ ଦେଖିଆସିଚି ପରା ! ମଶାଣିରେ କି ସୁନ୍ଦର ସବୁ ପକ୍‌କା ଘର କରିଦେଲେଣି । ସିମିଟି ଉପରେ ରଇ ଜଳିବାକୁ ଜେଗା କରିଦେଇଛନ୍ତି । ଭାରି ଶୀତଳ ଜେଗା । ସେଠିକି ଯୋଉ ପବନ ପଡୁଛି, ଯାହାର ହେଲେ ମନ ହେଇଯିବ ମରିବାକୁ ।"

"ମଲୁ ଲୋ ମଶାଣିଚଣ୍ଡୀ ।" କହିଲା ବୋଉ ! ଅପିନାନୀକୁ ଆଉ କ'ଣ କହିବାର ଥିଲା ?

"ତୁ ତା'ହେଲେ କ'ଣ ସତକୁ ସତ ବାହାରିଲୁ ? – ସବୁ ତୋର ଛିଡେଇଦେଲୁ ?"

"ଯାଉନୁ – କୋଉ ଅଭିଲା କଥା କହୁଚୁ ବା ଭାଉଜ ! ସେ ତୋର ତା'ର ନା' ମୋର ? – ମୁଁ ମୋର ଖସିଯିବି । ଏ ପୋଡ଼ା ଦିହଖଣ୍ଡ ପଡିଥିବ ପୁରୁଣା କୋତରା ମେଣ୍ଟାଏ ତୋର ପରି ।"

"ଏମିତି ଠୋ-ଠା ସବୁ କହିଦଉଚୁ । ତତେ କ'ଣ ଯମ-ଯାତନାକୁ ଡର ମାଡୁନାହିଁ! ବାଟଘାଟ ନଥିବା ସେ ଅପନ୍ତରା ଭିତରେ କେମିତି ପଶିବୁ ? ଯମ ଆଗକୁ କେମିତି ଯିବୁ ?"

"ଯାଉନ୍ତୁ, ମୁଁ ସେ ରଇଜଳାକୁ ଡରିଚି ? – ସେ କ'ଣ ମତେ ଯାତନା ଦବ ବା' ? ମୁଁ କୋଉ ଯାତନା ନ ଭୋଗିଚି ଯେ ଆଉ ବାକି ଅଛି ? ମୁଁ ନିଆଁରେ ଶୋଇଚି ! ସୋମଦ୍ରେ ବୁଡ଼ିଚି । କ୍ଷୁଦ୍ରଧାରରେ ଚାଲିଛି । ମୋ' ଯାତନା କଥା ଶୁଣିଲେ ଯମ ଅଳପେଇଷର ଚେତା ବୁଡ଼ିଯିବ । ମୁଁ ତ ଜୀଇଁବାକୁ ଡରିନାହିଁ, ଏଇଲାଗେ କ'ଣ ମରିବାକୁ ଡରିବି ?"

"ଏମିତି ଉଜୁଟାଣ କଥା କହନା । ମରଣକୁ ନଜାଣି ମରଣକୁ ହୁବ କର୍‌ନା ! ଶାବଳ ପରି ଦାନ୍ତ, ହୁଳା ପରି ଆଖି, ବିକଟାଳ ରୂପ ଆସି ଦଉଡ଼ିରେ ବାନ୍ଧି ଟେକିନେବେ । ତାଙ୍କଠଉଁ ଉବୁରିବା ପାଇଁ କାହାର ଆୟତ୍ତ ଅଛି ?"

"ହଅଅ ! ସେଗୁଡାକୁ ମୁଁ ଦେଖିସାରିଚି ! ନିଇତି ରାତିରେ ସେଥିରୁ ପୁଞ୍ଜାଏ ପାଞ୍ଚଟା ଆସି ଖିଙ୍କାରି ହୁଅନ୍ତି । ମୁଁ ତାଙ୍କୁ କଟମଟ କରି ଚାହିଁଦେଲେ ସବୁ ଡରଳି ଯାଆନ୍ତି । କିଏ ଦିଶେ କେଦାର ତିଆଡୀ ପରି, ଆଉ କିଏ ବାଞ୍ଛା ପାଇକରା ପରି । ସବୁ ଦାନ୍ତ ନେଫେଡ଼ି ହାତ ମକଚି ନଙ୍ଗର-ପଙ୍ଗର ହୁଅନ୍ତି । ଭାଲୁପରି ରୁମ ସାଲୁବାଲୁ ନଙ୍ଗଳା ଅଣ୍ଡିରା ଗୁଡ଼ାଏ । ଥୁ' କରି ମୁଁ ଲଣ୍ଡାଏ ଛେପ ପକାଇ ଦେଲେ ତେଲୁଣିପୋକ ପରି ସେମାନେ ହୀନିମାନ ହେଇ ଉଭେଇଯାଆନ୍ତି । ଆଜି ବୋଲି ନୁହେଁ, ମୁଁ କାହିଁ କୋଉକାଳୁ ସବୁ ରାତିରେ ଏଇ ଯମଦୂତମାନଙ୍କ ସାଙ୍ଗେ ବଞ୍ଚିଆସିଚି; ଲଢ଼ି ଆସିଚି । ମୋତେ କେତେଥର ସେମାନେ ମାରିପକେଇଚନ୍ତି । ମୁଁ ତାଙ୍କୁ କେତେଥର ସୋରା-ସୋରା କରି ଭିଣିପକେଇଚି । ନିଦ ଭାଙ୍ଗିଲାବେଳକୁ ମରଣ ନାଇଁ । ମୁଁ ସେ ଅଲାଜୁକ, ଥୋବଡ, ରଇଜଳାଙ୍କୁ ଜାଣିଚି ! ଗୋବିନ୍ଦ ଦାସ ମାଇପକୁ ସେମାନେ କ'ଣ କରି ପାଇଲେ କି !"

ଅପିନାନୀର ଆତ୍ମାଭିମାନ, ତା'ର କାଷ୍ଠା ସତୀପଣ, ତା' ଦମ୍ଭ ଦେଖି ମୁଁ ଥ' ହୋଇ ଚାହିଁରହିଲି । ମୋର ବିଶ୍ୱାସ ହୋଇଗଲା ଯେ ଅପିନାନୀ ଚାହିଁଲେ ଯମ ସାଙ୍ଗେ ଲଢ଼ିଯାଇପାରେ । ମରଣ ତା' ପାଇଁ କି ଛାର ! ତାକୁ ସେ ପାଦରେ ମର୍ଦ୍ଦିଦେଇ ପାରେ । କାହାର ସତେ ସାଧ ଏ ନାଗୁଣୀ, ବାଘୁଣୀ, ଦର୍ପିନୀ ସତୀ ନାରୀକୁ ଘୋଷାରି ନେଇଯିବ ? ମୋ' ବୁକୁ ରୁନ୍ଧି ହୋଇଗଲା ତାତିଲା ନିଃଶ୍ୱାସରେ । ଆଖି ନାକୁର ଢବଢବ ପାଣି ନିଗିଡ଼ି ଗଲା । ରୁମ ଠିଆ ହୋଇ ରହିଲା ଦେହସାରା ।

ବୋଉ ପୁଣି ହସିଲା – "ତୁଟା ଏତିକି ସତୀ ଟି ! ଗୋବିନ୍ଦ ଦାସକୁ କାହିଁକି ଯମ ନେଇଗଲା, ଛଡେଇ ଆଣିଲୁ ନାଇଁ ?"

ଅପିନାନୀ ସେମିତି ସାଉଁ ସାଉଁ ହସିଲା – "କ'ଣ କହିବି ତତେ ମ' ଭାଉଜ ! ତତେ ମିଛ, ମତେ ସତ ! ସେ କ'ଣ କୁଆଡେ ଯାଇଚି କି ? ସେ ପରା ମୋ' ଦିହକଯାକ ଏଇଠି ଏଇ ଘରେ ଲୁଚିଛି । ଲାଜକୁରା ମଣିଷଟା ! କେତେବେଳେ ଆଉ ମୁହଁ ଟେକି ମତେ ଚାହିଁ ଦେଇନାହିଁ । ଯେତେବେଳେ ଦେଖିବ ସେଇ ଧୋବଂସରସର ମୁହଁ ତଳକୁ ପୋତି ଆତହେଇ ଯାଉଚି । ମୁଁ ପରା

ରାଣି ପକେଇଚି, ଏଇଥର ଗୋବିନ୍ଦ ଦାସର ଲାଜ ଛଡେଇବି ! ମାଇଗୁଲିଆ ଆସିବ; ମୋ' ହାତ ଧରି ଡାକିବ, ତେବେଯାଇ ମୁଁ ଯିବି ନା – ଖାଲି ଏମିତି ପଳେଇବି ତା' ପଛେପଛେ ?"

"ଆଲୋ, ଜଗନ୍ନାଥଙ୍କୁ ଡାକୁନୁ, ତୋ' ବେଳ ଆଖର ଯଦି ଜାଣୁଚୁ ? ଏଥିରୁ ଗୁଡେ ଛାଇ ପଛରେ କାହିଁକି ଧାଇଁଚୁ ? କି ଗୋବିନ୍ଦ ଦାସ, କିଏ କୋଉଠି ନାହାନ୍ତି । ସେ ସବୁ ତତେ ସେମିତି ଦିଶୁଛି ! ମନ ଓହରେଇ ଆଣ । ନାମ ଜପ କର । ତୋ' ଭାଗ୍ୟ ତୋ' ଜ୍ଞାନ ବୁଡୁନାଇଁ ! ଏମିତି ଜ୍ଞାନରେ ରହି ମରିବୁ ଯଦି, ହେମିତି କାହିଁକି ସପନ ଦେଖୁଚୁ ?" – ନନା ଟିଆରିଲା ପରି ଏତକ କହିଦେଇ ଉଠିଗଲେ ଭିତର ପିଣ୍ଡାଆଡେ । ଅପିନାନୀ ଏକାଲୟରେ ତା' ଭାଇନାକୁ ଚହିଁରହିଥାଏ ।

"ଆରେ, ରଖୁଥା ବା'!' – ମୁଁ ତୋ' ଜଗନାଥିଆକୁ ଜାଣି ନାଇଁ ? ସେଇ ପରା ମୋ' ଶତ୍ରୁ ! ଦିହକଯାକ ଅହନ୍ତା କରି ମୋ' ସାଙ୍ଗେ ଲାଗିଚି ! ଯୁଆଡେ ଦେଖିଲେ ଖିଟେଇ ହେଲା ପରି ଟରାଟି ଚହିଁଚି । ସମସ୍ତଙ୍କୁ ଛଡେଇ ନେଇ ମୋ' ସଂସାର ଉଚ୍ଛନ୍ନ କରିଚି ପରା ସେଇ ! ବାପ, ଭାଇ, ଭାଉଜ, ଘଇତା, ଗୋରୁଗାଈ, ଘର, ସବୁ ଆଡ କରିଦେଇ ତା' ଉପରେ ମଡେଇ ହେଇ ପଡୁଚି ଫାଲୁଆମୁହାଁ ! ତାକୁ ମୁଁ ଠେଲିଲାଗିଚି । ଅଳନ୍ଧୁ ଝାଡିଲା ପରି ଝାଡି ଲାଗିଚି । ସେ ଲାଖିଯାଉଚି ମୋ' କାନ୍ଥରେ ଚିତ୍ରପଟ ପରି । ମୁଁ ତାକୁ ପାରୁନାହିଁ ପରା ! ମୁଁ ତାକୁ ନେହୁରା ହେଇ ହାତ ପତେଇ ମାଗିଲି ଆଡ ହେଇଯିବାକୁ; ମୋତେ ମୋ' ସଂସାର ଫେରେଇ ଦେବାକୁ ! ସେ ମୋ' ଆଞ୍ଜୁଳାରେ ପଶି ସେମିତି ମଟମଟ ଅନେଇଲା ! ମୋତେ ସେ ଛାଡିବ ନାଇଁ ମୁଁ ଜାଣେ ! ମୋତେ ଉଚ୍ଛନ୍ନ କରିବ, ତେବେଯାଇ ତା' ମନ ମାନିବ ! ଏବେ ମତେ କ'ଣ ଡର ମାଡୁଚି ଜାଣିଚୁ ? – ଗୋବିନ୍ଦ ଦାସ ମୋ' ହାତ ଧରି ଡାକିଲାବେଳେ ତ ମୋତେ ଅନେଇବ ! ସେତିକିବେଳେ ତା' ଆଖିରେ ଯଦି ମଟକା ନ ପଡେ ? – ଯଦି ତା' ଧୋବ ସରସର ମୁହଁ କଳା ମଚମଚ ହେଇଥୋପିପଡେ ? – ମୁଁ କ'ଣ କରିବି ଟି ?!!"

ନନା ଭିତରୁ ଡାକିଲେ, "ଆରେ ସଜ ହେଇ ଯାଅ, ଯିବ ପରା ! ସେ ବାଇଧର ଟୋକା ଗଲା କୁଆଡେ ?"

ମୁଁ ବେକୁବ୍ ଭଳି ଆବାକାବା ହେଇ ଘରେ ପଶିଲି । ଅପିନାନୀ ମୁହଁକୁ ଚହିଁ ପାରିଲି ନାହିଁ । କାହା ମୁହଁକୁ ଚହିଁ ପାରିଲି ନାହିଁ । ଭିତର ପିଣ୍ଡାରେ ସେମିତି ଚୁପ୍ ହୋଇ ଠିଆ ରହିଲି । ମୋତେ କି ଜଣା ଅପିନାନୀର ସେ ଯାତ୍ରା ପାଇଁ କ'ଣ ସଜ କରିବାକୁ ହେବ !!



# ଜାଈ କୁମ୍ଭାରୁଣୀ

ଜାଈ କୁମ୍ଭାରୁଣୀକୁ ଯେତେବେଳେ ଦେଖିଲେ ମା'ପରି ଦିଶେ । ଖାଲି ଏଇଠି ବୋଲି ନୁହେଁ, ଏ ଚୌଦଖଣ୍ଡ ଗାଁରେ ଯାହାକୁ ପଚାରିଲେ ସେ ସେଇକଥା କହିବ । ଚିକ୍‌କଣ କଳା ମୁଗୁନିରେ ନିର୍ମାଣିଲା ପରି ପାଞ୍ଚହତା ମର୍ଦାନୀ ଚେହେରା । ଗୋଟାଳ ଗୋଟାଳ ଖମ୍ବ ପରି ହାତଗୋଡ । ଏତେ ବଡ ଅଥାର ହାଣ୍ଡି ପରି ମୁହଁ । ନାକରେ କାନରେ ଦୁଇହଳ ବାଡିଆ ନୋଳି । ଆଉ କୋଉଠି କିଛି ନାହିଁ । ଅଳଙ୍କାର ମଣ୍ଡିଦେଲେ ନିଖୁଣ ଭାଙ୍ଗମାପର ସେ ପ୍ରକାଣ୍ଡ ନାରୀମୂର୍ତ୍ତି କ'ଣ ଦିଶନ୍ତା କେଜାଣି ! ରତ୍ନ ଓଢିଆଣି, କଟିରେ କିଙ୍କିଣି, ହୃଦେ ଚପସରିମାଳ, ବାହୁଟି କଙ୍କଣ, ନୂପୁର, ହଳଦିବସନ୍ତ ପାଟରେ ତାକୁ ବୋଧେ ଚହିଁ ସହନ୍ତାନାହିଁ । ଏମିତି ଖଣ୍ଡଏ ମଳିଛିଆ କସ୍ତା ଶାଢି ତାକୁ ନିଅଣ୍ଟିଆ ହୁଏ । ତା'ର ପ୍ରାୟ ପୁଙ୍ଗୁଳା ହାତ, ଗୋଡ, ବେକ, ବୁକୁରେ, ଆଉ ସେ ଥୋପିପଡୁଥିବା ଜକଜକ ଚିକ୍‌କଣ କଳା ମୁହଁରେ ନଇଁଆସିଥିବା ମେଘ ପରି ବିଶାଳ ପଦ୍ମାବତୀ ଗାଈଟିଏ ସତେବା ଦିଶିଯାଏ । କୌଣସି ପୁରୁଷ ତା' ପାଖରେ କୋଡପୋଛା ପୁଅ ପରି, ବାଛୁରୀଟିଏ ପରି ଅକୁଳାନ ଏବଂ ଆଚ୍ଛନ୍ନ ଦେଖାଯାଏ । ତାକୁ ଘୋଡେଇଲା ପରି, ଆବୋରିଲା ପରି, ଉଭାରି ରହେ ସ୍ନିଗ୍ଧ କଳାଘୁମୁର ପାହାଡଟିଏ । ପୃଥିବୀଯାକର ମଣିଷ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଯାବତୀୟ ପ୍ରାଣୀମାନଙ୍କର ସେଇ ବୋଧହୁଏ ମାତୃରୂପ । ଜାଈ କୁମ୍ଭାରୁଣୀ ମା' ନ ହୋଇ ସତେ ଆଉ କ'ଣ ହୋଇପାରେ ?

କିନ୍ତୁ ଜାଈ କୁମ୍ଭାରୁଣୀ ଜନ୍ମରୁ ଅନ୍ଧୁଣୀ । ତା'ର ଗୋଟିଏ ହେଲେ ସନ୍ତାନ ନାହିଁ । ସେ ଜମ୍ମା ଫଳିନାହିଁ । ଏତେ ବଡ ବୃକ୍ଷାଳ ଗଛ ଯେ, ତା'ର ସର୍ଗେ ଲାଗେ ଡାଳ ତ ମର୍ତ୍ତେ ଲାଗେ ଡାଳ – ଅଥଚ କଷିଟିଏ ନାହିଁ କି ଫଳଟିଏ ନାହିଁ । ଗଭୀର ବିସ୍ମୟରେ ଚୌଦଖଣ୍ଡ ଗାଁଲୋକେ ଏଇ କଥା ବାରମ୍ବାର ଆଲୋଚନା କରନ୍ତି; କିନ୍ତୁ ବୁଝିପାରନ୍ତି ନାହିଁ । ତାକୁ ଦେଖିଲେ, ତା'ର କଅଁଳ କଥା ଶୁଣିଲେ ମୋହିହେଲାପରି ସମସ୍ତେ ଅନେଇ ରହନ୍ତି, କାନେଇ ରହନ୍ତି ସତ୍ୟଯୁଗର କି ତ୍ରେତାଯୁଗର ସେ ଅପରୂପା ବିପୁଳା ନାରୀଟିକୁ – କିନ୍ତୁ ଜମ୍ମା ବୁଝିପାରନ୍ତି ନାହିଁ କେମିତି ତା' ଆଖିଯୋଡିକ

ଗଢ଼ିବାକୁ ବିଧାତା ପାସୋରିଗଲା । ସେ ପୂରିଲା ପୂରିଲା ଗାଲ, ସେ ଗଢ଼ିଲା ପରି ଓଠ, ସେ ଠିଆଠାଣି ନାକ, ରାଉରାଉ ଭ୍ରୂଲତା, ଜକଜକ କପାଳ ସାଙ୍ଗକୁ ଥୋଇଲା ପରି ପଦ୍ମପାଖୁଡ଼ା ଆଖି ହେଲେ କ'ଣ ନ ଦିଶିଥାନ୍ତା ସେ ମୁହଁକୁ! ଅଥଚ ସେଇ ଅଞ୍ଚଳକୁ ଅନେଇଲେ ଏବେ ଡର ମାଡୁଛି । ଆଖି ଥିବା ଏପରି ସ୍ୱାଭାବିକ ଏବଂ ସାଧାରଣ, କିନ୍ତୁ ନଥିବା ଏତେ ଭୟଙ୍କର ! – ସତେବା ସମୁଦ୍ର ଶୁଖିଯାଇଛି – ଆକାଶରୁ ସବୁ ତାରା ଲିଭିଯାଇଛନ୍ତି । ଇସ୍, ଜାଈ କୁମ୍ଭାରୁଣୀ ଅନ୍ଧୁଣୀ ହେବାର କୌଣସି ଯୁକ୍ତି ନାହିଁ; ଅଥଚ କୌଣସି ଅପରିମେୟ କାରଣରୁ ସେ ସେମିତି ଅନ୍ଧୁଣୀଟିଏ । – ବିଜ୍ଞଲୋକ କହିବାର ଶୁଣାଯାଏ ଯେ କୁଆଡେ ସେ ଆଖି ପାଇବା ଯେପରି ଅସମ୍ଭବ, ଫଳ ଫଳିବା ମଧ ସେମିତି ଅସମ୍ଭବ । କାରଣ ବିଧାତାର ଇଚ୍ଛା ତା' ନୁହେଁ! କାହିଁକି ନୁହେଁ ? – କେଜାଣି! ତଥାପି ଜାଈ କୁମ୍ଭାରୁଣୀକୁ ଦେଖିବାକୁ ଭଲଲାଗେ । ତାକୁ ଦେଖିଲେ ଭିତର କେମିତି ଉଲୁସିଯାଏ । ସବୁ ପୌରୁଷ ସ୍ତବ୍ଧ ଚକିତ ହୋଇ ହେଲେ ଆଖିରେ ଠୁଳ ହୋଇଯାଏ ତାକୁ କେବଳ ଅନେଇବାକୁ । କୂଳ ଛୁଉଁଥିବା ଭରା-ନଈ ପରି, ଅନାୟାସରେ ପଲାସିଯାଉଥିବା ସୁଲକ୍ଷଣା ମାତଙ୍ଗିନୀ ପରି ଜାଈ କୁମ୍ଭାରୁଣୀ । ତାକୁ ଚାହିଁ ରହିବା ହିଁ ଯଥେଷ୍ଟ – ଚାହିଁ ପାରିବା ହିଁ ପୌରୁଷ ।

ସେଦିନ ସଞ୍ଜବେଳେ ଆମେ ସବୁ ପୋଖରୀକୂଳରେ ପବନ ଖାଉଥାଉ । ଶଙ୍କର ମଉସା ଆମ ଭିତରେ ଭାରି ପାକଳ ମଙ୍ଗର ମଣିଷ । ଆମେ ଯେଉଁ କେତେଜଣ ପାଠଶାଠ ପଢ଼ି ଦିଲ୍ଲୀ କଲିକତା ବୁଲିଆସିଥାଉ, ଥୋମଣା ଟେକି ତଳେଇ ଚାହୁଁଥାଉ ପୃଥିବୀକୁ, ଆମେ ମଧ ଶଙ୍କର ମଉସାଙ୍କ ଆଗରେ ଲଇଁ ଯାଉ । ସେ ଖୁବ୍ ଗମ୍ଭୀର ଅଥଚ ଅଦ୍ଭୁତ ଭାବରେ ସ୍ନେହୀ ଏବଂ କୃପାଳୁ ମଣିଷ । ଗଭୀର ଅନୁଭବରେ ସେ ଅନେକ କଥା ମିଞ୍ଜେଇଛନ୍ତି, ସଂସାରକୁ ଦେଖିଛନ୍ତି, ବୁଝିଛନ୍ତି । ବାରବର୍ଷ ହିମାଳୟରେ ଏକୁଟିଆ ଭ୍ରମିଛନ୍ତି । ଏବେ ମଧ ମନ ହେଲେ ଗାମୁଛା ଖଣ୍ଡେ କାନ୍ଧରୁ ଖସେଇ ଦେଇ ସେ ଏଇଠୁ ହଠାତ୍ ଉଠି ଚାଲିଯିବେ – ଏ ପ୍ରତ୍ୟୟ ପ୍ରାୟ ସମସ୍ତଙ୍କର ଅଛି । ତେଣୁ ଗାଁରେ ତାଙ୍କର ଭାରି ମର୍ଯ୍ୟାଦା ।

ପଥର ପାହାଚ ଉପରେ ଗୋଡ ଲମ୍ବେଇ ସେ ବସିଥା'ନ୍ତି । ଚାହିଁଲେ ପାଦକୁ ପାଣି ଛୁଉଁଛି, ନ ଚାହିଁଲେ ନାହିଁ । ଆମେ ସବୁ ଯେ ଯାହାମନ୍ତେ ବସିଥାଉ ଏବଂ ଗପୁଥାଉ । ଜାଈ କୁମ୍ଭାରୁଣୀ ଉପରେ କଥା ପଡିଥାଏ । ସମସ୍ତଙ୍କ କଥା ଶଙ୍କର ମଉସା ମନ ଦେଇ ଶୁଣୁଥା'ନ୍ତି; କିନ୍ତୁ କିଛି କହୁନଥା'ନ୍ତି । ମଝିରେ ମଝିରେ ଅନ୍ୟମନସ୍କ ହେଲାପରି ଉପରକୁ କିଛି ସମୟ ଚାହୁଁଥା'ନ୍ତି ।

ଆମ ଭିତରୁ ଜଣେ କହିଲା, "ଏ ବିଷୟରେ ମଉସାଙ୍କ ମତ କ'ଣ ?"

ସମସ୍ତେ ନୀରବରେ ଅପେକ୍ଷା କଲୁ । ପବନରେ ଛୋଟ ଛୋଟ ଢେଉଗୁଡିଏ ଉଠି ଆସି ପଥର ପାହାଚରେ କଳରବ କଲେ । ସଂଧ୍ୟା ଘନୀଭୂତ ହେଲା । ବେଳେବେଳେ ଆମକୁ ଏମିତି ଅନେକ ସମୟ ଅପେକ୍ଷା କରିବାକୁ ହୋଇଥାଏ । ଶଙ୍କର ମଉସା ମନ ନ ହେଲେ କିଛି କହନ୍ତି ନାହିଁ ।

ଆଉ ଜଣେ ସେ ସମଗ୍ର ଜିନିଷଟାକୁ ସହଜ କରିବାପାଇଁ କହିଲା – "ଶଙ୍କର ମଉସା ତ

ଅନେକ ଜାଇ କୁମ୍ଭାରୁଣୀକୁ ଜାଣିଥିବେ – ନା କ'ଣ ମଉସା ?"

"ହଁ, ଜାଣେ !"

ଭାବିଲୁ ବୋଧହୁଏ ଏଥର କଥା ଝରିଆସିବ; କିନ୍ତୁ ପୁଣି କେବଳ ସେଇ ଢେଉଗୁଡିକୁ ନୀରବ ରହି ଗଣିବାକୁ ଲାଗିଲୁ । ଏକଜିଦିଆ ଟୋକା ପୁଣି ଉଖାରି ଦେଲା, "କ'ଣ ଜାଣିଚନ୍ତି ପରା ମଉସା ! ଆମକୁ କହୁନାହାନ୍ତି!"

"ନା !"

ଆମେ ଜାଣିଲୁ ଯେ କଥାଟା ସେଇଠି ଛିଣ୍ଡିଗଲା । ଶଙ୍କର ମଉସା ନାହିଁ କଲା ଉତ୍ତାରୁ ତାଙ୍କୁ କଥା କୁହାଇଦେବ, ଏମନ୍ତ ପାରିବାର କେହି ନାହିଁ । ଭାବିଥିଲୁ ସେଦିନ ଗୋଟାଏ ମୌକାରେ ସେ ଅଦ୍ଭୁତ ନାରୀଚରିତ୍ର ଉପରେ ମଉସା ଅତିଶୟ ଅଦ୍ଭୁତ କଥାମାନ କହିବେ । କାହିଁକି କେଜାଣି ସେ ପଦକରେ ସବୁ ଛିଣ୍ଡେଇଦେଲେ । ସେ ନିର୍ବିକାର, ସ୍ଥିର ହୋଇ ବସିଥା'ନ୍ତି । ଆମେ ସବୁ ଖୁସ୍‌ମୁସ୍ ହୋଇ ଗୋଟିଏ ଗୋଟିଏ ଉଠିଲୁ । କେହି କେହି ଅନ୍ୟ କଥା ପକେଇ ଗୁଜୁରୁଗାଜୁରୁ ହୋଇ ଟହଲିବା ପାଇଁ ବାହାରିଗଲେ । ଆଉ ଦିନେ ମଉସାଙ୍କ ମନ ହେଲେ ହୁଏତ କ'ଣ କହିବେ – ବା' ନ କହିବେ ! ଏଭଳି ହାଲୁକା ଢଙ୍ଗରେ କଥାଟାକୁ ପାତଳ ପବନରେ ପହଁରେଇ ଦେଇ ସମସ୍ତେ ମାଛିଅନ୍ଧାର ଭିତରକୁ ରାସ୍ତାଧରି ଓହ୍ଲେଇଗଲେ । ମୁଁ କେବଳ ଉପର ପାହାଚରେ ଏକୁଟିଆ ବସିରହିଲି । ଲିଭିଆସୁଥିବା ପୂର୍ବ ଦିଗନ୍ତରେ ଅର୍ଦ୍ଧ-ଆକାଶ ଯାଏଁ ଜାଇ କୁମ୍ଭାରୁଣୀ ଉଭାହୋଇ ରହିଲା ପରି ଦେଖାଗଲା । ଏତେ ବିପୁଳ ନାରୀତ୍ୱ; ଏତେ ଅସରନ୍ତି କୂଳ ଭାଙ୍ଗି ଉଛୁଳି ପଡୁଥିବା ବାତ୍ସଲ୍ୟ ! – ଅଥଚ ସେ ଅନ୍ଧୁଣୀଟିଏ – ଅପୁତ୍ରୀଟିଏ ! ସେ କେବଳ ମାଟିକୁ ମୁଠା ମୁଠା ଚକଟିବ, ତାକୁ ସାଉଁଳିବ, ଚିକଣେଇବ, ଖରା ଖୁଆଇବ, ପବନ ପିଆଇବ, ନିଆଁରେ ପୋଡି ଉଷୁମ କରିବ ! – ଘଡିଟିଏ ଉତାରିଲା ପରି ସେ ମଣିଷଟିଏ ଉତାରିପାରିଥାନ୍ତା ! – ମୋର ଅଜାଣତରେ ଲମ୍ବା ନିଃଶ୍ୱାସଟିଏ ବାହାରିଗଲା । ମୋ' ଅଜାଣତରେ କେତେବେଳେ ତଳ ପାହାଚରୁ ଉଠିଆସି ଶଙ୍କର ମଉସା ମୋ' ପାଖରେ ବସିଯାଇଥିଲେ ।

"ସମସ୍ତଙ୍କ ଆଗରେ ସବୁକଥା କୁହାଯାଏ ନାହିଁ ।"

ଏତିକିରେ ମୁଁ କୃତକୃତ୍ୟ ବୋଧକଲି । ମଉସାଙ୍କ ନିର୍ବାଚିତ ଶ୍ରୋତା ହେବା କିଛି କମ୍ ଯୋଗ୍ୟତା ନୁହେଁ । ମୋ' ଭଳି ସେ ଅନ୍ଧାରିଆ ପୂର୍ବ ଦିଗନ୍ତକୁ ସ୍ଥିରଦୃଷ୍ଟିରେ ଚାହିଁରହିଲେ । ତାଙ୍କୁ କ'ଣ ଦିଶିଲା କେଜାଣି – ସେ ତାଙ୍କ ଢଙ୍ଗରେ, ଖୁବ୍ ଧୀରେ ଅଥଚ ପ୍ରାଞ୍ଜଳ ଭାବରେ ମନକୁ ମନ କଥା ହେଲା ପରି କହିଲେ –

"ଜାଇର ରୂପ ତ ଅଲୌକିକ; ହେଲେ ସେଇଟା ତା'ର ପରିଚୟ ନୁହେଁ । ସେ କୁଆଡେ ଅପହଞ୍ଚ ପାହାଡ ମୁଲକରୁ ଆସିଛି । କିଏ କହିବ ସେ ରାଜକନ୍ୟା ନୁହେଁ ବୋଲି ! ତା'ର ଢଙ୍ଗଢାଙ୍ଗ, ଚାଲିଚଳଣ, ତା' ଠାଣି, ତା' ଗଉରବ କହିଦେଉଛି ସେ ଅଭିଜାତ-ସମ୍ଭବା । ମୁଁ ଅନେକଙ୍କୁ ପଚାରିଛି – କେହି କହିପାରିନାହାନ୍ତି । ମୋର ମନେହେଲା ଯେ, ଛଦ୍ମବେଶରେ ସେ ଏମିତି ଏଠି ଭ୍ରମୁଛି ।

ମୁଣ୍ଡିଆ ତଳେ କୁଡିଆ କରି ରହିଛି । କେହି ସେଠିକି ଯାଇନାହାନ୍ତି । ସମସ୍ତେ ଖାଲି ଜାଣିଚନ୍ତି ଯେ ସେ ନିକାଞ୍ଚନ ଥାନରେ କୁମ୍ଭାରୁଣୀ ଘଟିକଳସୀ ନିର୍ମାଣୁଛି । ଦୋବାଟିଆ ପାଖରେ ଆଣି କୁଢ଼େଇଦେଲେ ଯେ ଯାହାର ସବୁ ବାଣ୍ଟି ନେଉଛନ୍ତି । ମାଇକିନିଆମାନେ ତାକୁ ଅସୁରୁଣୀ ଡାଙ୍କିନୀ ପୁତଖାଈ କହି ଡରିଲେଣି । ପିଲାଙ୍କୁ ଡରେଇଦେଲେଣି । କଞ୍ଚା ମାଉଁସ ଖାଇ ଖାଇ ସେ ହେମିତି ପର୍ବତ ପରି ହେଇଚି ବୋଲି ମଧ ଅପବାଦ କଲେଣି; କିନ୍ତୁ ତାକୁ ଦେଖିଲେ ବୁଝିବା ଲୋକ ବୁଝିଯିବ ଯେ ଏସବୁ ମିଛ ।"

ମୁଁ ତାକୁ ଦେଖୁ ଦେଖୁ ଭାବିଥିଲି ଯେ ମା' ହେବ ତ ଏମିତି ହେବ । କେତେ ଚିକ୍କଣ, କେତେ ନରମ, କେତେ ବିପୁଳାୟତନ ମା'ଟିଏ । ଆଃ, ମୋ' ଭିତରେ କେମିତି ଗୋଟାଏ ପୁଲକ ଜାତ ହେଲା । ମୁଁ ଦେଖିଲି ଯେ ମୋ' ଆଡକୁ ମୁହଁ ବୁଲେଇ ଜାଈ କୁମ୍ଭାରୁଣୀ ଅଳ୍ପ ହସିଦେଲା ! ସେ ମୋ' ମନକଥା ଜାଣିଲା କେମିତି ? – ମୁଁ ତା' ରୂପକୁ, ତା' ମୁହଁକୁ, ତା' ମୁଣ୍ଡ ଉପରେ କୁଣ୍ଡିକାଷ୍ଠର ପର୍ବତ ପରି ବୋଝକୁ ଚାହିଁ ରହିଥାଏ । ସେ କେତେବେଳେ ସେଇଠୁ ଘୁଷୁଗଲା ଜାଣିପାରିଲି ନାହିଁ । ମୋର ମନେହେଲା, ମୁଁ ସେତିକିରେ କିଣି ହୋଇଗଲି ।

"ଇଏ କେବକା କଥା ମଉସା ?"

"କିରେ, ବୁଦ୍ଧିଆ ଟୋ ହୋଇ ଏମିତି କ'ଣ ପଚାରୁଛୁ କୋଉ କାଳର ହେଲେ ମଧ କଥା ତ ସେଇଆ ! ମନେକର, କାଲିକାର । ଏଣିକି ଅସଲ କଥା ଆସୁଚି, ମଝିରେ ଏମିତି ଭଣ୍ଡୁର କରିବୁ ନାହିଁ.."

ଶାସିତ ଶିଶୁଟିଏ ପରି ମୁଁ ନିସ୍ତବ୍ଧ ହୋଇଗଲି । ଅନେଇଲି ମଉସାଙ୍କ ମୁହଁକୁ । ସେ ମୋ' ଆଡେ ଚାହୁଁ ନଥା'ନ୍ତି । ସେ ସେଇ ପୂର୍ବଦିଗଟାକୁ ଚାହିଁ ରହିଥା'ନ୍ତି । ସେ ସାରା ଅଞ୍ଚଳ ସେତେବେଳକୁ କିଟିକିଟି ଅନ୍ଧାର । ଆକାଶରେ ଅସଂଖ୍ୟ ତାରା । ପବନ ପଡିଥାଏ ଦକ୍ଷିଣା ।

..."ମୁଁ ସ୍ଥିରକଲି, ଜାଈ ପଛେ ପଛେ ତା' ମୁଣ୍ଡିଆତଳ କୁଡିଆଯାଏଁ ଯିବି – ସେଇଠି ତା' କୁମ୍ଭାରୁଣୀପଣ ଦେଖି ଆସିବି । ମନକୁ ପାପ ଛୁଉଁଥାଏ । ଡର ମାଡୁଥାଏ । ସେତିକିବେଳେ ଖାଲି ତା'ର ସେ ହସଟିକୁ ମନେପକେଇ ଦେଇ ପୁଣି ସ୍ଥିର ହୋଇଯାଇଥାଏ । – ଶେଷକୁ ତା' ଅଜାଣତରେ ତା' ପିଛା କରିବାକୁ ସ୍ଥିର କଲି । ମୋର କିନ୍ତୁ କେମିତି ମନେହେଲା ଯେ ସେ ସବୁ ଜାଣିପାରୁଚି । ମୁଁ ଏମିତି ଯିବି ବୋଲି ମଧ ସେ ଜାଣିଯାଇଛି ।"

"ମୁଁ ଖଣ୍ଡେଦୂର ପଛରେ ରହି ଚାଲିଥାଏ । ଉଦୁଉଦିଆ ଦି'ପହର ସମୟ । ହଳ ଲେଉଟାଣି ତୋରାଣିପାଣି ବେଳ । ଜାଈ ତା'ର କୁଣ୍ଡି, କାଷ୍ଠ ବେତା ମୁଣ୍ଡେଇ ତାଳଗଛ ପରି ଦିଶୁଥାଏ । ତା' ଢଙ୍ଗରେ ସେ ଅତି ଧୀରେ ପଲାସି ଯାଉଥାଏ । ତା'ର ଖୋଜେକୁ ମୋର ଚାରି ପାହୁଣ୍ଡ ନଅଣ୍ଟ ଜଣାପଡୁଥାଏ । ମନେ ହେଉଥାଏ ସେ ଅତି ବେଗରେ ମୋ'ଠାରୁ ଦୂରେଇଯାଉଛି ।... ଖରାରେ ଗଛପତ୍ର ଝଲମଲ ଦିଶୁଥାଏ । ବାଲି ଉପରେ ଦୂରରେ ପାଣି ଛଳଛଳ ଦିଶି ଲିଭିଯାଉଥାଏ । ମୁଁ ଦେଖିଲି ଯେ ଜାଈ ଥମିଗଲା । ମୁହଁ ପଛକୁ ବୁଲେଇ କାନ ଡେରିଲା । ପାଏ ବାଟରୁ କାଳେ ମୋ'

ନିଃଶ୍ୱାସ ବାରିବାକୁ ସେ ଚେଷ୍ଟାକଲା । ସେଇଠୁ ପୁଣି ଆଗଭଳି ଚାଲିଲା । ସତ କି ଭ୍ରମ ମୁଁ କହିପାରିବି ନାହିଁ; ମୋତେ ଲାଗିଲା ଯେ ତା' ପାଦ ଆଉ ଭୂଇଁରେ ପଡୁନଥିଲା । କେମିତି ସେ ତାତିଲା ବାଲି ଉପରେ ପାରିହୋଇ ଯାଉଥିଲା ? ମୁଁ ପାଗୁପର୍ଯ୍ୟନ୍ତ ଗୋଡେଇଥାଏ ଅନେକ ପଛରେ, ମୋର ଝାଳ ଫିଟିଯାଉଥାଏ । ଜିଭ ଭିଡିନେଉଥାଏ ଶୋଷରେ ।"

"ସେଇଠି ପହଞ୍ଚିଲାବେଳକୁ ମୁଣ୍ଡିଆର ବାଙ୍ଗୁରା ଛାଇଟିଏ କୁଡିଆକୁ ଘୋଡେଇ ସାରିଥାଏ । କୁଡିଆକୁ ଘେରି ବିଶାଳ ଗଛ । ମୁଁ ଗୋଟିଏ ଗଛ ଆଢୁଆଳରେ ଛପିଗଲି । ଅନେଇଲି ଆଗକୁ ।"

"ଜାଇ ବୋଝଟାକୁ ଥୋଇଦେଲା । ଭିତରୁ ହାଣ୍ଡିଟିଏ ଟେକିଆଣି ସେଥିରେ ମୁହଁ ଲଗେଇଦେଲା । ସେଇଟା ପାଣି କି ତୋରାଣି ମୁଁ ଜାଣିପାରିଲି ନାହିଁ! ଓଃ, କି ଶୋଷ ତାକୁ! ପିଇସାରି ସେ ସ୍ଥିର ଭଙ୍ଗୀରେ ଆଗକୁ ମୁହଁ ଟେକି ରହିଲା । ମୁଁ ତାକୁ ଅନେଇ ରହିଲି । କି ବିଶାଳ ନାରୀରୂପ ସେ; କିନ୍ତୁ କି ସୁନ୍ଦର ଚିକ୍କଣ କଳାଭଅଁର ମୂର୍ତ୍ତି । ମୋର ମନେହେଲା ସାଧାରଣ ଅଣ୍ଡିରାଟାଏ ପଡିଗଲେ ତାକୁ ସେ ବାହୁରେ ପୂରେଇ ପେଷିଦେଇପାରେ । ଚାହିଁଲେ ବାଘଟାକୁ ମାଡିବସି ମାରିଦେଇପାରେ । କି ଅଦ୍ଭୁତ ଶକ୍ତି ତା'ର ସେ ବାହୁରେ, ବୁକୁରେ ଏବଂ ସେ ବର୍ତ୍ତୁଳ ଜଙ୍ଘମାନଙ୍କରେ! ମୋ' ବାବାରେ! ମୋ' ନିଃଶ୍ୱାସ ରୋଧିଲା ପରି ମୁଁ ନିଶ୍ଚଳ ଠିଆହୋଇଥାଏ । ମୋ' ବୁକୁ ବାଡେ଼ ହେଉଥାଏ । ଜାଇ ଆଣ୍ଠୁରେ ହାତ ଭରାଦେଇ ଉହୁଁକି ଠିଆହେଲା । କୁଡିଆ ଭିତରକୁ ନଇଁଲା ପରି ପଶିଗଲା ।"

"ମୁଁ ଆଉ ସେ ଯାଏଁ ଯିବାକୁ ସାହସ କଲିନାହିଁ । ଭଲ କଲି । ନ ହେଲେ ଅଖଡରେ ପ୍ରାମ ବାହାରିଯାଇଥାନ୍ତା । ଶୁଣ, କହୁଛି କ'ଣ ହେଲା ।"

ଶଙ୍କର ମଉସା ଆହୁରି ନିବିଡଭାବରେ, ଅନୁଭବିଲା ପରି କହିଲେ – "ମୁଁ ଅନେଇଥାଏ ସେ ଅଗଣାଟାକୁ । ଗଡାହୋଇ ଶୁଖୁଥିବା ଅସଂଖ୍ୟ ଛୋଟ ବଡ ହାଣ୍ଡି । ତା' ପାଖକୁ ଥାକମାରି ରଖିଥିବା ମଣିଷେ ଉଞ୍ଚରେ ଚେକା ଚେକା କଞ୍ଚା ମାଟି । ଅନ୍ଧ ଖାଲ ଭିତରେ ରେଳଇଞ୍ଜିନ ଚକପରି ସେ ପ୍ରକାଣ୍ଡ କୁମ୍ଭାରଚକ । ଏଡେ ବଡ ଯନ୍ତ୍ର କୋଉଠି ଆଉ କିଏ ବୁଲେଇପାରେ ବୋଲି ମୋର ବିଶ୍ୱାସ ନାହିଁ । କେବଳ ସେଇ କିରାତିନୀ ତା'ର ସେ ଅଘା ଭୁଜଦଣ୍ଡରେ ତାକୁ ବୁଲେଇପାରେ । ସେ ପାହାଡ, ସେ ସବୁ ବୃଷାଳ ଗଛ, ଗଦା ଗଦା ହାଣ୍ଡି ମାଠିଆ ସବୁ ଯେମିତି ମୋତେ ଅକୁଳାନ ବୋଧ ହେଲେ! ମୋ' ମାପ, ମୋ' ଆୟତ୍ତରେ ସେ କେହି ନୁହନ୍ତି । ମୁଁ ଭୂଇଁକୁ ଲାଗି ଠିଆହୋଇଥିବା ପାତି ବାମନଟିଏ ।"

ଶଙ୍କର ମଉସା ସତକୁ ସତ କିନ୍ତୁ ସେମିତି ନୁହନ୍ତି । ଖୁବ୍ ଗୁଟାଏ ଉଞ୍ଚ ନହେଲେ ସୁଦ୍ଧା ପିଟଣାପରି ନିଦା ଚଉରସ ମଣିଷ । ସେ ତାଙ୍କ ଅନୁଭବରେ ସେତେବେଳେ ବୋଧହୁଏ ସାଙ୍କୁଡି ଯାଇଛନ୍ତି । ନ ହେଲେ ସଞ୍ଜ ଅନ୍ଧାରରେ କାହିଁକି ମୋତେ ମଧ ସେଇଭଳି ଲୋଚ୍ଚ ଦେଖାଯାଇଥା'ନ୍ତେ ?

"ବୁଝିଲୁ ପୁଅ" – ମଉସାଙ୍କ ସ୍ୱର ଆହୁରି ଗହିରିଆ – "ଏତିକିବେଳେ ଜାଇ ସେ କୁଡିଆ

ଭିତରୁ ନଇଁ ନଇଁ ବାହାରିଆସିଲା । ବୁକୁ ପାଖରେ କ'ଣଟାଏ ଜାକିଧରିଥାଏ । ଅତି ଯତ୍ନରେ ଥନ ଉପରେ ମଡେଇ ରଖିଥାଏ । ପିଣ୍ଡାରେ ଆଣି କାନ୍ଥ ଆଉଜା ଦେଇ ଯେତେବେଳେ ସେ ତାକୁ ଥୋଇଲା, ମୁଁ ଚମକି ପଡିଲି । ମୋତେ ଦିଶିଲା ଦାଉଦାଉ ଝଟକିଲା ପରି ଦୁଇଟା ଆଖି । ପୁରୁଷ ମୁହଁଟିଏ । ଅତି ସୁନ୍ଦର ଗଢ଼ିଲାପରି ମୁହଁ । ବୁକୁଟା ଓସାର; ଝଟଝଟ ଗୋରା । ମୁହଁ ସେଇ ବୁକୁ ଉପରେ ଆସି ଥୋଇ ହୋଇଥାଏ କିନ୍ତୁ ଆଉ କିଛି ନାହିଁ । ହାତ ଗୋଡ ସରୁ ସରୁ ବଳିତାପରି ଶୁଖିଲା ମୁରୁକୁଟିଆ ଡାଳ ପରି ଓହଳି ପଡିଥାଏ । ନାଁକୁ ଖାଲି ହାତଗୋଡର ଚିହ୍ନମାତ୍ର । ନିପଟ ଅଥର୍ବ ପଙ୍ଗୁଟିଏ ! ତା' ଆଖି ଯୋଡାକରେ ସେ ଜୀଇଁଥାଏ । ଚାହାଣିରେ ସେ ବ୍ରହ୍ମାଣ୍ଡ କଳିଦେଉଥାଏ । ବିଜୁଳି ପରି ତା' ଡୋଳା ବୁଲିଆସୁଥାଏ ଦଶଦିଗ । ଗଛ ପଛଆଡେ କାଠହଣା ଚଢେଇ ପରି ଥଣ୍ଟ କାଢି ମୁଁ ଠିଆହୋଇଥିବାବେଳେ ସେ ମୋତେ ଦେଖିଦେଇଥିବ ନିଶ୍ଚେ । ମୁଁ କିନ୍ତୁ ଆଡୁଆଳକୁ ଘୁଞ୍ଚିଗଲି ନିମେଷକରେ । ମୋତେ ଦେଖିଲା ସେ । ଶିମୁଳି ଗଛର ବାରହାତ ଗଣ୍ଡି ଭେଦି ତା' ଦୃଷ୍ଟି ମୋ' ଦେହରେ ବାଜୁଛି । ମୋ' ପିଠି ଉଷୁମ ଲାଗୁଛି । ଝାଳେଇ ଯାଉଛି । ଗୋଟିଏ କେଉଁଠି ଅତର୍କିତ ହାବୁଡିଗଲାପରି ମୋତେ ଡର ଡର ମାଡୁଥାଏ । କାହିଁକି କେଜାଣି ମୁଁ ଜାଈକୁ ଏକୁଟିଆ ବୋଲି ଭାବୁଥିଲି । ଆଉ ମଧ କେହି ଏ ଯାଏଁ ଜାଣିନାହାନ୍ତି ଯେ ତା' ସାଙ୍ଗରେ ସେଇଠି ଆଉ ଜଣେ ଅଛି ବୋଲି । ସେ ପୁରୁଷଟା କ'ଣ ତା' ଗେରସ୍ତ ? ଏତେ ବଡ ମାଇପିଟିକୁ ସେପରି ପଙ୍ଗୁ ପୁରୁଷଟିଏ ? – କି ଭାଗ୍ୟ ହୋ ! ମୋ' ମନ କାହିଁକି କେଜାଣି କୋରିହୋଇଗଲା । ବିଚରା ଜାଈ ପାଇଁ କେମିତି ଗୋଟାଏ କୋହ ଉଠିଲା ଭିତରୁ । କ'ଣ କରାଯାଏ ? – ବିଧାତା ବିଚରକୁ ମଣିଷ କ'ଣ ଆନ କରିପାରେ ।"

"ମୁଁ ଟିକିଏ ଗଳି ଚାହିଁଦେଲି । ଜାଈ ତା' ଛୋଟ କସ୍ତାଟିକୁ ଦେହ ବୁକୁରୁ ଖସେଇ ଆଣି ଅଣ୍ଟାରେ ଟତରସ କରି ଗୁଡାଇଥାଏ । ତା'ର ଦୁଇହାତ ଓସାର ବୁକୁ ଉପରେ ଟକି ପୋଡ ଖାଇଥିବା ଦୁଇଟି କ୍ଷୀରସିଜା ହାଣ୍ଡି ଉବୁଡେଇହେଲା ପରି ତା' ଥନଭାରା । ଜଙ୍ଘରୁ ଅଧେ ଘୋଡେଇ ହୋଇଥାଏ; ବାକି ଅଧିକ ଫୁଙ୍ଗୁଳା । ଫୁଙ୍ଗୁଳା ଡେଣା, ଫୁଙ୍ଗୁଳା ଗୋଡପେଣ୍ଡା । ମୁଁ ଖାଲି ଭାବୁଥାଏ ଯଦି ଏତେ ରୂପ ଅନୁପାତରେ ସେ ଖାଲି ଆକାରରେ ଅଧେ ହୋଇଥାନ୍ତା ! – କିମ୍ବା ତା'ଠୁ ଆଉ ମୁଠୁଣିଏ ଉଚ୍ଚ ଗୋରା ଟକଟକ ଅର୍ଘା ପୁରୁଷଟିଏ ତାକୁ ଆବୋରିଲା ପରି ଠିଆହୋଇଥାନ୍ତା..."

"ଏମିତି ଭାବୁଥାଏ । କଥା ଶୁଭିଲା, 'ଶୁଣୁ ପୁଅ ପାଇଁ ପିମ୍ପା ଗଢିବୁ ପରା ! ଏକାଥରକେ ଗଢି ଥୋଇବେ । ତା' ଉତାରୁ ପଖାଳ ଖାଇବା । ଆଜି ତ ସହଳ ହେଇଚି !'

ସରରୁ ଜଣାଯାଉଥାଏ ଯେ ସେ ହିଁ ଜାଈର ମାଲିକ; ତା' ଉପରେ ରାଜୁତି କରୁଥିବା ଖାଉନ୍ଦ । ଜାଈ ପୁଣି ଏ ଅଚଳ ଗରିଣ୍ଡାଟା ପାଖରେ ଏମିତି ଦାସୀ ପରି ଖଟୁଛି ? କାହିଁକି ? କେଉଁ ଗୌରବ ଭଲା ସେ ତା'ଠାରୁ ପାଉଛି ? ଏ ବିଫଳ ଘଇତାପଣକୁ ନେଇ କ'ଣ ତା' ଭଳି ନାରୀ ସନ୍ତୁଷ୍ଟ ରହିପାରେ ? ମୋର ମନହେଲା ପାଟି ଫିଟେଇ କହିଦେବାକୁ ଯେ କେତେବେଳୁ ଛାଇ ଲେଉଟିଗଲାଣି । ଜାଈ ଚୌଦଖଣ୍ଡ ଗାଁରେ କୁଣ୍ଡି, କାଖୁ ବିକି ବିକି ହାଲିଆ ହେଇ ଫେରିଛି । ବାଟରେ

ତହତହ ଖରା; ତହତହ ବାଲି । ଶୋଷରେ ତା' ଜିଭ ଭିଡିନେବାରୁ ସେ ହାଣ୍ଡିଏ ପାଣି ଏକାନିଃଶ୍ୱାସକେ ପିଇପକେଇଲା, ମୁଁ ଦେଖିଛି । ବିଚରା କ'ଣ ପଖାଳପାଣି ମୁନ୍ଦାଏ ପିଇ ଟିକିଏ ବିଶ୍ରାମ କରନ୍ତା ନାହିଁ ? ତୁ'ଟା ଗୋଟାଏ ଅଣପୁରୁଷିଆ ପଙ୍ଗୁ – ତୁ କ'ଣ ଜାଣୁ ପରିଶ୍ରମ କେଲ କେମିତି ଲାଗେ ? କିନ୍ତୁ ଜାଇ ଖିଲ୍ ଖିଲ୍ ହସିଲା । କହିଲା, 'ଶୁଣିପୁଅ କ'ଣ ଜାଣେ ? ଏବେ ତ ସମସ୍ତେ ଖାଲି ମାଗୁଛନ୍ତି ପିମ୍ପା ଦିଅ, ପିମ୍ପା ଦିଅ । ପିମ୍ପା ଗଢିଦେଲେ ସେଥିରେ ସେମାନେ ମଧ ଭର୍ତ୍ତି କରିବେ । ସମସ୍ତେ ପିଇବେ । ଗୀତ ବୋଲିବେ, ନାଚିବେ ।' ଏତକ କହିଦେଇ, ପୁଅ, ସେ ତ ତାଳି ମାରି ନାଚିଲା ପିଲାଙ୍କପରି । ହସି ହସି ଲୋଟିଯାଉଥାଏ । ଦୁମ୍‌ଦୁମ୍ ତେଉଁଥାଏ । ଭୂଇଁ ଦୁଲୁକୁଥାଏ । ଶିମୁଳିଗଛର ଚେର, ତା' ମର୍ମ ଫଡକୁଥାଏ । ଜାଇର ଜାନୁ, ଜଙ୍ଘ, ଥନ କମ୍ପୁଥାଏ ଥରଥର ହୋଇ । ମୋତେ ପୁଅ, ବାହାରପାଣି ଦେଖେଇଲା । ମୋ' ଦେହ ଥରିଲା ଗୋଟାପଣେ । କି ସେ ଦୃଶ୍ୟ ! ପିଣ୍ଡା ଉପରୁ ସେ ଆଖିହଳକ ସବୁ ଦେଖୁଥାଏ, ଅଳ୍ପ ହସୁଥାଏ ନିଃଶବ୍ଦରେ ! କହିଲା, 'ହେଲା, ହେଲା । ଏମିତି କାହିଁକି ଗୁଡାଏ ଉତୁରୁଛୁ ? ଯା' ଚକ ପାଖକୁ ।'

"ଜାଇ ବୋଲ ମାନି ଲାଜେଇଲା ପରି ଚକ ପାଖରେ ପହଞ୍ଚିଲା । ତା' ପାଦ ଥାପିଲାବେଳେ ସେ ବାରିଦେଉଥିଲା ତା' ଭୂମିକୁ । ପାଦରେ ସେ ଦେଖୁଥିଲା ଉଚ ନୀଚ, ବାଁ ଡାହାଣ ! ଚକ ପାଖରେ ଦୁଇ ଗୋଡ ଓସାରି ସେ ଠିଆହେଲା, ଚକ ଶରଣ ପଶିଲା ତା' ପାଦମୂଳେ । ଜାଇ ନଇଁପଡି ଅରଗୁଡିକୁ ଆଉଁସିଲାପରି ହାତ ମାରିଦେଲା । ମନ୍ତ୍ର ପଢି ଜୀବନ୍ୟାସ ଦେଲା ପ୍ରାୟ ମୋତେ ଲାଗିଲା । ତା' ଉତ୍ତାରୁ ତ ପୁଅ ! ସେ ହାତ ଲମ୍ବେଇ ଦୂରରେ ଥିବା ଅରଟାକୁ ତା' ପାଖକୁ ଓଟାରିଆଣିଲା । ଦୁଇ ହାତରେ, ବିଜୁଳିବେଗରେ, ମହାବିକ୍ରମରେ ଭିଡିଲା ସେ ଅରମାନଙ୍କୁ । ଚକ ବୁଲିଲା ରାଇଁ ରାଇଁ । ଜାଇର ବାଳଗଣ୍ଡାକ ମୁକୁଳିଗଲା । କାନ୍ଧ ପାଖରୁ ଅସଂଖ୍ୟ ହାତ ଚକ୍ରାକାର ବୁଲିଲାପରି ଦିଶିଲା । ଅଣ୍ଟାରୁ ଉପରକୁ ଗୋଟାଏ ବୃତ୍ତ ଛନ୍ଦରେ ଚକ ଉପରେ ଲପଲପ ହୋଇ ତଳ ଉପର ହେଲା । ଚକ ସାଙ୍ଗରେ, ତା' ଅସଂଖ୍ୟ ବାହୁ ସାଙ୍ଗରେ ବୁଲିଲା ଏ ସସାଗରା ପୃଥିବୀ । ମୋ' ମୁଣ୍ଡ ବୁଲେଇଦେବାରୁ ମୁଁ ଆଖି ବୁଜିଦେଲି । ଚକର ସାଇଁ ସାଇଁ ଶବ୍ଦ କାହିଁ କୋଉ ଭିତରୁ ପାହାଡ ଗର୍ଭରୁ ଗୁମୁରିଲା । ଜାଇର ଜଠର ଭିତରେ ସେ ପ୍ରକାଣ୍ଡ ଚକ ବୁଲୁଥିଲା କି ? ସେ ବାହୁବଳରେ ତାକୁ ତା' ଗର୍ଭକୁ କ୍ଷେପିନେଇଗଲା କି ? ଚକର ଗାଉଁ ଗାଉଁ ଶବ୍ଦରେ ସବୁ ଦୁରୁଦୁରୁ କମ୍ପିଲା । ଗଛ ଭୂଇଁ ମୋ' ହାଡପଞ୍ଜୁରି ନାଡ, ରକ୍ତ, ମାଂସ ଥରଥର ହେଲା । ମୁଁ ପୁଣି ଚାହିଁଲି । ଜାଇ ସେମିତି ଲଇଁ ରହିଥାଏ । ବେଗ ହେତୁରୁ ଏଡେକ ଚକ ସ୍ଥିର ଚିତ୍ରଟିଏ ପରି ଦିଶୁଥାଏ । ତା' ମଙ୍ଗ ଦିଶୁଥାଏ ଧୂଆଁଳିଆ । ମୋ' ଆଖିରେ ପଲକ ପଡୁନଥାଏ । ମୋ' ଅନ୍ତନାଡି ଦୁଲୁଦୁଲୁ ହେଉଥାଏ । ସେ ଭିତରେ ଚକଟାଏ ବୁଲୁଥାଏ । ଗଛ ଭିତରେ, ପାହାଡ ଭିତରେ ସେମିତି ଅସଂଖ୍ୟ ଚକ ବୁଲିଲାପରି ଶବ୍ଦ ହଉଥାଏ ।"

ପିଣ୍ଡାରୁ ଶୁଭିଲା – 'ହଉ ହେଲା, ଏଣିକି ମାଟି ମଡେଇ ଦେ' । ସେତିକିରେ ସେ ଗହଳି ଭିତରୁ ମାତ୍ର ଯୋଡିଏ ହାତ ଗୋଟେଇ ଆଣି ଟଳିଲାପରି ଠିଆହେଲା ଜାଇ । ଆଖି ନଥିବା ମୁହଁ

ହେଇଚି ।"

ମୋ ପିଉସୀ ମୋ' ନାଁ ଦେଇଚି ଗୋରାଚନ୍ଦ । ଡାକେ 'ଗୋରା' । ରଙ୍ଗଖେଳ ଦିନ ବୋଉ ଜଗିଥାଏ ମୋତେ ନଛାଡିବାକୁ । ପିଉସୀ ଛକିଥାଏ କେମିତି ବୋଉକୁ ଚିଟାକାଟି ମୁଁ ଖସି ପଳେଇବି । ବାଦବାଡ ଆରପଟେ ଗୁକୁଣା ଭାଉଜ ହୁଏତ ଥରକୁଥର ଲେଉଟି ଯାଉଥାଏ ଦୁଆର ମୁହଁରୁ ।

ଖରା ବଢି ଆସିଲାବେଳକୁ ଦାଣ୍ଡରେ ଗୋଳ ଶୁଭିଲା । ଧାଁ ଦଉଡ ହେଲା, ଦୁମୁଦୁମୁ ପାଦ ଶବ୍ଦ ହେଲା । ମୁଁ ଡିଆଁଟାଏ ମାରି ବାହାରିପଡିଲି ଦାଣ୍ଡକୁ । ଖାଲି ପାଟିକରି ଜଣେଇଦେଲି ମୁଁ ରଙ୍ଗ ଖେଳକୁ ବାହାରିଲି ।

ଦାଣ୍ଡରେ ରଙ୍ଗ ଫିଙ୍ଗାଫିଙ୍ଗି ଚାଲିଥାଏ । ଜଣେ ଜଣକୁ ଧରି ରଙ୍ଗ ଅଜାଡି ଦଉଥା'ନ୍ତି । ବାର ଜାତି ରଙ୍ଗରେ ମଣିଷ ଦିଶୁଥା'ନ୍ତି ପ୍ରଜାପତି ପରି । ଚିହ୍ନି ହେଉ ନ ଥା'ନ୍ତି କେହି ।

ଦେଖୁ ଦେଖୁ ପିଲା, ବଡ ସମସ୍ତେ ମାତିଉଠିଲେ ।

ଆମ ଘରକୁ ଲାଗି ପୂର୍ବପଟେ ଗୁକୁଣା ଭାଉଜ ଘର । ତା'ର ତିନିଘର ଛାଡି କାଉବସା ଭଳି ବେଢଙ୍ଗ ଉଷ୍ଟ, ପିଣ୍ଡା ଚିରୁଡା ତାଳଗଛର ଖୁଣ୍ଟି । ଉପରେ ଦାନ୍ତୁରା ଗୁଅ, ତା' ଉପରେ ଖପରଲି ଛାତ । ସେଇଠି ପାଣ୍ଡୁ ମିଶ୍ର ରହେ । ଏକୁଟିଆ । ତା' ପିଲାମାନେ ଷାଠିଏ କୋଶ ଦୂରରେ ଥା'ନ୍ତି । ମନହେଲେ ସେମାନେ ମାସେ ଦି'ମାସରେ ଥରେ ଘେରାଏ ବୁଲିଆସନ୍ତି ।

ପାଣ୍ଡୁ ମିଶ୍ର ଦେଖିବାକୁ ତ୍ରିପଣ୍ଡ କଳା । ମୋର ହାତ ଚପୁଡେ ଉଷ୍ଟ । କଳାମଚମଚ ଦାଢି, କୁଷ୍ଟକୁଷ୍ଟ ଲମ୍ବା ବାଳ । ବେକରେ ରୁଦ୍ରାକ୍ଷମାଳ । କପାଳରେ ସିନ୍ଦୂରକଲି ! ଆଖିଗୁଡାକ ଜବାଫୁଲିଆ, ଟୁମାଟୁମା । ଦାନ୍ତ ଧଳା, ଆଉ ନିସନ୍ଧି । ପଥର ଗୋଟାଳି ଚୋବେଇ ଚୁନା କରିଦବ ପାଣ୍ଡୁ ମିଶ୍ର । ସେ କେଶର ରଙ୍ଗର ଧୋତି ପିନ୍ଧେ । ଲୋକେ କହନ୍ତି ସେ ତନ୍ତ୍ର ସାଧନା କରେ । ତାକୁ ବେପାରୀ, ମହାଜନ, ବଡଲୋକେ ସବୁ ପଇସା ଦିଅନ୍ତି । ତନ୍ତ୍ର ବଳରେ ଶତ୍ରୁ ସଂହାର କରାନ୍ତି ।

ପାଣ୍ଡୁ ମିଶ୍ରକୁ ମୋର ପ୍ରାଣେ ଭୟ । ସେ ଆମ ସହିତ ସମସ୍ତଙ୍କ ସଙ୍ଗରେ କଥାବାର୍ତ୍ତା କରେ ନାହିଁ । ଉପରେ ନହେଲେ ବି ଭିତରେ ସମସ୍ତେ ତାକୁ ଡରନ୍ତି । ସେ ଯାହା କହିଲେ ତା'ର ବିରୋଧ କରନ୍ତି ନାହିଁ । ସେ ଦନେଇ ଭାଇନା ଆଉ ତା' ନନା ପାଖରେ ବେଳେବେଳେ ବସେ – କ'ଣ କଥା ହୁଏ କେଜାଣି । ବୋଉ କହୁଥିଲା ଯେ, ସେ ଦି'ଟା ତେଉଁରିଆ ଦେଇଛି ସେ ଦି'ଜଣଙ୍କୁ ହାତରେ ବାନ୍ଧିବାକୁ । କହିଛି କୁଆଡେ ତାଙ୍କର ପୁଅ ହବ । କେଜାଣି କେମିତି ପାଣ୍ଡୁ ମିଶ୍ର ଗୁକୁଣା ଭାଉଜକୁ ଶାଳୀ ମାନ୍ୟ କରୁଚି, ସେଥିପାଇଁ ବେଳ ପାଇଲେ ଟାପରା ବି କରୁଚି ।

ସେ ରଙ୍ଗଖେଳ ଦିନ କବାଟ କିଳି ଲୁଚିଥିବା ଲୋକକୁ ଟାଣି ବାହାର କରାଉଥାଏ । ଘରେ ଘୁ-ଘୁ ହୋଇ ରଙ୍ଗବେରଙ୍ଗ ମରଦଗୁଡେ ପଶିଗଲେ ମାଇପିଗୁଡା ହାଣ୍ଡିଶାଳେ ପଶିଯା'ନ୍ତି । ଅଗଣାରେ, କାନ୍ଥରେ ରଙ୍ଗ ଚିହ୍ନ । ଘରର ମର୍ଦ୍ଦମାନେ ଦାଣ୍ଡକୁ ବାହାରିଆସନ୍ତି ।

କିନ୍ତୁ ପାଣ୍ଡୁ ମିଶ୍ର କବାଟରେ ଟିପ ମାରିବାକୁ କାହାର ହୁବ ପାଉ ନ ଥାଏ । ମୋ' ବାପା !

ଯଦି ଖଣ୍ଡିଆଭୂତ ପରି ରେରେକାର କରି ତା' ଗୁମ୍ଫା ଭିତରୁ ସେ କାପାଳିକ ବାହାରିଆସେ ଅତର୍କ୍କାରେ ଅଧେ ଲୋକଙ୍କ ରକ୍ତ ପାଣି ଫାଟିଯିବ । କେହି ଯାଇ ତା' କବାଟରେ ଟିପ ମାରିବା ପୂର୍ବରୁ ସେ ସଟକୁସଟ ବାହାରି ଆସିଲା ।

ସେ ଆସି ସମସ୍ତଙ୍କ ଗହଣରେ ଠିଆ ହେଲା ପୋଷାମନା ଅରଣାମଇଁଷି ପରି । ଟିକିଏ ହୁବ ପାଇ ସମସ୍ତେ ତା' ଦିହସାରା ରଙ୍ଗ ବୋଳିଲେ । ଫଗୁରଙ୍ଗ ତା' ଦେହରେ ଝଟକିଲା । ମୁହଁଟା ଦିଶିଲା ଆହୁରି ବିକଟାଳ । ସେ କିନ୍ତୁ ଗଦଗଦ ହୋଇ ହସୁଥାଏ ।

ସେ ବାରଣ କଲା ନାହିଁ । ହାତଟେକି କାହାକୁ ରଙ୍ଗ ଲଗେଇଲା ବି ନାହିଁ । ଦି'ହାତରେ ସେ ଦି'ଟା ରଙ୍ଗ ପୁଡିଆ ଧରିଥିଲା – କାହା ପାଇଁ କେଜାଣି ?

ଧୂମି ଧାଁଧଉଡ ଲାଗିଲା । ତାକୁ ଛାଡି ସେମାନେ ଚାଲିଗଲେ । ସେ ବଡ ବଡ ଖୋପାରେ ଆମରି ଘରଆଡେ ମୋହିଁବାର ଦେଖି ମୁଁ ତା' ପିଛା ଧରିନେଲି ।

ସେ ଯାଇ ଦନେଇ ଭାଇନା ଘର ପାଖେ ଠିଆହେଲା । ଏପାଖ ସେପାଖ ଚାହିଁଲା । ମତେ ହୁଏତ ଦେଖିଲା; କିନ୍ତୁ ଖାତିର ନ କରି କବାଟ ପାଖକୁ ଉଠିଗଲା ।

କବାଟ ବନ୍ଦ ଥିଲା ଭିତରୁ । ସେ ଦୁମ୍‌ଦୁମ୍ ବାଡେଇଲା । ଭିତରୁ ଗୁକୁଣା ଭାଉଜର ପାଟି ଶୁଭିଲା – "ଘରେ କେହି ନାହାଁନ୍ତି ।"

"ସେମିତି ସମସ୍ତେ କହନ୍ତି । ସେ ଦନେଇଟା ମରଦ ନା ମାଇକିନା ? ସେ କାଇଁ ତୋ' କାନି ତଳେ ଲୁଚିଛି ? ଛାଡ ତାକୁ । ମୁଁ ତାକୁ ମରଦ ହବା ଶିଖେଇବି ।"

ପୁଣି ଦୁମ୍ ଦୁମ୍ କବାଟ ।

"ସେ ଘରେ ନାହାନ୍ତି, ସକାଳୁ କୁଆଡେ ଯାଇଛନ୍ତି ।"

"ଆଲୋ ଫିଟା କବାଟ । ମୁଁ ଦେଖେ ସେ ଅଛି ନା ଯାଇଚି । ସେ ଛେରକୁରା ଯଦି ସକାଳୁ ଲୁଚି ପଳେଇଚି ଛାଡ ତାକୁ । ମୁଁ ତତେ ରଙ୍ଗ ଟିକେ ଲଗେଇଦେଇ ପଳେଇବି ।"

"ଗୁକୁଣା ! କବାଟ ଫିଟଉଚୁ ନା ମୁଁ ଭାଙ୍ଗିଦେବି ?"

ପାଣୁ ମିଶ୍ର ତା' ବାହା ବାଡେଇ ଧକ୍କା ମାରିଲା । ପଥର ପରି କବାଟ ଟଳିଲା ନାହିଁ ।

ମୁଁ ମହା ଖୁସି । ଦନେଇ ଭାଇନା ନିଜେ କାରିଗର । ଏମିତି ନିସନ୍ଧି କବାଟ କରିଚି ଯେ ତାକୁ ଷଣ୍ଢ ଠେଲିଲେ ବି ହଲିବ ନାହିଁ ।

ପାଣୁ ସେଥିରୁ ନିରସ୍ତ ହୋଇ ପଛକୁ ଅନେଇଲା । କ'ଣ ଭାବିଲା କେଜାଣି ମୋ' ପାଖକୁ ଝପଟିଆସି ମତେ ଧରି ପକେଇଲା । ସାକୁଲେଇ କଥା କହିଲା, "ଆରେ ଟୋକା ତତେ ଗୁକୁଣା ଭାରି ଭଲପାଏ ମୁଁ ଜାଣିଚି । ତୁ ପାଟି ଶୁଣେଇଲେ ସେ ନିଶ୍ଚେ କବାଟ ଫିଟେଇଦେବ ।"

"ମୁଁ ଡାକିବି ନାହିଂ, ଡାକିବି ନାହିଁ, ଡାକିବି ନାହିଁ ।"

ଏଇ କଥାଟା ମୁଁ ଧୀରେ କହିଥିଲେ ହୋଇଥା'ନ୍ତା । ସେ ମୋ' ବେକ ମୁଣ୍ଡାକୁ ତା' ଖାବଳାରେ ଧରି ଚାପିଦେଲା । ମୁଁ କେଁକିନା ରଡି ଛାଡିଲି ।

ରୁକୁଣା ଭାଉଜର କବାଟ ଧଡଧାଡ ଫିଟିଗଲା ସେ ଦୁଆରବନ୍ଧ ଡେଇଁ ବାହାରିଆସିଲା – "କ'ଣ ହେଲା ଗୋରା, କ'ଣ ହେଲା ?"

ପାଣୁ ମିଶ୍ର ମତେ ଛାଡି ରୁକୁଣା ଭାଉଜ ଉପରକୁ ଝାମ୍ପିପଡିଲା । ତା' ହାତ ପାଇଲା ନାହିଁ । ଭାଉଜ ଖସି ପଳେଇଲା ଘର ଭିତରକୁ । କବାଟ ପକେଇବା ପୂର୍ବରୁ ପାଣୁଆ ଝପଟିଯାଇ ଗୋଡଟାଏ ପୂରେଇ ଦେଇଥିଲା । ସେ କବାଟ ଠେଲି ଭିତରେ ପଶୁ ପଶୁ ମୁଁ କେଜାଣି କାହିଁକି ସାହସ ବାନ୍ଧି ଭିତରେ ପଶିଗଲି ।

ମୁଁ ଦେଖିଲାବେଳକୁ ପାଣୁ ମିଶ୍ର କବଳରେ ରୁକୁମା ଭାଉଜ ଛଟପଟ ହଉଚି ମେଘରେ ବିଜୁଳି ପରି । ମୋର ରାମଲୀଳା କଥା ମନେପଡିଗଲା । ସୀତା ହରଣବେଳେ ରାବଣ ଉପରେ ସବୁଯାକ ସଞ୍ଚିତ ରାଗ ମୋ' ମୁଣ୍ଡକୁ ଚହଟିଗଲା । ମୁଁ ଦାଣ୍ଡକବାଟର କାଠ-ଗେଡାଟାକୁ ଭିଡିଆଣି ଆଖିବୁଜି ପାହାରଟାଏ ପିଟିଦେଲି ।

ସେତିକିରେ ପାଣୁଆ ଚମକି ପଡିଲା । ଛାଡିଦେଲା ରୁକୁଣା ଭାଉଜକୁ । ମୋ'ଆଡେ ଚାହିଁ ଗର୍ଜିଲା –

"ଶଳା ବାତ୍ରା ଟୋକା, ତୁ ଏଠି କ'ଣ କରୁଚୁ ? ଶଳା ଯିବୁ ଏଠୁ ନା ଦେଖିବୁ ।"

ଭାଉଜ ମୋତେ ତା' ପଛପଟେ ଲୁଚେଇ ଠିଆ ହୋଇଗଲା ।

"ନା, ସେ ଯିବେ ନାଇଁ । ତମେ ଏଇଠୁ ଯିବ ନା ମୁଁ ପାଟିକରି ସାଇବାଲାଙ୍କୁ ଡାକିବି । ମରଦ ସାଙ୍ଗରେ ମରଦର ରଙ୍ଗ ଖେଳ – ମାଇପିଙ୍କ ସଙ୍ଗେ ଯେ କ'ଣ । ଯାଅ, ମୁଁ କହୁଚି ।"

ରୁକୁଣା ଭାଉଜ ଏମିତି ତେଜା କଥା କହିବାର ମୁଁ ଶୁମି ନ ଥିଲି । ମୁଁ ତା' ପଛପଟୁ ଗୋଟାଏ ଆଖିରେ ଚାହୁଁଥାଏ ।

ପାଣୁଆ ଦାନ୍ତ ଚେଢି କଡମଡ ହେବେଇଲା । ସେ ଧରିଥିବା ଦି'ଟାଯାକ ରଙ୍ଗପୁଡିଆକୁ କଚିଦେଇ ପଳେଇଲା । ଦୁଆରପାଖେ ବୁଲିପଡି କହିଲା, "ମୁଁ ଯାଉଚି; ହେଲେ ଆଉ ଦିନେ ଆସିବି । ସେ ମାଇଗୁଲିଆ ଟୋକାକୁ ଦେବି ଭଲ କରି ପାନେ ।" ମୁଁ ମୋ' ବ୍ୟୁହ ଭିତରୁ ଖଟେଇ ହେଇ କହିଲି, "ଆରେ, ଯା' ଯା ।"

ରୁକୁଣା ଭାଉଜ ତରବରରେ କବାଟରେ ଗେଡା ଲଗେଇଦେଇ ମୋତେ ଆସି ଜାବୁଡି ଧରିଲା । ସକ୍‌ସକ୍ କାନ୍ଦିଲା ପିଲାଙ୍କ ପରି । ମୁଁ ଜାଣିପାରିଲି ନାହିଁ କାହିଁକି ସେ ସେମିତି କାନ୍ଦିଲା ।

ମୋ କାନ୍ଧରେ ମୁହଁଗେଞ୍ଜି କହିଲା, "ତମେ ଥିଲ ବୋଲି, ନ ହେଲେ ସେ ମୋତେ ଆଜି ଭିଣିବିଦାରି ପକେଇଥା'ନ୍ତା ।"

ମୁଁ ବୁଝିପାରୁ ନ ଥାଏ କାହିଁକି ରଙ୍ଗ ଖେଳ ଦିନ କିଏ କାହାକୁ ଭିଣି ବିଦାରି ପକାଇବ ।

ଏତିକିବେଳେ ପାଣୁ ମିଶ୍ର ଫିଙ୍ଗିଦେଇଥିବା ରଙ୍ଗପୁଡିଆ ଆଡେ ମୁଁ ହାତ ପଢେଇଲି । ପୁଡିଆ ଫିଟିଯାଇ ରଙ୍ଗ ବୁଣିଯାଇଥିଲା । ଗୋଟାଏ କେଶର ରଙ୍ଗ, ଆରଟା ନୀଳ । ଯୋଡାକଯାକ ଏମିତି ମହକୁଥିଲା ଯେ କହି ନୁହେଁ ।

ଭାଉଜ କାନ୍ଥକୁ ଆଉଜି ବସିଥାଏ । ମୁଁ ବୁଣିଯାଇଥିବା ରଙ୍ଗକୁ ପାପୁଲିରେ ଟେକିଆଣିଲି । ମୋ' ଦି' ହାତରେ ଦି' ପ୍ରକାର ରଙ୍ଗ ଦେଖି ଖୁସି ହେଇଗଲି ।

ଭାଉଜକୁ ଦୁଇ ପାପୁଲି ଏକାଠି କରି ଦେଖେଇଲି – ଯେମିତି ସ୍କୁଲରେ ବେତମାଡ ଖାଇବାକୁ ହେଡମାଷ୍ଟ୍ରଙ୍କ ଆଗରେ ଦୁଷ୍ଟ ପିଲାଏ ହାତ ଦେଖାନ୍ତି ।

ଭାଉଜ ଆଖିରୁ ଗାଲରୁ ଲୁହ ଶୁଖି ନ ଥିଲା । ସେ ମୋ' ମୁହଁକୁ ଚାହିଁ ହସିପକେଇଲା । "ରଙ୍ଗ ଖେଳିବ ? ଆଚ୍ଛା ।" କହି ମୋ' ଦି' ପାପୁଲିକୁ ଧରି ମୋ' ଦି' ଗାଲରେ ଘଷିଦେଲା ।

ହସି ହସି ପୁଣି ମୋ' ପାପୁଲିକୁ ନେଇ ତା' ନିଜ ଗାଲରେ ଘଷିଦେଲା । ଦୁହେଁ ରଙ୍ଗ ମାଖି ଖୁସି ହୋଇଗଲୁ । ପୁଡିଆରୁ ମୁଠା ମୁଠା ରଙ୍ଗ ଆଣି ବୋଳିହେଲୁ ।

ବଡଭାଗ ରଙ୍ଗ ମୋର ସର୍ବାଙ୍ଗରେ ଗୁକୁଣା ଭାଉଜ ବୋଳିଦେଇଗଲା । ବାଁ ହାତ ବଢେଇ ମୋତେ ଧରି ରଖିଥାଏ । ଡାହାଣ ହାତରେ ମୋ' ଗୋଡଠୁ ମୁଣ୍ଡଯାଏ ରଙ୍ଗ ବୋଳି ଦେଇ ଯାଉଥାଏ ।

ଗୋଟେ ରସ ଡେକ୍‌ଚିରେ ଲାଲଟକଟକ ରଙ୍ଗ ଗୋଳି ସେ ରଖିଥିଲା । କାହାପାଇଁ କେଜାଣି – ତାକୁ ଆଣି ସେ ଅଜାଡିଦେବାକୁ ଆମେ ଦୁହେଁ ଓଦା ସରସର ହୋଇଗଲୁ । ସେ ମୋତେ ସେମିତି ବାହୁ ବେଢେଇ ଧରିଥାଏ । ସେତେବେଳେ ପାଣୁ ମିଶ୍ରର ରଙ୍ଗ କିଛି ଧୋଇ ହୋଇଗଲା । ତା' ଉପରେ ନାଲି ଗୋଳା ରଙ୍ଗ ମଡେଇ ହୋଇଗଲା । କେମିତି ଗୋଟେ ନୂଆ ମହକ ମୋ' ନାକରେ ବାଜିଲା । ମୋତେ ଲାଗିଲା ସେଇଟା ଫୁଟିଲା ପଦ୍ମର ଗନ୍ଧ । ପଦ୍ମ ପୋଖରୀର ଗନ୍ଧ ।

ସେ ମହକ ନାଲିରଙ୍ଗରୁ ବାହାରୁଥିଲା କି ଗୁକୁଣା ଭାଉଜର ଓଦା ଦିହରୁ ବାହାରୁଥିଲା ମୁଁ କହିପାରିବି ନାହିଁ ।

ଗୁକୁଣା ଭାଉଜ ମୋତେ ତା' ହାତରେ ତିନି ପ୍ରକାରର ମିଠା ଖୁଆଇଦେଲା । ଅନେକ ବେଳଯାଏଁ ମୋତେ ଧରି ଗେଲକଲା । ଅସୁମାରି ବୋକ ଦେଲା । ସେମିତି ଆଉ କିଏ କରିଥିଲେ ମୁଁ ଛଡେଇ ହେଇ ପଳେଇଯାଇଥା'ନ୍ତି । କିନ୍ତୁ ଫୁଟିଲା ପଦ୍ମର ମହକ ମୋତେ ଭାରି ଭଲ ଲାଗୁଥିଲା ତ' ।

ଝିଲିମିଲି ପୋଖରୀରେ ଜହ୍ନ ବିମ୍ବ ପରି ସେ ରଙ୍ଗଖେଳ ଦିନଟି ଏବେ ବି ଢଳଢଳ ହେଉଛି ମୋ' ନିସ୍ତବ୍ଧ ଚେତନାରେ ।

ବୋଉ ମୋତେ ଡେଣା ମେଲେଇ ଚଢେଇ ଛୁଆକୁ ଆବୋରିଲା ପରି ଆବୋରି ରଖିଚି । ହେଲେ ଦୁଧସର ପକେଇ କଟା ସେଉ କୋରା ନଡିଆ ଖୁଆଇଚି ଗୁକୁଣା ଭାଉଜ । ସ୍କୁଲକୁ ବାହାରିଲାବେଳେ ସମସ୍ତଙ୍କୁ ଲୁଚେଇ ମୋ' ମୁଣାରେ କାଜୁ, କିସ୍‌ମିସ୍ ପୁଡାଏ ଭରିଦେଇଛି । ଖେଳବେଳେ ଡାକିନେଇ ପାଚିଲା ପାଟକପୁରା କଦଳୀ, ସୀତାଫଳ, ସେଉ ଖୁଆଇଚି ।

ବୋଉ ପାନଖାଏ । ମୁଁ ବେଳେବେଳେ ତା' ପାଖରେ ବସି ପାନଟାଏ ଭାଙ୍ଗି

ଦେବେଇଦିଏ । ସେ ଉପରୁ ମନା କରିଦିଏ ସିନା; କିନ୍ତୁ ବାହରଣ କରେ ନାହିଁ । ଦିନେ ସେଇ ରୁକୁଣା ଭାଉଜ ହିଁ ଅସଲ ପାନ ମୋତେ ଖୁଆଇଲା । ଚୂନ, ଖଇର, ଗୁଆରେ କ'ଣ ପାନ ହୁଏ ? ସେଥିରେ ଜାତିଆ ଜିନିଷ ସବୁ ପଡିଲେ ସେ ପାନ । ସାଚିପତ୍ର, ଗୋଲାଖଇର, ମିଠାଗୁଆ, ଜାଇତ୍ରି, ଲବଙ୍ଗ, ଚନ୍ଦନଗୁଣ୍ଡି, କବାବ୍ ଆଉ କ'ଣ ଗୋଟାଏ ପ୍ରକାର ବାସ୍ନା । ଆଃ ସେଇଦିନ ମୁଁ ଜାଣିଲି ପାନ କ'ଣ । ସେଇଠୁ ରସ ଢୋକି ଢୋକି ପବନ ଶୋଷି ଶୋଷି ଓଠ ନାଲି କରି ମୁଁ ଘରେ ପହଞ୍ଚିଥିଲି ।

ସେଇଦିନ ଜାଣି ପ୍ରଳୟ ହୋଇଗଲା ।

ବୋଉ ଗର୍ଜିଲା ପଞ୍ଚମରେ । ରୁକୁଣା ଭାଉଜକୁ ଯୋଉ ଗାଳି, ମୋତେ ଯୋଉ ଗାଳି – ସବୁ ସେ ଶୁଣୁଥିବ ପଡିଶାଘରୁ ।

"ପାନରେ ଔଷଧ ଦେଇ ମୋ' ପୁଅକୁ ସେ ମାଲ୍ୟାଣୀ ମେଣ୍ଢା କରିଦେବ । ସେ ଯଦି ମୋ' ଘରେ ଆଉ ପାଦ ଦିଏ ତା'ର ଦିନେକୁ ମୋର ଦିନେ । ତା' ସରାଗ ତା' ଘରେ । ସେ ମୋର କ'ଣ କି – ଗୋତ ନା ଗାତ ? ମୋ' ପିଲାଟାକୁ ବଶ୍ୟ କରିଦେଲାଣି । ଆ...ରେ – କିଛି ନ କହିଲାରୁ ମୁହଁ ବଢିଯାଉଚି ।"

"ତୁ ଶୁଣିଥା' ଗୋରା, ତୋ' ଗେଲବସରପଣ ଛଡେଇଦେବି । ଯଦି ସେ ମଛଡି ଘର ଆଡେ ମୁହାଁଇଛୁ ତୋ' ଟାଙ୍କ ଛୋଟା କରିଦେବି ।"

ବୋଉର ଚଣ୍ଡୀରୂପ ବେଳେବେଳେ ଉଭାରିବାର ଆମେ ସମସ୍ତେ ଦେଖିଛୁ । ପିଉସୀ ନାନୀ ବି ସେଦିନ ଆଗକୁ ଆସିବାକୁ ଭରସି ପାରିଲା ନାହିଁ ।

ତା' ପରଦିନଠୁ କଡା ପୁଲିସ୍ ପହରା । ମୋତେ ଆଉ ସୁଯୋଗ ମିଳିଲା ନାହିଁ ରୁକୁଣା ଭାଉଜକୁ ଦେଖା କରିବାକୁ । ମୁଁ ମନେ ମନେ ଝୁରିହେଲି । ତା' ଭଳି ମୋତେ ଆଉ କେହି ସ୍ନେହ କରୁ ନ ଥିଲେ । ପିଉସୀ ନାନୀ ବି ନୁହେଁ । ବୋଉଟା ତ' ଖାଲି ରାଗେ । ବେଳେବେଳେ ମୁଁ ଖାଉଥିବାବେଳେ ମୋ' ପିଠିରେ ହାତ ଆଉଁସି ଆଣେ । ତା' ହାତଟା ଭାରି ଉଷୁମ ଆଉ କଅଁଳ । ହେଲେ ରୁକୁଣା ଭାଉଜ ଭଳି ସେ କେବେହେଲେ ଗେଲ କରେ ନାହିଁ । ଏତେ ଦରଦ ଦିଏ ନାହିଁ ଖାଇବାକୁ ।

କ'ଣ ହେଲା କେଜାଣି – ସକାଳେ ପିଣ୍ଡାରେ ବସି ଦାନ୍ତ ଘଷିଲାବେଳେ ରୁକୁଣା ଭାଉଜ ପୋଖରୀରୁ ପାଣିଗଲା କାଖେଇ ଆଉ ଆସିଲା ନାହିଁ କି ମୋ' ସାଙ୍ଗରେ ପାଣି ଖେଳିବାର ଅବଲୟ କଲା ନାହିଁ ।

ତା'ର କିଛିଦିନ ଉତ୍ତାରୁ ଦନେଇ ନନା ଠୋକିନା ମରିଗଲା । ସାହିଯାକ ଲୋକେ ଜମା ହେଇଗଲେ । ବୁଢାଟାକୁ ସମସ୍ତେ ଭଲ ପାଉଥିଲେ । ମୁଁ ସେ ଗହଳି ଭିତରେ ପଶି ରୁକୁଣା ଭାଉଜକୁ ଠାବ କଲି ସତ, କିନ୍ତୁ ସେ ନିଆରା ଦିଶୁଥିଲା । ସତେ ବା ସେ ମୋତେ ଦେଖି ଦୋ' ଦୋ' ଚିହ୍ନା ହଉଥିଲା । ମୋର ମନ ହଉଥିଲା ତା' ପାଖରେ ଲେସିହୋଇ ଠିଆହବାକୁ । ତା' ବାଁ ହାତର

ଗୋଟିଏ ଟିପକୁ ମନ୍ଥିଦେଇ ତା' ନିଦ ଭାଙ୍ଗିଦେବାକୁ, କିନ୍ତୁ ସେ ପାଇଁ ବେଳ ନ ଥିଲା ।

ଦନେଇ ଭାଇନା ଘରେ ଦଶାହ ଭୋଜି ହେଲା । ବାପ ଥିଲା ବଡପୁଅ ବୋଲି ମତେ ଛାଡିଲେ ନାହିଁ । ବାପା ବି ରାଉରକେଲାରୁ ଆସିପାରିଲା ନାହିଁ । ଚାକିରିରୁ ଛୁଟି ମିଳିଲା ନାହିଁ । କିଏ ଜଣେ କହିଲା ସେ ଦନେଇ ଭାଇନା ଗାଁକୁ ପଳେଇବ । ଜମିବାଡି କଥା ବୁଝି ସେଇଠି ରହିବ । ରୁକୁଣା ଭାଉଜ ଆଉ ଆସିବ ନାହିଁ ।

ଆମ ଘରେ ବି ଆଲୋଚନା ହେଲା ଯେ ବୋଉ ମୋତେ ନେଇ ରାଉରକେଲା ଚାଲିଯିବ । ପିଉସୀ ନାନୀ ଘର ଦାୟିତ୍ୱରେ ରହିବ ଏକୁଟିଆ । ମୁଁ ତେଣିକି ସେଇଠି ପଢିବି । ଧୁମ୍ ଚଇତରେ ଖଣ୍ଡିଆଭୂତ ମାତିଗଲା । ଶୁଖିଲାପତ୍ର ସବୁ କିଏ କୁଆଡେ ଉଡିଗଲେ । ଇସ୍ କେଡେ ନିର୍ମମ ସେ ଉପ୍ତାଟିଆ ପବନ । ମୁଁ ରୁକୁଣା ଭାଉଜକୁ କହିପାରିଲି ନାହିଁ ଯାଉଚି ବୋଲି । ସେ ବି ମୋତେ କହିପାରିଲା ନାହିଁ । ତା' ଦାଣ୍ଡ ଦୁଆର ନିସନ୍ଧି କବାଟରେ ବଡ ପିତଳ ତାଲାଟାଏ ଝୁଲି ରହିଥିଲା ଆମେ ରାଉରକେଲା ବାହାରିଗଲା ଦିନ ।

ସେଇଠି ଡୁହାଇ ଡୁହାଇ ମୁଁ ଗୋଟାଏ ବିକଟାଳ ରେଳଗାଡିର ସ୍ୱପ୍ନ ଦେଖିଲି ରାତ୍ରର ତୃତୀୟ ପ୍ରହରରେ । ସବୁବେଳେ ପ୍ଲାଟଫର୍ମ ଉପରେ ମୁଁ ସେ ଗାଡି ଧରିବାକୁ ଧାଏଁ, ରୁକୁଣା ଭାଉଜ ବି ଧାଏଁ । ମୋ' ବେଳକୁ ସେ ଗାଡିରେ ବସି ଝରକାବାଟେ ଓହଳି ଚାହୁଁଥାଏ । ତା' ବେଳକୁ ମୁଁ ଚାହୁଁଥାଏ । ବେଳେବେଳେ ପାଣୁ ମିଶ୍ର ରୁକୁଣା ଭାଉଜକୁ ଉହାଡ କରକି ଠିଆ ହୋଇଯାଏ । କୁହାଟମାରି ସେ ଲମ୍ବିଯାଏ ଆଉ ହେଇଯାଏ ଅନ୍ଧାର ରାତିରେ ଅଳନ୍ଧୁ ବର୍ଣ୍ଣର ରେଳଗାଡି । ବହୁ ଦୂରକୁ ଘୁଞ୍ଚିଗଲେ ରେଳଗାଡି ପାଲଟିଯାଏ ପାଣୁ ମିଶ୍ର । ତା' ଖାବଳାରେ ରୁକୁଣା ଭାଉଜ ମେଘରେ ବିଜୁଳି ପରି ଛଟପଟ ହେଉଥାଏ ।

କାହାକୁ କିଛି ନ କହି ମୁଁ ମନେ ମନେ ରୁକୁଣା ଭାଉଜକୁ ଝୁରିଲି । ସହରର ଗହଳି ଭିତରେ ଖୋଜିଲି ସେମିତି ଦେବୀ ପ୍ରତିମାଟିଏ । ଘରେ ଖୋଜିଲି ସେମିତି ମହମହ ମହକୁଥିବା ସାନ୍ନିଧ, ସେମିତି ଥୋପି ପଡୁଥିବା ସ୍ନେହ-ଆଦର । ଜମା ଜାଣିପାରୁ ନ ଥିଲି କାହିଁକି ମୋତେ ସେମିତି ଲାଗୁଥିଲା । ବାର-ତେର ବର୍ଷର ଟୋକାଟା କେମିତି ବା ଜାଣିପାରିଥା'ନ୍ତା ସମୁଦ୍ରରେ କେତେ ପାଣି ? କାହାକୁ ବା ସେ କହିପାରିଥା'ନ୍ତା ତା' ମନ କଥା ? ବାପା ତ ବାପା, ତାଙ୍କୁ ପାଖେଇ ହେବ ନାହିଁ, ଛୁଇଁ ହେବ ନାହିଁ । ଦୂରରୁ ଖାଲି ଦଣ୍ଡବତ କରିହେବ । ଆଉ ରହିଲା ବୋଉ । ତାକୁ ରୁକୁଣା ଭାଉଜ କଥା କେମିତି ବା କହିହେବ ? ଅଲକ୍ଷଣୀ ବାଞ୍ଝୁଣୀଟା, ଅଫଳନ୍ତି ଅଲୋଡା ଗଛଟା । ତା' କଥା ପଡିଲେ ବୋଉ ତାଳରେ ପଡି ନଡିଆରେ ଡେଇଁବ ।

ଅଗତ୍ୟା ସପନର ସେ ଚଳଚ୍ଚିତ୍ର ଉପରେ ଉଷୁମ ଦୀର୍ଘଶ୍ୱାସ ମଡେଇ ହୋଇଯାଏ । ନୂଆ ଜାଗା, ନୂଆ ମଣିଷ, ନୂଆ ସ୍କୁଲର ଠୋସ୍ କୁଢ କୁଢ ଇଟା ମଡେଇ ହୋଇଯାଏ ଏବଂ କ୍ରମଶଃ ପୋତି ହୋଇଯାଏ ସେ ସୁକୁମାର ସ୍ମୃତି, ଅପସରିଯାଏ ଦୂରରୁ ଦୂରକୁ ।

ଫୁଟବଲ, କ୍ରିକେଟ୍, ଡ୍ରାମା, ପାଠପଢା, ବକ୍ତୃତା, ବାହା-ବା, ପୁରସ୍କାର ଭିତରେ

ରାଉରକେଲାରେ ଛ'ବର୍ଷ ବିତିଯାଏ । କଥାପଡେ ଯେ ମୋତେ ବାପା ଦିଲ୍ଲୀ ପଠାଇବାକୁ ସ୍ଥିର କରିଛନ୍ତି । ବଢିଆ । ଦିଲ୍ଲୀ ! ଓ୍ୱାଃ । ଓ୍ୱାଃ ।

ସଜବାଜ ହେବା ଭିତରେ ମୁଁ ନୂଆ ପୂରାପେଣ୍ଟ, ସାର୍ଟ ପିନ୍ଧି ଦର୍ପଣ ଆଗରେ ଠିଆ ହୋଇଥାଏ । ଗାଢ ଖଇରିଆ ରଙ୍ଗର ସାର୍ଟରେ ମୋ' ଚେହେରା ଧପଧପ ଜଳୁଥାଏ । ମୋ' ମୁହଁରେ କଅଁଳିଆ ନିଶ ଦି'ପଟା ମାନୁଥାଏ କାହିଁରେ କ'ଣ ।

ମୋ' ଭିତରେ କ'ଣଟାଏ ଆସ୍ତେ କଡଲେଉଟାଇବାର ମୁଁ ଅନୁଭବ କଲି । "ନା, ନା', ତମେ ଜମା ସେମିତି କରିବ ନାହିଁ । ତୁମ ମୁହଁକୁ ନିଶ ଦି'ପଟା ବିରାଜି ଦିଶିବ । ଗାଢ ଗୋଲାପି ନ ହେଲେ ଗାଢ ଖଇରିଆ ରଙ୍ଗର ଜାମା ପିନ୍ଧିବ । ଉଷ୍ମ ହୋଇଯିବ ମୋର ହାତ ଚିପୁଡେ । ମୁଁ ତୁମ ବୁକୁଯାଏ ହେବି । ସେଇଦିନ ମୁଁ ତୁମକୁ ମୋ' ବେକର ସୁନାହାର ପିନ୍ଧେଇଦେବି ।"

ରୁକୁଣା ଭାଉଜ । ମୋ' ବୁକୁ ଦାଉଁ ଦାଉଁ ହେଲା । ଦେହସାରା ଝାଳେଇଗଲା । ମୋ' କପାଳ, ଗାଲ, ବେକ ଚିକ୍ ଚିକ୍ କଲା ଆଲୁଅରେ ।

ସତକଥା ଭାଉଜ, ତୁମ କଥା କେତେ ସତ । ଖଇରିଆ ରଙ୍ଗର ଜାମା ମୋତେ ଏତେ ଭଲ ଦିଶିବ ବୋଲି ତମେ କେମିତି ଜାଣିଥିଲ ? ମୁଁ ଆଉଖଣ୍ଡେ ଗାଢା ଗୋଲାପି ଜାମା କିଣିନେବି ଭାଉଜ । ଏ ଦି'ଟା ମୋର ସବୁଠୁ ପ୍ରିୟ ପୋଷାକ ହବ । ଆଉ ତୁମ ସୁନାହାର – ସେଇଟା ତୁମ ବେକରେ ହିଁ ଥାଉ ।

"କିରେ ତୋର ସଜବାଜ ସଇଲା ?" – ପଚାରିଲେ ବାପା ।

ମୁଁ ଦର୍ପଣ ପାଖରୁ ମୁହଁ ଫେରେଇ ବାହାରି ଆସିଲା । ବୋଉ ସକ୍‌ସକ ହୋଇ ମୋ' ପିଠିରେ ହାତ ରଖି ଠିଆହେଲା । ପଡିଶାଘର ଫିଙ୍କି ତା' ବଗିଚାର ଗୋଲାପଟିଏ ଧରେଇ ଦେଇ କହିଲା, "ହଲ୍ଲୋ ପ୍ରିନ୍ସ, ଅଲ୍ ଦି ବେଷ୍ଟ ।"

ଦିଲ୍ଲୀର ପ୍ରବଳ ଶୀତ । ପଶୁପକ୍ଷୀ ସୁଦ୍ଧା ତାଙ୍କ ଅବୟବକୁ ଜାକିଜୁକି ସାଙ୍କୁଡି ନେବାର ଦିନ । ହାତମୋଜା, ଗୋଡମୋଜା, ଟୋପି, ସେଟର, କୋଟ୍ ଭିତରୁ ନିକ୍ଷିପ୍ତ କୁହୁଡିର ସକାଳ ପହରୁ ଶୀତଳ ସନ୍ଧ୍ୟାର ଅନ୍ଧାର ପର୍ଯ୍ୟନ୍ତ ଝିପିଝିପି ବର୍ଷା; ଆଉ କୋହଲା ପବନର ମୁକାବିଲା ହଷ୍ଟେଲ୍‌ର ନିବୁଜ କାନ୍ଥ ଭିତରକୁ ଫେରିଆସିବାର ଦିନ ।

ହୁସ୍‌କିନା ଦିନେ ଦେଖିଲାବେଳକୁ ଶୀତ ପଳେଇଲା । ଅଗଣିତ ଗୋଲାପ ଫୁଟିଗଲେ ହଷ୍ଟେଲ୍ ସାମ୍ନା ବଗିଚାରେ । ଉଜ୍ଜ୍ୱଳ ଖରାରେ ଝଲମଲ କଲା ଦିଲ୍ଲୀ । ସେ ପବନରେ ଅଥୟ ଉଚ୍ଛନ୍ନ ଲାଗିଲା । ଖଜବଜ୍ ଲାଗିଲା । ଉଚ୍ଛୁଳିଲା ଉଚ୍ଛୁଳିଲା ପରି ଲାଗିଲା । ମନେହେଲା ମୋ' ପଞ୍ଜରା ଭିତରେ ଫେଣ ବଜବଜ ଦୁଧ ହାଣ୍ଡିଟାଏ ଉତୁରି ପଡୁଥିଲା ।

ଏଥର କିନ୍ତୁ କୋଡିଏ ବର୍ଷର ସେ ରାଜପୁତ୍ର ପରି ଝଲମଲ ତରୁମ ବୁଝିପାରୁଥିଲା କାହିଁକି ଜାତିଜାତି ଫୁଲର ପରାଗ ନେଇ ଗନ୍ଧବତୀ ପୃଥ୍ୱୀ ହୋରି ଖେଳୁଥିଲା । କାହିଁକି ମହୁ ଝରୁଥିଲା ଆକାଶରୁ, ପବନରୁ ଆଉ ତା' ଦୃଷ୍ଟିରୁ ଓ ନିଃଶ୍ୱାସରୁ ।

ମୁଁ ପ୍ରଥମେ ଅନୁଭବ କଲି ଯେ ଦକ୍ଷିଣା ପବନକୁ ମଳୟ କହନ୍ତି । ପତ୍ରଗହଳରେ ଲୁଚିଲୁଚି ଉଚ୍ଛନ୍ନ ତାନ ତୋଳୁଥିବା ସେ ଅଶରୀରୀ ପକ୍ଷୀକୁ କୋକିଳ କହନ୍ତି । ବର୍ଷର ସେ ଅନୁପମ ଶ୍ରେଷ୍ଠ କାଳକୁ ବସନ୍ତ କହନ୍ତି ।

ଦେଖୁ ଦେଖୁ ହାଲୁକା ପବନରେ ପହଁରୁ ପହଁରୁ ହୋଲି ପର୍ବ ଆସିଗଲା ।

ସାରା ସହର ଛୋଟବଡ ସମସ୍ତ କୋଠାବାଡି ଗଛପତ୍ର ସମେତ ମାତିଗଲେ ସେ ରଙ୍ଗ ଆଉ ମହକର ଉଚ୍ଚାଟରେ ।

ନିଃସଙ୍କୋଚ, ଅବାଧ, କିମ୍ଭୂତ୍ ଅଶ୍ଳୀଳ, ଅସଂଯତ ଆଚରଣ ଓ ଉଚ୍ଚାରଣ ଭିତରେ ଉଦ୍ଦାମ ଯୌବନ ଆଉ ଟହଟହ ହାସ୍ୟରୋଳ ମାଡି ଯାଉଥିଲା ଚତୁର୍ଦ୍ଦିଗ ମଧୁର ବନ୍ୟା ପରି ।

ମୋ' ଉପରେ ଅନେକଙ୍କ ଦୃଷ୍ଟି, ରଙ୍ଗ ମଧ ସେହି ପରିମାଣରେ ମୋ' ଉପରେ ସବୁଠୁ ବେଶୀ । ଗୋଟାଏ ସର୍ଦ୍ଦାର ଟୋକା ମୋତେ କୁଣ୍ଢେଇ ଧରି ଭାଙ୍ଗ୍ରା ନାଚିଲା । ଆଉ ଜଣେ ମୁଣ୍ଡରେ ଦୁପଟାକୁ ଓଢଣୀ କରି ମୋ' ସହିତ ଫଟୋ ଉଠାଇଲା ।

ରୋହଦ୍‌ଗି ସାହେବ ଆମ ୱାର୍ଡେନ୍ । ଘରକୁ ଡାକିନେଲେ । ମିସେସ୍ ରୋହଦ୍‌ଗି ମିଠେଇ ସାଙ୍ଗରେ ଫ୍ରୁଟ୍ ସାଲାଡ୍ ଖାଇବାକୁ ଦେଲେ । ଛେନା, କଟା ସେଉ ସାଙ୍ଗରେ କଷ୍ଟାଡ୍ ଆଉ କିଛି ମହୁ ମିଶି ସେ ପଦାର୍ଥଟି ବେଶ୍ ଭଲ ଦିଶୁଥିଲା ।

ପାଟିରେ ଦେଉ ଦେଉ ଘୁ ଘୁ ହୋଇ ପଶିଆସିଲା ଆଉ ଏକ ରଙ୍ଗଖେଳର ଅଭୁଲା ସ୍ମୃତି । ମାଖରା ଲାଗିଲା ଫ୍ରୁଟ୍ ସାଲାଡ୍ । ସେଥିରେ ଦୁଧସର ନଥିଲା । ଗୁକୁଣା ଭାଉଜର ସ୍ନେହ ନ ଥିଲା । କାହିଁ କେଉଁଠି ଫୁଟିଲା ପଦ୍ମଫୁଲର ମହକ ନଥିଲା ।

ମୁଁ କୌଣସି ପ୍ରକାରେ ରୋହଦ୍‌ଗି ସାହାବଙ୍କ ଘରୁ ତାଙ୍କ ସ୍ତ୍ରୀ ଏବଂ ପହିଲମାନୀ ଚେହେରାର ତାଙ୍କ ଝିଅ କବଳରୁ ମୁକୁଳି ଚାଲିଆସିଲି ।

ଖୁବ୍ କ୍ଳାନ୍ତ ଉଦାସ, ଆଉ କାନ୍ଦ କାନ୍ଦ ଲାଗୁଥିଲା ମୋତେ । ତଳମୁହାଁ ଧୀରେ ଧୀରେ ମୁଁ ଫେରିଯାଉଥିଲି । ମୋ' ଦେହରେ କୋଉଠି କିଏ ଟିକିଏ ଚିପ ମାରିଦେଲେ ସେଇଠୁ ଝରଝର ଲୁହ ଝରିଯାଇଥା'ନ୍ତା ।

ସେ ଦିନସାରା ମୁଁ ଅସଂଖ୍ୟ ଥର ପାଣୁ ମିଶ୍ର ସହିତ ମୁକାବିଲା କରିଛି । ଗୁକୁଣା ଭାଉଜର ବାହୁବେଢା ଭିତରେ ରଙ୍ଗ ଜୁଡୁବୁଡୁ ହୋଇ ଠିଆ ହୋଇଛି । ମୋ' ମୁହଁସାରା ତା'ର ଅସଂଖ୍ୟ ଚୋକ ମୁଁ ସମ୍ଭାଳିପାରି ନାହିଁ । ମୋ' ନିଃଶ୍ୱାସ ରୋଧି ହୋଇଯାଇଛି । ଝାଳେଇଯାଇଛି ସର୍ବାଙ୍ଗ । ହୁତ୍‌ହୁତ୍ ହୋଇ ଜଳିଯିବିକି ଆଉ !

କିନ୍ତୁ ମୁଁ ଜଳିଲି ନାହିଁ । ମୋ' ବୁକୁ ପାଖରେ ତା'ର ପଦ୍ମଫୁଲ ପରି ମହକୁଥିବା ଝାଳ ସରସର, ରଙ୍ଗ ସରସର ମୁହଁକୁ କଳ୍ପନା କରି ସୁଦ୍ଧା ତାକୁ ମୁଁ ବାହୁ ବେଢେଇ ପାରିଲି ନାହିଁ ।

ସେ ଦେବୀ ପ୍ରତିମା ପାଖରେ ମୁଁ ବାରମ୍ବାର ଅବୋଧ ବାଳକଟି ହୋଇ ଅବାକ୍ ହୋଇ ଠିଆ ହୋଇ ରହିଲି । ତିନ୍ତୁଥିଲି ରଙ୍ଗ ସ୍ପର୍ଶ ଆଉ ସରାଗର ଅଜସ୍ର ବର୍ଷାରେ । ଜାଣିପାରୁ ନ ଥିଲି

ସେଥିରେ ମଧୁ କେତେ ବା ମଦିରା କେତେ ।

ତଥାପି ମୁଁ ଯେ ଗୁକୁଣା ଭାଉଜର ସ୍ମୃତି ସମ୍ଭାଗରେ ନିମଗ୍ନ ଥିଲି, ତା'ର ଚିନ୍ତାରେ ଆଚ୍ଛନ୍ନ ଆବିଷ୍ଟ ଥିଲି – ଏକ ମାନିନେବାରେ ମୋର ଦ୍ୱିଧା ନାହିଁ ।

ଗାଁ ଛାଡି ଆସିଲାବେଳେ ମୁଁ ତାକୁ କାହିଁକି ବିଦାୟ ମାଗିଲି ନାହିଁ, ସେଥିପାଇଁ ନିଜକୁ କ୍ଷମା ଦେଇପାରୁ ନଥିଲି । ବୋଉ ମୋତେ ବାଟ ଜଗି ବାରଣ କରିଥିବାରୁ ତାକୁ ବି କ୍ଷମା କରିପାରୁ ନ ଥିଲି ।

ପ୍ରାୟଶ୍ଚିତ ପାଇଁ ବହୁ ପ୍ରକାର ବିଦାୟ ଦୃଶ୍ୟ କଳ୍ପନା ରହିଛି । ମନେ ମନେ ବହୁବାର ତା' ଆଗରେ ଖଇରିଆ ରଙ୍ଗର ପୂରା ଜାମା ପିନ୍ଧି ଠିଆ ହୋଇଯାଇଛି । ସେ ତା' ଗଳାହାର ମୋ' ବେକରେ ପିନ୍ଧାଇବା ପାଇଁ ଓହଟିଲାବେଳେ, ମୁଁ ତା' ହାତଧରି ମନା କରିଦେଇଛି ।

ହୋଲିଦିନ ଘୋର ଦୁର୍ଦ୍ଦଶା ଭୋଗିଲା ପରେ ଆହୁରି ଭୋଗିବାକୁ ଅଭିଳାଷ କରିଛି । ତା' ପରଦିନ ବହୁ ସ୍ୱପ୍ନ । ଦୁଃସ୍ୱପ୍ନରୁ ଉଠି ଯୋଜନା କରିଛି, କେମିତି ସିଧା ଯାଇ ଗାଁରେ ପହଞ୍ଚିବି । ବାପା, ବୋଉ ଜାଣିପାରିବେ ନାହିଁ । କେମିତି ସେଇଠୁ ଗୁକୁଣା ଭାଉଜରୁ ଖୋଜି ଖୋଜି ତା' ନିଜ ଗାଁରେ ପହଞ୍ଚିଯିବି ।

କିନ୍ତୁ ଘଣ୍ଟା ଦେଖି ଭିଡିହୋଇ କ୍ଲାସ୍‌କୁ ଯାଇଛି । ଲାବୋରେଟୋରିକୁ ଯାଇଛି ଦିନ ପରେ ଦିନ ରାତି ପରେ ରାତି, ମଡେଇ ହୋଇ ପଡିଛି ସେ ରଙ୍ଗ ଖେଳ ଉପରେ । ମୋ' ମନ ଭିତରେ କିନ୍ତୁ ଗୁକୁଣା ଭାଉଜ କୂଅ ଭିତରେ ସ୍ଥିର ଚନ୍ଦ୍ରବିମ୍ବ ପରି ଝଟକିଛି ।

ଚିଠି ଲେଖିଛି ଏବଂ ଚିରିଛି ବାରମ୍ବାର ମନକୁ ପାଇନାହିଁ । ଠିକଣା ଜାଣିନାହିଁ । ପୁଣି ରାଶି ରାଶି ପାଉଁଶ ଜମିଯାଇଚି – ସେ ନିଆଁ ଝୁଲଟି ଉପରେ । ପାଠପଢା, ଖେଳ ଆଉ ବାର-ପ୍ରକାର ଆତସବାଜି ଭିତରେ ମୁଁ ମଜିଯାଇଛି ।

ମୋର ଦିଲ୍ଲୀ ରହଣି ଭିତରେ ରାଉରକେଲାକୁ ଚାରି ପାଞ୍ଚଥର ଯାଇଛି, କିନ୍ତୁ ତରବର ହୋଇ ସାରା ସମୟ ଆଙ୍ଗୁଠି ସନ୍ଧିରେ ଗଳିଯାଇଛି ।

ଗାଁକୁ ଯାଇ ପାରି ନାହିଁ । କି ଥରେହେଲେ କାହାକୁ ଗାଁ କଥା ପଚାରି ପାରି ନାହିଁ । କେଜାଣି କାହିଁକି ମୁହଁ ଖୋଲି ବୋଉକୁ ପଚାରି ପାରି ନାହିଁ । ଭୟ ସଂକୋଚ ମଡେଇ ହୋଇ ପଡିଛି ମୋ' ଉପରେ । ସତେବା ପଚାରିଦେଲେ ମୁଁ କିଛି ନିଷିଦ୍ଧ ଅଞ୍ଚଳରେ ପାଦ ପକେଇ ଦେଇଥା'ନ୍ତି । ମୋର ପାଠପଢା ସରି ଆସୁଥାଏ । ମୋତେ ଫାନ୍ଦିବା ପାଇଁ ଜାଲ ଫିଙ୍ଗା ଚାଲିଥାଏ । ମୋର ସାଙ୍ଗମାନେ ହିଁ ଷଡଯନ୍ତ୍ର କରୁଥା'ନ୍ତି । ଅପରୂପା, ଲାବଣ୍ୟମୟୀ ଲଳନାଙ୍କ ଭିଡ ଜମିବାର ମୁଁ ଅନୁଭବ କରୁଥାଏ । ଧନାଢ୍ୟ କନ୍ୟାପିତାମାନେ ସହପାଠିନୀର ଆଳ ଦେଖାଇ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ ଆଣୁଥା'ନ୍ତି । କେହି କେହି ଧୋବାଘରୁ ମୋ' ପୋଷାକର ମାପ ନେଇ ସୁଟ୍ ସିଲେଇ କରି ଭେଟିଦେବାକୁ ମଧ ସଂକୋଚ କରୁ ନ ଥା'ନ୍ତି ।

ଘରୁ ବି ଫଟୋ ସହିତ ପ୍ରଶସ୍ତିପତ୍ର ପହଞ୍ଚୁଥାଏ । ମୁଁ କୌଣସି ପ୍ରକାରେ ଟାଳି ଚାଲିଥାଏ

କେବଳ ଗୋଟିଏ ଯୁକ୍ତିରେ । ମୋତେ ସିଭିଲ୍ ସର୍ଭିସ୍ ପରୀକ୍ଷା ଦେବାକୁ ଥାଏ । ନିଜ ଗୋଡରେ ନିଜେ ଠିଆହେବା ପୂର୍ବରୁ ମୁଁ ଆଉ ଜଣକ ଦାୟିତ୍ୱ ନେବା ପାଇଁ ପ୍ରସ୍ତୁତ ନୁହେଁ ବୋଲି ଶୁଣାଇ ଚାଲିଥାଏ । ଅନ୍ୟପଟୁ ଉତ୍ସାହରେ ମୋତେ ସମର୍ଥନ କରି ଯୁକ୍ତି ହଉଥାଏ ଯେ ରାଜି ହୋଇଗଲେ ତେଣିକି ବର୍ଷେ ସେମାନେ ଅପେକ୍ଷା କରିଯିବେ ।

ହେମା ଗର୍ଗ । ସବୁ ପତଙ୍ଗଙ୍କ ପାଇଁ ଦୀପଶିଖା । ଅସାମାନ୍ୟା ସୁନ୍ଦରୀ । କୁନ୍ଦକଢି ପରି ଗଢଣ । ଦୁଧ ପିଠଉ ପରି ରଙ୍ଗ । ସେ ଆସୁଥିଲା ମର୍ସିଡିସ୍ ଗାଡିରେ । ପ୍ରାଗଭିଡା ସାଢେ ଛ' ଫୁଟ ଉଚ୍ଚ ସଫରକୁ ଦେଖିଲେ କାହାର ହେଲେ ହୁବ ହେଉ ନ ଥିଲା ହେମାର ପାଖ ପଶିବା ପାଇଁ । ତଥାପି ତା' ଉପରେ ସମସ୍ତଙ୍କ ଆଖି ଲାଖି ରହୁଥିଲା ।

ମୋର ସାଙ୍ଗସବୁ ଗୋଟାଏ ଦିନ ମୋତେ ଘେରିଯାଇ ମିଠେଇ ମାଗିଥିଲେ । କାରଣ ସେଦିନ କୁଆଡେ ମୁଁ ଲାଇବ୍ରେରୀକୁ ପଶିଗଲାବେଳେ ହେମା ଗର୍ଗ ପଛକୁ ଲେଉଟି ମୋତେ ଚାହୁଁଥିଲା ।

ଆଉ ଦୁଇଦିନ ପରେ ସତକୁସତ ଆମେ ଦୁହେଁ ମୁହାଁମୁହିଁ ହୋଇଗଲୁ । ମୁହୂର୍ତ୍ତେ ଅଟକିଗଲୁ ଏବଂ ବାଟଭାଙ୍ଗି ଚାଲିଗଲୁ । ଏଇଟା ନାନା ପ୍ରକାର ଅତିରଞ୍ଜନ ସହିତ ଖୁବ୍ ଚର୍ଚ୍ଚା ହେଲା ସବୁ ମହଲରେ ।

ମୋର ମନେ ପଡୁଛି, ହେମା ହଠାତ୍ ମୋତେ ଆଉ କାହାପରି ଦିଶିଯାଉଥିଲା, କିନ୍ତୁ ମୁଁ ମନେ ମନେ ସେ ଧାରଣାକୁ ସଂଶୋଧନ କରିନେଇଥିଲି ।

ସତକୁସତ ଯଦି ରୁକୁଣା ଭାଉଜ ସେମିତି କମିଜ ପିନ୍ଧି ସେଇଠି ଛିଡା ହୋଇ ଯାଇଥା'ନ୍ତା ପ୍ରଳୟ ହୋଇଯାଇଥା'ନ୍ତା ସେ ଅଞ୍ଚଳରେ । ସମସ୍ତେ ତା' ଆଗରେ କେତେ ଦୀନହୀନ ଦିଶିଥା'ନ୍ତେ ହେମା ଗର୍ଗ ସମେତ ।

ହେମାକୁ କେହି ଅସୁନ୍ଦରୀ କହିଦେବ, ଏମିତି କାହା ଜିଭରେ ହାଡ ଅଛି ? କିନ୍ତୁ ତା'ର ସେ ରେଖିଲା ପରି ବର୍ତ୍ତୁଳ ଭ୍ରୂଲତା କାହିଁ ? ସେ ଆଖି କାହିଁ – ନୀଳ ସମୁଦ୍ର ପରି ? ହାତେ ପଦ୍ମ, ପାଦେ ପଦ୍ମ ଥିବା ସେ ଦେବୀ ରୂପ ଯା'ର କାହିଁ ?

'କି ରୂପ ଦେଖାଇଲୁ ତାରା; ନ ଦିଶେ ଚମ୍ପାବତୀ ପରା ।'

ମୁଁ ସିଭିଲ୍ ସର୍ଭିସ୍ ଦେବା ସମୟରେ ସେଇ ମର୍ସିଡିସ୍ ଗାଡି ହଷ୍ଟେଲକୁ ଆସିଥିଲା । କେହି ଜଣେ ମୋତେ ଖୋଜି ନିମନ୍ତ୍ରଣପତ୍ର ଦେଇଥିଲେ; ହେମା ଗର୍ଗର ବିଭାଘର ଭୋଜି ଖାଇଯିବା ପାଇଁ ।

ପରୀକ୍ଷା ଆଳରେ ମୁଁ ଗଲିନାହିଁ ।

ଏମିତି ପ୍ରାୟ ସବୁ ଜାଲ ଛିଣ୍ଡେଇ ମୁଁ ଫେରିଲି କିଛିଦିନ ପାଇଁ ରାଉରକେଲା । ଘରେ ଉତ୍ସବ ଲାଗିଗଲା । ଖିଆପିଆ ପିଠାପଣା । ବୋଉ ଜାଣିଥାଏ ଯେ ଛେନାରେ କଟା ସେଉ ମୋତେ ଭଲ ଲାଗେ ।

ଦି'ପହରେ ଖଣ୍ଡେ ସଅପ ଉପରେ ମୁଁ ଗଡୁଥାଏ । ବୋଉ ଗୋଟାଏ ବଡ କାଚଗିନାରେ ଛେନା, ସେଉ ଆଣି ରଖିଦେଲା । କହିଲା, "ଉଠ୍, ତୁ ଖାଇବୁ ବୋଲି ଆଜି ସକାଳେ କ୍ଷୀରଯାକ ମୁଁ ଛେନା ଛିଣ୍ଡେଇଚି ।"

ମୁଁ ପାଟିରେ ଚାମୁଚେ ଭର୍ତ୍ତି କରି ଗେଳେଇଲି । ସେଉର ଚୋପା ଜିଭରେ ଲାଗିଲା । କଟାଖଣ୍ଡଗୁଡାକ ଟିକିଏ ବଡ ବଡ ହୋଇଥିଲା । ସାମାନ୍ୟ ଖଟା ଲାଗୁଥିଲା । ଛେନାଟା ନିହାତି ଶୁଖିଲା ହୋଇଥିଲା ।

ଏତିକିବେଳେ ଅତି ସରାଗରେ ପଣତ ତଳୁ ବୋଉ କିଛି ଫଟୋ କାଢ଼ି ମୋ' ଆଗରେ ତାସ ପତ୍ର ଖୋଲିଲା ପରି ବିଛେଇଦେଲା । ଝିଅଙ୍କ ଫଟୋ । ସମସ୍ତଙ୍କ ବାପମାନେ ମୋ' ବାପାଙ୍କଠୁ ଢେର୍ ବଡଲୋକ, ଢେର୍ ବେଶୀ ଧନୀ ।

ମୁଁ ଅଶ୍ରଦ୍ଧାରେ ପାଟିରୁ ସେଉ ଚୋପା କାଢୁଥିଲି । ଫଟୋଗୁଡିକ ଗୋଟିକ ପରେ ଗୋଟିଏ ଦେଖି ଥାକ ମାରୁଥିଲି ବୋଧହୁଏ ସେହିପରି ଅଶ୍ରଦ୍ଧାରେ ।

ବୋଉ ସେ ଭିତରୁ ଉଖାରି ଦୁଇଟି ଫଟୋ କାଢ଼ିଲା ।

"ଏଇଟା ରଜାଝିଅ । ମର୍ଦ୍ଦରାଜଙ୍କ ଅମାପ ସମ୍ପତ୍ତି । ଆଉ ତାଙ୍କର କେହି ନାହିଁ – ଏଇ ଗୋଟିଏ ଝିଅ । ଦେଖିବାକୁ ସ୍ୱର୍ଗ ଅପ୍ସରା ପରି । ତୁ ନିଜେ ଗଲେ ବଳେ ଦେଖିବୁ ନାହିଁ କି ?"

"ଆଉ ଏଇଟା ମୋ' ମାମୁପୁଅ ଭାଇ ଯେ କଲିକତାରେ କୋଠା କରି କୋଉକାଳୁ ଅଛି – ତା'ର ସାନଝିଅ । ସେ ଲେଖିଛି ଝିଅକୁ ନେଇ ଆସିବ । ଏଇଠି ସବୁଠୁ ବଡ ହୋଟେଲରେ ରହିବ । ଗାଡି କରି ଆମ ସମସ୍ତିଙ୍କୁ ନବ, ସେଇଠି ଝିଅ ଦେଖେଇବାକୁ ।"

ମୋର ଅଣାୟତ୍ତରେ'ବୋଉ କଥାରେ ମୋ' ଭିତର କେମିତି ବିକ୍ଷେଇଗଲା । ବୋଉ ସତେ କିଛି ଜାଣେ ନାହିଁ । ସେଉରୁ ଚୋପା କାଢ଼ି କାଟିଜାଣେ ନାହିଁ । ଛେନାକୁ ନରମ କରି ଛିଣ୍ଡେଇ ଜାଣେ ନାହିଁ । ସେଥିରେ ଢେର୍ ଦୁଧସର ପକେଇ ଜାଣେ ନାହିଁ । ସେଥିରୁ ଚାମୁଚେ ତା' ପୁଅ ତୁଣ୍ଡରେ ସ୍ନେହରେ ଖୁଆଇ ଜାଣେ ନାହିଁ ।

'କି ଦ୍ରବ୍ୟ ଖୁଆଇଲୁ ତାରା, ନ ଲାଗେ ଚମ୍ପାବତୀ ପରା ।'

ମୁଁ କିଛି ନ କହି କାଚ ଗିନା ହାତରେ ମୁହଁଧୁଆ ପାଖକୁ ଉଠିଯାଇଥିଲି । ବୋଉ ବି କିଛି ନ କହି ସେଇଠୁ ଉଠିଯାଇଥିଲା ।

ସେଇଦିନ ସଞ୍ଜବେଳେ ଗପସପ ଚାଲିଥାଏ । ସିପି, ମୋ' ଭଉଣୀ, କାହିଁକି କେଜାଣି କହିଲା, "ବୋଉ ମ', ଆମ ପଡିଶାରେ ଯେ ରହୁଥିଲେ ରୁକୁଣା ଭାଉଜ, ସେ କ'ଣ ସେଇଠି ଥିବେ ନା ।"

ମୋ' ନିଶ୍ୱାସ ଛପ୍‌କିନା ଅଟକିଗଲା । ମୁଁ କାହା ଆଡକୁ ନ ଚାହିଁ କେବଳ ଅପେକ୍ଷା କଲି ଶୁଣିବାକୁ ।

ବାପା କହିଲେ, "ଆରେ ନାଇଁ, ଦନେଇ ରୁକୁଣାକୁ ନେଇ ଗାଁକୁ ପଳେଇଲା ।"

ମୋ କଲିଜାଟା ସରସର ପାଦଯାଏଁ ଖସିଗଲା । ଦେହ ଶୀତେଇଗଲା କେଜାଣି କାହିଁକି ।

ମୁଁ କିଛି ନ କହି ଅପେକ୍ଷା କଲି ଆଉ କ'ଣ ହେଲା ଶୁଣିବାକୁ ।

ବୋଉ କହିଲା, "କାହିଁ ସେ ଅଲକ୍ଷଣୀ କଥା ଏ ଘରେ ପଡିଛି ଶୁଣେ ?" ସିପି ଚିଡିଯାଇ ପାଟିକଲା – ମୁଁ ସେଇଠି ସିପିପାଇଁ ସୁନାମୁକୁଟ ମନାସିଥିଲି – "ତୋର ଯୋଉ କଥା – ମୋର ମନେ ଅଛି ମୁଁ ଛୋଟ ହୋଇଥାଏ । ଗୁକୁଣା ଭାଉଜ ମୋତେ କେତେ ଆଦର କରୁଥିଲା । ମୋ' ମୁଣ୍ଡ କୁଣ୍ଡେଇ ଦେଉଥିଲା । କେତେ ଭଲ ପାଉଥିଲା । ଆଉ କେତେ ସୁନ୍ଦର ସେ ଗୁକୁଣା ଭାଉଜ ।"

"ହଅଅ, ସୁନ୍ଦର ହେଲେ କୋଉ ଚୁଲିକି ଯୋଗ୍ୟ । ସେଇଟା ତ ସେମିତି ବାନ୍ଝ ମଡଛିଟାଏ ହେଇ ମରିବ ।"

"ତୁ ତୁନି ପଡୁନୁ । ବାପା ଏବେ ଯାଇଥିଲେ, ସେ ସବୁ ବୁଝି ଆସିଥିଲେ । ସେ କହିବେ ।"

କେଜାଣି କାହିଁକି ବାପା ମୋ' ଆଡେ ଚାହିଁଲେ, ବୋଉ ଆଡେ ଚାହିଁଲେ ଆଉ ତୁନିପଡି ବସିରହିଲେ ।

ସିପି ଜିଦ୍ ଲଗେଇଲା, "କହୁନା ବାପା, ସେମାନେ କେମିତି ଅଛନ୍ତି ?"

କିଛି ସମୟ ସବୁ ଚୁପ୍‌ଚାପ୍ ହୋଇଗଲେ । ବାପା ଦବିଲା ପରି ସ୍ୱରରେ କହିଲେ, "ଆରେ ମୁଁ ଚାହୁଁ ନ ଥିଲି କହିବା ପାଇଁ, ଭାରି ଦୁଃଖ ଲାଗିବ ଶୁଣିଲେ ।"

ଉଦ୍‌ବିଗ୍ନ ହୋଇ ସିପି କହିଲା, "କ'ଣ ହେଲା ସେମାନଙ୍କର, ଗୁକୁଣା ଭାଉଜର ?"

ବୋଉ ବି କୌତୂହଳ ରଖିପାରିଲା ନାହିଁ, "କହୁନା, କ'ଣ ହେଲା, ଏତେ ଭଙ୍ଗୀ କାହିଁକି କାଢୁଚ ?"

ବାପା ତଳକୁ ଚାହିଁ ମନକୁ ମନ କହିଲା ପରି ଶୁଣେଇଲା, "ଏମିତି ବିପତ୍ତି କାହାକୁ ନ ପଡୁ । ଏସବୁ ଏତେବର୍ଷ ହେଲା କେମିତି ଆମ ପାଖରେ ପହଞ୍ଚିଲା ନାହିଁ ସେଇକଥା ମୁଁ ଭାବୁଚି । ଆମେ ଗାଁକୁ ତ ଯାଇନାହୁଁ ସେଇକାଳୁ । ଆଉ ସେମାନଙ୍କ ମଫସଲି ଗାଁ କାହିଁ କେତେଦୂର ।"

ଏଥର ମୁଁ ଗଲାବେଳକୁ ଆମ ଘରେ ଯେ ଭଡାରେ ଦାଣ୍ଡ ବଖରାରେ ଦୋକାନ ଦେଇଛି, ସେଇ କହୁଥିଲା – ପଡିଶା ଘରଟା ବିକ୍ରି ହେଇଯାଇଛି । ଆମେ ଚାହିଁଲେ କିଣିପାରିବା ।

ମୁଁ ପଚାରିବାରୁ କଥା ଖିଅ ଫିଟିଲା ।

ଦନେଇ ତା' ମାଈପକୁ ନେଇ ଗାଁକୁ ଯିବାର ବର୍ଷେ ନ ପୂରୁଣୁ ଗାଁରେ ବାଡି ପଡିଲା । ଦନେଇ ଦାଶ ଗୋଟାଏ ଦିନ ଭିତରେ ଉଠିଗଲା ।

ମୁଁ ଚୌକି ଉପରେ କାଠ ହେଇ ଯାଇଥିଲି । ଉଚ୍ଛଣ୍ଣାରେ ଚୌକି ଦଣ୍ଡାଟାକୁ ଚାପି ଧରିଥିଲି । ହାତ ନେଳି ପଡିଯାଇଥିଲା ।

ବାପା ଦମ୍ ନେଇ ବାକିଯାକ କହିଦେଲେ –

"ଗାଁରେ ଦନେଇର ଶୁଦ୍ଧଶ୍ରାଦ୍ଧ ପାଇଁ ଗାଁବାଲା ମିଶି ଯାହା ଟିକେ ତିହବାଡି ଥିଲା ତାକୁ ଚଲୁ କରିଦେଲେ । ଗୁକୁଣା ପଳେଇ ଆସିଲା ଟାଉନ୍‌କୁ, ଆମ ଘର ପଡିଶାକୁ, ସେଇଠି ସିଲେଇପତ୍ର

କରି ଚଳିବାକୁ ବସିଲା । ଦନେିର ହାତ ବାରେସି, ବଟାଳି, କରତ ଆଦି ସରଞ୍ଜାମ ବିକ୍ରି କରିଦେଲା । କାଠବାକ୍ସ, ଚୌକି, ଆସମାରି ବିକିଦେଲା । ହେଲେ କେତେଦିନ ଚଳିବ ଏମିତି । ଆମ ସାଇରେ ପାଣୁ ମିଶ୍ର ଗୋଟେ କିଏ ରହୁଥିଲା ।"

ମୋ' ଦାନ୍ତ ପାଟି ଜାବି ନିଃଶ୍ୱାସ ଚଳିଲା ନାହିଁ । ମୁଁ ଚିତ୍କାର କରିପକେଇଥା'ନ୍ତି – କେଜାଣି କେମିତି ସ୍ଥିର ରହିଗଲି । ମୋ' ଚେହେରାରେ ପରିବର୍ତ୍ତନ ବୋଧେ ବାପାଙ୍କ ଆଖିରେ ପଡିଗଲା ।

"ଆରେ ଗୋରା ! ତୁ ଏମିତି କାହିଁକି ଛାନିଆ ହୋଇଯାଉଚୁ ?"

ବାପାଙ୍କ ଢଙ୍ଗରେ କିଛି ଥଙ୍ଗେଇଲା ପରି ସଂକୋଚ ଜଣାପଡୁଥିଲା, କିନ୍ତୁ ସେ ଯାହା କହିଲେ ତା'ର ରୂପ ପ୍ରାୟ ଏହିପରି –

"ଏ ଯେଉଁ ପାଣୁ ମିଶ୍ର" –

ବୋଉ ଉପରେ ପଡି କଥା ହାଣିପକେଇଲା "ହଁ ବା ସେ ଖଲବା ହାଣମଙ୍ଗଳଟାକୁ କିଏ ନ ଜାଣିଛି ? ଉତ୍ପାତିଆ କଟାସ ପରି ସମସ୍ତଙ୍କୁ ଅନେଇଥିବ । ଥୁ କିନା ଛେପ ନଣ୍ଡେ ପକେଇଦେଲେ ଆଖି ଫେରେଇନେବ । ସେ ରୁକୁଣୀଟାକୁ ଦେଖି କ'ଣ ଛାଡିଥିବ ?"

"ଆରେ ଶୁଣ, ସେଇ କଥା ତ ମୁଁ କହୁଚି । ରୁକୁଣୀ କୁଆଡେ ତା' ଶାଳୀ ଲେଖା ହବ । ସେ ସେଠିକି ଯିବା ଆସିବା କଲା । ଲୋକେ ଟୁପୁରୁଟାପୁର ହେଲେ ।"

ଚପା ଗଳା ସଫା କରି କଥା ଛିଣ୍ଡେଇଦେଲେ – "କିଛିଦିନ ଅନ୍ତେ ରୁକୁଣୀର ପୁଅଟିଏ ହେଲା ।"

"ଇସ୍ କି ପାପ ହେଲା ଏ କଳିକାଳକୁ" କହିଲା ବୋଉ । ସେଇଠୁ ଉଠି ଯାଉ ଯାଉ କହିଲା, "ସେଇଟାକୁ ଅହିଅରେ ପିଲା ହେଲେ ନାହିଁ, କ'ଣନା ରାଣ୍ଡ ହୋଇ ବେଧ ପକାଇଲା – ଇସ୍ ।"

ବାପା ବି ଉଠିଗଲେ । ସିପି ଡଗଡଗ ହୋଇ ପଳେଇଲା, କୌଣସି କଥାକୁ ଗୁରୁତ୍ୱ ନ ଦେଇ । ମୁଁ ସେଇଠି କାଠ ହେଇଗଲି । ମୋ' ଆଖିରୁ ଧାରଧାର ହେଇ ପାଣି ନିଗିଡିଗଲା । ମୁଁ ବାଥ୍‌ରୁମ୍‌ରେ ଯାଇ ଗୁଡାଏ କାନ୍ଦିଲି । ପାଣୁଆର ଖାବଳାରୁ ରୁକୁମା ଭାଉଜ ଉବୁରିପାରିଲା ନାହିଁ । ମୁଁ ମୋ' ନିଜ ପାପୁଲିରେ ଦୁଇଚାରି ବିଧା କଷିକରି ବସେଇଲି । ଛାଟିପିଟି ହେଲି । ମୋ' ନିଜ ଗାଲକୁ ରାମ୍ପି ଆଣିଲି । ଗଡିଲା ଲୁହଗୁଡା ଦି'ଢୋକ ପିଇଗଲି, ଅସହାୟ ।

କିଛି ସମୟ କଲବଲ ହେଲାପରେ ମୁହଁ କାନ ଧୋଇ ବିତରୁ ବାହାରିଲି । ଆର ବଖରାରେ ବାପା କହିଚାଲିଥିଲେ – "ସେ ପୁଅଟାକୁ ପାଞ୍ଚବର୍ଷ ପୂରିଲାବେଳକୁ ରୁକୁଣୀର କ'ଣ ହେଲା କେଜାଣି ଠୋ'କିନା ମରିଗଲା । ଶୋଇବା ଶେଯରୁ ଆଉ ଉଠିଲା ନାହିଁ ।"

ମତେ ଚଉଁକିନା କ'ଣଟାଏ ଲାଗିଲା । ସତେବା ଅଙ୍ଗଟାଏ ଛିଣ୍ଡିପଡିଲା ଖଣ୍ଡାଚେଟରେ ।

କିନ୍ତୁ ହଠାତ୍ ଉଶ୍ୱାସ ଲାଗିଲା । ଯାଃ, ରୁକୁଣୀ ଭାଉଜ କଷଣରୁ ତ ମୁକୁଳିଗଲା । ତାମରାକାଉର ଥଣ୍ଟରୁ ଖଣ୍ଡିଆ ଅମୃତ ଫଳଟା ତ ଖସିପଡିଲା ଅତଳାନ୍ତ ଗହୀର ବାମ୍ପି ଭିତରକୁ ।

ଶଳା ପାଣୁଆ ଅଟମା ଖାଇଥିବ । ଓ ତା' ଖାବଳାରୁ ତ ଗୁକୁଣା ଭାଉଜ ଶେଷଥର ପାଇଁ ଖସିଗଲା ।

ବାପା କହୁଥିଲେ, "ସେ ଟୋକାଟା କୁଆଡେ ଅବିକଳ ପାଣୁଆ ପରି ଦିଶୁଚି ଖାଲି ବର୍ଣ୍ଣରେ ଗୋରା – ପାଣୁଆ ତା'ର ମୂରବି ହେଇଚି । ତା'ର ଭରଣପୋଷଣ ପାଇଁ ଘରଖଣ୍ଡ ବିକିଦବାକୁ ବସିଚି । ହାତରେ ପଇସା ପଡିଗଲେ ସେ ଟୋକାଟାକୁ ବାଡେଇ ତଡିଦେବ ।"

ମୁଁ ନିଜକୁ ନିଜେ ବିସ୍ମିତ କରି ପାଟିକରି ପକେଇଲି, "ନାଁ, ତା' କେମିତି ହେବ ? ସେ ଟୋକାକୁ ଅଠରବର୍ଷ ହେବା ପର୍ଯ୍ୟନ୍ତ କେହି ସେ ସମ୍ପତ୍ତିରେ ହାତ ଦେଇପାରିବେ ନାହିଁ ।"

ବାପା ମୋତେ ଚକିତ ହୋଇ ଚାହିଁଲେ । ବୋଉ ଅନେଇଲା ଛାନିଆ ହେଲା ପରି । ଆଉ ବଖରାରୁ ସିପି ଦୌଡି ଆସିଲା ମୋ' ପାଟି ଶୁଣି । ମୁଁ ସଂଯତ ହେଇ କହିଲି, "ସେ ପିଲାଟାର କ'ଣ ଦୋଷ, ବାପା, ତାକୁ କାହିଁକି ବାଡେଇ ତଡିଦେବ ଆଉ ଆମେ ଦେଖୁଥିବା ।"

"ଆମେ ଆଉ କ'ଣ ସେ ବେଧପିଲାଟାକୁ ମୁଣ୍ଡେଇ ବୁଲିବା ?"

ବୋଉର ସେ ରାଉ ରାଉ ହାଣିଲା ପରି କଥା ଶୁଣି ମୋ' ଦାନ୍ତ ପାଟି କଡମଡ ଡାକିଲା ।

ମୁଁ କ'ଣ କହିପକେଇଥା'ନ୍ତି ମୁଁ ଜାଣେନା, ରକ୍ଷା ହୋଇଗଲା । ମୁଁ ସେଇଠୁ ଦାଣ୍ଡପିଣ୍ଡାକୁ ପଳେଇଗଲି । ମୋ' ଆଗରେ ଅଜସ୍ର ଧୂଳି ଉଡେଇ ଗୋଟାଏ ଖାଲି ଟ୍ରକ୍ ଧଡଧଡ ପିଟି ଚାଲିଗଲା ।

X X X X

ଏ ଘଟଣାର ବାରବର୍ଷ ପରେ ଅତୀତ ପୁଣି ମୋ' ଆଗରେ ଆସି ଠିଆହୋଇଯାଇଚି । ମୋତେ ସିଭିଲ ସର୍ଭିସ୍‌ରେ ଉତ୍ତରପ୍ରଦେଶ କୋଟା ମିଳିଛି ସେବଠୁ । ଦୈବାତ୍ ମୋ' ସାଙ୍ଗେ ଟ୍ରେନିଂ ନେବାକୁ ସୀମା ଗର୍ଗ ଆସିଛି – ହେମାର ଭଉଣୀ । ହେମାର ପାଠପଢା ଟିକିଏ ଦୁର୍ବଳ, ସେଥିପାଇଁ ସୀମା ତାକୁ ଟପିଯାଇଛି ।

ହଠାତ୍ ଆମେ ସ୍ଥିର କରିଛୁ ବିଭା ହବା ପାଇଁ । ହେମା ନିଜେ ସେଥିରେ ସାହାଯ୍ୟ କରିଛି – ତାଙ୍କ ପରିବାରର ଅନ୍ୟମାନଙ୍କୁ ମନେଇବାରେ ।

ଆମ ଘରେ ସିପି ଖୁସିରେ ଡେଇଁଚି । ବାପା ବିଶେଷ ଖୁସି ନ ହେଲେ ବି ରାଜି ହୋଇଯାଇଛନ୍ତି ।

ବୋଉ ଗାଡୁରୁ ଗାଡୁରୁ ହେଇଛି । କନ୍ଦାକଟା କରିଛି । ଶେଷକୁ ଫଟୋ ଦେଖି ମାନିଯାଇଛି ।

ସୀମା ହେମା ଭଳି ତୋଫା ଗୋରା ନୁହେଁ । ହେମା ତ ସାଇବାଣୀ ଭଳି । କିନ୍ତୁ ସୀମାର ବର୍ଣ୍ଣକୁ ବି ଗୋରା କୁହାଯାଏ । ତା' ଚେହେରାର ଗଢଣ ଆହୁରି ସୁନ୍ଦର, ଭ୍ରୂଲତା ରେଖିଲା ପରି । ଆଖି ଈଷତ୍ ନୀଳ । ହସିଲେ ଅଦ୍ଭୁତ ।

ସୀମା ଅତ୍ୟନ୍ତ ବୁଦ୍ଧିମତୀ । ପରୀକ୍ଷାରେ ତା' ନମ୍ବର ମୋଠୁଁ ଅଧିକ ।

ସବୁଠୁ ବଡକଥା ହେଲା ସେ ସ୍ନେହକରି ଜାଣେ । ସେ ଆଉଁସିଦେଲେ ଶୁଖିଲା ଗଛ କଅଁଳିଯିବ । ଚମତ୍କାର ଫ୍ରୁଟ୍ ସାଲାଡ୍ କରି ଜାଣେ । ଖୁବ୍ କ୍ରିମ୍ ଆଉ ଦହି ପକାଏ ।

ତାକୁ ଚାହିଁରହିଲେ ବେଳେବେଳେ ମୁଁ ଉଦାସ ହୋଇଯାଏ । ମୋ' ନିଷ୍କଳଙ୍କ ଆଖିରୁ

ଦୃଷ୍ଟି ଲିଭିଯାଏ । ସେ ମୋ' ଗାଲକୁ ଆସ୍ତେ ଆଉଁସିଦିଏ । ଦେହସାରା ଶୀତକଣ୍ଟା ମାରିଯାଏ । ମୋ' ସମ୍ବିତ୍ ଫେରିଆସେ ।

"କହାଁ ଖୋ ଜାତେ ହୋ ?" ସେ ଅଳ୍ପହସି ପ୍ରଶ୍ନ କରେ । ମୁଁ ବାଆଁରେଇ ଦିଏ । ଆମର ପୁଅଟିଏ, ବାପା ନାଁ ଦେଇଛନ୍ତି ଅଭିଳାଷ । ତାକୁ ଏଇ ଫେବୃୟାରୀ ମାସକୁ ଚାରି ପୂରିଗଲା ।

କାଲି ସିପିର ଚିଠି ଆସିଥିଲା – ଅଷ୍ଟ୍ରେଲିଆରୁ । ତା' ସ୍ୱାମୀ ରାହୁଲ ଗୋସ୍ୱାମୀ ଗୋଟିଏ ମଲ୍‌ଟି ନ୍ୟାସ୍‌ନାଲ୍‌ରେ କାମ କରେ ।

ସିପି ଅନେକ କଥା ଭିତରେ କେଜାଣି କାହିଁକି ଆମ ପୁରୁଣାଘର କଥା ଲେଖିଛି । ଉଖାରି ଦେଇଛି ପାଉଁଶଗଦା ଭିତରେ ନିଆଁ ଝୁଲଟିକୁ ।

କୂଅ ଭିତରେ ପଡିଥିବା ଚନ୍ଦ୍ରବିମ୍ବ ଚହଲିଯାଇଛି ।

ବାପା ଚିଠି ଦେଇଛନ୍ତି – ବୋଉର ଦେହପା' ଭଲ ରହୁ ନାହିଁ ତାକୁ ଦିଲ୍ଲୀ ଆଣି ପରୀକ୍ଷା କରିବା କଥା ଲେଖିଛନ୍ତି । ଅନେକ ସମୟରେ ସେ ଘରେ ଏକୁଟିଆ ବସି କାନ୍ଦୁଛି ବୋଲି ଲେଖିଛନ୍ତି । ମୁଁ ଭାବୁଚି ତାକୁ ଆଣି ମୋ' ପାଖରେ ରଖିବି କିଛିଦିନ ।

ଆଜି ସକାଳେ ଅଚାନକ ମୋ' ଘର ଆଗରେ ଖଣ୍ଡେ ଲମ୍ବାଳିଆ ବେଗ୍ କାନ୍ଧେଇ ଟୋକାଟିଏ ଠିଆହେଲା । ସୀମା ଆଉ ମୁଁ ଚା ଖାଉଥିଲୁ ବାଟ ବଖରାରେ । ସୀମା ଶନିବାର ରବିବାର ଦେଖି ତା' ଜିଲ୍ଲାରୁ ମୋ' ପାଖକୁ ଚାଲିଆସେ ଅଭିଳାଷକୁ ନେଇ । ଆମକୁ ଭରପୁର ଲାଗୁଥିଲା । ଆମେ ଆଉ କାହାକୁ ସେ ରବିବାର ସକାଳେ ଚାହୁଁ ନ ଥିଲୁ ।

ସନ୍ତ୍ରୀ ସେ ଟୋକାର ନାଁ ଗାଁ ଚିପି ଆଣୁଥାଏ । ମୁଁ ଚାହିଁ ରହିଥାଏ ସେ ନହକା ଲମ୍ବା ପିଲାଟାକୁ । ସକାଳ ଖରାରେ ସେତେ ଦୂରରୁ ସେ ଦପ୍‌ଦପ୍ ଗୋରା ଦିଶୁଥିଲା ।... "ସାବ୍ ୟେ ଚିଠି ଆପ୍‌କେ ନାମ ପେ ।" – ସଲାମ୍ ମାରି ସନ୍ତ୍ରୀ ବଢେଇଦେଲା ।

ଲୋଟକୋଟ ଘରୋଇ ଚିଠି । ଅଳ୍ପ କିଛି ଲେଖା ହେଇଛି, ତଳେ ନାଁ ଲେଖା ହେଇଚି ବନମାଳୀ ତ୍ରିପାଠୀ । ମୋ' ଭୂରୁ କୁଞ୍ଚେଇଗଲା ।

ମୁଁ ଆଶ୍ଚର୍ଯ୍ୟ ହୋଇ ଭାବିଲି ଏ ବନମାଳୀ ପଣ୍ଡିତ ନୁହଁନ୍ତି ତ, ମୋ' ଆଦ୍ୟ ଗୁରୁ ? ତାଙ୍କଠୁ ଅକ୍ଷର ଶିଖିଛି । ସକାଳେ ପ୍ରାର୍ଥନା ଶିଖିଛି । ଆଚରଣ, ଉଚ୍ଚାରଣ ଶିଖିଛି ।

ହଁ, ସେଇ ମୋ' ସାର୍ । ଲେଖିଛନ୍ତି ।

କଲ୍ୟାଣୀୟ ଗୋରା, ଆୟୁଷ୍ମାନ୍ ହୁଅ ।

ତୋର ଉନ୍ନତି କଥା ଶୁଣି ଭାରି ଖୁସିହେଲି । ମୁଁ ତୋତେ ପିଲାବେଳୁ ଜାଣିଥିଲି ତୁ ବଡଲୋକ ହେବୁ ବୋଲି । ଏ ପିଲାଟି ବାପ-ମା' ଛେଉଣ୍ଡ, ଭାରି ମେଧାବୀ । ତାକୁ ହଷ୍ଟେଲରେ ରଖି କିଛିଦିନ ଚଳେଇଦେଲି । ସେ ଟିଉସନ କରି ଆଉ କିଛିଦିନ ଚଳିଗଲା । ସେ ପ୍ରଥମ ଶ୍ରେଣୀରେ ପାସ୍ କରିଛି ଯୁକ୍ତଦୁଇ ।

ତା'ର ଯେ ମୁରବି ସେ ତାକୁ ଛଡେଇ ନେବାକୁ ଚାହୁଁଛି । ଆସନ୍ତା ବର୍ଷ ଏ ପିଲାକୁ ଅଠରବର୍ଷ

ହୋଇଗଲେ ତା'ର ପୈତୃକ ସମ୍ପତ୍ତି ଟିକକ ବିକିଦେଇ ପଇସା ନେଇଯିବାକୁ ସେ ଚାହେଁ।

ଏ ପିଲାଟାର ଭବିଷ୍ୟତ ଭାରି ଉଜ୍ଜ୍ୱଳ। ତୁ ତାକୁ ଟିକିଏ ସାହାଯ୍ୟ କଲେ ସେ ଉଠିଯିବ। ତାକୁ ମୁଁ ଲୁଚେଇ କରି ପଠେଇଦେଇଛି। ମୋର ତୋ' ଉପରେ ଭରସା ଥିବାରୁ ଏପରି କଲି। ସାହାଯ୍ୟ କରିବୁ। ଈଶ୍ୱର ତୋର ମଙ୍ଗଳ କରିବେ। ତା' ମା' ତାକୁ ନାଁ ଦେଇଥିଲା ଦୁଃଖୀଧନ। ମୁଁ ବଦଳେଇ ଦେଲି। ତା' ନା ସତ୍ୟକାମ।

ତାକୁ ଆଉ ସବୁ କଥା ପଚାରି ବୁଝିନେବୁ।

ଠାକୁରେ ତୋତେ ଭଲରେ ରଖିଥା'ନ୍ତୁ।

। ଇତି ।

ତୋର ଶୁଭାକାଂକ୍ଷୀ ସାର୍

ବନମାଳୀ ତ୍ରିପାଠୀ

କେଜାଣି କାହିଁକି ମୁଁ ସେ ଚିଠିଟାକୁ ନେଇ ମୁଣ୍ଡରେ ଲଗେଇଲି। ଅଭିଲାଷ ତା' ମା' ପାଖରୁ କହିଲା, "ପିତାଜୀ କ୍ୟା ପଣ୍ଡିଚେରୀସେ ବ୍ଲେଶିଂସ୍ ଆୟା ହେ ?"

ମୁଁ ଓଲଟିପଡି ତା' ଗାଲ ଛୁଇଁଦେଲି, "ଐସେ ହି କୁଛ୍ ସମଝ ଲୋ।"

ସୀମା ପଚାରିଲା, "କିସ୍‌କି ଚିଠି ହୈ। ଓ୍ୱହ ଲଡକା କୌନ୍ ହୈ ?"

"ଚିଠି ତୋ' ମେରେ ରିଭିୟର୍ଡ ଟିଚର୍‌ସେ ଆଇ ହେ, ଔର୍ ଓ୍ୱହ ଲଡକେ କେ ବାରେମେ ଉସେ ହି ପୁଛ୍‌ନା ପଡେଗା। ମେଁ ବାହାର ବାରନ୍ଦେ ମେ ଉସ୍‌ସେ ବାତ୍ କର୍‌ଲେତା ହୁଁ।"

ସନ୍ତ୍ରୀକୁ କହିଲି, "ଉସେ ଅନ୍ଦର ଭେଜ୍ ଦୋ।"

ସେ ଟୋକା ପାଖେଇ ଆସୁଥାଏ। ତା' ଚାଲି ଆଉ ଚେହେରା ମୋତେ ଚିହ୍ନା ଚିହ୍ନା ଲାଗୁଥାଏ।

ସେ ମୋ' ଆଗରେ ଠିଆହୋଇଗଲା। ଗୋଟାଏ ମୁହୂର୍ତ୍ତରେ ନିଆଁହୁଳା ପରି ଠିଆ ହୋଇଗଲା ପାଣୁ ମିଶ୍ର।

ଦାନ୍ତକୁ ଦାନ୍ତ ଚାପି ମୁଁ ତଳକୁ ଚାହିଁରହିଲି। ବହୁ କଷ୍ଟରେ ସମ୍ଭାଳିଲି ଭୂକମ୍ପ ଆଉ ଅଗ୍ନ୍ୟୁତ୍ପାତକୁ। ନ ହେଲେ ହୁଏତ ମୁଁ ତାକୁ ଧକ୍କା ମାରି ରାସ୍ତାକୁ ତଡିଦେଇଥା'ନ୍ତି।

ମୁଁ ସେହିଭଳି କେବେହେଲେ କିଛି କରିପାରେ ନାହିଁ। କେବଳ ଗୋଟାଏ ଥର ତା'ର ବ୍ୟତିକ୍ରମ ହେଇଥିଲେ। ଯେଉଁଦିନ ମୁଁ କବାଟରୁ ଗେଡା କାଢି ପାଣୁ ମିଶ୍ର ପିଠିରେ ପିଟିଦେଇଥିଲି। ନ ହେଲେ ଆଉ କେବେ ସେମିତି ହେଇ ନାହିଁ। ସେଥିପାଇଁ ବନମାଳୀ ପଣ୍ଡିତଙ୍କ ପ୍ରଭାବ ଦାୟୀ।

ମୁଁ ଉପରକୁ ଚାହିଁଲି। ସେ ପିଲାଟି ମୋତେ ଦେଖି ସାମାନ୍ୟ ହସିଦେଲା। ସେ ଦାନ୍ତ, ଓଠ, ସେ ହସ, ପୃଥିବୀରେ ଆଉ କେଉଁଠି ନାହିଁ। ମୋ' ଭିତରେ ନିଆଁଧୂଆଁର ଅରଣ୍ୟ ଉପରେ ହିମବର୍ଷା ଓହ୍ଲେଇ ଆସିଲା ମୁହୂର୍ତ୍ତକରେ। ମୋତେ ତା'ର ପରିଚୟ ପଚାରିବା ଆବଶ୍ୟକ ହେଲା ନାହିଁ।

ତା' ଗଜୁରା ନିଶ ତଳେ ତା'ର ସେ ଅପୂର୍ବ ହସକୁ ଚାହିଁ ମୁଁ ତା' ଗାଲ ଆଉଁସିଦେଲି । ମୁଣ୍ଡରେ ହାତ ରଖି କହିଲି, "ମୁଁ ତତେ ଜାଣେ, ତୋ' ପାଠପଢା କଥା ସାର୍ ଲେଖିଛନ୍ତି । ଦେଖିବା, ସେଥିପାଇଁ ବନ୍ଦୋବସ୍ତ କରିବା ।" ଘରେ କାମ କରୁଥିବା ପିଲାଟିକୁ ଡାକି କହିଲି, "ଇନ୍‌କୋ ଗେଷ୍ଟରୁମ୍ ଲେ ଯାଓ ।"

ମୁଁ ତା' ଈଷତ୍ ନୀଳ ଆଖିକୁ ଚାହିଁ ରହିଥିବାରୁ ସେ ସଂକୋଚରେ ତଳକୁ ଆଖି କରିନେଲା ।

ଏଇ ତା'ହେଲେ 'ଦୁଃଖୀଧନ' । ମୋ' ଆଖିରେ ଡବଡବ ଲୁହ ଭରିଗଲା । ସୀମା ଆସି ଠିଆହୋଇଗଲା ଅଭିଳାଷକୁ ନେଇ । ସେ ବି ଚାହିଁଲା । ତାକୁ ଚାହିଁ ସତ୍ୟକାମ ଅଳ୍ପ ହସିଦେଲା । ସୀମା ମୁଗ୍ଧ ହୋଇ ଠିଆ ରହିବାର ମୁଁ ଲକ୍ଷ୍ୟ କଲି ।

ସେ ତା' ବେଗ୍‌ଟିକୁ ହାତରେ ଓହଳାଇ ଚାଲିଗଲା ଗେଷ୍ଟରୁମ୍‌କୁ । ସୀମା ତା' ଆଡୁ ଦୃଷ୍ଟି ଫେରାଇଆଣି ମୋତେ ଚାହିଁଲା ।

"ବଡା ପ୍ୟାରା ଲଡ୍‌କା ହେ । କୌନ୍ ହେ ୟହ ।"

"ୟହ ସତ୍ୟକାମ ହେ । ଇସ୍‌କୋ ପଢାଇ କେ ଲିଏ ସର୍‌ନେ ଲିଖା ହେ । ସର୍ ତୋ' ହମାରେ ଗୁରୁ ହେଁ । ଲିଖା ହେ କି ବହୁତ ହି ଟାଲେଣ୍ଟେଡ୍ ହେ ।"

"ତୋ ଫିର୍ ଠିକ୍ ହେ । ଓହ କ୍ୟା ତୁମାରେ କୋନ୍ ରିସ୍ତେଦାର୍ ହେ ?"

"ନେହିଁ ଭି, ଔର୍ ହେ ଭି । ସର୍ ହମେ ଅପନା ବେଟା ସମଝତେଥେ ଔର୍ ଇସେ ଭି ।"

ସୀମା ହସି ହସି କହିଲେ, "ତବ୍ ତୋ' ତୁମ୍ ଦୋନୋ ଭାଇ ଭାଇ ହୋ ଗୟେ ।"

"ଐସେ ତୋ' ୟେ ମେରି ଗୁରୁଣୀ ଭାଉଜ, ୟାନି ଭାବୀ କା ଲଡକା ହେ । ଭାବୀ ତୋ' ଅବ ନେହି ରହି । ଇସ୍‌କା କୋଇ ନହିଁ ହେ । ଅରଫାନ୍ ହେ ବେଚାରା । ସର୍‌ନେ ଇସ୍‌କୋ ସମ୍ଭାଲା ଥା । ଅବ୍ ମେରେ ପାଶ୍ ଭେଜ୍‌ଦିଏ ହେଁ ।"

"ତବ୍ ତୋ' ୟେ ଭତିଜା ଲଗେଗା । ଭତିଜା ତୋ' ବେଟେକା ସମାନ ହୋତା ହେ । ବେଟା ହିଁ ସମଝଲୋ କ୍ୟା ହରଜା ହେ ?"

ସୀମା ଆଖିରେ ସାମାନ୍ୟ ପରିହାସ ଆଉ ଦୁଷ୍ଟାମି ଝଲମଲ୍ କରୁଥିଲା ।

ମୁଁ ଅଭିଳାଷର ମୁଣ୍ଡ ଆଉଁସିଦେଇ କହିଲି – "ହାଁ କୋଇ ହରଜା ନାହିଁ । ସତ୍ୟକାମ କୋ ବେଟା ହିଁ ମାନ ଲେତେ ହେଁ ।"

ମୋ' ସ୍ୱରରେ ଗଭୀର, ଉଦାସ ଦୀର୍ଘଶ୍ୱାସଟିଏ ଲାଗିରହିଥିଲା ବୋଲି ସୀମା ଜାଣିପାରିଲା କି ? କେଜାଣି ।



# ମାର୍ବଲ ପ୍ୟାଲେସ

ଏମିତି ହୁ'କିନା ସେ ଗୋଟାଏ ନୂଆଘର କିଣିପକେଇବେ ବୋଲି କେହି ଭାବି ନ ଥିଲେ, କାରଣ ଯେ ଯେଉଁ ଘରେ ରହିଆସିଛନ୍ତି ସେଇଟା ଏବେ ବି ଲୋକଙ୍କ ଆଖିରେ ଦିଗବାରେଣି ଭଳି ଦେଖାଯାଏ । ବିରାଟ ତିନିତାଲା କୋଠା । ସବା ଉପର ମହଲା ସେ ନିଜେ ତୋଳିଛନ୍ତି । ପୁରୁଣା ଗଛରେ ନୂଆ ପତ୍ର କଅଁଳିଲା ଭଳି ତୃତୀୟ ମହଲାଟି ଯେତିକି ସୁନ୍ଦର, ସେତିକି ସ୍ୱାଭାବିକ–ଥାକଥାକ ଭାଡି ଟେକିଲା ପରି ନୁହେଁ । ଆଗଧାଡି ବଖରା ଉପରେ ସେ କେବଳ ଖୋଲାଛାତ ଛାଡିଦେଇଛନ୍ତି । ପଛକୁ ଘୁଞ୍ଚିଲା ପରି ନୂଆ ମହଲାଟି ମଥାରେ ମୁକୁଟ ପରି ସୁନ୍ଦର ଦିଶେ ।

କିନ୍ତୁ କ'ଣ ହେଲା ଏମିତି ? ସେଦିନ ସେ ଦି'ପହରେ ଦିଲ୍ଲୀରୁ ଫେରି ପରଦା ଟେକି ଘରେ ପଶିଲା ମାତ୍ରେ ଚାରିଆଡେ କ'ଣ ଗୋଟାଏ ନୂଆ ଗନ୍ଧ ବାରିଲା ପରି ଚାହିଁଗଲେ । ଏ ବଖରା ସେ ବଖରା ପଶି ବାହାରିଆସିଲେ । ବିଛଣା, ପରଦା, କାନୁବାଡ ଏମିତି କି ଗାଲିଚା ଯାଏଁ ନାକ ଲଗେଇ ଶୁଙ୍ଘିଗଲେ । ସେ ଖୁବ୍ ବିରକ୍ତ ହେଲା ଭଳି ବାସ୍ନାଟାକୁ ପବନରେ ଖୋଜିବୁଲୁଥିଲେ ।

କେହି ଜଣେ ସାହସ କରି ପଚାରିଲା, "କ'ଣ ହେଇଚି ?"

ନରସିଂହ ସାମନ୍ତ ଓରଫ ନୁରି ସାମନ୍ତ ଲେଉଟି ସମସ୍ତଙ୍କ ମୁହଁକୁ ଚାହିଁଗଲେ । ତାଙ୍କର ସେ ବଡ ବଡ ଡହଳୁଥିବା ଆଖିକୁ କେହି ସିଧା ସଳଖ ଚାହିଁପାରନ୍ତି ନାହିଁ ।

"କ'ଣ ହେଇଚି ତମେ ସବୁ କହିବ ନା ମୁଁ କହିବି ?"

ତା'ପରେ ହାତୀ ଶୁଣ୍ଢ ଟେକି ପବନରେ ବର୍ଷା ବାରିଲା ପରି ବିଭିନ୍ନ ଦିଗକୁ ନାକ ଟେକି ଶୁଙ୍ଘିଲେ ।

"ଏ ଗନ୍ଧଟା କୋଉଠୁ ଆସୁଛି ?"

ପତ୍ନୀ ହେମା ଚମକିଲା ପରି ହେଲେ । ବୋଧହୁଏ ପଣସଟା ଯ୍ୟା ଭିତରେ ପାଚିଯାଇଛି । ପଣସ ଦେଖିଲେ ସାମନ୍ତ ଚିଡିଯାଆନ୍ତି । ପୁଅ କିଶୋର ଓକିଲାତି କଲାଣି । ବାହାହୋଇ ନାହିଁ । ତା' ବଖରାରେ ସେ ଖୁବ୍ ଜୋର୍ ଠିପି ମାରି କିଛି ବିଦେଶୀ ମାଲ୍ ଲୁଚେଇ ରିଖିଛି । ସେଇ ଗନ୍ଧ

ପବନରେ ପହଁରି ଆସୁ ନାହିଁ ତ !

ଝିଅ ଲିଲି ତା' ବଖରାରେ ବହିପତ୍ର ପଛରେ ଫରାସୀ ପରଫ୍ୟୁମ୍ ରଖିଥାଏ । କିଛି ନୂଆ କଥା ନୁହେଁ । ବାପା ସେ ବାସ୍ନା ଖୁବ୍ ଭଲ ପାଆନ୍ତି । ବେଳେବେଳେ ନିଜ ଟାଇ ଉପରେ ଟୋପାଏ ଲଗେଇବାରେ ସେ ଦେଖିଛି । ତଥାପି ସେ ନିଜ ହାତ ଦେହ ଶୁଙ୍ଘିନେଲା – "କାହିଁ କିଛି ନାହିଁ ତ ।"

ଆଉ ସେ ନୌକର ଟୋକା ଗୋରା – ସେ ଅଳ୍ପଦିନ ହେବ ଗାଁରୁ ଆସିଥାଏ । କିଛି ଗାଉଁଲି ଗନ୍ଧ ସାଙ୍ଗରେ ଆଣିଛି ନିଶ୍ଚୟ । କିନ୍ତୁ ସେ ତ ତଳ ମହଲାରେ ରହେ । ଥରେ ହେମଲତା ତା' ବଖରାରୁ କାଗଜ ପୁଡିଆରେ କିଛି କଟା ଶୁଖୁଆ ବାହାର କରିଥିଲେ । ବହୁ କଷ୍ଟରେ ମାନିଥିଲା ଯେ ସେ ଘରଛାଡି ଆସିଲାବେଳେ ତା' ମା' ତାକୁ ଝୋଲାରେ ଭର୍ତ୍ତି କରି ଦେଇଥିଲା । ସେଇ ଗନ୍ଧ ପୁଣି କୋଉଠୁ ବାହାରୁ ନାହିଁ ତ !

ନୁରି ସାମନ୍ତ ସମସ୍ତଙ୍କୁ ରାହିଁ ପଚାରିଲେ, "ତୁମେମାନେ କିଛି ବାରିପାରୁନାହଁ । ଗୋଟାଏ ଛତୁଆ, ବୋଡିଆ ଫୁରୁକୁଟିଆ ଗନ୍ଧ ? ସେଇଟା ପଚା ପୋଚରା ଗନ୍ଧ ନୁହେଁ । ମଲା ମୂଷା ବା ଝିଟିପିଟି ଗନ୍ଧ ନୁହେଁ । ଗୋଟାଏ କାଠଗଣ୍ଡି ଖତରା ହୋଇଗଲେ ତା' ଦେହସାରା ଛତୁ ଫୁଟିଗଲେ ଏମିତିଆ ଗନ୍ଧ ହୁଏ । ତମେ ସବୁ କେମିତି ବାରିପାରୁ ନାହଁ ? ବୋଧହୁଏ ତୁମ ଅଭ୍ୟାସରେ ପଡିଗଲାଣି ! ମୁଁ ବାହାରୁ ଆସିଛି ବୋଲି ମୋତେ ଜଣାପଡୁଛି ହୁଏତ ।"

ସେ ଡ୍ରଇଂରୁମ୍‌ରେ ବସିଲେ । ଏକପ୍ରକାର କ୍ଲାନ୍ତ ଉଦାସ ଜଣାପଡୁଥିଲେ । ପୁଣି ଏଣେତେଣେ ଗନ୍ଧ ବାରୁଥିଲେ । ଉଦ୍‌ବିଗ୍ନ, କ୍ରୁଦ୍ଧ ଦେଖାଯାଉଥିଲେ ।

ହଠାତ୍ ଉଠପଡି ଚା ନ ପିଇ ସେ ବାହାରିଗଲେ । ଫେରିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା । ସେତେବେଳକୁ ନୂଆ ଘର କିଣା ସରିଥିଲା । ଦିଗବାରେଣି ଭଳି ତିନିପୁରୁଷର ତିନିମହଲା ଘର । ସେଇଟା କ'ଣ ସେମିତି ଖତରା କାଠ ଖୁଣ୍ଟଟାଏ ଗନ୍ଧଉଥିଲା ?

ଶହେ ବର୍ଷର ମର୍ଯ୍ୟାଦାବନ୍ତ ଉଆସ । ତା' ଭିତରେ ଗୁନ୍ଥି ହୋଇ ରହିଥିବା ଶତାବ୍ଦୀଟା କ'ଣ ବତୁରି ଯାଇଥିଲା ? ଗନ୍ଧଉଥିଲା ଫୁର୍‌କୁଟିଆ ?

ନୁରି ସାମନ୍ତଙ୍କୁ ପଷ୍ଟପରି ଲାଗିଲା । ହେମା ତାଙ୍କ ଦ୍ୱିତୀୟ ପତ୍ନୀ । ବାସି ଶେଯରେ ନୁରି ସାମନ୍ତଙ୍କ ଦେହରୁ କେମିତି ଗୋଟାଏ ଗନ୍ଧ ବାହାରେ । ଏ ବୋଡିଆ ଛତୁଆ ଗନ୍ଧ ତାଙ୍କ ନିଜ ଦେହର ଗନ୍ଧ ନୁହେଁ ତ ।

କିଏ କହିବ ସେ ନିର୍ମମ, ଅସହ୍ୟ, ପୁରୁଣା କବର ଗନ୍ଧ କୋଉଠୁ ଆସୁଥିଲା ? ଏବଂ କାହିଁକି କେବଳ ନୁରି ସାମନ୍ତଙ୍କୁ ଗନ୍ଧଉଥିଲା ? ନୁରି ସାମନ୍ତ କ'ଣ ଏଥିରୁ ମୁକୁଳିବାକୁ ସେ ନୂଆ ଘରଟାକୁ କିଣିଲେ ? ଗନ୍ଧ କ'ଣ ଏ ଘର, ନା ଏ ଘର ଗୋଟାଏ ଗନ୍ଧ ?

କାହାଠୁ ମୁକୁଳିବାକୁ ନୁରି ସାମନ୍ତ ଗାଁ ମୁଣ୍ଡରେ ପାହାଡଚୁଲିଆ ପଦ୍ମଫୁଲ ପରି ଏଡେବଡ ଶୋଭାବନ୍ତ ଉଆସଟା କିଣିପକେଇଲେ ? କ'ଣ କରିବେ ସେ ଘର ନେଇ ? କିଏ ରହିବ ସେଇଠି ?

ତିନିବର୍ଷ ତଳେ ଏ ଘର ତୋଳା ଆରମ୍ଭ ହେବା ଦିନୁ ନୁରି ସାମନ୍ତଙ୍କ ଆଖି ତା' ଉପରେ ପଡିଥିଲା । ବୁଝିଥିଲେ ଯେ କେହି ବମେବାଲା ଶେଠ୍ ଏଠି ସରକାରୀ ଠିକା କାମରୁ ଦୁଇଚାରି କୋଟି ଟଙ୍କା ଲାଭ ପାଇଗଲା । ତାକୁ କିଛି ଖର୍ଚ୍ଚ କରି ବେମତଲବ୍ ଗୋଟାଏ କୋଠା କରିପକେଇଲା । ଆଗକାଳେ ରାଜ୍ୟଜୟ କଲାପରେ ଶତ୍ରୁମାନଙ୍କ କଟାମୁଣ୍ଡ ଉପରେ ଜୟସ୍ତମ୍ଭ ତୋଳିଲା ପରି ଏ କୋଠା । ସେ ଏଠି ରହିବ ନାହିଁ ବୋଲି ସେ ମୂଳରୁ ଜାଣିଥିଲେ ।

ଏ ଘରଟା ଏମିତି ତିଆରି ହେଇଚି ଯେ ସେଇଠୁ ସବୁ ନିକଟ, ଚନ୍ଦ୍ର ସୂର୍ଯ୍ୟ ଆକାଶ! ସେଠିକି ସମୁଦ୍ରରୁ ସିଧାସଳଖ ପବନ ପିଟେ । ଆଉ ଖୁବ୍ ତଳେ ଧୂଳି ମଳି ଧୂଆଁ ଗନ୍ଧ ଚିକ୍ ଚିକ୍ ବତି ଆଲୁଅର ସହର ଜୁଳୁଜୁଳିଆ ପୋକଙ୍କ ମନ୍ଦା ଭଳି ଦେଖାଯାଏ ।

ଏ ଘର ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ପାହାତଟାଏ ଚଢିବାକୁ ପଡେ । ତା'ର ଦୃଶ୍ୟ, ତା'ର ବାସ୍ନା ଚାଖି ଚାଖି, ତା' ଆଡକୁ ଟାଣି ହୋଇ ହୋଇ ଉଠିବାକୁ ପଡେ । ଥରେ ପହଞ୍ଚିଗଲେ କିନ୍ତୁ ସବୁ ହତାଶ୍ ଲିଭିଯାଏ । ସବୁ ଦୁଷ୍ଚିନ୍ତା, ଉଦ୍‌ବେଗ ଚାଲିଯାଏ । ଫ୍ଲୋର ଚଟାଣ ଏକବର୍ଣ୍ଣି ମାର୍ବଲ । ପଦ୍ମପାଖୁଡା ଅଗର ରଙ୍ଗ । କାନ୍ଥଯାକ ଢଳଢଳ ନିର୍ମଳ ଆକଶର ଫିକା ରଙ୍ଗ । କବାଟ ସବୁ ଚନ୍ଦନ ରଙ୍ଗ । ବାଃ, ଏଇଠି କ'ଣ ଶୋଇବା ଘର, ଖାଇବା ଘର, ଗାଧୁଆ ଘର କି ରହିହେବ ? ଏଇଠି ତ ମନହେଲା ମଝି ବଖରାର କେନ୍ଦ୍ରରେ ପଦ୍ମାସନରେ ଚୁପ୍‌ଚାପ୍ ଆଖିବୁଜି ବସିହବ । ସଞ୍ଜବେଳେ ପଶ୍ଚିମ ଗବାକ୍ଷ ଖୋଲିଦେଇ ପାହାଡ ପଛରେ ସୂର୍ଯ୍ୟ ନଇଁଯିବାରେ ଗୋଟିଏ ଘଟନାବହୁଳ ଦିବାବସାନର ଦୃଶ୍ୟ ଦେଖିହେବ ।

ନୁରି ସାମନ୍ତ ସେଦିନ ହଠାତ୍ ଯାଇ ଘର ମାଲିକ କୁବେର ଶେଠ୍‌କୁ ତା' ହୋଟେଲ୍‌ରେ ଦେଖାକଲେ ।

ସେ ନୁରି ସାମନ୍ତଙ୍କୁ ଦେଖି ବଡବଡେଇ ଯାଇଥିଲା । ନୁରି ସାମନ୍ତଙ୍କୁ ସେ ମୁଖ୍ୟମନ୍ତ୍ରୀ, ଅମୁଖ୍ୟମନ୍ତ୍ରୀମାନଙ୍କ ଗହଣରେ ଦେଖିଆସିଥିଲା । କିଛି ଶୁଣିଥିଲା, କିଛି ଜାଣିଥିଲା ଯେ ସେ ଜଣେ ମାତବ୍‌ବର ଲୋକ । ଭାରି ଟାଣୁଆ ମନ୍ତ୍ରୀଙ୍କ ପାଖଲୋକ ।

କଥା ବି କିଛି ମିଛ ନୁହେଁ । ନୁରି ସାମନ୍ତ ଯାହା ଯେତେବେଳେ ଚାହିଁଛନ୍ତି ସରକାର ତାହା ତୁରନ୍ତ ପୂରଣ କରିଛନ୍ତି – ସେ ଯେକୌଣସି ସରକାର ହୁଅନ୍ତୁ ନା କାହିଁକି । ସାମନ୍ତ ନିଜ ଆଭିଜାତ୍ୟରେ ସହର ମଫସଲ ସବୁ ଅଞ୍ଚଳରେ ମାନ୍ୟଗଣ୍ୟ । ତାଙ୍କୁ ନ ଧରିଲେ କୌଣସି ନେତା ସେ ଭୂଇଁରେ ପାଦ ଥୋଇବା ସମ୍ଭବ ନୁହେଁ ।

ନୁରି ସାମନ୍ତ ପାଖରେ କିଛି ସୂଚନା ଥିଲା ଯେ, କୁବେର ଶେଠ୍ ତା' ନୂଆଘର ଦି' ଗୁଣ ଦାମ୍‌ରେ ବିକିଦେଇ ପଇସା ଉଠେଇନେବ । ତା'ପରେ ସେ ତା' ଦେଶକୁ ଚାଲିଯିବ ।

– କୁବେର ଶେଠ୍, ହମ୍‌ନେ ଶୁନା, ଆପ୍‌କା ବଙ୍ଗ୍‌ଲା ଆପ୍ ବେଚ୍‌ଦେନା ଚାହତେହେଁ ।

କୁବେର୍ ଶେଠ୍ ଗନ୍ଧ ବାରିପାରୁଥିବା ପୋଖତ ବେପାରୀ ।

"ଆରେ ସରକାର, ଆପ୍ ଚାହେତେ ହେଁ ତୋ' ଲେଲିଜିଏ । ବେଚ୍‌ନେ ଖରିଦ୍‌ନେ କି

ବାତ୍ ହିଁ ନହିଁ ହେ ।"

"ନହିଁ ନହିଁ, କୁବେର ଶେଠ୍, ହମ୍ ସଚମୁଚ୍ ଖରିଦନା ଚାହତେ ହେଁ । ଯୋ ଆପ୍‌କୋ ଖର୍ଚ୍ଚା ବୈଠା ହେ, ଓହ ଆପ୍ ହମ୍‌ସେ ଲେଲିଜିଏ ।"

"ଖର୍ଚ୍ଚା କ୍ୟା ବୈଠା ହେ, ସରକାର ! ଦୌଲତ୍ ତୋ' ଆପ୍‌କି ଦେନ୍ ହେ । ଛୋଡିଏ, ଜୋ ମର୍ଜି ଦେ ଦିଜିଏ କଭି ବି । ୟେ ଲିଜିଏ ମହଲ କି ଚାବି । କଲ୍‌ତକ୍ କାଗଜାତ୍ ପହୁଁଚ୍ ଜାଏଗି ।" ନୁରି ସାମନ୍ତ ସେଇଠୁ କଣ୍ଟ୍ରାକ୍ଟର ଦିନେଶ୍ ସିଂକୁ ଫୋନ୍ କଲେ । ସେ କହିବା ଅନୁସାରେ ଚେକ୍‌ଟିଏ ଲେଖିଦେଲେ କୁବେର ଶେଠ୍ ନାଁରେ । କୁବେର ଶେଠ୍ ମଧ ଅନୁଭବ କଲା ଯେ ନୁରି ସାମନ୍ତ 'ତୋଫା' ନିଅନ୍ତି ନାହିଁ ।

ସଞ୍ଜବେଳେ ଘରକୁ ଫେରି ସେ ଚୁପ୍‌ଚାପ୍ ବସିଲା ପରେ କହିଲେ ଯେ, ସହର ଉପାନ୍ତରେ ଥିବା ପାହାଡଚୂଳର ମାର୍ବଲ ପ୍ୟାଲେସ୍‌ଟା ସେ କିଣିଦେଲେ ।

କଥା ପ୍ରସରିଗଲା । ଆଲୋଚନା ହେଲା । ନୁରି ସାମନ୍ତ ଖିଆଲି ମଣିଷ, ହଠାତ୍ ଏମିତି କିଛି କରିପକେଇବା ନୂଆକଥା ନୁହେଁ । କିନ୍ତୁ ମାର୍ବଲ ପ୍ୟାଲେସ୍ କିଣିବା ପରେ ନୁରି ସାମନ୍ତ ବିଶେଷ ଉଲ୍ଲସିତ ହେବାର ଲକ୍ଷଣ ନଥିଲା ।

ସେ ବରଂ କିଛି ମାତ୍ରାରେ ଆଉରି ଉଦାସ ଦେଖାଗଲେ । କାହାକୁ କିଛି ନ କହି ସେ ତାଙ୍କ ଶୋଇବା ବଖରାକୁ ଯାଇ ତାଙ୍କର ଅତି ପ୍ରିୟ ଝୁଲା ଚୌକିରେ ବସି ଆଖି ବୁଜିନେଲେ ।

ତାଙ୍କୁ ହଠାତ୍ ବୋଧହେଲା ସେ ସେଇ ନୂଆ ଘରେ ରହିପାରିବେ ନାହିଁ । ସେଥିପାଇଁ ତାଙ୍କର ଯୋଗ୍ୟତା ନାହିଁ । ନିର୍ମଳ ତୈଳଚିତ୍ର ପରି ସେ ଶୋଭାମୟ ଘରେ ସେ କେମିତି ପଶିଯିବେ ? ତାଙ୍କ ହାତ ପାଦରେ ସତେ ବା ପ୍ରସ୍ତ ପ୍ରସ୍ତ କାଦୁଅ ଲାଗିରହିଥିବା ସେ ଅନୁଭବ କଲେ ।

ଯାହାକୁ ସାମନ୍ତ ପରିବାରରେ ଖାନ୍‌ଦାନ୍ ବୋଲି କୁହାଯାଏ, ଯାହାକୁ ନେଇ ସେ ଏବଂ ଅନ୍ୟମାନେ ଏତେ ଗର୍ବ କରନ୍ତି ସେଇଟା ସତରେ କ'ଣ ?

ତିନିପୁରୁଷ ଧରି ଠୁଳ ହୋଇଥିବା ଅଜସ୍ର ସମ୍ପତ୍ତି, ତା' ସାଙ୍ଗକୁ ପ୍ରତିପତ୍ତି, କ୍ଷମତା, ଅହଙ୍କାର ନା ଆଉ କିଛି ?

ତା' ପୂର୍ବଦିନ ଦିଲ୍ଲୀରେ ସେ ତାଙ୍କ ସାଙ୍ଗ ସହିତ ଗୋଟିଏ ବିଖ୍ୟାତ ସ୍କୁଲର ବିତର୍କ ସଭାରେ ବସିଯାଇଥିଲେ । ଆଗାମୀ ଶତାବ୍ଦୀ ପାଇଁ ପ୍ରସ୍ତୁତି ବିଷୟରେ କିଛି ବକ୍ତା ଚମତ୍କାର କହିଲେ ।

କିନ୍ତୁ, ଆରେ ବାପ୍‌ରେ, ଶେଷକୁ ସେ ଜିଅନ୍ତା ବିଜୁଳି ତା'ର ଭଳି କମ୍ପୁଥିବା ଟୋକା ତାଙ୍କୁ ସତେ ବା ସୋରା ସୋରା ଚିରି ପକେଇଲା । ସେ ସତେ ବା ଏ ଶତାବ୍ଦୀଟାକୁ ନିର୍ମମ ଭାବରେ ବ୍ୟବଚ୍ଛେଦ କରୁଥିଲା । ସେ କହୁଥିଲା, "ଯେଉଁମାନେ ସମସ୍ତେ ନେତାଗିରି କରୁଥିଲେ ଶତାବ୍ଦୀର ପ୍ରାରମ୍ଭରେ, ସେମାନେ ସମସ୍ତେ ରଇସ୍ ଘରର ଖାନ୍‌ଦାନ୍‌ରୁ ଆସିଥିଲେ । ରାଜନୀତି କରିବା ତାଙ୍କ ପାଇଁ ଫାଶନ୍ । ନିରାପଦ ରହି ଦେଶଭକ୍ତି କରିବା ଏକପ୍ରକାର ମାଦକତା । ସେମାନେ ବା

ସେମାନଙ୍କ ପୂର୍ବପୁରୁଷମାନେ କେମିତି ସମ୍ପତ୍ତି ଠୁଳ କରିଥିଲେ ତା'ର ନମୁନା ସେ ଦେଇଥିଲା ।"

କହିଥିଲା – ହୁଏତ ନଅଙ୍କ ବେଳେ ତୋରାଣି ଢୋକେ ବଦଳରେ ସେମାନେ ମାଟି ମୂଲରେ ସୁନା ଅଳଙ୍କାର ଏକାଠି କରିଥିଲେ । ମଲା ଲୋକଙ୍କ ଦେହରୁ ମୁଦି, ମାଳି କାଢି ନେଇଥିଲେ । ସେଥିରେ ସେ ଜମି କିଣିଥିଲେ, କୋଠା କରିଥିଲେ ।

ଇଂରେଜ ସରକାର ତାଙ୍କ ପାଇଁ ଥିଲେ ସରକାର ବାହାଦୂର । ତାଙ୍କୁ ପ୍ରଥମେ ସନ୍ତୁଷ୍ଟ ରଖି ସେ ପରିସ୍ଥିତିର ଫାଇଦା ଉଠାଉଥିଲେ ।

ନୁରି ସାମନ୍ତଙ୍କ ମୂଳ ଭିଟାମାଟି ଏବେ ବି ଅନାବାଦି ଅରମା ହେଇ ପଡିଚି । ସେଇଠି ଗୋଟେ ବିରାଟ ଶିମୁଳିଗଛ ଉଠି ତାକୁ ଅଧିକାର କରିଛି । ଅନାବନା, ଅରଖ, ଦୁଦୁରା, ଗୁକୁଣ୍ଡା ବଣ । କିଏ କହୁଥିଲା ତା' ଭିତରେ ଗୋଖର ବୁଲୁଛି ।

ସେଇଠି ତାଙ୍କ ପଣି ଗୋସେଇଁବାପ ମାଟିଘରେ ରହୁଥିଲେ । ନଅଙ୍କବେଳେ ଉଧୁରି ଆସିଲେ । ତା'ପରେ ତାଙ୍କ ପାଇଁ ସବୁ ହଠାତ୍ ସହଜ ଆଉ ସରଳ ହୋଇଗଲା । ଚକବନ୍ଦି ବେଳେ ଏ ଅଞ୍ଚଳର ସବୁଠୁ ଗହୀର ଖତିଆନ୍ ଜମିଯାକ ସେ ତାଙ୍କ ନାଁରେ କବଲା କରିନେଲେ ।

ବିତର୍କ ସଭାରେ ସେ ଟୋକା କହୁଥିଲା, "ଏ ଶତାବ୍ଦୀର ପ୍ରଥମ ଦଶକ ବେଳେ ବଙ୍ଗଳାରୁ ସଶସ୍ତ୍ର ସଂଗ୍ରାମପାଇଁ ଆହ୍ୱାନ ଆସିଲା । ବଙ୍ଗ ବିଭାଜିତ ହେଇଗଲା । କିଛି ସହିଦ ହୋଇଗଲେ । କିନ୍ତୁ ନରମପନ୍ଥୀ ନେତାମାନେ ରାଜୁତା ବୈଠକ ଘରେ ବସି ସରକାର ବାହାଦୁରଙ୍କୁ ନିର୍ଭୁଲ ଇଂରାଜୀରେ ଦରଖାସ୍ତ ଲେଖି ସନ୍ତୁଷ୍ଟ ରହିବାକୁ ପସନ୍ଦ କଲେ । ରାଜନୀତି ତାଙ୍କ ପାଇଁ ଏକ ବୌଦ୍ଧିକ ବିଳାସ, ଆଉ କିଛି ଉତ୍ତେଜନାର ସାମଗ୍ରୀ ହୋଇ ରହିଥିଲା ।"

ପ୍ରଥମ ବିଶ୍ୱଯୁଦ୍ଧ ସରକାରଙ୍କ ବୋଲକରା ସୁବିଧାବାଦୀଙ୍କ ପାଇଁ ଆଉ ଏକ ସୁଯୋଗ । ଯୁଦ୍ଧ କାଳ ଥିଲା ଘୋର ମହରଗ କାଳ । ସରକାରଙ୍କ ନାଁରେ ଖାଦ୍ୟସାମଗ୍ରୀ ଶସ୍ତାରେ ଖରିଦ କରି କମିଶନି ରଖି ରପ୍ତାନି କରିବାରେ ବହୁ ବେପାରୀ ଧନୀ ହୋଇଗଲେ । ଅଫିମ ଦୋକାନ ଖୋଲି ଆହୁରି ଲାଭ କଲେ । ଦେଶ ଦରିଦ୍ର ହୋଇଗଲା । ଲୋକେ ଅଫିମିଆ ରୋଗିଣା ହୋଇଗଲେ । ଲାଭ ପଇସାରେ କୋଠା ତୋଳାହେଲା । ନୂଆ ରଇସ୍ ପରିବାର ସବୁ ସୃଷ୍ଟି ହେଲେ । ସରକାର ମର୍ଜି ଅନୁସାରେ ଅନୁଗତମାନଙ୍କୁ ରାୟସାହେବ, ରାୟବାହାଦୁର ଉପାଧିରେ ମଣ୍ଡିତ କଲେ ।

ନୁରି ସାମନ୍ତଙ୍କ ଗୋସେଇଁବାପ ରାୟବାହାଦୁର । ସେ ଏଇ କୋଠା ତୋଳିଥିଲେ । ସମୟ ପ୍ରାୟ ପ୍ରଥମ ବିଶ୍ୱଯୁଦ୍ଧର ବେଳ । ତାଙ୍କର ଚାଉଳ ବେପାର ଥିଲା । ଅଫିମ ଦୋକାନ ଥିଲା । ସେ ଏଇ ଅଞ୍ଚଳର ପ୍ରଥମ ଟ୍ରକ୍ କିଣିଥିଲେ । ପ୍ରଥମେ ମଟରଗାଡି କିଣିଥିଲେ । ପ୍ରଥମେ ଟାଇ ସୁଟ୍ ପିନ୍ଧି ଇଂରାଜୀ କହୁଥିଲେ । ନୁରି ସାମନ୍ତ ଅତ୍ୟନ୍ତ ଅସୁସ୍ଥ ବୋଧ କରୁଥା'ନ୍ତି । ବକ୍ତୃତାର ପ୍ରତ୍ୟେକ ବାକ୍ୟବାଣ ସତେ ବା ତାଙ୍କପାଇଁ ଉଦ୍ଦିଷ୍ଟ ଥିଲା । ତାଙ୍କ ରକ୍ତ ଭିତରେ ତାଙ୍କ ଗୋସେଇଁବାପ ଲୁଚିବାକୁ ବାଟ ପାଉନଥା'ନ୍ତି । କୋଠାର ଇଟା କାନ୍ଥରେ ଅଫିମ ଜୋଡେଇ । ମାଟିତଳେ

ଟଙ୍କାଥଳିମାନଙ୍କରେ ଅଜସ୍ର ତଷ୍ଟୁ, ଧୁସ ଆଉ ଅନ୍ଧାର । କେତେ ଛୋଟ ଭୀତତ୍ରସ୍ତ ଲୋମଶ ମଣିଷଟିଏ ତାଙ୍କ ରାୟବାହାଦୁର ଗୋସେଇଁବାପ! ସେ ଲୁଚି ଯାଉଛନ୍ତି କାନ୍ଥ ଭିତରେ କି ମାଟିତଳେ ଭଣ୍ଡାର ଘରେ କେଜାଣି ।

ଟା'ପରେ ଅତି ସ୍ପଷ୍ଟ ଦିଶୁଛନ୍ତି ତାଙ୍କ ବାପ – ରାୟସାହେବ ତ୍ରୈଲୋକ୍ୟନାଥ ସାମନ୍ତ । ଦର୍ପଣ ପରି ଚିକ୍ ଚିକ୍ ଜୋତା, ସୁଟ୍‌ପିନ୍ଧା ବିଲାତ ଫେରନ୍ତା ସାହେବ । ରୋଲ୍ସରଏସ୍ ଗାଡି । ସେ ଏ କୋଠାକୁ ଆହୁରି ବିସ୍ତୃତ କରିଛନ୍ତି । ଗରିଆଡେ ବଗିଚ୍ଚ, ବଗିଚ୍ଚରେ ଜାତି ଜାତି ଗଛ, ଫୁଲ, ଫଳ । ସାହେବମାନଙ୍କ ଯୋଗ୍ୟ, ଖାନା ଓ ଖାନସମାର ବ୍ୟବସ୍ଥା ସେ କରିଛନ୍ତି । ରାୟସାହେବଙ୍କୁ ଲୋକେ ଡାକିଛନ୍ତି ରାଜାସାହେବ ।

କିନ୍ତୁ...

ସେ ଟୋକା କହୁଛି, "ମାତ୍ର କେତେ ହଜାର ଗୋରା ସାହେବ, ଏ ଦେଶଟା ଉପରେ ସବାର ହୋଇ ରହିଥଲେ । ଶାସନ କରୁଥିଲେ, ଲୁଣ୍ଠନ କରୁଥିଲେ, ଉତ୍ପୀଡ଼ନ କରୁଥିଲେ ଦେଶଟାକୁ ବ୍ରିଟିଶ୍ କେଶରୀ, କାହା ବଳରେ ? ସେଇ ଅସଂଖ୍ୟ ଶିଆଳ, ଉଚ୍ଛିଷ୍ଟ ପରିପୁଷ୍ଟ କଳା ସାହେବମାନେ ତାକୁ ବାଟ ଦେଖେ ଦେଉଥିଲେ । ବଚଷ୍କର ଭୃତ୍ୟମାନେ ଆଦେଶ ପାଳନ କରୁଥିଲେ । ସଂଗ୍ରାମୀ ଲୋକଙ୍କ ସନ୍ଧାନ ସେଇମାନେ ଦେଉଥିଲେ । ତରୁମ ସମ୍ଭାବନାକୁ ଜାଲପାତି ଧରିନେଉଥିଲେ । ସବୁ ବିଦ୍ରୋହର ସ୍ୱରକୁ ନିରବ କରିଦେଉଥିଲେ । ନୀତି ଘୋଷଣା କରୁଥିଲେ ସରକାର, ଦମନ କରୁଥିଲେ ଏମାନେ । ଭାରତୀୟ ରକ୍ତରେ ରଞ୍ଜିତ ହାତକୁ ବିଦେଶୀ ମଦିରାରେ ଧୋଇଦେଉଥିଲେ । ଗୋରା ହାତର ସାବାସି, ତାଙ୍କ ପିଠିରେ ଶିହରଣ ସୃଷ୍ଟି କରୁଥିଲା ।"

ଏଇ କୋଠାରୁ ପାଞ୍ଚଜଣ ନେତା ଗିରଫ ହୋଇ ଯାଇଥିଲେ । ଆସିଥିଲେ ନିମନ୍ତ୍ରଣ ରକ୍ଷା କରିବାକୁ, ସଂଗ୍ରାମର ଯୋଜନା କରିବାକୁ, ରାଜା ସାହେବଙ୍କୁ ସାମିଲ କରିବାକୁ । ସରକାରଙ୍କୁ ସନ୍ତୁଷ୍ଟ କରି ବିଶ୍ୱସ୍ତ ରାଜାସାହେବ ପୁରସ୍କାର ପାଇଲେ ରତ୍ନପଥରର ଖଣି । ଲୋକଙ୍କର ବିଶ୍ୱାସ ଅର୍ଜନ କରିବାକୁ ନିରୀହ ମୋହରିରଟାକୁ ଖୁପିଆ କାର୍ଯ୍ୟ କରିଥିବା ଅପରାଧରେ, ଦେଶର ନେତାଙ୍କୁ ଗିରଫ କରାଇବାର ଷଡଯନ୍ତ୍ର ଅପରାଧରେ ମୁହଁରେ ତୁଣ୍ଡି ବାନ୍ଧି, ସର୍ବସମକ୍ଷରେ ବେତମାଡ ଦେଇଥିଲେ । କାହିଁ କୁଆଡେ ଗୁଜୁରାଟକୁ ପଠେଇ ଦେଇଥିଲେ । ଶୁଣିବାକୁ ମିଳିଥିଲା ସେଇଠି ଟା'ର ଥଇଥାନପାଇଁ ସମସ୍ତ ସୁବିଧା କରିଦିଆଯାଇଥିଲା । ବର୍ଷେ ପରେ ଅଜଣା ଘାତକମାନେ ତାକୁ ହତ୍ୟାକଲେ ।

ରାୟସାହେବଙ୍କ ଇସ୍ପାମରା, ନିଖୁଣ ଚେହେରା । ଆପାଦମସ୍ତକ ମାର୍ଜିତ ରୁଚିର ପରିପାଟି । ଦେଶସାରା ଜଳୁଥିଲା ବେଳେ ତାଙ୍କ ଇଲାକା ଚୁପ୍‌ଚାପ୍ ନିସ୍ତେଜ ପଡିରହିଥିଲା । କେହି ଚୁଁ ଶବ୍ଦ କରୁନଥିଲେ । ସରକାର ସନନ୍ଦ ଉପରେ ସନନ୍ଦ ଦେଇ ରାୟସାହେବଙ୍କୁ ସମ୍ମାନିତ କରୁଥିଲେ । କେହି ଯଦି ଆନ୍ଦୋଳନର ଖବର ଆଣୁଥିଲା, ଟା' ଆରିଦିନ ସେ କୁଆଡେ ହଜିଯାଉଥିଲା । ନୁରି ସାମନ୍ତ ସେତେବେଳେ ସ୍କୁଲଛାତ୍ର । ତାଙ୍କର ଜଣେ ଅତି ପ୍ରିୟ ଶିକ୍ଷକ ଖଦଡ ପିନ୍ଧି ପକେଇଥିଲେ,

ସେ ବି ଅନ୍ତର୍ଦ୍ଧାନ ହୋଇଗଲେ । ସେମାନଙ୍କୁ ବୋଧହୁଏ ହତ୍ୟା କରାହେଉଥିଲା । ନଈ ଗର୍ଭରେ ପଥରବାନ୍ଧି ସେମାନଙ୍କ ଶବ ବୁଡେଇ ଦିଆହେଉଥିଲା । ଏବେ ବି ସେ ଗର୍ଭ ଭିତରେ କଙ୍କାଳ ସବୁ କାଦୁଅରେ ପୋତି ହୋଇ ରହିଥିବେ । କାଦୁଅରେ ପଚା ମାଂସର ଗନ୍ଧ ଏବେ ବି ବାରି ହେଉଥିବ ।

ନୁରି ସାମନ୍ତ ନିଜ ମୁହଁ ଘୋଡେଇ ପକେଇଲେ । ତାଙ୍କୁ ଲାଗିଲା ତାଙ୍କ ବାପା ବିବସ୍ତ୍ର ଠିଆ ହୋଇଛନ୍ତି ଏକ ନିର୍ମମ ଇଜଲାସ୍‌ରେ । ଅପରାଧର ସଂଖ୍ୟା ନାହିଁ । କିନ୍ତୁ...

ସେ ସବଜାନ୍ତା ତରୁମର ଆଖି ଝଲସୁଥିଲା । ସ୍ୱରରେ, ବାକ୍ୟରେ ଧପ୍‌ଧପ୍ ଜଳୁଥିଲା ଅଗ୍ନି:

"ଏଇ ଦେଶଦ୍ରୋହୀ, ବିଶ୍ୱାସଘାତକ ଦଳ ଦେଶ ସ୍ୱାଧୀନ ହେବାର ସମ୍ଭାବନା ଦେଖି କ୍ଷମତାପାଇଁ ଆତୁର ହୋଇଉଠିଲେ । ଦେଶ ବିଭାଜିତ ହୋଇଗଲା । ରକ୍ତର ବନ୍ୟାରେ ସ୍ନାନ କରି ଏମାନେ ଛିନ୍ନ ଅଙ୍ଗକୁ ଘେରି ବସିଗଲେ । ସୁଟ୍‌ବୁଟ୍ ଛାଡି ଦେଶୀ ଆବରଣ ଭିତରେ ଲୁଚିଗଲେ ଶ୍ୱାପଦମାନେ । ନେତାମାନଙ୍କୁ ରାଜା କଲେ ଏମାନେ । ବ୍ରିଟିଶ୍ ଶାସନର ପଦ୍ଧତି, କାଇଦା, ରୂପ ଓ ସ୍ୱରୂପ ବିଷୟରେ ତାଲିମ୍ ଦେଲେ ଏଇମାନେ । ଏ ଦେଶର ସଂଗ୍ରାମୀମାନେ ଆଇନ ଅମାନ୍ୟ କରି ଶିଖିଥିଲେ । ଭାଷଣ ଦେଇ ଶିଖିଥିଲେ । ଶାସନ କ'ଣ ଜାଣିନଥିଲେ । କ୍ଷମତା କ'ଣ ଚାଖିନଥିଲେ । ରାଜବନ୍ଦୀମାନେ ରାଜାର ସିଂହାସନରେ ବସିଲେ । ଜାଣିନଥିଲେ ରାଜାର ଆଚରଣ । ଏଇମାନେ ତାଙ୍କୁ ଶିଖେଇଲେ ।"

ସରକାରଙ୍କ ପାର୍ଶଦ ହୋଇ ରହିଥିବା ଏ ଚତୁର ଗୋଷ୍ଠୀ, ବେଶ ବଦଳ କରି କ୍ଷମତାର ବାରଣ୍ଡାରେ ଆତଯାତ ହେଲେ । ଅନଭିଜ୍ଞ ଶାସକଙ୍କୁ ଅଭିଜ୍ଞତାର ସ୍ୱାଦ ଚଖେଇଲେ । କାଠଗଡାରେ ଠିଆ ହୋଇ ଦଣ୍ଡିତ ହେବା ପରିବର୍ତ୍ତେ ସେମାନେ ନୂତନ ସରକାରଙ୍କ ବିଶ୍ୱସ୍ତ ପରିଚର, ମନ୍ତ୍ରୀଙ୍କ ସହଚର, ବଳିଷ୍ଠର ଅନୁଚର ହୋଇ ଧନମାନରେ ମଣ୍ଡିତ ହେଲେ । ହତଭାଗ୍ୟ ଦେଶ ହତଭାଗ୍ୟ ରହିଗଲା ।

ନୁରି ସାମନ୍ତଙ୍କ ମର୍ମ ବିଦାରି ହୋଇଯାଉଥିଲା । ସେ ତାଙ୍କ ବାପାଙ୍କ ରୂପବଦଳ ଦେଖିଛନ୍ତି । ଗାନ୍ଧି ଟୋପି ଦେଖିଛନ୍ତି । ସେ ନୂଆ ମନ୍ତ୍ରୀମାନଙ୍କୁ ନିମନ୍ତ୍ରଣ କରି ଆଣିଛନ୍ତି । ସାଇବଙ୍କ ଆସନରେ ବସେଇ ସାଇବଙ୍କ ଖାଦ୍ୟ ପାନୀୟରେ ଆପ୍ୟାୟିତ କରିଛନ୍ତି । ଫଳରେ ସରକାରଙ୍କ ବିଶ୍ୱସ୍ତ ପ୍ରତିନିଧି ହୋଇ ସେ ବାରମ୍ବାର ବିଦେଶ ଯାଇଛନ୍ତି । ବିଦେଶୀ କୌଶଳ ଆମଦାନି କରିଛନ୍ତି – କିପରି ଘାସ ଚାଷ ହେବ । କିପରି ଅମରି ଚାଷ ହେବ ।

ଶେଷ ପର୍ଯ୍ୟାୟରେ ରାଜାସାହେବ ନିର୍ବାଚନରେ ଠିଆ ହୋଇଛନ୍ତି ନେତାଙ୍କୁ ସନ୍ତୁଷ୍ଟ କରିବାକୁ । ଦେଶବାସୀଙ୍କ ସେବା କରିବାକୁ । ଜିଣିଛନ୍ତି । ମନ୍ତ୍ରୀ ହୋଇଛନ୍ତି । ଗାଡି ଘୋଡା, ଡିନର୍, ଡାନ୍ସ ପୁଣି ଫେରିଆସିଛି ଏ କୋଠାକୁ ।

ଏ ପରମ୍ପରାର ଦାୟାଦ ନୁରି ସାମନ୍ତ, ବିଲାତ ଫେରନ୍ତା । ଆଇନ ଜୀବିକା ନୁହେଁ, ଆଳ ମାତ୍ର । ବିଚକ୍ଷଣ ବୁଦ୍ଧିରେ ସରକାରୀ ଅପରାଧୀଙ୍କୁ ନିର୍ଦ୍ଦୋଷରେ ଖଲାସ କରିଆସିଛନ୍ତି । ସହଜ

ସ୍ୱଚ୍ଛନ୍ଦ ଜୀବନରେ ଅନୁଭବ କରିନାହାନ୍ତି କୌଣସି ବୃହତ୍ତର ମୂଲ୍ୟର ଅଭାବ ।

ସେ ମୁହଁରୁ ହାତ କାଢ଼ି ମଟମଟ ଚାହିଁଲେ ।

ପୁଣି ଦିଶିଗଲା ସ୍କୁଲର ସ୍ତବ୍ଧ ପ୍ରେକ୍ଷାଳୟ । ମଞ୍ଚ ଉପରେ ସେ ତେଜସ୍ୱୀ ତରୁଣ "ମୋ' ଦେଶ ମୁମୂର୍ଷୁ ପ୍ରାୟ ପଡିରହିଛି । ତାକୁ ବେଢ଼ିରହିଛନ୍ତି ଶାଗୁଣା ପଲ । ଯେ ଯାହାର କ୍ଷୁଧା ମେଣ୍ଟାଇ ଲାଗିଛନ୍ତି । ମଝିରେ ମଝିରେ ଡେଣା ଝାଡ଼ି ଏକାଠି କୋଳାହଳ କରୁଛନ୍ତି । ତାକୁ କହୁଛନ୍ତି ଲୋକସଭା, ବିଧାନସଭା । ମାଂସାଶୀ ଗୃଧ୍ରମାନଙ୍କ ନଖରେ, ଚଞ୍ଚୁରେ ମୋ' ଦେଶର ରକ୍ତ ମାଂସ ଲାଗିରହିଛି । ଅପରାଧର ମଞ୍ଚ ଉପରେ କ୍ଷମତାର ସିଂହାସନ । ସ୍ୱାଧୀନତା ପୂର୍ବରୁ ଆମେ ଭାଷଣ ଶୁଣୁଥିଲୁ, ଏବେ ବି ଭାଷମ ଶୁଣୁଛୁ । ଇଂରେଜ ସରକାର ଆମକୁ ବିଭାଜିତ କରି ଶାସନ କରୁଥିଲା । ଏବେ ବି ନାନାପ୍ରକାର ଚାଲାକିରେ ଆମକୁ ବିଭାଜିତ କରି ଏମାନେ ଶାସନ କରୁଛନ୍ତି । ଦେଶର ସମସ୍ତ ସମ୍ପତ୍ତି ବିଦେଶୀ ନେଇଯାଉଥିଲେ । ଏବେ ବି ଦେଶର ସମ୍ପତ୍ତି ବିଦେଶରେ ଗଚ୍ଛିତ ହେଉଛି ।"...

ସାମ୍ରାଜ୍ୟବାଦୀର ଅପରାଧ ଦଣ୍ଡିତ ହେଉନଥିଲା । ସମାଜବାଦର ଅପରାଧ ମଧ ଦଣ୍ଡିତ ହେଉନାହିଁ । ଦେଶର ଆଇନ – ଏକ ବୁଢ଼ିଆଣୀ ଜାଲ – ମଶା ମାଛିକୁ ଧରିନିଏ । ବିରୁଡ଼ି ତାକୁ ଚିରି ପାରି ହୋଇଯାଏ ।...

ବିଚକ୍ଷଣ ଓକିଲ ଅଛନ୍ତି ନ୍ୟାୟର ରକ୍ଷାପାଇଁ ନୁହେଁ ଅନ୍ୟାୟର ବକ୍‌ସିସ୍‌ପାଇଁ । ସମଗ୍ର ଦେଶରେ ଆକୁମାରୀ ହିମାଳୟ ଆକଚ୍ଛ ଆସାମ ନିର୍ଲଜ ଅପରାଧୀଙ୍କ ପଟୁଆର । ଏମାନେ ଏ ଦେଶକୁ ଏ କାଳକୁ ଶୋଷି ସାରିଲା ପରେ, ହାତ ବଢ଼ଉଛନ୍ତି ଆଗାମୀ ଶତାବ୍ଦୀକୁ, ଅନାଗତ ବଂଶଧରମାନଙ୍କର ଅକ୍ଷତ ଦେଶକୁ । ମୁଁ ଦେଖିପାରୁଛି ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍ଥାନ । ଆମେ ଜାଗ୍ରତ ଅଛୁ, ଆମେ କଦାପି ଏମାନଙ୍କୁ ବାଟ ଛାଡ଼ିବୁ ନାହିଁ । ଦୁଇହଜାର ମସିହାର ଅର୍ଦ୍ଧରାତ୍ରି ଯଦି ପ୍ରଚଣ୍ଡ ପ୍ରକାଣ୍ଡ ଗିଲୋଟିନ୍‌ର ନିଶିତ ଧାର ହୋଇ ଖସିପଡ଼ନ୍ତା, ଆମେ ଏ ସମସ୍ତ ପିଢ଼ିର ଦୂଷିତ ଅପରାଧୀଙ୍କୁ ଶତାବ୍ଦୀର ଯୁପକାଠ ଉପରେ ଧାଡ଼ି ବାନ୍ଧି ବସେଇଦିଅନ୍ତୁ । ଏକାଥରକେ ଛିଡ଼ିପଡ଼ନ୍ତା ସହସ୍ର ଶୀର୍ଷ, ଅପରାଧର ଲୋହିତ ମୂର୍ଦ୍ଧା ।

ବକ୍ତାର ଖର ନିଃଶ୍ୱାସର ଝାଞ୍ଜି ସମସ୍ତଙ୍କ ଦେହରେ ବାଜୁଥିଲା । ସେ କ୍ରୋଧ ଓ ଘୃଣାରେ କମ୍ପୁଥିଲା:

"ଏଠି ସବୁ ମୃତ, ପଳିତ, ପୁତିଗନ୍ଧମୟ । ଏମାନେ ସମସ୍ତେ ଖତରା ଫିମ୍ପିମରା ପୁରୁଣା କାଠଗଣ୍ଡି । ଏମାନଙ୍କର ଅଧିକାର ନାହିଁ ନୂତନ ଶତାବ୍ଦୀକୁ ଦୂଷିତ କରିବାକୁ । ଏମାନଙ୍କୁ ଆମେ ଶତାବ୍ଦୀର ଦେହଳି ଡିଆଁଇଦେବୁ ନାହିଁ । ଯେ ବାରମ୍ବାର ଧର୍ମ ସଂସ୍ଥାପନା କରିଆସିଛି, ସେ ଅବଶ୍ୟ ଦୁଷ୍ଟ ଦଳନ କରିବ । ଏଥିରେ ମୋର ପୂର୍ଣ୍ଣ ଭରସା ଅଛି ।"

ନୁରି ସାମନ୍ତ ସାଙ୍କୁଡ଼ି ଯାଇଥା'ନ୍ତି । ତାଙ୍କୁ ଅପରାଧୀ ଘୋଷିତ କଲା ସର୍ବୋଚ୍ଚ ଇଜଲାସ୍ । ସମଗ୍ର ଦେଶ ତାକୁ କରତାଳିରେ ସମର୍ଥନ କଲା । ତାଙ୍କୁ ଶୁଭୁଥିଲା ସେ କରତାଳି ନୁହେଁ, ତାହା

ସମୁଦ୍ରର ଗର୍ଜନ, ମହାଶୂନ୍ୟର ମନ୍ଦ୍ରନାଦ ।

ତାଙ୍କ ବଖରାକୁ ହେମା, କିଶୋର ଆଉ ଲିଲି ପଶିଆସିଲେ । ତାଙ୍କୁ ଏମିତି ଆଣ୍ଠୁ ମୁଣ୍ଡ ହୋଇ ଚୌକି ଉପରେ କଣେଇ ମେଷ୍ଟା ହୋଇ ବସିବାର ଦେଖି ଶଙ୍କିଗଲେ । ହେମା କପାଳରେ ହାତରଖି ପଚାରିଲେ, "ଶୀତ କରୁଚି କି ?" ନୁରି ସାମନ୍ତ କିଛି ନକହି ମୁଣ୍ଡ ହଲେଇ ନାହିଁ କଲେ ।

କାହାରି ସାହସ ହେଲାନାହିଁ ସେ ବୋତିଆ ଖତରା ଗନ୍ଧ ବିଷୟରେ ତାଙ୍କୁ ପଚାରିବାକୁ । ସେମାନେ ନୁରି ସାମନ୍ତଙ୍କୁ ଘେରି ବସିଗଲେ । ସମସ୍ତେ ଉଦ୍‌ବିଗ୍ନ ତ୍ରସ୍ତ ଜଣା ପଡୁଥିଲେ ।

ନୀରବତା ପଥରବୋଝ ପରି ମଡେଇ ହୋଇ ପଡୁଥିଲା । ନୁରି ସାମନ୍ତ ନିଜର ଭଙ୍ଗୀ ନବଦଳାଇ କାହାକୁ ନଚାହିଁ ଆସ୍ତେ ଆସ୍ତେ କହିଲେ – "ମାର୍ବଲ୍ ପ୍ୟାଲେସ୍‌କୁ ମୁଁ ଯିବିନାହିଁ, ତୁମେ କେହି ଯିବନାହିଁ । ଆମର ଯୋଗ୍ୟତା ନାହିଁ ସେଇଠି ପଶିବାକୁ । ଆମେ ଗଲେ ଆମ ସାଙ୍ଗରେ ସେଇ ବୋତିଆ ଖତରା ଗନ୍ଧ ବି ଯିବ ।"

ମାର୍ବଲ ପ୍ୟାଲେସ୍ ପଦ୍ମବନ ପରି ବାସିବାକୁ ମୁଁ ଚାହେଁ । ଚାରି ପାଞ୍ଚବର୍ଷର ଛୋଟ ପିଲାଙ୍କପାଇଁ ମୁଁ ତାକୁ ଖେଳଘର କରିବାକୁ ଚାହେଁ । ଜାତି ଜାତି ଫୁଲ ମେଳରେ ସେମାନେ ହସୁଥିଲା ବେଳେ ନୂତନ ସୂର୍ଯ୍ୟୋଦୟ ଦେଖିବାକୁ ଚାହେଁ ଏଠି ତଳେ ଠିଆହୋଇ । ଯଦି ଗିଲୋଟିନ୍‌ରେ ହାଣ ଖାଇଯାଏ ସେ ଅଲଗା କଥା ।

କିଶୋର ହଠାତ୍ ଠିଆହୋଇ ତରବର ଚାଲିଗଲା ବେଳେ କହିଲା, "ବାବା ନିଶ୍ଚୟ ଅସୁସ୍ଥ । ମୁଁ ଡାକ୍ତରଙ୍କୁ ଫୋନ୍ କରି ଡକେଇଦିଏ ।"

ହେମା ଆଉ ଲିଲି ବ୍ୟସ୍ତହୋଇପଡୁଥିଲେ । ନୁରି ସାମନ୍ତଙ୍କୁ ପାତଳ ଶାଲ୍‌ଟିଏ ଘୋଡେଇଦେଲେ ସେମାନେ । ତାଙ୍କ ମୁହଁର ଆତଙ୍କ ଅପସରି ଯାଇଥିଲା । ସେ ସାମାନ୍ୟ ହସିଲା ପରି ଜଣାଯାଉଥିଲେ ।



# ମାଟି ପାଣି ପବନ

ବାଆସ୍ତରି ଘଣ୍ଟା ବ୍ୟାପୀ ଗୋଟାଏ ହିଂସ୍ର ଦୁର୍ମଦ ରାତ୍ରି ପରେ ଅନ୍ଧାର ପାତଳ ଦେଖାଗଲା । ଜଣାଗଲାନାହିଁ ରାତି ପାହିଆସୁଥିଲା କି ନଇଁ ଆସୁଥିଲା ।

ଦିଗ ବାରିହେଲା । କାଳ ବାରିହେଲା । ସେଇଟା ସକାଳ ନୁହେଁ ସଂଧ୍ୟା; ସ୍ୱାଭାବିକ ରାତିଟାଏ ପୂର୍ବ ଦିଗରୁ ଉଦୟ ହେଉଥିଲା । ଆଲୁଅ ଲିଭିଯାଉଥିଲା ପଶ୍ଚିମରୁ ।

ଚଉଦିଆଡେ ଅସ୍ୱାଭାବିକ ନିରବତା । ସବୁ ସ୍ତବ୍ଧ । ପକ୍ଷୀଟିଏ ବି ରାବୁନଥିଲା ଶୂନ୍ୟମଣ୍ଡଳରେ, ଅନ୍ଧାରରେ ।

ୟା'ପରେ ହୁଏତ ଆକାଶ ଦିଶିଯିବ । ତାରାମାନେ ଦିଶିଯିବେ । ଆତଙ୍କିତ ତରାଟି ରହିଥିବା ଆଖିମାନଙ୍କରେ ପଲକ ପଡିବ । କଣ୍ଠାଗତ ହୃତ୍‌ପିଣ୍ଡମାନେ ପଞ୍ଜରି ଭିତରକୁ ଓହ୍ଲେଇଯିବେ ।

ୟା'ପରେ ହୁଏତ ଶ୍ୱାପଦମାନେ ବାହାରିବେ । ନିଶାଚର ପକ୍ଷୀମାନେ ବାହାରିବେ । ସ୍ୱାଭାବିକ ମନେହେବ ସେମାନଙ୍କ ନିଃଶବ୍ଦ ବିଚରଣ; ପ୍ରହର ଅନୁସାରେ ଭଳି ଭଳି ଡାକ ଓ କୁହାଟ ।

କିନ୍ତୁ ପକ୍ଷୀ ବାହାରିଲେ ନାହିଁ । ସେମାନଙ୍କର ବସା ନଥିଲା । ବସା ଧରିଥିବା ଗଛ ବି ନଥିଲା । ଶ୍ୱାପଦ ବାହାରିଲେ ନାହିଁ । ସେମାନଙ୍କ କୋଟର ନଥିଲା । ଉହାଡ ନଥିଲା । ଜଳାର୍ଣବ ହୋଇଥିଲା ପୃଥିବୀ । ଧରାଶାୟୀ ହୋଇଥିଲା ଅରଣ୍ୟ ।

ବାହାରେ ଠିଆହେଲେ ଲାଗୁଥିଲା ଆକାଶ ଗ୍ରାସିଯାଇଛି ପୃଥିବୀକୁ । କାହିଁ କୁଆଡେ କିଛି ଦିଶୁନାହିଁ । ଦିଗବାରେଣୀ ଦ୍ରୁମମାନେ ଦିଶୁନାହାନ୍ତି । ପଦା ହୋଇଯାଇଛି ଖଣ୍ଡମଣ୍ଡଳ । ଯୁଆଡେ ଚାହିଁଲେ କେବଳ ଦିଗନ୍ତ ଦିଶୁଛି ।

ରହି ରହି ବିଳାପ ଶୁଭିଲା । ଚିତ୍କାର ଶୁଭିଲା । ଆର୍ତ୍ତନାଦ ଶୁଭିଲା । କିଛି ପାଦଶବ୍ଦ ଶୁଭିଲା । ଡାକହାକ ଶୁଭିଲା ।

"ଆରେ, ଟାକୁ ପାଣିରୁ ଟେକିଆଣ । ମଢଗୁଡାକୁ ଆଡେଇ ଟାକୁ ଓଟାରିଆଣ । ତା'ର ସର୍ବାଙ୍ଗ କାଲୁଆ ହେଇଯାଇଚି । ଟାକୁ ଶୁଖିଲା ଲୁଗାଟାଏ ଗୁଡେଇଦିଅ! ସେ ଯେ ଗଡି ଛାଡିଛି ପିଲାଟିଏ, ଭୋକ ବିକଳରେ, ଟାକୁ କ'ଣ ଟିକିଏ ଆହାର ଦିଅ । ଆଉ ସେ ଜଣକ ଉପରେ ଗଛ ମଟେଇ ହୋଇ ପଡିଛି । ତା' ପଞ୍ଜରା ଭାଙ୍ଗିଯାଇଛି । ଉରୁ ହାଡ ଭାଙ୍ଗି ଯାଇଛି । ଧର ଧର ଏ ଉପୁଡା ଗଛକୁ । ପାରୁଛ ତ ଗଡେଇଦିଅ ତା' ଉପରୁ । ସେ କାଦୁଅରେ ପୋତି ହୋଇଯାଇଛି । ଟାକୁ ଟାଣି ବାହାର କର । ଟାକୁ ପାଣି ଦିଅ । କାଦୁଅ ପୋଛି ଲୁଗା ଘୋଡାଅ । ଟାକୁ ସାଷ୍ଟାମ କର । ଟେକିନିଅ ଡାକ୍ତର ପାଖକୁ । ଆସ, ଆସ କିଏ କୋଉଠି ଅଛ । ୟାକୁ ଡାକ, ଟାକୁ ଡାକ, ଧାଆଁ, ଖବର ଦିଅ !!!"

ଲୁଗା ଅଣ୍ଟିଲା ନାହିଁ । ଶୀତ ବଳେଇଗଲା; ନଗ୍ନତା ବଳେଇଗଲା । ଆହାର ଅଣ୍ଟିଲା ନାହିଁ । ଭୋକ ବଳେଇଗଲା । ଓଷୁଅ ନଥିଲା । ପଟି ନଥିଲା । ଡାକ୍ତର ନଥିଲା । ଡାକ୍ତରଖାନା ନଥିଲା । ଯନ୍ତ୍ରଣା ବଳିଗଲା । ଅସହାୟ ମୃତ୍ୟୁ ବଳିଗଲା ।

ଚତୁର୍ଦ୍ଦିଗରୁ ଶୁଭିଲା ବିଳାପ । ଶୁଭିଲା ଚିତ୍କାର । ଶୁଭିଲା ଆର୍ତ୍ତନାଦ । କାହିଁ କେତେବାଟ ଶୁଭିଲା କେଜାଣି । ବୋଝେଇ ଟ୍ରକ୍ ସବୁ ଧାଡିବାନ୍ଧି ଆସି ପହଞ୍ଚିଗଲେ ଦୂରଦୂରାନ୍ତରୁ, କେତେ କେତେ ଲୋକ ଆସି ପହଞ୍ଚିଗଲେ । କେତେ କେତେ ପ୍ରକାର ଜିନିଷ ଆସିଗଲା ।

"କୋଉଠି କ'ଣ ପ୍ରୟୋଜନ ଅଛି କହ, ଆମେ କୁଢେଇଦବୁ । ନିଅ, ଆହାର ନିଅ । ନିଅ ବସ୍ତ୍ର । ନିଅ ଔଷଧ । ନିଅ, ନିଅ ଯେତେ ପାରୁଛ । ଆମେ ଆସିଛୁ ଦେବାପାଇଁ । ଆମେ ରାଜସ୍ଥାନରୁ ଆସିଛୁ, ଦିଲ୍ଲୀରୁ, ପଞ୍ଜାବ, ଗୁଜୁରାଟ, ମହାରାଷ୍ଟ୍ର, ଆନ୍ଧ୍ର, ବିହାର, ବଙ୍ଗରୁ ଆସିଛୁ । କାଞ୍ଚିକାମକୋଟିରୁ ଆସିଛୁ । ଜୈନ, ଖ୍ରିସ୍ତାନ, ବୌଦ୍ଧ ଅନୁଷ୍ଠାନରୁ ଆସିଛୁ । ଆମେ ଦେବାକୁ ଆସିଛୁ । କେମିତି ଦେବୁ, କାହାକୁ ଦେବୁ, କେତେ ଦେବୁ, କ'ଣ ଦେବୁ ? ତୁମେ କହ !"

ବିଳପୁଥିବା ସ୍ୱର, ଚିତ୍କାର, ଆର୍ତ୍ତନାଦ ଏମାନଙ୍କୁ ଶୁଭିଲା ନାହିଁ । ଏମାନଙ୍କ ଘୋଷଣା ସେମାନଙ୍କୁ ଶୁଭିଲା ନାହିଁ ।

ଏତିକିବେଳେ ଆବିର୍ଭୂତ ହେଲେ ଦାମୋଦର ଖିଟୁଆ ଓ ସହଯୋଗୀମାନେ । କୁଆଡେ ଥିଲେ ଏତେକାଳ ? କେଜାଣି !

ଏମାନଙ୍କ ଭିତରେ ଦୁର୍ଦ୍ଦାନ୍ତ ଦନ୍ତା ହେଉଛି ଦାମିଆ । ସେ ବହୁଘାଟ ପାଣି ପିଇସାରିଛି । ସେ କିଛି କରେନାହିଁ, ତା' ମାନେ ଏମିତି କିଛି ଧରାବନ୍ଧା କାମ କରେନାହିଁ । ତା'ର କାମ କେବଳ ମୌକା ଉପରେ । ମୌକା ପାଇଲେ ସେ ତା'ର ଡେଣା ମେଲି ଖେଦିଆସେ ।

ଏବେ ଯେଉଁ ମୌକା ଆସି ପହଞ୍ଚିଛି, ଟାକୁ ଦାମିଆ କେବେ ହାତଛଡା କରିବ ନାହିଁ – ଅନ୍ୟମାନେ ମିଶନ୍ତୁ ବା ନମିଶନ୍ତୁ ।

କିନ୍ତୁ ତା' ସାଥୀରେ ଅନ୍ୟମାନେ ଆସି ମିଶିଗଲେ । ଏକାଠି ହେଲେ ଆତ୍ମା ଘରେ । ବିଡି ଟାଣିଲେ । ହୋ ହୋ ହେଲେ । ତା'ରି ଭିତରେ ଯୋଜନା କରିନେଲେ ।

ବାହାରୁ ଯେତେ ସବୁ ଆସିଛନ୍ତି, କାହାକୁ ବାଟଘାଟ ଜଣାନାହିଁ । ଯୁଆଡେ କଢେଇ ନବ ସେଇଆଡେ ମାଡିଯିବେ । ତାଙ୍କୁ ଅବାଟରେ ପୂରେଇ ଦେବାକୁ ହେବ ।

ସେମାନେ କୁମ୍ଭମେଳାରେ ମୁଣ୍ଡ ବୁଡେଇଲା ଭଳି ଗୋଟାଏ 'ହୋ'ରେ ମାଡି ଆସିଛନ୍ତି । ବିପତ୍ତିରେ ପଡିଥିବା ମଣିଷଙ୍କୁ ସାହାଯ୍ୟ କରିବେ । ସେବା କରିବେ । ଦାନ-ପୁଣ୍ୟ କରିବେ ।

ଏଠି ଯେଉଁଠି ମନ ସେଇଠି ଦୁଃଖୀ ଦରିଦ୍ର ପୂରି ରହିଛନ୍ତି । ଦେଖେଇଦେବା । ଭଙ୍ଗା ଘରଘର, ଉପୁଡା ଗଛ, ଅଭାବ ନାହିଁ । ଦେଖେଇଦବା । ତା'ପରେ ଗୋଟାଏ ଗୋଟାଏ ପୁରୁଣା ଗୋଦାମ ଆଗରେ କନା ବ୍ୟାନର ମାରିଦବା 'ଗୋପବନ୍ଧୁ ସ୍ୱେଚ୍ଛାସେବୀ ଯୁବସଂଘ' । ସେଇଠି ମାଲ୍ ଓହ୍ଲେଇଦବା । ଦି'ଚାରିଟା ପିଲା, ମାଇକିନାଙ୍କୁ କ'ଣ ବାଣ୍ଟୁଥିବା ଫଟୋ ତାଙ୍କ ହାତରେ ଧରେଇ ବିଦା କରିଦବା । ସରକାର ତ ମଲାଣି । କେହି କୁଆଡେ ଚଙ୍କୁ ନାହାନ୍ତି । କିଏ କୋଉଠୁ ଆସି ନାକେଇଲେ ତା' ହାତରେ, ମୁହଁରେ ଗୁଞ୍ଜିଦେବା । ସେଗୁଡାଙ୍କୁ କେତେଥର କିଣାହେଉଚି ଶସ୍ତାରେ । ଆଉଥରେ କିଣିଦବା ।

ତା'ପରେ ସେ ଚେର ଶେଠକୁ କହିବା ରାତାରାତି ମାଲ୍ ପାରିକରିନବ । ରୋକଡ ନେଇ ଆସିବ । ତା'ର ଅଧେକୁ ଆମର ଅଧେ ।

କିଛି ମାଲ ନେଇ ସତସତିକା ଗୋଟାଏ ଗାଁରେ ପହଞ୍ଚିବା । ସେଇଠି ସମସ୍ତଙ୍କ ଆଖିରେ ପଡିଲାଭଳି ସାହାଯ୍ୟ ବିତରଣ କରିବା । ଆଉ ନାମଜାଦା ଗୋଷ୍ଠୀ ସାଙ୍ଗେ ମିଶିଯିବା । ବିଶ୍ୱାସ ଜମେଇଦବା । ତେଣିକି ବଳେ ମାଲ୍ ଆମ ଜରିଆରେ ବଣ୍ଟାହବା ପାଇଁ ଆସିଯିବ । ତାକୁ ଆମ ଆମ ଭିତରେ ବାଣ୍ଟିନବା ।

ବେଶ୍ ବଢିଆ ଯୋଜନା । ଆଜିକାଲି ଚଲାକି ନଥିଲେ କ'ଣ ଚଳିହବ ! ଦୀପ ତେଜିବ ଅଥଚ ହାତ ଚିକ୍କଣ ହବନାହିଁ ଯେ କ'ଣ ଗୋଟେ କଥା !

ଗୋଟାଏ ତା' ଭିତରୁ କହିଲା, "ଆଛା ପ୍ରଥମ ମାଲଟାରୁ କେତେ ମିଳିବ ? ହାରାହାରି ଗୋଟାଏ ହିସାବ କରୁନା !"

"ପ୍ରଥମ ଟ୍ରକ୍‌ରେ କ'ଣ ଜିନିଷ ଆସିଥିବ ଜାଣିଲେ ସିନା । ଯଦି ଧର ଆଳୁ ଟ୍ରକ୍‌ଟାଏ ହାବୁଡେ ପଡିଗଲା, ତା'ହେଲେ ବିଶେଷ କିଛି ମିଳିବ ନାହିଁ । ଯଦି କମ୍ବଳ ଟ୍ରକ୍‌ଟାଏ ମିଳିଗଲା ତେବେ କଚ୍ଚେପୁଅ ବାର !"

ଆଉ କିଏ କ'ଣ କହିବାକୁ ଯାଉଥିଲା ।

ଦାମୋଦର ଖଟୁଆ ବିଡିଟା ଫିଙ୍ଗିଦେଲେ ଚିତ୍କାର କଲା, 'ଚୋପ୍ ବେ, ମାଇଚିଆ ଦଳ ! ତମେ ଶଳେ ଏଇମିତି ଖାଲି ଚଷ୍ଟୁ କୁଟୁଥବ । ତମ ହାତରେ ଖଡା ଶିଝିବ ନାହିଁ । ଆବେ କେତେ ରାଜ୍ୟ ପାରିହୋଇ ସେ ଟ୍ରକ୍ ସବୁ ଆସିଛନ୍ତି । ସେଥିରେ ଯୋଉମାନେ ଆସିଛନ୍ତି, ସେଗୁଡା କ'ଣ ନାକବାଟେ ଭାତ ଖାଇଛନ୍ତି ? କୁକୁର ପିଲାକୁ ଡାକିଲା ପରି ଡାକିଦବ "ଆ ଚୁ' ଚୁ" ଆଉ ସେମାନେ ତମ ପଛେ ପଛେ ଗୋଡେଇ ଆସିବେ ?

"ଆବେ ମର୍ଦ ଭଳି କାମ କର, କିଛି କଳାପଟି ଯୋଗାଡ କର । ହାତ ହତିଆର ସଜିଲ୍ କର ! ଗୋଟାଏ ଭଡାଟିଆ ଗାଡି ସଜିଲ କର, ତା'ପରେ ଝାମ୍ପ ମାର । ଲୁଣ୍ଠନ କରିବାର ମଜା ଆଉପ୍ରକାର । ସେଇଟା ଚେରି, ମିଛ ବେପାରରେ ନଥାଏ ।"

"ମନେରଖ, ଏବେ କେହି କୁଆଡେ ନାହାନ୍ତି ହାରି ଗୁହାରି ଶୁଣିବାକୁ । ଯିଏ ବି ଆସୁଛନ୍ତି ସେମାନଙ୍କର ନିସ୍ତାର ନାହିଁ । ସେମାନେ ଖଣ୍ଟ ହାତରେ ନ ପଡିଲେ ଡକେଇତ ହାତରେ ପଡିବେ । ମାଲ ଖଲାସ ହେଇଯିବ ଯେମିତି ହେଉ । ସବୁ ଛକରେ ସ୍ୱେଚ୍ଛାସେବୀମାନେ ଜଗିଦେଲେଣି । କେହି ଉବୁରି ଯିବେ ନାହିଁ ।"

"ମୁଁ ଶୁଣୁଛି ବାସମତୀ ଚାଉଳ ଆସୁଛି । ଟାଓ୍ୱେଲ, ଧୋତି, ଶାଢି, ପେଣ୍ଟ, ଶାର୍ଟ ଆସୁଛି । ସେଓ, ଅଙ୍ଗୁର, ଛେନା, ମଖନ୍ ଆସୁଛି । କିଛି ଗରମ ପୋଷାକ ଓ କମ୍ବଳ ବି ଆସୁଛି । ଆଉ ଜାଣିଛ ନା ? ଷ୍ଟିଲ୍‌ର ଡେକ୍‌ଚି, କରେଇ, ଲୋଟା, ବାଲ୍‌ଟି ବି ଆସୁଚି । ଜାତି ଜାତି ସାବୁନ୍ ଆଉ ଟାଓ୍ୱେଲ ! ଯେ ଏ ସବୁ ପଠଉଛନ୍ତି, ସେମାନେ ଗୁଡିଏ ଓଲାଭଗିଆ । ତାଙ୍କର ଧାରଣା ନାହିଁ ଆମ ବିଷୟରେ । ଆମ ମାଟି ପାଣି ପବନ ବିଷୟରେ ।"

ଖେଁ ଖେଁ ହସିଲା ଦାମିଆ । ଚେଲାମାନଙ୍କର ଦାମ ଦାଦା !

କହିଲା, "ଗୋଟାଏ ଅଭିଲା ଚରି ପାଞ୍ଚ ବସ୍ତା କଳ ଖେଳଣା ପଠେଇଛି । ସବୁଗୁଡାକ ଦାମି, ଦୁଇଶହ, ତିନିଶହ, ପାଞ୍ଚଶହ, ହଜାରେ ! – ପାଣି କାଦୁଅରେ ଲଙ୍ଗଳା, ଭୋକିଲା ମଣିଷଛୁଆ ବେମ୍‌ଜାନ୍ ଉଡେଇବେ । ହାଃ ହାଃ ହା !"

"ସେଗୁଡା ସବୁ ଚଲାଣ ହେଇଯିବ । ବଢିଆ ପଇସା ମିଳିବ ।"

ଦାମିଆର ଆଖି ଦାଢୁଆ ହେଇଗଲା । ସେ ଗୁମ୍‌ମାରି ରହିଗଲା । ତାକୁ ଆଉ ଗୋଟେ ରାଜ୍ୟ ବୋଧେ ଦିଶୁଥିଲା ।

ହଠାତ୍ କହିଲା, "ଯାଅ, ସବୁ ବାହାରିପଡ । ହାଇଓ୍ୱେରେ ଧାଡି ମାରିଥିବା ଗାଡିର ହିସାବ ନେଇ ଆସ – ଗାଡି ନମ୍ବର, କୋଉଠୁ ଆସିଛି, କ'ଣ ମାଲ ଆଣିଛି । ଡ୍ରାଇଭରର ନାଁ ଆଉ ଚେହେରା ।"

ଆଜି ରାତି ଅଧବେଳକୁ କାମ ସୁରୁ । ବାଃ... ସପ୍ତାହେ ଭିତରେ ସମସ୍ତେ ଲାଖ୍‌ପତି । ଲାଖ୍‌ପତି !! କ'ଣ ବୁଝୁଛ ନା ନାହିଁ ?

ଦାମ୍ ଦାଦା ଡେଇଁପଡି ତା' ଖମ୍ବ ଭଳି ଦୁଇ ଜଙ୍ଘକୁ ଥାପୁଡିଲା । କିର୍ କିର୍ ଶବ୍ଦ କରି ଘୂରିଲା ।

ହଠାତ୍ ଥମିଯାଇ ରଡିକଲା 'ଯାଅ' । ବାତ୍ୟାରେ ପତ୍ର ପରି ସମସ୍ତେ ଉଭେଇ ଗଲେ ।

ଦାମିଆ ସାହସୀ । ସବୁ ଭୋଜିରେ ସେ ପେନ୍‌ସିଲ୍ ଚଞ୍ଛିଲା ପରି କୁକୁଡାର ମୁଣ୍ଡଟାକୁ ଉଡେଇଦିଏ । ରକ୍ତ ଦେଖିଲେ ସେ ଛାନିଆ ହୁଏ ନାହିଁ । ଥରେ ଶତ୍ରୁପକ୍ଷ ତାକୁ ଏକୁଟିଆ ପାଇ ଘେରିଯାଇଥିଲେ । ସେ ଗୋଟାଏ ସାଇକଲ୍ ଚେନ୍‌ରେ ଛଅ ଜଣଙ୍କୁ ଘାଇଲା କରିଦେଲା ।

ସେମାନଙ୍କ ଭିତର ମହା ଷଣ୍ଡାମାର୍କା ଟୋକା । ଦାମିଆ ସେଇ ସାଇକଲ୍ ଚେନ୍‌ରେ ତା' ଖପୁରି ଫଟେଇ ଦେଇଥିଲା । ତା' ଆରଦିନ ଡାକ୍ତରଖାନାରେ ସେ ମରିଗଲା ।

ଦାମିଆଟା ବାପଛେଉଣିଆ । ଘରେ କେବଳ ମା' । ଯାକୁ ଖୁଆଇ ପିଆଇ ହାତୀ ପୋଷିଲା ପରି ପୋଷିଛି । ବାପର ପେନ୍‌ସନ୍‌ରେ ସେମାନେ ଚଳନ୍ତି । ଦାମିଆକୁ ଅଠର ବର୍ଷ ହେଲା ଦିନୁ ସେ ସମସ୍ତଙ୍କ ଆଗରେ ଗୋଡଭାଙ୍ଗି ଠିଆହେଇଚି । ତା' ମା' ଠିଆ ହେଇଚି । କେହି ତା' କଥା ଶୁଣିନାହିଁ । ତାକୁ ଏଇନା ପଚିଶ ବର୍ଷ । ବହୁ ପରିଶ୍ରମରେ ପଢାପଢି କରି ଡିଗ୍ରୀ କାଗଜଗୁଡିଏ ଏକାଠି କରିଛି, ବିକିପାରି ନାହିଁ ।

ତା' ବାପ ଯୋଉ ଦପ୍ତରରେ ଚାକିରି କରୁଥିଲା ତା'ର ବାବୁ ପାଖରେ ତା' ମା' ଦରଖାସ୍ତ ନେଇ ପହଞ୍ଚିଗଲା । ସେ ତାକୁ ସେମିତି ଘଣ୍ଟାଏ ଠିଆ କରେଇ ରଖିଲା । ଦରବୁଢା ଆଇଁଷଖିଆ କହିଲା, "ତୋର ତ ବଳ ବଅସ ଅଛି । ପାଠ ନ ଥିଲେ କ'ଣ ହେଲା! ତୁ ଏଠି ଲାଗିଯାଉନୁ । ଅଫିସର୍‌କୁ ଚା ଜଳଖିଆ ପରଶିଦବୁ!" ବୁଝିଲା ବୁଝେଇଲା ଢଙ୍ଗରେ ହସିଦେଇ ପାନ ଖଦା ପକେଇଲା ।

ଦାମିଆ ମା' ଅଥୟ ହେଇ କାନ୍ଦିଲା । ବହୁ କଷ୍ଟରେ ତଳକୁ ଆଖି କରି ପୁଅକୁ ସବୁ କଥା କହିଦେଲା । ଭୃଇଁ ଓଦା ହେଇଗଲା ତା' ଲୁହରେ ।

ସେଇଦିନ ରାତିରେ ମୁଖା, ଗ୍ଲୋଭ୍‌ସ ପିନ୍ଧା କେହି ଜଣେ ଦୁଃଶାସନ ବେବର୍ତାକୁ କୀଚକ ମାରେଣିରେ ହାତ ଗୋଡ ଭାଙ୍ଗି ମାଂସପିଣ୍ଡୁଳା କରି ଗଡେଇ ଦେଇଥିଲା ତା' ବସାଘରେ । ତିନିବର୍ଷ ହେଇଗଲା କିଛି ଜଣା ପଡୁନାହିଁ ।

ଲୋକେ ଖାଲି ଘୋଷି ହେଉଛନ୍ତି, "କେମିତି ଗୋଟେ ଜିଅନ୍ତା ମଣିଷକୁ ମାଂସ ପିଣ୍ଡୁଳା କରିଦେଲା ? କିଏ ସେ ମଣିଷ ନା ଗନ୍ଧର୍ବ ? ସେ ଯେ ହେଉ, ତା'ର କି ବଳ; କି କ୍ରୋଧ !"

ସଞ୍ଜବେଳେ ଦାମିଆ ଘରେ ଯାଇ ପହଞ୍ଚିଲା । ମା' ତାକୁ ରୁଟି ସେକି ବାଇଗଣ ଭରତା ସାଙ୍ଗରେ ବାଢିଦେଲା । ଦାମିଆ କଞ୍ଚାଲଙ୍କାଟାଏ ମାଗି ଭାତୁ ଭାତୁ ଚୋବେଇଦେଲା । ଆଖିରୁ ପାଟିରୁ ତବତବ ପାଣି ନିଗିଡିଗଲା । ହାକୁଟି ଉଠିଲା । ଢାଳେ ପାଣି ପିଇନେଇ ସେ ଉଠିପଡିଲା । ଆଉ ଦି' ଖଣ୍ଡ ରୁଟି ସେ ଖାଇଥା'ନ୍ତା, ଖାଇଲା ନାହିଁ ।

"ଆରେ, ଅଧପେଟରେ କାଇଁ ଉଠିଲୁ ?"

ଦାମିଆ କିଛି ନ କହି ମୁହଁ ଧୋଇବା ପୂର୍ବରୁ ପଛକୁ ଚାହିଁ କହିଲା, "ତତେ ଦି'ଖଣ୍ଡ କମ୍ବଳ ଦେଲେ ଏ ଶୀତଟା ପାରି ହେଇଯା'ନ୍ତା ।"

"ଆରେ, କମ୍ବଳ କୋଉଠୁ ଆଣିବୁ ? ଆଣିଲେ ତୋ' ପାଇଁ ଆଣ୍ । ମୋର ସେ ଚୁସାଟାରେ କାମ ଚଳିଯିବ !"

"ଶହ ଶହ କମ୍ବଳ ଆସିଛି ବଣ୍ଟାହବା ପାଇଁ । ସେ ଶଳେ ଆମକୁ ଦେବେନାହିଁ । ଆମର ପରା ଛାତ ଖଣ୍ଡ ଉଡିଯାଇନାହିଁ !"

ଆଉ କିଛି ନ କହି ଦାମିଆ ଭୁସ୍ ଭୁସ୍ ବାହାରିଗଲା । ଏକବୁଝା ହୁଣ୍ଡା ପୁଅକୁ ମା' ଚାହିଁ ରହିଥିଲା, ପଛରୁ କବଚ ଘୋଡେଇଲା ପରି । ରାତି ଅଧକୁ ହାକ କୁହାଟ ଶୁଭିଲା ।

ଦାମିଆ ବିଜୁଳି ପରି ନୀରବ ଚହଟିଗଲା । ଟ୍ରକ୍ ଉପରେ ଚଢ଼ିଯାଇ ତାର୍ପଲିନ୍‌ଟାକୁ ଜନ୍ତୁର ପେଟ ଚିରିଲା ପରି ଚିରିଦେଲା । ମୋଟା ଦଉଡି ସବୁ ଗୋଟାଏ ଲେଖା ଚେଟରେ ଛିଣ୍ଡିଗଲା ।

ଭିତରୁ ସେମାନେ ଓଟାରି ଆଣିଲେ ସଂପଦ ।

ଟ୍ରକ୍‌ବାଲାଏ ମଳମଳ ଆଖିରେ ଚାହିଁରହିଲେ । କେହି କିଛି ପ୍ରତିବାଦ କଲେନାହିଁ । ମାଲ୍ ଖଲାସ ହେବାକଥା – ଯୋଉଠି ମନ ସେଇଠି ଖଲାସ ହେଇଗଲେ କ'ଣ ଯାଏ ଆସେ ?

ସେମାନେ ଆସି ମଝିଦରିଆରେ ଲାଖିଗଲା ପରି ଅନୁଭବ କରୁଥିଲେ । ନା ଫେରି ପାରୁଥିଲେ ନା ଆଗେଇ ପାରୁଥିଲେ । ଭଲ ହେଲା, ଖଣ୍ଡ ହାତରେ ଖାଲି ହେଇଗଲେ ସେମାନେ ଗୋଟାଏ ଦାୟରୁ ମୁକୁଳିଯିବେ ।

ତାଙ୍କ ଢଙ୍ଗଢାଙ୍ଗରୁ ଜଣାପଡୁଥିଲା ଯେ ତାଙ୍କୁ ପଚାରିଥିଲେ ସେମାନେ ସବୁ ମାଲ୍ ଚିହ୍ନଟ କରିଦେଇଥା'ନ୍ତେ; ଓହ୍ଲେଇ ଦେଇଥା'ନ୍ତେ ।

ତାଙ୍କ ଭିତରେ କିନ୍ତୁ ଜଣେ ଥିଲା । ଡେଙ୍ଗା ପାତଳା ମଣିଷ । ସେ ପଛରେ ହାତଛନ୍ଦି ଠିଆ ହେଇଥିଲା । ଚେରାବତି ଥରେ ସେଇଆଡେ ବୁଲିଆସିଲା ବେଳେ ଦାମିଆ ତାକୁ ଦେଖି ଭୃରୁ କୁଞ୍ଚେଇ ଦେଇଥିଲା । ସେ ତା' ପଛରେ ପିସ୍ତଲ୍ ଧରିନାହିଁ ତ !

ସେ କିନ୍ତୁ ଆସ୍ତେ ଦୁଇହାତ ସାମ୍ନାକୁ ଆଣିଲା । ଅହିଂସ୍ର, ନିରୀହ ପଞ୍ଜାବୀପିନ୍ଧା ହାତ ଯୋଡିଏ ।

ଦାମିଆ ବୋଧହୁଏ ସେ ଘୋର କର୍ମବେଳେ ସାମାନ୍ୟ ହସିଦେଲା ମନକୁ ମନ । ଶୀତ ରାତିରେ ସମସ୍ତଙ୍କ କପାଳରୁ ଝାଳ ନିଗଡିଯାଉଥିଲା ।

ଆମାସେତର ଗାଡିରେ ଯେତେ ଲଦାଯାଇପାରେ ବୋଝେଇ ହେଉଥିଲା । କାମ ପ୍ରାୟ ସରିବା ଉପରେ ।

ଏତିକିବେଳେ ସେ ଲୋକଟା ପ୍ରଖର ଅଗ୍ନିଶିଖା ପରି ଫଡ୍‌କିନା ଲେଉଟିପଡିଲା । ଏମାନେ ସବୁ ଛାତି ଚଉକସ ହେଇଗଲେ ।

ସେ ତା' ସହକର୍ମୀମାନଙ୍କୁ ଡାକି ନେଇଗଲା, ରାସ୍ତା କଡରେ ଉପୁଡି ପଡିଥିବା ଗୋଟାଏ ବୃହତ୍ ଗଛର ଗଣ୍ଡି ଆଡକୁ ।

ସେଇଠି ଉଦ୍‌ବାସ୍ତୁ ସର୍ବହରା ଗାଁଲୋକ ମଳା ବାନ୍ଧି ବସିଥିଲେ । ସେ ଲୋକଟା ଚେରାବତି ଜାଳି ସେମାନଙ୍କୁ ନିରେଖି ଚାହିଁଲା । ପଛକୁ ମୁହଁକରି ରାତିର ନୀରବତାକୁ ଫାଳ ଫାଳ କରି କହିଲା – "ଆବେ, ଦରିଦ୍ରୋ, ତୁମ୍‌କୋ ଯୋ ଲୁଟ୍‌ନା ହେ ଲୁଟ୍ ଲୋ । ହମେ ଯୋ ଲୁଟ୍‌ନା ହେ, ହମ ଲୁଟେଙ୍ଗେ ।"

ସେ ଖପ୍‌କିନା କାହାର ଡେଣାଟା ଧରିପକେଇଲା । ଗୋଟାଏ ଚିତ୍କାର ଶୁଭିଲା । ଚଉଦ

ପନ୍ଦର ବର୍ଷର ଝିଅଟିଏ ବୋଧହୁଏ । ଅନ୍ୟମାନେ ହାଉଳି ଖାଇ ରଡିକଲେ ।

ଆଖି ପିଛୁଡାକେ ଦାମିଆ ଟ୍ରକ୍ ଉପରୁ ଖସିଆସି ଧାଇଁଗଲା ସେଠିକି । ତା' ଆଖିରୁ ନିଆଁ ଝୁଲ ଖସୁଥାଏ । ହାତରେ ଛୁରୀ ଝଟକୁଥାଏ । ଦେହ କମ୍ପୁଥାଏ ଅସୁମାରି କ୍ରୋଧରେ ।

ସେ ଲୋକଟାର ଚୁଟି ବାଁ ହାତରେ ଧରି ଚିତ୍କାର କଲା, "ଆବେ, ଛୋଡ, ନହିଁତୋ ୟେ ତେରେ ତୌଁଟ୍ ମେ ଘୁସେଡ ଦୁଁ ।"

ସେ ଲୋକଟା ଅସମ୍ଭବ ରକମ ସ୍ଥିର ଦେଖାଯାଉଥିଲା । ସେ ଝିଅର ଡେଣାଟିକୁ ତଥାପି ଧରିଥିଲା ।

କହିଲା, "କୌଁୟା ? ୟେ ତେରି ବହନ୍ ଲଗତି ହେ ? କୌଁୟା ଚିଲ୍ଲା ରହେ ହୋ । ୟେ ତେରେ ମୁଲକ କେ ଲୋଗ୍ ହେଁ । ତୁମ୍ ଇନ୍‌କେ ଖାନା କପଡା ଲୁଟ୍ ରହେ ହୋ । ହମ୍ ଇଜ୍ଜତ୍ ଲୁଟନା ଚାହତେ ହେଁ । ହିସାବ ବରାବର ହେ । କୌଁୟା ଚିଲ୍ଲା ରହେ ହୋ ?"

ଏତିକି କହି ସେ ଡେଣା ଛାଡିଦେଲା । ଝିଅଟିର ମୁଣ୍ଡରେ ହାତ ସାଉଁଳିଦେଲା । "ଦେଖୋ, କଲ୍‌ସେ ୟେ ହମାରେ ହିଫାଜତ୍ ମେ ହେ । ହମ୍‌ନେ ଇନ୍‌କୋ, ଅପ୍‌ନା ଖାନା ଖିଲାୟା, ଅପନି ପାନି ପିଲାଇ । ଇନ୍‌କୋ ଏ ସବ୍ କପଡା ପହନାୟା । ଅରେ ହମ୍‌ନେ ତୋ' ଏ ନାଟକ ରଚ ରହେଥେ, ତୁମ୍‌କୋ ସମଝାନେକେ ଲିଏ, ପରଖ୍‌ନେକେ ଲିଏ । ୟେ ତୋ' ମେରି ବେଟୀ ହେ । ମେରେ ହୋତେ ହୁଏ ଅଗର କୋଇ ଇସ୍‌କେ ଉପର୍ ହାତ୍ ଉଠାୟା ତୋ' ହମ୍ ଉସ୍‌କା ଖୁନ୍ କର୍‌ଦେଙ୍ଗେ ।"

ଦାମିଆର ନାଡି ଗ୍ରନ୍ଥି ସବୁ ଢିଲା ହେଇଗଲା । କାକର ପବନ ବାଜି ତା'ର ଝାଳୁଆ ଦେହ ଶୀତେଇ ଗଲା । ତା' ହାତରୁ ଠପ୍ କିନା ଛୁରୀଟା ଖସିପଡିଲା ।

ସେ ଲୋକଟା କହିଚାଲିଥିଲା, "ତୁମ୍ ସବ୍ କିସ୍ ମିଟ୍ଟିକେ ବନେ ହୋ ? କିସ୍ ପାନି, କିସ୍ ହାଓ୍ୱାସେ ପଲେ ହୋ ? ହଜାର୍ ମିଲ୍ ସେ ହମ୍ ୟେ ରାହତ୍ ଲେକେ ଆୟେ ହେଁ; ତୁମ୍‌ହାରେ ମୁଲ୍କକେ ଏ ଭୁଖେ, ନଙ୍ଗେ, ବେସାହାରା ଇନ୍‌ସାନୋ କେ ଲିଏ ! ଔର ତୁମ୍ ଯୋ ହମେ ଲୁଟ୍ ରହେ ହୋ ! ଇନ୍‌କୋ ଲୁଟ୍ ରହେ ହୋ । ଆରେ ଐସେ ତୋ' ଜାନୁଆର୍ ଭି ନହିଁ କରତେ । ଧିକ୍କାର ହେ ତୁମଲୋଗୌଁପର । ଉପର ସେ ନିଚେ ତକ ସବ୍ ଗଦାର ହୋ । ସବ୍ ଲୁଟେରେ ହୋ । ୟେ ଟ୍ରକ୍ କୋ ବଚ ବଚ କର ୟହାଁ ତକ୍ ଲାୟେ ହେଁ । ଲେଲୋ ୟେ ସବ୍ ସାମାନ୍ । ଲେଲୋ ୟେ ଟ୍ରକ୍ । ହମ୍ ପୈଦଲମେଁ ହିଁ ଅପନା ଦେଶ୍ ଲୌଟ୍ ଜାୟେଙ୍ଗେ !"

ଲମ୍ବା ପାହୁଣ୍ଡ ପକେଇ ସେ ଦାମିଆ ସାମ୍ନାରେ ଚାଲିଯାଉଥିଲା । ତା'ର ସବୁ ଚେଲାକୁ ବିସ୍ମିତ କରି ସେ ଲୋକଟାକୁ ଦାମିଆ ବାହୁ ବେଢେଇ ଧରିନେଲା । ତା'ର ବୁକୁ ଉପରେ ମୁଣ୍ଡ ରଖି ସେ ସକ୍ ସକ୍ କାନ୍ଦିପକେଇଲା । ତା' ପେଟ ହୁଡା ହୁଡା ହେଇ ଭାଙ୍ଗିପଡୁଥିଲା । ବୁକୁ ବିଦାରି ହେଇ ଯାଉଥିଲା । ତା' ଆଖିରୁ ନିଆଁଝୁଲ ପରି ତାତିଲା ଲୁହ ଝରିଯାଉଥିଲା ।

ତା'ପରେ ଆମାସେଡଦରରୁ ସବୁ ମାଲ୍ ଟ୍ରକ୍‌ରେ ଲଦା ହେଇଗଲା । ଫଟା ଟରପଲିନ୍

ଉପରେ ନୂଆ ଦଉଡିରେ ଚଉରସ ବନ୍ଧାହୋଇଗଲା ।

ଜାହାଜ ମାସ୍ତୁଲରେ ଜଗୁଆଳି ପରି ଟ୍ରକ୍ ଉପରେ ଦାମିଆ ବସିରହିଲା । ଗଛ କଟା ହୋଇ ରାସ୍ତା ହେଇଗଲା । ପାଣିଘେର ଭିତରକୁ ସରୁ କୋଣଳିରେ ଜିନିଷ ବୁହା ହୋଇଗଲା ।

ଦିନ ରାତି ଜଣାପଡିଲା ନାହିଁ । ଭୋକ, ଶୋଷ, ନିଦ ଭୁଲି ଯାଇଥିଲେ ସେମାନେ । ଟ୍ରକ୍ ସାମ୍ନାରେ ଗୋପବନ୍ଧୁ ସେଚ୍ଛାସେବୀ ଯୁବସଂଘର ବ୍ୟାନର୍ ଲଗାହେଇଥିଲା । ଟାଙ୍କ ପଛେ ପଛେ ଅନ୍ୟ ଟ୍ରକ୍ ଲାଇନ୍ ଲଗେଇ ଚାଲିଥିଲେ ।

ଆଠଦିନ, ଆଠରାତି କଣ୍ଟାଝଣ୍ଟା, ପାଣିକାଦୁଅ ଭିତରେ ଝଡଟାଏ ଭଳି ସେମାନେ ମନ୍ଥି ପଶୁଥିଲେ । ଆଠଦିନ ଭିତରେ ସବୁ ବଣ୍ଟା ହେଇଗଲା । ଗୁଡିଏ ସାର୍ଥକ ଖାଲି ଟ୍ରକ୍ ଚଳାଇ ସେମାନେ ଫେରିଆସିଲେ ।

ଦାମିଆର ଜାମା ପ୍ୟାଣ୍ଟ୍ ସୋରା ହୋଇଯାଇଥିଲା । କାଦୁଅ ଲଟପଟ ହୋଇଯାଇଥିଲା । ତା' ଆଖି ପଶିଯାଇଥିଲା । ମୁହଁରେ ରୁଢ ଉଠିଯାଇଥିଲା । ହାତ ଗୋଡରେ ରାମ୍ପୁଡା ଦାଗରୁ ରକ୍ତ ଝରି ଶୁଖିଯାଇଥିଲା ।

ସେ ଡେଙ୍ଗା ପାତଳ ମଣିଷଟି ଟାଙ୍କ ଛୋଟ ହାତବାକ୍ସରୁ ହଳେ ପାଇଜାମା, ପଞ୍ଜାବୀ କାଢି ଦାମ ସାମ୍ନାରେ ଦୁଇ ହାତରେ ମୁଣ୍ଡ ନୁଆଁଇ ଟୋଳିଧରିଲେ – ସତେବା ମୁକୁଟଟିଏ ଧରିଛନ୍ତି ତା' ମୁଣ୍ଡରେ ପିନ୍ଧାଇଦବାକୁ ।

ଓହ୍ଲେଇଯିବା ବେଳକୁ ଦାମର ଗୋଡ ଟଳମଳ ହେଉଥିଲା । ଆଖି ଉପରକୁ ନିଦ ଘାରି ଆସୁଥିଲା । ସେ ଅଳ୍ପ ହସି କହିଲା – "ୟେ କପ୍‌ଡେମେ ଘେର ଲଗୁଗାଁ । ୟେ ତୋ' ମେରେଲିଏ ବହୁତ ଲମ୍ବେ ହେ ।"

ତଥାପି ତା' ହାତରେ ସେ ହଳକ ରଖିଦେଇ ସେ ତା' କାନ୍ଧକୁ ସାମାନ୍ୟ ଝୁଙ୍କିଦେଲେ, ଛଳ ଛଳ ଆଖିରେ ଚାହିଁଲେ କିଛି ସମୟ । କହିଲେ – "ଇସ୍ ଧରତିକେ ମିଟି ପାନି ଔର୍ ହାଓ୍ୱା ତୋ' ତୁମ୍ ଯୈସେ ଶେର୍ ପୈଦା କର୍ ସକ୍‌ତେ ହେଁ । ସିର୍ଫ ଓ୍ୱହି ଶେର୍‌କୋ ଜଗାନା ହେ ।"

ସେ ମୁହଁ ଫେରେଇ ଚାଲିଗଲେ । ଆଠଦିନରେ ଆଠଟା ଟ୍ରକ୍ ଅହରହ ଘୂରି ଘୂରି ଫେରୁଥିଲା । ସେମାନେ ସମସ୍ତେ ହାତ ହଲେଇ ବିଦାୟ ନଉଥିଲେ ।

ଦାମିଆ, ତା' ସାଙ୍ଗମାନଙ୍କୁ ନେଇ ଧୀରେ ଧୀରେ ଫେରୁଥିଲା । ପାଦ ପାଣିରେ ପଡୁଥିଲା କି କାଦୁଅରେ, ସେମାନେ ଦେଖୁନଥିଲେ ।

ଘରେ ଦାମିଆର ମା' ତାକୁ ଦେଖି ବୁକୁ ବାଡେଇ କାନ୍ଦିପକେଇଲା, ଦାମିଆ ସେମିତି ପାଣି ସରସର କାଦୁଅ ସଲବଲ ହେଇ ଗୋଟାଏ ଖଟିଆ ଉପରେ କୁଢେଇ ହୋଇ ପଡିଲା । ପଞ୍ଜାବୀ ପାଇଜାମା ହଳକ ଉପରେ ମୁଣ୍ଡରଖି ସେ ନିଘୋତ ନିଦରେ ଶୋଇଗଲା, କୋଟିପତି ପରି ।

ଯେଉଁ ଶିଆଳମାନେ ତା' ପିଛା କରୁଥିଲେ, ସାମ୍ନାକୁ ଆସିପାରୁନଥିଲେ । ଭୟରେ

ସେମାନେ ଘରିଆଡେ ହଲ୍ଲା କରିସାରିଥିଲେ, ସେ ଦାମିଆ ସବୁ ମାଲ୍ ଖାଇଗଲା । ଫଟ ଉଠାଳି, ଧୋବଧାଉଳିଆ ପତ୍ରକାରମାନେ, ପୋଷାକପିନ୍ଧା କ୍ରୀତଦାସମାନେ, ଭୋକିଲା ଶିଆଳମାନେ, ଦାମିଆର ଅଗଣାରେ ଆସି ଗୁଣ୍ଡ ହେଇଗଲେ ।

ଘରିଆଡେ ଆଖି ପକେଇଗଲେ । ଗୋଟାଏ ଶିଆଳ କହିଲା, "ହେଇ ଦେଖନ୍ତୁ ସାରେ, ଏ ନୂଆ ପୋଷକ ହଳକ ଦାମିଆ ଚୋରି କରିଛି । ବାକି ସବୁ କଲିକତା ପଠେଇ ବିକି ଦେଇଛି ।"

ଫଟ ଉଠାଳି ବିଭିନ୍ନ ଦିଗରୁ ଫଟ ଉଠେଇଗଲେ । ଦାମିଆ ତା' ମା'ର ଢୁସାଟି ଅଣ୍ଟାଯାଏ ଘୋଡେଇ ହୋଇ ନିଘୋଡ ନିଦରେ ଶୋଇଥିଲା ।

ସେମାନେ କ'ଣ ତାକୁ ଶୋଇବା ଅବସ୍ଥାରେ ହାତକଡା ପକେଇ ଘୋସାରି ନେବେ ? ତାଙ୍କ ମୁହଁରୁ ଆହାର ଛଡେଇବାର ଦୁଃସାହସ କରିଥିବାରୁ ଛକିକାଠ ଉପରେ କଣ୍ଟା ମାରିଦେବେ ?

ନା, ଏ ସିଂହ ଉଠିବା ମାତ୍ରେ ଏମାନଙ୍କୁ ଝୁଣି ପକେଇବ ? ତା' ନିଦ ଭାଙ୍ଗିବା ଯାଏ ଅପେକ୍ଷା କରିଛି ଧରିତ୍ରୀ, ଅପେକ୍ଷା କରିଛି ଏ ମାଟି ପାଣି ପବନ !!



# ମଞ୍ଚ ବାହାରର ଦୃଶ୍ୟ

ଏଣିକି ଆଗକୁ ଆଉ କିଛି ନାହିଁ ।

ଘରଦ୍ୱାର, ଗାଁ'ଗଣ୍ଡା, ରାସ୍ତାଘାଟ, ଗାଈଗୋରୁ, ଗଛପତ୍ର କିଛି ନାହିଁ । କାଦୁଅ ବି ଶୁଖିଗଲାଣି । ଆପଣ ଯେଉଁଠି ଠିଆହେଇଛନ୍ତି, ସେଇଠି ଗୋଟାଏ ବିରାଟ ରକ୍ତଗୁଣ୍ଡା ଗଛ ଉପୁଡି ପଡିଥିଲା । ଜଳ-କରତରେ ତାକୁ ଖଣ୍ଡଖଣ୍ଡ କରି ବୋହିନେଇଗଲେ – ସବୁ ଗଛ ସେମିତି ନେଇଗଲେ । ଠିଆ ଗଛକୁ ବି ତାଡି ନେଇଗଲେ । ସେମାନେ ଆଉ ଆସୁନାହାନ୍ତି । ଆଉ ଗଛ ନାହିଁ । ଶାଗୁଣା ବି ଆସୁନାହାନ୍ତି – ଆଉ ମଢ ନାହିଁ ।

ଆଖି ପାଇବାଯାଏଁ କିଛି କୁଆଡେ ଦିଶୁ ନାହିଁ । ଆପଣ ଆସନ୍ତୁ ମୋ' ସାଙ୍ଗରେ । ସେ ଯେଉଁ ଟିକିଏ ଉଞ୍ଚ ମାଟି ଢୁଡା ପରି ଦିଶୁଛି, ସେଠିକି ଚାଲନ୍ତୁ । ଶାଳଗୋହିରୀ ଗାଁ' ଆରମ୍ଭ ହୋଇଗଲା । ଗାଁ' ମୁଣ୍ଡ ଘର ରଘୁ ବେହେରାର । ଏ ଉଞ୍ଚ ମାଟି ଢୁଡା ତା' ଘରର ପୂର୍ବପାଖ କାନ୍ଥ । ତା' ଉପରେ ଛାତ । ଛାତ ଉପରେ ଲାଉ ଡଙ୍କ । ତିନି ବଖରା ଘରେ ପାଞ୍ଚପ୍ରାଣୀ କୁଟୁମ୍ବ । ବାଛୁରୀ ଲାଗିଥିବା ଦୁଧିଆଳୀ ଗାଈ । ହଳେ କସରା ବଳଦ । ତା' ପାଖକୁ ଧନି ସାମଲ, ଯୋଗୀ ପଧାନ । ଆରପଟ ଦକ୍ଷିଣମୁହାଁ ସାହିରେ ଯଦୁ ମିଶ୍ରେ, ମଧୁ ମହାନ୍ତି, ବୀର ରାଉତ । ପଚାଶ ଘର ବସ୍ତି । ଗୋଠେ ଗାଈ । ଗୋଠେ ପିଲା । ବୁଢାବୁଢୀ, ମାଇପୀ ମରଦ, ସୁଖଦୁଃଖ, ପର୍ବପର୍ବାଣୀ, କଳିତକରାଳ, ନ୍ୟାୟନିଶାପକୁ ନେଇ ଶାଳଗୋହିରୀ ଗାଁ । ସେ ମୁଣ୍ଡେ ଖଣ୍ଡେ ଗୋଚର । ତା' ପାଖକୁ ଶଙ୍ଖୁଆ ଡିହ, ଧାନୁଆ, ଦହିଖାଲ, ବାଁପଟେ ଝୁମ୍ପୁରି, କଂସାହାଣ୍ଡି, କୁଜିବଟା । ତେଣିକି ନଈ । ନଈ ଆରପାରି ଆହୁରି ଗାଁ – ଧାନଖେତ, ମନ୍ଦିର, ମଣ୍ଡପ, ହାଟ, ବଜାର, ସ୍କୁଲ ! ଏ ସବୁକୁ ଘେରିରହିଥିଲେ ଅସୁମାରି ଗଛ । ଗଛ ଛାଇରୁ ଗଛ ଛାଇକୁ ବାଟ ପଡିଥିଲା । ଗଛ ଗହଳିରେ ହାଟ ବସୁଥିଲା । ନାନା ଜାତି ପକ୍ଷୀ ଗଛମାନଙ୍କରେ ବସା ବାନ୍ଧୁଥିଲେ ।

ଆଗ ପକ୍ଷୀମାନେ ଛିନ୍ନଛତ୍ର ହୋଇ ମରିଗଲେ । ହାତୀପଲ ପରି ବତାସ ମାଡି ଆସିଲା । ଆକାଶ କମ୍ପିଲା ଦୁଲୁଦୁଲୁ ହୋଇ । ବଢିମୁହଁ ପାଣି ପରି, ପାହାଡରୁ ଖସୁଥିବା ପ୍ରପାତ ପରି ପବନ

ଗର୍ଜିଗଲା ପ୍ରଥମ ଧାପରେ । ମେଘ ପେଶିହୋଇ ପାଣି ହୋଇଗଲା । ପାଣି ଚୂରିହୋଇ ଚୂଣି ହୋଇଗଲା । ପବନ ଗର୍ଜିଲା ସମୁଦ୍ର ପରି । ଗଛରୁ ପତ୍ର ଦୂହିଁ ହୋଇଗଲା । ଶିରାଶିରା ଫାଳଫାଳ ହୋଇଗଲା । ଗଛ ଠିଆରେ ଚିରି ହୋଇଗଲା, ଉପୁଡି ପଡିଲା ଭୂଇଁ ଗର୍ଭରୁ । ଆକାଶରେ କୁଟାପରି ଚୂଣିହୋଇଗଲା ନଡା, ଗୁଅ, ଶେଣି । କାନ୍ଥ ଉପୁଡି ପଡିଲା ଗଛ ପରି । ପତ୍ର ପରି ଉଡିଗଲା ଟାଟି କବାଟ । ଦେଖୁ ଦେଖୁ ଟାଡି ନେଇଗଲା ଯା'ଘର ତା'ଘର, ଯା'କୁ ଟାକୁ, ଗାଈ ବାଛୁରୀ, ମଣିଷ, ପିଲା ମାଇପୀ ମରଦ । ଖୁଣ୍ଟକୁ ଆଉଜିଲେ ଖୁଣ୍ଟ ଟଳିପଡିଲା । କାନ୍ଥକୁ ଆଉଜିଲେ କାନ୍ଥ ଉପୁଡି ପଡିଲା । କେହି କାହାକୁ ସମ୍ଭାଳି ପାରିଲେ ନାହିଁ । କେହି କାହା ଡାକ ଶୁଣି ପାରିଲେ ନାହିଁ । ପବନ କୁହାଟିଲା ଶୂନ୍ୟରେ । ଶଙ୍ଖ ରାବିଲା ପରି ରାଉରାଉ ଡାକିଲା ଚତୁର୍ଦ୍ଦିଗ । ପାହାଡ ପରି କୁଢେଇ ହୋଇ ପଡିଲା ପାଣି ଆଉ ପବନ । ଘୋଷ୍ଟି ନେଇଗଲା, ରାମ୍ପି ନେଇଗଲା, ବିଦାରି ନେଇଗଲା, ମର୍ଦ୍ଦି ଦେଇଗଲା ପୃଥିବୀଟାକୁ । ସୋରାସୋରା ହୋଇଗଲା ଘର ! କେନାକେନା ହୋଇ ଫିଟିଗଲା କୁଟୁମ୍ବ । କିଏ କୁଆଡେ, ଖଣ୍ଡଖଣ୍ଡ ହୋଇଗଲେ ପବନ ଦାଢରେ । ପ୍ରାଣୀର ଆର୍ତ୍ତନାଦ ପବନର କୁହାଟ ମାଡରେ ଗୁଣ୍ଡ ହୋଇ ଲୀନ ହୋଇଗଲା । ହାତୀପଲ ପଛଖୁ ହାତୀ ପଲ । ପାହାଡ ପରେ ପାହାଡ । ଅକଳନ୍ତି ଥାଟ ଦଳି ଚକଟି ମାଡିଗଲେ । ମୁହାଣ ମୁହାଁ ସମୁଦ୍ର ପରି ପବନ । ମହଣ ମହଣ ଦାଢୁଆ କାଚଗୁଣ୍ଡ ପରି ପାଣି ଛିଡିପଡିଲା । ମାଡି ଆସିଲା ଟହୁଁବଳି ଟହୁଁ ବଳି ଥାଟ ।

...ମାଡିଆସିଲା ଅନ୍ଧାର । ସୃଷ୍ଟି ଲିଭିଗଲା ଅନ୍ଧାରରେ । ପବନରେ ପବନ ବାଡେଇହେବାର, ପାଣିରେ ପାଣି ପିଟିହେବାର ଶବ୍ଦ, ଚତୁର୍ଦ୍ଦିଗରେ ବ୍ୟାପିଥିବା ଅପରିମେୟ ଅହିରାଜର ଫୁ-ଫୁକାର କେବଳ ଶୁଭିଲା । ମଝିରେ ପାହାଡ ଧସିପଡିଲା ପରି, ମହୀରୁହ ଭାଙ୍ଗି ପଡିଲା ପରି ଶବ୍ଦ ଶୁଭି ଲିଭି ଯାଉଥିଲା । ବିଜୁଳି ନ ଥିଲା ଅନ୍ଧାରକୁ ଚିରିଦେବାକୁ । ବଜ୍ର ନ ଥିଲା ଏ ସୁସୁକାରକୁ ମନ୍ଦ୍ର ଘୋଷରେ ବୁଡେଇଦେବାକୁ । ମେଘ ବି ନ ଥିଲା ପରିଚିତ ବର୍ଷାଧାର ଅଜାଡି ଦେବାକୁ । ଯାହା ଥିଲା ସବୁ କେବଳ ଅଜଣା ଆତଙ୍କ । ବହଳ ଅନ୍ଧାର ସିଂହକେଶର ପରି ଝୁଣି ହେଉଥିଲା । ସାଇଁ ସାଇଁ ବୁଲୁଥିବା ଲୁହା ଧାରଣା ପରି ଅସଂଖ୍ୟ ବାହୁ । ଚୂରି ହୋଇଯାଉଥିଲା ସବୁ ଆକୃତି, ସବୁ ସତନ୍ତ୍ର ପରିଚୟ । ଅସଂଖ୍ୟ ପାଦ ଦଳିଦେଇ ଯାଉଥିଲା ମୁମୂର୍ଷୁ ପୃଥିବୀକୁ । ଏସବୁ ତୁମୁଳ ନାଦ ସାଥିରେ ବେଳେବେଳେ ଶୁଭୁଥିଲା କ୍ଷୀଣ, ଦୁର୍ବଳ ବିଳାପର ଧ୍ୱନି । ପରମୁହୂର୍ତ୍ତରେ କୁଆଡେ ହଜିଯାଉଥିଲା ମେଘମାଳା ଭିତରେ, ମୃଗୁଣୀର ରୋଦନ ପରି । ଅନ୍ଧାରରେ ସମୁଦ୍ର କାହିଁ ? ସମୁଦ୍ରରେ ଟଳମଳ ପାଣି କାହିଁ ? ଲହରି କାହିଁ ? ଅହୋରାତ୍ର ବା କାହିଁ ? ଅନ୍ଧାର ହିଁ ବନ୍ୟା, ଅନ୍ଧାର ହିଁ ବାତ୍ୟା, ଅନ୍ଧାର ମୃତ୍ୟୁ । ମୃତ୍ୟୁ ଅନନ୍ତ ! ଅନ୍ଧାର ତ ମହାକାଳ । ଅନ୍ଧାର ପ୍ରଳୟ । ତା'ର ବ୍ୟାଦିତ ମୁଖ ଗହ୍ୱରରେ ପ୍ରବେଶ କରୁଛି ସୃଷ୍ଟି । ନିଶ୍ଚିହ୍ନ ହୋଇଯାଉଛି ପ୍ରାଣ । ତା'ର ବିକଟ ବିଶାଳ ଦାନ୍ତ ସନ୍ଧିରେ ଲାଖିରହିଛନ୍ତି ବିଚୂର୍ଣ୍ଣିତ ସ୍ଥାବର ଜଙ୍ଗମ; ଜଡ ଚେତନ । ଅନ୍ଧାରରେ ଲିଭିଗଲା କାଳର କଳନା । ଲିଭିଗଲା ଭୂମିର ସରହଦ, ଦିଗ-ଦିଗନ୍ତ । ଅନ୍ଧାର ମେଦିନୀ । ଅନ୍ଧାର ଅମ୍ବର । ଅନ୍ଧାର ସ୍ଥିର, ଅନ୍ଧାର ଅସ୍ଥିର । ଅନ୍ଧାର ହିଁ ପ୍ରମତ୍ତ ପ୍ରବଳ ବାତ୍ୟା ।...

ପ୍ରହାର ପରେ ପ୍ରହାର ପଡୁଥାଏ । ପ୍ରହର ପରେ ପ୍ରହର ପାରି ହେଉଥାଏ । ଅନ୍ଧାର ଘନୀଭୂତ ହେଲା । ବାତ୍ୟା ମଥିତ ହେଲା । ବିଗଳିତ ହେଲା । ଦିଗହରା ଅନ୍ଧାର ଗର୍ଭରୁ ମାଡିଆସିଲା ବନ୍ୟା । ଘାଇ ଧସିଗଲା, କୁଢେଇ ହେଲା ଘୁ ଘୁ ସମୁଦ୍ର । ଅହିରାଜ ପରି ପାଣିସୁଅ ଫଣା ଟେକି ବିସର୍ପିଗଲା ପ୍ରବଳ ବେଗରେ । ଖାଲ ଢିପ ସମତୁଲ ହୋଇଗଲା । ଜଳାର୍ଣ୍ଣବ ହୋଇଗଲା ଖଣ୍ଡମଣ୍ଡଳ । ପାଣି ସୁଅରେ ଭାସିଆସିଲେ କାଠ, ଖୁଣ୍ଟ, ଗାଈ, ଗୋରୁ, ମଲା ମଣିଷ । ସୁଅ ତଡିନେଇଗଲା ଅନ୍ଧାରରୁ ଅନ୍ଧାରକୁ । ଭାସିଗଲା ଘରସଂସାର ଯା'ର, ତା'ର, ସମସ୍ତଙ୍କର । ଭାସିଗଲା ସପ୍ନ ।

ମୁଁ ନିରବିଗଲି କିଛି କାଳ । ମୁଁ ଦେଖିବାକୁ ଚାହିଁଥିଲି ବନ୍ୟା ଆପଣଙ୍କୁ କୋଉଯାଏଁ ବୁଡେଇଛି । ଆଖି ଉପରକୁ ଅନ୍ଧାର ମାଡି ଆସିପାରୁଛି ନା ନାହିଁ । ବାତ୍ୟାରେ ଆପଣଙ୍କ କେଶାଗ୍ର ବଙ୍କା ହେଉଛି ନା ନାହିଁ ? ଆପଣ ନିରାପଦ ଭୂଇଁରେ ଠିଆ ହୋଇଛନ୍ତି । ଏବେ ତ ଆକାଶ ଆକାଶ । ପବନ ପବନ । ଆପଣଙ୍କ ଆଗରେ ଏ ବିସ୍ତୀର୍ଣ୍ଣ ଉଜୁଡା ଭୂଇଁ ଉପରେ ଉଦ୍ଭିଦ, ପଶୁ, ପକ୍ଷୀ, ମଣିଷ କେହି ନାହାନ୍ତି । କୁଆଡେ ଗଲେ ସେମାନେ ସବୁ ? କ'ଣ ହେଲା ସେମାନଙ୍କର ? ଆପଣଙ୍କ ପାଇଁ ତ ଆକାଶ ଲିଭିଯାଉ ନାହିଁ । ପବନ ଗର୍ଜୁ ନାହିଁ । ନଈ ପାଣି ନଈକୁ ଫେରିଯାଇଛି । ଆପଣ କ'ଣ ଜାଣିବାକୁ ଚାହିଁବେ ଓ କାହିଁକି ? ଆପଣ ଦିଗନ୍ତକୁ ଚାହାନ୍ତୁ ନାହିଁ, ଆଖି ଫେରାଇ ଆଣନ୍ତୁ । ଚାହାନ୍ତୁ ଆପଣଙ୍କ ପାଦ ତଳକୁ । ମାଟିହୁଡା ପରି ସାମାନ୍ୟ ଉଚ୍ଚ ରଘୁ ବେହେରାର ପୂର୍ବ ପାଖ କାନ୍ଥର ଏ ସଙ୍କେତଟିକୁ ଚାହାନ୍ତୁ, ଆଉ ଶୁଣନ୍ତୁ ।

ରଘୁ ବେହେରା ମନଗଢା ଚରିତ୍ର ନୁହେଁ । ସତସତିକା ମଣିଷ । ତା' ଘରବାଡି, ଗାଈ, ବାଛୁରୀ, ବଳଦ, ତା' ଚୁଲୀମୁଣ୍ଡ, ଭାତହାଣ୍ଡି, ପାଞ୍ଚପ୍ରାଣୀ କୁଟୁମ୍ବ ସବୁ ସତ । ଆପଣଙ୍କ ପରି, ମୋ'ପରି, ଆଉ ଯେତେ ସବୁ ବସ୍ତୁ ରହିଛନ୍ତି ସେମାନଙ୍କ ପରି ସତ । ତା' ସାନଭଉଣୀ ସୁଲ । ପେଟରାଣିଆ ପିଲା । ତା' ଜନ୍ମ ପୂର୍ବରୁ ବାପ ମରିଯାଇଥିଲା । ରଘୁ ତା'ଠୁଁ ଷୋଳବର୍ଷ ବଡ । ମଝିରେ ଦି'ଭାଇ ଜନ୍ମ ହେଇ ମରିଗଲେ । ଦି'ଭଉଣୀ ବଡହୋଇ ବାହା ହୋଇଗଲେ । ସବୁ ଭାର ସମ୍ଭାଳିବାକୁ ଏକା ରଘୁ । ମା' ଅଡିବସିଲା । ନ ହେଲେ ସୁଲକୁ ବାହା ନ ଦେଇ ସେ ବିଭା ହୋଇ ନ ଥାନ୍ତା । ତା'ର ଏବେ ଦେଢ ବର୍ଷର ପୁଅ । ନାଁ ମଣି । ତା' ସ୍ତ୍ରୀ ନଈ ଆରପାରି ଗାଁ ଝିଅ ହେମ । ସେ ଚାହୁଁଥିଲା, ମଝି ବଖରା ଚଟାଣ ସିମେଣ୍ଟ ହୋଇଥାନ୍ତା, ଚିକ୍କଣ ଲାଗନ୍ତା, କାକର ଲାଗନ୍ତା । ଲିପିବାକୁ ପଡନ୍ତା ନାହିଁ । ମୁନ୍ଦୁରା ପାରିବାକୁ ପଡନ୍ତା ନାହିଁ । କାନି ପାରି ଶୋଇଗଲେ ନିଦ ହୋଇଯା'ନ୍ତା । ମା'ର ଚିନ୍ତା ସୁଲ ପାଇଁ । ଝିଅଟା ହାତକୁ ଦି'ହାତ ହୋଇଯା'ନ୍ତା । ମୁଣ୍ଡରୁ ବୋଝ ଓହ୍ଲେଇ ଯା'ନ୍ତା । ଆଉ ରଘୁଆଟାକୁ କ'ଣ ଅବା କହିବ ? କେତେ ଜଞ୍ଜାଳ ସେ ସମ୍ଭାଳୁଛି । ଗଙ୍ଗା ଗୟା ହେଇ ଥରେ ପଳେଇ ଆସନ୍ତା । ଅସାର ଜନମ ସରିଯାଆନ୍ତା । ରଘୁ ସମସ୍ତଙ୍କ ମନକଥା ବୁଝେ । ସୁଲ ମନକଥା ବି ତାକୁ ଜଣା । ସେ ଚାହେଁ ଗାଁ ଛାଡି ସହରରେ ରହନ୍ତା । ଚାକିରିଆକୁ ବାହା ହୁଅନ୍ତା । ଗାଁରୁ ତା' ସାଙ୍ଗ କେତେ ଏମିତି ଗଲେଣି; କିନ୍ତୁ ସୁଲ ପାଟି ଫିଟେଇ କାହାକୁ କିଛି କହିପାରେ ନାହିଁ । ରଘୁ ଚାହେଁ, ସୁଲ ବାହାଘର ଭଲରେ ହୁଅନ୍ତା । ତା' ପାଇଁ

ଅଳଙ୍କାର ଆଣିଲାବେଳେ ହେମ ପାଇଁ ସୋରାଏ ସୁନାମାଳି ଆସନ୍ତା । ତା'ର ଇଟାକାନ୍ଥ ଉଠନ୍ତା । ଟଟାଣ ସିମେଣ୍ଟ ହୁଅନ୍ତା । ଗୁହାଳରେ ପଥର ଖମ୍ବା ହୁଅନ୍ତା । ଗୋରୁ ଶୁଖିଲାରେ ଶୁଅନ୍ତେ । ମଣିଆ ପାଇଁ ଟିନିଟକିଆଟାଏ ଆସନ୍ତା । ଆଣ୍ଟୁଏ ଉଷ୍ମ ବୁଦା ଚୁଳରେ ଛୋଟ ଛୋଟ ଫୁଲ ପରି ଏ ସାନ ସାନ ସପ୍ନ ।

ଅନ୍ଧାର, ନା ପାଣି ନା ପବନ, ନା ପର୍ବତ, ବଜ୍ର ପରି କୁଢେଇ ହୋଇ ପଡିଲା । ଗୋଟାଏ ହାବୁକାରେ ଗାଁମୁଣ୍ଡ ଘର, ରଘୁ ବେହେରାର ସପ୍ନ ଆଉ ସଂସାର ଛିନ୍ନଛତ୍ର ହୋଇଗଲା । ପାଞ୍ଚପ୍ରାଣୀ, ପାଞ୍ଚଟା ପୃଥିବୀ ପାଞ୍ଚଟା ସର୍ଗ ଦଶଦିଗରେ କୁଆଡେ ବୁଣି ହୋଇଗଲେ ।

ରଘୁ ହାବୁକା ମାରି ଉଠୁଥାଏ । ଦରାଣ୍ଡି ହେଉଥାଏ ଅନ୍ଧାରରେ । ଦଶଦିଗ ଅଣ୍ଡାଳୁଥାଏ, ଛାଟିପିଟି ହେଉଥାଏ । ଗର୍ଜୁଥାଏ, ଜଣଜଣକା ନାଁ ଧରି । ରଘୁ ବେହେରା ଛିଣ୍ଡିପଡିଥିବା ତାଳଟାଏ । ତାକୁ ସେ ପ୍ରଳୟ ଟଡି ନେଉଥାଏ, ଗୁଡେଇ ନେଉଥାଏ; କାହିଁ କୁଆଡେ । ରଘୁ ବେହେରା ଲଢୁଥାଏ, ରଡୁଥାଏ ତା' ନିଃଶ୍ୱାସ ରୁନ୍ଧି ହେବାଯାଏ, ସେ ନିସ୍ତେଜ ହେବାଯାଏ, କାଦୁଅରେ ଲାଖିଯିବାଯାଏ ।

ରଘୁ ବେହେରା ଦନ୍ତାହାତୀ ପରି ବଳୁଆ । ଧାନଶଗଡଟାକୁ ଏକାକୀ କାଦୁଅରୁ ଓଟାରି ଆଣିଥିଲା । କୂଅ ଭିତରୁ ଭିଡି ଆଣିଥିଲା ଗାଈଟାକୁ । ସେ ପରା ଗାଁ ମୁଣ୍ଡ ବାଘ । ସେ ପରା ଦନ୍ତା । ସେ ହାଉଁ ହାଉଁ ଗର୍ଜିଲା । ମନ୍ଥି ପକେଇଲା ସେ ଅନ୍ଧାରକୁ, ପାଣି କାଦୁଅ, ପବନକୁ । ତା' ମଣିଆ କାହିଁ, ତା' ହେମ, ସୁଲ ତା' ମା' କାହିଁ ? ସେ ଚେବେଇ ଖଣ୍ଡ ଖଣ୍ଡ କରିଦେବ ଆକାଶକୁ । ବିଦାରିଦେବ ପୃଥିବୀକୁ ।

ହେଲେ କିଏ ସବୁ ବେଢିଗଲେ ? ତା' ଚାରିଆଡେ ସମୁଦ୍ରେ ପାଣି । ଥଳକୂଳ ନାହିଁ । ହାତୀ ପଲ ପରି ଦୁର୍ଦ୍ଦାନ୍ତ ପବନ । ରୋଧି ଠିଆହେଲେ ପାହାଡ ଟଳିପଡିବ । ଗର୍ଜୁଥିବ ସିଂହର ନଖ ଦାନ୍ତପରି ତା' ହାତ ବିଦାରିଦେବ । ରଘୁ ବେହେରା ଫମ୍ପା କଣ୍ଢେଇଟାଏ । ତାକୁ ଉଠେଇଲେ ପକେଇଲେ । ହାବୁକା ମାରି କାଦୁଅରେ ମାଡିଦେଲେ । ଫୁଲ ପରି ତା' ମଣିଆ । ଲହୁଣୀ ପିତୁଳା ତା' ହେମ! ତା' ଗୋରୀ ଭଉଣୀ, ତା'... ମା ! ଆଖି ପିଛୁଳାକେ ଲିଭିଯାଇଥିବେ ।

ଆଖି ଫିଟାନ୍ତୁ । ନିଃଶ୍ୱାସ ନିଅନ୍ତୁ ସହଜରେ । ପାଣି ପବନ କିଛି ନାହିଁ । ପୋଷା ଚଢେଇ ପରି ସୂର୍ଯ୍ୟ ତା' ପଞ୍ଜୁରୀରେ ବସିଛି । ଶୁଖିଲା କାଦୁଅ ଆଉ ବାଲିରେ ପୋତିହୋଇ ପଡିଥିବା ଏ ନିର୍ଜନ ଭୂଇଁ ନିର୍ଜୀବ ପଡିଛି । ତା' ଭୟ ସଙ୍କୋଚ କିଛି ନାହିଁ । ମଢଟାକୁ ଆଉ ଥରେ ମାରିବାର ବ୍ୟବସ୍ଥା ତ ନାହିଁ । ଏଠୁ ପ୍ରାଣପକ୍ଷୀ ଉଡିଯାଇଛି । ଖାଲି କ'ଣ ରଘୁ ବେହେରା । ଏ ଧାଡିକଯାକ ଘରୁ ଧନି ସାମଲ, ଯୋଗୀ ପ୍ରଧାନ, ଆରପଟୁ ଯଦୁ ମିଶ୍ର, ମଧୁ ମହାନ୍ତି, ବୀର ରାଉତ, ସେମାନଙ୍କ ଘର ସଂସାର, ସାନବଡ ସମସ୍ତଙ୍କୁ ଘେରି ଲଟେଇ ରହିଥିବା ସପ୍ନ ସବୁ କାହିଁ ? ଏ ସମସ୍ତଙ୍କ ଆୟୁଷରେଖାରେ କ'ଣ ଗୋଟାଏ ଦିନ କଳାଗାର ଟଣା ହେଇଥିଲା ? କିଏ ସେ ଆଦିମ ସମ୍ରାଟ ଯେ ତା'ର ବଡପଣ ଜାହିର କରିବାକୁ ମନ୍ଥି ଦେଇଗଲା ଯାହା ପଡିଲା ତା' ଥାଟ ମୁହଁରେ ? ସେ କେବଳ ତା'ର ଆଦିମତା ହିଁ ପ୍ରମାଣ କରିଥିଲା ସିନା; କିନ୍ତୁ ଏ କ'ଣ ? ୟା'କୁ ତ ସେଭଳି

କଳନା କରିହେବ ନାହିଁ । ମଣିଷଟାକୁ ଏତିକି ବେଖାତିର କରି, ଏମିତି ବେଜିତ୍ କରି, ପୋକ ମାଛିଠାରୁ ଆହୁରି ହୀନିମାନ କରି ଦଳି ଚକଟି ନାରଖାର କରିଦେବା କୋଉ ମହାମହିମଙ୍କ ମାଲିକପଣ ।

ଧନି ସାମଲ, ତା' ଭେଣ୍ଡା ପୁଅ ସାଙ୍ଗରେ ବରଡାପତ୍ର ପରି ଥରୁଥିବା କବାଟଟାକୁ ଠେଲି ଧରିଥିବ । ତା' ବିଧବା ପିଉସୀ, ତା' ଶାଶୁ ଆସିଥିଲେ ପୁରସ୍ତମରେ କାର୍ତ୍ତିକ ପାଳିବାକୁ । ତା' ଝିଅ, ତା' ନାତୁଣୀ, ତା'ର ସାପୁଅ, ତା' ସ୍ତ୍ରୀ ସମସ୍ତେ ବୋବାଳି ଛାଡିଥିବେ । ଛାଟଟା ଦୁଗୁଦୁଗୁ କରି ଭୁସ୍‌କିନା ଉଡିଯାଇଥିବ । ପିଲାକୁ ନେଇ ଧାନଓଳିଆ ତଳେ ମାଇପେ ପଶିଯାଇଥିବେ । କବାଟ ସହିତେ ଚଉକାଠ ଦୁଲୁକିଥିବ । କାନ୍ଥ ଭୁଷୁଡିଯାଇଥିବ । ଅକାତକାତ ପାଣି ମାଡି ଆସିଥିବ । ସେ ସୁଅ ମୁହଁରେ ହାତୀ ଲେଉଟି ପଡିବ । ଘୋର ଅନ୍ଧାର ଭିତରେ ଅସହାୟ ଲିଭିଯାଇଥିବା ଧନି ସାମଲ, କଲେଜ ପଢୁଆ ପୁଅ, ପୁରସ୍ତମ ପୁଣ୍ୟ ଅର୍ଜିବାକୁ ଯାଇଥା'ନ୍ତେ ଯୋଡିଏ ବୁଢୀ, ଧାନ ଓଳିଆ ତଳେ ମଣ୍ଡାଫୁଲ ଥୋଇ ଲକ୍ଷ୍ମୀପୂଜା କରୁଥିବା ସମସ୍ତିଙ୍କ ଶୁଭ ମନାସି ସବୁଦିନ ମୁଣ୍ଡିଆ ମାରୁଥିବା ତା' ସ୍ତ୍ରୀ, ଶାଶୁଘରୁ ଆୟ ଅଳଙ୍କାର ପିନ୍ଧି ଝିଅକୁ କାଖେଇ ଆସିଥିବା ତା' ଝିଅ, ସେ ସାବନୀ, ସୁନ୍ଦରୀ ହସକୁରୀ ଝିଅ । ରାତି ପାହିଲେ କେତେ କ'ଣ କରିବେ ବୋଲି ଭାବନା କରିଥିବା, ସେ ସୁଖ ଦୁଃଖର କୁଟୁମ୍ବ । ସେ ସପ୍ନରେ, ବିଷାଦରେ, ହସକାନ୍ଦରେ, ସବୁ ସତ୍ତ୍ୱେ ଆଗକୁ ହାତ ବଢେଇଥିବା ସେ ସଂସାର, ସମସ୍ତଙ୍କୁ ନେଇ ଲିଭିଯାଇଥିବ ବତାସିରେ ଘିଅଦୀପ ପରି । ତିନିକୋଶ ଦୂରରେ ଧନି ସାମଲର ଧାନଓଳିଆ କଣ୍ଟାବୁଦାରେ ବାଡେଇ ହୋଇ ଉଲାରି ହୋଇଯାଇଥିବ ।

କୋଡିଏ ଏକର ଜମିର ମାଲିକ ଯୋଗୀ ପଧାନ । ଭାବିଥିଲା ଏ ବର୍ଷ ନାହିଁ ନ ଥିବା ଧାନ ଫସଲରୁ ନାହିଁ ନ ଥିବା ଲାଭ ହେବ । ଗୋଟିଏ ବୋଲି ଝିଅ । ଡାକ ନାଁ ପାର । ଭଲ ନାଁ ପାର୍ବତୀ । ଗାଁର ଶୋଭା । ପାଠ ପଢିଛି । ଦେଖିବାକୁ ଯେମିତି, ଗୁଣ ବି ସେମିତି । ସ୍କୁଲ ସାରି କଲେଜ ଯିବା ବୃଥା । ବାପ ମନାକଲା । ଛତରା ଟୋକା । ଖରାପ ଦିନ କାଳ । କ'ଣ କରିବ ଆଉ ପାଠ । ପଡିଶା ଘର ଧନି ସାମଲ ପୁଅଟି ଭାରି ଭଲ । ଯୋଗୀ ଘରେ ସବୁବେଳେ ତା'ରି କଥା । ତାକୁ ଜୋଇଁ କରିବାକୁ ତା'ର ଭାରି ମନ । ଧନି ଖାଲି ଟାଳି ଲାଗିଛି । କହୁଛି ପୁଅର ପାଠପଢାରେ ବାଧା ହବ । ପୁଅ ତା'ର ପଢୁ । ବାହାହୋଇଗଲେ ତା' ପଢା ସରିବା ଯାଏଁ, ଝିଅ କ'ଣ ବାପଘରେ ରହିପାରିବ ନାହିଁ । ପୁଅଟାକୁ ଯୋଗୀ ଜାଣେ । ସେ ପାର ସାଙ୍ଗରେ କଥା ହେବା ସେ ଦେଖିଛି । ସେ କେବେ ନାହିଁ କରିବ ନାହିଁ । ପାରକୁ ଭଲା କିଏ ନାହିଁ କରିପାରିବ ? ଧନିଆଟା ରାଜି ହୋଇଯାଇଥିଲେ ମାଘ ଫଗୁଣକୁ ବାହାଘର ହୋଇଥାନ୍ତା । ପାଞ୍ଚଖଣ୍ଡ ଗାଁ ଲୋକ ଭୋଜି ଖାଇଥା'ନ୍ତେ ।... ଦିନ ଗୋଟାକରେ ସୃଷ୍ଟି ଆନଆନ ହୋଇଗଲା । ଉଜୁଡିଗଲା ସୁନା ଫସଲ । ଭାସିଗଲା ସପ୍ନ । କାଦୁଅ ଭିତରୁ ହାତ ପାପୁଲିଟିଏ ଦିଶୁଥିଲା । ଚମ୍ପା କଢି ପରି ଆଙ୍ଗୁଠି । ପରି ଆଙ୍ଗୁଠିରେ ସୁନାମୁଦି, ସୁନାମୁଦିରେ ନାଲି ପଥର । ସୁନା ପ୍ରତିମା ପରି ପାର କ'ଣ ଏତେ ହତାଦର ସହିବାକୁ ଥିଲା ? ତାକୁ କ'ଣ ବାଘ ଖାଇଗଲା ? ପାଣି ପବନ କାଦୁଅ କ'ଣ ତାକୁ ଏମିତି ବେଢି

ଖାଇଗଲେ ?

ଅନ୍ଧାର ଭଲ ମନ୍ଦ ଜାଣେ ନାହିଁ । ଖାଲଢିପ, ତଳ ଉପର, ବାଁ ଡାହାଣ କିଛି ଜାଣେ ନାହିଁ । ଦେଖୁନାହାନ୍ତି, ସବୁ କେମିତି ସମତୁଲ କରିଦେଇଛି । ବୀର ରାଉତ ମନ୍ତ୍ରୀଙ୍କ ପାଖଲୋକ ବୋଲି କହେ । ଭିତରେ ଭିତରେ ଅନାବାଦି ଜମି, ଲାବାରିସ୍ ଡିହସବୁ ତା' ନାଁରେ କରି ପକେଇଚି । ତା' ଘର ତାଟିକବାଟ ସଦାବେଳେ ବନ୍ଦ ଥାଏ । ବୀର ଯେତେବେଳେ ଦେଖିଲେ ହାତ ମୁଣାଟି ଧରି ରାଜଧାନକୁ ଧାଉଡି ଲଗେଇଥାଏ । ତା' ପାଖରୁ ପଇସା ଫୁଟି ଦିଶୁଥିଲା । ଶୁଣାଯାଉଥିଲା ସେ ଟ୍ରକ୍ କିଣିବ । ତା'ର ସବୁ କାଗଜପତ୍ର, ତା' ସ୍ତ୍ରୀ, ସେ ନିଜେ ଅନ୍ଧାର ଭିତରେ କୁଆଡେ ହଜିଗଲେ । ଗାଁ ଲୋକେ ଯଦି ଥାଆନ୍ତେ, ବୀର ରାଉତ ଚାଲିଗଲା ବୋଲି କେହି ମନଦୁଃଖ କରି ନ ଥା'ନ୍ତେ... ଓଃ, ଗଲା ଜାଣି ଗ୍ରହଦୋଷ ଗଲା ।

କିନ୍ତୁ ମଧୁ ମହାନ୍ତି ତା' ଦୁହେଁ । ସେ ନିଆରା । ଗାଁର ଜଣଜଣକୁ ସେ ଜାଣେ, ଜଣ ଜଣକୁ ସାହାଯ୍ୟ କରେ । ପୁଅଝିଅ କେହି ନାହିଁ । ସେ ଦି' ପ୍ରାଣୀ । ପିଲାଟିଏ ଦେଖିଲେ ରଙ୍କ ରଙ୍କ ହୁଅନ୍ତି । ପିଲାଙ୍କୁ ଏକାଠି କରି ମଧୁ ମହାନ୍ତି ପାଠ ପଢାଏ । ତା' ସ୍ତ୍ରୀ ସେମାନଙ୍କୁ ସକାଳ ଓଳି ଗଜାମୁଗ ଗୁଡ ଖାଇବାକୁ ଦିଏ । ମଧୁ ମହାନ୍ତିର କିଛି ପଡିଆ ଜମି – ସେଥିରୁ ଗଣ୍ଡେ ଭଲ ମୁଗ ଆସେ । ସେମାନେ ଖାଇ ଢେର୍ ବଳକା ରହିଯାଏ । ସେମାନେ କାହାଠୁଁ କେବେ ପଇସାଟିଏ ବି ନିଅନ୍ତି ନାହିଁ । ମଧୁ ମହାନ୍ତିର ଖଣ୍ଡେ କାଶ୍ମିରୀ ଶାଲ୍ ସମସ୍ତଙ୍କର ଆଖିରେ ପଡିଛି । ଶୀତ ପଡିବା ଆଗରୁ ଖରା ଆସିବା ଯାଏ ସେ ତାକୁ କାନ୍ଧରେ ପକେଇ ବାହାରେ । ମଧୁ ମହାନ୍ତି ଚାହିଁଥିଲା ତା' ପଡିଆ ଜମି ଉପରେ ସ୍କୁଲ ଘର କରିବ । ସେଇଠି ପାଠପଢେଇବ ନିରୋଳାରେ । ଏକା ରାତିକେ ସବୁ ସ୍ୱପ୍ନ ସରିଗଲା । ନିଶ୍ଚିହ୍ନ ହୋଇଗଲା ମଧୁ ମହାନ୍ତି, ତା' ଘର ଦ୍ୱାର, ପଡିଆ ଜମି, କାଶ୍ମିରୀ ଶାଲ ପରି ତା'ର ନିରବ ଅମ୍ଳାନ ଆଭିଜାତ୍ୟ ସବୁ ଏକାକାର ହୋଇଗଲା । ଶାଲ୍‌ର ଗୋଟାଏ କାନି ପାଞ୍ଚ କୋଶ ଦୂରରେ ଗଛ ଡାଳରେ ଛନ୍ଦି ହୋଇଗଲା । ନଖ ଦାନ୍ତ ଲଗେଇ କିଏ ମଧୁ ମହାନ୍ତିର ନରମ ସମ୍ପତ୍ତିଟିକୁ ଭିଡି ଖଣ୍ଡ ଖଣ୍ଡ କରି ପକେଇଲା । ମଧୁ ମହାନ୍ତିକୁ, ତା' ସ୍ତ୍ରୀକୁ ଏମିତି କୁଆଡେ ଉଡେଇ ନେଲା, ବୁଡେଇ ଦେଲା, ପୋତି ପକେଇଲା କେଜାଣି କୋଉଠି ?

ଯଦୁ ମିଶ୍ରେ ଉଭାନ୍ ହୋଇଗଲେ । ପଚାଶ ଘର ବସ୍ତିର କିଏ କୁଆଡେ ଉଭାନ୍ ହୋଇଗଲେ । କାହାର ଚିହ୍ନବର୍ଣ୍ଣ ନାହିଁ ।

ଝୋ' ଝୋ' ଘୋ' ଘୋ' ଭିତରେ ସୂର୍ଯ୍ୟ ଲାଜରେ ମୁହଁ ଦେଖାଇ ପାରିଲା ନାହିଁ । ଉଲଗ୍ନ ଦିଗଗୁଡିକ ଓଦା ସରସର ହୋଇ ଠିଆହେଲେ । ଅନ୍ଧାର ତା'ର ଆବରଣ ଓହରାଇ ନେଇଥିଲା । ହାତୀପଲ ତେବେ ବି ଚକଟି ଚାଲିଥିଲେ । ଉନ୍ମତ୍ତ ପାଣିସୁଅ, ତେବେ ବି ଟଡିନେଉଥିଲା ପ୍ରଳୟର ଅବଶିଷ୍ଟ ଉଚ୍ଛିଷ୍ଟ । ମୃତ୍ୟୁ ପରେ ମୃତ୍ୟୁ ନାହିଁ । ଧ୍ୱଂସ ପରେ ପୁନର୍ବାର ଧ୍ୱଂସର ଅର୍ଥ ନାହିଁ । କିନ୍ତୁ ଏ ଅନ୍ଧ ଶକ୍ତିକୁ କିଏ ଆଦେଶ ଦେବ ଓହରି ଯିବାକୁ ? କିଏ ନିଷ୍ପତ୍ତି ନେବ କେଉଁ ଆକାଶରେ ? ନିଶାସକ୍ତ ଉନ୍ମତ୍ତ ଦୈତ୍ୟମାନେ କେତେବେଳେ ଶବସଙ୍ଗମରୁ ନିବୃତ୍ତ ହେବେ ?

ଆପଣ ଆଉ ଲାଜାନ୍ତୁ ନାହିଁ । ଆପଣମାନେ ହିଁ ରହିଁଥିଲେ କେତେବେଳେ ଏ ତାଣ୍ଡବ ଲୀଳା ସରିଲେ ଆପଣ ମଞ୍ଚ ଅଧିକାର କରିବେ । ମଲା ଦରମଲା ଲୋକଙ୍କୁ ନେଇ ଅଭିନୟ ଆରମ୍ଭ କରିବେ ।

ବିପତ୍ତି ପଡିଲା ଏଇଠି – ଭିଡ ଜମିଲା ସହରରେ । ଦାନ ଆଉ ଦାତାଙ୍କ ଭିଡ । କୁହାଳିଆ, ବାହାପିଆ, ବାଟମାରଣାଙ୍କ ଭିଡ । ପାଟିତୁଣ୍ଡ, ଟଣାଓଟରା, ଛକାପଞ୍ଝା ଭିତରେ ଜିନିଷ ଭାଗବଣ୍ଠା ହୋଇଗଲା । ଏଠି ପାଣି କାଦୁଅରେ ମଢ ସବୁ ସଢିଗଲା । ଲଙ୍ଗଳା, ଲଙ୍ଗଳା ରହିଗଲେ । ଭୋକିଲା, ଭୋକିଲା ରହିଗଲେ । ଆପଣମାନେ ବର୍ଷାରେ କୁଆପଥର ଗୋଟେଇଲା ପରି ଶୂନ୍ୟରୁ ଖସିଆସୁଥିବା ସାମଗ୍ରୀମାନ ଟୋକେଇ ଭରି ଲୁଟିନେଲେ, ବାଣ୍ଟି ନେଲେ । ଆହାର ପାଇଁ ଦରମେଲାପାଟି ସେମିତି ଦରମେଲା ରହିଗଲା । ପଞ୍ଜୁରୀରୁ ପକ୍ଷୀ ଉଡିଗଲା । ଆପଣଙ୍କ ମୂଲକରେ ସେଓ, ସିଝା ଅଣ୍ଡା ଗଛ ମୂଳେ ଅଜଡା ହେଲା ।

ଆପଣମାନେ ତିନ୍ତିଯିବା ଭୟରେ ସରକାରୀ ବସା ଭିତରୁ ବାହାରିଲେ ନାହିଁ । ଦପ୍ତରରେ ବସି ସେ ଖସିପଡୁଥିବା ଆକାଶଟାକୁ ଟେକି ଧରିଲେ । ୟା'ଙ୍କରି ଭୋଟରେ ଆପଣଙ୍କ ସରକାର; ୟା'ଙ୍କରି ଖଜଣାରେ ଆପଣଙ୍କ ଦରମା – ଭୁଲିଗଲେ । ବାହାରୁ ଲୋକ ଆସି ଏମାନଙ୍କୁ ପାଣି ଦେଲେ ପିଇବାକୁ । କ୍ଷୀର ଦେଲେ ଖାଇବାକୁ । ଦରମଲା ଲୋକଙ୍କୁ ପାଣି କାଦୁଅରୁ ଓଟାରି କାଢିଲେ । ମଲାଲୋକଙ୍କୁ ଜୁଇଁରେ ଜାଳିଲେ ।

ଆପଣଙ୍କ ନିର୍ମଳ ଜାମା ନିର୍ମଳ ରହିଗଲା । ହାତରେ କାଦୁଅ ଲାଗିଲା ନାହିଁ । ଆପଣ ଖାଲି ଲମ୍ବା ତାଲିକା ତିଆରିକଲେ । କେତେ ଗଛ ଉପୁଡିଲା । କେତେ ଗୋରୁ ମଲେ । କେତେ ମଣିଷ ମଲେ । କେତେ ଘର ଭାସିଗଲା । ଜଣକେ ଗୋଟାଏ ଲେଖାଏ ତାଲିକା କାଢି ପାଟିତୁଣ୍ଡ କଲେ । ଖାଲି ଟଙ୍କା ମାଗିଲେ । ଲୋକଙ୍କୁ ଉଦ୍ଧାର କରିବାକୁ ଯାହା ଆସିଲା ସବୁ କୁଆଡେ ଅନ୍ତର୍ଦ୍ଧାନ ହୋଇଗଲା । ଆହୁରି ମାଗିଲେ, ମାଗିଚାଲିଲେ ।

ପାଣି ପବନ ଆପଣଙ୍କୁ ଦେଖି ସ୍ତବ୍ଧ ହୋଇଗଲେ । ଆପଣମାନେ ମଢଖିଆ ଜନ୍ତୁ ଭଳି ଗନ୍ଧେଇଲେ । ଆପଣଙ୍କ ଆଇଁଷିଆ ଗନ୍ଧରେ ନାକ ଫାଟିଗଲା । ସାରା ଦେଶ ବିଦେଶର ଛେପ ଆପଣଙ୍କ ମୁହଁରେ ପଡିଲା । ଆପଣ ତଥାପି ଗାଲୁ ଛାଡିଲେ ନାହିଁ । ଲଜ୍ଜିତ ହେଲେ ନାହିଁ । ଆପଣ ଏତେ ଅଲାଜୁକ ଅମଣିଷ ସତେ କେମିତି ହୋଇପାରିଲେ ?

ଆପଣଙ୍କୁ ଏକ ପ୍ରକାର ଘୋସାରି ନେଉଛି ବୋଲି କିଛି ରାଗିବେ ନାହିଁ । ତା' ନକଲେ ଆପଣ ସ୍ୱେଚ୍ଛାରେ ଆସିବେ ନାହିଁ । ମୁଁ ଜାଣେ । ଆପଣ ବି ଜାଣନ୍ତି ।

ଏଇ ଦେଖନ୍ତୁ । ଆପଣ ଦେଇଥିବା ଶସ୍ତା ଚିରା ତମ୍ବୁତଳେ, ମହାମାରି ପଡିଥିବା ଉଦ୍‌ବାସ୍ତୁ, ସର୍ବହରା ମଣିଷଙ୍କୁ । ଏମାନେ ଦାନ୍ତ ସନ୍ଧିରୁ ଖସିପଡିଥିବା ଉଚ୍ଛିଷ୍ଟ । ସେ ସମସ୍ତଙ୍କୁ ନିର୍ବିବାଦ ଚୋବେଇ ଖାଇଗଲା । ଜିଭ ଲମ୍ବେଇ ଚାଟିଗଲା ସେ ଅଣଷ୍ଠାଶ ପବନ । ତା' ପାଇଁ ଦଣ୍ଡ ନାହିଁ । ସେ ଏମାନଙ୍କୁ ଖାଇଚାଲିଛି, ସେମାନଙ୍କୁ ଭିକ୍ଷାଥାଳ କରି ସମ୍ପତ୍ତି ଅର୍ଜୁଛି । ସେ କିଏ ? ତାକୁ ଆପଣ

ଏ ବତୀଖୁଣ୍ଟରେ ଝୁଲେଇ ଦେଇ ପାରିବେ ? ଲଢ଼ିପାରିବେ ଅନ୍ତିମ ଯୁଦ୍ଧ ? ମୁଁ ଜାଣେ ଆପଣ ପାରିବେ ନାହିଁ । ସେ ପରା ଆପଣଙ୍କ ଜ୍ଞାତି କୁଟୁମ୍ବ । କିଏ ଶ୍ୱଶୁର କିଏ ଶଳା, କିଏ ଭାଇ, କିଏ ସମୁଦି । କେମିତି ମାରିବେ ? କିନ୍ତୁ ଅବଶ୍ୟ ମାରିବେ । ଆପଣଙ୍କ ଭଳି ମାରଣା କିଏ ଅଛି ? ବାଁ ଡାହାଣ ଉଭୟ ହାତରେ ଗର୍ଭକୁ କ୍ଷେପିବାରେ ଏଭଳି କୁଶଳୀ ସବ୍ୟସାଚୀ କିଏ ଅଛି ? ଆପଣଙ୍କୁ ଖୁବ୍ ରଣକୌଶଳ ଜଣା । ଶହ ଶହ ଲୋକଙ୍କୁ ଆପଣ ଚିପୁଡ଼ି ମାରିସାରିଛନ୍ତି । ଆହୁରି ମାରିବେ । ଏଣୁ ଗୋଟାଏ ଧର୍ମଯୁଦ୍ଧ କରି ଏମାନଙ୍କୁ ସଂହାର କରନ୍ତୁ । ନ ମାରି ଉପାୟ ନାହିଁ । ନ ମରି ମଧ୍ୟ ଉପାୟ ନାହିଁ ଆପଣଙ୍କର । ମୁଁ ଆପଣଙ୍କୁ ବାଟ କଢ଼େଇନେବି । ମୁଁ ହିଁ ମାରିବି – ଆପଣ ଖାଲି ନିମିତ୍ତ ହେଲେ ହେଲା ।

ମୁଁ କିଏ ବୋଲି ପଚାରନ୍ତୁ ନାହିଁ । ମୋର ସଂଜ୍ଞା ନାହିଁ । ମୁଁ ସହସ୍ରେ ଆଖିରେ ଦେଖେ । ସହସ୍ରେ କାନରେ ଶୁଣେ । ମୁଁ ସବୁ ଜାଣେ । ବିଗତ ଅନାଗତ ଉପସ୍ଥିତ ସବୁ ଏକତ୍ର ଦେଖେ । ମୁଁ କାଳ ପ୍ରବେଶ କରେ, କାୟା ପ୍ରବେଶ କରେ । ଅଲୌକିକକୁ ଲୌକିକ କରେ । ମୁଁ ଭାଷା ଅତିକ୍ରମ କରେ । ଭାବ ସଂକ୍ରମଣ କରେ । ମୁଁ ଦ୍ରଷ୍ଟା, ମୁଁ କବି, ମୁଁ ସର୍ଜନା କରେ । ମୋତେ ଜାଣିବାକୁ ଚେଷ୍ଟା କରନ୍ତୁ ନାହିଁ – ଶୁଣନ୍ତୁ ମୁଁ କ'ଣ କହୁଛି ।

ଦେଖନ୍ତୁ, ଆଣ୍ଠୁ ମୁଣ୍ଡ ହୋଇ ବସିଥିବା ସେ ବୁଢ଼ିଆ ମଣିଷଟାକୁ । ଆପଣ ଚିହ୍ନି ପାରିବେ ନାହିଁ ରଘୁ ବେହେରାକୁ । ତା' ପେଟରେ ଅନ୍ନ ନାହିଁ । ତା' ବାହୁରେ ମାଂସ ନାହିଁ । ତା' ବୁକୁରେ ବଳ ନାହିଁ । ତାକୁ ଭଲକରି ଦେଖନ୍ତୁ; ଦିବ୍ୟଚକ୍ଷୁରେ ଦେଖନ୍ତୁ ସେ ମଣିଷ ନୁହେଁ । ସେ ଏକ ବିଧ୍ୱସ୍ତ ପୃଥିବୀ । ସେ କ୍ଷତବିକ୍ଷତ, ରକ୍ତାକ୍ତ ଅତ୍ୟାଚାରିତ ମଣିଷ । ଅପରିମେୟ ଦୁଃଖ, ଯାତନା ଗରଳକୁ ପାନ କରି ଚଳୁଥିବା ମୃତ୍ୟୁଞ୍ଜୟ । ନିର୍ବିଚାର ପ୍ରଳୟରେ ମଥିତ, ମର୍ଦ୍ଦିତ, କର୍ଦ୍ଦମାକ୍ତ, ଶବାକୀର୍ଣ୍ଣ ପୃଥିବୀ ତା'ର ପାଦ । ଅଖଣ୍ଡ ପ୍ରମାଦ ତା'ର ଜାନୁଯୁଗଳ । ମହାବାତ୍ୟା ତା'ର ବାହୁ, ମେଘମାଳା ତା'ର କେଶ । କ୍ଷୁଧା ତରା ଅନ୍ନ । ମୃତ୍ୟୁ ତା'ର ବ୍ୟଞ୍ଜନ । ଅବହେଳା ଅପମାନର ନଗ୍ନତା ତା'ର ବସନ । ମୌନତା ତା'ର ବଚନ । ସ୍ଥିର ଅର୍ଦ୍ଧନିମିଳିତ ଚାହାଣି ତା'ର ଭାଷା । ସହସ୍ରେ କ୍ଷତରୁ ଝରୁଥିବା ରକ୍ତ ତା'ର ପ୍ରାର୍ଥନା ଆପଣଙ୍କ ମଙ୍ଗଳ ପାଇଁ, ଆପଣଙ୍କ ଭଳି ଆଉ ଅପରାଧୀଙ୍କ ପାଇଁ ।

ଯଦି ଦେଖିପାରୁଛନ୍ତି ଆଖି ବୁଜିଦିଅନ୍ତୁ । ନତଜାନୁ ହୋଇ କର ଯୋଡ଼ି... ମୁଣ୍ଡ ନୁଆଁଇଁ ନିରବ ପ୍ରାର୍ଥନା କରନ୍ତୁ, କ୍ଷମା ମାଗନ୍ତୁ ବିଧ୍ୱସ୍ତ, ଲୁଣ୍ଠିତ, ଅପମାନିତ, ବିଡମ୍ବିତ ଅଥଚ ଅପରାଜିତ ଏ ମଣିଷକୁ । ଆପଣଙ୍କ ତରଫରୁ, ଆପଣଙ୍କ ମହାମହିମ ଈଶ୍ୱରଙ୍କ ତରଫରୁ ।

□

# ପଦେ କଥାରେ ମୃତ୍ୟୁ

କେଜାଣି କାହିଁକି ତୁହାକୁ ତୁହା ସେଇ ମେଘ କାହୁଁ ଘୋଟେଇ ହେଇଯାଏ । ଆଖି ଜକେଇଯାଏ ସାମାନ୍ୟ । ଭିତରେ କିନ୍ତୁ ତୁମୁଳ ବର୍ଷା କାଟିଦିଏ; ଥଳକୂଳ ଦିଶେ ନାହିଁ ଲୁହର ସମୁଦ୍ରରେ ।

ସେତେବେଳେ ସେ ଆନମନା ହୋଇ ଚୌକିରେ ବସିରହନ୍ତି । ତାଙ୍କୁ କେହି ଡାକନ୍ତି ନାହିଁ । ଧ୍ୟାନଭଙ୍ଗ କରନ୍ତି ନାହିଁ ।

ବହୁଦିନରୁ ଘରେ ରହି ସବୁ କାମ ଧାମ କରେ । ଘରର ଜଣେ ହେଇସାରିଲାଣି ବାସନ୍ତୀ । ସେ ବି ପାଦଶବ୍ଦ ନ କରି ଧୀରେ ବଖରାରୁ ବଖରାକୁ ଚାଲିଯାଏ । କପ୍ ପିଆଲା ଥୁଏ ନିଃଶବ୍ଦରେ । ସାମ୍ନାକୁ ଯାଏ ନାହିଁ ।

ପୁଅ ଝିଅ ବଡ ହେଇଗଲେଣି । ଜାଣିଲେଣି ଯେ ମା'ଙ୍କୁ ସେତେବେଳେ ଡିଷ୍ଟର୍ବ କରିବା କଥା ନୁହେଁ । ପିଲାଦିନେ ତାଙ୍କୁ ସେମିତି ଥମଥମ ମୁହଁରେ ବସିଥିବା ଦେଖି ସେମାନେ କାତର ହେଇପଡୁଥିଲେ । ଟଣାଓଟରା କରୁଥିଲେ । ବେକକୁ ଧରି ଓହଳି ପଡୁଥିଲେ । ଗାଲରେ ଗାଲ ଘଷି, ଗାତୁରୁମାତୁରୁ ହଉଥିଲେ । ମା' କିଛି ନ କହି ଏମାନଙ୍କୁ ବୁକୁରେ ଭିଡିଧରି ଅଜସ୍ର କାନ୍ଦୁଥିଲେ । ଟଳମଳ ନଈପାଣି ଘାଇ ଭାଙ୍ଗି ମାଡିଯାଉଥିଲା କାହିଁ କେତେ ବାଟ । ଚିହ୍ନା ଅଚିହ୍ନା ଗାଁଗଣ୍ଡା ବୁଡିଯାଉଥିଲା ।

କେତେବେଳକୁ ଝଲମଲ ସୂର୍ଯ୍ୟ ଦିଶୁଥିଲା । ଆକାଶରେ । ମା' ସେମାନଙ୍କୁ ରନ୍ଧାଘରକୁ ନେଇ କ'ଣ ସବୁ ଅମୃତ ଭୁଞ୍ଜଉଥିଲେ ।

ଏବେ ସେ କଥା ନାହିଁ । ପିଲାମାନେ ସେ ବନ୍ଧଭଙ୍ଗା ଦୃଶ୍ୟ ଦେଖି ସମ୍ଭାଳି ପାରିବେ ନାହିଁ । ସେମାନେ ସେଇ ଭୟରେ ଟିପେଇ ଟେପେଇ ଦୂରେଇଯାଆନ୍ତି । ପଢାଘରେ ଯାଇ ଚୁପ୍‌ଚାପ୍ କ'ଣ କଥା ହୁଅନ୍ତି ।

– "ଦେଖ୍ ରମୁ, ମୁଁ ଭାବୁଛି, ଏଇଟା ମା'ଙ୍କର ଗୋଟାଏ ଆବନର୍ମାଲ ସାଇକଲଜି ସିନ୍‌ଡ୍ରୋମ୍ । କ'ଣଟାଏ ତାଙ୍କୁ ଭାରି ଡିଷ୍ଟର୍ବ କରୁଚି – ଅଥଚ ସେ କାହାକୁ ସେ କଥା କହିପାରୁ ନାହାନ୍ତି – ଏମିତିକି ବାପାଙ୍କୁ ବି ନୁହେଁ ।"

– "ଥରେ ନା'... ମୁଁ ଦେଖିଛି, ବାପା ଛାନିଆ ହେଲାପରି ସାମ୍ନାରେ ଛିଡା ହେଇଥା'ନ୍ତି । ମା' ମୁହଁ ଘୋଟେଇ ସକସକ କାନ୍ଦୁଥା'ନ୍ତି ।"

– "ତୁ ଜାଣିଚୁ ନା ରମୁ, ମା' କେବେ ପାଟି କରି କାନ୍ଦନ୍ତି ନାହିଁ । ବୋଧେ କାନ୍ଦିପାରନ୍ତି

ନାହିଁ । କିନ୍ତୁ କାନ୍ଦିଲାବେଳେ, ତାଙ୍କର ସାରା ଦେହ, ମାନେ ହୋଲ୍ ବଡି କାନ୍ଦୁଥାଏ । ଏଇଟା ଗୋଟାଏ ପ୍ରଫାଉଣ୍ ଗ୍ରିଫ୍ । ଭାରି ଦୁଃଖ କ'ଣ ସେ ସହିଚନ୍ତି । କିନ୍ତୁ କ'ଣ ସେ ଦୁଃଖ ସେ କାହାକୁ କହୁ ନାହାନ୍ତି ।"

– "ଦିଦି, ଏଇଟା କ'ଣ ସମ୍ଭବ ନୁହେଁ ଯେ ଆମେଇ ସେଇ ଦୁଃଖର କାରଣ ? ସେଥିପାଇଁ ସେ ଆମକୁ କେମିତି ସେକଥା କହିପାରିବେ ? ସେ ଆମକୁ ହୁଏତ କ୍ଷମା କରିଛନ୍ତି, କିନ୍ତୁ ଦୁଃଖଟାକୁ ଭୁଲିପାରୁ ନାହାନ୍ତି ।"

– "ୟୁ ହାଭ୍ ଏ ପଏଣ୍ଟ । ରମୁ, ତୁ ଯାହା କହୁଛୁ ସେଇଟା ଠିକ୍ ବି ହେଇପାରେ । ଯଦି ହେଇଥାଏ, କେଡେ ସାଙ୍ଘାତିକ କଥା ତୁ ବୁଝିପାରୁଚୁ ତ !... ମୋର କିନ୍ତୁ ମତେ ହେଉ ନାହିଁ ଆମେ ତାଙ୍କର ଏ ଗଭୀର ଦୁଃଖ ପାଇଁ ଦାୟୀ ।"

– "ତା'ହେଲେ ?"

ରୋଜି କିଛି ସମୟ ଚୁପ୍ ରହିଗଲା ତଳକୁ ଚାହିଁ । ତା'ପରେ ମନକୁ ମନ କହିଲା ପରି ଫୁଟ୍‌ଫୁଟ୍ କଲା, "ବାପା... ହୁଏତ ଜାଣିଥିବେ... ହେଇପାରେ ବାପା ନିଜେ ସେ ଦୁଃଖର କାରଣ ହୋଇଥାଇ ପାରନ୍ତି ।"

– "ଓ ମାଇ ଗଡ । ଏଇଟା କ'ଣ ସମ୍ଭବ ଦିଦି । ବାପା ତାଙ୍କୁ ଏତେ ଭଲପାଆନ୍ତି, ଏତେ ଇଜତ୍ କରନ୍ତି । ତୁ ଜାଣିଚୁ ନା, ମା' ସାଙ୍ଗରେ ନ ବସିଲେ ବାପା କେବେ ଖାଆନ୍ତି ନାହିଁ ।"

– "ମା' ବି ଅନ୍ୟ ସମୟରେ ଆମ ସମସ୍ତଙ୍କୁ କେତେ ଖୁସି ରଖନ୍ତି । ସେଥିପାଇଁ ହୁଏତ ନିଜେ ଖୁସି ରହନ୍ତି । ପିକ୍‌ନିକ୍ ପାଇଁ ବାପାଙ୍କୁ କହନ୍ତି । ତୋ' ପାଇଁ ମୋ' ପାଇଁ କେତେ ପ୍ରକାର ବରାଦ କରନ୍ତି ।"

– "ବାପା, କିନ୍ତୁ ସବୁବେଳେ ଆମ ଜିନିଷ ସାଙ୍ଗରେ ମା'ଙ୍କ ପାଇଁ କ'ଣ ହେଲେ ନିଶ୍ଚୟ ଆଣିଦିଅନ୍ତି । ଏଥର ଯେଉଁ ଘଣ୍ଟାଟା ଆଣିଦେଇଛନ୍ତି ଦେଖିଚୁ ନା' ।"

– "ହେଲେ ମା' କ'ଣ ସେଇଟା ପିନ୍ଧିଲେ ? ସେ ମୋ' ହାତରେ ଜବରଦସ୍ତ ସେଇଟା ବାନ୍ଧିଦେଲେ । ମତେ ସେଇଟା ପିନ୍ଧିବାକୁ ଭାରି ଖରାପ ଲାଗୁଚି । ମୋର ତ ଘଣ୍ଟାଟାଏ ଅଛି । ମା' ସେଇଟାକୁ ପିନ୍ଧିଥିଲେ ତାଙ୍କ ହାତକୁ ଖୁବ୍ ମାନିଥାନ୍ତା । ବାପା ବି ଖୁସି ହେଇଥା'ନ୍ତେ ।"

– "ଆଜି ରବିବାରଟାରେ, ବାପା ବି ଅଦ୍ଭୁତ ଲୋକ, ଗସ୍ତରେ ଚାଲିଯାଇଛନ୍ତି । ଘରେ ରହିଥିଲେ ମା'ଙ୍କ ମୁଡ୍ ଏମିତି ହେଇ ନ ଥାନ୍ତା । ରାତିକୁ ଫେରିଆସିବେ ବୋଲି କହିଛନ୍ତି ଟା ।"

– "ଆଚ୍ଛା ରମୁ ! ଆଜି ଚାଲ୍ ଗୋଟେ ଷ୍ଟ୍ରାଟେଜି କରିବା । ମା'ଙ୍କ ମୁଡ ଠିକ୍ ହେଇଗଲେ ସେ ଆମକୁ ଖୋଜିବେ । ଖିଆପିଆ ହେବ । ଆଜି ସଞ୍ଜବେଳେ ଛାତରେ ଆମେ ତାଙ୍କୁ ପଚାରିଦେବା ।"

– "ଆରେ ବାବା, ପଚାରିଲେ ଯଦି ସବୁ ବିଗିଡିଯାଏ ? ବାପା ଆସିଲେ ଆମକୁ ଛାଡିବେ !"

– "ଦେଖ୍ ରମୁ, ମା' ତତେ ଖୁବ୍ ଭଲପାଆନ୍ତି – ମୋତେ ଟିକିଏ କମ୍ !"

– "ଏଇଟା ତୋର ଭୁଲ୍ ଧାରଣା । ମା' ତତେ ହିଁ ସବୁଠୁ ବେଶି ଭଲପାଆନ୍ତି । ଏଇ ପଏଣ୍ଟ ଉପରେ ଆମର କେତେଥର ଝଗଡା ହେଲାଣି ମନେପକା । ଆମର ନିଷ୍ପତ୍ତି ହେଇଚି ଯେ ଏକଥା କେହି କାହାକୁ କହିବା ନାହିଁ । ମା' ଆମ ଦୁହିଁଙ୍କୁ ବେଜାଏ ଭଲ ପାଆନ୍ତି । ଏବେ କହ, କ'ଣ କହୁଛୁ ।"

– "ତୁ ହିଁ କଥାଟା ଆରମ୍ଭ କରିବୁ ।"

– "କାହିଁକି, ତୁ ଆରମ୍ଭ କରୁନୁ ।"

– "କାଇଁ, ତୁ କରୁନୁ! ତୋର ତ ଆବ୍‌ନର୍ମାଲ ସାଇକୋଲଜି ହେଲା ସବ୍‌ଜେକ୍ଟ – ତୁ ଆରମ୍ଭ କର ।"

– "ମୁଁ ମନା କରୁ ନାହିଁ – ମୁଁ ଖାଲି ତତେ କହୁଚି କଥାଟା ଆରମ୍ଭ କରିବାକୁ । ତା'ପରେ ମୁଁ ତାକୁ ଫଲୋଅପ୍ କରିବିନି ।"

– "ନାଇଁ ବାବା, ମତେ ଡର ମାଡୁଛି । କେମିତି କ'ଣ ପଚାରିବି ମୁଁ ଜାଣିପାରୁ ନାହିଁ ।"

– "ଦେଖ୍, ମୁଁ ଗୋଟେ ମଡେଲ ଦଉଚି । ଆମେ ଦୁହେଁ ମା'ଙ୍କ ଚୌକି ପକେଇ ତାଙ୍କୁ ଡାକିନବା । ସେ ବସିଲେ ଆମେ ଦିହେଁ ଆଗ ଚୌକି ପଛରେ ତାଙ୍କ ସାଙ୍ଗେ କିଛି ଗେଲ ହବା । ସେଇଠୁ ତଳେ ନିଲ୍ ଡାଉନ୍ ହେଇଯିବା । ତୁ ତାଙ୍କ କୋଳ ଉପରକୁ ମୁଣ୍ଡ ରଖି କହିବୁ, 'ମା, ତମେ ନା ରିଏଲି ଗ୍ରେଟ୍ । ବାପା କହୁଥିଲେ ତମେ ନା ପୋଷ୍ଟ ଗ୍ରାଜୁଏଟ୍ । ଏତେ ପାଠ ପଢିଛ – କେବେ କହିନାହିଁ ପଢିଚ ବୋଲି । ସବୁବେଳେ ଆମକୁ ଖୁସି କରିବାକୁ କୁହ ଆମେ କେତେ ବେଶି ଜାଣିଚୁ । ଆମକୁ ତୁମ କଥା କାହିଁକି କିଛି କହୁନାହଁ । କେତେ ଗପ କହିଚ, ରୁଷ୍ ଫରାସୀ ଗପ ସବୁ କେତେ ବଢିଆ । କଥାସରିତ୍‌ସାଗର, ମହାଭାରତ, ରାମାୟଣ କଥା ବି କି ବଢିଆ । ତମେ ସବୁ ପଢିଚ ନା' ମା! ନ ହେଲେ କେମିତି ଜାଣିଥାନ୍ତ!"

ଏଇଠି ହୁଏତ ମା' ତତେ କହିବେ, "ରମୁ' ବେଶି ବକ୍‌ବକ୍ କରୁଚୁ । ବସ୍ ଚୁପ୍ କରି ।"

– "ଏକଦମ୍ କରେକ୍ଟ, ଦିଦି! ମା' ଠିକ୍ ସେମିତି କହିବେ । ତା'ହେଲେ ଆଉ ହେଲା କ'ଣ?"

– "ହବ ନା! ଶୁଣ୍ କେମିତି ହବ । ମୁଁ ତା'ପରେ କହିବି – "ମା, ତମ ଲାଇଫ୍ ଷ୍ଟୋରି ଆମକୁ କାହିଁକି କହୁ ନାହଁ । ତମ ବାପାଙ୍କ କଥା, ମା'ଙ୍କ କଥା – ଆମକୁ କହ ନା ମା' ପ୍ଲିଜ୍ ।"

– "ଆରେ ଦିଦି, ଏଇଟା ତ ଓଭର ସଟ୍ ହେଇଗଲା । ତାଙ୍କ ବାପ ମା'ଙ୍କ କଥାରେ କ'ଣ ପାଇବା? ଆମେ ପରା ତାଙ୍କ ଗ୍ରିଫ୍ ମାନେ ସେଇ ଦୁଃଖ କଥା ପଚାରିବା!"

– "ବେକୁବ୍! ତୁମ ଦୁଃଖ କ'ଣ ବୋଲି ପଚାରିଦେଲେ ସେ କହିଦେବେ ନା' କ'ଣ? ସବୁବେଳେ ନଦୀଟାକୁ ତା' ଅରିଜିନ୍ ମାନେ ମୂଳ ଉତ୍ସରେ ଧରିବାକୁ ହୁଏ । ଏମିତି ଦୁଃଖ ସବୁ ବାରି ଗହୀରରେ ଲୁଚି ରହିଥାଏ । ମୂଳରୁ ସବୁ ଫିଟେଇ ଆଣିଲେ ତା' ମନକୁ ଖୋଲିଯାଏ ।"

– "ବାଃ! ଦିଦି, ୟୁ ଆର ଗ୍ରେଟ୍ । ମୁଁ ଦେଖୁଚି ତୋ' ବିଷୟଟାକୁ ତୁ ଠିକ୍ ଧରିଚୁ! ହେଲେ

ଦିଦି, ଏ ସବୁ ପ୍ଲାନ୍ ଫେଲ୍ ବି ମାରିଯାଇପାରେ । ମା' ହଠାତ୍ ସଞ୍ଜବେଳେ ଶ୍ରୀ ଅରବିନ୍ଦ ଯୋଗ ମନ୍ଦିରକୁ ବାହାରି ପାରନ୍ତି । ଏମିତି ମୁଡରେ ସେ ପ୍ରାୟ ସେଠିକି ସନ୍ଧ୍ୟାରେ ଚାଲିଯାନ୍ତି – ତୁ ଜାଣିଚୁ ।"

– "ତୁ ଠିକ୍ କହୁଚୁ । ହେଲେ ଗୋଟେ ଚାନ୍ସ ନିଆଯାଉ । ମୁଁ ଏଇଟା କାହିଁକି କହୁଚି ନା' ବାପା ଘରେ ଥିଲେ ଏ କାମ ହବ ନାହିଁ । ମତେ କ'ଣ ଲାଗୁଚି ଜାଣିଚୁ ନା, ବାପା ସମ୍ ହାଉ ଏଥିରେ ଜଡିତ ଅଛନ୍ତି ।"

– "ମତେ ଲାଗୁନାହିଁ । ବାପା ଆମର କେତେ ବଢ଼ିଆ ଲୋକ । ସେ କାହିଁକି ମା'କୁ ଏମିତି କଷ୍ଟ ଦେବେ ?"

– "ଆରେ ମୁଁ କ'ଣ କହୁଛି ସେ ଦେଇଚନ୍ତି ବୋଲି ? ତାଙ୍କ ଅଜାଣତରେ ହୁଏତ ଏମିତି କ'ଣ ହେଇଯାଇଥିବ, ଯେଉଁଥିରେ ମା'ଙ୍କ ବିଇଙ୍ଗ୍ – ତାଙ୍କ ସମଗ୍ର ସତ୍ତା ଦୋହଲି ଯାଇଥିବ ।"

– "ସେମିତି ତ' ଆମେ ବି ଆମ ଅଜାଣତରେ କ'ଣ କରିଦେଇଥିବା ।"

– "ଠିକ୍; କିଏ ନାହିଁ କଲା ? ସେଇଟା ବି ସତ ହେଇପାରେ । କିନ୍ତୁ ରମୁ, ଏଇଟା ଆମ ଫେମିଲିର ଟ୍ରାଜେଡି । ଏଇଟାକୁ ଆମକୁ କୌଣସି ପ୍ରକାରେ ବାହାର କରିବାକୁ ହେବ ।"

ଭାଇ ଭଉଣୀ ତାଙ୍କ ପଢାଘରେ ଚୁପ୍‌ଚାପ୍ ଏ ସବୁ ଯୋଜନା କରୁଥା'ନ୍ତି । ଏତିକିବେଳେ ଉପର ବଖରାରେ ସ୍ୱାଭାବିକ ଶବ୍ଦମାନ ଶୁଣାଗଲା । ବାସନ୍ତୀ ବୋଧହୁଏ ଡାଇନିଂ ଟେବୁଲ ଉପରେ ଫୁଲଦାନି ଘୁଞ୍ଚାଘୁଞ୍ଚି କରି ସଫା କରିବା ଆରମ୍ଭ କରି ଦେଇଥିଲା ।

ତା'ମାନେ ମା' ନିଶ୍ଚୟ ଉଠି ମୁହଁ କାନ ଧୋଇ ଫ୍ରେସ୍ ହୋଇ ସାରିବେଣି । ଗମ୍ଭୀର ରହିଥିବେ – ଏମିତି ତ' ସେ ଦିନ ସାରା ଗମ୍ଭୀର ରହିବେ । କିନ୍ତୁ କଥାବାର୍ତ୍ତା ହେବେ । ସାଧାରଣ କାମ ସବୁ ଚାଲିବ । କିନ୍ତୁ ମା' ସେ ଦିନସାରା ହସଖୁସି ହେବେ ନାହିଁ । ତାଙ୍କ ଚେହେରାରେ କ'ଣଟାଏ ଘୋଡେଇ ହେଇ ରହିଥିବ ।

ରୋଜି ରମୁ କିଛି ନ ଦେଖିଲା ପରି, କିଛି ନ ଜାଣିଲା ପରି ଉପର ଘରକୁ ଉଠିଗଲେ । ମା' ସେତେବେଳେ ସାଲାଡ ପାଇଁ କାକୁଡି କାଟୁଥିଲେ ।

ରୋଜି ଟମାଟୋ, ଛୁରୀ ଧରି ବସିଗଲା ଚେକି ଚେକି କରି କାଟିବା ପାଇଁ । ରମୁ ଛଡେଇଲା ମଟର ।

ବାସନ୍ତୀ ପ୍ରଥମ ପାଟି ଫିଟେଇଲା "ଦି'ଟା ବାଜିଲାଣି । ପ୍ଲେଟ୍ ଲଗେଇଦେବି କି ମା' ?"

ମା' ଇତସ୍ତତଃ ନ କରି ସାଙ୍ଗେ ସାଙ୍ଗେ ହଁ କରିଦେବା କଥା । କିନ୍ତୁ ସେଦିନ କଥାଟା ଟିକିଏ ନିଆରା – କିଛି ସମୟ ଚୁପ୍ ରହି ମା' କହିଲେ, "ହ, ଲଗେଇ ଦେ । ପିଲାଙ୍କ ପାଇଁ ଲଗେଇବୁ । ମୁଁ ଟିକିଏ ଡେରିରେ ଖାଇବି ।"

ରୋଜି କହିଲା, "ଆଜି ରବିବାର ପରା – ଆମେ ସମସ୍ତେ ଏକାଠି ଖାଇବା କଥା । ବାପା ଆଜି ଗସ୍ତରେ ଯାଇଛନ୍ତି ବୋଲି, ନ ହେଲେ ସେ ବି ଆମ ସାଙ୍ଗରେ ଖାଇବାକୁ ବସିଥା'ନ୍ତେ ।

ତମେ ଯଦି ଡେରିରେ ଖାଇବ ଆମେ ବି ଡେରିରେ ଖାଇବୁ ।"

– "ଆଚ୍ଛା ଠିକ୍ ଅଛି, ମୁଁ ତମ ସାଙ୍ଗରେ ବସିବି !"

ଦୁହେଁ ଖୁବ୍ ଖୁସି ହେଇଗଲେ । ବାହାରିପଡିଲେ ଟେବୁଲକୁ ସବୁ ଖାଇବା ଜିନିଷ ଟେକିନେବାକୁ ।

ଖିଆପିଆ ହେଲା । କିନ୍ତୁ ଠିକ୍ ଜମିଲା ନାହିଁ । ମା' ତ ଖାଲି ହଁ ନାହିଁରେ କଥା ଛିଣ୍ଡେଇ ଦଉଥିଲେ । କଥା ହେଲେ ସିନା ଭିତରଟା ଖୋଲିଯିବ । ମା'ଙ୍କର ତ ଅଲଗା ସମସ୍ୟା ।

ହିରଣ୍ମୟୀ ଦେବୀଙ୍କ ଆଚରଣରେ କେବେ କିଛି ତ୍ରୁଟି ହେବାର କାହାରି ଆଖିରେ ପଡି ନାହିଁ । ସମ୍ଭ୍ରାନ୍ତ ମର୍ଯ୍ୟାଦାବୋଧ ବାରି ହୋଇପଡେ ତାଙ୍କର ସବୁ କଥା ଓ କାର୍ଯ୍ୟରେ । ସେଥିପାଇଁ ସିଂହସାମନ୍ତ ପରିବାର ପାଇଁ ସମସ୍ତଙ୍କର ଗୋଟାଏ ସ୍ୱତନ୍ତ୍ର ସମ୍ମାନ ରହିଥାଏ । ବିଦ୍ୟାଧର ସିଂହ ସାମନ୍ତ ସରକାରୀ ହାକିମ ଭାବରେ ଯେତେ ନୁହେଁ, ବଂଶ-ମର୍ଯ୍ୟାଦାରେ ସେତେ ଖାତିର ପାଆନ୍ତି ।

ଘରର ସମସ୍ତଙ୍କ ଉପରେ, ଏପରିକି ଘରର ଆସବାବପତ୍ର, ସାଜସଜ୍ଜା ଉପରେ ମା'ଙ୍କ ପ୍ରଭାବ କେତେ, ରୋଜି ଆଉ ରମୁ ବେଶ୍ ଭଲଭାବରେ ବୁଝିଛନ୍ତି । ଠିକ୍ କେଉଁ ଜିନିଷ କେଉଁଠାରେ ରହିବା କଥା, ମା' ହିଁ ନିଷ୍ପତ୍ତି ନିଅନ୍ତି । ସେଥାପାଇଁ ପ୍ରତିଟି ବଖରାକୁ ପଶିଗଲେ ଲାଗେ ସତେ ବା ନିପୁଣ ଚିତ୍ରଶିଳ୍ପୀ ହାତରେ ଅଙ୍କା ହୋଇଥିବା ଛବିଟିଏ ।

ସବୁ ଏମିତି ସୁସଂଯତ, ସୁନ୍ଦର କରି ରଖିବା ପାଇଁ ହିରଣ୍ମୟୀ ଦେବୀ ଖୁବ୍ ପରିଶ୍ରମ ବି କରନ୍ତି । କେତେବେଳେ ଝରକା ପରଦା ଆଉ ସୋଫା ଖୋଳ ବଦଳ ହେବ, ବା ଧୁଆ ସଫା ହେଇ ଇସ୍ତ୍ରୀ କରାହେବ; କେତେବେଳେ କାର୍ପେଟ୍ ଝଡାହେବ, କାନ୍ଥମାନଙ୍କରେ ନୂଆ ରଙ୍ଗ ଲାଗିବ; କେଉଁ ରଙ୍ଗ ଲାଗିବ, ସବୁ ମା' ସ୍ଥିର କରିଥା'ନ୍ତି । ଆଉ ସେ ଅନୁସାରେ ଲୋକ ଲାଗି ତାହା କରିଦିଅନ୍ତି । ବେଳେବେଳେ ବିଦ୍ୟାଧରବାବୁ ବା ପିଲାମାନଙ୍କୁ ମଧ କିଛି କିଛି ସାହାଯ୍ୟ କରିବାକୁ ପଡେ । ଘର ସଫେଇ ଦିନ ଯଦି ସମଗ୍ର ପରିବାର କିଛି ସାହାଯ୍ୟ କରୁଥା'ନ୍ତି, ସେଇଟା କେବଳ ହିରଣ୍ମୟୀଙ୍କ ନିର୍ଦ୍ଦେଶରେ । ସୋଫାଟା ଇଞ୍ଚେ ବାଁ ବା ଡାହାଣକୁ ଯିବ ତାଙ୍କୁ ନ ପଚାରିଲେ ହେବ ନାହିଁ ।

ସେମାନେ କାମରେ ବ୍ୟସ୍ତ ଥିବା ଭିତରେ ହିରଣ୍ମୟୀ ଦେବୀ ଘୋଷଣା କରନ୍ତି ଦଶମିନିଟ୍ ପାଇଁ କାମ ବନ୍ଦ ।

ବାସନ୍ତୀ ଗୋଟିଏ ଟ୍ରେ'ରେ ଗରମ ପକୁଡି, ଲଙ୍କା ଭଜା ଆଉ କେଚ୍ ଅପ୍ ଆଣି ଥୋଇଦିଏ । ସମସ୍ତେ ଖାଇବାବେଳେ ନିଜେ ହିରଣ୍ମୟୀ ଦେବୀ ଚା ତିଆରି କରିଦିଅନ୍ତି କପ୍‌ମାନଙ୍କରେ ।

ନିଜେ ବି ସେମାନଙ୍କ ସାଙ୍ଗରେ ମିଶି ଖାଆନ୍ତି, କିନ୍ତୁ ନାମକୁ ମାତ୍ର । ଦଶମିନିଟ୍ ପରେ ଟ୍ରେ ଚାଲିଯାଏ । ଅଧୁରା କାମ ପୁଣି ଆରମ୍ଭ ହୋଇଯାଏ ଉତ୍ସାହରେ ।

ବିଦ୍ୟାଧରବାବୁ କେଉଁ ଦିନ କେଉଁ ଋତୁରେ କ'ଣ ପିନ୍ଧିବେ, ପ୍ରୟୋଜନ ହେଲେ କେଉଁ ସୁଟ୍ ସାଙ୍ଗକୁ କେଉଁ ଟାଇ ବାନ୍ଧିବେ, ଏଇଟା କାହାକୁ ଭାବିବାକୁ ହୁଏ ନାହିଁ – ମା' ସବୁ ଆଗରୁ

ଥୋଇଦେଇଥାଆନ୍ତି ।

ରୋଜି, ରମୁ କେବେ ଦିନେହେଲେ ଇସ୍ତ୍ରୀ ଭାଙ୍ଗ ନ ଥିବା ପୋଷାକ ପିନ୍ଧି କଲେଜକୁ ଯାଇନାହାନ୍ତି । ଠିକ୍ ସମୟରେ ଖାଇସାରି ପ୍ରତିଦିନ ବଦଳୁଥିବା ଟାୱେଲରେ ମୁହଁ ପୋଛି ଉଠିଲା ବେଳକୁ ସମସ୍ତଙ୍କ ପାଇଁ ପିନ୍ଧିବା ପୋଷାକ ନିର୍ଦ୍ଦିଷ୍ଟ ସ୍ଥାନରେ ସଜା ହୋଇ ରହିଥାଏ । ସତେ ବା ସବୁ କଥାକୁ ମେସିନ୍ ଭଳି କେହି ଜଣେ ନିର୍ଭୁଲ ତଦାରଖ କରି ଚାଲିଛି ।

ଭାବିଲେ ତାଙ୍କୁ ଆଶ୍ଚର୍ଯ୍ୟ ଲାଗେ, ଦେହସୁହା ହୋଇଯାଇଥିବାରୁ ସବୁ କଥା ତାଙ୍କୁ ଅସାଧାରଣ ଲାଗେ ନାହିଁ ।

ବାସନ୍ତୀ ସାଙ୍ଗକୁ ଆଉ ଦୁଇଜଣ ଘରେ କାମ କରନ୍ତି । ଜଣେ ମା'ଙ୍କ ସାଙ୍ଗରେ ରନ୍ଧାବଢ଼ା, ଘର ସଜାସଜି ଆଦି କାମ ଅନବରତ କରୁଥାଏ । ଇସାରା ପାଇବା ମାତ୍ରେ ସେ ବୁଝିଯାଏ ଏବଂ ଚଟ୍‌କିନା, କ'ଣ ଟିକେ ବଙ୍କା ହୋଇଥିଲେ, ତାକୁ ସଳଖି ଦିଏ । ମା'ଙ୍କୁ ସେ ସବୁ ଦିଶେ କେମିତି କେଜାଣି !

ଆଉ ଦୁଇଜଣ ବାହାର ବୋଲବାଟି କରନ୍ତି । ଜଣକ ନାଁ ଗଗନ, ଆରଟା ନାଁ ପବନ । ମା' ନିଜେ ନାଁ ଦେଇଛନ୍ତି । ଘର ଭିତରେ ଯୋଉଠି ଦେଖିଲେ ସେଇଠି ଥାଏ ଗଗନ । ଦିନ ଭିତରେ ପନ୍ଦର ଥର ଘରୁ ବାହାରକୁ ଉଡିଆସୁଥାଏ ପବନ ନାନା ପ୍ରକାର ବରାଦି କାମରେ । ପୋଛାପୋଛି, ଝାଡୁ ସଫେଇ, ସବୁ ବାସନ୍ତୀ କରୁଥାଏ । ଏମିତି ବୈଠକଘର ବୁଲି ମା' ଚାଲି ଆସିଲା ବେଳକୁ କାଚ ଆଲମାରିରେ ଋଙ୍ଗରେ ଟିପ ମାରି ବାସନ୍ତୀକୁ ଦେଖେଇ ଦିଅନ୍ତି । ବାସନ୍ତୀ ଜିଭ କାମୁଡିପକାଏ । ସେ ଦାଢଯାକ ସେ କନା ମାରି ନାହିଁ । ଧୂଳି ଜମି ଯାଇଛି । ମା' ତାକୁ ଚାହିଁ ଟିକିଏ ହସିଦିଅନ୍ତି । ସେତିକିରେ ତା'ର ଶାସନ ହେଇଯାଏ ।

ବାସନ୍ତୀର ମନେ ନ ଥିବ । ଦିନେ ଦେଖିଲାବେଳକୁ ତା'ର ଜନ୍ମଦିନ ନୂଆ ଶାଢୀ ସକାଳୁ ଥୁଆହୋଇଥିବା ଟ୍ରେ ଉପରେ । ଶାଢୀ ସାଙ୍ଗରେ ଦିଟା ଗଜଦନ୍ତ ଫୁଲ ଯୋଉଟା ଖୋସାରେ ମାରିବାକୁ ସେ ଭଲପାଏ । ହିରଣ୍ମୟୀ ଦେବୀ ତାକୁ ଚାହିଁରହନ୍ତି । ସେ ଆଖି ଛଳଛଳ କରି ଶାଢୀଟିକୁ ବୁକୁ ପାଖରେ ଜାକିଧରେ । ତାଙ୍କୁ ଚାହିଁପାରେ ନାହିଁ । ଆଖି ତଳକୁ କରିନିଏ । ଇଚ୍ଛା ହୁଏ ତାଙ୍କୁ ମୁଣ୍ଡିଆ ମାରିବାକୁ । କିନ୍ତୁ ସେଇଟା ମା' ମନା କରି ଦେଇଛନ୍ତି । ଏ ଘରେ କେହି କାହା ପାଦତଳେ ମୁଣ୍ଡିଆ ମାରନ୍ତି ନାହିଁ । ସମ୍ମାନ ଶ୍ରଦ୍ଧା ଜଣାଇବାକୁ ଏଇଟା ଆଦୌ ଆବଶ୍ୟକ ନୁହେଁ ।

ଗଗନ ଆଉ ପବନ ଛୁଟିରେ ଘରକୁ ଯାଆନ୍ତି । ଘରକୁ ନବା ପାଇଁ ନୂଆ ଲୁଗା, ତାଙ୍କ ଘରର ଅନ୍ୟମାନଙ୍କ ପାଇଁ ମନଲାଖି ଜିନିଷ ସଜଡା ହେଇଥାଏ । ସେଇ ଛୁଟିବେଳକୁ ହିରଣ୍ମୟୀ ମଧ ତାଙ୍କ ପରିବାରକୁ ନେଇ ବାହାରିଯାଆନ୍ତି ଦକ୍ଷିଣ ନ ହେଲେ ଉତ୍ତରକୁ । ଆଗରୁ ରହିବା, ଖାଇବା ପିଇବା, ବୁଲିବା ବନ୍ଦୋବସ୍ତ ସରିଥାଏ । ଯିବାଆସିବା ଯାତ୍ରା-ବ୍ୟବସ୍ଥା ସରିଥାଏ । ଏପରିକି ଏ ବାବଦର ଖର୍ଚ୍ଚ ପାଇଁ ସୁଦ୍ଧା ହିରଣ୍ମୟୀ ବର୍ଷଯାକର ସଞ୍ଚୟ ରଖିଥା'ନ୍ତି । କେବେ କେମିତି ବିଦ୍ୟାଧର ସିଂହ ସାମନ୍ତ ସରକାରୀ ଭ୍ରମଣ ସାହାଯ୍ୟ କିଛି ମିଶେଇଦିଅନ୍ତି ।

ଏସବୁ ଦାୟିତ୍ୱ ଭିତରେ ବି ରୋଜି ଆଉ ରମୁ ସାଙ୍ଗରେ ଗପସପ କରିବାକୁ ସେ ସମୟ ବାହାର କରିନିଅନ୍ତି । ସେଇଟା ଏଇଲାଗେ ପିଲାଙ୍କ ପଢା ସମୟରେ ମିଶିଗଲାଣି । ମା' କିନ୍ତୁ ରାତିରେ ଖିଆପିଆ ସରିଗଲା ପରେ ଗୋଡହାତ ଧୋଇ ପୂଜାଘରେ ବସନ୍ତି । ସେଇଠି କିଛି ସମୟ ପଢନ୍ତି, ଆଉ ଗୋଟିଏ ଡାଇରିରେ କ'ଣ ସବୁ ଲେଖନ୍ତି । ଯେତେ ଯାହା ହୋଇଗଲେ ବି ଏଥିରେ ବ୍ୟତିକ୍ରମ କେବେହେଲେ ହୁଏ ନାହିଁ ।

ତଥାପି ହିରଣ୍ମୟୀଙ୍କୁ କାହିଁକି ଅଚାନକ ଏ ଦୁରନ୍ତ ଦୁଃଖ ଗ୍ରାସ କରିଯାଏ, କେହି କହିପାରିବେ ନାହିଁ । ସେତେବେଳେ ସେ ଖୁବ୍ କଷ୍ଟ ପାଆନ୍ତି । ଭିତରେ ମନ୍ଥି ହୋଇ ଯାଆନ୍ତି । ଆଖିର ମଙ୍ଗ ଯାଏ ଲୁହ ଛଳଛଳ ହେଉଥିଲେ ସୁଦ୍ଧା ବହିଯିବାକୁ ଦିଅନ୍ତି ନାହିଁ । କାହାକୁ କିଛି କହନ୍ତି ନାହିଁ । ଏକାକୀ ଲଢନ୍ତି । ଏକାକୀ ସହନ୍ତି ସେ ଦୁଃସହ ଜ୍ୱାଳା ।

ଏଇଟା ସମସ୍ତଙ୍କୁ ବାଧେ । କିନ୍ତୁ ଏଥିରେ କାହାରି କିଛି କରିବାର ନ ଥାଏ । ସେ ରାସ୍ତା ହିରଣ୍ମୟୀ ନିଜେ ବନ୍ଦ କରି ଦେଇଛନ୍ତି ।

ଖାଇସାରି ଉଠିଲାପରେ ରୋଜି ଆଉ ରମୁ ମଝିରେ ମଝିରେ ମା'ଙ୍କ ମୁହଁକୁ ଚାହିଁଦେଉଥା'ନ୍ତି । ମୌସୁମୀ ମେଘ ଢେଙ୍କି ରଖିଥାଏ । ଏମାନଙ୍କର ସାହସ ହୁଏ ନାହିଁ କିଛି କହିବାକୁ । ଭିତର ବାଲ୍‌କନିରେ ଗୋଡ ଲମ୍ବେଇ ବସିବାକୁ ଗୋଟାଏ ଆରାମ ଚୌକି ପଡିଛି । ମା' ସେ ଦିନ ଚୁପ୍‌ଚାପ୍ ଯାଇ ତାରି ଉପରେ ବସି ଆଖି ବୁଜିଦେଲେ । ରୋଜି ରମୁ ଦେଖିଲେ, ଠାରାଠାରି ହେଲେ ଏବଂ ନିଷ୍ପତ୍ତି ନେଲେ ସେଇଠୁ ଖସିବାକୁ । ମା' ସେମିତି ଆଖି ବୁଜି କହିଲେ, "ଆରେ, ଚାଲିଯାଉଛ କୁଆଡେ, ବସ !"

ରୋଜି ସାହସ କରି କହିଲା, "ତମ ଦେହ ଆଜି ଭଲ ଲାଗୁ ନାହିଁ କି ମା' ? ଏମିତି ମାନ୍ଦା ଜଣାପଡୁଚ, ମୁଁ ତୁମ ମୁଣ୍ଡ ଚିପିଦେବି କି ?"

– "ଆରେ ନାହିଁ, ମୁଁ ଠିକ୍ ଅଛି । ତୁମେ ବସ ଦି'ଜଣଯାକ । ହେଇ ପାଞ୍ଚ ମିନିଟ୍ ।" ମା'ଙ୍କ ଆଖି ତଥାପି ବନ୍ଦ ଥାଏ ।

ରମୁ ରୋଜି ପାଖାପାଖି ଦିବାନ ଉପରେ ବସିଥା'ନ୍ତି । ରମୁ ଆସ୍ତେ ରୋଜି ଡେଣାରେ ଆଙ୍ଗୁଠି ମାରି ତାକୁ ଚାହିଁଲା । ଆଖିରେ ପ୍ରଶ୍ନ, ଉତ୍କଣ୍ଠା, କୌତୂହଳ । ରୋଜି ତଳଓଠ ଲେଉଟାଇ ସୂଚାଇଦେଲା ଯେ ତା' ପାଖରେ କୌଣସି ଉତ୍ତର ନାହିଁ ।

ମନେହେଲା ହିରଣ୍ମୟୀ ବୋଧେ ଶୋଇଗଲେ । ତାଙ୍କ ଚେହେରା ଶାନ୍ତ ପ୍ରସନ୍ନ ଦେଖାଯାଉଥିଲା । ସେ ତାଙ୍କ କୋଳ ଉପରେ ଦୁଇ ହାତ ରଖି ଶୋଇଯାଇଥିଲେ ।

କିନ୍ତୁ ସେ ଶୋଇ ନ ଥିଲେ । ଅଳ୍ପ ସମୟ ପରେ ସେ ଆଖି ଖୋଲି ଚାହିଁଲେ, ସାମାନ୍ୟ ହସି ପୁଣି ଆଖି ବନ୍ଦ କରିନେଲେ ।

ରୋଜି, ରମୁ ଅପେକ୍ଷା କରି ବସିଥା'ନ୍ତି । ତାଙ୍କର ଉତ୍କଣ୍ଠା ଅପେକ୍ଷା ଉଦ୍‌ବେଗ ବେଶୀ ବଢୁଥାଏ । ମା' ଏମିତି କେବେ କରନ୍ତି ନାହିଁ । କାହିଁକି ସେ ଏମିତି ଆଚରଣ କରୁଛନ୍ତି ?

ସେମାନଙ୍କୁ ଏକରକମ ଡର ମାଡିଲା । କିଛି ଅଘଟଣ ଘଟିବାକୁ ଯାଉ ନାହିଁ ତ ! ମା' ସମ୍ପୂର୍ଣ୍ଣ ସୁସ୍ଥ ଅଛନ୍ତି ତ' ?

ପାଞ୍ଚ ମିନିଟ୍ ଜାଗାରେ ପନ୍ଦର ମିନିଟ୍ ସେ ସେମିତି ପଡିରହିଛନ୍ତି । ଏମିତି ତ ସେ କେବେ ଶୁଅନ୍ତି ନାହିଁ ? ଏଇଟା କ'ଣ ନିଦ ନା ଆଉ କିଛି ? ସେ କ'ଣ ଧ୍ୟାନ କରୁଛନ୍ତି ?

ରୋଜି କିଛି ବୁଝିପାରୁ ନ ଥିଲା । ସ୍ଥିର ବି ବସିପାରୁ ନଥିଲା । ଉଠିଲେ କାଳେ ମା' ଡିଷ୍ଟର୍ବ ହୋଇଯିବେ, ଏଇ ଭୟରେ ସେ ନିଃଶ୍ୱାସ ବନ୍ଦ କଲା ପରି ସେଇ ଗୋଟାଏ ଭଙ୍ଗୀରେ ବସିରହିଲା । ପ୍ରତି ମିନିଟିଏ ଦେଢମିନିଟ୍‌ରେ ହାତଘଣ୍ଟାକୁ ଦେଖି ନେଉଥିଲା ।

ରମୁ ଖୁବ୍ ଡରିଯାଇଥିଲା । କିନ୍ତୁ ମା'ଙ୍କ ବେକ ପାଖ ଶିରା ଠିକ୍ ଗୋଟିଏ ଛନ୍ଦରେ ଧପ୍‌ଧପ୍ ହେବା ତାକୁ ଦିଶିଗଲା । ବୁକୁ ଠିକ୍ ଶ୍ୱାସ ପ୍ରଶ୍ୱାସରେ ଉଠୁଥିଲା ଏବଂ ପଡୁଥିଲା । ସେ ଆଶ୍ୱସ୍ତ ବୋଧକଲା । ତା'ହେଲେ ମା' ଠିକ୍ ଅଛନ୍ତି – ଶୋଇଯାଇଛନ୍ତି ।

ପତା ତଳେ ଆଖି ଗୋଟାଳିଗୁଡିକ ଖୁବ୍ ଚଞ୍ଚଳ ହଲ୍‌ଚଲ୍ ହେଉଥିବାର ଦେଖାଗଲା । ହାତର ଆଙ୍ଗୁଠିଗୁଡିକ ମଝିରେ ମଝିରେ ଟିପ୍‌ଟିପ୍ ହେଲା । ନିଃଶ୍ୱାସର ଛନ୍ଦ ଭାଙ୍ଗିଯାଉଥିଲା । ରୋଜି ଚୁପ୍‌ଚୁପ୍ କହିଲା ରମୁର କାନ ପାଖରେ – ମା' ଏଇନା ଗୋଟାଏ କ'ଣ ସ୍ୱପ୍ନ ଦେଖୁଛନ୍ତି ।

"କ'ଣ ସ୍ୱପ୍ନ ଦେଖୁଛନ୍ତି ?"

– "ସେଇଟା କ'ଣ କହିଦେବ ? କିନ୍ତୁ ଏଇଟା ନିଶ୍ଚୟ ଅସାଭାବିକ ବୋଲି ମୁଁ ଭାବୁଛି । ମା' ଯେମିତି ନିଦ ଘାରିଆସିଲା ପରି ଶୋଇଗଲେ ଏବଂ ଦଶ ପନ୍ଦରମିନିଟ୍ ଭିତରେ ସ୍ୱପ୍ନ ଦେଖିବା ଆରମ୍ଭ କରିଦେଲେ – ଆଉ କେବେ ଏମିତି ହୋଇଥିଲା ବୋଲି ମୁଁ ଭାବୁ ନାହିଁ ।"

– "ସତ କଥା ! ମା' ଦି'ପହରେ ଆଦୌ ଶୁଅନ୍ତି ନାହିଁ । ଦିନେ କହୁଥିଲେ ଯେ ଖୁବ୍ ଛୋଟ ଛୁଆ ବା ବେଶ୍ ବୁଢା ମଣିଷ ପାଇଁ ଦିନବେଳେ ଶୋଇବା ଦରକାର ହୁଏ – ଅନ୍ୟମାନଙ୍କ ପାଇଁ ନୁହେଁ । ଆଜି ରବିବାର, କାମ ବି ଖୁବ୍ ଭିଡ । ସପ୍ତାହକର ସାଫ୍ ସଫେଇ କାମ ।"

"ହେଃ, ରମୁ ଚୁପ୍ କର, ମା' ବୋଧେ ଉଠିପଡିବେ ।"

ରୋଜିର କଥା ନ ସରୁଣୁ ହିରଣ୍ମୟୀ ଦେବୀ ମୁଣ୍ଡ ଗଡେଇଲେ ଜୋର୍‌ରେ । କ'ଣ ଅସ୍ପଷ୍ଟ ଚିତ୍କାରଟାଏ ବିଳିବିଳିଇଲା ପରି ଶୁଭିଲା । ସେ ମଟମଟ କରି ଚାହିଁଲେ ଚାରିଆଡେ । ତାଙ୍କ ତୁଣ୍ଡରୁ ବାହାରିଗଲା "ବାପା ।" ନିଦ ମଳମଳ ଆଖି । ସ୍ୱପ୍ନାବିଷ୍ଟ ଚେତନା ।

ରୋଜି ଇସାରାରେ ରମୁକୁ ଚୁପ୍ କରିଦେଇ କହିଲା – "ବାପା କାହାନ୍ତି ? ବାପା ପରା ଟୁର୍‌ରେ ଯାଇଛନ୍ତି । ତମେ କ'ଣ ବାପାଙ୍କୁ ସ୍ୱପ୍ନ ଦେଖିଲ କି ?"

ହିରଣ୍ମୟୀ ପୁଣି ଆଖି ମଟମଟ କରି ଚାହିଁଲେ । ଏଥର ବୋଧେ ସେ ରୋଜିକୁ ଦେଖିପାରିଲେ; ତା' ପ୍ରଶ୍ନକୁ ଶୁଣିପାରିଲେ । କହିଲେ, "ନା" –

– "ତୁମେ 'ବାପା' ବୋଲି ଡାକିଲ ତ' – କିନ୍ତୁ ଆମ ବାପାଙ୍କୁ ତୁମେ କାହିଁକି ବାପା ବୋଲି ଡାକିବ ? ତମେ କ'ଣ 'ହେଇ ବାପା ଆସିଲେ' ବୋଲି ଆମକୁ କହିବାକୁ ଚାହୁଁଥିଲ, ନା

ତମ ନିଜ ବାପା – ମାନେ, ଆମେ ଅଜାଙ୍କୁ ଦେଖିଲ ବୋଲି ସେମିତି ଜାକିଲ ?"

ହିରଣ୍ମୟୀ ମୁହଁ ହଲାଇ ହଁ କଲେ ।

ରୋଜି ଉତ୍ସାହିତ ହୋଇ ପଚାରିଲା, "ସେ କ'ଣ ଆଗଭଳି ଦିଶୁଥିଲେ ? ସେ ଜଣେ ଭାରି ନାମଜାଦା ଲୋକ ଥିଲେ ପରା !"

ହିରଣ୍ମୟୀ ରୋଜିକୁ ଚାହିଁଲେ । ତାଙ୍କ ଆଖି ଛଳଛଳ ହୋଇଗଲା । ରୋଜି ଭାବିଲା ବୋଧହୁଏ ସବୁ ବିଗିଡିଗଲା । ମା' ବୋଧେ ପୁଣି ସେଇ ମୁଡ୍‌ରେ ପଡିଯିବେ । କିନ୍ତୁ ତାକୁ ବିସ୍ମିତ କରି ହିରଣ୍ମୟୀ ଦେବୀ କଥା କହିବାକୁ ଆରମ୍ଭ କଲେ ।

"ବାପା ହଠାତ୍ ଆସି ମତେ ନିଦରୁ ଉଠାଇଦେଇ ଚାଲିଗଲେ । ମୁଁ ତାଙ୍କୁ ସ୍ପଷ୍ଟ ଦେଖିପାରିଲି । ତାଙ୍କ ମୁହଁରେ ସେଇ ସମସ୍ତଙ୍କୁ ସବୁ କଥା ପାଇଁ ମାଫ୍ କରୁଥିବା ହସ । ସେ ହାତ ହଲେଇଦେଇ ଉଭେଇଗଲେ !"

– "ମା' ! ଏଇଟା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏମିତି ଅସମୟରେ ତମେ ଶୋଇଯିବା ଅସାଭାବିକ ହେଲେ ମଧ ଭେରି ମିନିଙ୍ଗ୍‌ଫୁଲ – ଖୁବ୍ ଅର୍ଥପୂର୍ଣ୍ଣ । ସେ ତୁମକୁ ବୋଧେ କିଛି ବାର୍ତ୍ତା ଦବାକୁ ଆସିଥିଲେ । ତାଙ୍କୁ ତୁମେ ସପ୍ନରେ ଦେଖିପାରିବ ବୋଲି ବୋଧହୁଏ ତୁମକୁ ଶୁଆଇଦେଇଥିଲେ ।"

ହିରଣ୍ମୟୀ ମନକୁ ମନ ସଂକଳ୍ପ କଲା ପରି କହିଲେ, "ଆଜି କହିଦେବି କି ମୋର ଦୁଃଖ ? ବାପା ମୋର ଏତେ କଟାଳ ସହିଛନ୍ତି, ଏଇଟା ସହିପାରିଲେ ନାହିଁ ବୋଲି ମୁହଁ ଫେରାଇ ନେଇଥିଲେ । ଏବେ କ'ଣ ସହିପାରିବେ ?"

ସେ କିନ୍ତୁ ସତରେ କିଛି କହୁ ନଥିଲେ । କେବଳ ଆଖିରେ ପଲକ ନ ପକାଇ ଗୋଟିଏ ଆଡେ ଚାହିଁରହିଥିଲେ ।

ରୋଜି ସାକୁଲେଇ ହେଲା, "ତୁମ ବାପାଙ୍କ କଥା ଆମକୁ କେବେ କହିନା । ଆଜି ସେ ତୁମକୁ ସପନେଇଛନ୍ତି । ଆଜି ତାଙ୍କ କଥା କହିଲେ ଆମେ ଶୁଣନ୍ତୁ । ଆମର କ'ଣ ତାଙ୍କ କଥା ଜାଣିବାକୁ ଅଧିକାର ନାହିଁ ?"

ହିରଣ୍ମୟୀ କିଛି ନ କହି ସେଇଠୁ ଉଠିଲେ । ମୁହାଁଇଲେ ବୈଠକଘର ଆଡେ । ପଛକୁ ନ ଚାହିଁ କହିଲେ, "ଆସ !"

ରୋଜିର ଆଖି ଏତେଟାମାନ ହୋଇଗଲା ଖୁସିରେ, ବିସ୍ମୟରେ । ସେ ରମୁକୁ ଚୁପ୍ ରହିବାକୁ ଇସାରା କରିଦେଇ ନିଃଶବ୍ଦରେ ମା'ଙ୍କ ପଛେ ପଛେ ଚାଲିଲା । ତା' ପଛକୁ ରମୁ ।

ମା' ଯାଇ ସିଙ୍ଗଲ ସୋଫା ଉପରେ ବସିଲେ । ପିଲା ଦୁହେଁ ଡବଲ୍ ସୋଫାରେ ବସି ଅପେକ୍ଷା କଲେ । ରୋଜି ବେଶୀ ଉତେଜିତ ହୋଇଗଲେ ଦାନ୍ତରେ ନଖ ଛିଣ୍ଡାଏ । ସେ ନଖ କାମୁଡିବାର ଦେଖି ମା' ତାକୁ ଟାଣରେ ଅନେଇଲେ । ସେ ବୁଝିଯାଇ ହାତ ତଳକୁ କରିନେଲା । ଦାନ୍ତ ଦେଖେଇଲା ନିର୍ଲଜ୍ଜ ଅପରାଧୀ ପରି ।

ମା' ପୂର୍ବାପର ସମ୍ପର୍କ ରଖି ଆରମ୍ଭ କଲେ –

"ତାଙ୍କ କଥା ଜାଣିବାକୁ ତମର ଅଧିକାର ଅଛି । ମୋର ବରଂ ତାଙ୍କ କଥା ତମଠୁ ଲୁଚେଇ ରଖିବାର ଅଧିକାର ନାହିଁ । ମୁଁ କହୁ ନ ଥିଲି; କାରଣ ତୁମର ବୁଝିଲା ବୟସ ହେଇ ନ ଥିଲା..."

"ମୋର ମା' ନାହିଁ । ମୁଁ ତା' ପେଟରୁ ଜନ୍ମ ହେଇଚି ସତ, ହେଲେ ମୁଁ ତା' ମୁହଁ କେବେ ଦେଖିନାହିଁ । ମୋତେ ମାତ୍ର ଚୌଦ ଦିନ ହେଇଥାଏ, ମୋ' ମା'କୁ ସନ୍ନିପାତ ହେଇଗଲା । ବାପା ତାକୁ ବଞ୍ଚେଇ ପାରିଲେ ନାହିଁ । ସେଇ ଦିନଠୁ ମୋ' ପାଇଁ ବାପ କହିଲେ ଯାହା ମା' କହିଲେ ବି ସେଇଆ – ଜଣେ ମାତ୍ର ଲୋକ ।" ହିରଣ୍ମୟୀ ଚୁପ୍ ବସିଗଲେ କିଛି ସମୟ । ଅତୀତରେ ହଜିଗଲେ, ପୁଣି ବର୍ତ୍ତମାନକୁ ଫେରିଆସିବା ସହଜ ନୁହେଁ ।

– "ବାପା କେମିତି ମତେ ପାଳିଛନ୍ତି ମୁଁ ନିଜେ ଆଜିଯାଏ ବୁଝି ପାରିନାହିଁ । କିନ୍ତୁ ମୋ' ପାଇଁ ସେ ସବୁ ଛାଡିଦେଲେ, ଏକଥା ମୁଁ ଜାଣେ । ସେ ଦିଲ୍ଲୀରେ ପ୍ରଫେସର୍ ହେଇପାରିଥା'ନ୍ତେ, କାନଡାରେ ରିସର୍ଚ୍ଚ କରିପାରିଥା'ନ୍ତେ, ଗଲେ ନାହିଁ । ସେତେବେଳକୁ ମୋତେ ହଷ୍ଟେଲରେ ରଖି ଦେଇ ପାରିଥା'ନ୍ତେ । ମୁଁ ନିଜ କଥା ନିଜେ ସମ୍ଭାଳି ପାରିଥା'ନ୍ତି ।" ହିରଣ୍ମୟୀଙ୍କ ବାଷ୍ପରୋଧ ହେଲା । ସେ ଅଟକିଗଲେ ।

ରୋଜି ଆଉ ରମୁ ସ୍ତବ୍ଧ ହୋଇ ଶୁଣୁଥା'ନ୍ତି ଆଉ ଦେଖୁଥା'ନ୍ତି ।

"ଗରମ ପାଣିରେ ଗାଧୋଇବା ଅଭ୍ୟାସ ସେ ମୋତେ କରେଇଥିଲେ । ଦିନେ ଫୁଟିଲା ପାଣି ଗୋଡରେ ପଡି ଫୋଟକା ହୋଇଗଲା । ସେ ମୋତେ କହିଲେ ନାହିଁ । ତା' ପରଦିନ ପାଦରେ ବ୍ୟାଣ୍ଡେଜ୍ ବନ୍ଧାହେବାରୁ ମୁଁ ଜାଣିଲି । ମୁଁ ଆଉ ଗରମ ପାଣିରେ ଗାଧୋଇବି ନାହିଁ ବୋଲି କାନ୍ଦି କାନ୍ଦି କଟାଳ କଲି । ସେ ଶୁଣିଲେ ନାହିଁ । ସେଇ ଘା ଗୋଡରେ ସେ ପାଣି ଡେକ୍‌ଚି ଗରମ କରି ଗାଧୁଆଘରେ ରଖିଦେଇଥିଲେ ମୋ' ପାଇଁ ।"

ତାଙ୍କ ଆଖିରୁ ଲୁହ ଝରିଯାଉଥିଲା । ରୋଜି ତା' ବିଦ୍ୟାବୁଦ୍ଧିରେ ବୁଝିଥିଲା ଯେ ଲୁହ ଏମିତି ଝରି ଯିବା ହିଁ ଭଲ ।

"ମୁଁ ତାଙ୍କୁ ଲୁଚେଇ ତାଙ୍କ ଲୁଗା ପଟା କାଚି ଦେଉଥିଲି । ଇସ୍ତ୍ରୀ କରିଦଉଥିଲି । ଜୋତା ପଲିସ୍ କରିଦଉଥିଲି । ସେ କେବଳ ମୋତେ ତାଙ୍କର ସେ ଗଭୀର ବୁଝାମଣାର ଆଖିରେ ଚାହିଁଦେଉଥିଲେ । ମୋ' ମୁଣ୍ଡରେ ହାତ ମାରି ଦଉଥିଲେ । ପିଠି ଆଉଁସି ଦଉଥିଲେ । ମୁହଁ ଫେରେଇ ନଉଥିଲେ । କାଳେ ତାଙ୍କ ଆଖି ଜକେଇଯିବ – ମୋ' ନଜରରେ ପଡିଯିବ ଏଇ ଭୟରେ... ।"

"ଦିନେ ମୋଠୁ ଦି ତିନିବର୍ଷ ସାନ ଝିଅଟିଏକୁ ନେଇ ପହଞ୍ଚିଲେ । ସେ ମୋର ପିଉସୀ ଲେଖା ରତନି ନାନୀଙ୍କ ଝିଅ ତପସ୍ୟା । ରତନି ନାନୀଙ୍କ ଗୁଜରାଣ ଭାରି କଷ୍ଟରେ ମେଣ୍ଟୁଥିଲା । ପୁଅ ପାଖରେ ସେ ରହି ପାରୁ ନ ଥିଲେ । ତା'ର ରୋଜଗାର କମ୍ । ତା' ସ୍ତ୍ରୀ ମୁଖରା । ବାପାଙ୍କୁ ସେ ତାଙ୍କ ଦୁଃଖ କୁଆଡେ ଥରେ କହିଥିଲେ । ବାପା ତ' ମୋ' ଦାୟିତ୍ୱ ନେଇ ତୁଲେଇ ପାରୁ ନ ଥିଲେ । ସେ ରତନିନାନୀଙ୍କୁ ଆଣିଥା'ନ୍ତେ । ତାଙ୍କ ସାଙ୍ଗରେ ତପି ବି ଆସିଥାନ୍ତା । ହେଲେ ନାନୀ ତା' ଭିଟା ମାଟି ଛାଡି କୁଆଡେ ଘୁଞ୍ଚିବାକୁ ଚାହୁଁ ନ ଥିଲା ।"

କେଜାଣି କାହିଁକି ଦିନେ ବାପା ଯାଇ ଗାଁରେ ପହଞ୍ଚିଲେ, ଆଉ ତପିକୁ ନେଇ ଆସିଲେ । ତପିକୁ ମୁଁ ଚିହ୍ନି ପାରିଲି ନାହିଁ । ବାପା ଅଳ୍ପକେ ବୁଝେଇଦେଲେ ଆଉ କହିଲେ, "ତୁ ବଡ ହେଇଗଲୁଣି – ଏଣିକି ଏକୁଟିଆ କେମିତି ରହିବୁ ? ଏଇ ତପି ତୋ' ସାଙ୍ଗରେ ରହିବ । କିଛି ପଢାପଢି କରିଚି – ଆଉ କିଛି ପଢିଯିବ ।" ମୁଁ ଜମା ବୁଝି ପାରିଲି ନାହିଁ । କିନ୍ତୁ ବାପାଙ୍କ କଥାରେ ପ୍ରତିବାଦ କରିବା ମୁଁ ଶିଖି ନ ଥିଲି । ମୁଁ ସତରେ ଚାହୁଁ ନ ଥିଲି ଯେ ବାପାଙ୍କ ସ୍ନେହର ଭାଗବଣ୍ଟା ହୋଇଯାଉ । ତଥାପି ମୁଁ ସେ ଝିଅକୁ ମାନିଗଲି । ତା' ଚେହେରା, ତା' ସହଣିକ ପଣ ମୋତେ କାବୁ କରିଦେଲା । ମୁଁ ସେଇ କେତେ ମିନିଟ୍ ଭିତରେ ତପିକୁ ଭଲ ପାଇଗଲି । ବାପା ଖୁସି ହେଇଗଲେ ।

"ତପି ଆମ ଘରେ ରହିଲା ଘର ଝିଅ ପରି । ଆମର ଛୋଟ ଏକତାଲା ଘର । ବାଡିରେ ଆମ୍ବଗଛ, ସଜନାଗଛ । ଆମେ ଦୁହେଁ ବାଡିରେ ବୁଲୁଥିଲୁ । ସାଙ୍ଗ ହୋଇ ରନ୍ଧାରନ୍ଧି ବି କରୁଥିଲୁ । ଆଉ ପାଠ ପଢୁଥିଲୁ । ଏକା ବଖରାରେ ଶୋଉଥିଲୁ । କିଛିଦିନ ପରେ ମୁଁ ବୁଝିଗଲି ବାପା କାହିଁକି ମୋ' ସାଥିରେ ରହିବାକୁ ତପିକୁ ଆଣିଥିଲେ । ମଝିରେ ରତନି ନାନୀ ଆସୁଥିଲେ, ଦୁଇ ତିନି ଦିନ ରହି ଚାଲିଯାଉଥିଲେ ଖୁସୀରେ । ତପିର ପୋଷାକ, ଚେହେରା ଚଳଣି ସବୁ ବଦଳିଯାଇଥିଲା । ସେ ଦେଖି ଖୁସି ହୋଇଯାଉଥିଲେ । ତାକୁ ଗାଁକୁ ନେବାର ନାଁ ବି ଧରୁ ନ ଥିଲେ ।"

ହିରଣ୍ମୟୀ ପୁଣି କିଛି ସମୟ ଚୁପ୍ ବସିଗଲେ । ଜଣାଯାଉଥିଲା ବହୁ ଦୃଶ୍ୟପଟ ତାଙ୍କ ସ୍ମୃତିରୁ ଉଠିଆସୁଥିଲେ ସାମ୍ନାକୁ ।

ରୋଜି କଥା ଆଗେଇବାକୁ କହିଲା, "ତପି ମାନେ ତପସ୍ୟା ମାଉସୀ – ଏବେ କୋଉଠି ଅଛନ୍ତି କି ମା' ?"

ପ୍ରଶ୍ନର କିଛି ସିଧା ଉତ୍ତର ମିଳିଲା ନାହିଁ । କିନ୍ତୁ ହିରଣ୍ମୟୀ ସାମାନ୍ୟ ବିଚଳିତ ହେବାର ରୋଜି ଲକ୍ଷ୍ୟ କରିନେଲା ।

– "ତପି ମାଟ୍ରିକ୍ୟୁଲେସନ୍ ଦବା ପାଇଁ ପଢୁଥାଏ । ବାପା ତାକୁ ଗାର୍ଲ୍ସ ହାଇସ୍କୁଲ୍‌ରେ ମୂଳରୁ ନାଁ ଲେଖାଇ ଦେଇଥା'ନ୍ତି । ମୋର ସେତେବେଳେ ବି.ଏ. ଫାଇନାଲ୍ । ମୁଁ ତପିକୁ ଯେତେବେଳେ ଲକ୍ଷ୍ୟ କରିଛି, ସେ ବହିକୁ ଖୋଲି ଦେଇ କାନ୍ଥକୁ ଚାହିଁ ବସି ରହୁଥିଲା । ଡାକିଦେଲେ ଚମକିଲା ପରି ଚାହୁଁଥିଲା । ମୁଁ ଏବେ ବୁଝୁଛି ସିନା, ସେତେବେଳେ ଜମା ତା'ର କାରଣ ଅନୁମାନ କରି ପାରୁ ନ ଥିଲି ।"

"ତା' ପରୀକ୍ଷା ସରିଲା ଦିନ ସେ ମୋ' ପାଖରେ ନଙ୍ଗରପଙ୍ଗର ହଉଥାଏ । କ'ଣ କହିବ କହିବ ହେଇ କହି ପାରୁ ନ ଥାଏ । ଶେଷକୁ ମୋ' କାନ୍ଧରେ ହାମୁଡି ପଡି କାନ ପାଖରେ କ'ଣ ଫିସ୍‌ଫିସ୍ କରି କହିଲା । ମୋତେ ସଲସଲ ଲାଗିଲା । ମୁଁ ତାକୁ ଛିଣ୍ଡାଡି ଦେଲି ଏବଂ ନ ଶୁଣି ଚାଲିଯାଇଥିଲି ଏକଷ୍ଟ୍ରା କ୍ଲାସ୍‌କୁ । ଶୁଣିଥିଲେ ହୁଏତ ଭଲ ହୋଇଥାନ୍ତା ।"

ହିରଣ୍ମୟୀ ପୁଣି ଲାଖିଗଲେ ସ୍ମୃତିର ଗହନ ଗୁଳ୍ମମାନଙ୍କ ଭିତରେ । ଚୁପ୍‌ଚାପ୍ ସାରା ଘର ନିଶ୍ୱାସ ନ ନେଇ ଅପେକ୍ଷା କଲା । ଗଣିହଉଥିଲା କାନ୍ଥଘଣ୍ଟାର ଟିକ୍‌ଟିକ୍ ଆବାଜ୍ । ହିରଣ୍ମୟୀ

ବୋଧେ ସଂକଳ୍ପ ଦୃଢ଼ କରୁଥିଲେ ।

"ସେଦିନ ଆମ କ୍ଲାସ୍ ହେଲା ନାହିଁ । ମୁଁ ଫେରିଆସିଲି ଚଞ୍ଚଳ । ବାଟ ଦ୍ୱାର ଖୋଲାଥିଲା । ଘର ଭିତରକୁ ପଶିଯାଇ ଯାହା ଦେଖିଲି ମୋ' ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ମୋ' ଦେହସାରା ନିଆଁ ଲାଗିଗଲା । ଏବେ ବି ସେ ଦୃଶ୍ୟ ମନେପଡିଲେ ସେଇ ଭଳି ହଂସା ଉଡି ଯାଉଛି ।"

ହିରଣ୍ମୟୀଙ୍କ ସ୍ୱର ଧିମେଇଗଲା । ଆଖି ନଇଁଗଲା । ସେ ଯଥାସମ୍ଭବ ସ୍ପଷ୍ଟ ଶବ୍ଦରେ କହିଲେ, "ତପି ବାପାଙ୍କ ବୁକୁରେ ମୁଣ୍ଡ ରଖି ଠିଆ ହୋଇଥିଲା । ବାପା ତାକୁ ବାହୁରେ ଜଡେଇ ଧରିଥିଲେ ।"

"ମୁଁ ଚିତ୍କାର କରି ଦୌଡିଯାଇଥିଲି । ମୋତେ ଦଶଦିଗ ଅନ୍ଧାର ଦିଶୁଥିଲା । ମୁଁ ଝୁଣ୍ଟପଡିଲି ଆଉ ଚେତା ହାରି ପଡିଗଲି... । ଚେତା ଫେରିବାକୁ ଅନେକ ସମୟ ଲାଗିଲା ବୋଲି ମୁଁ ଶୁଣିଚି । ଚେତା ପାଇଲାବେଳକୁ ତପିହିଁ ମୋ' ଆଖିକୁ ଚାହିଁ ରହିଥିଲା । ବାପା କାହିଁ ଦିଶୁ ନ ଥିଲେ । ଇସ୍! ମୋର ସବୁ କଥା ମନେପଡିଗଲା ।"

"ମୁଁ ତପିଠାରୁ ମୁହଁ ଫେରେଇନେଲି । ସେ ମୋ' ଖଟ ବାହୁଙ୍ଗାରେ ବସି ମୋ' ମୁହଁଟାକୁ ହାତରେ ଟାଣି ତା' ଆଡକୁ ବୁଲେଇଦେଲା । ମୁଁ ତାକୁ ଶୁଣିବା ଆଗରୁ ଚିତ୍କାର କଲି, 'ୟୁ ବ୍ଲଡି ବିଚ୍ – ନିକଲ୍ ଯା ମୋ' ସାମ୍ନାରୁ । ତୁଟା ଗୋଟାଏ ଜାନୁଆର । ମାମୁ କିଏ ବାପ କିଏ ? ତୁ କେମିତି ବାପାଙ୍କ ସାଙ୍ଗରେ...' ତପି ବିଜୁଳି ତା'ର ଲାଗିଲା ପରି ଠିଆହୋଇପଡିଲା । ତା' ଆଖି ତରାଟି ହୋଇଯାଉଥିଲା । ନିଶ୍ୱାସ ବହୁଥିଲା ଘନ ଘନ । ପ୍ରଚଣ୍ଡ ରାଗରେ ସେ ଥରୁଥିଲା – 'ଚୁପ୍ କର – ନ ହେଲେ ତୋ' ଜିଭ ଛିଣ୍ଡି ପଡିବ । ମାମୁଙ୍କ ନାଁରେ ତୁ ଏ କଥା ଚିନ୍ତା କରିପାରିଲୁ ?"

– "ସେ ଉତ୍ତ୍ୟକ୍ତ ହୋଇ ମତେ ଶୋଧିଦେଇ ଗଲା । ତା'ରି ଭିତରେ ସେ କହିଲା ଯେ ଆମ ପଡିଶାରେ ଥିବା ମେସ୍‌ର 'ବେଣୁ' ସାଙ୍ଗରେ ତା'ର ଭାବଦୋସ୍ତି ଥିଲା । ସେ ପିଲା କିରାଣୀ କାମ କରୁଥିଲା । କଥା ବଳେଇଯିବାରୁ ସେ ମାମୁଙ୍କ ଆଗରେ ସବୁ ଦୋଷ ମାନି କାନ୍ଦୁଥିଲା । ଆଉ ସେ ତାକୁ ପିଠି ଆଉଁସି କ୍ଷମା କରିଥିଲେ । ଆଉ ସେତିକି ଦେଖିଦେଇ ମୁଁ କେତେ କ'ଣ ଚିନ୍ତା କରି ପକେଇଲି !"

"ମୋ ଭିତର ଭୟରେ ସାଙ୍କୁଡିଗଲା । ମୁହଁ ଫେରେଇ ବାପାଙ୍କୁ ଚାହିଁ ପାରିଲି ନାହିଁ । ସେ ବି ମୁହଁ ଫେରେଇ ବାହାରିଗଲେ । ତା'ପରେ ଘଟନା ସବୁ ଖୁବ୍ ଚଞ୍ଚଳ ଘଟିଗଲା । ବାପାଙ୍କ ଚେଷ୍ଟାରେ ବେଣୁ ସହିତ ତପସ୍ୟାର ବିଭାଘର ହୋଇଗଲା । ସେଥିରେ ସବୁ ଖର୍ଚ୍ଚ ପ୍ରାୟ ବାପାଙ୍କର । ସେମାନେ ବିଦାୟ ନେଇଯିବା ପରେ ବାପା ମୋ' ବିଭାଘର ପ୍ରସ୍ତାବ ତରବରିଆ କରି ଛିଣ୍ଡେଇଦେଲେ । ତୁମ ଘରର ସବୁ ସର୍ତ୍ତ ମଞ୍ଜୁର କରିଦେଲେ । ଗୋଟିଏ ସର୍ତ୍ତ ତାଙ୍କୁ ସର୍ବସାନ୍ତ କରିଦେଲା । ତୁମ ବାପା ମୋତେ ବିଭା ହେବାବେଳକୁ ତାଙ୍କ ବଡଭଉଣୀଙ୍କ ବିବାହ ବାକି ରହିଥାଏ । ସେ ବିବାହ-ଖର୍ଚ୍ଚ ବାପାଙ୍କୁ ତୁଲାଇବାକୁ ପଡିଥିଲା ମୋ' ଅଜାଣତରେ । ବାପା ସେଥିପାଇଁ ଆମ ଘର ବିକ୍ରି କରି ଦେଇଥିଲେ ।"

ହିରଣ୍ମୟୀ ଏକରକମ ଧଇଁସଇଁ ହୋଇଗଲେ । ତାଙ୍କ ବୁକୁର ପବନ ସରିଯାଉଥିଲା । ସତେ ବା ତଥାପି ସେ ବାକି କଥା କହିବାକୁ ସବୁ ଶକ୍ତି ଏକାଠି କରିନେଲେ ।

"ତପରି ବିବାହ, ମୋର ବିବାହ, ନଣନ୍ଦଙ୍କ ବିବାହରେ ବାପା ବ୍ୟସ୍ତ ରହୁଥିଲେ ସତ; କିନ୍ତୁ ସେଇଦିନଠାରୁ ସେ ମୋ' ସାଙ୍ଗରେ ମନଖୋଲି ଥରେହେଲେ କଥା ହେଲେ ନାହିଁ । ମୁଁ ଖୁବ୍ କାନ୍ଦିଛି । ପାଦ ଧରି କ୍ଷମା ମାଗିଛି । ବାପା କେବଳ ମୋ' ମୁଣ୍ଡ ଆଉଁସି ଦେଇଛନ୍ତି । ମୋତେ ସେ କ୍ଷମାଶୀଳ ଆଖିରେ ଚାହିଁ ଠିଆ ହୋଇଛନ୍ତି । ମୁହଁ ଖୋଲି କିଛି ହେଲେ କହିନାହାନ୍ତି ।"

"ମୁଁ ତାଙ୍କ ଜମାପଟା ଧୋଇ ଇସ୍ତ୍ରୀ କରିଦେଇଛି – ଆଗ୍ରହରେ ପିନ୍ଧିନାହାନ୍ତି । ତାଙ୍କ ଟେବୁଲ, ଆଲମାରି ସଜାଡି ଦେଇଛି – ଦେଖି ନ ଦେଖିଲା ପରି ଚାହିଁରହିଛନ୍ତି । ମୁଁ ବିଭାହୋଇ ଚାଲି ଆସିବା ପରେ ସେ କେମିତି ଚଳିବେ ଏକୁଟିଆ ! ତାଙ୍କୁ ତ ସକାଳୁ ଚା କପେ ନିହାତି ଦରକାର । ସେ ଚାହା କରି ଜାଣନ୍ତି ନାହିଁ । ମୁଁ ସବୁ ଖଣ୍ଡେ କାଗଜରେ ଟିପି ରଖିଦେଇଥିଲି ରନ୍ଧାଘରେ । ସେ ତାକୁ ଦେଖିନାହାନ୍ତି । ମୋତେ ବିଦାୟ କରିଦେଲା ପରେ ସେ ପଛକରି ଚାଲିଯାଇଛନ୍ତି । ସେଇ ମୋର ଶେଷଦେଖା – ତାଙ୍କ ଓସାର ପିଠି, ସରୁ ବେକ, ଚନ୍ଦାମୁଣ୍ଡ !"

ହିରଣ୍ମୟୀଙ୍କ ଆଖିରେ ଅବାଧ ବନ୍ୟା । ସେ ଆକୁଳ ହେଉଥିଲେ ଦୁଃଖରେ । ଏତେ ବର୍ଷ ଧରି ଜମାଟ ବାନ୍ଧି ରହିଥିବା ଦୁଃଖ ତରଳିଯାଉଥିଲା । ରୋଜି ରମୁ ଆଖିରେ ଲୁହ ଭରିଯାଉଥିଲା ।

"ମୋର ଆଠମଙ୍ଗଳାକୁ ବାପା ନ ଥିଲେ । ଆମେ ଖବର ପାଇ ଗଲାବେଳକୁ ସବୁ ସରିଯାଇଥିଲା । ପାହାଚ ପାଖରେ ବାପାଙ୍କ ଜୋତାରେ ରଙ୍ଗ ଲଗେଇ ମୁଁ ରଖିଦେଇଥିଲି ବିଭା ପୂର୍ବଦିନ । ସେଇଟା ସେମିତି ଥୁଆ ହୋଇଥଲା । ବାପା ତାକୁ ପିନ୍ଧି ନ ଥିଲେ । ଜିଦିରେ ପିନ୍ଧି ନ ଥିଲେ । ଭାରି ଆତ୍ମମର୍ଯ୍ୟାଦାବନ୍ତ ବାପା ଅପମାନ ସହିପାରିଲେ ନାହିଁ । ମୋତେ ସେ କ୍ଷମା ନିଶ୍ଚୟ ଦେଇଥିଲେ । କିନ୍ତୁ ମୁଁ ତାଙ୍କ ପାଖରେ ଯେଉଁ ଦ୍ରୋହ କରିଛି ତା'ର କ୍ଷମା ନାହିଁ । ସେ ସେଇ ଦୁଃଖରେ ସଂସାର ଉଜାଡିଦେଲେ । ଘରଦ୍ୱାର ବିକିଦେଲେ ଏବଂ ଝିଅକୁ ପଠେଇଦେଲା ପରେ ଏକାକୀ ସବୁ ଜ୍ୱାଳା ସବୁ ଦୁଃଖ ତୁନି ହୋଇ ସହିଗଲେ । ସୀମା ଟପିଗଲା । ସଂସାରର ସବୁ ଝଡବତାସକୁ ଏତେ କାଳ ଧରି ବୁକୁ ପତେଇ ଠିଆହୋଇଥିବା ମଣିଷର ଛାତି ଫାଟିଗଲା । ସେ ଶେଷକୁ ମୋରି ସେ ଚିତ୍କାର ଶୁଣିଥିବେ । ତାଙ୍କ ଧୋବ-ଫରଫର ଚରିତ୍ର ଉପରେ ଉଠାଇଥିବା ମୋର ଆଙ୍ଗୁଠିର ଛାଇ ପଡିଥିବା ଦେଖିଥିବେ । ଗ୍ଳାନିରେ ଅପମାନରେ ଆଖି ବୁଜି ଦେଇଥିବେ... ।"

"ମୁଁ ତାଙ୍କର ସେ ଜୋତାହଳକ ଧରି କାନ୍ଦିଛି । ଏ ପର୍ଯ୍ୟନ୍ତ କାନ୍ଦୁଛି । ବାପା ତାଙ୍କ ପାଦରେ ଥରେ ଯଦି ପିନ୍ଧିଦେଇଥାଆନ୍ତେ..."

ହିରଣ୍ମୟୀଙ୍କ ସାରା ଶରୀର ଚିପୁଡି ହୋଇ ଲୁହ ଝରିଯାଉଥିଲା । ସେ ଆଖି ବୁଜି ଚୌକି ଉପରକୁ ଆଉଜିଯାଉଥିଲେ ।

ରୋଜି ଆଉ ରମୁ ତଳକୁ ମୁହଁ ପୋତି ବସିଥିଲେ । ତାଙ୍କ ଆଖିରୁ ଟପ୍‌ଟପ୍ ଲୁହ ଖସିପଡୁଥିଲା ।

ପିଲାଙ୍କର ବୁଝିବା ବୟସ ହୋଇଯାଇଥିଲା ତ ।



# ରାବଣ

ଦି'ପହରଟାରେ ଦାଣ୍ଡକବାଟ ଏମିତି ଠିଆମେଲା କାହିଁକି ହେଇଚି ? ସାଇପଡିଶା ଏମିତି ଶୂନ୍‌ଶାନ... ରାସ୍ତାଘାଟ ଏମିତି ନିଛାଟିଆ ? ସାମ୍ନାର ଦେବଦାରୁ ଗଛଟି ଏମିତି ନିସ୍ତବ୍ଧ ? ପକ୍ଷୀଟିଏ ବି କୋଉଠି ରାବୁ ନାହିଁ । ମୋଡ ଉପରେ ସେ ସାଇକେଲ ଦୋକାନଟା ଏତିକିବେଳେ ବନ୍ଦ ରହିବା କଥା – ବନ୍ଦ ଅଛି । ପାନଦୋକାନଟା ବି ବନ୍ଦ ଅଛି । ପଧାନବାବୁ, ସାମଲବାବୁ, ରାଉତବାବୁ ସମସ୍ତଙ୍କ ତାଟିକବାଟ ପଡିଛି । ସେମାନେ ସମସ୍ତେ ହୁଏତ ଶୋଇଛନ୍ତି । ଏତିକିବେଳେ ବୋଧହୁଏ ତାଙ୍କ ଘରଦ୍ୱାର ସବୁଦିନ ବନ୍ଦଥାଏ । ପଧାନଘର ଘରସାମ୍ନାରୁ ଦୁଇଦିନ ହେବ ସଜନାଗଛଟାକୁ ହାଣିଦେଇଛନ୍ତି । କେତେ ଅଲକ୍ଷଣିଆ ହତଶ୍ରୀ ଦିଶୁଛି; କେମିତି କାଉଁକାଉଁଆ, ଖାଲିଖାଲି ଲାଗୁଛି ଏ ରାସ୍ତା ଖଣ୍ଡକ !

ଦି'ପହରେ ତାଙ୍କ ଦାଣ୍ଡକବାଟ କ'ଣ କେବେ ମେଲାରହେ ?... କାହିଁକି ମେଲାରହିବ ? ସେ ସବୁଦିନ ଘରୁ ଗୋଡ କାଢି ବାହାରିଲାବେଳକୁ ସ୍ତ୍ରୀଙ୍କୁ ତାଗିଦା କରନ୍ତି । ରାସ୍ତାରୁ ଫେରି ଚାହାନ୍ତି କବାଟ ବନ୍ଦହେଲା ନା ନାହିଁ । ଦିନେ ଦିନେ ଭିତରପାଖ ଛୋଟ ଅଗଣାରେ ସେ ଚାରିକାତ ମେଲେଇ ଖଟରେ ପଡିଥିବାବେଳେ କଲ୍ୟାଣୀ ଆସି ପାଖରେ ବସିଲେ ସେ ତାଙ୍କୁ ଅଦ୍ଭୁତ ଢଙ୍ଗରେ ଚାହିଁରହନ୍ତି ଏବଂ କହନ୍ତି, "ଏତେ ସୁନ୍ଦର ନ ହୋଇଥିଲେ କ'ଣ ଚଳୁନଥିଲା ! ତୁମ ପାଖରେ ଆଉ ଗୋଟାଏ ଟ୍ରୋଜାନ୍ ଯୁଦ୍ଧର ଉପାଦାନ ମଣ୍ଡିଦେଇ ମୋ' ହାତରେ ଅର୍ପିଦେବା ବିଧାତାର ଗୋଟାଏ ପରିହାସ ।... ଦେଖ ସାବଧାନ; ଏ ଦୁଆରବନ୍ଧର ସତୀଗାର କେବେ ଡେଇଁବ ନାହିଁ । ତୁମକୁ ଏକୁଟିଆ ଦେଖିଲେ ସେ ଧୂସର ନିମ୍ବଗଛ ବି ବାହୁ ମେଲେଇ ଝାମ୍ପି ନେଇପାରେ... ।" କଲ୍ୟାଣୀ ହସିଦିଅନ୍ତି । ସେ ତାଙ୍କୁ ସାଉଁଟିନେଇ ଅନେକ ସମୟ ଜାକିଧରନ୍ତି ଗୋଟାଏ ପ୍ରକାର ଭୟରେ ।

ଠିଆମେଲା କବାଟ ଉପରୁ ସେ ଜମା ଆଖି ଘୁଞ୍ଚେଇ ପାରୁ ନଥା'ନ୍ତି । ଗୋଟାଏ ନିଆଁହୁଳା ଖସିଯାଉଥାଏ ତାଳୁ ଉପରୁ ତଳିପାଯାଏଁ । ସାଇକେଲ ଉପରେ ଥୟ ଧରୁ ନଥାଏ ତାଙ୍କର ହାତ

ଏବଂ ପାଦ ।... ବୈକୁଣ୍ଠନାଥ ଛେପ ଢୋକି ପାରୁ ନଥା'ନ୍ତି । ...ମୋର ସଂସାର ବୋଧେ ସରିଗଲା । ...ମୁଁ ବେକୁବ୍ କାହିଁକି ତା' କଥାରେ ପଡି ଏଦିନେ ଆମ୍ବ କିଣିବାକୁ ଯାଉଥିଲି ?... ରହ, ଏଇଲାଗ୍ ମୁଁ ଦେଖୁ ନଉଚି ! ମୋତେ ସେଆଡେ ଭୁଆଁ ବୁଲିବାକୁ ପଠେଇ ଦେଇ କାହିଁକି ଘର ମେଲା କରି ବସିଚି... ହେଁ, ବୋକୀ କାହିଁକା... ଜାଣିନାହିଁ ଏଠି କେମିତି ଅସୁର ରହନ୍ତି !

ଦୁଆରମୁହଁରେ ସାଇକେଲ ଠିଆ କରିବାକୁ ସେ ତର ପାଇଲେ ନାହିଁ । ଭୁସ୍‌କିନା ଫାପାଡିଦେଇ ଘରଭିତରକୁ ପଶିଗଲେ... "ଶୁଣୁଛ କଲ୍ୟାଣୀ... ଘର ଏମିତ ମେଲା ରଖିଲେ କୁକୁର ପଶିଯିବେ ନାଇଁ !... କଲ୍ୟାଣୀ... କଲ୍ୟାଣୀ..." ...ସେ ଛନ୍‌ଛନ୍ ହୋଇ ରୋଷେଇଘରକୁ ପ୍ରଥମେ ପଶିଗଲେ । ଗାଧୁଆଘର କବାଟ ମେଲା... କେହି ନାହିଁ ।

ବୋଧହୁଏ ଶୋଇଯାଇଛି ! ଦରବୁଜା କବାଟଟା ପବନରେ ଫିଟିଯାଇଛି । ଶୋଇବାଘରକୁ ପଶିଗଲାବେଳକୁ ଆର ବଖରାରେ ଶାଢି ଲୁଚିଯିବାର ଦିଶିଗଲା । ବିଜୁଳୀ ପରି ମୁହଁରେ ଝଲକାଏ ହସ ଚମକିଗଲା... ଓ ଓ... ତା'ହେଲେ ପରିହାସ ଚାଲିଛି ! ଡିଆଁମାରି ପଢାଘର ପରଦା ଟେକି ପଶିଗଲେ । ଏ କୋଣ ସେ କୋଣ, ବହି ଆଲମାରି, ଏମତିକି ସୋଫାତକ ଯେଉଁଠି ଥରେ ତାଙ୍କ ପୋଷା ମୟୂର ଲୁଚି ବସିଥିଲା... କେହି କୋଉଠି ନାହିଁ ।

ଓଠ ଶୁଖିଗଲା ଦୁଆରବନ୍ଧରେ ବାଡେଇ ହୋଇ ଧସି ହେଲା ପରି ଶୋଇବାଘରେ ପଶିଗଲେ । ଆସ୍ତେ ଡାକିଲେ... 'କଲ୍ୟାଣୀ' । ଝରକାର ପର୍ଦ୍ଦା ଟେକି ପବନ ପଶି ଆସିଲା । ତାଙ୍କୁ ଦିଶିଗଲା ପଲଙ୍କର ବାଁପାଖେ ସେ ଚିତ୍ ଶୋଇରହି ତାଙ୍କୁ ଚାହିଁ ହସୁଛି । ନୀଳରଙ୍ଗର ରାତିଦୀପ ମିଟ୍‌ମିଟ୍ ଜଳୁଛି । ସେ ଆଖି ବୁଜି ଶେଯ ଚାଦରକୁ ଅଣ୍ଡାଳିଗଲେ । ଧପ୍‌କିନା ଜଳିଉଠିଲା ଦି'ପହର ଖରା । ସାଇଁ ସାଇଁ ଗର୍ଜିଲା ନୀରବତା । ତାଙ୍କ ଗୋଡହାତ ଝିମ୍‌ଝିମ୍ ଭିଡିନେଲା । ସେ କାଉଳି ହେଲା ପରି ପଲଙ୍କତଳ, କବାଟ କୋଣ, ଆଲମାରି ଭିତର ଖୋଜିଗଲେ । ଘେରା ଘେରା ବୁଲି ଆସିଲେ ରୋଷଘରୁ ଶୋଇବାର ଯାଏଁ । ଶେଯ ଲେଉଟାଇ ପକାଇଲେ । ସଅପଟାକୁ ଫିଟେଇଦେଲେ ତରତର ହୋଇ ।

କ'ଣ ଏମିତି ଖୋଜୁଛନ୍ତି ବୈକୁଣ୍ଠନାଥ ? ...ଥରେ ହଜେଇ ପାଇଥିବା ତାଙ୍କ ସୁନାମୁଦି ଖୋଜୁଛନ୍ତି ସେ ? ତକିଆ ସନ୍ଧାରେ ଖସିପଡିଥିବା କଲ୍ୟାଣୀଙ୍କର ମଥାମଣି ଖୋଜୁଛନ୍ତି ? ତାଙ୍କ ଜନ୍ମ ତାରିଖ ସାର୍ଟିଫିକେଟ୍ ? ତାଙ୍କ ବିଭାବେଦୀର ଫଟୋ ? କ'ଣ ଏମିତି ମହାର୍ଘ ଧନ ଖୋଜୁଛନ୍ତି ସେ ?

ତାଙ୍କ ମୁହଁ, ବୁକୁ, ବାହୁ, ପେଟ, ପିଠି ଝାଳରେ ତିନ୍ତିଗଲା । ସେ ହୁଏତ କାନ୍ଦିପକେଇବେ । ହୁଏତ ଭୟଙ୍କର ରାଗିଯିବେ । ନିଆଁ ଲଗାଇଦେବେ ଚାରିଆଡେ ।

ସେ କିନ୍ତୁ ହାତଯୋଡିକ ଝୁଲେଇଦେଇ ତଳକୁ ଚାହିଁ ଠିଆହୋଇଥା'ନ୍ତି । ନିଆଁ ଖସିପଡୁଥାଏ ସର୍ବାଙ୍ଗରୁ । ବାହାର ଗେଟ୍ ବୋଧହୁଏ କିଏ ବନ୍ଦକଲା । ବୈକୁଣ୍ଠନାଥଙ୍କର ପାଦତଳିପା ସିର୍‌ସିର୍ ହୋଇଗଲା । ତଳିପେଟ ଏବଂ ଶୁକ୍ରକୋଷ ସାଙ୍କୁଡିଗଲା । ନିଃଶ୍ୱାସ ଆଉ ଚଳିଲା ନାହିଁ ।

ରଙ୍ଗ ଜରଜର କାନମୁଣ୍ଡାର ଶିରଗୁଡ଼ା ଟଣକିଗଲା । ପୃଥ୍ୱୀ ଆରପାଖର ନିଃଶ୍ୱାସ ପର୍ଯ୍ୟନ୍ତ ତାଙ୍କର ଦୁଇଟି କାନ ସେତେବେଳେ ଶୁଣିପାରୁଥିଲେ ।

...ଏଇ ବୋଧହୁଏ କେହି ଜଣେ ଆସୁଛି! ମିସେସ୍ ସାସମଲ୍ – ମୋଟି ଘୁସୁରି ପରି ଲସରପସର ଚାଲେ । ଅସୁରୁଣୀ ସବୁବେଳେ କଲ୍ୟାଣୀକୁ ଦେଖିଲେ କୁଣ୍ଠାଏ । ପାଟି ସୁଆଦ ସୁଆଦ କରୁଥାଏ । ପାରିଲେ ଏ ସୁନା ପ୍ରତିମାଟିକୁ ଗୋଟିପଣେ ଢୋକି ଦିଅନ୍ତା । ସେଇ ତାକୁ ଜୀର୍ଣ୍ଣ କରିସାରି ବୋଧେ ଆସୁଛି ଖାଲି ପଞ୍ଜୁରି ଦେଖିବାକୁ ।

...ନା ନା... ଏ ତ ଭାରି ମିଠାମିଠା ପାଦଶବ୍ଦ । ଆଉ ସାହିର ବାନାର୍ଜିଙ୍କ ସାନଝିଅ କି! ଭାରି ଖଣ୍ଡେ ସେ ଚଇଁଛଟକୀ! କଲ୍ୟାଣୀକୁ ଅବିକଳ ନକଲ କରି ମୁଣ୍ଡ କୁଣ୍ଡାଏ । ଏମିତି ଶସ୍ତା ପାଉଡର ସ୍ନୋ ଆଣି ଲଗାଏ । ଆସିଲେ ସେଇ ଦର୍ପଣଟା ଆଗରୁ ଘୁଞ୍ଚେ ନାହିଁ । ସେଇଠି ନିଜକୁ ବାରଭଙ୍ଗୀରେ ଦେଖୁଥାଏ । ଏଣେ କଲ୍ୟାଣୀ ଦିଦିଙ୍କୁ ଅନଉଥାଏ ଛନ୍‌ଛନ୍ । ସେ ପଚାରିଲେ କ'ଣ କହିବେ ବୈକୁଣ୍ଠନାଥ!

...ତାଙ୍କୁ ବାହାରପାଣି ଦେଖିଇଲା । ସେ ଚିତ୍କାର କରି ପକେଇଥା'ନ୍ତେ । ଦୌଡି ଯାଇଥା'ନ୍ତେ । ପ୍ରଳାପ କରିଥା'ନ୍ତେ । ଏତିକିବେଳେ ଥୋଲା ଥୋଲା ଲହୁଣି ଖସିପଡ଼ିଲାପରି ତାଙ୍କୁ ଶୁଭିଲା, "ଆଚ୍ଛା, ଏ ସାଇକଲ୍‌ଟା ପଡ଼ି ସବୁ ପଚିଗଛଯାକ ମରିଗଲା ଯେ!"

କଲ୍ୟାଣୀ ? ହଁ... କଲ୍ୟାଣୀ ? ସେ ଅଝଟ ପିଲାଙ୍କ ପରି ଭୟଙ୍କର ରାଗିଗଲେ । ଝପଟିଯାଇ ଭିଡ଼ିଆଣିଲେ ଆବାକାବା ହୋଇ ଚାହିଁଥିବା ଅପରୂପା ଲାବଣ୍ୟମୟୀ ସ୍ତ୍ରୀଙ୍କୁ! ବୋଧହୁଏ ହାତ ଉଠେଇ ବାଡେଇ ପକେଇବେ ।

ତୋଟି ଚିପିଦେବେ! କିନ୍ତୁ ତାଙ୍କୁ କଟମଟ ଚାପିଧରି ତାଙ୍କ ବେକ ପାଖରେ ମୁହଁ ଗୁଞ୍ଜି ସେ କାନ୍ଦି ପକେଇଲେ ସକ୍‌ସକ୍ ।

ସୁକୁମାରିଆ, ଆତୁରିଆ, ସୁନ୍ଦର ଟୋକା ଖଣ୍ଡେ ତ!

କଲ୍ୟାଣୀ ତାଙ୍କ ପିଠିରେ ହାତ ବୁଲେଇ କିଛି କହିପାରୁନଥା'ନ୍ତି । ତାଙ୍କ ଭ୍ରୂ ସାମାନ୍ୟ କୁଞ୍ଚେଇ ଯାଉଥାଏ । କ'ଣ ଦୁଃସମ୍ବାଦ ବୋଧେ ଶୁଣି ଆସିଛନ୍ତି । କ'ଣ ମା' ମରିଗଲେ ? କିଛିଦିନ ହେଲା ତ ବାଧିକା ପଡ଼ିଥିଲେ! ଯାଙ୍କୁ ପ୍ରାଣଠୁ ବଳି ଭଲପାଆନ୍ତି । ନହେଲେ କ'ଣ ଚାକିରି ଚାଲିଗଲା ? କ'ଣ ହେଲା ସତେ ଏମିତିକା ?

କେତେବେଳକେ ଓଦା ସରସର ମୁହଁ ଟୁମା ଟୁମା ରଙ୍ଗିଲା ଆଖି ଟେକି ବୈକୁଣ୍ଠନାଥ ଚାହିଁଲେ କଲ୍ୟାଣୀଙ୍କୁ । ହସିବାକୁ ଚେଷ୍ଟା କଲେ । ଆସ୍ତେ ନିଃଶ୍ୱାସ ମାରି ବାହୁ ହୁଗୁଳେଇନେଲେ ।

"କ'ଣ ହେଇଚି ? ତୁମକୁ ଆସିବାର ମୁଁ ଦେଖିଛି । ତୁମେ ଭଲପାଅ ବୋଲି ଉପମାରେ ପରଶିବାକୁ ଦି'ଟା ମେରଶିଙ୍ଗା ପତ୍ର ଆଣି ଯାଇଥିଲି ଚିନ୍ନାୟୀ ଘରକୁ । ଘର ମେଲା କରି ଯାଇଥିଲି, ସାଙ୍ଗେ ସାଙ୍ଗେ ଚାଲିଆସିଥା'ନ୍ତି । ତୁମେ ଆସିଯିବାରୁ ଦୁଇ ମିନିଟ ଦୁଃଖସୁଖ ହେଇ ଆସୁଛି ।"

ପେଣ୍ଟ୍ ମୁଣାରେ ହାତ ପୂରେଇ ବୈକୁଣ୍ଠନାଥ ଗୋଟାଏ ଲମ୍ବା ନିଃଶ୍ୱାସ ଛାଡ଼ ଆଡ଼କୁ

ଛାତି ଅଗଣାକୁ ଚାହିଁଥା'ନ୍ତି । ତାଙ୍କ ସାମ୍ନାକୁ ବୁଲି ଆସି ଅପେକ୍ଷା କଲେ କଲ୍ୟାଣୀ । ଉଦ୍ବେଗ୍ନ ଆଶଙ୍କାରେ ତାଙ୍କ ଆଖି ଟଳମଳ ।

ପଚାରିଲେ, "କ'ଣ ହେଲା ?"

"କିଛି ହେଇ ନାହିଁ ବୋଲି ମୁଁ ଆଗ ଭଲକରି ଅନୁଭବି ପାରେ । ଓଃ, ସେ ଭୟଙ୍କର ଦୁଃସ୍ୱପ୍ନରୁ ମୁଁ ଜମା ମୁକୁଳି ପାରୁନାହିଁ ।"

ତାଙ୍କ କାନ୍ଧ ଦୁଇଟିକୁ ଚାପିଧରି ତାଙ୍କ ଆଖିକୁ ଅନେଇଲା ପରେ କହିଲେ, "ତୁମେ ମୋତେ ପାଗଳ କରିଦେବ କଲ୍ୟାଣୀ ! ତୁମେ ମୋ' ପାଇଁ କେତେ ବଡ ଦାୟିତ୍ୱ, ତୁମେ ତାହା ବୁଝିପାରିବ ନାହିଁ । ଗୋଟାଏ ସମ୍ରାଟ୍‌ର ଦୌଲତକୁ ଏକୁଟିଆ ପହରା ଦେଲାପରି ମୋତେ ସବୁବେଳେ ମନେଇପଡୁଛି । ମୋତେ... ମୋତେ ଭାରି ଅକ୍ଷମ, ଅସହାୟ ଲାଗୁଛି । ଦୁଆର ଠିଆମେଲା ଦେଖି, ଘରେ ତୁମକୁ ନପାଇ... ମୋ' ହାଲୁକା ଶୁଖିଗଲା... ମୁଁ... ମୁଁ ଭାବିଲି..."

କଲ୍ୟାଣୀ ଏଥର ହସିପକେଇଲେ । ଗେଲରେ ତାଙ୍କ ନାକ ଅଗକୁ ଟିପି ଦେଇ କହିଲେ, "ତୁମେ ଭାବିଲ ଯେ ସୀତାହରଣ ହୋଇଗଲା । ହଉ ଛାଡ, ତୁମକୁ ପଠେଇଦେଇ ଭାରି ଛି'ଛା ଲାଗିଲା । ଏ ଦି'ପହରଟାରେ ଭଲା କୋଉଠି ଆମ୍ବ ମିଳେ ? ଉଠିବଟି, ମୁଁ ତୁମ ପାଇଁ ଆଗ ଜଳଖିଆ ତିଆରି କରେ ।"

ଇସ୍ ! ଚାଲିଲେ କି ଅଦ୍ଭୁତ ସୁନ୍ଦର ଦେଖାଯାଏ ନୀଳ ଶାଢ଼ିରେ ଏ ଦେହ ! ସେ ହସି ଚାହିଁଦେଲେ କେଉଁ ଲୋକ ଭଲା ପାଗଳ ହେଇ ନଯିବ ! ଏ ରାଜରାଣୀର ନିରାପତ୍ତା ପାଇଁ ଶରୀରରକ୍ଷୀ କାହାନ୍ତି ? ମହଲ ଜଗୁଆଳ ଦରବାନ୍ କାହାନ୍ତି ? ଶୋଇବାଘରୁ ପୁଣି ହସ ଶୁଭିଲା – "ଆଚ୍ଛା, ଏସବୁ ଏମିତି ଫିଙ୍ଗା ଫୋପଡା କିଏ କଲା ?"

ପପି ଗଛ ଉପରୁ ସାଇକଲ ଟେକିଆଣି ଦାଣ୍ଡଦୁଆର ବନ୍ଦ କରୁଥିଲେ ବୈକୁଣ୍ଠନାଥ । ସେ ସେଇଠି ଯାଇ ଦୋଷୀ ଭଳି ଠିଆହେଲେ ।

"ମୁଁ ତୁମକୁ ନ ପାଇ ଖୋଜୁଥିଲି ।"

"ଏତିକି ଅଭିଲା ମଣିଷ ସଂସାରରେ ନଥିବେ ।" ଶେଯ ଚାଦର ସଜାଡି ଦେଇ କଲ୍ୟାଣୀ ତାଙ୍କ ପାଖକୁ ଲାଗି ଆସି ଠିଆହେଲେ । "ଇସ୍, ମୁହଁ ଦିହରେ ତୁମର କେତେ ଝାଳ ? ଏ ଜାମାଟା କାଢିଦେଲ ଦେଖି, ମୁଁ ପୋଛିଦିଏ ।"

କଲ୍ୟାଣୀ ଲାଜରେ ସିନା କିଛି କହିପାରନ୍ତି ନାହିଁ – କିନ୍ତୁ ତାଙ୍କ ସ୍ୱାମୀ ଭଳି ସୁନ୍ଦର ମଣିଷ କ'ଣ ଆଉ ସଂସାରରେ ଅଛନ୍ତି ? ତାଙ୍କୁ ଦିଶେ ସେ ଓସାର କପାଳ, ଠିଆ ନାକ, ସେ ବଡ ବଡ ଆଖି ପୂରିଲା ପୂରିଲା ଗାଲ, ସେ ପ୍ରଶସ୍ତ ବୁକୁ, ଶାଳଗଜା ପରି ଲମ୍ବିଥିବା ସଳଖ ବାହୁ – କୌଣସି ସ୍ୱପ୍ନରାଜ୍ୟର ରାଜପୁତ୍ର ପରି ! ଅନେକ ସମୟରେ ତଳକୁ ମୁହଁ ପୋତି ଅନ୍ୟମନସ୍କଭାବେ ସେଇ କଥା ହୁଏତ ଭାବୁଥା'ନ୍ତି । ବୈକୁଣ୍ଠନାଥଙ୍କ ଦେହର ବର୍ଣ୍ଣ ଦିଶେ ଉଇଁଆସୁଥିବା ନୂଆ ମେଘ ପରି, ଗଜେଇ ଆସୁଥିବା ଦୂବର ଅଙ୍କୁର ପରି । ନୀଳ ପୁରୁଷଟିଏ... ରାଜପୁରୁଷଟିଏ । ଯେକୌଣସି

ସିଂହାସନ ମଣ୍ଡିଦେଲା ଭଳି ବୈକୁଣ୍ଠନାଥ । କେଡେ ଭାଗ୍ୟବତୀ ସେ!

ସେଦିନ ଉପରଓଳି ଜଳଖିଆ କଥା ଆଉ କାହାର ମନେନାହିଁ । କ୍ଲାନ୍ତ ଦୁଇଟି ପକ୍ଷୀ ପରି, କୌଣସି ଅମୂଲ୍ୟନିଧି ପାଇଲା ପରି ସେ ଦୁହେଁ ପରସ୍ପର ବାହୁପାଶରେ ଶୋଇଗଲେ ସନ୍ଧ୍ୟା ଯାଏ । ତାଙ୍କପାଇଁ ସେ ଦିନଗୁଡ଼ିକ ସୁକୁମାର ଦାମ୍ପତ୍ୟର ଆଦିପର୍ବ ।

X X X X

"ବୈକୁଣ୍ଠନାଥ ତା' ସ୍ତ୍ରୀକୁ ପ୍ରଚଣ୍ଡ ଭଲପାଏ ।"

"ସେଥିରେ ଆଉ ବିଚିତ୍ର କ'ଣ? ସେଭଳି ନାହିଁନଥିବା ସୁନ୍ଦରୀକୁ ମୁହଁ ଲଗେଇ ସେ ପିଇଯାଉନାହିଁ ରକ୍ଷା ।"

"ଆହେ ଜାଣିଲଣି, ସେ ପରା ଗୋଟାଏ ରଜାଝିଅ!"

"ଯାଉନୁ, ରଜାଝିଅକୁ କ'ଣ ଆଉ ବର ମିଳୁ ନଥିଲା ଯେ, ଏମିତି ବଇରାଗୀ ନିର୍ମୂଳିଆ ବଇକୁଣ୍ଠିଆଟାକୁ ବିଭା ହେଇଗଲା ।"

"ଆହେ ଯାହାକୁ ବଇକୁଣ୍ଠିଆ କହି ଛିଗୁଲେଇ ହଉଚ, ତା' ଚେହେରା ଖଣ୍ଡ କେମିତି ଦେଖିଚ ତ!"

"ସତ କହୁଚ ହେ ବାବୁ! ରାଜା ଲାଖି ଟୋକା ଖଣ୍ଡେ ।"

"ଭାରି ବଢ଼ିଆ ଯୋଡ଼ି । ଯେତେବେଳେ ଦେଖ, ପାରା ପରି ଘୁମୁରୁଚନ୍ତି ।"

"କିଓ ସେ ପରା କ'ଣ ଖଣ୍ଡେ ଚାକିରି କରୁଚି ?"

"ହଅଅ! ତା' ମନ କ'ଣ ସେଠି... ସେଇ କେତେ ଘଣ୍ଟା ଜାଣ ସୃଷ୍ଟିରେ ପବନ ଚଳୁ ନାହିଁ ।"

"ହେ ହେ ହେ... ସମସ୍ତିଙ୍କର ସେମିତି ଦିନେ ପାରି ହେଇଚି ନା ? ନା କ'ଣ ମଉସା ?"

"ଆରେ, ଏକଥା ନିଆରା ।"

"ସେ ଟୋକୀଟା ଯାହା କହ ଗୋଟାଏ ରାଜ୍ୟ ଉଜଳ କରିଥାନ୍ତା ।"

"ସେ ଛାଡ଼ିଗଲେ ବଇକୁଣ୍ଠନାଥ ପ୍ରାଣ ହାରିଦେବ ।"

"ତା' ମାଇପକୁ କିଏ ଚାହିଁଦେଲେ ସେ କାମୁଡ଼ିପକେଇବ ।"

"ତାକୁ କିଏ ଟିପମାରିଦେଲେ ସେ ଖୁନ୍ କରିଦେବ ।"

"ସେ ନିଆଁ ଲଗେଇଦେବ ।"

ଏମିତି ଏମିତି ମନ ଉଚ୍ଚାଟ କରୁଥିବା ନରମ ନରମ କଥା ସବୁଠି ପଡ଼େ – ଏଠି, ସେଠି, ଦପ୍ତର, ବଜାରରେ । ଖରାଦିନର ନଦୀଧାର ତଳେ ଝିଲ୍‌ମିଲ୍ ସୁନାଗୁଣା ପରି ଝଟକୁଥାଏ ସେଇ ପଦେ କଥା – କେଡେ ସୁନ୍ଦର ସେ ମାଇକିନିଆଟା – ଈର୍ଷା, ଲାଳସା, ଲୋଭ, ଅସୂୟାର ଚିକ୍‌କଣ ବାଲିଗରଡ଼ା ତା' ଉପରେ ଲୋଟି ପଡୁଥା'ନ୍ତି ।

ବୈକୁଣ୍ଠନାଥ ଘରମୁହାଁ ଫେରିଲାବେଳେ ବାଗୁଲିବାଳିଆ ପୁଞ୍ଜାଏ ଛ'ଟା ଟୋକା ତାଙ୍କ

ସାଙ୍ଗରେ ସାଇକେଲ ନେଇ ବାହାରନ୍ତି । ଥାକୁଲା ପେଟା, ଅଧାଡିଆ ବାବୁମାନେ ପାନଖିଆ ପାଟି ନେଫେଡି ବାହାରନ୍ତି । ଅଚିହ୍ନା ଲମ୍ବାକଲିଆ ସଳଖ ସଳଖ ଟୋକା ଅଫିସର କେମିତି ଢଙ୍ଗରେ ଟିକିଏ ତାଙ୍କୁ ଚାହାନ୍ତି । ଧଳା ଦାନ୍ତ ସନ୍ଧାରେ ସିଗ୍ରେଟ୍ ସାଙ୍ଗକୁ ବାଦ କଲାଭଳି ହସର ଧୂଆଁ ବାହାରିଯାଏ । କ'ଣ ସବୁ ସେମାନେ ହୁଏତ କହନ୍ତି... ହୁଏତ ଥଟ୍ଟା କରନ୍ତି... ହୁଏତ ତାଙ୍କୁ ନିମନ୍ତ୍ରଣ କରି ଘରକୁ ଡାକି ନେବାକୁ ପ୍ରବର୍ତ୍ତାନ୍ତି ।

ସେ କିନ୍ତୁ ଖୁବ୍ ଶାନ୍ତ, ଖୁବ୍ ସୁନ୍ଦର ଭାବରେ – ମୋର କାନ ନାହିଁ, ମୋର ଜିଭ ନାହିଁ ଢଙ୍ଗରେ ଦିଗ୍‌ବଳୟରେ ଆୟତ ଆଖି ଯୋଡିକୁ ଖଞ୍ଜିଦେଇ ନିରୁତ୍ତର ଆଗେଇ ଯାଆନ୍ତି । ବନବାସୀ ରାଜପୁତ୍ରଟିଏ, ସତେବା ଏ ଅରଣ୍ୟର ଇଙ୍ଗିତ ବୁଝିପାରୁନାହିଁ ।

ଘରକୁ ଫେରିବା ପରେ ତାଙ୍କୁ ଲାଗେ ସେ ଛକ ପାଖ ସାଇକଲ ଦୋକାନରେ ଏବେ ଲଫଙ୍ଗା ଟୋକାଙ୍କ ଭିଡ ବେଶି । ବେଳେବେଳେ ତାଙ୍କ ଦୁଆର ପାଖେ ପାଞ୍ଚ ଛ'ଜଣ ଅନେକ ସମୟ ଧରି ରାସ୍ତାରେ ଦେଖେଇ ହେଲା ପରି ବଡପାଟିରେ କଥା କହୁଛନ୍ତି, ହସୁଛନ୍ତି । ସଞ୍ଜବେଳେ ଖଣ୍ଡେ ଖଣ୍ଡେ ଗାଡି ପାରି ହେଇଗଲାବେଳେ ଅଟକିଲା ଭଳି ହେଉଛି । ତା' ଭିତରୁ ଓହଟିଲା ପରି ପେଚା ମୁହଁଗୁଡିଏ ତାଙ୍କ ଘରଆଡେ ଚାହିଁ ଚାହିଁ ଯାଉଛନ୍ତି ।

କଲ୍ୟାଣୀ ଲକ୍ଷ୍ୟ କରୁଛନ୍ତି ଯେ ବୈକୁଣ୍ଠନାଥ ବିନା କାରଣରେ ରାତିରେ ଚମକୁଛନ୍ତି । ଆନମନା ହୋଇ ଗୋଟାଏଆଡେ ଚାହିଁରହୁଛନ୍ତି । ଆଖିରେ ପତା ପଡୁନାହିଁ । ଡାକିଦେଲେ କେମିତି ଡରିଲା ପରି ବିହ୍ୱଳ ହୋଇ ମଟମଟ ଚାହୁଁଛନ୍ତି । ଭାରି ଉଦାସ ଢଙ୍ଗରେ ହସୁଛନ୍ତି । ପଚାରିଲେ ସେଇ ଗୋଟିଏ କଥା – "ସମ୍ରାଟର ଏ ଦୌଲତଖାନାଙ୍କୁ ମୋତେ ଏକୁଟିଆ ଜଗିବାର ଦାୟିତ୍ୱ ମିଳିଛି । ଏଠି ସମସ୍ତଙ୍କ ଆଖିରେ ଲୋଭ । ସମସ୍ତେ ଲୁଟିନେବେ । କେହି ସାହାପକ୍ଷ ହେବେ ନାହିଁ ।" ...ପରିହାସ ଭାବି କଲ୍ୟାଣୀ ଲାଜେଇ ଯାଆନ୍ତି କିନ୍ତୁ ତାଙ୍କ ଶୁଖିଲା ମୁହଁଟିକୁ ଚାହିଁଦେଲେ ପୁଣି ଶଙ୍କିଯାଆନ୍ତି ।

ରାତିରେ ପରସ୍ପରର ନିଦ ନ ଭାଙ୍ଗିବାକୁ ସେମାନେ ଛପି ଛପି ଉଠନ୍ତି – ଧରାପଡି ହସନ୍ତି । ଉଭୟଙ୍କୁ ଭଲ ନିଦ ହୁଏନାହିଁ । କେତେବେଳେ ନିଶ୍ଚିନ୍ତ ବେପରୁଆ ସେ ଆଉ ହେଇପାରୁନାହାନ୍ତି । ଖୁବ୍ ପାହାନ୍ତିଆରୁ ବୈକୁଣ୍ଠନାଥ ଏବେ କସରତ୍ କରନ୍ତି । ଲାଠି ବୁଲାନ୍ତି । ଗୋଟାଏ ବନ୍ଧୁକ କିଣିବାକୁ ସ୍ଥିର କରିଛନ୍ତି । ଏଇ ହାଟ ଦିନ ଗୋଟାଏ ନେପାଳୀ ଖୁକ୍ରୀ ଆଣି କଲ୍ୟାଣୀକୁ ଦେଖାଉଥିଲେ । ଭାରି ତେଜ ହତିଆର । ଖାଲି ବୁଲେଇ ଆଣିଲେ ମୁଣ୍ଡଟାଏ କାନ୍ଧ ଉପରୁ ପୋଛିହୋଇଯିବ ।

ଉଭୟେ ଏଇ ଦିନେ ଦୁଇଦିନ ହେବ ଭାରି ଡରୁଛନ୍ତି । ପରସ୍ପରକୁ ନୁହେଁ, ଆଉ ଗୋଟାଏ କାହାକୁ, ଯେ ଛପି ରହିଛି ଅନ୍ଧାରରେ । ଭୁଆଟାଏ ସଞ୍ଜହେଲେ ତାଙ୍କ ବାଡିରେ କାନ୍ଦୁଛି ରାତିସାରା । ହଠାତ୍ କାହିଁକି କେଜାଣି ଆଲୁଅ ଲିଭିଯିବାରୁ କଲ୍ୟାଣୀ ଚମକିପଡି ବୈକୁଣ୍ଠନାଥଙ୍କୁ ଜାବୁଡି ଧରିଲେ । ପଢାଘର ଭିତରକୁ ସାଇଁକିନା ପଶିଯିବାର ଦୁହେଁ ଦେଖିଲେ । ଟାଣି ହୋଇଗଲେ

ଉଭୟେ । ଧପ୍‌କିନା ଆଲୁଅ ଜଳିଉଠିଲା । କଲ୍ୟାଣୀ ବିଳିବିଳେଇଲା ପରି ଆଙ୍ଗୁଠି ଟେକି ଦେଖେଇଲେ । ଟେବୁଲ୍ ଉପରେ ପେଚ଼ାଟାଏ ବସି ୟାଙ୍କରି ଆଡକୁ ଆଖି ତରାଟି ଚାହିଁଛି । ବୈକୁଣ୍ଠନାଥ ଟାଙ୍କ ଲାଠି ଧରି ଟାକୁ ପିଟିବାକୁ ଗୋଡେଇଲେ । ସେ ଫଡ୍ ଫଡ୍ କରି ଘର ଭିତରଯାକ ବାଟ ନପାଇ ଉଡିଲା । ଶୋଇବାଘର, ରୋଷଘର, ଘେରା ଘେରା ଉଡିଲା । ଶେଷକୁ ଝରକା ଦଣ୍ଡାରେ ବସି ଧକେଇଲା ଏବଂ ଉଡିଗଲା ବାହାରକୁ ନିଃଶବ୍ଦରେ ।

ଟା' ଆରଦିନ ସକାଳୁ ଉଠିଲାବେଳକୁ କଲ୍ୟାଣୀଙ୍କ ଡାହାଣ ଆଖି ଫଡ୍ ଫଡ୍ ଡେଉଁଥାଏ, ମୁଣ୍ଡ ବିନ୍ଧୁଥାଏ । ବୈକୁଣ୍ଠନାଥଙ୍କୁ ବି ଅସୁସ୍ଥ ଲାଗୁଥାଏ ନା କ'ଣ । ଛୁଟି ନେଇ ଘରେ ରହିଯାଆନ୍ତେ । ମନେହେଉଥାଏ, ଚାକିରିରୁ ଇସ୍ତଫା ଦେଇ ସେଦିନ ଗାଁକୁ ଫେରିଯାଆନ୍ତେ ।

ଘରୁ ବାହାରିଲାବେଳକୁ କ'ଣ ଭୁଲିଯାଇ ଦୁଇ-ତିନିଥର ଫେରିଲେ । ପ୍ରତ୍ୟେକ ଥର କଲ୍ୟାଣୀଙ୍କୁ ଚାହିଁ କହିଲେ, "ସାବଧାନ ଥିବ ! ଜମା ଦୁଆରବନ୍ଧ ଡେଇଁବ ନାହିଁ ।"

ଦୁଆରମୁହଁ ରାସ୍ତାରେ ସେ ଝୁଣ୍ଟିପଡିଲେ । ପଛକୁ ଚାହିଁ ହସିଦେଲେ । ଚାଲିଗଲେ । ଆଉ ପଛକୁ ଚାହିଁଲେ ନାହିଁ । ଆଜି କାହିଁକି ଟାଙ୍କ ବେକର ପଛପଟ କଲ୍ୟାଣୀଙ୍କୁ ଖୁବ୍ ସରୁ ଦେଖାଗଲା । ...ଚିନ୍ନାୟା ସେତିକିବେଳକୁ ଟା' ପୁଅକୁ ଧରି ଯାଉଥିଲା । ରାସ୍ତାର ଠିକ୍ ସେଇଠି ଟା' ପୁଅ ଝୁଣ୍ଟି ମୁହଁମାଡି ପଡିଗଲା । ପୁଅକୁ ଟେକି ସେ ଭୂଇଁଟାକୁ ଲାତ ମାରିଲା ଅନେକ ଥର । ସଚ କଥା, ସେ ଭୂଇଁର ପୁଣି ଏତେ ସାହସ, ଚିନ୍ନାୟାର ପୁଅକୁ ମୁହଁମାଡି ପକେଇ ଦେବ ! ହୁଁ ! କ'ଣ ବୋଲି ପାଇଛି କି !

କଲ୍ୟାଣୀ ସେମିତି ଅନେଇଁ ରହିଲେ ବାହାରକୁ । ଭାରି ଉଦାସ ଲାଗୁଥାଏ । ଡାହାଣ ଆଖିଟା ଡେଉଁଥାଏ ଅମାନିଆଁ । କେତେଥର ପତା ଛିଣ୍ଡେଇଲେଣି – ଛେପ ଲଗେଇଲେଣି – ଜମା କାନଉ ନଥାଏ । ବୁକୁ ଅକାରଣ ଧଡପଡ ହେଉଥାଏ । ଆକାଶରେ ଖୁବ୍ ସ୍ଥିର ଧଳା ଧଳା ନୂଆ ମେଘ । କୌଣସି ଗଛରେ ଫୁଲଟିଏ ନାହିଁ । କୌଣସି ଡାଳରେ ପକ୍ଷୀଟିଏ ନାହିଁ । ସାମଲବାବୁ ସଜନା ଗଛଟା କାଟିଦେବାରୁ ସତେ ଭାରି ଅଲକ୍ଷଣିଆ ଦିଶୁଛି ସେ ପାଖଟା ।

ଘର ଭିତରକୁ ଭାରି ଅଳସରେ ପଶି କବାଟ ବନ୍ଦକଲେ । କ'ଣ ମନେହେଲା କେଜାଣି, ଚୁପ୍‌ଚାପ୍ ଅନେକ ସମୟ ବସି ବୈକୁଣ୍ଠନାଥଙ୍କର ଆଉ ଦୁଇହଳ ଜୋତାରେ ରଙ୍ଗ ଲଗେଇ ରଖିଦେଲେ, ବହିଥାକ ସଜେଇଦେଲେ । ଦୁଇସାର ପେଣ୍ଟ ସାର୍ଟ ଗାଧୋଇଲାବେଳେ ଧୋଇଥିଲେ, ଟାକୁ ଇସ୍ତୀ କରିବାକୁ ବସିଲେ । ଭୋକ ଲାଗୁଥିଲେ ସୁଦ୍ଧା ଖାଇବାକୁ ଗଲେ ନାହିଁ । ...ହଅଅ – ସବୁଦିନ ଟ' ଖାଉଛନ୍ତି... ଶୋଉଛନ୍ତି – ଆଜି ଏବେ ଟିକିଏ ବିଳମ୍ବ ହେଇଗଲେ କ'ଣ ଯାଏ ଆସେ ?

ବାରଟାବେଳେ ନିଷ୍ଠଳ ଦିହୁଡି ପରି ଖରା ଜଳୁଥାଏ । ସେତେବେଳେ ସବୁ ଛାଇଯାକ ପାଦତଳେ ଜମାହୋଇଯାଏ । କାହାରି ଛାଇ ନଥିଲା ପରି ଦିଶେ । ...ଖୁବ୍ ନିସ୍ତବ୍ଧ ବେଳା । ଆକାଶ ଶିଖରେ ସୂର୍ଯ୍ୟ ଥମ୍ ଥମ୍ ହୋଇ ଥରିବାର ବେଳା । ୟା'ପରେ ସେ ଖସିଯିବ ପଶ୍ଚିମକୁ ।

...ଗୋଟାଏ ଗାଡି ବୋଧହୁଏ ଦୁଆରେ ଅଟକିଲା । ...ହଅଅ, ଗାଡି କିଏ ଆମେ କିଏ! ଆମର ସେଥିରେ ଥାଏ କ'ଣ ?

ତିନିଖଣ୍ଡ ପୋଷାକ ଯତ୍ନରେ ରଖିସାରି କଲ୍ୟାଣୀ ସେ ବଡଛକି ଜାମାଟାକୁ ଚଉଚୁଥା'ନ୍ତି । ଏଇଟା ତାଙ୍କୁ ଭାରି ଭଲଲାଗେ । ବୈକୁଣ୍ଠନାଥ ପିନ୍ଧିଲେ ତାଙ୍କୁ ଖୁବ୍ ମାନେ । ଏଥିରେ ବୁକୁ ପାଖର ଏ ଦାଗଟା ଜମା ଛାଡୁନାହିଁ । ସେ ତାକୁ ଚାହିଁ ମୁହୂର୍ତ୍ତେ ଥମିଗଲେ । ମୁହଁରେ ପାତଳ ଫଗୁ ବୁଣି ହେଇଗଲା । ତାଙ୍କ ମଥାର ସିନ୍ଦୂର ଦାଗ ଏମିତି ରହିଚି! ...କି ଲାଜ କଥା!

ତରବର ହୋଇ ଗେଟ୍ ଫିଟିବାର ଶବ୍ଦ ଶୁଭିଲା । କିଏ ଆସିଲା ହୁଏତ!... ଏବେ କ'ଣ ସେ ଫେରିଆସିଲେ ?... ତରବରରେ ସାର୍ଟଟାକୁ ଥୋଇଦେଇ ଇସ୍ତ୍ରୀ ତା'ର ଗୁଡେଇଦେଲେ ।

ଭାରି ଭାରି ପାଦ! ବୁଟ୍ ପିନ୍ଧା ପାଦ! ବୋଧେ କିଏ ଧାଇଁ ଆସୁଛି । ତାଙ୍କ ବୁକୁ ଦାଉଁ ଦାଉଁ ହେଲା । ବେକ ଝାଳେଇଗଲା । ଓଠ ଶୁଖିଗଲା । ଅଜଣାଆ ଆତଙ୍କ ଡେଇଁଲା ଫଡ୍ ଫଡ୍ ହୋଇ ଡାହାଣ ଆଖିପତା ଉପରେ ।

X X X X

ବୈକୁଣ୍ଠନାଥ ଅଫିସରେ ବସି ହାଉକିନା ଚମକିପଡିଲେ । ତାଙ୍କୁ କିଏ ବଡପାଟିରେ ନାଁ ଧରି ଡାକିଦେଲା ପରି ଶୁଭିଲା । ତାଙ୍କ ହାତରୁ କଲମ ଖଣ୍ଡ ଛିଟିକିପଡିଲା । ...ବଡସାଇବର କାଳିଆ ପିଅନଟା ଦୁମୁଦୁମୁ ହୋଇ ଦୌଡିଗଲା ବାହାର ପିଣ୍ଡା ଆଡେ । ସେ ଧଡପଡ ଉଠିପଡିଲେ । କ'ଣ ବିପତିଟାଏ ପଡିଗଲା! ସେ ବି ଧାଇଁବାର ଦେଖି ସମସ୍ତେ ତାଙ୍କୁ ଆବାକାବା ଅନେଇଁଲେ । କ'ଣ ହେଲା ? ...କ'ଣ ହେଲା ?... କିଛି ନାଇଁ ତ । ...ଏଇ ନୂଆ କଳାହାଣ୍ଡିଆ ମେଘ ଟେକିଛି । ସେଇ ଡାକୁଛି । ବୈକୁଣ୍ଠନାଥ ଉପର ଅଫିସର ପାଖରେ ଯାଇ ଠିଆହେଲେ – "ମୋତେ ଦୟାକରି ଘରକୁ ଯିବାକୁ ଛୁଟି ଦିଅନ୍ତୁ । ମୋତେ ଭାରି ଅସୁସ୍ଥ ଲାଗୁଛି ।" ସେ ୟାଙ୍କୁ ଚାହିଁଲେ । କ'ଣ ବୁଝିଲା ଭଳି ଅଳ୍ପ ହସିଲେ । କହିଲେ, "ଆଚ୍ଛା, ଲେଖିଦେଇ ଯାଅ ।" ମେଘ ପୁଣି ଡାକିଲା ଦୁରୁଦୁରୁ । ବୈକୁଣ୍ଠନାଥ ସାଇକେଲଟି ବାହାରକରି ଆଖିବୁଜା ମାଡି ଚାଲିଲେ ନିଛାଟିଆ ରାସ୍ତା ଉପରେ ।

X X X X

– କବାଟରେ ଦୁମୁଦୁମୁ ବାଡେଇ କିଏ ଜଣେ ଡାକିଲା, "ବେଗି ଫିଟାନ୍ତୁ ।"

କଲ୍ୟାମୀ କବାଟ ଆରପାଖ ଠକ୍ ଠକ୍ ଥରୁଥା'ନ୍ତି । ତ୍ରସ୍ତା ହରିଣୀଟିଏ । ଗୋଡହାତ ଚଳୁନାହିଁ, ପାଟି ଫିଟୁନାହିଁ । – କିଏ ସିଏ ? କାହିଁକି ଏମିତି ତଡ୍‌ବଡ୍ କରୁଛି ?... ସେଇଠି ଠିଆହୋଇ ବୈକୁଣ୍ଠନାଥ ବାରମ୍ବାର ତାକୁ କହିଛନ୍ତି, "ଦେଖ କଲ୍ୟାଣୀ, କଦାପି ଅଚିହ୍ନା ଲୋକକୁ ଦ୍ୱାର ଫିଟେଇବ ନାହିଁ । କଦାପି ଦୁଆରବନ୍ଧ ଡେଇଁ ଗୋଡ କାଢିବ ନାହିଁ । ଦେଖ, ମୋ' ରାଣ!" ତାଙ୍କ ମୁଣ୍ଡ ଘାଉରେଇଗଲା । ବୁକୁ ପତିଲାଉଠିଲା । ପାଦ ତଳିପାରୁ ମଝିଶିରା ହାତଯାଏ ତେନ୍ତୁଳିବିଛା ଚାଲିଲା ପରି ଲାଗିଲା । ସେ ତଥାପି ସେମିତି ଠିଆ ହୋଇଥା'ନ୍ତି । ଝାଳେଇ ଯାଉଥା'ନ୍ତି । କବାଟ

ଆରପାଖ ନିଃଶ୍ୱାସ ତାଙ୍କୁ ଶୁଭୁଥାଏ । ସିଗ୍ରେଟ୍ ଗନ୍ଧ ବାସୁଥାଏ ।

"ବେଗି ଫିଟାନ୍ତୁ! ମୁଁ ବୈକୁଣ୍ଠନାଥର ସାଙ୍ଗ । ସେ ଏକ୍ସିଡେଣ୍ଟରେ ବେହୋସ ହୋଇଯାଇଛି । ତାଙ୍କୁ ହସ୍‌ପିଟାଲରେ ଛାଡି ମୁଁ ଆସିଛି । ଫିଟାନ୍ତୁ, ଫିଟାନ୍ତୁ ଚଞ୍ଚଳ ।"

"ଏଁ!!... ଏକ୍ସିଡେଣ୍ଟ ? ...ହସ୍‌ପିଟାଲ ?"

ହାଉକିନା କବାଟ ଫିଟିଗଲା । ଏ ପାଖେ ମୋଟାରୋଟା ଷଣ୍ଢା ମଣିଷଟାଏ । ଚଉଡା କମରପଟା – ଚଉଡା ବୁକୁ । ଛକି ଛକି ହାଫ୍‌ସାର୍ଟ ତଳକୁ ଖମ୍ବପରି ବାଳବାଳୁଆ ହାତ । ଆରପାଖେ ଭୟବିହ୍ୱଳ କାତର ନାରୀ । ଶୁଖିଲା ଓଠ ଫିଟି ରହିଛି । ଆଖି ଫିଟି ରହିଛି । ଦେହ ସାରା ଝାଳ । କିଛି ନ ବୁଝିଲା ଆଖିରେ ଦେଖିଲେ କଲ୍ୟାଣୀ । ବୋଧେ ଏତେ ଅଦ୍ଭୁତ ସୁନ୍ଦର କେବେ ଦିଶିନଥିଲେ ।

ସେ ମନକୁ ମନ ଜପି ହେଉଛନ୍ତି "ଏକ୍ସିଡେଣ୍ଟ! ...ଜଖମ..." ତାଙ୍କଅଙ୍କୁ କିଛି ହୁଏତ ଦିଶୁନାହିଁ । ସେ ଜାଣିପାରୁ ନାହାନ୍ତି ଯେ ଗୋଟାଏ ବାହୁ ତାଙ୍କ ଅଣ୍ଟାରେ ବେଢେଇ କେହି ଜଣେ ତାଙ୍କୁ ଦୁଆରବନ୍ଧ ଡିଆଇଁ ନେଇଯାଉଛି ।

"ଚଞ୍ଚଳ ଚାଲନ୍ତୁ ଏଇ ଗାଡିରେ – ହସ୍‌ପିଟାଲ ଯିବା । ବୈକୁଣ୍ଠନାଥର ଅବସ୍ଥା ଭାରି ସିରିଅସ୍ ।"

ପପି ଗଛ ପାଖରୁ ଏକାକୀ ଘରଚଟିଆଟିଏ ଉଡିଗଲା । ନିସ୍ତବ୍ଧ ଦ୍ୱିପ୍ରହର ଦୋହଲିଗଲା । ଧୂଳି ଉଠିଲା ଆକାଶ ସାରା ସୁଁ ସୁଁ ପବନରେ । ନୂଆ ମେଘ ଭଣ୍ଡାର କୋଣରୁ ଗର୍ଜିଲା ଗୁମୁଗୁମୁ ହୋଇ ।

...ସେଇ ଝିମ୍‌ମିଲ୍ ଖରାରେ ମଣିଷର ଛାଇ ଦିଶୁ ନଥିବାବେଳେ ଗୋଟାଏ କଳା ଗାଡିର ପଛ ସିଟ୍ ଉପରକୁ କେହି ଜଣେ ଟାକରା ମାରି ଟେକିନେଲା ନିର୍ବାକ୍ ନିସ୍ପନ୍ଦ ବିଜୁଳି ପରି ସେ ଅସାମାନ୍ୟ ସୁନ୍ଦରୀଟିକୁ । ଗାଡିର ଧୂଳି ଝଡର ଧୂଳିରେ ମିଶିଗଲା । ଗାଡିର ଗର୍ଜନ ମେଘ ଗର୍ଜନରେ ମିଶିଗଲା । ଅବାଧ ପବନ ଦାଣ୍ଡରୁ ପଶିଗଲା ପଶିଗଲା ଠିଆମେଲା ଦୁଆରେ ବାଟେ । ଗୁରାଣ୍ଡି ହେଲା ଘରସାରା । ତା'ପରେ ନିସ୍ତବ୍ଧ ହୋଇଗଲା ବାହାର ଏବଂ ଘର । ଏଣିକି କେବଳ ପାଣି ବର୍ଷିପାରେ ।

ବୈକୁଣ୍ଠନାଥ ସାଇକଲ କାଢିଲାବେଳକୁ କାକର ପବନ ପିଟୁଥାଏ । ବାଟରେ ହୁଏତ ବର୍ଷିପାରେ । ତାଙ୍କୁ ପ୍ରାୟ କିଲୋମିଟରଯାକ ଏମିତି ପବନ ସାଙ୍ଗେ ଲଢେଇ କରି ଯିବାକୁ ହେବ । ସେ କ'ଣ ଆଉ ଟିକିଏ ଜୋର୍‌ରେ ଯାଇପାରନ୍ତେ ନାହିଁ ? ତାଙ୍କର ଗାଡିଟିଏ ଥାଆନ୍ତା କି – କଳା ମଚମଚ ଗାଡିଟିଏ । – ଗୋଟାଏ ନିର୍ମମ ଉଠାଣିରେ ସେ ଲଇଁପଡି ସଂଗ୍ରାମ କରୁଥା'ନ୍ତି । ବର୍ଷା ଆସିଗଲା । ପ୍ରଥମ ବର୍ଷା । ରହିଯିବାକୁ ଆଡୁଆଳ ନାହିଁ । ତିନ୍ତିଗଲା ପରେ କ'ଣ ବା ରହିବେ ?

ଦେଖିଲେ ରାସ୍ତା କାଟି ବୁଢୀଟିଏ ଲସରପସର ହୋଇ କରଞ୍ଜଗଛ ମୂଳକୁ ବୋଝ ମୁଣ୍ଡେଇ ଧାଇଁଗଲା । ଲଙ୍କାଆମ୍ବ ବୋଝ । ହଳଦିଆ, ନାଲି, ସୁଆଦିଆ, ରସୁଆଳ ଲଙ୍କାଆମ୍ବ! କଲ୍ୟାଣୀ

ଯାକୁ ଦେଖୁ ଦେଖୁ ହାତରୁ ଛଡେଇ ନେଇଯିବ । ତାକୁ ଭାରି ଭଲ ଲାଗେ ତ ! ତରବରରେ ରୁମାଲ୍‌ରେ ଦଶଟି ଲଙ୍କାଆମ୍ବ ବାନ୍ଧି ସେ ସାଇକେଲ୍ ମାରିଲେ । ବର୍ଷାରେ ତିନ୍ତି ସରବୁତ । ସେ କାହିଁକି ଏମିତି ବ୍ୟସ୍ତ ହୋଇ ଘରକୁ ଯାଉଛନ୍ତି ସତେ ? ଛୁଟି ମାଗି ଘରକୁ ଦି'ପହରରେ ଧାଇଁ ଆସିଛନ୍ତି ଦେଖିଲେ କଲ୍ୟାଣୀ ପ୍ରଥମେ ଘାବରେଇଯିବ । କ'ଣ ଦେହପା' ବ୍ୟସ୍ତ ହେଇନାହିଁ ତ ! ସେ ହୁଏତ ଆଗ ଲୁଗାପଟା ବଦଳ କରେଇ ଟାଓ୍ୱେଲ୍‌ରେ ତାଙ୍କ ଦେହସାରା ପୋଛି ପକେଇବ । ତାଙ୍କର ଧୂସରିଆ କଳା ବୁକୁ ଉପରେ ଚମ୍ପାକଢ଼ି ପରି ଆଙ୍ଗୁଠିଗୁଡିଏ ଖେଳିଯିବ । ତା'ପରେ ତାଙ୍କ ବୋକାମି ପାଇଁ ହସି ହସି ସେ ଗଡିଯିବ । ଛୁଟିନେଇ ସତେ କାହିଁକି ଓଦା ସରସର ହୋଇ ସେ ଘରକୁ ଧାଇଁଆସିଛନ୍ତି ? ଆରେ ଯା, ନୂଆ ମେଘ ଆସିଛି, ସେ କଲ୍ୟାଣୀ ପାଖକୁ ନଆସି କ'ଣ ସେଇଠି ବସି ମାଳା ଗଡେଇଥା'ନ୍ତେ ?

ତଥାପି ଅକାରଣ ଭୟ ତାଙ୍କୁ ଆଚ୍ଛନ୍ନ କରି ରଖିଥାଏ । ବାଟ ସରି ଆସୁଥାଏ । ଦୂରରୁ ଟୋପି ଟୋପି ବର୍ଷା ଭିତରେ ତାଙ୍କୁ ଦିଶିଗଲା ଯେ ଦୁଆରଟା ଠିଆମେଲା । ଦାଉଁ ଦାଉଁ ହୋଇ ଦୁଇଥର ବୁକୁ ବାଡେଇ ହୋଇଗଲା । ସେ ଏକାଲୟରେ ସେଇ କବାଟକୁ ଚାହିଁରହିଥା'ନ୍ତି । ଆଚ୍ଛା, ବାହାର ଗେଟ୍‌ଟା ବି ଏମିତି ମେଲା ! ପାଟି ହଠାତ୍ ଶୁଖିଗଲା । ହଅଅ – ସେଦିନ ଭଳି କୁଆଡେ ଟିକିଏ ଯାଇଥିବ – ତାଙ୍କୁ ଦେଖୁ ଦେଖୁ ଚାଲିଆସିବ ଯେ !

ସାଇକେଲରୁ ଲଙ୍କାଆମ୍ବ ବନ୍ଧା ରୁମାଲଟିକୁ କାଢିଲାବେଳକୁ ତାଙ୍କ ହାତ ଠକ୍ ଠକ୍ ଥରୁଥାଏ । ସେ ପିଣ୍ଡା ଉପରୁ ଡାକିଲେ, "କଲ୍ୟାଣୀ !" ଭିତରେ ପଶି ଡାକିଲେ, "କଲ୍ୟାଣୀ !" ଏ ଘର, ସେ ଘର, ରୋଷେଇ, ଭଣ୍ଡାର, ଗାଧୁଆ ଘର ଚାରିଆଡେ ଡଗ ଡଗ ଥରିଲା ଥରିଲ ପାହୁଣ୍ଡ ପକେଇ ଓଦା ମଣିଷଟି ଦଶଟା ଲଙ୍କାଆମ୍ବ ଓଦା ରୁମାଲରେ ଧରି ଡାକିଲାଗିଥାଏ କଲ୍ୟାଣୀ... କଲ୍ୟାଣୀ... କଲ୍ୟାଣୀ । ସ୍ୱର ଆସ୍ତେ ଲଇଁ ଆସୁଥାଏ । ପାଦ ଟଳମଳ ।

ଦାଣ୍ଡଦୁଆର ପାଖେ ଠିଆହୋଇ ସେ ଏପାଖ ସେପାଖ ଚାହିଁଲେ ଏବଂ ନଥିକିନା ବସିପଡିଲେ । ତାଙ୍କ ନାଡ ଗୁରାଣ୍ଡି ହେଇ ଅଇ ଟେକିଲା । ଦେଖିଲେ ସିଗ୍ରେଟ୍ ମୁଣ୍ଡିଟାଏ ପାହାଚ ତଳକୁ ପଡିଛି । ତାଙ୍କ ବୁକୁ ଆଉ ବୋଲ ମାନିଲା ନାହିଁ । ହାତ ଗୋଡ ଥରିଲା ଫଡ୍ ଫଡ୍ ହୋଇ । ଝାଳ ନିଗିଡି ଆସିଲା ଓଦା ସରସର କପାଳ ଉପରୁ ।

ଆହୁରି କଳାଘୁମର ମେଘ ଉଠିଆସୁଥାଏ । ତା' ମଥାନ ପାଖରୁ ଫୁର୍‌ଫୁର୍ ହୋଇ କେରା କେରା ଚୂଳ ଉଡିଯାଉଥାଏ । ନିଃଶବ୍ଦରେ ତା' ବୁକୁରେ ଛଟ୍‌ଛଟ୍ ହେଉଥାଏ ବିଜୁଳି । କାଳିଆ ଷଣ୍ଢା ମେଘର ଗୁଳା ଗୁଳା ବାହୁ ଭିତରୁ ସେ ଖସି ଆସି ପାରୁ ନଥାଏ । ପେଶି ହେଇ ଯାଉଥାଏ । କଲବଲ ହେଉଥାଏ । ଇସ୍ !

ମୁହଁ ଘୋଡେଇ ଝିମି ଖାଇଗଲା ପରି ବସିରହିଲେ ବୈକୁଣ୍ଠନାଥ । ଏଇଟା ଗୋଟାଏ ଦୁଃସପ୍ନ । ଆଖି ଫିଟେଇଦେଲେ ମିଳେଇଯାଇଥିବ । କିନ୍ତୁ ଜିଭ ଭିଡିନେଉଥାଏ । ଅଇ ଟେକୁଥାଏ ବାରମ୍ବାର । ସେ ବୋଧହୁଏ ଚେତା ହାରି ପଡିଯିବେ । କଲ୍ୟାଣୀ ଆଉ ନାହିଁ । ସେ ଯାହା ଏତେଦିନ

ଧରି ଡରୁଥିଲେ, ସେଇଟା – ଘଟିଗଲା । କିଏ ନେଇଗଲା ମୋ' କଲ୍ୟାଣୀକୁ! ମୋ' ସମ୍ରାଟ୍‌ର ଦୌଲତ୍‌କୁ କିଏ ଲୁଟି ନେଇଗଲା ?

ସେ ଛାଟ ମାରିଲା ପରି ଉଠିପଡିଲେ । ଧାଇଁଲେ ଏ ବଖରାରୁ ସେ ବଖରାକୁ । ପାଗଳ ପରି ଗର୍ଜିଲେ । ଆଖିରୁ ତାତିଲା ଲୁହ, ପାଟିରୁ ଫେଣ ବାହାରିଗଲା । ସେ ପାଲିସ୍‌କରା ଜୋତାକୁ ମୁହଁରେ ଜାକିଧରି ଭେଁ ଭେଁ କାନ୍ଦିପକେଇଲେ । ମୁଣ୍ଡରୁ କେରା କେରା ବାଳ ଓଟାରିପକାଉଥା'ନ୍ତି । କାନ୍ଥରେ ମୁଣ୍ଡ କୁଟିଦେଇ ସେ ଠିଆରୁ ଗଛ କାଟିଲା ପରି ପଡିଗଲେ ।

ବାହାରେ ଝମଝମ ବର୍ଷା ବିଜୁଳି କାଚିଦେଲା । ଦିବସରେ ଘୋଟିଗଲା ଅନ୍ଧାର । ଏମିତି ରବରବ ବର୍ଷା, ଏମିତି ଘିଡିଘିଡି ଗୁମୁଗୁମୁ ବଜ୍ର ବିଜୁଳି ଏବଂ ଓଦା ଓଦା ସେ ନୀରବ ପକ୍ଷୀବସା ପରି ଛୋଟିଆ ଭଡାଘରଟିରେ ଏତେ ନିଶ୍ଚଳତା କେହି ଦେଖିବାକୁ ନଥିଲେ । ପବନ ପାଣି, ରାସ୍ତାର ଓଦା ଗୋରୁ, କୁକୁର, ଯେ ମନ ସିଏ ସେ ମେଲା ଦୁଆର ବାଟେ ନିର୍ବିରୋଧରେ ପଶିଯାଇପାରିବେ । କେହି ବାଧା ଦେବାକୁ ନଥିଲେ । ଦୁଆରବନ୍ଧରେ ଗାଣ ଦେଲାପରି କିଛି ନଥିଲା ବାଟ ରୋଧିବାକୁ ।

X X "ବୈକୁଣ୍ଠନାଥଟା ବନ୍ଧପାଗଳ ପରି ଆଜି କ'ଣ ଧାଉଁଛି ? ଜାଣିଲାଣି ନା – ତା' ମାଇପକୁ କିଏ ଉଠେଇ ନେଇଗଲା ।"

"ଇସ୍, ମଝିରେ କିଏ କପାଳିଆ ତାକୁ ମାରିନେଲା ! ବହୁ ବଡବଡିଆଙ୍କ ଆଖି ତା' ଉପରେ ଢେର୍‌ଦିନୁ ପଡିଥିଲା । ସେଭଳି ମାଇକିନିଆକୁ କ'ଣ ଯିଏ ପାଖେ ରଖେଇ ଦେଇଥା'ନ୍ତେ !"

"କେଡେ ସୁନ୍ଦର ମାଇକିନିଆଟା ହୋ ! ଚହିଁଦେଲେ ଆଖି ଲାଖିଯିବ ! ବିଭା ହେବାର ଜମା ଚାରିମାସ ହେଲା । ଆହା ବିଚରା ବଇକୁଣ୍ଠନାଥ ! ସେ କି ତାକୁ ଏଠି ସମ୍ଭାଳି ରଖିବାକୁ ସକ୍ଷମ !"

"ତା' ଜାମା କୁଆଡେ ଚିରି ଓହଳି ରହିଛି । ହାତରେ ଖଣ୍ଡେ ଠେଙ୍ଗା, ଅଣ୍ଟାରେ ଖଣ୍ଡେ ଛୁରୀ । ଚାରିଆଡକୁ ଏଡେଡେଟାମାନ ଆଖି କରି ଚାହୁଁଛି । ତା'ପରେ ଗୋଟାଏ ଦିଗକୁ ଥମ୍ ହେଇ ଗାରଡେଇ ଅନଉଚି । କ'ଣ ତାକୁ ଦିଶିଯାଉଚି କେଜାଣି, ସେଇଠୁ ଗୋଟାଏ ବିକଟାଳ ରଡି ଛାଡି ଧାଉଁଚି । ବେଳେବେଳେ ନିଜ ଡେଣାଟାକୁ ଗାଉଁକିନା କାମୁଡି ଧରୁଚି ।"

"ଇସ୍, ସୁକୁମାରିଆ, ସୁନ୍ଦରିଆ ଟୋକା ଖଣ୍ଡେ ! ତା' ପ୍ରାଣକୁ ବାଧିଗଲା । ଏ ରାଜ୍ୟରେ କ'ଣ କେହି ନାହିଁ ଯେ ତାକୁ ତା'ର ଆଉ ଅଧେ ଅଙ୍ଗ ଫେରେଇଦେବ ?"

"ବାୟା ହେଲ ! କିଓ ବଳ ନ ଥିଲେ ସେମିତି ହୀରାଟିକୁ କିଏ ସମ୍ଭାଳିବ ? ସେମିତି ହୋଇଥିଲେ କ'ଣ ତେମେ ଛାଡିଥାନ୍ତ ନା ମୁଁ ଛାଡିଥା'ନ୍ତି ! ...ରଇଥ ଦେଖିବ, ତା' ପାଇଁ ମହାବଳ ଲଢେଇ ହେଇଯିବ । ସେଥିରେ ପଶେ କିଏ ?"

"ଏଠି କ'ଣ କେହି ବୁଝିବାକୁ ନାହିଁ ? କେହି ସାହାପକ୍ଷ ହେଇ ଯୁଝିବାକୁ ନାହିଁ !"

"ମଣିଷ ତ ନାହାନ୍ତି, କେଜାଣି ମାଙ୍କଡ ଯଦି ଯୁଟିଯାନ୍ତି !"

"ଇସ୍ କି ଭାଗ୍ୟରେ !"

X X ଗୋଟାଏ ନାଁ ନଥିବା ବିରାଟ ଜଙ୍ଗଲି ଗଛ । ତା'ରି ମୂଳେ ଗୋଟାଏ ପଥର ଉପରେ ବୈକୁଣ୍ଠନାଥଙ୍କୁ ବସିଥିବାର କେହି ଜଣେ ଲକ୍ଷ୍ୟ କଲା । ଆସ୍ତେ ଆଉ କେତେ ଜଣ ପାଖେଇ ଆସିଲେ । ଚୁପ୍‌ଚାପ୍ ବେଢି ବସିଗଲେ । ସେମାନେ ମଣିଷ କି ମାଙ୍କଡ କେଜାଣି ? ସେମାନଙ୍କ ମୁହଁଗୁଡିକ ଭାରି ଉଦାସ । ସେତେବେଳକୁ ସୂର୍ଯ୍ୟାସ୍ତ ହେଉଥାଏ । ଆକାଶରେ ଏଠି ସେଠି ଭଙ୍ଗା ଭଙ୍ଗା ପାଣିମେଘ ।

"ଆପଣ ଏ ସମୟରେ ଅଧୀର ହେଲେ ଚଳିବ ନାହିଁ ।"

"ଆପଣଙ୍କ ପାଇଁ ଆମେ ଖୋଜିବୁ – ଠାବ କରିବୁ !"

"ଏଥିପାଇଁ ଲଢିବାକୁ ହେବ । ପ୍ରାଣ ବଡ ନୁହେଁ, ଇଜ୍ଜତ ବଡ ।"

ଗୁଡିଏ ଅର୍ଥହୀନ ବାକ୍ୟ । କିଏ ସେମାନେ ? କ'ଣ କହୁଛନ୍ତି ? ସତେ କ'ଣ କଳାଗାଡିରେ ବସେଇ କିଏ କଲ୍ୟାଣୀକୁ ନେଇଗଲା ? ସତେ କ'ଣ ତାକୁ ସେମାନେ କୌଣସି ଅନ୍ଧାର ଘର ଭିତରକୁ ଟେକିନେଲେ ? କଲ୍ୟାଣୀ କ'ଣ ସେମିତି ଚିତ୍‌ମାତ୍ ପଡିଛି – ବେହୋସ, ଉଲଗ୍ନ, ରକ୍ତାକ୍ତ ?

ବୈକୁଣ୍ଠନାଥ ଚିତ୍କାର କରି ଉଠିପଡିଲେ । ସେମାନେ ଅଭ୍ୟାସ କଲା ପରି ତାଙ୍କୁ ଧରି ବସେଇଦେଲେ । ସେଇଭଳି ଉଦାସ ଭଙ୍ଗୀରେ ପୁଣି କହିଲେ କ'ଣ ଗୁଡିଏ ପୁରାଣ ବାକ୍ୟ । ସେମାନେ ହୁଏତ ଜମା ବୁଝିପାରୁ ନ ଥିଲେ ସେ ସୁକୁମାର ପୁରୁଷଟି କାହିଁକି ସେମିତି ଥରୁଥିଲା – ଭୟରେ, କ୍ରୋଧରେ କି ଯନ୍ତ୍ରଣାରେ !

ରାତି ସେତେବେଳକୁ ଅନେକ । ଲୋକମାନେ ଧାଇଁବାର ଶୁଣାଗଲା । ହୋଇପାରେ ସେମାନେ ସବୁ ମାଙ୍କଡ । ଶୁଣାଗଲା ଯେ ଠାବ ହୋଇଗଲା... ସବୁଠାରୁ ବୃହତ୍ତମ କୋଠା... ସେଥିରେ ସବୁଠାରୁ ପ୍ରତାପୀ ମାଲିକ ରାଜୁତି କରନ୍ତି । ତା'ର କୁଆଡେ ସାତପୁର ପାଚେରି, ଗୋଳାକମାଣ, ପିଆଦା ପଟୁଆର ।

"ଏଇ ଦିଗରେ କୋଠା, ଏଇ ଦିଗରେ ଶତ୍ରୁ ।"

"ଆପଣ ଏବେ ରାଗିବାକୁ ହେବ, ଯୁଝିବାକୁ ହେବ ।"

"ପ୍ରାଣ ବଡ ନୁହେଁ, ଇଜ୍ଜତ୍ ବଡ ।"

"ହେଇ ଦେଖିବା ଚାଲ କେମିତି ଯୁଦ୍ଧ ହବ... ଯୁଦ୍ଧ ହବ – ଯୁଦ୍ଧ ହବ ।" ଅନ୍ଧାରର ଏକଧାଡିଆ ଜଡ ବାକ୍ୟଗୁଡିଏ । ସେମାନେ ହୁଏତ ଉଦାସ କିନ୍ତୁ କୌତୂହଳୀ ମାଙ୍କଡଗୁଡିଏ ।

ବୈକୁଣ୍ଠନାଥ ଧଡପଡ ଉଠି ଠିଆହେଲେ । ଏଇ ତା'ହେଲେ ଦିଗ ! ଏଇ ଦିଗରେ କୋଠା । ଏଇ ଦିଗରେ କଲ୍ୟାଣୀ ଥିବା କୋଠା କେତେଦୂର ? – କଲ୍ୟାଣୀ କେଉଁଠି ? ସେ ମୂହ୍ୟମାନ ହୋଇ ଧାଇଁଲେ । କାନ ଭାଁ ଭାଁ ଡାକିଲା । ତାଙ୍କୁ ଶୁଭିଲା ସମୁଦ୍ର ଗର୍ଜିଲା – ଇଜ୍ଜତ ହରେଇଥିବା ଅସଂଖ୍ୟ ସୋଦର ଆତ୍ମା ଅନ୍ଧାର ଭିତରୁ ଗର୍ଜିଲେ । ସମଗ୍ର କୋଠାକୁ ଚାରିଆଡୁ ଶହେପୁର କରି ଘେରି ରହିଥିବା ଅସୁମାରି ଆଟଙ୍କର କିଳିକିଳା ଧ୍ୱନି । ଅଶାନ୍ତ ସମୁଦ୍ର ଗର୍ଜିଲା । ବୈକୁଣ୍ଠନାଥ

ପ୍ରଗାଢ଼ ସପ୍ନରେ ମୂହ୍ୟମାନ ।

ଓଦା ଛାଇଟିଏ ପରି ବୈକୁଣ୍ଠନାଥ ଏକାକୀ ସେ ଅସରନ୍ତି ରାସ୍ତାରେ ଧାଇଁଥା'ନ୍ତି । ରାତି ଅନ୍ଧାରରେ ଲମ୍ବା ଲମ୍ବା ପାହୁଣ୍ଡ ପକେଇ ଚାରି ପାଞ୍ଚଟି ମୂର୍ତ୍ତି ନିଃଶବ୍ଦରେ ତାଙ୍କର ଅନେକ ପଛରେ ଚାଲିଥା'ନ୍ତି । ସେଗୁଡିକ ବୋଧେ ମଣିଷ ନୁହଁନ୍ତି, ଗୁଡାଏ ଉଦାସ ମାଙ୍କଡ ।

ଦୁର୍ଗ ଭଳି କୋଠା, ପାହାଡ ଭଳି ପାଚେରି । ଯାରି ଭିତରେ କଲ୍ୟାଣୀ! ଯାରି ଭିତରେ ଅସୁର! ବୈକୁଣ୍ଠନାଥ ଆହୁରି ଜୋର୍‌ରେ ଧାଉଁଥା'ନ୍ତି । ଧରିଥିବା ଠେଙ୍ଗା ଅଗରୁ ଝାଳ ଥୋପି ପଡୁଥାଏ । ସେଇ ଫାଳେ ପାଚେରି ଜମା ସରୁ ନଥାଏ ।

ସଙ୍ଗୀନଧାରୀ ସନ୍ତ୍ରୀ ବିରାଟ ଫାଟକ ପାଖରେ ପହରା ଦେଉଥା'ନ୍ତି । ଧାଇଁ ଧାଇଁ ବୈକୁଣ୍ଠନାଥ ଝାଳରେ ସରବୁଡ । କଥା କହିବାକୁ ବୁକୁରେ ପବନ ନାହିଁ । ଆଖିରେ ଦୃଷ୍ଟି ନାହିଁ ଦେଖିବାକୁ । ସେ ଧକେଇଲାପରି ଧସେଇ ପଶିଗଲେ ଫାଟକ ଭିତରକୁ ।

"ଆରେ ବେଵକୁଫ୍! ଆବ୍‌ବେ ପାଗଲ୍! ଆବ୍‌ବେ ଉଲ୍ଲୁ କାହଁକା!" – ବନ୍ଧୁକକୁ ଆଡ କରିଦେଇ ଗୋଟାଏ ସନ୍ତ୍ରୀ ବସେଇଦେଲା ବାଉଁଆ ଚଟକଣା ତାଙ୍କ ଗାଲରେ । ଆର ସନ୍ତ୍ରୀ ମାଇଲା ଗୋଟାଏ ଧକ୍‌କା ବୁକୁ ଉପରେ । ତା'ପରେ ଦୁଇଜଣ ମିଶି ଧକ୍‌କା ଉପରେ ଧକ୍‌କା ଦେଇ କିଛି ଦୂର ପେଲି ଆଣିଲେ । ହାତରୁ ଅକ୍ଳେଶରେ ଛଡେଇନେଲେ ଠେଙ୍ଗାଟିକୁ । କାଢି ନେଇଗଲେ ଛୁରୀ । ଚିରା, ଓଦାସରସର କାମିଜଟିକୁ ଉଲାରି ଦେଇ ଫୁଙ୍ଗୁଳା କରିଦେଲେ । ଲଢ଼ି ଜାଣୁନଥିବା, ହାତ ବୁଲେଇ କେବଳ କ୍ଳାନ୍ତ ହେଉଥିବା, କାନ୍ଦି ନପାରି ଗାଉଁ ଗାଉଁ ହେଉଥିବା ସେ କଅଁଳିଆ ଯୁବକଟିକୁ ସେମାନେ ତାଙ୍କ ପେଶାଦାର ଗୋଇଠା, ବିଧା, ଧକିଆରେ ନିସ୍ତୁକ ଛେଚିଦେଇଗଲେ ।

ଓଠ ଫାଟି ରକ୍ତ ଝରିଗଲା । ଗାଲ ଫୁଲିଗଲା । ନାକ ଫୁଲିଗଲା । ବଡ ବଡ ଆଖିଗୁଡିକ ସାଙ୍କୁଡିଗଲେ । ଭୂଇଁରେ ଧକ୍‌କା ଖାଇ ବାରମ୍ବାର ହାମୁଡି ପଡିବାରୁ ଦେହସାରା ଧୂଳି ସାଲୁବାଲୁ ହୋଇଗଲା । ରକ୍ତ, ଝାଳ, ଧୂଳି, ଅନ୍ଧାର, କ୍ରୋଧ, ଅପମାନ ମିଶି ଏକାକାର ହୋଇଗଲେ । ଲୋଟିପଡିଲେ ବୈକୁଣ୍ଠନାଥ ଅସହାୟ କାରୁଣ୍ୟରେ ।

କିଛି ଦୂରରୁ ସେମାନେ ଚାହିଁଥା'ନ୍ତି । ଆକାଶ ଛିଣ୍ଡିପଡିଲା ନାହିଁ, ଭୂଇଁ ଧସିଗଲା ନାହିଁ ପାତାଳକୁ ।

ସନ୍ତ୍ରୀଙ୍କ ଆଖିକୁ ରକ୍ତ ଚଢ଼ିଆସିଥାଏ । ମୁଣ୍ଡକୁ ଚଢ଼ିଆସିଥାଏ ପିତ୍ତ । ଗୋଟାଏ ସନ୍ତ୍ରୀ ସେଇ ଠେଙ୍ଗା ଉଞ୍ଚେଇ ଧରିଥାଏ, ମୁଣ୍ଡକୁ ପିଟି ଛତୁ କରିଦେବ । ଆର ଜଣକ ଚୁଟି ଧରି ଛୁରୀ ଉଞ୍ଚେଇଥାଏ ଶଙ୍ଖି କାଟି ଫୋପାଡିଦେବ କୁକୁଡାଟାକୁ ।

ସମବେଦନାର କାଠ କୁଣ୍ଢେଇଗୁଡିକ ଠିଆ ରହିଥା'ନ୍ତି । ଅପେକ୍ଷା କରିଥା'ନ୍ତି କଥା ସରିଗଲେ ଦେଖିଦେଇ ଫେରିଯିବେ । ଏତିକିବେଳେ ଘାଉଁକିନା ଆଲୁଅଟାଏ ବୁଲିପଡିଲା ରାସ୍ତା ଉପରକୁ । ଆଖି ପିଛୁଳାକେ କଳା ଘୁମର ବିରାଟ ଗାଡି ସର୍‌ସର୍ ସାପ ପରି ମୁରୁମ୍ ରାସ୍ତାର ମାଡିଆସି ଠିଆହୋଇଗଲା । ସନ୍ତ୍ରୀମାନେ ଘାବ୍‌ଡେଇଲା ପରି ସେଇଠି ସେମିତି ବୁଲିପଡି ସଲାମ

ବଜେଇଲେ । ପର୍ବତ ପରି ମଣିଷଟାଏ ଗାଡି ଭିତରୁ ବାହାରିଆସି ଚାହିଁଲା ଚାରିଆଡକୁ । ସନ୍ତ୍ରୀ ସରଳ ହୋଇଗଲେ ତାକୁ ଦେଖି ।

ଜଣେ କହିଲା, "ଆରେ ବଡେମିଆଁ ! ଆମେ ସମଝିଥିଲୁ ଖୋଦ୍ ମାଲିକ ଆସିଗଲେ ବୋଲି !"

"ଆବ୍‌ବେ ଚୁପ୍‌କର ! ଆମେ କ'ଣ ତୁମ ମାଲିକ ନୁହେଁ ? ହିଁ-ହିଁ-ହିଁ – ମାଲିକକୁ ଯାହା ମିଳିଛି ଆଜି ଫୁରସତ୍ କାହିଁ ବେ ? ...ଆଚ୍ଛା, ଏଇଟା କିଏ ?"

"କେଜାଣି ଶାଲା ବେକୁବ୍ ପାଗଳ ହେଇଥିବ । ଭିତରକୁ ଜବରଦସ୍ତ ଦାଖଲ ହେଇଯାଉଥିଲା । ...ହେ ହେ... ଶାଲାର ଆଉ ହୋସ୍ ନାହିଁ ।"

ପର୍ବତିଆ ଲୋକ ବୁଲିପଡି ପଛକୁ ଚାହିଁଲା । "ସେଗୁଡାକ କିଏ ସେଠି ଠିଆହେଇଚନ୍ତି ? ହୋ... କିଏ ତେମେ ହେମ୍‌ତି ଉଣ୍ଡୁଚ, ଚାଲିଆସ ଏଣିକି ।" ଦୋଦୋପାଞ୍ଚ ହେଇ ସେମାନେ ପାଖେଇଆସିଲେ – ଧର୍ମାବତାରଙ୍କ ପାଖକୁ ବୋଧହୁଏ ଆସିଗଲେ – ଏଣିକି ଗୁହାରି କରିବେ ।

"କିଏ ତେମେ ସବୁ ? ସେଇଟା କିଏ ?" – ଗର୍ଜିଲା ପର୍ବତ ।

ଛେପ ଢୋକି ଢୋକି, ଜଣକ ପରେ ଜଣେ, ବେଳେବେଳେ ସମସ୍ତେ ମିଶି, ପୋଥିଯାକ ପୁରାଣ ବୋଲିଗଲେ ଦୁଇମିନିଟ୍‌ରେ ।

"ଓ, ତା'ହେଲେ ଏ ବୈକୁଣ୍ଠନାଥଙ୍କ ସୁନ୍ଦରୀ ସ୍ତ୍ରୀକୁ କିଏ ଉଠେଇନେବାରୁ ତାକୁ ଖୋଜିବାକୁ ସବୁ ଏଠିକି ଚାଲିଆସିବେ ? ଏଇଟା କ'ଣ ସୁନ୍ଦରୀ ମାଇପଙ୍କର ଗୋଦାମଘର ? ହେଁଃ ? ଆଚ୍ଛା ଠିକ୍ ଅଛି – ତୁମେ ଯାଅ, ଆମେ ଏ ଟୋକାର ବନ୍ଦୋବସ୍ତ କରିଦେବା ।"

ବୁଲିପଡି କହିଲା, "ଆରେ, ଇସେ ଉଠାକେ ଗାଡିମେ ଡାଲ୍‌ଦୋ ।"

"ଜୀ, ହାଁ ।"

ହୁସ୍ କରି ଗାଡି ଚାଲିଗଲା ଦୁର୍ଗ ଭିତରକୁ । ରାତି ଘୋଡେଇ ହୋଇଗଲା ମଲାମଣିଷ ମୁହଁରେ କଳାପର୍ଦାଟିଏ ପରି ।

ଯୁଦ୍ଧ କରି ନ ପାରି ଏକାକୀ ସେ ଖର୍ବ ଖୁନ୍ତିଟି ଧୂଳିରେ ପଡିରହିଲା । ହାରିଯାଇ ଶୋଇରହିଲା ସେ ସରଳ ବାଡିଖଣ୍ଡିକ ।

ପକ୍ଷୀ-ନୀଡ ପରି ସେ ବସାଟିରେ ରାତିର ପବନ ଅବାଧ ପଶି-ଯାଉଥିଲା ସବୁ ବଖରା ଭିତରେ । ସେ ଯେଉଁଟା ନିଃଶବ୍ଦରେ ଉଡିବୁଲୁଥିଲା ସେଇଟା ବୋଧହୁଏ ପେଚାଟାଏ !



# ଏତେ ପାଖରେ ସମୁଦ୍ର

ଏତେ ଗୁଡାଏ ନିର୍ଜନ ଖରାବେଳକୁ ନେଇ ସେ କ'ଣ କରିବ, କିଛି ସ୍ଥିର କରିପାରିଲା ନାହିଁ । କୁଢ କୁଢ ରୂପା ଟଙ୍କା ପରି ଏତେ ସବୁ ଖରାବେଳ ସେ କାହାକୁ କେମିତି ବାଣ୍ଟି ପାରିବ ?

ଅବିନାଶ ଚକ୍ରବର୍ତ୍ତୀ ଗତ ତିରିଶ ବର୍ଷ ଧରି ଜାଣି ନଥିଲା ଯେ ଦି'ପହରଟା ଏତେ ଓସାର ଏବଂ ଏତେ ଉଦାର ଗୋଟାଏ ଜିନିଷ । ଏତେ ଉଜ୍ଜଳ ଆଉ ଏମିତି ନିଛାଟିଆ !

ସେ ରାସ୍ତାରେ ଠିଆ ହୋଇ ଅନେଇ ରହିଥିଲା । ସେତେବେଳେ ବି ଆଶା କରୁଥିଲା ଯେ ତା' ଚଷମା ଫ୍ରେମ୍ ଉପରେ ଲୋକଙ୍କ ଦୃଷ୍ଟି ପଡିବା ଉଚିତ୍ । କାରଣ ସେଭଳି ବିଲାତି ଜିନିଷ ଆଉ ଦେଖିବାକୁ ମିଳୁନାହିଁ ତ ! କିନ୍ତୁ ପିଚୁ ରାସ୍ତାର ସେ ମୁଣ୍ଡ ପର୍ଯ୍ୟନ୍ତ ତା'ଛଡା ଆଉ ଦ୍ୱିତୀୟ ବ୍ୟକ୍ତି କେହି ଦିଶୁ ନଥିଲେ । ଖୁବ୍ ଦୂରରେ କାଉଟିଏ ବୋଧହୁଏ କ'ଣ ଖୁମ୍ପୁଥିଲା । ଭାରି ଭୋକିଲା ହୋଇଥିବ ନିଶ୍ଚୟ !

ଅବିନାଶ ଖୁବ୍ ଜୋର୍ କରି ପଛକୁ ଫେରି ଚାହିଁଦେବାର ଇଚ୍ଛାଟିକୁ ରୋଧି ନେଉଥିଲା । ସେ ଅନୁଭବ କରୁଥିଲା ଯେ ତିନିଶହ ହଳ ଦୃଷ୍ଟି ମଡେଇ ହୋଇ ଯାଉଥିଲା । ତା' ପିଠି ଉପରେ । ...ନାଃ, ଛାଡି ଆସିଲା ପରେ ଆଉ କାହିଁକି ? ତଥାପି ଏତେ ଲୋକଙ୍କୁ ବୁଲିପଡି ଥରେ ହାତ ହଲେଇ ଚାହିଁଦେଲେ କ୍ଷତି କ'ଣ ? ସେମାନେ ବିଚରା କେତେ ଖୁସି ହୋଇଯାନ୍ତେ ! ଦିଆଯାଉ ତାଙ୍କୁ ଗୋଟାଏ ସୁଯୋଗ ! ଦ୍ୱି'ପହର ଖରାକୁ ଥରେହେଲେ ସେମାନେ ସେ ତିନିମହଲାର କାକର ପିଣ୍ଡାରୁ ଚାହାଁନ୍ତୁ, ଖରାରେ ଝଲମଲ ଝଟକୁଥିବା ଅବିନାଶ ଚକ୍ରବର୍ତ୍ତୀକୁ ଦେଖନ୍ତୁ !!

ସେ ପ୍ରକୃତରେ ଥରେ ଫେରି ଚାହିଁଦେଲା ।

ଏକ ମହଲା । ଦୁଇ ମହଲା ! ତିନି ମହଲା !!... ନୀରବ, ନିର୍ଜନ, ନିକାଞ୍ଚନ !!

ବହୁକାଳୁ ପରିତ୍ୟକ୍ତ ଖୁବ୍ ଗୋଟାଏ ଉଚ୍ଚ କୋଠା ! ଶୂନ୍‌ଶାନ୍ ! ଅବିନାଶକୁ ଜଣାଗଲା ଯେ ତା' ମେରୁଦଣ୍ଡ ସାମ୍‌ନା ଆଡକୁ ଖୁବ୍ ବାଙ୍କି ଯାଇଛି ! ସେ ସହଜ ଢଙ୍ଗରେ ଆଉ ଆକାଶକୁ ଚାହିଁ ପାରୁନାହିଁ !

ସେ ସେମିତି ନଇଁଲା ପରି ମୁହଁ ଫେରାଇନେଲା । ଆଗରେ ଆଖି ପାଇବା ପର୍ଯ୍ୟନ୍ତ ଲମ୍ବା ପିଚୁ ରାସ୍ତା । ଚାରିଆଡେ ଅଗ୍ନାଗ୍ନି ନିଝୁମ୍ ଦ୍ୱିପ୍ରହର ।

ସେ ତ ଫେରି ପାରିବ ନାହିଁ । ଥଣ୍ଡା ବଖରାର କାଠଚୌକି ଉପରେ ସୁଦାମ ସାହୁ । କାଠ ଟେବୁଲ୍ ଉପରେ ନଥିଖାତାର ସ୍ତୁପ । ସେପାଖେ ସୁଦର୍ଶନ ହୋତା... ବିଭୂତି ସାସମଲ... ମାଣିକ

ଅଗ୍ରୱାଲ୍ । ...ସୁଦାମ ସାହୁର ଢଳଢଳ ଚଷମା, ଚିକ୍‌କଣ ଚନ୍ଦା ମୁଣ୍ଡ !... ସୁଦର୍ଶନ ହୋତା ସବୁଦିନ ଘୁଗୁନି ଖାଏ; ଦାନ୍ତ ଘେଞ୍ଚେଇ କଥା କହେ; କାମରେ ଫେଙ୍ଗା !... ବିଭୂତି ନେତାଗିରି କରେ । ମନ ହେଲେ ଆସି ବସିଯାଏ, ନହେଲେ ନାହିଁ । ...ଆଉ ମାଣିକ ଅଗ୍ରୱାଲ୍ – ପକ୍‌କା ମାଗୁଆଡି ! ଅବିନାଶକୁ ଥରେ ମାସର କୋଡିଏ ତାରିଖରେ ଷାଠିଏ ଟଙ୍କା ଋଣ ଦେଇ ଦଶ ଦିନ ପାଇଁ ନବେ ପଇସା କଳନ୍ତର ରଖିଥିଲା । ...ଧୁତ୍ ! ଏଗୁଡାଙ୍କ ପାଇଁ କ'ଣ ବା ତା'ର ମୋହ ଥାଇପାରେ ? ଗଛରେ ପତ୍ର ପାଚିଲା ପରି ତିରିଶ ବର୍ଷ ଭିତରେ ସୁଦାମ ସାହୁର ମୁହଁ ଲୋତରା ହେବାର ସେ ଦେଖିଛି । ନଈ ଅତଡା ଖାଇଲା ପରି ତା' କପାଳ ଉପରୁ ବାଳ ଘୁଞ୍ଚ ଘୁଞ୍ଚ ଯାଇଛି । ଏବର ଏ ଚନ୍ଦା, ଟାଙ୍ଗରା ଭୂଇଁର କ୍ରମବିକାଶ ମଧ୍ୟ ସେ ଦେଖିଛି । ...ଛାଡ ! ...ସେ ତ ସବୁ ଗଲା । ଆଉ ସେ ବିଷୟରେ ଭାବି ଲାଭ କ'ଣ ? ସେଠିକି ତ ସେ ଆଉ ଫେରି ପାରିବ ନାହିଁ !

ଏତେ ଉଜଳ ଆଲୁଅରେ ରାସ୍ତା ଉପରେ ଠିଆ ହେବାର ବି ଅର୍ଥ କିଛି ନାହିଁ । କିନ୍ତୁ ସେଭଳି ଏକ ବିଶିଷ୍ଟ ଦିନରେ ଏମିତି ଖରାବେଳେ ତା' ବସାକୁ ଫେରିଯିବା କଥାଟା ତାକୁ ଜମା ସ୍ୱାଭାବିକ ମନେ ହେଉ ନଥାଏ । ପ୍ରଥମେ, ସେ କ'ଣ ତା' ବସା ଖଣ୍ଡକୁ ଏତେ ଆଲୁଅରେ ଚିହ୍ନି ପାରିବ ? ମୁହଁ ସଞ୍ଜବେଳେ ସେ ସାହିର ପାଣିକଳ ଛକରୁ ହିଁ ତାକୁ ଦେଖି ଆସିଛି । ଏବେ ତ ଏତେ ତୀବ୍ର ଖରାବେଳ । ଗଛଲତା, ଜୀବଜନ୍ତୁ ସମସ୍ତଙ୍କର ନିର୍ଦ୍ଦିଷ୍ଟ ରୂପ; ନିର୍ଦ୍ଦିଷ୍ଟ ଛାଇ । ଏତେବେଳେ ତା' ବସା କେମିତି ଦିଶୁଥିବ କେଜାଣି । ଛୁଟିଦିନମାନଙ୍କରେ ସେ ତା' ଭିତରେ ରହି ଆସିଛି । ଏମିତ ଦିନବେଳେ କେବେ ବାହାରୁ ଦେଖି ନାହିଁ ।

ତାକୁ କେମିତି ଗୋଟାଏ ଲାଜମାଡିଲା । ଦି'ପହରଟାରେ ସେ ଯାଇ ଦୁଆରେ ଠକ୍‌ଠକ୍ କରିବ ଏବଂ କବାଟ ଫିଟିଗଲେ ଦାନ୍ତ ନେଫେଡେଇ କୈଫିୟତ୍‌ଟିଏ ଦେବାକୁ ପଡିବ, "ବୁଝିଲ, ଆଜିଠଉଁ ସରିଗଲା । ଆଉ ଘଣ୍ଟା ଦେଖି ଦରଭୋକିଲା ଅବସ୍ଥାରେ ଧାଇଁବାକୁ ପଡିବ ନାହିଁ । ଇତି ! ମାନେ ଇତି !!... ଯାଃ, ଗୋଟାଏ ପରିଚ୍ଛେଦର ଏଇଠି ଗାର ଟଣା ହୋଇଗଲା ।"

କୌଣସି ଉତ୍ତର ନ ପାଇ ସେ ହାତରୁ ଘଣ୍ଟା ଫିଟେଇବ । ନିଜେ ଯାଇ ପାଣି ଗିଲାସେ ଆଣି ମୁହଁରୁ ଧାସ ଲିଭେଇବ । ତା'ପରେ ସେ ଅନେଇବ ଋରିଆଡେ, ଅନେକ ଆଶା ନେଇ ।

ନାଃ, ସେ ଫେରି ପାରିବ ନାହିଁ । ସନ୍ଧ୍ୟା କଥା ଅଲଗା । ତା'ର ଅନେକ ବନ୍ଧୁ । ଦୁଇ ଋରିଜଣ ନିଶ୍ଚୟ ଆସିଯିବେ । ସେ ସେମାନଙ୍କ ସହିତ ଅନେକ ଗପ କଲାପରେ ଶେଷକୁ ଅତି ସାଧାରଣ ଗୁରୁତ୍ୱହୀନ ଗଳାରେ କହିବ, "ଜାଣିଲେ ଯତୀନ୍ ବାବୁ ! ଆଜି ମୁଁ ସେ ବେକୁବ୍ କାମରୁ ଅବ୍ୟାହତି ନେଇଗଲି । ଏଣିକି ବଞ୍ଚିଥିବା ଯାକେ ଆପଣମାନଙ୍କ ସେବାରେ ଦିନରେ ଚବିଶ ଘଣ୍ଟା ରହିଲି । ମୋତେ ଏଣିକି ଆପଣ ନିଜ ଇଚ୍ଛାମତେ ବିନିଯୋଗ କରି ପାରନ୍ତି ।" ଗୁଡାଏ ହୋ ହୋ ହସ ହେବ । ସତେବା ଏଭଳି କଥା ଆଗରୁ ଶହେଥର କୁହା ସରିଛି ଏବଂ ଶହେବାର ତାକୁ କୌଣସି ଗୁରୁତ୍ୱ ନ ନେଇ ଆଡେଇ ଦିଆହୋଇଛି ।

ରାସ୍ତା ଉପରେ ଠିଆହୋଇ ଅବିନାଶ ଭାବିଲା ସେ ଯିବ କୁଆଡେ ? ସେତେବେଳେ

କୌଣସି ଚା କଫି ଦୋକାନ ମଧ୍ୟ ଖୋଲା ନ ଥିଲା । ରାସ୍ତା ଉପରୁ ସରକାର ସବୁ କାଠ କେବିନ୍, ପାନ ଦୋକାନ ଉଠେଇ ଦେଇଥିଲେ । ଏମିତି କିଛିବାଟ ଗଲେ ଡାହାଣ ପଟେ ଗଳି ଭିତରେ ପୁରୁଣା ଦୋତାଲା ଉପରେ ବିପ୍ରଚରଣ ରହେ । ଶଳା, ସଂସାର ଯାକର ଅସନା ଆଇଁଷିଣା କଥାର ଖଣି! ହାତରୁ ସହଜରେ ପଇସା ଛାଡେନାହିଁ । କୋମୁଟି ପରି ଦିଶେ । ସେମିତ କଥା କହେ । ଘର ଗଞ୍ଜାମ । ଲୋକଟା ଭଲ !

ଅବିନାଶକୁ ଦେଖୁ ଦେଖୁ ସେ କୁରୁଳି ଉଠିବ, "କ୍ୟେ, ବେଙ୍ଗ ବାବୁ! ଆଇଲ କ୍ୟେ! ଇସ୍, ତେମ୍ନେ ଏକା କପାଳିଆ ହେ! ପଇସା, ଯ୍ୟାପ ଜମ୍ନେଇଚ, ଯେ କାଇଁରେ କ'ଣ! – ଜଞ୍ଜାଳ କଇଲେ ଶୂନ୍ୟ! – ଆମେ, ଦେଖୁନ କେମିତି ଘାଣ୍ଟି ହଉଚୁ । ହଉ, ଏବେ କ୍ୟଣ ପେଇଁ ଆଇଲ ହେ ? ଏତେ ଭାବନା ଫାବନା କିସ୍ସ କରୁଚ ମ ? – କହି ପକ ହେ !"

ଅବିନାଶ ସେ ନିର୍ଜନ ରାସ୍ତାଟା ଉପରେ ମନକୁ ହସି ପକେଇଲା ଏବଂ ସ୍ଥିର କଲା ଯେ ବିପ୍ରଚରଣ ଘରେ ଯାଇ ପହଞ୍ଚିବ ଏବଂ ଏ ସମଗ୍ର ଖରାବେଳଟା ତାକୁ ହିଁ ଦେଇ ଦେବ । ସେ ତା' ସହଜ ସରଳ ମୋଟାମୋଟି ସ୍ଥୁଳ ଢଙ୍ଗରେ ଏ ସମସ୍ତ ବିଷୟଟିକୁ ହୁଏତ ବୁଝିଯିବ ଠିକ୍ ।

ଅବିନାଶ ଖରା ଉପରେ ପାଦ ପକେଇ ଆଗେଇ ଗଲା । ବାଁ ପାଖ ଦେଇ ବାଲି ଟ୍ରକ୍‌ଟାଏ ପାରି ହୋଇଗଲା । ଶୁଖିଲା ବାଲି ତା' ମୁହଁରେ, ବେକରେ ଛୁଞ୍ଚି ପରି ଫୋଡି ହୋଇଗଲା । ସେ ରିକ୍ସାରେ ବସି ଯାଇ ପାରିଥାନ୍ତା । କିନ୍ତୁ ସେତେବେଳେ କେହି ଗୋଟିଏ ହେଲେ ଦିଶୁ ନ ଥା'ନ୍ତି କୋଉଠି! – ହଉ, କିଛି ଯାଏ ଆସେ ନାହିଁ! ଅବିନାଶ ଚାଲିବାକୁ ଭଲ ପାଏ । ଚାଲିଲେ ତାକୁ ବଞ୍ଚିଲା ପରି ଲାଗେ । ଜୀବନର ସ୍ଥିର ବେରଙ୍ଗ ଚିତ୍ର ଘୁଞ୍ଚିଲା ପରି ଲାଗେ ।

ସେ ବିପ୍ରଚରଣ ଦୁଆରେ ଯାଇ ଖଟ୍ ଖଟ୍ କଲା ।

ଝିଅଟିଏ କବାଟ ଫିଟେଇ ନିଦ ମଳମଳ ଆଖିରେ ତାକୁ ଚାହିଁଲା । ବିପ୍ରଚରଣର ପାଞ୍ଚ କି ଛ'ନମ୍ବର ଝିଅ ବୋଧେ!

"ବାପା ଅଫିସ୍ ଯାଇଛନ୍ତି । ...ସନ୍ଧ୍ୟାକୁ ଫେରିବେ ।"

ଆରେ, ସତେ ତ ! ବିପ୍ରଚରଣ ସେତେବେଳେ ଘରେ ଥିବ ବୋଲି ସେ କେମିତି ବେକୁବ୍ ଭଳି ଧରି ନେଇଥିଲା । ଧୂତ୍, ଇଡିଅଟ୍ ଆଉ କାହାକୁ କହନ୍ତି !

ସେ ରାସ୍ତାକୁ ଓହ୍ଲେଇ ଆସିଲା । ତା'ହେଲେ ଅଗତ୍ୟା ଏଇଠୁ ବି ତାକୁ ଯିବାକୁ ପଡିବ ।

କରଞ୍ଜଗଛ ଛାଇରୁ କରଞ୍ଜଗଛ ଛାଇକୁ ସେ ଆଗେଇ ଯାଉଥାଏ ଗୋଟାଏ ଅଭ୍ୟାସରେ । ଦେଖିଲା ରାସ୍ତା ସେମୁଣ୍ଡ ଝିଲିମିଲି ଦିଗ୍‌ବଳୟରୁ ଜଣେ କିଏ ସାଇକେଲରେ ଗଡି ଆସୁଛି । ସେ ପାଖେଇ ଆସିଲା, କିନ୍ତୁ ଅବିନାଶର ଗୋଟାଏ ଗଛ ଆଗରୁ ଓହ୍ଲେଇ ଗଲା । ...ଓ, ଅବିନାଶକୁ ଚିହ୍ନିପାରି ଅପେକ୍ଷା କଲା ନ କ'ଣ ! ନ କରି ଯିବ କୁଆଡେ ? ଅବିନାଶ ଚକ୍ରବର୍ତ୍ତୀ ଗତ ତିରିଶ ବର୍ଷ ଧରି ସେ ତିନି ମହଲା କୋଠାରେ କାମ କରିଛି କ'ଣ ବୃଥାରେ ? ତେବେ, ଏତେ ଦୂରରେ କାହିଁକି ଓହ୍ଲେଇ ଗଲା । ସେ ସାମ୍ନାକୁ ଚାଲି ଆସି ବ୍ରେକ୍ କସିଦେଇ ଓହ୍ଲେଇ ପାରିଥାନ୍ତା । କହି

ପାରିଥାନ୍ତା, 'ଆରେ ଅବିନାଶ ବାବୁ ଯେ ! ଆପଣ ଏତେବେଳେ କୁଆଡେ ?'... ଦୋସ୍ତ ହୋଇଥିଲେ ଡାହାଣ ହାତରେ ହେଣ୍ଡଲ୍ ସମ୍ଭାଳି ବାଁ ହାତରେ ପିଠି ଥାପୁଡେଇ ଦେଇଥାନ୍ତା !

ସାଇକଲ ଚଢ଼ାଳିଟି ରାସ୍ତା କଡକୁ ଚାଲିଗଲା ପରିସ୍ରା କରିବାକୁ ।

ଅବିନାଶ ସଙ୍କୋଚରେ ଆଗେଇ ପାରିଲା ନାହିଁ ।

ସାଇକେଲ୍ ଚଢ଼ାଳି ସଂପୂର୍ଣ୍ଣ ନିର୍ବିକାର ଢଙ୍ଗରେ ତା' ପାଖ ଦେଇ ଚାଲିଗଲା । ତା' ମୁହଁକୁ ସୁଦ୍ଧା ଚାହିଁଲା ନାହିଁ । ଦି'ପ୍ରହରଟା ଅସମ୍ଭବ ନିର୍ଜନ ବୋଧହେଲା ତା'ପରେ ।

ଠିକ୍ ଅଛି । ଅବିନାଶର ଅନ୍ୟ ଗତି ବା କାହିଁ ।

ସେ ସେମିତି ଆଗେଇ ଗଲା । ଶେଷରେ ଅଗତ୍ୟା ବସାରେ ହିଁ ପହଞ୍ଚିବାକୁ ପଡିବ । ବାଟରେ ବଜାର । କିନ୍ତୁ ସେଭଳି ଅସମୟଟାରେ ବଜାରରେ ପହଞ୍ଚିଲେ କ'ଣ ଲାଭ ? ଦୋକାନ ପତ୍ର କ'ଣ ଖୋଲାଥିବ ? ତେବେ ଅବିନାଶର ଆଉ ଚାରା କ'ଣ ? ଯେତେ ଧୀରେ ଚାଲିଲେ ସୁଦ୍ଧା ଗଛ ପରେ ଗଛ ପାରି ହୋଇ ଯାଉଥାଏ । ଦ୍ୱିପ୍ରହର ସେମିତି ସ୍ଥିର ନିସ୍ତରଙ୍ଗ ଜଣା ଯାଉଥାଏ । ଶେଷକୁ ବଜାର ଆସି ତା' ସାମ୍ନାରେ ଛିଡା ହୋଇଗଲା । ଅବିନାଶ ଯେତେ ନ ଚାହିଁଲେ କ'ଣ ହେବ ? ସେ ହୁଏତ ଯେଉଁଠି ଥିଲା ସେଇଠି ଠିଆ ହୋଇଥିଲା । ବଜାର ହିଁ ଘୁଞ୍ଚି ଆସିଲା ତା' ପାଖକୁ ।

ସବୁ ଦୋକାନ ବନ୍ଦ ଥିଲା । ବଲା ଗୋରୁଟିଏ ଚେଷ୍ଟା କରୁଥିଲା ଜୋତା ତବାକୁ ବାଗରେ ପାଇଲେ ଚୋବେଇ ଦିଅନ୍ତା କେମିତି ! ଗୋରୁ ଆଖିରୁ ଲୁହ ଗଡି ଆସିଥିଲା କଜଳଗାର ପରି । ଚାରିଗୋଡିଆ ଜନ୍ତୁଟିଏ ବିଚରା ।

ଗୋଟାଏ ବନ୍ଦ ଦୋକାନ ସାମ୍ନାରେ ପଡିଥିବା କାଠ ବେଞ୍ଚ ଉପରେ ଅବିନାଶ ଯାଇ ଚୁପ୍‌ଚାପ୍ ବସିଗଲା । ସେ କାବା ହୋଇ ଅନେଇଥାଏ ସେ ବଜାରକୁ । ଏମିତି ଦେଖି କିଏ କହିପାରିବ ଯେ ଏଇଠି ବେଳ ପଡିଲେ ବାଟ ମିଳେ ନାହିଁ ଚାଲିବାକୁ ।

ହେଇ, ସେ କୋଣରେ ଗୋଟେ ପାକଲା ବୁଢ଼ା ବସେ । ଖାଲି ଅଦା ବିକେ । ସେ ବୋଧେ ତା' ଜୀବନସାରା ଅଦା ବିକିଛି । ତା' ପୁଅ ମାଇପ ସବୁ କ'ଣ କରନ୍ତି ? କେମିତି ଚଳନ୍ତି ?

ଆଉ ଏ ଧାଡିକଯାକ ଲୁଗା ଦୋକାନ । ଆର ପାଖେ ଆଳୁ ପିଆଜ ।

...ଓଃ, କେତେ ଗହଳି ଏ ଜାଗାଟାରେ ! ଅସଂଖ୍ୟ ଲୋକ ହାଉଯାଉ ! ଅବିନାଶର ନିଶ୍ୱାସ ଭାରି ଲାଗେ । ସେ ଆଖି ମିଟକା ମାରିଦେଲେ ସାରା ବଜାର ଚିତ୍ରଟିଏ ପରି ନିର୍ଜନ ହୋଇଯାଏ । ପୁଣି ମୁହୂର୍ତ୍ତକରେ କାହୁଁ କାହୁଁ ଜମି ଯାଆନ୍ତି ବେପାରୀ, ଗରାକ, ବାରବୁଲା ଭିକାରୀ ।

ଦ୍ୱିପ୍ରହର ଘୁଞ୍ଚିଯାଏ ଖୁବ୍ ଆସ୍ତେ ।

ଅବିନାଶ ଚକ୍ରବର୍ତ୍ତୀ କାଠ ବେଞ୍ଚ ଉପରେ ନିଶ୍ଚଳ ବସି ଚାହିଁଥାଏ । ସାମ୍ନାକୁ ଏବଂ ଶୂନ୍ୟକୁ !!

କିଏ ଜଣେ ବୋଧେ ଆସିଲା ।

ସେ ଆଖି ମିଟକା ମାରି ଚାହିଁଲା ବେଳକୁ ବୁଢ଼ାଟିଏ । ରଙ୍ଗ ଗାମୁଛାର ଠେକା । ପାଚିଲା

କସରା ଦାଢି । ହାତରେ ଗୋଛାଏ କନାମୁଣା । ଛିଟ, ଡୋରିଆ, ଧଳା, ସାନ, ବଡ ଗୁଡିଏ ମୁଣା । ତା' ଭିତରୁ କେତେ ମଗଜିମରା । ଆଉଗୁଡିକରେ ନାଲିକନାର କଲି ।

ସେ ଅବିନାଶ ପାଖକୁ ଚାଲି ଆସିଲା । ମୁହଁକୁ ଚାହିଁ ଚିହ୍ନିଲା ଭଳି ହସିଲା । ଡାଳିମ୍ବ ମଞ୍ଜି ପରି ସୁସଜ୍ଜ ପାନଖିଆ ଦାନ୍ତ !

ଅବିନାଶର ଆଖି ସେଇ ମୁଣା ଗୁଡିକ ଉପରେ ।

"କ'ଣ ଏଥିରୁ ଖଣ୍ଡେ ନେବେ ? ଦେଖୁ ନାହାନ୍ତି ! ମୁଁ ଯାକୁ ସବୁ ହାତରେ ସିଲେଇ କରିଛି ।" କହୁ କହୁ ସେ ବେଞ୍ଚର ଆର ମୁଣ୍ଡରେ ବସିଗଲା । ମଝିରେ ଥୋଇଦେଲା ସବୁଯାକ ମୁଣା ।

ଅବିନାଶ ଚକ୍ରବର୍ତ୍ତୀ ମୁଣାଗୁଡିକୁ ଖେଳାଇ ଗୋଟିଏ ଟେକି ଦେଖୁଥାଏ । ବୁଢା ବିକାଳିଟି ବେପାର ଆଶାରେ କହିଲା, "ଆଜିକାଲି ଆଜ୍ଞା ଆମ ବେଉଷା ବୁଡିଗଲା । ସମସ୍ତେ ତ ସେଇ ଅଖାମୁଣା, ପ୍ଲାଷ୍ଟିକ୍ ମୁଣଆ ଧରି ବଜାର କଲେ । ଯାକୁ ଆଉ ପଚାରେ କିଏ ?" ସେ ତା' କାଖମୂଳରୁ ବଟୁଆ କାଢି ପାନରେ ଚୂନ ଲଗେଇଲା । କହିଲା, "ଆଜ୍ଞା ପାନ ଖାଇବେ ?"

ଅବିନାଶ ଚକ୍ରର୍ତ୍ତୀ ଖୁବ୍ ନରମି ଗଲା । ବୁଢାର ଆପଣାପଣରେ ଏତେ ସହଜ ସ୍ନେହ ଦେଖି ଖୁସି ହୋଇଗଲା । "ମୁଁ କତା ପାନ ଖାଏ ନାହିଁ ।"

"ହେଃ ହେଃ, କତା ନ ହେଲେ କି ସେ ପାନରେ ଲେଖା ? ଏ ଗୁଣ୍ଡି ଘର ତିଆରି । ଭାରି ତାପିନି, ଭାରି ବାସ୍ନା । ଖଣ୍ଡେ ପାଟିରେ ପଡିଥିଲେ ତା' ମହକରେ ଚାଲିଗଲା ଲୋକ ବୁଲି ଚାହିଁବେ । ହଉ, ଏଇ ନିଅନ୍ତୁ ସାଧା । ଏଗୁଡାକ ଖାଲି ଓଠ ରଙ୍ଗ କରିବା କଥା ! ହେଲେ ଆପଣଙ୍କର ଯଦି କତା ଖାଇବାର ଅଭ୍ୟାସ ନାହିଁ, ତେବେ ଯାର ଧାସ ବାଜିଗଲେ ମୁଣ୍ଡ ବୁଲେଇ ଦେବ ! ସେଥିପାଇଁ ଆଗ ଆପଣଙ୍କ ପାନ ମୋଡି ଦଉଚି, ନିଅନ୍ତୁ !"

ପାନଟି ପାଟିରେ ପକେଇ ଅବିନାଶ ବୁଢାକୁ ଚାହିଁଲା ।

"ଆଚ୍ଛା ମଉସା, ତୁମ ଘରେ ଆଉ କିଏ ସବୁ ଅଛନ୍ତି ?"

"କିଏ ନାହାନ୍ତି ପଚାରନ୍ତୁ ! ସେ ପରା ଘର । ଘର ଯିଏ, ସଂସାର ସିଏ । ବାପ, ମା, ପୁଅ, ଝିଅ, ବୋହୂ, ନାତି, ନାତୁଣୀ ଗୋଛାଏ ଅଛୁ ଏକାଠି । ଛନ୍ଦାଛନ୍ଦି, ଭିଡାଓଟରା, କଳିଗୋଳ ଚାଲିଛି । ହେଲେ ଘରର ଗୋଟାଏ ମୋହ, କେହି କାହାକୁ ଛାଡି ପାରିବେ ନାହିଁ ।"

"ତମର କେତୋଟି ପୁଅ ଝିଅ ?"

"ମୋର ପିଲାପିଲି ସାତ । ଯୋଡାକୁ ଯମ ଖାଇଗଲା । ବାକି ତିନି ପୁଅ, ଦୁଇ ଝିଅ । ସବୁ ବିଭାତୋଳା ହୋଇ ଯେ ଯାହା ଘରସଂସାର କଲେଣି ।"

"ଆଉ ତୁମ ସ୍ତ୍ରୀ ?"

"ହେ, ସେଇତ ମେରୁଦଣ୍ଡ । ସେଇ ଜାଣ ମୋର ସଂସାର । ସେଇ ମୋ' କାଳ ! ଏବେ ଟିକିଏ ବାତୋଇ ହୋଇଗଲା । ଚାଲବୁଲ କରିବାକୁ ଅକ୍ଷମ । ହେଲେ ପାଟି ଖଣ୍ଡକ ଆଗପରି

ବାଜେଣି ବଜା । ଖାଲି କଥାରେ ହାତରୁ ମାଉଁସ ଝିଙ୍କାରି ଦେବ ସେ ମାଇକିନା !"

ବୁଢା ଆହୁରି ଗପିଥାନ୍ତା । ଅବିନାଶ ଶୂନ୍ୟକୁ ଅନ୍ୟମନସ୍କ ଚାହିଁଥିବା ଦେଖି ତୁନି ପଡିଗଲା । ମୁଣା ଗୁଡିକୁ ସଜାଡିଲା । ବୋଧେ ଉଠିଯିବାକୁ ପାଞ୍ଚୁଥିଲା ।

ଅବିନାଶ ହଠାତ୍ ଚଞ୍ଚଳ ହୋଇ ଉଠିଲା । ବାଛିଥିବା ମୁଣାଟିକୁ ପୁଣି ଟେକି ଧରି ପଚାରିଲା, "ଏଇ ଖଣ୍ଡ କେତେ ପଡିବ ?"

"ଏ କନା ମିଟର୍ ଆଙ୍କା ଆଠଟଙ୍କା । ଏଥିରେ ଅଧମିଟର୍ କନା । କଲି, ହାତ କାମ ଅଲଗା । ଆପଣଙ୍କ ହାତରେ ଆଜି ବଇନି ହେବ । ପାଞ୍ଚଟଙ୍କା ଆଠଣା, ଛାଡନ୍ତୁ । ଟଙ୍କା ପାଞ୍ଚଟା ଦେଇ ଦିଅନ୍ତୁ !"

ଅବିନାଶ ବିନା ଦ୍ୱିଧାରେ ଟଙ୍କା ବଢେଇ ଦେଇ ଖୁସି । ବୁଢା ଟଙ୍କା ପାଇ ଖୁସି । ଖଣ୍ଡିଆ ଗୁଆଟିକୁ ଅଗ ଦାନ୍ତରେ ଚେବେଇ ସେ ଚାହିଁ ରହିଲା ତା'ର ଉଦାର ଗରାକ ମୁହଁକୁ । ସବୁ ଗରାକ ଆଜି ଏମିତି ଯୁଟନ୍ତେ କି ! ତା'ର ସେଇଠୁ ଆଉ ଉଠିବାର ନାଁ ନାହିଁ !

"ଏଇଟାରେ କେଯାଏଁ ଫୁଲକୋବି ଧରିବ କହିଲ !"

ବୁଢା ଭ୍ରୂଲତା ଟେକି ତାଜୁବ୍ ହେଲା ପରି କହିଲା, "ଏବେ ଯେଉଁ ନୂଆ କୋବି ପଡିଚି ଗେଣ୍ଡୁଫୁଲ ପରି ଆକାର, ଗୋଟି ପାଞ୍ଚଟଙ୍କା । ସେଥିରୁ ଜାଣ ଟଙ୍କା ଶହେର କୋବି ଏଥିରେ ଧରିଯିବ !"

ନିଜ ପରିହାସରେ ନିଜେ ଖୁସି ହେଇ ଖେଁ ଖେଁ ହସିଲା ବୁଢା !

ଅବିନାଶ ନିର୍ବିକାର ।

"ଶହେ ଟଙ୍କାର କୋବି ହେଲେ ସୁଦ୍ଧା ଆମ ପାଟରାଣୀଙ୍କ ମନକୁ କ'ଣ ପାଇବ କି ? କହିବେ, 'ଏତିକି କାହା ମୁହଁରେ ଦେବି ?' ହେଃ, ହେଃ, ହେଃ !"

ଅବିନାଶର ହସିବା ଢଙ୍ଗଟା ଟିକିଏ ଅଲଗା । ନିଦରେ ଶୋଇଥିବା ଲୋକ ହସିଲେ ଯେମିତି ଶୁଭେ, ପ୍ରାୟ ସେମିତି ।

"କାଇଁ, ବାବୁ ଆପଣ କ'ଣ ମୋର ଭଳି ବହୁକୁଟୁମ୍ବୀ କି ?"

"ଦେବହୁତିର ସବୁ କଥାରେ ବଡ ମୁହଁ । ସେ ପିଲାଦିନେ ଯାହା ଥିଲା ଏବେ ବି ସେଇଆ । ବଡ ଘର ଝିଅ ତ ! ଚେହେରାଟା ବି ସେମିତି । ଭସା ଭସା ଆଖି, ଲମ୍ବା ବେକ । ସେ ସଚ୍ଚା ମୋତିମାଳଟା ମୁଁ ତାକୁ ପ୍ରଥମ ଦିନ ପିନ୍ଧେଇ ଦେଇଥିଲି ।"

ଛାମୁଦାନ୍ତରେ ଗୁଆ ଦାନ୍ତେଇ ମୁଣାବିକାଳି ମୁଚ୍ ମୁଚ୍ ହସୁଥାଏ ଆଖି କୁଣରେ । କଥା ସୁଆଦକୁ କଡା ପାନ ସାଙ୍ଗରେ ବୋଧହୁଏ ଢୋକିଦେଲା । କାଶି ପକେଇଲା ।

ଅବିନାଶର ଆଖିପତା ମଟମଟ ପଡିଗଲା । ସେ ବାଉଳା ହେଲା ପରି କହିଲା – "ଆଚ୍ଛା, ଯା' ଦାମ୍ କେତେ ? ଓ, ପାଞ୍ଚଟଙ୍କା ମୁଁ ଦେଇ ଦେଲି ତ ! ଆଚ୍ଛା, ଏଥିରେ କୋବି ଶହେ ଟଙ୍କାର ଧରିଯିବ କହୁଛ ?"

ବୁଢା କାଶ ସମ୍ଭାଳି ସେମିତି ମୁଚୁକି ମାରି କହିଲା, "ତେମେ ବାବୁ ଭାରି କପାଳିଆ –

ଏବେ ସୁଦ୍ଧା ତମ ସୁଆଗ ଯାଇନାହିଁ । ବାଃ, ପ୍ରଭୁ ସୁଖରେ ରଖିଛନ୍ତି । କ'ଣ ଅଭାବ ଅଛି ? ଆଉ ପୁଅ ଝିଅ କ'ଣ ?"

"ଗୋଟିଏ ପୁଅ, ମନୋଜ । ମା' ଭଳି ଚେହେରା । ସେ ଏତେ ଲମ୍ବା ହେଲା କେମିତି କେଜାଣି ! ଏତିକି କହିଦେଲେ ତା' ମା' ଚିଡିଯାଏ । ସାଏବ ଚେହେରା ନେଇ ବିଲାତ ଗଲେ ଯାହା ହୁଏ । ଆରେ, ଏଇଠି ତତେ ତିନିହଜାର ଟଙ୍କାରେ କାମ ମିଳୁଛି, ତୁ କାହିଁକି ଏତେ ବାଟ ଯିବୁ ? ନ ହେଲା ଯଦି ଯିବୁ ସେ ସୁନିଲ ମିଶ୍ର ଝିଅଟାକୁ ବାହା ହେଇ ନେଇଯା ! ସୁନିଲ ମିଶ୍ର ମୋ' ହାକିମ ହେଲେ ତୋର କ'ଣ ଗଲା ? ତୁ ତ ତାଠୁଁ ଆଉରି ଉଠିଆ କାମ କରୁଚୁ ! ପୁଅ, ମା' ମିଶି ମୋ' ବିରୁଦ୍ଧରେ ଷଡଯନ୍ତ୍ର କଲେ । ସେମିତି ସେମାନେ ମୋ' ପାଇଁ ଜାମା କିଣନ୍ତି, ଯୋତା କିଣନ୍ତି, ମାଉଁସ କାଲିଆ ରାନ୍ଧି ରଖିଥା'ନ୍ତି । ମୋର ଭିତର ବାହାର ଟିକିନିଖି ସେମାନେ ଜାଣି ଯାଇଛନ୍ତି ତ ! ସେ ଟୋକା ସାଇବାଣୀ ବିଭା ହେବ ବୋଲି କହିଥିଲେ ମୁଁ କ'ଣ ମନା କରିଥା'ନ୍ତି ? ହେଲା, ଏବେ ତା'ର ନାଲି ମୁଣ୍ଡିଆ ଗୋଟାଏ ପୁଅ ହୋଇଛି ।"

ସୁଶୀଲ ଚକ୍ରବର୍ତ୍ତୀ ଜାଣ ତା' ବାପ ଭଳି । ଢମା ପସନ୍ଦ କରି ପାରୁନି । କିରେ, ତୋ' ନୂଆବୋଉ ସାଇବାଣୀ ହେଲେ ଅସୁବିଧା କ'ଣ ? ତା' ସାଙ୍ଗେ ଇଂରାଜୀରେ କଥା କହି ନ ପାରି ଖାଲି ଚିଡୁଛି, ମୁଁ ଆଗକାଳର ଗ୍ରାଜୁଏଟ୍ । ମୋର ଇଂରାଜୀ ପକ୍କା ! 'ନାନସି' ବି ତାଜୁବ୍ । ହୁଁ, ବୁଟନ୍ ସାହବ ପାଖରେ ମାଡ୍ରାସ୍‌ରେ ପଢିଛିଟି ! ଖେଳଘର ଲାଗିଛି ନା କ'ଣ ! ଅବିନାଶ ଚକ୍ରବର୍ତ୍ତୀ କଲେକ୍ଟର ହୋଇଥାନ୍ତା, କିରାଣୀ ହୋଇଗଲା । ଏଇ ସୁଶୀଲଟା କଲେକ୍ଟର ହବ !

"ତମର ତା'ହେଲେ ଦି'ପୁଅ ?"

"ଏଁ!..." ପୁଣି ଆଖି ମିଟକା ମାରି ହସିଲା ଅବିନାଶ । "ହଁ – ମାନେ, ତମ କେତୋଟି ?"

"ମୋର ପରା ତିନି ପୁଅ !"

"ମୋର ବି ତିନି ପୁଅ !"

"ଗୋଟାଏ ତ ମନୋଜ, ଯେ ସାଇବାଣୀକୁ ବିଭା ହେଲା । ଆଉ ଜଣେ ସୁଶୀଳ । ଆରଟି ନାଁ କ'ଣ ?"

"ବିନୋଦ... ବିନୋଦ ଚକ୍ରବର୍ତ୍ତୀ । ସେ ପରା ପଢୁଛି ! ମୁଁ କହିନାହିଁ ସେ ପଢୁଛି ବୋଲି ? ଆଃ, ତ ପଢା ତ ଏମିତି ସେମିତି ନୁହେଁ । ଏକାଥରେ ବ୍ରିଲିଏଣ୍ଟ ! ମାନେ ଓଡିଆରେ କହିଲେ ଖୁବ୍ ବେଶୀ, ସେଇ ବ୍ରିଲିଏଣ୍ଟ ! ହେଃ, ହେଃ !"

ବୁଢା ବି କିଛି ନ ବୁଝି ହସିଲା, ହେଃ ହେଃ ! କୌଣସି କାରଣରୁ ସେ ଆମୋଦିତ ବୋଧ କରୁଥିଲା ।

"ଆଉ 'ନୋରା' ମୋ' ଝିଅ ! ତା' ନୂଆବୋଉ ତାକୁ ଡାକେ ନୋରା । ସେ ବି ସେମିତି ସାଇବାଣୀ ସାଇବାଣୀ ଦିଶେ ତ ! ଲମ୍ବା ଡେମ୍ଫର ଫୁଲ, ସରୁ ଡେଣାର ପକ୍ଷୀ, ଆଉ ନୋରା... ଏ ସବୁ ଏକା ! ନୋରା ପାଇଁ ପୁଅ କାହିଁ ଏ ପୃଥିବୀରେ ?"

ଅବିନାଶର ସ୍ୱର ଧିମେଇ ଆସିଲା । ସେ ଶୋଇଯିବ କି ଆଉ !

ମୁଣା ବିକାଳି ଖୁସ୍‌ମୁସ୍ ହେଲା ।

ଅବିନାଶ ପୁଣି ଗହୀର ପାଣିରୁ ଉଠି ଆସି ଚାହିଁଲା । ବୁଢ଼ାର କୋଳି ପରି ପାଚିଲା ଦାନ୍ତ ଆଉ ସେ କସରା ଦାଢ଼ି ଦେଖି ବୋଧେ ଟିକିଏ ହସିଲା ।

"ଆଚ୍ଛା ମଉସା, ଏଇଟାରେ କୋବି ରହିଗଲେ ବାକି ସବୁ କୋଉଠି ରହିବ ? ମାଉଁସ, ଟମାଟୋ, ଚିଣ, ମଟର ଓଗେର୍ ଓଗେର୍ ? ତମେ ଜାଣିଛ ନା ଆଜି ଗୋଟେ ବିଶିଷ୍ଟ ଦିନ । ସେମାନେ ସମସ୍ତେ ମତେ ଅପେକ୍ଷା କରି ବସିଥିବେ । ମୁଁ କାଳେ ମନ ଉଦାସ କରି ଫେରିବି ବୋଲି କେତେ କଥା ଯୋଜନା କରିଥିବେ । ମୁଁ ପରା ସେମାନଙ୍କୁ ସବୁ ଜାଣେ ! ପୁଅ ଏମିତି ବାଁ ପାଖେ ଦେହକୁ ଲାଗି ଠିଆ ହେବ । ମୋ' ଦୁଇ କାନ୍ଧକୁ ଚିପି ଧରିଥିବ । ଜାଣି ଜାଣି ସେ ହୁନ୍ଦରିଆ, ସୁନ୍ଦରିଆ ନାତି ଟୋକାକୁ ମୋ' କୋଳକୁ ଆଉଜେଇ ଦେବ । କହିବ, 'ବାପା, ଆପଣ କିଛି ଚିନ୍ତା କରିବେ ନାହିଁ... ଆଣେ ଅଛୁ ପରା !' ମୋର ଆର ବୋହୂ କଲିକତି, ଭାରି ସୁନ୍ଦର ଦେଖିବାକୁ । ନରମ ମଟର ଚଣାକୁ ଘିଅ ପିଆଜରେ ଭାଜି ଦେଇ ପ୍ଲେଟ୍‌ରେ ବଢ଼େଇ ଦେବ । ହାତରେ ପାଣି ଗ୍ଲାସ୍ ଧରି ଅପେକ୍ଷା କରି ରହିବ । ଚାହିଁଦେଲେ ହସିଦେବ । ଝିଅ ମୋ' ଗାଲ ଆଉଁସି ଦେଇ ପଚାରିବ, 'ବାବା, ଆଜି ରାତିରେ ମାଉଁସ କ'ଣ କଲେ ତମେ ଖାଇବ ? ତମକୁ କୋପ୍ତା ଭାରି ଭଲ ଲାଗେ ନା !' କିନ୍ତୁ ସମସ୍ତେ ଗୋଟାଏ କଥାକୁ ଲୁଚାଇବାକୁ ଚେଷ୍ଟା କରୁଥିବେ । ଦେବହୁତି ସେଇଠି ନ ଥିବ । ସେ ବୁଝିଥିବ ଠିକ୍ କଥା । ମୁଁ ଆଉ ଅଫିସ୍ ଯିବିନାହିଁ । ଆଉ ସକାଳେ ଯାଇ ସଞ୍ଜକୁ ଫେରିବି ନାହିଁ । ଏ ପିଲାମାନେ ଛୁଟି ସରିଲେ ଚାଲିଯିବେ । ଦେବହୁତି ବୋଧେ ରନ୍ଧାଘରେ ଆଖି ଟୁମା ଟୁମା କରି ଓଠ ଥମ୍ ଥମ୍ କରି ବସିଥିବ । ଅନ୍ୟମନସ୍କ ଭଙ୍ଗୀରେ ଗାର ଟାଣୁଥିବ । ତା' ପାଖରେ ଏ ନୂଆ କୋବି ମୁଣା ଥୋଇଦେଲେ ସେ ଖୁସି ହୋଇଯିବ । ଏତେ ଗୁଡାଏ ମହର୍ଗ କୋବି ! ନିଶ୍ଚୟ ସେ ଖୁସି ହୋଇଯିବ !"

ଅବିନାଶ ଚକ୍ରବର୍ତ୍ତୀ ଖାଲି ମୁଣାଟିକୁ ହାତରେ ଝୁଲାଇ ଓହ୍ଲେଇଗଲା କାଠ ବେଞ୍ଚ ଉପରୁ । ନିର୍ଜନ ବଜାର ଭିତରେ ଟଳି ଟଳି ଚାଲିଗଲା ଆଗକୁ ।

ବୁଢ଼ା ବିକାଳି ଭୃରୁ କୁଞ୍ଚେଇ ପଛକୁ ଚାହିଁ ରହିଲା । ତା' ଗେଞ୍ଜି ମୁଣାରୁ ପାଞ୍ଚଟଙ୍କିଆ ନୋଟ୍‌ଟିକୁ ଦେଖି ପୁଣି ରଖିଦେଲା ।

ଅଦୃଶ୍ୟ ହୋଇଗଲା ଅବିନାଶ ଚକ୍ରବର୍ତ୍ତୀ ମୋଡ ପାଖରେ ।

ମୁଣା ବିକାଳି ବଟୁଆରୁ ପାନ କାଢ଼ି ଚୂନ ଲଗେଇଲା ।

କିଏ ଦୁଇଜଣ ସାଇକେଲ୍‌ରେ ଆସି ଓହ୍ଲେଇଲେ । କ'ଣ ଖୋଜିଲା ପରି ଏଣେତେଣେ ଚାହିଁଲେ । ବୁଢ଼ା ପାଖକୁ ଆସି ଠିଆ ହେଲେ ।

ଜଣେ ପଚାରିଲା, "ମଉସା, ଧୋତି ପଞ୍ଜାବୀ ପିନ୍ଧି ଜଣେ କିଏ ବଜାରକୁ ଆସିବାର ଦେଖିଛ ? ତା' ଆଖିରେ ବିଲାତି ଫ୍ରେମ୍‌ର ଚଷମା । ନିଶ ଦରପାଚିଲା । ଖୁବ୍ ଭଦ୍ର !"

ପାନ ଉପରୁ ଆଖି ଟେକି ସେ ଚାହିଁଲା । ସେମିତି ତଳକୁ ଚାହିଁ କହିଲା, "ଏଇ ପରା ସେ ବାବୁ ଜଣକ ଏଇଠି ବେଞ୍ଚ ଉପରେ ବସି ମୋତେ ତାଙ୍କ ଘରର ଦୁଃଖ ସୁଖ କହୁଥିଲେ । ଭାରି

ବଢ଼ିଆ ଲୋକ । କୋବି କିଣିବା ପାଇଁ ପରା ପାଞ୍ଚଟଙ୍କା ଦେଇ ମୋ' ପାଖରୁ ମୁଣା କିଣିଲେ ।"

"କୋବି କିଣିବାକୁ ?"

"ଆଜ୍ଞା ! ତାଙ୍କ ଘରେ କ'ଣ ଅଭାବ ? ପୁଅ ବିଲାତରେ, ବୋହୂ ସାଇବାଣୀ, ନାତି ସାଇବ । ତାଙ୍କର ତିନି ପୁଅ, ଆଉ ଗୋଟିଏ କଲିକତି ବୋହୂ । ଝିଅ ନାଁଟି କି ସୁନ୍ଦର... କ'ଣ ଟି... ନୋରା ? ହଁ ନୋରା !" କୋଳି ପରି ଦାନ୍ତ ଝିଲ୍‌ମିଲ୍ ଦିଶୁଥାଏ ବୁଢ଼ା ବିଶି ଆଙ୍ଗୁଠି ଟେକି ଖୁସି ହୋଇଗଲା ବେଳେ ।

ସେ ଦୁହେଁ ପରସ୍ପରକୁ ଚାହିଁଲେ । ସୁଦାମ ସାହୁର ଝାଳ ସରସର ମୁହଁ ତଳକୁ ନଇଁଗଲା । "ମୁଁ ସେଇଆ ଅନୁମାନ କରୁଥିଲି ! ଆଜି ସେ ଗୁମ୍ ମାରି ବସିଲାବେଳୁ ମୁଁ ଜାଣିଲିଣି ତା'ର ମତିଗତି !"

ଅଗ୍ରଓ୍ୱାଲା କହିଲା, "ସେ ଏଇ ଅକ୍ଟୋବର ଶେଷକୁ ତ ନିଶ୍ଚୟ ଚାକିରିରୁ ବିଦାୟ ନେବ । କେମିତି ବଞ୍ଚିବ ଏକୁଟିଆ ?"

ମୁଣା ବିକାଳି ଗୁଆ ଦେଉଥିଲା ପାନରେ । ଛପ୍ କରି ମୁହଁ ଟେକି ଚାହିଁଲା ।

"ଆଜି ତା'ର ଜନ୍ମଦିନ । ଆଜି ତାକୁ ଅଠାବନ ପୂରିଗଲା ତ ! ସେ ଭାବିନେଲା ଯେ ସରିଗଲା । ସେ ବିଭା ହେଇନାହିଁ । ସଂସାର ଜଞ୍ଜାଳରେ ପଡି ଘାଣ୍ଟି ହେଇନାହିଁ ବୋଲି କେତେ ବାହାଦୁରୀ ନ ନେଇଛି ? ଆମେ ତାକୁ କେତେ ଈର୍ଷା ନ କରିଛୁ ? ତା' ଭିତରେ ଏମିତି ତଷୁନିଆଁ କୁହୁଳୁଛି ବୋଲି କେମିତି କିଏ ଜାଣିବ ?"

"ସେ କ'ଣ ସେଇ ହୋଟେଲରେ, ସେଇ ବଖରାରେ ରହିଯିବ ବାକି ଦିନ ଯାକ ?"

ଉତ୍ତରରେ ସୁଦାମ ସାହୁର ଦୀର୍ଘଶ୍ୱାସ ।

ବୁଢ଼ା ବିକାଳି କ'ଣ କହିବ ବୋଲି ଚାହୁଁଥିଲା, ରହିଗଲା ।

"ଟୋକା ବୟସରେ ସେ ବିଭା ହୋଇ ପାରିଥାନ୍ତା । ତା'ର ସେ ବିଲାତି ଫ୍ରେମ୍‌ର ଚଷମା..."

"ଆରେ ଚାଃ ! ସେ ଇତିହାସ ଶୁଣିଲେ ତୋ' ଛାତି ଫାଟିଯିବ !"

ମୁଣା ବିକାଳି ବିହ୍ୱଳ ହୋଇ ମନକୁ ମନ ବିଡ୍‌ବିଡ୍ ହେଲା, "ତା'ହେଲେ ସେ ବାବୁ ଜଣକ ଏତେ ଅନୁଭବିଲା ପରି କଥା କେମିତି ମୋ' ଆଗରେ ବଖାଣି ଗଲେ ?"

ସାଇକଲ ବଙ୍କେଇ ସେମାନେ ବାହାରି ଆସିଲେ ରାସ୍ତା ଉପରକୁ ।

ନୁଆଣିଆ ଅପରାହ୍ଣର ନିର୍ଜନ ରାସ୍ତା !

ହାତରେ ଖାଲି ଝୋଲାଟିଏ ଧରି ବହୁ ଦୂରରେ ଝିଲିମିଲି ଦିଶୁଥାଏ ଅବିନାଶ ଚକ୍ରବର୍ତ୍ତୀ ସ୍ୱପ୍ନନାୟକ ପରି !

ଢଳନ୍ତା ଦ୍ୱିପ୍ରହର ଏକ ଝଟକୁଥିବା ନିଛାଟିଆ ସମୁଦ୍ର ।

ଅବିନାଶ ଚକ୍ରବର୍ତ୍ତୀ ଏକାକୀ ମାଛଟିଏ !



# ପଞ୍ଚପୁତ୍ରର କାହାଣୀ

"ସେମାନେ ଚାହିଁଲେ ଏଇଠି ଇନ୍ଦ୍ରପୁରୀ ତୋଳିଦେଇ ପାରିବେ । ଏକେ ଏକେ କୋଟିପତି । ଶୁଣାଯାଏ ସେମାନେ କାଳିପୂଜା ପରେ ଆସୁଛନ୍ତି । ଏକାଠି ବସି ପାଞ୍ଚଲୋକଙ୍କୁ ପଚାରି ବୁଝି ଯାହା ନିଷ୍ପତ୍ତି କରିବେ ତାହା ହେବ ।"

"ତୁମେ ତ ସବୁଠୁ ପୁରୁଣା ଲୋକ । ଏ ଖାନ୍‌ଦାନ ସମ୍ଭାଳି ରହିଛ ସେ କାଳରୁ । ତମେ କ'ଣ ଚାହୁଁଛ ? ଏଠି ଧର୍ମଶାଳା ହେବ, ନା ମନ୍ଦିର ହେବ, ନା ହୋଟେଲ ହେବ ?"

"ମୁଁ ଦଶବର୍ଷ ବୟସରୁ ଏ ସମ୍ପତ୍ତି ଜଗି ପଡିଛି । ମୋତେ ଆସି ପଚାଶ ଟପିଲା । ମୋତେ ସେମାନେ ଟଙ୍କା ପଠାଇ ଡକେଇଛନ୍ତି । ମୁଁ ସମସ୍ତଙ୍କ ପାଖକୁ ଯାଇଛି । କେହି କାହାକୁ ଊଣା ନୁହନ୍ତି । କୁବେର ସମ୍ପତ୍ତି ଫାଟି ପଡୁଚି । ହେଲେ ଏ ପଚିଶବର୍ଷ ଭିତରେ କେହି ହେଲେ ଜଣେ ଆସି ଏଇଠି ପାଦ ପକେଇ ନାହାନ୍ତି ।"

"ଏଇଠି ବୁଢା ରହୁଥିଲେ ପରା । ତାଙ୍କୁ ଦେଖିବାକୁ କ'ଣ କେହି ହେଲେ ଆସି ନାହିଁ ?"

"ନା' ! ସେଇଟା ଏ ପରିବାରର ରହସ୍ୟ । ମୁଁ ଏତେବର୍ଷ ରହିଲି ସିନା କିଛି ଜାଣି ପାରିଲି ନାହିଁ । ରାଣ ଖାଇଲା ପରି ପାଞ୍ଚପୁଅ ଯାକ ଏଇଠି ପାଦ ଦେଇ ନାହାନ୍ତି । ଟଙ୍କା ପଇସା ପଠାଇଛନ୍ତି । ହେଲେ ସେଇଟା ବି ମୁଁ ଅନୁମାନ କରି କହୁଛି ! ତାଙ୍କ ଭିତରେ କ'ଣ ଗୋଟାଏ ଭୟଙ୍କର ଗୁମର ରହିଛି, ସେଇଟା କେହି ଜାଣନ୍ତି ନାହିଁ ।"

"ବାପ ଚାଲିଗଲେ । ସେତେବେଳେ ମଧ୍ୟ ସେମାନେ କେହି ଆସିଲେ ନାହିଁ ବୋଲି ଲୋକେ ଛି ଛି କରୁଛନ୍ତି ।"

କିନ୍ତୁ ମୁଁ ଯେତେ ପାରିଛି ବୁଝେଇଛି, ସେମାନେ କୌଣସି କାରଣରୁ ଧର୍ମ ଲଂଘି ପାରିନାହାନ୍ତି । ତାଙ୍କୁ କିଏ କେମିତି ବାନ୍ଧି ରଖିଥିଲା । ମୁଁ କହିପାରିବି ନାହିଁ । କିନ୍ତୁ ମୁଁ ଜାଣେ ବାବୁଙ୍କ କ୍ରିୟାବେଳକୁ ଲକ୍ଷେ ଟଙ୍କା ଆସିଥିଲା । ଏଠି ତାଙ୍କ ଭାଇଭଗାରି ସବୁ ତାଙ୍କୁ ନେଇ ଟଣା

ଓଟରା ହେଉଥିଲେ । ବୁଢ଼ୀ ତ ଚାଲି ଯାଇଥିଲେ ମୂଳରୁ ବଡପୁଅ ବିଭାବେଳୁ । ସେତେବେଳେ ମୁରବି ନିଜେ ସବୁ ସମ୍ଭାଳିଲେ ।

"ଆହେ ରଖ ତମ ଚତୁରୀ କଥା । ପୁଅ ହେଇ ଜନ୍ମ ହେଇଥିବ, ବାପ ମରିଗଲେ ପାଣି ମୁନ୍ଦେ ଟେକିବ ନାହିଁ, ମୁଖାଗ୍ନି ଦେବ ନାହିଁ, ସେ କି ପୁଅ ?"

"ମୁଁ ବି ସେମିତି ଭାବିଛି । କେତେ କାନ୍ଦିଛି । ହେଲେ ବୁଢ଼ା ତୁଣ୍ଡରୁ କେବେ ହେଲେ ପଦେ ବାହାରି ନାହିଁ । ସେ କେବେ କୌଣସି ପୁଅକୁ ଦୋଷ ଦେଇ ନାହାନ୍ତି । ବନ୍ଧୁ କୁଟୁମ୍ବୀ ଲୋକ ଚଳେଇବାରୁ ସେ କହିବା ମୁଁ ଶୁଣିଛି । "ସେମାନଙ୍କୁ ମୁଁ ରାଣ ପକେଇଛି । ସେମାନେ କେହି ମୁଁ ଏଠି ଥିବା ଯାକେ ଆସିବେ ନାହିଁ ।" – କି ରାଣ ? – ସେ କାହିଁକି ସେମିତି ରାଣ ପକାଉଛନ୍ତି ? – କାହାରି ପଚାରିବାର ସାହସ ନାହିଁ ।

"ବୁଢ଼ା ମରିବା ପରେ ତ ସେମାନେ ଆସିଥା'ନ୍ତେ ।"

"ନାଇଁ ପରା, ତାଙ୍କୁ କୁହା ହେଇଥିଲା ଏଇବର୍ଷ ଏଇ ମାସ ଶେଷଦିନ ଆସି ପହଞ୍ଚିବାକୁ । ବୁଢ଼ା ମରିବାର ପାଞ୍ଚବର୍ଷ ହେଇଗଲା । ୟା ଭିତରେ ଭାଇଭଗାରି ଏ ସମ୍ପତ୍ତିବାଡି ପାଇଁ ମାଲିମକଦ୍ଦମା କଲେ । ଓକିଲଙ୍କୁ ନେଇ ମୁଁ ଦିଲ୍ଲୀ, ନାଗପୁର, ଗ୍ୱାଲିଅର ଯାଇଛି । ସେଇଠି ପୁଅମାନେ ବସି ସବୁ କଥା ବୁଝିଛନ୍ତି । ଅସୁମାରି ପଇସା ସାରିଛନ୍ତି । ଏ ସଂପତ୍ତିରେ କେହି ଟିପମାରି ପାରି ନାହାନ୍ତି । ପୁଅମାନଙ୍କ ନାଁରେ ଫଇସଲା ହେଇଛି ।"

"ସେମାନେ କ'ଣ ଏଇମାସ ଶେଷକୁ ଆସିବେ ବୋଲି ତୁମକୁ କହିଛନ୍ତି ?"

"ସେମାନେ ପରା ସଜବାଜ ହଉଥିଲେ ଆସିବାକୁ । ମୋତେ କହିଛନ୍ତି, ସତର୍କ କରିବାକୁ । ଏଇ ମାସ ରାଣ ମେଣ୍ଟିବ । କ'ଣ ତେଣିକି ଭାଗ୍ୟରେ ଅଛି କେଜାଣି !"

"ଆଚ୍ଛା ଦଶବର୍ଷ ବୁଢ଼ା ଏକାକୀ ରହି ଚଳୁଥିଲେ ଟି ! କେତେବେଳେ କ'ଣ ମନ ହେଇ ନାହିଁ ପୁଅକୁ ଦେଖିବାକୁ ?"

"ନା, ମୁଁ କେବେ କେମିତି ସେ କଥା ଉଠେଇଲେ ସେ ମୁହଁ ବୁଲେଇ ଦେଉଥିଲେ ।"

"ଛାଡ, ଏ ସବୁ ବୁଝିବା ଆମର ସାଧ୍ୟାତୀତ ।"

ସଞ୍ଜବେଳେ ଦୌଲତରାମ କୋଠି ଆଗରେ ଠିଆ ହୋଇ ଭୋଳା ସାଥୀନ୍ତା ସାହିଟୋକା ଅମରକୁ ସେ ଖାନ୍‌ଦାନ୍ କଥା ବୁଝାଉଥିଲା । ସେ କୋଠିକୁ ନେଇ ନାନା ଗୁଡବ ଉଠେ, ପୁଣି ମଉଳି ଯାଏ । ଦୌଲତରାମ ତାଙ୍କ ସମୟରେ ବିଲାତ ଫେରନ୍ତା । ବିଦେଶୀ ବ୍ୟବସାୟରେ କଲିକତା ପେଣ୍ଠ ଉପରେ ଘର । ଅମାପ ସମ୍ପତ୍ତି । ଦେଖିବାକୁ ରାଜପୁତ୍ର, ବୟସ ପଚିଶ । ସେ ଚାହିଁଥିଲେ ସାଇବାଣୀ ବିଭା ହୋଇ ପାରିଥା'ନ୍ତେ କିନ୍ତୁ ସେ ତା' ନ କରି ବଙ୍ଗାଳୀ ଦତ୍ତ ପରିବାରର ଗୋଟିଏ ଇଂରାଜୀ ପଢ଼ୁଆ ଝିଅକୁ ସ୍ଥିର କଲେ, ବୟସରେ ଆଠବର୍ଷ ସାନ । ଜାତି କୁଟୁମ୍ବୀଙ୍କ ବିରୋଧ ହେଲା । ସେ କାହାକୁ ଖାତିର ନ କରି ସେଇ ପରମା ସୁନ୍ଦରୀ ଡେଙ୍ଗୀ ବଙ୍ଗାଳୁଣୀ ଝିଅଟିକୁ ହିଁ ବିଭା ହେଲେ । ଜାତିଭାଇ ଆଡ ଆଡ ହେବାକୁ କଲିକତା ଛାଡିଦେଲେ । ଦିଲ୍ଲୀ,

ଗ୍ୱାଲିଅର, ନାଗପୁର, ଆଜମୀର, ବମ୍ବେ ସହରମାନଙ୍କରେ ବ୍ୟବସାୟ କେନ୍ଦ୍ର ଖୋଲିଲେ । ଅଜସ୍ର ସମ୍ପତ୍ତି ଠୁଳ କଲେ । ବିଭା ହେବାର ଏଗାର ବର୍ଷ ଭିତରେ ପାଞ୍ଚପୁଅ ଜନ୍ମ ହେଲେ । ପଦ୍ମବନ ପରି ଦୌଲତରାମ ପରିବାର ଦିନୁଦିନ ବିକଶିତ ହେବାରେ ଲାଗିଲା । ଯେତେବେଳେ ବଡପୁଅକୁ ପନ୍ଦର ବର୍ଷ, ସେ ତାକୁ ବିଲାତ ପଠେଇ ଦେଲେ । ଅନ୍ୟମାନଙ୍କୁ କାହାକୁ ଲଭଡେଲ, କାହାକୁ ଜେଭଅର୍ସ, କାହାକୁ ଷ୍ଟିଫେନ୍‌ସ ପଠାଇଦେଲେ ଇଂରାଜୀ ପାଠ ପଢେଇବା ପାଇଁ । ସେତିକି ବେଳେ ଝଡ ଉଠିଲା । ଘରେ ପ୍ରବଳ ପାଟିତୁଣ୍ଡ ହେଲା । ମୂଳ କଥା କେହି ଜାଣି ପାରିଲେ ନାହିଁ । ବାହାରକୁ ଦୌଲତରାମ ଆଉ ତାଙ୍କ ପତ୍ନୀ ସାମାଜିକ ଶିଷ୍ଟାଚରର ଖିଲାପ କିଛି କରୁ ନଥିଲେ । କିନ୍ତୁ ଆସ୍ତେ ଆସ୍ତେ ତାଙ୍କ ଭିତରେ ଗୋଟାଏ ବ୍ୟବଧାନ ସୃଷ୍ଟି ହେବା ଭୋଳା ସାଆନ୍ତା ଲକ୍ଷ୍ୟ କରି ପାରୁଥିଲା ।

ରାତିରେ ତା' ନିଦ ହଠାତ୍ ଭାଙ୍ଗି ଯାଉଥିଲା । ସେ ଝରକା ବାଟେ ଅନେଇଲା ବେଳକୁ ଦୌଲତରାମ ଦମ୍ପତି ବେଶ୍ ଅଭଦ୍ର ଭାଷାରେ ଗାଳିଗୁଲଜ କରୁଥିବାର ସେ ଶୁଣିଥିଲା । ତା'ର ମନେ ହେଉଥିଲା ଯେ ମଝିରେ କେହି ଜଣେ ତୃତୀୟ ବ୍ୟକ୍ତିକୁ ନେଇ ସେମାନେ କଜିଆ କରୁଥିଲେ ।

ମଝିରେ ମଝିରେ ସେମାନେ ହପ୍ତାଏ ଦୁଇ ହପ୍ତା ଆଦୌ କଥା ହେଉ ନଥିଲେ । ଘରର କାନ୍ଥବାଡ ଶିରାପ୍ରଶିରା ଟଣକି ରହୁଥିଲା, ସେ ନୀରବତା ଭିତରେ । ତା'ପରେ ନିରନ୍ଧ୍ର ମେଘରୁ ବଜ୍ରବିଦ୍ୟୁତ୍ ଅଜାଡି ହୋଇ ପଡୁଥିଲା ।

ହେମା ଦତ୍ତ । ଦୌଲତରାମଙ୍କ ସ୍ତ୍ରୀ ମଝିରେ ଦୁଇବର୍ଷ ବାପଘରେ ରହିଗଲେ । ପିଲାମାନେ ଛୁଟିରେ ଆସିଲେ ବାପପାଖେ ମୁହଁ ମାରି ଦେଇ କଲିକତା ପଳଉଥିଲେ । ସେଇଠୁ ଚାଲିଯାଉଥିଲେ ପଢିବାକୁ । ଦୌଲତରାମ ସେତିକିବେଳେ ନିଶା ଖାଇବା ଆରମ୍ଭ କରିଥିଲେ । ସେତିକିବେଳେ ତାଙ୍କୁ ଦେଖିବାକୁ ଡର ମାଡୁଥିଲା ।

ତା'ପରେ ଦିନେ ହେମା ଫେରିଲେ ଏ ସହରକୁ । କିନ୍ତୁ ରହିଲେ ସେ କୋଠାର ଡାହାଣ ପାଖେ । ବାଁ ପାଖେ ରହିଲେ ଦୌଲତରାମ । ମଝିରେ ଭୋଳା ଆଉ ଦି'ଚାରିଜଣ ବୋଲକରା ଉଭୟପଟେ ରହି ସେବା କରୁଥିଲେ ।

ଦିନେ ଦୌଲତରାମ ତାଙ୍କ ପାଖ ଘରକୁ ଖୁବ୍ ଝଡାଝଡି କରି, ସଜାଇବାକୁ ହୁକୁମ ଦେଲେ । ଭଲ ଖାଇବା ପିଇବା ପାଇଁ ବରାଦ କଲେ । ମାଲିକାଣୀଙ୍କ ମନକୁ ପାଉଥିବା ସବୁ ପ୍ରକାର ଜିନିଷ ରନ୍ଧାହେଲା । ଭୋଳା ସାଆନ୍ତା ଭାରି ଖୁସିଟାଏ ହେଇ କାମରେ ଲାଗିଥାଏ । ଭାବୁଥାଏ ଯେ ସେଦିନ ବୋଧେ କ'ଣ ବୁଝାମଣାଟିଏ ହେଇଯିବ । ମଝିରେ ଅଦୃଶ୍ୟ ବାଡ ଭାଙ୍ଗିଯିବ ।

କିନ୍ତୁ ସେଭଳି କିଛି ହେଲା ନାହିଁ । ହେମା ଦତ୍ତ ରେଲୱେ ହୋଟେଲରେ ଖାଇବାକୁ ଚାଲିଗଲେ । ଦୌଲତରାମ ଖୁବ୍ କୁହୁଳିଲେ । ରନ୍ଧାବଢା ଜିନିଷସବୁ ସେମିତି ପଡିରହିଲା । ରାତିସାରା ନିଶା ଖାଇ ତା' ଆରଦିନ ଦଶଟା ଯାଏଁ ବେହୋସ ପଡିରହିଲେ । ସେଇଦିନ ସେ

ତାଙ୍କ ବାକ୍‌ସଟି ଧରି ବାହାରିଗଲେ କାହାକୁ କିଛି ନ କହି । ଫେରିଲେ ତିନିମାସ ପରେ ।

ଏମିତି ଦି'ଜଣଙ୍କ ଭିତରେ ଆଉ ମିଳାମିଶା ହୋଇ ପାରିଲା ନାହିଁ ।

ତା'ପରେ ହେଲା ବଡପୁଅ ଧର୍ମରାଜର ବିଭାଘର । ସେ ନିଜେ ଦିଲ୍ଲୀରେ କୋଟିପତି ଝିଅଟିକୁ ଠିକ୍ କରିଥିଲେ । ପୁଅମାନେ ତ ପ୍ରାୟ ନିଜ ନିଜ ବ୍ୟବସାୟ ସମ୍ଭାଳି ରହୁଥିଲେ । ସବା ସାନପୁଅକୁ ସେତେବେଳକୁ ଏକୋଇଶି ବର୍ଷ । ସେ ବଡଭାଇ ପାଖରେ ରହୁଥିଲା । ତା' ପାଇଁ ଇନ୍ଦୋରରେ କାରବାର ଆଉ ସମ୍ପତ୍ତିବାଡି ରଖା ହୋଇଥିଲା । ବାହାଘର ହେଲା ସେଇ ଦିଲ୍ଲୀରେ । ଏଠୁ ବାପମା' ଯାଇ ବିଭାଘର କରେଇଲେ । ଭୋଳା ସାଅନ୍ତା ଶୁଣିଲା ସେଇଠି କୁଆଡେ ପାଞ୍ଚ ସାତ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା ବର ପକ୍ଷରୁ ।

ବିଭାଘର ଦି'ଦିନ ପରେ ଦୌଲତରାମ ଏକୁଟିଆ ଫେରିଲେ । ହେମା ରହିଲେ ପିଲାଙ୍କ ପାଖେ କିଛିଦିନ । ଆସିଲା ବେଳେ ପିଲାଙ୍କ ଓଠଧରି କାନ୍ଦି ପକାଇଥିଲେ । କହିଥିଲେ ଆଉ କେବେ ଦେଖା ନ ହୋଇପାରେ ।

ପିଲାମାନେ ଜାଣିଥିଲେ ଯେ ତାଙ୍କ ବାପମା'ଙ୍କ ଭିତରେ କ'ଣଟାଏ ଭୟଙ୍କର ଅଭିଶାପ ପରି ଝୁଲି ରହିଛି । ସାହସ କିନ୍ତୁ ହେଉ ନଥିଲା ପଚାରି ଦେବା ପାଇଁ ।

ହେମା ଫେରିଲେ । ଫେରିବା ଦିନ ହିଁ ରାତି ଦଶଟା ବେଳେ ଉଭୟଙ୍କ ଭିତରେ ଭୟଙ୍କର ପାଟିତୁଣ୍ଡ ହେଲା । ତା'ର ଦୁଇଦିନ ପରେ ହେମାଙ୍କ ମୃତ୍ୟୁ ହେଲା । ଲୋକେ ଚୁପ୍‌ଚାପ୍ ହେଲେ । କିନ୍ତୁ ଦୌଲତରାମଙ୍କ ଟଙ୍କରା ସୁଅ ସବୁ ଭସେଇ ନେଲା । ପିଲାଙ୍କୁ କୁଆଡେ ସେ ଟେଲିଗ୍ରାମ୍ କରିଥିଲେ ପନ୍ଦରବର୍ଷ ପରେ ଆସିବାକୁ ।

ତଥାପି ଧର୍ମରାଜ ଚରିଭାଇଙ୍କୁ ଧରି ବାହାରିଥିଲେ ଆସିବାକୁ । ତାଙ୍କ ମାମୁଁ ନିଖିଳ ଦତ୍ତ ପାଇଲଟ ଅଫିସର ଆଉ ଅଜା ସୁକୁମାର ଦତ୍ତ ଦିଲ୍ଲୀରେ ଦୈବାତ୍ ପହଞ୍ଚି ଯିବାରୁ କଥା ଅନ୍ୟ ପ୍ରକାର ହେଇଗଲା । ସେ ଦୁହେଁ ଖୁବ୍ କାନ୍ଦିଲେ । ଖୁବ୍ ରାଗିଲେ । କିନ୍ତୁ ମନା କଲେ ଏଠିକି ଆସିବାକୁ । କ'ଣ କାରଣ ଥିଲା, ତା' ଆଉ କାହାକୁ କହିଲେ ନାହିଁ ।

ଏଇଭଳି କଥା ଗଡି ଆସିଲା ଆଜିଯାଏଁ ।

ମାର୍ଗଶିର ଶେଷ ଆଡକୁ ବେଶ୍ ଶୀତ ପଡି ଆସିଥାଏ । ଦୌଲତରାମଙ୍କ କୋଠି ଆଗରେ ଦି'ଖଣ୍ଡ ଗାଡି ଆସି ଲାଗିଲା । ଭୋଳା ସାଆନ୍ତା ଆଉ ପାଞ୍ଚଜଣ ମିଶି ଦୁଆରେ ଧାଡିବାନ୍ଧି ଓଲଗି ହେଲେ ।

କୋଠିର ମାଲକମାନେ ଆସି ପହଞ୍ଚିଲେ । ଦୌଲତରାମଙ୍କ ପାଞ୍ଚପୁଅ ଓ ଦୁଇନାତି । ସ୍ତ୍ରୀଲୋକ କେହି ଆସି ନଥିଲେ । କାହିଁକି ଆସି ନଥିଲେ କେଜାଣି ! ଭାଇମାନେ ବୋଧେ ଚାହିଁ ନଥିଲେ ତାଙ୍କ ପରିବାରର ସବୁଠାରୁ ଗମ୍ଭୀର ଗୋପନୀୟ ବିଷୟରେ ଆଉ କେହି ଦଖଲ ଦେଉ । ଘରେ ପଶୁ ପଶୁ ଭୋଳା ସାଆନ୍ତା ସବୁ ବଖରାର ତାଲା ଫିଟେଇ ଦେଲା । ଡାଇନିଂ ହଲରେ ଚା ଆଣି ରଖିଦେଲା ।

ନାତି ଟୋକା ଦି'ଜଣ ସାରା ଘର ଖେଳିଗଲେ । ଶଙ୍ଖ ମଲମଲ ପଥର ଚଟାଣରେ ଗୋଡ ଘଷି ଚାଲିବାକୁ ତାଙ୍କୁ ସୁଖ ଲାଗୁଥିଲା ।

ପୁରୁଣାକାଳିଆ କାରୁକାର୍ଯ୍ୟ ଲାଗିଥିବା ଟେବୁଲ, ଚୌକି, ସୋଫା, ପଲଙ୍କ, ଆଇନା ତାଙ୍କୁ କଉତୁକିଆ ଲାଗୁଥିଲା । ଶିଶୁ କାଠରେ ହାତିଦାନ୍ତର କାମ ହୋଇଥିବା କବାଟ ଆଉ ଡାଇନିଂ ଟେବୁଲ ଦେଖି ସେମାନେ ବିଶ୍ୱାସ କରିପାରୁ ନଥିଲେ ।

ପାଞ୍ଚଭାଇ କିନ୍ତୁ ଗମ୍ଭୀର । ଯେ ଯାହା ବଖରାରେ ନିତ୍ୟକର୍ମ ସାରି ବାହାରିଲେ । ଧର୍ମରାଜଙ୍କ ବରାଜ ଅନୁସାରେ ଭୋଳା ଗରମ ଗରମ ଇଡ୍‌ଲି ଆଣି ଥୋଇଲା । ରୂପାର ଛୁରୀ ଚାମୁଚ, ବିଦେଶୀ ପ୍ଲେଟ୍, କାଚଗ୍ଲାସ୍ କାଢ଼ି ଥୋଇଲା ।

ଭାଇମାନେ ତଥାପି ଚୁପ୍‌ଚାପ୍ ବସି ଖାଇଲେ । କଥାବାର୍ତ୍ତା କମ୍ । ସମସ୍ତଙ୍କ ଉପରେ ଓହଳି ରହିଥାଏ କିମ୍ଭୂତ ଗୋଟାଏ ଛାଇ ।

"ଆଚ୍ଛା, ଭୋଳା ଆମକୁ ବାବାଙ୍କ ଟ୍ରେଜେରି ଘରକୁ ନେଇଚାଲ ।" କହିଲେ ଧର୍ମରାଜ ।

ଅନ୍ୟ ଚାରିଭାଇଙ୍କୁ ଆଖିରେ ଜଣାଇଦେଲେ ତାଙ୍କ ସାଙ୍ଗେ ଯିବାକୁ । ଭୋଳାର ଛାତି କମ୍ପିବାକୁ ଲାଗିଲା । କ'ଣ ଅନର୍ଥ ସେ ଭିତରେ ଚେକାମାରି ଶୋଇରହିଛି, ପେଡିରେ କଳାନାଗ ପରି କେଜାଣି ! ସେ କେବଳ ଜାଣେ ଯେ, ସେ ବଖରାର ତାଲାରେ ଜଉମୁଦ ପଡିଛି । ତାକୁ ମାଲିମକଦ୍ଦମା ବେଳେ ବି କେହି ଖୋଲି ନାହାନ୍ତି ।

ଗୋଟାଏ ବଡ ବୈଠକ ଘର । ତା'ର ଦକ୍ଷିଣ କାନ୍ଥରେ ଟ୍ରେଜେରି ଘରର କବାଟ । ସେ ବୈଠକ ଘରେ ଗାଲିଚା, ସୋଫା ଝଡାଝଡି ହୋଇ ରହିଥାଏ ।

ବୈଠକ ଘରେ ପହଞ୍ଚି ଧର୍ମରାଜ ଭୋଳାକୁ କହିଲେ, "ତୁମେ ବର୍ତ୍ତମାନ ଯାଅ । ପିଲା ଦି'ଜଣକୁ ବଜାର ଆଡେ ବୁଲେଇ ମନ୍ଦିର ଦର୍ଶନ କରାଇଦେବ ।"

ଭୋଳା ବୁଝିଲା । ସେ ବାହାରି ଆସିଲା ପରେ ବୈଠକ ଘର କବାଟ ଭିତରୁ ବନ୍ଦ ହେଇଗଲା ।

ଧର୍ମରାଜ ସୋଫାରେ ବସି ସମସ୍ତଙ୍କୁ ଚାହିଁ କହିଲେ, "ଆମେ ବୋଧହୁଏ ଜୀବନର ସବୁଠାରୁ ବଡ ପରୀକ୍ଷା ଦେବାକୁ ଯାଉଛୁ । ଯାହା ଥିବ ତାକୁ ମୁଣ୍ଡପାତି ସ୍ୱୀକାର କରିନେବୁ ମୁଁ ସମସ୍ତଙ୍କୁ ପ୍ରସ୍ତାବ ଦେଉଛି । କାରଣ ତାକୁ ବଦଳାଇବା ପାଇଁ, ବୁଝେଇବା ପାଇଁ କିମ୍ବା ଆମ ପ୍ରଶ୍ନର ଉତ୍ତର ଦେବାପାଇଁ ବାପା ମା' କେହି ନାହାନ୍ତି । କିନ୍ତୁ ଆମମାନଙ୍କ ଜୀବନର ମୂଳଗ୍ରନ୍ଥି ଆଜି ଫିଟିବାକୁ ଯାଉଛି ।"

ସେ ତାଙ୍କ ପଞ୍ଜାବି ପକେଟରୁ ଗୋଟିଏ ପ୍ୟାକେଟ କାଢିଲେ । ତା' ଭିତରୁ ଜଉମୁଦ ପଡିଥିବା ଗୋଟିଏ ଛୋଟ ପାର୍ଶଲ । ତାକୁ ଦେଖେଇ ସେ କହିଲେ ଏଇଟା ଏ ଟ୍ରେଜେରି ଚାବି । ଏଥିରେ ବାବାଙ୍କ ସିଲ୍ ପଡିଛି । ଲେଖା ହୋଇଛି : "To be opened on 30 Oct. 1992"

ସମସ୍ତେ କିଛି ସମୟ ନୀରବ – ସେ ଆଦେଶକୁ ମାନ୍ୟତା ଦେଲା ପରି ଜଣାଗଲା । ଏ

ଦୁର୍ଲଂଘ୍ୟ ଆଦେଶକୁ ସେମାନେ ଏତେବର୍ଷ ଧରି ପାଳନ କରି ଆସିଥିଲେ ।

ଚାବି ସହିତ ଛୋଟ ଚିଠିଟାଏ ମଧ ଥିଲା । ତା'ର ଅର୍ଥ ଥିଲା – "ସେଇ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ତୁମେମାନେ କେହି ଏଠାକୁ ଆସିବାର ପ୍ରୟୋଜନ ନାହିଁ ।"

ସେମାନେ ଖୁବ୍ ଅସୁସ୍ଥ ବୋଧ କଲେ ।

ସବା ସାନଭାଇ ପଙ୍ଖାଟାକୁ ଆଉରି ଜୋରରେ ଚଳାଇ ଦେଲା । ଧର୍ମରାଜ ସମସ୍ତଙ୍କ ଆଗରେ ସେ ଜଉମୁଦ କାଢି ଚାବିଟିକୁ ବାହାର କଲା ।

କବାଟ ତାଲା ଉପରୁ ମଧ ଜଉମୁଦ ଭଙ୍ଗାଗଲା । ସେମାନେ ସମସ୍ତେ କିଛି ମାତ୍ରାରେ ଉଦ୍‌ବିଗ୍ନ ଜଣାଯାଉଥିଲେ । କ୍ଲାନ୍ତ ଦେଖା ଯାଉଥିଲେ । ଅଜ୍ଞାତ ଆତଙ୍କ ସତେ ବା ତାଙ୍କୁ ଘେରି ରହିଥିଲା ।

ଟ୍ରେଜେରି ଘର ନିଃଶବ୍ଦ ଫିଟିଗଲା ।

ଭିତରେ ତିନିଟା ବଡ ବଡ ଲୁହା ଟ୍ରେଜେରି । ମଝି ଟ୍ରେଜେରିର ହାଣ୍ଡଲରୁ ଓହଳି ରହିଥିଲା ଚାବି ପେନ୍ଥା । ବୋଧହୁଏ ସବୁଯାକ ଟ୍ରେଜେରିର ଚାବି ।

ଧର୍ମରାଜ ସେ ଚାବିଥୋଲା ହାତରେ ଧରି ମଝି ଟ୍ରେଜେରି ଫିଟାଇଲାବେଳେ ତାଙ୍କ ହାତ ଈଷତ୍ କମ୍ପୁଥିଲା । ଟ୍ରେଜେରିର ମଝିଥାକରେ ଅଳଙ୍କାର ବାକ୍ସ ଭଳି ଛୋଟ ସୁନ୍ଦର ବାକ୍ସଟିଏ – ତାରି ଉପରେ ଲଫାପାରେ ଖଣ୍ଡିଏ ଚିଠି । ସେଥିରେ କାହାରି ଠିକଣା ନଥିଲା । କେବଳ ଲେଖାଥିଲା – ଅକ୍ଟୋବର ୩୦, ୧୯୯୨ ।

ସେ ଚିଠିଟି ଧରି ଧର୍ମରାଜ ଟ୍ରେଜେରି ସାମ୍ନାରେ ତଳେ ବସି ପଡିଲେ । ଅନ୍ୟମାନେ ତାଙ୍କ ପାଖେ ବସିଲେ । ଚିଠିଟି ଖୋଲା ଗଲା ।

ସବା ଉପରେ ଲେଖାଥିଲା –

"ତମେ ପାଞ୍ଚଭାଇ ସମସ୍ତେ ଉପସ୍ଥିତ ଅଛ ତ ? ଆଉ କେହି ନାହାନ୍ତି ତ ?"

ତା'ପରେ ଦୌଲତରାମଙ୍କ ହାତଲେଖା ଚିଠି –

"ଧର୍ମରାଜ, ବଳରାଜ, ଧନରାଜ, ନଗରାଜ, ଦେବରାଜ – ତୁମକୁ ଆଉ କେମିତି ସମ୍ବୋଧନ କରିବି ବୁଝି ପାରୁନାହିଁ । ତୁମକୁ ଏ ବିଷୟ ନ କହିଲେ ବି ଚଳୁନାହିଁ । ତୁମେ ଏ ଚିଠି ପଢିଲା ପୂର୍ବରୁ ମୁଁ ଚାଲିଯାଇଥିଲେ ଭଲ ହୁଅନ୍ତା ବଞ୍ଚିଥିଲେ ବି ମୁଁ ଶପଥ କରୁଛି ଅକ୍ଟୋବର ୩୦, ୧୯୯୨ ଦିନ ମୁଁ ଏଠାରେ ନ ଥିବି ।"

ଧର୍ମରାଜ ଚିଠିରୁ ମୁହଁ ଟେକି ଭାଇମାନଙ୍କୁ ଚାହିଁଲେ । ସମସ୍ତଙ୍କ ମୁହଁ ନିସ୍ତଭ ଦେଖାଯାଉଥିଲା । ସେ ପୁଣି ପଢିଲେ –

"ଆଜି ଅକ୍ଟୋବର ୩୦, ୧୯୯୨, ମୋର ବିବାହର ସୁବର୍ଣ୍ଣ ଜୟନ୍ତୀ । ପଚାଶ ବର୍ଷ ତଳେ ହେମା ଦତ୍ତଙ୍କୁ କଲିକତାରେ ବିବାହ କରିଥିଲି । ସେତେବେଳେ ମୁଁ ଭାବିଥିଲି ସେ ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀ । ଏବେ ବି ମୋର ସେ ଧାରଣା ଅପରିବର୍ତ୍ତିତ ରହିଛି । ମୁଁ ତାଙ୍କୁ ଅତ୍ୟନ୍ତ ଭଲ

# ଆମକୁ ବିପନ୍ନ କର

ମନେ ହେଉଥିଲା ଯେ ଆକାଶ ବୋଧେ ବତୁରି କୁଢେଇ ହୋଇ ପଡିବ, ସୋରା ସୋରା ହୋଇ ଫାଟିଯିବ ବଜ୍ର ମାଡରେ । ସେ ଯେଉଁ ରାତି ! ସେ ଯେଉଁ ବର୍ଷା !! ଓଃ ! ମୂଷଳଧାର ପାଣି ହାତୀ ଶୁଣ୍ଢ ପରି ଅଜାଡି ହେଉଥାଏ । ଟଳମଳ ହେଉଥାଏ ପୃଥ୍ୱୀ; ପ୍ରଳୟରେ ଭାସିଯିବ ସତେବା !

ଆମ ସାତସେଣିଆ ଆଟୁ ଘର ବି ଦୁରୁଦୁରୁ କମ୍ପୁଥାଏ ରାତିସାରା । ମୁଁ ତ ଶୋଇ ନଥାଏ । ମୋର ମନେ ହେଲା ବାକି ସମସ୍ତେ ମଧ୍ୟ ମୋରି ଭଳି ଅନ୍ଧାରରେ, ଆତଙ୍କରେ ଡଗଡଗ ଚାହିଁ ପଡିଛନ୍ତି । ସେଥିରେ କିଏ ବା ଶୋଇବ କେମିତି ? ସେ କ'ଣ ବର୍ଷା ପରି ବର୍ଷା ! ଯାହାକୁ ଘୋର ଦୁର୍ଦ୍ଦିନ କୁହାଯାଏ ସେଇ ! କେତେବେଳେ କାନ୍ଥ ମଡେଇ ହୋଇ ପଡିବ କି ଛାତ ଭୁସୁଡି ପଡିବ ତା'ର କ'ଣ ଠିକଣା ?

ମୁଁ ପଢାଘରେ ଏକୁଟିଆ । କବାଟ ଫିଟେଇଲେ ଖାଁ ଖାଁ ଦାଣ୍ଡ ପିଣ୍ଡା । ଘର କବାଟ ଭିତର ପଟୁ ବନ୍ଦ । ବାହାରେ ଅସୁମାରି ବର୍ଷା । ମୋର ଭାରି ଇଚ୍ଛା ହେଲା ସମସ୍ତଙ୍କ ପାଖରେ ଏଭଳି ଦୁର୍ଯୋଗ ବେଳେ ଏକାଠି ରହନ୍ତି । ମୋତେ ଡର ମାଡୁଥିଲା କହିଲେ ମୁଁ ରାଜି ହେବି ନାହିଁ କାରଣ କେତେ ଦୁଃସାହସିକ କାର୍ଯ୍ୟ ମୁଁ ନ କରିଛି ଭଲା । ତଥାପି ମୋତେ କେମିତି ଟିକିଏ ଅସହାୟ ଆଉ ଏକୁଟିଆ ନିଶ୍ଚୟ ଲାଗୁଥିଲା । ପ୍ରକୃତରେ ମୋତେ କିଞ୍ଚିତ ଡର ମାଡୁଥିଲା ବୋଲି କହିଦେଲେ ବି ଚଳିବ । ମୁଣ୍ଡ ଉପରେ ଛାତଟା ଗୋଟାଏ ଝୁଲନ୍ତା ବିପତ୍ତି ପରି ମଟମଟ ଡାକୁଥିଲା । ସେଇଟା କେବଳ ମୋ' ପାଇଁ ନୁହେଁ, ଘରର ସମସ୍ତଙ୍କ ପାଇଁ ଏକ ଆସନ୍ନ ବିପତ୍ତି ପରି ଝୁଲି ରହିଥିଲା । ପଡିଲେ ତ' ଜଣକ ମୁଣ୍ଡରେ ପଡିବ ନାହିଁ ନିଶ୍ଚୟ !

ହଠାତ୍ ମୋତେ ଦୃଶ୍ୟ ହେଲା ପରି ଲାଗିଲା । – ସେ ରାଢ ବୁଢା ମେଲା ଦେହରେ ଠିଆ ହେଇଚି । ତା' ଚନ୍ଦା ମୁଣ୍ଡରେ ଗୋଟିଏ ଶେଣୀ ଖସି ପଡୁଚି ବଜ୍ର ପରି । ଛତୁ ହେଇ ଯାଉଚି ସେ ଦୁଷ୍ଟଗ୍ରହ ! ସେ ହେଲେ ଆମ କକେଇ । ବାପାଙ୍କ ସାଙ୍ଗେ କୋଉ କାଳୁ ତାଙ୍କ କଜିଆ ଲାଗି ରହିଚି । ଆମକୁ ବାପା ତଳ ଘର ରନ୍ଧାଶାଳେ ବସେଇ କେତେ କଥା କହିଛନ୍ତି । କେମିତି ସେ

ହାଣମଙ୍ଗଳ ପାଇଁ ସାତ ପୁରୁଷି ଜମି ହାତି ଖାଇଗଲେ । ଧନ ସଂପତ୍ତି ଉଜୁଡି ଗଲା । କେମିତି ସେ ଅଣପୁରୁଷା ଆଣ୍ଠୁକୁଡା ମଲେ ଯାଇ ଘର ରକ୍ଷା ପାଇବ! – ଏ ବର୍ଷା ରାତିରେ ସେ କ'ଣ ଶୋଇଥିବେ ? ଥରେ ଚଡକ ପଡୁଥିଲେ ଭାଇର ମୁଣ୍ଡରେ ପଡୁ ବୋଲି ମନାସୁଥିବେ !

ଏଭଳି ଦୁର୍ଦ୍ଦିନରେ ସୁଦ୍ଧା ବୋଉ ବାପାଙ୍କୁ ଝିଙ୍ଗାସୁଥିବ । କଡି ବରଗା ପାଇଁ କାଠ କଟା ହୋଇ ଥୁଆ ହେଇଚି କେବେଠୁ । – ଛାତ ମରାମତି ହେଲେ କେତେ କହିଲି ଆମ ଫାଳକୁ କେବଳ ନୂଆ କାଠ ଲଗେଇ ଦିଅ! ଆର ଫାଳକ ଯାଉ ଖତରା ହେଇ; ତମର ସେଥିରେ କ'ଣ ଥାଏ ? ତମ ପରି ଡରୁଆ, ମାଇଚିଆ ସୃଷ୍ଟିରେ ନାହାନ୍ତି ପରା ! ତମେ ସେଇଟାକୁ କାଇଁ ଏତେ ଡରୁଚ ? ସେ କ'ଣ ତୁମକୁ ପୋଷୁଚି ? ବାପା ଏମିତି ଝିଙ୍ଗାସ ଖାଇଲା ବେଳେ ମୁଣ୍ଡ ପଛଟି କେବଳ କୁଣ୍ଡାନ୍ତି । ପାଟିରୁ ବଚନ ବାହାରେ ନାଇଁ । ଏତେ ବଡ ଘରର ମହତକୁ ତ ପୁଣି ଜଗିବାକୁ ହେବ ! ଏଇଟା ଏବକା କଥା ନୁହଁ । ବିଭା ହେଲା ଦିନଠୁ ଏହିପରି ଚାଲି ଆସିଚି । ଆମେ ଦେଖି ଆସିଚୁ । ଏବେ ତାଙ୍କ ଅବସ୍ଥା ଦେଖି ମତେ ଯେତିକି ଦୁଃଖ ହୁଏ, ତା' ଅପେକ୍ଷା ବେଶି ରାଗ ମାଡେ । କେମିତି ମରଦଟାଏ ମ'! ଗୋଟାଏ ରଡିରେ ତା' ପାଟିକୁ ଚୁପ୍ କରି ଦେଇ ପାରୁ ନାହାନ୍ତି । ଧେତ୍‌ତେରି !! ଅଥଚ ଆଉ ସମସ୍ତଙ୍କ ପାଖରେ ଅଣ୍ଡିରାପଣ ଦେଖଉଚନ୍ତି ଯେ କାହିଁରେ କ'ଣ ! ହୋଇପାରେ ସେ କୌଣସି କାରଣରୁ ବୋଉକୁ ଖୁବ୍ ଡରନ୍ତି । ସେମିତି ବୋଧେ ସେ ତାକୁ ଭଲ ପାଇ ଆସିଚନ୍ତି । – ଘରେ ଯେତେ କଜିଆ, କକେଇ ଘର ସାଙ୍ଗେ ଯେତେ ଗାଳି ଫଜିତ୍, ହାତାହାତି ସବୁ ସେଇ ଗୋଟିଏ ମଣିଷର ଉସ୍‌କାଣ ପାଇଁ । ସେ ମୁହୂର୍ତ୍ତକେ ମଣିଷଟାକୁ ତତେଇ ନିଆଁ କରି ଦେଇପାରେ । – ପୁଅମାନଙ୍କ ଭିତରେ ମତେ ସେ ସବୁଠୁ କମ୍ ଦେଖିପାରେ । ମୋ' ତଳ ଭାଇଟା ଗେହ୍ଲା । ଉପର ଭାଇ ରୋଜଗାରିଆ । ତାଙ୍କ ଦିହରେ ପବନ ବଜେଇ ଦିଏ ନାହିଁ । ଅଥଚ ମତେ ଯାବତୀୟ କାମରେ ଖଟାଏ । – ବୋଉଟା ସତେ ରାକ୍ଷୁଣୀଟାଏ । ଏ ବର୍ଷାରେ ସେ କ'ଣ କରୁଥିବ ବୋଲି ଭାବିଲି । ସେ ନିଶ୍ଚୟ ଆଲୁଅ ଜାଳି ଦେଇ ବାକ୍‌ସମାନଙ୍କ ଉପରେ ହାତ ବୁଲାଉଥିବ । କାଳେ ବର୍ଷା ପଡିଲେ ସେ ଭିତରର ମାଲ୍‌ଯାକ ଓଦା ହୋଇଯିବ ।

ମୋର ଖାଲି ମନ ହଉଥାଏ କେମିତି ଘର ଭିତରକୁ ଚାଲିଯାନ୍ତି । – ଗୁମୁଗୁମୁ ବର୍ଷା ଭିତରେ ଗୋଟାଏ ଚଡକ ମାରିଦେଲା । ମନେ ହେଲା ବିଜୁଳିଟା ଇଟାକାନ୍ଥ, କାଠ କବାଟ, ମଣିଷର ହାଡଚମ ପାରିହୋଇ ଭେଦିଗଲା କାହିଁ କୁଆଡେ । ସେ ଶବ୍ଦରେ ମୁଁ ଫୋପାଡି ହେଲାପରି ଶେଯରେ ବସି ପଡିଲି । କାନ ଯୋଡାକୁ ବନ୍ଦ କରୁ କରୁ କମ୍ପି ଉଠିଲା ଖଣ୍ଡମଣ୍ଡଳ । ଆମ ଘର ଉପରେ ବୋଧେ ବଜ୍ର ପଡିଗଲା । ଆଖି ଫିଟେଇ ଚାହିଁଲି । କିଟିକିଟି ଅନ୍ଧାର । ଝପଝପ ଅଜସ୍ର ବର୍ଷା ।

ମୋତେ କାନ୍ଥ ଆରପଟୁ ପିଲା କାନ୍ଦ ଶୁଭିଲା । ବୋଧେ ବୁନୁ କାନ୍ଦିଲା । ସେଇଟା ଭାଇନାର ବଖରା । ନିସ୍ତବ୍ଧ ରାତିରେ ସେଇଆଡୁ ପାଦଶବ୍ଦ ଶୁଭେ । କବ ଲେଉଟେଇବା ଶୁଭେ । ପିଲା କାନ୍ଦିବାର ଶୁଭେ – ଖୁବ୍ କ୍ଷୀଣ, କିନ୍ତୁ ପରିଷ୍କାର । ବୁନୁ ମୋର ଭାରି ପ୍ରିୟ । ମୁଁ ତାକୁ ଗେଲ କଲେ ଭାଉଜ ମତେ ଭଲପାଏ । ଅନେଇ ରହିଥାଏ । ପୁଅଟା ମୋରି ଭଳି ଦିଶୁଚି ବୋଲି ଥଟ୍ଟା କରେ ।

ସେ ବିଚରା କିନ୍ତୁ ବୋଉକୁ ଭୀଷଣ ଭୟ କରେ । – ତାକୁ କିଏ ଅବା ନ ଡରେ ? – ଭାଇନା ରୋଜଗାର କରି ଆଣୁଥିଲେ ସୁଦ୍ଧା କ'ଣ ଊଣା ଡରେ ? ଭାଉଜ ନାଁରେ ଥରେ ଭାଇନା ପାଖରେ ଆଉଥରେ ବାପାଙ୍କ ପାଖରେ ଫରିଆଦ୍ ହେବା ବୋଉର ଦୈନିକ ଅଭ୍ୟାସ । – ବଡଭାଗ ଦିନ କିନ୍ତୁ ଭାଉଜ ଆଉ ବୋଉ ବସି ଦି'ପହରେ ଜଣେ ଜଣକର ମୁଣ୍ଡ କୁଣ୍ଡାଇ ଦଉଥା'ନ୍ତି । ବଡ ଅଜବ ଏ ମାଇକିନିଆ ଜାତିଟା । ସେମାନେ ମୋଟ ଉପରେ ଚାହାନ୍ତି ଯେ ମରଦ ଗୁଡାକ ତାଙ୍କ ଆଙ୍ଗୁଠି ଅଗରେ ନାଚୁଥାନ୍ତୁ । ସେମାନେ ତାଙ୍କୁ ତତେଇ, ଉସ୍କେଇ ଯୁଦ୍ଧ ଲଗେଇ ଦିଅନ୍ତି । ତାଙ୍କ କଥା ଶୁଣିଦେଲେ ପୁରୁଷଙ୍କ ଭିତରେ ସିଂହ ପରାକ୍ରମ ଦେଖାଇବାକୁ ଇଚ୍ଛା ହୋଇଯାଏ ।... ସେଦିନ ମୁଁ ଫେରିଥାଏ ଖେଳ ପଡିଆରୁ । ଭାଉଜ ଛାନିଆ ହେଇ ଯେତେବେଳେ କହିଦେଲା ଯେ ବୁନୁ କେତେବେଳୁ କେଉଁଠି ମିଳୁନାହିଁ ଏବଂ କହୁକହୁ କାନ୍ଦି ପକେଇଲା, ମୁଁ କିଛି ନ ବୁଝି ଗୁଡାଏ ଧାଇଁଗଲି । ଇସ୍, ଭାଉଜ ଆଖିରେ ଲୁହ ଦେଖିଦେଲେ ପ୍ରାଣ ଛାଡିଗଲା ପରି ଲାଗେ । ସୃଷ୍ଟି ଟାଳିବି, କି ଆକାଶକୁ ଓଟାରି ଆଣିବି ମତେ କହ, କିନ୍ତୁ କାନ୍ଦ୍‌ନା... ।

ଏ ବର୍ଷା ବତାସୀ ଚଡଚଡିରେ ବୁନୁର ନିଦ ଭାଙ୍ଗି ଯାଇଥିଲା । ଭାଉଜ ବୋଧେ ଚାହୁଁଥିଲା ଛାତକୁ, ମଟମଟ ଡାକୁଥିବା କଡି ବର୍ଗା ବତାକୁ । ଯେତେ କହିଲେ କ'ଣ ହବ ? ସେମାନେ ଗୋଟିଏ ବଖରାରେ କାହିଁକି ଓ କେତେଦିନ ରହିବେ ? ଭାଇନା ତା' ନିଜ ନାଁରେ ଜାଗା କିଣିଲାଣି ବୋଲି ଶୁଣାଗଲା । ସେଦିନ ଘରେ ବୋଉର ପାଟିତୁଣ୍ଡ ଆଉ କଥା କଥାକେ ଭାଉଜର ନିନ୍ଦା । ...ସତେଇଶି ପୁରୁଷ ମାଟି । ତିନି ପୁରୁଷ ଘର । ସେ ଟୋକାକୁ ଭଲ ଗତି ଥିଲେ ସେ ମାଇପ ବୋଲରେ ଭିନେ ହେବାକୁ ମସୁଧା କରିଥାନ୍ତା ! ଏ ଛତରଖାଇ ଘର ଭଙ୍ଗେଇ ଯୋଗୁ ସବୁ ଅନର୍ଥ ।

ଦୁର୍‌ଦୁର୍ ବର୍ଷା ଛେଚୁଥିଲା ବେଳେ ଭାଉଜ ଉପରକୁ ଅନେଇ ବସିଥିବ । ଉପରୁ ଅଳନ୍ଧୁ ଖସୁଥିବ । ମଟମଟ ଡାକୁଥିବ ଚାଳ । ପୁରୁଣା ଛାତଟା ଯଦି ମତେଇ ହୋଇପଡେ ? ଭାଇନାଟା ନିଦ ଅଳସୁଆ । କ'ଣ କରୁଥିବ କେଜାଣି ! ସେ ତା' କାମରେ ବଦଳି ମାଗି ଚାଲି ଯାଉନାହିଁ କାହିଁକି କେଜାଣି ! –

ବେଳକୁ ବେଳ ଆହୁରି ତୋଫାନ ପାଗ ଦେଖେଇଲା । ଗର୍ଜିଲା ମେଘ । ସୁ ସୁ ପବନ ଝାଙ୍କିଦେଲା । ମତେ ଶୁଭିଲା ଚାରିଆଡ କବାଟ ଝରକା ସବୁ ବାଡେଇ ହେଲେ । ବହୁ ଦୂରରୁ ମୋ' ନାଁ ଧରି କିଏ ହୁଏତ ଡାକୁଥିଲା । ମୁଁ କାନ ଡେରି ଅପେକ୍ଷା କଲି । ବାପାଙ୍କ ସ୍ୱର ପରି ଶୁଭିଲା । ସେ ବୋଧେ ଡାକୁଥିଲେ । ଭାଇନା ସ୍ୱର ବି ଅବିକଳ ସେମିତି । ସେ କ'ଣ ଡାକୁଥିଲା ମତେ । ...ମୁଁ ନିଶ୍ୱାସ ରୋଧି ପୁଣି କାନେଇଲି । ପଢାଘର କବାଟରେ ଦୁମ୍ ଦୁମ୍ ବାଡେଇ ବାପା ଡାକ ପକେଇଲେ, "କିରେ ଲିଟୁ, ଉଠୁଚୁ ନା ନାଇଁ ! ଆ, ଚାଲିଆ ! ତତେ ବୋଉ ଡାକୁଚି ।"

ମତେ କେମିତି ବିହ୍ୱଳ ଲାଗିଲା ! ବୋଉ ଡାକୁଚି ! – ତା'ହେଲେ ମତେ ସେ ଭଲପାଏ ? – ମରିଯାଉ ବୋଲି ଚାହେଁନା ? ସେ ଦିନ କେମିତି ମେଘ ଟେକିଥିଲା ବେଳେ ରାତିରେ ଡାଲି ଆଣିବାକୁ ମତେ ପଠେଇଥିଲା ? ଡାଲି ନହେଲେ ଗେଲବସର ପୁଅ ଭାଲୁଆର ଗୁଣ୍ଡା ଉଠିବ

ନାଇଁ । କାଇଁ ତାକୁ ତ' ବାର ଚୌଦ ବର୍ଷ ହେଇ ଗଲାଣି । ସେ କ'ଣ ଯାଇ ପାରି ନଥାନ୍ତା !... ଆରେ ସେଇଟା ମେଣ୍ଟଡଟାଏ, କୋଡପୋଛାଟାଏ ! – ସେ କ'ଣ ତୋ' ଭଳି ପାରିବାର ହେଇଚି ! ତୁ' ଏବେ ଚହିଁଲେ, ଦିଲ୍ଲୀ ବୁଲିଦେଇ ଚାଲି ଆସିବୁ ଏକୁଟିଆ । ସେ କ'ଣ ପାରିବ ?...

"ଆରେ ମୁଁ ଏଠି ଓଦା ହୋଇଗଲି । କବାଟ ଫିଟା !"

ମୁଁ ତିଆଁମାରି କବାଟ ଫିଟଉ ଫିଟଉ ବାପା ଆଉ ପବନ ଏକାଠି ପେଲି ପଶି ଆସିଲେ ବଖରା ଭିତରକୁ । ଗୋଟାଏ ହାବୁକାରେ ମୋର ବିଛଣା ଚାଦର ଉଡିଗଲା । ମୋ' ଡେଣା ଧରି ବାପା ପବନକୁ ଆଡି ପଟେଇ ଟାଣି ନେଇଗଲେ ।

ମଡମଡ ଶବ୍ଦରେ କ'ଣଟାଏ ମଡେଇ ହେଇ ପଡିଲା । କମ୍ପି ଉଠିଲା ମୋ' ଭିତର । ମୁଁ ବାପା ପାଖକୁ ଲେସି ହେଲା ପରି ଘର ଭିତରକୁ ପଶିଗଲି । ଆଗ କାଳର ଗୋବବସା କବାଟଟାକୁ ଆମେ ଦୁଇ ଜଣ ଯାକ ସବୁ ବଳ ଖଟେଇ ଠେଲି ବନ୍ଦ କରିବାରେ ନୟାନ୍ତ ହୋଇଗଲୁ । ବଳକରି ଗେଡା ଲଗେଇ ଦେବାରୁ ହାତୀ ପରି ସେ କବାଟ ତେତେ ବଡ ତୋଫାନକୁ ସମ୍ଭାଳି ଠିଆ ରହିଗଲା ।

ଅଗଣାରେ ଆହୁରି ଶବ୍ଦ, ଆହୁରି ବର୍ଷା । ସେ ଯେଉଁ ବଖରାଟାରେ ଆମେ କବାଟ କିଳିଲୁ ସେଇଟା ଘରର ମଝି ବଖରା । ତାରି ଉପରେ ମେରଦା । ବାକି ବଖରା ସବୁ ସେମିତି । ମେରଦା ଉପରେ ବହୁକାଳର ପୁରୁଣା ପେଡି ପେଟରା କ'ଣ ସବୁ ଅଛି । ଗୋଟାଏ କୁଣକୁ ମାଟି ପିଣ୍ଡିଟାଏ । ସେଇଠି ଆମ ତିନି ପୁରୁଷଙ୍କ ଆତ୍ମା ଅଛନ୍ତି ବୋଲି ଆମକୁ କୁହାଯାଇଛି । ଆମ ଗୋସେଇଁମା ଥିଲାବେଳେ ତାକୁ ନିଃଶବ୍ଦ ରାତିରେ ମଣିଷଙ୍କ ପାଦଶବ୍ଦ, ଫିସ୍ ଫିସ୍ କଥାବାର୍ତ୍ତା, ଖଲଖଲ ହସ ଶୁଭୁଥିଲା ସେ ମେରଦା ଉପରୁ । ବୋଉ କହୁଥିଲା ଯେ ସେ ଗୁଡାକ ସବୁ ଚାଳିଆ ମୂଷା । ଏବେ କହିଲାଣି ଅନ୍ୟ ପ୍ରକାର ।

ସେଇ ତୋଫାନ୍ ବର୍ଷା ରାତିରେ ମେରଦା ତଳେ ଠିଆ ହେଲେ ଉପରୁ ସାତ ପୁରୁଷି ଆବୋରି ରଖିଛନ୍ତି ଭଳି ଲାଗିଲା । ତା'ରି ଭିତରେ ଗଛ ଭାଙ୍ଗି ପଡିବାର ଉପୁଡି ପଡିବାର ଶବ୍ଦ ଶୁଭୁଥାଏ । ଘର ଛାତ ମଡମଡ ହେଇ ହୁଏତ ମଡେଇ ହୋଇ ପଡୁଥାଏ । ମୁଁ ଦେଖିଲି ସେଇ ମେରଦା ଘରେ ସମସ୍ତେ ଆସି ଡରିଲା ପରି ଠିଆ ହେଇଛନ୍ତି । ବୋଉ, ଭାଇନା, ଭାଇନା, ଭାଉଜ ପିଲାମାନେ । ଭାଲୁଆ ବୋଉ ପାଖକୁ ଲାଗି କାନ୍ଥକୁ ଆଉଜିଗଲା । ସମସ୍ତେ ଶଙ୍କି ଯାଉଥାଉ । ଏତିକିବେଳେ ବାପା ହଠାତ୍ ଚମକିଲା ପରି କହିଲେ, "ଆରେ, ବଉଳିର କ'ଣ ହେଲା ?" – ବଉଳି ଆମ ସମସ୍ତଙ୍କର ଅତି ପ୍ରିୟ ପାଟଗାଇ । ବୁନୁ କହିଲା, "ଟମ୍ କାଇଁ ?" ଟମ୍ ତା' କୁକୁର ।

ସମସ୍ତେ ଶୁଣିଲେ । କେହି ଘୁଞ୍ଚିଲେ ନାହିଁ ।

ଶେଷରେ ମୁଁ ବାପାଙ୍କ ସାଙ୍ଗେ ଅଣ୍ଟାରେ ଗାମୁଛା ଭିଡି ବାହାରିଲି । ହାତରେ ଡିବି ଆଲୁଅ ଲିଭିଗଲା । ସେ କିଟିକିଟି ଅନ୍ଧାର ଭିତରେ ବିଜୁଳୀ ଚମକିଗଲେ ବାଟ ଦିଶି ଯାଉଥାଏ । ତା'ପରେ ଘମାଘୋଟ ଅନ୍ଧକାର ।... ଅଗଣା ବାଟେ ପାଣିରେ ତିନ୍ତି ଯାଇ ଗୁହାଳରେ ପହଞ୍ଚିଲୁ । ଗୁହାଳ

ଘର ଛାତ ଖଣ୍ଡ ଭିଡି ଯାଇଥିଲା । ବଉଳି ଖୁଣ୍ଟିରେ ବନ୍ଧାହୋଇ ମେଞ୍ଚାଟାଏ ହୋଇ ବର୍ଷା ମାଡ ସହୁଥିଲା । ବହୁ କଷ୍ଟରେ ଆମେ ତାକୁ ସେ ଅନ୍ଧାରରେ, ପାଣି କାଦୁଅରେ ପାହାଚ ଚଢ଼େଇ ସେଇ ବଖରାରେ ଆଣି ଠିଆ କରେଇଲୁ । ଆମ ଦିହରୁ, ଗାଈ ଦିହରୁ ପାଣି ନିଗିଡି ବଖରାର ଅଧେ ଓଦା ହୋଇଗଲା । ଟମ୍ ଆସିଲା ବୁନୁ ପାଖକୁ । ଉପରେ ଛାତ ଛପର ଭୁସ୍ ଭୁସ୍ କୁଢେଇ ହେଉଥାଏ । ଆମେ କଥା କହି ପାରୁ ନ ଥାଉ । ସମସ୍ତେ ଜାକିଜୁକି ହେଇ ଏକାଠି ଠିଆ ରହିଥାଉ । ଏକାଠି ସହୁଥାଉ ସେ ବିପତ୍ତିକୁ ।

ବୁନୁ ଭାଉଜ ପାଖରେ କାଖ ହେଇଥାଏ । କହିଲା, "ସାନ ଜେଜେ" ! ସତକୁ ସତ ମେରଦା ଦୁଆର ମୁହଁରେ କକେଇ; ତାଙ୍କ ପଛକୁ ଖୁଡି ଆସି ଥମ୍ ହୋଇ ଠିଆ ହୋଇଥା'ନ୍ତି । ଆମ ସମସ୍ତଙ୍କୁ ଦେଖି ଭିତରକୁ ଆସିବେ କି ନାହିଁ ସ୍ଥିର କରିପାରୁ ନଥା'ନ୍ତି । ବୁନୁ ଡାକରେ ସେ ଦୁହେଁ ପଶି ଆସିଲେ । ଖୁଡି ବୋଧେ କହିଲେ, "ଆମ ପାଖ ଛାତ ଉଡିଗଲା ।" ସମସ୍ତେ ଶୁଣିଲେ । ଉଁ କି ଚୁଁ କଲେ ନାହିଁ । ସେ ଦୁହେଁ ଆଉ କିଛି କହିଲେ ନାହିଁ । ବଉଳି ପଛପଟେ ଠିଆ ରହିଲେ । ଆମ ସମସ୍ତଙ୍କ ମୁଣ୍ଡ ଉପରେ ଶାଳପଟା ପରି ବାହୁ ବିସ୍ତାର କରି ସାତ ପୁରୁଷ ଘୋଡେଇ ହୋଇ ରହିଥିଲେ ।

ଆମେ ସମସ୍ତେ ଏକା ପରି ବିପନ୍ନ, ଏକା ପରି କାତର ଦିଶୁଥାଉ । ଗୋଟାଏ ପ୍ରଚଣ୍ଡ ଚଡକରେ ମେରଦା ଉପର ଛାତ ମଡେଇ ହେଇ ପଡିଲା । ଅଗଣା ପୋତି ହୋଇଗଲା ଛିନ୍ନଛତ୍ର କାଠ ବାଉଁଶରେ । ଆମେ ଭୟରେ ଯେ ଯାହାକୁ ପାଇଲୁ କୁଣ୍ଢେଇ ପକେଇଲୁ । ହାଉଳି ଖାଇ ସମସ୍ତେ ରଡି ଛାଡିଲୁ । ନିଭୃତ ଗୁମ୍ଫାପରି ସେ ବଖରା କମ୍ପିଗଲା ସିନା ସେମିତି ଠିଆ ହେଇ ରହିଲା । ତା' କାନ୍ଥ ସବୁ ପାହାଡ ପରି ପାତାଳକୁ ଭେଦି ଠିଆ ହେଲେ । ଉପରେ ଫାଳ ଫାଳ ଶାଳପଟା ହୋଇ ସାତ ପୁରୁଷ ଆତ୍ମା ଆବୋରି ରହିଲେ । ନିବାରମ କଲେ ଆକାଶରୁ ଛିଣ୍ଡି ପଡୁଥିବା ବିପତ୍ତିମାନଙ୍କୁ । ବିଜୁଳି ଚମକି ଯିବାରୁ ସମସ୍ତେ ଚମକି ଆଡ ହୋଇଗଲେ । ମୁଁ ବି ଚମକି ପଡିଲି ।

–

ଦେଖିଲି ଖୁଡି, ବୋଉ ଆଉ ଭାଉଜ ଏକାଠି ଧରାଧରି ହେଇ ସମ୍ଭାଳି ଯାଇଛନ୍ତି । ମୁଁ କକେଇକୁ ଜାବୁଡି ଧରିଥିଲି । ବାପା କୋଳେଇ ନେଇଥିଲେ ନାତି ନାତୁଣୀକୁ । ଭାଇନା ଧରି ପକେଇଥିଲା ବାପାକୁ । ଏମିତି ସବୁ ଜାକିଜୁକି ହେଇ ଯାଇଥିଲୁ । ଆଉଜି ଯାଇଥିଲୁ ପାଖରେ ଯେ ଥିଲା ତା' ଉପରକୁ । ବିଜୁଳି ମାରିବାବେଳେ ବିଜୁଳି ବେଗରେ ତା'ପରେ ତୁହାଇ ତୁହାଇ ମାଇକିନେ କେବଳ କାନ୍ଦିଲେ । ମରଦମାନେ ସ୍ଥାଣୁ ହେଲା ପରି ଠିଆ ହେଇ ରହିଲେ ।

ବାହାରେ, ଉପରେ, ଘରିଆଡେ ବର୍ଷା ବିଜୁଳି ସେମିତି ଛେଚୁଥିଲା ।

ତା' ଆରଦିନ ସକାଳ ବି ସତେ ଭାରି ଅଦ୍ଭୁତ ! ସେମିତି ପାଚିଲା ଖରା ମୁଁ ଏ ଯାଏଁ ଦେଖିନାହିଁ । ଆକାଶରେ ମେଘର ଚିହ୍ନ ନ ଥାଏ । ସବୁ କିଛି ଧ୍ୱଂସ ହୋଇ ଯାଇଥାଏ ରାତିକ ଭିତରେ । ସେଇ ସ୍ୱଚ୍ଛ ସକାଳଠୁ ସେଇ ଗୋଟିଏ ମାତ୍ର ମେରଦା ବଖରାରେ ଏକାଠି ସମସ୍ତଙ୍କ

ପାଇଁ ଭାତ ରନ୍ଧା ହେଲା । ବାପା ଜକେଇ ଏକାଠି ବାହାରିଲେ ଭଙ୍ଗା ଘର ସଜାଡିବାକୁ । ଆମେ ସମସ୍ତେ ଲାଗିଗଲୁ । ଭଙ୍ଗା ଘରକୁ ଗଢ଼ିଦେଲେ ଆମ ଭିତରର ଭଙ୍ଗା ମନ କାହିଁ କୁଆଡେ ଲୁଚି ଯାଉଥିଲା ।

ମାସେ କାଳ କାହାକୁ ତର ନଥାଏ । ଦିନ ସାରା ଖଟିଖଟି ରାତିରେ ସେଇ ମେରଦା ଘରେ ମୁନ୍ଦୁରା ପକେଇ ସମସ୍ତେ ଗଡି ପଡୁଥିଲୁ । ମତେ ଲାଗୁଥିଲା ଯେ ସେମିତି ଏକାଠି ଲଢିଲେ ଆମେ ସାରା ସଂସାରଟାକୁ ସଜାଡି ଦେଇଥାନ୍ତୁ । ମେରଦା କାନ୍ଥକୁ ଲାଗି ବାକ୍ସ ପତ୍ର ପେଡି ପେଟେରା ଧାଡି ଧାଡି ରଖା ହେଇଥାଏ । ମେଲା ପିଣ୍ଡାରେ ରୋଷଶାଳ । ବୋଉ ପରିବା କାଟିଲେ, ଖୁଡି ବେସର ବାଟୁଥା'ନ୍ତି; ଭାଉଜ ଭାତହାଣ୍ଡି ଓହ୍ଲେଇ ଆଣୁଥାଏ । ନଡା ଛାତ କରି ବଉଳିକୁ ରଖା ହୋଇଥାଏ । ନୂଆ କଡି ବରଗା ଆସିଲା । ନୂଆ ଛପର ଆସିଲା । ଲୋକ ଲାଗିଲେ । ଛାତ ସଶକ୍ତ ହେଇ ବନ୍ଧା ହେଲା । ସବୁ ବଖରା ଝଡାଝଡି ସଜାସଡି ହେଇଗଲା । ସୁନ୍ଦର ଦିଶିଲା ଏବଂ ଏଇ ସଜେଇବା ବେଳେ ସମୟ ପାଇ ମୁଁ ତୁଳି ଧରି ଆଙ୍କିଥିଲି ଗୋଟିଏ ଖୁବ୍ ବଡ ଫୁଟିଲା ପଦ୍ମ । ବୁନୁ ଦେଖି ଖୁସି ହେଇ ଯାଇଥିଲା ।

ଆଜି ଜାଣି ଯେ ଯାହା ବଖରାରେ ଶୋଇବେ । କିନ୍ତୁ ଆଜିହିଁ ସକାଳଟାରୁ ଲାଗିଗଲା କଜିଆ ପାଟିତୁଣ୍ଡ । ବଚସାରେ ଛାତ ଖଣ୍ଡ ଭୁସୁଡି ପଡିଥାନ୍ତା । ପୁଣି ବାପା ଜକେଇ ଉଚ୍ଚବାଚ ହେଇ ଅଲଗା ହେଇଗଲେ । ବୋଉ ଖୁଡି ଲଢିଗଲେ ସମସ୍ତଙ୍କ ଆଗରେ । ଭାଉଜକୁ ବୋଉ କଥାରେ ଭାଇନା ପିଟି ଦେଇ ଗଲା । ପିଲାଏ ରଡି ଛାଡିଲେ । ମୋତେ ଖେଙ୍କି ଆସିବାରୁ ମୁଁ ଆସି ପୁଣି ଦାଣ୍ଡ ପିଣ୍ଡାର ସେଇ ପଡାଘରେ ବସିଚି । ମୋ' ଭିତରେ ଖିନ୍‌ଭିନ୍ ହେଇଗଲା ପରି ଲାଗୁଚି । ମୋତେ ଭୋକ କରୁଚି ସକାଳୁ । ...ଏମିତି କ'ଣ ସବୁ ହେଇଗଲା ପୁଣି ?

ମୋତେ କାନ୍ଦ ମାଡିଲାରୁ ମୁହଁ ଘୋଡେଇ ମୁଁ ଟେବୁଲ ପାଖରେ କାନ୍ଦିଛି । ରାଗରେ ନିଆଁ ଜଳି ଉଠୁଚି ମୋ' ଭିତରୁ । ମୁଁ କେବେ ପ୍ରାର୍ଥନା କରେ ନାହିଁ । ଏଇନା ଆଣ୍ଠୁ ମାଡି କରଯୋଡି ଡାକୁଚି, "କେହି ଯଦି ଉପରେ ଅଛି, ସେ ପୁଣିଥରେ ଗର୍ଜି ଉଠୁ! ଅଜାଡି ଦେଉ ବିପତ୍ତି । ଉଡିଯାଉ ଏ ଛାତ । ସାତ ପୁରୁଷି ମେରଦା ଭାଙ୍ଗିଯାଉ! ଆମକୁ ବିପନ୍ନ କର, ପ୍ରଭୁ, କାତର କର, ମଣିଷ କର !"



# ଅରିନ୍ଦମର ଗଳ୍ପ

ପ୍ରଥମ ସର୍ତ୍ତ ହେଲା, ଅରିନ୍ଦମ କିଏ ବୋଲି ଆପଣ ଜାଣିବାକୁ ଚାହିଁବେ ନାହିଁ ।

ମୁଁ ବି ଜାଣେ ନାହିଁ ସେ କିଏ । ସେ ତା' ଗଳ୍ପ ସାଙ୍ଗରେ ନିଜର କୌଣସି ବିବରଣୀ ମୋ' ପାଖକୁ ପଠଇ ନାହିଁ । ଚିଠିଟିଏ ଦେଇଛି – ଖୁବ୍ ଛୋଟ; ଯାହା ପଢ଼ିଲେ ତା' ବିଷୟରେ କିଛି ଜାଣି ହେଉନାହିଁ ।

ଆପଣ ନିଜେ ଦେଖନ୍ତୁ – "ରଥ ମହାଶୟ, ପାଞ୍ଚଜଣଙ୍କୁ ନେଇ ଧର୍ମଗୁଳା ପକେଇଲି । ଆପଣଙ୍କ ନାଁ ବାହାରିଲା । ସେଥିପାଇଁ ଏସବୁ ଆପଣଙ୍କ ଠିକଣାରେ ପଠାଇଦେଉଛି । ଆପଣ ଜଣେ ହିଁ ପଢ଼ିଲେ ମୋ' ପାଇଁ ଯଥେଷ୍ଟ । ତା'ପରେ ଆପଣ ଯାକୁ ଜାଳିଦିଅନ୍ତୁ, ମୋର ଆପତ୍ତି ନାହିଁ ।"

ମୁଁ କାହିଁକି ଯାକୁ ଲେଖିଲି ବା ନଲେଖି ରହିପାରିଲି ନାହିଁ, ସେ କଥା କହିବି ନାହିଁ । ଆପଣ ବଳେ ବୁଝିଯିବେ । ମୋତେ ଠାବ କରିବାକୁ ଆପଣଙ୍କ ଇଚ୍ଛା ହେବ, ମୁଁ ଜାଣେ । ଆଦୌ ସେପରି ଚେଷ୍ଟା କରିବେ ନାହିଁ । ଦୁର୍ଭେଦ୍ୟ ପାଚେରି ଭିତରେ ଉଞ୍ଚ ଉଞ୍ଚ କୋଠା । ସେମାନଙ୍କର ପ୍ରଗାଢ଼ ପ୍ରକାଣ୍ଡ ଛାଇରେ ହଜିଯାଇଥିବା ଗୋଟେ ମଣିଷର ଛାଇକୁ କାହିଁକି ଖୋଜିବେ ?

ଇତି ॥ ଅରନ୍ଦିମ ॥"

ଗୋଟିଏ ହାତରେ ତା' ଚିଠି, ଅନ୍ୟ ହାତରେ ତା' ଚିଠି, ଅନ୍ୟ ହାତରେ ତା'ର ପାଣ୍ଡୁଲିପି ଧରି ମୁଁ କିଛି ସମୟ ଶୂନ୍ୟକୁ ଚାହିଁ ଠିଆ ରହିଲି । ଫଳରେ ଅରିନ୍ଦମ, ଅରିନ୍ଦମ ନାମ ଉଚ୍ଚାରିତ ହେଲା ପରି ବୋଧକଲି – ଯେପରି ଖୁବ୍ ଦୂର୍‌ରୁ ସାନ୍ଧ୍ୟ ଆକାଶରୁ କିଏ ସେ ନାଁ ଧରି ଡାକୁଛି । ଅସ୍ଥିର ପାଣିବିମ୍ବ ପରି ନାନା ରୂପସବୁ ଦିଶୁ ଦିଶୁ ଲିଭି ଲିଭି ଗଲେ ।

ମୁଁ ମୋ' ବାଡ଼ିରେ ଥିବା ଚମ୍ପା ଗଛମୂଳେ ବସି ପାଣ୍ଡୁଲିପିଟି ଖୋଲିଲି । ଘର ଭିତରକୁ ଯିବାକୁ ସତେବା ବେଳ ନଥିଲା । ବଡ ବଡ ସ୍ପଷ୍ଟ ଅକ୍ଷର; କିନ୍ତୁ ପରୀକ୍ଷା ଖାତାରେ ସମୟ ସରିଗଲାବେଳେ ତରବର ଲେଖିଲା ପରି ଗୋଟାଏ ଉଦ୍‌ବେଗ ସେ ଅକ୍ଷରମାନଙ୍କରେ ମୋତେ ଅନୁଭବ ହେଲା । ଅରିନ୍ଦମ ହୁଏତ ରାତି ଅଧବେଳେ କୋଉଠି ଲୁଚି ଲୁଚି ତାକୁ ଲେଖିଥିଲା । ଚାରିଆଡ଼କୁ ଚାହୁଁଥିଲା । ଘଣ୍ଟାକୁ ଅନଉଥିଲା । କାନ ଡେରି ରଖିଥିଲା ପାଦଶବ୍ଦକୁ, ଝର୍କାବାଟେ ସାଇଁସାଇଁ ପଶିଆସୁଥିଲା ପବନକୁ ।

ସନ୍ଧ୍ୟାରେ ଲିଭିଆସୁଥିବା ଆଲୁଅରେ ମୁଁ ପଢ଼ିଗଲି – ଗଳ୍ପ ତ ନୁହେଁ, କାଠଗଡ଼ାରେ ସତ୍ୟପାଠ କରି ଠିଆ ହୋଇ ଅରିନ୍ଦମ ଜମାନବନ୍ଦି ଦେଉଛି, ଆପଣଙ୍କ ଇଜାଲାସରେ ।

ଯେଉଁ ଯୁକ୍ତିରେ ଅରିନ୍ଦମ ମୋ' ପାଖକୁ ତା' ବୟାନ ପଠାଇଦେଲା, ପ୍ରାୟ ସେଇ ଯୁକ୍ତିରେ ମୁଁ ସର୍ବସାଧାରଣରେ ପ୍ରକାଶ କରିଦେଉଛ ବା ପ୍ରକାଶ କରିବାକୁ ବାଧ ହେଉଛି ଏ ବୟାନ ।

ନିଆଁକୁ ଅଣ୍ଟିରେ ପୂରେଇ ରଖିଦେବ ନାହିଁ । ଅଣ୍ଟି ଜଳିଯିବ । ସେଥିପାଇଁ ମୁଁ ଆପଣଙ୍କ ଭିତ ଭିତରକୁ ପକେଇଦେଉଛି, ଏଇ ଭରସାରେ ଯେ କଞ୍ଚା କାଠରେ ସହଜେ ନିଆଁ ଧରିବ ନାହିଁ । ଯଦି କେଉଁଠି ଦୈବାତ୍ ଧରିଯାଏ, ମୁଁ ଜାଣେ, ଆପଣ ମୋ' ଆଡକୁ ମାଡିଆସିବେ । ମୋତେ ଧରିନେବେ ।

ମୁଁ କିନ୍ତୁ ଅରନ୍ଦିମକୁ ଧରିପାରୁନାହିଁ । ସେଥିପାଇଁ ମୁଁ ତା' ବୟାନ ଆପଣଙ୍କୁ ଅବିକଳ ପେଶ୍ କରିଦେଉଛି । ଦେଶକାଳପାତ୍ର ଉହ୍ୟ ରଖୁଛି । ଆପଣ ବୁଝି ପାରିବେ ନାହିଁକି ! ତଥାପି ଯଦି ଆପଣ କଟାଳ କରନ୍ତି ଅରିନ୍ଦମକୁ ଠାବ କରିବାକୁ, ମୁଁ ଯେକୌଣସି ଦିଗରେ ଆଙ୍ଗୁଠି ଟେକି କହିଦେଇପାରେ 'ଏଇ ଅରିନ୍ଦମ' ।

ଆପଣ ହାତ ବଢେଇଲେ ସେ ଉଭାନ ହୋଇଯିବ । ଆପଣ କେବଳ ପରସ୍ପରକୁ ହାବୁଡିବେ । ମୋର ବିଶ୍ୱାସ, ଆପଣ ସେପରି କିଛି କରିବାକୁ କଦାପି ଚାହିଁବେ ନାହିଁ ।

ତା' ଲେଖାକୁ ସେ କୌଣସି ନାଁ ଦେଇନାହିଁ । ସେଥିପାଇଁ ମୁହଁ ମୁଣ୍ଡ ନଥିବା ଶବକୁ ସନାକ୍ତ କଲାଭଳି ନାଁଟାଏ ରଖୁଚି ଅରିନ୍ଦମର ଗଳ୍ପ ! ଏଣିକି ଶୁଣନ୍ତୁ ତା' ନିଜ କଥା –

"ସେ ମୋ' ଘରକୁ ଆସିବା କଥା ନୁହେଁ । ମୋ' ଠିକଣା ତାକୁ କିଏ ଦେଇଦେଲା କେଜାଣି ? କୋଉ ଗୋଟିଏ ନିମକହାରାମ ଦେଇଥିବ । ସେ ମାନେଜେରିରେ କୋଉ ଜନ୍ତୁର ଅଭାବ କି ?"

ବର୍ଷା-ରାତିରେ ଗେଟ୍ ଫିଟିବାର ଶବ୍ଦ ଶୁଣି ଝରକାବାଟେ ଓହଟି ଚାହିଁଲି । ରାସ୍ତା ଆଲୁଅ ଓଦା କଳାରଙ୍ଗର ବର୍ଷାତି ଉପରେ ଚିକ୍‌ଚିକ୍ କରୁଥିଲା । କଳା ଜାଗୁଆରକୁ ଚିହ୍ନିବାରେ ଅସୁବିଧା ନଥିଲା । ମୁଁ ବିଜୁଳିବେଗରେ ଟେବୁଲରୁ କାଗଜପତ୍ର ସାଉଁଟି ଡ୍ରୟର ଭିତରେ ମାଡିଦେଲି । ବହିଟାଏ ଫିଟାଇଦେଲି ଟେବୁଲ ଉପରେ । ଭାବିଲି, ଲୁଚିଯିବି । ସାନପୁଅ କହିଦେବ ମୁଁ ଘରେ ନାହିଁ ବୋଲି । ମୋ' ଦିମାଗ୍ ଅପେକ୍ଷା ତା'ର ପାହୁଣ୍ଡ ଆହୁରି ଚଞ୍ଚଳ କାମ କରିଗଲା । ମୁଁ ଚୌକିରୁ ଘୁଞ୍ଚିବା ପୂର୍ବରୁ ସେ ଦୁଆରମୁହଁରେ ଠିଆ ହୋଇଯାଇଥିଲା ।

ଜାଗୁଆରର ନଖ ପଞ୍ଝା ଦାନ୍ତ ତା' ମୁଣ୍ଡା ମାନଙ୍କରେ ଲୁଚି ରହିଥିଲା । ମୁହୂର୍ତ୍ତକରେ ସେ ହିଂସ୍ର ହୋଇପାରେ । ମୁହୂର୍ତ୍ତକରେ କାହାକୁ ହେଲେ ଭିଣି ଦେଇପାରେ ।

ଏମିତି କିନ୍ତୁ ସେ ଆମ ମନ୍ତ୍ରୀଙ୍କ ପାଖ ଲୋକ । ସାଇବଙ୍କ ଜାଗୁଆର । ଏକା ଦପ୍ତରରେ ମୋର ସହକର୍ମୀ । ନାଁ...ସିଂ ।

ସେ ସଟ୍‌କିନା ଭିତର ମୁଣାରୁ ହାତ କାଢିଆଣିଲା । ମୁଁ ଭାବିଲି ଛୁରୀଟାଏ – ସେଇଟା କିନ୍ତୁ ଚିଠିଟାଏ । ଓଦା ଓଢଣା ତଳୁ ମତେ ଚାହିଁଲା କଟମଟ । ଦାନ୍ତସନ୍ଧାରୁ କହିଲା – 'କାମ ଏଇଭଳି ହବ ।' ଚିଠିଟା ଫୋପାଡିଦେଲା ଟେବୁଲରୁ ।

ମୁଁ ଆଖି ଫେରାଇଆଣିବା ଭିତରେ ତା' ହାତରେ ଆଉ ଗୋଟିଏ ପାକେଟ । ତାକୁ ମଧ୍ୟ ସେ ଟେବୁଲକୁ ପକେଇ ଦେଇ ବୁଲି ପଡିଲା । କିଛି କହିବା ପ୍ରୟୋଜନ ମଣିଲା ନାହିଁ । ବୁଲିପଡି ଚାଲିଗଲା ।

ଚଟାଣରେ କାଦୁଆ ପାଦଚିହ୍ନ ଝରିପଟେ ନିଗିଡା ପାଣି ।

ଟେବୁଲ ଉପରେ ମୋର ଭାଗ୍ୟ ଓ ବିବଶତା ।

କଟା ପାପୁଲି ପରି ସାନ ମୁଣା ଭିତରୁ ଉଛୁଳି ଦିଶୁଥିବା ପଚାଶ ଟଙ୍କିଆ ନୋଟବିଡା ଥଡ୍‌କିନା ପଡିଲାବେଳେ ମୋ' ଛାତିରେ ପବନ ଅଟକିଗଲା । ବୁକୁ ଦାଉଁଦାଉଁ ହେଲା । ବିଛାଟାଏ ଚଢିଆସିଲା ପାଦ ତଳିପାରୁ ଗୁହ୍ୟଦ୍ୱାର ଯାଏଁ ।

ମୋ ଆତ୍ମାଟି କୋଉକାଲୁ ମେଣ୍ଢାଛୁଆ ପରି ଭିଡିହଉଚି ବଳିପଡିବ ନାହିଁ ବୋଲି । ମୁଁ ବି କହୁଛି – ଥୟ ଧର, ତୋ' ବେଳା ଆଉରି ଆସିନାହିଁ ।

ଏବେ ତା' ହାତ ବିକିଦେବି; କରିବାକୁ ନାହିଁ ସେ କରିବ ନାହିଁ । ପାଦ ବିକିଦେବି; ଯିବାକୁ ନାହିଁ ସେ କରିବ ନାହିଁ । ଜିଭ ବିକିଦେବି, କହିବାକୁ ନାହିଁ ସେ କରିବ ନାହିଁ । ଆଖି ଦେଖି ଦେଖିବ ନାହିଁ । କାନ ଶୁଣି ଶୁଣିବ ନାହିଁ । ଯାର ପୁଣି ପାଲଟା ବେପାର ଅଛି – ଆଖି ଯାହା ଦେଖିନାହିଁ ତା' ଦେଖିଛି ବୋଲି କହିବ । କାନ ଯାହା ଶୁଣିନାହିଁ ତା' ଶୁଣିଛି ବୋଲି କହିବ । ଜିଭ, ହାତ, ପାଦ – ସବୁ ବାରମ୍ବାର ବିକ୍ରି ହେଉଥିବେ । ଏମିତି ଝାଳରେ ମୂତରେ ଛେପରେ ଓଦା ନୋଟ୍‌ବିଡା ଜମାହଉଥିବ ଥାକ ଥାକ ।

ସେଇଟା ମୋ' ଭାଗ୍ୟ କି ବିବଶତା ମୁଁ ଜାଣେ ନାହିଁ । ବେଳ ନାହିଁ । ପ୍ରୟୋଜନ ନାହିଁ ଜାଣିବାକୁ ।

ହାତରେ ରକ୍ତ ଲାଗିଲେ ପୋଛିଦେଇଛି । ଲୁହ ଲାଗିଲେ ପୋଛିଦେଇଛି ।

ପନ୍ଦର ବର୍ଷ ତଳର ସେ ଘଟଣା କଥା କହେ । ସେଇଟା ମୋର ଦୀକ୍ଷାଗ୍ରହଣ ।

ମୁଁ ସେ ନୋଟବିଡାକୁ ଆଉ ସେ ଚିଠିକୁ ଚାହିଁ ରହି ବସିଥାଏ । ଡ୍ରୟର ଖୋଲି କାଗଜଯାକ ବାହାର କରିବାର ହିମ୍ମତ ନଥାଏ । ଭେଜାଲ ଔଷଧ ଖାଇ ପଚାଶ ଲୋକ ମରିଯିବା ପରେ "ଲାଲ୍" କମ୍ପାନୀ ନାଁରେ ତଦନ୍ତ କମିଶନ ବସିବ । ସେଥିପାଇଁ ବିଭାଗୀୟ ରିପୋର୍ଟ ମୁଁ ପ୍ରସ୍ତୁତ କରୁଥାଏ ।

ମୁଁ ଜାଣେ, 'ଲାଲ୍'କୁ ଦୋଷୀ ସାବ୍ୟସ୍ତ କରିବା ପାଇଁ କୌଣସି ତଥ୍ୟର ଅଭାବ ନାହିଁ । ମୁଁ ନିଜେ ଦେଖି ଆସିଛି । ଦାମୀ କମ୍ପାନୀର ନକଲ ଯେଉଁ ଗମ୍ଭୀରା ଭିତରେ ହୁଏ, ମୁଁ ଦୈବାତ୍ ସେ ଭିତରେ ପଶିଗଲି ।

ସେମାନେ କହିଲେ – ସେଇଟା ଗୋଦାମ ।

ମୁଁ 'ଆଚ୍ଛା ଆଚ୍ଛା' କହି ସାଙ୍ଗେ ସାଙ୍ଗେ ବାହାରିଆସିଥିଲି । ନିଜେ ମାଲିକ 'ଲାଲ୍' ମୋତେ ତା' ବୈଠକଘରକୁ ପାଛୋଟି ନେଇଥିଲେ ।

ଅଳ୍ପ କଥାରେ ସେ ମୋତେ ଜାଣିଗଲା । ମୁଁ ବି ତାକୁ ଜାଣିଗଲି । ତା' ପରଦିନ ଶୁଣିଲି, ସେ ଗୋଦାମକୁ ପଶି କେହି ଜିଅନ୍ତା ଫେରିନାହିଁ । ଓପରଓଳି ସାଇବ ଡକେଇଲେ ।

"କ'ଣ ଅରିନ୍ଦମ! ଯାଇଥିଲ ? 'ଲାଲ୍' ଔଷଧ କାରଖାନାରେ କ'ଣ ସବୁ ହେଉଚି, ସରକାର ପ୍ରଥମେ ଜାଣିବାକୁ ଚାହୁଁଛନ୍ତି ।"

କାଚ ପେପରଓ୍ୱେଟ୍‌କୁ ହାତରେ ଖେଳାଇ ମୋତେ ଆଡଆଖିରେ ହସି ଚାହିଁଲେ, "ତୁମଭଳି ସଚ୍ଚୋଟ ଅଫିସର ଆଉ କାହିଁ ? 'ଲାଲ୍' ଭାବିଛି ସେ ମନ୍ତ୍ରୀଙ୍କ ଭିତର ମହଲ ଲୋକ ବୋଲି ଖସିଯିବ ? ହେଁ, ହେଁ, ହେଁ ।"

ମୁଁ ସାଇବଙ୍କୁ ଏମିତି ହସିବାର ଦେଖି ନଥିଲି । ମୋ' ନାଡା ସାଙ୍କୁଡି ଗଲା । ପାଦତଳ ଶିରଶିର କଲା ।

ସାଇବ କହିଲେ, "ମନ୍ତ୍ରୀ ତୁମ ଉପରେ ଭାରି ଖୁସି । ଏଇଠୁ ଗଲାବେଳେ ଟିକିଏ ଦେଖାକରିନେବ ।"

ମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟାରୀ ମୋତେ ଗମ୍ଭୀର ହୋଇ ଚାହିଁଲେ, "ଓ, ଅରିନ୍ଦମ ବାବୁ! ଟିକିଏ କିନ୍ତୁ ମୁଁ ସାର୍‌ଙ୍କୁ ଖବର ଦିଏ ।" ପାଞ୍ଚ ମିନିଟ ଭିତରେ ମନ୍ତ୍ରୀଙ୍କ ଖାସ୍ କାମେରାରୁ ସମସ୍ତେ ବାହାରି ଆସିଲେ ।

"ଯାଆନ୍ତୁ ଅରିନ୍ଦମ ବାବୁ! ସାର୍ ଅପେକ୍ଷା କରିଛନ୍ତି ।"

ମୋତେ ପାଛୋଟିବାକୁ ମନ୍ତ୍ରୀ ଠିଆହୋଇପଡିଲେ । ସେକ୍ରେଟେରୀଙ୍କୁ କହିଲେ – "ଆରେ, ଅରିନ୍ଦମ ବାବୁ ପ୍ରଥମ ଥର ପାଇଁ ଆସିଛନ୍ତି; କ'ଣ ଟିକିଏ ବ୍ୟବସ୍ଥା କର । ବସନ୍ତୁ ଅରିନ୍ଦମ ବାବୁ!"

"ଆଉ କ'ଣ ସବୁ ଚାଲିଛି ? ଆପଣଙ୍କ ଦୁଇ ପୁଅ ଭାରି ବ୍ରିଲିଆଣ୍ଟ । ତାଙ୍କୁ ଦିଲ୍ଲୀରେ ପଢାନ୍ତୁ । ସେମାନେ ଆମ ରାଜ୍ୟର ଗୌରବ । ସେଥିପାଇଁ ଯାହା ପଇସା ପଡିବ ଯୋଗାଡ କରିଦବା ।"

ପାନଖଣ୍ଡି ଡବାରୁ କାଢି ପାଟିରେ ପୁରେଇଲେ । ଗୁଆକୁ ଦାନ୍ତେଇ ରସିକତା କରି କହିଲେ – ଆପଣଙ୍କ ଝିଅ ତ ନାହିଁ-ନ-ଥିବା ସୁନ୍ଦରୀ!

ମୋ ହାତ ମୁଠା ମୁଠା ହୋଇଗଲା । ଭୃରୁ କୁଞ୍ଚେଇଯିବା ଦେଖି ସେ ସୁର ବଦଳେଇଦେଲେ । "ମାନେ, ଆପଣ ଅଭିଜାତ ଘରେ ବାହା ହେଇଛନ୍ତି । ମା'ର ରୂପ ଗୁଣ ତା' ଝିଅ ପାଇବ । ଆପଣ କେବେ ପିଲାଙ୍କୁ ନେଇ ଆମ ଆଡେ ଆସନ୍ତୁ । ସୁବିଧା ଦେଖି ଆମେ ମଧ ଆସିବା ।"

"ମୁଁ ଆପଣଙ୍କୁ ଆଉ ଗୋଟିଏ କଥା କହିବାକୁ ଡକେଇଛି । ସେ ଯେଉଁ 'ଲାଲ୍ ଔଷଧ ବେପାରୀ' ସେ ଲୋକଟା ମନ୍ଦ ନୁହେଁ । ସେ ପରା ଆମ ବଡଭଉଣୀଙ୍କ ସାନ ଦିଅର । ମୁଁ ତାକୁ

ଜାଣେ । ସେ ଭାରି ସରଳ । ଆଉ କିଏ ଭେଜାଲ ଔଷଧ ଆଣି ମିଶାଇଦେଇଛି; ତା' ମୁଣ୍ଡରେ ଅଠା ବୋଳିଦେଇ ନିଶ୍ଚିନ୍ତ ବସିଛି । ସେ କ'ଣ ଆପଣଙ୍କ ଆଖିରେ ଧୂଳି ଦେଇ ପାରିବ ? ଆପଣ ସେଇ ସତ୍ୟକୁ ବାହାର କରନ୍ତୁ । ଆପଣଙ୍କ ରିପୋର୍ଟ ଉପରେ ତଦନ୍ତ କମିଶନ ବସିବ – ବୁଝୁଛନ୍ତି ନା ନାହିଁ ?"

ସେ ପୁଣି ଉଠି ଠିଆହୋଇ କରମର୍ଦ୍ଦନ କଲେ । କଇଁନାଡ ପରି ମୋ' ହାତରେ ଜିଅ ନ ଥିଲା ।

ସେଇ ଦିନ ରାତିରେ ଜାଗୁଆର ଆସିଥିଲା । ମୁଁ ରିପୋର୍ଟ ପରିବର୍ତ୍ତେ ଏକ ନିବନ୍ଧ ରଚନା କଲି । ସେଥିରେ କେବଳ ଭେଜାଲ ଔଷଧର ଭୟାବହ ପରିଣାମ ବର୍ଣ୍ଣନା କଲି ।

'ଲାଲ୍'କୁ ଦାୟିତ୍ୱମୁକ୍ତ କରିଦେଲି ।

ମୋ ହାତ ଯାହା ଲେଖିଥିଲା ସେ ସବୁ ବାଦ୍ ପଡିଗଲା । ସେମାନେ ପାଞ୍ଚହଜାର ଟଙ୍କାରେ ମୋ' ପାପୁଲିଟାକୁ କିଣିନେଲେ । ପାଣିରେ ଘର କରି କୁମ୍ଭୀରକୁ ନ ଡରିବି କେମିତି ? ସାହେବ ମୋତେ କ୍ଲବ୍‌ରେ ମେମ୍ବର କରିବାକୁ ଖୁବ୍ ପ୍ରବର୍ତ୍ତାଇଲେ । ମୁଁ ଟାଳି ଗଲି । ମୁଁ ଜାଣୁଥିଲି ସେ ହାରାମଜାଦାର ଆଖି କୋଉଠି ।

'ଅରନ୍ଦମ! ତୁମ ପ୍ରମୋଶନ ଫାଇଲ ଆସିଛି । ତୁମେ ବଡ ଅଫିସର ହବ ନା ନାହିଁ ? ତମର ତ' ମଫ ଗୁଣ ଆଉରି ଗଲାନାହିଁ । ଏ ମାସ ଦଶ ତାରିଖରେ କ୍ଲବ୍‌ରେ ବାର୍ଷିକ ଉତ୍ସବ ଡିନର୍ ହବ । ପିଲାଙ୍କୁ ନେଇ ଆସିବ ମୋ' ଗେଷ୍ଟ ହିସାବରେ ।' ମନ୍ତ୍ରୀଙ୍କ ଭାରି ଆଗ୍ରହ ।

ମୁଁ ସ୍ଥିର କରିନେଲି କ'ଣ କରିବାକୁ ହବ । ସେଇ ଦିନ ଜାଣି ମୋ' ଭିତରେ ଗୋଟାଏ ଦାନବ ଜନ୍ମ ନେଲା ।

ମୁଁ ତା'ର ଆରଦିନ ମନ୍ତ୍ରୀ ପାଖକୁ ସିଧା ଗଲି । ଟିକିଏ ଏକାକୀ ସମୟ ମାଗିବାରୁ ସେ ତତ୍‌କ୍ଷଣାତ୍ ରାଜି ହେଇଗଲେ । ସହରକୁ ଲାଗି ଖଣ୍ଡେ ଦଶ ଏକର ଜମି ଆପଣ ବା ଆପଣଙ୍କ ନିଜ ଲୋକ କାହାରି ନାମରେ ନେବାକୁ ଚାହିଁବେ କି ?

"ଆରେ ଏଇଟା ପଚାରିବାକୁ ଅଛି । ଆପଣ କେମିତି ଜାଣିଲେ ?"

"ଅମୁକ ମନ୍ତ୍ରୀକୁ ଆମ ସାହେବ ଫୋନ୍‌ରେ କହୁଥିଲେ ।"

"ଆଚ୍ଛା ! ମୁଁ ତମ ସାହେବକୁ କୋଉଦିନୁ କହିଚି ଖଣ୍ଡେ ଜାଗାପାଇଁ । ସେ ମତେ ନ କହି ମୋର ଶତ୍ରୁକୁ କହିବାର ଥିଲା !"

"ଆପଣ ଯଦି କହିବେ ମୁଁ ଚେଷ୍ଟା କରିପାରେ ।"

"ନିଶ୍ଚୟ ନିଶ୍ଚୟ, ଅରିନ୍ଦମ ବାବୁ, ମୁଁ ଆପଣଙ୍କ ପ୍ରମୋଶନ କଥା ବୁଝୁଛି ।"

ମୁଁ ଜାଣିଥିଲି ଆମ ସାହେବ ଆମ ମନ୍ତ୍ରୀଙ୍କ ପାଇଁ ଭିତରେ ଭିତରେ ଚେଷ୍ଟା ଚଳେଇଥିଲେ । ହେଇଗଲେ ସାବାସିଟା ମାରିନବ । ଆର ମନ୍ତ୍ରୀକୁ ଖବର ପହଞ୍ଚେଇଦେଲି – ଅସଲ ଜାଗା ଖଣ୍ଡେ କେମିତି ହାତଛଡା ହେଇଯାଉଛି ଏବଂ ଆର ମନ୍ତ୍ରୀ ନାଁରେ ବିଭିନ୍ନ ସ୍ତରରେ କହି-ବୋଲି ସର୍ବୋଚ୍ଚ

କର୍ତ୍ତାଙ୍କୁ ବାଗେଇ ଦଶ-ବାରଦିନ ଭିତରେ କରେଇଦେଲି । ଦଶ ତାରିଖ ଡିନର୍ ପୂର୍ବରୁ ।

ସେଇଦିନ ମୋ' ସ୍ତ୍ରୀ ଓ ଝିଅଙ୍କୁ ବେଢଙ୍ଗିଆ ବେଶ-ପୋଷାକ ପିନ୍ଧେଇ ନେଇଗଲି । ସାହେବକୁ ଜମି ଚାଲିଯିବା କଥା କହି ଅଟକେଇଦେଲି । ସେ ପାଗଳ ପରି ବାରଲୋକଙ୍କୁ ସନ୍ଧ୍ୟା ଆଠଟାଯାଏଁ ଫୋନ୍ କରି ଚାଲିଥାଏ । ମୁଁ ଆଗରୁ କ୍ଲବ୍ ଯାଇ ମନ୍ତ୍ରୀଙ୍କୁ ଶୁଭଖବରଟା ଦେଇଦେଲି । ସେ ରାଗିମାଗି ଲାଲ । ଆଉ କହିଦେଲି, ସେ ଜମିକୁ ଲାଗି ଆଉ ଦଶ ଏକର ନବାକୁ ସାହେବ ନିଜେ ଚେଷ୍ଟା ଚଳେଇଛି । ମନ୍ତ୍ରୀ ଚାହିଁଲେ ସେ ଖଣ୍ଡ ମିଳିଯିବ ।

ସାହେବ ବି ଆସି ପହଞ୍ଚିଲେ । ମନ୍ତ୍ରୀ ସାହେବର ଆଠ-ଅଙ୍କି ନମସ୍କାର ସ୍ୱୀକାର କଲା ନାହିଁ । ମୁହଁ ବୁଲେଇନେଲା । ମୁଁ ଦୂରରୁ ଲକ୍ଷ୍ୟ କରୁଥାଏ । ସାହେବ ମୋତେ ଠାବ କରି ଆସି ପହଞ୍ଚିଗଲା । "ଅରନ୍ଦିମ ଆସିଲ ଭଲ କଲ, ପିଲାମାନେ କାହାନ୍ତି ?"

ମୁଁ ଦେଖେଇଦେଲି ।

ସାଇବର ମୁଡ୍ ବିଗିଡିଗଲା । 'ହୁଃ...' କହି ସେ ସେଇଠୁ ଚାଲିଗଲା । ମନ୍ତ୍ରୀକୁ ମୋ' ପିଲାଙ୍କ କଥା କହି ମୋର ସର୍ବନାଶ କରିବାକୁ ଚାହିଁଲା ବୋଧହୁଏ । ମନ୍ତ୍ରୀ ବି ସେମାନଙ୍କ ଆଡକୁ ଅନ୍ଧ ଯାଇ ବିଗିଡିଗଲା । ତା'ପରେ ସାହେବ ଘୁଞ୍ଚିଗଲା ଗୋଟାଏ ଆଡକୁ ।

ମଉକା ଦେଖି ମୁଁ ପୁଣି ପାଖେଇଗଲି ।

"ଏଇଟା ଏମିତ ବୋଲି ମୁଁ ଜାଣି ନ ଥିଲି ।"

"ସାର୍, ଆଉ ବହୁତ କଥା ଅଛି, ଅଭୟ ମିଳିଲେ ସବୁ କହିବି ।"

"ଅରିନ୍ଦମ, ମୁଁ ଆପଣଙ୍କ ଉପରେ ନିର୍ଭର କଲି !"

କୌଶଳରେ ତାକୁ ଏପରି ଜାଗାକୁ ନେଇଗଲି, ଯେଉଁଠୁ ସାହେବର ପରିବାର ଦେଖାଯାଉଥିଲା ।

ମନ୍ତ୍ରୀର ଆଖି ସେଇଆଡକୁ ବାରମ୍ବାର ଗଲା ଦେଖି ଆସ୍ତେ କହିଦେଲି, "ଆମ ସାହେବଙ୍କ ପିଲାମାନେ । ସେ ଲମ୍ବା ଝିଅଟି ତାଙ୍କ ଝିଆରୀ । ଆରଟି ଝିଅ ।"

"ସର୍ବୋଚ୍ଚ କର୍ତ୍ତାଙ୍କ ଆମ ସାହେବଙ୍କ ଉପରେ ଶୁଭଦୃଷ୍ଟି ରହିଛି ।"

"ଆଚ୍ଛା ?"

ସର୍ବୋଚ୍ଚ କର୍ତ୍ତା ଆମ ଟୋକା ମନ୍ତ୍ରୀ ଉପରେ ଭାରି ବିଶ୍ୱାସ ରଖନ୍ତି । ବାକି ସବୁ କରିବାକୁ ଅସୁବିଧା ହେଲା ନାହିଁ ।

ସାହେବକୁ ଦିଲ୍ଲୀ ପଠାଇ ଦିଆଗଲା । ତା' ଝିଆରୀ ଦୁଇଦିନ ହରଣଚାଳ ହେଇଗଲା । ମହତ ଜଗିବାକୁ ସେ ଚୁପ୍ ରହିବାକୁ ବାଧ ହେଲା । ତା' ଜମି ଟୋକା ମନ୍ତ୍ରୀ ନିଜ ଶଳା ନାଁରେ କରେଇନେଲା । ପୁଣି ସଜ ଉଣ୍ଡି ଜାଗୁଆରର ବ୍ୟବସ୍ଥା କରିଦେଲି ।

"ସିଂ... ପୁରୁଣା ସାହେବର ଜାଗୁଆର । ସେ ପ୍ରୟୋଜନରୁ ଅଧିକ ଜାଣେ । ତା' ପାଖରେ ଆପଣଙ୍କ କଥାର ଟେପ୍ ଅଛି । ଡାକବଙ୍ଗଳାରେ ଲୁଚି ରହି ଇନ୍‌ଫ୍ରାରେଡ୍ ଲାଇଟ୍‌ରେ ନିଆଯାଇଥିବା

ଫଟୋ ସବୁ ଅଛି । ସେ ଖୁଣ୍ କରିପାରେ । ସେ ଡକାୟତି କରିପାରେ । ମୋର କହିବାର କିଛି ନାହିଁ । ଟିକିଏ ସତର୍କ ରହିଥିବେ । ସେ କେତେବେଳେ କ'ଣ କରିଦେଇପାରେ ।"

"ରାତି ନଅଟା ବେଳେ ବଡ କୋଠାର ତଳ ମହଲା ବାଲକୋନି ପାଖରେ ତା' ବେକମୁଣ୍ଡାରେ ଦୁଇଟି ପାହାର ପଡିବାର ମୁଁ ଦେଖିଛି । ସେଇଠୁ ତାକୁ ତଳକୁ ଗଡେଇଦେବାର ମୁଁ ଦେଖିଛି ।"

"ନିଶା ଖାଇ ଉପରୁ ପଡି ତା' ବେକହାଡ ଭାଙ୍ଗିଗଲା । ମୁଁ ସଚ୍ଚୋଟ ଅଫିସର ମନ୍ତ୍ରୀଙ୍କ ଦପ୍ତରରୁ ଫେରିବାବେଳେ ଆଖିରେ ଦେଖିଛି, ପୋଲିସ୍‌କୁ ଡାକିଛି, ଡାକ୍ତରଖାନାକୁ ନେଇଛି । ତା'ର ପରିବାରକୁ ସାନ୍ତ୍ୱନା ଦେଇଛି । ତା' ପେନ୍‌ସେନ୍ କରିଦେଇଛି ।" ଏସବୁ ମୋ' ସାକ୍ଷୀ ବୟାନରେ ରହିଛି ।

ତା'ପରେ ଘାଇ ଭାଙ୍ଗିଯାଇଛି ।

– ଲାଲ୍ ବିପକ୍ଷ ଯାହାକୁ କମିଶନ ଦୋଷୀ ଠଉରେଇବା ପାଇଁ ଚେଷ୍ଟା କରୁଥିଲା, ମୋ' ପାଖରୁ ଇସାରା ପାଇ ଆସିଛି । ତାକୁ ମୁଁ ଢେର୍ ତଥ୍ୟ ବିକିଛି । ଢେର୍ ଦାମ୍‌ରେ । କମିଶନ ଅଡୁଆରେ ପଡିଛି ।

ମନ୍ତ୍ରୀ କମିଶନ୍‌କୁ ସମୟ ଗଡେଇବାକୁ କହନ୍ତୁ ବୋଲି ମୁଁ ପରାମର୍ଶ ଦେଇଛି । ପତ୍ରକାରକୁ ଗୋପନ ତଥ୍ୟ ନାଁରେ ମନ୍ତ୍ରୀ ଓ କମିଶନଙ୍କ ସଲ୍ଲା କଥା କହିଛି – ମନ୍ତ୍ରୀ ମୋ' ଗନ୍ଧ ବାରିବା ପୂର୍ବରୁ ମନ୍ତ୍ରୀମଣ୍ଡଳ ଭାଙ୍ଗିବା ଗନ୍ଧ ମୁଁ ବାରିଦେଇଛି ।

ସିଂ... ପାଖରୁ କିଛି ଫଟୋ ଆଉ ଟେପ୍ ଗୋଟାଏ ଭଡାଟିଆ ହାତରେ ପଠାଇ ମନ୍ତ୍ରୀକୁ ବ୍ଲାକ୍‌ମେଲ୍ କରିଛି । ଢେର୍ ଟଙ୍କା ଝଡେଇଚି । ଭୂତ ହେଇ ଲାଗିଛି, ଗୁଣିଆ ହେଇ ଝାଡିଛି । ଭଡାଟିଆକୁ ଠିକଣା କରିବାକୁ ଭରସା ଦେଇଛି । ମନ୍ତ୍ରୀ ପୁଣି ପଇସା ଖର୍ଚ୍ଚ କରିଛି । ଶେଷରେ ସେ ଦଶ ଏକର ଜମିଟା ଯାଚିଛି; ତାକୁ ରକ୍ଷା କରିବାକୁ ।

ମୁଁ ରକ୍ଷା କରିଛି ।

ମନ୍ତ୍ରୀ କ୍ଷମତାରୁ ଗଲାବେଳେ ମୁଁ ତାକୁ ଦେଖାକରି ନାହିଁ – ତା'ପରେ ସେ ଦେଖା କରିବାକୁ ଆସିଛି – ମୁଁ ଦେଖା ଦେଇ ନାହିଁ । ମୁଁ ହାତୀ ଲଗେଇ ହାତୀ ଧରିଛି । ନିଜେ ଚିହ୍ନା ପଡିନାହିଁ । ମୋ' ପାଖରେ ପଇସାର ଅଭାବ ନାହିଁ । କ୍ଷମତା ପ୍ରତିପତ୍ତିର ଅଭାବ ନାହିଁ । ସ୍ତାବକ, ବଚସ୍କର, ଭଡାଟିଆ, ଖୁଣୀଙ୍କର ଅଭାବ ନାହିଁ – ଏକଥା ସମସ୍ତେ ଜାଣନ୍ତି । ଆଡ ହୋଇ ରହନ୍ତି ବା ପାଖରେ ଗଳିପଶନ୍ତି । ମୁଁ ସେଗୁଡାକୁ ଧରେ, ବାନ୍ଧେ, ବିକେ । ନିଜେ ଧରା ଦିଏ ନାହିଁ । ମୁଁ ଚିରକାଳ ସଚ୍ଚୋଟ, ବିଚକ୍ଷଣ, ପାରଦର୍ଶୀ ଅଫିସର ।

ମୁଁ ସରକାରରେ ରାଜନୀତି କରେ, ରାଜନୀତିରେ ସରକାର ଚଳାଏ । ମୋର ଶତ୍ରୁ ସମସ୍ତେ । ସ୍ତାବକ ସମସ୍ତେ ।

ମୁଁ ବଡ ବଡ ଦନ୍ତା କମ୍ପାନୀମାନଙ୍କୁ ବାନ୍ଧିରଖିଚି ଆଙ୍ଗୁଠି ଅଗରେ । ସେମାନେ ମନ୍ତ୍ରୀ

ପାଖକୁ ଗଲେ ମତେ ଭେଟନ୍ତି; ଫେରିଲେ ମତେ ଭେଟନ୍ତି । ଶେଷ କାଗଜରେ ମୁଁ ଦସ୍ତଖତ କରେ ।

ମୁଁ ରାଜ୍ୟ ବିକିଦିଏ, ସରକାରୀ ଫାଇଲ ବିକିଦିଏ, ସରକାରକୁ ବିକିଦିଏ । ବଦଳରେ ଯାହା ଚାହେଁ ତାହା ପାଏ ।

ଦି'ଚାରିଟା ଗୁରୁ କରିଛି । ମଉକା ଉପରେ କେତେବେଳେ କାହା ମଠରେ ଦେଖାଦିଏ । ସେମାନଙ୍କୁ ପଇସା ଦିଏ । ପ୍ରଶଂସା ପାଏ । ସମ୍ମାନ ପାଏ ।

ଶେଠଙ୍କ ପଇସାରେ ସ୍କୁଲ୍ କଲେଜ କରେଇଦେଇଛି । ଶେଠ ଜାଣିନାହିଁ । ସେମାନେ ମୋ' ଫଟୋ ରଖି ଫୁଲମାଳ ପିନ୍ଧାନ୍ତି । ସେମାନେ ଜାଣନ୍ତି ନାହିଁ । ସେଇଠି କେହି ଅବାଧ ହୁଅନ୍ତି ନାହିଁ; ହେଲେ ମୁହଁ ଭାଙ୍ଗିଦିଆଯାଏ । ସବୁ ସୁନାମ ମୋର ।

ମୋର ଅବୈଧ ସନ୍ତାନ ଅନେକ । ମୁଁ ସେମାନଙ୍କ ପାଇଁ ପଡି ଖଞ୍ଜିଦେଇଛି । ଗୋଟିଏ ଲେଖା ବାପ ଖଞ୍ଜିଦେଇଛି । ସେମାନଙ୍କର କାହାର କିଛି ଓଜର-ଆପତ୍ତି ନାହିଁ ।

ଦିଲ୍ଲୀରୁ ନେତା ଆସନ୍ତି । ବମ୍ବେରୁ ଡକାୟତ ଆସନ୍ତି । କଲିକତାରୁ ଚୋର ଆସନ୍ତି । ତୋରଣ ବନ୍ଧାହୁଏ । ସଭାମଞ୍ଚ ଗଢାହୁଏ । ବାକି ସବୁ ରାସ୍ତା ଘାଟ ବଙ୍ଗଳାରେ ବହୁବିଧ କାମ ହୁଏ ବୋଲି ବିଲ୍ ହୁଏ । ଡକାୟତମାନଙ୍କ ପାଇଁ ବ୍ୟାଙ୍କ୍ ଦରୱାନ୍ ଆଉ କିରାଣିକୁ କିଣିଦିଆଯାଏ । ସେମାନେ ପାଞ୍ଚକୋଟି ଲୁଟନ୍ତି । କୋଟିଏ ଏଇଠି ରହିଯାଏ । ଦେଶ କାମରେ ଲାଗେ । ନେତାଙ୍କ କାମରେ ଲାଗେ । ଚୋର ମୂର୍ତ୍ତି ଚୋରାନ୍ତି, ନିରୋଳା ମନ୍ଦିରମାନଙ୍କରୁ, ଖୋପ ଭିତରୁ । ଭଲ ପଇସା ଦିଅନ୍ତି । ସେଇଟା ବି ନେତାଙ୍କ କାମରେ ଲାଗେ । ପାତିଚୋର ସାହାଯ୍ୟ କରନ୍ତି । ଭଲ ବକ୍‌ସିସ୍ ପାଆନ୍ତି ।

ଯାହା ଏଇଠି ଉପରକୁ ଦେଖାଯାଏ ସେଇଟା ପ୍ରଚାର ପାଇଁ, ଖବରକାଗଜ ପାଇଁ ଟା' ତଳେ ଆଉ ଗୋଟିଏ ଜଗତ୍ । ସେଇଠି କିଣାବିକା ହୁଏ, ହଣାମରା ହୁଏ; ବଳ କଷାକଷି, ବୁଦ୍ଧି କଷାକଷି ହୁଏ ।

ଟା' ତଳେ ପାତାଳ । ସେଇଠି କୁଢ କୁଢ ଟଙ୍କା, କୁଢ କୁଢ ବନ୍ଧୁକ, ଛୁରୀ, କଟୁରି, ମାଫିଆ ରାଜା ।

ମୋ ଘରେ ସବୁ ଆଡକୁ ବାଟି ଫିଟିଛି । ଅଫିମ ହିରୋଇନ୍ ଚାଲାଣ ହବ, ସୁନା ବିସ୍କୁଟ୍ ଚାଲାଣ ହେବ । ଦଶ ଚାଲାଣ ହେଲେ ଏକ ଧରାପଡିବ । ଉଭୟ ପାଇଁ ବ୍ୟବସ୍ଥା କରାଯାଏ । ଧରାପଡିବାକୁ, ଫଟୋ ଉଠାଇବାକୁ, ଜେଲ ଯିବାକୁ ଆଗରୁ ପ୍ରସ୍ତୁତ ଥା'ନ୍ତି । ସେଥିପାଇଁ ସେମାନଙ୍କ ପରିବାରକୁ ସତନ୍ତ୍ର ଭତ୍ତା ଦିଆଯାଏ । ସେମାନେ ଆଗଭଳି ଚଳନ୍ତି । ଗାଡିରେ ବୁଲନ୍ତି – ଏମିତି ଆହୁରି ଅନେକ କଥା । ସବୁ କହିବାକୁ ବେଳ ନାହିଁ । ପ୍ରୟୋଜନ ନାହିଁ ।

ଏ ମାସ ଶେଷକୁ ମୁଁ ଅବସର ନେବି । ସମସ୍ତେ ଜାଣିଛନ୍ତି । ଛକି ବସିଛନ୍ତି । ହୁଏତ ମୋର ପାଳିତ ପଶୁମାନେ ମତେ ଖାଇଯିବେ ବା ସେମାନଙ୍କୁ ଚିତା କାଟି ମୁଁ ଅନ୍ତର୍ଦ୍ଧାନ ହୋଇଯିବି ।

ଆଜି ମତେ ଡର ମାଡୁଛି । ମୋ' ନିଜ ହାତଗୋଡକୁ ସୁଦ୍ଧା ମୁଁ ବିଶ୍ୱାସ କରିପାରୁନାହିଁ ।

ମୋ ପଛରେ ମୋ' ଛାଇ ଭଳି ଗୋଟାଏ କିଏ ଲାଗିଛି ମୂଳରୁ । ମୁଁ ଜାଣିପାରୁଛି; କିନ୍ତୁ ତାକୁ ଠଉରେଇ ପାରୁ ନାହିଁ ।

ସେ ମୋ' ବିଷୟରେ ଟିକିନିକି ଜାଣେ ।

ସେଇ ବୋଧେ ଶେଷକୁ ମୋ' ବାଟ ଜଗି ଠିଆହୋଇଯିବ । ମୁଁ ଗୁଳି ଖାଇବି କି ବିଷ ଖାଇବି ସେ କଥା ମୁଁ ଜାଣେ ନାହିଁ । ସେ ନିଷ୍ପତ୍ତି ମୋର । ମୋର ଏବେ ବି ଆଶା ଅଛି ଖସିଯିବି ବୋଲି ।

ସେଥିପାଇଁ ମୁଁ ବହୁଲୋକଙ୍କ ତୁଣ୍ଡି ବାନ୍ଧିସାରିଛି । ତଥାପି ଡର ମାଡୁଛି ।

ଏଇଥିପାଇଁ ଏ ଗଳ୍ପ ଲେଖିବସିଲି । ଗଳ୍ପ ସତ ନୁହେଁ । ଗୋଟାଏ ଗାଳ୍ପିକକୁ ଦେଇଦେବି ।

ଧର୍ମଗୁଳାରେ ଯାହା ନାଁ ମିଳିଲା । ଜଣକ ଆଗରେ କହିଦେଲେ, ସେ ତାକୁ ସର୍ବସାଧାରଣରେ କହିଦେବ । ମୋ' ଭଳି ଆଉ ଡଜନେ ଅଛନ୍ତି । ମୋ' ଦର୍ପଣରେ ମୁଁ ମୋର ଭ୍ରାତାଙ୍କ ବଦନ ଭଲ କରି ଚିହ୍ନାଇଦେବାକୁ ଚାହେଁ ।

ଉଦ୍ଦେଶ୍ୟ ମୁଁ ଯାହା କରିଛି, ସେମାନେ ନ କରନ୍ତୁ । ଅନୁତାପ ନୁହେଁ । ଦେଶପ୍ରୀତି ନୁହେଁ । ମୁଁ ମୋ' ଢଙ୍ଗରେ ଅପରାଜିତ ରହିବାକୁ ଚାହେଁ ।

ଗାଳ୍ପିକ ଏତେ ମସଲା ଜିରେଇପାରିବେ ନାହିଁ । ଅବଶ୍ୟ ସେ ତାକୁ ବାହାରକରିଦବ । ଧୂଆଁ ଉଠିବ । କିଏ କିଏ ବୋଲି ଗୋଳ ଉଠିବ ।

ଧର ଧର ମାର ମାର ହେବେ ସମସ୍ତେ । ମୁଁ ଖସିଯିବି । କୋଉ କାଳର ରଜାଟା, ପାହାଡ କାଟି ଲେଖିଦେଲା ଲକ୍ଷେ ଲୋକଙ୍କୁ ହାଣିଚି ବୋଲି ।

ମୁଁ ମୋ' ଯଶ ବଖାଣିଗଲି । ସେଥିରେ ଅସୁବିଧା କ'ଣ ?

ଏ ସବୁ ତଥାପି ଗାଲୁଗଳ୍ପ ।

ସେ ଯେ ଛାଇକଥା ମୁଁ କହୁଥିଲି, ସେ ଏଇ ଦୁଆର ପାଖରେ ଠିଆହୋଇଛି । ଚାରିବାହୁ ମେଲେଇ ଗୋଟେ ଅସର୍ପା ଭଳି ଜଗିଛି । ମୋତେ ଆଉ ମଉକା ନାହିଁ । ଯାକୁ ଡାବଲରେ ପକେଇ ମୁଁ ତା' ସାମ୍ନାରେ ଠିଆ ହୋଇ ଡାକିଦେବି "ମତେ ଧ..., ପାରିବୁ ଯଦି ।"

"ଯା' ପରକଥା ସେଇ ଗାଳ୍ପିକ କହିବ, ପାରିବ ଯଦି ।"

ମୁଁ ମାନୁଛି, ଯା' ପରକଥା ମୁଁ କହିବି ନାହିଁ, କହିପାରିବି ନାହିଁ । କାରଣ ଅରିନ୍ଦମ ପରି ମୁଁ ଅନ୍ତର୍ଦ୍ଧାନ ହୋଇପାରିବି ନାହିଁ ।



# ଗୋରୁହାଟ

ହାଟ ପଛରେ ହାଟ । ତୋଟା ପଛରେ ତୋଟା । ମଝିରେ ଶୁଖିଲା ନଈ । ତୋଟା ପଛକୁ ନୂଆଣିଆ ପାହାଡ । ପାହାଡ ପଛକୁ ସୂର୍ଯ୍ୟ ବୁଡିଯାଏ । ହାଟ ଉଠିଯାଏ ଏ ପାଖରୁ ଏ ପାଖକୁ । ପୁଣି ରବିବାରକୁ ପାଳି । ନଈ ବାଲିରେ ଶ୍ମଶାନ । ମନ ଇଚ୍ଛା କେତେବେଳେ ଜୁଇ ଜଳିଉଠେ । ଉଦୁଉଦିଆ ଦି'ପହରଟାରେ ଦିହୁଡି ପରି ସୂର୍ଯ୍ୟ ଜଳୁଥିଲାବେଳେ ବି ଦୁଇ ହାଟ ମଝିରେ ଜୁଇଟାଏ ଜଳେ ହାଉଜାଉ ଲୋକଗହଳିରେ । କାହାରି ସେ ଆଡକୁ ଦୃଷ୍ଟି ନ ଥାଏ । ଯେ ଯାହା କିଣାବିକା ଠକାଠକି ଟଣାଓଟରା ବେପାର କରୁଥା'ନ୍ତି । ପଇସା ହାତରୁ ହାତକୁ ବଦଳ ହେଉଥାଏ । କଖାରୁ ବଦଳ ହେଉଥାଏ ହାତରୁ ହାତକୁ । ପଛ ହାଟରେ ପଘା ବଦଳୁଥାଏ ଏ ହାତରୁ ସେ ହାତକୁ । ପଛ ହାଟ ଗୋରୁହାଟ, ଜିଅଁନ୍ତା ପ୍ରାଣୀଙ୍କ ହାଟ ।

ସେ ଦିନ ନଈବାଲିରେ ଜୁଇ ଜଳୁଥିଲା ।

ପଛ ହାଟରେ ଗର୍ଭିଣୀ ଗାଈଟାଏ ଛୁଆ କଅଁଳାଉଥିଲା । କମଳା ରଙ୍ଗର ପାଟ ଗାଈ । ଆଖି ଖୋସି ଛଟପଟ ହେଉଥିଲା । ଝାଳରେ ଓଦା ହେଇଯାଉଥିଲା ତା' କପାଳ, ପେଟ ଆଉ ପିଠି ।

ଅତର୍କରେ କ'ଣ କରିବ ଜାଣି ନ ପାରି, ସେ ବାର-ତେର ବର୍ଷର ଟୋକାଟା ପାଟ ଗାଈକୁ ଆଉଁସିପକଉଥିଲା । ନଈବାଲି ଆଡେଇ ପାଣି ଚବକା ହୋଇଥାଏ । ସେଇଠୁ ଆଞ୍ଜୁଳାରେ ଧାଇଁ ଧାଇଁ ପାଣି ଆଣି ତା' ମୁହଁରେ ବୋଳୁଥିଲା । ବାଟରେ ଝରିଯାଉଥିଲା ପାଣି । ଖାଲି ଓଦା ହାତଟା ଗାଈର ତହତହ ତାତିଲା ଦିହରେ ଶୁଖିଯାଉଥିଲା ।

ସେ ଟୋକାଟା ନାଁ କମଳ । ତାକ ନାଁ କମଲୁ । ହାଟକୁ ଆସିବାକୁ ତା' ଆରଦିନ ଖାରପାଣିରେ ହାଫ୍‌ପେଣ୍ଟଟିକୁ, ଆଉ ଆତ ପୁରୁଣା ଅଧାଜାମାଟିକୁ କାଚି ଶୁଖେଇଥିଲା । ପେଣ୍ଟରେ ବୋତାମ ନାହିଁ । ଜାମା ତଳେ ଗଞ୍ଜି ନାହିଁ । ବୋତାମ ଏଥିରେ ନାହିଁ କି ସେଥିରେ ନାହିଁ ।

କମଲୁ ଆସିଥିଲା ପାଟ ଗାଈକୁ ବିକିବାକୁ । ତା' ମା' ତାକୁ ପଠେଇଥିଲା । କହିଥିଲା, ତିନିଶ' ନ ପାଇଲେ ଦବୁ ନାହିଁ । ଗାଈ ଆସିବାକୁ ଅସକତ ହଉଥିଲା । କମଲୁ ତା' ବେକରେ ପଘା ଲଗେଇ ଟାଣିଲାବେଳେ ଓଟାରି ହଉଥିଲା ।

କମଲୁ ମା' ତା' ଲାଞ୍ଜ ମୂଳରୁ ରୁମ ଉପାଡି ମୁଣ୍ଡରେ ଲଗାଇ ଖୁଣ୍ଟି ଉପରେ ଥୋଇଦେଲା । ତା' ପିଠି ଥାପୁଡେଇ କହିଲା, "ଯା' ପାଟ, ଯା ।" ମା'ର ସ୍ୱର ଗହଳିଆ ଶୁଭୁଥିଲା । ସେ ଲୁଗାକାନିରେ ଆଖି ପୋଛୁଥିଲା । ତା' ପଛରେ ଠିଆ ହୋଇଥିଲା ଡମି, କମଲୁର ବଡ ଭଉଣୀ । ସେ ବି କାନ୍ଦୁଥିଲା ନା' କ'ଣ । କମଲୁ ଅଣିରା ପିଲା । ଘରୁ ଦାଣ୍ଡକୁ ବାହାରିବାକୁ ସେ ଜଣେ । କେମିତି କାନ୍ଦିବ ?

ଛୁଆଟାକୁ ଜନ୍ମ କରିଦେଇ ପାଟ ଗାଈ ଧକେଇଲା । କିଏ ଜଣେ ବାଲ୍‌ଟିରେ ପାଣି ମୁନ୍ଦେ ଆଣି ଥୋଇଦେଲା – ପିଇଲା ନାହିଁ ।

ସେ ଜଣକ ବାଛୁରୀଟାକୁ ସମ୍ଭାଳିଲା ।

ପାଟକୁ ଠିଆକରେଇଲା । ପାଟ ତା' ପିଲାକୁ ଚାଟିଲା । କମଲୁ ଟାଟକା ହେଲା ପରି ଚାହିଁଥାଏ । ଦେଖୁ ଦେଖୁ ବାଛୁରୀ ଟଳମଳ ହେଇ ଠିଆହେଲା । ପହ୍ନାରେ ମୁହଁ ଲଗେଇ ଦେବାକୁ ଚିରକୁ ଚାପିଲା । ଏତିକିବେଳେ କିଏ ଜଣେ କମଲୁ ଦେହରେ ଟିପ ମାରି ପଚାରିଲା, "ହେ ଟୋକା, ଏ ଗାଈ ବିକିବୁ ? କେତେ ପଇସା ନବୁ ?"

କମଲୁ କିଛି ନ ଭାବି କହିଲା, "ତିନିଶ' ।"

ସେ ଲୋକଟା ବିଶ୍ୱାସ ନ କଲାପରି କହିଲା, "ତିନିଶ' ? ଆବେ, ହାଟରେ ଦି'ଶକୁ ଗାଈ ଯଚାଯିବ । ଦୁଇଶ'ରେ ଦବୁ ?"

ଲୋକ ସେତେବେଳଖୁ ଘେରିଯାଇଥିଲେ ।

ସେ ଭିତରୁ ଆଉ ଜଣେ ଭିଡ ଠେଲି ଆସି ଠିଆହେଲା । କହିଲା, "ନେ ତିନିଶ' ! ଦେ' ମୋତେ ସେ ପଘାଟା ।"

ପ୍ରଥମ ଜଣକ ଫଁ-ଫଁ ହେଲା । କହିଲା, "ହେ, କ'ଣ ଏଠି ନିଲାମ ଉଠୁଚି କି ? ମୁଁ ବେପାର କଲାବେଳେ ତମେ ମଝିରେ କିଏ ହୋ ?"

ସେ ନ ଶୁଣିଲା ପରି କହିଲା, "ବିକାଳିର ଯାହା ଡାକ ନା' । ଯେ ଦେଲା ସେ ନେଲା; ସେଥିରେ ତମେ ଆମେ କ'ଣ ?"

– "ହାଁ, ପଇସା ଦେଖେଇ ନେଇଯିବ ! ଏ ମାଲ ମୋର । ହେ ଟୋକା, ମୁଁ ତିନିଶ' ଦଉଚି – ଦେ ମତେ ଗାଈ ।"

– "ମୁଁ ତିନିଶ' ପଚାଶ ଦେବି ।"

– "ମୁଁ ଦେବି ଚାରିଶ' ।"

ଦେଖଣାହାରି ଭାଗ ଭାଗ ହେଇଗଲେ । କମଲୁ କେବେ ଏ ଆଡକୁ କେବେ ସେ ଆଡକୁ ଚାହିଁ ଟାଟକା ହେଲା ପରି ଠିଆ ହେଇଥାଏ । ବାଛୁରୀ ପହ୍ନାରେ ମୁଣ୍ଡ ମାରି କ୍ଷୀର ଖାଉଥାଏ । ପାଟ

ତା' ଛୁଆକୁ ରହୁଥାଏ ଏକା ଲୟରେ ।

ଡାକହାକର ଉଛବାଚ । ଅଣ୍ଟା ଭିଡାଭିଡି । ନ୍ୟାୟ ନିଶାପ । ଶେଷକୁ ଦ୍ୱିତୀୟ ଗରାକ ଆଠଶ' ଟଙ୍କାରେ ନବାକୁ ଛିଣ୍ଡିଲା । ପ୍ରଥମ ଗରାଖ ଗରଗର ହେଇ, ଗଜଗଜ ଗାଳି ଦେଇ ଦୂରେଇଯାଉଥିଲା – "ଆବେ ରଖିଥା ତୋ' ପଇସା, ରଖିଥା ତୋ' ଗାଈ । ଦେଶିଆ ଗାଈ ଶଳା ଛେଳି ପରି । ଆଉ୍ତୁଳେ କ୍ଷୀର ପାଇଁ ଆଉ୍ତୁଳେ ଟଙ୍କା ! ଆବେ ଯାଃ । ମୁଁ ନେବି ହାତୀ ମାର୍କା ଜର୍ସି । ଶଳା, ବାଲ୍‌ଟିରେ କ୍ଷୀର ଭର୍ତ୍ତି ହବ ଏ ଓଳି ସେ ଓଳି ।"

କେହି ତା' କଥା ଶୁଣୁ ନଥିଲେ ।

ସେଇ ଗହଳି ଭିତରୁ ନିଶାପ କଲାବାଲା କିଣିବା ଗରାଖ ପାଖରୁ ଟଙ୍କା ଗଣି କମଲକୁ ବଢ଼ାଇଦେଲେ । କହିଲେ, "ଗଣି ନେ' – ଆଠଶ' । ଚୁଟା କପାଳିଆ, ଆସିଥିଲୁ ତିନିଶ'ରେ ବିକିବୁ ବୋଲି, ତତେ ଆଠଶ' ମିଳିଗଲା ।"

ଆଉ ଜଣେ କହିଲା, "ହେଲେ କ'ଣ ହବ ! ଗାଈ ଦେଖୁନ କେମିତି ଲକ୍ଷଣବନ୍ତୀ ? ତା' ଗଢଣ ଦେଖ, ତା' ରଙ୍ଗ ଦେଖ, ଲାଞ୍ଜଠୁ ଶିଙ୍ଘଯାଏ କେମିତି ରେଖିଲା ପରି । ଦିହରୁ ମାଛି ଖସିପଡୁଛି । ମାଇ ବାଛୁରୀ ଲାଗିଛି, ଘରକୁ ନେଇ ଦୁଧ ହିଁ ଖାଇବା ଭାଗ୍ୟରେ ଥିଲେ ଏମିତି ଗାଈ ମିଳେ ।"

ନୂଆ ମାଲିକ ପାଟ ପିଠିରେ ହାତ ମାରିଲା । ପାଟ ସାମ୍ନାରେ କମଲୁ । ବାଛୁରୀ ପାଖକୁ ଯିଏ ଗଲେ ପାଟ ସାପ ପରି ଫଁ-ଫଁ ହେଲା ।

ନୂଆ ପଘାଟିକୁ ପାଟ ବେକରେ ବାନ୍ଧି କମଲୁ ଗରାକ ହାତକୁ ବଢେଇଦେଲା ।

ଗରାକ ଡାକପକାଇଲା ତା' ଲୋକକୁ । ଦୁଇଜଣ ଆସି ଠିଆହେଇଗଲେ । ଜଣେ ଉଠେଇଲା ବାଛୁରୀକୁ, ଆଉ ଜଣକ ପାଟ ବେକରେ ପଘାଟିକୁ ଗୁଡେଇଦେଲା । ବାଛୁରୀକୁ ଅନାଇ ପାଟ ହୁଁକାରି ହେଲା । ତା'ରି ପଛେ ପଛେ ପାଟ ରଇଗଲା ।

ଟାଣିଲା ପହ୍ନା ଦି'ପଟେ ଗୋଡ ଓସାରି ହୋଇ ପଡୁଥିଲା । ଲସା ସ୍ରବୁଥିଲା । ପାଟ ଦେହରୁ ଝାଳ ନିଗିଡି ଯାଉଥିଲା । ତାକୁ ବୋଧେ ଶୋଷ କରୁଥିଲା । ବୋଧେ ଦୁର୍ବଳ ଲାଗୁଥିଲା । ଝାଇଁ ମାରି ଦେଉଥିଲା । ତା' ପିଲାକୁ କିଏ ଘେନି ଯାଉଥିଲା ବୋଲି ପାଟ ଉଦ୍‌ବେଗରେ ଓଟାରି ହେଇ ଯାଉଥିଲା । ତାକୁ ଆଉ କିଛି ଦିଶୁ ନଥିଲା । ନ ହେଲେ କମଲୁକୁ ସେ ଲେଉଟି ରହିଁ ନ ଥାନ୍ତା ?

କମଲୁକୁ କିଛି ଦିଶୁ ନ ଥିଲା । ଛଳଛଳ ପାଣି ଭିତରେ ଅଦୃଶ୍ୟ ହୋଇଯାଉଥିଲା କମଳା ରଙ୍ଗର ପାଟ ଗାଈ ।

କମଲୁ ରହିପଟୁ ଲୋକ ଅପସରି ଯାଇଥିଲେ । ସେ ନୋଟ୍ ବିଡାଟାକୁ ରହିଁଲା । ତାକୁ କେମିତି ଅତର୍କ୍କା ଲାଗିଲା । ପଛପଟ ଆମ୍ବତୋଟାରେ ଗୋରୁହାଟ ଲାଗିଥିଲା । ଶୁଖିଲା ନଈବାଲିରେ କୁହୁଳୁଥିଲା ଜୁଇ ।

କମଲୁ ଫେରିଯିବାକୁ ରହିଁଲା ତା' ମା' ପାଖକୁ । ଯେତେ ଚଞ୍ଚଳ ପାରିବ ଧାଇଁଯିବ ।

ଡରିଲା ପରି, ଥରିଲା ପରି ସେ ନଈବାଲି ପାରିହୋଇଗଲା । ପାରିହୋଇଗଲା ଆଉ ହାଟ, ଲୋକଗହଳି, ଆଳୁ ପିଆଜ କଖାରୁ ମାଳି ମୁଦି କଣେଇ ବରା ପିଆଜି ଇତ୍ୟାଦି ଇତ୍ୟାଦି ଗହଳି ।

ଘରେ ପହଞ୍ଚିଲାବେଳକୁ ଝାଳରେ ତା' ଜାମାଖଣ୍ଡ ଦେହରେ ଲାଖିଯାଇଥିଲା । ବଳାଗଣ୍ଠିଯାଏ ପାଦ ଧୂଳିରେ ବୁଡିଯାଇଥିଲା । କପାଳ ଉପରେ ଆଖିତଳେ ଝାଳଟୋପା ଲାଖିଥିଲା । ପାଟି ଶୁଖିଯାଉଥିଲା ଶୋଷରେ, ଅତର୍କରେ ।

ଟଙ୍କା ବିଡାଟା ନିଆଁରଡ ପରି ତାତୁଥିଲା ତା' ହାତକୁ ।

ଅଗଣାରେ ଗୋଟିଏ କମଳା ଗଛ । କୋଉ କାଳୁ ଆଉ ଫଳ ଦଉ ନାହିଁ । ବଞ୍ଚିଛି ଗୁଡିଆ, ବାଣ୍ଡିଆ ରୋଗିଣା ହୋଇ । ତାରି ମୂଳେ ଦଉଡିଖଟରେ ବସିଥା'ନ୍ତି ମା' ଆଉ ଡମି । ଡମିଟା ଏତେ ଗୋରା କେମିତି ହେଲା କେଜାଣି ?

କମଲୁକୁ ଦେଖି ମା' ଧଡପଡ ହେଇ ପାଣି ଆଣି ଥୋଇଲେ ।

କମଲୁକୁ ତର ସହୁ ନ ଥାଏ ସବୁ କହିଦେବାକୁ ।

ସେ ଆଗ ଟଙ୍କାବିଡାଟା ବଢେଇ ଦେଲା – "ଗଣ ଆଠଶ' ଟଙ୍କା ।"

– "କିରେ ଏତେ ଟଙ୍କା କୋଉଠୁ ଆଣିଲୁ ?"

– "ଆଉରି ହେଇଥାନ୍ତା । ଲଢେଇରେ ଗୋଟେ ଷଣ୍ଢ ହାରି ପଳେଇଲା ।"

– "କିରେ, ଏମିତି କ'ଣ କହୁଛୁ ?"

ପିଣ୍ଡାରେ ବସି ତା' ଧୂଳିଆ ଗୋଡକୁ ଭୂଇଁରେ ବାଡେଇ ବାଡେଇ ହାତ ହଲେଇ ଭୂରୁ ଟେମକେଇ କମଲୁ ମୂଳରୁ ଶେଷଯାଏ ସବୁ କହିଗଲା ।

ତିନିଜଣଯାକ ଏକାଠି ଘେରିଯାଇ ଟଙ୍କାଯାକ ଗଣିଲେ । ଶହେ ପଚାଶ ଦଶ ପାଞ୍ଚ ଟଙ୍କିଆ ନୋଟ ।

ମା' ମଝିରେ ଲୁଗାକାନିରେ ନୋଟଯାକ ନେଇ ଦିଅଁଘରକୁ ଉଠିଗଲେ । ସେଇଠି ଭରସା, ସେଇଠି ଭଣ୍ଡାର ।

ଡମି କେତେ ଆଦରରେ ଭାଇକୁ ପଖାଳ ବାଢିଦେଲା । ଗୋଡ ମୁହଁ ଧୋଇବାକୁ ପାଣି ଥୋଇଦେଲା ।

ମା' ଆସି ସେଇଠି ବସିଲେ । ସେଇ ସେଇ କଥା ପଚରୁଥା'ନ୍ତି ଦୁଇଜଣ । ଭାତଗୁଣ୍ଡା ମଝିରେ ଉତ୍ତର ଦଉଥାଏ କମଲୁ : ତିନିଶ' ଜାଗାରେ ଆଠଶ' ।

ଏଇ କଥାଟା ହିଁ ବିସ୍ମୟ; ଏଇ କଥା ଆନନ୍ଦ । ସତେବା କମଲୁ ତାଙ୍କର ପାଞ୍ଚଶ' ଟଙ୍କା ନିଜେ ଉପାର୍ଜନ କରି ଘରକୁ ଆଣିଥିଲା ।

ସେଦିନ ସନ୍ଧ୍ୟାରେ ମାଛ ଆସିଲା ପିଲାଙ୍କ ପାଇଁ । ସ୍ଥିର ହେଲା ଯେ ଡମି ପାଇଁ ନାଲି ରଙ୍ଗର ସଲଓ୍ୱାର ପଞ୍ଜାବି କିଣାହେବ । ତା' ପୁରୁଣା ଫ୍ରକ୍ ତାକୁ ଅଣ୍ଟୁନାହିଁ ।

ଆଉ ହାଟପାଳିଯାଏଁ ସାହିର ଚର୍ଚ୍ଚାର ବିଷୟ ହେଲା ଡମିର ନୂଆ ସଲଓ୍ୱାର କମିଜ ଆଉ

କମଲୁ ତିନିଶ' ଗାଈକୁ ଆଠଶ'ରେ ବିକିବାର କମାଲ୍ ।

ଦି'ଜଣଙ୍କ ସ୍କୁଲ୍‌ରେ ବି କଥା ପହଞ୍ଚିଯାଇଛି । ଆଗ ଅପେକ୍ଷା ବେଶୀ ଲୋକ ଡମିକୁ ଲେଉଟି ଚାହୁଁଛନ୍ତି । ଆଗ ଅପେକ୍ଷା ବେଶି ଟୋକା କମଲୁକୁ ଘେରି କଥା ହଉଛନ୍ତି । ଘରେ ମା'ଙ୍କ ପାଖକୁ ସାଇପାକ ମାଇକିନା ବାଡି ପରିବା ନେଇ କି ତିଅଣ ଗିନାଏ ଧରି ଆସୁଛନ୍ତି ।

ପାଟ ଗାଈ ଲକ୍ଷ୍ମୀ । କମଲୁର ମା' ଖୁଣ୍ଟି ପାଖରେ ବହେଲେଖା ମୁହଁରେ ଲୁଗାକାନି ଚାପିଧରି କାନ୍ଦୁଛନ୍ତି । କମଲୁ ଦୁଇ ତିନିଥର ଏକଥା ଦେଖିଲାଣି । ତାକୁ ବି ମଝିରେ ମଝିରେ କାନ୍ଦିବାକୁ ମନ ହେଲାଣି । ପାଟ ଗାଈ ଆଉ ତା'ର ସେ କୁନି ବାଛୁରୀ ତାକୁ ଆଖିରେ ଦିଶୁଛନ୍ତି ।

ଦିନେ ଖେଳପଡିଆରୁ ସଞ୍ଜବେଳେ ସେ ତା' ସାଙ୍ଗ ସଦା ବେହେରାକୁ ନେଇ ଫେରୁଥାଏ । ପଡିଆ ତଳ ପଟେ ଧୂଳିଆ ରାସ୍ତା । ସେଇଟା ହାଟପଦାକୁ ଯାଇଛି । ସେଇ ବାଟେ ଧୂଳି ଉଠୁଥାଏ ଘର ଉଚ୍ଚରେ । ଦୁହେଁ ସେଇଆଡକୁ ଚାହିଁ ରହିଲେ । ସଦା କହିଲା, "ହଟା ବେପାରୀ ହେଇଥିବ ।"

କମଲୁଠୁଁ ସଦା ବୟସରେ ବଡ । ବେଶ୍ ବୁଦ୍ଧିଆ । ଢେର୍ କଥା ଜାଣେ ।

କମଲୁ ଚାହିଁରହିଲା ସେ ଧୂଳିଆଡକୁ । ଗୋଠେ ହେବ ଗୋରୁ । ସବୁଗୁଡାକ ଧେଡିଆ, ଧୋକଡ, ବୁଢା । କାହାର ଗୋଡ ସଳଖ ପଡୁ ନ ଥାଏ । ନାକରୁ ଶିଙ୍ଘାଣି, ଆଖିରୁ ଲେଞ୍ଜରା ଓ ପାଟିରୁ ଫେଣ ବାହାରୁଥିବା, ବହୁ କଷ୍ଟରେ ଗୋଡ କାଢି ଟଳମଳ ଚାଲିଥିବା ଗୋରୁପଲ ।

କମଲୁ ନିଜେ ଗୋରୁହାଟକୁ ଯାଇଛି – ଦେଖିଛି । କିନ୍ତୁ ଏଭଳି ଅଲକ୍ଷଣୀ ଦୁର୍ଭିକ୍ଷିଆ ଗୋରୁ ଦେଖିନାହିଁ । ସେ କହିଲା, "ଏଗୁଡାକ ଗୋରୁହାଟକୁ ଯାଆନ୍ତି ନାହିଁ ।" ସଦା ତାକୁ ଚିଆରିଲା ପରି କହିଲା, "ଆବେ, ତୁ କ'ଣ ଜାଣିଚୁ ? ଗୋରୁହାଟ କହିଲେ, ଏଇ ଗୋରୁ । ଏମାନଙ୍କୁ କିଣି ନବାକୁ ଦୂର ସହରରୁ ବେପାରୀ ଆସନ୍ତି ।"

କମଲୁ ଖେଁ-ଖେଁ ହସିଲା । "ଆବେ, ଏଗୁଡାକୁ ମାହାଳିଆ ଦେଲେ ଭଲା କିଏ ତା' ଘର ଅସନା କରିବାକୁ ନବ ! ମୁଁ ପରା ନେଇଥିଲି ପାଟ ଗାଈକୁ ସେଇ ଗୋରୁହାଟକୁ । ଏମିତି କଙ୍କାଳସାର ଗୋରୁ ମୁଁ ଦେଖି ନ ଥିଲି ଟ' ।"

"ଆବେ, ତୁ କ'ଣ ଜାଣିଚୁ ? ଏଗୁଡାକୁ ସେମିତି ଫିଙ୍ଗା-ଫୋପଡା ଦାମ୍‌ରେ କିଣାଯାଏ । ବେପାରୀ କିନ୍ତୁ ଦଶ ଗୁଣ ଲାଭ ପାଏ । ସେ ଏଗୁଡାକୁ ଖାଲି ଶିଙ୍ଗ ଚମ ପାଇଁ କିଣେ । ଚଲେଇ ଚଲେଇ ନିଏ । ଖାଇବାକୁ ଦିଏ ନାହିଁ । ଯେ ମଲା ତାକୁ ଛେଲି ତା' ଶିଙ୍ଗ ଚମ କାଢିନିଏ । ଯେ ନମରି ସେଇଠି ପହଞ୍ଚିଗଲା, ତାକୁ ମାରିଦିଏ । ସେଇ ଶିଙ୍ଗ ଚମ ବିକିଦେଲେ ତା'ର ଲାଭ ।"

କମଲୁ ତାଟକା ହେଲା ପରି ଚାହୁଁଥାଏ ସେ ପଟୁଆରକୁ । ଏଗୁଡାକୁ ମାରିବାକୁ କିଏ ଅଡେଇ ନେଇ ଯାଉଛି ?

ତା' ଦିହ ଶୀତ କଣ୍ଟା ମାରିଗଲା । ଅଇ ଉଠିଲା । ତାକୁ ଅସୁସ୍ଥ ଲାଗିଲା କାହିଁରେ କ'ଣ । ସେ ଓଟାରି ହେଲା ବାନ୍ତି କରିପକେଇବାକୁ – ହେଲା ନାହିଁ ।

ସଦା ନାକରେ ହାତ ଦେଇ ହସିଲା – "କିରେ, ତୁ'ଟା ଛେରକୁରାଟା କି'ରେ ? ଆରେ

ଏଗୁଡ଼ାକ ହାଣ ଖାଇବାକୁ ଯାଉଛନ୍ତି, ଯେମିତି ନିଇତି ଛେଳି ହାଣ ଖାଉଛନ୍ତି; ସେଇମିତି ୟାଙ୍କୁ ଏଥିରୁ କେହି ଉଦ୍ଧାର କରିପାରିବେ ନାହିଁ ।"

କମଲୁ ଘରେ କୌଣସି ପ୍ରକାରେ ପହଞ୍ଚିଗଲା । କମଳା ଗଛମୂଳେ ବସି ବାନ୍ତି କରିପକେଇଲା । ମା' ଧାଇଁଆସି ତା' ପିଠି ଆଉଁସି ଦେଲେ, ବୁକୁ ପେଟ ଆଉଁସି ଦେଲେ । ମୁହଁକୁ ପାଣି ମାରି ସାଷ୍ଟମ କଲେ । ଖଟରେ ନେଇ ଶୁଆଇଦେଲେ । କମଲୁ ଦେହଯାକ ଝାଳ-ସରସର । ଦେଖୁ ଦେଖୁ କମ୍ପ ହେଇ ଖଇଫୁଟା ତାତି ।

ମା' ବିକଳ ହୋଇ କ'ଣ ସବୁ ପଚାରୁଥା'ନ୍ତି । କମଲୁ କିଛି ଉତ୍ତର ନ ଦେବାରୁ ଆହୁରି ବିକଳ ହଉଥା'ନ୍ତି ।

ପଡିଶାଘର ଦାଶ ମଉସା ହୋମିଓପାଥ୍ ଡାକ୍ତର ଡାକିଆଣିଲେ । ରାତିସାରା ଜର ବାଉଳୁଚାଉଳୁ, ପାଣିପଟି ।

କମଲୁ ମଝିରେ ମଝିରେ ଚମକୁଥିଲା । ତା' ବୁକୁ ଦାଉଁଦାଉଁ ହଉଥିଲା । ହାତ ଗୋଡ ଫଡକୁଥିଲା । ସେ ଭୟରେ ଡବ-ଡବ ଚାହୁଁଥିଲା ।

ମା' ତାକୁ ଜାକି ଧରୁଥିଲେ, "କ'ଣ ହେଲା ? ବାପା, କାଇଁକି ଏମିତି ଚମକୁଚୁ ? କ'ଣ ଡରେ ଦିଶୁଚି ! – ମୁଁ କ'ଣ କରିବିଟି ! କମଲୁକୁ କ'ଣ ହେଇଗଲା ? କ'ଣ ଭେଟଣା ହେଲା କି ?"

– "କମଲୁ ! ମତେ ଚାହଁ । କମଲୁ ! ମୁଁ ତମ ନାନୀ ! ତୁ କାଇଁକି ଏମିତି ହଉଚୁ ?"

ଅଂଧାର ଅଗଣାରେ ନିଶାଚର ପକ୍ଷୀ ଉଡୁଥିଲେ ।

ଛକ ଉପରେ କୁକୁର ଭୁକୁଥିଲା ।

ନିଶା ଗର୍ଜୁଥିଲା ସାଇଁ ସାଇଁ ।

ମା' ଝିଅ କାତର ହେଇ କମଲୁକୁ କେବଳ ଚାପିଧରୁଥିଲେ । ଔଷଧ ଦଉଥିଲେ ବାରବାର । ଥୟ ପଡିଲେ ପାଣିପଟି ଦେଉଥିଲେ ।

ପାହାନ୍ତିଆ ପହରକୁ କମଲୁ ହାଲିଆ ହୋଇ ଶୋଇଯାଇଥିଲା । ମା' ଝିଅ ଦୁଇଜଣ ନିଃଶବ୍ଦରେ ଘୁଞ୍ଚିଆସିଲେ ପିଣ୍ଡାକୁ ।

କମଲୁର ନିଦ ଭାଙ୍ଗିଲାବେଳକୁ ଖରା ହେଇଯାଇଥିଲା । ମା' ତା' ଦେହରେ ହାତ ବୁଲାଇଆଣି ପଚାରିଲେ – "କେମିତି ଲାଗୁଚି ?" ଜର କମିଯାଇଥାଏ; ହେଲେ ଆଖି ମୁହଁରୁ ରଙ୍ଗ ଓହ୍ଲେଇ ନ ଥାଏ ।

ତାକୁ ଆଣି ପିଣ୍ଡାରେ ଚୌକିରେ ବସେଇ ଦାନ୍ତ ଘଷେଇ ଦେଇ ପୁଣି ପଚାରିଲେ, "କାଲି ରାତିସାରା ଆମେ ଯାହା ହେଇଚୁ, ପ୍ରଭୁ ଜାଣନ୍ତି । କାଲି ସଂଜବେଳେ ତୁ କୁଆଡେ ଯାଇଥିଲୁ କି ?"

କମଲୁ ସ୍ୱପ୍ନ ହେଲା ପରି ଗୋଟାଏ ଆଡେ ଚାହିଁଲା । କହିଲା, "ଖେଳପଡିଆବାଟେ ସେମାନେ ଗୋଟେ ଗୋରୁ ଅଡେଇ ନଉଥିଲେ ହାଣିବାକୁ ! ଖାଲି ଚମ ଆଉ ଶିଙ୍ଗ ପାଇଁ ମଢିଆ

ଗୋରୁମାନଙ୍କୁ କିଣି ନଉଥିଲେ । ଧୂଳି ଉଡୁଥିଲା । ସେ ଲୋକମାନେ ମୁହଁରେ ଲୁଗା ଭିଡି ପଛଆଡୁ ଟଡୁଥିଲେ ।"

– "ତୁ କାଇଁକି ସେଗୁଡା ଦେଖି ଏମିତି ହଉଚୁ ? କିଏ କ'ଣ କରୁଚି ସେଥିରେ ଆମର କ'ଣ ଥାଏ ?"

– "ମତେ ଲାଗିଲା ସେମାନେ ସେଇଠି ସେ ଧୂଳି ଉପରେ ରକ୍ତ ନିଗାଡି ଦଉଚନ୍ତି । ଛଟପଟ ହେଇ ଟଳିପଡୁଚନ୍ତି ଗୋଟା ପରେ ଗୋଟା ଜନ୍ତୁ । ମତେ ଅଇ ଟେକିଲା । ମୁଣ୍ଡ ବୁଲେଇଦେଲା ।"

– "ହଉ ହଉ ! ତୁ ଆଉ ସେମିତି ହ' ନା' ।"

– "ମା' ! ଆମ ପାଟ ଗାଈକୁ କ'ଣ ସେ ଲୋକଟା ସେମିତି ହାଣିଦବ ? ତା' ରକ୍ତ ନିଗାଡିଦବ ? ପାଟ କନା ପରି ଚିକ୍କଣ ଚମ ଆଉ ଗଢିଲା ପରି ସୁନ୍ଦର କଳା ଶିଙ୍ଘ ପାଇଁ ?"

– "ଆରେ ବାୟାଙ୍କ ପରି କ'ଣ କହୁଚୁ ? ସେ ପରା କ୍ଷୀର ଖାଇବାକୁ ଦୁହାଁଳ ଗାଈ କିଣି ନେଇଚି ଏତେ ପଇସା ଦେଇ । ଦୁଇ ଓଳି ପାଟକୁ କେତେ କ'ଣ ଖାଇବାକୁ ଦଉଥିବ, ଯତନ କରୁଥିବ, ଏ ଓଳି ସେ ଓଳି କ୍ଷୀର ଦୁହୁଁଥିବ ।"

– "ଜାଣିଚୁ ନା ମା', କାଲି ମତେ ସେଇ ଗୋରୁମରା ଦେଖାଦଉଥିଲା । ତା' ମୁହଁ ଦିଶୁ ନ ଥିଲା । ତା' ବେକଠୁ ଉପରକୁ ଗୋଟେ ଗୋରୁମୁଣ୍ଡ । ଲୁହ ବୋହୁଥିବା ଆଖିରେ ପଲକ ପଡୁ ନ ଥିଲା । ତଳକୁ ମଣିଷଟା ଗୋଟେ ଗୋରୁ ଚମଡା ଘୋଡେଇ ହେଇଥିଲା । ଲାଞ୍ଜ ଘୁଷୁରୁଥିଲା ତଳେ । ଖୁରାଗୁଡାକ ଘୁଷୁରୁଥିଲା । ସେଥିରୁ ସାଲୁବାଲୁ ରକ୍ତ ତା' ଦିହସାରା ଲାଗିଥିଲା ।"

କମଲୁ ଦାନ୍ତ ଦାବି ଓଟାରିହେଲା । ତାକୁ ଅଇ ଟେକିଲା । ଦିହ ଥରିଲା । ମା' ତା' ମୁହଁକୁ ପାଣି ମାରି ପିଠି ଆଉଁସି ଦେଲେ ।

– "ଆରେ ସେମିତି କାଇଁକି ଗୁଡେ ମନକୁ ଆଣୁଚୁ ? ସେଟା କିଛି ନୁହଁ । ସେମିତି କେହି ନାହିଁ । କିଏ ମୋ' ପିଲାକୁ କ'ଣ ଗାରେଡି କରିଦେଇଛି ! ମୁଁ କ'ଣ କରିବିଟି ! ତାକୁ ଏମିତି କାଇଁକି ଦୃଶ୍ୟ ହଉଚି !"

ଡମି ଆସି କମଲୁକୁ ସମ୍ଭାଳିଲା । ଲେମ୍ବୁ ଫେପା ଶୁଙ୍ଘେଇଲା, "ଏମିତି କାଇଁକି ହଉଚୁ କମଲୁ ! ତତେ ଯାହା ଦିଶୁଚି ସେଗୁଡା ସବୁ ମିଛ ।"

ସେଦିନ ସଞ୍ଜବେଳକୁ ଆଉ ଗୋଟାଏ କ'ଣ ଛମ୍‌ଛମ୍ କରୁଥିଲା ଘରେ । ମା' ଧନ୍ଦି ହେଲା ପରି ଏ ବଖରାକୁ ସେ ବଖରା ହଉଥିଲେ । ପଡିଶାଘର କହ୍ନେଇ ଆସି କ'ଣ ପୁଡାଟାଏ ବଢେଇ ଦେଇଗଲା ।

ମା' ଚିନାମାଟିର ପ୍ଲେଟ୍‌ମାନକୁ ପୋଛାପୋଛି କରି ସଜାଡିଲେ ।

ଡମି ଦିଶୁ ନ ଥିଲା ଅନେକ ବେଳଯାଏଁ ।

କମଲୁର ହଠାତ୍ ମନେହେଲା ଯେ ଗୋରୁହାଟକୁ ଯିବା ପୂର୍ବରୁ ଯାହା ହେଇଥିଲା ସେଇଆ

ବୋଧେ ଆଉ ଥରେ ହବାକୁ ଯାଉଛି ।

ତା' ଦେହବ୍ୟସ୍ତ ପାଇଁ ମା' ତା' ହାତରେ ଆଉ ମିଠା ମଗାଇଲେ ନାହିଁ; କହ୍ନେଇ ହାତରେ ମଗେଇଲେ ।

ତମି ବୋଧେ ତା'ର ନୀଳ ଶାଢ଼ି ପିନ୍ଧୁଚି ଆର ବଖରାରେ । କିଏ ସବୁ ଆସୁଛନ୍ତି, ଯାହାକୁ ତମି ଗଡ଼ ଦେଇ ନମସ୍କାର ହେବ । ପଇସାବାଲା ମୋଟା ମୋଟା ଠେକାଭିଡା ଲୋକ । ଲୁଙ୍ଗି ପିନ୍ଧା ଝାଲୁଆ ଅପରଛନିଆ ଲୋକ ନୁହନ୍ତି, ଧୋବ ଧଉଲିଆ ସହରୀ ବାବୁ ଲୋକ ।

କମଲୁ ତା' ଚୌକିଟିରେ ବସି ନାନା କଥା ଭାବିଯାଉଥାଏ ।

ମା' କହୁଥିଲା ତମି ପରଘରୀ ହେଇଯିବ । ଏଇଠୁ ଚଲିଯିବ । ତା' ବିଭାଘର ହେଲେ ସେମାନେ ତାକୁ ନେଇଯିବେ ।

କାହିଁକି ବିଭାଘର ହବ, କାହିଁକି ସେମାନେ ତାକୁ ନେଇଯିବେ – କମଲୁ ବୁଝି ପାରୁ ନ ଥିଲା । ସେମାନେ କ'ଣ ପଇସା ଦେଇ ତମିକୁ କିଣିନେବେ ? ଯେମିତି ପାଟ ଗାଈକୁ ଠେକାଭିଡା ଲୋକଟା କିଣିନେଲା ?

ମା' କହୁଥିଲା, ସେମାନେ ଓଲଟି ପଇସା ମାଗୁଛନ୍ତି । ସେଥିରୁ ଗୋଟେ କୁଆଡେ ମା'କୁ ଏ ଘରଦ୍ୱାର ସବୁ ମାଗୁଥିଲା । ମା' ତାକୁ ନେହୁରା ହେଲା ପରି କହୁଥିଲା – ଏ ଘରଖଣ୍ଡ ନେଇଗଲେ ଆମେ କୁଆଡେ ଯିବୁ ?

ସେ ମାନିଲା ନାହିଁ । ଟମଟମ ହେଇ ଚଲିଗଲା । ମା' ସେଦିନ ମୁହଁ ଘୋଡେଇ ଖୁବ୍ କାନ୍ଦିଲା । ଆର ବଖରାରେ ତମି ବୋଧେ କାନ୍ଦୁଥିଲା । ମା'ର ଦୁଃଖ ସହି ନ ପାରି କାନ୍ଦୁଥିଲା ।

ଏଗୁଡା କାହିଁକି ଆସୁଛନ୍ତି ଆମ ଘରକୁ! ତମି ଏଠି ରହିଲେ ଅସୁବିଧା କ'ଣ ହୁଅନ୍ତା ? ମା' କାହିଁକି ତମିକୁ ଦେବାକୁ ଚହୁଁଛି ?

କମଲୁ ମନେ ମନେ ଖୁବ୍ ଜୋର୍ ଲଗେଇ ରୋଧିବାକୁ ଚହିଁଲା । ସେ ସବୁ ଆସୁଛନ୍ତି ତମିକୁ ନେବେ ବୋଲି । ସେ ସେମାନଙ୍କୁ ଘଉଡି ଦେବ – ଏଠୁ ଯାଅ ସବୁ । ଆମ ତମି ଆମ ଘରେ ରହିବ ! ତମି କ'ଣ ଗାଈ ହେଇଚି ? ଆମେ ତା' ବେକରେ ପଘା ବାନ୍ଧି ତୁମକୁ ବଢେଇଦବୁ ? ଯାଅ ।

କମଲୁର ହାତ ମୁଠା ମୁଠା ହେଇଗଲା । ଦାନ୍ତକୁ ଦାନ୍ତ ଜାବି ସେ ଫଁ ଫଁ ହେଲା । ତାକୁ ଦିଶିଗଲା ଗୋରୁହାଟ । ସେ ଗୋରୁଗହଳି । ସେ ଲୋକଗହଳି ।

ଗୋଟାଏ ଡାକୁଚି ମୁଁ ଚରିଶ' ପଚଶ' ଦେବି । ଆରଟା କହୁଛି ପାଞ୍ଚଶ' । ସେମାନଙ୍କ ମୁହଁ, ଥରୁଥିବା ଟାଙ୍କୁରି ଉଠୁଥିବା ନିଶ, ସେମାନଙ୍କ ରଙ୍ଗ ଟହଟହ ଆଖି, ତାଙ୍କ ପଛକୁ ଠେଙ୍ଗାଧରା ସେମାନଙ୍କର ବୋଲକରା ।

ସେମାନେ ଜିଦ୍ ଧରିଛନ୍ତି ତମିକୁ ନେଇଯିବେ । ତମି ଡବଡବ ଆଖିରେ ତାଙ୍କୁ ଚହିଁବ । କେତେ ଆତୁର ଦିଶୁଚି ! ଭୟରେ ତା' ଓଠ ଶୁଖିଯାଇଛି । ଗୋଟାଏ ସେଥିରୁ ଟହଟହ ହସୁଚି – ମୁଁ

ନେବି ଏଇଟାକୁ । ଦଶ ହଜାର ! ବାର ହଜାର ! ପନ୍ଦର ହଜାର !!

ସେ ତମିର ନାଲି ଶାଢ଼ିଟାକୁ ଭିଡିଆଣି ତା' ଗଳାରେ ଗୁଡେଇ ଧରୁଚି । ତମି ହାତ ଟେକି ଛଟପଟ ହେଉଚି । ତା' ହାତରେ ମା'ର ସୁନା କାଚ । ବେକରେ ମା'ର ମାଳି । ସବୁଯାକ ଅଳଂକାର । ସେ ଲୋକଟା ଶାଢ଼ି ଧରି ଟାଣୁଚି । ତମିର ନିଶ୍ୱାସ ରୁନ୍ଧି ହେଇ ଯାଉଚି । ସେ ବୋବାଳି ଛାଡି କାନ୍ଦୁଚି । ମା' ତାକୁ ଜାବୁଡି ଧରି କାନ୍ଦୁଛି । ସେ ଲୋକଟା ଶାଢ଼ି ଟାଣି କହୁଚି, 'ଆ' । ସେ ଭିଡିନଉଚି ତମିକୁ ।

ସେ ଲୋକଟା ଗୋରୁ ଚମ ଗୋଡେଇ ହେଇଚି । ତା' ମୁହଁ ଉପରେ ଗୋରୁ ମୁଣ୍ଡ, ଗୋରୁଚମ – ରକ୍ତ ସାଲୁବାଲୁ ।

କମଲୁର ନାଭିମଣ୍ଡଳ ଭେଦି ଚିତ୍କାର ଶୁଭିଲା... "ନା...!!"

ସେ ଚିର୍‌ଚିରେଇ ଉଠିଲା । ତା' ହାତ ଗୋଡ ଫଡଫଡ ହେଲା । ସମସ୍ତେ ଦଉଡିଆସିଲେ ତା' ପାଖକୁ – ମା', ତମି ଆଉ ସେମାନେ ।

କମଲୁର ସର୍ବାଙ୍ଗ ଝାଳସରସର । ସେ ତରିଲା ତରିଲା ଆଖିରେ ଚାହୁଁଥିଲା ।

ଧାଁଦଉଡ, ପାଣିଛଟା, ଡାକହାକ, କାନ୍ଦ ବାହୁନା । ସେମାନଙ୍କ ଭିତରୁ ମୁରବି ପଚାରିଲେ, "ୟାକୁ କ'ଣ ଏମିତି ବେଳେବେଳେ ହୁଏ ? କେବେଠୁଁ ଏ ରୋଗ ଅଛି ?"

ଆଉ ଜଣେ ପଚାରିଲା, "ଏ କ'ଣ ଡିଆଡେଇଁ କରେ, କାମୁଡାକାମୁଡି କରେ ?"

– "ଏଇଟା କ'ଣ ଆପଣଙ୍କ ବଂଶରେ ଅଛି – ଏମିତି ପାଗଳାମି ? ୟାକୁ ଡାକ୍ତର ଦେଖାଉନାହାନ୍ତି କାହିଁକି ?"

ଏତିକିବେଳେ ଥରଥର କରୁଥିବା ଆଙ୍ଗୁଠି ଟେକି କମଲୁ ଚିତ୍କାର କଲା – "ଏଇ ସେଇ ଗୋରୁମରା ଲୋ ମାଆ ! ପଳାଅ ଏଠୁ । କବାଟ କିଳିଦିଅ, ନ ହେଲେ ସେ ନେଇଯିବ । ତଣ୍ଟି କାଟିଦବ । ଚମ ଉଲାରିଦେବ ।"

ଆଉ କ'ଣ ସବୁ ବିଡ୍‌ବିଡ୍ କହୁ କହୁ କମଲୁର ଚେତା ବୁଡିଗଲା ।

ସେମାନେ କିଛି ନ କହି ପଛକୁ ନ ଚାହିଁ ଚାଲିଗଲେ । ମା' ନେହୁରା ହେଲା ପରି ହାତ ମନ୍ଥି ମନ୍ଥି ତାଙ୍କ ପଛରେ ଗୋଡେଇଗଲା ।

ତମି ନୀଳ ଶାଢୀ ପିନ୍ଧି ଶୂନ୍ୟକୁ ଚାହିଁ ଠିଆ ରହିଗଲା ।



# ଦୁର୍ଲଭ ସକାଳ

ସେମାନେ ଯାହା ଡରୁଥିଲେ ଶେଷକୁ ସେଇଆ ହେଲା ।

ନଈ ପାଖରେ ପହଞ୍ଚିଲାବେଳକୁ ଅନ୍ଧାର ହେଇଯାଇଥିଲା ।

ପାହାଡ ପରି ମେଘ ଘୋଟିରହିଥିଲା ଚାରିଆଡୁ । ଉପରମୁଣ୍ଡରେ ବର୍ଷା ହୋଇ ନଈପାଣି ଫୁଲିଉଠିଥିଲା ବଟଗଛ ଯାଏ । ବଣୁଆ ନଈ ଅଜାଡି ହୋଇ ପଡୁଥିଲା ଗଡାଣିରୁ ଗଡାଣିକୁ । ଗୋଡ ବଢେଇ ଡେଇଁଗଲା ଭଳି ସରୁ ପାଣିଧାରରେ ବେଳ ପଡିଲେ ଏମିତି ଉଜାଣି ଉଠିବା ନ ଦେଖିଲେ ପ୍ରତ୍ୟୟ ହେବ ନାହିଁ । ବଟଗଛ ମୂଳେ ବଳଦଗାଡିକୁ ରଖି ଘନା ନାଏକ ହାରିକିନ୍ ଲଗେଇଲା । ଦମକା ପବନରେ ଲିଭିଯାଇଥାନ୍ତା; ଚଟ୍‌କିନା କାଚ ପକେଇଦେଲା ବୋଲି ରହିଗଲା । ଶଗଡ ଭିତରେ ପେଡିପେଟେରା, ନୂଆ ଲୁଗା, ବାସନ, ଖଟ, ପିଢା ଘେର ଭିତରେ ନୂଆ ଭୁଆସୁଣୀ ଲଳିତା । ଡାକ ନାଁ ଗେଲି । ତା'ରି ଭିତରେ ବାପୁ କକା, ନିତେଇ । ବାହାରେ ଛାଟ ଧରି ଗାଡି ଚଳେଇବାକୁ ସୁଦୁ ଓରଫ ସୁଦର୍ଶନ । ସମସ୍ତେ ଗାଁଲୋକ । ଆପଣାର ଲୋକ ।

ଲଳିତାକୁ ନେଇ ଶାଶୁଘରେ ଛାଡିବେ । ବାଟ ଏମିତି ତାଳଭଙ୍ଗା ସାତକୋଶ । ସରକାରୀ ରାସ୍ତା । ଦିନକୁ ଦୁଇଥର ମଟର ଗାଡି ଯିବାଆସିବା କରେ । ଗୁମୁଗୁମୁ ହୁଏ ଘେରିରହିଥିବା ପାହାଡମାଳ, ଆଉ ଅଗ୍ନାଅଗ୍ନି ବନସ୍ତ ।

ଲଳିତା ମୁହଁରେ ହାରିକିନ୍ ଆଲୁଅ ପଡିଲା । ସମସ୍ତଙ୍କ ମୁହଁରେ ବି ପଡିଲା । ବାପୁ କକା କେମିତି ଡରିଗଲା ପରି ଦିଶୁଥା'ନ୍ତି । ଆଗରେ ବଢିଲା ନଈ; ଲାଞ୍ଜ ପିଟି ନାଗ ସାପ ପରି ଫୁଁଫୁଁକାର କରୁଛି । ମୁଣ୍ଡ ଉପରେ ଗୁମୁଗୁମୁ ଡାକୁଛ କଳାଘୁମର ମେଘ । ଚାରିଆଡେ ବଣ ପାହାଡ । ଲଳିତାର ଶାଶୁଘର ସେଉଠୁ ଆଉ ଗୁଡାଏ ବାଟ । କେମିତି ଏ ଦାୟିତ୍ୱ ତୁଲେଇବେ ଏଇ ଚିନ୍ତା ଟାଙ୍କ କପାଳରେ ଥୋଲା ଥୋଲା ହେଇ ଓହଳି ରହିଛି । ସେ ଥରେ ଲଳିତାକୁ ଚାହିଁଦେଇ ତଳକୁ ମୁହଁ ପୋତି ବସିଲେ । କ'ଣ ବା ସେ କରିପାରିବେ ?

ନିତେଇ ଆଉ ଘନା ଲଳିତାଠାରୁ ବୟସରେ ପାଞ୍ଚ ଛ' ବର୍ଷ ଲେଖା ବଡ । ନିତେଇ ଦର୍ଜି କାମ କରେ । ଲଳିତାର ବିଭାଘରକୁ ନୂଆ କନାରେ ତା' ପାଇଁ ପାଞ୍ଚଖଣ୍ଡ ବ୍ଲାଉଜ୍ ତିଆରି କରିଛି, ପଚାରିପଠେଇଥିଲା ଦେହକୁ ବସିଲା ନା ନାହିଁ । ସେ ଲଳିତା ଘରକୁ ଯିବାଆସିବା କରୁଥିଲା ।

ମଉସା ମାଉସୀଙ୍କୁ ଖୁବ୍ ଖାତିର କରୁଥିଲା । ବେଳ ପଡିଲେ ବୋଲହାକ କରି ଦେଉଥିଲା । ନିତେଇର ବାପ ଲଳିତା ଘରୁ ଟଙ୍କା କରଜ ନେଇ ମଦ ଖାଇଦେଇଥିଲା । ସେ ପଇସା ଆଉ ଶୁଝି ପାରିଲା ନାହିଁ – ମରିଗଲା । ନିତେଇ ଘରପୁଅ ପରି । ବେଳେବେଳେ ଅଗଣାରେ ଠିଆ ହେଇ ଲଳିତାକୁ ଚାହିଁ ରହୁଥିଲା ଏକଲୟରେ ।

ଲଳିତା ହାରିକିନ୍ ଆଲୁଅରେ ଆଖିଟେକି ଚାହିଁଲା ବେଳକୁ ନିତେଇ ସେମିତି ତାକୁ ତକେଇ ରହିଥିଲା । ତା' ଆଖି ଅଣ୍ଡାଳି ବୁଲୁଥିଲା ଲଳିତାର ଦେହସାରା । ଲଳିତା ଜଡସଡ ହେଇ ଜାକୁଜୁକି ହେଇ ବସିଲା । ତାକୁ ଭାରି ଡର ମାଡିଲା । ଶାଶୁଘର ଅଚିହ୍ନା ଯମପୁର । ସେଇଠି ତା' ଗେରସ୍ତ ବି ଏମିତି ଲହଲହ ଆଖିରେ ଅନେଇବ । ପାଖରେ କେହି ନଥିବେ । ତାକୁ କାନ୍ଦ ମାଡିଲା । ବୋଉ ମନେପଡିଲା । ବାହୁନା ଗୀତ ମନେପଡିଲା –

"ତୁବ ବଢୁଥିଲା କାକର ଖାଇ, ଲୋ ବୋଉ !<br>
ମୁଁ ବଢୁଥିଲି ତୋ' ସେନେହ ପାଇ, ଲୋ ବୋଉ !<br>
ଦୂବକୁ କାକର ସହିଲା ନାଇଂ, ଲୋ ବୋଉ !<br>
ମୋ ଅଲିଅଳ ତ' ରହିଲା ନାଇଁ, ଲୋ ବୋଉ !"

ତା' ପେଟ ଦି' ଭାଗ ହୋଇ କୋହ ଉଠିଲା । ଆଖିର କଜଳ ଧୋଇହୋଇଗଲା ଲୁହରେ । ଭାଲୁକୁଣୀମୁହିଁ ଲଳିତା ନିତେଇ ଆଖିକି କ'ଣ ଦିଶୁଥିଲା କେଜାଣି । ସେ କଟାସ ଭଳି ଚାହିଁରହିଲା ।

ଲଳିତା ଲୁହ ଛଳଛଳ ଆଖି ଟେକି ଦେଖିଲାବେଳକୁ ନିତେଇ ଜିଭ ଟେକି ତା' ନିଶୁଆ ଓଠକୁ ଚାଟୁଥିଲା । ପାଣିରେ ଢଳଢଳ ନିତେଇର ମୁହଁ ଲମ୍ବିଗଲା । ଆଖି ଗୋଟାଳିଆ ଦିଶିଲା । ଲଳିତାର ମଣ୍ଡ ଥରିଗଲା । ନିତେଇ ଡାହାଳ କୁକୁର ପରି ଦିଶିଗଲା କ୍ଷଣକ ପାଇଁ । ଲଳିତା ତରତର ହୋଇ ଆଖି ପୋଛି ପଟା ମଟମଟ କଲା । ନିତେଇ ମୁହଁ ଫେରେଇ ନେଇଗଲା ବାହାର ଅନ୍ଧାର ଆଡକୁ ।

ତା' ବାଁ ପାଖେ ବସିଥିଲା ଘନା । ଘନା ବି ଚାହିଁଥିଲା ଲଳିତା ମୁହଁକୁ । ଗଳା ଝାଡି କହିଲା, "ଏ ଶଳା ନଈପାଣିଟା ଓହ୍ଲେଇ ନ ଗଲେ ଏଇଠି ରାତି ପାହିଯିବ । ଏଇଟା ପରା ବାଘେଇ ନଈ – ବଢିବ ଯେମିତି, ଛାଡିବ ସେମିତି ।"

ଲଳିତାର ମନ ଧରିଲା ପରି ଘନା ସଦାବେଳେ ରାଉ ରାଉ କଥା କହେ । ସେ କ'ଣ ଚାହେଁ କେଜାଣି ? ସେ କଥା କହିଲାବେଳେ ଲଳିତା ତାକୁ ଖାଲି ଅନାଏ । ମନକୁ ପାଇଗଲେ ହସିଦିଏ । ସେତିକିରେ ଘନା କୁରୁଳି ଉଠେ ।

ଅନ୍ଧାର ମେଘୁଆ ରାତି । ଏଣେ ବାଘେଇ ମାତିଛି ଯେ କାହିଁରେ କ'ଣ । ଡେମ୍ଫରୁ ତୋଳା ହୋଇଥିବା ଫୁଲପରି ଲଳିତା ଲସା ଝରଉଛି । ଆଗରୁ ଅନ୍ଧାର, ଆଗକୁ ବଣ, ପାହାଡ ଆଉ ଶାଶୁଘର । ତା' ଆତ୍ମା ଥରୁଛି କାତର ପକ୍ଷୀପରି । ଏଥିରେ କ'ଣ କୋଉ କଥା ଶୁଣିବାକୁ ଭଲଲାଗେ । ଘନା ମୁହଁ ଫେରେଇ ବାସୁ କକାଙ୍କୁ ଚାହିଁଲା । କହିଲା, "କକା, ମ ! ବଡ ହଇରାଣିଆଟା ହେଇଗଲା ।

କରିବା କ'ଣ କହିଲ ? ମୁଁ ଯାଇ ଦେଖିବି କି ନଈରେ ପାଣି କେତେ ?" ଚମକିଲା ପରି ବାସୁକକା ମୁହଁ ଟେକି ତାକୁ କହିଲା, "ତତେ ବାଇ ଲାଗିଚି କି ? ଆରେ, ଏଇଟା ବଣୁଆ ନଈଟି, ସୁଅରେ ସାପମୁଣ୍ଡ ଛିଣ୍ଡିଯିବ । ଯା ଭିତରେ ପଶିଲେ କୁଆଡେ ଟଡି ନେଇ କୋଉଠି ମାଡିଦବ, ଠିକଣା ନାହିଁ ! ତୁ ବସ୍ ଚୁପ୍ କରି ।"

ବାସୁ କକା ଲଳିତାକୁ କେଜାଣି କାହିଁକି ଚହିଁପାରିଲେ ନାହିଁ ।

ବାହାରେ ସୁଦର୍ଶନ । ସୁଦୁ ଭାରି ଚୁପ୍‌ଚାପ୍ ମଣିଷ । ଶଗଡକୁ ଯତ୍ନରେ ରଖିଥାଏ । ବଳଦଙ୍କୁ ଧୂଆପୋଛା କରି ରଖିଥାଏ । ଗାଁଯାକ ଝିଅଙ୍କୁ ଶାଶୁଘରେ ଛାଡିଛି ଏଇ ସୁଦୁ ତା' ଶଗଡରେ ।

ଆଗକୁ ମୁହଁକରି ସୁଦୁ କହିଲା, "ବାସୁ କକା, ବଳଦଙ୍କୁ ମୁକୁଳେଇଦବା କି ?"

ବାସୁ କକା ଚିଡିଲା ପରି କହିଲେ, "ଆରେ କି ଅଭିଲା କଥା । ନଈରେ ପାଣି ନଥିଲେ ଏବେ ଶଗଡ ଚାଲୁଥାନ୍ତା ନା ନାହିଁ ? କ'ଣ ନା' ଏଠି ରହିଗଲା ବୋଲି ତତେ ବଳଦଙ୍କ ଚିନ୍ତା ଲାଗିଗଲା ? ଆମେ ସବୁ ପୁଣି ବସିଛୁ । ଭୁଆସୁଣୀଟା ବସିଛି । କୁଆଡେ ଓହ୍ଲେଇବୁ ?" ସୁଦୁ ନରମିଗଲା, "ନାଇଁ ମ' କକା, ମୁଁ ଖାଲି ସେମିତି କହୁଥିଲି ନା ! ହେଲେ କକା, ଆମକୁ କେତେବେଳ ଏଇଠି ବିତେଇବାକୁ ହବ ଜଣା ନାଇଁ । ମେଘ ଟେକିଛି ଯେ କାହିଁରେ କ'ଣ, ଶିଳଶାଳ କୁଢେଇବ । ବର୍ଷିରେ ବଳଦ ଯଦି ଉଧୁଳନ୍ତି, କ'ଣ କରିବା ? ମୁଁ ସେଇଥିପାଇଁ କହୁଥିଲି ବଳଦଙ୍କୁ କାଢି ଟିପିଆ ଲଗେଇଦବା, ଚକ ମୂଳେ ପଥର ଥୋଇଦବା ।"

ବାସୁ କକା କ'ଣ ଭାବିଲେ; "ହଉ ହଉ" କହି ଓହ୍ଲେଇଲେ । ତାଙ୍କ ସାଙ୍ଗେ ନିତେଇ ଆଉ ଘନା ବି ଓହ୍ଲେଇଗଲେ ।

ବଳଦଙ୍କୁ ଯୁଆଳିରୁ ଖସେଇ ନିଆଗଲା । ବଟଗଛ ମୂଳେ ଗୋଟେ ଚେର ଫାଙ୍କରେ ତାଙ୍କୁ ବାନ୍ଧିଦିଆଗଲା । ନିତେଇ ଆଉ ଘନା ଯୁଆଳି ଟେକିଧରିଥା'ନ୍ତି ସୁଦୁ ଟିପେଇ ଆଣି ନ ଥୋଇବାଯାଏଁ । ଚକ ଆଗକୁ ଆଉ ପଛକୁ ବଡ ବଡ ଢିମା ପଥର ଦିଆଗଲା ।

ଜଣାଗଲା ଯେ ଏଇ ଛୋଟ ଶଗଡଟିକୁ ଦୁର୍ଗ ଭଳି ନିଶ୍ଚଳ କଲା ପରେ, ସେଇଠୁ ସେମାନେ ବର୍ଷା ବତାସି ନଈବଢିକୁ ମୁକାବାଲି କରିବେ ।

ଚାରିଜଣଯାକ ବାହାରେ ଠିଆହେଇଥା'ନ୍ତି । ବାଁ ପାଖ ପାହାଡ ପିଠିରୁ ଶିର୍‌ଶିରିଆ ପାଣିମିଶା ପବନ ଓହ୍ଲେଇ ଆସିଲା । ଶଗଡ ଭିତରେ ପଶିଗଲା ଏପାରି ସେପାରି । ଲଳିତା ଆଗପଛ କଥା ନ ଭାବି ତାକୁ ଘେରିରହିଥିବା ଅନ୍ଧାର ଆଉ ବର୍ଷାରାତିକୁ ଅନେଇଲା । ଏମିତି ରାତିରେ ମା' ଦେହରେ ସେ ଲାଖିଯାଉଥିଲା ଭୟରେ, ଖୁସିରେ । ମା' ତା' ପିଠିରେ ହାତ ବୁଲେଇ ଅଭୟ ଦଉଥିଲା । ଲଳିତା ପୁଣି ଅସରାଏ ସକସର କାନ୍ଦିପକେଇଲା ।

"ପୋଡିଯାଉକିନା ଝିଅଜନମ ଲୋ ବୋଉ ! ଜନମଘରେ ତ' ନାହିଁ ମରଣ, ଲୋ ବୋଉ !"

ପୁଣି ହାବୁକାଏ ପବନ ପଶିଆସିଲା । ଲଳିତା ଧପ୍‌ଧପ୍ ହଉଥିବା ହାରିକିନ୍ ଆଲୁଅକୁ

ରହିଁଲା । ତା' ସାନ ପାପୁଲି ଦୁଇଟିକୁ ବେଢ଼େଇ ଆଲୁଅକୁ ବଞ୍ଚାଇବାକୁ ଚେଷ୍ଟା କଲା । ଏତିକିବେଳେ ମାଡିଆସିଲା ବତାସ ଆଉ ବର୍ଷା । ଟଳମଳ ହେଲା ଶଗଡ । ବର୍ଷାପାଣି ପବନ ନଈସୁଅ ଭଳି ଅଜାଡି ହେଇଗଲା ଭିତରେ । ଲଳିତା ସରବୁଡ ଓଦାହେଇଗଲା ଏକାଥରକେ । ଏକାଥରକେ ଧପ୍‌କରି ଲିଭିଗଲା ହାରିକିନ୍ ଆଲୁଅ । ଶଗଡ ଭିତରକୁ ଭୁସ୍‌ଭୁସ୍ ପଶିଆସିଲେ ଚାରିଜଣ । ଅଣ୍ଡାଳି ହେଉଥିବା ଅସଂଖ୍ୟ ହାତ ତା' ଦିହରେ ମୁହଁରେ ବାଜିଲା । ତା' ଉପରଦେଇ ଚଢିଆସିଲା କେହି ଜଣେ । ଲଳିତା ଚିତ୍କାର କଲା । 'କଣ ହେଲା, କ'ଣ ହେଲା' – କହି ପୁଣି ଚାରି ହଳ ହାତ ତାକୁ ଅଣ୍ଡାଳି ପକାଇଲେ । ସେଗୁଡାକୁ ଓଦା ସାପ ଭଳି ଛିଞ୍ଚାଡି ଦେଇ ଲଳିତା ଅସ୍ୱାଭାବିକ ଭାବରେ ପାଟିକରି କହିଲା, "ମୋର କିଛି ହେଇନାହିଁ । ତମେସବୁ ଘୁଞ୍ଚ ବସୁନାହଁ କାହିଁକି ?"

ଘନା କହିଲା, "ବାସୁ କକା, ହାରକିନିଟା କାଇଁ ? ଏ ପବନରେ କ'ଣ ସେ ରହିବ ?"

ଯଦି ରହିବ ନାହିଁ, ତେବେ ଘନା ନାଏକ କାହିଁକି ଅନ୍ଧାରରେ ହାତ ହଲାଉଥିଲା ହାରିକିନ୍ ଖୋଜିବାକୁ, ଲଳିତା ଦେହରେ ବାଜିଲା ଭଳି ?

ନିତେଇ ବି ସେମିତି ହାତ ସାଲୁସାଲୁ କରି କହିଲା, "ଗୋଟେ ଚଦର କାଢି, ବାସୁ କକା, ଶଗଡ ମୁହଁରେ ବାନ୍ଧିଦେଲେ ଭିତରକୁ ପାଣି ପଶିବ ନାହିଁ ।"

ବାସୁ କକା ବି ଅଣ୍ଡାଳିବାକୁ ଲାଗିଲେ – "ମୋ ଲୁଗାପଟା ଗୋଟେ ବସ୍ତାନିରେ ଅଛି – ସେଇଟା କାଇଁ ? ସେଇଥିରେ ଚଦର ଅଛି । ଏଇଟା କ'ଣ ?" ...କହି ଗୋଟାଏ ପେଡି ଟାଣିଲେ ଲଳିତାର ଗୋଡ ପାଖରୁ ।

– "ଧେତ୍‌ତେରି, ଏଇଟା ଚୋକେଇଟା !"

– "ସେଇଟାକୁ ହାତପାହାନ୍ତା ରଖିଥା କକା ! ଏଇଠି ରାତି ପୁହାଇବାକୁ ହେଲେ ସେଇ ମୁଆଁ ଦି'ଟା ପାଣିରେ ବତୁରେଇ ତ ଖାଇବା !" ଘନାକୁ ସବୁବେଳେ ତା' ଖାଇବା ଚିନ୍ତା ! କାଇଁ ନିତେଇ ତ ମୁଆଁ କଥାରେ ପାଟି ଫିଟେଇଲା ନାହିଁ ?

ସୁଦୁ ଶଗଡ ମୁହଁରୁ କହିଲା, "ତେମେ ସବୁ ରହିଥା – ମୁଁ ତା'ର ବ୍ୟବସ୍ଥା କରୁଚି । ମୋ' ଗାମୁଛାଟାକୁ ବାନ୍ଧିଦଉଚି ରହ ।" ସତକୁ ସତ ମୁଣ୍ଡରୁ ଠେକା ଫିଟେଇ ସୁଦୁ ଶଗଡରେ ବାନ୍ଧିଦେଲା । ଶଗଡର ପଗ ପଗ ସେ ଜାଣେ । କୋଉଠି କୋଉ ବତାରେ ଗଣ୍ଠି ପକେଇଲେ ରହିବ, ସେ ଜାଣେ । ସତକୁ ସତ ପାଣି ଆଉ ସେମିତି ଭିତରେ ପଶିଲା ନାହିଁ ।

ତା'ହେଲେ ଲଳିତାକୁ ଏମାନେ ସମସ୍ତେ ଜଗିରହିଛନ୍ତି । ତା' ଦିହରେ ପାଣି ଟୋପେ ପଡିଲେ ତାଙ୍କୁ ବାଧୁଚି । ତା'ହେଲେ ଏମାନେ ତା'ର ଆପଣାର ବାପ ଭାଇ । କ'ଣ ହେଇଗଲା ସେଇଠୁ ଯଦି ଅନ୍ଧାରରେ ତା' ଦିହରେ କାହା ହାତ ବାଜିଗଲା, କି ନଇଁପଡିଲାବେଳକୁ ମୁହଁରେ ନିଶ୍ୱାସ ବାଜିଗଲା ?

ଲଳିତା ନିଜେ ସେ ସଂକଟ ବେଳାରେ ସେମାନଙ୍କର ସାଙ୍ଗେ ମିଶିଗଲା । ଅନ୍ଧାରରେ ହାତ ହଲେଇ ଅଣ୍ଡାଳିଲା । ତା' ହାତ ଯାଇ କାହା ହାତରେ ବାଜିଲା । ଚୁଡି ଝମଝମ କଲା । ରୁମ

ସାଲୁବାଲୁ ଓଦା ହାତକୁ ଛୁଇଁଦେଇ ଲଳିତା ଶୀତେଇଗଲା । ଅସନା ଛିଙ୍ଗାଡିଲା ପରି ସେ ହାତ କାଢ଼ିଆଣିଲା । ତା'ର ଗୋଟାଏ ହାତକୁ ଖପ୍‌କିନା ଧରିପକେଇ ସେ କହିଲା, "ଲଳିତା କି ? କ'ଣ ଖୋଜୁଚୁ ?" ନିତେଇ ଦର୍ଜିକୁ ଶୀତ କରୁଥିଲା କି କ'ଣ ! ତା' କଥା ସେମିତି ଶୁଭୁଥିଲା । ସେତିକିବେଳେ ଆଉ ହାତରେ ଟେକିଧରି ଲଳିତା କହିଲା, "ହେଇ ନିଅ ହାରିକିନ୍ ।"

"କାଇଁ କାଇଁ" ବୋଲି ଘନା ଆଉ ବାସୁ କକା ହାତ ଅଣ୍ଡାଳି ଧରିପକେଇଲେ, କିଏ ହାରିକିନ୍‌କୁ କିଏ ତା' ହାତକୁ ।

ନିତେଇ ଆସ୍ତେ ଧରିଥିବା ହାତଟିକୁ ଛାଡିଦେଲା ।

ବାସୁ କକା କହିଲେ, "ଆରେ ଘନା, ଲଗେଇଲୁ ହାରିକିନ୍‌ଟା ।"

ବହୁ କଷ୍ଟରେ ଦିଆସିଲିଟା ନିଆଁ ଧଇଲା । ତା' ଆଗରୁ ସମସ୍ତେ ନିଶ୍ୱାସ ଜାବୁ କରି ରହିଥିଲେ ।

ହାରିକିନ୍ ଆଲୁଅରେ ସମସ୍ତେ ପୁଣି ଅନାଅନି ହେଲେ । ସବୁ ଜିନିଷ ଓଦା ହେଇଯାଇଥିଲା । ଲୁଗା ଲାଖିରହିଥିଲା ଲଳିତା ଦିହରେ ।

ବାସୁ କକା ତାଙ୍କ ବସ୍ତାନି ଠାବ କରି ତା' ଭିତରୁ ଗାମୁଛା କାଢ଼ିଲେ । ଲଳିତାକୁ ବଢ଼େଇ ଦେଇ କହିଲେ, "ନେ, ଦିହମୁଣ୍ଡ ପୋଛି ହେଇପଡ ।"

ଲଳିତାକୁ ହସ ମାଡିଲା – 'ବାସୁ କକା ସତେ କେଡେ ଅଭିଲା । ଏମିତି ମର୍ଦଙ୍କ ଆଗରେ ଲଳିତା କେମିତି ପୋଛିହବ ଦିହମୁଣ୍ଡ ?' ସେ ଖାଲି ମୁହଁରେ ଗାମୁଛାକୁ ଛପେଇଆଣିଲା ।

ଘନା ଏଡେ ପାଟିରେ କହିଲା, "ମୋର ଟଉଲିଆ ଅଛି" କାଢ଼ି ଦେବି କି ?

କେହି କିଛି କହିଲେ ନାହିଁ । ଘନା ସବୁବେଳେ ସେମିତି କଥା କହେ । ହେଲେ ତା' ପେଟରେ କିଛି ନ ଥାଏ ।

ହଠାତ୍ ଆଲୋକମୟ ହେଇଗଲା ସେ ଖଣ୍ଡମଣ୍ଡଳ । ଟେଡେବଡ ବିଜୁଳି ମାଇଲା କି ଆଉ !

ସୁଦୁ ଶଗଡମୁହଁରୁ ପାଟି ଶୁଣେଇ କହିଲା, "ନଈ ଆରପାଖେ ଟ୍ରକ୍‌ଟାଏ ଲାଗିଲା । ତା'ରି ଆଲୁଅ ପଡୁଛି ।" ସେଇ ଆଲୁଅରେ ଦିଶିଲା କେମିତି ଟପ୍‌ଟପ୍ ବର୍ଷା କୁଢ଼ଉଚି । ଆର ମୁଣ୍ଡରୁ ଟ୍ରକ୍‌ର ଘାଇଁ ଘାଇଁ ଶୁଭିଲା । ଛପ୍‌କିନା ଲିଭିଗଲା ଆଲୁଅ । ସେମାନେ ବି ବାଘେଇ ନିଗିଡିଯିବାଯାଏଁ ଅପେକ୍ଷା କରିବେ, ଯିବେ କୁଆଡେ ? କେଜାଣି କାହିଁକି ସମସ୍ତଙ୍କୁ ଟିକିଏ ଦମ୍ଭ ଲାଗିଲା । ଟ୍ରକ୍‌ଟା କେଡେ ବଡ ବଳୁଆ ଅସୁର ପରି ! ନିଛାଟିଆ ବନସ୍ତରେ ତାଙ୍କ ସାହାପକ୍ଷ ହେଇ ସେ ସତେ ବା ସେଇଠି ଚଉରସ ଅଣ୍ଟାଭିଡି ଠିଆ ହୋଇଗଲା ।

ବାସୁ କକା କହିଲେ, "ଆରେ ସେଇଟା ପରା ଲଳିତା ଶଶୁରଘର ଆଡୁ ଆସିଲା ।"

ବିନା କାରଣରେ ଲଳିତାକୁ ଭାରି ଭଲ ଲାଗିଲା ସେ କଥାପଦକ । ତା' ଗେରସ୍ତ ସେମିତି ଦମ୍ଭିଲା ଚଉରସ ମର୍ଦଟାଏ ନୁହଁ କି !

ବଟଗଛମୂଳେ ପିଠିରୁ କୁଜ କାଢି ଗୁମ ଟାଙ୍କୁରାଇ ବଳଦ ଦି'ଟା ବର୍ଷାମାଡ ସହୁଥିଲେ । ସୁଦୁ ବି ବାହାରେ ଠିଆ ଡିନ୍ତୁଥିଲା । ଭିତରେ ସମସ୍ତେ ସେମିତ ଚୁପ୍ ହେଇ ବସିରହିଲେ ମୁଣ୍ଡପାତି ସହିନବାକୁ ଏ ଦୈବୀ ଦୁର୍ବିପାକ !

ଲଳିତା ମନରୁ ଡର ଘୁଞ୍ଚିଯାଇଥିଲା । ସେମାନେ କେହି ତା'ର ଅଚିହ୍ନା ନୁହଁନ୍ତି । ହେଲେ ଏମିତି ଅନ୍ଧାର ବର୍ଷା-ରାତିରେ ଏତେ ପାଖାପାଖି କାହା ସାଙ୍ଗରେ ସେ ବସି ନଥିଲା । ଶଗଡ ଭିତରେ କେତେ ବା ଥାନ ଥାଏ ! ହାତ ବଢେଇଲେ ହାତରେ ବାଜିବ, ଗୋଡ ବଢେଇଲେ ଗୋଡରେ ବାଜିବ । ଏମାନେ ଯେତେହେଲେ ମର୍ଦ ନା' ! ବାସୁ କକା ବି ଲେଖାଯୋଖାରେ କକା ସିନା – ତାଙ୍କର ତ ହେଇ ତିନି ବର୍ଷର ଝିଅଟିଏ । ମର୍ଦଙ୍କର ସତକୁ ସତ ଗୋଟେ ଧାସ ଅଛି । ଏକୁଟିଆ ଭୁଆସୁଣୀଟାକୁ ନିଶ୍ଚେ ଟିକେ ଡର ମାଡିବ । ହେଲେ ପାଣି ପବନ ବତାସିରେ ସେମାନଙ୍କ ପାଇଁ ବେଳା ଆସି ପହଞ୍ଚିଯାଇଛି – ସେମାନଙ୍କ ପାଇଁ, ଲଳିତା ପାଇଁ । ଚିନ୍ତା କେମିତି ରାତି ପାହିବ, କେମିତି ନଈ ପାରିହବ ! ଆଉ ବାକି କଥା ପଛକୁ । ଲଳିତାର ବରଘର କଥା ବି ପ୍ରସଙ୍ଗରେ ଆସୁନାହିଁ । ଆଗ ଏ ସଂକଟରୁ ଉଦ୍ଧାର ହେଲେ ସିନା !

ଆରକୂଳରୁ ଟ୍ରକ୍ ଆଲୁଅଟା କାହିଁକି କେଜାଣି ପୁଣି ଜଳିଉଠିଲା । କିଏ କହିଲା, ନଈପାଣି ବୋଧେ ଛାଡିଗଲା । ଆଉ କିଏ କହିଲା, ଟ୍ରକ୍ ବୋଧେ ଫେରିଯିବ ସହରକୁ । ଏଠି ବିନା କାରଣରେ କାହିଁକି ରାତିରେ ସେମାନେ ବସିରହିବେ ଭୋକ ଓପାସରେ ।

କିନ୍ତୁ ଟିକିଏ ପରେ ପଛପଟ ମୋଡଣିରୁ ଆଉରି ଗୋଟେ ଟ୍ରକ ବତି ଲଗେଇଥିଲା ଡ୍ରାଇଭର । ଅନ୍ଧାର ରାତିରେ ଆଲୁଅ ଆଲୁଅ ଭିତରେ ବୋଧେ ଏମିତି କଥାବାର୍ତ୍ତା ହୁଏ ।

ବର୍ଷା ଶବ୍ଦକୁ ଭେଦି ଫଟଫଟିଆ ପାଖେଇଆସିଲା । ଶଗଡ ଭିତରୁ ତା' ଆଲୁଅକୁ ଚହିଁହେଲା ନାହିଁ । ଆଲୁଅ ପଡି ଆଖି ଝଲସି ଗଲା ।

ଶଗଡକୁ କାଟି ଆଗେଇ ଅଟକିଗଲା । ଆଗକୁ ବାଘେଇ ପାଣି ଝାମ୍ପିପଡୁଛି ବାଁରୁ ଡାହାଣକୁ ।

ଫଟଫଟିଆ ଆଲୁଅ ଟ୍ରକ୍ ଆଲୁଅ ନଈ ଉପର ଦେଇ କଟାକଟି ହେଲେ ।

ଫଟଫଟିଆରେ ତିନିଜଣ ବସିଥିଲେ । ଗୋଟାଏ ସେଥିରୁ ବର୍ଷାତି ଖୋଳ ମଡେଇ ହେଇଥିଲା । ବାକି ଦି'ଜଣ ପେଣ୍ଟଜାମା ପିନ୍ଧି ମଣିଷ । ଏମିତି କୁଆଡେ ଯାଉଥିଲେ କେଜାଣି ? ତିନିଜଣଯାକ ଓଦା-ସରସର ।

ବର୍ଷାତି ଖୋଳଟା ଖାଲି ଚକଚକ କରୁଥାଏ । ସେମାନେ ଫଟଫଟିଆରୁ ଓହ୍ଲାଇ ଠିଆହେଲେ, କ'ଣ କଥାଭାଷା ହେଲେ । ଟପ୍‌ଟପ୍ ମାଡିଆସିଲେ ପାଖକୁ ।

ହାରିକିନ୍ ଆଲୁଅ ତାଙ୍କୁ ମୁହଁକୁ ପଡୁ ନଥିଲା; ଶଗଡ ଆଗରେ ସୁଦୁ ତା' ଗାମୁଛାଟାକୁ ବାନ୍ଧିରଖିଥିଲା ତ' । କିନ୍ତୁ ସେମାନଙ୍କ ସରରୁ ଜଣାଗଲା ସେମାନେ ତିନିଜଣଯାକ ଭେଣ୍ଡିଆ ଟୋକା ।

– "ଆରେ, ଏ ଶଗଡ କାହାର ? ଏଥିରେ କ'ଣ ଅଛି ?"

ଭିତରେ ଲଳିତାର ବୁକୁ ଦାଉଁଦାଉଁ ହେଲା ତଣ୍ଟି ପାଖରେ । ନିତେଇ ବୋଧେ ଅନ୍ଧାରରେ ଛେପ ଢୋକିଲା । ଘନା ଏପଟ ସେପଟ ଘୁଞ୍ଚୁଥିଲା । ବାସୁ କକା ବସିରହିଲେ ନିଶ୍ୱାସ ରୋଧିଲା ପରି ।

ସୁଦୁର ସାହସକୁ ତାରିଫ କରିବାକୁ ହବ । ସେ ନିଧଡକ ଜବାବ ଦେଲା, "ଏ ଶଗଡରେ ଝିଅ ଶାଶୂଘର ଯାଉଛି ପ୍ରଥମ ପାଳି । ତେମେ ବାବୁ କୁଆଡେ ଯାଉଚ ?"

ସେ ତିନିଜଣ ଯଦି ଗୁଣ୍ଡା ହୋଇଥିବେ, ଯଦି ଡକେଇତ ହେଇଥିବେ, ଯଦି ତାଙ୍କ ପାଖରେ ହାତହତିଆର କ'ଣ ଥିବ... ସେମାନେ ହୁଏତ ସୁଦୁ ଉପରକୁ ଝାମ୍ପିପଡିବେ । ଶଗଡ ଭିତରେ ଧସେଇ ପଶିବେ ଭୋକିଲା କେନ୍ଦୁଆ ଭଳି । ଖ୍ୱିନ୍‌ଭିନ୍ କରି ପକେଇବେ ସବୁ ପେଡିପେଟରା । ଉଲାରି ପକେଇବେ ଲଳିତାକୁ । ଛୁରୀ ମାରିଦେବେ ସମସ୍ତଙ୍କ ତଳିପେଟରେ । ଇସ୍-ମୁହୂର୍ତ୍ତକରେ ଏ ବିକଟାଳ ଦୃଶ୍ୟସବୁ ଦିଶିଗଲା ।

ହେଲେ ତା' ଭିତରୁ ଗୋଟାଏ ଟୋକା ଖାଲି କହିଲା, "କୋଉ ଗାଁ ଶାଶୂଘର ?"

ସୁଦୁ ବୁଝେଇ କହିଦେଲା । ଭାରି ସାହସ ସୁଦୁର ।

"ଠିକ୍ ଅଛି ।" କହିଲା ବର୍ଷାତିପିନ୍ଧା ଟୋକା – "ଆମେ ସେ ଗାଁବାଟେ ଯାଉଛୁ କାହାକୁ ଦେଖିଲେ କହିଦବୁ ନଈ ପାରିହେଇ ନୂଆବୋହୂ ଆସୁଚି ବୋଲି ।"

ଭାରି ଭଲ ମଣିଷ ତ ଏମାନେ ! – ତାଙ୍କ ମନକୁ ସାହାଯ୍ୟ କରିବାକୁ କହୁଛନ୍ତି ।

ଆଉ ଜଣେ ପାଟି ଖନେଇଲା ପରି କହିଲା, "ନୂଆବୋହୂ, ବାଃ ନୂଆବୋହୂ !" ତା' ସାଙ୍ଗ ଦି'ଜଣଙ୍କ କାନ୍ଧରେ ହାତ ପକେଇ ସେମାନଙ୍କୁ ଆଗକୁ ଓଟାରି ଆଣି କହିଲା, "ଆମେ ନୂଆବୋହୂ ଦେଖିବୁ !" ସେଇଠୁ ସେ କେମିତି ଗୋଟେ ବେଢଙ୍ଗିଆ ହସ ହସିଲା – ନିଶା ନ ଖାଇଲେ ତ ଏମିତି କଥା କହିବ ନାହିଁ । ଏଗୁଡାକ ତା'ହେଲେ ସେଇ ଲଫଙ୍ଗା ମଦୁଆ ଗୁଣ୍ଡା । କ'ଣ ବଇଲେ କ'ଣ କରିଦେଇ ପାରନ୍ତି । ଲଳିତାର ମଣ୍ଡ ପୁଣି ଥରିଲା ଭୟରେ ।

ସୁଦୁ ତାଙ୍କୁ ବାରଣ କଲା ପରି କହିଲା, "ତେମେ ବାବୁ କେମିତି ଅନୀତି କଥା କହୁଛ ? ଭୁଆସୁଣୀ ଝିଅ ହେଇ ଶାଶୂଘର ଯାଉଛି । ତେମେ ଅଚିହ୍ନା ଲୋକ – ତେମେ ତାକୁ କେମିତି ଦେଖିବ ?"

ଏଇ ବୋଧେ ସୁଦୁକୁ ଖାତିର୍ ନକରି ସେମାନେ ପଛଆଡକୁ ମାଡିଆସିବେ । ତା'ପରେ କ'ଣ ହବଟି !

ବର୍ଷାତି ପିନ୍ଧିଥିବା ଟୋକା ଅଟକିଗଲା – "ଠିକ୍ କଥା କହୁଛ ଭାଇ ! ଆମେ ତାକୁ ଦେଖିବୁ ନାଇଁ । ଆମେ ଏ ବର୍ଷାରେ କୁଆଡେ ଯିବୁ କହୁନ । – ଆମେ ତମ ଶଗଡ ଭିତରେ ବସିବୁ । ଇମାନ୍‌ସେ କହୁଛି କିଛି ବଦ୍‌ମାସି କରିବୁ ନାଇଁ ।"

ସେମାନଙ୍କର ମତଲବ ବୋଧେ ଠିକ୍ ନୁହଁ । ଘନା ଆଉ ନିତେଇ ହାତ ମୁଠା ମୁଠା କରି ଟାଣେଇଗଲେ । ବାସୁ କକା ସୁଦୁର ପାଞ୍ଚଣଟାକୁ ଧରିଲେ । ଏଗୁଡାଙ୍କୁ ପାନେ ନ ଦେଲେ ହବ

ନାହିଁ ।

ଏଇ ବୋଧେ ଯୁଦ୍ଧ ହେଇଯିବ । ଶତ୍ରୁପକ୍ଷ, ମିତ୍ରପକ୍ଷ ଠିଆ ହେଇଗଲେଣି । ଖାଲି ରେରେକାର ଶୁଭିବ । ତା'ପରେ ବର୍ଷା କାଦୁଅରେ ଲଢ଼େଇ ଆରମ୍ଭ ହେଇଯିବ । ସୁଦୁ ସେମିତି ଶଗଡମୁହଁ ପାଖରେ ଠିଆ ହେଇ କହିଲା, "ଦେଖ ବାବୁ, ଶଗଡ ଭିତରେ ଚାରିଜଣ ବସିଛନ୍ତି । ଶାଶୂଘର ପାଇଁ ଭାରଥୋଉ ତା' ଭିତରେ ସଜଡ଼ା ହେଇ ରହିଛି । ତେମେ ଗଲେ କୋଉଠି ବସିବ ? ଏଇ ବଟଗଛ ଆଉ ପାଖେ ଯୋଉଠି ବଳଦ ବନ୍ଧା ହେଇଚନ୍ତି, ସେଇଠି ବର୍ଷା ପାଣି ନାହିଁ । କେଇ ଘଣ୍ଟା ସେଇଠି ବସିଗଲେ ତ ବର୍ଷା ଥମିଯିବ । ବାଘେଇ ପାଣି ଘୁଞ୍ଚିଯିବ । ତେଣିକି ତେମେ ବାବୁ ଫଟଫଟିଆରେ ଚାଲିଯିବ, ଆମେ ଆସିବୁ ଶଗଡରେ ।"

ବାବା ! ସତରେ ସୁଦୁ କେତେ ସାହସୀ ଆଉ ପାରିବାର ? ସେ ନଥିଲେ କ'ଣ ହେଇଥାନ୍ତା କେଜାଣି !

'ସୁଦୁ'ର ଓସାର ବୁକୁ । ଗଢ଼ିଲା ପରି ଡେଣା – ବେଶ୍ ବଳୁଆ ଲଢ଼ୁଆ ଚେହେରା । ତାକୁ ଦେଖି ବୋଧେ ସେ ଟୋକା ଡରିଗଲେ । ସେମାନେ କଥାରେ ସିନା ଭୁରୁଡି ମାରନ୍ତି, କିନ୍ତୁ ହାତଗୋଡରେ ବଳ ନଥାଏ, କି ବୁକୁରେ ସାହସ ନଥାଏ । ସେମାନେ ସୁଦୁ କଥାରେ ସୁନାପିଲା ପରି ବଟଗଛ ଆଡେ ମୋହିଁଲେ ।

ଶଗଡ ଭିତରେ ବଡାଗଣ୍ଡି ସବୁ ହୁଗୁଳିଲା । ନିଶ୍ୱାସ ଚଳିଲା ପୂର୍ବ ଭଳି । ସୁଦୁ ଗାମୁଛା ଆଡୁ ମୁହଁ ଗଳେଇ କହିଲା, "ଶୁଣିଲ ତ ବାସୁ କକା ! ଏଗୁଡାଙ୍କୁ ଏମିତି ବିଶ୍ୱାସ ଯିବା କଥା ନୁହେଁ । ଚାଲ ଆମେ ଚାରିଜଣ ବାହାରି ପଡିବା । ସେମାନେ ଦେଖନ୍ତୁ ଯେ ଏଇଠି ତାଙ୍କ ପେଖନା ଚଳିବ ନାଇଁ । ୟାଡେ ଗୋଡ ବଢେଇଲେ ଗୋଗୋଛବାଡିଆ ପଡିଯିବ ।"

ଘନା କହିଲା, "ସେଇଆ ହଉ, ଚାଲ, ବାହାର ।"

ନିତେଇ କହିଲା, "ଚାଲ, ବାହାର ।"

ଲଳିତା ଖୁବ୍ ନିରାପଦ ମଣିଲା ନିଜକୁ । ତାକୁ ରକ୍ଷା କରିବାକୁ ଚାରିଜଣ ଅଣ୍ଟାଭିଡି ବସିଛନ୍ତି । ସେ ଶୂନ୍ୟରେ ଲଫଙ୍ଗା ଟୋକାଙ୍କ ଆଡେ ମୁହଁ ମୋଡି ଦେଇ ବେଖାତିର ଢଙ୍ଗରେ କହିଲା, "ହୁଃ !" ସତେବା ସେ ରାଜଜେମା । ତାକୁ ପ୍ରସ୍ତ ପ୍ରସ୍ତ ପ୍ରହରୀ ଜଗିରହିଛନ୍ତି । କାହାରି ଜୁ ନାଇଁ ତା' ପାଖ ପଶିବାକୁ ।

ବାସୁ କକା ବୁଝାଇଲା ଭଳି କହିଲେ, "ଆରେ ସବୁର୍ କର । ବେଳ ପଡିଲେ ଦେଖିବା ନାଇଁ ! ଏଇନା ତ ବର୍ଷା ଛେଚୁଚି । ରହ, ସେମାନେ କ'ଣ କରୁଛନ୍ତି ଆଗ ଦେଖ । ଉପରେ ପଡି କାହା ସାଙ୍ଗରେ କଳି କାଢ଼ିବାର ଦରକାର ନାହିଁ ।"

ମନେହେଲା, ଘନେଇ ଆସୁଥିବା ଯୁଦ୍ଧ ଟଳିଗଲା । ବାହାରେ ଅନ୍ଧାର ଆଉ ଗୁମୁଗୁମୁ ବର୍ଷା । ଭିତରେ ହାରିକିନ୍ ଆଲୁଅରେ ଓଦାଓଦା ମୁହଁ ।

ଦେଖୁ ଦେଖୁ ପହରେ ରାତି ବିତିଗଲା । ଅନ୍ଧାର ଭିତରେ ଟପଟପ ବର୍ଷାର ଶବ୍ଦ ।

ଜାନେଇଲେ ବାଘେଇ ନଈପାଣି ପଥର ଉପରେ ବାଡେଇ ହେବା ଶବ୍ଦ ।

ଲଳିତା ବୁଡିଗଲା ଅଭୁଲା ଅତୀତରେ । ଚିତ୍ରପରି ଦିଶିଗଲା ସବୁ । ବାପା, ବୋଉ, ସାନଭାଇ ସମସ୍ତେ ପୁଣି ତୁହାଇ ତୁହାଇ ମନେପଡିଲେ । ବିଭାଘର ମନେପଡିଲା । ଗୋଟାଏ ହାଡୁଆ ଟାଆଁସା ହାତରେ ଲଳିତାର ଲହୁଣି ପରି ପାପୁଲିଟି ଥୋଇ ବାପା ଶଙ୍ଖରେ ପାଣି ଟେକିଦେଲେ । ବାଜା ବାଜିଲା । ହୁଳହୁଳି ପଡିଲା । ଭୋଜିଭାତ ହେଲା । ଏଇ ତ' ବାହାଘର । ଲଳିତା ଚେଷ୍ଟାକଲା ତା' ଗେରସ୍ତର ମୁହଁ ମନେପକେଇବାକୁ । ଧେତ୍‌ତେରି, ଅଲାଜୁକ କାହାଁକା !

ଶଗଡ ଭିତରେ କିଏ ଖୁସ୍‌ମୁସ୍ ହେଲା । ଲଳିତା ଚେଙ୍ଗା ହେଇଗଲା । ଅନୁଭବ କଲା ଯେ ଶାଶୂଘରକୁ ଯିବା ବାଟରେ ଶଗଡ ରହିଯାଇଛି ନଈକୂଳରେ । ବର୍ଷା ବତାସି ପିଟୁଚି ।

ବାସୁ କକା ବୋଧେ ଖୁସ୍‌ମୁସ୍ ହଉଥିଲେ । ସେ ହିଁ ପଚାରିଲେ, "ଆଲୋ ମା' ଲଳିତା, ତତେ ଘୁମ ମାଡୁଚି କି ? ଏମିତ ଓଦା ନୁଗାରେ ରହିଲେ ଥଣ୍ଡା ଧରିଦବ । ବର୍ଷା ଢେର୍ ଥମିଗଲାଣି । ତୁ ଏଇଠି ନୁଗା ବଦଳ କରିଦେଲୁ । ଆମେ ସବୁ ଓହ୍ଲେଇଯାଉଚୁ । ଉଠିବଟିରେ ପିଲେ, ଚାଲ ଓହ୍ଲେଇଯିବା ।" ଆଗେ ନିଜେଇ, ତା' ପଛକୁ ଘନ ଓହ୍ଲେଇଗଲେ । ତାଙ୍କୁ ବି ଘୁମ ମାଡୁଥିଲା କି କ'ଣ । ଗୋଡହାତ ଏଠିସେଠି ପଡୁଥିଲା । ଆରପଟୁ ସୁଦୁ ବି ଓହ୍ଲେଇଗଲା ।

ବାସୁ କକା ଲଳିତାକୁ କହିଲେ, "ଆଲୋ ମା, ତତେ ନୁଗା ବଦଳ କରିବାକୁ ସିନା କହିଲି – ସେଇଟା କ'ଣ ହେଇପାରିବ ? ତୁ ପରା ଶୁଭ ସାଇତା ପାଟ ପିନ୍ଧି ଘରୁ ବାହାରିବୁ – ତାକୁ କେମିତି ଦିହରୁ କାଢିବୁ ? ନ ହେଲା ନାଇଁ । ତୁ ଭଲ କରି ଦିହମୁଣ୍ଡ ଶୁଖିଲାରେ ପୋଛିପକା !"

ତାକୁ ଗାମୁଛା ବଢେଇ ଦେଇ ବାସୁ କକା ଓହ୍ଲେଇଗଲେ ।

ଲଳିତା ମୁଣ୍ଡ ଆଡୁ ଗାମୁଛାଟାକୁ ଛପେଇ ଆଣିଲା । ଲୁଗା ଉପରୁ ବି ପାଣି ଭିଡିନେଲା ସେ ଗାମୁଛାଖଣ୍ଡ । ଶଗଡ ଭିତରେ ଆଉ କେହି ନଥିଲେ । ତଥାପି ହାରିକିନ୍ ଆଲୁଅଟା ପାଇଁ ଲଳିତା ନିଧଡକ ହେଇପାରୁ ନଥିଲା ।

ବାହାରେ ଚୁପ୍‌ଚାପ୍ କଥାବାର୍ତ୍ତା ଶୁଭୁଥିଲା । ବର୍ଷା ବୋଧେ ଥମିଯାଇଥିଲା । ଶଗଡ ଘୋଡଣୀ ଉପରେ ଲଳିତା ପାଖରେ ଟିପ ମାରିବାର ଶବ୍ଦ ଶୁଭିଲା । ବାସୁ କକା ପଚାରିଲେ – "ତତେ ଭୋକ କରୁଛି କି ଝିଅ ?"

ଅଧରାତିକୁ ଭୋକ ନକରିବ କେମିତି ? ହେଲେ ଝିଅଟା କ'ଣ କହନ୍ତା ଭୋକ କରୁଚି ବୋଲି । ସମସ୍ତଙ୍କୁ ବୋଧେ ଭୋକ କରୁଥିଲା ।

ସେମାନେ କଥାବାର୍ତ୍ତା ହଉଥିଲେ, "ସେଇ ମୁଆଁ ଟୋକେଇଟା ଫିଟେଇ ଦିଅ ବାସୁ କକା ।"

"ବାଟରେ ଏମିତି ଅଘଟନକ ଗରଦ ପଡିବ ବୋଲି କିଏ ଜାଣିଥିଲା ? କେହି କିଛି କହିବେ ନାଇଁ, କେହି କିଛି ଜାଣିବେ ନାଇଁ ।"

– "ଯାଉନା, ବାସୁ କକା, ମୁଆଁପେଡି ଫିଟେଇଦିଅ ।"

ଅଂଧାର ଭିତରେ ଲୁଚେଇ ଚୋରେଇ ମୁଆଁ ଖାଇବାକୁ ସମସ୍ତଙ୍କ ମନ । ଭୋକିଲା ବେଳା

ସମସ୍ତଙ୍କ ପାଇଁ ।

ବାସୁ କକା ଶଗଡ ପଛ ଆଡେ ଆସି ଠିଆହେଲେ । ହାରିକିନ୍ ଆଲୁଅରେ ତାଙ୍କ ମେଲା ଦିହ ଦିଶିଗଲା । ସେ ତାଙ୍କ ଓଦା ଫଟେଇଟା କାଢ଼ି ଦେହମୁଣ୍ଡ ପୋଚିହେଉଛନ୍ତି ନ କ'ଣ ।

ତାଙ୍କ ପଛକୁ ସୁଦୁ । ଘନା, ନିତେଇ ବି ସେମିତି ଦେଖାଗଲେ ।

ବାସୁ କକା ଦୋଷୀ ପରି କହିଲେ, "ଆଲୋ ମା' ! ସମସ୍ତଙ୍କୁ ତ ଭୋକ । କ'ଣ କରିବା ? ତୁ ସେ ମୁଆଁ ପେଡିଟା ଫିଟେଇ ଦେ । ସେଥିରୁ କିଛି ବାଣ୍ଟିଦବା । ଆମ୍ଭାକୁଶଳେ ସର୍ବସିଦ୍ଧି । ତୋ' ଶଶୁରଘରେ କିଏ ପଚାରିଲେ ମୁଁ ବୁଝେଇଦେବି ।"

ସତେ ବା ଲଳିତାହିଁ ନିଷ୍ପତ୍ତି ନେବ । ସତେବା ସବୁ ଗୁହାରି ତା'ରି ପାଖରେ । ସତେ ବା ସମସ୍ତଙ୍କ ଭୋକ ମେଣ୍ଟେଇବାକୁ ତାରି ସମ୍ପଦକୁ ସେମାନେ ଅପେକ୍ଷା କରି ରହିଛନ୍ତି ! ଲଳିତା କ'ଣ ବା କହିବ ? – "ପରପୁଅ ହାତରେ ନିଜ ଝିଅଟାକୁ ବାପା ଟେକିଦେଲେ । ତମେ ବାସୁ କକା ଚାହିଁଲେ କ'ଣ ମୁଆଁଟକ ଏ ପେଡି ଫିଟେଇ ଦେଇପାରିବ ନାହିଁ ?"

ତଥାପି ବାସୁ କକା ସେମିତି କିଛି ସ୍ଥିର କରି ନପାରି ଠିଆହେଇଥା'ନ୍ତି । ଏତିକିବେଳେ ଏମାନଙ୍କ ପଛରେ ସେମାନେ ବି ଆସି ଠିଆ ହେଇଗଲେ ।

ଘନା ସୁଦୁ ବିଜୁଳି ପରି ବୁଲିପଡିଲେ, "କି ହେ ବାବୁ, ତମେ କୁଆଡେ ?" ଏଇ ବୋଧେ ହାତାହାତି ହେଇଯିବେ କି କ'ଣ !

ସୁଦୁ ଗୋଟାକ ଉପରକୁ ଉଣ୍ଚୁକିଲା ବେଳକୁ ସେ କହିଲା, "ବାସୁ କକା, ଆମେ ତମ କଥା ସବୁ ଶୁଣିଚୁ ! ଆମକୁ ଭାରି ଭୋକ ! ଆମକୁ ତମ ସାଙ୍ଗରେ ମିଶାଅ । ବାରି ଧର୍ମ ହବ !"

ସୁଦୁ ଓହରିଆସିଲା । ବାସୁ କକା ସେମାନଙ୍କୁ ଚାହିଁ କହିଲେ, "ଦେଖ ବାବୁ, ଆମେ ତମକୁ ଜାଣିନୁ – ତମେ ବି ଆମକୁ ଜାଣିନ ! ଆମେ ଆମର କ'ଣ ବିଚାର କରୁଚୁ, ତମେ ସେଥିରେ ଆସି ଉପରେ ପଡୁଚ କାହିଁକି ? ଆମେ ତମ କଥାରେ ହାତ ଦଉଚୁ କି ?" ବାସୁ କକାଙ୍କ କଥାରେ ପୁଣି ଟାଣେଇଗଲେ ଏପାଖ ଲୋକେ । ସେ ପାଖରୁ ଶୁଭିଲା, "ଦେଖ ବାସୁ କକା, ଆମେ ଭଲରେ ଭଲରେ ତମକୁ ସତ କଥା କହିଦଉଚୁ ! ଆମକୁ ସତକୁ ସତ ଭାରି ଭୋକ । ତମେ ଆମକୁ ଜାଣ ନାହିଁ । ଆମେ ଭୋକ କଲେ କାହାକୁ ନପଚାରି ଝାମ୍ପିନଉ । ଆମକୁ କେହି ରୋକିପାରନ୍ତି ନାହିଁ । ଏଠି କଥା ଅଲଗା । ଆମେ ଏଇ ପାଖଆଖ ଗାଁ ପିଲା । ତେମେ ଆମ ଗାଁ ଝିଅକୁ ନେଇ ଶାଶୁଘରକୁ ଯାଉଚ । ମୁଁ ପୁଣି ସତ କହୁଚି ବାସୁ କକା, ଆମ ଭିତରେ ତିନି ଭାଗରୁ ଦି'ଭାଗ ଅରଣା । ଏ ଦିଟା ମୋ' ସାଙ୍ଗ । ଯା'ଙ୍କୁ କିଛି ଉବାର ନାହିଁ । ନିଜର ଭାବି ମୁଁ କହୁଚି, ଆମକୁ କିଛି ଖାଇବାକୁ ଦିଅ । ତେମେ ଖାଇ ନଥିଲେ ଆମେ ବି ଓପାସ ରହିଯାଆନ୍ତୁ ।"

ଭଲ କହୁଚି ତ' ଟୋକାଟା ! ତା' ବାହାରେ ତା'ର ଦିଟା ସାଙ୍ଗ କ'ଣ ସବୁ ହତିଆର ରଖିଥିବେ କେଜାଣି ! ବାସୁ କକା କିଛି କହିବା ଆଗରୁ ଘନା ଚମକେଇଲା, "କି ହେ ବାବୁ, ତେମେ କ'ଣ ଆମକୁ ଧମକଉଚ ? ତମର ବିଶେକୁ ଆମର ବାଇଶ ପଳ । ତମକୁ ଖାଇବାକୁ ଦବା ନଦାବ

ଆଣ ମର୍ଜି ଉପର କଥା । ନଦେଲେ କ'ଣ କରିବ ?"

ବାସୁ କକା କହିଲେ, "ଆରେ ରହ । ଦେଖ ବାବୁ, ଏସବୁ ଏ ଝିଅର ସଂପତ୍ତି । ଝିଅ ନିଜେ ଆଉ ଜଣଙ୍କ ସଂପତ୍ତି । ମୁଁ ଖାଲି ଏ ବାଟଟକ ପାରିକରିଦେବା ଲୋକ । ମୁଁ ତ ନିଜେ ଠିକ୍ କରିପାରୁ ନାହିଁ ସେ ମୁଆଁପେଡିରେ ହାତ ଦେବି ନା ନାହିଁ ।"

ଲଳିତା ସେତେବେଳକୁ ପଥର ପାଲଟିଗଲାଣି । ତାକୁ ଡର ମାଡିଲାଣି କାହିଁରେ କ'ଣ ! ହାରିକିନ୍ ଆଲୁଅରେ ସେମାନେ ଏକାପ୍ରକାର ଦିଶୁଛନ୍ତି । ସମସ୍ତଙ୍କୁ ଭୋକ । ଏମାନେ ଚାହିଁଲେ ମୁଆଁପେଡି ଝାମ୍ପି ନେଇଯାଇ ପାରିବେ ।

ନିଦା ପଥର ପରି ଅନ୍ଧାର ରାତି । ସୋର-ଶବଦ ନାହିଁ କୋଉଆଡେ । ଲଳିତା ନିରବରେ ମୁଆଁପେଡିଟିକୁ ବାସୁ କକା ହାତକୁ ଟେକିଦେଲା । ସମସ୍ତଙ୍କ ତୁଣ୍ଡରେ ଭୋକ ଆଉ ଆହ୍ଲାଦର ଶବ୍ଦ । ସେ ତିନିଟା ଟୋକା ସହର କାଇଦାରେ ହାତଟେକି ନାଚିଲେ । ସେଥିରୁ ଗୋଟାଏ କହିଲା, "ନୂଆବୋଉ, ଜିନ୍ଦାବାଦ୍" । ଆଉ ଦି'ଜଣ ପାଳି ଧରିଲେ – "ଜିନ୍ଦାବାଦ୍, ଜିନ୍ଦାବାଦ୍ ।"

ବାସୁ କକାଙ୍କୁ ସମସ୍ତେ ଘେରିଗଲେ । ଭୋକବେଳେ ପଶୁ ପକ୍ଷୀ ମଣିଷ ସମସ୍ତେ ଏକାପରି । ବାସୁ କକା ମୁଆଁପେଡି ଫିଟେଇଲେ । ସମସ୍ତଙ୍କ ବଢନ୍ତା ହାତକୁ ଆଡେଇ ଦେଇ କହିଲେ, 'ରହଃ ! ମୁଁ ଆଗେ ମୋ' ଝିଅକୁ ଦେଇସାରେ ।' – ମୁଆଁଗୁଡାକ ହାତ ଉଛୁଳେଇଲା ଭଳି ବଡ ବଡ ।

ସେଥିରୁ ଗୋଟିଏ ଲଳିତା ଆଗରେ ଥୋଇଦେଇ ସମସ୍ତଙ୍କ ହାତକୁ ଗୋଟିଏ ଲେଖା ବଢେଇଦେଲେ ।

ଦୁଇହାତରେ ମୁଆଁଟିଏ ଲେଖା ଧରି ସେମାନେ ଗୁଣ୍ଡୁଚି ମୂଷା ପରି ଦାନ୍ତେଇଲେ । ମୁହୂର୍ତ୍ତକରେ ସେମାନେ ବାଳୁତ ପରି ଦେଖାଗଲେ । ଭୋକିଲା, ହାଲିଆ ପିଲାଗୁଡିଏ ତେଇଁ ତେଇଁ ମୁଆଁ ଖାଇସାରିଲା ପରେ ସେମାନେ ବୋଧହୁଏ ବାଘେଇ ନଈରୁ ପାଣି ମୁନ୍ଦେ ଲେଖା ପିଇ ଶୋଇଯିବେ ରାତିର ଆଉ ଦୁଇପ୍ରହର ।

ଲଳିତା ମନରୁ ଭୟର ଶାମୁକାଲୁଆଯାକ ହଠାତ୍ ଓହ୍ଲେଇଗଲେ । ସେ ଆଉ କାହାର ଆଶ୍ରା ଲୋଡିବାର ନାହିଁ । ଏମାନେ ତ ତାରହିଁ ଆଶ୍ରିତ । ସେହିଁ ତ' ସାମ୍ରାଜ୍ଞୀ ! ଅଧୀଶ୍ୱରୀ !

ମୁଣ୍ଡ ଉପରୁ ଆସ୍ତେ ରାତି ଆଉ ଅନ୍ଧାର ଓହ୍ଲେଇଗଲେ । ରାତିର କିଏ କୋଉଠି ଶୋଇଗଲେ । କାକର ପବନରେ ନିଦ ଝାମ୍ପିଆସିଲା ।

ଲଳିତାକୁ ନିଦ ନାହିଁ । ତାକୁ ଭୋକ ନାହିଁ କି ଶୋଷ ନାହିଁ । ବାସୁ କକା ଦେଇଥିବା ମୁଆଁଟିକୁ ସେ ଛୁଇଁନାହିଁ । ସେ ସେମିତି ଅଧା ନିଦ ଅଧା ଚେତା ରହିବା ଭିତରେ ପହରି ଯାଇଛି । ଆଖି ଝୁପି ପଡିଛି, କିନ୍ତୁ ନିଦ ନାହିଁ ।

ପାହାଡ ଚୂଳରୁ ଆକାଶର ବିସ୍ତାର ଯାଏଁ ଅନ୍ଧାର ଅପସରି ଯାଉଥାଏ । ହଠାତ୍ ଗୁମୁଗୁମୁ ଶବ୍ଦ ହେଲା । ଦପଦପ ଆଲୁଅଟାଏ ଜଳିଉଠିଲା । ବାଘେଇର ଆର କୂଳରୁ ଟ୍ରକ୍ ଗର୍ଜିଲା । ଆଲୁଅ

ଛାଟିଲା ଏକୂଳ ଯାଏଁ। ସମସ୍ତେ ଧଡ୍ ଧଡ୍ ଉଠି ପଡିଲେ।

ବାଘେଇ ନଈରୁ ପାଣି ନିଗିଡିଯାଉଥିଲା। ବାସୁ କକା ବିଳବିଳେଇଲା ପରି ପାଟିକଲେ, "ଆରେ, ମୋ' ଝିଅ କାଇଁ?" ସମସ୍ତେ ଘେରିଗଲେ ଶଗଡକୁ। ଅଣ୍ଡାଳି ପକାଇଲେ ଚରିଆଡୁ! ବୁକୁ ବାଡେଇ ଛେଚି କୋଡି ହେଲେ ବାସୁ କକା! ଟ୍ରକ୍ ଘାଇଁ ଘାଇଁ ହେଲା ଗଡାଣି ଓହ୍ଲେଇଲାବେଳେ।

ଖାଲି ଶଗଡଟା ପାଖରେ ସାତଜଣ ଅସହାୟ ଠିଆହେଇଥା'ନ୍ତି। ଟାଙ୍କ ପାଖରେ ଉପରମୁହାଁ ଖାଲି ମୁଆଁ ଟୋକେଇଟା ପଡିଥାଏ। ନୂଆ ବାଉଁଶିଆରେ କେବଳ ଗୁଡ ଅଠା କିଛି ଲାଗିଥାଏ। ବାଉଁଶିଆଟା ଖାଲି।

ସମସ୍ତଙ୍କ ମନରେ ସେଇ ଗୋଟିଏ କଥା – ନୂଆବୋହୂଟି ବୋଧେ ବାଘେଇ ନଈରେ ଭାସିଗଲା। ନୂଆବୋହୂଟିକୁ ବୋଧେ କେନ୍ଦୁଆ ଟେକିନେଇଗଲା।

ସମସ୍ତେ ଅପେକ୍ଷା କରିଥା'ନ୍ତି ଘୁ-ଘୁ ମାଡିଆସୁଥିବା ଟ୍ରକ୍‌କୁ। ତା' ଆଲୁଅ ଅଧିକରୁ ଅଧିକ ତେଜିଆସୁଥାଏ। ତାଙ୍କୁ ଲାଗୁଥାଏ, ସେ ହିଁ ତାଙ୍କୁ ଶରଣ ଦବ; ନହେଲେ ତା' ଚକ ତଳେ ଏ ଭୋକିଲା ଅପରାଧୀଗୁଡିକୁ ଚକଟି ଚାଲିଯିବ।

ଏତିକିବେଳେ, ସମସ୍ତଙ୍କୁ ଚକିତ କରି ବଟଗଛ ଆରପାଖରୁ ହାତରେ ହାରିକିନ୍‌ଟି ଧରି ଲଳିତା ଆସ୍ତେ ବାହାରିଆସିଲା! କେହି ଚକି ପାରିଲେ ନାହିଁ। ଛାନିଆ ହେଲା ପରି ଠିଆ ହେଇ ରହିଗଲେ। ଆଖିରେ ପଲକ ନଥାଏ; ପାଟି ମେଲା ହେଇ ରହିଥାଏ।

ବାସୁ କକାହିଁ ପ୍ରଥମେ ସାଷ୍ଟାମ ହେଲେ; ବାଉଳି ହେଲା ପରି "ମୋ ମା' କିଲୋ" ବୋଲି ଲଳିତା ପାଖକୁ ଆଗେଇ ଗଲେ।

ଲଳିତା ଭାରି ସ୍ଥିର ଆଖିରେ ତାଙ୍କୁ ଚାହିଁଲା। ତା' ମୁହଁରେ ରେଖାଏ ହସ।

"କିଛି ନାଇଁ ମ' ବାସୁ କକା! ସେ ବଳଦ ଦି'ଟା ବି ଭୋକରେ ଠିଆହୋଇଥିଲେ ତ'; ମୁଁ ତାଙ୍କୁ ସେ ମୁଆଁଟା ଭାଗକରି ଖୁଆଇଦେବାକୁ ଯାଇଥିଲି।" ଟ୍ରକ୍‌ଟା ଗୁମୁଗୁମୁ ଭୂଇଁ ଦୁଲୁକାଇ ପାରିହେଇଗଲା। ମୁହୂର୍ତ୍ତକ ଅନ୍ଧାର, ମୁହୂର୍ତ୍ତକେ ଆଲୁଅ ଦେଖାଗଲା ପୃଥିବୀ।

ସିନ୍ଦୁରା ଫାଟିଯାଇଥିଲା। ଫଟଫଟିଆର ଟୋକା ବିଦାୟ ମାଗି ବାହାରିଗଲେ। ବଳଦଙ୍କୁ ଶଗଡରେ ଫାନ୍ଦିଲାବେଳକୁ ସେମାନେ ମୁଆଁର ସୁଆଦ ଚାଟୁଥିଲେ ଜିଭରେ।

ବାସୁ କକା କ'ଣ ଭାବିଲେ କେଜାଣି ମୁଆଁ ଟୋକେଇଟିକୁ ନେଇ ବାଘେଇ ସୁଅରେ ଭସେଇଦେଲେ। ତାଙ୍କୁ ବୋଧେ ଲାଜ ମାଡୁଥିଲା ଖାଲି ଟୋକେଇଟା ଝିଅର ଭାର ସାଙ୍ଗରେ ନବା ପାଇଁ।

ମର୍ଯ୍ୟାଦା ବୋଲି କଥାଟାଏ ପୁଣି ଅଛି ତ!

□

ଛାଟିଲା ଏକୂଳ ଯାଏଁ । ସମସ୍ତେ ଧଡ୍ ଧଡ୍ ଉଠି ପଡିଲେ ।

ବାଘେଇ ନଈରୁ ପାଣି ନିଗିଡିଯାଉଥିଲା । ବାସୁ କକା ବିଳବିଳେଇଲା ପରି ପାଟିକଲେ, "ଆରେ, ମୋ' ଝିଅ କାଇଁ ?" ସମସ୍ତେ ଘେରିଗଲେ ଶଗଡକୁ । ଅଣ୍ଡାଳି ପକାଇଲେ ଚାରିଆଡୁ ! ବୁକୁ ବାଡେଇ ଛେଚି କୋଡି ହେଲେ ବାସୁ କକା ! ଟ୍ରକ୍ ଘାଇଁ ଘାଇଁ ହେଲା ଗଡାଣି ଓହ୍ଲେଇଲାବେଳେ ।

ଖାଲି ଶଗଡଟା ପାଖରେ ସାତଜଣ ଅସହାୟ ଠିଆହେଇଥା'ନ୍ତି । ତାଙ୍କ ପାଖରେ ଉପରମୁହାଁ ଖାଲି ମୁଆଁ ଟୋକେଇଟା ପଡିଥାଏ । ନୂଆ ବାଉଁଶିଆରେ କେବଳ ଗୁଡ ଅଠା କିଛି ଲାଗିଥାଏ । ବାଉଁଶିଆଟା ଖାଲି ।

ସମସ୍ତଙ୍କ ମନରେ ସେଇ ଗୋଟିଏ କଥା – ନୂଆବୋହୂଟି ବୋଧେ ବାଘେଇ ନଈରେ ଭାସିଗଲା । ନୂଆବୋହୂଟିକୁ ବୋଧେ କେନ୍ଦୁଆ ଟେକିନେଇଗଲା ।

ସମସ୍ତେ ଅପେକ୍ଷା କରିଥା'ନ୍ତି ଘୁ-ଘୁ ମାଡିଆସୁଥିବା ଟ୍ରକ୍‌କୁ । ତା' ଆଲୁଅ ଅଧିକରୁ ଅଧିକ ତେଜିଆସୁଥାଏ । ତାଙ୍କୁ ଲାଗୁଥାଏ, ସେ ହିଁ ତାଙ୍କୁ ଶରଣ ଦବ; ନହେଲେ ତା' ଚକ ତଳେ ଏ ଭୋକିଲା ଅପରାଧୀଗୁଡିକୁ ଚକଟି ଚାଲିଯିବ ।

ଏତିକିବେଳେ, ସମସ୍ତଙ୍କୁ ଚକିତ କରି ବଟଗଛ ଆରପାଖରୁ ହାତରେ ହାରିକିନ୍‌ଟି ଧରି ଲଳିତା ଆସ୍ତେ ବାହାରିଆସିଲା ! କେହି ଚର୍କି ପାରିଲେ ନାହିଁ । ଛାନିଆ ହେଲା ପରି ଠିଆ ହେଇ ରହିଗଲେ । ଆଖିରେ ପଲକ ନଥାଏ; ପାଟି ମେଲା ହେଇ ରହିଥାଏ ।

ବାସୁ କକାହିଁ ପ୍ରଥମେ ସାଷ୍ଟାମ ହେଲେ; ବାଉଳି ହେଲା ପରି "ମୋ ମା' କିଲୋ" ବୋଲି ଲଳିତା ପାଖକୁ ଆଗେଇ ଗଲେ ।

ଲଳିତା ଭାରି ସ୍ଥିର ଆଖିରେ ତାଙ୍କୁ ଚାହିଁଲା । ତା' ମୁହଁରେ ରେଖାଏ ହସ ।

"କିଛି ନାଇଁ ମ' ବାସୁ କକା ! ସେ ବଳଦ ଦି'ଟା ବି ଭୋକରେ ଠିଆହୋଇଥିଲେ ତ'; ମୁଁ ତାଙ୍କୁ ସେ ମୁଆଁଟା ଭାଗକରି ଖୁଆଇଦେବାକୁ ଯାଇଥିଲି ।" ଟ୍ରକ୍‌ଟା ଗୁମୁଗୁମୁ ଭୂଇଁ ଦୁଲୁକାଇ ପାରିହେଇଗଲା । ମୁହୂର୍ତ୍ତକ ଅନ୍ଧାର, ମୁହୂର୍ତ୍ତକେ ଆଲୁଅ ଦେଖାଗଲା ପୃଥିବୀ ।

ସିନ୍ଦୂରା ଫାଟିଯାଇଥିଲା । ଫଟଫଟିଆର ଟୋକା ବିଦାୟ ମାଗି ବାହାରିଗଲେ । ବଳଦଙ୍କୁ ଶଗଡରେ ଫାନ୍ଦିଲାବେଳକୁ ସେମାନେ ମୁଆଁର ସୁଆଦ ଚାଟୁଥିଲେ ଜିଭରେ ।

ବାସୁ କକା କ'ଣ ଭାବିଲେ କେଜାଣି ମୁଆଁ ଟୋକେଇଟିକୁ ନେଇ ବାଘେଇ ସୁଅରେ ଭସେଇଦେଲେ । ତାଙ୍କୁ ବୋଧେ ଲାଜ ମାଡୁଥିଲା ଖାଲି ଟୋକେଇଟା ଝିଅର ଭାର ସାଙ୍ଗରେ ନବା ପାଇଁ ।

ମର୍ଯ୍ୟାଦା ବୋଲି କଥାଟାଏ ପୁଣି ଅଛି ତ !

□



କବି, କଳାକାର, ସ୍ଥପତି, ଗାଳ୍ପିକ, ଔପନ୍ୟାସିକ, ନିବନ୍ଧକାର, ଶାସ୍ତ୍ରଜ୍ଞ, ବାଗ୍ମୀ, ସୁବେଦୀ, ସାଧକ, ସାରସ୍ୱତ ପ୍ରାଜ୍ଞପୁରୁଷ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ସାଂପ୍ରତିକ ଓଡ଼ିଆ ଗଦ୍ୟ ସାହିତ୍ୟରେ ଜଣେ ପ୍ରଜ୍ଞାଦୀପ୍ତ ଉଜ୍ଜ୍ୱଳ ପୁରୁଷ । ତାଙ୍କ ଭାଷାରେ ସମ୍ଭ୍ରାନ୍ତ ଶୁଦ୍ଧତା, ଉଚ୍ଚାରଣରେ ଅଭ୍ରାନ୍ତ ସ୍ୱଚ୍ଛତା, ଚିନ୍ତାରେ ବଳିଷ୍ଠ ମୌଳିକତା, ଉପଲବ୍ଧିରେ ସୂକ୍ଷ୍ମତା ଓ ଗଭୀରତା ତାଙ୍କୁ ଏକ ଅନନ୍ୟ ସାଧାରଣ ସମ୍ମାନର ଅଧିକାରୀ କରି ପାରିଛି । ମହିମାନ୍ୱିତ ଏ ଶିଳ୍ପୀଙ୍କ ପରିବ୍ୟାପ୍ତ ସୃଜନ-ଦିଗ୍‌ବଳୟରେ ଧ୍ୱନିତ ହୁଏ ଏକ ଅଶ୍ରୁତ ସ୍ୱର, ଅନୁଭୂତ ହୁଏ ଅନ୍ତରୀକ୍ଷର ସ୍ପର୍ଶ । ସେ ତାଙ୍କର ଚେତନାର ଉଦ୍‌ଭାସରେ ଦୀପ୍ତିମନ୍ତ କରନ୍ତି ପାଠକଙ୍କୁ । ଓଡ଼ିଆ ସାହିତ୍ୟକୁ ମର୍ଯ୍ୟାଦାମଣ୍ଡିତ କରିଥିବା, ବହୁ ମାନ୍ୟତା ପ୍ରାପ୍ତ, ବିପୁଳ ଶ୍ରଦ୍ଧା ସମ୍ମାନର ଅଧିକାରୀ ଚନ୍ଦ୍ରଶେଖର, ସାଂପ୍ରତିକ କାଳର ଚିନ୍ତା-ଚେତନା କ୍ଷେତ୍ରରେ ଏକ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ । ସାହିତ୍ୟର ସବୁ ବର୍ଗରେ ତାଙ୍କର ପ୍ରବେଶ । ସବୁ ବର୍ଗରେ ପ୍ରତିଷ୍ଠା । ସବୁ ବର୍ଗରେ ପରିଚୟ ।

ପ୍ରକାଶକ



GALPA SAMAHARA
by CHANDRASEKHAR RATH

Published by :
PASCHIMA PUBLICATIONS
Bhubaneswar

₹. 600.00